# ଶ୍ରୀମଦ୍ ଭଗବଦ୍‌ଗୀତା

୰ ପଂଡିତ ନୀଳକଂଠ ଦାଶ, ଏମ୍. ଏ.

ନିଉ ଷ୍ଟୁଡେଣ୍ଟ୍‌ସ୍ ଷ୍ଟୋର

Paper used for the printing of this book was made available by Govt. of India through Govt. of Orissa at a concessional rate.

# ଶ୍ରୀମଦ୍ ଭଗବଦ୍‌ଗୀତା

৺ ପଣ୍ଡିତ ନୀଳକଣ୍ଠ ଦାଶ, ଏମ୍. ଏ.

ପ୍ରକାଶକ :

**ନିଉ ଷ୍ଟୁଡେଣ୍ଟସ ଷ୍ଟୋର,**

ବିନୋଦବିହାରୀ, କଟକ - ୭୫୩ ୦୦୨

ଚତୁର୍ଥ ସଂସ୍କରଣ ୧୯୮୦

ମୁଦ୍ରାକର

**ସାଧନା ପ୍ରେସ୍, ବ୍ରହ୍ମପୁର, - ୭୬୦.୦୦୨**

**ମୂଲ୍ୟ ଷାଠିଏ ଟଙ୍କା ମାତ୍ର**

**SRIMAD BHAGAVADGITA**

by Late Pandit Nilakantha Das. Published by New Students Store, Benodbehari, Cuttack - 753 002 and printed at Sadhana Press, Berhampur - 760 002.

Fourth Edition : 1980. Price : Rupees Sixty only.

# ସୂଚୀପତ୍ର

## ପୀଠିକା

# ଗୀତା-ପ୍ରବେଶ

ସାଧନା—ତନ୍ତ୍ରଯୋଗ— ଯୋଗରେ ଅଦ୍ଭୁତ କ୍ରିୟା—ହଠଯୋଗ—ଅତିମାନୁଷକ୍ରିୟା ଓ ତାର ପ୍ରଭାବ—ତପସ୍ୟା ଓ ଯୋଗ—ଭଣ୍ଡାମି ଓ ମିଥ୍ୟାଗୁରୁ—କାମ ସାଧନାରେ ଶକ୍ତି ପରୀକ୍ଷା—ସାଧନା ଅପଗୁରର ଅନ୍ୟାନ୍ୟ ଉପସର୍ଗ—ବୌଦ୍ଧଧର୍ମର ଏକ କ୍ରିୟାର ଫଳ—ସଂଘରେ ନାରୀ ପ୍ରବେଶ କ୍ରିୟା ଓ ତାର ପରିଣାମ—ଓଡ଼ିଶାରେ ଏହି ତନ୍ତ୍ର ଓ ଗୌଡ଼ୀୟ ବୈଷ୍ଣବ—ଗୀତାରେ କୃଚ୍ଛ୍ର ସାଧନା ମନା—ଗୀତାରେ ସାଧାରଣ ମାନବ ପାଇଁ ପନ୍ଥା—(୨) ଗୀତ ଧର୍ମ ମାନବଧର୍ମ—ଅତିମାନୁଷତା ଗୀତାରେ ହେୟ—ଶ୍ରୀକୃଷ୍ଣ ମାନବର ସାଧାରଣ ପରିସ୍ଥିତିରେ ଗୀତ ଧର୍ମ ରଖିଛନ୍ତି—ଶ୍ରୀକୃଷ୍ଣ ଅମାନୁଷତା ଅବା ଅତିମାନୁଷତାର ଅବକାଶ ବା ଉପଯୋଗ ଦେଇ ନାହାନ୍ତି—ବିଭୂତି ଯୋଗ ଓ ବିଶ୍ୱରୂପରେ ସାଧାରଣ ମାନବ ଧର୍ମ—ବିଶ୍ୱରୂପ ଦେଖି ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଦେବତା ବୋଲି ବିଚାରିଲେ—ଶ୍ରୀକୃଷ୍ଣ ତା ନୁହେଁ ବୋଲି ବୁଝାଇ ଦେଲେ—ଅର୍ଜୁନ ବୁଝିଗଲେ ଓ ମାନିଲେ—(୩) ଗୀତା ଧର୍ମରେ ମାନବର ସାଧନା ଓ ସିଦ୍ଧି—କର୍ମ ସାଧନାରେ ଭୌତିକତା ଓ ଆତ୍ମିକତାର ସମୁଚିତ ଧାରଣା—ଦୁଇଟିରୁ କୌଣସିଟି ହେୟ ବା ଉପାଦେୟ ନୁହେଁ—ସ୍ୱାଧୀନ ଆତ୍ମାରେ ବିଶ୍ୱର ସମ୍ବନ୍ଧ—ଭୂମା ଓ ସୀମାର ସମ୍ପର୍କରେ ହିଁ କର୍ମର ମୂଲ୍ୟ ନିରୂପିତ ହୁଏ—ବିନାଶ ମଧ୍ୟରେ ନିତ୍ୟତା—ମୃତ୍ୟୁରେ ଅମୃତ—ଭୋଗର ବିଲୋପରେ ତ୍ୟାଗର ମୂଲ୍ୟ ନାହିଁ—ସାମାନ୍ୟ ଉଦାହରଣ—ଦର୍ଶନ ଓ ଜ୍ଞାନ—ସତ୍ୟମାନରେ ମୂଲ୍ୟ ନିରୂପଣ—ଅର୍ଦ୍ଧ ସତ୍ୟହିଁ ଅସତ୍ୟ—ଭୂତ ଆତ୍ମାର ସମ୍ୟକ୍ ସମାଧାନ ହିଁ ଏହି ସତ୍ୟ—ଏହାହିଁ ଦର୍ଶନ—ଏହା ହିଁ ମାପ—ମାନବର ଖାଲି ଭୌତିକତାରେ ଆତ୍ମନାଶ ହୁଏ—ଖାଲି ଆତ୍ମିକତାରେ ଭ୍ରଷ୍ଟାଗୁର ହୁଏ—'ପୁରୁଷୋତ୍ତମ' ଭାବ ଏକା ଆତ୍ମିକତା ନୁହେଁ—କର୍ମରେ ମୂଲ୍ୟ ନିରୂପଣରେ ମାନ—ଆତ୍ମାର ଆଦର୍ଶ—ଆଦର୍ଶ ଓ ବେଦନା—ବୁଦ୍ଧି—'ଶରୀରଯାତ୍ରା' କଥାଟିର ଅର୍ଥ—'ଆତ୍ମଜ୍ଞାନ'—ଏହି ଆତ୍ମଜ୍ଞାନ ହିଁ କର୍ମ ନିୟମରେ 'ସ୍ୱଭାବ'—ଏହା ହିଁ ବୃତ୍ତି ଠିକ୍ କରିବାର ବସ୍ତୁ—ଏହି ଜ୍ଞାନ ଥିଲେ ମାନବ ସ୍ୱରାଟ୍ ବା ନିଜ ନିଜର ରାଜା—ଏହି ସ୍ୱରାଜ ହିଁ ଚରମ ମାନବିକ ବିକାଶ—ଆତ୍ମଜ୍ଞାନରେ ମାନବର କ୍ରମ ବିକାଶ—ଇନ୍ଦ୍ରିୟ, ମନ, ବୁଦ୍ଧି ଓ ବୁଦ୍ଧିର ପର—ତେବେ ଆତ୍ମବାନ୍ ଏକା ସ୍ୱରାଟ୍—ସମାଜ ଓ ସମବ୍ୟବହାର—ସ୍ୱଧର୍ମ ଓ ଅଧିକାର—ସାମାଜିକ ଜୀବନରେ 'ପୁରୁଷୋତ୍ତମ' ଧାରଣା—ଗୁଣରେ ବିଭାଗ ଓ ଗୁଣାତୀତ—



ଓଁ

**ନମୋ ଭଗବତେ ବାସୁଦେବାୟ**
**ଭଗବଦ୍‌ଗୀତା କିଞ୍ଚି ଦଧୀତା**
**ଗଂଗାଜଲଲବକଣିକା ପୀତା,**
**ସକୃଦପି ଯସ୍ୟ ମୁରାରିସମର୍ଚ୍ଚା,**
**ତସ୍ୟ ଯମଃ କିଂ କୁରୁତେ ଚର୍ଚ୍ଚାଂ ।**

## ଶ୍ରୀମଦ୍ ଭଗବଦ୍‌ଗୀତାୟାଃ

## ପ୍ରାରମ୍ଭଃ

ଓଁ ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରଂ
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ॥

ଶ୍ରୀ ହୟଗ୍ରୀବାୟ ନମଃ ।

ଶୁକ୍ଳାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜଂ ।
ପ୍ରସନ୍ନବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ॥

ନାରାୟଣଂ ନମସ୍କୃତ୍ୟ ନରଞ୍ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ଚୈବ ତତୋ ଜୟମୁଦୀରୟେତ୍ ॥

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ॥

ବ୍ୟାସାୟ ବିଷ୍ଣୁରୂପାୟ ବ୍ୟାସରୂପାୟ ବିଷ୍ଣବେ ।
ନମୋ ବୈ ବ୍ରହ୍ମନିଧୟେ ବାଶିଷ୍ଠାୟ ନମୋ ନମଃ ॥

ଅଚତୁର୍ବଦନୋ ବ୍ରହ୍ମା ଦ୍ୱିବାହୁରପରୋ ହରିଃ ।
ଅଭାଲଲୋଚନଃ ଶମ୍ଭୁର୍ଭଗବାନ୍ ବାଦରାୟଣଃ ॥

## ଅଥ ଶ୍ରୀମଦ୍‌ଭଗବଦ୍‌ଗୀତା ପାଠକ୍ରମଃ

ଅଥ ଶ୍ରୀଗୀତା-କରାଙ୍ଗନ୍ୟାସଃ । ଓଁ ଅସ୍ୟ ଶ୍ରୀମଦ୍‌ଭଗବଦ୍‌ଗୀତାମାଲାମନ୍ତ୍ରସ୍ୟ ଶ୍ରୀଭଗବାନ ବେଦବ୍ୟାସ ଋଷିଃ, ଅନୁଷ୍ଟୁପ୍ଛନ୍ଦଃ, ଶ୍ରୀକୃଷ୍ଣଃ, ପରମାତ୍ମା ଦେବତା,

ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ ଇତି ବୀଜଂ, ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ଇତି ଶକ୍ତିଃ, ଅହଂ ତ୍ୱାଂ ସର୍ବପାପେଭ୍ୟଃ ମୋକ୍ଷୟିଷ୍ୟାମି ମା ଶୁଚଃ ଇତି କୀଳକଂ, ଶ୍ରୀକୃଷ୍ଣପ୍ରୀତ୍ୟର୍ଥେ ଗୀତାପାଠେ ବିନିଯୋଗଃ ।

ଓଁ ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ଇତି ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ଇତି ତର୍ଜ୍ଜନୀଭ୍ୟାଂ ସ୍ୱାହା । ଓଁ ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ମଧ୍ୟମାଭ୍ୟାଂ ବଷଟ୍ । ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ ଇତି ଅନାମିକାଭ୍ୟାଂ ହୁଂ । ଓ ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ ଇତି କନିଷ୍ଠାଭ୍ୟାଂ ବୌଷଟ୍ । ଓଁ ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ ଇତି କରତଳପୃଷ୍ଠାଭ୍ୟାଂ ଅସ୍ତ୍ରାୟଫଟ୍ । ଇତି କରନ୍ୟାସଃ ।

ଓଁ ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ଇତି ହୃଦୟାୟ ନମଃ, ଓଁ ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ଇତି ଶିରସି ସ୍ୱାହା । ଓଁ ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ଶିଖାୟୈ ବଷଟ୍ । ଓଁ ନିତ୍ୟ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ ଇତି କବଚାୟ ହୁଂ । ଓଁ ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ ଇତି ନେତ୍ରାଭ୍ୟାଂ ବୌଷଟ୍ । ଓଁ ନାନାବିଧାନି ଦିବ୍ୟାନି ନାନାବର୍ଣାକୃତୀନି ଚ ଇତି କରତଳକରପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ । ଇତି ଅଙ୍ଗନ୍ୟାସଃ ।

ଅଥ ଧ୍ୟାନଂ

ଓଁ ପାର୍ଥାୟ ପ୍ରତିବୋଧିତା ଭଗବତା ନାରାୟଣେନ ସ୍ୱୟଂ
ବ୍ୟାସେନ ଗ୍ରଥିତାଂ ପୁରାଣମୁନିନା ମଧ୍ୟେ ମହାଭାରତେ ।
ଅଦ୍ୱୈତାମୃତବର୍ଷିଣୀଂ ଭଗବତୀମଷ୍ଟାଦଶାଧ୍ୟାୟିନୀଂ—
ମମ୍ବ ତ୍ୱାମନୁସନ୍ଦଧାମି ଭଗବଦ୍‌ଗୀତେ ଭବଦ୍ୱେଷିଣୀଂ ॥

ନମୋଽସ୍ତୁ ତେ ବ୍ୟାସ ବିଶାଳବୁଦ୍ଧେ
ଫୁଲ୍ଲାରବିନ୍ଦାୟତପତ୍ରନେତ୍ର ।
ଯେନ ତ୍ୱୟା ଭାରତତୈଳପୂର୍ଣ୍ଣଃ
ପ୍ରଜ୍ୱାଳିତୋ ଜ୍ଞାନମୟଃ ପ୍ରଦୀପଃ ।



ପ୍ରପନ୍ନପାରିଜାତାୟ ତୋତ୍ରବେତ୍ରୈକପାଣୟେ,
ଜ୍ଞାନମୁଦ୍ରାୟ କୃଷ୍ଣାୟ ଗୀତାମୃତଦୁହେ ନମଃ ।
ସର୍ବୋପନିଷଦୋ ଗାବୋ ଦୋଗ୍‌ଧା ଗୋପାଳନନ୍ଦନଃ,
ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍‌ଧଂ ଗୀତାମୃତଂ ମହତ୍ ।
ବସୁଦେବସୁତଂ ଦେବଂ କଂସଚାଣୂରମର୍ଦ୍ଦନଂ,
ଦେବକୀପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗତ୍‌ଗୁରୁଂ ।
ଭୀଷ୍ମଦ୍ରୋଣତଟାଜୟଦ୍ରଥଜଳାଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ କୈବର୍ତ୍ତକଃ କେଶବଃ ।
ପାରାଶର୍ଯ୍ୟବଚଃ ସରୋଜମମଳଂ ଗୀତାର୍ଥ ଗନ୍ଧୋତ୍କଟଂ,
ନାନାଖ୍ୟାନକକେଶରଂ ହରିକଥାସମ୍ବୋଧନାବୋଧିତଂ ।
ଲୋକେ ସଜ୍ଜନଷଟ୍‌ପଦୈରହରହଃ ପେପୀୟମାନଂ ମୁଦା,
ଭୂୟାଦ୍‌ଭାରତପଙ୍କଜଂ କଳିମଳପ୍ରଧ୍ୱଂସିନଃ ଶ୍ରେୟସେ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ,
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ।
ଯଂ ବ୍ରହ୍ମା ବରୁଣେନ୍ଦ୍ର ରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ—
ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ,
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ।



ଓଁ ଧ୍ୟେୟଂ ସଦା ପରିଭବଘ୍ନମଭୀଷ୍ଟଦୋହଂ
ତୀର୍ଥାସ୍ପଦଂ ଶିବବିରିଞ୍ଚିନୁତଂ ଶରଣ୍ୟଂ ।
ଭୃତ୍ୟାର୍ତ୍ତିହଂ ପ୍ରଣତପାଳ ଭବାବ୍‌ଧିପୋତଂ,
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦଂ ।
ତ୍ୟକ୍ତ୍ୱା ସୁଦୁସ୍ତ୍ୟଜସୁରେପ୍‌ସିତରାଜ୍ୟଲକ୍ଷ୍ମୀଂ
ଧର୍ମିଷ୍ଠ ଆର୍ଯ୍ୟବଚସା ଯଦଗାଦରଣ୍ୟଂ,
ମାୟାମୃଗଂ ଦୟିତୟେପ୍‌ସିତମନ୍ୱଧାବଦ୍—
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦଂ ।



# ଶ୍ରୀ ଶ୍ରୀ ବରାହପୁରାଣୋକ୍ତ

## ଶ୍ରୀ ଶ୍ରୀ ଗୀତାମାହାତ୍ମ୍ୟଂ

ଓଁ ନମୋ ଭଗବତେ ବାସୁଦେବାୟ ।

ଧରୋବାଚ

ଭଗବାନ୍ ପରମେଶାନ ଭକ୍ତିରବ୍ୟଭିଚାରିଣୀ ।
ପ୍ରାରବ୍ଧଂ ଭୁଜ୍ୟମାନସ୍ୟ କଥଂ ଭବତି ହେ ପ୍ରଭୋ । ୧ ।

ଶ୍ରୀ ବିଷ୍ଣୁରୁବାଚ

ପ୍ରାରବ୍ଧଂ ଭୁଜ୍ୟମାନୋ ହି ଗୀତାଭ୍ୟାସରତଃ ସଦା ।
ସ ମୁକ୍ତଃ ସ ସୁଖୀ ଲୋକେ କର୍ମଣା ନୋପଲିପ୍ୟତେ । ୨ ।
ମହାପାପାଦିପାପାନି ଗୀତାଧ୍ୟାନଂ କରୋତି ଚେତ୍ ।
କ୍ୱଚିତ୍ ସ୍ପର୍ଶଂ ନ କୁର୍ବନ୍ତି ନଳିନୀଦଳମମ୍ବୁବତ୍ । ୩ ।
ଗୀତାୟାଃ ପୁସ୍ତକଂ ଯତ୍ର ଯତ୍ର ପାଠଃ ପ୍ରବର୍ତ୍ତତେ ।
ତତ୍ର ସର୍ବାଣି ତୀର୍ଥାନି ପ୍ରୟାଗାଦୀନି ତତ୍ର ବୈ । ୪ ।
ସର୍ବେ ଦେବାଶ୍ଚ ଋଷୟୋ ଯୋଗିନଃ ପନ୍ନଗାଦୟଃ ।
ଗୋପାଳୈର୍ଗୋପିକାଭିଶ୍ଚ ନାରଦୋଦ୍ଧବ-ପାର୍ଷଦୈଃ ।
ସହାୟାନ୍ତି ତତ୍ର ଶୀଘ୍ରଂ ଯତ୍ର ଗୀତା ପ୍ରବର୍ତ୍ତତେ । ୫ ।
ଯତ୍ର ଗୀତା-ବିଚାରଶ୍ଚ ପଠନଂ ପାଠନଂ ଶ୍ରୁତଂ ।
ତତ୍ରାହଂ ନିଶ୍ଚିତଂ ପୃଥ୍ୱି ନିବସାମି ସଦୈବ ହି । ୬ ।
ଗୀତାଶ୍ରୟେଽହଂ ତିଷ୍ଠାମି ଗୀତା ମେ ଚୋତ୍ତମଂ ଗୃହଂ ।
ଗୀତାଜ୍ଞାନମୁପାଶ୍ରିତ୍ୟ ତ୍ରୀନ୍ ଲୋକାନ୍ ପାଳୟାମ୍ୟହଂ ।୭।
ଗୀତା ମେ ପରମା ବିଦ୍ୟା ବ୍ରହ୍ମରୂପା ନ ସଂଶୟଃ ।
ଅର୍ଦ୍ଧମାତ୍ରାକ୍ଷରା ନିତ୍ୟା ସ୍ୱାନିର୍ବାଚ୍ୟପଦାତ୍ମିକା । ୮ ।
ଚିଦାନନ୍ଦେନ କୃଷ୍ଣେନ ପ୍ରୋକ୍ତା ସ୍ୱମୁଖତୋଽର୍ଜ୍ଜୁନଂ ।
ବେଦତ୍ରୟୀ ପରାନନ୍ଦା ତତ୍ତ୍ୱାର୍ଥଜ୍ଞାନସଂଯୁତା ।୯ ।
ଯୋଽଷ୍ଟାଦଶଜପୋ ନିତ୍ୟଂ ନରୋ ନିଶ୍ଚଳ ମାନସଃ
ଜ୍ଞାନସିଦ୍ଧିଂ ସ ଲଭତେ ତତୋ ଯାତି ପରଂ ପଦଂ । ୧୦ ।
ପାଠେଽସମର୍ଥଃ ସମ୍ପୂର୍ଣ୍ଣେ ତତୋଽର୍ଦ୍ଧଂ ପାଠମାଚରେତ୍ ।
ତଦା ଗୋଦାନଜଂ ପୁଣ୍ୟଂ ଲଭତେ ନାତ୍ର ସଂଶୟଃ । ୧୧ ॥
ତ୍ରିଭାଗଂ ପଠମାନସ୍ତୁ ଗଙ୍ଗାସ୍ନାନଫଳଂ ଲଭେତ୍
ଷଡ଼ଂଶଂ ଜପମାନସ୍ତୁ ସୋମଯାଗ ଫଳଂ ଲଭେତ୍ । ୧୨ ।

ଏକାଧ୍ୟାୟନ୍ତୁ ଯୋ ନିତ୍ୟ ପଠତେ ଭକ୍ତିସଂଯୁତଃ ।
ରୁଦ୍ର ଲୋକମବାପ୍ନୋତି ଗଣୋ ଭୂତ୍ୱା ବସେଚ୍ଚିରଂ ।୧୩।
ଅଧ୍ୟାୟଂ ଶ୍ଲୋକପାଦଂ ବା ନିତ୍ୟଂ ଯଃ ପଠତେ ନରଃ ।
ସ ଯାତି ନରତାଂ ଯାବନ୍ମନ୍ୱନ୍ତରଂ ବସୁନ୍ଧରେ । ୧୪ ।
ଗୀତାୟାଃ ଶ୍ଲୋକଦଶକଂ ସପ୍ତ ପଞ୍ଚ ଚତୁଷ୍ଟୟଂ ।
ଦ୍ୱୌ ତ୍ରୀନେକଂ ତଦର୍ଦ୍ଧଂ ବା ଶ୍ଲୋକାନାଂ ଯଃ ପଠେନ୍ନରଃ
ଚନ୍ଦ୍ରଲୋକମବାପ୍ନୋତି ବର୍ଷାଣାମୟୁତଂ ଧ୍ରୁବଂ । ୧୫ ।
ଗୀତା ପାଠସମାଯୁକ୍ତୋ ମୃତୋ ମାନୁଷତାଂ ବ୍ରଜେତ୍ ।
ଗୀତାଭ୍ୟାସ ପୁନଃ କୃତ୍ୱା ଲଭତେ ମୁକ୍ତିମୁତ୍ତମାଂ । ୧୬ ।
ଗୀତେତ୍ୟୁଚ୍ଚାରସଂଯୁକ୍ତୋ ମ୍ରିୟମାଣୋ ଗତିଂ ଭଜେତ୍ ।୧୭।
ଗୀତାର୍ଥ ଶ୍ରବଣାସକ୍ତୋ ମହାପାପଯୁତୋଽପିବା
ବୈକୁଣ୍ଠଂ ସମବାପ୍ନୋତି ବିଷ୍ଣୁନା ସହ ମୋଦତେ । ୧୮ ।
ଗୀତାର୍ଥଂ ଧ୍ୟାୟତେ ନିତ୍ୟଂ କୃତ୍ୱା କର୍ମାଣି ଭୂରିଶଃ ।
ଜୀବନ୍ମୁକ୍ତଃ ସ ବିଜ୍ଞେୟୋ ଦେହାନ୍ତେ ପରମଂ ପଦଂ ।୧୯।
ଗୀତା ମାଶ୍ରିତ୍ୟ ବହବୋ ଭୂଭୁଜୋ ଜନକାଦୟଃ ।
ନିର୍ଦ୍ଧୂତକଲ୍ମଷା ଲୋକେ ଗୀତ୍ୱା ଯାତାଃ ପରଂ ପଦଂ ।୨୦।
ଗୀତାୟାଃ ପଠନଂ କୃତ୍ୱା ମହାତ୍ମ୍ୟଂ ନୈବ ଯଃ ପଠେତ୍ ।
ବୃଥା ପାଠୋ ଭବେତ୍ ତସ୍ୟ ଶ୍ରମ ଏବ ହ୍ୟୁଦାହୃତଃ । ୨୧ ।
ଏତନ୍ମାହାତ୍ମ୍ୟସଂଯୁକ୍ତଂ ଗୀତାଭ୍ୟାସଂ କରୋତି ଯଃ ।
ସ ତତ୍ ଫଲମବାପ୍ନୋତି ଦୁର୍ଲଭଂ ଗତିମାପ୍ନୁୟାତ୍ । ୨୨ ।

## ସୂତ ଉବାଚ

ମାହାତ୍ମ୍ୟ ମେତଦ୍ଗୀତାୟାଃ ମୟା ପ୍ରୋକ୍ତଂ ସନାତନଂ
ଗୀତାନ୍ତେ ଚ ପଠେଦ୍ ଯସ୍ତୁ ଯଦୁକ୍ତଂ ତତ୍ ଫଲଂ ଭଜେତ୍ ।।
ଇତି ଶ୍ରୀ ବରାହ ପୁରାଣେ ଶ୍ରୀମଦ୍‌ଭଗବଦ୍ ଗୀତାମାହାତ୍ମ୍ୟସମାପ୍ତଂ



# ନିବେଦନ

ଗୀତା ବୈଦିକ ଧର୍ମ ଧାରଣାର ବିକାଶ, କିନ୍ତୁ ଯେପରି ଭାବରେ ଏହାର ବିଚାର କରାଯାଇ ନାହିଁ । କେବଳ ଈଶ୍ୱର ବା କୃଷ୍ଣଙ୍କୁ ସେଥିରେ ରଖି ଭାରତୀୟ ବିଧି ଅନୁସାରେ ଜୈନମାନଙ୍କର ଆତ୍ମା ତଥା ଉପନିଷଦର ବିଶ୍ୱାତ୍ମା ବା ପରମାତ୍ମାକୁ ଏକତ୍ର କରି ସେହି ଆତ୍ମଧର୍ମ ବରାବର ଘନିଷ୍ଠ ଓ ସୁସଂଯତ ଭାବରେ ବିଚାର କରାଯାଇଛି । ସେଥିପାଇଁ ଏଥର ନୂତନ ସଂସ୍କରଣରେ ଆଜିକାଲି ଗ୍ରନ୍ଥଙ୍କ ଭିତରେ ଯେଉଁ ତତ୍ତ୍ୱ ବିଚାରର ମୂଳ ଡ଼ାଳ ପ୍ରଭୃତି ଫିଟାଇ ରଖାଯାଉଛି, ତାର ଅନୁକରଣରେ ଗୀତାର ତିନୋଟି ଭାଗ ଦେଖାଇ ଦିଆଯାଉଛି । ଏହି ତିନୋଟି ଭାଗ ଭିତରୁ ଦ୍ୱିତୀୟ ଓ ତୃତୀୟ ଭାଗ ହେଉଛି ଗୀତାର ଭାଷ୍ୟ ଓ ଗୀତାର ଟୀକା ଏବଂ ବ୍ୟାଖ୍ୟା । ଏହି ଦୁଇଟି ଭାଗ ପୂର୍ବେ ଲେଖା ଯାଇଥିଲା । ସେ ଦୁଇଟି ଭାଗ ପ୍ରାୟ ପୂର୍ବପରି ରଖି ଦିଆଯାଇଛି । ଏହି ଦ୍ୱିତୀୟ ସଂସ୍କରଣର ପ୍ରଥମ ଭାଗଟି ହେଉଛି ସେହି ଗୀତାର ପୀଠିକା ତାହା ଯଥାସମ୍ଭବ ପୂରାପୂରି ଭାବରେ ଏଠାରେ କୁହାଯାଇଛି । ସେଥିରେ (୧) ଗୀତାଧର୍ମର ମୂଳ ଓ ବିକାଶ, (୨) ଜୈନ ଧର୍ମ, :(୩) କେତେକ ଟିପ୍ପଣୀ— ଏହିପରି ଭାବରେ ଏହାକୁ ତିନି ଭାଗରେ ବିଭକ୍ତ କରାଯାଇଛି ।

କିନ୍ତୁ ଗୋଟିଏ କଥା ମନେ ରଖିବାର ଅଛି । ଯେଉଁମାନେ ଈଶ୍ୱର ଅଛନ୍ତି ବୋଲି ଧରି ନେଇ ଆଉ କିଛି ବିଚାର କରନ୍ତି ନାହିଁ, ସେମାନେ ସଂସାରରେ ଲୌକିକ ବ୍ୟବହାର ହିସାବରେ ବହୁତ କୃତୀ । ତାରିଖ ଅନୁସାରେ ଇତିହାସ ସେମାନଙ୍କର ବିକାଶ ପାଉଛି । କିନ୍ତୁ ଗୀତାରେ ଅଧ୍ୟାତ୍ମ ଧାରଣାର ମୂଳତଃ ବିଚାର ପଶିଥିବାରୁ ସର୍ବତ୍ର ସବୁ ସମାଜରେ ସେ ଧାରଣା ଓ ସେହିଭଳି ଧାରଣାସବୁ ବିକାଶ ପାଇ ନାହିଁ । ଧର, ଆମ୍ଭମାନଙ୍କ ଦାକ୍ଷିଣାତ୍ୟର ପ୍ରଧାନ ବଂଶ ସାତବାହନମାନଙ୍କର କୌଣସି ଠିକ୍ ତାରିଖ ଅନୁସାରେ ବା ପିତାପୁତ୍ରହିସାବ ନିର୍ଦ୍ଦେଶ :ଏ ଦେଶରେ ନାହିଁ । ଏପରିକି ଏହି ଓଡ଼ିଶାରେ ପ୍ରଧାନ ପୁରୁଷ ଖାରବେଳଙ୍କ ପୁଅନାତିମାନଙ୍କ ସଙ୍କେତ ପର୍ଯ୍ୟନ୍ତ ନାହିଁ । ଏବେ ଗୋଟିଏ ପୋଲ ବା ଗୋଟିଏ ଘର ମନ୍ତ୍ରୀଙ୍କ ନାମରେ ନାମିତ ହେଉଥିବାର ଦେଖିଲେ ଆମେ ଉତ୍କଳର ପ୍ରାଚୀନ ସଂସ୍କୃତି କେତେ ଭୁଲି ଯାଇଛୁ, ତା ସହଜରେ ଜଣାପଡ଼େ । କେବଳ ମୋଗଲ ସାମ୍ରାଜ୍ୟର ପୂର୍ବ ଓ ଉତ୍ତର ପୁରୁଷମାନେ ଇତିହାସରେ ଲେଖା :ହେଉଛନ୍ତି । କିନ୍ତୁ ବାକିସବୁ ଆମ ଦେଶରେ ଏକପ୍ରକାର କହିବାକୁ ଗଲେ ଶୂନ୍ୟ । ଗୋଟିଏ ପୋଖରୀ କିମ୍ବା ସହର କିଏ କରିଛି, ତାହା ଜାଣିବାର ଉପାୟ ନାହିଁ । କିନ୍ତୁ ମାନବ ସଭ୍ୟତାରେ ସେ ସବୁର ସ୍ଥାନ ଅଛି । ବର୍ତ୍ତମାନ ଜଗତରେ ଏ ଅସୁବିଧାଟି ମଧ୍ୟ ମନେ ରଖି ଗତି ପରିଷ୍କାର କରିବାର ଅଛି ।

ବର୍ତ୍ତମାନ ଜଗତରେ ଏ ଅସୁବିଧାଟି ମଧ୍ୟ ମନେ ରଖି ଗତ ପରିଷ୍କାର କରିବାର ଅଛି । ଏଇ ସଭ୍ୟତାର ସ୍ୱତଃ ବିକାଶ ଫେନ ଏ ଦେଶରେ ଗୀତାଧର୍ମ ସଙ୍ଗ ପ୍ରକାଶିତ ହୋଇଛି ଓ ସେଥିପାଇଁ ଜୈନଧର୍ମର ଅଖଣ୍ଡତା ଏ ଦେଶରେ ସବୁ ଧର୍ମ ଧର୍ମାନ୍ତର ଭିତରେ ବ୍ୟାପି ରହିଛି । ଏହା ଠିକଏ ତାତ୍ତ୍ୱିକ ଭାବରେ ବୁଝି ରଖିବା ଉଚିତ ।

ବରୁଣ ମିତ୍ର ପ୍ରଭୃତି ଅନେକ ଦେବତାଙ୍କୁ ପାରସ୍ୟରେ ଆର୍ଯ୍ୟମାନେ ଥିବା-କାଳରୁ ଗ୍ରହଣ କରି ଭାରତକୁ ଆସିଥିବାର ଅନୁମାନ ହୁଏ । ସେଥିପାଇଁ ବରୁଣଙ୍କ ସ୍ତବରେ ଏକେଶ୍ୱରବାଦର ସଙ୍କେତ ଅଛି ଓ ମିତ୍ର ପାରସ୍ୟରେ 'ମିଥ୍ର' ହୋଇ ଏବେ ଚଳିତ ଭାଷାରେ ମିହିର ହୋଇଛି । ଯଥା—'ବରାହ ମିହିର' ।



# ଦ୍ୱିତୀୟ ସଂସ୍କରଣର ନିବେଦନ

## କ୍ଷେତ୍ର ଓ କ୍ଷେତ୍ରଜ୍ଞ, ପ୍ରକୃତି ପୁରୁଷ, କ୍ଷର ଅକ୍ଷର ପ୍ରଭୃତି—

ପ୍ରଥମ ସଂସ୍କରଣର ନିବେଦନରେ କହିଥିଲି, "କ୍ଷେତ୍ର ଓ କ୍ଷେତ୍ରଜ୍ଞ, ପ୍ରକୃତି ପୁରୁଷ, କ୍ଷର ଅକ୍ଷର ପ୍ରଭୃତି ତତ୍ତ୍ୱର ସମାଧାନ ପ୍ରତି ସଙ୍କେତ ଥିଲେ ମଧ୍ୟ ସେ ସବୁର ଦାର୍ଶନିକ ବିକାଶ ବିଶ୍ଳେଷଣ ଓ ସଂଶ୍ଳେଷଣ ଭଲରୂପେ ଅଲଗାକରି ବୁଝାଇ ଦିଆ ହୋଇନାହିଁ । ସାଂଖ୍ୟ ବେଦାନ୍ତ ବୌଦ୍ଧ ଦର୍ଶନାଦିର ବିଷୟ ସବୁ ନ ଜାଣିଥିବା ଲୋକଙ୍କୁ ସେଥିପାଇଁ କଦାଚିତ ବୁଝିବାରେ ଟିକିଏ ଅସୁବିଧା ହୋଇପାରେ । ପାଠକ-ମାନେ କ୍ଷମା କରିବେ । ଦ୍ୱିତୀୟ ସଂସ୍କରଣ ପାଇଁ ଅବକାଶ ମିଳିଲେ ମୁଁ ସେ ସବୁର ଯଥାଶକ୍ତି ପ୍ରତିକାର କରିବି ବୋଲି ଆଶା କରେ ।"

## ଦ୍ୱିତୀୟ ମୁଦ୍ରଣ—

ଫେର୍ ଦ୍ୱିତୀୟ ମୁଦ୍ରଣର ନିବେଦନରେ କହିଥିଲି, "କ୍ଷେତ୍ର ଓ କ୍ଷେତ୍ରଜ୍ଞ, ଜ୍ଞାନ-ବିଜ୍ଞାନ ପ୍ରଭୃତି ଦାର୍ଶନିକ ତତ୍ତ୍ୱର ବିଶେଷ ବ୍ୟାଖ୍ୟା ଓ ଅନେକଠାରେ ପୌରାଣିକ ଓ ସାହିତ୍ୟିକ ପରଂପରା ସବୁ ପରବର୍ତ୍ତୀ ସଂସ୍କରଣରେ ଦେବାର ଆକାଂକ୍ଷା ଥିଲା । ସେ ଆକାଂକ୍ଷା ମଧ୍ୟ ସୂଚନାରେ ପ୍ରକାଶ କରି କୁହାଯାଇଥିଲା । ହେଲେହେଁ ଏ ମୁଦ୍ରଣରେ ସେ ସବୁ କରିବାକୁ ବାଟ ନାହିଁ । ପୂରାପୂରି ନୂତନ ସଂସ୍କରଣଟିଏ କରିବାର ଥିଲା । ନାନା କାରଣରୁ ତା କରିବାର ସୁବିଧା ମଧ୍ୟ ହୋଇପାରି ନାହିଁ ।

# ପୌରାଣିକ ଓ ଭକ୍ତିକ ମିଥ୍ୟା

ମାତ୍ର ପୌରାଣିକ କଥା ଭିତରେ ପଶି ସତ୍ୟ ବାହାର କରିବା ବଡ଼ କଷ୍ଟ । ସେ ସବୁ 'ପୌରାଣିକ ମିଥ୍ୟା'ରେ ପୂର୍ଣ୍ଣ । ତା'ପରେ ଭକ୍ତର ଆଲୋଚନାରେ 'ଭକ୍ତିକ ମିଥ୍ୟା' ଭିତରେ ପଶିବା ଦାର୍ଶନିକ ପକ୍ଷରେ ବଡ଼ କଷ୍ଟ ।

## ତାମିଲ ପଣ୍ଡିତ ବୋପଦେବ ଓ ଭାଗବତ—

ଧରି ତାଂଜୋର ରାଜପଂଡ଼ିତ ନବମ ଶତାବ୍ଦୀର ବୋପଦେବ କର୍ତ୍ତୃକ ଲିଖିତ ଭାଗବତ ହେଲା ଗୋଟିଏ ଭକ୍ତିଗ୍ରନ୍ଥ । ତାହା ଯେ ଖାଲି 'ଭକ୍ତିକ ମିଥ୍ୟା'ରେ ପୂର୍ଣ୍ଣ, ତାହା କହିବା ଦରକାର ନାଇ । ଏପରିକି ଭାଗବତର କୃଷ୍ଣ ମଧ୍ୟ ଆମ ଭାରତୀୟ ପରଂପରାର କୃଷ୍ଣ ନୁହନ୍ତି ।

### ରାଧାକୃଷ୍ଣ—

ଭାଗବତର କୃଷ୍ଣ କଥା ତଥା ସେଥିରୁ ବାହାରିଥିବା ରାଧା କଥା ବାହାରିଚି ତାମିଲ ଗୌଡ଼ୁଣୀ ବାଳିକାଙ୍କ ଭିତରେ ଏକ ବସନ୍ତକାଳୀନ ଖେଳରୁ । ଏଇ ଖେଳ ବିଷୟରେ ଆଉସ ହାଲଂକ 'ଗାଥା ସପ୍ତଶତୀ'ରୁ ବେଶ୍ ସୂଚନା ମିଳେ । ସେଇ ଖେଳର ନାମ ହଲ୍ଲୀସକ ।

### ହଲ୍ଲୀସକ ଓ ରାସଯାତ୍ରା—

ତା ଏବର ରାସଯାତ୍ରା ପର । ଏତିକିମାତ୍ର ପ୍ରଭେଦ ଯେ ପୂର୍ବେ ସେଥିରେ ଖାଲି ଗଉଡ଼ୁଣୀ ଲୋକମାନେ ଏକତ୍ର ହୋଇ ଖେଳୁଥିଲେ । କାଳକ୍ରମେ ସେଇ ଖେଳରୁ ପୁରୁଷ ନାମ ଧରିଥିବା ଲୋକାଏ ଓ ସ୍ତ୍ରୀ ନାମ ଧରିଥିବା ଲୋକମାନେ ବାହାରି ପଡ଼ିଲେ । କ୍ରମେ ସେଇ ହେଲା ରାଧାକୃଷ୍ଣଙ୍କର ରାସଯାତ୍ରା । ଏଇ ଖେଳଟି ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀ ବେଳକୁ ତାମିଲ୍ ଦେଶରେ ଥିବାର ବେଶ୍ ପ୍ରମାଣ ମିଳୁଚି । ଏଇ ଖେଳର କୃଷ୍ଣ ଓ ତାହାର ରାଧା କ୍ରମେ ଭାଗବତ ରୂପେ ବାହାରି ଭାରତରେ ବିରାଟ ଭକ୍ତି ଶାସ୍ତ୍ରକୁ ଅତି ପୁଷ୍ଟକର ଭାବରେ ତିଆରି କରିଚି । ତାହାର ଇତିହାସ ବଡ଼ ଚମତ୍କପ୍ରଦ । ରାଧା କେଉଁଠାରୁ ବାହାରିଲେ ବୋଲି ଅନେକ ଲୋକ ପଚାରିଥାନ୍ତି । କିନ୍ତୁ ପାରମ୍ପରିକ କୃଷ୍ଣରୁ ଭାରତରେ ରାଧା ବାହାରି ନାହାନ୍ତି । ଏପରିକି ପଣ୍ଡିତମାନେ ସ୍ଥିର କରୁଛନ୍ତି, ୧୬୭୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଧାଙ୍କର କୌଣସି ମୂର୍ତ୍ତି ବା ମୂର୍ତ୍ତିର ପୂଜା ନ ଥିଲା ।

### ନିଂବାର୍କ

ତେଲୁଗୁ ଦେଶର 'ନିଂବାର୍କ' ଖ୍ରୀଷ୍ଟ ୧୧ଶ ଶତାବ୍ଦୀରେ ବୃନ୍ଦାବନ ଆସି ସେଇଠାରେ ରହି ରାଧାତତ୍ତ୍ୱ ବାହାର କରି ଭାରତ ସାହିତ୍ୟରେ ଭର୍ତ୍ତିକରି ଦେଇ ଯାଇଚଂତି । ଯଥାର୍ଥ ଐତିହାସିକ କୃଷ୍ଣ ସଙ୍ଗେ ଏ ରାଧାଙ୍କର କୌଣସି ସମ୍ପର୍କ ନାହିଁ । ତାମିଲ ଗୌଡ଼ୁଣୀ ବାଳିକାଙ୍କ ଖେଳରେ ଯେଉଁ କୃଷ୍ଣ ଯାତ୍ରାରେ ବାହାରୁଥିଲେ, ସେ କୃଷ୍ଣ ଅବଶ୍ୟ ଭାରତ ସାହିତ୍ୟର କୃଷ୍ଣର ମୂଳରୁ ଜାତ ।

## ବେଦରେ କୃଷ୍ଣ

ଭାରତ ସାହିତ୍ୟରେ ଗୀତାର କୃଷ୍ଣ ହେଉଛନ୍ତି ବଡ଼ ବିରାଟ ପୁରୁଷ । ବେଦରେ, ବିଶେଷତଃ ଋଗ୍‌ବେଦରେ ଏହାଙ୍କର ନାନା ସ୍ଥାନରେ ନାନା କାର୍ଯ୍ୟରେ ସଙ୍କେତ ମିଳୁଥିବାର ଦେଖାଗଲେ ମଧ୍ୟ VIII-85, 13-15 ରେ ଥିବା ଅଂଶୁମତି ନଦୀକୂଳରେ ବହୁ ଗୋଚାରଣ କରୁଥିବା କୃଷ୍ଣ ଉପାଖ୍ୟାନଟି ବଡ଼ ପ୍ରସିଦ୍ଧ । ଏଇ କୃଷ୍ଣ ଇନ୍ଦ୍ର-ପୂଜକ ନ ଥିଲେ । ଏଇ କୃଷ୍ଣଙ୍କୁ ସେତେବେଳେ ଦଶଟି ଇନ୍ଦ୍ର ପୂଜକ ରାଜା ଏକତ୍ର ହୋଇ ପରାସ୍ତ କରିଥିଲେ ।

## କୃଷ୍ଣ ଓ ଯଜ୍ଞତତ୍ତ୍ୱ—

ତା ପରେ ଆଉ ଅନେକ କୃଷ୍ଣଙ୍କ ମଧ୍ୟରେ ଗୋଟିଏ କୃଷ୍ଣଙ୍କ ଉଲ୍ଲେଖ ମଧ୍ୟ ଛାନ୍ଦୋଗ୍ୟ ଉପନିଷଦରେ ଅଛି । ସେଠାରେ ଦେବକୀ ପୁତ୍ର କୃଷ୍ଣ 'ଘୋରଅଂଗୀରସ'ଙ୍କଠାରୁ ଯଜ୍ଞତତ୍ତ୍ୱ ଶିକ୍ଷା କରିଥିଲେ । ଏଇ ଯଜ୍ଞତତ୍ତ୍ୱ ଗୀତାର ୪ର୍ଥ ଅଧ୍ୟାୟରେ ଯେଉଁ ଯଜ୍ଞତତ୍ତ୍ୱର ବ୍ୟାଖ୍ୟା ଦିଆଯାଇଛି, ତା ସଙ୍ଗେ ସମାନ ହେବା ଖୁବ ଅନୁମାନ ହୁଏ ।

## ବେଦରେ କୃଷ୍ଣ ଆର୍ଯ୍ୟ ନ ଥିଲେ ବା ବର୍ଣ୍ଣରେ ଗୌର ନ ଥିଲେ, ମାତ୍ର ସେମାନଙ୍କ ମତ ପ୍ରସିଦ୍ଧ ଥିଲା—

ଯେତେଦୂର ମନେହୁଏ, ଜଣାଯାଉଛି, ବୈଦିକକାଳରେ ଏଇପରି ବା ଏଇମାନଙ୍କ ପରଂପରାର କୌଣସି କୃଷ୍ଣ ବୈଦିକ ଇନ୍ଦ୍ର ପୂଜା ଅର୍ଥାତ ବୈଦିକ ପୂଜା ପରଂପରାକୁ ବିରୋଧ କରୁଥିଲେ । ଯେତେଦୂର ଜଣାଯାଏ, ସେ କୃଷ୍ଣ ବୈଦିକ ଆର୍ଯ୍ୟ ନ ଥିଲେ । ଏପରିକି ସେ ମଧ୍ୟ ବର୍ଣ୍ଣରେ ଗୌର ନ ଥିଲେ । ଏଇ କୃଷ୍ଣ ପରଂପରାଟି ସେକାଳେ ଜନସମାଜରେ ବଡ଼ ପ୍ରସିଦ୍ଧ ଥିଲା । ଇନ୍ଦ୍ରପୂଜକ ବୈଦିକ ଆର୍ଯ୍ୟମାନେ ଏହାର ବିରୋଧ କରୁଥିଲେ ମଧ୍ୟ ଏହାଙ୍କ ମତଟି ଲୋକରେ ବଡ଼ ପ୍ରସିଦ୍ଧ ଥିଲା । ଏଇ କୃଷ୍ଣଙ୍କ ମତରେ ଶାନ୍ତତା, ଉଜ୍ଜ୍ୱଳତା ଓ ପ୍ରଖରତା ହେତୁ ଏହା ସେକାଳର ଅନ୍ତତଃ କୌଣସି ଲୋକ ସମ୍ପ୍ରଦାୟଙ୍କ ଭିତରେ ବଡ଼ ପ୍ରତିପତ୍ତିରେ ପ୍ରତିଷ୍ଠିତ ହୋଇଥିଲା । ବୁଝିବା ଲୋକେ ତାଙ୍କୁ ବଡ଼ ଆଦର କରୁଥିଲେ । ସେଇ କୃଷ୍ଣ ହେଉଛନ୍ତି ମହାଭାରତର ଯଥାର୍ଥ କୃଷ୍ଣ ଓ ପରେ ଏଇ କୃଷ୍ଣ ମହାଭାରତରେ ଗୀତା ଧର୍ମ ବା ଭାଗବତ ଧର୍ମର ନେତା ହେଲେ । ବଳରେ ପରାସ୍ତ ହେଲେ ଲୋକର ଅଧ୍ୟାତ୍ମ ବିଷୟକ ପ୍ରତିପତ୍ତି ଯାଏନାଇ । ଏଇ ଘଟଣାଟି ଏହାର ମଧ୍ୟ ଗୋଟିଏ ପ୍ରମାଣ । ତେଣୁ ଏ ମହାଭାରତର ଶ୍ରୀକୃଷ୍ଣ ତାମିଲ ବାଳିକାମାନଙ୍କ ସେ କାଳ ହଲ୍ଲୀସକ ନାଚର ପୁରୁଷବେଶଧାରୀ କୃଷ୍ଣ ନୁହନ୍ତି କିଂବା ମହାଭାରତର କୃଷ୍ଣଙ୍କ ସଙ୍ଗେ ଏହି ତାମିଲ କୃଷ୍ଣଙ୍କର କୌଣସି ସମ୍ପର୍କ ଥିବାର ମନେହୁଏ ନାଇ ।

## ବୈଦିକ ସଭ୍ୟତାର ପରଂପରା—

ଏଥିରୁ ଜଣାଯାଉଛି, ଏଇ କୃଷ୍ଣ ଉପାଖ୍ୟାନର ମୂଳ ବହୁ ଦୂରରେ । ତାର କାରଣ ଭାରତର ବୈଦିକ ସଭ୍ୟତା ବଡ଼ ବିଚିତ୍ର ସଭ୍ୟତା । ଏଥିରେ ପରଂପରାର ସବୁ ନିଦର୍ଶନ ବିଦ୍ୟମାନ ରହିଛି ।

## ଗୀତାର ପ୍ରକାର—

ଏଇ ଗୀତାରେ ସମସ୍ତ ଧର୍ମ ବିକାଶର ମୂଳ ତାଲପତ୍ର ମେଳି ରହିଥିବାର ବରାବର ଦେଖାଯାଏ । ଏହା ପୁଣି ମୂଳତଃ ଆର୍ଯ୍ୟମାନଙ୍କର ନୁହେ ।

## ନିଷାଦ ଧର୍ମ ଓ ମାତୃ ଧର୍ମ—

ଭାରତକୁ ଆର୍ଯ୍ୟମାନେ ଆସିବା ପୂର୍ବରୁ ଦ୍ରାବିଡ଼ମାନେ—ତା' ପୂର୍ବରୁ ନିଷାଦ-ମାନେ ଆସିଥିବାର ପଂଡ଼ିତମାନେ ଅନୁମାନ କରନ୍ତି । ଏଇ ଦ୍ରାବିଡ଼ ଓ ନିଷାଦ ଦୁଇଟି ଜାତିର ମୌଳିକ ଧର୍ମନେଇ ଭାରତକୁ ଆସିଥିଲେ । ତା'ର ସଂକେତ ବେଦରୁ ସ୍ପଷ୍ଟ ମିଳେ । ପ୍ରଥମେ ନିଷାଦମାନେ ଆସିଲେ ମାତୃ ଧର୍ମ ନେଇ । ଏଇ ଯେଉଁ ନିଷାଦମାନଙ୍କ କଥା କୁହାଯାଉଥିଲା, ସେମାନେ ମାତୃ ଧର୍ମୀ ଥିଲେ । ଏମାନେ ମଧ୍ୟ ଆଫ୍ରିକାରୁ ଏବର ଦ୍ଵୀପକୁ ଆସିଲେ । ଏହା କେବେର କଥା ତା' କହିବା ବଡ଼ କଷ୍ଟ । ପଣ୍ଡିତମାନେ ଅନୁମାନ କରନ୍ତି ଏହା ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀର ଅର୍ବାଚୀନ ନୁହେଁ । ସେ ମାତୃ ଧର୍ମ ଇଜିପ୍ଟ, ବ୍ୟାବିଲନ୍ ଓ ପାରସ୍ୟ ବାଟେ ଭାରତକୁ ଆସିଥିବା ବହୁ ପ୍ରାଚୀନ କାଳର କଥା

## ମାତୃ ଧର୍ମ ଓ ତନ୍ତ୍ର ଧର୍ମ—

ନିଷାଦଙ୍କ ସେବିତ ଏଇ ମାତୃ ଧର୍ମର ଗୋଟିଏ ବିଶେଷ କଥା ଥିଲା, ମାତା ସନ୍ତାନ ଜନ୍ମ କରେ । ସେଥିରେ ପିତାର କୌଣସି ଭାଗ ନାଇ । ଏଇ ପରଂପରାକୁ ଧରି ଆଜି ମଧ୍ୟ ଅନେକ ଭକ୍ତ ଧର୍ମରେ ଏଇପରି ମହାପୁରୁଷମାନେ ବିନା ପିତାରେ ଜନ୍ମ ହୋଇଥିବା ଧାରଣାଟି ସ୍ପଷ୍ଟ ପ୍ରକାଶ ପାଉଥିବାର ଦେଖାଯାଏ । ଏଇ ଧର୍ମ ପରେ ପୃଥିବୀର ତନ୍ତ୍ର ଧର୍ମରେ ପରିଣତ ହୋଇଛି ।

## ନାସଦୀୟ ସୂକ୍ତ—

ଏଇ ଧାରଣାରୁ ଯେଉଁ ଧର୍ମ ବାହାରିଥିଲା, ସେଇ ଧର୍ମରେ ମାତାର ନୂଆ ହୋଇ ଶିଶୁ ହେଲାପରି ଧାରଣା ଉପୁଜିଲା, ଏ ସୃଷ୍ଟି ଶୂନ୍ୟରୁ ପ୍ରକାଶ ପାଇଲା । ତାହାର ସଙ୍କେତ ମଧ୍ୟ ଋକ୍ ବେଦରେ ଅଛି

ଋକ୍ ବେଦର ସେଇ ମନ୍ତ୍ରଟିକୁ ନାସଦୀୟ ସୂକ୍ତ (ଋକ୍ ※) ବୋଲି କହନ୍ତି ।

## ଉଡ଼୍ଡୀୟାନ ଓ ତନ୍ତ୍ର ଧର୍ମର ପ୍ରଚାର—

ତା' ପରେ ଏଇ ମାତୃ ଧର୍ମ ବା ତନ୍ତ୍ର ଧର୍ମ ନାନା ଆଡ଼େ ବ୍ୟାପ୍ତ ହୋଇ ଅନ୍ଧକାଳର ସମ୍ବଲପୁର ଲଗାଏତ ବିଲାସପୁରରେ ଉଡ଼୍ଡୀୟାନ ନାମକ ଭୂମି-ଖଣ୍ଡରେ ଶେଷକୁ ପ୍ରତିଷ୍ଠିତ ହୋଇଥିଲା । ସେଇ ଧର୍ମର ନାମ ପ୍ରଥମେ ଥିଲା 'ଶାଳମାଧବ' । ଅର୍ଥାତ୍ ଶାଳ କହିଲେ ବୁଝାଯାଏ ଶୂନ୍ୟ ବା ଅନ୍ଧକାର । ତା'ପରେ

※ ଋକ୍ ବେଦ ୧୦. ୧୨୯

ଏଇ ଶୂନ୍ୟରୁ ଯାହା ପ୍ରକାଶ ହେଲା, ସେଇ ପ୍ରକାଶ ରୂପ ହେଉଚି ଧବ (ଧୋବ.) । ଏ ଦୁହିଙ୍କ ମଧ୍ୟରେ ରହିଲା ମା ବା ଜଗତର ପ୍ରଥମ ମାତୃରୂପିଣୀ । ଏଇ ନୀଳ-ମାଧବ କାଳକ୍ରମେ ହେଲେ ଜଗନ୍ନାଥ ! ଶେଷକୁ ଏହା ରହିଲା ଏବ ବଲାସପୁର ଜିଲା ଓ ମହାନଦୀ ଆଉ ତା'ର ଉପନଦୀ ଜୋଙ୍କନଦୀର ସଙ୍ଗମ ସ୍ଥଳରେ ସୌରନାରାୟଣ ଗ୍ରାମରେ । ସେଇ ଶୂନ୍ୟ ବହୁକାଳରୁ ନିମକାଠ ରୂପରେ ପୂଜା ପାଉଥିଲା ଓ ଏଇ ସୌରନାରାୟଣରେ ଏହା ଖ୍ରୀ ୧୧ ଶତାବ୍ଦୀର ଶେଷ ଭାଗରେ ଚୋଡଗଙ୍ଗ ଦେବଙ୍କଦ୍ୱାରା ମହାନଦୀରେ ପୁରୀକୁ ଅଣାଯାଇ ସେହିଠାରେ 'ଜଣାସନ' ପୀଠରେ ଜଗନ୍ନାଥ ମୂର୍ତ୍ତି ରୂପେ ପ୍ରତିଷ୍ଠିତ ହୋଇଥିଲା । ଖ୍ରୀ ୧୬ଶ ଶତାବ୍ଦୀରେ ତିବ୍ବତର ଲାମା ତାରାନାଥ ଲେଖିଛନ୍ତି, ଏଇଠାରୁ ଏଇ ତନ୍ତ୍ର ଧର୍ମ କ୍ରମେ ସିଲେହେଟ, ପୂର୍ଣ୍ଣ-ଗିରି ଓ କାମାକ୍ଷା (ପୂର୍ଣ୍ଣଗିରିର ଠିକ୍ ସ୍ଥାନ ପଣ୍ଡିତମାନେ ଏ ପର୍ଯ୍ୟନ୍ତ ନିର୍ଦ୍ଦେଶ କରି ପାରିନାହାନ୍ତି ) ବାଟେ ନେପାଳ ଓ ତିବ୍ବତକୁ ଯାଇଥିଲା ।

## ଦ୍ରାବିଡ଼ ଧର୍ମ ଓ 'ଜିଣ'—

ଆର୍ଯ୍ୟଙ୍କ ପୂର୍ବରୁ ସେଇ ନିଷାଦଙ୍କ ପରେ ଆସିଥିଲେ ଦ୍ରାବିଡ଼ମାନେ । ପଣ୍ଡିତ-ମାନେ ଠିକ୍ କରୁଚନ୍ତି, ଏଇ ଦ୍ରାବିଡ଼ମାନେ ମଧ୍ୟେ ମଧ୍ୟେ ଆଫ୍ରିକାରୁ ସେଇ ଦକ୍ଷିଣ-ପଶ୍ଚିମ ଏସିଆ ଭିତର ବାଟେ ଭାରତକୁ ଆସିଥିଲେ । ଏମାନଙ୍କର ମଧ୍ୟ ନିଜ ଧର୍ମର ସ୍ପଷ୍ଟ ସଙ୍କେତ ଏବେ ଭାରତରେ ମିଳେ । ପୁଣି ଏମାନେ ଭାରତକୁ ଆସିବା ପୂର୍ବରୁ ଇଜିପ୍ଟ, ବ୍ୟାବିଲନ ପ୍ରଭୃତି ବାଟେ ଭାରତକୁ ଆସିଥିବାର ବରାବର ସଙ୍କେତ ଅଛି । ଏମାନଙ୍କର ଧର୍ମ ଥିଲା 'ଜଣାସନ' ଧର୍ମ ବା ପରେ ଯାହାକୁ କୁହାଯାଉଥିଲା ଜୈନଧର୍ମ । ଏଇ ଧର୍ମରେ ମନୁଷ୍ୟ ଇନ୍ଦ୍ରିୟକୁ ନିଜ ଶାସନରେ ରଖି ହୁଏ 'ଜିତା' ବା ଜେତା । ଏଇ 'ଜି' ଶବ୍ଦଟି ପ୍ରାଚୀନ ବ୍ୟାବିଲନ ଦେଶୀୟ । ଖୁବ୍ ସମ୍ଭବ ତା' ପୂର୍ବରୁ ସୁମେର ଦେଶୀୟ । ଏଇ 'ଜି' ଅର୍ଥରେ ସେମାନେ ବୁଝୁଥିଲେ ଜୀବ ଭିତରେ ଥିବା ଆତ୍ମିକ ଶକ୍ତିକୁ ! ସେଇଥିରୁ ମଧ୍ୟ ପରେ ବାହାରିଥିଲା 'ଜିଣିବା' କଥାଟି । ଏହି 'ଜି'ରୁ ସଂସ୍କୃତ ଜୀବ ବାହାରିଥିବାର ଖୁବ୍ ଅନୁମାନ ହେଉଚି । ଏଇ 'ଜି'ରୁ ହୋଇଥିଲା ଖୁବ୍ ସମ୍ଭବ ପ୍ରାଚୀନ କଳିଙ୍ଗର ଜିଣ୍ ବା ଇନ୍ଦ୍ରିୟ ଜିଣିବା ଲୋକ । ଏଇଥିରୁ ଖାରବେଳ ମଗଧରୁ କଳିଙ୍ଗକୁ ନେଇ ଆସିଥିବା 'ଜିଣାସନ' ଶବ୍ଦଟି ବାହାରିଥିବାର ମଧ୍ୟ ଅନୁମାନ ହୁଏ । ଏଇ ଜିଣାସନଟି ପୁରୀରୁ କୁଆଡ଼େ ଗଲା ଜଣା ପଡୁନାଇ । ତଥାପି ଏହା ଖ୍ରୀଷ୍ଟ ୪ର୍ଥ ଶତାବ୍ଦୀ ପୂର୍ବରୁ ପୁରୀ ଅଞ୍ଚଳରୁ ଯେ କଳିଙ୍ଗର ମୁଖଲିଙ୍ଗ ଅଞ୍ଚଳକୁ ଚାଲି ଯାଇଥିଲା, ତାହା ଅନୁମାନ କରିବାରେ କିଛି ଅସୁବିଧା ନାଇ । ମାତ୍ର ଏଇ ଜିଣାସନ ସ୍ଥାନ ବା ପୁରୀରେ ସେଇକାଳରୁ ଗୋଟିଏ ପ୍ରତିଷ୍ଠିତ ପୀଠ ଥିବାର ମହାଭାରତର ତୀର୍ଥଯାତ୍ରା ପୂର୍ବରୁ ବେଶ୍ ପ୍ରମାଣିତ ହେଉଚି । ଯୁଧିଷ୍ଠିର ତୀର୍ଥଯାତ୍ରାବେଳେ ଭୁବନେଶ୍ୱର ଅଞ୍ଚଳରୁ

ଆସି ଏଇ ପୀଠରେ ସ୍ନାନ କରି ସେଠାରୁ ଯାଇ ମହେନ୍ଦ୍ର ପର୍ବତରେ ବିଶ୍ରାମ କରିଥିଲେ ବୋଲି ଲେଖାଅଛି, ଆଉ ସେଇ ପୀଠରେ ଖ୍ରୀ ୧୧ଶ ଶତାବ୍ଦୀ ଶେଷ ଭାଗରେ ଇନ୍ଦ୍ରଦ୍ୟୁମ୍ନ ( ଅର୍ଥାତ୍ ସେତେବେଳର ଚୋଳଗଙ୍ଗ ଦେବ ) ସୋର ନାରାୟଣରୁ ନିମ୍ବକାଠ ମୂର୍ତ୍ତି ଅଣାଇ ଜଗନ୍ନାଥରେ ପ୍ରତିଷ୍ଠା କରିଥିବା ସନନ୍ଦପୁରାଣରୁ ସଙ୍କେତ ମିଳେ ।

## ଆତ୍ମଧର୍ମ—

ଏଇ କ୍ଷଣଭଙ୍ଗ ବା ଆତ୍ମାକୁ ଧରି ଇନ୍ଦ୍ରିୟକୁ ଜୟ କରିବା ଭାବ ହେଉଚି, ପୃଥିବୀରେ ଶ୍ରେଷ୍ଠ ଧର୍ମ ଭାବ ଏଇ ଧର୍ମ ଅତି ପ୍ରାଚୀନ କାଳରୁ ଇଜିପ୍ଟ ଆଉ ବ୍ୟାବିଲନରେ ଖୁବ୍ ପ୍ରଚାର ପାଇଥିଲା । ଇଜିପ୍ଟରେ ଖ୍ରୀଷ୍ଟପୂର୍ବ ୧୪ଶ ଶତାବ୍ଦୀରେ ଏହା ଆଟେନ୍ ( ଆତ୍ମନ୍ ) ଧର୍ମନାମରେ ମିଶ୍ରୀଙ୍କ ଓ ଇଜିପ୍ଟରେ ଖୁବ୍ ପ୍ରଚାର ଲଭିଥିବାର ସଙ୍କେତ ମିଳୁଚି । ତା'ପରେ ଗ୍ରୀସ୍‌ର ପାଇଥାଗୋରସ ଓ ରୋମର ଷ୍ଟୋଇକମାନଙ୍କ ମଧ୍ୟରେ ଏଇ ଆତ୍ମଧର୍ମ ଖ୍ରୀଷ୍ଟ ୧ମ, ୨ୟ ଶତାବ୍ଦୀ ପର୍ଯ୍ୟନ୍ତ (ଏସବୁ ପାଇଁ ପରେ ଜୈନଧର୍ମ ପ୍ରସଙ୍ଗରେ ବିଶେଷ ବର୍ଣ୍ଣନା ଦେଖ ) ଖୁବ୍ ପ୍ରଚାର ଓ ପ୍ରସିଦ୍ଧି ଲଭିଥିଲା ।

## ଏହା ଭାରତର ଆତ୍ମିକ ଧର୍ମ ଏହା ମାନବ ଧର୍ମ, ଏଥିରେ ମାନବ ମାନବର ଭେଦ ନାଇ—

ତେବେ ମୋଟ କଥାଟି ଦେଖିବାର ଅଛି । ଏ ଧର୍ମ ଭାରତକୁ ଆସି ସେଠାରେ ଅତି ଚହଳ ବର୍ଣ୍ଣହୀନ ଆତ୍ମିକ ଧର୍ମରୂପେ ବେଦରେ ତଥା ଉପନିଷଦରେ ପ୍ରଚାର ଲଭିଥିଲା । ଏଇଥି ପରେ ଗୋଡ଼ୀୟ ବୈଷ୍ଣବ ଧର୍ମ ଓ ତନ୍ତ୍ର ଧର୍ମ ପର୍ଯ୍ୟନ୍ତ, ସବୁ ଫୁଟି ଉଠିଥିଲା । ଏ ସମସ୍ତ ଭିତରେ ଗୀତାଧର୍ମ, ସଙ୍ଗେ ବା ଗୀତା ଧର୍ମରୂପେ ଦେଖିବାର ଅଛି, ଭାରତ ଧର୍ମରେ କୌଣସି ନାମରେ ଖ୍ରୀଷ୍ଟଧର୍ମ, ମୁସଲମାନ ଧର୍ମ ପ୍ରଭୃତି ପରି କୌଣସି ପ୍ରତିଷ୍ଠିତ ଧର୍ମ ଧାରଣା ନାଇ । ସେଥିରେ ମାନବ ମାନବ ମଧ୍ୟରେ କୌଣସି ପ୍ରଭେଦ ରଖିବା ସଙ୍କେତ ପର୍ଯ୍ୟନ୍ତ ନାଇ ।

## ଏଇ ଆତ୍ମଧର୍ମ ଓ ଗୀତାର ୧୬ଶ ଅଧ୍ୟାୟ—

ଏଇ ଆତ୍ମଧର୍ମ ଭାରତର ଶ୍ରେଷ୍ଠ ଓ ଏକମାତ୍ର ଧର୍ମ । ବିଶେଷତଃ ଗୀତାର ୧୬ଶ ଅଧ୍ୟାୟରେ ଏଇ ଦର୍ଶନଟିର ସଂଗ୍ରହ ସ୍ପଷ୍ଟ ଭାବରେ ବର୍ଣ୍ଣନା କରାଯାଇଛି ।

## ଭାରତୀୟ ଧର୍ମ ବା ଶିଷ୍ଟ ଆଚରଣ—

ଆଜ ପୃଥିବୀର ସବୁ ଧର୍ମ ବା ମତବାଦ ଏପରିକି ଭାଷା ପ୍ରଭୃତି ଭେଦ ଭୁଲି ସମସ୍ତ ମାନବ ଏକ—ଏଇ ଭାବରେ ବିଚାର କରିବାପାଇଁ ଖୁବ୍ ଉଦ୍ୟମ ଚାଲିଥିବାର

ଦେଖାଯାଉଛି । କିନ୍ତୁ ଏଥିରେ ବହୁଦୂର ଗଲେ ମଧ୍ୟ ମନୁଷ୍ୟ ନିଜର ଦେଶଭେଦ ଓ ଭାଷାଭେଦ ଭଲି ସବୁ ଭୁଲି ଏକାକାର ହୋଇଯିବା ଖୁବ୍ ସମ୍ଭବ ନୁହେ ।· ଯେଉଁ ଭାରତୀୟ ମନୀଷୀମାନେ ସବୁକ୍ଷେତ୍ରରେ ପୁରୁଷୋତ୍ତମ ଭାବ ତଥା ତାନ୍ତ୍ରିକ ଭାବରେ ଜଗନ୍ନାଥଙ୍କୁ ମାନବ ଧାର୍ମିକତାର ଏକମାତ୍ର ଅବଲମ୍ବନ ବୋଲି ଧରି ରଖିଥିଲେ ଓ ରଖୁଥିଲେ ସେ ସାମ୍ୟଭାବ ପୃଥିବୀରେ ଅଦ୍ୱିତୀୟ । ସେଥିରେଇ ମାନବ ମାନବ ଭିତରେ ସବୁପ୍ରକାର ଭେଦ ଭୁଲିଯାଇ ପୃଥିବୀରେ ଶ୍ରେଷ୍ଠ ଧର୍ମ ଓ ଆଚରଣ ପ୍ରତିଷ୍ଠା କରିବାର ବାଟ ରହିଛି । ଏହାଇ ଥିଲି ଭାରତୀୟ ଧର୍ମ ବା ଶିଷ୍ଟ ଆଚରଣ ।

## ଏଥିରେ କ୍ଷେତ୍ର ଓ କ୍ଷେତ୍ରଜ୍ଞ ପ୍ରଭୃତିର ବ୍ୟାଖ୍ୟା ଆଉ ଦରକାର ନାହିଁ—

ଏଠାରେ କ୍ଷେତ୍ର ଓ କ୍ଷେତ୍ରଜ୍ଞ, ପ୍ରକୃତି ପୁରୁଷ, କ୍ଷର ଅକ୍ଷର ପ୍ରଭୃତି ତତ୍ତ୍ୱର ଆଉ ବ୍ୟାଖ୍ୟା ବୋଧହୁଏ ଦରକାର ହେବ ନାହିଁ । ଏସବୁ ବେଦାନ୍ତ ସାଂଖ୍ୟ ଓ ବୌଦ୍ଧ ଧର୍ମ ପରି ଧର୍ମ ଭାଷ୍ୟମାନଙ୍କର ଫଳ । ହେଲେହେଁ ଏହା ବୁଝିବାରେ ପାଠକର ଆଉ ବିଶେଷ ଅସୁବିଧା ହେବ ବୋଲି ମନେ ହେଉନାହିଁ । ଗୀତାର ଅନ୍ୟାନ୍ୟ ଟୀକାକାର ମଧ୍ୟରେ ସ୍ୱର୍ଗତଃ ବାଲଗଙ୍ଗାଧର ତିଲକ ନିଜର ଗୀତା ରହସ୍ୟରେ ଏସବୁ ଭଲକରି ବୁଝାଇଛନ୍ତି ।

## ଗୀତାର ମୂଳତତ୍ତ୍ୱ—

ଏହାଛଡ଼ା ସମସ୍ତ ମାନବର ଧର୍ମ ତଥା ତାହାର ପୀଠ ଆତ୍ମା ତଥା ଶୂନ୍ୟ ସମ୍ବନ୍ଧୀୟ ଧାରଣାକୁ ଠିକ୍ ଧରିପାରିଲେ ଗୀତାର ମୂଳତତ୍ତ୍ୱ ବୁଝିବାରେ ଆଉ କୌଣସି ଅସୁବିଧା ନାହିଁ । ଏହି ସମ୍ବନ୍ଧରେ ଦ୍ୱିତୀୟ ସଂସ୍କରଣର ମୁଖବନ୍ଧରେ ଗୀତାର ଏହି ମୂଳତତ୍ତ୍ୱ ଟିକିଏ ବିସ୍ତୃତ ଭାବରେ ଆଲୋଚନା କରାଯାଇଛି । ଗୀତାର ସେହି ମୁଖବନ୍ଧ ଓ ତା ସଙ୍ଗେ ଜୈନଧର୍ମ ସମ୍ବନ୍ଧରେ ଯାହା ଲେଖାଯାଇଛି ତା ସବୁ ପଢ଼ିବାକୁ ପାଠକଙ୍କୁ ଅନୁରୋଧ କରାଯାଉଛି । ସେଥିରେ ଏହି ନିବେଦନ ପରେ କେତେକ ବିଷୟ ଆବୃତ୍ତି ଥିଲି ପରି ଲାଗିପାରେ । ପ୍ରସଙ୍ଗକ୍ରମେ ତା' ହୁଏତ ହୋଇଛି । ପାଠକମାନେ ସେଥିପାଇଁ ହାର୍ଦ୍ଦିକ ଅନୁକମ୍ପା ପ୍ରକାଶ କରିବେ ବୋଲି ଆଶା କରାଯାଏ ।

## ଯୋଡ଼ିଏ ଭ୍ରାନ୍ତି—

ଗତ ପ୍ରଥମ ସଂସ୍କରଣର ଯେଉଁ ବିରାଟ ମୁଖବନ୍ଧଟି ଲେଖାଯାଇଛି, ସେଥିରେ ଅନୁସନ୍ଧାନରେ ହୁଏତ କେତେକ ଭୁଲ ରହିଯାଇଛି, ତା ମଧ୍ୟରେ ଯୋଡ଼ିଏ ଭ୍ରାନ୍ତି ବିଶେଷରେ ଦେଖାଇ ଦେବାର କଥା ।

## ୧—ଜଗନ୍ନାଥଙ୍କ ତତ୍ତ୍ୱ—

ସେଥିରୁ ଗୋଟିଏ ହେଉଛି, ଜଗନ୍ନାଥଙ୍କ ତତ୍ତ୍ୱ । ଏ ଗଳ୍ପଟି ଦେଖାଯାଉଛି, ଗୋଟିଏ ଭକ୍ତିକ ମିଥ୍ୟା ଉପରେ ପ୍ରତିଷ୍ଠିତ । ସିଂହଳର 'ଦାଠା' ବଂଶ ପ୍ରଭୃତିରେ

ଯେଉଁ ଗଳ୍ପଟି ଅଛି, ସେଥିରେ ବୃଦ୍ଧଦେବଙ୍କ ଦାନ୍ତର ମୂଳରୁ ଶେଷ ପର୍ଯ୍ୟନ୍ତ ଯେଉଁ ଇତିହାସଟି ଦିଆଯାଇଛି, ତା'ର କୌଣସି ଭିତ୍ତି ନାହିଁ । ପ୍ରକୃତରେ ଚୋଳଗଙ୍ଗଦେବ 'ପୀଠ'ରେ ଜଗନ୍ନାଥଙ୍କ କାଠ ମୂର୍ତ୍ତିକୁ ଅଣାଇ ପ୍ରତିଷ୍ଠା କରିଥିଲେ । ଏହା ସେ ସୌରି-ନାରାୟଣ ଗ୍ରାମରୁ ଆଣିଥିବାର ପ୍ରମାଣ ମିଳୁଛି ।

## ୨—ତନ୍ତ୍ର ସମ୍ବନ୍ଧୀୟ ବିଚାର—

ତା' ପରେ ଦ୍ୱିତୀୟଟି ହେଉଛି ସେଇ ମୁଖବନ୍ଧରେ ତନ୍ତ୍ର ସମ୍ବନ୍ଧରେ ଯେଉଁ କଥାଗୁଡ଼ିକ ଦିଆଯାଇଛି, ତାର ଅଧିକାଂଶ ପରବର୍ତ୍ତୀ କାଳର—ଆଉ ବଡ଼ ଅର୍ବାଚୀନ ଆଚରଣ ବୋଲି ସହଜରେ ଜଣାପଡ଼ିବ । ଅବଶ୍ୟ ମୂଳରୁ ଜଗନ୍ନାଥ ମୂର୍ତ୍ତି ପ୍ରତିଷ୍ଠା ସଙ୍ଗେ ତାନ୍ତ୍ରିକତାର ସମ୍ବନ୍ଧ ଜଡ଼ିତ ଥିଲା । ଜଣ ଆଉ ବୁଦ୍ଧଙ୍କ ପରି ଶୂନ୍ୟ-ରୂପ ହେଲେ ମଧ୍ୟ ନିମକାଠର ମୂର୍ତ୍ତି ସଙ୍ଗେ ମିଶି ମୌଳିକ ତାନ୍ତ୍ରିକ ଆଚରଣ ସଙ୍ଗେ ଏ ମୂର୍ତ୍ତିର ବହୁ ସମ୍ପର୍କ ଥିଲା । ବିଶେଷରେ ଜଗନ୍ନାଥରେ ଏବେ ଯେଉଁ ମହାପ୍ରସାଦ ହେଉଛି ତାହା ଯେଉଁଠାରେ ଭୋଗ ଦିଆ ହୁଏ, ତା'ର ନାମ ହେଉଛି 'ଭୈରବୀଚକ୍ର' ଓ ସେଠାରେ ଗୋଟିଏ ଭୈରବ ମୂର୍ତ୍ତି ସିଂହାସନ ତଳେ ପ୍ରତିଷ୍ଠା କରାଯାଇଛି । ସେଇ ଭୈରବୀଚକ୍ର ହେତୁରୁ ସେଠାରେ ଜାତିବର୍ଣ୍ଣ ନିର୍ବିଶେଷରେ ଉଚ୍ଛିଷ୍ଟ ଦୋଷ ନାହିଁ । ତଥାପି ଅର୍ବାଚୀନ ତାନ୍ତ୍ରିକ ଆଚରଣ, ଯାହାସବୁ ଏବେ ମନ୍ଦିରରେ ଚଳେ, ସେଥିରୁ ଅନେକ କଥା ମୌଳିକ ଆଚରଣରେ ନ ଥିଲା । ଏକଥା ମନେରଖି ଗୀତାର ଆଲୋଚନା କଲେ ସୁବିଧା ହେବ ।



# ଦ୍ୱିତୀୟ ସଂସ୍କରଣର ମୁଖବନ୍ଧ

## (୧) ବ୍ୟକ୍ତିର ଆତ୍ମିକତା

### ପୃଥିବୀ ଧ୍ୱଂସ ପାଇବା ବିଷୟରେ ଉଦ୍‌ବେଗ—

ଏଇ ଗୀତାର-ପ୍ରାରଂଭିକ ନିବେଦନ ୧୯୩୬ ମସିହା ସେପ୍‌ଟେମ୍ବର-ଅକ୍‌ଟୋବର ମାସରେ ପୂଜାକୁ ପ୍ରକାଶ କରିବା ପାଇଁ ଲେଖାଯାଇଥିଲା । ତା'ପରେ ଦ୍ୱିତୀୟ ମୁଦ୍ରଣରେ ନିବେଦନ ୧୯୫୨ ମସିହାରେ ଅତି ସଂକ୍ଷେପରେ ମାତ୍ର ଠାଏ ଦିଆ ହୋଇଥିଲା । ବସ୍ତୁତଃ ଏହାକୁ ୧୯୩୬ ମସିହା ପ୍ରଥମ ସଂସ୍କରଣର ଭୂମିକାର କିଂଚିତ୍ ସମ୍ପ୍ରସାରଣ ବୋଲିବାକୁ ହେବ । ଯଥାର୍ଥତଃ ଏ ଭୂମିକା ଲେଖା ହେବାର ଏବେ ପଚିଶ ବର୍ଷରୁ ଅଧିକ ହୋଇଗଲା । ଏ ମଧ୍ୟରେ ବିଶ୍ୱଜଗତ ସଂବଂଧରେ ଜ୍ଞାନ ଓ କ୍ରିୟାର ବହୁ ପରିବର୍ତ୍ତନ ହୋଇଯାଇଛି । ଏଟମ୍ ବମ୍ ସମସ୍ତ ପୃଥିବୀକୁ ଧ୍ୱଂସ କରିବାର ଆଶଂକା କରିବାର ଦେଖାଯାଇଛି । ସେଥିରେ ପରସ୍ପରର ବଳ କଷାକଷି ଦେଶମାନଙ୍କ ଭିତରେ ଖୁବ୍ ଆବେଗ ବଢ଼ାଇଛି । ଭାରତ ଓ ଅନ୍ୟାନ୍ୟ କେତେକ ଦେଶର ନିରପେକ୍ଷମାନେ ଏଥିରୁ ଅଲଗା ରହିବାକୁ ଚାହିଁ ନିରସ୍ତ୍ରୀକରଣ ବିଷୟରେ ବହୁ ପରାମର୍ଶରେ ଲାଗିଛନ୍ତି । ମଝେ ମଝେ ଏଇ ନିରସ୍ତ୍ରୀକରଣ ପ୍ରଲୋଭନ ଦେଖାଇ ଶାଂତି ଓ ମୈତ୍ରୀ ବୋଲି କଥାଟି ମଧ୍ୟ ବେଳେବେଳେ ବାହାରି ପଡ଼ୁଛି । କିନ୍ତୁ ଏ 'ପ୍ରକାଶଧର୍ମ'ରେ କେତେ ନୀତି ଶୁଣାଯାଉଛି, ସମସ୍ତେ ପର ପାଇଁ କର, ଜାତି ପାଇଁ କର; ଇତ୍ୟାଦି । ଯେପରି କି ବ୍ୟକ୍ତିକୁ ଭୁଲିଯିବାକୁ ହେବ । କିନ୍ତୁ ବ୍ୟକ୍ତି ନଥିଲେ ଗୋଷ୍ଠୀ ନାଇ, ସମାଜ ନାଇ । ଏ ଦେଖାଇ ଦେଉଛି, ଏକ ବିରାଟ ବ୍ୟକ୍ତି-ତାଂତ୍ରିକତାର ସାମ୍ୟବାଦ ଆଡ଼କୁ ଗତି । ଜଣେ ମହାନ୍ ବ୍ୟକ୍ତି ଏବେ କହିଛନ୍ତି, ମାନବ ଜୀବନପ୍ରତି ଯଦି ଗଭୀର ଭାବରେ ଧ୍ୟାନ ନ ଦିଆଯାଏ, ମନୁଷ୍ୟ ସ୍ୱଭାବରେ ଯଦି ଆଧ୍ୟାତ୍ମିକଭାବ ଦୃଢ଼ୀଭୂତ ନ ହୁଏ, ତାହା ହେଲେ ପରମାଣୁ ବୋମା; ଉଦ୍‌ଜାନ ବୋମା ଓ ଅନ୍ୟାନ୍ୟ ବୈଜ୍ଞାନିକ ପ୍ରଣାଳୀରେ ତିଆରି ହେଉଥିବା ଅସ୍ତ୍ରଶସ୍ତ୍ରଦ୍ୱାରା ମାନବସଭ୍ୟତା ଧ୍ୱଂସ ପାଇଯିବ, ଏପରି କି ମନୁଷ୍ୟ ନିଜେ ବଂଚିବା ମଧ୍ୟ ବିପଜ୍ଜନକ ହୋଇ ପଡ଼ିଲାଣି ।" ଏହା ମେକ୍‌ସିକୋରେ ଏବେ ପଂଡ଼ିତ ନେହରୁଙ୍କର ଗୋଟିଏ ଭାଷଣରୁ ଓଡ଼ିଆ ଅନୁବାଦ କରାଯାଇଛି । କିନ୍ତୁ ସମସ୍ତ 'ପ୍ରକାଶଧର୍ମ'ର ତାଂଡ଼ବ ଭିତରେ ଏ ଆଧ୍ୟାତ୍ମିକଭାବ, ଭୁଲରେ ହେଲେ ମଧ୍ୟ, ବାହାରି ପଡ଼ୁଛି । ଏହା ଦେଖିବାର କଥା ।

## ପ୍ରକାଶ ଧର୍ମ ଓ ଆଧ୍ୟାତ୍ମ ଧର୍ମ—

ପ୍ରକୃତରେ ଯଥାର୍ଥ ବିଷୟଟି ଆଜି କେଇ ତତ୍ତ୍ୱତଃ ବୁଝିଲା ପରି ଲାଗୁ ନାହିଁ ଯେ ଏ ବିଶ୍ୱଧର୍ମରେ ଚିରକାଳ ଦୁଇଟି ପ୍ରକାର ଫୁଟି ଆସିଛି । ଗୋଟିକୁ ଅତି ଆଦିମ କାଳରୁ କେହି ଲୋକେ ବୁଝିଆସିଛନ୍ତି—ଏହା 'ପ୍ରକାଶ ଧର୍ମ' ଅର୍ଥାତ୍, ବିଶ୍ୱ ଯେପରି ପ୍ରକାଶ ହୁଏ, ସେହି ଧାଟିରେ ଏ ଧର୍ମ ଫୁଟେ । ବିଶ୍ୱର ଅଧ୍ୟାତ୍ମ ବା ଆତ୍ମା ସଙ୍ଗେ ଏହାର ସ୍ପଷ୍ଟ ସମ୍ପର୍କ ନାହିଁ । ଅନ୍ୟଟି ହେଉଛି 'ଯୁକ୍ତିଧର୍ମ', ଯହିଁରୁ ବାହାରି ଥିଲା ଅଧ୍ୟାତ୍ମ ଧର୍ମ । ଏଇ ପ୍ରକାଶ ଧର୍ମ ଲୋକଙ୍କ ମନକୁ ଖୁବ୍ ଘେନିଥିଲା । ଆଦିମ କାଳରେ ମନୁଷ୍ୟ ଶକ୍ତିଶାଳୀ ମାନବର କାର୍ଯ୍ୟକୁ ବଡ଼ ପସନ୍ଦ କରୁଥିଲେ । ସେଇଥିରୁ ଗୋଟିଏ କ୍ରମେ ଏକେଶ୍ୱରବାଦ ପର୍ଯ୍ୟନ୍ତ ଧାରଣାକୁ ଉଠିଥିଲା । ସେଇ ଏକେଶ୍ୱର-ବାଦ ପ୍ରାୟ ସର୍ବ ଜଗତରେ କ୍ରମେ ବ୍ୟାପିଯାଇଛି ।

## ରବୀଂଦ୍ରନାଥ ଓ ଉପନିଷଦର ମୈତ୍ରୀଧର୍ମ—

ଏହା କିପରି ବାହାରି ବ୍ୟାପିଯାଇଥିଲା, ତାହାର ଗୋଟିଏ ସୁନ୍ଦର ବିବରଣ ଭାରତର ଅଧ୍ୟାତ୍ମ ଧର୍ମକୁ ଧରି ସ୍ୱର୍ଗତ 'ରବୀନ୍ଦ୍ରନାଥ' ନିମ୍ନଲିଖିତ ପ୍ରକାରେ କହିଛନ୍ତି—

"ପ୍ରଥମ ଯୁଗରେ ମନୁଷ୍ୟର ଜୀବନଯାତ୍ରା ଥିଲା ନିତାନ୍ତ ଅନିଶ୍ଚିତ । ଆହାର ବିହାର ପ୍ରଭୃତି ସବୁ ପ୍ରୟୋଜନର ବ୍ୟବସ୍ଥା ଥିଲା ଏକାନ୍ତ ଦୁର୍ଲ୍ଲଭ । ପରସ୍ପର ପ୍ରତି-ଦ୍ୱଂଦ୍ୱିତା ଥିଲା ଅତ୍ୟନ୍ତ କ୍ରୂର ଓ ନିଷ୍ଠୁର । ପଶୁଗୃହଣଠାରୁ କୃଷି ବଣିକବୃତ୍ତି ପର୍ଯ୍ୟନ୍ତ ମାନବ ଇତିହାସର ସକଳ ଅବସ୍ଥାରେ ଦେଖାଯାଏ, ପରସ୍ପରଠାରୁ ଘେନିଯିବାର ଚେଷ୍ଟା ଥିଲା ପ୍ରବଳ । ଏଇ ଦସ୍ୟୁବୃତ୍ତି ମାନବ ସମାଜରେ ହେଇଥିଲା ବଡ଼ ନିର୍ମମ । ଏହାର ତାଡ଼ନାରେ ସେ ଦିନ ମନୁଷ୍ୟ ଶକ୍ତିକୁ ଶ୍ରଦ୍ଧା କରିଛି, ଶକ୍ତିର ପ୍ରଚଣ୍ଡ ବିରୁଦ୍ଧତାକୁ ହାତ କରି, ଶାଂତ କରି ପ୍ରାଣପଣେ ତାକୁ ଆପଣା ଆଡ଼କୁ ଟାଣିବାର ଚେଷ୍ଟା କରିଛି । ଜୀବନକୁ ଏଇଭାବରେ ଦେଖିବା ଫଳରେ ମନୁଷ୍ୟ ଧର୍ମରେ ଶାସନନୀତି ପ୍ରବଳ ହୋଇଛି; ଏହାର ଫଳରେ ସେ ଯୁଗରେ ଯାହା ହାତେ ଶାସନଦଣ୍ଡ ଥିଲା ସେ ଜୋର୍ କରି ଅନ୍ୟମାନଙ୍କୁ ନିଜଆଡ଼କୁ ଟାଣିଛି । ନିଜର ବାହୁବଳରେ ତଥା ଦେବତାମାନଙ୍କୁ ନିଜ ପକ୍ଷକୁ ଟାଣି ସେ ନିର୍ଲ୍ଲଜ ପରି ଅନ୍ୟକୁ ପୀଡ଼ିତ କରିଛି ।

କେବଳମାତ୍ର ଉପନିଷଦ ଧର୍ମରେ ଦେଖିବାକୁ ମିଳେ, ଋଷିମାନେ ଶକ୍ତିର ଏଇ ଭୟକୁ ଦୂର କରିଛନ୍ତି । ସେମାନେ କହିଛନ୍ତି, 'ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ" (କେବଳ ଆନନ୍ଦରୁ ଏ ସମସ୍ତ ପ୍ରାଣୀସମେତ ଭୂତବର୍ଗ ଜନ୍ମ ହୋଇଛନ୍ତି)—ଏପରି ଦୃଢ଼ ସ୍ୱରରେ ଏତେ ବଡ଼ କଥା କୌଣସି ଧର୍ମରେ କୌଣସି-ଠାରେ କୁହାଯାଇ ନାହିଁ । ସୃଷ୍ଟି ଏଇ ଆନନ୍ଦ ଆଡ଼କୁ ଚାଲିଛି, ଭୟ ଆଡ଼କୁ ନୁହେଁ । ଏକଥା ଯେଉଁମାନେ କହିଥିଲେ, ସେମାନଙ୍କର ମଧ୍ୟଜୀବନ ସେତେବେଳେ ଥିଲା

ବିଭୀଷିକାରେ ଓ ଦ୍ୱଂସ୍ରତାରେ ଘେରି । ଏଇ ଆଦିମଯୁଗର ମନୁଷ୍ୟ ଏକା ଯେଉଁଦିନ ଅନ୍ୟାନ୍ୟ ପୂଜା କରିଚି ଅଂଧ ଶକ୍ତିକୁ, ସେଇ ଯୁଗର ଅନ୍ତ ଏକ ମନୁଷ୍ୟ ଅଂତରରେ ପ୍ରଥମେ ଆସିଲା ଉପନିଷଦର ମନ୍ତ୍ରରେ ଆନନ୍ଦର ଅମୋଘ ବାଣୀ, ଯେଉଁ ବାଣୀ ଆସିଥିଲା ଆମର ଏଇ ଭାରତବର୍ଷରେ ।

ଆନନ୍ଦର ଏଇ ବାଣୀ ସମସ୍ତଙ୍କ ସଙ୍ଗେ ମିଳିତ ହେବା ବାଣୀ । ମୂଢ଼ତା ବା ଭୟର ଚିହ୍ନ ଲେଶମାତ୍ର ଏହା ମଧ୍ୟରେ ନାଇ । ଏଇ ସାଧନାରେ ସଦା ଜାଗ୍ରତ ଚେଷ୍ଟାରେ ସୁନିଶ୍ଚିତ ନିର୍ଦ୍ଦେଶ ଅଛି । ଆପଣାକୁ ନିର୍ମଳ, ଶୁଚି କରିବାକୁ ହେବ ସୃଷ୍ଟିର ମୂଳରେ ନିହିତ ଅଛି ଯେଉଁ ଐକ୍ୟ, ତାକୁ ମୈତ୍ରୀ ଭାବରେ ଚର୍ଚ୍ଚାରେ ବୁଝିବାକୁ ଚେଷ୍ଟା କରିବାକୁ ହେବ । ପରମ ଦେବତାଙ୍କ ସଙ୍ଗେ ନିଗୂଢ଼ତମ ଆତ୍ମୀୟତା ସ୍ଥାପନ କରିବାକୁ ହେବ । ଇହ ଜୀବନର ସମସ୍ତ ପ୍ରିୟ ସମ୍ପର୍କ ଅପେକ୍ଷା ସେ ହେଉଚନ୍ତି ପ୍ରିୟତର । ଏଇ କଥାଟି, ସେମାନେ ବାରମ୍ବାର ଘୋଷଣା କରିଚନ୍ତି, ଦ୍ୱିଧାହୀନ ଉଦାତ୍ତକଣ୍ଠରେ 'ତଦେତତ୍ ପ୍ରେୟଃ ପୁତ୍ରାତ୍ ପ୍ରେୟୋ ବିତ୍ତାତ୍ ପ୍ରେୟୋଽନ୍ୟସ୍ମାତ୍ ସର୍ବସ୍ମାତ୍, ଅଂତରତରଃ ଯଦୟମାତ୍ମା,' ସେଇ ହେଉଚନ୍ତି ଅନ୍ତରର ଅନ୍ତରତମ ଆତ୍ମା, ଯେ କି ଏଇ ବିଶ୍ୱର ଅନ୍ତରରେ ନିରନ୍ତର ବାସ କରୁଚନ୍ତି । ସେଇ ହେଉଚନ୍ତି ସକଳପ୍ରିୟର ପ୍ରିୟ ସମସ୍ତଠାରୁ ଭୟଙ୍କର ସେ ନୁହନ୍ତି । ଏଇ ଉପଲବ୍ଧି ମଧ୍ୟରେ ମୂଢ଼ତାର ଛଲେମାତ୍ର ଚିହ୍ନ ନାଇ । ମଂତ୍ରତଂତ୍ରର ନିଷ୍ଠୁର ବାକ୍ୟ-ଜାଲରେ କୌଣସିଠାରେ ତାଂକୁ ଶାଂତ କରିବାର ଭୀରୁ ଚେଷ୍ଟା ନାଇ, ବିକୃତର ଅଣୁମାତ୍ର ସ୍ଥାନ ନାଇ ।"

× × × × ×

## ଆତ୍ମଭାବର ଏକତ୍ୱ—

ଆଜି ସମସ୍ତଙ୍କୁ ଜାତିବର୍ଣ୍ଣ ନିର୍ବିଶେଷରେ ଏକ କରିବାର ଯେଉଁ ପ୍ରୟାସ ଚାଲିଚି, ତାହା କୃତ୍ରିମ ପ୍ରକାଶଧର୍ମକୁ ନେଇ ଚାଲିଚି । କିନ୍ତୁ ଯେଉଁମାନେ ଏଇ ଆତ୍ମାର କଳ୍ପନା କରିଥିଲେ, ସେମାନଙ୍କ ପାଖେ ଜାତି ବର୍ଣ୍ଣାଦିର ଭେଦ ନଥିଲା । ବାସ୍ତବିକ ମାନବକୁ ଏକକରି ଦେଖିବାର ଏଇ ପ୍ରୟାସ, ପ୍ରଚେଷ୍ଟା ଓ ପରିଣତ ଏ ଜଗତରେ ସମସ୍ତ ମାନବକୁ ଏକକରି ଦେଖିବାର ଆତ୍ମଭାବ । ଏହା ମନେ ରଖିବାକୁ ହେବ ଓ ଦେଖିବାକୁ ହେବ ଏଇ ଆତ୍ମଭାବ ବା ଏକ ଭାବରେ ଭାରତର ଦର୍ଶନ ଚିରକାଳ ବ୍ୟକ୍ତିଭାବର ଭେଦ ଗୁଡ଼ି ଅନ୍ତରରେ ସଦା ଉପରକୁ ଉଠିଚି ଓ ଗୀତାରେ ସେଇ ଧର୍ମ ପ୍ରଚାର ପାଇଚି ।

## 'ପରୁଷ'—ପୁରୁଷ ଶବ୍ଦ ବୈଦିକ ନୁହେ—

ଅବଶ୍ୟ ଜଗତରେ ବିଭିନ୍ନ ବ୍ୟକ୍ତିଗୁର ମଧ୍ୟରେ ଆଜି ଏଇ ସତ୍ୟଟିକୁ ବିଶେଷ କରି ସ୍ମରଣ କରିବାର ଦିନ ହୁଏତ ଆସିଛି । ଏ ସତ୍ୟଟି ଚିର ସତ୍ୟ ପରି ଲାଗୁଛି । କିନ୍ତୁ ପ୍ରକୃତ ତଳେଇକରି ଦେଖିଲେ ଏହା ଯଥାର୍ଥ ଅଧ୍ୟାତ୍ମ ପ୍ରଗତିରେ ବିଶ୍ୱ ସମ୍ବନ୍ଧରେ ଚିର ଓ ସ୍ଥିର ଧାରଣା ନୁହେ । ଏଇ ଭାରତବର୍ଷରେ ବିଶ୍ୱର ଚିର ଓ ସ୍ଥିର ଅଧ୍ୟାତ୍ମ ଧାରଣା ଫୁଟିଥିଲା । ସେଇ ଧାରଣାର ନାମ ହେଉଛି, 'ପୁରୁଷ' । ଏଇ ପୁରୁଷ ଶବ୍ଦ ବୈଦିକକାଳରେ ଏ ଦେଶର ଧର୍ମ—ବାୟୁମଣ୍ଡଳରେ ବହୁତ ପ୍ରୟୋଗରେ ଆସିଛି କିନ୍ତୁ ଏ ପୁରୁଷ ଶବ୍ଦ ମୂଳତଃ ବୈଦିକ ନୁହେ । ଅତି ପ୍ରାଚୀନକାଳରେ କୌଣସି ଋଷି ଈଶ୍ୱରଙ୍କ ପ୍ରଧାନ ପ୍ରତିଷ୍ଠାନକୁ ପୁରୁଷ ନୁହେ ବୋଲି ସୂଚନା ଦେଇଛନ୍ତି ଯଥା:—

"ଅଦୋ ଯଦ୍‌ଦାରୁ ପ୍ଲବତେ
ସିଂଧୋଃ ପାରେ ଅପୂରୁଷଂ,
ତଦାରଭସ୍ୱ ଦୁର୍ହଣୋ
ତେନଗଚ୍ଛ ପରସ୍ତରଂ ।"

(ଋକ୍‌ବେଦ ୧୦-୧୫୫-୩)

## ସାୟନାଚାର୍ଯ୍ୟଙ୍କ ଭାଷ୍ୟର ବିଚାର—

ଋକ୍‌ବେଦରେ ଏ ମନ୍ତ୍ରଟି ସାୟନାଚାର୍ଯ୍ୟ ଟୀକା କରିବାରେ ଭୁଲ କରିଛନ୍ତି । କାରଣ ସାୟନାଚାର୍ଯ୍ୟ ଖ୍ରୀଷ୍ଟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ବେଦର ଏ ଟୀକାଟି ଲେଖିଥିଲେ । ଖ୍ରୀଷ୍ଟ ୧୧ଶ ଶତାବ୍ଦୀର ଶେଷଆଡ଼କୁ ପୁରୀରେ ସମ୍ରାଟ ଚୋଡ଼ଗଙ୍ଗଦେବ ସେଇ ପୁରୀର ସମ୍ଭବତଃ 'ଜନାସନ' ପୀଠ (ବା ପୁରୁଷପୀଠ) ରେ ଜଗନ୍ନାଥଙ୍କ ମୂର୍ତ୍ତି ପ୍ରତିଷ୍ଠା କରି ସାରିଥିଲେ । ଲୋକେ ମଧ୍ୟ ସେଇ ଜଗନ୍ନାଥ ପୀଠକୁ ବହୁକାଳରୁ ପୁରାଣ ପ୍ରତିଷ୍ଠିତ ବୋଲି ହୁଏତ ମନେ କରୁଥିଲେ । ତେଣୁ ସାୟନାଚାର୍ଯ୍ୟ ଏଇ ମନ୍ତ୍ରଟିର ଅର୍ଥରେ ଦାରୁଦେବତା ଜଗନ୍ନାଥ ସମୁଦ୍ରକୂଳରେ ପ୍ରତିଷ୍ଠିତ ହୋଇଛନ୍ତି ବୋଲି ଓ 'ତଦାରଭସ୍ୱ' ଅର୍ଥରେ ତାଙ୍କୁ ପରିତ୍ୟାଗ କର ବୋଲି ନ କହି, ତାଙ୍କୁ ଆଦର କର ବା ଆଲିଙ୍ଗନ କର ବୋଲି କହି ବଡ଼ ଭିନ୍ନ ଓ ଆଧୁନିକ ଭାବରେ ତାଙ୍କୁ ଅର୍ଥ କରିଯାଇଛନ୍ତି ।

## କିନ୍ତୁ ପ୍ରକୃତ ଅର୍ଥ—

କିନ୍ତୁ ପ୍ରକୃତ ଅର୍ଥ ହେଉଛି, 'ସମୁଦ୍ରପାରେ' ବା ନଦୀପାରେ ଯେଉଁ କାଠଟି ଅଛି ତାହା 'ପୁରୁଷ' ନୁହେ । ତେଣୁ ତାଙ୍କୁ ପରିତ୍ୟାଗ କର । ତା' କଲେ, ହେ ଦୁର୍ମୁଖ, ତୁ ପରସ୍ତରକୁ ଉଠିବୁ ।

## ପୁରୁଷ ଶବ୍ଦର ମୌଳିକ ଅର୍ଥ ଓ ବ୍ୟାପ୍ତି—

ଏଇ 'ପୁରୁଷ' ଶବ୍ଦ ଯେନ ବୈଦିକ କାଳରେ ବହୁତ ଝଗଡ଼ା ଲଗିଥିବାର ପ୍ରମାଣ ମିଳେ । ବଂଗଳାର ପ୍ରଫେସର ସୁନୀତିକୁମାର ଚଟ୍ଟର୍ଜୀ ଓ ଅନ୍ୟାନ୍ୟ ଭାଷା ପ୍ରତ୍ନବିତ୍‌ମାନେ କହନ୍ତି, ପୁରୁଷର ମୂଳ ଶବ୍ଦ ହେଉଛି ପୁ ରୁଷ । ଏହା ଆର୍ଯ୍ୟମାନଂକ ଉଚ୍ଚାରଣ ଅନୁସାରେ ହେବ ପୁର ବା ପୁର୍ଷ—ପୁରୁଷ ନୁହେ । ଭାରତର ବେଦ ଓ ପୁ ଏଇ ପୁ ରୁଷ ସଭ୍ୟତା ଏ ଦେଶରେ ଖୁବ୍ ବ୍ୟାପିଥିଲା ବିଶେଷତଃ ପରବର୍ତ୍ତୀକାଳରେ ଓ ବେଦର ମୂଳସମୟକୁ ମଧ୍ୟ ଏଇ 'ପୁରୁଷ' ସଭ୍ୟତା ପୂର୍ବରେ ,ବିଦେହ ସହିତ କଳିଂଗ ବାଟେ କେରଳ ପର୍ଯ୍ୟନ୍ତ ବ୍ୟାପିଥିଲା । ବିଶେଷତଃ ଦ୍ରାବିଡ଼ରେ ତାମିଲ (ଦ୍ରାବିଡ଼)-ମାଂନଙ୍କ ଭିତରେ ଏଇ ସଭ୍ୟତା ଖ୍ରୀଷ୍ଟପୂର୍ବ ସମୟରେ ପ୍ରତିଷ୍ଠିତ ଥିବାର ଗୋଟିଏ ଗ୍ରଂଥ (ତିରୁକୁରାଲ୍—ଶ୍ରୀଯୁକ୍ତ ) ଏବେ ଶ୍ରୀଯୁକ୍ତ ଚକ୍ରବର୍ତ୍ତୀଂକ ଟୀକା ସହିତ ପ୍ରକାଶିତ ହୋଇଚି ଅତି ଆଦିମକାଳରେ ଦ୍ରାବିଡ଼ମାନେ ଏଇ ଧର୍ମ ଯେନ ଆଫ୍ରିକା ଆଡ଼ୁ ଆସି-ଥିବା କଥା ମଧ୍ୟ ପରେ କୁହାଯାଇଚି । ଏଥିରେ ଉପନିଷଦର ମୈତ୍ରୀ ଧର୍ମ ପ୍ରତିଷ୍ଠିତ ।

## ପୁରୁଷ ଓ ଆତ୍ମା—

ଏଇ ଆତ୍ମା ବ୍ୟାବିଲନ୍, ଇଜିପ୍ଟ ପ୍ରଭୃତି ଭୂମିରେ ବୈଦିକ ସୂର୍ଯ୍ୟରୂପେ ଅତି ପ୍ରାଚୀନକାଳରେ ପୂଜିତ ହୋଇଥିବାର ପ୍ରମାଣ ମିଳେ । ଏଇ ଭାରତବର୍ଷରେ ମଧ୍ୟ ଜୈନମାନଙ୍କ ମଧ୍ୟରେ ଏବେ ଯେଉଁ ପରଂପରାଟି ଅଛି, ତାହାର ମୂଳ ପୁରୁଷ ହେଉ-ଛନ୍ତି ଋଷଭ । ଏଇ ଋଷଭ ମଧ୍ୟ ତିରୁକୁରାଲ୍ ଗ୍ରଂଥର ଅତି ପ୍ରତିଷ୍ଠିତ ଦେବତା । ଏଇ ଋଷଭ ହିମାଳୟରୁ ଓହ୍ଲାଇ ପ୍ରଥମେ ଭାରତରେ ସଭ୍ୟତା ପ୍ରଚାର କରିଥିଲେ ବୋଲି ଲେଖାଅଛି । ଭାରତ (ଯାହାଂକ ନାମରୁ ଭାରତବର୍ଷ ଶବ୍ଦ ହୋଇଛି), ସେ ଏଇ ଋଷଭଂକ ପୁତ୍ର ବୋଲି ଜୈନଶାସ୍ତ୍ରରେ ପରଂପରା ଅଛି । ଏଇ ଋଷଭ ଶବ୍ଦଟିର ଅର୍ଥ କଣ ? ୧୮୮୭ ପୂର୍ବରୁ ସେଇସି (Sayce) ସାହେବ ବ୍ୟାବିଲନର ଲେଖାମାନଂକରୁ ପ୍ରମାଣ କରିଚଂନ୍ତି, ଏଇ ଋଷଭ ହେଉଚି ବ୍ୟାବିଲନୀୟ ସୂର୍ଯ୍ୟଂକର ଗୋଟିଏ ନାମ । ବ୍ୟାବିଲନରେ ସୂର୍ଯ୍ୟଂକର ବାସଂତ ବିଷୁବ ହେଲାବେଳେ ଶସ୍ୟ ବୁଣାହୁଏ । ଋଷଭରେ ଲୋକେ ଶସ୍ୟ ପାଇଁ ହଳ କରୁଥିଲେ । ସେକାଳ ବସନ୍ତ କାଳରେ ସୂର୍ଯ୍ୟ ବୃଷରାଶିକୁ ଆସିଲେ ବସନ୍ତକାଳ ଆରମ୍ଭ ହେଉଥିଲା । ସେଇ ସମୟରେ ଶସ୍ୟ ବୁଣା ଆରମ୍ଭ ହେଉଥିଲା । ତେଣୁ ଲୋକେ ସାଧାରଣତଃ କହୁଥିଲେ, "ସୂର୍ଯ୍ୟ ବୃଷଭ ବା ଋଷଭକୁ ଆସିଲେଣି ।" ସେଇ ହିସାବରେ ସୂର୍ଯ୍ୟର ନାମ କ୍ରମେ ଋଷଭରେ ପରିଣତ ହୋଇ-ଥିଲା । ଏଇ ଋଷଭ ପରେ ଧର୍ମର ପ୍ରଧାନ ପୁରୁଷ ହେଲେ । * ହିସାବ କରି ବ୍ରାଉନ ସାହେବ (ସାନ) ଦେଖାଇଛନ୍ତି, ଏଇ ହିସାବରେ ରାଶି ଚକ୍ରର ବର୍ତ୍ତମାନ ଖ୍ରୀଷ୍ଟପୂର୍ବ ୨୦୮୪ରେ ନିର୍ଦ୍ଦିଷ୍ଟ ହୋଇଥିଲା । ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀରେ ଏଇ ଆତ୍ମଧର୍ମ

---

* Sayce ଙ୍କର Herbert Lectures 1887 ଦେଖ ।

'ଏଟେନ' ଧର୍ମ ନାମରେ ସେକାଳ ଆସିରିଆପାଖ ମିଟ୍ଟାନି ରାଜ୍ୟର ଦଶରଥ ବଂଶରୁ ଇଜିପ୍ଟର ୪ର୍ଥ ଆମେନ ହୋଟେପଙ୍କ (ଏକ୍ନେଟାନଙ୍କ) ଦ୍ୱାରା ଇଜିପ୍ଟରେ ଭୂୟସୀ ପ୍ରତିଷ୍ଠା ପାଇଥିବା ପ୍ରାଚୀନ ଲେଖରୁ ପ୍ରମାଣ ମିଳେ । ଏଇ ଆତ୍ମଭକ୍ତି ବିକାଶ ପାଇଁ ଗ୍ରୀସ ପ୍ରଭୃତି ଦେଶର ପରେ ଆତ୍ମା ନାମରେ ଯାହା ପ୍ରକାଶ ପାଇଲା, ତାହା ଖ୍ରୀଷ୍ଟ ୨ୟ, ୩ୟ ଶତାବ୍ଦୀର 'ଷ୍ଟୋଇକ୍' ନାମକ ଧର୍ମରେ ଅତି ସୁନ୍ଦରରୂପେ ଆତ୍ମଧର୍ମର ପ୍ରତିଷ୍ଠା ପ୍ରତିଷ୍ଠାରେ ବିକାଶ ପାଇଥିବାର ଅଜଣା ନୁହେ ।

## ପାଇଥାଗୋରସ ଓ ଗ୍ରୀକ୍ ଦର୍ଶନ—

ଅନୁମାନ ହୁଏ, ଇତିହାସରେ ଖ୍ରୀ:ପୂ: ପଞ୍ଚମ, ଷଷ୍ଠ ଶତାବ୍ଦୀରେ ଗ୍ରୀକ ପଣ୍ଡିତ ଦାର୍ଶନିକ ପାଇଥାଗୋରସ ବ୍ୟାବିଲନ ଓ ଇଜିପ୍ଟ ପ୍ରଭୃତି ଦେଶମାନଙ୍କରେ ବୁଲିଯାଇ ଏଇ ଆତ୍ମିକ ପ୍ରଭାବରେ ପୂର୍ଣ୍ଣ ପ୍ରଭାବିତ ହୋଇଥିଲେ । ପାଇଥାଗୋରସ୍ ମନେ ରଖିବାର ଅଛି, ଗ୍ରୀସରେ ସେକାଳେ ପୂରା ନିରାମିଷାଶୀ ଥିଲେ ଓ ସେ ଭାରତୀୟ ପୁନର୍ଜନ୍ମ ତଥା କର୍ମ ଓ କର୍ମଫଳ ପ୍ରଭୃତିରେ ପୂରା ବିଶ୍ୱାସ କରୁଥିଲେ । ଏଇ ପାଇଥାଗୋରସ୍ଙ୍କଠାରୁ ଷ୍ଟୋଇକ୍ ପର୍ଯ୍ୟନ୍ତ ଗ୍ରୀକ୍ ମନୀଷୀମାନଙ୍କର ଏଇ ଆତ୍ମିକ ଧର୍ମ ସ୍ପଷ୍ଟ ପ୍ରକାଶ ପାଇଲା ।

## ଜୈନଧର୍ମ ଓ ଦ୍ରାବିଡ଼ ସଭ୍ୟତା—

କୁହାଯାଇଛି, ଏଇ ଧର୍ମ କେଉଁଠାରୁ ଆସିଲା ଠିକ୍ ଜଣା ନ ଯାଉଥିଲେ ମଧ୍ୟ ପ୍ରାନ୍ତିକମାନେ କହନ୍ତି, ଏହା ଆଦିମ କାଳରେ ମଧ୍ୟ-ଆଫ୍ରିକାରୁ ଆସି କାଳକ୍ରମେ ଭାରତରେ ଦ୍ରାବିଡ଼ମାନଙ୍କ ଭିତରେ ପ୍ରଚାର ଲଭିଥିଲା । ଦେଖିବାର ଅଛି, ଏଇ ଧର୍ମ ଦ୍ରାବିଡ଼ମାନଙ୍କ ମଧ୍ୟରେ ପ୍ରଥମେ ପ୍ରକାଶ ପାଇଥିଲା । ଏହାକୁ ଜୈନଧର୍ମ ବା 'ଜିଣାସନା' ଧର୍ମ ବୋଲି କହୁଥିଲେ । ଏଇ ଜୈନଧର୍ମ ଇତିହାସରେ ଉତ୍ତରର ବିଦେହ ବା କଳିଙ୍ଗଠାରୁ ଦକ୍ଷିଣର ତାମିଲ ଲଗାଏତ କେରଳ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡରେ ବ୍ୟାପିଥିଲା । ଏପରି କି କଳିଙ୍ଗର ଖ୍ରୀଷ୍ଟ ୧୫ଶ ଶତାବ୍ଦୀର ସାରଳାଦାସଙ୍କ ଓଡ଼ିଆ ସାହିତ୍ୟ ମଧ୍ୟ ଏଇ ପରକାଳ ଓ ପୁନର୍ଜନ୍ମ ଆଖ୍ୟାୟିକାରେ ପୂର୍ଣ୍ଣ ରହିଛି ।

## ଦ୍ରାବିଡ଼ ଜନନାୟକମାନଙ୍କ ପ୍ରଭାବରେ ମୌଳିକ ଜୈନ ଆତ୍ମିକତାର ଗତି—

ଏଇ ଜୈନଧର୍ମ ଭାରତରେ ବୈଦିକ ଧର୍ମର ଯଜ୍ଞରେ ପଶୁମାଂସ ଭୋଜନ ମଦ୍ୟପାନଠାରୁ ସମାଜରେ ଜାତିଭେଦ ପର୍ଯ୍ୟନ୍ତ କ୍ରମେ ବଡ଼ ଭୀଷଣ ଭାବରେ ବୈଦିକ ଆର୍ଯ୍ୟମାନଙ୍କ ଭିତରେ ଉତ୍ତର-ପଶ୍ଚିମ ଭାରତ ଆଡ଼ୁ ବିଦେହ ଆଡ଼କୁ ବ୍ୟାପି ଯାଇଥିଲା । ଜୈନ ବା ଜୈନ-ପ୍ରଭାବିତ ମନୀଷୀମାନେ ଏହାକୁ ପ୍ରତିରୋଧ କରିବାରେ ଲାଗିଥିଲେ ଓ ଏଇ ପ୍ରତିରୋଧ ତେଣୁ ବୈଦିକ ସୂକ୍ତମାନଙ୍କରେ ଖୁବ୍ ପ୍ରକାଶ

ପାଇଚ । ଏଇ ସୂକ୍ତମାନଂକର ଫଳେ ଏଇ ବୈଦିକ ଧର୍ମକୁଇ ନିର୍ମଳ ଆତ୍ମା ଓ ବ୍ୟକ୍ତିରେ ପ୍ରତିଷ୍ଠିତ ଥିବା ଜୈନଧର୍ମକୁ ସୂକ୍ଷ୍ମତର କରି ସେଥିରେ କେବଳ ଆତ୍ମିକତାକୁ ଫୁଟାଇ ବିଦେହର ଜନକାଦିଂକଠାରୁ ପରବର୍ତ୍ତୀ କାଳରେ ଦକ୍ଷିଣ-ଭାରତର ଶଂକରା-ଚାର୍ଯ୍ୟଙ୍କ ପର୍ଯ୍ୟନ୍ତ ନିର୍ମଳ ଆତ୍ମତତ୍ତ୍ୱ ପ୍ରକାଶ କରିଥିଲେ । ଉପରେ ରବୀନ୍ଦ୍ରନାଥ ଯେଉଁ ଗର୍ଭସ୍ଥ ଆତ୍ମତତ୍ତ୍ୱ ବା ଆତ୍ମପ୍ରଭାବିତ ତତ୍ତ୍ୱ ଓ ସମାଜର ଭୟ ଗ୍ରୁପ୍ତ ଅମୋଘ ମୈତ୍ରୀତତ୍ତ୍ୱ କଥା ପ୍ରକାଶ କରିଚଂନ୍ତି, ତାହା ଏଇ ସୂକ୍ଷ୍ମତତ୍ତ୍ୱ ଦର୍ଶନର ଫଳ । ଏହା ମୌଳିକ ଦେବତତ୍ତ୍ୱ ନୁହେ ।

## (୨) ବାଉଧର୍ମ

### ଜନ୍ମ ଓ ଯୌନକ୍ରିୟା—

ଏହା ଛଡ଼ା ବାଉଧର୍ମର ମୂଳ ଏହାଠାରୁ ପ୍ରାଚୀନ । ପ୍ରଥମେ ଧାରଣା ଥିଲା ନାରୀ ପିଲା ଜନ୍ମ କରେ । ନାରୀର ଯେପରି ସନ୍ତାନରେ ଆତ୍ମବିମ୍ବିତ, ତାହା ନାରୀର ପିଲା ଜନ୍ମ କରିବାରେ ବିକାଶ ପାଇଲା । କିଂତୁ ଅନ୍ୟତଃ ସେଇ ପିଲା ଜନ୍ମ କରିବା ହେଲା 'ସୃଷ୍ଟି'ର ଆଦ୍ୟଧାରଣା । ଅତି ଆଦିମ କାଳରୁ ମାନବ ଜନ୍ମ କ୍ରିୟାରେ ପୁରୁଷର ସମ୍ପର୍କ ଅଛି ବୋଲି ବୁଝି ନ ଥିଲା । ଏପରି କି ଏବେ ୩୦ ବର୍ଷ ତଳେ ମଧ୍ୟ ଉତ୍ତର ବୋର୍ଣ୍ଣିଓରେ ଅନୁସନ୍ଧାନ କରି "Sexual life among the Savages" ପୁସ୍ତକରେ ମିଃ ମାଲିନୋସ୍କି ସାହେବ ଲେଖିଚଂନ୍ତି, ଏବେ ବି ଅସଭ୍ୟମାନଙ୍କ ଭିତରେ ଧାରଣା ଅଛି, ସଂଗମ ବା ସହବାସ କ୍ରିୟାରେ ପିଲା ଜନ୍ମରେ ପୁରୁଷର କିଛି ଭାଗ ନାହିଁ । ସେଥିରେ ପୁରୁଷଟି ଗୋଟିଏ ସୌନ୍ଦର୍ଯ୍ୟ ଦେଖିବା ପାଇଁ ଅଛି ମାତ୍ର । ଏଇ ବିଶ୍ୱାସରେ ଆଦିମ ମାନବର ଅନେକ ଧନଯାଏ ଧାରଣା ଥିଲା, ପୁରୁଷର ସହବାସ କ୍ରିୟା ମହାପୁରୁଷମାନଂକ ଜନ୍ମରେ ଲାଗେ ନାହିଁ । ଏଇପରି ଆଗେ ଲିବିଆର ନଥ୍ ଦେବୀ ବିନା ପିତାରେ ନିଜର ମହାଧାର୍ମିକ ପୁତ୍ରକୁ ଜନ୍ମ କରିଥିଲେ । ଯିଶୁଖ୍ରୀଷ୍ଟଂକ ଜନ୍ମ ସଂବଂଧରେ ମଧ୍ୟ କଥା ଅଛି, ସେ ବିନା ପିତାରେ ମେରୀଂକଠାରୁ ଜନ୍ମ ହୋଇଥିଲେ । ସେଇପରି ଏବେ ଭକ୍ତଧର୍ମୀମାନେ ପୃଥିବୀରେ ବିଶ୍ୱାସ କରଂନ୍ତି, ମହାପୁରୁଷମାନଂକର ଜନ୍ମରେ ପୁରୁଷ ସଂଗମ ଦରକାର ହୁଏ ନାହିଁ । ସମସ୍ତେ ସହଜରେ ଦେଖିପାରିବେ ବଗଂଳାର ରାମକୃଷ୍ଣ ପରମହଂସଙ୍କ ସଂବଂଧରେ ତାଂକ ଜୀବନୀରେ ଲେଖାଅଛି, ରାମକୃଷ୍ଣଂକ ବାପ ନ ଥିଲା ଧନ ତାଂଙ୍କ ମା ନିଦ୍ରାବସ୍ଥାରେ ଜଣେ ଜଟାଜୁଟଧାରୀ ପୁରୁଷଂକୁ ଶେଯ ପାଖେ ଦେଖିଥିଲେ— ସେ ପୁରୁଷଟି ଗୋଟିଏ ପାଚିଲା କଦଳୀ ଯାଚୁଚଂନ୍ତି ଓ କହୁଚଂନ୍ତି, 'ତୁ ଏ କଦଳୀ ଖା, ତୁ ପୁତ୍ର କାମନାରେ ଶୋଇଚୁ, ତୋର ପୁଅ ହେବ' । ରାମକୃଷ୍ଣ ମାଆଙ୍କର ନିଦ୍ରା ଭାଙ୍ଗିଗଲା । ସେ ଦେଖିଲେ, ଜଟାଜୁଟଧାରୀ ପୁରୁଷ ନାହାନ୍ତି, ମାତ୍ର ସତକୁ ସତ

ତାଂକ ହାତରେ ପାଚିଲା କଦଳୀଟିଏ ଅଛି । ସେ ପାଚିଲା କଦଳୀଟି ଖାଇଦେଲେ । ସେଥିପାଇଁ ତାଂକ ପେଟରେ ରାମକୃଷ୍ଣ ଜନ୍ମ ହେଲେ ।

## ଏଇଥିରୁ ଶକ୍ତିଧର୍ମ—ନାରୀଦୀୟ ସକ୍ତି—

ଏଇପରି ମହାପୁରୁଷଂକ ସଂବଂଧରେ ସବଂଧ ଭକ୍ତଧର୍ମରେ ଯେଉଁସବୁ ଧାରଣା ଅଛି, ତାହାର ଅର୍ଥ ହେଉଛି ମହାପୁରୁଷମାନଂକ ଜନ୍ମରେ ପିତାର ସଂଗମ କିଛି ନାହିଁ । ଏଇ ଧର୍ମ ପଂଡ଼ିତମାନେ ସ୍ଥିର କରଂତି ଦ୍ରାବିଡ଼ମାନଂକ ପୂର୍ବରୁ ସେଇ ଦ୍ରାବିଡ଼ମାନଂକଠାରୁ ଆହୁରି ‘ଅଷ୍ଟ୍ରିକ’ ନିଷାଦ ଜାତିଂକ ମଧ୍ୟରେ ପ୍ରଥମ

---

※ ଏଇ ସମ୍ପର୍କରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ବହୁ ଗବେଷଣା କରିଚଂତି । ସଭ୍ୟ ଜଗତରେ ପୂର୍ବ ଅତି ଆଦିମକାଳରୁ ମାତୃ ଦେବୀଂକୁ ନାନାପ୍ରକାରରେ ସୃଷ୍ଟି—କର୍ତ୍ତୀ ରୂପେ ଗ୍ରୀସ୍, ବ୍ୟାବିଲନ, ଇଜିପ୍ଟ ପ୍ରଭୃତି ଭୂଖଂଡ଼ରେ ବହୁ ପୂଜା କରାଯାଉଥିଲା । ମିଃ ମ୍ୟାକେଂଜି ବର୍ଣ୍ଣନା କରି କହୁଛଂତି, ପ୍ରାଚୀନକାଳରେ ଏଇ ମାତୃ ଦେବୀ-ମାନଂକର ପୂଜା ସଙ୍ଗେ ବଡ଼ ନୀତିହୀନ ଅଶ୍ଳୀଳକର କାର୍ଯ୍ୟ ସମ୍ପାଦିତ ହେଉଥିଲା । ବାଇବେଲ୍ ପ୍ରଥମ ଖଂଡ଼ରେ ଏ କାର୍ଯ୍ୟକୁ ଅତିଶୟ ନିଂଦା କରା ଯାଇଚି । ବିଶେଷତଃ ଆଷ୍ଟୋରେଥ୍ ଦେବୀଙ୍କ ପୂଜା ସମ୍ପର୍କରେ ଏ କଥା କୁହାଯାଉଚି । ଏଇ ଆଷ୍ଟୋରେଥ୍ ଦେବୀ ବ୍ୟାବିଲନର ଇସ୍ତର ବା ଇଜିପ୍ଟର ହାଥୋରଂକ ସହ ତୁଳନୀୟ । The worship of all mother goddesses in ancient times was accompanied by revolting unmoral rites which are referred to in condemnatory terms in various passages in the old Testament, especially in connection with the worship of Ashtoreth, who was identical with Ishtar and the Egyptian Hathor—Myth of Babylonia an Assyria—p. 100 by D A, Mackenzie ଏହା ଆମ ଦେଶରେ ଏବେ ଅନେକ ସ୍ଥାନରେ ଚଳୁଥିବା ତଂତ୍ରପୂଜା ସଂଗେ ତୁଳନା କରାଯାଇପାରେ । ଏଇ ତଂତ୍ର କଥାଟି ଏ ଦେଶରେ ବହୁ ପ୍ରାଚୀନ । ପୂର୍ବର ସଭ୍ୟ ଦେଶମାନଂକ ପରି ଏ ଦେଶରେ ମଧ୍ୟ ତଂତ୍ରପୂଜା ସମ୍ପର୍କରେ ସ୍ୱଚ୍ଛଂଦ ଯୌନବ୍ୟାପାର ପର୍ଯ୍ୟଂତ ବହୁସ୍ଥଳରେ ଚଳୁଥିବାର ସମ୍ଭାବନା ହୁଏ । ତଂତ୍ର କଥାଟିର ଅର୍ଥ ହେଉଚି, ‘ତ’ ଧାତୁ ଅର୍ଥ ବିସ୍ତାର କରିବା, ସେଇଥିରୁ ‘ତ୍ର’ ପ୍ରତ୍ୟୟ ହୋଇ ବିଶ୍ୱ ବିସ୍ତାର ଅର୍ଥରେ ଏହା ମୂଳରୁ ଚାଲିଆସିଚି । ତଥାପି କଥାଟି ସଂସ୍କୃତ ହେଲେ ମଧ୍ୟ ଏହାର ମୂଳ ବହୁ ପ୍ରାଚୀନ ।

ବିକାଶ ପାଇଥିଲା ଓ ସେଇଠାରୁ ଏହା ଭାରତରେ ପ୍ରକାଶ ପାଇବାର ପ୍ରମାଣ ମିଳେ । ଋକ୍ ବେଦରେ ଏଇ ଭକ୍ତିଧର୍ମ ବା ବିଭୂଧର୍ମର ଅତି ଆଦିମ ଧାରଣା ପ୍ରକାଶ ପାଇଛି । ଏହା 'ପୁରୁଷ' ଧର୍ମ ନୁହେଁ, ବରଂ ପୁରୁଷ ଧର୍ମଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏହାକୁ କୁହାଯାଇପାରେ ଶୂନ୍ୟଧର୍ମ । ଋକ୍‌ବେଦର ନାସଦୀୟ ସୂକ୍ତ (୧୦-୧୨୯) ରେ ଏଇ ଧର୍ମର ମୂଳଧାରଣା ପ୍ରକାଶ ପାଇଛି । ଏଇ ସୂକ୍ତଟି ହେଉଛି—

"ନାସଦାସୀନ୍ନୋ ସଦାସୀତ୍ ତଦାନୀଂ
ନାସୀଦ୍ରଜୋ ନୋ ବ୍ୟୋମା ପରୋଯତ୍ ।
କିମାବରୀବଃ କୁହକସ୍ୟ ଶର୍ମ—
ନ୍ନମ୍ଭଃ କିମାସୀଦ୍ ଗହନଂ ଗଭୀରମ୍ । ୧ ।

ସେତେବେଳେ, ଅର୍ଥାତ, ମୂଳ ବା ଆରମ୍ଭରେ ଅସତ୍ ନ ଥିଲା, କି ସତ୍ ବି ନଥିଲା । ଅଂତରୀକ୍ଷ ନ ଥିଲା, କି ତାହାର ଅତୀତ ଆକାଶ ବି ନଥିଲା । (ଏଇପରି ଅବସ୍ଥାରେ) କିଏ (କାହାକୁ) ଆବରଣ କଲା ? କେଉଁଠାରେ ? କାହା ସୁଖ ପାଇଁ ? ଅଗାଧ ଓ ଗହନ ଜଳ ବି କେଉଁଠାରେ ଥିଲା ?

( ଅର୍ଥାତ୍, ଜଳ ସେତେବେଳେ ନ ଥିଲା ) । ୧ ।
"ନ ମୃତ୍ୟୁରାସୀଦମୃତଂ ନ ତର୍ହି
ନ ରାତ୍ର୍ୟା ଅହ୍ନ ଆସୀତ୍ ପ୍ରକେତଃ ।
ଆନୀଦବାତଂ ସ୍ୱଧୟା ତଦେକଂ
ତସ୍ମାଦ୍ଧାନ୍ୟନ୍ନ ପରଃ କିଂଚନାଽସ । ୨ ।

ସେତେବେଳେ ମୃତ୍ୟୁ, ଅର୍ଥାତ୍ ମୃତ୍ୟୁଗ୍ରସ୍ତ ନଶ୍ୱର ଦୃଶ୍ୟ ଜଗତ୍ ସୃଷ୍ଟ ହୋଇ ନ ଥିଲା । ତେଣୁ (ଅନ୍ୟ) ଅମୃତ, ଅର୍ଥାତ୍, ଅବିନାଶୀ ନିତ୍ୟପଦାର୍ଥ (ଏଇ ଭେଦ) ବି ନ ଥିଲା । (ଏଇପରି) ରାତି ଓ ଦିନର ଭେଦ ଜାଣିବାର କୌଣସି ପ୍ରକେତ, ଅର୍ଥାତ୍, ସାଧନ ନ ଥିଲା । (ଯାହା ଥିଲା) ତାହା ଏକାକୀ ଆପଣା ସ୍ୱଧା ଅର୍ଥାତ୍, ଶକ୍ତିରେ ବାୟୁ ବିନା ଶ୍ୱାସୋଚ୍ଛ୍ୱାସ କରୁଥିଲା, ଅର୍ଥାତ୍, ସ୍ଫୂର୍ତ୍ତିମାନ୍ ହେଉଥିଲା । ତା'ଛଡ଼ା, ବା ତା ବାହାରେ, ଆଉ କିଛି ନ ଥିଲା । ୨ ।

"ତମ ଆସୀତ୍ତମସା ଗୂଢ଼ ମଗ୍ରେଽ—
ପ୍ରକେତଂ ସଲିଳଂ ସର୍ବ ମା ଇଦମ୍ ।
ତୁଚ୍ଛେନାଭ୍ୱପିହିତଂ ଯଦାସୀତ୍—
ତପସସ୍ତନ୍ମହିମାଽଜାୟତୈକମ୍ । ୩ ।

ଯତ୍ ଅର୍ଥାତ୍ ଯେ, ଏଇପରି କୁହାଯାଏ ଯେ, ଅଂଧାର ଥିଲା, ପହିଲେ ଏଇସବୁ ଅଂଧାରରେ ବ୍ୟାପ୍ତ ଓ ଭେଦାଭେଦହୀନ ଜଳ ଥିଲା । କିଂବା ଆଭୁ, ଅର୍ଥାତ୍, ସର୍ବବ୍ୟାପୀ ବ୍ରହ୍ମ, (ପହିଲେ) ତୁଚ୍ଛରେ, ଅର୍ଥାତ୍; ମିଥ୍ୟାମାୟାରେ ଆଚ୍ଛାଦିତ ଥିଲା । ତତ୍, ଅର୍ଥାତ୍, ତାହା ମୂଳରେ ଏକ (ବ୍ରହ୍ମହିଁ) ତପ ମହିମାରେ (ତପ ମହିମାର ରୂପାଂତରରେ ପରେ) ପ୍ରକଟ ହୋଇଥିଲେ । ୩ ।

ଏଇ ସୂକ୍ତର ଚତୁର୍ଥ ମଂତ୍ରରେ କୁହାଯାଇଛି,
“କାମସ୍ତଦଗ୍ରେ ସମବର୍ତ୍ତତାଧି
ମନ ସୋରେତଃ ପ୍ରଥମଂ ଯଦାସୀତ୍ ।
ସତୋ ବଂଧୁ ମସତି ନିରବିଂଦନ୍
ହୃଦି ପ୍ରତୀଷ୍ୟା କବୟୋ ମନୀଷା । ୪ ।

ଅର୍ଥାତ୍—ସଭି ଆଗରୁ ସେଥିରେ କାମ ଥିଲା । ସେହି କାମକୁ ‘ମନର ରେତ’ ବା ମାନସିକ ରେତ କୁହାଯାଇପାରେ । ସତ୍ ଆଉ ଅସତ୍ ଦୁହିଁଙ୍କର ମିଳନ ଏହିଠାରେ ହେଲା ବୋଲି କବିମାନେ ମନରେ ଚିନ୍ତା କରି ହୃଦୟରେ ସ୍ଥିର କରିଛନ୍ତି ।

“ତିରଶ୍ଚୀନୋ ବିତତୋ ରଶ୍ମିରେଷାଂ
ଅଧଃ ସ୍ୱିଦାସୀ ଦୁପରିସ୍ୱିଦାସୀତ୍ ।
ରେତୋଧା ଆସନ ମହିମାନ ଆସନ୍
ସ୍ୱଧା ଆବସ୍ତାତ୍ ପ୍ରଯତିଃ ପରସ୍ତାତ୍ । ୫ ।

(ଏଇ) ରଶ୍ମି ବା ସୂତ୍ର ବା କିରଣ; ଏହା ଭିତରେ ଅଂତରାଳରୂପେ ପ୍ରସାରିତ । ଯେବେ କହି ଯେ ଏହା ତଳେ ଥିଲା, ତେବେ ଏହା ଉପରେ ବି ଥିଲା । (ଏହା ଭିତରେ କିଛି) ରେତଧା, ଅର୍ଥାତ୍ ବୀଜପ୍ରଦ ହୁଏ ଓ ବଢ଼ି ବଡ଼ ବି ହୁଏ । ତାହାର ସ୍ୱଶକ୍ତି ଏ ଆଡ଼େ ଥିଲା, ପୁଣି, ପ୍ରଯତି, ଅର୍ଥାତ୍; ପ୍ରଭବ ସେଆଡେ ବ୍ୟାପ୍ତ ହୋଇଥିଲା । ୫ ।

“କୋ ଅଦ୍ଧା ବେଦ କଇହ ପ୍ରବୋଚତ୍,
କୁତ ଆଜାତା କୁତ ଇୟଂ ବିସୃଷ୍ଟିଃ ।
ଅର୍ବାଗ୍ ଦେବା ଅସ୍ୟ ବିସର୍ଜନେନା—
ଥକୋ ବେଦ ଯତ ଆବଭୂବ । ୬ ।”

(ସତ୍ରର) ଏଇ ବିସର୍ଗ, ଅର୍ଥାତ୍, ବିସ୍ତାର, କାହାଠାରୁ ବା କେଉଁଠାରୁ ଆଇଲା, ଏହା (ଏହାଠାରୁ ଅଧିକ) ପ୍ର, ଅର୍ଥାତ୍, ବିସ୍ତାରିତ ରୂପେ କିଏ କହିବ ?

କିଏ ଏହାକୁ ଠିକ୍ କରି ଜାଣେ ? ଦେବତାମାନେ ବି ଏଇ (ସତ୍ତ୍ୱ ଜଗତର) ବିସର୍ଗ ପରେ ହେଲେ। ପୁଣି ତାହା ଯେଉଁଠାରୁ ଜାତ ହେଲା ତା କିଏ ଜାଣିବ। ୬।

"ଇୟଂ ବିସୃଷ୍ଟିର୍ଯତ ଆବଭୂବ,
ଯଦି ବା ଦଧେ ଯଦି ବା ନ।
ଯୋ ଅସ୍ୟାଧ୍ୟକ୍ଷ ପରମେ ବ୍ୟୋମନ୍
ସୋ ଅଂଗ ବେଦ ଯଦି ବା ନ ବେଦ। ୭।

(ସତ୍ତ୍ୱର) ଏଇ ବିସୃଷ୍ଟି, ଅର୍ଥାତ୍, ବିସ୍ତାର ଯେଉଁଠାରୁ ଆସିଛି, କିଂବା ସୃଷ୍ଟ ହୋଇଛି, ବା ହୋଇ ନାହିଁ—ତାହା ପରମ ଆକାଶରେ ଥିବା ସେଇ ଅଧ୍ୟକ୍ଷ (ହିରଣ୍ୟଗର୍ଭ); ସେଇ ଜାଣଂତି; କିଂବା ନ ଜାଣି ବି ପାରଂତି। [ କିଏ କହିପାରେ ? ]। ୭।

ଏଠାରେ ଦେଖିବାକୁ ହେବ, ଏଇ ସୂକ୍ତରେ ୬ଷ୍ଠ ଓ ୭ମ ମନ୍ତ୍ରରେ ବୈଦିକ ଋଷି ଈଶ୍ୱର ଏକାତ୍ମଭାବ ସଂପୂର୍ଣ୍ଣ ପରିତ୍ୟାଗ କରିପାରି ନାହାନ୍ତି। କିଂତୁ ଯଥାର୍ଥରେ ଏହା ପ୍ରଥମେ କିଛି ନ ଥିଲା—ଏହି ଭାବର ସଂପୂର୍ଣ୍ଣ ପ୍ରକାଶ ନୁହେ। ବୈଦିକ ଋଷିଙ୍କର ଭାବଦ୍ୱନ୍ଦ୍ୱ ଏଥିରେ ମନକୁ ପ୍ରକଟିତ ହୋଇପଡ଼ୁଛି।

## ବେଦର ଦର୍ଶନତତ୍ତ୍ୱ—ଅସୁର ଓ ନିଷାଦମାନଂକ ସଂପର୍କରେ ଆସିଛି—

ତା'ହେଲେ ଏଥରୁ ଜଣାଯାଉଛି, ବେଦ ଭିତରକୁ ଆସିଲା ବେଳକୁ, ସେ କାଳରୁ ସଂସ୍କୃତରୁ ଏଇ ଯୋଡ଼ିକ, ଅର୍ଥାତ୍ 'ପୁରୁଷ' ଧର୍ମ ଓ 'ଶୂନ୍ୟ' ଧର୍ମ ବେଦରେ ପ୍ରକାଶ ପାଇଥିଲା। ତା ପୂର୍ବରୁ ପଂଡ଼ିତମାନେ ସ୍ଥିର କରନ୍ତି, ବେଦର ଶେଷଖଂଡ଼, ଅର୍ଥାତ୍, ୧୦ମ ମଂଡ଼ଳରେ। ତଥା ଅନ୍ୟ ମଂଡ଼ଳରେ କଦାଚିତ୍, ଯାହା ଦର୍ଶନତତ୍ତ୍ୱର ଆଭାସ ମିଳେ, ସେସବୁ ବୈଦିକମାନଂକର ସେ କାଳର ଅସୁରମାନଙ୍କ ସଂଗେ ତଥା କଦାଚିତ୍ ନିଷାଦମାନଂକ ସଂଗେ ସଂପର୍କ ହେତୁରୁ ଆସିଛି।

## ଭାରତୀୟ ଦର୍ଶନର ମୂଳ ହେଉଛି ମୁଖ୍ୟତଃ ଦ୍ରାବିଡ଼ ପ୍ରଭାବ—

ପ୍ରକୃତରେ ଭାରତର ଉତ୍ତର-ପଶ୍ଚିମ ବାଟରେ ଆସିଥିଲା ଯେଉଁ ସଭ୍ୟତା—ଯାହାକୁ ମୌଳିକ ବୈଦିକ ସଭ୍ୟତା କହଂତି—ତାହା ଆଧ୍ୟାତ୍ମିକ ଭାବରେ ବଡ଼ ଉନ୍ନତ ସଭ୍ୟତା ନ ଥିଲା। ପରଂତୁ ଏଇ ଉନ୍ନତ ସଭ୍ୟତାର ମୂଳ ହେଉଛି, ବ୍ୟକ୍ତିର ଆତ୍ମା ସଂଗେ ସମନ୍ୱୟଭାବ। ତାକୁଇ ସେ ପରେ 'ପୁରୁଷ' କହୁଥିଲେ। ସେଇଥିରୁ ଦ୍ରାବିଡ଼

ସ୍ୱାଦରେ ପୁରୁଷ ଓ ତାହାର ପୁରୁଷୋତ୍ତମ ଶବଦ୍ ହୋଇଥିଲା ଓ ତାକୁଇ ଧରି ଭାରତର ସର୍ବଦର୍ଶନ ପ୍ରଥମେ ସାଂଖ୍ୟଦର୍ଶନରୁ ବିସ୍ତାର ଲାଭ କରିଥିଲା ।

## ସାଂଖ୍ୟଦର୍ଶନରୁ ଭାରତର ସବୁ ଦର୍ଶନ ବିସ୍ତାର ଲାଭ କରିଛି—

ଏଇଠାରେ ଟିକିଏ ସୂଚନା ଦେବାର ଅଛି, ଭାରତର ଦର୍ଶନ ସାଂଖ୍ୟଦର୍ଶନରୁ କିପରି ବିସ୍ତାର ଲାଭ କରିଛି । ସାଂଖ୍ୟଦର୍ଶନ ଅତି ମୌଳିକ । ଏଥିରେ ପୁରୁଷ ଭାବ ପ୍ରଥମେ, ପ୍ରକୃତି-ପୁରୁଷ, ଏଇ ଦୁଇ ଭାଗରେ ଚିନ୍ତା କରାଯାଇଛି । ଏ ଚିନ୍ତାରେ ଦେଖି ବସିଲେ କୌଣସି ସଙ୍ଗତି ଥିଲା ପରି ଲାଗୁ ନାହିଁ । ପିଲାଙ୍କୁ ବୁଝାଇଲା ପରି ଏ ଦର୍ଶନରେ 'ଅଂଧ' 'ପଂଗୁ' ନ୍ୟାୟରେ ବୁଝାଇ ଦିଆଯାଇଛି । ଅର୍ଥାତ୍, ଅଂଧ, ପଂଗୁ ଉପରେ ବସି ବାଟ ଚାଲିଲା ପରି ପୁରୁଷ, ପ୍ରକୃତି ଉପରେ ବସି ଆଜନ୍ମଯାତ ହେଉଛି । ତା' ଛଡ଼ା ନାରୀ ପୁରୁଷପାଖେ ନାନାପ୍ରକାର ଖେଳ ଦେଖାଇ ପୁରୁଷକୁ ଭୁଲାଇଲା ପରି ପ୍ରକୃତି ପୁରୁଷକୁ ବରାବର ଭୁଲାଇବାରେ ଲାଗିଛି । ଏସବୁ ଶିଶୁ ସୁଲଭ ଉପମାନ, ଦାର୍ଶନିକ ପ୍ରକୃତରେ ହୃଦୟଙ୍ଗମ କରିବେ ନାହିଁ । ଏଇଠାରୁ ବିକାଶ ପାଇ ପରେ କିପରି ପ୍ରକୃତି ପୁରୁଷ ଏକ ହୋଇ ସେଥିରୁ ବେଦାଂତ ବାହାରିବ, ତାହା ବୁଝିବା ବଡ଼ କଷ୍ଟ । ଜଗତର ଏଇ ଦର୍ଶନ ଗୋଟିଏ ରହସ୍ୟ । କିଭଳି ଆଦିମ ପୁରୁଷ ଭାବକୁ ଆତ୍ମା ଓ ପ୍ରକାଶ ଏଇ ଦୁଇ ଭାଗରେ ବିଭକ୍ତ କରି ପରେ ଦୁଇଟାଯାକ ମିଶାଇ ଏକ ଆତ୍ମ ଅଛି, ଆଉ କିଛି ନାହିଁ ବୋଲି ଯେତେ ଯୁକ୍ତି କରି କହିଲେ ମଧ୍ୟ ମାନବର ସନ୍ତୋଷ ଆସିବ ନାହିଁ । ତେଣୁ କୁହାଯାଉଛି, ସାଂଖ୍ୟଦର୍ଶନ ହେଉଛି କିଭଳି ପୁରୁଷକୁ ଦୁଇ ଭାଗରେ ବାଂଟି ପ୍ରଥମେ ବିଗ୍ଚାର କରିବା । ତା ପରେ ବେଦର ସବୁ ଦର୍ଶନ ମାନେ ନାନା ଭାବରେ କ୍ରମେ ବେଦାଂତ ତତ୍ତ୍ୱକୁ ଉଠିବା । ଏ ଚିଂତା ସଂଗ୍ରହ କରିବା ବା ସଂଗ୍ରହ କରି ପ୍ରକାଶ କରିବା ବଡ଼ ରହସ୍ୟଜ୍ଞାନ ନୁହେଁ, ତେଣୁ ସାଂଖ୍ୟଦର୍ଶନ ଯେତେ ଶିଶୁ ସୁଲଭ ଯୁକ୍ତି ହେଲେ ମଧ୍ୟ ସେଇଠାରୁ ବୈଦିକଦର୍ଶନ କ୍ରମେ ଶଂକରାଚାର୍ଯ୍ୟଙ୍କ ବେଦାଂତ ପର୍ଯ୍ୟଂତ ଉଠିଛି ।

## ବେଦର ମୌଳିକ ପୂର୍ଣ୍ଣଭାବ ଓ ଶୂନ୍ୟଭାବ ମୂଳତଃ ବୈଦିକ ଭାବଧାରାରୁ ନୁହେଁ— .

ଏହି ହିସାବରେ, ସମସ୍ତ ଭାରତ ଦର୍ଶନ ଆଦିମ ଅସୁରମାନଙ୍କ ସମ୍ପର୍କରେ ଆସି ବୈଦିକମାନେ, ବା ବୈଦିକମାନଙ୍କର ଶାରୀରିକ ଶକ୍ତିରେ ପ୍ରଭାବିତ ଅସୁରମାନେ ଓ କଦାଚିତ୍ ନିଷାଦମାନେ ପ୍ରକାଶ ଓ ପ୍ରଚାର କରିଥିଲେ । ନଚେତ୍, ଯେପରି କୁହାଯାଇଛି, ଆଦିମ ବୈଦିକ ସଭ୍ୟତାରେ ପଶୁ ମାରିବା ଓ ମଦ ପ୍ରଭୃତି ସଙ୍ଗେ ତାକୁ ଦେବତାମାନଙ୍କୁ ଅର୍ପଣ କରିବା ତଥା ନିଜେ ଖାଇବା, ପୁଣି, ଅଂତତ ଶେଷ-ବେଳକୁ ଜାତିଭେଦ ଭର୍ତ୍ତି କରିବା ଛଡ଼ା ଆଉ କିଛି ନଥିଲା । ମାତ୍ର ଗୋଟିଏ କଥା

ଦେଖିବାର ଅଛୁ, ମୌଳିକ ଭାରତୀୟମାନେ ସଂସ୍କୃତର ବା ଧର୍ମର ସବୁ ବିଭାଗର ସମନ୍ୱୟ କରି ନିଜର ଧର୍ମକୁ ଠିକଣା କରୁଥିଲେ । ତେଣୁ ଋକ୍ ବେଦରେ ପ୍ରକାଶ ପାଏ, ଏକ ଦିଗରେ ପୁରୁଷଭାବ, ଅନ୍ୟ ଦିଗରେ "ପହିଲେ କିଛି ନ ଥିଲା ବା ସବୁ ଶୂନ୍ୟ ଥିଲା," ଏଇ ଦୁଇଟିଯାକ ଧାରଣା ବେଦରେ ଆସି ପ୍ରକାଶ ପାଇଥିଲା ।

## ଜୈନଧର୍ମ—

ଏଇ ଦୁଇଟି ଧାରଣା ମଧ୍ୟରୁ ଆଦ୍ୟ ଅନୁଭାବ ହେଉଚି, ପୁରୁଷ ଭାବ ଅର୍ଥାତ୍, ପ୍ରଥମରୁ ସବୁ ପୂର୍ଣ୍ଣ ଥିଲା—ଏଇ ଭାବ । ଅନ୍ୟ ଭାବଟି ହେଉଚି, ମୂଳତଃ ନିଷେଧଭାବ, ଅର୍ଥାତ୍ ସବୁ ଶୂନ୍ୟ ଥିଲା । ଏଇ 'ପୁରୁଷଭାବ' ବା 'ପୂର୍ଣ୍ଣଥିବାଭାବ' ପରେ ଜୈନଧର୍ମ ନାମରେ ବିଶେଷତଃ ଦକ୍ଷିଣ ଭାରତରେ ବହୁ ପ୍ରକାରରେ ପ୍ରମାଣ ପାଇଚି । ଜୈନଧର୍ମର ପରଂପରା କହିଲାବେଳେ, ଏହା ଜୈନଧର୍ମ ଅଧ୍ୟାୟରେ କୁହାଯିବ ।

## ଜୈନଧର୍ମ ଓ ପୁରାଣ—

ଏଇ ଜୈନଧର୍ମର ନାମ ହୁଏତ ପ୍ରଥମେ ଜୈନଧର୍ମ ନ ଥିଲା । ଏହା ପରେ ଜିନ ବା ବିଜେତା ଶବ୍ଦରୁ ଜୈନଧର୍ମ ବୋଲି ସଂସ୍କୃତରେ ନାମ ପାଇଚି । ଖ୍ରୀଷ୍ଟ ସଂଭବ ଖାରବେଳଙ୍କ ପରେ ଏହା ଏଇ ଜୈନଧର୍ମରେ ନାମିତ ହୋଇଥିଲା । କିଂତୁ ଏହାର ପରଂପରା ଆହୁରି ପ୍ରାଚୀନ । ଏଇ ହିସାବରେ ଏହା ଋଷଭଦେବଙ୍କଠାରୁ ବାହାରିଥିଲା । ପୁରାଣ ହିସାବରେ ଏଇ ଋଷଭଦେବ ହିମାଳୟରୁ ଆସି ପୂର୍ଣ୍ଣମାନଙ୍କ ରୂପେ ଏଇ ଧର୍ମ ଶିଖାଇଥିଲେ । ଭାରତର ପୁରାଣ ସବୁ ଏଇପରି କିଂବଦଂତୀମାନଙ୍କୁ ବଡ଼ ସୁଂଦର ଭାବରେ ନିଜର କରି ଆସିଚି ।

## ସମ୍ରାଟ ଭରତ—

ଋଷଭଦେବଙ୍କ ପୁଅ ହେଉଚଂତି ସମ୍ରାଟ ଭରତ । ତାଙ୍କଠାରୁ ଏହି ଭାରତବର୍ଷ ନାମଟି ପ୍ରଥମେ ହୋଇଥିଲା । ପୁଣି ମଧ୍ୟ ହିନ୍ଦୁ ପୁରାଣ ଅନୁସାରେ ଶକୁଂତଳାଙ୍କ ପୁଅ ହେଉଛନ୍ତି ସମ୍ରାଟ ଭରତ । ତାଙ୍କର ନାମ ଅନୁସାରେ ଏହି ଭାରତବର୍ଷର ନାମଟି ହୋଇଛି ବୋଲି ଭାରତୀୟ ହିନ୍ଦୁମାନେ ପ୍ରାୟ ଜାଣନ୍ତି । ଏଇ ଶକୁଂତଳା ପୁଣି ପଶ୍ଚିମ ଅସୁର ଦେଶର ସେମିରାମିସ୍ ରାଣୀଙ୍କ ନାମ ଅନୁସାରେ ଭାରତରେ ପୁରାଣ ସୃଷ୍ଟି କରିଥିଲା । ଏହା ପରେ କୁହାଯାଉଚି ।

## ମାନବର ଏକଭାବ—

ଏହିଠାରେ ଜୈନଧର୍ମ କଥା ଜାଣିବା ପୂର୍ବରୁ ଆମକୁ ଭାରତର ଗୋଟିଏ ଅତି ପ୍ରାଚୀନ ଭାରତୀୟ ଭାବକୁ ଲକ୍ଷ୍ୟ କରିବାକୁ ହେବ । ଏହି ଭାରତୀୟ ଭାବକୁ ସମ୍ପୂର୍ଣ୍ଣ

ଭାରତୀୟ ଆର୍ଯ୍ୟ ବୋଲି କହିବା ଠିକ୍ ନୁହେ । ଏଥିରେ ବ୍ୟାସ ଓ କୃଷ୍ଣଙ୍କ ପରି ଅନାର୍ଯ୍ୟମାନେ ଖୁବ୍ ଭାଗ ନେଇଥିବା ଅନୁମାନ ହେଉଛି । ଏହା ଭାରତର ବିରାଟ ଦର୍ଶନ ଭାବ—ଏହା 'ଆତ୍ମ' ଭାବ ।

ଏଥିରେ ଏକେଶ୍ୱର ଭାବ ଭଳି ଭାବଟି ବିଦେଶରୁ ଆସିଥିବା ଅତି ପ୍ରାଚୀନ ବରୁଣଙ୍କ ଉପାସନାରୁ ଆସିଅଛି । । ଋକ୍‌ବେଦରେ ବରୁଣଙ୍କ ଉପାସନା ଅତି ବିରାଟ ଭାବରେ ପ୍ରକାଶ ପାଇଛି ।

## ଆତ୍ମଭାବ—

ଏହିଠାରେ ଦେଖିବାର ଅଛି, ଏଇ ଭାରତୀୟ ଯେ ହୁଅନ୍ତୁ ସେମାନେ ସମସ୍ତେ ଧର୍ମରେ ମାନବର ସମତ୍ୱ ବା ଏକତ୍ୱକୁ ନିଜର ଆଦର୍ଶ କରିଥିଲେ । ଉପନିଷଦ୍‌ରେ ଏହି ଏକତ୍ୱଭାବ ଅର୍ଥାତ୍ ମାନବ ମାତ୍ରକୁ ଏକକରି ଦେଖିବାର ଭାବ ଖୁବ୍ ଜଣାପଡ଼େ । ଏହି ଏକତ୍ୱଭାବ ହେଉଛି, ଆତ୍ମା । ଏହି ଆତ୍ମା କଥାଟି କୁଆଡ଼ୁ ଆସିଥିଲା ସ୍ପଷ୍ଟ ଜଣାଯାଉ ନାହିଁ । ମାତ୍ର ଖ୍ରୀ:ପୂ: ୯୪ଶ ଶତାବ୍ଦୀରେ ଏହା ପଶ୍ଚିମରେ ମିଶରକୁ ଯାଇ ଇଜିପ୍ଟକୁ ପୂର୍ଣ୍ଣଭାବରେ ପ୍ରଭାବିତ କରିବା କଥା କୁହାଯାଇଛି । ଏଇ ଆତ୍ମାରେ କୌଣସି ମାନବ କରିବା ଭେଦ ଭାବର ଚିହ୍ନ ବର୍ଣ୍ଣ ପର୍ଯ୍ୟନ୍ତ ନାହିଁ । ଏହା ପୃଥିବୀରେ ଅଦ୍ୱିତୀୟ । ଉପନିଷଦର ଏଇ ଭାବ ଗୀତାରେ ପରିସ୍ଫୁଟ ଭାବରେ ପ୍ରକାଶ ପାଇଛି ।

## ପୂର୍ଣ୍ଣଭାବ ବା ପୁରୁଷ ଭାବ—

ତା'ପରେ ଆଉ ଦୁଇଟି ଭାବ—ଗୋଟିଏ କୁହାଯାଇଛି । ପୂର୍ଣ୍ଣଭାବ ବା ପୁରୁଷଭାବ । ଏହା ମଧ୍ୟ ମାତାର ସନ୍ତାନ ଲଭରେ ଯେଉଁ ଆତ୍ମବିଚ୍ଛିନ୍ନ ହୁଏ, ବୋଧହୁଏ, ତାହାରଠାରୁ ସମସ୍ତ ବିଶ୍ୱରେ ଆତ୍ମ ବିସ୍ତାର କରିଛି । ଏହା ମୂଳତଃ ଜୈନଭାବ ବା କ୍ଷଣଭାବ ହେଲେହେଁ ପୂର୍ଣ୍ଣ ଭାରତୀୟ ଭାବ ।

## ଶୂନ୍ୟଭାବ—

ଆଉ ଗୋଟିଏ ଥିଲା ମୂଳତଃ ଶୂନ୍ୟଭାବ । ଏହା ନିଷାଦଙ୍କଠାରୁ ଆସିଥିଲା ବୋଲି ଅନୁମାନ କରାଯାଉଛି । ଶୂନ୍ୟଭାବ ମଧ୍ୟ ପୂର୍ଣ୍ଣ ଭାରତୀୟ ଭାବ । ଏଥିରେ ଆତ୍ମା ନାହିଁ କିଂବା କଣ ଅଛି ତାହା ଜଣାଯାଉ ନାହିଁ । କିଂନ୍ତୁ ଏହା ଯେ ବିଶୁଦ୍ଧ ଭାରତୀୟ ଭାବ ତାହା ଜାଣିବାରେ କୌଣସି ଅସୁବିଧା ନାହିଁ ।

ଅତଏବ ଏଇ ଆତ୍ମାର ପୂର୍ଣ୍ଣ ଓ ଶୂନ୍ୟ ଦୁଇ ଭାଗରେ ଯେଉଁ ଦୁଇଟି ସତ୍ୟ ପ୍ରାଚୀନ ଭାରତରେ ପ୍ରକାଶ ପାଇଲା, ତାହା ଏଇ ଭାରତରେ ମାନବ ମାନବ ମଧ୍ୟରେ

କୌଣସି ପ୍ରଭେଦ କେବେ ରକ୍ଷିଦେଇ ନାହିଁ, ଏଥିରେ ହିନ୍ଦୁ, ମୁସଲ୍‌ମାନ, ଖ୍ରୀଷ୍ଟିୟାନ; ସଭ୍ୟ ଅସଭ୍ୟ, ରଙ୍ଗ ବର୍ଣ୍ଣ କିଛି ମାତ୍ର ନାହିଁ ! ଆତ୍ମା ଯେପରି ନିଷ୍କଳଂକ ନିରଂଜନ, ଏ ପୁରୁଷ ଓ ଶୂନ୍ୟ ଠିକ୍ ସେହିପରି । ମାନବଙ୍କୁ ସମାନ କରି ଦେଖିବାର ଏ ଭାବ ଏବେ ପ୍ରକୃତ ଭାରତୀୟ ଭାବ । ଗୀତାର ସମସ୍ତ ଭାବ ଏକେଶ୍ୱର ବଳରେ ନିବଦ୍ଧ ହେଲେ ମଧ୍ୟ ଏହି ଆତ୍ମା-ଭାବଧାରାରେ ପୂର୍ଣ୍ଣ ବିକାଶ ରୂପେ ବୁଝିବାକୁ ହେବ । ଏଥିରୁ ପୁରୁଷର ପୂର୍ଣ୍ଣଭାବଟି ପୁରୁଷୋତ୍ତମ ରୂପେ ଗୀତାରେ ଓ ଶୂନ୍ୟଭାବଟି ଖ୍ରୀଷ୍ଟ ୭ମ । ୮ମ ଶତାବ୍ଦୀର ଉଡ୍‌ଡ଼ୀୟାନରେ ପୂର୍ଣ୍ଣ ବିକାଶ ପାଇଥିବା ଜଗନ୍ନାଥ ଭାବରେ ସ୍ପଷ୍ଟ ଦେଖା-ପଡ଼େ । ସେଥିପାଇଁ ଉଡ୍‌ଡ଼ୀୟାନର ରାଜା ଇନ୍ଦ୍ରଭୂତିଙ୍କ 'ଜ୍ଞାନସିଦ୍ଧି'ର ପ୍ରଥମ ଶ୍ଳୋକଟି ଦେଖିବାର ଅଛି !

୧ । "ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜ୍ଞାନବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।"

ଅର୍ଥାତ୍—ଏଠାରେ ସେକାଳ ସମ୍ବଲପୁର ଅଂଚଳର ରାଜା ଇନ୍ଦ୍ରଭୂତି ନିଜର 'ଜ୍ଞାନସିଦ୍ଧି' ଗ୍ରଂଥର ପ୍ରାରମ୍ଭରେ ଶୂନ୍ୟଜନ ଓ ବୁଦ୍ଧରୂପୀ ଜଗନ୍ନାଥଙ୍କୁ ପ୍ରଣିପାତ କରି କହୁଚଂନ୍ତି—"ସେ ଜଗନ୍ନାଥ କିଏ ? ସେ ହେଉଚଂନ୍ତି ଶ୍ରେଷ୍ଠ ଜ୍ଞାନ-ମାନଙ୍କର ଅର୍ଚ୍ଚିତ ଓ ସର୍ବବୁଦ୍ଧମୟ । ସେ ହେଉଚାଂନ୍ତି ସିଦ୍ଧିରେ ଆକାଶ ପରିବ୍ୟାପ୍ତ ।"

## ( ୩ ) ଶୂନ୍ୟଭାବର ଧର୍ମ

### ହୈମବତୀ—

କୁହାଯାଇଚି, ନିଷାଦମାନଙ୍କର ଏହି ଶୂନ୍ୟଭାବଟି ଭାରତୀୟମାନେ ମଧ୍ୟ ନିଜ ଧର୍ମରେ ମିଶାଇ ଦେଇଥିଲେ । ତା'ର ନିଦର୍ଶନ ହେଉଚି ୧୦.୧୨୯ ନାସଦୀୟସୂକ୍ତ । କୁହାଯାଇଚି ଠିକ୍ ଏହି ସୂକ୍ତରେ ଅଛି, ସତ୍ ଅସତ୍ କିଛି ନ ଥିଲା ବେଳେ 'କାମ' ପ୍ରକାଶ ପାଇଥିଲା । ସେଇଥିରୁ ସୃଷ୍ଟି ହେଲା । କ୍ରମେ ଏହିକାମରୁ ସୃଷ୍ଟିରେ ନାରୀମୂର୍ତ୍ତି ପ୍ରକାଶ ପାଇଲା । ମାତ୍ର ଏହି ନାରୀମୂର୍ତ୍ତି ସ୍ୱତଂତ୍ରଭାବରେ ପ୍ରକାଶ ପାଇଥିବାର ପ୍ରମାଣ ମିଳେ । ଉପନିଷଦର କେନୋପନିଷଦର ୩ୟ ଖଣ୍ଡରୁ ସେଠାରେ ସୃଷ୍ଟିର ପ୍ରଧାନପୁରୁଷ ଖୋଜିବାକୁ ଯାଇ ଶେଷରେ ଇନ୍ଦ୍ର ଦେଖିଛନ୍ତି ଗୋଟିଏ 'ହୈମବତୀ' ନାରୀମୂର୍ତ୍ତି । ସେଇ ନାରୀ ବ୍ରହ୍ମରୂପେ ଜଗତରେ ମୂଳ ବୋଲି ଋଷିମାନେ ସ୍ଥିର କରିଛନ୍ତି ।

**ଜୈନର ଭାରତୀୟ ସଂସ୍କୃତି ହେଉଚି, ଜୈନର ଆତ୍ମଭାବ ଓ ନିଷାଦୀୟ ଶୂନ୍ୟବାଦ ମିଶି ମହାମାନବର ବିରାଟ ସଂସ୍କୃତି ।**

ତା’ପରେ ଏଇ ନାଗମୂର୍ତ୍ତି ବିକାଶର ବହୁବର୍ଷ ପରେ—ସମ୍ଭବତଃ ସହସ୍ର ବର୍ଷରୁ ଅଧିକ ବର୍ଷ ପରେ—ବରାହମିହିରଙ୍କ ମୂର୍ତ୍ତି କଳ୍ପନାରେ ତିନ ମୂର୍ତ୍ତିରେ ମଧ୍ୟମା ମୂର୍ତ୍ତି ହେଲେ ‘ଏକାନଂ ସା’ । ବରାହମିହିରଙ୍କ ଏଇ ମୂର୍ତ୍ତିମାନ ଲକ୍ଷ୍ନୌ ମିଉଜିୟମରେ ଅଛି । ତା’ପରେ ୪୦୦-୫୦୦ ବର୍ଷ ପରେ ଏବର ଜଗନ୍ନାଥ, ବଳଭଦ୍ର ଓ ତାଙ୍କର ମଝିମୂର୍ତ୍ତି ସୁଭଦ୍ରା, ଅର୍ଥାତ୍, ଏଇପରି ଏକ ନାଗମୂର୍ତ୍ତି ଭାରତ ସଭ୍ୟତାରେ କ୍ରମବିକାଶ ପାଇ ଏବେ ପୁରୁଷୋତ୍ତମର ଭକ୍ତିଧର୍ମରେ ପୂର୍ବ କଳିଙ୍ଗରେ ପ୍ରତିଷ୍ଠିତ ଅଛନ୍ତି । ଏଇ ଭକ୍ତିଧର୍ମ କ୍ରମେ ବୃନ୍ଦାବନଠାରୁ କୋଶଳବାଟେ ସମସ୍ତ ବଙ୍ଗ, ଆସାମ, ନେପାଳ ଓ ତିବ୍ବତରେ ଧର୍ମ ନାମରେ ତାନ୍ତ୍ରିକତାର ଯେ ସ୍ରୋତସ୍ୱିନୀ ଚିଲାଇଥିଲା, ତାହା କହିବା ଦରକାର ନାଇ । ସେଇ ଭାବର ସଙ୍କେତରେ ଆଦିମ ରୂପ ଆଜି ଜଗନ୍ନାଥରେ ମହାପ୍ରସାଦ ରୂପେ ପ୍ରତିଷ୍ଠା ପାଉଅଛି । ଏବେ ବୁଝାଗଲା, ଭାରତର ଆଦିସଂସ୍କୃତି ଜୈନର ଆତ୍ମଭାବ ଓ ନୈଷାଦିକ ଶୂନ୍ୟଭାବ ମିଶି କପଟଭାବରେ ସବୁ ଏକ ବିରାଟମାନବ ସଂସ୍କୃତିରେ ପରିଣତ ହୋଇଥିଲା ।

**ଐକାଂତିକ ଧର୍ମ—**

ଏବେ ଦେଖିବାକୁ ହେବ, ଆଉ ଗୋଟିଏ ଧର୍ମଧାରା ଠିକ୍ ବୈଦିକକାଳ ପରେ ଏପରି କି ବୁଦ୍ଧଭାବ ସମୟରୁ ଭାରତରେ ପଶିଥିଲା । ତାହାର ନାମ ସେ ହେଉଚି, ଐକାଂତିକ ଧର୍ମ । ତାହା ଯେତେଦୂର ସମ୍ଭବ ହୁଏତ ପାରସ୍ୟ ଆଡ଼ୁ ଭାରତକୁ ଆସିଥିଲା । *

ଏଇ ଐକାଂତିକ ଧର୍ମ ଆସିବାବେଳେ ତାହା ଏ ଦେଶର ଅତି ପ୍ରାଚୀନ କୃଷ୍ଣଙ୍କୁ ବା ବାସୁଦେବଙ୍କୁ ଏକମାତ୍ର ଧର୍ମର ଶ୍ରେଷ୍ଠ ବ୍ୟକ୍ତି ବୋଲି ଧରି ନେଇଥିଲା; ତା’ପରେ ମହାଭାରତରୁ ଦେଖାଯାଏ ଏହା ସମସ୍ତ ଦାର୍ଶନିକ ଚିଂତାକୁ ଛାଡ଼ି ସର୍ବୋପରି ଭକ୍ତିଭାବ ପ୍ରଚୁରରେ ଦେଶରେ ବ୍ୟାପିଥିଲା । କିଂତୁ ମହାଭାରତ ଭିତରୁ ଠିକ୍ ପ୍ରମାଣ ମିଳେ ( ବିଶେଷତଃ ଶାଂତି ପର୍ବର ଶେଷ ଅଧ୍ୟାୟମାନ ଦେଖ) ଏଇ କୃଷ୍ଣଂକ ଧର୍ମକୁ କ୍ରମେ ବୋହାଉଥିଲା ଭାଗବତ ବା ଭଗବାନଂକ ଧର୍ମର ନାରାୟଣୀୟ ଧର୍ମ । ଏଇ ନାରାୟଣ ( ହୁଏତ ପ୍ରାଚୀନ ବେଦରେ ଟିକିଏ ଆଭାସରେ ଅଛି ) ମାତ୍ର ଏଇ ସଂବଧରେ ପରେ ବହୁତ ଉପାଖ୍ୟାନ ଦେଶର କଥା ମାନଂକରେ

* ମହାଭାରତ, ବଂଗବାସୀ ସଂସ୍କରଣ; ୩୩୫ ଅଧ୍ୟାୟ ୭ମ ଶ୍ଳୋକ (“ଆଲୋକସ୍ୟାନ୍ତୁତ୍ତର ପର୍ଶ୍ଚିମେନ”…ଦେଖ ) ।

ଫୁଟିଚ । ଏହା ଖୁବ୍ ସଂଭବ ଶ୍ୱେତଦ୍ୱୀପ ଆଜ୍ଞୁ ଭାରତରେ ପରିଣତ । ଏଇ ଉପାଖ୍ୟାନ ମୁଖ୍ୟତଃ ହେଉଚ, ନାରାୟଣ ବା ବିଷ୍ଣୁ (କୃଷ୍ଣ) କ୍ଷୀର ସମୁଦ୍ରରେ ବାସୁକୀ ସାପ ଉପରେ ସେଇ ବାସୁକୀର ସାତ ଫେଣାତଳେ ଶୋଇଚାଂନ୍ତି । ଲକ୍ଷ୍ମୀ, ଧରଣୀ ନାମକ ତାଂକର ଦୁଇଟି ଯୁବତୀ ସ୍ତ୍ରୀ ଗୋଡ଼ ତଳେ ବସି ପାଦ ମଂଗୃଳୁଚାଂନ୍ତି । ଏ ମଧ୍ୟରେ ସେଇ ନାରାୟଣଂକର ପୁତ୍ର ଜନ୍ମ କରିବା ଦରକାର ହେବାରୁ ତାଂକ ନାଭିରୁ ପଦ୍ମ ବାହାରିଲା । (ପଦ୍ମ ଅର୍ଥାତ୍ ଯୋନି) ସେଇ ପଦ୍ମରୁ ତାଂକ ପୁତ୍ର ବ୍ରହ୍ମା ବାହାରି ସେ ଚାରି ମୁହଁରେ ଚାରି ବେଦ ପ୍ରଚାର କରିଥିଲେ । ତା'ପରେ ଏଇ ନାରାୟଣଂକ ଶୋଇବା ଅବସ୍ଥାରେ ମଧୁ, କୈଟଭ ନାମକ ଦୁଇ ଦୈତ୍ୟଂକ ସଂଗେ ସେଇ ନାରାୟଣଂକର ଯୁଦ୍ଧ ହେଲା । ନାରାୟଣ ମଧୁ, କୈଟଭ ଦୁହିଁକୁ ମାରିଦେଲେ ଓ ତାଂକର ମେଦ ବା ମାଂସରେ ଏଇ ମେଦିନୀ ବା ପୃଥିବୀ ସୃଷ୍ଟି ହେଲା । ଏସବୁ ଉପାଖ୍ୟାନ ଚଂଡ଼ୀ ପୁରାଣ ତଥା ଅନ୍ୟାନ୍ୟ ଅନେକ ପୁରାଣରେ ସ୍ଥାନ ପାଇଚ । କ୍ରମେ ଏଥିରୁ ମୌଳିକ କୃଷ୍ଣଂକ କଥା କୁହାହେଉଚ । ଅନ୍ୟସବୁ ଉପାଖ୍ୟାନ ଓ ଉପାଖ୍ୟାନାଂଶ ଭକ୍ତଙ୍କ ମିଥ୍ୟା ବୋଲି ବୁଝିବାକୁ ହେବ । ଏ ମଧ୍ୟରେ ଏଇ ଐକାଂତିକ ଧର୍ମର ପାରଂପାରିକ ଇତିହାସ ଯାହା ମିଳୁଚ, ତାହା ଟିକିଏ ସୂଚନାରେ ଦେଖାଯାଉ ।

## ଉତ୍ତର ବ୍ୟାବିଲନ ବା ଅସୁର ଦେଶ—

ଏଇ ବିଭୂଧର୍ମ ସଂବଂଧରେ ଆଦିମକାଳ ବିଷୟରେ ମୂଳରୁ କୁହାଯାଇଛି "ଏହାର ଫଳରେ ସେ ଯୁଗରେ ଯାହା ହାତେ ଶାସନଦଂଡ଼ ଥିଲା, ସେ ଜୋରକରି ଅନ୍ୟମାନଂକୁ ନିଜ ମତକୁ ଆଣିଚ । ନିଜର ବାହୁବଳରେ ତଥା ଦେବତାଂକୁ ନିଜପକ୍ଷକୁ ଟାଣି ସେ ନିର୍ଲଜ୍ଜପରି ଅନ୍ୟକୁ ଦଂଡ଼ିତ କରିଚ ।" ଦିନେ ଏଇପରି ରାଜଶକ୍ତିର ତଥା ବିଭୂଶକ୍ତିର ଆବିର୍ଭାବ ହୋଇଥିଲା । ଏଇ ପ୍ରଥାର ସ୍ପଷ୍ଟ ନିଦର୍ଶନ ଦେଖିବାକୁ ମିଳେ ଆଜକୁ ପ୍ରାୟ ତିନିହଜାର ବର୍ଷରୁ ଅଧିକ ବର୍ଷ ତଳେ, ସେକାଳର ଉତ୍ତର ଇରାକରେ ଥିବା ଆସିରିଆ ବା ଅସୁର ସାମ୍ରାଜ୍ୟରେ । ଏହା ହେଉଚ ସେକାଳ ଉତ୍ତର ବ୍ୟାବିଲନ । ସେ କାଳେ ଏଇ ସାମ୍ରାଜ୍ୟର ନାମ ଥିଲା— ଅସୁର; ରାଜ୍ୟ ସମ୍ରାଟଂକର ନାମ ଥିଲା—ଅସୁର । ରାଜ୍ୟରେ ଦେବତା ବା ବିଭୂଂକର ନାମ ଥିଲା—ଅସୁର, ଲୋକଂକ ନାମ ଥିଲା—ଅସୁର, ଇତ୍ୟାଦି । ଯେତେଦୂର ମନେ ହେଉଚ, ଯେଉଁ ସମ୍ରାଟଂକଠାରେ ଏହା ସ୍ପଷ୍ଟଭାବରେ ଦେଖିବାକୁ ମିଳେ, ତାହାଂକର ନାମ ହେଉଚ—ଅସୁର ଓ ବାଲଟ୍ । ସେଇ ଦିନଠାରୁ କ୍ରମବୃଦ୍ଧିରେ ତାଂକ ସାମ୍ରାଜ୍ୟ ଓ ତାଂକ କ୍ଷମତା ଗୋଟିଏ ଅତି ବିଚିତ୍ର ପ୍ରକାରରେ ବଢ଼ିଥିଲା । ଲୋକଙ୍କ ଆୟର ଦଶଭାଗରୁ ନଅଭାଗ ସେ କର ନେଉଥିଲେ । ତାଂକ କର ନବା କିଂବା ଅନ୍ୟ କାର୍ଯ୍ୟରେ କେହି ଆପତ୍ତି କରୁଚ କି ନାହିଁ, ସେ ଗୁପ୍ତଚର ରଖି

ତା'ର ଖବର ନେଉଥିଲେ । ଗୁପ୍ତଚରଙ୍କଠାରୁ ଖବର ପାଇଲେ, ସେ ଯେ କୌଣସି ସମାଲୋଚକକୁ ଧରାଇ ଆଣି ଅସୁର ଦେବଙ୍କ ନାମରେ (କାରଣ୍ଟକନା ଅସୁରଙ୍କର ପ୍ରତିମା ନ ଥିଲା) ଜୀଅଂତାରେ ଶୁଳି ଛଡ଼ାଇ ଦେଉଥିଲେ । ଏପରି ଦଂଡ଼ ବିଧାନସବୁ ସେଇକାଳରୁ ଆରଂଭ ହୋଇଥିଲା । ସେଇ ସମୟରୁ ପ୍ରାୟ ଖ୍ରୀଶ୍ଚଣ୍ଡ ବର୍ଷ ପର୍ଯ୍ୟଂନ୍ତ ସେକାଳର ଇଟାପଟା ଲେଖାମାନଂକରୁ ଯେଉଁସବୁ ପ୍ରମାଣ ମିଳୁଚି, ତାକୁ ପଢ଼ିଲେ ଭେଟଣା ଲାଗେ । ଏହାର ବିଶେଷ ବିବରଣ ପାଇଁ ପରେ ଜୈନଧର୍ମ ଦର୍ଶନାଦିର ବର୍ଣ୍ଣନାରେ ଦେଖ । ✻ (୧)

## ଅସୁର ରାଜାଂକ ଅତ୍ୟାଚାର—

ଅସୁର ନାସିର ପାଲଂକ ନିଜ ଲେଖାରୁ ଜଣେ ପଂଡ଼ିତ ଉଦ୍ଧାର କରିଛନ୍ତି— 'ଟେଲେ ନଗର ବଡ଼ ଦୃଢ଼ ଥିଲା—ତିନୋଟି ପ୍ରାଚୀର ଏହାକୁ ଘେରି ରହିଥିଲା । ସେଠାରେ ଲୋକମାନେ ନିଜର ଦୃଢ଼ ସୈନ୍ୟମାନଂକ ଉପରେ ନିର୍ଭର କରୁଥିଲେ । ସେମାନେ ମୋ ଗୋଡ଼ତଳେ ପଡ଼ିବାକୁ ବାହାରି ନଥିଲେ । ମୁଁ ଯୁଦ୍ଧକରି ସେମାନଂକୁ ମାରି ଦେଇଥିଲି, ସେ ସହରକୁ ଆକ୍ରମଣ କରି ଅଧିକାର କରିଥିଲି । ତିନିହଜାର ସେନାଙ୍କୁ ମୁଁ ଯୁଦ୍ଧରେ ମାରି ଦେଇଥିଲି । ତାଂକର ଲୁଟି ଓ ଅଧିକାର ସହ ଗାଈ ଗୋରୁ, ମେଂଢ଼ା ମୁଁ ନେଇ ଆସିଥିଲି । ଅନେକ ବଂଦୀଂକୁ ନିଆଁରେ ପୋଡ଼ି ଦେଇଥିଲି । ସେଇ ସୈନ୍ୟମାନଂକ ଭିତରୁ ଅନେକଂକୁ ମୁଁ ଜୀବିତ ଅବସ୍ଥାରେ ଧରିନି ଆସିଥିଲି । ସେଥିରୁ କେତେକଂକ ହାତ ଗୋଡ଼ ସବୁ କାଟି ଦେଇଥିଲି ଓ ଆଉ କେତେକଂକ ନାକ ମଧ୍ୟ କାଟି ଦେଇଥିଲି । ଅନେକ ସୈନ୍ୟଂକ ଆଖି ତାଡ଼ି ଦେଇଥିଲି । ମୁଁ ଗଛମାନଂକରେ ତାଂକ ସହର ଭିତରେ ତାଂକ ମୁଂଡ଼ସବୁ ଟାଂଗି ଦେଇଥିଲି । ତାଂକ ପିଲା ବାଳକ ବାଳିକାମାନଙ୍କୁ ମୁଁ ନିଆଁରେ ପକାଇ ପୋଡ଼ି ଦେଇଥିଲି । ମୁଁ ସେ ସହରକୁ ନାରଖାର କରି ଦେଇଥିଲି । ଘରସବୁ ତାଡ଼ି ଦେଇଥିଲି, ନିଆଁରେ ପୋଡ଼ି ଦେଇଥିଲି—ମୁଁ ତାକୁ ଧ୍ୱଂସ କରି ଦେଇଥିଲି । (D. A. Mackenzie—Myths of Babylonia and Assyria—P. 399.

---

✻ (୧) D. A. Mackenzie's Myths of Babylonia & Assyria—P.399 ଦେଖ । (୨) ତା'ଛଡ଼ା ଏଇ ବିଷୟରେ ଐତିହାସିକ H.R. Hallଙ୍କ Ancient History of the Near East—7th edition—P. 445ରେ ଏଇ ଅସୁର ଅତ୍ୟାଚାର ବିଷୟକ ଯଥାର୍ଥ ଐତିହାସିକ ବିବରଣୀ ଦେଖ ।

## ଅନ୍ୟ ଜଣେ ଐତିହାସିକ ପଂଡ଼ିତଙ୍କ ବର୍ଣ୍ଣନା—

ଏହି ବିଷୟରେ ଐତିହାସିକ H. R. Hall, Ancient History of the Near East—7th Edition, P. 415ରେ ସେହି ଅସୁରମାନଂକ ସବଂଧରେ ଲେଖିଛଂତି—"ନୂତନ ବିଜେତା କେବଳ ଯୁଦ୍ଧ ବିଶାରଦ ନ ଥିଲେ । ସେ ଏପରି ନିଷ୍ଠୁର ଓ କାହାରିକୁ ନ ଛାଡ଼ିବା ବାଲା ଥିଲେ ଯେ ସମସ୍ତ ବିରୋଧିକୁ ନିର୍ମମଭାବେ ବାରବାର ଧ୍ୱଂସ କରୁଥିଲେ । କୌଣସି ମାନବୀୟ କରୁଣା ତାଂକ ହୃଦୟରେ ନ ଥିଲା । ପରାଜିତ ହୋଇଥିବା ଲୋକଂକୁ ଦଳି ଚକଟି ଦେବାରେ କେତେଗୁଡ଼ିଏ ପିଂଢ଼ି ପର ସେ ବିଗିଡ଼ୁଥିଲେ । ସେତିକି ନୁହେଁ, ଏଇ ଅମାନୁଷ ବ୍ୟବହାରରେ ସେ ବଡ଼ ଆତ୍ମପ୍ରମାଦ ଲଭ କରୁଥିଲେ । ତାଂକ ମତ ବିରୁଦ୍ଧରେ ଯେ ଯାଉଥିଲା, ତାହା ଉପରେ ବଡ଼ ନିଷ୍ଠୁର ହେଉଥିଲେ । ସେ ସାଧାରଣତଃ କୌଣସି ବିରୁଦ୍ଧ ସହର ଅଧିକାର କରିବାରେ ତାଂକର ପ୍ରଥମ କାର୍ଯ୍ୟଥିଲା ତାକୁ ପୋଡ଼ିଦେବା ଓ ତା' ପରେ ସେଠାର ସମସ୍ତ ମନୁଷ୍ୟଙ୍କୁ ବଂଦୀ କରି ତାଂକର ହାତ ଓ କାନ କାଟିଦେଇ ଖଂଡ଼ିଆ କରିଦେଇ ତାଂକ ଆଖି ତାଡ଼ିଦେବା—ତାହା ପରେ ତାଂକୁ ଗଦା ଗଦା କରି ଜମା କରିଦେବା । ସେଥିରେ ଯେଇ ନିଷ୍ଠୁରତାରେ ସେମାନେ ଖର, ମାଛି, ଆଉ ସେମାନଂକ କ୍ଷତ ଓ ଅଣନିଶ୍ୱାସରେ ମରୁଥିଲେ । ମାଇକିନିଆ ମରଦ ପିଲାମାନେ ଜୀଅଂତାରେ ପୋଡ଼ା ହେଉଥିଲେ । ଆଉ ସେ ସହରର ଯେ ନାୟକ ଥିଲେ ସେ ଆସିରିଆକୁ ଅଣା ହେଉଥିଲେ—ରାଜାଂକ ଆନଂଦ ଓ କୌତୁକ ପାଇଁ ତାକୁ ଜୀଅଂତାରେ ଛାଲ ଛଡ଼ାଇ ଦିଆ ହେଉଥିଲା ।

## ଅସୁର ଓ ମର୍ଦୁକ—

ଏଇ ଅସୁର ରାଜ୍ୟର ଦକ୍ଷିଣକୁ ସମୁଦ୍ରକୂଳ ଭାଗଟି ହେଉଛି, ବ୍ୟାବିଲନ ରାଜ୍ୟ । ଏହା ବହୁକାଳରୁ ସଭ୍ୟ ଓ ଶିକ୍ଷିତ ରାଜ୍ୟ ଥିଲା । ଅସୁର ରାଜ୍ୟ ଓ ଅସୁରଦେବ ଏଇ ବ୍ୟାବିଲନ ଓ ସେଠାର ଦେବତା ମର୍ଦୁକ (ଉଚ୍ଚାରଣରେ ମେଜଦା) ଠାରୁ ବିକାଶ ପାଇଥିଲେ । ସେ କାଳରେ ସେ ଅଂଚଳରେ ସେଇ ଥିଲେ ଏକପ୍ରକାର ସଭ୍ୟତାର ପ୍ରତୀକ । ଏଇ ମର୍ଦୁକ କୁଳର ବ୍ୟାବିଲନ ରାଜ୍ୟକୁ ବା ବ୍ୟାବିଲନର ସଭ୍ୟତାକୁ ଅସୁରମାନେ ସହୁ ନଥିଲେ । ତେଣୁ ଆଜକୁ ଛଅହଜାର ବର୍ଷ ତଳେ ବା ତାହାର ପାଖାପାଖି ସମୟରେ କେତେବେଳେ ମର୍ଦୁକ ବ୍ୟାବିଲନ ସଭ୍ୟତା ଘେନି ସମସ୍ତ ଅସୁରଦେଶ ଓ ବ୍ୟାବିଲନ ଦେଶ ପୁଣି କେତେବେଳେ ଅସୁର ସଭ୍ୟତା ଘେନି ସେ ସମସ୍ତ ଭୂଖଂଡ଼ଟି ପ୍ରଭାବିତ ହେଉଥିଲା ।

## ଅହୁର—ମେଜଦା—

ଏଇପରି ପରିସ୍ଥିତିରେ ସେ କାଳେ ଅସୁର୍ ଦେଶର ଲଗାଲଗି ଜାଗାରେ ପୂର୍ବ ଆଡ଼କୁ ପାରସ୍ୟରେ ମିଡ଼ସ୍ ଜାତୀୟ ଜଣେ ଆର୍ଯ୍ୟ ବାହାରି ପଡ଼ିଥିଲେ । ଈଶ୍ୱର ମନୁଷ୍ୟରୂପେ ବାହାର ମନୁଷ୍ୟ ଭିତରେ ସତ୍ୟ ସମାଚାର ପ୍ରଚାର କରିବାରେ ଯେଉଁ ବଦ୍ଧମୂଳ ସଂସ୍କାରଟି ବରାବର ରହି ଆସିଛି, ଇତିହାସରେ ତାର ମୂଳ ମିଳେ ଏଇଠାରେ । ସେଇ ମିଡ଼ସ୍ ଜାତୀୟ ଆର୍ଯ୍ୟଟିର ନାମ ହେଉଛି, 'ଜାରାଥୁ ଷ୍ଟ୍ର' (ଅର୍ଥାତ୍ ଜାର୍ ବୋଇଲେ ହଳଦିଆ, ଉଷ୍ଟ୍ର ବୋଇଲେ ଓଟ ଯାହାର) । ସେଇ ଜାରାଥୁଷ୍ଟ୍ର ପ୍ରଥମେ କହିଲେ, ଅସୁର ଆଉ ମର୍ଦୁକ ଯୋଡ଼ାଏ ଈଶ୍ୱର ନୁହଁନ୍ତି । ଈଶ୍ୱର ହେଉଛନ୍ତି ଗୋଟାଏ । ସେ ହେଉଛନ୍ତି, ଅସୁର ମର୍ଦୁକ ବା ଅହୁର-ମେଜ୍ଦା ( ତତ୍କାଳୀନ ପାରସ୍ୟ ଉଚ୍ଚାରଣରେ ) ।

## ଏକେଶ୍ୱରବାଦ—

ଯେଉଁ ଏକେଶ୍ୱରବାଦରେ ଅନେକ ଖ୍ରୀଷ୍ଟଧର୍ମ ପ୍ରଚାରକ ଅନ୍ୟକୁ ସମାଲୋଚନା କରନ୍ତି, ସେଇ ଏକେଶ୍ୱରବାଦ ନାମକ ବଦ୍ଧମୂଳ ସଂସ୍କାରର ପ୍ରଥମ ଉଦ୍ଭବ ଏଇଠାରେ ।

## ଆର୍ଯ୍ୟ କଥାଟିର ଅର୍ଥ—

ଏଇଠାରେ ମଧ୍ୟ ଆର୍ଯ୍ୟ କଥାଟିର ଯଥାର୍ଥ ଅର୍ଥ ବିଷୟରେ ଦୁଇକଥା କହିଦେବା ଉଚିତ । ମିଡ଼ସ ବୋଲି ଆର୍ଯ୍ୟଙ୍କ ଭିତରେ ପଶ୍ଚିମୋତ୍ତର ପାରସ୍ୟରେ ଗୋଟିଏ ଜାତି ଥିଲେ । ଆଜି ଏଇ ଆର୍ଯ୍ୟ ବୋଇଲେ ପୃଥିବୀ ବୁଝେ, ଏକପ୍ରକାର ଜାତି, ଯାହାକୁ କି ୟୁରୋପଠାରୁ ଭାରତୀୟ ଆର୍ଯ୍ୟ ପର୍ଯ୍ୟନ୍ତ ସମସ୍ତଙ୍କୁ ବୁଝିବାକୁ ହୁଏ । ରୁଷି ଆଉ ସ୍କାଣ୍ଡେନେଭିଆଙ୍କଠାରୁ ଆସାମୀମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଏଇ ଆର୍ଯ୍ୟ ଜାତିରେ ଯାଉଛନ୍ତି । ଏ ଗୋଟିଏ ରକ୍ତଗତ ଜାତି, ଯାଙ୍କୁ ପ୍ରଥମେ ପ୍ରଥମେ ଅଷ୍ଟାଦଶ ଶତାବ୍ଦୀରେ କହିବାକୁ ଆରମ୍ଭ କରିଥିଲେ, ଇଣ୍ଡୋ-ଜର୍ମାନିକ୍ (Indo-Germanic) ଜାତି, ଅର୍ଥାତ୍ ଭାରତୀୟ-ଜର୍ମାନି ଜାତି । ତା' ପରେ କହିଲେ ଇଣ୍ଡୋ-ଇଉରୋପିଅନ୍ (Indo-European) ଜାତି । କିନ୍ତୁ ଯଥାର୍ଥରେ ବହୁକାଳରୁ ଆର୍ଯ୍ୟ ବୋଇଲେ କଥାଟି ଭାରତରେ ବହୁ ଭିନ୍ନ ଭିନ୍ନ ଅର୍ଥରେ ପ୍ରୟୋଗ ହୋଇ ଆସି ଏବେ ଆର୍ଯ୍ୟ ବୋଇଲେ ମାନନୀୟ ବା ସମ୍ମାନାସ୍ପଦ ଅର୍ଥରେ ଚଳୁଛି । ଯଥାର୍ଥରେ ଏହା ଗୋଟିଏ ଦ୍ରାବିଡ଼ ଶବ୍ଦ । ଏହାର ଠିକ୍ ଅର୍ଥଟି ହେଉଛି, ମୂଳତଃ rare (ଅର୍ଥାତ୍, ଲକ୍ଷକେ ଜଣେ ବା ବହୁତ ଲୋକରେ ଜଣେ) । ଗତ କୋଡ଼ିଏ ବର୍ଷ ଭିତରେ ସ୍ୱର୍ଗତ ରେଭରେଣ୍ଡ୍ ହେରାସ୍ ପ୍ରାଚୀନ ଦ୍ରାବିଡ଼ ଭାଷାର ଅନୁସନ୍ଧାନ ଫଳରେ ଏଇ ଅର୍ଥଟି ବାହାର

କରିଚନ୍ତି । ଏହାର ଉଚ୍ଚାରଣଟି ହେଉଛି, 'ଅର୍ୟ୍ୟ' । ବୁଦ୍ଧ ଏଇ ଅର୍ଥରେ ନିଜ ଧର୍ମକୁ 'ଅର୍ୟ୍ୟ' ଧର୍ମ ବା ଆର୍ଯ୍ୟ ଧର୍ମ ବୋଲି କହୁଥିବା କଥା ହେଗ୍ରାସ ସାହେବ କହନ୍ତି । ଏହା ମାନବ ସମାଜରେ କୌଣସି ରକ୍ତଗତ ସମ୍ପର୍କର ସଙ୍କେତ ନ ଥିଲା ।

## ପାଲେଷ୍ଟାଇନ—ଜିଉଜ ଓ ଜିହୋଭା—

କିନ୍ତୁ ମିଡ୍‌ସ୍ ଜାରଥ୍ରୁଷ୍ଟ୍ରଙ୍କୁ ଯେ ଆର୍ଯ୍ୟ ବୋଲି କୁହାଯାଇଛି, ଯେତେଦୂର ମନେହୁଏ, ସେ ଆର୍ଯ୍ୟ ଶବ୍ଦଟି ହେଉଛି, ରକ୍ତଗତ ସମ୍ପର୍କର ସଙ୍କେତ । ଏଇ ଜାରଥ୍ରୁଷ୍ଟଙ୍କ ଅହୁର ମେଜଦା ସେ କାଳରୁ ହେଲେ ଏକମାତ୍ର ଏକେଶ୍ୱର । ତାର ଅଳ୍ପଦିନ ପରେ ସିରସ୍ (କୁରୁଷ୍) ପ୍ରଭୃତି ପାରସ୍ୟର ଆକ୍‌ମେନିଆନ୍ ସମ୍ରାଟମାନଙ୍କର ବିରାଟ ପାରସ୍ୟ ସାମ୍ରାଜ୍ୟ । ପାଲେଷ୍ଟାଇନ୍ ବୋଲି ଗୋଟିଏ ରାଜ୍ୟ ପଶ୍ଚିମ ଆରବରେ ସମୁଦ୍ରକୂଳ ଆଡ଼କୁ ଥିଲା । ସେଠାରେ ବହୁକାଳରୁ ଜିଉଜ୍‌ମାନେ ବାସ କରୁଥିଲେ । ଏଇ ଜିଉଜ୍‌ମାନେ ଗୋଟିଏ ବଡ଼ ଅଭିମାନୀ ଜାତି । ଏମାନେ ଏବେ ମଧ୍ୟ ମନେ କରନ୍ତି, ସେମାନେ ଈଶ୍ୱରଙ୍କର ଅତିପ୍ରିୟ ଜାତି । ସେଇ ପାଲେଷ୍ଟାଇନର ଜିଉଜମାନେ ଏଇ ଆସିରିଆ ସାମ୍ରାଜ୍ୟକୁ ବନ୍ଦୀ ହୋଇ ଆସିଥିଲେ । ସମ୍ରାଟ୍ ସିରସ୍‌ଙ୍କ ଅମଳରେ ଏମାନେ ବହୁ ଅନୁନୟ ବିନୟ କରି ନିଜ ଦେଶକୁ ଫେରିଯିବାର ଅନୁମତି ପାଇଥିଲେ । କିନ୍ତୁ ସିରସଙ୍କ ଜୀବଦ୍ଦଶାରେ ସେମାନେ ଯାଇପାରି ନ ଥିଲେ । ସିରସଙ୍କ ପରେ ସମ୍ରାଟ ଦେରାୟୁସ ତାଂକୁ ମୁକ୍ତି ଦେଲେ । ସେ ନିଜ ଦେଶ ପାଲେଷ୍ଟାଇନ୍‌କୁ ଯାଇ ସେଠାରେ ନିଜର ଜିଉଂକ ସାଂପ୍ରଦାୟିକ ଦେବତା ଜିଉହେଂକୁ କ୍ରମେ ଜିହୋଭା ବୋଲି ନାମ ଦେଇ ବିଶ୍ୱର ବୃହତ୍ତମ ଈଶ୍ୱର ବୋଲି ପୂଜା କରିବା ଆରମ୍ଭ କରିଦେଲେ । ଏହା ଠିକ୍ ପାରସ୍ୟର ଅହୁର ମେଜଦାର ଅନୁକରଣରେ ।

## ଯିଶୁଖ୍ରୀଷ୍ଟ, ଆଲ୍ଲା ଓ ତାଙ୍କ ଦୂତ ମହମ୍ମଦ—

ଏ ମଧ୍ୟରେ ପାରସ୍ୟ ସାମ୍ରାଜ୍ୟର ପତନ ଆରମ୍ଭ ହେଲା । କ୍ରମେ ସେ ସାମ୍ରାଜ୍ୟଟି ଖଂଡ ଖଂଡ ହୋଇଗଲା । ଏଣେ ଜିହୋଭା ବଢ଼ି ବଢ଼ି ପରବର୍ତ୍ତୀକାଳରେ ଈଶ୍ୱରଂକ ପୁତ୍ର ରୂପେ ଅବତୀର୍ଣ୍ଣ ହୋଇଥିବା ଯିଶୁଖ୍ରୀଷ୍ଟଂକ ପିତାରୂପେ ପ୍ରତିଷ୍ଠିତ ହେଲେ ଓ ତାଙ୍କ ନାମରେ ବାଇବେଲ ସର୍ବ୍ୱସମାଜରେ କ୍ରମେ ପ୍ରକାଶ ପାଇଲା । ଠିକ୍ ଏହାର ଅନୁକରଣରେ ୭୨୨ ଖ୍ରୀଷ୍ଟାବ୍ଦ ବେଳକୁ ପ୍ରକାଶ ପାଇଲେ ଏଇ ଜିହୋଭାକୁ ଆଲ୍ଲା ଓ ଖ୍ରୀଷ୍ଟଙ୍କ ଏଇ ଯିଶୁ ଭଳି ଆଲ୍ଲାଂକ ପୟୋଗଂବର ବା ଦୂତ ମହମ୍ମଦ ।

## ଦେବ ଓ ଅସୁର—

ଏଆଡ଼େ ଏଇ ଧର୍ମପୀଠ ପାରସ୍ୟରୁ ସ୍ପଷ୍ଟ ଭାବରେ ବାହାରି ଥିଲା ଭାରତର ସବୁ ଭକ୍ତିଧର୍ମ ବା ବୈଷ୍ଣବଧର୍ମ । ସମସ୍ତେ ଜାଣଂତି, ଭାରତୀୟ ବୈଦିକ ଆର୍ଯ୍ୟଂତୁକମାନେ

ବହୁକାଳରୁ ଅସୁରମାନଙ୍କ ବିଶ୍ୱାସକଲାପରେ ବଡ଼ ବିମୁଖ ପାଉଥିଲେ । ସେମାନେ ଅସୁରଭକ୍ତ ଦେବତାମାନଙ୍କୁ ପ୍ରଥମେ 'ମହେଦ୍ଦେବାନାମସୁରତ୍ୱମେକଂ' ବୋଲି ସମାନ ଆସନ ଦେଉଥିଲେ । ପୁଣି ଦେବତାଙ୍କୁ ଆପଣାରଂ କରି ପ୍ରୀତ କରିବାର ମଧ୍ୟ ତାଂକର ଅନ୍ୟ ଉପାୟ ଥିଲା । ସେମାନେ ଇଂଦ୍ର, ଅଗ୍ନି, ବରୁଣ ପ୍ରଭୃତିଙ୍କୁ ସାଙ୍ଗରେ ଖାଇବାକୁ ଡ଼ାକୁଥିଲେ ଓ ସେଇ ହିସାବରେ ତାଙ୍କୁ ପ୍ରୀତ କରୁଥିବାର ବହୁ ପ୍ରମାଣ ଅଛି ଓ ସେଇ ଭାବରେ .ସେମାନଙ୍କୁ ଧରି ଶତ୍ରୁ ସାଧନ କରୁଥିବାର କମ୍ ପ୍ରମାଣ ନାଇ । କିଂତୁ ମନେ ହେଉଛି, ଯେନେ ଅସୁରମାନଙ୍କୁ ଏଇ ଭାବରେ ସେମାନେ ହୀନ ଦେଖୁଥିଲେ । କ୍ରମେ କ୍ରମେ ଅସୁରଂକ ପ୍ରତି ବିଦ୍ୱେଷଭାବ ହେଇ ବୈଦିକମାନଙ୍କର ଜାତ ଉଠିଲା । ଏଇ ବିଦ୍ୱେଷଭାବ କାଳକ୍ରମେ ପୁରାଣାଦିରେ ବହୁ ପ୍ରକଟିତ ହେବାର ଦେଖାଯାଏ । ଏଇ ଅସୁରମାନଙ୍କର ମୂଳଥିଲା, ଅବଶ୍ୟ ପଶ୍ଚିମ-ପାରସ୍ୟବାସୀ ଅସୁର ବା ଅସୁର ସମ୍ରାଟଙ୍କ ସଙ୍ଗେ । ମାତ୍ର କାଳକ୍ରମେ ଏହା ଯେ କୌଣସି ଦେବ ବିରୋଧୀଙ୍କ ସମ୍ବନ୍ଧରେ ପ୍ରକାଶ ପାଇଲା । ଏପରି କି ଏ ଦେଶର ମଧ୍ୟ ଯେଉଁ ଅନାର୍ଯ୍ୟ ରକ୍ତପିପାସୁଂକ ସଙ୍ଗେ ଆର୍ଯ୍ୟମାନେ ସଂଘର୍ଷରେ ଆସିଥିଲେ, ସେମାନଙ୍କୁ ମଧ୍ୟ ଏଇ ଅସୁର ଆଖ୍ୟା ଦେଇଥିଲେ ।

## ପୃଥିବୀର ଧର୍ମମୂଳ—

ଏଠାରେ ଅସୁର ଯେପରି ବୈଦିକ ଦେବ ଶତ୍ରୁ ସେଇ ପାରସ୍ୟର ପ୍ରାଚୀନ ଧର୍ମ ଶାସ୍ତ୍ରରେ ଅଡନ୍ତୁର ଓ ଅହିତକାଂକ୍ଷୀ ବ୍ୟକ୍ତି ରୂପେ ଦେଖାଯାଏ । ଏଇ ପାରସ୍ୟ ଧର୍ମରେ ଦେବ ଅର୍ଥରେ ଏହା ସେକାଳେ ପ୍ରଚଳିତ ଥିଲା । ଏଇପରି ଦେବାସୁରର ଭେଦ ବହୁ ଆଦିମକାଳରୁ ଏଇ ଦକ୍ଷିଣ-ଆସିଆଖଂଡ଼ରେ ଚାଲି ଆସୁଅଛି ।*

ବାସ୍ତବରେ ପୃଥିବୀର ଧର୍ମମୂଳ ଏଇଠାରେ । ବୈଷ୍ଣବ ଧର୍ମ ବିଷୟରେ ଏଠାରେ କିଛି କହିବା ଅସଙ୍ଗତ ନୁହେ, ବରଂ ସୁଂଦର ହେବ ।

## (୪) ବୈଷ୍ଣବ ଧର୍ମର କଳା—

ଦେଖାଯାଏ, ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀବେଳକୁ ବାସୁଦେବ ଓ ଶଂକର୍ଷଣ ନାମକ ଦୁଇଦେବଂକୁ ଭାରତର ଦ୍ୱାରକା ଅଂଚଳରେ ପୂଜା କରିବା ଆରଂଭ ହୋଇଥିଲା । Naganika ଶିଳାରେଖା ଦେଖ (Bhandarkar) । ଏହାର ବହୁପୂର୍ବରୁ ଆମର ଶ୍ରୀମଦ୍ ଭଗବତ୍ ଗୀତା । ଭଗବତ୍ ଗୀତାରେ ସ୍ପଷ୍ଟ ଅଛି, 'ବାସୁଦେବଃ ସର୍ବମିତି, ସମହାତ୍ମା ସୁଦୁର୍ଲଭଃ' (୭ମ ଅଧ୍ୟାୟ, ୧୯ଶ ଶ୍ଳୋକ) ଅର୍ଥାତ୍, 'ବାସୁଦେବ ସବୁ, ଏଇପରି ଅନୁଭବ କରୁଥିବା ମହାତ୍ମା ବିଶ୍ୱରେ ଅତ୍ୟଂତ ଦୁର୍ଲଭ । ସେତେବେଳକୁ ଖୁବ୍ ସଂଭବ କେବଳ ବାସୁଦେବଂକ ଉପାସନା ପ୍ରତିଷ୍ଠିତ ଥିଲା ।

---

* Story of Nations ଗ୍ରନ୍ଥମାଳାର Media ଗ୍ରନ୍ଥ ଖଂଡ଼ ଦେଖ ।

ଏଇ ବାସୁଦେବ ପୂଜା ପ୍ରଥମେ ମହାଭାରତରେ ଶାନ୍ତିପର୍ବ ଶେଷ ଅଠର ଅଧ୍ୟାୟ ନାରାୟଣୀୟ ଉପାଖ୍ୟାନରେ ପ୍ରଥମେ ବାସୁଦେବ ବା କୃଷ୍ଣ ଓ ତାଙ୍କର ଅବତାର-ମାନଂକୁ ଯେନ ପ୍ରକାଶ ପାଇଛି । ଏଇ ଅବତାରବାଦ ଭାରତରେ ଆଗଂତୁକ କିଂବା ଭାରତରୁ ଅନ୍ୟ ଦେଶକୁ ଯାଇଚ, ତାହା କହିବା ବଡ଼ କଷ୍ଟ ହେଲେ ମଧ୍ୟ ଏହାର ମୂଳ ବହୁଦୂରରେ ।

## ଭାଗବତ ଧର୍ମର ପରଂପରା—

ଏଇ ନାରାୟଣୀୟ ଧର୍ମ ବା ଭାଗବତ ଧର୍ମଟି ପ୍ରଥମେ ଆସିଲା ନାରଦଂକ ଦ୍ୱାରା ଭାରତବର୍ଷକୁ । ସେଇ ଉପାଖ୍ୟାନରେ, କଥାଅଛି, ନାରଦ ପ୍ରଥମେ ବଦରିକା ଆଶ୍ରମରେ ନର ଓ ନାରାୟଣ ଦୁହିଁଙ୍କୁ ତପସ୍ୟା କରିବାର ଦେଖିଲେ । ଏଇଠାରେ ସ୍ପଷ୍ଟ ଜଣାଯାଏ ଏଇ ତପସ୍ୟା ଭାବଟି ପ୍ରାଚୀନ ବୈଦିକ ବା ଆର୍ଯ୍ୟଭାବ ନୁହେ । କୃଚ୍ଛ୍ର ଅଭ୍ୟାସର ଏଇ ତପସ୍ୟା ଅନ୍ୟ କୌଣସି ସଂସ୍କାର (ହୁଏତ ପ୍ରାଚୀନ ଜୈନ ସଂସ୍କାର)ରୁ ଆସି କ୍ରମବର୍ଦ୍ଧିଷ୍ଣୁ ଭାବରେ ଏଇ ଭାରତ ସଂସ୍କାର ଓ ସଭ୍ୟତାରେ ପ୍ରବେଶ କରିଥିବାର ପ୍ରମାଣ ଏଇଠାରେ ସ୍ପଷ୍ଟ । ତା' ନ ହେଲେ, ବେଦଧର୍ମରୁ ବା ପଶୁ ହାଣି ତା'ଂ ସଂଗେ ସୋମରସ ପ୍ରଭୃତି ଦେବତାଂକୁ ପୂଜା କରି ଯଜ୍ଞ ଦ୍ରଭୃତରେ ଦେବତାଂକୁ ଆରାଧନା କରି ଫଳ ପ୍ରାପ୍ତି ଆଶା କରିବାର ଯେଉଁ ଯଜ୍ଞଧର୍ମ ଭାରତର ନିଜ ଧର୍ମ ଥିଲା ବୋଲି ଆମମାନଂକୁ ବୈଦିକ ସାହିତ୍ୟରୁ ପ୍ରମାଣ ମିଳେ, ସେ ଧର୍ମରେ ଏଇ କୃଚ୍ଛ୍ର ସାଧନାଗତ ତପସ୍ୟା ଅଂଗାଂଗୀ ଭାବରେ ପ୍ରବେଶ କରିବା ବଡ଼ ସହଜ ବୋଲି ମନେ ହେଉନାଇ । ନରନାରାୟଣଂକୁ ଏଇ ତପସ୍ୟାରେ ପ୍ରବୃତ୍ତ ଦେଖି ନାରଦ ବିସ୍ମିତ ହୋଇ ପଚାରିଲେ, "ଆପଣଂକର କଣ ଅଭାବ ଅଛି ଯେ, ଆପଣ ପୁଣି ତପସ୍ୟାରେ ଉପାସନା କରୁଚନ୍ତି ?" ହେଠାରୁ ନରନାରାୟଣ କହିଲେ, "ଆପଣ-ଶ୍ୱେତଦ୍ୱୀପକୁ ଆସନ୍ତୁ । ସେଠାରେ ଆମେ ସବୁ ବୁଝାଇ କହିବୁ ।" ଏହା କହି ସେମାନେ ଅଂତର୍ଧାନ ହୋଇଗଲେ ।

## ନରନାରାୟଣ—

ବୋଧହୁଏ, ଶ୍ୱେତଦ୍ୱୀପର ଯେଉଁ ସଂକେତ ସେମାନେ ଦେଇ ଯାଇଥିଲେ, ସେଥିରେ ନାରଦ ଆକାଶକୁ ଉଠି ଉତ୍ତର ପଶ୍ଚିମ * ଦିଗକୁ ଗୁହିଁ ସେଇ ଆଡ଼କୁ ଗଲେ ଓ ସେ ଆଡ଼େ ଶ୍ୱେତଦ୍ୱୀପରେ ପହଞ୍ଚିଲେ । ଏଇ ଶ୍ୱେତଦ୍ୱୀପରେ ବଡ଼ ଅଦ୍ଭୁତ କଥା ସବୁ ଦେଖିଲେ । ନାରଦ ଦେଖିଲେ, ଶ୍ୱେତଦ୍ୱୀପର ଲୋକେ ବର୍ଣରେ ଶୁଭ୍ର ଓ ନିଷ୍କଳଂକ । ସେମାନେ କିଛି ଖାଆଂନ୍ତି ନାହିଁ । ଅର୍ଥାତ୍ ସେମାନଙ୍କର କିଛି

* ମହାଭାରତ (ବଂଗବାସୀ ସଂସ୍କରଣ)—୩୩୫ ଅଧ୍ୟାୟ ଶ୍ଳୋକ ୭ ।

ଇଂଢ଼ାଶକ୍ତି ନାଇ । ସେମାନଂକ ଶରୀର ପରି ତାଂକ ମନ ମଧ୍ୟ ନିର୍ମଳ ଇତ୍ୟାଦି ଅଚଂଚିନ୍ତ ପୂର୍ବ ଘଟଣା ସବୁ ତାଂକୁ ଦେଖିବାକୁ ମିଳିଲା ।

## ଉପରିଚର ବସୁ—

ଏଇ ସମ୍ପର୍କରେ ଉପରିଚର ବସୁଂକ ଉପାଖ୍ୟାନ ମଧ୍ୟ ଲେଖାଅଛି । ସେଠାରେ ଉପରିଚରବସୁ ଆକାଶରେ ଯିବା ଆସିବା କରୁଥିଲେ । କଥାଅଛି, ତାଂକର ଉପରେ ଉଡ଼ି ଉଡ଼ି ଗମନାଗମନ କରିବାର କ୍ଷମତା ଥିଲା । ଏଇପରି ଅବସ୍ଥାରେ ଗୋଟିଏ ବିବାଦ ନିଷ୍ପତ୍ତି କରିବାକୁ ତାଂକୁ କୁହାଗଲା । ସେ ବିବାଦଟି ହେଉଛି, ଦେବତା ଆଉ ଋଷିମାନଂକ ଭିତରେ । ଦେବତାମାନେ କହିଲେ, ଯଜ୍ଞ ହେବ 'ଅଜ'ରେ । ଅଜ, ଅର୍ଥାତ୍ ଛେଳି । ଋଷିମାନେ କିନ୍ତୁ କହିଲେ, ତା' ନୁହେ । ଅଜ ବୋଲିଲେ ପୁରୁଣା ଶସ୍ୟ । ଯେଉଁ ଶସ୍ୟରୁ ଆଉ ଜନ୍ମହେବ ନାଇ । ଏଇ ବିବାଦ ବେଳେ ଉପରିଚର ବସୁ ସେଇବାଟେ ଯାଉଥିଲେ । ସମସ୍ତେ ଉପରିଚର ବସୁଂକୁ ଭେଟିଲେ, ଉପରିଚରବସୁ ଋଷିମାନଙ୍କ ସପକ୍ଷରେ ମତଦେଲେ । ସେଥିପାଇଁ ଦେବତାମାନେ ତାଂକୁ ତଳେଗହ୍ୱରରେ ବାସ କରିବା ପାଇଁ ଅଭିଶାପ ଦେଲେ । ସେ ସେଠାରେ ରହି ଐକାନ୍ତିକ ଧର୍ମ ବା ଏକେଶ୍ୱର ଧର୍ମ, ଅଥବା ପୂର୍ବେ କୁହାଯାଇଥିବା ଭାଗବତ ଧର୍ମରେ ମନଦେବାରୁ ସେଥିରୁ ଉଦ୍ଧାର ପାଇ ପୁଣି ଉପର ଲୋକକୁ ଆସି ସେଠାରେ ଚଳାଚଳ ହେଲେ ।

## ଏ ଶ୍ୱେତଦ୍ୱୀପ କେଉଁଠି ?—

ଏଇ ଐକାଂତିକ ଧର୍ମଟି ପ୍ରଥମେ ନାରଦ, କଥାଅଛି ଶ୍ୱେତଦ୍ୱୀପରେ ଦେଖିଥିଲେ । ବିଷ୍ଣୁ ପୁରାଣରେ 'ଦ୍ୱୀପ'ର ବିଭାଗ କଥା କହିଲାବେଳେ ସ୍ପଷ୍ଟ ଲେଖାଅଛି ଶ୍ୱେତଦ୍ୱୀପର ଅନ୍ୟନାମ ଶାକଦ୍ୱୀପ । ଏହା କ୍ଷୀର ସମୁଦ୍ର ମଧ୍ୟରେ ଅଛି । ଏହି ଶାକଦ୍ୱୀପଟି ପ୍ରାଚୀନ ପୌରାଣିକ ଭୂଗୋଳରେ ହେଉଚି, ପାରସ୍ୟ । ଅତଏବ, ପୂର୍ବେ ଶାକଦ୍ୱୀପ ବା ପାରସ୍ୟକୁ ଶେତଦ୍ୱୀପ ବୋଲି କହୁଥିଲେ । ଏଇ ନାରାୟଣୀୟ ଧର୍ମଟି ନାରଦ ସେଇଠାରୁ ଶିଖି ଆସିଲେ । ତାହାଇ ହେଉଚି, ଐକାଂତିକ ଧର୍ମ, ଅର୍ଥାତ୍ ଐକାଂତିକ ଭାବରେ ନାରାୟଣ ବା ଈଶ୍ୱରଂକ ଉପାସନା କରିବା ଧର୍ମ, ଅର୍ଥାତ୍ ପୂର୍ବେ ଯେଉଁ ଅହୁର ମେଜଦାର ଧର୍ମ କୁହାଯାଇଚି, ଏହା ସେଇଧର୍ମ ।

## ଐକାଂତିକ ଧର୍ମ ଓ ବୈଦିକ ଧର୍ମ—

ଏଇ ନାରାୟଣୀୟ ଧର୍ମଟି ହେଉଚି, ବାସୁଦେବ ଧର୍ମ । ଏହା ଖ୍ରୀଷ୍ଟ ପ୍ରାୟ ୪୦୦ ବର୍ଷରେ ଏଇ ଭାରତର ଉତ୍ତର ପଶ୍ଚିମାଂଚଳ, ଅର୍ଥାତ୍ ମଥୁରା ଦ୍ୱାରକା ପ୍ରଭୃତି ଅଚଂଳରେ ବାହାର ଥିଲା । ଏହା ମୂଳତଃ ପାରସ୍ୟର ଅହୁର ମେଜଦା

ଧର୍ମକୁ ଆସିଥିଲା । ବେଦସଂଗେ ଏହାର ସମ୍ପର୍କ ନାହିଁ, ପୁଣି ଏହା ଐକାନ୍ତିକ ଧର୍ମ । ବେଦରେ ଐକାନ୍ତିକ ଧର୍ମର ସତ୍ତା ନାହିଁ ।

## ବାସୁଦେବ ଧର୍ମ—

ଏହି କୃଷ୍ଣଧର୍ମ ବାହାରିଲାବେଳେ କେବଳ ବାସୁଦେବ ଧର୍ମ ରୂପେ ବାହାରିଥିଲା । ପରେ ଏହା ଦୁଇଶହ ବର୍ଷ ମଧ୍ୟରେ ବାସୁଦେବ ଓ ସଂକର୍ଷଣ ଦୁଇଟି ରୂପରେ ପରିଣତ ହେଲା । ତାହାର ମଧ୍ୟ ପ୍ରମାଣ ନାଗନକା ଶିଳାଲେଖାରୁ ମିଳେ । କିନ୍ତୁ ସୁଭଦ୍ରା ବା ସେହିଭଳି ଅନ୍ୟ କୌଣସି ନାରୀର କଳ୍ପନା ସେତେବେଳେ ନାହିଁ ।

## ଏକାନଂଶା—ସୁଭଦ୍ରା—

କିନ୍ତୁ କୁହାଯାଇଛି, ବରାହମିହିରଙ୍କ ବେଳକୁ ଏହି ବାସୁଦେବ ସଂକର୍ଷଣଙ୍କ ଭାବକୁ ଚିତ୍ର କରିବାକୁ ଯାଇ ଯେଉଁ ଚିତ୍ରଟି ହୋଇଥିବାର ମିଳୁଛି, ସେଥିରେ ଏହା ଷଷ୍ଠ ଶତାବ୍ଦୀର କଥା । ସେ ଚିତ୍ରଟି ଏବେ ଲକ୍ଷ୍ନୌ ମିଉଜିୟମରେ ଅଛି । ସେଥିରେ ବାସୁଦେବ ସଂକର୍ଷଣଙ୍କ ମଧ୍ୟରେ ଏକାନଂଶା ବୋଲି ଗୋଟିଏ ନାରୀମୂର୍ତ୍ତିର ପ୍ରତିକୃତି ଦିଆଯାଇଛି । ଏ ପ୍ରତିକୃତିର ଇତିହାସ, ମନେ ହେଉଛି, ଅତି ପ୍ରାଚୀନ । ଏଇଟି ହେଉଛି, ତନ୍ତ୍ରରୁ ଜାତ । ଏହି ତନ୍ତ୍ର ପୃଥିବୀର ବହୁ ପ୍ରାଚୀନ । ପଣ୍ଡିତମାନେ ସ୍ଥିର କରୁଛନ୍ତି, ପ୍ରଥମେ ଆଜକୁ ପ୍ରାୟ କୋଡ଼ିଏ ହଜାର ବର୍ଷ ତଳେ ଏହା ପ୍ରକାଶ ପାଇଥିଲା ମଧ୍ୟ-ଆଫ୍ରିକାରେ । ସେତେବେଳେ ଖୁବ୍ ସମ୍ଭବ ପୁରୁଷ ସ୍ତ୍ରୀର-ସହବାସ ଓ ସନ୍ତାନରୁ ପିଲା ହେବାର କଳ୍ପନା ମନୁଷ୍ୟର ଜାଗ୍ରତ ହୋଇ ନ ଥିଲା । *

ଏହି ନାରୀକଳ୍ପନାରୁ ବାହାରିଥିଲା ବେଦର 'ହୈମବତୀ' ଓ ପରେ ବରାହମିହିରଙ୍କ ମୂର୍ତ୍ତିର ଏକାନଂଶା ଓ ସେଇଥିରୁ ପରେ ବାହାରିଥିଲା ପୁରୀର ବା ଜଗନ୍ନାଥଙ୍କ ସୁଭଦ୍ରା (ନାସଦୀୟ ସୂକ୍ତର କାମ—୧୦ମ ମଣ୍ଡଳ ୧୨୯.୪) ।

## ନୀଳମାଧବ—

ଆଉ ଗୋଟିଏ ବିଷୟ ଏଠାରେ କହିଦେବାର ଅଛି । ପଦ୍ମପୁରାଣରେ ପରମ୍ପରାରୁ ଜଣାଯାଏ, ପୁରୀକୁ ଆସି ଜଗନ୍ନାଥ ହେବା ପୂର୍ବରୁ ଶବର ଭୂମିରେ ଏହାଙ୍କ ନାମ ହୋଇଥିଲା ନୀଳମାଧବ । ଏ ନୀଳମାଧବ ଶବ୍ଦଟି ବଡ଼ ରହସ୍ୟପୂର୍ଣ୍ଣ । ଏଠାରେ ନୀଳମାଧବ କିଏ ? କୌଣସି ଶ୍ୱେତମାଧବ, ରକ୍ତମାଧବ ବା ପୀତମାଧବ ଠାରୁ ଭିନ୍ନ କରି ଦେଖାଇବା ପାଇଁ ଏ ନୀଳମାଧବ ନାମଟି ଅବଶ୍ୟ ନୁହେ । ମାତ୍ର

---

* The sexual Life of Savages by Mr. Malinowski.

କୌଣସି କାଳରେ ଏଇ ନୀଳମାଧବ ନାମଟି ସୃଷ୍ଟି କରି ଲୋକରେ କହିବା ପାଇଁ ଏଇ ନାମଟି ହୋଇଥିବା ନିତାଂତ ଅସମ୍ଭବ ନୁହେଁ । ତଥାପି ନୀଳମାଧବର ଅର୍ଥ ସେକାଳେ କଦାପି ନେଳିଆ ମାଧବ ବୋଲି ମନେ ହେଉନାଇ । ପୁଣି ଏଇ ନୀଳମାଧବ ସେକାଳେ ବୌଦ୍ଧରେ ଥିବା ଖଂଡ଼ପଡ଼ାରେ ମହାନଦୀ କୂଳେ ପ୍ରତିଷ୍ଠିତ ଅଛଂତି । ଆଉ ଅନେକ ସ୍ଥାନରେ ହୁଏତ ଏଇପରି ନୀଳମାଧବ ପ୍ରତିଷ୍ଠିତ ଥାଇ ପାରଂତି । କିଂତୁ ସେ ସବୁର କାଳ ଜଣାନାଇ । ତେବେ ମନେହୁଏ, ସେ ସବୁ ନୀଳମାଧବ ଅଂତତଃ ଅଷ୍ଟମଶତାବ୍ଦୀରୁ ପ୍ରାଚୀନ ନୁହେଁ । ବରଂ ଦ୍ୱାଦଶ ଶତାବ୍ଦୀପରେ ହୋଇପାରେ । ପାଲଲହଡ଼ା ପ୍ରଭୃତି ଅଚଂଳରେ ଗୋଟିଏ ବଡ଼ କଳାପଥରକୁ ନୀଳମାଧବ ରୂପରେ ପୂଜା କରାଯାଏ ବୋଲି ଗବେଷକ ପଂଡ଼ିତ ଶ୍ରୀ ବିନାୟକ ମିଶ୍ର ମତେ କହୁଥିଲେ ।

## ନୀଳମାଧବର ଅର୍ଥ—

ଏଇ ନୀଳମାଧବ ଖୁବ୍ ସମ୍ଭବ ଆର୍ଯ୍ୟମାନଂକ ଶବ୍ଦ ନୁହେଁ । ଏହା ଦ୍ରାବିଡ଼ ବା ସ୍ଥାନୀୟ ଭାଷା । ଏହାର ଅର୍ଥ ହେଉଛି, ଦ୍ରାବିଡ଼ରେ ନୀଳ=ନୀଳକଳା, ମା= ଜନନୀ, ଧବ=ଧଳା । (ଏଇ ଶବ୍ଦ ଏବେ ଧୋବ ରୂପେ ଓଡ଼ିଆରେ ଚଳେ) ନୀଳ ଶବ୍ଦର କଳା ଅର୍ଥ ଗୋଟିଏ ଦ୍ରାବିଡ଼ ଶବ୍ଦ । ଏଇଠାରେ ସୁଭଦ୍ରା ମା' ରୂପେ ଶବ୍ଦରେ ପ୍ରବେଶ କରିଛଂତି । 'କାମସ୍ତଦଗ୍ରେ ସମବର୍ତ୍ତତାଧି (୧୦-୧୨୯-୪) ର ଭାବ ଏଠାରେ ସ୍ପଷ୍ଟ ପ୍ରକାଶ ପାଇଛି । ମନେ ହେଉଛି, ଏଇ ନୀଳମାଧବ ଶବ୍ଦଟି ହେଲାବେଳକୁ ସୁଭଦ୍ରା ହୁଏତ ସ୍ପଷ୍ଟ ଭାବରେ ସେଇ ସୁଭଦ୍ରା ନାମ ପାଇ ନଥିଲା । ମୋଟ ଉପରେ କଥା ହେଉଛି, ଏଇ ନାମଟିର ଗୋଟିଏ ସୃଷ୍ଟି ଦର୍ଶନ ଅଛି । ଅର୍ଥାତ୍, କଳା ମା ଆଉ ଧଳା ଏହାର ଯଥାର୍ଥ ଅର୍ଥ ହେଉଛି, ସୃଷ୍ଟିର ଶୂନ୍ୟରୂପ=କଳା । ତା' ପରେ ଧଳାକୁ ଆସିଲା ବେଳକୁ ମଝିରେ ମା । ମୋଟ କଥାଟିର ଅର୍ଥ ହେଉଛି କଳା ମା ଆଉ ଧଳା । ଧଳା ହେଉଛି, ସୃଷ୍ଟିର ପ୍ରକାଶ ରୂପ । କଥାଟିର ପୂର୍ବ ଅର୍ଥ ହେଉଛି, ଶୂନ୍ୟରୂପ, ମା ଆଉ ପ୍ରକାଶ ରୂପ ।

## ନୀଳମାଧବ ସେଇ ଜଗନ୍ନାଥଂକ ନାମ—

ବିଦ୍ୟାପତି ବା ଯେ କେହି ହୁଅଂତୁ, ଯେଉଁ ବ୍ରାହ୍ମଣଂକୁ ଗ୍ରୈରଗଂଗଦେବ ଜଗନ୍ନାଥଙ୍କ ପାଖକୁ ପଠାଇ ଥିବା କଥା ସ୍କନ୍ଦ ପୁରାଣରେ ଅଛି । ଗଲାବେଳକୁ ଜଗନ୍ନାଥ ଅଂତର୍ଧାନ ହୋଇ ନୀଳମାଧବ ରୂପେ ପୂଜା ପାଉଛଂତି । ମନେ ହେଉଛି, ବୋଧହୁଏ ଜଗନ୍ନାଥ ନାମକ ନିମକାଠକୁ ଲୁଚାଇ ଶବରମାନେ ଏଇ ନୀଳମାଧବ ପୂଜାରେ ମାତିଥିଲେ । ଏଇ ନୀଳମାଧବ ହେଉଛଂତି ତେଣୁ ଜଗନ୍ନାଥ । ଜଗନ୍ନାଥଂକୁ ଆଣିବା ପାଇଁ ବିଦ୍ୟାପତି ଏଇ ନୀଳମାଧବଂକୁ ହାତ କରିଥିଲେ ।

## (୫) ଜଗନ୍ନାଥ

## ଉଡ୍‌ଡ଼ୀୟାନରୁ ତନ୍ତ୍ର ଯାଇଥିଲା ତିବ୍ବତକୁ—

କୁହାଯାଇଛି, ବେଦରେ ଏହାର ନିଦର୍ଶନ ସ୍ୱରୂପ ଋକ୍‌ବେଦର ୧୦ମ ମଣ୍ଡଳରେ ଅଛି—

"ଅଦୋଯଦ୍ଦାରୁ ପ୍ଲବତେ
ସିଂଧୋଃ ପାରେ ଅପୂରୁଷଂ
ତଦାରଭସ୍ୱ ଦୁର୍ହଣୋ
ତେନଗଚ୍ଛ ପରସ୍ତରଂ"—

ଋକ୍‌ବେଦ ୧୦.୧୫୫,୩

ଅର୍ଥାତ୍, ଏଇ ସମୁଦ୍ର ପାରରେ ବା ନଦୀପାରେ ଯେଉଁ ଦାରୁ ବା କାଠ ଭାସୁଛି, ବା ବିଦ୍ୟମାନ ଅଛି ସେ ପୁରୁଷ ନୁହେଁ। ଦୁର୍ହଣୋ ବା ନ ବିଗ୍ରହ କଥା କହିଲାବାଲା ତାକୁ ଧରିଁ। ତାକୁ ଧରି ପରସ୍ତରକୁ ବା ଆତ୍ମିକସ୍ତରକୁ ଯାଅ। ଏହା ଏକ ଅଷ୍ଟ୍ରିକ ବା ନିଷାଦ ଅନୁଷ୍ଠାନକୁ ଲକ୍ଷ୍ୟ କରୁଛି। ଏଇ ନିଷାଦ ଧର୍ମ ପରେ ଭାରତକୁ ଆସିଥିଲା ଅସୁର ଧର୍ମ ବା ଦ୍ରାବିଡ଼ଧର୍ମ। ଏଇ ଦ୍ରାବିଡ଼ ଧର୍ମ ପଂଡ଼ିତମାନେ କହଂତି ସେଇ ବ୍ୟାବିଲନ ବାଟେ ପ୍ରଥମେ ଏଇ କଳିଂଗକୁ ଆସିଥିଲା। ସେ କଳିଂଗ ହେଉଛି, ସେ କାଳର ପୁରୀ, କଟକ, ଗଞ୍ଜାମ ସମେତ ବଂଶଧାରା ନଦୀକୂଳ ପର୍ଯ୍ୟଂତ। ମୁଖଲିଂଗ ତାହାର ଅଂତର୍ଭୁକ୍ତ ଥିଲା। ଉପରେ ଯେଉଁ ଭୂଭାଗ ପ୍ରତି ଲକ୍ଷ୍ୟ କରାଯାଇଛି, ତାହା ହେଉଛି, ଏଇ କଳିଙ୍ଗର ଉତ୍ତରାଂଚଳ। ତାହା ଖୁବ୍ ସଂଭବ, ବୌଦ୍ଧଠାରୁ ବାଲାସପୁର ପର୍ଯ୍ୟଂତ ଜଂଗଲ ଭୂଭାଗରେ ପର୍ଯ୍ୟବସିତ ଥିଲା। ପରେ ୮ମ ଶତାବ୍ଦୀଠାରୁ ପ୍ରାୟ ୨୦୦ ବର୍ଷ ପର୍ଯ୍ୟଂତ ଏଇ ଭୂମିକୁ ଉଡ୍‌ଡୀୟାନ ବୋଲି କହୁଥିଲେ। ଏହା ଉଡ୍‌ଡ଼ୀୟାନ, ଅର୍ଥାତ୍ ଏଠାରେ ଉଡ୍‌ଡ଼ମାନଂକ ଧର୍ମମାର୍ଗ ବା ଯାନ ପ୍ରଚଳିତ ଥିଲା। ଏଇ ଉଡ୍‌ଡ଼ମାନେ ସେ କାଳ ଶବରମାନଂକର, ଅର୍ଥାତ୍, ନିଷାଦମାନଂକ ସଂଗେ ବରାବର ମିଶିକରି ଥିଲେ। ଏଇମାନଂକ ଭିତରେ ପ୍ରଥମେ ପ୍ରକାଶ ପାଇଥିଲା, ଶୂନ୍ୟବାଦ, ଅର୍ଥାତ୍ ଶୂନ୍ୟରୁ ସୃଷ୍ଟି, ଯେପରିକି ପ୍ରାଚୀନ ଧାରଣା ଅନୁସାରେ ମା'ଠାରୁ ଜନ୍ମ ହୁଏ ପିଲା। ସେଥିରେ ବାପର ସଂପର୍କ ନାଇ ଏହାଇ ଆଦିମ ତନ୍ତ୍ରଧାରଣା। ଏହାଇ ପ୍ରାଚୀନ ବୌଦ୍ଧର 'ଶୂନ୍ୟବାଦ'। ଏଇ 'ଶୂନ୍ୟବାଦ'ର ନାନାପ୍ରକାର ବ୍ୟାଖ୍ୟା, ବିଶେଷତଃ ବଗଂଳା ଓ ତିବ୍ବତରେ ହୋଇଥିବାର ଆମ ଶାସ୍ତ୍ରମାନଂକରେ ପ୍ରମାଣ ଅଛି। ତିବ୍ବତର ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀର ଲାମା ତାରାନାଥ କହିଛଂତି, ଏହା ୮ମ ଶତାବ୍ଦୀର ତଂତ୍ରରୁ ବାହାରିଛି ଏଇ ତନ୍ତ୍ରର ଆଦିସ୍ଥାନ ହେଉଛି 'ଉଡ୍‌ଡ଼ୀୟାନ'। ତା ପରେ ପରେ ପୂର୍ବବଂଗ ଓ

ଅଯାମର ଚନ ସ୍ଥାନରେ ଏହା ପ୍ରକାଶ ପାଇଥିଲା । ଯଥା :—ଶ୍ରୀହଟ୍ଟ (Sylhet) ପୂର୍ଣ୍ଣଗିରି (ସ୍ଥାନ ନିର୍ଦ୍ଦିଷ୍ଟ ହୋଇନାଇ, ବୋଧହୁଏ ବଙ୍ଗ ଦେଶରେ) କାମାକ୍ଷ୍ୟା । ତା ପରେ ଏହା ଓଡ଼ିଶାକୁ ଯାଇଥିଲା ।

## ପୁରୁଷ ଓ ଜଗନ୍ନାଥର ସମ୍ପର୍କ—

କୁହାଯାଇଛି, ଏଇଥିରୁ ବାହାରିଥିଲା ବଉଦ୍ଧମିଶ୍ରରଙ୍କ ଏକୋନଂଶା ଓ ତା ପରେ ପ୍ରତିଷ୍ଠିତ ସୁଭଦ୍ରା । ବେଦ ୧୦-୧୨୯ ନାସଦୀୟ ସୂକ୍ତରେ ଅଛି, 'ନାସଦାସିନ୍ନୋ ସଦାସିତ୍ ତଦାନୀଂ' ପ୍ରଭୃତି । ଅର୍ଥାତ୍ ପ୍ରଥମରୁ ସତ୍ ନ ଥିଲା କି ଅସତ୍ ନ ଥିଲା । ମୋଟ କଥା ହେଉଛି, ସବୁ ପ୍ରକାଶ ଶୂନ୍ୟରୁ ପ୍ରକାଶ । ପୁଣି ନାନା ପ୍ରକାର ଶୂନ୍ୟ ସୃଷ୍ଟିର ଦ୍ୱନ୍ଦ୍ୱ ଭିତରେ ୪ର୍ଥ ମନ୍ତ୍ରରେ ଋଷିଙ୍କଠାରୁ ବାହାରିଲା, "କାମସ୍ତଦଗ୍ରେ ସମବର୍ତ୍ତତାଧି, ମନ ସୋରେତଃ ପ୍ରଥମଂ ଯଦାସୀତ୍, ସତୋବନ୍ଧୁ ମସତି ନିରବିନ୍ଦନ୍, ହୃଦିପ୍ରତୀଷ୍ୟା କବୟୋ ମନୀଷା" । ଅର୍ଥାତ୍ ସବା ପ୍ରଥମରୁ କାମ ବା ମାନସିକ-ରେତଃ ଥିଲା । ଏଇଠାରେ ହେଉଛି ଅସତ୍ ଆଉ ସତ୍‌ର ପ୍ରଥମ ସମ୍ପର୍କ ବା ବନ୍ଧୁତା । କବିମାନେ ହୃଦୟରେ ଚିନ୍ତା କରି ମନରେ ଏହା ଠିକ୍ କରିଚନ୍ତି । ଏଠାରେ ପଢ଼ିଲେ ଜଣାଯାଉଛି ପ୍ରଥମରୁ ସବୁ ଶୂନ୍ୟ ଥିଲା । କିନ୍ତୁ ସେ ଶୂନ୍ୟ ଭିତରେ ପ୍ରଥମେ କାମ ଓ ମାନସିକ, ରେତଃର ଆବିର୍ଭାବ ହୋଇଥିଲା । ସେଇଆ ହେଉଛି, ଅସତ୍‌ର ସତ୍ ସଙ୍ଗେ ପ୍ରଥମ ସମ୍ପର୍କ । ତେବେ ସୃଷ୍ଟିର ଆଦିରୁ ଏଇ କାମ ବା ରେତଃ ଥିବା କଥା ଏଇ ତାନ୍ତ୍ରିକମାନେ ସ୍ୱୀକାର କରୁଥିଲେ । ତା ପରେ ଆସିଲା ପୁରୁଷ ଭାବ । ସେ କଥା ଉପରେ କୁହାଯାଇଛି । କିନ୍ତୁ ଏଠାରେ ପୁରୁଷ ଭାବ ନାଇ । ଏଇଠାରେ ତନ୍ତ୍ରଧର୍ମ, ଅର୍ଥାତ୍ ଶବର ବା ନିଷାଦ ଧର୍ମ ଓ ପୁରୁଷ ଧର୍ମ ବା ଦ୍ରାବିଡ଼ ବା ଅସୁର ଧର୍ମର ପ୍ରଭେଦ । ଏ ଦୁଇଟିଯାକ ପ୍ରାଗ୍‌ବୈଦିକ ବା ପ୍ରାଗୃକ୍‌ବୈଦିକ କାଳରେ ମଧ୍ୟ ଓଡ଼ିଶାରୁ ବାହାରିଛି । କାରଣ ଦୁଇଟିଯାକର ସଙ୍କେତ ଋକ୍‌ବେଦରେ ଅଛି । ଆଉ ଗୋଟିଏ ବିଶେଷ କଥା, ଋକ୍‌ବେଦର ଏଇ ପୁରୁଷ ଧର୍ମ ବା ଆତ୍ମଧର୍ମ ପ୍ରତିଷ୍ଠିତ ହେଲାବେଳକୁ ଶୂନ୍ୟଧର୍ମରେ ବା ତନ୍ତ୍ର ଧର୍ମରେ ଗୋଟିଏ ଦାରୁଦେବତା ପ୍ରତିଷ୍ଠିତ ଥିବାର ମଧ୍ୟ ସ୍ପଷ୍ଟ ପ୍ରମାଣ ମିଳୁଛି । ଏଇ ଦାରୁ ଦେବତା ସମ୍ବନ୍ଧରେ କୁହାଯାଇଛି । "ଏଇ ଯେଉଁ ନଦୀ ପାରରେ ବା ସମୁଦ୍ରପାରରେ ଦାରୁ ଭାସୁଛି, ତାକୁ ଉପାସନା କର ନା । ହେ ଦୁର୍ମୁଖ ଏହା ପୁରୁଷ ନୁହେ । ଅର୍ଥାତ୍ ପୁରୁଷପରି ଆତ୍ମଧର୍ମୀ ନୁହେ । ସ୍ୱାଙ୍କୁ ଗ୍ରହଣ କରୁ ପୁରୁଷ ଧର୍ମର ଆସ୍ତିକସ୍ତରକୁ ଉଠିଯା ।" ଏ ଏକ ସ୍ପଷ୍ଟ ନିର୍ଦ୍ଦେଶ । ଏଥିରୁ ଜଣାଯାଉଛି, ସେତେବେଳେ ମଧ୍ୟ ଏଇ ପୁରୁଷସ୍ତର ଆସ୍ତିକସ୍ତର ବୋଲି ଗୃହୀତ ହୋଇଥିଲା ଓ ଏଇ ତନ୍ତ୍ରସ୍ତରରେ ଯେଉଁ କାଠର ଉପାସନା ଚଳୁଥିଲା, ସେଇଟି ଆସ୍ତିକସ୍ତରକୁ ଉଠି ନ ଥିଲା । ଏ ଦୁଇଟିଯାକ ପୁଣି ସୃଷ୍ଟିର ମୂଳତତ୍ତ୍ୱ ସମ୍ବନ୍ଧରେ । ଆଉର

ଦେଖିବାର କଥା, ଏ ଦୁଇଟିଯାକର ଉଦ୍ଭବ ଓଡ଼ିଶାରୁ । ଗୋଟିଏ କଳିଂଗରୁ, ଗୋଟିଏ ଉଡ୍ଡୀୟାନରୁ ।

## ଏଦୁଇଟି ମୂଳତଃ ପ୍ରାକୃତିକ ଧର୍ମ ନହେ ଅଥଚ ପ୍ରାକୃତିକ ଧର୍ମ—

ଏ ଦୁଇଟିଯାକ ପୁଣି ପ୍ରାକୃତିକ ଧର୍ମ । ଏଥିରେ ଆରୋପିତ ବୌଦ୍ଧଧର୍ମ ନାହିଁ । ଏଠାରେ ଆରୋପିତ ବୌଦ୍ଧଧର୍ମ ଏକା କୃଷ୍ଣଧର୍ମ । ତନ୍ତ୍ରରେ ଏଇ 'କାମବୀଜ' ମିଶି ଷଷ୍ଠଶତାବ୍ଦୀରେ ବାହାରି ଥିଲା ଏକାନଂଶା ଓ ପରେ ବାହାରିଲା ସୁଭଦ୍ରା ।

## ପୁରୁଷୋତ୍ତମ ଓ ପୁରୀ—

ଏଇ ବୌଦ୍ଧଧର୍ମ ବା କୃଷ୍ଣଧର୍ମ ପୁଣି ଗୀତା ବେଳକୁ ପ୍ରତିଷ୍ଠିତ ହୋଇ ସାରିଲାଣି । ଖୁବ୍ ସମ୍ଭବ, ଏହା ପ୍ରାୟ ଖ୍ରୀଷ୍ଟପୂର୍ବ ୩ୟ ବା ୪ର୍ଥ ଶତାବ୍ଦୀର କଥା । ସେତେବେଳକୁ ପୁରୀ, ପୁରୁଷୋତ୍ତମ କ୍ଷେତ୍ର ନାମରେ ପରିଚିତ ହୋଇ ସାରିଲାଣି । କାରଣ, ଗୀତା ୧୫ ଶହ ଅଧ୍ୟାୟର ଅଷ୍ଟାଦଶ ଶ୍ଳୋକରେ ଅଛି, "ଅତୋଽହଂ ଲୋକେ ବେଦେ ଚ, ପ୍ରଥିତଃ ପୁରୁଷୋତ୍ତମଃ" । ଅର୍ଥାତ୍ ଏଣୁ ମୁଁ ବେଦରେ ଅର୍ଥାତ୍ ଜ୍ଞାନର ଯୁକ୍ତିରେ ତଥା ଲୋକରେ, ବୋଇଲେ ଲୋକର ଉପାସ୍ୟ ରୂପରେ, ପୁରୁଷୋତ୍ତମ ରୂପେ ପ୍ରତିଷ୍ଠିତ ଅଛି । କେବଳ ଲୋକରେ ପୁରୁଷୋତ୍ତମ ରୂପେ ନୁହେଁ । ଏହା ଠିକ୍ ପୁରୀର ପୁରୁଷୋତ୍ତମ କ୍ଷେତ୍ରକୁ ବୁଝାଉଛି । ଏହା ଖୁବ୍ ସଂଭବ ନଆହୋଇଛି, ଜୈନମାନଂକ ଦୈନିକ ପ୍ରଣାମରୁ ଜୈନମାନେ ଚିରକାଳ ପ୍ରଣାମ କରଂନ୍ତି "ନମୋଲୋଏ ସବ୍ୱ ସାହୂଣା" । ଏ ଲୋକରେ ସର୍ବସାଧୁମାନଙ୍କୁ ନମସ୍କାର କରୁଛି ।

## ଜଗନ୍ନାଥର ପ୍ରାଚୀନତା—

ଏଇ ଯେଉଁ ଦୁଇଟି ତାନ୍ତ୍ରିକ ଧର୍ମ କଥା କୁହାଗଲା, ଏହାର କାଠ ପୂଜା ଧର୍ମଟି ଅତି ପ୍ରାଚୀନ । ଅନ୍ୟତ୍ର ଜଣାଯାଏ, ଶବରମାନେ ଦାରୁବର ଏଇ ପୂଜାକରି ଆସୁଚଂନ୍ତି । ଏବେ ମଧ୍ୟ ଓଡ଼ିଶାରେ ପାରଳାଖେମୁଣ୍ଡି ପ୍ରଭୃତି ପାର୍ବତ୍ୟ ଅଞ୍ଚଳରେ ଶବରମାନେ ଏଇପରି ନିମକାଠର ମୂର୍ତ୍ତି ପୂଜା କରଂନ୍ତି । ପର୍ବଦିନମାନଙ୍କରେ ସେ ଏଇ ମୂର୍ତ୍ତିର ଆଖି ପ୍ରଭୃତି ଚିତ୍ର କରି ତାକୁ ପୂଜା କରିବାର ଦେଖାଯାଏ । ଏହା ବହୁପରିମାଣରେ ବର୍ତ୍ତମାନ ଜଗନ୍ନାଥ ମୂର୍ତ୍ତିପରି । ଏହା ବହୁକାଳରୁ ନିଷାଦମାନଂକ ମଧ୍ୟରେ ଚଳୁଅଛି । ବୋଧହୁଏ ଋକ୍‌ବେଦରେ ଏ କଥା କହିଲା ବେଳେ ଏହା ବିଳାସପୁର ଅଂଚଳରେ ପ୍ରତିଷ୍ଠିତ ହୋଇ ସାରିଥିଲା । ସେଇ ମୂର୍ତ୍ତିକୁ ଲକ୍ଷ୍ୟ କରି ଏ ଶ୍ଳୋକଟି କୁହାଯାଇଛି ଓ ତାହାର ଅର୍ଥ ହେଉଛି ସେଠାରେ ନଦୀପାରରେ ଯେଉଁ ମୂର୍ତ୍ତିଟି ଅଛି, ତାକୁ ଏତେ ଲୋକ ସୃଷ୍ଟିର ମୂଳରୂପ ବୋଲି ଯାହା ପୂଜା କରୁଚଂନ୍ତି

ତା ଠିକ୍ ନୁହେ । କାରଣ ସେ ମୂର୍ତ୍ତିଟି ହେଉଚ, ଅପୁରୁଷ ଅର୍ଥାତ୍ ପୃଥ୍ୱୀରେ ଯେ ପୁରୁଷ ଉପାସନା ପ୍ରତିଷ୍ଠିତ ଅଛି, ଏହାର ତା ସଙ୍ଗେ ସମ୍ପର୍କ ନାଇ । ଏହା ଆଦି ଋକ୍‌ବେଦ ପୂର୍ବର କଥା । ଦଶମ ମଂଡ଼ଳଟି ଋକ୍‌ବେଦରେ ଅର୍ବାଚୀନ ମଂଡ଼ଳ । ଋକ୍‌ବେଦରେ ସବୁ ସୂକ୍ତଗୁଡ଼ିକ ଭାରତର ଉତ୍ତର ବା ଉତ୍ତର ପଶ୍ଚିମ ଅଂଚଳରେ ଗଂଗାସିଂଧୁର ଉପତ୍ୟକାରେ ରଚିତ ହୋଇ ପ୍ରଚଳିତ ହୋଇଥିବା କଥା ଠିକ୍ ନୁହେ । ଏଠାରେ ଏ ‘ଯେଉଁ ସୂକ୍ତଟି ଅଛି, ଏହା ପୃଥ୍ୱୀଆଡ଼ ଉପକୂଳର କୌଣସି “ବ୍ରାତ୍ୟ ବୈଦିକ” କହିଥିବା ସ୍ପଷ୍ଟ ଜଣାଯାଉଚ । ସେ କହୁଚଂତି, ଆରେ ଦୁର୍ମୁଖ ! ଏ ନିମକାଠ ଦେବତାଙ୍କୁ ମୂଳବସ୍ତୁ ବୋଲି ପୂଜା କରିବା ଠିକ୍ ନୁହେ, କାହିଁକି ନା ଏ ପୁରୁଷ ନୁହେଁ । ଏହା ଅପୁରୁଷ । ସ୍ୱାଙ୍କୁ ଛାଡ଼ । ତେବେ ଯାଇ ତୁ ବୁଝିପାରିବୁ ପୁରୁଷ କିଏ ।

ଓଁ—

ତେବେ ଏଇ ଦ୍ୱଂଦ୍ୱ ଭିତରେ ପୁରୁଷଟି କି ପଦାର୍ଥ ? ଯେତେ ଅର୍ବାଚୀନ ହେଲେ ମଧ୍ୟ ଏଇ ଦଶମ ମଂଡ଼ଳର ସମୟ ଖ୍ରୀଷ୍ଟପୂର୍ବ ଦେଢ଼ହଜାର ବର୍ଷରୁ କମ୍ ନୁହେ । ଆଉ ଗୋଟିଏ କଥା ଲକ୍ଷ୍ୟ କରିବାର ଅଛି । ଏତେବେଳଯାଏ ‘ଓଁ’ କଥାଟିର ବ୍ୟବହାର ବେଦ ମଧ୍ୟକୁ ଆସିନାଇ, ଅର୍ଥାତ୍ ସମସ୍ତେ ଦେଖିପାରନ୍ତି ବୈଦିକ ମଂତ୍ର ‘ଓଁ’ ବୋଲି ଆରମ୍ଭ ହୁଏ ନାଇ, ସ୍ପଷ୍ଟ ଜଣାଯାଉଚ ଏହି ଓଁ ବର୍ଣ୍ଣଟି ନ ଥିଲା । ଉପନିଷଦ ବେଳକୁ ସ୍ପଷ୍ଟ ରୂପେ ମଂତ୍ର ମୂଳରେ ‘ଓଁ’ ବ୍ୟବହାର ହେଲା । ଏଇ ଓଁ କଥାଟି କିଏ । ଜାଣିଗଲେ ପୁରୁଷ ସଂବଂଧରେ ଆମ ଧାରଣାଟି ପରିଷ୍କାର ହୋଇଯିବ । ଏଇ ‘ଓଁ’ ହେଉଚ ପୁରୁଷର ନାମ । ପୁରୁଷ ବୋଇଲେ ତେବେ କିଏ ? ଅନାତ୍ମା ବା ଶରୀରକୁ ଅଧୀନରେ ରଖି ଯେଉଁ ଆତ୍ମଶକ୍ତିର ପ୍ରକାଶ, ସେଇ ହେଉଚ ପୁରୁଷ । ଏଇ ପୁରୁଷ ଭାବରୁ ପୃଥ୍ୱୀର ଆଦି ଦର୍ଶନ । ପୃଥ୍ୱୀର ଆଦି ଅଧ୍ୟାତ୍ମ ଦର୍ଶନ ହେଉଚ ଏଇ ଆତ୍ମଦର୍ଶନ ବା ପୁରୁଷ ଦର୍ଶନ ।

## ଜଗମଂଦ୍ରଲାଲ ଜୈନ ଏ ସଂପର୍କରେ କଣ କହିଚଂତି ?

ଏ ସମ୍ପର୍କରେ ଜଗମଂଦ୍ରଲାଲ ଜୈନ କହିଚଂତି—

“୧—ମନୁଷ୍ୟର ବ୍ୟକ୍ତିତ୍ୱ ହେଉଚ ଦ୍ୱୈତ । ଏଇ ଦ୍ୱୈତ ବ୍ୟକ୍ତିତ୍ୱକୁ କୁହାଯାଏ ପୁରୁଷ । ଏଥିରେ ଆତ୍ମା ଓ ତାହାର ଅଧୀନରେ ଶରୀର ଅଛି ।

“୨—ମନୁଷ୍ୟ ପୂର୍ଣ୍ଣ ନୁହେ । ସେ କ୍ରମେ ଉନ୍ନତ କରେ, ଅର୍ଥାତ୍ ଯେ ପୂର୍ଣ୍ଣତା ଆଡ଼କୁ ଗତିକରେ । ମନୁଷ୍ୟର ଆତ୍ମା ପୂର୍ଣ୍ଣତା ପାଏ ।

ଏଇ ପୂର୍ଣ୍ଣତା ଚାରି ପ୍ରକାରରେ ପ୍ରକାଶ ପାଏ, ଯଥା—ଅନଂତ ଦର୍ଶନ, ଅନଂତ ଜ୍ଞାନ, ଅନଂତ ବୀର୍ଯ୍ୟ ଓ ଅନଂତ ସୁଖ ।

"୩—ନିଜର ଆଧ୍ୟାତ୍ମିକ ପ୍ରକୃତିରେ ମନୁଷ୍ୟ ତାର ଭୌତିକ ପ୍ରକୃତିକୁ ଜବତ୍ କରିପାରେ ଓ ସେ ନିଶ୍ଚେଷ୍ଟ ତାହା କରିବ । ଏଇପରି ସଂପୂର୍ଣ୍ଣ ଭୌତିକ ପ୍ରକୃତି ଜବତ୍ କଲାପରେ ଆତ୍ମା ପୂର୍ଣ୍ଣତା, ସ୍ୱାଧୀନତା ଓ ପରମସୁଖ ଲାଭ କରିବ ।

ଏଇପରି ସ୍ୱାଧୀନ ଓ ସୁଖୀ ଆତ୍ମାକୁ ଜିନ (ଜେତା) ବା ତୀର୍ଥଂକର (ପ୍ରଦର୍ଶକ) କୁହାଯାଏ ।

"୪—ଜୈନ ଧର୍ମର ଶେଷ ମୌଳିକ ନୀତି ହେଉଛି ।

ମନୁଷ୍ୟ ଏକା ମନୁଷ୍ୟ ଓ ସେଇ ଏକା ତା ଜୀବନରେ ଯାହା ଭଲମନ୍ଦ ସେଥିପାଇଁ ଦାୟୀ ।

## ଜୈନଧର୍ମ ଓ ଅନ୍ୟ ଧର୍ମ—

ଜୈନ ଧର୍ମ ଅନ୍ୟ ସମସ୍ତ ଧର୍ମଠାରୁ ମନୁଷ୍ୟକୁ ଧର୍ମଗତ ସ୍ୱାଧୀନତା ଦାନ କରେ । ଆମେ ଯେଉଁ କାର୍ଯ୍ୟକରୁ, ତାର ଫଳ—ଏ ଦୁହିଁଙ୍କ ଭିତରେ ଆଉ କିଛି ରହି ନ ପାରେ । ଥରେ କରାହେଲେ କର୍ମମାନେ ଜାଣ ଆମର ପ୍ରଭୁ । ସେମାନେ ନିଶ୍ଚେ ଫଳପ୍ରସୂ ହେବେ । ଯେପରି ମୋର ସ୍ୱାଧୀନତା ଅତି ଉଚ୍ଚ ଓ ମହତ୍ତ୍ୱ, ସେଇପରି ମୋ ଦାୟିତ୍ୱ ମଧ୍ୟ ତା ସଂଗେ ସମାନ । ମୁଁ ଯେପରି ବିଗୃତିବି, ସେପରି ବଂଚିପାରେ । କିଂନ୍ତୁ ମୋର ସିଦ୍ଧାନ୍ତ ଅଲଂଘ୍ୟ । ମୁଁ ଏହାର ଫଳଭୋଗ ଲଂଘି ପାରିବି ନାହିଁ । ଏଇ ନୀତି ଜୈନ ଧର୍ମକୁ ଅନ୍ୟ ଧର୍ମରୁ ଯଥା—ଖ୍ରୀଷ୍ଟଧର୍ମ, ମୁସଲମାନ ଧର୍ମ ଓ ହିଂନ୍ଦୁଧର୍ମ ପ୍ରଭୃତିରୁ ଅଲଗା କରି ଦେଇଛି । କୌଣସି ଈଶ୍ୱର କିମ୍ବା ତାଂକର ପ୍ରତିନିଧି କିଂବା ତାଙ୍କର ପ୍ରେରିତ ବା ପ୍ରିୟ, କେଇ ମାନବ ଜୀବନରେ ହସ୍ତକ୍ଷେପ କରିପାରିବେ ନାହିଁ । କେବଳ ଆତ୍ମା ଓ ଏଇ ଆତ୍ମା ଏକା ସାକ୍ଷାତ ଭାବରେ ସେ ଯାହା କରୁଛି, ସେଥିପାଇଁ ଦାୟୀ ।

## ଜୈନଧର୍ମ ଆଧୁନିକ ଜୈନଧର୍ମ ନୁହେ—

ଜୈନ ଧର୍ମର ଏଇ ନୀତିଗୁଡ଼ିକ ଆଧୁନିକ ଜୈନ ଧର୍ମର ନୀତି ସଂଗେ ମିଳାଇ ଦେଖିବାର କଥା ନୁହେ । ଆଧୁନିକ ଜୈନ ଧର୍ମରେ ନାନା ଭାବରେ ଏଇ ନୀତିଗୁଡ଼ିକ ହିନ୍ଦୁ ଧର୍ମ ସଙ୍ଗେ ମିଶି ଯାଇଛି । ତେଣୁ ଏହାକୁ ଅଲଗା କରି ଦେଖିବା ପାଇଁ ମୌଳିକ ଜୈନ ଧର୍ମ ପ୍ରତି ଅନୁଧ୍ୟାନ ଲୋଡ଼ା । ସେଇ ହିସାବରେ ଦେଖିଲେ ଦେଖାଯିବ ଏଇ ଜୈନ ଧର୍ମ ଅନୁସାରେ ଯଥାର୍ଥରେ ମନୁଷ୍ୟର ବ୍ୟକ୍ତିତ୍ୱ ଦ୍ୱୈତ। ଏଇ ଦ୍ୱୈତଭାବଟି ହେଉଛି, ମୌଳିକ ଭାବ । ଦର୍ଶନର ତର୍କଗାମ୍ଭୀର୍ଯ୍ୟ ଯୁକ୍ତିରେ ଏହାକୁ ଘୋଡ଼ାଇ ଦେବାର ବସ୍ତୁ ଏ ନୁହେ । ଏଇ ଦ୍ୱୈତର ପ୍ରକୃତି ଭେଦରେ ଏହା ଭିନ୍ନ ଭିନ୍ନ ପ୍ରକାର ବର୍ଣ୍ଣନା କରାଯାଇ ପାରେ । କିଂନ୍ତୁ ମୂଳତଃ ଏଇ ଦ୍ୱୈତ-

ଭାବଟି ବିଷୟରେ ପ୍ରଶ୍ନ କରିବାର କିଛି ନାହିଁ । ଏଇଠାରେ କୁହାଯାଇପାରେ, ଏଇ ଦ୍ୱୈତଭାବ ଯେଉଁ ଏହା ଅର୍ବାଚୀନ ବେଦାନ୍ତର ବା ଉପନିଷଦର ଅଦ୍ୱୈତବାଦ ସମ୍ପର୍କରେ ଭିନ୍ନ ।

## ଜୈନ ଧର୍ମର ଅଦ୍ୱୈତ, କ୍ରମେ ଦାର୍ଶନିକ ଦ୍ୱୈତଭାବରେ ପରିଣତ ହେଲା—

ଏଇ ଅଦ୍ୱୈତବାଦ ଅନୁସାରେ ଦାର୍ଶନିକମାନେ କ୍ରମେ ଏଇ ଦ୍ୱୈତ ଧାରଣାଟିକୁ ଅଦ୍ୱୈତ ବୋଲି ବୁଝିଚନ୍ତି । ସେମାନେ ବୁଝିବସିଲେ, ଶରୀର ଓ ଆତ୍ମା ଏ ଦୁଇଟି ଭାବ, ଅର୍ଥାତ୍ ଦ୍ୱୈତର ଏଇ ଦୁଇଟି ଉପାଦାନ ଏକତ୍ର ରହିବ କିପରି ? ତେଣୁ ଦୁଇଟିର ଏଇ ଏକତ୍ରାବସ୍ଥିତି ବୁଝାଇବାକୁ ଯାଇ ସେମାନେ ଆସି ଅଦ୍ୱୈତବାଦରେ ପଡ଼ିଲେ ।

## ପ୍ରାଚୀନ ମିଥିଳା ଓ ବିଦେହ—

କିନ୍ତୁ ସେମାନେ ଉପନିଷଦର ଏଇ ଅଦ୍ୱୈତବାଦରେ ବାସ୍ତବତା ଭୁଲି କେବଳ ତାର୍କିକତାରେ ଛନ୍ଦା ହେଲେ । ଏହା ପ୍ରଥମେ ଆରମ୍ଭ ହୋଇଥିଲା ମିଥିଳା ବା ଉତ୍ତରପୂର୍ବ ବିହାରରେ । ସେଇଠାରେ ଆଦିମ ଜୈନମାନଙ୍କର ଥିଲା ପୀଠସ୍ଥଳୀ ଓ ସେଇଠାରେ ବୈଦିକ ଋଷିମାନେ ଏଇ ଜୈନମାନଙ୍କ ଅସାକ୍ଷାତ ପ୍ରେରଣାରେ ଦର୍ଶନର ଚର୍ଚ୍ଚା ବହୁପ୍ରାଚୀନ ବୈଦିକ କାଳରେ ଆରମ୍ଭ କରିଥିଲେ । ଏଇ ଆରମ୍ଭ ବେଳେ ପ୍ରଥମେ ଏଇ ଦ୍ୱୈତର ଅଦ୍ୱୈତଭାବଟି ପ୍ରକାଶ ପାଇଥିବାର ସ୍ପଷ୍ଟ ପ୍ରମାଣ ମିଳେ । ଜନକଙ୍କ ବିଦ୍ୟାଲୋଚନାରେ ଏହା ପ୍ରଥମେ ପ୍ରକାଶ ପାଇ କ୍ରମେ ବଢ଼ିଥିଲା ।

## ଓଁର ଦାର୍ଶନିକ ବିଶ୍ଳେଷଣ, ଅପ୍ରାକୃତିକ—

ଏଇ ଜନକଙ୍କ ବିଶ୍ୱବିଦ୍ୟାଳୟରେ ପୁଣି ଆଉ ଗୋଟିଏ ଜୈନଭାବ ହିନ୍ଦୁ ଦର୍ଶନ ରୂପ ଧରି ପୃଥିବୀରେ ଏପର୍ଯ୍ୟନ୍ତ ଜନମନ ମୁଗ୍ଧ କରି ଆସିଛି । ତାହା ହେଉଚି 'ଓଁ' । ମୂଳତଃ ଏଇ 'ଓଁ'ଟି କ'ଣ ? ବିଚାର କରି ବସିଲେ ଦେଖାଯିବ, ଏହା ହେଉଚି ଆତ୍ମା ବା ଶରୀରକୁ ଶାସନରେ ରଖିଥିବା ଆତ୍ମା ବା ପୁରୁଷର ତାକ ନାମ । ଏ କଥା ପ୍ରତି ଲକ୍ଷ୍ୟ କରାଯାଇଚି । ଅବଶ୍ୟ ପରେ 'ଅ'କାର, 'ଉ'କାର, 'ମ'କାର କିମ୍ବା ଜୈନ ଧର୍ମରେ ଅର୍ହତ, ଅଶରୀର, ଆଚାର୍ଯ୍ୟ, ଉପାଧ୍ୟାୟ ଓ ମୁନି, ଏଇ ପାଞ୍ଚଟିର ମୂଳବର୍ଣ୍ଣ (ଅର୍ଥାତ ଅ, ଅ, ଆ, ଉ, ମ୍) ମିଶାଇ ଯେପରି ଚକ୍ରଟି ଚପୁଡ଼ି, ପୁଣି ଏଇ 'ଓଁ'କୁ ବାହାର କରାଯାଇଚି, ଏହା ଅତି କୃତ୍ରିମ । ତେଣୁ

ଅ, ଉ, ମ ବା ଏଇ ସାଂକେତିକ ବିଶିଷ୍ଟ ବର୍ଣ୍ଣରୁ ମଧ୍ୟ କଦାପି 'ଓଁ' ଛଡ଼ା ଆଉ ହୋଇ ନାଇ । 'ଓଁ' ଏକମୂଳବର୍ଣ୍ଣ । ଏହା ଆତ୍ମାର ନାମ । ମନୁଷ୍ୟକୁ ନାମ ଧରି ଡ଼ାକିଲେ ମନୁଷ୍ୟ ଓ କରେ । ସେଇ 'ଓ' ହେଉଛି 'ଓଁ' । ଏହା ଆଉ ବୁଝାଇବା ଦରକାର ନାଇ । ଏହା ଆତ୍ମାର ଓଡ଼ିଆ ନାମ । ଆଜିକାଲି ମଧ୍ୟ ଓଡ଼ିଆ ପିଲାକୁ ନାମ ଧରି ଡ଼ାକିଲେ ସେ ଏଇ ନାମରେ ଉତ୍ତର ଦିଏ । ସେ କହେ 'ଓଁ' ।

## କଳିଂଗ କିଏ ?

ଏଇ ଆତ୍ମାର ଦ୍ୱୈତଭାବ ମଧ୍ୟ ଚୈତନ୍ୟ ଓଡ଼ିଶାର ବିଶେଷତ୍ୱ । ଏଇ ଓଡ଼ିଶାଟି ହେଉଛି, କଳିଂଗାନ୍ ଓଡ଼ିଶା । ଏହା କଟକଠାରୁ ପାରଳାଖେମୁଣ୍ଡି ପର୍ଯ୍ୟନ୍ତ ଉପକୂଳ ଭୂମି ଓ ଉତ୍ତରକୁ 'ବୌଦ୍ଧ' ପର୍ଯ୍ୟନ୍ତ (ସେ କାଳର ବୌଦ୍ଧ ରାଜ୍ୟ ପର୍ଯ୍ୟନ୍ତ) ।

## ମାତ୍ର ହିନ୍ଦୁର ଦର୍ଶନ ଦ୍ୱନ୍ଦ୍ୱରେ ସରଳ ଧ[illegible] ନଷ୍ଟ ହୋଇଛି—

କିନ୍ତୁ ଏହା ପରେ ଭାରତରେ ବୈଦିକ ସାହିତ୍ୟରେ ଯେଉଁ ଦର୍ଶନ ଦ୍ୱନ୍ଦ୍ୱ ଲାଗିଲା, ସେଥିରେ ଅନ୍ତତଃ କୃଷ୍ଣଙ୍କ ଆବିର୍ଭାବ ପର୍ଯ୍ୟନ୍ତ ବିଭୂଧର୍ମ ଏ ଦେଶକୁ କୌଣସି ଅଂଶରେ ଗ୍ରାସ କରି ନାଇ ସତ, ମାତ୍ର ଏଇ ଦର୍ଶନ ଝଗଡ଼ାରେ ପଶ୍ଚିମ ଭାରତର ଧର୍ମନାଶ ହେବାର ଆରମ୍ଭ ହୋଇଛି । ନିର୍ମଳ ଜୈନ ଧର୍ମକୁ ଏ ଦେଶରେ ପୂର୍ବ ଭାରତର ବୈଦିକ ଧର୍ମ ଦ୍ୱନ୍ଦ୍ୱର ଏକତା ଓ ଦ୍ୱୈତଭାବ ଭିତରେ ଭର୍ତ୍ତିକରି ଆମର ପୂର୍ବସୂରୀମାନେ ଯେଉଁ ଅଯଥା ବିଭ୍ରାଟ ଭର୍ତ୍ତି କରିଛନ୍ତି, ସେଥିରେ ଶଂକରାଚାର୍ଯ୍ୟଙ୍କ କାଳପର୍ଯ୍ୟନ୍ତ ଆମର ବିକାଶଧାରା ଏକପ୍ରକାର ଭ୍ରଷ୍ଟ ହୋଇଛି କହିଲେ ହୁଏ ।

## ଦେଖାଯାଉ ମୌଳିକ ଜୈନଧର୍ମ କ'ଣ ଥିଲା—

ଯାହା ହେଉ, ଏ ସବୁ ଧର୍ମ ଯାହା କି ମୂଳତଃ ଜୈନ ଧର୍ମ ଥିଲେ ମଧ୍ୟ ହୁଏତ ଜୈନ ଧର୍ମର ନାମ ଏଥିରେ ନ ଥିଲା, ସେସବୁ ଓଡ଼ିଶାର ଧର୍ମ । ବର୍ତ୍ତମାନ ଦେଖାଯାଉ, ଏଇ ମୌଳିକ ଜୈନ ଧର୍ମ ପୃଥିବୀରେ କିପରି ବ୍ୟାପ୍ତ ଥିଲା ।

ମାତ୍ର ଓଡ଼ିଶାରେ ଜୈନ ଧର୍ମ ବହୁ ପ୍ରାଚୀନ ଓ ଅନେକକାଳଯାଏ ସୁପ୍ରତିଷ୍ଠିତ ଥିଲେ ମଧ୍ୟ ଏହି ଜୈନଧର୍ମ କଥା ବିଶେଷ କରି କହିବା ପୂର୍ବରୁ ଓଡ଼ିଶାର ଜଗନ୍ନାଥ ବିଷୟରେ ଟିକିଏ କହିଦେବା ଦରକାର । ଏଇ ଜଗନ୍ନାଥ, ବେଦକୁ ଅଷ୍ଟ୍ରିକ ବା ନିଷାଦମାନଙ୍କ ମଧ୍ୟରୁ ଯେଉଁ ଶୂନ୍ୟବାଦ ଆସିଥିଲା, ଯାହାର ନିଦର୍ଶନ ବେଦର ନାସଦୀୟ ସୂକ୍ତ (୧୦ମ ମଣ୍ଡଳ—୧୨୯) ରେ ମିଳୁଛି, ସେଇ

ଶୂନ୍ୟରୁ ସମସ୍ତ ଜଗତ୍ ବାହାରି ଥିଲା । ସେଇ ୧୦.୧୨୯ର ଚତୁର୍ଥ ମଂତ୍ରରେ ଅଛି 'ସତ୍ କି ଅସତ୍ କିଛି ନ ଥିଲା, କିନ୍ତୁ ପ୍ରଥମରୁ 'କାମ' ବିଦ୍ୟମାନ ଥିଲା । ଏଇ ଶୂନ୍ୟଭାବ ଓ ତହିଁ ସଙ୍ଗେ କାମ ଭାବ ବରାବର ରହି ଆସିଥିଲା । ମହାଭାରତରେ ସେଥିପାଇଁ ଅଛି ।

"ଏଷ ଧର୍ମଃ ଜଗନ୍ନାଥାତ୍
ସାକ୍ଷାତ୍ ନାରାୟଣାତ୍ ନୃପଃ
ନାରଦେନ ତୁ ସମ୍ପ୍ରାପ୍ତଃ
ସରହସ୍ୟ ସସଂଗ୍ରହଃ ।"

ଅର୍ଥାତ୍ ଏହି ଧର୍ମ ସାକ୍ଷାତ୍ ନାରାୟଣ ଜଗନ୍ନାଥଙ୍କଠାରୁ ସମସ୍ତ ରହସ୍ୟ ଓ ସମସ୍ତ ବିଷୟ ବସ୍ତୁ ସହିତ ନାରଦ ପାଇଥିଲେ । ଏ ଶ୍ଳୋକଟି ମହାଭାରତରେ ଗୀତା ଶ୍ଳୋକମାନଂକରୁ ହୁଏତ ନିତାଂତ ଅର୍ବାଚୀନ ନୁହେ ।

## ଜୈନ ଧର୍ମ—ଜଗନ୍ନାଥ - ସୁଭଦ୍ରା—

ଏଇ ଭାବଟି ମୂଳରୁ ସୃଷ୍ଟିରେ ସ୍ତ୍ରୀ ରୂପର ଭାବ ଧରି ବରାହମିହିରଂକ ମୂର୍ତ୍ତି କଳ୍ପନାରେ ଏକାନଂଶା ରୂପେ ପ୍ରକାଶ ପାଇଥିବାର କୁହାଯାଇଛି । ତା ପୂର୍ବରୁ ଏଇ ଦେବୀ ସୃଷ୍ଟିର ଆବିର୍ଭୂତା ହୈମବତୀରୂପେ କେନୋପନିଷଦର ତୃତୀୟ ଖଂଡ଼ରେ କୁହାଯାଇଥିବାର ଉଲ୍ଲେଖ କରାଯାଇଛି । କ୍ରମେ ଭାରତୀୟମାନଙ୍କର ଏଇ ସାମ୍ୟଭାବ ପ୍ରତିଷ୍ଠିତ ଥିବା କଥାର ବହୁ ଆଲୋଚନା କରାଯାଇଛି, ଏପରି କି ଏମାନଙ୍କ ସାହିତ୍ୟରେ ବିଶ୍ୱମୂଳ ଶୂନ୍ୟ ଓ ପୂର୍ଣ୍ଣ ଏକରୂପ ହୋଇଯାଇଥିଲା । ଏଇ ଶୂନ୍ୟରୁ ବାହାରିଥିଲା କ୍ରମେ ପୁରୀର ଜଗନ୍ନାଥ ।

## ଜିନାସନ—'ପୀଠ'—

ପୁରୀ ଏହା ପୂର୍ବରୁ—ବହୁ ପୂର୍ବରୁ 'ଜିନାସିନ' କ୍ଷେତ୍ର ବା ପୀଠ ରୂପେ ପ୍ରକାଶ ପାଇଥିବା କଥା ସୂଚନାରେ କୁହାଯାଇଛି । ମହାଭାରତରେ ତୀର୍ଥଯାତ୍ରା ବେଳେ ଯୁଧିଷ୍ଠିର ଏଇ ପୀଠରେ ସ୍ନାନ କରିଥିଲେ । ଏଇ ପୀଠରୁ 'ଜିନାସନ' ନଂଦରାଜାଂକ ସମୟରେ ଅରେ ମଗଧକୁ ଯାଇଥିଲା । ଖାରବେଳ ମଗଧରୁ ତାକୁ ପୁଣି ପୁରୀକୁ ଫେରାଇ ଆଣିଥିଲେ ।

## ପୁରୁଷ ଓ ନିମ କାଠ ମୂର୍ତ୍ତି—

ବେଦରୁ ସଫା ପ୍ରମାଣ ମିଳୁଛି, ଏ ପୀଠଟି ପୁରୁଷ ପୀଠ । ଉଡ଼୍ଡୀୟମାନେ ବା ବିଳାସପୁର ଅଂଚଳରେ ଲୋକେ ଯେଉଁ ନିମକାଠ ମୂର୍ତ୍ତି ପୂଜା କରୁଥିଲେ,

ତାହା ପୁରୁଷ ନୁହେ । (ଋକ୍‌ବେଦ ୧୦ମ ମଣ୍ଡଳ-୧୫୫.୩) କାଳକ୍ରମେ ଏଇ ବିବାଦ ଟିକିଏ ଘନୀଭୂତର ହେଲା । ସେଥିରେ ଏଇ ନିମକାଠ ମୂର୍ତ୍ତି ପ୍ରତିପତ୍ତିକୁ ଧରି ଲୋକେ ଏକପ୍ରକାର କଳହ ଆରମ୍ଭ କଲେ । ପୁରୀକୁ ଆସିବାର ବହୁପୂର୍ବରୁ ଏଇ ନିମକାଠର ନାମ ହୋଇଥିଲା ଜଗନ୍ନାଥ । ଏହା ଇନ୍ଦ୍ରଭୂତିଙ୍କ 'ଜ୍ଞାନସିଦ୍ଧି' ପୁସ୍ତକରୁ ପ୍ରମାଣ ମିଳୁଛି । ଏଣେ ମଧ୍ୟ ଏଇ ବିବାଦ ଅନୁକ୍ରମେ ପୁରୀର ଜନାସନ ପୀଠର ନାମ ହୁଏତ ହୋଇଥିଲା ଜଗନ୍ନାଥ ।

## ଓଡ଼ିଆ ସମ୍ରାଟ୍ ଚୋଡ଼ଗଂଗଦେବ ଓ ତାଂକ କାର୍ଯ୍ୟ—

ଖ୍ରୀଷ୍ଟ ଏକାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ସମ୍ରାଟ ହୋଇଥିଲେ ଚୋଡ଼ଗଙ୍ଗଦେବ । କଣ୍ଟୁଦନ ପୂର୍ବରୁ ବିଳାସପୁର ସେନ କଳିଙ୍ଗ ଲଗାଏତ ଏଇ ଅଞ୍ଚଳକୁ ଉଡ୍ଡିୟାନ ବୋଲି କହୁଥିଲେ । ଉଡ୍ଡୀୟାନ ଏଇ ନିମକାଠ ମୂର୍ତ୍ତି ଜନ୍ମ ବିଶ୍ୱମୂଳ ବୋଲି କଳିଙ୍ଗରେ ମଧ୍ୟ ଧାରଣା ପଡ଼ି ଆସିଥିଲା । ତେଣୁ ପ୍ରାୟ ୫୦ ବା ୬୦ ବର୍ଷ ପୂର୍ବରୁ ଗୁଜରାଟର ସୋମନାଥ ମନ୍ଦିର ଗଜନୀର ମାମୁଦଙ୍କ ଦ୍ୱାରା ବିଧ୍ୱଂସ ହୋଇଥିଲା । ଏପରି କି ଭାରତରେ ହିନ୍ଦୁର ଏପରି ମହାପୀଠ ଆଉ ନ ଥିଲା । ଏତକବେଳେ ମନେ ହେଉଛି, ଚୋଡ଼ଗଙ୍ଗଦେବଙ୍କ ପରି ସମ୍ରାଟ୍ ପୁରୁଷୋତ୍ତମ ପୀଠ ବା ଜନାସନ ପୀଠରେ ବିଳାସପୁରର ସେଇ ନିମକାଠ ମୂର୍ତ୍ତି ପ୍ରତିଷ୍ଠା କରି ଆର୍ଯ୍ୟ ଓ ଅନାର୍ଯ୍ୟଭାବ ଏକକରି ଜଗନ୍ନାଥର ଏଇ ମହାଧର୍ମ ପ୍ରଚାର କରିବାରେ ଲାଗିଗଲେ । ଏହା ହେଉଛି, ଜଗନ୍ନାଥ ପୁରୀରେ ପ୍ରତିଷ୍ଠିତ ହେବାର ପୂର୍ବରୂପ ।

## ଚୋଡ଼ଗଂଗ ଓ ରାମାନୁଜ—ସ୍କନ୍ଦପୁରାଣ—

ଏଥିରେ ପରେ ପୁରାଣ ନାନା କଥା କହିଚନ୍ତି । ଯେପରି ପୁରାଣମାନେ ମିଥ୍ୟା କହି ସତ ବୋଲି ଭକ୍ତ ମନ ଭୁଲାନ୍ତି, ଏ ସ୍କନ୍ଦ ପୁରାଣରେ ସେଇଆ କରାଯାଇଛି । ଏପରିକି ଏଇ ଚୋଡ଼ଗଙ୍ଗଦେବଙ୍କ ସଙ୍ଗେ ଦକ୍ଷିଣରୁ ରାମାନୁଜ କିମ୍ବା ତାଙ୍କର କେହି ଶିଷ୍ୟ ଆସି ବୋଧହୁଏ ଏଇ ଜଗନ୍ନାଥ ପ୍ରତିଷ୍ଠାରେ ସହଯୋଗ କରିଥିଲେ । ବର୍ତ୍ତମାନ ପୁରାଣରେ ଏଇ ସ୍ମୃତିଟି ନାରଦ ଓ ଇନ୍ଦ୍ରଦ୍ୟୁମ୍ନରୂପେ ପରିଣତ ହୋଇଛି । ମାତ୍ର ପ୍ରକୃତରେ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରଥମେ ଜଗନ୍ନାଥ ଦର୍ଶନକୁ ଆସିବାର ଯେଉଁସବୁ ବର୍ଣ୍ଣନା ଅଛି, ଯଥା— ଗହଣରେ ଦେବଦାସୀ ଓ ପ୍ରତ୍ୟେକ ରାତ୍ରିରେ ଶୋଇବା ପର୍ଯ୍ୟନ୍ତ ନାନା ଦେବଦାସୀ ସେବା ଇତ୍ୟାଦି ସେସବୁ ସ୍ପଷ୍ଟ ଜଣାଇ ଦେଉଛି, ଏହା ଚୋଡ଼ଗଙ୍ଗ କିମ୍ବା ସେଇଭଳି କୌଣସି ଆଗନ୍ତୁକ ବିଦେଶୀ ବିଜେତା ସମ୍ରାଟର କାମ, ଆଉ କୌଣସି ଉଦାହରଣ ଦେବା ଦରକାର ନାଇ । ପୁରାଣରୁ ଇନ୍ଦ୍ରଦ୍ୟୁମ୍ନ

ଓ ନାରଦଙ୍କୁ ଆଣି ବାସ୍ତବ ଘଟଣାରେ ଓ ରାମାନୁଜଙ୍କୁ ସେଇ ରଙ୍ଗରେ ଚର୍ଚ୍ଚିତ କରିବ ବୋଲି ପୁରାଣ କହିବାରେ ମନେ କରିବା ଆଦୌ ଉଚିତ ନୁହେଁ ।

## 'ବିଶ୍ୱାବସୁ' ଗଳ୍ପ କିପରି ପୁରାଣ ଗଢ଼ା କଥା—

ତା'ପରେ ସ୍କନ୍ଦପୁରାଣ ପ୍ରଭୃତିରେ ପୁରୀର ତଥା ସେଇଠାରେ ବିଶ୍ୱାବସୁ ରକ୍ଷିତ ଜଗନ୍ନାଥଙ୍କର ଯେଉଁସବୁ ବର୍ଣ୍ଣନା ଅଛି, ତାହା ନିତାନ୍ତ ଅବାସ୍ତବ ଓ ଅଲୀକ । ପୁରୀରେ ଭୂତତ୍ତ୍ୱ ହିସାବରେ ମଧ୍ୟ କୌଣସି କାଳେ କେବେ ଗୋଟିଏ ପାହାଡ଼ ନ ଥିଲା । ବିଶ୍ୱାବସୁ ପୁରୀରେ ଥିବା କଥା ସମ୍ଭବ ନୁହେଁ । ବିଶ୍ୱାବସୁ ସମ୍ବନ୍ଧରେ ଯେଉଁ ଆଖ୍ୟାୟିକାଟି ଅଛି, ତାହା ଶବରମାନଙ୍କ ଭିତରେ ଅନ୍ୟତ୍ର ଥିବାର ଶୁଣାଯାଏ । ବିଶେଷତଃ ଏଇ ଆଖ୍ୟାୟିକାଟି ବିଲାସପୁରର ମହାନଦୀ ଓ ତାହାର ଉପନଦୀ ଯୋଂକ, ଏଇ ଦୁଇନଦୀର ସଂଗମସ୍ଥଳ ସେଓରି ନାରାୟଣର ଜଗନ୍ନାଥ ପୂଜା କରୁଥିବା ଶବରମାନଂକ ଭିତରେ ଥିବାର ମଧ୍ୟ ମିଳେ । ସେଠାରେ ନାନା ଆଖ୍ୟାୟିକା ମଧ୍ୟରେ ଅଛି, "ଜଣେ ବୃଦ୍ଧ ଶବର ଜଗନ୍ନାଥଂକୁ ଲୁଚାଇ କରି ବଣଭିତରେ ରଖିଥିଲେ । ଜଣେ ବ୍ରାହ୍ମଣ ଶ୍ରେଣୀର ଲୋକ ସେଇ ଶବରଂକ ଘରେ ପହଂଚି ସେଇ ଦେବତାଂକୁ ଦେଖିବାକୁ ଲୋଡ଼ିଲେ । ଶବର ଦେଖାଇବାକୁ ନାମଂଗ ହେବାରୁ କ୍ରମେ ସେଇ ବ୍ରାହ୍ମଣ ଶବର ଦୁହିତାଂକ ସଂଗେ ବିଭା ହେବାର ସ୍ଥିର କରି ପରେ ଜଗନ୍ନାଥଂକୁ ଦେଖିବାର ବାଟ କଲେ । ଏଇ ଜଗନ୍ନାଥଂକୁ ଦେଖାଇବା ପାଇଁ ବାପ ଶବର ରାଜି ହେବାରୁ ସେଇ ବାଳିକା ସେଇ ବ୍ରାହ୍ମଣଂକୁ ମୁଠାଏ ସୋରିଷ ଅଂଚିରେ ବାଂଧି ବାଟସାରା ପକାଇ ପକାଇ ଯିବାକୁ କହିଲେ ! କ୍ରମେ ବର୍ଷା ଦିନରେ ସେଇ ସୋରିଷ ଗଜୁରି କିଛିକାଳ ପରେ ବାଟଟି ଦେଖା ପଡ଼ିଗଲା । ଏ ଆଖ୍ୟାୟିକାଟି ସ୍କଂଦ ପୁରାଣ ପ୍ରଭୃତିରେ ନାଇ । ମାତ୍ର ଓଡ଼ିଶାରେ ଏହା ଅଛି । ପୁଣି ସେଓରି ନାରାୟଣର ଶବରମାନଂକ ଭିତରେ ଓ ଅନ୍ୟାନ୍ୟ ସ୍ଥାନର କେତେକ ଶବରଂକ ଭିତରେ ଏଇ ଆଖ୍ୟାୟିକା ଅଛି । ଆମର କବି ବିପ୍ର ନୀଳାମ୍ବର ଦାସ ଲିଖିତ 'ଦେଉଳତୋଳା ଗୁଆଂଗ' ବୋଲି ଯେଉଁ ପୁସ୍ତକଟି ଅଛି, ସେଥିରେ ଏଇ ଆଖ୍ୟାୟିକାଟି ପୂର୍ଣ୍ଣଭାବରେ ଅଛି ଓ ଏଇ ଆଖ୍ୟାୟିକା ସଂଗେ ଅନ୍ୟାନ୍ୟ ଅନେକ ଆଖ୍ୟାୟିକା ବିଲାସପୁରର ଶବରମାନଂକ ଭିତରେ ଚଳେ ।

## ଜଗନ୍ନାଥ ପୁରୀକୁ ଆସି ପ୍ରତିଷ୍ଠା ପାଇବାର କିଂବଦଂତୀ—

ଏଇ ଅନେକ ପରଂପରା ମଧ୍ୟରୁ ସେଓରିନାରାୟଣର ଦୁଇ ମାଇଲ ଦୂରରେ ଥିବା ଖାରୋଡ଼ଠାରେ ଯେଉଁ ପରଂପରାଟି ମିଳେ ତାହା ଏଠାରେ ଉଲ୍ଲେଖଯୋଗ୍ୟ । ଏଇ ଜଗନ୍ନାଥ ଏଇ ସମୟରେ ସେଓରି ନାରାୟଣରେ ପ୍ରକାଶ ପାଇଥିଲେ ଓ ସେଇଠାରେ ବୃଦ୍ଧଭିଲ ଶବର ତାଂକୁ ପୂଜା କରୁଥିଲା । ଓଡ଼ିଶାର ରାଜା ଏଇ

ଜଗନ୍ନାଥଂଙ୍କୁ ପ୍ରତିଷ୍ଠା କରିବା ପାଇଁ ପୁରୀଠାରେ ଗୋଟିଏ ବଡ଼ ମଂନ୍ଦିର ତିଆରି କରିଥିଲେ । ଆଉ ସେଇ ରାଜା ଗୋଟିଏ ବ୍ରାହ୍ମଣଙ୍କୁ ପଠାଇ ସେଇ ସେଓରିନାରାୟଣରୁ ନିମକାଠ ମୂର୍ତ୍ତି ପୁରୀକୁ ନେଇଯିବା ପାଇଁ ଚେଷ୍ଟା କରିଥିଲେ । କିଂନ୍ତୁ ସେଇ ବୁଢ଼ା ଭିଲ-ଶବର ଛଡ଼ା ସେ ଦେବତା କେଉଁଠାରେ ଥିଲେ ତା' ଆଉ କେଇ ଜାଣି ନ ଥିଲେ । ବ୍ରାହ୍ମଣ ବହୁ ପ୍ରାର୍ଥନା କରି ମଧ୍ୟ ଶବରଙ୍କୁ ଟଳାଇ ପାରିଲେ ନାଇ । ଶେଷକୁ ସେଇ ଶବର କନ୍ୟାଂକ ସଂଗେ ବିଭା ହେବାର ସ୍ଥିର କଲେ । ସେ ବୃଦ୍ଧ ଶବର ସେଇ ବ୍ରାହ୍ମଣଂଙ୍କୁ ଅଂଧପୁଟଳୀ ବାଂଧି ସେଇ ଦେବତାଂକ ପାଖକୁ ନେଇଯିବାକୁ ମଂଗିଲେ । ଯାହାହେଉ, ସେଇ ବ୍ରାହ୍ମଣ କାନିରେ କେତେଗୁଡ଼ିଏ ସୋରିଷ ବାଂଧି ସେଇ କାନିରେ କଣା କରି ରାସ୍ତାଯାକ ଗୋଟିଏ ଗୋଟିଏ ସୋରିଷ ବୁଣିଦେଲେ । କେତେକାଳ ପରେ ସୋରିଷଗୁଡ଼ିକ ଗଜା ହୋଇ ଗଛ ହେଲା ଓ ପରେ ସେଇବାଟେ ସେ ବ୍ରାହ୍ମଣ ଯାଇ ଦେବତାଂଙ୍କୁ ଠାବ କଲେ । ତା'ପରେ ବ୍ରାହ୍ମଣ ଏକାରେ ଯାଇ ଜଗନ୍ନାଥଂଙ୍କୁ ମହାନଦୀରେ ପୁରୀ ଯିବାପାଇ କହିଲେ । ଜଗନ୍ନାଥେ ରାଜିହେଲେ ଓ ପରେ ଗୋଟିଏ କାଠରେ ପରିଣତ ହୋଇ ସେଇ ମହାନଦୀରେ ଭାସିଯାଇ ପୁରୀରେ ଲାଗିଲେ । ସେଇ ପୁରୀରେ ତାଂଙ୍କୁ ନିଆ ହୋଇ ସେ ଦେଉଳରେ ପ୍ରତିଷ୍ଠା କରା ହେଲା । *

## ଉଡ଼୍ଡ଼ିୟାନ କେଉଁଠି ?

ଏଇଠାରେ ଉଡ଼୍ଡ଼ିୟାନ ସଂବଂଧରେ କଥାଟି ଟିକିଏ ସ୍ପଷ୍ଟକରି କହିଦେବା ଦରକାର । ଉଡ଼୍ଡ଼ିୟାନ ଶବ୍ଦର ଅର୍ଥ ହେଉଚି, ସେ କାଳର ରୀତି ଅନୁସାରେ ଉଡ଼୍ଡ଼ିୟାନ ବା ଉଡ଼୍ଡ଼ଂକ ଉପାସନା ମାର୍ଗ । ତାହା ଯେଉଁଠାରେ ବିକାଶ ପାଇଥିଲା, ସେଇ ସ୍ଥାନକୁ ଶବରମାନଂକ ସ୍ଥାନ ସଂଗେ ମିଶାଇ ତାକୁ କହୁଥିଲେ, 'ଉଡ଼୍ଡ଼ିୟାନ' । କାଳକ୍ରମେ ଏଇ ସ୍ଥାନ ଯେଉଁମାନଂକ ମଧ୍ୟରେ ପ୍ରଚଳିତ ଥିଲା ତାଂକ ସ୍ଥାନକୁ କହିଲେ ଉଡ଼୍ଡ଼ିୟାନ । ଷୋଡ଼ଶ ଶତାବ୍ଦୀରେ ତିବ୍ବତର ଲାମା ତାରାନାଥ ଲେଖିଚଂଛି, ଏଇ ଉଡ଼୍ଡ଼ିୟାନରୁ ତଂନ୍ତ୍ର ତିବ୍ବତକୁ ଆସିଥିଲା ।

## ଦାରୁ ଓ ପୁରୁଷ ମଧ୍ୟରେ ବିବାଦ—

ଏଇ ଉଡ଼୍ଡ଼ିୟାନ ସ୍ଥାନଟି 'ପୁରୁଷୋତ୍ତମ'ରୁ ବେଶୀ ଦୂର ନୁହେ । କାରଣ' ପୂର୍ବେ ଯେଉଁ ଦୁଇଟି ବେଦମଂନ୍ତ୍ର ଉଦ୍ଧାର କରାଯାଇଚି, [ ଯଥା ( ୧ )

---

* "The Tribes and Castes of the Central Provinces of India" by R. V. Rusell and Rai Bahadur Hira Lal. Vol. IV pp. 502 and 503.

“ଅଦୋଯଦ୍ଦାରୁ...” (ଋକ୍‌ବେଦ ୧୦ମ ମଂଡ଼ଳ—୧୫୫.୩; (୨) “ନାସଦାସୀତ୍ ସଦାସୀତ୍ ତଦାନୀ” (୧୦ମ ମଂଡ଼ଳ-୧୨୯.୫) ] ସେ ଦୁଇଟିଙ୍କ ମଧ୍ୟରେ ଖ୍ରୀଷ୍ଟ ୮ମ ଓ ପରବର୍ତ୍ତୀ ଶତାବ୍ଦୀମାନଂକରେ ବଡ଼ କଏ, ଏହା ଯେନ ଖୁବ୍ ବିବାଦ ଲାଗିଛି । ଏଥିରୁ ଗୋଟିଏ ପୁରୁଷ, ଆଉ ଗୋଟିଏ ପୁରୁଷ ନୁହେଁ—ଶୂନ୍ୟ । ସଂବଲପୁରର ଇଂଦ୍ରଭୂତି ଅଷ୍ଟମ ଶତାବ୍ଦୀରେ ଜଗନ୍ନାଥଂକୁ ଶୂନ୍ୟ ବୋଲି ପ୍ରଣିପାତ କରିଛଂତି । ବରାହମିହିରଂକ ‘ଏକାନଂଶା’ ପରେ ଏଇଠାରେ ଜଗନ୍ନାଥଂକ କଥା ମିଳୁଛି । ଏଇ ଇଂଦ୍ରଭୂତି ଓଡ଼ିଶାର ରାଜା ଥିବାର ଅନ୍ୟାନ୍ୟ ଅନେକ ପ୍ରମାଣ ମିଳିଛି । ମାତ୍ର ଏ ଓଡ଼ିଶା କେଉଁଠି ? ଇଂଦ୍ରଭୂତି କଳିଂଗୀୟ ଓଡ଼ିଶା ବା ପୁରୀ ଅଂଚଳର ରାଜା ନୁହଂତି । ଏ ହେଉଛଂତି ସଂବଲର ରାଜା—ଖୁବ୍ ସଂଭବ ଏଇ ସଂବଲ ନାମରୁ ହୋଇଥିଲା ସଂବଲାଇ ବା ସଂବଲେଶ୍ୱରୀ । ଏ ଖୁବ୍ ସଂଭବ ସଂବଲପୁର ଅଂଚଳର ରାଜା ।

## ଗୀତାର ପ୍ରାଚୀନତା—

ଏଇ ଉଡ଼୍ଡୀୟାନ କଥାଟିର ଅର୍ଥବ୍ୟାପ୍ତି ବିଷୟରେ ଜଗନ୍ନାଥ ସଂବଂଧରେ ବିଶେଷ କରି କହି ରଖିବା ଦରକାର । କାରଣ, ଜଗନ୍ନାଥ ପୁରୀକୁ ଆସିବା ପୂର୍ବରୁ ଏଇ ଉଡ଼୍ଡୀୟାନରେ ଥିଲେ । ସେଇଠାରେ ଇଏ ଶବର ବା ଉଡ୍ରମାନଂକର ନିମକାଠ ମୂର୍ତ୍ତିରୂପେ ଥାଇ ପୁରୀର ପୁରୁଷ ବା ପୁରୁଷୋତ୍ତମ—(ଇଂଦ୍ରଭୂତିଂକ ସମୟର ବହୁପୂର୍ବରୁ ଏହାକୁ କହୁଥିଲେ ‘ଜିନାସନ’) ସଂଗେ ସ୍ପର୍ଦ୍ଧା କରି ଏକ ହେଉଥିବା କଥା କୁହାଯାଇଛି ଓ ତାହାର ପ୍ରମାଣ ମଧ୍ୟ ବେଦରେ ଅଛି । ମହାଭାରତରେ ମଧ୍ୟ ଅଛି,

> “ଏଷଧର୍ମୋ ଜଗନ୍ନାଥାତ୍ ସାକ୍ଷାତ୍ ନାରାୟଣାତ୍ ନୃପ
> ନାରଦେନ ତୁ ସଂପ୍ରାପ୍ତଃ ସରହସ୍ୟ ସସଂଗ୍ରହଃ
> ଏବମେଷ ମହାନ୍ ଧର୍ମଃ ସତେପୂର୍ବଂ ନୃପୋତ୍ତମ
> କଥିତଃ ହରିଗୀତାସୁ ସମାସ ବିଧି କଳ୍ପିତାଃ”
> (ମହାଭାରତ, ବଂଗବାସୀ ସଂସ୍କରଣ, ଶାଂତିପର୍ବ ୩୪୭ ଅଧ୍ୟାୟ
> ୧୦ମ-୧୧ଶ ଶ୍ଳୋକ)

ଅର୍ଥାତ୍, ସାକ୍ଷାତ ନାରାୟଣ ଜଗନ୍ନାଥଂକଠାରୁ ଏଇ ଧର୍ମ ନାରଦ ସମସ୍ତ ରହସ୍ୟ ଓ ସଂକଳନ ସହିତ ପାଇଥିଲେ । ଏଇ ମହାଧର୍ମ ସମସ୍ତ ହରିଗୀତା ଅର୍ଥାତ୍ ଭଗବତ୍ ଗୀତାରେ ସମସ୍ତ ସଂକ୍ଷେପ ଆଉ ବିଧିସହିତ କୁହାଯାଇଛି । ଏଇ ନାରାୟଣୀୟ ଉପାଖ୍ୟାନ ଲେଖାହେଲା ବେଳକୁ ଭଗବତ୍ ଗୀତା ଲେଖାସରିଛି । ପୂର୍ବେ କୁହାଯାଇଛି, ଏଇ ନାରାୟଣୀୟ ଧର୍ମ ଏକା ଐକାଂତିକ

ଧର୍ମ, ଅର୍ଥାତ୍, ପାରସ୍ୟର ଅହୁର-ମେଜଦା ଧର୍ମ ଭାରତକୁ ଆସିବାବେଳେ ଏ ଗୀତାଧର୍ମ ଭାରତରେ ପ୍ରବେଶ କରଚ । ଅନୁମାନରେ କୁହାଯାଇଚ, ଶ୍ରୀକୃଷ୍ଣଙ୍କ ଗୀତାରେ ଏଇଧର୍ମ ପ୍ରଚ୍ଚରିତ ହେବା ଅତ୍ୟନ୍ତ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରୁ ଅର୍ବାଚୀନ ନୁହେ ।

## ବଦରିକା ଶ୍ରମରେ ଘଟିଥିବା କଥା—

ସୂଚନାରେ କୁହାଯାଇଚ,-ନାରଦ ଏଇ ଐକାନ୍ତିକ ଧର୍ମ ସମସ୍ତ ରହସ୍ୟ ଓ ବ୍ୟାଖ୍ୟା ସହିତ ବଦରିକାଶ୍ରମରୁ ପାରସ୍ୟକୁ ଯାଇ ସେଇଠାରୁ ଭାରତକୁ ନେଇ ଆସିଥିଲେ ।

## ଦେବକୀ ପୁତ୍ର କୃଷ୍ଣ ଓ ଅନ୍ୟାନ୍ୟ କୃଷ୍ଣମାନେ—

ଏଠାରେ କୃଷ୍ଣ କଥାଟି ଅତି ପ୍ରାଚୀନ । ବେଦରେ ନାନା ସ୍ଥାନରେ ଗୋଟିକରୁ ଅଧିକ କୃଷ୍ଣ କଥା ମିଳେ । ସେଥିରୁ ଗୋଟିଏ ହେଉଚ 'ଛାନ୍ଦୋଗ୍ୟ' ଉପନିଷଦର କୃଷ୍ଣ । ସେ ହେଉଚନ୍ତି, ଦେବକୀ ପୁତ୍ର କୃଷ୍ଣ ଓ ଘୋର ଅଙ୍ଗୀରସଙ୍କ ପାଖେ ଯଜ୍ଞତତ୍ତ୍ୱ ଶିକ୍ଷା କରୁଥିଲେ । ଏଇ ଯଜ୍ଞ ତତ୍ତ୍ୱ ଗୀତାର ଯଜ୍ଞତତ୍ତ୍ୱ ସଙ୍ଗେ ଖୁବ୍ ମିଳାଇ ଦେଖାଯାଇ ପାରେ । ଗୀତାର ୩ୟ ଓ ୪ର୍ଥ ଅଧ୍ୟାୟରେ ଯଜ୍ଞର ଅତି ନୂତନ ଓ ଆଶ୍ଚର୍ଯ୍ୟଜନକ ବ୍ୟାଖ୍ୟା । ସେଠାରେ ଯଜ୍ଞ ହେଉଚ, ଆତ୍ମାର ବହିର୍ବିକାଶ ବା 'ପ୍ରକାଶ ଧର୍ମ'ରେ ସ୍ୱପ୍ରକାଶ । ତା'ବାଦ୍ ଅନ୍ୟତ୍ର ଅଛି ଋକବେଦରେ ବର୍ଣ୍ଣିତ ବୈଦିକ ଦ୍ରଷ୍ଟା ମିଳି ଯମୁନା କୂଳରେ ଅନେକ ଗୋରୁ ରଖିଥିବା କୃଷ୍ଣଙ୍କୁ ପରାସ୍ତ କରିଥିଲେ । ଜଣେ କୃଷ୍ଣ ପୁଣି ବେଦରେ ମନ୍ତ୍ର ଲେଖି ମିଶାଇଚନ୍ତି । ଏଥିରୁ ଜଣାଯାଉଚ କୃଷ୍ଣ ବୋଲି ଜଣେ ମହାପୁରୁଷ—ସେ ଆର୍ଯ୍ୟ ହୁଅନ୍ତୁ, ଅନାର୍ଯ୍ୟ ହୁଅନ୍ତୁ—ବୃନ୍ଦାବନ ଅଞ୍ଚଳରେ ଥିଲେ । ତାଙ୍କର ଦର୍ଶନତତ୍ତ୍ୱ ଖୁବ୍ ଉନ୍ନତ ଥିଲା । ସେ ଯୁଦ୍ଧରେ ପରାସ୍ତ ହୁଅନ୍ତୁ ବା ନ ହୁଅନ୍ତୁ, ତାଙ୍କର ଦାର୍ଶନିକ ତତ୍ତ୍ୱ ବହୁ ଶିଷ୍ୟମାନେ ରଖି ଉତ୍ତର ଭାରତରେ ପ୍ରଚ୍ଚର କରୁଥିଲେ ।

## କୃଷ୍ଣଙ୍କ ଦାର୍ଶନିକ ତତ୍ତ୍ୱ ଓ ତା'ର ପ୍ରଭାବ—

ସମସ୍ତ ଐକାନ୍ତିକ ଧର୍ମ ଖୁବ୍ ସମ୍ଭବ ସେଇ କୃଷ୍ଣଙ୍କଠାରେ ଆରୋପ କରାଗଲା । ସେଇ କୃଷ୍ଣଙ୍କ ନାମ ବାସୁଦେବ । ସେଇ ବାସୁଦେବଙ୍କ ଅନୁସାରେ ଗୀତାରେ କୁହାଯାଇଚ, 'ବାସୁଦେବ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ' (ଗୀତା ୭ମ ଅଧ୍ୟାୟ ୧୯ଶ ଶ୍ଳୋକ)—ସୂଚନା ଦିଆଯାଇଚ, ଏହା ଛଡ଼ା ମହାଭାରତ ଶାନ୍ତି ପର୍ବରେ ଥିବା, ଯଥା—ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ । ଏ ସମସ୍ତଙ୍କ

ଭିତରୁ ଗୀତାବେଳକୁ ବାସୁଦେବଙ୍କ ଛଡ଼ା ଆଉ କାହାର କଥା ସମାଜରେ ପ୍ରବେଶ କରି ନାଇ ।

## କୃଷ୍ଣ ଓ ରାଧାକୃଷ୍ଣ ଧର୍ମ—

ପୂର୍ବୋକ୍ତ ପଂଡ଼ିତ ଭଂଡ଼ାରକର ସାହେବ ବହୁ ଗବେଷଣା କରି ଲେଖିଚଂତି, ଦକ୍ଷିଣର ତାମିଲମାନଂକ ମଝରେ ଗଉଡ଼ୁଣୀ ଲୋକଂକ ଭିତରେ ଧାର୍ମିକ ବୋଲି ଏବର ରଥଯାତ୍ରା ପରି ଗୋଟିଏ ଯାତ୍ରା ବହୁପୂର୍ବରୁ ହେଉଥିଲା । ସେଥିରେ ପଦ୍ମଲେ ନାରୀମାନେ ପୁରୁଷ ବେଶଧରି ଯାତ୍ରାକୁ ବାହାରୁଥିଲେ । କାଳକ୍ରମେ ଏହା ପୁରୁଷ ନାରୀର ଏକତ୍ରାବସ୍ଥିତିରେ ଯାତ୍ରା ହେବାରେ ପର୍ଯ୍ୟବସିତ ହେଲା । ଖ୍ରୀଷ୍ଟ ନବମ ଶତାବ୍ଦୀରେ ତାଂକୋର ରାଜସଭା ପଂଡ଼ିତ ବୋପଦେବ ଯେଉଁ ଭାଗବତ ଶାସ୍ତ୍ର ଲେଖିଥିଲେ, ସେଇ ପୁରାଣ ସେଇ ତାମିଲଦେଶରେ ଲେଖା ଯାଇଥିଲା । ତା' ପରେ ୧୧ଶ ଶତାବ୍ଦୀରେ ଆଂଧ୍ର ନିଂବାର୍କ ବୃଂଦାବନରେ ଆସି କୃଷ୍ଣଙ୍କର ଓ ରାଧାଂକର ସମ୍ପର୍କରେ ଧର୍ମମାର୍ଗ ଉଆରି କଲେ । ତା'ପରେ ବଂଗଳାର ଗୋସ୍ୱାମୀମାନେ ତାକୁ ନାନା ଦାର୍ଶନିକ ବ୍ୟାଖ୍ୟା ଦେଇ ଭକ୍ତିର ଘୋର ପ୍ରଗୃରରେ ମାତିଗଲେ । ସେଇ ରାଧାକୃଷ୍ଣ ଧର୍ମ ତା'ପରେ ପରାଧୀନ ଓଡ଼ିଶାର ଭକ୍ତି ଧର୍ମର ଅତି ସ୍ୱାଦ୍ୟ ଆସ୍ୱାଦନ ରୂପେ ପ୍ରସ୍ଥିର ପାଇ ଏବେ ବ୍ୟାପ୍ତ ହୋଇଚି ।"

### (୭) ଉଡ଼୍ଡିୟାନ

## ଉଡ଼୍ଡିୟାନ ଚୀନ ପରିବ୍ରାଜକଂକ କଥା—

ତେବେ ଏଠାରେ ଜଗନ୍ନାଥଂକ ସଂବଂଧରେ ଆଉ ଗୋଟିଏ କଥା—ଉଡ଼୍ଡିୟାନ । ଜଗନ୍ନାଥ ଗଂଗେଶ୍ୱର, (ଗୈରଗଞ୍ଜ) ଦେବଙ୍କ ଦ୍ୱାରା ପୂଜା ଅଣା ହେବା ପୂର୍ବରୁ ସେ ଥିଲେ ଗୋଟିଏ ଜଂଗଲ ଜାଗାରେ । ସେ ଜାଗାଟିର ନାମ ହେଉଚି ଉଡ଼୍ଡିୟାନ । ଏଇ ଉଡ଼୍ଡିୟାନ ତଂତ୍ରପୀଠ ବୋଲି ଉଦ୍ଧତ ଲେଖାରୁ ପ୍ରକାଶପାଉଚି । ଏଇଠାରୁ ତଂତ୍ର ବାହାରି ବଂଗ ଓ ଆସାମର କାମଖ୍ୟା, ସିଲହଟ୍ଟ ଓ ପୂର୍ଣ୍ଣଗିରିରେ ପ୍ରତିଷ୍ଠିତ ହୋଇ ସେଠାରୁ ନେପାଳବାଟେ ତିବ୍ବତକୁ ଯାଇଥିଲା । ତେବେ ଗୋଟିଏ କଥା ଏଠାରେ କହିଦେବାର ଅଛି, ପଂଡ଼ିତମାନେ ଅଜି ଚୀନର ପରିବ୍ରାଜକ (ଫାଇୟାନ, ହୁଏନଂସା) ମାନଂକଠାରୁ, ଅର୍ଥାତ୍ ସେମାନଂକ ଲେଖାରୁ ବହୁତ ପ୍ରମାଣ ସଂଗ୍ରହ କରଂତି । କିଂତୁ କହିଦେବା ଉଚିତ । ଚୀନ ପରିବ୍ରାଜକମାନଂକ ଲେଖାରେ ଅନେକ ସମୟରେ କୌଣସି ସତ ନାଇ । ସେମାନେ ଶୁଣାକଥା ଦେଖିଲା ପରି ଲେଖିଯାଇଚଂତି, ତାହା ଇତିହାସ ବୋଲି ଅନେକ ମନେ କରଂତି । *

---

The Orissa Historical Research Journal, Vol. VII, April 1958, No 1—Hints on the Significance and History of Jagannath, p. 11 ff.

## ସଉରା ଓ ଦାମକାଠ ମୂର୍ତ୍ତି—

ଏଇ ସମ୍ପର୍କରେ ଜାଣିବାର କଥା ଯେ ପ୍ଲିନି ଓ ଟଲେମିଙ୍କ କାଳର ସୁଆରି କମ୍ବା ଶବରାଇ ଶବରମାନେ ଖ୍ରୀଷ୍ଟ ଆରମ୍ଭକାଳରେ କଳିଙ୍ଗର ଉପରଭୂମିରେ ବଡ଼ ବିଖ୍ୟାତ ଜାତି ଥିବାର ଜଣାଯାଏ । ଏହିମାନେ ବ୍ରହ୍ମ ଓ ପୂର୍ବ ଦ୍ୱୀପମାନଙ୍କର ନିଷାଦ ଜାତିର ଅଂଶ ବୋଲି ମନେ ହୁଏ । ଏଇ ନିଷାଦମାନେ ପୂର୍ବେ ଏଇ କଳିଙ୍ଗ ପାଖବାଟେ ପୂର୍ବ ଦ୍ୱୀପମାନଙ୍କୁ ବସତି କରିବାକୁ ଯାଇଥିବାର ଅନୁମାନ ହୁଏ । * ଏଇ ନିଷାଦ ବା କୋଲେରିୟାନମାନେ ସୂର୍ଯ୍ୟପୂଜକ ବା ସୌରନାରାୟଣର ଉପାସକ ଥିଲେ । ଏଇ କୋଲେରିୟାନମାନେ ସେଇ ବିଷ୍ଣୁ ବା ସୂର୍ଯ୍ୟର ଉପାସନା କରନ୍ତି । ଏଇ ସୌର ନାରାୟଣର ଦାମକାଠ ମୂର୍ତ୍ତି କୌଣସି ଖମ୍ବ ଉପରେ ପୂଜା ପାଉଥିଲା । ଏଇ ସୌରା ପ୍ରଭୃତି ଅନାର୍ଯ୍ୟମାନେ ବର୍ତ୍ତମାନ ଓଡ଼ିଶା ଓ ମଧ୍ୟପ୍ରଦେଶର ଜଙ୍ଗଲରେ ସେଇ ସୂର୍ଯ୍ୟପୂଜକ ଥିଲେ । ସମସ୍ତେ ଜାଣିବା ପାଇଁ ପାରଳାଖେମଣ୍ଡିରେ ଜଙ୍ଗଲର ସୌରା ବା ଶବର ଗ୍ରାମମାନଙ୍କର ଏଇ ଦାମକାଠ ମୂର୍ତ୍ତି ସହିତ ଖମ୍ବ ଓ ସେଥିରେ ଯେଉଁ ମୁଣ୍ଡ ଏବେ ପୂଜା ହୁଏ, ତା’ ଦେଖାଇ ଦିଆଯାଇଛି । ବର୍ଷର କୌଣସି କୌଣସି ଦିନରେ ଏଇ ମୁଣ୍ଡରେ ଆଖି ଓ ମୁହଁ ଚିହ୍ନ କରାଯାଇ ସ୍ୱତନ୍ତ୍ର ସ୍ଥାନରେ ଏଇ କାଠକୁ ବେଶ କରାଯାଏ । ଏହିପରି ଦାମକାଠର ମୂର୍ତ୍ତି ଓ ଚିହ୍ନ ଅନ୍ୟାନ୍ୟ ସୌରାଗ୍ରାମ ଓ ସେଇ ଭଳି ଅନ୍ୟ ଗ୍ରାମମାନଙ୍କରେ ପୂଜା ହେଉଥିବାର ଅନୁମାନ ହୁଏ ।

## ହୁଏନଂସାଂଙ୍କ ଭ୍ରମଣ କାହାଣୀ ଭ୍ରାନ୍ତିକ ମିଥ୍ୟାରେ ପୂର୍ଣ୍ଣ—

ଖ୍ରୀଷ୍ଟ ୭ମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନଂସାଂଙ୍କ ଭ୍ରମଣ ବୃତ୍ତାନ୍ତରେ ଅଛି, ୯୦ ଫୁଟ ଉଚ୍ଚ ସ୍ୱର୍ଣ୍ଣବର୍ଣ୍ଣର ଏକ ପ୍ରକାଣ୍ଡ ମୈତ୍ରେୟବୁଦ୍ଧଙ୍କ ମୂର୍ତ୍ତି ଉଡ୍ଡିୟାନର ରାଜଧାନୀରେ ସେକାଳେ ଥିଲା । ଏଇ ସ୍ୱର୍ଣ୍ଣ ବର୍ଣ୍ଣର ମୂର୍ତ୍ତି, ଅନୁମାନ ହୁଏ, ଦାମକାଠର ମୂର୍ତ୍ତି ଓ ଏଇ ଉଡ୍ଡିୟାନ କଥାଟି ସ୍ୱାଟ ଉପତ୍ୟକାରେ ଫାହିୟାନ୍ ଦେଖିବାର ଯେଉଁ କିମ୍ବଦନ୍ତୀର ଆଭାସ ଅଛି, ସେଇଥିରୁ ନିଆ ଯାଇଥିଲା । ଏଠାରେ ଦେଖିବାର ଅଛି, ସ୍ୱାଟ ଉପତ୍ୟକାର ନାମ ହେଉଛି, ସେକାଳେ ଉଦ୍ୟାନ ବା ବଡ଼ ବଡ଼ର ଗଛ ପତ୍ର ଥିବା ଭୂମି । ଏହା ଉଡ୍ଡିୟାନ ନୁହେ । ଚୀନ ଲେଖାକୁ ଏଇପରି ପଢ଼ିବାରେ ବହୁତ ଭୁଲ ବି ଅଛି । ଏଠାରେ ସିନ୍ଧୁନଦୀର ଉପରେ ପଶ୍ଚିମ ପଟେ ଥିବା ଉଦ୍ୟାନକୁ ଉଡ୍ଡିୟାନ ବୋଲି ଅର୍ଥ କରିବା ବା ସେଥି ସଙ୍ଗେ ଓଡ଼ିଶା ପାଖ ଉଡ୍ଡିୟାନ ଭୂମିକୁ ଯୋଡ଼ିବା ଠିକ୍ ନୁହେ । ଏଇ ସବୁ, ଏଇଭଳି କାରଣରୁ ହୁଏନଂସାଂଙ୍କ ଭଳି ଚୀନ ପରିବ୍ରାଜକମାନଙ୍କ ଲେଖା ଉପରେ ବିଶେଷ କୌଣସି ପ୍ରକାର ନିର୍ଭର କରିବା

---

* Encyclopaedia of Religion & Ethics, Vol XII p. 84, Ist Column.

ଉଚିତ ନୁହେଁ । ଏଇହେତୁ ହୁଏନ୍‌ସାଂ ପ୍ରଭୃତିଙ୍କ ଲେଖାରେ ଯେଉଁ ସବୁ ଭ୍ରାନ୍ତ ମିଥ୍ୟାସବୁ ପରିଚିତ, ତାକୁ ସବୁ ସାବଧାନ ହୋଇ ଦେଖିବା ଉଚିତ । ପରଂପରା ଓ ଶୁଣା କଥାରେ ବହୁତ ଅସମ୍ଭବ ଓ ଅହେତୁକ କଥା ଥିଲେ ମଧ୍ୟ ସେ ସବୁ ସତରେ ଆଖିରେ ଦେଖିଲା ପରି ହୁଏନ୍‌ସାଂଙ୍କ ବିବରଣୀରେ ଲେଖାଅଛି । ଦୃଷ୍ଟାଂତ ସ୍ୱରୂପ କୁହାଯାଇଛି "ହୁଏନ୍‌ସାଂ ନିଜର ଆଖିରେ ଦେଖିଥିଲେ, ଶେଷ ଗୃହେଁଟି ବୁଦ୍ଧଙ୍କର ପଦଚିହ୍ନ ମାନ ।" ହୁଏନ୍‌ସାଂ ଲେଖିଛନ୍ତି, ଏଇ ପଦଚିହ୍ନମାନ ଲଂବାରେ ୫୦୦ ଫୁଟ ଓ ଓସାରରେ ୭ ଫୁଟ । ସେହି ହୁଏନ୍‌ସାଂ ପାଟଳୀପୁତ୍ର ପାଖେ ମହାତ୍ମା ବୁଦ୍ଧଙ୍କର ଯେଉଁ ପଦଚିହ୍ନ ଦେଖିଥିଲେ, ତା ତୁଳନାରେ ଏ ବରଂ ଛୋଟିଆ । ଉଦ୍ୟାନରେ ହୁଏନ୍‌ସାଂ ଏଇପରି ପଦଚିହ୍ନ ଦେଖିଥିଲେ । ସେଇ ପଦଚିହ୍ନ ଖୁବ୍ ବଡ଼ ପଥର ଉପରେ ସ୍ୱାତନଦୀର ଉତ୍ତର ତୀରରେ ଥିଲା । ଦେଖିବା ଲୋକର ଭବାବେଗ ଅନୁସାରେ ଏଇ ପଦଚିହ୍ନଟି ଲଂବା ବା ଛୋଟିଆ ହୋଇ ଦେଖା ଯାଉଥିଲା । ଏଇସବୁ ଜିନିଷ ହୁଏନ୍‌ସାଂଙ୍କ ଭ୍ରମଣ କାହାଣୀରେ ବହୁତ ଦେଖିବାକୁ ମିଳେ ।

ଏଇସବୁ ବର୍ଣ୍ଣନାରୁ ଜଣାଯାଏ, ଏଇ ସ୍ୱାତ ଉପତ୍ୟକାର ଉତ୍ତର-ପଶ୍ଚିମ ଦେଶରେ ଉଡ୍‌ଡ୍ୟାନ ଓଡ଼ିଶା ପାଖ ଇନ୍ଦ୍ରଭୂତିଙ୍କ ଉଡ୍‌ଡ୍ୟାନ ସାଂଗେ କଦାପି ଏକା ନୁହେଁ । ଏ କଥା ମଧ୍ୟ ମନେ ରଖିବାର ଅଛି, ସେ କାଳରେ ବୌଦ୍ଧ ରାଜ୍ୟମାନଙ୍କ ଭିତରେ ସ୍ୱାତ ଉପତ୍ୟକାର ଉଦ୍ୟାନର କୌଣସି ଉଲ୍ଲେଖ କେବେ ନାଇ ।

## ଉଡ୍‌ଡ୍ୟାନର ଯଥାର୍ଥ ପରିଚୟ—

ପ୍ରଫେସର ବିନୟତୋଷ ଭଟ୍ଟାଚାର୍ଯ୍ୟ ସାଧନମାଳାର ୨ୟ ଭାଗର ମୁଖବନ୍ଧରେ ଏଇ ଉଡ୍‌ଡ୍ୟାନ ସଂବନ୍ଧରେ ବହୁତଗୁଡ଼ିଏ କଥା ଲେଖିଛନ୍ତି । ସେ କହନ୍ତି, "ମହା ମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଏଇ ଉଡ୍‌ଡ୍ୟାନକୁ ଓଡ଼ିଶାର ବୋଲି ସ୍ଥିର କରିଥିଲେ । ଇଂଦ୍ରଭୂତିଙ୍କୁ ଏଇ ଉଡ୍‌ଡ୍ୟାନର ରାଜା ଓ ତାଂକ ପୁତ୍ର ଗୁରୁପଦ୍ମସମ୍ଭବ ଶାଂତ ରକ୍ଷିତଙ୍କର ଗୋଟିଏ ଭଉଣୀକୁ ଏଇ ଶାଂତ ରକ୍ଷିତଙ୍କ ଜନ୍ମଭୂମି ଜାହୋରରେ ବିଭା ହୋଇଥିବାର ଲେଖିଛନ୍ତି ।" "୮୪ ସିଦ୍ଧଙ୍କ ବିବରଣରେ ଏଇ ଉଡ୍‌ଡ୍ୟାନର ୫୦ ହଜାର ସହର ଥିଲା ବୋଲି ଲେଖାଅଛି ଓ ଏଇ ଉଡ୍‌ଡ୍ୟାନଟି ଦୁଇଟି ରାଜ୍ୟରେ ବିଭକ୍ତ ହୋଇଛି । ଗୋଟିଏ ହେଉଛି ସମ୍ଭଳ । ଇଂଦ୍ରଭୂତି ଏଇଠାରେ ରାଜତ୍ୱ କରୁଥିଲେ । ଅନ୍ୟ ଖଂଡ଼କ ହେଉଛି, ଲଂକାପୁରୀ । ସେଠାରେ ଜଳେଂଦ୍ର ରାଜତ୍ୱ କରୁଥିଲେ । ଏଇ ଜଳେଂଦ୍ରଙ୍କ ପୁତ୍ର ଇଂଦ୍ରଭୂତିଙ୍କ ଭଉଣୀ ଲକ୍ଷ୍ମୀଂକରାଂକୁ ବିଭା ହୋଇଥିଲେ । ତିବ୍ବତରେ ରକ୍ଷିତ ବିବରଣ ପାଗ୍ ସମ୍ ଜନ୍ ଜାନ୍ (Pag sam zon zan) ଅନୁସାରେ ଏଇ ଉଡ୍‌ଡ୍ୟାନରୁ ବାହାରି ଥିଲା ପ୍ରଥମେ ତନ୍ତ୍ର । ସେଇଠାରୁ ଆସାମ ଓ ନେପାଳର ନାନା ପୀଠବାଟେ ଏହା

ଘଦତକୁ ଯାଇଥିଲା । ପୂର୍ବେ କୁହାଯାଇଛି, ଏଇ ଉଡ୍ଡିୟାନ ହେଉଛି ଉଡ୍ଡ ବା ଉଡ୍ଡଙ୍କର ଯାନ ବା ଉପାସନା ମାର୍ଗ । ମହାଯାନ, ହୀନଯାନ, ବଜ୍ରଯାନ, ପ୍ରତ୍ୟେକ ଯାନ, ଭଂହଯାନ ପ୍ରଭୃତି ପରି ଏହା ଗୋଟିଏ ଶବ୍ଦ । କୁହାଯାଇଛି, କାଳକ୍ରମେ ସେଇ ଯାନ ଯେଉଁଠାରେ ଚଳୁଥିଲା, ଏ ନାମଟି ସେଇ ଭୂମିଖଣ୍ଡରେ ପ୍ରବର୍ତ୍ତିଲା । ଏଇ ଉଡ୍ଡିୟାନ ଭେତରେ ଜାହୋର, ଲଙ୍କାପୁରୀ ଓ ସମ୍ବଲ ପାଖେ ପାଖେ ଥିଲା, ଏ ବିଷୟରେ ଆଉ ସନ୍ଦେହ ରହୁନାଇ । ସେ ଭୂମିଟି କିଏ ? ଏବେ ସେ ଭୂମିଟି ବାଣବରେ ଆଉ କିଛି ଅସୁବିଧା ରହୁନାଇ । ତଦ୍ବିଦ୍ ପଣ୍ଡିତମାନେ ଏ ବିଷୟରେ ଯାହା ଭୁଲ କରନ୍ତୁ, ଏଥିରେ ସମ୍ବଲ ବୋଇଲେ ଏବର ସମ୍ବଲପୁର ଅଂଚଳ । କାରଣ ଏଇଥିରୁ ସମ୍ବଲାଇ ବା ସମ୍ବଲେଶ୍ୱରୀ ଶବ୍ଦଟି ହୋଇଛି । ଯେପରିକି ଭାର୍ଗବୀ ମୁହାଣରେ ପ୍ରତାପରାମଚନ୍ଦ୍ରପୁର ଓ ବିଜୟ ରାମଚନ୍ଦ୍ରପୁର ମଧ୍ୟରେ ଅଛନ୍ତି କଳିଂଗେଇ ବା କଳିଂଗେଶ୍ୱରୀ । ଜାହୋର ନାମ ସଂଗେ ଏବିର ସୁଲଟର ପ୍ରଭୃତି ଅଚଂଲର ଖୁବ୍ ସମ୍ପର୍କ । ତା'ପରେ 'ଲଙ୍କାପୁରୀ' କଥାଟି ଏବେ ସ୍ଥାନୀୟ ଲୋକଂକ କଥାରେ ଚଳେ । ତେଲ ଓ ମହାନଦୀ ମଧ୍ୟରେ ସୋନପୁର ପାଟଣା । ଏ ଦୁଇଟି ରାଜ୍ୟକୁ ଏବେ ବି ସ୍ଥାନୀୟ ଲୋକେ ଲଂକାପୁରୀ ବୋଲି କହନ୍ତି । ଦୁଇନଦୀ ମଧ୍ୟବର୍ତ୍ତୀ ସ୍ଥାନକୁ ଦ୍ରାବିଡ଼ରେ ଲଂକା ବା ଲଂକାପୁରୀ ବୋଲି କୁହାଯାଏ । *

କୃଷ୍ଣା ମୁହାଣ ପ୍ରଭୃତିରୁ ଏବେ ଯେଉଁ 'ଲଂକାମରିଚ' ଓଡ଼ିଶାକୁ ରପ୍ତାନି ହୁଏ, ତାହା ନଦୀ ମୁହାଣ ମଧ୍ୟବର୍ତ୍ତୀ ସ୍ଥାନରୁ ହୁଏ ବୋଲି ତା'ର ନାମ ଲଂକା ବା ଲଂକାମରିଚ ।

## ସେରଗଂଗଂକ କାର୍ଯ୍ୟ—

ଅତଏବ ପରିଷ୍କାର ଜଣାଯାଉଛି, ଏଇ କଳିଂଗର ଉପର ଭୂମି 'ବୌଦ୍ଧ'ଠାରୁ ବିଳାସପୁର ପର୍ଯ୍ୟନ୍ତ ସେ କାଳେ ଥିଲା ଉଡ୍ଡିୟାନ, ସେଇଠାରେ ଅର୍ଥାତ୍ ଶବରୀ ନାରାୟଣ ଗ୍ରାମ (ମହାନଦୀ ଓ ତାହାର ଉପନଦୀ ଯୋଂକ ମଧ୍ୟବର୍ତ୍ତୀ ସ୍ଥାନ) ରେ ଏଇ ନିମକାଠ ମୂର୍ତ୍ତି ଜଗନ୍ନାଥ ନାମରେ ବହୁକାଳରୁ ପୂଜା ପାଉଥିଲା ଓ ତାକୁଇ ସେରଗଂଗ ଦେବ ମହାନଦୀରେ ଭସାଇ ଅଣାଇ ପୁରୀର ପୁରୁଷୋତ୍ତମ ପୀଠରେ ପ୍ରତିଷ୍ଠା କରି ନିମକାଠ ମୂର୍ତ୍ତି ସଂଗେ ପୁରୁଷୋତ୍ତମଂକୁ ଏକ କରି ଥିଲେ । କାରଣ ସେଇ ଶବରୀ ନାରାୟଣଠାରେ ଏବେ ମଧ୍ୟ ଠିକ୍ ଯେଉଁ ଦିନ ଜଗନ୍ନାଥ ପୁରୀକୁ ଆସିଥିଲେ, ବର୍ଷର ସେଇ ଦିନ ସେଇନାମରେ ଗୋଟିଏ ପର୍ବ ହୁଏ ।

---

* Sri N. K. Sahoo ଙ୍କ 'Buddhism in Orissa' P. 167 Specially—Sambal lanka and zahore ଦେଖ ।

## ସୁଭଦ୍ରା ଓ ସୁଦର୍ଶନ—

ମାତ୍ର ଏଇ ଜଗନ୍ନାଥ ନିମକାଠ ମୂର୍ତ୍ତିରୂପେ ଆଉ ପୂର୍ବରୁ ଯାଇଥିଲେ ବୋଲି ମନେ ହେଉନାଇ । ଏଇଠାରେ ସୁଭଦ୍ରା ମୂର୍ତ୍ତି କଳ୍ପିତ ହେବାର କୌଣସି ଅସଙ୍ଗତ ନାଇ । ମାତ୍ର ସୁଦର୍ଶନ କୁଆଡ଼ୁ କେତେବେଳେ ବାହାରିଲେ ଜାଣିବାକୁ ସହଜ ନୁହେ । ଜୈନଙ୍କ ଆଉ ବୌଦ୍ଧଙ୍କ ସୂର୍ଯ୍ୟରୂପେ ଚକ୍ରପୂଜା—ବିଶେଷରେ ଏଇ ଦ୍ୱାଦଶ ଅରଯୁକ୍ତ ଚକ୍ରପୂଜା—ବହୁ ପ୍ରାଚୀନକାଳରୁ ଚଳିଆସୁଛି । ଏପରିକି ବ୍ୟାବିଲନ ପ୍ରତ୍ନତତ୍ତ୍ୱରେ ଏହା ୩ ହଜାର ୫ ଶହ ବର୍ଷରୁ କମ୍ ପ୍ରାଚୀନ ନୁହେ—ଏପରିକି ଆହୁରି ବେଶୀ । ଖ୍ରୀଷ୍ଟ ପ୍ରାୟ ୧୮୦୦ ପୂର୍ବେ ସମ୍ରାଟ ହାମୁରାବ ସୂର୍ଯ୍ୟଙ୍କଠାରୁ ଆଇନ ପାଇଥିବା ଯେଉଁ ଖୋଦନଚକ୍ରରେ ଅଛି ସେଥିରେ ପାହାଡ଼ ଉପରେ ଏଇ ଚକ୍ରର ଲାଂଛନ ଚକ୍ର ହୋଇଚି । ତାର ପ୍ରାୟ ୧୦୦୦ ବର୍ଷ ପୂର୍ବରୁ ସମ୍ରାଟ ନାର୍‌ମସିଂହଙ୍କର ଗୋଟିଏ ବିଜୟ ଚକ୍ରରେ ଏଇ ସୂର୍ଯ୍ୟ ଚକ୍ରର ଲାଂଛନ ଖୋଦନରେ ମଧ୍ୟ ଅଛି । ବ୍ୟାବିଲନ ରାଜ୍ୟ ଆରମ୍ଭରୁ ଏଇ ଚକ୍ରରୂପେ ସୂର୍ଯ୍ୟଙ୍କର ପ୍ରତିଷ୍ଠା କରିଥିବା କଥା ସେଇଆଡ଼ର ପ୍ରାଚୀନ ଲିପିମାନଙ୍କରୁ ମିଳେ । ଯେତେବେଳେ ଏଇ ଜଗନ୍ନାଥ ଶୂନ୍ୟରୂପେ ବୌଦ୍ଧ ବୋଲି ପରିଚିତ ହେଲେ, ଖୁବ୍ ସମ୍ଭବ ସେତିକିବେଳେ ଏଇ ଚକ୍ର ତାଙ୍କ ସଙ୍ଗେ ଯୋଡ଼ା ହେଲା । ଏହା ବୌଦ୍ଧ ବା ଜୈନମାନଙ୍କର 'ଧର୍ମଚକ୍ର' ।

## ସିଂହଳର ବୁଦ୍ଧଦଂତ—ଗୋଟିଏ ଭ୍ରାନ୍ତିକ ମିଥ୍ୟା—

ଏଇ ବିଷୟରେ ପ୍ରଥମ ସଂସ୍କରଣରେ ବହୁକଥା କୁହାଯାଇଛି । ମାତ୍ର ସେସବୁ କପରି ଭାରତ ଅଚଂଳରେ ଉପାଖ୍ୟାନ ହେଲା, ତାହା କହିବା ବଡ଼ କଷ୍ଟ । ସେ ସବୁର ପ୍ରଧାନ କଥା ହେଉଚି, ସିଂହଳରୁ ଗୋଟିଏ ଦଂତ ପୁରୀକୁ ଆସିଥିଲା । ଏହା ପ୍ରାୟ ଖ୍ରୀଷ୍ଟ ୩ୟ, ୪ର୍ଥ ଶତାବ୍ଦୀର କଥା । ଏସବୁ ଭକ୍ତ ଧର୍ମର କଥା । ଏଇ ଭକ୍ତ ହିସାବରେ ହୁଏନଂସା ମଧ୍ୟ ପୁରୀରେ ରହିଁ ସିଂହଳରେ ଥିବା ଦଂତର ଜ୍ୟୋତି ଦେଖି ପାରିଥିଲେ ବୋଲି ଲେଖାଅଛି । ତାହା ପରେ ଉତ୍ତର ଭାରତରେ ବୁଦ୍ଧ ମଲାବେଳେ ତାଂକ ଚିତାରୁ ଦଂତ କଳିଂଗକୁ ଆସିବାର କୌଣସି ଉଲ୍ଲେଖ ନାଇ । ବୁଦ୍ଧଦେବଙ୍କର ମଧ୍ୟ କଳିଂଗରେ ଅନ୍ୟ କୌଣସି କାର୍ଯ୍ୟ ନାଇ । କ୍ଷେମ ବୋଲି ଜଣେ ଥେରେ ବୁଦ୍ଧଙ୍କ ଚିତାଭସ୍ମରୁ ଏଇ ବାଁପଟ ବଣିଦଂତଟି ଧରି କଳିଂଗରାଜ ବ୍ରହ୍ମଦତ୍ତଙ୍କ ପାଖକୁ କାହିଁକି ଆସିଲେ, ତାହାର କୌଣସି ଉଲ୍ଲେଖ ନାଇ । ତା' ପରେ ସେ ଆସିଲେ କଳିଂଗରାଜ ବ୍ରହ୍ମଦତ୍ତଙ୍କ ପାଖକୁ । ଏଇ ବ୍ରହ୍ମଦତ୍ତ ଏକା କଳିଂଗ ରାଜାଂକ ନାମ ଥିବାର ପ୍ରମାଣ ମିଳେ ନାଇ । ସେଇ ସମୟର ବନାରସ ରାଜାଂକ ନାମ ପୁରାଣରେ ମିଳେ ବ୍ରହ୍ମଦତ୍ତ । ଏସବୁ ଗୋଳମାଳ ଭିତରେ ପଶି ସିଂହଳର

ଲୋକଙ୍କଦ୍ୱାରା ତିଆରି ଗଳ୍ପରେ ନିର୍ଭର କରି ବୁଦ୍ଧଦନ୍ତ ଓ ଜଗନ୍ନାଥଙ୍କ କଥା ଠିକ୍ କରି ଧରିବାର କୌଣସି କାରଣ ନାହିଁ ।

## ଓଡ଼ିଶାରୁ ବାହାରିଥିବା ସେଇ ବିଷୟରେ ଆଉ ଗୋଟିଏ ଭୁକ୍ତିକ ମିଥ୍ୟା—

ଏଇ ଘଟଣାକୁ ଲକ୍ଷ୍ୟ କରି ଜଗନ୍ନାଥ ପ୍ରତିଷ୍ଠାର ପ୍ରାୟ ୩୫୦ ବର୍ଷରୁ ଅଧିକ ପରେ କଳିଙ୍ଗର କବି ସାରଳାଦାସ ଆଉରି ଏକ ଭକ୍ତିର ଗଳ୍ପ ଲେଖିଯାଇଚନ୍ତି । ତାହା ମଧ୍ୟ ଏବେ ଭାରତ ସାରା ବିଶ୍ୱାସ କରିବାର ଓ ସେ ବିଷୟରେ ନାନା ଯୁକ୍ତିତର୍କ କରିବାର ଦେଖାଯାଏ । ସେ ଗଳ୍ପଟି ହେଉଚି, ଜାରାଶବର କୃଷ୍ଣଙ୍କୁ ମାରିବା ପରେ, କୃଷ୍ଣଙ୍କ ବଂଶୀୟମାନେ ଦ୍ୱାରକା ପାଖେ ତାଙ୍କ ଶବ ଦାହ କଲେ । 'ଶବ'ର ସବୁ ପୋଡ଼ିଗଲା, କିନ୍ତୁ ହୃତ୍‌ପିଣ୍ଡଟି ଜଳି ଧ୍ୱଂସ ହେଲା ନାହିଁ । ସେଇ ହୃତ୍‌ପିଣ୍ଡଟି ଗୋଟିଏ ଜାଅନ୍ତା ବରକାଠରେ ବାନ୍ଧି ସେମାନେ ସେଇ ଦ୍ୱାରକାପାଖେ ସମୁଦ୍ରରେ ଫିଙ୍ଗି ଦେଲେ । ସେଇ ହୃତ୍‌ପିଣ୍ଡ ଓ ବରକାଠ ଭାସି ଭାସି ଆସି ପୁରୀ ସମୁଦ୍ରକୂଳେ ଲାଗିଲା । ସେଇଠାରେ ଜଗନ୍ନାଥର ପ୍ରତିଷ୍ଠା ହେଲା । ବିଶେଷ ଜାଣିବାର କଥା, ଯେଉଁ ବିଶ୍ୱାବସୁର କଥା ପୁରାଣରେ ଲେଖାଅଛି, ସେଇ ବିଶ୍ୱାବସୁ ସେଇ ପୁରୁଣା ଜାରା-ଶବର ଖୁବ୍ ବେଶୀ ହେଲେ ଦୁଇ ତିନ ପୁରୁଷର ବଂଶଧର ଏ ସମସ୍ତ ଗଳ୍ପଟି ସିଂହଳରୁ ଯେଉଁ ମିଥ୍ୟା ଗଳ୍ପ ଆସିଥିଲା, ତାହାର ପ୍ରତିଦ୍ୱନ୍ଦ୍ୱୀରେ ସାରଳାଦାସ ଲେଖି ପକାଇଥିଲେ । ଅତଏବ ଏସବୁ ଭକ୍ତିବୃତ୍ତାନ୍ତରେ ଭୁଲିବା ସତ୍ୟସନ୍ଧିତ୍ସୁର କାମ ନୁହେ ।

## (୭) ବୁଦ୍ଧଦେବଙ୍କ ମଧ୍ୟପନ୍ଥା

### ବୁଦ୍ଧ କିଏ ?—

ମାତ୍ର ଆଉ ଗୋଟିଏ କଥା ଏଠାରେ ମନେ ରଖିବାର ଅଛି । ପ୍ରଥମ ସଂସ୍କରଣ ମୁଖବନ୍ଧର ଟୀକା ଲେଖିବାରେ ଯୋଡ଼ିଏ ବିଷୟ ଖୁବ୍ ଉଲ୍ଲେଖଯୋଗ୍ୟ । ସେ ଦୁଇଟିରୁ ଗୋଟିଏ ବୌଦ୍ଧଧର୍ମ ଓ ଅନ୍ୟଟି ତନ୍ତ୍ର ।

### (୧) ବୌଦ୍ଧଧର୍ମ—

ଏଠାରେ ବୁଦ୍ଧଦେବଙ୍କୁ ଟିକିଏ ଭଲକରି ଚିହ୍ନାଇ କହିଦେବାର ଅଛି । ବୁଦ୍ଧ ହେଉଚନ୍ତି, ଜଣେ ଜୈନ । ସେ ଶେଷବେଳର ଜୈନତୀର୍ଥଙ୍କର ବା ଜୈନ ମହାପୁରୁଷ ବୋଲି କୁହାଯାଇପାରେ । ମହାବୀରଙ୍କ ବେଳେ ଯେଉଁ ବୌଦ୍ଧଧର୍ମ ବଢ଼ିଥିଲା, ସେଥିରେ ଜୈନକୃଚ୍ଛ୍ର ବ୍ରତମାନଙ୍କ ହେତୁରୁ ଦୁଇଟି ଦିଗ ବେଶ ପ୍ରକାଶ ପାଇ ଆସୁଥିଲା । ସେଥିରୁ ଗୋଟିଏ ହେଉଚି ଅତି କୃଚ୍ଛ୍ରସାଧନା, ଅନ୍ୟଟି ହେଉଚି, ଲୋକାୟତ ଭଳି ସହଜ ଓ ସ୍ୱାଦ୍ୟ ସାଧନା । ଏଇ ଦୁଇଟି ଭିତରେ ବୁଦ୍ଧଦେବଙ୍କ 'ମଧ୍ୟପନ୍ଥା' । ଗୀତାର ଷଷ୍ଠ ଅଧ୍ୟାୟରେ ୧୬ଶ ଓ ୧୭ଶ ଶ୍ଳୋକରେ ଏହାର ସ୍ପଷ୍ଟ ସୂଚନା ଦିଆଯାଇଚି—

ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି ନ ଚୈକାଂତମନଶ୍ନତଃ ।
ନ ଚାତିସ୍ୱପ୍ନଶୀଳସ୍ୟ ଜାଗ୍ରତୋନୈବଚାର୍ଜୁନ । ୧୬ ।
ଯୁକ୍ତାହାର ବିହାରସ୍ୟ ଯୁକ୍ତଚେଷ୍ଟସ୍ୟ କର୍ମସୁ ।
ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗୋଭବତି ଦୁଃଖହା । ୧୭ ।

**ଅର୍ଥ**—ହେ ଅର୍ଜୁନ, ଅତି ଭୋଜନୀ (ପେଟ ବା ବଲାସୀ), ଏକାବେଳକେ ଉପବାସୀ (ଇଂଗ୍ରଯୁକ୍ତ୍ରୋଗଣ୍ଡନ), ଭାରି ନିଦ୍ରାଳୁ (ବା ଅଳସୁଆ), ଅତି ଉଜାଗର (ବା ସବୁ କରିବାକୁ ଛଟପଟ ହେବା ଲୋକ)—ଏଇପରି ଯୋଗସାଧିବା ଲୋକଙ୍କର ଯୋଗ ହୁଏ ନାଇ । ୧୬ ।

**ଅର୍ଥ**—(ତେବେ କାହାର ହୁଏ ? କହୁଚନ୍ତି)—ଯେତିକ ଦରକାର ସେତିକ ଆହାର ବିହାର ଯେ କରେ ଓ ସେଇପରି ଭାବରେ କର୍ମରେ ଶ୍ରମ କରେ, ପୁଣି ସେଇ ନିୟମରେ ଶୋଇବା ଉଠିବା ପ୍ରଭୃତି ଠିକ୍ ରଖେ, ସେଇ ଲୋକ ପକ୍ଷରେ ଏହା ଯୋଗ ଦୁଃଖଭଞ୍ଜନ ହୁଏ । ୧୭ ।

## ବୁଦ୍ଧଦେବ ଓ ଅଶୋକ—

ଏଥିରୁ ସ୍ପଷ୍ଟ ଜଣାଯାଉଚ, ବୁଦ୍ଧଦେବଙ୍କ ଯୋଗ ବହୁତ ନରମ ହୋଇଯାଇ ଥିଲା । ଅଂଶତଃ ଜୈନନିଷ୍ଠା ଓ ଜୈନକାଷ୍ଠାରୁ ବହୁତ ଓହରି ଆସିଥିଲା । ଅଶୋକଙ୍କ ବେଳେ କଳିଂଗ ଯୁଦ୍ଧରେ ଯେଉଁ ଯୋଗର ପ୍ରଚେଷ୍ଟା ପ୍ରକାଶ ପାଇଲା, ସେଥିରେ ପୁଣି ଅଶୋକ ଅତି ସାବଧାନତାର ସହିତ 'ବ୍ରାହ୍ମଣ' ଓ 'ଶ୍ରମଣ' ଏ ଦୁହିଁଙ୍କ ଭିତରେ କୌଣସି ଭେଦ ନ ରଖି ସମସ୍ତ ବିଷୟରେ ନିଜର ସାମ୍ୟଭାବ ପ୍ରଚାର କଲେ । ହେଲେହେଁ, ସେଇଠାରୁ କ୍ରମେ ମହାସଂଘିକମାନେ ବୁଦ୍ଧଦେବଙ୍କୁ ମୂଳତଃ ଭୁଲିଯାଇ ତାଙ୍କୁ 'ବୁଦ୍ଧ-ଭଗବାନ' ରୂପେ ଭକ୍ତମାନଙ୍କ ଭିତରେ ପ୍ରଚାର କଲେ । ଏଇ ବୁଦ୍ଧଧର୍ମ ପରେ ଗୀତାଧର୍ମରୂପେ ଭାରତରେ ପ୍ରଚାରିତ ହେଲା । ପ୍ରଥମ ସଂସ୍କରଣର ଟୀକାରେ ଏଇ ବୁଦ୍ଧଦେବଙ୍କ ଛଡ଼ା ଆଉ କୌଣସି ପ୍ରତିଷ୍ଠା ଉପରେ ଗୀତାକୁ ପ୍ରତିଷ୍ଠିତ କରାଯାଇ ନାଇ ।

## (୨) ତଂତ୍ର—

ଏ ତଂତ୍ର ପୃଥିବୀରେ ବହୁ ପ୍ରାଚୀନ । ଉପନିଷଦର ହୈମବତୀଙ୍କ ଠାରୁ ଶିବଶିବାନାରାୟଣ ବା ପୁରୀର ଶୁଭଦ୍ରାଂକ ପର୍ଯ୍ୟନ୍ତ ମାନବୋପାସନାର ଏ ଗୋଟିଏ ଜୀବନ୍ତ ଧାରା । ପୃଥିବୀରେ ଏହାକୁ ଏଡ଼ିଦେବାର ନାଇ । ଏଇ ତଂତ୍ର ଜଗନ୍ନାଥରେ ଥାଇ କ୍ରମେ ଧାର୍ମିକ ଭାରତୀୟର ଏହା ଶୂନ୍ୟବାଦରୂପେ ପ୍ରକାଶ ପାଇଥିଲା । କିଂତୁ ତାହା

ସଙ୍ଗେ ସଙ୍ଗେ ଏଇ ତନ୍ତ୍ର ଗୁପ୍ତଭାବରେ ଏଇ ଜଗନ୍ନାଥରେ ବରାବର ଥିଲା । ଋକ୍‌ବେଦର ୧୦ମ ମଣ୍ଡଳର ୧୨୯, ୪ର୍ଥ ମନ୍ତ୍ରରେ କୁହାଯାଇଛି—

"କାମସ୍ତଦଗ୍ରେ ସମବର୍ତ୍ତତାଧି..."

ଏଇ ଭାବଟି ଜଗନ୍ନାଥରେ ବରାବର ରହିଆସିଛି । ଯେଉଁ ସେଓରି ନାରାୟଣରୁ ଏଇ ଯେଉଁ ଜଗନ୍ନାଥ ପୁରୀକୁ ଆସିଲେ, ତାହାର ପ୍ରତିଷ୍ଠା କରାହୋଇଥିଲା 'ପୀଠ'ରେ । ମହାଭାରତରେ ଯୁଧିଷ୍ଠିର ତୀର୍ଥଯାତ୍ରା କଲାବେଳେ ଭୁବନେଶ୍ୱର ଅଞ୍ଚଳର ପାହାଡ଼ମାନଙ୍କରୁ ଆସି ଏଇ 'ପୀଠ'ରେ ସ୍ନାନକରି ମହେନ୍ଦ୍ର ଆଡ଼କୁ ଯାଇଥିଲେ । ଏଇପୀଠ ମନେ ହେଉଛି କଳିଙ୍ଗର ଜିନାସନ ପୀଠ । ଏହାଇ ପୂର୍ବର ପୁରୁଷ ପୀଠ ବା ପୁରୁଷୋତ୍ତମ ପୀଠ । କିନ୍ତୁ ଏଇ ପୀଠରେ ଜଗନ୍ନାଥ ମିଶିବାରେ ଏହା ଗୋଟିଏ ତାନ୍ତ୍ରିକ ଅନୁଷ୍ଠାନରେ ପ୍ରକାଶ ପାଇଲା । ଏଇ କଥା ଟିକିଏ ଭଲକରି କୁହାଯାଉଛି ।

## (୮) ତନ୍ତ୍ର

### ଜଗନ୍ନାଥ ଓ ତାନ୍ତ୍ରିକ ଅନୁଷ୍ଠାନ—

ଚୋଡ଼ଗଙ୍ଗଦେବ ଜଗନ୍ନାଥଙ୍କୁ ସେଓରି ନାରାୟଣରୁ ମହାନଦୀରେ ଭସାଇ ଆଣି ସେଇଠାରୁ ପୁରୀ ପୁରୁଷୋତ୍ତମ ପୀଠକୁ ନେଇ ସେଠାରେ ପ୍ରତିଷ୍ଠା କଲେ । ଦୂରଦର୍ଶୀ ଚୋଡ଼ଗଙ୍ଗଦେବ ଏଇ ସେଓରି ନାରାୟଣରେ ଥିବା ଓ ସେତେବେଳକୁ ଶୂନ୍ୟ, ଜିନ ଓ ବୌଦ୍ଧରେ ପରିଣତ ହୋଇଥିବା—ଜଗନ୍ନାଥଙ୍କୁ ଆଣି କଳିଙ୍ଗର ପୁରୁଷୋତ୍ତମ ପୀଠ ଓ ସେଥିସଙ୍ଗେ ଉଡ୍ଡିୟାନ ବା ସେଓରି ନାରାୟଣର ଜଗନ୍ନାଥଙ୍କୁ ଏକତ୍ର କରି ଏପରି ମହାନୁଷ୍ଠାନରେ ପରିଣତ କରିବା ବଡ଼ ସହଜ କଥା ନ ଥିଲା । ପୁରୁଷୋତ୍ତମ ପୀଠ କଳିଙ୍ଗର ଅତି ପ୍ରସିଦ୍ଧ ସ୍ଥାନ ହେଲେ ମଧ୍ୟ ଏଥିରେ ତନ୍ତ୍ର ଓ ତାନ୍ତ୍ରିକତା ଭଳି କୌଣସି ବିଷୟ ସଂଲଗ୍ନ ଥିବା ମନେ ହେଉନାହିଁ । ଏହା ଥିଲା ଏକ ଶୁଦ୍ଧ ଜୈନପୀଠ—କିନ୍ତୁ ବଡ଼ ସମ୍ମାନିତ ଜୈନପୀଠ । ଅବଶ୍ୟ କଳିଙ୍ଗର ଜିନାସନ ଖାରବେଳଙ୍କ ପରେ କଳିଙ୍ଗରୁ କୁଆଡ଼େ ଗଲା, ତାହା ଜଣାଯାଉ ନାହିଁ । କିନ୍ତୁ ୧୦୭୬ ଖ୍ରୀଷ୍ଟାବ୍ଦରେ କାହ୍ନିଙ୍କ ପରେ ୧୫ଶ ଶତାବ୍ଦୀର ସାରଳାଦାସରେ କଳିଙ୍ଗର ସଂସ୍କୃତି ଦେଖିଲେ ମନେହୁଏ, ଏହା ପ୍ରତିଷ୍ଠିତ ଆର୍ଯ୍ୟ ସଂସ୍କୃତିରୁ ସମ୍ପୂର୍ଣ୍ଣ ଭିନ୍ନ । ସାରଳାଦାସର ନାରୀଚରିତ୍ର ବିଷୟରେ ଅନ୍ୟ ପ୍ରସଙ୍ଗରେ ଅନ୍ୟତ୍ର କିଞ୍ଚିତ୍ କୁହାଯାଇଛି । ତାହା ଛଡ଼ା ସାରଳାଦାସର ପୁନର୍ଜନ୍ମ ଓ ଆତ୍ମାର ଦଣ୍ଡଭୋଗ ବିଷୟରେ ଯାହା କୁହାଯାଇଛି, ତାହାସବୁ ଏପରି କି ରାମାୟଣ, ମହାଭାରତ ପ୍ରଭୃତିରେ ନାହିଁ । ହେଲେହେଁ, ସାରଳାଦାସରେ ଦେବୀ ନାନାଭାବରେ ସମସ୍ତ ଲେଖାକୁ ଚିହ୍ନିତ କରି ରହିଛନ୍ତି । କିନ୍ତୁ ଦେଖିବାର ଅଛି, ଏ ସମସ୍ତ ଦେବୀ ବର୍ଣ୍ଣନା ଭିତରେ ତନ୍ତ୍ର ସେଠାରେ ନାହିଁ ।

## ତନ୍ତ୍ରର ମୌଳିକ ସୂଚନା—

ମାତ୍ର ଏଇ ତନ୍ତ୍ର 'କାମସ୍ତଦଗ୍ରେ ସମବର୍ତ୍ତତାଧି' (ଋକ୍‌ବେଦ ୧୦-୧୨୯-୪) ଠାରୁ ବରାବର ଜଗନ୍ନାଥରେ ନାନାପ୍ରକାରରେ ରହି ଆସିଥିବାର ପ୍ରମାଣ ହୁଏ । ଏଇ ସେଓର ନାରାୟଣରେ ଇନ୍ଦ୍ରଭୂତିଙ୍କର ଜଗନ୍ନାଥଙ୍କୁ ଶୂନ୍ୟ ବୋଲି ବର୍ଣ୍ଣନା କରିବା ସତ୍ତ୍ୱେ ଏହା ସେକାଳର ଏକ ତନ୍ତ୍ର-ପୀଠରୂପେ ପ୍ରକାଶ ପାଇଥିଲା । ଜଗନ୍ନାଥଙ୍କୁ ପୁଣିଥରେ ଆଣି ଜିନାସନ ପୀଠ ବା ଜୈନପୀଠରେ ପ୍ରତିଷ୍ଠା କରି ଗ୍ରୈରଙ୍ଗ ଦେବ ବୈଦିକ ଓ ଅବୈଦିକ ଅନୁଷ୍ଠାନକୁ ମିଶାଇ ମହାଜଗନ୍ନାଥ ପୀଠ ତିଆରି କଲେ । କିନ୍ତୁ ଦେଖିବାର ଅଛି, ତନ୍ତ୍ର ଏଠାରେ ଗାଢ଼ମାତ୍ର ରହିଲା ।

## ମହାପ୍ରସାଦ—

ଜଗନ୍ନାଥଠାରେ ଏବେ ଯେଉଁ 'ମହାପ୍ରସାଦ' ଚଳେ, ତାହା ସ୍ପଷ୍ଟଭାବରେ ଗୋଟିଏ ତାନ୍ତ୍ରିକ ଅନୁଷ୍ଠାନ । ଏହା ଜୈନମାନଙ୍କର ସଖୁଡ଼ି । (ଗ୍ରନ୍ଥକେନ୍ଦ୍ର ଅଭିଧାନରେ 'ସଖୁଡ଼ି' ଶବ୍ଦ ଦେଖ) । ଜୈନମାନେ କୌଣସି ଭୋଜି, ଶ୍ରାଦ୍ଧ ଇତ୍ୟାଦି କରିବାକୁ ପସନ୍ଦ କରୁ ନ ଥିଲେ । ସେମାନେ ତାକୁ ସଖୁଡ଼ି ବୋଲି କହୁଥିଲେ । ସଖୁଡ଼ି ଖାଇବା ନୈଷ୍ଠିକ ଜୈନମାନଙ୍କ ପକ୍ଷରେ ନିଷିଦ୍ଧ ଥିଲା । ଏଇ ସଖୁଡ଼ି, ବୁଝିବାର ଅଛି, କେବଳ ଓଡ଼ିଶାରେ ସେଇ ମୌଳିକ ଅର୍ଥରେ ଚଳେ । ଆମ ସ୍ତ୍ରୀଲୋକ-ମାନଙ୍କ ପର୍ଯ୍ୟନ୍ତ ଅଭ୍ୟାସ ଓ ଆଚରଣରେ ଜାଣନ୍ତି, କେଉଁ ଖାଦ୍ୟ (ଅର୍ଥାତ୍ ଭାତ, ତିଅଣ ପ୍ରଭୃତି) ସଖୁଡ଼ି ଓ କେଉଁ ଖାଦ୍ୟ ସଖୁଡ଼ି ନୁହେ ବା ନିସଖୁଡ଼ି (ଚୁଡ଼ା, ରୁଟି ପ୍ରଭୃତି) । ଏପରି ବାରିବା ଭାରତର ଅନ୍ୟ କୌଣସିଠାରେ ନାଇ । ପୁରୀମନ୍ଦିରରେ ମଧ୍ୟ ଏବେ ବି ସଖୁଡ଼ି ଭୋଗ ଓ ନିସଖୁଡ଼ି ଭୋଗ ଚଳେ । କିନ୍ତୁ ଯଥାର୍ଥତଃ ସଖୁଡ଼ି ଭୋଗରେ ପ୍ରକୃତ ମହାପ୍ରସାଦ ହୁଏ । ନିସଖୁଡ଼ି ଭୋଗରେ ସେତେ ଧରାବନ୍ଧ ନୁହେ । କିନ୍ତୁ ତଥାପି ଏଇ ମହାପ୍ରସାଦରେ 'କୁଳାର୍ଣ୍ଣବ' ତନ୍ତ୍ରରେ କୁହାଯାଇଥିବା ରୀତି ଅନୁସାରେ ପୁରୁଷ, ନାରୀ ଭିତରେ ଜାତିବର୍ଣ୍ଣନିର୍ବିଶେଷରେ ଖାଇବାରେ ସ୍ୱଚ୍ଛନ୍ଦ ବ୍ୟବହାର ଚଳେ । କୁଳାର୍ଣ୍ଣବ ତନ୍ତ୍ର ବହୁ ପ୍ରାଚୀନ । ସେଥିରେ ଅଛି—

> ପ୍ରବୃତ୍ତେ ଭୈରବୀଚକ୍ରେ
> ସର୍ବେ ବର୍ଣ୍ଣା ଦ୍ୱିଜାତୟଃ
> ନିବୃତ୍ତେ ଭୈରବୀଚକ୍ରେ
> ସର୍ବେ ବର୍ଣ୍ଣାଃ ପୃଥକ୍ ପୃଥକ୍ ।

ଅର୍ଥାତ୍ 'ଭୈରବୀଚକ୍ର' ପ୍ରବର୍ତ୍ତିତ ହେଲେ ସବୁ ବର୍ଣ୍ଣମାନେ ଦ୍ୱିଜଜାତି ବା ବ୍ରାହ୍ମଣପରି ମିଶିଯାଆନ୍ତି । ସେଇ 'ଭୈରବୀଚକ୍ର' ନିବୃତ୍ତ ହେଲେ ସବୁ ବର୍ଣ୍ଣମାନେ

ପୃଥକ୍ ପୃଥକ୍ ହୁଅଂନ୍ତି । ଜୈନମାନଂକର ଏ ସଖୁଡ଼ି ପ୍ରଭୃତି ଯେଉଁ ଘୃଣା--ଓ ଛୁଂତ୍ମର୍ଗ ଥିଲା, ତାହା ମହାପ୍ରସାଦରେ ଲୋପ ପାଇଛି ।

## ମହାପ୍ରସାଦ ଓ ଭୈରବୀ ଚକ୍ର—

ଏବେ ମଧ୍ୟ ଜଗନ୍ନାଥଙ୍କ ଆଗେ ଯେଉଁଠାରେ ଭୋଗବଢ଼ା ହୋଇ ମହାପ୍ରସାଦ ହୁଏ, ତାହାକୁ ଭୈରବୀଚକ୍ର ବୋଲି କହନ୍ତି ଓ ସେଥିପାଇଁ ସିଂହାସନରେ ଗୋଟିଏ ଭୈରବ ଖୋଳା ହୋଇଅଛି । ଏ ଭୈରବ ଭାବ ଓ ଏ ଚକ୍ର ଜଗନ୍ନାଥଂକ କାଳରୁ, ୧୦୭୬ ଖ୍ରୀଷ୍ଟାବ୍ଦରୁ ସେଇ ସିଂହାସନରେ ରହି ଆସିଅଛି ।

## ୧୫୬୮ରୁ ୧୫୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟଂନ୍ତ ମଂନ୍ଦିର ଶୂନ୍ୟ ଓ ରାମଚଂନ୍ଦ୍ର ଦେବ—

ଅବଶ୍ୟ ୧୫୬୮ ଖ୍ରୀଷ୍ଟାବ୍ଦରୁ ୧୫୯୦ ବା ୧୫୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାୟ ବାଇଶି ବର୍ଷ ଜଗନ୍ନାଥ ମଂନ୍ଦିରରେ କେହି ନ ଥିଲେ । ସେତେବେଳର ମୁସଲମାନମାନେ ଜଗନ୍ନାଥଂକୁ ଜିଣି ତାଂକୁ ପୋଡ଼ି ଧ୍ୱଂସ କରି ଦେଇଥିଲେ ବୋଲି ମୁସଲମାନମାନଙ୍କ ଇତିହାସରେ ଲେଖାଅଛି । ଅବଶ୍ୟ ତା'ପରେ ଭକ୍ତମାନେ ଯେପରି ଅଦ୍ଭୁତ ଗଳ୍ପମାନ ରଚନା ଓ ପ୍ରଚାର କରି ଦେବତାମାନଂକୁ ରକ୍ଷା କରଂନ୍ତି, ସେଇପରି ଜଗନ୍ନାଥଂକୁ ଚାଳକାକୂଳେ ପୋଡି, ସେଠାରୁ ତାଂକୁ କଳାପାହାଡ଼ କାଢ଼ି, ହାତୀରେ ବସାଇ ଗଂଗାକୂଳକୁ ନେଇଯାଇ, ସେଠାରେ କାହିଁକି କେଜାଣି ଗଂଗାରେ ଭସାଇ ଦେଇଥିବା କଥା ଓ ଜଗନ୍ନାଥ ଯାଇ ଗୋଟିଏ ଟାପୁରେ ଲଗିବା କଥା ଏବଂ ଓଡ଼ିଶାର ମହାନ୍ତି ବୋଲି ଜଣେ ଜଗନ୍ନାଥ-ଭକ୍ତ ଟାଂଗିଆ କାଖେଇ ସେଠାକୁ ପହଁରି ପହଁରି ଯାଇ ସେଠାରେ ସେଇ ଅର୍ଦ୍ଧଦଗ୍ଧ ଜଗନ୍ନାଥଂକର ପେଟ ଚିରି ତାଂକ ପେଟରୁ ବ୍ରହ୍ମପଦାର୍ଥ (ଗୋଟିଏ କି ତିନୋଟି କୁହାଯାଇ ନାଇ) ନେଇ କୁଜଂଗକୁ ଆସି ସେଠାରେ କୁଜଂଗ ରାଜାଂକଦ୍ୱାରା ପ୍ରତିଷ୍ଠା କରାଇଥିବା ଓ ପରେ ରାମଚଂନ୍ଦ୍ରଦେବ ମାନସିଂହଂକଦ୍ୱାରା ଜଗନ୍ନାଥ କ୍ଷେତ୍ରରେ ରାଜା ହୋଇ ତାଂକୁ କୁଜଂଗରୁ ଅଣାଇ ପୁଣି ମୂର୍ତ୍ତିରୂପେ ପ୍ରତିଷ୍ଠା କରାଇଥିବା କଥା ପରି ଅଦ୍ଭୁତ ଭକ୍ତମାନଂକର ଗଳ୍ପ ଏଠାରେ ବିଶ୍ୱାସଯୋଗ୍ୟ ନୁହେ । ଏଥିରେ ମଧ୍ୟ କୌଣସି ସଂଗତି ନାଇ ।

## ରାମଚଂନ୍ଦ୍ର ଦେବ କରିଥିବା ନୂଆଂକଥାର ଦୃଷ୍ଟାଂନ୍ତ—

ଗୋଟିଏ କଥା ମନେରଖିବାର ଅଛି, ୧୫୯୦ ବା ୧୫୯୨ ଖ୍ରୀଷ୍ଟାବ୍ଦରେ ରାମଚଂନ୍ଦ୍ର ଦେବ ଯେତେବେଳେ ବହୁ ନୂଆଂକଥା ଓଡ଼ିଶା ଜଗନ୍ନାଥ ସଂପର୍କରେ ଆଣି ଭର୍ତ୍ତିକରି ଓଡ଼ିଶାକୁ ପୁଣି ଟେକି ଦେଖାଇଦେବାକୁ ବସିଥିଲେ, ସେତେବେଳେ ଜଗନ୍ନାଥଂକ ମୂର୍ତ୍ତି ପ୍ରସ୍ତୁତି ପ୍ରତିଷ୍ଠା ପାଇଁ କୌଣସି ଶାସ୍ତ୍ର ପ୍ରସ୍ତୁତ ନ ଥିଲା । ତା ପୂର୍ବରୁ ଅବଶ୍ୟ ସ୍କଂଦପୁରାଣ ଲେଖାହୋଇ ସରିଥିଲା । ସେଇ ସ୍କନ୍ଦପୁରାଣରେ ପରିଷ୍କାର ଅଛି—

"ସୁଭଦ୍ରା ଚନ୍ଦ୍ରବଦନା ବରାବ୍ଜାଭୟଧାରଣୀ ।"
(ସ୍କନ୍ଦପୁରାଣ ୧୯ଶ ଅଧ୍ୟାୟ, ୧୦ମ ଶ୍ଳୋକ)

ଅର୍ଥାତ୍, ସୁଭଦ୍ରା ଥିଲେ ଚନ୍ଦ୍ରବଦନା ଓ ତାଙ୍କ ହାତରେ ଥିଲା ଅବ୍ଜ ଓ ଅଭୟ, ଏ ଦୁଇଟି ବର । ଏଥିରୁ ଜଣାଯାଉଛି, ସୁଭଦ୍ରାଙ୍କର ହାତ ନ ଥିବା କଥା ସ୍କନ୍ଦପୁରାଣ ଲେଖାହେବା ପର୍ଯ୍ୟନ୍ତ ସତ୍ୟ ନୁହେଁ । ସୁଭଦ୍ରାଙ୍କୁ ହାତଶୂନ୍ୟ କରିବା ବୋଧହୁଏ, ନୂଆକରି ମୂର୍ତ୍ତି ଗଢ଼ିବା ବେଳେ ରାମଚନ୍ଦ୍ରଙ୍କ କାଳରେ ପ୍ରଥମକରି କରାଯାଇଛି ।

## ତନ୍ତ୍ରକୁ ଧରି ବୀଭତ୍ସତା ପଶିଛି ଓ ଏବେ ପଶୁଛି—

ସେତିକି ନୁହେଁ, ଏଇ ତନ୍ତ୍ର ସମ୍ବନ୍ଧରେ କହିଲାବେଳେ ଏବେ ଚୈତନ୍ୟ କାଳର ପରେ ହିସ୍ତତଃ ୧୫୧୨ ଖ୍ରୀଷ୍ଟାବ୍ଦ ପରେ ତନ୍ତ୍ରକୁ ଧରି କେତେ ବୀଭତ୍ସତା ପଶିଛି, ତା କହିହେବ ନାହିଁ । ଯେ କେହି ଦେଖିପାରନ୍ତି, ଏକଆଡ଼େ ଗୁଣ୍ଡିଚା ମଣ୍ଡପ-ଠାରୁ ଅନ୍ୟଆଡ଼େ ରଥ ଉପରେ ଥାଇ ମାଉସୀମାଙ୍କ ଘରେ ପିଠାଭୋଗ ଖାଇବା ପର୍ଯ୍ୟନ୍ତ କେତେ ଅନୁଷ୍ଠାନ ଯେ ଭକ୍ତମାନେ ପୂରାଇଛନ୍ତି, ତା' କହିବା ଦରକାର ନାହିଁ । ଏପରି କି ଏବେ ପର୍ଯ୍ୟନ୍ତ ମଧ୍ୟ ପୁରୀ ସମୁଦ୍ରକୂଳରେ ସୁନାର ଗୌରାଙ୍ଗ ବସାଇ କ୍ଷେତ୍ରର ପ୍ରତିଷ୍ଠା ବଢ଼ାଇବା ଚେଷ୍ଟା ମଧ୍ୟ କରାଯାଇଛି ।

## ସେକାଳ ଉଡ୍ଡୟାନର ଦକ୍ଷିଣ ସୀମା—

କିନ୍ତୁ ଏଇ ତନ୍ତ୍ର ସମ୍ବନ୍ଧରେ କହିଲାବେଳେ ଆଉ ଗୋଟିଏ କଥା ଏଠାରେ କହିଦେବାର ଅଛି । ଏଇ ଉଡ୍ଡୟାନର ତନ୍ତ୍ରଭୂମି କୈଳାସପୁରରୁ ବହୁଦୂର ପର୍ଯ୍ୟନ୍ତ ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀ ବେଳକୁ ବ୍ୟାପି ଯାଇଥିଲା । କଳିଙ୍ଗ ଆଡ଼କୁ ଆସିଲା ବେଳକୁ ବୌଦ୍ଧ ହେଉଛି ଏଇ ତନ୍ତ୍ରଭୂମିର ସୀମା । ଏହା ଖୁବ୍ ସମ୍ଭବ ଏବର କଳିଙ୍ଗଘାଟି ପର୍ଯ୍ୟନ୍ତ ବ୍ୟାପିଥିଲା । ଏଇ ଭୂମିମାନଙ୍କର ବୃନ୍ଦାବନ ବା ବଙ୍ଗଳାର ରାଧାକୃଷ୍ଣଙ୍କ ସମ୍ବନ୍ଧର ତନ୍ତ୍ର ନୁହେଁ, ଓଡ଼ିଶାର ସ୍ୱତନ୍ତ୍ର ତନ୍ତ୍ର ବହୁକାଳରୁ ସମାନ ଚାଲିଆସିଛି । ଏଇ ବୌଦ୍ଧ ଗୋଟିଏ ଗଡ଼ଜାତ ଥିଲା । ଏଇ ବୌଦ୍ଧରେ ଖୋଲାହୋଇ ଏବେ ଭୈରବ ନାମରେ ୯ ଫୁଟ ଉଚ୍ଚ ମୂର୍ତ୍ତି ମାଟିତଳୁ କଢ଼ାହୋଇ ଛିଡ଼ା ହୋଇଛି । ଏଇଥିପାଖେ ଭୈରବୀ ପୂଜା ବୋଲି ଗୋଟିଏ ଦେବୀ ପୂଜା ଏପର୍ଯ୍ୟନ୍ତ ମଧ୍ୟ ଚାଲି ଆସିଛି ।

## ଭୀମାଭୋଇ ଓ ତାଙ୍କ ଶିଷ୍ୟମାନେ—

ପୁଣି ଦେଖିବାର ଅଛି, ଏଇ ବୌଦ୍ଧପାଖେ ୧୦ ମାଇଲ ଦୂରର ବଲାସିଂହା ଗ୍ରାମରେ ଭୀମାଭୋଇ ଜନ୍ମ ହୋଇଥିଲେ । ସେଇ ଭୀମାଭୋଇ

ଜଣେ ନିରକ୍ଷର କଂଧ । ସେ ଓଡ଼ିଶାର ସ୍ୱତନ୍ତ୍ର ତଂନ୍ତ୍ର ଅର୍ଥାତ୍ କଠୋର ଯୌନନିରୋଧମୂଳକ ତଂନ୍ତ୍ର ପ୍ରଚାର କରି ଓଡ଼ିଶାର ସଂସ୍କୃତିର ସ୍ୱାତଂତ୍ର୍ୟ ବଞ୍ଚାଇ ରଖିଚଂନ୍ତି । ତାଂକର ଶିଷ୍ୟମାନେ ପ୍ରାୟ ୧୮୮୫ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥଙ୍କୁ ଆସି ଜଗନ୍ନାଥଂକ ଦେଉଳରେ ପଶି 'ଜଗନ୍ନାଥ ଆମର' ବୋଲି ଜଗନ୍ନାଥଂକୁ ଆକ୍ରମଣ କରିଥିଲେ । ଆଶ୍ଚର୍ଯ୍ୟ କଥା, ଗୋଲମାଲ ହେଲା, ସେଇ କଂଧଂକ ଭିତରୁ ତିନିଜଣ ସେଇ ଗୋଲମାଲରେ ମରିଗଲେ । ସେତେବେଳର ହାକିମ ତାଙ୍କୁ କଚେରୀକୁ ନେଇ କିଏ ମାରିଲା ବୋଲି ପଚାରିବାରୁ ଭକ୍ତମାନେ କହିଲେ, 'ଅଲେଖ ମାରା ହେ' 'ଅଉର୍ ମାରେଗା କୌନ୍' (ଅଲେଖ ମାରିଚଂନ୍ତି, ଅଉ ମାରିବ କିଏ ?)

## ବୌଦ୍ଧରୂପ—ବୁଦ୍ଧଶରୀର ଏକ ନୁହେ—

ଏଇ ତଂନ୍ତ୍ର ସଂବଂଧରେ ଆଉ ଗୋଟିଏ କଥା ବୁଝିରଖିବାର ଅଛି । ସେଇ-କାଳରୁ ଏବ ପର୍ଯ୍ୟଂନ୍ତ ମଧ୍ୟ ସେଇ ଉତ୍କ୍ରାନ୍ତ୍ୟାନରୁ ପୁରୀକୁ ଜଂଗଲବାଟେ ବରାବର ଯାତ୍ରୀ ଆସୁଚଂନ୍ତି । ସେମାନେ ବରାବର ଯେଉଁ ଗୀତ ବୋଲଂନ୍ତି, ସେଥିରେ ଅଛି, 'ବୌଦ୍ଧରୂପେ ବେଠି ରହେ ସମୁଦ୍ର କିନାରେ' ( ସମୁଦ୍ରକୂଳରେ ବୌଦ୍ଧ ରୂପରେ ବସି ରହିଚଂନ୍ତି) । ସାରଳା ଦାସ ମଧ୍ୟ ଏଇ ବୌଦ୍ଧରୂପ କଥାଟି ତାଂକ ମହାଭାରତରେ ବରାବର ଲେଖିଚଂନ୍ତି । ସେଇ ବୌଦ୍ଧରୂପରେ ବସିରହିଥିବା ଜଗନ୍ନାଥ ହେଉଚଂନ୍ତି, ସାରଳାଦାସଂକ ମହାଭାରତରେ 'ଶ୍ରୀକୃଷ୍ଣ' । ଏଠାରେ ମନେରଖିବାର ଅଛି, ପରେ ଜୟଦେବ, 'ବୁଦ୍ଧଶରୀର' ବୋଲି ଯାହା ଲେଖିଚଂନ୍ତି, ତାକୁ ଏବଂ ବୌଦ୍ଧରୂପ ସଙ୍ଗେ ମିଳାଇ ଗୋଲମାଲ କରି ଜୟଦେବଂକୁ ଏଇ ବୌଦ୍ଧ ଅବତାରର ପ୍ରଥମ ପ୍ରବର୍ତ୍ତକ ବୋଲି କହିବା ଠିକ୍ ନୁହେ । 'ବୁଦ୍ଧଶରୀର' ('ଗୀତଗୋବିନ୍ଦ') 'ଜଗନ୍ନାଥ ବୌଦ୍ଧରୂପେ ବସିଚଂନ୍ତି'—ଏଇ ଦୁଇଟି କଥାର ପରଂପରା ସଂପୂର୍ଣ୍ଣ ଭିନ୍ନ ବୋଲି ମନେହୁଏ ।

ଏହା ପରେ 'ଜୈନଧର୍ମ'ର ପରଂପରା ବିଷୟରେ ଯତ୍କିଂଚିତ୍ କହି ଏ ମୁଖବଂଧଟି ଶେଷ କରାଯାଇଚି । କୁହାଯାଇଚି, ଏବେ 'ତାମିଲ ଦେଶ'ରୁ ତିରୁକୁରାଲ (ଶ୍ରୀସୂକ୍ତ) ଗ୍ରଂଥ ବିଶାଳ ମୁଖବଂଧ ସହ ବାହାରିଚି । ମୋର ଜୈନ ଆଖ୍ୟାୟିକା ପଢ଼ିବାବେଳେ ତାକୁ ମନେରଖି ପଢ଼ିଲେ ଭଲ ହେବ ।

ପାଠକମାନେ କ୍ଷମାକରିବେ, ମୁଁ ବର୍ତ୍ତମାନ ଅସ୍ୱାସ୍ଥ୍ୟରେ ପଡ଼ିରହି ଏଇ ଦ୍ୱିତୀୟ ସଂସ୍କରଣର ମୁଖବଂଧଟି ମୁହଁରୁ ଡାକିଯାଇଚି । ସେଥିପାଇଁ ଅନେକ ସ୍ଥଳରେ ପୂର୍ବାପର ସଂଗତିରେ ଭ୍ରାଂନ୍ତି ଘଟିଥିବ ଓ ପାଦଟୀକାରେ ସ୍ଥାନ ନିର୍ଦ୍ଦେଶ କରିବାରେ ମଧ୍ୟ ତ୍ରୁଟିଥିବ । ଆଉ ଏପରି କେତେ ଦୋଷ ଥିବ, ମୁଁ ସେଥିପାଇଁ କ୍ଷମାଭିକ୍ଷା କରୁଚି ।

## (୯) ଉପସଂହାର

## ଗୀତା ସବୁପ୍ରକାର ଦାର୍ଶନିକ ତତ୍ତ୍ୱ ଓ ବ୍ୟବହାର ଉପରେ ପ୍ରତିଷ୍ଠିତ ଅଛି—

ବିଶେଷ କଥା ମନେରଖିବାର ଅଛି, ଭାରତର ଏଇ ଗୀତା ଗ୍ରଂଥ ଗୋଟିଏ ଐକାଂତିକ ଧର୍ମର ଗ୍ରଂଥ ହେଲେ ମଧ୍ୟ, ସୂଚନାରେ କୁହାଯାଇଚି, ଏହା ପ୍ରାଚୀନ ସବୁପ୍ରକାର ଦାର୍ଶନିକତତ୍ତ୍ୱ ଓ ବ୍ୟବହାର ଉପରେ ପୁରାପୁରି ପ୍ରତିଷ୍ଠିତ ଅଛି । ପୂର୍ବକାଳେ—ଏପରି କି ବେଦ କାଳରେ ଓ ବେଦର ପୂର୍ବରୁ ମଧ୍ୟ—ବ୍ୟାବିଲନ୍, ଆସିରିଆ, ପାରସ୍ୟ ଓ ଭାରତବର୍ଷ ପ୍ରଭୃତି ଭିତରେ ଦାର୍ଶନିକ ଓ ବେଦତତ୍ତ୍ୱ ଭାବରେ ବହୁତ ଆଦାନପ୍ରଦାନ ଚାଲୁଥିଲା । ତା'ର କେତେକ ପ୍ରମାଣ ଦିଆଯାଇଚି ଓ ଆଉ କେତେକ ପରେ ଜୈନ ଦର୍ଶନ ବିଷୟରେ ଲେଖିଲାବେଳେ ସୂଚିଇ କୁହାଯିବ । କିଂତୁ ଏବେ ଗୀତା ଓ ଜଗନ୍ନାଥର ବିଷୟମାନଂକ ଭିତରେ ଏପରି ବିଷୟ ସବୁ ଅଛି, ଯାହାକି ବ୍ୟାବିଲନ, ଆସିରିଆ ପ୍ରଭୃତିରୁ ସ୍ପଷ୍ଟ ଗୃହୀତ । ତା' ଠିକିଏ ଦେଖି ରଖିବା ଦରକାର । ଅବଶ୍ୟ ସେ ସଂବଂଧରେ ପୁରା ଆଲୋଚନା ପ୍ରାୟ ହୋଇନାଇ । ପୁଣି ଏଥିରେ 'ବାଇବେଲ'ର ଭକ୍ତିକ ମିଥ୍ୟାସଂବଳିତ ଉପାଖ୍ୟାନମାନ ନାନା ବ୍ୟାଖ୍ୟାରେ ଯୋଡ଼ାଯାଇଥିବାରୁ ସେସବୁର ମୂଳ ଓ ବ୍ୟାପ୍ତି ଠିକ୍ କରିବା ସବୁବେଳେ ସହଜ ନୁହେ ।

## ଗୀତା ୪ର୍ଥ ଅଧ୍ୟାୟ ୧ମ, ୨ୟ ଶ୍ଳୋକର ପରଂପରା—

ଉଦାହରଣ ସ୍ୱରୂପ ଗୀତାର ୪ର୍ଥ ଅଧ୍ୟାୟ ୧ମ ଓ ୨ୟ ଶ୍ଳୋକରେ ଯେଉଁ ପରଂପରା ଦିଆଯାଇଚି, ସେଇଟିର ମୂଳ ପରଂପରା ଭାରତବର୍ଷରୁ ଆସିନାଇ । ବ୍ୟାବିଲନର ଆଜକୁ ପ୍ରାୟ ୩୮୦୦ ବର୍ଷ ପୂର୍ବର ସମ୍ରାଟ୍ ହାମୁରାବିଂକ ସଂବଂଧରେ ଗୋଟିଏ ସୁଂଦର ଶିଳାଲେଖ ଅକ୍ଷର ସହିତ ଏ ବିଷୟରେ ଥିବାର ପ୍ରମାଣ ମିଳେ । ଏଇ ବିଷୟଟି ମହାଭାରତର ନାରାୟଣୀୟ ଉପାଖ୍ୟାନର ପୁଣି ଅନ୍ୟ ପ୍ରକାରରେ ଦେଖା ଦେଇଥିବାରେ ବିଶେଷ କିଛି ସଂଗତିଭଂଗ ହେଉନାଇ । ପୁଣି ଦେଖାଯାଇ-ପାରେ; ଗୀତାଠାରୁ ନାରାୟଣୀୟ ଉପାଖ୍ୟାନ ପ୍ରାଚୀନ ନୁହେ, ବରଂ ଅର୍ବାଚୀନ । ବ୍ୟାବିଲନରେ ସେ କାଳର ଗୋଟିଏ ଉଚ୍ଚଶିଳା (Stele)ରେ ହାମୁରାବି ସୂର୍ଯ୍ୟଂକ-ଠାରୁ ସମସ୍ତ ଧର୍ମଶାସ୍ତ୍ର ପାଇବାର ଗୋଟିଏ ଚିତ୍ର ଅଛି । ସେଇ ପଥର ଉପରେ ସେ କାଳରେ ପାଇଥିବା ସବୁ ଧର୍ମ ଶାସ୍ତ୍ରଟି ଖୋଦିତ ହୋଇ ଲେଖାଅଛି । ସେସବୁ ଧର୍ମଶାସ୍ତ୍ର ଦେଖିଲେ ଏବେ ମଧ୍ୟ ବିସ୍ମିତ ହେବାକୁ ହୁଏ । ସେଥିରେ ବ୍ୟକ୍ତିଗତ ଓ ସାମାଜିକ ଧର୍ମ ଅତ୍ୟନ୍ତ ବିକଶିତ । ଏପରିକି ଅନେକ ସ୍ଥଳରେ ଏହା ବହୁ ପରବର୍ତ୍ତୀ ସମାଜର ଆଚରଣ ବୋଲି ମନେହୁଏ । ଗୀତାର ୪ର୍ଥ ଅଧ୍ୟାୟର ୧ମ, ୨ୟ

ଶ୍ଳୋକ ମୂଳରେ ଯେ ଏଇ ହାମୁରବିଂକ ଶିଳାଲେଖର ଗ୍ରଷ୍ଟା ନାଇ, ତା' କହିବା ବଡ଼ କଷ୍ଟ ।

## ଜଗନ୍ନାଥଂକ ବିଷୟରେ ମଧ୍ୟ ବହୁ ପରଂପରା ଆସିରିଆରୁ ଏ ଦେଶକୁ ଆସିଛି—

ତା ଛଡ଼ା ଜଗନ୍ନାଥଂକ ବିଷୟ ଦେଖିଲେ ବହୁ ପରଂପରା ସେ ଦେଶ, ଅର୍ଥାତ୍ ଅସିରିଆରୁ ଏ ଦେଶକୁ ଆସିଛି । ତା' ଭିତରୁ ଗୋଟିଏ ହେଉଛି, ରଜାଂକ ସଙ୍ଗେ ଶତ୍ରୁମାନଂକ ପଛକୁ ଦେବତା (ଅସୁର) ନଜେ ଅଭିଯାନରେ ଯିବା । * ଅବଶ୍ୟ ସେ କାଳେ ଆସିରିଆରେ ଅସୁରଂକ ମୂର୍ତ୍ତି ନ ଥିଲା । ତଥାପି ଦେବତା, ରଜାଂକ ସଙ୍ଗେ ଯୁଦ୍ଧକୁ ଯାଉଥିବାର ସଙ୍କେତ ଖୁବ୍ ଥିଲା । ସେଇ ସଙ୍କେତ ଅନୁକ୍ରମେ ଯେ ଆମ ଜଗନ୍ନାଥଂକର କଳାଘୋଡ଼ା ଧଳାଘୋଡ଼ାରେ ରଜାଂକ ସଙ୍ଗେ କାଂଚିକାବେରୀ ଯୁଦ୍ଧକୁ ଯାଇ ବାଟରେ ମାଣିକ ଗୌଡ଼ୁଣୀଠାରୁ ଦହି ଖାଇବା ପ୍ରଭୃତି ଉପାଖ୍ୟାନଟି ବାହାରି ନାଇ, ତା' କିଏ କହିବ ? ଅବଶ୍ୟ ବୁଝିବାର ଅଛି, ଏହା ପୁରୁଷୋତ୍ତମ ଦେବଂକ କାଞ୍ଚିଯାତ୍ରାରୁ ମଂଦିରର ଜଗମୋହନରେ ଅଂକିତ ହୋଇନାଇ । ଏହା ଗୋଟିଏ ସ୍ୱତନ୍ତ୍ର ପରଂପରାର ଅନୁକରଣ ମାତ୍ର ।

## ଯବନ—

ଆଉ ଗୋଟିଏ ବାଇବଲର ପରଂପରା ଆମ ଜଗନ୍ନାଥଂକଠାରେ ବରାବର ମାଦଳାପାଂଜି ପୂର୍ବରୁ ରହି ଆସିଛି । ତା' ହେଉଛି ରକ୍ତବାହୁର ଆକ୍ରମଣ । ରକ୍ତବାହୁ ଜଗନ୍ନାଥଂକୁ ଆକ୍ରମଣ କରିବାକୁ ଆସିଥିଲେ । କିନ୍ତୁ ଫେରିଲାବେଳେ ଚିଲିକାରେ ତାଂକ ସୈନ୍ୟସାମଂତମାନଂକ ଉପରେ ଗୋଟିଏ ମଡ଼କ ପଡ଼ିଲା । ସଙ୍ଗେ ସଙ୍ଗେ ସମସ୍ତ ସେନାଟି ମରିକରି ଚିଲିକାରେ ଭାସିଲେ । ଏହା ସେନାକେରିବଂକର ପାଲେଷ୍ଟାଇନ୍ ଆକ୍ରମଣ ବିଷୟରେ କିଂବଦଂତୀରୂପେ କୁହାଥିବା ବାଇବଲରେ କୁହାଯାଏ × ।

---

* Myths of Babylonia & Assyria by D. A. Mackenzie, P. 352.

The rise of Asshur—The story of Nations The story of Assyria—pg. 8.

× Ibid, pp. 466-468 with note to p. 468, ଏହାର ଐତିହାସିକ ବ୍ୟାଖ୍ୟାପାଇଁ "The Ancient History of the Near East—by Dr. H. R. Hall-7th Edition pp. 491 and 498 note.

## ସେନାକେରିବଂକର ପାଲେଷ୍ଟାଇନ୍ ଆକ୍ରମଣ—

ଏଇଠାରେ ରକ୍ତବାହୁଂକୁ ଯବନ ବୋଲି କୁହାଯାଇଛି । ସେଇଠିକବେଳେ ପାଲେଷ୍ଟାଇନ୍ ପାଖର ଗ୍ରୀକ୍ ଅଧିବାସୀମାନେ ପାଲେଷ୍ଟାଇନ୍ ଆକ୍ରମଣ କରିଥିଲେ । ବାଇବଲରେ ଓ ଅନ୍ୟତ୍ର ମଧ୍ୟ ଅଛି, ତାଂକ ନାମ ଯଓ୍ୱାନୀ ବା ଯବନ (ଜବନ) * ।

## ତାହାର ପ୍ରକୃତ ଐତିହାସିକ ତଥ୍ୟ—

ଏଇସବୁ ପରଂପରା ଓ ଏଇପରି ଅନ୍ୟାନ୍ୟ କେତେ ସାମଂଜସ୍ୟ ଦେଖିଲେ ପଶ୍ଚିମ ଦେଶମାନଙ୍କ ସଙ୍ଗେ କୃଷ୍ଣ ତଥା ଜଗନ୍ନାଥଙ୍କର ଯେଉଁ ସାମଂଜସ୍ୟ ଅଛି, ତାହା ଦୃଷ୍ଟିରେ ପଡ଼େ । ଏଇ ହିସାବରେ ଭାରତୀୟ ଧର୍ମର ଧାରା ବରାବର ସବୁବେଳେ ଅନ୍ୟାନ୍ୟ ଦେଶ ବିଦେଶମାନଂକ ସଂଗେ ସାମଂଜସ୍ୟରେ ଚାଲି ଆସିଛି । ବୈଦିକ ଭାରତ ବା ବେଦପର ଭାରତରେ କୌଣସି ଧର୍ମ ବିରୋଧ ହୁଏତ କେବେ କଳ୍ପନା କରାଯାଇ ନାଇ । କେବଳ ଅସୁର ଓ ନିଷାଦମାନଂକ ସଂଗେ ନୁହେଁ, ସମସ୍ତ ସଭ୍ୟ ଜଗତରେ ଏ ଦେଶବାସୀ ସବୁବେଳେ ଆଖି ଫିଟାଇ ସତ୍ୟ ସଂଗ୍ରହ କରିବାରେ ଉଦ୍‌ଗ୍ରୀବ ବୋଲି ମନେ ହୁଏ ।

ମାତ୍ର ଏଠାରେ ମନେରଖିବାର ଅଛି, ଏଇ ୧ମ ସଂସ୍କରଣର ମୁଖବଂଧର ଟୀକାରେ ବିଷୟଟିର ଇତିହାସ ଓ ବିକାଶଧାରା ଉପରେ ବେଶୀ ଜୋର ଦିଆଯାଇ ଲେଖାଯାଇ ନାଇ । ସେଥିପାଇଁ ଏ ସଂସ୍କରଣର ମୁଖବଂଧରେ ସେଇ ଧାରାଟି ଉପରେ ବିଶେଷରେ ବେଦର ପୂର୍ବଧାରାଟି ଉପରେ ବେଶୀ ଜୋର ଦିଆଯାଇଛି ଆଶାକରେ ପାଠକମାନେ ସେଇ ଦୃଷ୍ଟିରେ ଆଦର କଲେ କୃତାର୍ଥ ହେବି ।

# ସଂକ୍ଷେପ ସାର

## ଓଡ଼ିଶାର ସଂସ୍କୃତି—

ମୁଁ ଗତ ୧୯୬୧ ସାଲ ଫେବୃୟାରୀ ମାସରେ କଟକ ଅଲଇଣ୍ଡିଆ ରେଡ଼ିଓରେ ଏ ବିଷୟରେ ଗୋଟିଏ କ୍ଷୁଦ୍ର ଭାଷଣ ଦେଇଥିଲି । ତାହା ସେତେବେଳେ ପ୍ରଜାତନ୍ତ୍ର, କଳିଙ୍ଗ ଓ 'ସମାଜ' ପତ୍ରିକାମାନଙ୍କରେ ସମ୍ପାଦକମାନେ ସ୍ୱତଃପ୍ରବୃତ୍ତ ହୋଇ ପ୍ରକାଶ

---

*Compare the word Jawani in "The Ancient History of the Near East" by Dr. H. R. Hall-7th Edition pp. 479 and 483—also 'Jawani in Bible.

କରିଥିଲେ । ସେଇ ସଂସ୍କୃତି ବିଷୟଟି ଏଠାରେ ବିଶେଷ ଦରକାର ଥିବାରୁ ତାହା ଦିଆଗଲା ।

## ଉତ୍କଳୀୟ ସଂସ୍କୃତି—

"ଉତ୍କଳୀୟ ସଂସ୍କୃତି ବୋଲି ମୂଳରୁ କୌଣସି ଏକ ଅବିଚ୍ଛିନ୍ନ ସଂସ୍କୃତି ନଥିଲା । ବସ୍ତୁତଃ ଏହା ତିନୋଟି ସଂସ୍କୃତିର ଗୋଟିଏ ମିଶ୍ରଣ । ମୂଳତଃ ଏଇ ତିନୋଟି ସଂସ୍କୃତି ହେଉଛି—(୧) ଉତ୍ତରଟି ଉତ୍କଳର । ଏଇ ଉତ୍କଳ ହେଉଛି, ପ୍ରାୟ ଯାଜପୁରଠାରୁ ଉତ୍ତରକୁ ଗ୍ଭଡ଼ିଯାଏ । (୨) ଦକ୍ଷିଣ ସଂସ୍କୃତିଟି କଳିଂଗର । ଏଇ କଳିଂଗ ହେଉଛି, ଯାଜପୁରଠାରୁ ଦକ୍ଷିଣକୁ ପ୍ରାୟ ବିଶାଖାପାଟଣା ପର୍ଯ୍ୟନ୍ତ ବା ଆଉରି ଟିକିଏ ଦକ୍ଷିଣକୁ । ତୃତୀୟଟି ହେଉଛି, ଦକ୍ଷିଣ କୋଶଳର । ଏଇ ଦକ୍ଷିଣ କୋଶଳଟି ହେଉଛି, ମୋଟା-ମୋଟି ଏବର ବୌଦଠାରୁ ବିଳାସପୁର ଯାଏ । ଏହାର ସଂସ୍କୃତି ଗୋଟିଏ ସ୍ୱତନ୍ତ୍ର ସଂସ୍କୃତି । ଏହା ଉତ୍କଳ ଓ କଳିଂଗ ଏଇ ଦୁଇ ସଂସ୍କୃତିରୁ ଭିନ୍ନ । ଉତ୍କଳ ସଂସ୍କୃତି ପ୍ରାୟ ବଂଗ ସଂସ୍କୃତି ସଂଗେ ସମାନ । ଏଥିରେ ବହୁକାଳରୁ ମିଶିଥିଲା କୋଶଳ ସଂସ୍କୃତି । ଚୀନ ପରିବ୍ରାଜକମାନେ ସେକାଳେ ଏଇ କୋଶଳ ଅଂଶକୁ କହୁଥିଲେ ଉଡ୍ଡିୟାନ । ଏଇ ସଂସ୍କୃତି ହେଉଛି ତନ୍ତ୍ରର ସଂସ୍କୃତି । ଏହା ଉଡ୍ଡିୟାନରୁ ବାହାରି ଅନ୍ୟାନ୍ୟ ସ୍ଥାନ ଭିତରେ ସିଲହଟ୍, କାମାକ୍ଷା ବାଟେ (ପ୍ରାୟ ଖ୍ରୀଷ୍ଟ ୭ମ, ୮ମ ଶତାବ୍ଦୀରେ ନେପାଳ ଓ ତିବ୍ବତ ଆଡ଼କୁ ଯାଇଥିଲା । ଏହା ମୂଳତଃ ଅଷ୍ଟ୍ରିକ ବା ନିଷାଦମାନଙ୍କ ସଂସ୍କୃତି । ଖ୍ରୀଷ୍ଟପୂର୍ବ ବହୁକାଳରୁ ଏଇ ନିଷାଦ ସଂସ୍କୃତି ଭାରତକୁ ଆସିଥିଲା । ଅତି ପ୍ରାଚୀନ କାଳରୁ ଏହା ଭାରତକୁ ଆଗ ଆସିଥିଲା, ତା ପରେ ଆସିଲା ଦ୍ରାବିଡ଼ ସଭ୍ୟତା ବା ସଂସ୍କୃତି, ତା'ପରେ ସବାଶେଷରେ ଆସିଲା ଋଗ୍‌ବୈଦିକ ବା ଆର୍ଯ୍ୟସଭ୍ୟତା ବା ସଂସ୍କୃତି । ଏଇ ତନ୍ତ୍ର ସଂସ୍କୃତିରେ ଧାରଣାଟି ପ୍ରକାଶ ପାଇଥିଲା, ମାତା ଯେପରି ସନ୍ତାନ ଜନ୍ମ କରେ, ଏ ସୃଷ୍ଟି ସେହିପରି ହୁଏ । କାରଣ ସେତେବେଳେ ମାତା ସନ୍ତାନ ଜନ୍ମ କରିବାରେ ପିତାର ସମ୍ପର୍କ ଥିଲା ବୋଲି ଲୋକେ ବୁଝି ନ ଥିଲେ । ସେଥିପାଇଁ ମହାପୁରୁଷମାନଙ୍କ ଜନ୍ମରେ ପିତାର ସମ୍ପର୍କ ନାହିଁ ବୋଲି ଭକ୍ତମାନଙ୍କର ଗୋଟିଏ ଧାରଣା ପଡ଼ିଯାଇଛି । ଅନେକେ ଜାଣିଥିବେ ପ୍ରାଚୀନ ଲିବିଆର ଜିଅଡ଼େଙ୍କ ଜନ୍ମିତ ପୁତ୍ରର ମଧ୍ୟ ପିତା ନାହିଁ । ଇହୁଦୀମାନଙ୍କର ଯୀଶୁଖ୍ରୀଷ୍ଟଙ୍କ ପିତା ନାହିଁ ଓ ଏବେ ମଧ୍ୟ ବଂଗଳାର ରାମକୃଷ୍ଣ ପରମହଂସ ବିନା ପିତାରେ ଜନ୍ମ ହୋଇଥିବା କଥା ଭକ୍ତମାନେ ଖୁବ୍ ଜୋରରେ ପ୍ରତିଷ୍ଠା ଓ ପ୍ରଚାର କରୁଛନ୍ତି ।

ଏହାକୁ ତନ୍ତ୍ରଧର୍ମ କହନ୍ତି । ଏଇ ତନ୍ତ୍ର କ୍ରମେ ବଂଗ, ନେପାଳ ଓ ତିବ୍ବତକୁ ଯାଇ ଅତି ବୀଭତ୍ସ ଆକାର ଧାରଣ କରିଥିଲା । ସେଇ ବୀଭତ୍ସତା ନାନା ଭାବରେ ମାନବର ଧର୍ମକ୍ଷେତ୍ରରେ ବଡ଼ ବିଭ୍ରାଟ ଘଟାଇ ଆସିଅଛି । ସେଇଥିରୁ କାଳକ୍ରମେ

ବାହାରିଛନ୍ତି ବୃନ୍ଦାବନର ରାଧାକୃଷ୍ଣ । ପୂର୍ବ ଭାରତର ରାଧାକୃଷ୍ଣ ଧର୍ମ ମଧ୍ୟ ତାହାର ଏକ ପରିଣାମର ଗୋଟିଏ ବ୍ୟାପକ ସଂସ୍କରଣ କହିଲେ ଚଳେ ।

ଏଣେ କଳିଂଗ ସଂସ୍କୃତି ହେଉଛି ଦ୍ରାବିଡ଼ମାନଂକ ସଂସ୍କୃତି । ନିଷାଦମାନଂକ ପରେ ଭାରତକୁ ଆସିଥିଲେ ଦ୍ରାବିଡ଼ମାନେ । ସେମାନେ ଏଇ କଳିଂଗ ସଂସ୍କୃତିକୁ ସଙ୍ଗରେ ନେଇ ଆସିଥିଲେ । ଏହା କେବଳ କଳିଂଗରେ ସୀମାବଦ୍ଧ ନ ଥିଲା । ଏହା ମୁଖ୍ୟତଃ ଗୋଟିଏ ଦକ୍ଷିଣୀ ସଂସ୍କୃତି । ପୃଥିବୀରେ ସମସ୍ତ ଧର୍ମମାନଂକ ମଧ୍ୟରେ ଏଇ ଗୋଟିଏ ଏକା କେବଳ ବୌଦ୍ଧଧର୍ମ ନୁହେଁ, ଏହା ଗୋଟିଏ ଆଧ୍ୟାତ୍ମିକ ଧର୍ମ । ତାମିଲ ଦେଶର ତିରୁକୁରାଲ (ଶ୍ରୀସୂକ୍ତ) ଗ୍ରଂଥ ଏବେ ଇଂରେଜୀରେ ଶ୍ରୀଯୁକ୍ତ ଚକ୍ରବର୍ତ୍ତୀଂକ ଟୀକା ସହିତ ବାହାରିଅଛି । ସେଥିରୁ ଜଣାଯାଏ, ଏବେ ପରବର୍ତ୍ତୀ କାଳରେ ଜୈନଧର୍ମ ବୋଲି ଯାହାକୁ କହୁଥିଲେ, ତାହାର ମୂଳ ଏଇଠାରେ । ଏଇ ଧର୍ମଟିରେ କେବଳ ଭକ୍ତ ବା କୌଣସି ଈଶ୍ୱର ପୁରୁଷ ବା ତାଂକର ପୁତ୍ର ପୈଗମ୍ବର ବା ଅବତାର କଳ୍ପନା କରି ତାଂକଠାରେ ସବୁ ସମର୍ପଣ କରି ଦେଇ ପୁଣି ସେଇ ପୁରୁଷଙ୍କୁ ଭକ୍ତିରେ ମାଗିବା କଥା ନାହିଁ । ଏହା ମାନବର ଆତ୍ମିକ ବା ଆଧ୍ୟାତ୍ମିକ ଧର୍ମ । ଏଇ ଧର୍ମର ପ୍ରଧାନ ଅନୁସନ୍ଧାନର ବସ୍ତୁ ହେଉଛି, ମାନବର ଆତ୍ମା । ସେଇ ହିସାବରେ ଉପାସ୍ୟ ହେଉଛନ୍ତି, ମାନବର ଶରୀରର ଅଧିକାରୀ ଆତ୍ମା ବା ପୁରୁଷ । ବହୁକାଳରୁ କଳିଂଗ ଉପକୂଳରେ ଏଇ ପୁରୁଷ ବା ପୁରୁଷୋତ୍ତମର ପ୍ରାଦୁର୍ଭାବ ଓ ପ୍ରତିଷ୍ଠା ହୋଇଥିଲା ।

ଯେଉଁ ନିଷାଦମାନେ ତନ୍ତ୍ର ବା ନାରୀଧର୍ମକୁ ସଂଗେ ନେଇ ଆସିଥିଲେ, ସେମାନେ ପ୍ରାଗ୍ ବୈଦିକ କାଳରେ ନିଜ ଧର୍ମକୁ ହୁଏତ ଶୂନ୍ୟଧର୍ମ ବୋଲି କହୁଥିଲେ ଯତ, କିଂତୁ ପ୍ରମାଣ ମିଳୁଛି, ସେମାନେ ନିମକାଠର ମୂର୍ତ୍ତି ପୂଜା କରୁଥିଲେ ଓ କେତେକାଳ ପରେ କଳିଂଗସ୍ଥ ପୁରୁଷୋତ୍ତମର ସ୍ପର୍ଦ୍ଧାକରି ସେଇ ନିମକାଠର ମୂର୍ତ୍ତିକୁ ପୁରୁଷ ବୋଲି କହିବାର ଆରଂଭ କଲେ । ଏହାପେନ ନିଷାଦ ଓ ଦ୍ରାବିଡ଼ମାନଂକ ମଧ୍ୟରେ ଘୋର ମତଭେଦ ହୋଇଥିବାର ମଧ ପ୍ରମାଣ ଋଗ୍ ବେଦରୁ ମିଳେ ।

ଖ୍ରୀଷ୍ଟ ୧୧ଶ ଶତାବ୍ଦୀରେ ଯେତେବେଳେ ଓଡ଼ିଶାରେ ଚୋଡ଼ଗଂଗ ଦେବ ସମ୍ରାଟ୍ ହେଲେ ସେତେବେଳେ କଳିଂଗରେ ଚୋଡ଼ଗଂଗ ଦେବଂକ ରାଜତ୍ୱର ପ୍ରାୟ ୫୦ ବର୍ଷ ପୂର୍ବରୁ ୧୦୨୪ ଖ୍ରୀଷ୍ଟାବ୍ଦରେ ଭାରତର ହିଂଦୁମାନଂକ ପ୍ରସିଦ୍ଧ ସୋମନାଥ ମଂଦିରକୁ ଗଜନୀର ମାମୁଦ ଧ୍ୱଂସ କରିଦେଲେ । ଭାରତର ଆଉ କୌଣସିଠାରେ ହିଂଦୁମାନଙ୍କର କୌଣସି ପ୍ରତିଷ୍ଠା ରହିବା ଆଶା ପର୍ଯ୍ୟଂତ ଦେଖାଗଲା ନାହିଁ । ଆସି ସମ୍ରାଟ ଚୋଡ଼ଗଂଗ ଏଇ ନିଷାଦ ଓ ଦ୍ରାବିଡ଼ମାନଂକ ସଭ୍ୟତାକୁ ଏକ କରି ଏଇ ନିମକାଠର ମୂର୍ତ୍ତି କୋଶଳରୁ ଅଣାଇ କଳିଂଗର

ଉପକୂଳରେ ପୁରୁଷୋତ୍ତମ ପୀଠର ପ୍ରତିଷ୍ଠା କରିଦେଲେ । ତା ପୂର୍ବରୁ ଉପକୂଳର ପୁରୁଷୋତ୍ତମ ତଥା କୋଶଳ ବା ଉଡ୍ଡିୟାନର ନିମକାଠ ମୂର୍ତ୍ତି ବୁଦ୍ଧଙ୍କର ନାମ ଜଗନ୍ନାଥ ହୋଇ ସାରିଥିଲା । ଜଗନ୍ନାଥ ସଙ୍ଗେ ତନ୍ତ୍ରର ଯାହା କିଛି ସମ୍ପର୍କ ଥିଲା, ତାହା ବରଂ ଏଇ ଜଗନ୍ନାଥର ମହାପ୍ରସାଦରେ ସୁନ୍ଦରରୂପେ ପ୍ରକାଶ ପାଇଲା ଓ ଏଇ ଜଗନ୍ନାଥଙ୍କ ଠାରେ କୋଶଳର ଶବରମାନଙ୍କଠାରୁ ପୁରୀର ଦ୍ରାବିଡ଼ମାନଙ୍କ ପର୍ଯ୍ୟନ୍ତ ସମସ୍ତେ ମିଶି ଆହାରଠାରୁ ସାମାଜିକତା ପର୍ଯ୍ୟନ୍ତରେ ଏକାକାର ହୋଇଗଲେ । ଏହାଇ ମୋଟା ମୋଟି ଓଡ଼ିଶାର ସଂସ୍କୃତି ଓ ସେଥିରେ ଦକ୍ଷିଣ ଏବଂ ଉତ୍ତର ପ୍ରଭାବ ।

ଏଥିରୁ ସ୍ପଷ୍ଟ ଜଣାଯାଉଛି, ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗର ପୂର୍ବ ପର୍ଯ୍ୟନ୍ତ ଅର୍ଥାତ୍ ଖ୍ରୀଷ୍ଟ ୧୫ଶ ଶତାବ୍ଦୀର ମଧ୍ୟଭାଗର ସାରଳାଦାସଙ୍କ ପର୍ଯ୍ୟନ୍ତ, ଓଡ଼ିଆ ସଂସ୍କୃତିର ରୂପ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ବହୁକାଳରୁ ରାଜନୈତିକ ତଥା ଅନ୍ୟାନ୍ୟ କାରଣରୁ ଓଡ଼ିଆ ସଂସ୍କୃତି ବରାବର କିଂବା ବହୁପରିମାଣରେ ବଂଗ ସଂସ୍କୃତି ସଙ୍ଗେ ସମାନ ହୋଇ ଯାଇଛି । ଓଡ଼ିଆ ଅକ୍ଷର ଆଜି ବିଶ୍ଳେଷଣ ଦୃଷ୍ଟିରେ ଦେଖି ବସିଲେ ଦେଖାଯିବ, ଏହା ବଂଗଳା ଅକ୍ଷରବାଟେ ଓଡ଼ିଶାରେ ପ୍ରଚାର ପାଇଛି । ଉଦାହରଣ ସ୍ୱରୂପ, ଓଡ଼ିଆ 'ଛ' 'ଚ' ସଙ୍ଗେ 'ହ' ମିଶି ଗଢ଼ା ହୋଇଛି । ମାତ୍ର ବଂଗଳାରେ ଏହା ବିଶ୍ଳେଷଣରେ ବାରିହେଲେ ମଧ୍ୟ ଓଡ଼ିଆରେ ଏକ ବିକୃତ ଆକାର ଧାରଣ କରିଛି । ଏଇପରି ଓଡ଼ିଆର ଅନେକ ଅକ୍ଷରରେ ଅନୁସନ୍ଧାନ କରାଯାଇ ପାରେ । ଚୀନପରିବ୍ରାଜକ ହୁଏନଂସା ଓଡ଼ିଶାର ଭାଷାକୁ ବଂଗଳା ରାଢ଼ର ଭାଷାଠାରୁ ଭିନ୍ନ ବୋଲି କହିଛନ୍ତି । ସେ ଭିନ୍ନତା ଓଡ଼ିଆଙ୍କର ଏବେ ବି ଅଛି ।

ତା ଛଡ଼ା ଓଡ଼ିଶା ଇତିହାସ ଦେଖିଲେ ଦେଖାଯିବ, ଅନ୍ତତଃ ୭ମ, ୮ମ ଶତାବ୍ଦୀଠାରୁ ଉତ୍ତର ଓଡ଼ିଶାର ଭୌମମାନେ ସମସ୍ତ ଓଡ଼ିଶାକୁ ଜିଣି ଶାସନ କରିଥିଲେ । ସେଥିରେ ସ୍ପଷ୍ଟ ପ୍ରମାଣ ଅଛି, ଯାଜପୁର ପାଖ ପୁଷ୍ପଗିରି ବିହାରରେ ବଜ୍ରଯାନର ଖୁବ୍ ଚର୍ଚ୍ଚା ହେଉଥିଲା । ଏଇ ବଜ୍ରଯାନ ଗ୍ରଂଥ ଗଣ୍ଡବ୍ୟୂହ, ପୁଷ୍ପଗିରିରେ ପଢୁଥିବା ଉତ୍ତର ପଶ୍ଚିମ ଆଫଗାନିସ୍ଥାନର ପ୍ରଜ୍ଞା ଓଡ଼ିଶା ସମ୍ରାଟଙ୍କ ହାତଲେଖା ଏଇ ପୁସ୍ତକ ଧରି ଚୀନସମ୍ରାଟଙ୍କୁ ଭେଟି ଦେବାକୁ ଯାଇଥିଲେ । ଏବେ ଏହା ଫ୍ରାନ୍ସର ପଣ୍ଡିତ ସିଲଭେନ୍ ଲେଭି ସାହେବ ବାହାର କରିଛନ୍ତି । ଅତଏବ ବହୁକାଳରୁ ଏପରିକି ଏହାର ଦୁଇ ତିନି ଶହ ବର୍ଷ ପୂର୍ବରୁ ବଂଗଳା ଆଡ଼ର ସଂସ୍କୃତି କଳିଙ୍ଗରେ ପ୍ରବେଶ କରିଥିଲା । ସେତିକି ନୁହେଁ, ଭୌମଲେଖାମାନଙ୍କରୁ ଯେଉଁ ସଂସ୍କୃତ ଲେଖାର ଶୈଳୀ ଓ ଛଟା ଦେଖାଯାଏ, ତାହା ମୌଳିକ ଭାବରେ ସମ୍ପୂର୍ଣ୍ଣ ଓଡ଼ିଆ ଥିଲା ପରି ବୋଧହୁଏ ନାଇ । ଅବଶ୍ୟ ଦେଖିବାର ଅଛି, ଏଇ ଶୈଳୀର ସମ୍ପର୍କରେ ଓଡ଼ିଆ ଛନ୍ଦ ବାହାର ଓଡ଼ିଶାରେ ପ୍ରତିଷ୍ଠା ଲଭିଥିଲା । ଏଇ ଛନ୍ଦରେ ଦେଖିବାକୁ ହେବ, ବଜ୍ରଯାନ,

ସହଜଯାନର ଥିଷ୍ଟ ସଂବଂଧ ଓ ପ୍ରଭାବ ନାଇ । ଏହା ସହଜିଆ ବୈଷ୍ଣବଙ୍କ ପ୍ରଚ୍ଛଦ୍ୱଂଦ୍ୱତାରେ ଭାରତରେ ଯେଉଁ ସୀତାରାମଙ୍କ ଧର୍ମ ବାହାରଥିଲା, ତାହାର ଏକ ପ୍ରତିଷ୍ଠିତ ପରଂପରା ।

ତଥାପି ଦେଖିବାର ଅଛି, ଖ୍ରୀଷ୍ଟ ୧୫ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟଂତ, ଅର୍ଥାତ୍ ସାରଳା ଦାସଂକ ସମୟ ପର୍ଯ୍ୟଂତ ଦକ୍ଷିଣର (ଅର୍ଥାତ୍, ଯାଜପୁର ଦକ୍ଷିଣକୁ) ଉତ୍କଳୀୟ ସଂସ୍କୃତି ସଂପୂର୍ଣ୍ଣ ଭିନ୍ନ ଥିଲା । ସାରଳାଦାସଙ୍କ ଲେଖାରେ ଯେଉଁ ପୁନର୍ଜନ୍ମ ଓ ସେଥିରେ କର୍ମଫଳ ଭୋଗାଦର ବୈଶିଷ୍ଟ ବର୍ଣ୍ଣନା ଅଛି, ତାହା ଏବର କୌଣସି ଉତ୍କଳୀୟ ସଂସ୍କୃତିରେ ନାଇ । ପୁଣି ସାରଳାଦାସରେ ନାଗ ଚରଣର ତଥା ଯୌନ ଚରଣର ଯେ ବର୍ଣ୍ଣନା ଅଛି, ତାହା ସଂପୂର୍ଣ୍ଣରୂପେ ବୈଦିକ ସଂସ୍କୃତିରୁ ଭିନ୍ନ ବୋଲି ଖୁବ୍ ବାରହେବ । ବୈଦିକ ସଂସ୍କୃତି ହେଉଛି ଦେବତାଙ୍କୁ ମାଂସ ଓ ସୋମରସ ଦେଇ ନିଜେ ଖାଇବା ଓ ସମାଜରେ ଜାତିଭେଦ ଭଲି କରିବା । ଏ ଦୁଓଟି ସଙ୍ଗେ ସାରଳାଦାସର କୌଣସି ତାତ୍ତ୍ୱିକ ସଂବଂଧ ନାଇ । ଅବଶ୍ୟ ସାରଳାଦାସ ମୌଳିକ ଗ୍ରଂଥ ମୌଳିକ ଭାବ ଧରି ଏ ପର୍ଯ୍ୟନ୍ତ ଯଥାଯଥ ଭାବରେ ଆଲୋଚିତ ହୋଇନାହିଁ । ତଥାପି ମୋଟାମୋଟି ଏସବୁ ଭେଦ ସାରଳାଦାସଙ୍କର ପରବର୍ତ୍ତୀ ଓଡ଼ିଆ ସାହିତ୍ୟଠାରୁ ବେଶ୍ ଦେଖାଇ ପାରେ । ଏଇଠାରେ ନାଗଚରଣ ଓ ଯୌନ ଚରିତ୍ର ସଂବଂଧରେ ସାରଳାଦାସ ଯାହା ବର୍ଣ୍ଣନାତ୍ମକ ଭାବରେ କହିଚଂତି ତାହା ବୈଦିକ ସାହିତ୍ୟ ସଙ୍ଗେ ତୁଳନା କଲେ ବଡ଼ ବିଚିତ୍ର ଲାଗେ । ସାରଳାଦାସଂକ ତିନପ୍ରକାର ମୌଳିକ ଗ୍ରଂଥ । ୧ । ପ୍ରଥମଟି ହେଉଚି ମହାଭାରତ । ସେଥିରେ ବର୍ଣ୍ଣନା ଅଛି, ଶିଖଂଡ଼ୀକୁ ଦେଖିବା ମାତ୍ରେ ଯୁବତୀ ଅଂବା ବୃଦ୍ଧ ଭୀଷ୍ମଙ୍କ ମନେ ପଡ଼ିଯିବାରୁ ତାଂକ ଲୋମକୂପରୁ ରେତଃ ସ୍ଖଳିତ ହେଲା । ସେଥିରେ ସେ ହତବୀର୍ଯ୍ୟ ହୋଇ ନାଶ ଲଭିଲେ । ୨ୟଟି ହେଉଛି ବିଲଙ୍କା ରାମାୟଣ । ସେଥିରେ ରାମ ବିଲଂକାର ସହସ୍ର ମୁଖା ରାବଣକୁ ହାରି ସୀତାଂକୁ ସ୍ମରଣା କଲେ । ସୀତା ଯାଇ ସୁନ୍ଦରୀ ଯୁବତୀ ରୂପରେ ସେଇ ରାବଣ ଆଗରେ ଠିଆ ହେବାରୁ ରାବଣ ତାଂକୁ ଦେଖି ହତବୀର୍ଯ୍ୟ ହୋଇ ନାଶ ଗଲା । ୩ୟ ହେଉଚି ଚଂଡ଼ୀ ପୁରାଣର ମହିଷାସୁର ତାକୁ ମାରିବାକୁ କଷ୍ଟ ହେବାରୁ ଉଲଗ୍ନା ଚଂଡ଼ୀ ତାକୁ କୋଳତଳେ ପକାଇ ମାଡ଼ିବସି ମୁକ୍ତ ଯୋନି ଦେଖାଇ ଦେଲେ । ସେଠିକରେ ମହିଷାସୁରର ବଳବୀର୍ଯ୍ୟ ଲୋପ ପାଇଗଲା । ଏଇଭଳି ବର୍ଣ୍ଣନାମାନ କେବଳ ସାରଳାଦାସ ଓ ତାଙ୍କ ଉପରେ ପ୍ରତିଷ୍ଠିତ ନଷ୍ଟ ପ୍ରଭାବର ଫଳ । ଓଡ଼ିଆ ସାହିତ୍ୟରେ ଏହା ଆଉ ଅନ୍ୟତ୍ର ନାଇ ।

ମନେରଖିବାର ଅଛି ସଂସ୍କୃତିର ଆଉ ଗୋଟିଏ ପ୍ରକାଶ ହେଉଚି ଉଡ୍ଡିୟାନରୁ ବାହାରିଥିବା ତଂତ୍ର । ଏଇ ତନ୍ତ୍ର ଗଙ୍ଗବଂଶଙ୍କ ପୂର୍ବରୁ ପୁରୀର ଜନାସନ ପୀଠ ବା ପୁରୁଷୋତ୍ତମରେ କେତେଦୂର ଜଡ଼ିତ ଥିଲା, ତା' କୁହାଯାଇ ପାରୁ ନାଇ । କିନ୍ତୁ ଏଇ

ତଂନ୍ତ୍ରର ଅଂକୁରୋଦ୍‌ଗମ ପୂର୍ବରୁ କୁହାଯାଇଛି । ବେଦର ନାସଦୀୟ ସୂକ୍ତରେ ଶୂନ୍ୟରୁ ସୃଷ୍ଟି ବିକାଶରେ 'କାମ' କପର ମୂଳରୁ ପ୍ରତିଷ୍ଠିତ ଥିଲା, ତାହା ଆଉ ଏଠାରେ କହିବା ଦରକାର ନାହିଁ । ଏବେ Buddhism in Orissa ବୋଲି D. N. K. Sahuଙ୍କର ଖଣ୍ଡିଏ ବଡ଼ ସୁନ୍ଦର ସଂକଳନମୂଳକ ଗ୍ରଂଥ ବାହାରିଛି । ସେଥିରେ ଭାରତର ବିଶେଷତଃ ଓଡ଼ିଶା ପରି ଅଂଚଳର ପ୍ରାଚୀନ ବୌଦ୍ଧଧର୍ମ ସମ୍ପର୍କରେ ଅନେକ ଆଖ୍ୟାୟିକାର ବର୍ଣ୍ଣନା କରାଯାଇଛି । ସେଥିରୁ ଜଣା ପଡ଼ୁଛି ଖ୍ରୀଷ୍ଟ ୬ଷ୍ଠ, ୭ମ ଶତାବ୍ଦୀ ବା ଓଡ଼ିଶାରେ ଭୌମ ରାଜତ୍ୱର ଆରମ୍ଭ ପର୍ଯ୍ୟନ୍ତ ଯାଜପୁର ନିକଟବର୍ତ୍ତୀ ପୁଷ୍ପଗିରି ବା ଲଳିତଗିରି ପ୍ରଭୃତି ପର୍ଯ୍ୟନ୍ତ ସ୍ଥାନରେ ଉତ୍ତରକୁ ଆସିଥିବା ତଥା ରାଜପୁରରେ ରାଜଧାନୀ ପ୍ରତିଷ୍ଠା କରିଥିବା ଭୌମକାଳ ପର୍ଯ୍ୟନ୍ତ ଓଡ଼ିଶାରେ ବୌଦ୍ଧଧର୍ମ କହିଲେ 'ଥେରବାଦ' ବୌଦ୍ଧଧର୍ମ ବୋଲି ସେ ବୁଝିଚନ୍ତି । ତା'ପରେ ଅଷ୍ଟମ ଶତାବ୍ଦୀଠାରୁ ଯାହା ବା କିଛି ମହାଯାନ ବୌଦ୍ଧଙ୍କର ପ୍ରଭାବ ତା' ପୁଣି ଅତି ସାମାନ୍ୟ ମାତ୍ରାରେ ଓଡ଼ିଶାର କଳିଂଗ ଭୂମିଖଣ୍ଡରେ ଅଛି । ହୁଏନ୍‌ସାଙ୍କ ବେଳେ ଯେଉଁ ଓଡ଼ିଶା 'ଥେରବାଦୀ' ମାନେ ନିଜ ଧର୍ମକୁ 'ହୀନଯାନ' ବୋଲି କହି ନାଳନ୍ଦା ବିଶ୍ୱବିଦ୍ୟାଳୟରୁ ପଣ୍ଡିତମାନଙ୍କୁ ( ହୁଏନ୍‌ସାଂଙ୍କ ସହିତ ) ତାକ ଯୁକ୍ତି କରିବାକୁ କହିଥିଲେ ସେଥିରୁ ମଧ୍ୟ ଜଣାଯାଏ ସେକାଳ କଳିଂଗଭୂମିରେ ( ପୁଷ୍ପଗିରି ବିହାର ଗୁଡ଼ିଦେଲେ ) ଆଉ 'ମହାମାନ' ଧର୍ମ ନ ଥିଲା । ଏହି 'ମହାଯାନ' ଧର୍ମ ଖ୍ରୀଷ୍ଟ ୭ମ, ୮ମ ଶତାବ୍ଦୀର ପରବର୍ତ୍ତୀ କାଳର କଥା ବୋଲି ସ୍ପଷ୍ଟ ଜଣା ପଡ଼ୁଛି ।

ଏଇ ତଂନ୍ତ୍ରର ପ୍ରଭାବ ସ୍ପଷ୍ଟ ଦେଖା ନ ଗଲେ ମଧ୍ୟ ଅର୍ଥାତ୍ ବଂଗଳାର ବଜ୍ରଯାନ ବା ସହଜଯାନ ଧର୍ମପରି ଦେଖା ନ ଗଲେ ମଧ୍ୟ ସାରଳା ଦାସରେ ବହୁପରିମାଣରେ ସମାଜରେ ଦେବୀଙ୍କ ପ୍ରତିଷ୍ଠା ଯତ୍ରତତ୍ର ଦେଖିବାକୁ ମିଳେ । ସେଥିରେ ତଂନ୍ତ୍ରରେ ମୂଳରୁ ଥିବା ଓ ପରେ ବିକାଶ ପାଇଥିବା ଯୌନକ୍ରିୟାର ଦାରୁଣ ପ୍ରାଦୁର୍ଭାବ ନ ଥିଲା ସତ, ତଥାପି ଦେବୀ ନାମର ପ୍ରଚାର ଖୁବ୍ ଦେଖାଯାଏ । ଓଡ଼ିଶାରେ ଜଗନ୍ନାଥ ପୀଠରେ ଉଡ୍‌ଡ଼ିୟାନର ତଂନ୍ତ୍ର ଧର୍ମର ଦେବତା ପ୍ରତିଷ୍ଠିତ ହେବା ପୂର୍ବରୁ ଏଇ ତଂନ୍ତ୍ରଭାବ ସମାଜରେ କେତେ ଥିଲା ଓ ତାହା କି ବିକାଶରେ ବଢ଼ିଥିଲା ଓ ବଂଚିଥିଲା, ତାହା ଏକ ଅନୁସନ୍ଧାନର ବିଷୟ । କିନ୍ତୁ ଉତ୍କଳର ତଂନ୍ତ୍ରଧର୍ମ କଳିଂଗରେ ଯେ ପୂରା ପ୍ରବେଶ କରି ନ ଥିଲା, ଏହାର ବେଶୀ ପ୍ରମାଣ ଦେବାର ଦରକାର ନାହିଁ ।

ଏହାଛଡ଼ା ଯାଜପୁରଠାରୁ ସେ କାଳର ମୁଖଲିଂଗ ପର୍ଯ୍ୟନ୍ତ ବା ତା ଦକ୍ଷିଣକୁ ଯେଉଁ କଳିଂଗ ଭୂମି—ଯାହାର ନାମ ଏପରିକି ଅନ୍ତତଃ ଖ୍ରୀଷ୍ଟ ୨ୟ, ୩ୟ ଶତାବ୍ଦୀ-ଠାରୁ ବା ତା ପୂର୍ବରୁ ସ୍ପଷ୍ଟତଃ କଳିଂଗ ଥିଲା, ତାହାର ସଂସ୍କୃତି ଉତ୍କଳଠାରୁ ଭିନ୍ନ ହେଲେହେଁ, ତାହାର ନିର୍ଦ୍ଦିଷ୍ଟ ପ୍ରକାର କଣ ଥିଲା, ଆଜି କହିବା ଦୁଷ୍କର । କିନ୍ତୁ

ଦ୍ରାବିଡ଼ରେ ସେ କାଳରୁ ଯେଉଁ 'ପୁରୁଷ' ଧର୍ମ ପ୍ରତିଷ୍ଠିତ ହୋଇଥିବାର ପ୍ରମାଣ ମିଳୁଛି—ବିଶେଷତଃ ତିରୁକୁରାଳରୁ ସେଇ 'ପୁରୁଷ' ଧର୍ମରୁ ପୁରୁଷୋତ୍ତମ କ୍ଷେତ୍ରର ନାମ ହୋଇଥିଲା ଓ ତାକୁଇ ପରେ ଜୈନଧର୍ମ ବୋଲି କହିଲେ । ଏହା ମୋଟାମୋଟି କୁହାଯାଇପାରେ ।

ଏଥିର ଗୋଟିଏ ସ୍ପଷ୍ଟ ଭକ୍ତିକ ସମ୍ପର୍କ ଅଛି । ଏଇ ସୂତ୍ରରେ ସେ କାଳର ସିଂହଳ ଓଡ଼ିଶା ବିଶେଷତଃ କଳିଂଗ ଭୂମି ସଙ୍ଗେ ତଥା ଜଗନ୍ନାଥ ବା ପୁରୁଷୋତ୍ତମଂକ ସଙ୍ଗେ ଯେଉଁ ସଂବଂଧ ରକ୍ଷି ଆସିଥିଲା, ତାର ଗୋଟିଏ ନିଦର୍ଶନ ମିଳୁଛି । ଏଇ କାଳଠାରୁ କେତେ ଶତାବ୍ଦୀ ଯାଏ ସିଂହଳର କଳିଂଗ ସମ୍ପର୍କ ବୋଇଲେ, ଜଗନ୍ନାଥଙ୍କ ସଙ୍ଗେ ସଂପର୍କ ଥିବାର ପ୍ରମାଣ ମିଳେ । ବୁଝି ରଖିବାର ଅଛି, ଏଇ କଳିଂଗ ହେଉଛି, ଏବ ମୁଖଲିଂଗର କଳିଂଗ । ବୋଧହୁଏ ଖାରବେଳଂକ ଅନ୍ତର୍ଦ୍ଧାନ ପରେ ଏଇ କଳିଂଗର ସ୍ଥାନ ପୁରୀରୁ ମୁଖଲିଂଗକୁ ଚାଲି ଯାଇଥିଲା ଓ ଏଇ ସିଂହଳ ସୂତ୍ରରେ ବୁଦ୍ଧଦେବଂକ ଦଂତ (ବା ବାମପଟ୍ଟ ଦକ୍ଷିଣଦାଂତ)ର ଯେଉଁ ଉପାଖ୍ୟାନଟି ମିଳେ, ତାହାର ମୂଳରେ ସତ୍ୟ ନାଇ । ଏହା ଗୋଟିଏ ଭକ୍ତିକ ମିଥ୍ୟା । ଏଇ ହେତୁରୁ କୁହାଯାଇଛି ସାରଳାଦାସ ନିଜେ ବିଷ୍ଣୁ ବା କୃଷ୍ଣଂକ ହୃତ୍‌ପିଂଡ଼ ପୋଡ଼ି ନ ଯାଇଥିବା କଥା ସେଇ ହୃତ୍‌ପିଂଡ଼ ଭାସି ଭାସି ପୁରୀରେ ଲାଗି ପୁରୀରେ ଜଗନ୍ନାଥର ପ୍ରତିଷ୍ଠା ହୋଇଯାଇଥିବା କଥା ନିଜେ ବାହାର କରିଥିଲେ । ସେ ଉପାଖ୍ୟାନଟି ଏପର୍ଯ୍ୟଂତ ମଧ୍ୟ ଲୋକରେ ଚଳେ । କିଂତୁ ମନେ ହୁଏ, ଏଥିରେ ଇତିହାସ ଆଦୌ ନାଇ, ତଥାପି ୨ୟ ସଂସ୍କରଣର ଭୂମିକାରେ ତାହା ଯେପରି ଥିଲା, ସେପରି ରଖା ଯାଇଛି ।

ତୃତୀୟ କଥା ଉଡ଼୍ଡ଼ିୟାନ । ଏ ବିଷୟରେ ବହୁତ କଥା କୁହାଯାଇଛି । ଯାହାହେଉ, ଉଡ଼୍ଡ଼ିୟାନର ଜଗନ୍ନାଥ ଧର୍ମ ହେଉଛି, ଶୂନ୍ୟଧର୍ମ ବା ତଂତ୍ରଧର୍ମ । ଏଇଥିରୁ ମହାପ୍ରସାଦ ହୋଇଥିବା କଥା ସଂକେତ ଦିଆଯାଇଛି । କୁଳାର୍ଣ୍ଣବ ତଂତ୍ରରୁ ଯେଉଁ ଭୈରବୀ ଚକ୍ର କଥା କୁହାଯାଇଛି ତା' ମନେହୁଏ, ଜଗନ୍ନାଥ ପୁରୀକୁ ଆସିବା କାଳରୁ ଅର୍ବାଚୀନ ନୁହେଁ । ତଥାପି କଳିଂଗର ପ୍ରକଟିତ ଆତ୍ମଧର୍ମରେ ଏଇ ତଂତ୍ରଭାବ କିପରି କେତେ ପରିମାଣରେ ବିସ୍ତାର ଲାଭ ପ୍ରତିଷ୍ଠିତ ହୋଇଥିଲା, ତାହା ଦେଖିବାର କଥା ।



# ଧର୍ମକ୍ଷେତ୍ରରେ ଜାତୀୟ ସଂସ୍କୃତିକୁ ଓଡ଼ିଶାର ଦାନ
## ( ଜଗନ୍ନାଥ-ତତ୍ତ୍ୱ )

[ ମୋର ଜଗନ୍ନାଥ ବିଷୟକ ରେଡ଼ିଓ ଭାଷଣର ଅଂଶବିଶେଷ ତା ୧୧।୪।୬୨ ]

"ଓଡ଼ିଶା ବୋଇଲେ ଏ କ୍ଷେତ୍ରରେ ବୁଝିବାର ଅଛୁ ଏବର ଓଡ଼ିଶା । ଏବର ଓଡ଼ିଶା ତିନୋଟି ଅଂଚଳର ସମ୍ମିଶ୍ରଣ । କୁହାଯାଇଛୁ ସେଥିରୁ ଗୋଟିଏ ହେଉଛୁ ଉତ୍ତରକୁ ଉତ୍କଳ । ଏହା ପ୍ରାଚୀନ କାଳରେ ଯାଜପୁରଠାରୁ 'ରାଢ଼' ଆଡ଼କୁ । ଏହାର ସଂସ୍କୃତି ବଂଗ ସଂସ୍କୃତି ସଙ୍ଗେ ପ୍ରାୟ ସମାନ । ଅତି ପ୍ରାଚୀନକାଳରୁ ଏଠାରେ ଭୌମମାନେ ଦକ୍ଷିଣକୁ ଦେଶ ଜିଣି ଯାଇଥିଲେ । ଓଡ଼ିଆ ଅକ୍ଷର ଓ ଉଚ୍ଚାରଣ ପ୍ରଭୃତି ବହୁ ପରିମାଣରେ ସେଇକାଳୁ ବଂଗଳା ଅକ୍ଷର ଓ ଉଚ୍ଚାରଣ ସଂଗେ ସମାନ । ସେଇ ବଂଗକୁ 'ରାଢ଼' କୁହାଯାଉଥିଲା । ଅତି ପ୍ରାଚୀନ କାଳରେ 'ଉତ୍କଳ-ରାଷ୍ଟ୍ର' ବୋଲି ଭୂମିଖଂଡ଼ର ନାମ ଥିଲା । କାଳକ୍ରମେ ସେଥିରୁ ଉତ୍ତରଆଡ଼କୁ ନାମ ହେଲା 'ରାଢ଼'—ଦକ୍ଷିଣଆଡ଼ର ନାମଟି ହେଲା 'ଉତ୍କଳ' । ସ୍ପଷ୍ଟତଃ ଏଇ ଉତ୍କଳ ଗସ୍ତ୍ୟାଠାରୁ ଦକ୍ଷିଣ ବା ଉପକୂଳ ଆଡ଼କୁ ।

ଏଇ ଯାଜପୁରଠାରୁ ଦକ୍ଷିଣଆଡ଼କୁ ଗୋଦାବରୀଯାଏ ନ ହେଲେ ମଧ୍ୟ ସେଇ ପର୍ଯ୍ୟଂତ, ସ୍ପଷ୍ଟତଃ ନାଗାବଳୀ ପର୍ଯ୍ୟଂତ, ଭୂମିଖଂଡ଼ର ନାମ ହୋଇଥିଲା କଳିଂଗ । ଏହା ବଡ଼ ପ୍ରାଚୀନ ନାମ । ଏଇ କଳିଂଗର ଭାଷା ଖୁବ୍ ସଂଭବ ବୈଦିକ ଭାଷା ବା ଆର୍ଯ୍ୟଭାଷା ନଥିଲା । ଏହା ଥିଲା, ଦ୍ରାବିଡ଼ ବା ଅତି ପ୍ରାଚୀନ କାଳରେ ତାମିଲ ଭାଷା ପରି ।

ଏଇ ଓଡ଼ିଶାର ତୃତୀୟ ଖଂଡ଼କ ହେଉଚି ସ୍ୱତନ୍ତ୍ର । ସପ୍ତମ-ଅଷ୍ଟମ ଶତାବ୍ଦୀ ଅର୍ଥାତ୍ ଚୀନ ପରିବ୍ରାଜକ ହୁଏନଂସା ପ୍ରଭୃତି ଭାରତକୁ ଆସିଲାବେଳକୁ ଏହାର ନାମ ଥିଲା 'ଉଡ୍‌ଡ୍ରିୟାନ' ।

ଏହା ଦକ୍ଷିଣ କୋଶଳ ବୋଲି ତା ପୂର୍ବରୁ ନାମିତ ଥିବାର ମନେହୁଏ । ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀବେଳକୁ ଏଇ ଉଡ୍‌ଡ୍ରିୟାନର ସୀମାଥିଲା ଏବର ବୌଦ୍ଧଠାରୁ ବାଲାସପୁରଯାଏ । ଏଇ ଉଡ୍‌ଡ୍ରିୟାନରେ ମହାନଦୀର ଉପନଦୀମାନେ କଟକ ଆଡ଼କୁ ବୋହିଯାଇ ସମୁଦ୍ରରେ ମିଶୁଚଂତି ।

କଳିଂଗର ପ୍ରାଚୀନ ସଂସ୍କୃତି ଏ ସମସ୍ତ ମିଶ୍ରଣ ମଧ୍ୟରେ ବଡ଼ ପ୍ରସିଦ୍ଧ ଥିଲା । ଦକ୍ଷିଣ ପ୍ରଶାଂତ ମହାସାଗର ଦ୍ୱୀପମାନଙ୍କରେ ତଥା ସେଇବାଟେ ଆମେରିକାକୁ ଏଇ କଳିଂଗ ସଂସ୍କୃତି ଯାଇ, ଅତି ପ୍ରାଚୀନ କାଳରେ ବ୍ୟାପ୍ତ ହୋଇଥିବାର ପ୍ରମାଣମାନ ଏବେ ବହୁତ ମିଳୁଚ । ଏ ସମ୍ପର୍କରେ ଚମନ୍‌ଲାଲଂକର 'ହିଂଦୁ ଆମେରିକା' ପୁସ୍ତକ ବେଶ୍ ଅନୁସନ୍ଧାନ କରିଯାଇପାରେ ।

ମାତ୍ର ଧର୍ମ ବିଷୟରେ ବିଶେଷ ଭାବରେ କହିବାର କଥା ଆଉ ମନେ ରଖିବାର କଥା, ଏ କ୍ଷେତ୍ରରେ ବଡ଼ ସ୍ୱତନ୍ତ୍ର । କଳିଂଗର ଧର୍ମ ପୃଥିବୀର ସମସ୍ତ ଧର୍ମରେ ଅଧ୍ୟାତ୍ମବାଦରୂପେ ଏବେ ବି ଖୁବ୍ ପ୍ରଚ୍ଛନ୍ନ ଭାବରେ ହେଲେ ମଧ୍ୟ ପ୍ରକାଶ ପାଉଛି ।

କଳିଂଗରେ ବହୁ ପ୍ରାଚୀନ କାଳରେ ଏପରିକି ଖ୍ରୀଷ୍ଟ ପ୍ରବର୍ତ୍ତନର ଅଂତତଃ ଦୁଇ ତିନି ହଜାର ବା ଅଧିକ ବର୍ଷ ତଳରୁ ଦ୍ରାବିଡ଼ମାନେ ମଧ୍ୟ-ଆଫ୍ରିକାରୁ ଆସି ବସତି କରି ଯାଇଥିଲେ । ସେଇ କଳିଂଗମାନଂକର ଉପାସ୍ୟ ଥିଲା, ମାନବର ଆତ୍ମା ବା ଶରୀର ଅଧିକାରରେ ଥିବା ଆତ୍ମା । ଏହାକୁ ସେକାଳେ 'ପୁରୁଷ' କହୁଥିଲେ । ଏଇ ପୁରୁଷକୁ ଡ଼କ୍ଟର ସୁନୀତିକୁମାର ଚ୍ଚଟର୍ଜୀ କହ'ନ୍ତି, ଏହା ଗୋଟିଏ ଦ୍ରାବିଡ଼ ଶବ୍ଦ । ପରବର୍ତ୍ତୀ ବେଦ ସାହିତ୍ୟରେ ଏହା ପ୍ରବେଶ କରିଥିଲା । ଏହା ମୌଳିକ ଭାବରେ ହେଉଛି 'ପୁରୁଷ' । ଏହା ବୈଦିକ ଭାଷା ହିସାବରେ ହେବ, 'ପୁରୁଷ' ବା 'ପୁର୍ଷ'—'ପୁରୁଷ' ନୁହେ । କିଂତୁ ଦ୍ରାବିଡ଼ ଶୈଳୀରେ ଏହା ହେବ, 'ପୁରୁଷ' । ଦ୍ରାବିଡ଼ ସମ୍ପର୍କରେ ଏଇପରି ଅନେକ ଶବ୍ଦ ବଦଳି ଯାଇଥିବାର ଏବେ ବି ସ୍ପଷ୍ଟ ଦେଖାଯାଏ । ଯଥା—'ଶ୍ରୀମଲାଇ'—ତିରୁମଲାଇ; 'ଶ୍ରୀପତି'—ତିରୁପତି । ଏଠାରେ ସବୁ 'ଶ୍ରୀ' ହୋଇଛି, 'ତିରୁ' । ଏହା ଦ୍ରାବିଡ଼ ସମ୍ପର୍କରେ ବୈଦିକ ଭାଷା ଉପରେ ପ୍ରଭାବ ।

ଏଇ 'ପୁରୁଷ'—ଶବ୍ଦ ନ ଆସିଥିଲେ ମଧ୍ୟ ଭାବଟି ଆସିଥିଲା—ଖୁବ୍ ସମ୍ଭବ ଦକ୍ଷିଣ-ଆଫ୍ରିକାରୁ ଭୂମିବାଟେ—ପୁଣି କେଜାଣି ବା ସମୁଦ୍ର ବାଟେ—ଭାରତକୁ । ଏଇ 'ପୁରୁଷ'ର ପ୍ରଧାନ ପୀଠ କଳିଂଗ ଉପକୂଳରେ ଏବଂ ପୁରୀ ପାଖ 'ପୁରୁଷ କ୍ଷେତ୍ର' ବା ପୁରୁଷୋତ୍ତମ କ୍ଷେତ୍ର ।

ଆଉ ଗୋଟିଏ ହେଉଛି, ନିଷାଦମାନଂକର ସଂସ୍କୃତି । ଏହା ମଧ୍ୟ ଦ୍ରାବିଡ଼-ମାନଂକ ଆସିବାର ଆହୁରି ପୂର୍ବରୁ ଆସିଥିଲା । ବିସ୍ତୃତ ଭାବରେ ମଧ୍ୟ-ଆଫ୍ରିକାରୁ ଭାରତକୁ ଆସି ଏହା ପୂର୍ବ-ଭାରତ ଓ ଦକ୍ଷିଣ ପୂର୍ବ ମହାସାଗର ଆଡ଼କୁ ବିସ୍ତୃତ ହୋଇଥିବାର ଅନୁମାନ ହୁଏ । ଏ ଦୁଇଟି ଧର୍ମ ଅତି ମୌଳିକ । ସମ୍ଭବତଃ ଏ ଦୁଇଟିଯାକ ଧର୍ମର, ମାତାର ସନ୍ତାନ ପ୍ରସବ ସହେ ସଂପର୍କ ଥିଲା ।

୧—ପ୍ରଥମେ ନିଷାଦ ଧର୍ମ, ତାହା କ୍ରମେ ମାତା ସନ୍ତାନକୁ ଶୂନ୍ୟରୁ ପ୍ରସବ କରିପରି ବିଶ୍ୱର ସୃଷ୍ଟି-ରୂପ କଳ୍ପନାରେ ପ୍ରଯୁକ୍ତ ହେଲା । ସେଥିପାଇଁ ଏବେ ବି ଅଛି, ପିତାର ବିନା ସଂପର୍କରେ ମାତା ସୃଷ୍ଟି କଲାପରି ପୃଥିବୀ ଶୂନ୍ୟରୁ ସୃଷ୍ଟି କରା ହେଲା ।

୨—ଆଉ ୨ୟଟି ହେଉଛି, ସେଇ ମାତା ସଂଖ୍ୟାନ ଜନ୍ମ କରିବାରେ ଯେପରି ଆତ୍ମ-ଜନ୍ମିତ ହୁଏ, ସେଇପରି ଧାରଣା । ଏଇଥିରୁ ବିଶ୍ୱପରିବାର ଭାବ ମାନବ-ସମାଜରେ ଫୁଟି କ୍ରମେ ବ୍ୟାପ୍ତ ହେଲା । ଏହାଇ ହେଉଛି, ଦ୍ରାବିଡ଼ ଧର୍ମ ।

ଏଇ ନିଷାଦ ପୀଠ ପ୍ରାଚୀନକାଳରେ ଥିଲା ଏଇ ଓଡ୍ରଙ୍କାର ଉଡ୍ଡିୟାନ ଭାଗରେ । କାଳକ୍ରମେ ଏହା ପ୍ରତିଷ୍ଠିତ ହୋଇଥିଲା—'ସଉରୀନାରାୟଣ' ନାମକ ସ୍ଥାନରେ—ମହାନଦୀର ଉପନଦୀ 'ଜୋଂକ୍' ଓ ମହାନଦୀର ସଂଗମ ସ୍ଥଳରେ । ଏହା ଉଡ୍ଡିୟାନର ଗୋଟିଏ ସ୍ଥାନ ।

ଏଇ ଉଡ୍ଡିୟାନର ଏ ସ୍ଥାନଟି ହେଉଛି, ଏଇ ମାତୃଧର୍ମର ପ୍ରଧାନ ସ୍ଥଳ । ଏହା କାଳକ୍ରମେ ନିଷାଦମାନଂକ ଭିତରେ କ୍ରମେ ନିମକାଠର ମୂର୍ତ୍ତିପୂଜା କରିବାରେ ପର୍ଯ୍ୟବସିତ ହୋଇଥିଲା ଓ ଏଣେ ପୂର୍ବ ଉପକୂଳରେ 'ପୁରୁଷ' ପୀଠର ପ୍ରତିଷ୍ଠା ସ୍ପଷ୍ଟ ହୋଇଯାଇଥିଲା । ଏହି ଦୁହିଂକ ଭିତରେ ଖୁବ୍ ସାଂସ୍କୃତିକ ବିବାଦ ଘୋଟି ରହି-ଥିବାର ବେଦରେ ପ୍ରମାଣ ମିଳେ ।

ଏଇ ପୁରୁଷକଳ୍ପ ନିମକାଠର ବହୁତ ଇତିହାସ ଓ ପରଂପରା ପ୍ରାଚୀନ ଭାରତ ସାହିତ୍ୟରେ ଅଛି । ଏହାକୁ ପରେ ହୈମବତୀ 'ଉମା' ବୋଲି କହି ଋଷିମାନେ ନାରୀର କଳ୍ପନାସୃଷ୍ଟିର ମୂଳରେ ଦେଖିବାର କଥା 'କେନୋପନିଷଦ'ରେ ସ୍ପଷ୍ଟ ଅଛି । ତା' ପରେ ବରାହମିହିରାଚାର୍ଯ୍ୟ ପ୍ରାୟ ଖ୍ରୀଷ୍ଟ ଷଷ୍ଠ ଶତାବ୍ଦୀରେ ଯେଉଁ ମୂର୍ତ୍ତି କଳ୍ପନା କରିଥିଲେ, ସେଥିରେ 'ବାସୁଦେବ-ସଂକର୍ଷଣ' ବା କୃଷ୍ଣ-ବଳରାମ ଦୁହିଂକ ମଧ୍ୟରେ ଏକାନଂଶା ବୋଲି ନାରୀମୂର୍ତ୍ତି ଅଂକନ କରିଥିବାର ଲକ୍ଷ୍ନୌ ମ୍ୟୁଜିୟମରେ ଥିବା ମୂର୍ତ୍ତିରୁ ଦେଖାଯାଉଛି । ଏଇ ଉଡ୍ଡିୟାନରୁ ଖଂଡ଼କର ରଜା ଇଂଦ୍ରଭୂତି ଏଇ ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀରେ ଏହାକୁ 'ସବଜନ ବରିଚିତ' ଓ ଶୂନ୍ୟବୁଦ୍ଧ ରୂପ ବୋଲି ସ୍ତୁତି କରିଛନ୍ତି ।

ପୁଣି ଏଇ ଶୂନ୍ୟ ଧାରଣା ଅତି ପ୍ରାଚୀନ କାଳରୁ ବେଦର 'ନାସଦୀୟସୂକ୍ତ'ରେ କୁହାଯାଇ ବର୍ଣ୍ଣନା କରାଯାଇଛି । ମୁଖବନ୍ଧରେ ଏହା ଆଲୋଚିତ ହୋଇଅଛି ।

ଏ ଦୁଇଟି ପୀଠ ଗୋଟିଏ କଳିଂଗ ଓ ଅଇ ଗୋଟିଏ ଉଡ୍ଡିୟାନରେ ବହୁ ଆଦିମକାଳରୁ ପ୍ରତିଷ୍ଠିତ ହୋଇ ଆସିଥିଲା । ଏ ଦୁହିଂକର ବିବାଦ ମଧ୍ୟ ବହୁ ପ୍ରକାଶିତ ଭାବରେ ଫୁଟି ଉଠିଥିଲା । ଏହାର ପରେ ଚୋଡ଼ଗଂଗଦେବ କଳିଂଗର ସମ୍ରାଟ୍ ହେଲେ । ଉଡ୍ଡିୟାନ ଓ ଉତ୍କଳ ତାଂକ ଅଧୀନରେ ଥିଲା । ସେତିକିବେଳକୁ ପଚିଶ ବର୍ଷ ପୂର୍ବରୁ ଗଜନୀର ମାହମୁଦ୍ ହିଂଦୁ'କର ପଶ୍ଚିମ ଭାରତର ମହାପୀଠ

'ସୋମନାଥ'କୁ ଧ୍ୱଂସ କରିଦେଲେ ୧୦୨୪ ଖ୍ରୀ:ଅ:ରେ । ଭାରତରେ ଆଉ ହିଂଦୁଂଙ୍କର ଦେବସେବା କରିବାର ପ୍ରଧାନ ସ୍ଥାନ ରହିଲା ନାଇ । ଏତିକ ବେଳକୁ ରାମାନୁଜାଚାର୍ଯ୍ୟ ବା ତାଂକର କୌଣସି ପ୍ରଧାନ ଶିଷ୍ୟ ଦକ୍ଷିଣରୁ ଆସି ଚୋଡ଼ଗଂଗଦେବଂକ ରାଜ୍ୟରେ ପହଂଚିଲେ । ଅନୁମାନ ହୁଏ, ତାଂକର ପ୍ରେରଣା ଓ ପରାମର୍ଶରେ ଚୋଡ଼-ଗଂଗ ଜଗନ୍ନାଥଙ୍କର ମଂଦିରାଦି ତିଆରି କରି ସଉରୀନାରାୟଣରୁ ଏଇ ନିମକାଠ ମୂର୍ତ୍ତି ମହାନଦୀରେ ପୁରୀକୁ ଅଣାଇଲେ ଓ ପୁରୀର 'ପୁରୁଷ ପୀଠ'ରେ ଜଗନ୍ନାଥ ମୂର୍ତ୍ତିର ପ୍ରତିଷ୍ଠା କଲେ । ଏହାକୁ ସ୍କଂଦ ପୁରାଣରେ ପୌରାଣିକ ଆଖ୍ୟାୟିକା ତିଆରି କରି ଜଗନ୍ନାଥର ବୋଲି ବର୍ଣ୍ଣନା କରାଯାଇଚି ।

ଏ ଯେଉଁ ଦୁଇଟି ଦେବତାର ମିଶ୍ରଣ, କରାଇଦିଆଗଲା, ଏହା ପୃଥିବୀରେ କୌଣସି ଦେବତା ବା ପୌତ୍ତଳିକତାର ପ୍ରତିଷ୍ଠା ନୁହେଁ, କିଂବା ଏଥିରେ 'ଏକେଶ୍ୱର' ବାଦପରି କୌଣସି ଧର୍ମବାଦର ଆଭାସ ନାଇ । ଏହା ପୁରୁଷ ରୂପରେ ପୃଥିବୀର ମୌଳିକ ଅଧ୍ୟାତ୍ମବାଦ ସଂଗେ ନିମକାଠର ଦେବମୂର୍ତ୍ତିର ଶୂନ୍ୟରୂପ ମିଶି ଏକାକାର ହୋଇଗଲା । ଏହାର ନାମ ହେଲା 'ଜଗନ୍ନାଥ' । ହୁଏତ ବିବାଦବେଳୁ ଏଇ ନାମରେ ପୁରୁଷ ପୀଠ ମଧ୍ୟ ନାମିତ ହୋଇଥିବାର ସଂଭବ ହୁଏ । ତେବେ ଏହା ପୃଥିବୀର ସଂସ୍କୃତିକୁ ଗୋଟିଏ ମୌଳିକ ଓ ଦୃଢ଼ ଅନୁଷ୍ଠାନର 'ନିତ୍ୟ-ଦାନ' । ଏପରି ଦାନ କେବଳ ଓଡ଼ିଶାରେ ସଂଭବ ହୋଇଚି ।

## ଜୈନଧର୍ମର ପରଂପରା—

ଏଇ ଉପସଂହାର ମଧ୍ୟରେ ଜୈନଧର୍ମର ଗୋଟିଏ ପରଂପରା ଦିଆଯାଉଚି । ଏହା ଏ ମୁଖବଂଧରେ ନିତାଂତ ଦରକାରରେ ଆସିବ । ଆବଶ୍ୟ ଏହା ପ୍ରଥମରୁ ଜୈନଧର୍ମ ନାମ ନ ଥାଇ ନାମଟି ଥିଲା ଜିଣ୍ ବା ବିଜେତାର ଧର୍ମ । ଖାରବେଲଂକ ଶିଳାଲିପିରେ ଯେଉଁ ଜିଣାସନ କଥା ଅଛୁ, ତା ସଂଗେ ଏଇ ଧର୍ମର ସମ୍ପର୍କଥିବା ସ୍ପଷ୍ଟ ଅନୁମାନ ହୁଏ । ତେବେ ଏଇ ଜୈନଧର୍ମ ପରଂପରାଟି ଲେଖାଯାଇଥିଲା ପ୍ରାୟ ଦୁଇ ତିନବର୍ଷ ତଳେ ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ସାହୁଂକର 'ଓଡ଼ିଶାରେ ଜୈନଧର୍ମ' ପୁସ୍ତକର ମୁଖବଂଧରୂପେ । ତାଂକର ଏତେ ବଡ଼ ମୁଖବଂଧ ଛପାଇବାର ଦରକାର ହେଲା ନାଇ । ତେଣୁ ସେଇ ପୁସ୍ତକ ପାଇଁ ଗୋଟିଏ ଚୋଟ ମୁଖବଂଧ ଲେଖିଦେଇଥିଲି । ବର୍ତ୍ତମାନ ଏଇ ମୁଖବଂଧଟି ଆବଶ୍ୟକମତେ ଯଥାକିଂଚିତ୍ ପରିବର୍ତ୍ତନ କରି ଏଠାରେ ଦିଆଗଲା । ଏଥିରେ ଭାରତୀୟ ଧର୍ମଧାରଣା, ଧର୍ମ ଅଭ୍ୟାସର ଓ ଆହରଣର ଗୋଟିଏ କଥଂଚିତ୍ ପୂର୍ଣ୍ଣ ଚିତ୍ର ପାଠକମାନେ ପାଇବେ ବୋଲି ଆଶା କରାଯାଏ । ଏତିକମାତ୍ର ଯେ କୌଣସି କୌଣସିଠାରେ ମୁଖବଂଧ ଲେଖାର ପୁନରାବୃତ୍ତି ହେଲାପରି ହୁଏତ ଲାଗିପାରେ । ମାତ୍ର ତଥାପି ପାଠକମାନଂକର ଏହା ଅଗ୍ରାହ୍ୟ ହେବ ନାଇ ।

# ପ୍ରଥମ ଅଧ୍ୟାୟ

## (୧) ମୌଳିକ ଜୈନଧର୍ମ ଓ ଉପାଖ୍ୟାନାଦିରେ ତତ୍‌ସଂବଧୀୟ ନିଦର୍ଶନମାନ

## ଜୈନଧର୍ମ ପୃଥିବୀରେ ପ୍ରଥମ ଅଧ୍ୟାତ୍ମଧର୍ମ :—

ଓଡ଼ିଶାରେ ବା ଭାରତରେ କାହିଁକି, ସମଗ୍ର ପୃଥିବୀରେ ଜୈନଧର୍ମଇ, ମନେ ହୁଏ, ପ୍ରାଚୀନତମ ଅଧ୍ୟାତ୍ମଧର୍ମ । ଅଧ୍ୟାତ୍ମଧର୍ମ କଣ ଏ କଥାଟି ବୁଝାଇବା ପୂର୍ବରୁ ଜୈନଧର୍ମର ପ୍ରାଚୀନତା ସଂବଧରେ କିଂଚିତ୍ ଧାରଣା କରିଯାଉ । ଜୈନମାନଂକ ଶାସ୍ତ୍ର ଓ ପୁରାଣ ଅନୁସାରେ ଜୈନଧର୍ମର ତୀର୍ଥଂକରମାନଂକ ସଂବଧରେ ଯେଉଁ ସବୁ କାଳ ପରିମାଣ ଦିଆଯାଇଛି, ତାହା ମାନବ କଳନାରେ ଅମାପ । ପ୍ରଥମ ତୀର୍ଥଂକର ଋଷଭଦେବଙ୍କ ପରେ ୧୫ ଲକ୍ଷ କୋଟି ସାଗର ବର୍ଷ ପରେ ୨ୟ ତୀର୍ଥଂକର ଅଜିତନାଥଂକ ଆବିର୍ଭାବ ହୋଇଥିଲା । ଏଇ ସଂଖ୍ୟାଟି ହେଉଛି ୧ ପରେ (୫।-୭-।-୧୫) ୨୭ଟି ଶୂନ ଦେଲେ ଯେତେ ଅଂକ ହେବ ସେତିକ ବର୍ଷ । ପ୍ରାୟ ଏଇପରି ଅନ୍ୟାନ୍ୟ ତୀର୍ଥଂକରମାନଂକ ଆବିର୍ଭାବ ଓ ରହଣି କାଳ ସେଥିରେ ପୁଣି ଜୈନଂକ ସୁଷମା, ଦୁଃଷମା ପ୍ରଭୃତି ଅମିଶ୍ର ଓ ମିଶ୍ର ଯୁଗମାନଂକର ଗଣନା, କାଳରେ ଅତି ବିଶାଳ । ହିଂଦୁଂକ ପୁରାଣରେ ମଧ୍ୟ ସେଭଳି ରୀତି ଦେଖାଯାଏ । ※ଏ ଦୁଇଟି ଗଣନା-ପଦ୍ଧତିର ମୂଳ ପୁଣି ବ୍ୟାବିଲନରୁ ବ୍ୟାପିଥିଲା ବୋଲି ପ୍ରାନ୍ତିକମାନେ ସ୍ଥିର କରନ୍ତି । ଏ ସବୁ × ପୌରାଣିକ କଳ୍ପନା ବା ପୌରାଣିକ ମିଥ୍ୟା । ତଥାପି ବିଶେଷଜ୍ଞ ଜୈନ ମନୀଷୀମନେ କହନ୍ତି, ଜୈନଧର୍ମଇ ପୃଥିବୀରେ ପ୍ରାଚୀନତମ ଧର୍ମ । କିଂତୁ ଯଥାର୍ଥରେ ଧର୍ମ ବୋଇଲେ ଯାହା ବୁଝାଯାଏ, ସେଥିରେ ଜୈନଧର୍ମକୁ ଆଦିଧର୍ମ ବୋଲି କୁହାଯିବ କି ନାଇ ସେ ସ୍ୱତଂତ୍ର କଥା । ଏହା ଆଦି ଅଧ୍ୟାତ୍ମଧର୍ମ ।

---

※ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ'—ପଂଡ଼ିତ ନୀଳକଂଠ ଦାସଂକ କୃତ, ପ୍ରଥମ ଭାଗ (ପ୍ରଥମ ସଂସ୍କରଣ) ୫୯ ପୃଷ୍ଠା ଦେଖ ।

× Indian Myths & Legends by D. A. Mackenzie—P. 103

## ଜୈନଧର୍ମର କାଳ—ମହାବୀର—

ପୃଥିବୀରେ ପ୍ରକୃ ପଂଡ଼ିତମାନଂକ ଧାରଣା ଥିଲା ଜୈନଧର୍ମଟି ମହାବୀରଂକ-ଠାରୁ । ପୁଣି ଏହା ବୌଦ୍ଧଧର୍ମର ଅର୍ବାଚୀନ ː। ସେ ସବୁ ଧାରଣା ଏବେ ଯାଇଛି । ଜର୍ମାନ ପ୍ରକୃପଂଡ଼ିତ ହରମାନ ଜାକୋବ ପ୍ରଥମେ ଦେଖାଇଦେଲେ ଜୈନଧର୍ମ ବୌଦ୍ଧ ଧର୍ମଠାରୁ ପ୍ରାଚୀନ । ନିଜେ ମହାବୀର ମଧ୍ୟ ଶାକ୍ୟମୁନି ବୁଦ୍ଧଂକଠାରୁ କେତେ ବର୍ଷ ବଡ଼ ଓ ଧର୍ମ ପ୍ରଚାରରେ ବର୍ଧମାନ ମହାବୀର ଆଗ ଓ ତା'ର କେତେକ ବର୍ଷ ପରେ ଶାକ୍ୟ ମୁନି ବୁଦ୍ଧ । ଶାକ୍ୟ ମୁନି ବୁଦ୍ଧଂକ ବେଳକୁ ପ୍ରତିଷ୍ଠିତ ଜୈନମାନେ ଥିଲେ । ତାଂକ ନାମ ହେଉଛି 'ନିଗ୍ରଂଥ' (ସଂସ୍କୃତରେ ନିଗ୍ରଂଥ) । ନିଗ୍ରଂଥ ବୋଇଲେ, ଯାହାର ଗ୍ରଂଥି ନାଇ । ତୃଷ୍ଣା ସବୁ ଗଂଠି ପଡ଼ିଲାପରି ପଡ଼ି ଯେପରିକି ଆତ୍ମାକୁ ବାଂଧି ରଖିଛି । ଏଇ ଗଂଠିଯାକ ଫିଟିଗଲେ, ଆତ୍ମା ମୁକ୍ତ ହୁଏ । ଏଇପରି ଯାହାର ଆତ୍ମା ମୁକ୍ତ ସେ ନିଗ୍ରଂଥ । ଏଇ ନିଗ୍ରଂଥ ହେଉଛି ସ୍ପଷ୍ଟ ଜୈନ ।

## ପାର୍ଶ୍ୱନାଥ—

ଜୈନଧର୍ମରେ ୨୪ ତୀର୍ଥଂକର । ବୌଦ୍ଧ ଧର୍ମରେ ମଧ୍ୟ ବୁଦ୍ଧଂକ ସଂଖ୍ୟା ସେଇପରି ୨୪ଟି । ବୌଦ୍ଧଧର୍ମର ଏଇ ସଂଖ୍ୟା ହୁଏତ କାଳ୍ପନିକ । ଖୁବ୍ ସଂଭବ ଏହା ଜୈନଂକ ଅନୁକରଣରେ । କିଂତୁ ଜୈନଂକ ତୀର୍ଥଂକର (ବା ଧର୍ମରେ ଘାଟ ଦେଖାଇ ପାରିକରି ନେଇଥିବା ବାଲା) ୨୪ଟି ହେଲେ ମଧ୍ୟ ସେ ସବୁ ପୁରା କାଳ୍ପନିକ ବୋଲି ମନେ ହେଉନାଇ । ଶାକ୍ୟମୁନି ବୁଦ୍ଧ, ୨୩ଶ ବୁଦ୍ଧ । ନିଶ୍ଚିତରେ ସେ ଐତିହାସିକ ପୁରୁଷ । ସେଇପରି ବର୍ଧମାନ ମହାବୀର ଜୈନଂକ ୨୪ଶ ତୀର୍ଥଂକର । ସେ ମଧ୍ୟ ଐତିହାସିକ ପୁରୁଷ । ହେଲେହେଁ ଜୈନଙ୍କର ୨୩ଶ ତୀର୍ଥଂକର ହେଉଛଂତି ପାର୍ଶ୍ୱନାଥ । ସେ କାଳ୍ପନିକ ପୁରୁଷ ନୁହଂତି । ଏହା ପ୍ରମାଣସିଦ୍ଧ । ଖ୍ରୀଷ୍ଟପୂର୍ବ ୯ମ ଶତାବ୍ଦୀର ପ୍ରଥମାର୍ଧରେ ସେ ଥିଲେ ଓ ପୂର୍ବ ତଥା ମଧ୍ୟଭାରତର ନାନା ସ୍ଥାନରେ ଧର୍ମପ୍ରଚାର କରୁଥିଲେ । କଳିଂଗଠାରୁ ଅଯୋଧ୍ୟା ପର୍ଯ୍ୟନ୍ତ ସେ ପ୍ରସିଦ୍ଧି ଲଭିଥିଲେ । କାହିଁକି ନା, ସେ ଖ୍ରୀଷ୍ଟପୂର୍ବ ୮୧୭ ଖ୍ରୀଷ୍ଟାବ୍ଦରେ ବନାରସ ବା କାଶୀରେ ଜନ୍ମ ହୋଇଥିଲେ ଓ ଲେଖା ଅଛି ସେ ଯୌବନରେ ଜଣେ ବୀର ଥିଲେ ଓ କଳିଂଗର 'ଯବନ' ରାଜାଂକୁ ପରାସ୍ତ କରିଥିଲେ । ତା ପରେ ଅଯୋଧ୍ୟାର ରାଜା ପ୍ରସେନଜିତଂକ କନ୍ୟା ପ୍ରଭାବତୀଂକୁ ବିଭା ହୋଇଥିଲେ । ସେତେବେଳକୁ ବୌଦ୍ଧଧର୍ମ ବୋଲି କିଛି ନ ଥିଲା । କିଂତୁ ଜୈନଧର୍ମ ଯେ ଥିଲା, ସେଥିରେ ସନ୍ଦେହ କରିବାର କିଛି ନାଇ । ସେତିକିବେଳକୁ ପୁଣି ଜୈନଧର୍ମ ନୂଆ ହୋଇ ବାହାରି ନ ଥିଲା । ଜୈନଧର୍ମ ଗୋଟିଏ ଆତ୍ମସାଧନାର ନାନା କ୍ରିୟା ଓ ଆଦର୍ଶ

ଯେଉଁ ବହୁପୂର୍ବରୁ ଥିଲା । ପାର୍ଶ୍ୱନାଥ ଜୈନଧର୍ମକୁ ନାନା ସାଧନା ଓ ଅଭ୍ୟାସ ଭିତରେ ଶୃଙ୍ଖଳିତ କରିବାର ଚେଷ୍ଟା କରିଥିଲେ । ତାହା କରିବାକୁ ଯାଇ ସେ (୧) ଅହିଂସା, (୨) ଅନନୃତ ବା ଅମିଥ୍ୟା, ଅର୍ଥାତ୍ ସତ୍ୟ, (୩) ଅଚୌର୍ଯ୍ୟ ଓ (୪) ଅପରିଗ୍ରହ । ଏଇ ଚାରୋଟି ନିଷ୍ଠା ଓ ସାଧନାର ବ୍ରତ ବାହାର କରିଥିଲେ ଏବଂ ସେଇ ବ୍ରତ ନାମରେ ହିଁ ଜୈନମତ ପ୍ରଚାରିତ ହେଉଥିଲା । ମହାବୀର ନିଜେ ପାର୍ଶ୍ୱନାଥଙ୍କ ମତର ଲୋକ ଥିଲେ । ସେ ସେଇ ମତକୁ ଅନୁଧାବନ କରି ହୁଏତ ଅମୈଥୁନ ବା ଇନ୍ଦ୍ରିୟ ଭୋଗରେ ସଂଯମ, ଏକ କଥାରେ କହିଲେ ବ୍ରହ୍ମଚର୍ଯ୍ୟ ବ୍ରତଟି ଏଇସବୁ ସାଧନ ବ୍ରତମାନଙ୍କ ସଂଗେ ଯୋଡ଼ି ବ୍ରତସଂଖ୍ୟା ୫ କରିଥିଲେ । ବୁଝିବାର ଅଛି, ବ୍ରହ୍ମଚର୍ଯ୍ୟର ସାଧନା ପାର୍ଶ୍ୱନାଥଙ୍କ ବେଳକୁ ନ ଥିଲା, ନୁହେଁ । ଏହା ଜୈନଧର୍ମରେ ପୂର୍ବାପର ଥିଲା । କିନ୍ତୁ ପାର୍ଶ୍ୱନାଥଙ୍କ ମତରେ ଅନ୍ୟ ଚାରୋଟି ସାଧନାବ୍ରତ ବା ସାଧନାମାର୍ଗରେ ତାହା ଅଂଗୀଭୂତ ଥିଲା । ବିଶେଷରେ ପାର୍ଶ୍ୱନାଥଙ୍କ ମତରେ ସ୍ପଷ୍ଟ ଅଛି, ଅଚୌର୍ଯ୍ୟ ଓ ଅପରିଗ୍ରହ ଏ ଦୁଇଟି ଭିତରେ ବ୍ରହ୍ମଚର୍ଯ୍ୟର ନିଷ୍ଠା ଅଂଗୀଭୂତ ରହିଛି । ଜାଣୁ ମହାବୀରଙ୍କ ବେଳକୁ ଏଇ ଜୈନଧର୍ମର ସାଧନାଧି ଭିତରେ ବହୁ ଅପଗ୍ରହ ପଶିଯାଇଥିଲା । ତେଣୁ ମହାବୀର ଅପରିଗ୍ରହ ବ୍ରତଟି ଦୁଇ ଭାଗରେ ବିଭକ୍ତ କରିଥିଲେ ମାତ୍ର । ତହିଁରୁ ଗୋଟିଏ ଭାଗ ହେଉଛି, ନାରୀର ଅପରିଗ୍ରହ । ଅନ୍ୟଟି ହେଉଛି, ସମ୍ପତ୍ତିର ଅପରିଗ୍ରହ । ନାରୀର ଅପରିଗ୍ରହଟି ଠିକ୍ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ନ ହୋଇ ପାରେ, କିନ୍ତୁ ଏଇ କାମ ସଂଯମ ସମସ୍ତ କାମନା ସଂଯମ ବା ତୃଷ୍ଣାତ୍ୟାଗର ମୂଳଭିତ୍ତି । ପୁଣି କେହି କେହି ଜୈନବିଶ୍ୱାସ କରନ୍ତି ଯେ ପାର୍ଶ୍ୱନାଥଙ୍କ ଚାରୋଟି ବ୍ରତ ହେଉଛି—(୧) ଅହିଂସା, (୨) ଅମିଥ୍ୟା, (୩) ଅଚୌର୍ଯ୍ୟ ଓ (୪) ସଂଯମ । ମହାବୀର ସେଥିରେ ଯୋଗ କଲେ ସଂପୂର୍ଣ୍ଣ ଅପରିଗ୍ରହ । ଏଇ ନିରଙ୍କୁଶ ଅପରିଗ୍ରହ ବ୍ରତ ହେତୁରୁ ସେମାନେ କହନ୍ତି, ମହାବୀର ପରିଧେୟ ପର୍ଯ୍ୟନ୍ତ ମଧ୍ୟ ପରିତ୍ୟାଗ କରିଥିଲେ । * ଏ ସବୁରୁ ବୁଝା ପଡ଼ୁଛି, ଜୈନଧର୍ମ ସେତେବେଳକୁ ମଧ୍ୟ ନୂଆ ନ ଥିଲା । ବହୁକାଳ ପୂର୍ବରୁ ଏହା ସମାଜରେ ପ୍ରଚଳିତ ଓ ପ୍ରତିଷ୍ଠିତ ଥିଲା । ଜୀବ, ଜୀବରୁ ଆତ୍ମା, ଆତ୍ମାରୁ ପୁରୁଷ ପ୍ରଭୃତି ତତ୍ତ୍ୱ ଦାର୍ଶନିକ ଭାବରେ ସେତେବେଳକୁ ପ୍ରକାଶ-ପାଇ ସାରିଥିଲା । ସେ କଥା କୁହାଯାଉଛି ।

ଅଉରି ଗୋଟିଏ କଥା ପାର୍ଶ୍ୱନାଥଙ୍କ ସମ୍ବନ୍ଧରେ ଉଲ୍ଲେଖଯୋଗ୍ୟ । ପାର୍ଶ୍ୱନାଥଙ୍କ ଲାଂଛନ ହେଉଛି ସାପ । ପାର୍ଶ୍ୱନାଥଙ୍କ ଜୀବନକାଳରେ ସାପକୁ ସାହାଯ୍ୟ କରିବା ଓ ବଂଚାଇବା ଯେଉଁ ବହୁତ ଆଖ୍ୟାନ ମଧ୍ୟ ରହିଛି । ମହେଞ୍ଜୋ-ଦାରୋର ଅବଶେଷରୁ ସାପ ଫଣାତଳେ ଯୋଗରେ ବସିଥିବା ଜଣେ ଅଧିକ୍ଷଣ

---

* Mrs. Sinclair Stevensons 'The Heart of Jainism' P. 49.

ପୁରୁଷଂକର ରୂପ ଥିବାର ଖୋଦିତ ମୁଦ୍ରା ମିଳୁଚ । ବୁଝାଯାଉଚ, ସେ ଜଣେ ଜୈନଯୋଗୀ ଓ ବୋଧହୁଏ ସିଦ୍ଧ ପୁରୁଷ । ସାପ ଫଣା ତଳେ ବସି ଯୋଗସିଦ୍ଧ ହେବାର ପ୍ରଥା ଜୈନ ଧର୍ମରେ ଥିବାର ପରଂପର୍ ପ୍ରସିଦ୍ଧି ସୁବିଦିତ । ସେଇ ଅନୁକ୍ରମେ ସିଂହଂକର କଥା ମଧ୍ୟ ଅଛୁ, ତପସ୍ୱୀ ବା ମୁନିମାନଂକ ସାହଚର୍ଯରେ ସିଂହ, ସାପ ପ୍ରଭୃତି ହିଂସ୍ର ଜଂତୁମାନେ ଶାଂତ ଭାବରେ ରହିଂତି । ତୀର୍ଥଂକର ପାର୍ଶ୍ୱନାଥଂକ ଉପରେ ଏଇ ପ୍ରାଚୀନ ପରଂପର୍ାର ଛାୟା ପଡ଼ିଥିଲି ବୋଲି ମନେହୁଏ । ଏଇ ସମ୍ବନ୍ଧରେ, ବେଦରେ ଥିବା 'କେଶୀ' ଓ ଶିବଂକ କଥା ମଧ୍ୟ ଏଠାରେ ସ୍ମରଣୀୟ ।

## ଋଷଭନାଥ—

ଋଷଭନାଥ ହେଉଚଂତି ଜୈନଧର୍ମର ଆଦି ତୀର୍ଥଂକର । ତାଂକଠାରୁ ଜୈନଧର୍ମର ଆରଂଭ ବୋଲି କୁହାଯାଏ । ସେ କିଏ ? ଋଷଭ ବୋଇଲେ ସୂର୍ଯ୍ୟ । ଏହାର ବ୍ୟାବିଲୋନୀୟ ବା ସୁମେରୀୟ ପରଂପର୍ା ଅଛି । Prof. Sayce ନିଜର Hibbert Lectures (1878) ରେ ବୁଝାଇଚଂତି । ସେ ପ୍ରାଚୀନ ବ୍ୟାବିଲୋନୀୟ ଲେଖାମାନ ପଢ଼ି ଏହା କହିଂତି । ବ୍ୟାବିଲୋନୀୟ ବା ସୁମେରୀୟମାନେ ବସଂତ ଆଦ୍ୟରେ ଚାଷ ଆରଂଭ କରୁଥିଲେ । ତାହାଇ ହେଉଚ ବାସଂତ ବିଷୁବର କାଳ । ସୂର୍ଯ୍ୟ ସେଇ ସମଦିବାରାତ୍ରିର କାଳ ବା କ୍ରାଂତି ଓ ବିଷୁବଚ୍ଛେଦର ସ୍ଥାନକୁ ଆସିଲେ, ଏଇ ବସଂତ କାଳ ବା ହଳ କରିବାର କାଳ ଆରଂଭ ହେଉଥିଲି । ସେମାନେ ବୃଷଭରେ ହଳ କରୁଥିଲେ । ସୂର୍ଯ୍ୟ ସେଇ ସ୍ଥାନକୁ ଆସିଲେ, ସେଠାଲୋକେ କହୁଥିଲେ, "ସୂର୍ଯ୍ୟ ବୃଷଭକୁ ଆସିଲେ", ଅର୍ଥାତ୍, 'ବସଂତ ଆରଂଭ ହେଲି । ବୃଷଭ କାଢ଼ି ହଳକର' । ଆମର ମେଷ, ବୃଷାଦି ରାଶି ନାମର ମୂଳ ଏଇଠାରେ । ଏଇ ରାଶିନାମ କ୍ରମେ ବୃଷଭରୁ ମେଷ ପର୍ଯ୍ୟଂତ ୧୨ଟିରେ ରାଶିଚକ୍ରର କଳ୍ପନା ସେ କାଳେ ସୁମେରରେ ତିଆରି ହୋଇଥିଲି । ଆମ ଭିତରେ ଅନେକ ଫଳିତ ଜ୍ୟୋତିଷ ଆକାଶରେ ତାରାମାନଂକୁ ମନେ ମନେ ଯୋଡ଼ି ସେଥିରେ ମେଂଢ଼ା, ଷଂଢ଼, କଂକଡ଼ା, ଘୋଡ଼ା, ସିଂହ, କନ୍ୟା, ତକଡ଼ି, ବିଛା, ଧନୁ, କଂୁଭୀର, ମାଠିଆ, ମାଛ ପ୍ରଭୃତି ଦେଖଂତି ଓ ଦେଖାଉଥାଂତି । ଖ୍ରୀଷ୍ଟ ୧୭ଶ ଶତାବ୍ଦୀରେ ଗଣକ କାଳିଦାସ ଲେଖିଥିବା 'କଟପାୟୀ' ମଧ୍ୟ ଏଥିରେ ଯୋଗଦିଏ । କଟପାୟୀ ପଢ଼ି ମଧ୍ୟ ଏଥିରେ କେତେ କଥା ମିଶାଉଥାଂତି । କିଂତୁ ଯଥାର୍ଥ ଅନୁସନ୍ଧାନରେ ଜଣାଯାଏ, ଏ ସବୁ ତା' ନୁହେ । ମନୁଷ୍ୟର ନାନା ଅନୁଷ୍ଠାନ ପ୍ରଭୃତି ଯେକି ଏଥିରୁ ଅନେକ ନକ୍ଷତ୍ର—ବିଶେଷରେ ରାଶିଚକ୍ରର ନକ୍ଷତ୍ରମାନଂକର ନାମକରଣ ହୋଇଚ । ସେଇଥିରୁ ଋଷଭ କଥାଟି ଉପରେ କୁହାଗଲି । ଏଇପରି ବ୍ୟବହାର କରୁ କରୁ ସୂର୍ଯ୍ୟର ନାମ ହୋଇଥିଲି ଋଷଭ । ଏଇ ଋଷଭ ନାମ ସଂଗେ ରାଶିଚକ୍ର ତିଆରି ହେବା ସମ୍ପର୍କ ରହିଚ । (ସାନ) ବ୍ରାଉନସାହେବ ସୂର୍ଯ୍ୟର କ୍ରାଂତି ଉପର ପଶ୍ଚିମଗତି ହିସାବ

କଣ କହନ୍ତି, ଏଇ ରାଶିଚକ୍ରର ଚିଆର ହେବା କାଳ ହେଉଛି ଖ୍ରୀ° ପୂ: ୨୦୮୪ । *
ଅର୍ଥାତ୍ ସେତେବେଳେ ବୃଷରାଶିର ଯେଉଁ ସ୍ଥାନରେ ସୂର୍ଯ୍ୟ ଥିଲେ, ସେଠାରୁ କ୍ରାନ୍ତି ବୃତ୍ତରେ ସୂର୍ଯ୍ୟ ଗତି ଗଗନାରେ ଦେଖାଯାଉଛି, ଏହା ଆଜକୁ (୨୦୮୪+୧୯୬୨) ୪୦୪୬ ବର୍ଷ ତଳର କଥା । ସୂର୍ଯ୍ୟଙ୍କର ଋଷଭ ନାମ ହେବା ଖୁବ୍ ସମ୍ଭବ ଏହା ପୂର୍ବରୁ ହୋଇଥିବ । ତେଣୁ ଏଇ ସୂର୍ଯ୍ୟଙ୍କୁ ଋଷଭ ନାମରେ ନାମିତ କରିବାର କାଳ କୌଣସି ପ୍ରକାରେ ଆଜକୁ ୪୦୪୬ ବର୍ଷରୁ ଅର୍ବାଚୀନ ନୁହେ । ଅବଶ୍ୟ ମନେହୁଏ, ଏହାର ବହୁପୂର୍ବକାଳରୁ ସୂର୍ଯ୍ୟଙ୍କୁ ଲୋକେ ଜଗତର ଆଦିପୁରୁଷ ବୋଲି ପୂଜା କରୁଥିବେ । ପୁଣି ପରଂପରାରେ ଅଛି, ସୂର୍ଯ୍ୟ ପ୍ରଥମେ ନିଜ ପୁତ୍ର ମନୁ ଓ ମନୁଙ୍କ ପୁତ୍ର ଇକ୍ଷ୍ୱାକୁମାନଙ୍କୁ, ଅର୍ଥାତ୍, କ୍ଷତ୍ରିୟ ବା ରାଜାମାନଙ୍କୁ ଧର୍ମ ଦେଇଥିବା କଥା ଗୀତାରେ ** କୁହାଯାଇଛି । ଏହାଇ ମଧ୍ୟ ମହାଭାରତର ନାରାୟଣୀୟ ଉପାଖ୍ୟାନରେ ଅଛି । ×

## ଧର୍ମର ଆଦିପୁରୁଷ ସୂର୍ଯ୍ୟ-

ପୃଥିବୀର ସବୁ ପ୍ରାଚୀନ ଦେଶରେ ବିକଶିତ ସବୁଧର୍ମର ଆଦି ପୁରୁଷ ହେଉଛନ୍ତି ସୂର୍ଯ୍ୟ । ଏଇ ସୂର୍ଯ୍ୟ ଧର୍ମ ଦେବା କଥାଟି ପୁଣି ଭାରତୀୟ ନୁହେଁ । ଏହା ବ୍ୟାବିଲନୀୟ କଥା । ସେଠାରେ ପଥର ଖଂବର ମୂର୍ତ୍ତି ବାହାରୁଛି, ଯେଉଁଥିରେ ହେମୁରାବି ( ଆଜକୁ ପ୍ରାୟ ୩ ହଜାର ଆଠଶହ ବର୍ଷ ତଳର ବ୍ୟାବିଲନ ସମ୍ରାଟ୍ ) ସ୍ୱୟଂ ସୂର୍ଯ୍ୟ ଦେବଙ୍କଠାରୁ ବିଧାନ ସଂହିତା (Code of Law) ଗ୍ରହଣ କରୁଛନ୍ତି । ସେ ବିଧାନସବୁରୁ ଯାହାମିଳୁଛି, ତାହା ଦେଖିଲେ ଏକା ଏବେ ବିସ୍ମିତ ହେବାକୁ ହୁଏ । ତାହା ଅତି ଉନ୍ନତ ଓ ଶୃଙ୍ଖଳାବଦ୍ଧ ସମାଜର ରୀତିନୀତି ଥିବାର ସ୍ପଷ୍ଟ ଦେଖାଯାଉଛି । ଏହାକୁଇ ହେମୁରାବି—ସଂହିତା ବୋଲି କୁହାଯାଏ ।

---

* Primirire Constellations. Vol. II PP. 147 etc.
** ଗୀତା ୪ର୍ଥ ଅଧ୍ୟାୟ ୧,୨ ଶ୍ଳୋକ ।
× ମହାଭାରତ (ବଂଗବାସୀ ସଂସ୍କରଣ) ଅଧ୍ୟାୟ ୩୪୮ ଶ୍ଳୋକ ୫୨-୫୩ ।

ଏଇଠାରେ ଲକ୍ଷ୍ୟ କରିବାର ଅଛି ଜୈନଙ୍କର ୨୪ଟି ତୀର୍ଥଙ୍କର ଅର୍ଥାତ୍ ୨୦ଶ, ମୁନିସୁବ୍ରତ ଓ ୨୨ଶ ନେମୀନାଥଙ୍କ ଛଡ଼ା ଆଉ ୨୨ଟି ଯାକ ତୀର୍ଥଙ୍କର ସମସ୍ତେ କ୍ଷତ୍ରିୟ ଓ ଏଇ ଇକ୍ଷ୍ୱାକୁ ବଂଶୀୟ ବା ସୂର୍ଯ୍ୟବଂଶୀୟ । ଏମାନେ ଭାରି ଗୋରା; ମାତ୍ର ମୁନିସୁବ୍ରତ ଓ ନେମୀନାଥ ହେଉଛନ୍ତି କଳା । ସେମାନେ ହରିବଂଶୀୟ ବା କୃଷ୍ଣଙ୍କ ବଂଶର ।

Mrs. Sinclair Stevensons 'The Heart of Jainism' PP. 57 & 58

କୁହାଯାଇଛି, ଏଇ ସୂର୍ଯ୍ୟ ବହୁପୂର୍ବରୁ ହୋଇଥିଲେ ଋଷଭ । ଏଇ ଋଷଭଂଙ୍କ ଅନୁକ୍ରମେ ଜୈନମାନଂଙ୍କ ଆଦ୍ୟତୀର୍ଥଂକର ହେଉଛଂନ୍ତି ଋଷଭନାଥ । ବସ୍ତୁତଃ ସେ ହେଉଛଂନ୍ତି ସୂର୍ଯ୍ୟଦେବ । କେବଳ ଆମ ଗୀତା ବା ନାରାୟଣୀୟ ଧର୍ମରେ ନୁହେ । ଆମ ଭାରତର ଧର୍ମର ମୂଳ ମଧ୍ୟ ହେଉଛଂନ୍ତି ସୂର୍ଯ୍ୟ, ଅର୍ଥାତ୍, ବିବସ୍ୱାନ୍ । ଯେଉଁ ବିବସ୍ୱାନଂଙ୍କୁ ଗୀତାରେ କୃଷ୍ଣ ଓ ନାରାୟଣୀୟ ଧର୍ମରେ ନାରାୟଣ ଧର୍ମୋପଦେଶ ଦେଇଥିଲେ । ସେ ତାହା ମନୁଂଙ୍କୁ ଦେଇ ସେଇବାଟେ ନିଜର ଇକ୍ଷ୍ୱାକୁବଂଶୀୟମାନଂଙ୍କ ସୂତ୍ରରେ ପୃଥିବୀରେ ପ୍ରଚାର କରିଥିଲେ । ଏଇ ସୂର୍ଯ୍ୟ ମଧ୍ୟ ସେଆଡ଼େ ସୁମେର ବ୍ୟାବିଲନ୍ ପ୍ରଭୃତି ଦେଶରେ ନାନା ନାମରେ ପ୍ରାୟ ସମସ୍ତ ଧର୍ମ ମୂଳ ଥିଲେ । ବ୍ୟାବିଲନ୍ ଛଡ଼ା ଅସୁର, କ୍ୟାପାଡ଼ୋସିଆ ପ୍ରଭୃତିର ଶ୍ରେଷ୍ଠ ଦେବମାନଂଙ୍କର ଏଇ ସୂର୍ଯ୍ୟ ଲାଂଛନ ଥିଲା ।

## ସୂର୍ଯ୍ୟହିଁ ଜଗତରେ ଜୀବନ—

ପରେ ଜୈନ ସଭ୍ୟତାର ପରଧର୍ମକୁ ପ୍ରାଭାବିକ ସଂକେତ ଓ ଆଦାନ ପ୍ରଦାନ ପ୍ରସଙ୍ଗରେ କୁହାଯିବ, ଏଇ ପ୍ରଭାବ ଫଳରେ ବ୍ୟାବିଲନ୍, ଅସୁରଦେଶ ଓ ମିଶର ପ୍ରଭୃତି ରାଜ୍ୟରେ ପ୍ରାୟ ଆଜକୁ ୩୪୦୦ ବର୍ଷ ତଳେ ସେଠାରେ ଥିବା ଲୋକେ ବିଶେଷତଃ ମିଟ୍ଟାନୀ ରାଜ୍ୟ ଓ ମିଶର ଲୋକେ ଏଇ ଆଦ୍ୟଦେବ ସୂର୍ଯ୍ୟଂଙ୍କୁ ଜଗତର ଜୀବନ ବା ଚରାଚରର ଆତ୍ମା ବୋଲି କହି ଏଇ ଆତ୍ମା (ଅଟେନ-ମିଶରୀୟ) ଉପାସନାକୁ ପୃଥିବୀରେ ଏକମାତ୍ର ସ୍ୱଧର୍ମ ବୋଲି ପ୍ରଚାର କରୁଥିଲେ । ସେଥିପାଇଁ ଋକ୍‌ବେଦରେ ମଧ୍ୟ ଅଛି, 'ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ' ※ ଅର୍ଥାତ ସୂର୍ଯ୍ୟ ହେଉଛି ଚରାଚର ଜଗତର ଆତ୍ମା । ଏଇ ସୂର୍ଯ୍ୟ ବା ଜଗତର ସୂର୍ଯ୍ୟ ଆତ୍ମା ହେଉଛି ଜୈନଂଙ୍କ ଆଦ୍ୟ ତୀର୍ଥଂକର ଋଷଭନାଥ । ହୋଇପାରେ, ସୂର୍ଯ୍ୟ ଋଷଭ ହେବାର ଅନେକ ବହୁକାଳ ପୂର୍ବରୁ ଚରାଚରକୁ ଶୃଂଖଳାରେ ପକାଇ ଜଗତରେ ପ୍ରତିଷ୍ଠିତ ଥିବା ସ୍ୱପ୍ରକାଶ ସୂର୍ଯ୍ୟ ଅନ୍ୟ କାରଣରୁ ମଧ୍ୟ ଜଗତର ଜୀବନ ଥିଲେ । କିନ୍ତୁ ଜଗତର ଆତ୍ମା ବୋଲି କହିବାରେ ଜୈନଧର୍ମର ପ୍ରଭାବ ଓ ପ୍ରତିଷ୍ଠା ଅଛି । ଏହାଇ କହିବାର ଅଭିପ୍ରାୟ ।

## ଧର୍ମଚକ୍ର—

ଧର୍ମଚକ୍ର କଥାଟି ଜୈନଧର୍ମରେ ଗୋଟିଏ ଅବିଚ୍ଛେଦ୍ୟ କଥା । ସ୍ୱୟଂ ବୁଦ୍ଧ ମଧ୍ୟ ଜିନ ହୋଇସାରି ପ୍ରଥମେ 'ଧମ୍ମଚକ୍କ ପବତ୍ତନ' ସୂତ୍ର (ଧର୍ମଚକ୍ର ପ୍ରବର୍ତ୍ତନସୂତ୍ର)ରେ ପ୍ରଚାର ଆରମ୍ଭ କରିଥିଲେ । ଏହି ଧର୍ମ ଚକ୍ରଟି ମନେହୁଏ ସୂର୍ଯ୍ୟ ଚକ୍ର । ଋଷଭନାଥଂଙ୍କ ଲାଞ୍ଛନ ହେଉଛି ଋଷଭ ବା ବୃଷ । ବୃଷ ବୋଇଲେ ହେଉଛି ସୂର୍ଯ୍ୟ । କାରଣ

※ ଋକ୍‌ବେଦ ୧-୧୧୫-୧ ।

ପ୍ରଥମେ ବ୍ୟାବିଲୋନୀୟମାନେ ସମ-ଦିବାରାତ୍ରି ଦେଖିଲାବେଳେ ସୂର୍ଯ୍ୟ ଥିଲେ ବୃଷଭରେ । ତେଣୁ ଏଇ ବୃଷଭ ବା ସୂର୍ଯ୍ୟ ହେଉଛନ୍ତି ଋଷଭ ନାଥଙ୍କ ନାମ ତଥା ଲାଞ୍ଛନ । ଯେଉଁଠାରେ ସୂର୍ଯ୍ୟଦେବଙ୍କର ପୂଜା ବା ଉପାସନା ଥିଲା, ପ୍ରାୟ ସେସବୁଠାରେ ଏଇ ଚକ୍ରଲାଂଛନ ଦିଆଯାଉଥିଲା । ହେମୁରାବି ଯେଉଁ ସୂର୍ଯ୍ୟଙ୍କଠାରୁ ସ୍ତମ୍ଭରେ ସଂହିତା ଗ୍ରହଣ କରୁଛନ୍ତି, ସେ ସୂର୍ଯ୍ୟଙ୍କର ଏଇ ଲାଂଛନ ମଧ୍ୟ ଖୋଦିତ ହୋଇ ରହିଛି । ହେମୁରାବିଙ୍କର ପ୍ରାୟ ୫୦୦ ବା ୬୦୦ ବର୍ଷ ପୂର୍ବରୁ ଜଣେ ସୁମେରର ସମ୍ରାଟ୍ ଥିଲେ ନାରାମ-ସିନ । ସେ ଗୋଟିଏ ପ୍ରାକୃତିକ ଉଚ୍ଚ ତ୍ରିକୋଣ ପ୍ରସ୍ତର ସମାନ କରି ଗୁଂଛି ତହିଁରେ ନିଜର ଗୋଟିଏ ବିଜୟର ଅଭିଯାନ ଖୋଳିଦେଇ ଯାଇଛନ୍ତି । ସେ ଚିତ୍ରରେ ପାହାଡ଼ର ବଣ ଅଛି । ସେଥିରେ ନାରାମ-ସିନ ନିଜେ ଦୃଢ଼ଭାବରେ ସୈନ୍ୟ ଘେନି ଶତ୍ରୁକୁ ଆକ୍ରମଣ କରି ତାଙ୍କ ନିଧନରେ ଲାଗିଛନ୍ତି । ସେଇ ସଂଗ୍ରାମ ଭୂମିରେ ଯେପରିକି ଉପାସ୍ୟଙ୍କର ଗୋଟିଏ ମନ୍ଦିରର ଆକୃତି ଖୋଳିଛନ୍ତି ଓ ସେଇ ମନ୍ଦିର ଉପରେ ସ୍ପଷ୍ଟ ଚକ୍ର ଲାଂଛନମାନ ଖୋଳାହୋଇ ରହିଛି । ଗୋଟିଏ ଚକ୍ର ଚିହ୍ନରେ ବାରଟି ଅର ସ୍ପଷ୍ଟ ଗଣିହେଉଛି । ଏ ବାର ଅର ବିଶିଷ୍ଟଚକ୍ର ସେ କାଳ ସୂର୍ଯ୍ୟ ସଙ୍କେତ ଛଡ଼ା ଅନ୍ୟ କିଛି ବୋଲି ମନେ ହେଉନାଇ ।

ଅନ୍ୟତ୍ର ଅସୁର ପ୍ରଭୃତି ଅନ୍ୟାନ୍ୟ ସୂର୍ଯ୍ୟ ପ୍ରତୀକମାନ ଏଇ ଲାଂଛନରେ ଲାଂଛିତ । ଏହାର ମୂଳ ହେଉଛି ଖୁବ୍ ସମ୍ଭବ ରାଶିଚକ୍ର । ରାଶିଚକ୍ରର ଆବିଷ୍କାର ପୂର୍ବରୁ ମଧ୍ୟ ଏହା ହୋଇପାରେ ମାସଚକ୍ର ବା ଋତୁଚକ୍ର । ୧୨ଶ ରାଶିରେ ଆକାଶର ସୂର୍ଯ୍ୟଚକ୍ର କଥାଟି ମୂଳତଃ ସୁମେରୀୟ ବା ବ୍ୟାବିଲୋନୀୟ । ଏଇ ଋତୁଚକ୍ର ମଧ୍ୟ ରାଶିଚକ୍ରର ସ୍ପଷ୍ଟ ଆବିଷ୍କ୍ରିୟା ପୂର୍ବରୁ ୧୨ ମାସଚକ୍ର ରୂପରେ ପ୍ରକାଶ ପାଇଥିବା ବିଚିତ୍ର ନୁହେ । ※

## ଜୈନଙ୍କ ଯୁଗଚକ୍ର—

ଏଇ ସମ୍ପର୍କରେ ଜୈନମାନଙ୍କର ପୁରାଣର କାଳ ଗଣନା ବା ଯୁଗ ଗଣନା କଥାଟି ମଧ୍ୟ ମନେପଡ଼େ । ଠିକ ମାସଚକ୍ର ବା ରାଶିଚକ୍ରର ଉତ୍ତରାୟଣ ଛ' ମାସ ଓ ଦକ୍ଷିଣାୟନ ଛ' ମାସ ପରି ସେମାନଙ୍କ ଯୁଗ ଗଣନାରେ ଉପସର୍ପିଣୀରେ ୬ଟି

---

※ ଋକ୍‌ବେଦ ୧-୧୬୪ ।

ଏହି ସୂର୍ଯ୍ୟଚକ୍ରରେ ବାରଟି ଅରରେ ୭୨୦ ପୁତ୍ର ଥିବାର ସଙ୍କେତ ଅଛି । ଏଥିରୁ ବର୍ଷ, ବାରମାସ ଓ ତିନିଶ ଷାଠିଏ ଦିନ ଓ ତିନିଶ ଷାଠିଏ ରାତିର ସଙ୍କେତ ଅଛି ବୋଲି ସ୍ପଷ୍ଟ ଅନୁମାନ ହୁଏ । କିନ୍ତୁ ଏହା ବ୍ୟାବିଲନ ବା ସୁମେର ଦେଶରୁ ଆଗତ ବୋଲି ପ୍ରତ୍ନତାତ୍ତ୍ୱିକମାନେ ଅନୁମାନ କରନ୍ତି ।

ଯୁଗ ଓ ତା'ପରେ ଅପସର୍ପିଣୀରେ ୬ଟି ଯୁଗ, ଏଇ ୧୨ଟି ଯାକର ଅରବିଶିଷ୍ଟ ଚକ୍ରସଙ୍ଗେ ତୁଳନା ବଡ଼ ସ୍ପଷ୍ଟ । ଛଅଟି ଉପସର୍ପିଣୀ ଯୁଗ ହେଉଛି—(୧) ଦୁଷମା ଦୁଷମ, (୨) ଦୁଷମା, (୩) ଦୁଷମା ସୁଷମା, (୪) ସୁଷମା ଦୁଷମା, (୫) ସୁଷମା (୬) ସୁଷମା ସୁଷମା । ସେଇପରି ଅପସର୍ପିଣୀର ୬ଟି ଯୁଗ—(୧) ସୁଷମ ସୁଷମା, (୨) ସୁଷମା (୩) ସୁଷମା ଦୁଷମା, (୪) ଦୁଷମା ସୁଷମା, (୫) ଦୁଷମା, (୬) ଦୁଷମା ଦୁଷମା । ଏଇ ୧୨ଟି ଯୁଗ ପ୍ରତ୍ୟେକେ ଜୈନ ପୁରାଣ ଅନୁସାରେ କାଳରେ ଯେତେ ମହାଦୀର୍ଘ ହୁଅଂତୁ ନା କାହିଁକି, ଏଥିରେ ମାସଚକ୍ର ତଥା ରାଶିଚକ୍ରର ମୌଳିକ ଧାରଣା ରହିଛି । ଏଇ ଚକ୍ରରେ ୧୨ଟି ଅର ମଧ୍ଯ ସ୍ପଷ୍ଟ । ଏଇପରି ଏ ଚକ୍ରର ସୂର୍ଯ୍ୟ ସଙ୍ଗେ ନିତ୍ୟ ସମ୍ପର୍କ । ଏଇଥିରୁ ପରେ ବିଷ୍ଣୁଙ୍କ ସୁଦର୍ଶନ ଚକ୍ର ଓ ବିଷ୍ଣୁମଂଦିର ଉପରର ଚକ୍ରଲାଂଛନ ପ୍ରଭୃତି କାଳକ୍ରମେ ପ୍ରକାଶ ପାଇଥିଲା ବୋଲି ମନେହୁଏ । ଏସବୁ ଜୈନଧର୍ମର ପ୍ରଭାବ । ଏଇ ଋଷଭ ଓ ଧର୍ମଚକ୍ର କଥା ଦିଓଟିରୁ ଜୈନଧର୍ମର ଐତିହାସିକ ପ୍ରାଚୀନତା ମଧ୍ଯ ବେଶ୍ ଜଣାପଡ଼ୁଛି ।

## ଅଧ୍ୟାତ୍ମ ଧର୍ମ କଣ ?—

ଏବେ ଦେଖାଯାଉ, ଅଧ୍ୟାତ୍ମଧର୍ମ ବୋଲି କହିଲେ କଣ ବୁଝାଯାଏ । ଜଗତରେ ଧର୍ମ ମୋଟାମୋଟି ଦୁଇ ପ୍ରକାରର । ତହିଁରୁ ଗୋଟିଏ ହେଉଛି, ବାହାରୁ ନିର୍ଦ୍ଦେଶିତ ବା ଭୌତିକ । ଆଉ ଗୋଟିଏ ହେଉଛି, ଆଧ୍ୟାତ୍ମିକ ବା ଆତ୍ମିକ । ଏଇ ଆତ୍ମିକ ଧର୍ମକୁଇ ମୁଁ କହୁଛି, ଅଧ୍ୟାତ୍ମଧର୍ମ । ନିର୍ଦ୍ଦେଶ ମନୁଷ୍ୟର ଦରକାର, ସେ ନିର୍ଦ୍ଦେଶ ବାହାରୁ ଦେବତା ବା ଈଶ୍ୱର ଦିଅଂତି । ମନୁଷ୍ୟ ସେଇ ଦେବତା ବା ଈଶ୍ୱରଂକ ଭୟରେ ନିର୍ଦ୍ଦେଶିତ ହେଲାପରି କାମ କରେ । ଏହାକୁଇ ମଧ୍ଯ ଭକ୍ତି ଧର୍ମବୋଲି କହଂତି । ଭକ୍ତିଧର୍ମ ଅବଶ୍ୟ ନାନା ପ୍ରକାରର ଅଛି । ଅନ୍ୟ ଧର୍ମଟି ହେଉଛି ଅଧ୍ୟାତ୍ମ ଧର୍ମ । ଏଥିରେ ମନୁଷ୍ୟ ନିର୍ଦ୍ଦେଶର ସ୍ଥାନକୁ ବାହାରେ ନ ଦେଖି ନିଜ ଭିତରେ ଦେଖେ ।

## ଜୀବ, ଆତ୍ମା ଓ ପୁରୁଷ, ତହୁଁ ଭାରତୀୟ ଦର୍ଶନ—

ଏଇ ଅଧ୍ୟାତ୍ମସେବୀ ଜୈନଦାର୍ଶନିକମାନେ ମୂଳରୁ ବୁଝିଥିଲେ ଦୃଶ୍ୟମାନ ବା ଉପଲଭ୍ୟମାନ ଜଗତ୍ ସବୁ ନୁହେ । ଏଇ ଜଗତରେ ଜୀବ ତଥା ଅଜୀବ ଏଇ ଦୁଇ ପ୍ରକାର ବସ୍ତୁ ଅଛି । ଏଇ ଦୁହେଁ ଏକାଠିଥିବାରୁ ଜାଗତିକ ସମସ୍ତ କ୍ରିୟା ସଂଭବ ହେଉଛି । ଅଜୀବ ସଂପର୍କରେ ଥିବାରୁ ଜୀବ ବାଂଧି ହେଉଛି । ଏଇ ଅଜୀବ ସଂପର୍କରୁହିଁ ସବୁ ଭୋଗକାମନା ବା ତୃଷ୍ଣା । ସେଥିରୁହିଁ ଜାଗତିକ କର୍ମ ବାହାରେ । ଏଇ ଜୀବାଜୀବ ସମ୍ପର୍କଇ ଜୈନଦର୍ଶନର ଭିତ୍ତି । ପୃଥିବୀରେ ପୁଣି ମୌଳିକଦର୍ଶନ ବୋଲି ଯାହା ଅଛି, ବା ପୁଣ୍ଣ ଅଧ୍ୟାତ୍ମ ସ୍ଥାଳିତ ଯେତେ ଧର୍ମ ଅଛି, ସେ ସବୁର ମୂଳରେ

ଏଇ ଜୈନଧର୍ମ । ଭାରତର ପ୍ରାୟ ସବୁଧର୍ମ—ବୌଦ୍ଧ, ବୈଷ୍ଣବ ଓ ଦେବୀଧର୍ମଠାରୁ ଲକ୍ଷ୍ମୀପୂଜା, ଷଷ୍ଠୀପୂଜା ପ୍ରଭୃତି—ସବୁଥିରେ ଜୈନଧର୍ମର ପୂର୍ଣ ପ୍ରଭାବ ଦେଖିବାକୁ ମିଳେ । ଦର୍ଶନରେ ମଧ୍ୟ ଜୈନଧର୍ମର ପୂରା ଅନୁଭବ ଉପରେ ପ୍ରତିଷ୍ଠିତ । ଜୀବ ଓ ଅଜୀବ ଦୁହେଁ ସେଥିରେ ନିତ୍ୟ । ※ ସେ ଦୁହେଁ ଅଛନ୍ତି । ଅବଶ୍ୟ ମୌଳିକ ଜୈନଧର୍ମରେ ଜୀବ ଯେପରି ଅସଂଖ୍ୟ, ଅଜୀବ ମଧ୍ୟ ସେଇପରି ଦ୍ରବ୍ୟ କାଳାଦିରେ ବହୁତ । ଏଇଥିରୁ ବାହାରିଥିଲା ଦ୍ୱୈତସାଂଖ୍ୟ । ସେଥିରେ ଜୀବ ବହୁତ ସତ, ତା'ର ନାମ ପୁରୁଷ । କିନ୍ତୁ ଅଜୀବ ହେଉଛି ଏକ । ସେ ହେଉଚି ପ୍ରକୃତି । ସେଇ ସାଂଖ୍ୟରୁ ପ୍ରକାଶ ପାଇଥିଲା ଯୋଗ । ସେଥିରେ ସବୁ ପୁରୁଷ ଉପରେ ପ୍ରଧାନ, ଉତ୍ତମପୁରୁଷ ବା ପୁରୁଷୋତ୍ତମ । ଅତଏବ ଫଳରେ ସମସ୍ତ ଜଗତ ଏକ ପ୍ରକୃତି ଓ ଏକ ପୁରୁଷରେ ପର୍ଯ୍ୟବସିତ ହୋଇଥିଲା । ଏଥିରୁ ବିକାଶ ପାଇଥିଲା ବେଦାନ୍ତ । ସେଥିରେ ଅଜୀବ ହେଲା ମାୟା ବା ମିଥ୍ୟା । ଜୀବହିଁ ହେଲା ସବୁ । ସେ ଗୋଟାଏ, ବହୁତ ନୁହେ ଓ ସେଇ ଏକା ନିତ୍ୟ ।

ଅଳ୍ପରେ ଏଠାରେ ଏତିକ ମାତ୍ର କୁହାଗଲା । ବୁଝାଗଲା ଜୈନଭାବଟି ସମସ୍ତ ଦର୍ଶନର ମୂଳ । ଅନ୍ୟଧର୍ମରେ ମଧ୍ୟ ନୈତିକ ତଥା ଅନ୍ୟ ଭାବରେ ଜୈନଧର୍ମର ପ୍ରଭାବ ଓ ପ୍ରତିପତ୍ତି ଖୁବ୍ ଅଛି । ଏ ସବୁକଥା ବିଶେଷ ଭାବରେ ଜୈନଧର୍ମର ପ୍ରଭାବ ଓ ଆଦାନ ପ୍ରଦାନ ପ୍ରସଙ୍ଗରେ ବୁଝାଇ କରି କୁହାଯିବ । ବର୍ତ୍ତମାନ କହିବା ଦରକାର, ଶରୀର ସଙ୍ଗେ ଆତ୍ମା ନିତ୍ୟ ଭାବରେ ଜଡ଼ିତ ରହିଚି । ଜୈନ ଭାଷାରେ କହିଲେ କୁହାଯିବ, ଜୀବ ଓ ଅଜୀବର ନିତ୍ୟ ସମ୍ପର୍କରେ ଏ ସଂସାର ରହିଛି । ଜୀବ କହିଲେ, ଅବଶ୍ୟ ଠିକ୍ ଆତ୍ମା ନୁହେ, ଜୀବ ହେଉଛି ଜୀବନର ହେତୁ । ଆତ୍ମା ହଉଚି, ମୋଭିତରେ ଯେଉଁ ମୁଁତ୍ୱ ବା ମୁଁ-ଭାବ ଅଛି । ପରେ ଏହାକୁ ବେଦାନ୍ତମାନେ ପ୍ରତ୍ୟଗାତ୍ମା ବୋଲି କହୁଥିଲେ, ଅର୍ଥାତ୍, ଯେଉଁ ଆତ୍ମା ବ୍ୟକ୍ତି ନିଜେ ଅନୁଭବ କରୁଚି । ସେଇ ବେଦାନ୍ତରେ ଏହାର ଅନ୍ୟ ପାଖଟି ହେଉଛି ପରମାତ୍ମା । ଏଇ ପରମାତ୍ମାଇ ସମସ୍ତ ଜଗତର ଜୀବନ ବା ଆତ୍ମା । ଏଇ ଜୀବ ବା ଆତ୍ମାକୁ ଦାର୍ଶନିକମାନେ—ଖୁବ୍ ସମ୍ଭବ ପ୍ରଥମେ ଜୈନ ଦାର୍ଶନିକମାନେ—ପୁରୁଷ ବୋଲି କହୁଥିଲେ । ତେଣୁ ଏଠାରେ କହିଦେବାର ଅଛି, ଜୀବ, ଆତ୍ମା, ପୁରୁଷ, ଅଜୀବ, ପ୍ରକୃତି ପ୍ରଭୃତିରେ ଯାବତୀୟ ତତ୍ତ୍ୱ ଓ ଦର୍ଶନର ବ୍ୟାଖ୍ୟା କହିଲାବେଳେ, ତାହାମୂଳ ଜୈନଧର୍ମରେ ପୂର୍ବ ସୁରୀମାନେ ଯାହା ବୁଝିଥିଲେ, ତାହାଇ ବୁଝିବାକୁ ହେବ ଓ ସେଇସବୁ ଶବ୍ଦ ମଧ୍ୟ ପ୍ରାୟ ଏକା ଅର୍ଥରେ ବ୍ୟବହାର କରାଯାଇଚି ।

---

※ ଜୀବ ବୋଇଲେ ସୁମେଖାସ୍ଥ 'ଜୀ' ଯାହାର ଅର୍ଥ—କୌଣସି ବସ୍ତୁରେ ଜୀବ ପରି ଯେଉଁ ଜୀବନୀଶକ୍ତି ଅଛି ।

† ଓଁ—

ଆଉ ଟିକିଏ କହିଦେବାର ଅଛି । ଏହି ପୁରୁଷର ନାମ ହେଉଚି ଓଁ । ଏହା ବ୍ୟବହାରରେ ଏବେ ସମ୍ପୂର୍ଣ୍ଣ ବୈଦିକ ହେଲେହେଁ ବାହାରିଚି ଜୈନଧାରଣାରୁ । ଏଇ ପୁରୁଷ କଥାଟି ଆସିଚି, ମୁଁ ବା ମୁଁ-ତ୍ୱର ବସ୍ତୁରୁ । ଏଇ ମୁଁ-ତ୍ୱର ବସ୍ତୁଟି ହେଉଚି ଯଥାର୍ଥ ପୁରୁଷ । ଋକ୍‌ବେଦରେ ଆଜି ପ୍ରତି ମନ୍ତ୍ରର ଉଚ୍ଚାରଣ ମୂଳରୁ ଆଗ ଓଁ ବୋଲି ଉଚ୍ଚାରଣ କରାଯାଏ । ସେଇପରି ଯଜୁ ଓ ସାମଗାନ ସବୁଥିରେ ମନ୍ତ୍ରଟିମାନ ଓଁରେ ଆରମ୍ଭ କରିବାକୁ ହୁଏ । ଏହାର ନିର୍ଦ୍ଦେଶ ଉପନିଷଦରେ ମଧ୍ୟ ସ୍ପଷ୍ଟ ଅଛି । *

ଅନ୍ୟାନ୍ୟ ମନ୍ତ୍ର ଓ ଯଜ୍ଞ ପୂଜାଦିରେ ମଧ୍ୟ ଠିକ୍ ସେଇ କଥା କରାଯାଏ । ବ୍ୟବହାରରେ ଏବେ ମଧ୍ୟ ସେଇପରି ଚଳେ । ମାତ୍ର ମୂଳରୁ ତାହା ସେଇପରି ନ ଥିଲା । ଓଁ କାରର କ'ଣ ଅର୍ଥ ଥିଲା, କ'ଣ ବ୍ୟବହାର ଥିଲା, ତାହା ଲୋକେ ଭୁଲିଯାଇଥିଲେ । ବ୍ରାହ୍ମଣ କାଳ ବେଳକୁ ତାହାର ବୈଦିକ ବ୍ୟବହାର ଅର୍ଥ ମ୍ଳାନ ହୋଇଯାଇଥିଲା ପରି ମନେହୁଏ । ଉଦାହରଣ ସ୍ୱରୂପ ପଣ୍ଡିତବର ମାକ୍‌ଡୋନେଲ ସାହେବ ମୈତ୍ରାୟଣୀ ସଂହିତାରୁ ନିମ୍ନଲିଖିତ ପାରିଭାଷିକ ବ୍ୟାଖ୍ୟାଟି ଉଦ୍ଧାର କରିଛନ୍ତି ।

"ନିଧାୟୋ ବା ନିଧାୟୋବା ଓଁବା ଓଁବା ଓଁବା ଏ ଐ ଓଁ
ସ୍ୱର୍ଣ୍ଣ ଜ୍ୟୋତି" † †

ଏ ସମସ୍ତଟିରେ ମାକ୍‌ଡୋନେଲ କହନ୍ତି, କେବଳ ଶେଷ ପଦଟି ମାତ୍ର ଅନୁବାଦ କରିହେବ । ଯଥା ସ୍ୱର୍ଣ୍ଣ ଜ୍ୟୋତି ବୋଇଲେ, ସୁନାପରି ଆଲୋକ । ସେଇ ମାକଡ଼ୋନେଲ ପ୍ରଭୃତି ମଧ୍ୟ କହିଛନ୍ତି, ପୁଣି ଏହା ସତ୍ୟ ଯେ ବେଦରେ ଅନେକ ଅତ୍ୟନ୍ତ ବ୍ୟବହୃତ ଶବ୍ଦର ମୌଳିକ ଅର୍ଥ ଓ ପ୍ରୟୋଗ ଏତେ ପ୍ରାଚୀନ ଯେ ତାହା ବେଦ ମନ୍ତ୍ରର ଅଭ୍ୟାସ ବେଳକୁ ମଧ୍ୟ ଜାଣି ହେଉ ନ ଥିଲା । ଏଇପରି ଶବ୍ଦ ଓ ପ୍ରୟୋଗର ଉଦାହରଣ ହେଉଚି, ସ୍ୱାହା, ସ୍ୱଧା ଓ ବଷଟ୍ ।

---

† The Orissa Historical Researchରେ Journal vol. vii. Oct. 1958- Jan. 1959 'OM' ନାମକ ପ୍ରବନ୍ଧ ଦେଖ ।

* ତୈତ୍ତିରୀୟୋପନିଷଦ ଅଷ୍ଟମ ଅନୁବାଦର ଶେଷାର୍ଦ୍ଧ ଦେଖ ।

† † Macdonells' 'A History of Sanskrit Literature' (Appleton Modern library Edition.) P. 183.

ଉପନିଷଦ୍ ବେଳକୁ ମଧ୍ୟ ଏଇ ଓଁ ର ନାନାପ୍ରକାର କୃତ୍ରିମ ଅର୍ଥ ପ୍ରକାଶ ପାଇଥିବାର ଦେଖାଯାଏ । ଶିଷ୍ୟକୁ କୁହାଯାଇଚି ଓଁ ର ଉପାସନା କରିବାକୁ ହେବ । ଫଳେ ସେଥିରେ ଭିନ୍ନ ଭିନ୍ନ ଗତି ହେବ ଓ ଶେଷକୁ ସେଇ ଉପାସନା ଫଳରେ ଅଜ୍ଞାନକୁ ଡେଇଁ (ତମସଃ ପରସ୍ତାତ୍) ଚାଲି ଯିବାକୁ ହେବ । ଏସବୁ କୁହା ହେଲେ ମଧ୍ୟ ଓଁ ର ଯଥାର୍ଥ ଅର୍ଥ ଜଣା ପଡ଼ୁ ନାଇ । ଉଦାହରଣ ସ୍ୱରୂପ ପ୍ରଶ୍ନୋପନିଷଦ ୫ମ ପ୍ରଶ୍ନରେ ଓଁ କୁ, ଅ, ଉ ଓ ମ୍ ଏଇ ତିନିଭାଗ କରି ପିପ୍‌ଲାଦ ମୁନି * ସତ୍ୟ କାମଂକୁ ବତାଉଚନ୍ତି, "ଗୋଟିଏ ଗୋଟିଏ ଭାଗରେ ଧ୍ୟାନ କଲେ ମୃତ୍ୟୁ ଅତିକ୍ରାନ୍ତ ହୁଏ ନାଇ । ଏକତ୍ରରେ, ଅର୍ଥାତ୍, ଓଁ କୁ ଓଁ ବୋଲି ଧ୍ୟାନ କଲେ, ଏହା ଅମୃତତ୍ତ୍ୱକୁ ପ୍ରାପ୍ତ କରାଏ । ଏଠାରେ ସ୍ୱର ବା ବର୍ଣ୍ଣ ଭେଦ ଧରି ବିଚାର କଲେ, ଓଁ ଟି ଅ, ଉ, ମ୍‌ର ସମବାୟ ହୋଇପାରେ । କିନ୍ତୁ ଗୋଟାଏ ଦାର୍ଶନିକ ବସ୍ତୁକୁ ଏପରି ବର୍ଣ୍ଣ ଭେଦରେ ବିଚାର କରି ଶିଷ୍ୟକୁ ତତ୍ତ୍ୱ ବିଚାରରେ ଅଭ୍ୟାସ କରାଇବା ସହଜ ହୋଇପାରେ; ହେଲେ ହେଁ ଠିକ୍ ନୁହେଁ ।

ଏକା ଅ, ଉ, ମ୍ କୁ ପୁଣି ଆଉରି ଟିକିଏ ଭିନ୍ନ ଭାବରେ—ଟିକିଏ ତାତ୍ତ୍ୱିକ ଭାବରେ—ବିଚାର କରି ମାଣ୍ଡୁକ୍ୟ ଉପନିଷଦରେ ପୁଣି କୁହାଯାଇଚି, "ଅ, ହେଉଚି ଆତ୍ମାର ଜାଗ୍ରତ ଅବସ୍ଥା; ଉ, ହେଉଚି ସ୍ୱପ୍ନ ଅବସ୍ଥା ଓ ମ୍ ହେଉଚି ସୁଷୁପ୍ତି ଅବସ୍ଥା । ଓଁ ହେଉଚି ଆତ୍ମାର ପ୍ରତୀକ ବା ନାମ । ଏହା ୪ର୍ଥ ଅବସ୍ଥା, ଅର୍ଥାତ୍, ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି—ଏଇ ତିନି ଅବସ୍ଥାରୁ ଅତୀତ, ଅଥଚ, ତିନିଟିଯାକ ଅବସ୍ଥା ଏଥିରେ ଅଙ୍ଗୀଭୂତ ।" ଅତୀତ କଥାଟିର ଅର୍ଥ ହେଉଚି, 'ଏହା ବ୍ୟଷ୍ଟି ଭାବରେ ତିନିଟିଯାକ ଅବସ୍ଥାରୁ କୌଣସିଟି ନୁହେଁ ଅଥଚ ସମଷ୍ଟି ଭାବରେ ତିନୋଟିଯାକ ଅବସ୍ଥା ସେଥିରେ ଅଛି ।'

ଏଇଠାରେ ଓଁ କୁ ଆତ୍ମାର ପ୍ରତୀକ ବା ନାମ ବୋଲି ସ୍ପଷ୍ଟ କୁହାଯାଇଚି । କିନ୍ତୁ ଅ, ଉ, ମ୍ ବୋଲି ଭାଗ ବାଣ୍ଟି ଅର୍ଥ କରିବାର କିଛି ମୂଲ୍ୟ ବା ଯଥାର୍ଥ ତାତ୍ତ୍ୱିକତା ନାଇ । ହେଲେ ହେଁ ଏହାଇ ହେଉଚି ସମଗ୍ର ମାଣ୍ଡୁକ୍ୟ ଉପନିଷଦର ବିଷୟ ବସ୍ତୁ । **

କଠୋପନିଷଦର ୧ମ ଅଧ୍ୟାୟ, ୨ୟ ବଲ୍ଲୀ, ୧୫, ୧୬ ଓ ୧୭ ମନ୍ତ୍ରରେ ଅଛି, × "ସମସ୍ତ ବେଦ ଓ ସମସ୍ତ ତପସ୍ୟା ଯାହାଙ୍କୁ ଘୋଷଣା କରାହୁଏ ଓ ଯାହାଙ୍କୁ ଇଚ୍ଛା କରି ଲୋକେ ବ୍ରହ୍ମଚର୍ଯ୍ୟ ଆଚରଣ କରନ୍ତି, ସେଇ ପଦଟି ହେଉଚି ଓଁ । ଏହାଇ ଅକ୍ଷର ବ୍ରହ୍ମ । ଏଇ ଅକ୍ଷର ପ୍ରଧାନ ଉପାସ୍ୟ । ଯାହାକୁଇ ଜାଣିଲେ ସବୁ

* ପ୍ରଶ୍ନୋପନିଷଦ ୫ ।

** ମାଣ୍ଡୁକ୍ୟ ଉପନିଷଦର ସମଗ୍ରଟି ।

× କଠୋପନିଷଦ ୧-୨-୧୫, ୧୬, ୧୭ ।

ପ୍ରାପ୍ତି ହୁଏ । ଏଇ ହେଉଚ ପ୍ରଧାନ ଆଶ୍ରୟ । ଏହା ଜାଣିଲେ ବ୍ରହ୍ମଲୋକ ମିଳେ ।"

ଅର୍ବାଚୀନ ହେଲେ ମଧ୍ୟ ମହାନାରାୟଣୀୟ ଉପନିଷଦର ୧୪ ଖଣ୍ଡର ୧ମ ମନ୍ତ୍ରରେ ଅଛି, "ଓଁ ବୋଲି ଆତ୍ମାକୁ ପରମ ବ୍ରହ୍ମରେ ଯୋଗ କରିବ, ଅର୍ଥାତ୍, ଦୁହିଁଙ୍କର ନାମ ଓଁ ଥିବାରୁ ଦୁହେଁ ଏକ ବୋଲି ଧ୍ୟାନ ।" † ଏହା ଅବଶ୍ୟ ନାରାୟଣୀୟ ଧର୍ମ ।

ଉପନିଷଦରେ ବହୁତ ସାଧନାର, ଉପଦେଶ ଥିଲେ ମଧ୍ୟ ବରାବର ମଝେ ମଝେ ଦାର୍ଶନିକ ତତ୍ତ୍ୱର ସଂକେତ ରହିଚ । ଏହା ପୁଣି ବ୍ରାହ୍ମଣର ପ୍ରୟୋଗପର ନୁହେ । ତେଣୁ ଓଁ ଯେ ଆତ୍ମା ବା ପୁରୁଷର ନାମ, ଏହାର ସଙ୍କେତ ମଧ୍ୟ ସେଇ ଉପନିଷଦରେ ମଝେ ମଝେ ବରାବର ପ୍ରକାଶ ପାଇଚ । ମୁଂଡ଼କୋପନିଷଦର ୨ୟ ମୁଂଡ଼କ, ୨ୟ ଖଂଡ଼, ୬ଷ୍ଠ ମଂତ୍ରରେ ଓଁ କୁ ଆତ୍ମାର ନାମ ବୋଲି ସ୍ପଷ୍ଟ କୁହାଯାଇଚ । ଋଷି କହୁଚଂତି, "ଶଗଡ଼ ଚକର ତୁଂବରେ ଅରଯାକ ଏକାଠି ହେଲାପରି, ସବୁ ନାଡ଼ୀଯାକ ଯେଉଁ ହୃଦୟରେ ଏକତ୍ର ହୋଇଚଂତି, ସେଇ ହୃଦୟରେ ଅନେକ ପ୍ରକାରରେ ସଂଚରଣ କରୁଥିବା ଆତ୍ମାକୁ ଓଁ କାର ବୋଲି ଧ୍ୟାନ କର । ଏଥିରେ ତୁଂଭେ ଅଜ୍ଞାନର ପରପାରକୁ ଯାଅ ।" * *

ଏଇ ଓଁର ଅର୍ଥ ଓ ଉତ୍ପତ୍ତି ସଂବଂଧରେ ମଧ୍ୟ ଉପନିଷଦରେ ସ୍ପଷ୍ଟ ବର୍ଣ୍ଣନା ରହିଚ । ତୈତ୍ତିରୀୟୋପନିଷଦ ୧ମା ବଲ୍ଲୀ ବା ଶିକ୍ଷାଧ୍ୟାୟରେ ଅକ୍ଷର, ପଦ ଓ ଉଚ୍ଚାରଣ ପ୍ରଭୃତିର ନାନା ସାଂକେତିକ ଅର୍ଥମାନ କହିସାରି ଶେଷକୁ ୮ମ ଅନୁବାଦରେ ଋଷି କହିଚଂତି, "ଏଇ ଓଁ ହେଉଚ ବ୍ରହ୍ମ । ଏସବୁ ହେଉଚ ଓଁ । ଯଦି କାହାକୁ କିଛି କରିବାକୁ କୁହାଯାଏ, ସେ କହେ ଓଁ (ହୁଁ) ଓ ନିଶ୍ଚିତରେ ତାହା କରେ । କାହାକୁ ଡ଼ାକିଲେ ସେ ଓଁ କହି ନିଜର ପରିଚୟ ଶୁଣାଇ ଦିଏ । ଏଇପରି ସେଥିରେ ଓଁ ବା ଆତ୍ମାର ସମ୍ମତି ଅଥବା ଆତ୍ମାର ନାମ ଜଣାଇବାର ସଙ୍କେତ ସ୍ପଷ୍ଟ ଅଛି ।"* ଏହାଇ ଓଁ କଥାଟିର ଯଥାର୍ଥ ମୌଳିକ ଅର୍ଥବ୍ୟାପ୍ତି । ଏହା ପୁରୁଷର ନାମ ।

---

† ମହାନାରାୟଣୀୟ ଉପନିଷଦ ୧୪-୭ ।

* ମୁଂଡ଼କ ଉପନିଷଦ ୨-୨-୬ ।

* ତୈତ୍ତିରୀୟୋପନିଷଦ ୧-୮ ର ପ୍ରଥମାର୍ଦ୍ଧ ।

ନାମ ଧରି ଡ଼ାକିଲେ ମନୁଷ୍ୟ 'ଓ' କରେ, ଅର୍ଥାତ୍, ଓଁ ବୋଲି କହି ଆତ୍ମପରିଚୟ ଦିଏ ବା ନିଜ ଆତ୍ମା ବା ପୁରୁଷର ପରିଚୟ ଦିଏ । ଯେପରିକି କୌଣସି ବ୍ୟକ୍ତିକୁ ହରିହର ବୋଲି ଡ଼ାକିଲେ ସେ କହେ ଓ, ଅର୍ଥାତ୍, ଏଇ ହରିହର ହେଉଚି ମୁଁ, ଏଠାରେ ଅଛୁ । ପିଲାଂକୁ ଶିଖାଇଲା ବେଳେ ମଧ୍ୟ ନାମକୁ ଡ଼ାକିଦେଇ କହନ୍ତି 'ଓ' କର । ଏଇ 'ଓ'ଟି ଓଡ଼ିଆ ଭାଷାରେ ବ୍ୟବହାର ଚଳେ । ଅନ୍ୟାନ୍ୟ ଅନ୍ୟ ପ୍ରାକୃତରେ ଏହା ହୁଏତ ଅନ୍ୟାନ୍ୟ ପଦରେ ଏବେ ପ୍ରକାଶ କରାଯାଏ । କିଂତୁ ଓଡ଼ିଆରେ ଏଇ 'ଓ'ଟି ହୁଏତ କଳିଂଗର ଅତି ପ୍ରାଚୀନ ଭାଷାରେ ହେଉଚି 'ଓଁ' ।

ପୁଣି ମୁଁ ଏଥିରେ ସମ୍ମତି ଦେଉଚି, ବା ମୋ ଆତ୍ମାର ଏଥିରେ ପୂର୍ଣ୍ଣ ଅନୁକୂଳ ବା ଅନୁମୋଦନ ଅଛି, ଏହା ଜଣାଇବା ପାଇଁ ଲୋକ କହେ ଓଁ—ସଂସ୍କୃତରେ କୌଣସି ଆଦେଶ ପାଇଲେ, କହଂନ୍ତି 'ଓମିତି ବ୍ରୂମଃ' (ମୁଁ କହୁଚି ଓଁ ବା ହଁ) । ଓଁ ନ କହି ଲୋକେ ମଧ୍ୟ ଅନେକ ସ୍ଥଳରେ ହଁ ବୋଲି କହଂନ୍ତି, ଯଥା ହରିହର ବୋଲି ଡାକିଲେ, ଉତ୍ତର ମିଳେ 'ହଁ' । ଓଁ କରିବା, ହଁ କରିବା ଏକା କଥା । ଆଦେଶରେ ସମ୍ପୂର୍ଣ୍ଣ ଆତ୍ମ ଦାନ କଲେ ମଧ୍ୟ ଲୋକ ଉତ୍ତର ଦିଏ ହଁ, ସଂସ୍କୃତରେ ଓଁ । ଏଇ ଓଁର ସାଧନା ଅଭ୍ୟାସ କରିବାର ନାନାପ୍ରଣାଳୀ ପରେ ବୈଦିକ ସାହିତ୍ୟରେ ବାହାରିଥିଲା ସତ, କିଂତୁ ଏଇ ଅଧ୍ୟାତ୍ମ ବସ୍ତୁର ଆବିଷ୍କାର ଓ ନାମକରଣ ଅତିପ୍ରାଚୀନ ଓ ବୁଝାଯାଇଚି ଏହା ମୂଳତଃ ଜୀବସେବା, ଆତ୍ମସେବା ତଥା ପୁରୁଷ ସେବା ଜୈନମାନଂ-କର କାର୍ଯ୍ୟ । ଅବଶ୍ୟ ଜୈନମାଂନକ ମଧ୍ୟରେ ଏଇ ଓଁ ନାମଟିର ପରଂପରା ସେ କାଳେ ଦେଖାଯାଏ ନାଇ । ଏହା ବିଶେଷ ଭାବରେ ଔପନିଷଦିକ ଦାର୍ଶନିକମାନଂକର ସାକ୍ଷାତ ଆବିଷ୍କ୍ରିଆ ଥିଲା ବୋଲି ମନେ ହୁଏ । ଋକ୍‌ବେଦର ପ୍ରାଚୀନତମ ଅଂଶମାନଂକରେ ଏହା ନ ଥିଲା । ପରେ ଦେଖାଯିବ, ଜୈନ ପ୍ରଭାବର ଫଳରେ ଏହାର ଆଦି ବିକାଶ । ସେ ଯାହାହେଉ, ଜୀବ, ଜୀବରୁ ଆତ୍ମା ଓ ଆତ୍ମାରୁ ପୁରୁଷ କଥା ବିସ୍ତାର କରିବାରେ ଅବଶ୍ୟ ମାନବାତ୍ମା ଓ ସେଇ ଅନୁକ୍ରମେ ବିଶ୍ୱାତ୍ମାର ସଂବଂଧ ଅଛି । ହେଲେ ହେଁ ଏଇ ମାନବାତ୍ମା ବା ପୁରୁଷ କଥାଟି ସଂବଂଧରେ ପୁଣି ଆତ୍ମାର ନିତ୍ୟତା ଓ ତହିଁ ସଂଗେ ପୁନର୍ଜନ୍ମ କଥା ବରାବର ଲାଗି ରହିଚି । ଜୀବ ସଂବଂଧରେ ଜୈନମାନଂକ ମତରେ ଏ ଦିଓଟି କଥା ନାଇ ନୁହେ । କିଂତୁ ମାନବାତ୍ମାକୁ ଧରି ସମସ୍ତ ସାଧନା ଓ ତହିଁ ସଂଗେ ଆତ୍ମାର ନିତ୍ୟତା ବରାବର ପ୍ରକାଶ ପାଇଥିଲା । ଜୈନମାନଂକର ମଧ୍ୟ କର୍ମ ଘେନି ପୁନର୍ଜନ୍ମ ଓ କର୍ମନାଶର ସାଧନା ଅତି ଆଦିମ କାଳରେ ସମସ୍ତ ଜୀବସଂବଂଧରେ ହୁଏତ ହୋଇଥିବ । କିଂତୁ ମୁଖ୍ୟତଃ ଏହା କାଳେ କାଳେ ମାନବାତ୍ମାକୁ ଧରି ପ୍ରକାଶ ପାଇଥିବା କଥା ଏଠାରେ ମନେ ରଖିବାର ଅଛି, ଏଇପରି ଜୀବ, ଆତ୍ମା ଓ ପୁରୁଷର

ସୂକ୍ଷ୍ମ ଭେଦ ବୁଝି ରଖିଲେ, ପରେ ଭାରତୀୟ ଦର୍ଶନର ଆଦ ଓ ବିନାଶ ବେଶ୍ ବୁଝାଯିବ । ଜୈନଭାବରେ ଏ ସବୁର ଠିକ ବୋଲି ମଧ୍ୟ ଖୁବ୍ ଜାଣିହେବ । କାରଣ ଜୈନ ହେଉଛି ଅଧ୍ୟାତ୍ମ ଧର୍ମ । ଅର୍ଥାତ୍ ତଥାକଥିତ ଈଶ୍ୱରସ୍ଥାନ ଧର୍ମ । ଏହାର ଦର୍ଶନ ତେଣୁ ନିରବଲଂବ । ତେଣୁ ଦର୍ଶନ ବୋଲି ଯେଉଁ ଜିନିଷ ସବୁ ଈଶ୍ୱର ଭଳି ଆଲଂବନ ଥିବା ଧର୍ମରେ ଅଛି, ସେସବୁ ଦର୍ଶନ ଠିକ୍ ଦର୍ଶନ ନୁହେ । କାରଣ ସେ ଧର୍ମରୁ ତା ବାହାର ନାଇ କିଂବା ସେ ଧର୍ମରେ ବସ୍ତୁତଃ ତା ଦରକାର ନାଇ । ବୁଝିବାକୁ ହେବ ତାହା ମୌଳିକ ଜୈନ ଦର୍ଶନ ଉପରେ ତିଆରି ହୋଇ ଈଶ୍ୱରଙ୍କ ନିର୍ଦ୍ଦେଶିତ ଧର୍ମମାନଙ୍କରେ କୃତ୍ରିମ ଭାବରେ ଯୋଡ଼ାହୋଇଛି ମାତ୍ର । ଏ ସବୁ ବିଷୟରେ କ୍ରମେ ଜୈନଧର୍ମର ପ୍ରଭାବାଦ ବୁଝିବାରେ ଅଧିକ ବୁଝାଯିବ ।

## ଜୈନଧର୍ମହିଁ ଏକ ଅଧ୍ୟାତ୍ମ ଧର୍ମ—

ଏହି ଜୈନ ଧର୍ମକୁ ବୁଝାଇ କରି ଜୈନଶାସ୍ତ୍ରରେ କୁହାଯାଇଛି "ଏକା ଏହି ଆତ୍ମା ପୁଣ୍ୟ ସଂଚୟ କରେ । ଏହି ଆତ୍ମା ଏକା ନାନା ସ୍ୱର୍ଗସୁଖ ଭୋଗ କରେ । ଏହି ଏକା କର୍ମ ବିନଷ୍ଟ କରେ । ଏହି ମଧ୍ୟ ଏକା ମୁକ୍ତି ଲାଭ କରେ ।"

"ଇକ୍କୋ ସଂଚଦି ପୁଣ୍ଣଂ ଇକ୍କୋ ଭୁଂଜେଦି ବିବିହ ସୁରମୋକ୍ଖଂ
ଇକ୍କୋ ଖବେଦି କମ୍ମଂ ଇକୋ ବିୟ ପାବନୟ୍ୟା ମୋକ୍ଖଂ"

ଅନୁପ୍ରେକ୍ଷା—୭୬

## ଅନ୍ୟତ୍ର—

ଜ୍ଞାନ ବିବର୍ତ୍ତିର ପ୍ରବାହ ବରାବର ଲାଗିଥିବା ଭିତରେ ଯେତେ ଅବସ୍ଥାଂତର ହେଉଛି, ସେ ସବୁର ଆତ୍ମା ହେଉଛି କର୍ତ୍ତା ଓ ଭୋକ୍ତା ।

"ପରିଣମମାଣୋ ନିତ୍ୟଂ ଜ୍ଞାନ ବିବର୍ତ୍ତୈରନାଦି ସଂତତ୍ୟା
ପରିଣାମାନାଂ ସ୍ୱେଷାଂ ସ ଭବତି କର୍ତ୍ତା ଚ ଭୋକ୍ତା ଚ ।" *
ପୁରୁଷାର୍ଥ ସିଦ୍ଧ୍ୟୁପାୟ (ଗ୍ରଂଥକର୍ତ୍ତା—ଅମୃତଚଂଦ୍ର ସୁରି) ୧୦ ।

---

* ଜଗମଂଦ୍ର ଲାଲ ଜୈନଙ୍କ Outlines of Jainismର ୮୦ ଓ ୮୧ ପୃଷ୍ଠାରୁ ଉଦ୍ଧୃତ ।

ପ୍ରସିଦ୍ଧ ଜୈନ ପଂଣ୍ଡିତ ଓ ଗ୍ରଂଥକାର ଶ୍ରୀ ଶ୍ରୀ ଜଗମଂଦ୍ରଲାଲ ଜୈନ ଏହି ଦୁଇଟି ବଚନର ବ୍ୟାଖ୍ୟା କରି କହିଚଂତି—"ମନୁଷ୍ୟ ନିଜେ ଓ ସେହି ଏକା ଜୀବନରେ ଯାହା ଭଲ ବା ମଂଦ ସେଥିପାଇଁ ଦାୟୀ।"*

"ସେ ପୁଣି ବୁଝାଇ କହିଚଂତି, ଜୈନଧର୍ମ ମନୁଷ୍ୟକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଚି ଏହା ଅନ୍ୟ କୌଣସି ଧର୍ମରେ ନାହିଁ । ଆମେ ଯେଉଁ କର୍ମ କରୁ ଓ ସେହି କର୍ମର ଫଳ ଏ ଦୁହିଁଙ୍କ ମଧ୍ୟରେ ଅଉ କିଛି ନାହିଁ । ଥରେ କରାହେଲେ ସେମାନେ (ସେହି କର୍ମମାନେ) ହୁଅଂତି ଆମର ନିୟଂତା । ସେସବୁର ଫଳ ନିଶ୍ଚେ ଫଳିବ । ମୋର ସ୍ୱାଧୀନତା ଯେପରି ଅତ୍ୟଂତ ମୂଲ୍ୟବାନ୍ ସେହିପରି ମୋର ଦାୟିତ୍ୱ ମଧ୍ୟ ତା ସଂଗେ ସମାନ ମୂଲ୍ୟବାନ୍ । ମୁଁ ଯେପରି ଇଚ୍ଛା ସେପରି ଜୀବନ ଯାପନ କରିପାରେ । କିଂତୁ ଥରେ ବାଟ ବାଛି ନେଲେ, ଆଉ ଫେରିବାର ଉପାୟ ନାହିଁ । ମୁଁ ସେ କର୍ମ ବାଛି ନେବାର ଫଳକୁ ଆଉ ଅନ୍ୟଥା କରିପାରିବି ନାହିଁ । ଏହି ନୀତି ଜୈନଧର୍ମକୁ ଅନ୍ୟ ଧର୍ମମାନଂକରୁ, ଯଥା—ଖ୍ରୀଷ୍ଟଧର୍ମ, ମୁସଲମାନଧର୍ମ ଓ ହିଂଦୁଧର୍ମରୁ ବାରି ଦେଉଚି । ଈଶ୍ୱର ବା ତାଂକର ଅବତାର କିଂବା ତାଂକ ସ୍ଥଳାଭିଷିକ୍ତ କିଂବା ତାଂକ ପ୍ରିୟ (ପୁତ୍ର ବା ପୟଗଂବର) ମନୁଷ୍ୟଜୀବନରେ ହସ୍ତକ୍ଷେପ କରିପାରିବେ ନାହିଁ । ଆତ୍ମା ଯାହା କରେ ସେଥିପାଇଁ ଆତ୍ମା ଏକା ସାକ୍ଷାତ ଭାବରେ ଓ ନିଶ୍ଚିତ ଭାବରେ ଦାୟୀ ।" ×

---

IV The last basic principle of Jainism is this, man himself, and he alone, is responsible for all that is good or bad in his life (14, 15).

× Jainism, more than any other creed gives absolute religious independence and freedom to man. Nothing can intervene between the action which we do and the fruits thereof. Once done, they become our masters and must fructify. As my independence is great, so my responsibility is co-extensive with it. I can live as I like, but my choice is irrevocable, and I cannot escape the consequence of it This principle distinguishes Jainism from other religious, e. g. Christanity, Muhammodanism, Hinduism. No, God, or His prophet or deputy, or beloved, can interfere with human life- The soul is responsible for all that it does.

## ଧର୍ମର ଇତିହାସ—ଈଶ୍ୱର—

ପୃଥିବୀରେ ଧର୍ମର ଇତିହାସ ଦେଖିଲେ ସଭ୍ୟତା ଆରମ୍ଭ କରିବା ସଙ୍ଗେ ସଙ୍ଗେ ମାନବକୁ ଏକ ପ୍ରକାର ଈଶ୍ୱର ଭାବ ଗ୍ରାସ କରିଛି । ନିଜେ ବହୁ କ୍ଷେତ୍ରରେ ଅକ୍ଷମ ଥିବାରୁ ପ୍ରକୃତିକୁ ଶାସନ କରି ନିଜର ପ୍ରୟୋଜନରେ ଲଗାଇବା ବିଷୟରେ ଅସମର୍ଥ ହେବାରୁ ଓ ଯେପରି କି କାହାର ଜ୍ଞାତ ବା ଅଜ୍ଞାତ ନିର୍ଦ୍ଦେଶରେ କାମ ହୋଇଯାଉଥିବାରୁ ସେ ମନୁ (ଭାରତୀୟ) ମେନେସ (ମିଶରୀୟ) ମିନେ (କ୍ରିଟୀୟ) ସ୍ୱାହେନ-ଗ୍ରୀକ୍, ଓଆନିସ (ମିଶରୀୟ), ମୀନ (ଦ୍ରାବିଡ଼) ପ୍ରଭୃତି ଅତି କ୍ଷମତାଶୀଳ ପୂର୍ବପୁରୁଷମାନଙ୍କ କଳ୍ପନାରୁ ପ୍ରତି ମୁହୂର୍ତ୍ତରେ ଆମ କାର୍ଯ୍ୟକୁ ଚାହିଁ ବସିଥିବା ଓ ସେଇ ଦୃଷ୍ଟିରେ ଆମ ପାଇଁ କାର୍ଯ୍ୟ ବିଧାନ କରୁଥିବା ଈଶ୍ୱର ବା ମାନବକାର୍ଯ୍ୟକୁ ନିଜ ଇଚ୍ଛାରେ ନିୟନ୍ତ୍ରିତ କରୁଥିବା ଉପାସ୍ୟର କଳ୍ପନା କରିଥିଲ । ଏହା ଋକ୍‌ବେଦରେ ବରୁଣ ଦେବଙ୍କ ସ୍ତୋତ୍ରରେ ପ୍ରଥମେ ଖୁବ୍ ପ୍ରକାଶ ପାଇଛି—ଏହା ମନେରଖିବାର କଥା । ଏହାର ଐତିହାସିକ ଭାବରେ ଜଗତରେ ଏକ ପ୍ରକାର ପ୍ରଥମ ଶୃଙ୍ଖଳିତ ଧର୍ମଧାରଣା । ଏଠାରେ ଧର୍ମର ମୌଳିକ ଅର୍ଥ ହେଉଛି, ଯହିଁରେ ଜଗତର ସମସ୍ତ କ୍ରିୟାକଳାପ ଧରାହୋଇ ରହିଛି ଏବେ ମଧ୍ୟ ଆମ ସଂସ୍କୃତିରେ ଧର୍ମ ଶବ୍ଦର ତାହାର ମୌଳିକ ଅର୍ଥ ।

## ଈଶ୍ୱରରୁ ରାଜା ଓ ସମ୍ରାଟ—

ଏଇ ଧର୍ମର କ୍ରମବିକାଶରେ କ୍ରମେ ସେ କାଳର ଶକ୍ତିଶାଳୀ ମାନବ ଓ ସେଇ ଶକ୍ତିଶାଳୀ ମାନବରୂପୀ ରାଜାଙ୍କର ସୃଷ୍ଟି ହୋଇଥିଲ ।

ଶିଳାଲେଖାମାନଙ୍କରୁ ଯେଉଁ ଇତିହାସ ସଂଗୃହୀତ ହୋଇଛି, ସେଥିରୁ ଦେଖାଯାଏ, ପ୍ରାଚୀନ ଦେଶମାନଙ୍କରେ ବିଶେଷରେ, ସ୍ପଷ୍ଟ ପ୍ରମାଣ ମିଳୁଥିବା ସେ କାଳର ଅସୁର (ଆସିରୀୟା) ରାଜ୍ୟରେ ରାଜାମାନେ ଅତି ଲୋଭୀ ଓ ଅତ୍ୟାଚାରୀ ହୋଇ ଉଠିଥିଲେ । ଶେଷକୁ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୧୨ଶ ଶତାବ୍ଦୀଠାରୁ ଯାହା ଦେଖାଯାଏ ତାହା ବର୍ତ୍ତମାନ ଏକପ୍ରକାର କଳ୍ପନାରୁ ଅତୀତ । ପ୍ରଜା ସେ କାଳେ ଥିଲେ ମୁଖ୍ୟତଃ କୃଷକ । ପ୍ରଚୁର ଶସ୍ୟ ଉପୁଜୁଥିଲ । କିନ୍ତୁ କୃଷକମାନେ ରାଜାଙ୍କ ଭୟରେ ପ୍ରାୟ ସର୍ବସ୍ୱ ଏପରି କି ଉପୁଜାଉଥିବା ଶସ୍ୟର ୧୦ ଭାଗରୁ ୯ ଭାଗ ରାଜାଙ୍କୁ ବା ସେ କାଳର ଦେବତାରୂପୀ ଓ ବେଳେବେଳେ ସେଇ ଦେବତାନାମୀ ରାଜାଙ୍କୁ ରାଜଭାଗ ରୂପେ ଦେଇପକାଉଥିଲେ । ଯେଉଁମାନେ ଏପରି ଦେବାରେ କୁଣ୍ଠା ପ୍ରକାଶ କରୁଥିଲେ ବା ମନରେ ବିଦ୍ରୋହ ଭାବ ଅବଲମ୍ବନ କରୁଥିଲେ, ସେମାନେ ଦେଶୀ ହୁଅନ୍ତୁ ବା ବିଦେଶୀ ହୁଅନ୍ତୁ ତାଙ୍କ ପ୍ରତି ରାଜାମାନେ ଘୋର ଅତ୍ୟାଚାର କରୁଥିଲେ । ସେଇ ବିଦ୍ରୋହୀଙ୍କ ରାଜାମାନଙ୍କୁ ବା ପ୍ରଧାନ ଲୋକମାନଙ୍କୁ ଆଣି ନିଜ ଦେବତାଙ୍କ ଆଗେ ସେଇ ବିଜେତା ରାଜାମାନେ ବଳି ଦେଉଥିଲେ ।

ଜାଅଂତାରେ ଗୁଳି ଛଡ଼ାଇ ଦେବା ଏଇ ବଳର ଗୋଟିଏ ପ୍ରଧାନ ପ୍ରକାର । ପରେ ଆମ ଦେଶରେ ମୁସଲମାନ ଇତିହାସରେ ଅଲ୍ଲାଉଦ୍ଦିନ୍ ମହମ୍ମଦ ତୋଗଲକ ପ୍ରଭୃତିଂକ କାଳରେ ଏଇ ଯେଉଁ ପରାଜିତ ରାଜା ତଥା ବିଧର୍ମୀଂକ ବା ଅମାନିଆ ଭିନ୍ନ ମତାବଲଂବୀଂକ ଛାଲି ଛଡ଼ାଇ ଦେବାର ବର୍ଣନାମାନ ମିଳେ, ତାର ମୂଳ ଏଇଠାରେ ବୋଲି ମନେ ହୁଏ । ବ୍ୟାବିଲନରୁ ବାହାରିଥିବା ଅସୁର ଦେଶ ସଂବଧରେ ଏଇ ପ୍ରଚଳିତ ଙ୍କିକୁ ଲକ୍ଷ୍ୟ କରି ସେ କାଳର ଲେଖାମାନଂକରେ ଯାହା ଅଛି, ଐତିହାସିକ "ଡ଼ନ୍‌କର ହ୍ୱଲ୍" ନିଜ ଗ୍ରଂଥରେ ସେଇଥିରୁ ଯାହା ଉଲ୍ଲେଖ କରିଚଂତ, ତାହା ଗ୍ରଂଥର ୨ୟ ସଂସ୍କରଣ ମୁଖବଂଧରେ ଦିଆଯାଇଛି ।

## ଅସୁର ସମ୍ରାଟଂକ କାର୍ଯ୍ୟ—

"କୌଣସି ନିଜ ମତର ଅନନୁକୂଳ ସହରକୁ ଅଧିକାର କରିବା ସଂଗେ ସଂଗେ ସେଇ ସହରଟିକୁ ପୋଡ଼ିଦିଆ ଯାଉଥିଲା । ତାହା ପରେ ସେଇ କାଳର ଶୃଂଖଳିତ ଜନବସତିକୁ ଏଠାରେ ସହର (City) ବୋଲି କୁହାଯାଇଚ ।

## ତାର ଅନ୍ୟ ନିଦର୍ଶନ—

ଅନ୍ୟ ଜଣେ ଗ୍ରଂଥକାର କହିଚଂତି, "ଅସୁର ନାସିରପାଲ ମେସୋପୋଟାମିଆ ଓ ଉତ୍ତରସିରିଆରେ ହାଁଶ୍ରୀକାମୟ ଶାସନ ଚଳାଇଥିଲେ । ବିଦ୍ରୋହୀମାନଂକ ଉପରେ ତାଂକର ବ୍ୟବହାର ଅତି ଭୀଷଣ । ରାଜ୍ୟପତି ବା ରାଜ୍ୟମାନଂକ ପ୍ରଧାନ ମାନଂକର ଜାଅଂତାରେ ଗୁଳି ଛଡ଼ାଇ ଦିଆଯାଉଥିଲା । କୌଣସି ନଗର ରାଜ୍ୟକୁ ଆକ୍ରମଣ କଲେ କେବଳ ସେଠା ଲୋକଂକୁ ଯେ ମାରି ଦେଉଥିଲେ, ତା ନୁହେଁ । ସେଠା ମାଇପେ ପିଲାଏ ସମସ୍ତେ ହାଣ ଖାଉଥିଲେ ବା ଜାଅଂତାରେ ପୋଡ଼ି ହେଉଥିଲେ । ଫଳରେ ସେଠାରେ ଆକ୍ରମଣ କଲେ ଲୋକେ ଆସି ସର୍ବସ୍ୱ ସମର୍ପଣ କରି ଦେଉଥିଲେ ।*

ଠିକ୍ ଏଇ ଖିତିକୁ ଲକ୍ଷ୍ୟ କରି From Tribe to Empire ପୁସ୍ତକରେ Moret ଓ Davy ବହୁ ଶତାବ୍ଦୀ ପରର ସମ୍ରାଟ ଅସୁର ବନିପାଲଂକ ଶାସନକୁ ଲକ୍ଷ୍ୟ କରି କହିଚଂତି ।

"This empire was founded upon force and terror, the massacre of prisoners, the destruction of cities taken by storm, the wholesale deportation of populations, were its methods of domination.

Only after orgies of brutal force was the administration of the conquered countries organised upon the sage methods of the Babylonins. The oriental world had only accepted with horror the force of Assyria."

---

* D. A. Mackenzie—Myths of Babylonia & Assyria—PP. 396 & 397.

"ଏଇ ସାମ୍ରାଜ୍ୟ (ଆସିରୀୟା ବା ଅସୁର-ସାମ୍ରାଜ୍ୟ) ବଳ ଓ ବର୍ବରତା ଉପରେ ପ୍ରତିଷ୍ଠିତ ଥିଲା । ବନ୍ଦୀମାନଙ୍କ ହତ୍ୟା, ଅସ୍ତ୍ରବର୍ଷଣରେ ଅଧିକୃତ ହୋଇଥିବା ନଗରମାନଙ୍କର ଧ୍ୱଂସ, ଜନତାର ସୁଦୂର ସ୍ଥାନାନ୍ତରୀକରଣ ପ୍ରଭୃତିରେ ଦେଶକୁ ଜୟ କରାଯାଉଥିଲା । ଏଇପରି ପାଶବିକ ଶକ୍ତିର ପ୍ରମୋଦୋତ୍ସବାଦି ପରେ ଅବଶ୍ୟ ବିଜିତ ଦେଶମାନଙ୍କୁ ବ୍ୟାବିଲନୀୟମାନଙ୍କ ବଶ୍ୟତାରେ ଶୃଙ୍ଖଳିତ କରାଯାଉଥିଲା । ମାତ୍ର ପ୍ରାଚ୍ୟ ରାଜ୍ୟମାନେ ଏଇ ପାଶବିକ ଅସୁର ଶକ୍ତିକୁ ଏଇପରି ବୀଭତ୍ସ ବର୍ବରିକାରେ ଗ୍ରହଣ କରୁଥିଲେ ।"

## ଅସୁର ଦେଶ ଓ ବ୍ୟାବିଲନ—

ଏଇଥିରେ ପାଦଟିକାରେ ଅନ୍ୟାନ୍ୟ ଗ୍ରନ୍ଥରେ ଏଇପରି ବର୍ଣ୍ଣିତ ହୋଇଥିବା ଉଲ୍ଲେଖ ମଧ୍ୟ କରାଯାଇଛି । କିନ୍ତୁ ଏ ଅତି ପରକାଳର କଥା । ପ୍ରାୟ ପାଂଚଶହ ବର୍ଷ ଭିତରେ (ଖ୍ରୀଷ୍ଟପୂର୍ବ ୧୨ଶରୁ ୭ମ ଶତାବ୍ଦୀ) ଆସିରିଆର ଦୌରାତ୍ମ୍ୟ ଓ ବୀଭତ୍ସ ବର୍ବରିକା ଯେପରି କ୍ରମେ ବଢ଼ିଥିଲା, ଏ ତାହାର ବିବରଣ । ଏଇ ଅସୁର ଦେଶ ଆଜକୁ ପ୍ରାୟ ୫ ହଜାର ବର୍ଷର ଅଧିକକାଳ ହେବ ? ଦକ୍ଷିଣରେ ଥିବା ବ୍ୟାବିଲନ ବା ସୁମେର ରାଜ୍ୟରୁ ଅଲଗା ହୋଇ ଉତ୍ତରକୁ ଆସିଥିଲେ (ଏବେ ଇରାକର ପାରସ୍ୟ ଉପସାଗର ପାଖେ ଦକ୍ଷିଣକୁ ଥିବା ରାଜ୍ୟଟିର ନାମ ସୁମେରୁ ଓ ପରେ ବଢ଼ିକରି ହେଲା ବ୍ୟାବିଲନ । ଉତ୍ତର ଆଡ଼କୁ ଥିବା ରାଜ୍ୟଟିର ନାମ ଥିଲା ଅସୁର । ଏଇ ଅସୁର ରାଜ୍ୟଟି ଆଦିକାଳରେ ବ୍ୟାବିଲନ ଲୋକଙ୍କ ଦ୍ୱାରା ଓ ଆଖପାଖର ପାହାଡ଼ିଆ ଲୋକଙ୍କଦ୍ୱାରା ଅଧ୍ୟୁଷିତ ହୋଇ ତିଆରି ହୋଇଥିଲା ।)

## ବ୍ୟାବିଲନରେ ଆଦିମ ଅଧ୍ୟାତ୍ମ ଧର୍ମ—

ଉପରର ଉଦ୍ଧୃତାଂଶରୁ ଜଣାପଡ଼ୁଛି, ଏଇ ଅସୁର ଦେଶର ଆଦି ରାଜ୍ୟ ବ୍ୟାବିଲନରେ ଶୃଙ୍ଖଳିତ ଶାସନ, ଅସୁର ଶାସନଠାରୁ ବହୁ ଏକତାମୂଳକ ଓ ଲୋକପ୍ରିୟ ଥିଲା । କିନ୍ତୁ ସେଥିରୁ ବୁଝିବାର ନୁହେଁ ଯେ ଏଇ ବ୍ୟାବିଲନରେ ମଧ୍ୟ ମୂଳରୁ ଅନୁଷ୍ଠାନଟି ଭିନ୍ନ ଭିତ୍ତିରେ ବିକାଶ ପାଇ ଆସିଥିଲା । ବଡ଼ ପୁରୁଷ, ବଡ଼ ପୁରୁଷରୁ ରାଜା, ରାଜାରୁ ସମ୍ରାଟ, ଏହାଇ ସେ ଅଂଚଳରେ ଅତି ପ୍ରାଚୀନ କାଳରୁ ରାଜ୍ୟ ଶୃଙ୍ଖଳାରେ ପ୍ରକାଶ ପାଇଥିବ । କେବଳ ବ୍ୟାବିଲନରେ କାହିଁକି ପୃଥିବୀରେ ସବୁଠି ସାଧାରଣତଃ ମାନବ ସଭ୍ୟହେବା ସଙ୍ଗେ ସଙ୍ଗେ ଏଇପରି ବଡ଼ ପୁରୁଷ ରାଜା ପ୍ରଭୃତିଙ୍କଦ୍ୱାରା ଶୃଙ୍ଖଳିତ ହୋଇଥିବା ସ୍ୱାଭାବିକ । ଅସୁର ଦେଶରେ ଏ ବିକାଶଟି ବିଶେଷଭାବରେ ଅତ୍ୟାଚାର ଓ ଦମନ ଉପରେ ପ୍ରତିଷ୍ଠିତ ଥିବାର ପ୍ରମାଣ ମିଳେ । ତାହାର ନାନା ଐତିହାସିକ କାରଣ ଥାଇପାରେ । ସେଥିରୁ ଗୋଟିଏ ହୁଏତ ହେଉଛି

ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଖପାଖ ପାହାଡ଼ିଆ ଅଚଂଳମାନଙ୍କରୁ ଆସି ଅସୁର ଦେଶରେ ରହି ନିଜର ଭାଗ୍ୟବିଧାନ କରିବାରେ ଲାଗିଥିଲେ । କିନ୍ତୁ ବ୍ୟାବିଲନରେ ଠିକ୍ ତାହା ହୋଇ ନ ଥିଲା । ସ୍ଥାନୀୟ ସ୍ଥାୟୀ ଅଧିବାସୀମାନେ ସେଠାରେ ଆତ୍ମୋନ୍ନତିରେ ଲାଗିଥିଲେ । ସେଇ ହେତୁରୁ ସେଇ ବ୍ୟାବିଲନ ସମାଜରେ ଅଧ୍ୟାତ୍ମ ଧର୍ମର ବହୁ ପ୍ରାଚୀନ ପ୍ରକାଶ ଓ ପ୍ରଚାର ଦେଖାଯାଏ । ସେଇ କଥା ଯେନି ଟିକିଏ କୁହାଯାଉ । ଦେଖାଯାଉ ଏଇ ପ୍ରଧାନ ପୁରୁଷ ଓ ରାଜାଙ୍କ ପ୍ରତିଷ୍ଠିତ ଧର୍ମରେ ଅଧ୍ୟାତ୍ମ ଧର୍ମର ବିକାଶ କିପରି ହୋଇଥିଲା ।

## ଅସୁର ଓ ବ୍ୟାବିଲନର ପରସ୍ପର ବିବାଦ—

ଏଇ ଅଧ୍ୟାତ୍ମ ଧର୍ମର ପ୍ରକାଶ ଓ ପ୍ରଚାର କଥା କହିବା ପୂର୍ବରୁ ଆଉ ଗୋଟିଏ କଥା ପ୍ରତି ଟିକିଏ ଲକ୍ଷ୍ୟ କରିବା ଦରକାର । ଅସୁରଦେଶରେ ଅନୁଷ୍ଠାନିକ ଅଭ୍ୟାଗ୍ରହ ଓ ବାଭତ୍ସତାରେ କିପରି ପୂର୍ଣ୍ଣତା ଆଡ଼କୁ ଯାଇଥିଲା, କିପରି ସମ୍ପୂର୍ଣ୍ଣ ଆତ୍ମସମର୍ପଣ ଫଳରେ ପ୍ରାର୍ଥନା କରି ବା ମାଗି କରି କିଛି ପାଇବାରେ ପର୍ଯ୍ୟବସିତ ହୋଇଥିଲା, ତାହା ଆଉ ଅନନୁମେୟ ନୁହେ । କିନ୍ତୁ ଏହା ବୋଲି ଅସୁର ସଭ୍ୟତା, ବ୍ୟାବିଲନୀୟ ସଭ୍ୟତାକୁ ଶ୍ରେଷ୍ଠ ବୋଲି ମାନି ଯାଇଥିବାର କୌଣସି ନିଦର୍ଶନ ମିଳୁନାଇ ବରଂ କ୍ଷମତାର ବିକାଶରେ ଅସୁରମାନେ ସବୁବେଳେ ବ୍ୟାବିଲନର ବିଶ୍ଳରେ ଶାସନ ଓ ଶୃଙ୍ଖଳାକୁ ଯେପରି କି ସାଧାରଣତଃ ଈର୍ଷାଚକ୍ଷୁରେ ଦେଖୁଥିଲେ ଓ ସେମାନଙ୍କ ଭିତରେ ଚିରନ୍ତନ ବିବାଦ ଦେଖାଯାଉଥିଲା ।

## ଅସୁରଙ୍କ ପ୍ରଭାବ ଓ ପ୍ରତିପତ୍ତିର ଫଳ—

ଏଠାରେ ଦେଖାଯାଇପାରେ ଅସୁର ଭୂମିଠାରୁ ସମଗ୍ର ପାରସ୍ୟ ବାଟେ ପଶ୍ଚିମୋତ୍ତର ଭାରତ ପର୍ଯ୍ୟନ୍ତ ଏ ସମ୍ବନ୍ଧରେ କି ଭାବ ଓ ପ୍ରଭାବ ଦେଖାଯାଇଥିଲା । ଆମ ବେଦ, ପୁରାଣାଦିରୁ ତଥା ପାରସ୍ୟର ଆବେସ୍ତା ପ୍ରଭୃତି ଶାସ୍ତ୍ରରୁ ସ୍ପଷ୍ଟ ଜଣାପଡ଼େ ଏଇ ଅସୁର ଝଡ଼ର ପ୍ରତିବାଦ କରି ପାରସ୍ୟର ପୂର୍ବ ପଟେ ଭାରତୀୟ ଆର୍ଯ୍ୟ ସମେତ ମାନବସମାଜ ଅସୁରଙ୍କ କୀର୍ତ୍ତି ଓ ପ୍ରତିପତ୍ତିରେ ମୁଗ୍ଧ ହୋଇ ପ୍ରଥମେ ଅସୁରମାନଙ୍କୁ ଦେବଙ୍କ ସଙ୍ଗେ ଏକା ବୋଲି କହିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ସେଇ ଅସୁର-ମାନଙ୍କୁ ସମାଜବିରୋଧୀ ବୋଲି ବର୍ଣ୍ଣନା କରିଥିଲେ । ପୁଣି ସେଇ ପାରସ୍ୟ ପଶ୍ଚିମ ପଟରେ ଅର୍ଥାତ୍, ଅସୁରଦେଶ ଖଣ୍ଡର ପ୍ରଭାବିତ ଭୂମିରେ ଅସୁରମାନଙ୍କୁ ବଡ଼ ବୋଲି କହି ତାଙ୍କୁ ଉପାସ୍ୟରୂପେ ଆଦର ଓ ପୂଜା କରୁଥିଲେ ।

## କାଲ୍ଡିଅନ୍ସ ଓ ଅସୁର ମେଳଦା—

ସୂଚନା ଦିଆଯାଇଛି, ଏଇ ଅସୁରମାନଙ୍କ ଭିତରେ ଅସୁର ଦେଶ ଆସିରିଆ ଓ ବ୍ୟାବିଲନ (ବୌଦ୍ଧ ଜାତକର ବାବେରୁ)ର ଚିରକାଳ ବିବାଦ ଲାଗିଥିଲା ।

କେହି କାହାକୁ ଚରିବନ ପାଇଁ ହଟାଇ ପାରୁ ନ ଥିଲେ । ଅସୁରଂକ ଦେବତାଂକ ନାମ ଥିଲା ଅସୁର । ବ୍ୟାବିଲନରେ ସେ ସେଇପରି ଦେବତାଂକ ନାମ ଥିଲା ମେର୍ଡୁକ (ମେରୋଡ଼ାଚ), ଏଇ ସମୟରେ ପାରସିକ ମିଡ଼ସ୍ (Mede) ଜାତୀୟ ଅଧିମାନଂକ ଭିତରେ ଜାରଥ୍ରୁଷ୍ଟ୍ର ବୋଲି ଜଣେ ମହାପୁରୁଷ ଏହି ବିବାଦ ମେଂଟାଇ ଦେବାପାଇଁ ପ୍ରଚ୍ଚର କରିଥିଲେ ।

'ଈଶ୍ୱରଂକୁ ଭାଗ ଭାଗ କରି କଳ୍ପନା ଓ ପୂଜା କରିବାରେ ବୃଥା ବିବାଦ କରନାଇ । ଅସୁର ଓ ମେରୋଡ଼ାଚ ଯୋଡ଼ାଏ ଦେବତା ନୁହଂତି । ଏଇ ଅସୁର-ମେରୋଡ଼ାଚ୍ ବା ଅହୁରମେଜଦା ହେଉଚଂତି ମହାଦେବତା, ସେଇ ହେଉଚଂତି ବିଶ୍ୱଦେବ ଏକେଶ୍ୱର । ହେଲେହେଁ ଏଇ ଅହୁର ମେଜଦାଂକ ଧର୍ମରେ ମଧ୍ୟ ଅହୁର ନାମରେ ସେଇ ଅସୁରଂକର ପ୍ରତିପତ୍ତି ଓ ପ୍ରଭାବ ଘୋଷିତ ହୋଇଥିଲା । ଦେବଭୂମି ପୂର୍ବପାରସ୍ୟ ଓ ପଶ୍ଚିମୋତ୍ତର ଭାରତରେ ଯେପରି ଦେବମାନ ଈଶ୍ୱରାଂଶୀ ବା ଉତ୍ତମ ବୋଲି ଓ ଅସୁରମାନେ ଖାଭସ୍ତ ଓ ଘୃଣିତ ବୋଲି ବର୍ଣ୍ଣିତ ହୋଇଥିଲେ, ସେଇପରି ପଶ୍ଚିମପାରସ୍ୟର ଅସୁର ପ୍ରଭାବିତ ଭୂମି ଖଂଡ଼ ଅର୍ଥାତ୍ ଅସୁର ଓ ବ୍ୟାବିଲନ ପ୍ରଭୃତି ଦେଶରେ ମଧ୍ୟ ଅସୁରମାନେ ଈଶ୍ୱରାଂଶୀ ବା ଉତ୍ତମ, ଦେବମାନେ ଖାଭସ୍ତ ଓ ଘୃଣିତ ବୋଲି ଘୋଷିତ ହୋଇଥିଲେ ।

## ଆଦିମ ଏକେଶ୍ୱର ବାଦ—

ଏଇ ଅସୁର ଧର୍ମଟି ଆମ ବୈଦିକ କାଳରେ ସେ ଅଚଂଳରେ ପ୍ରଚ୍ଚଳିତ ହୋଇଥିଲା । ତାର ଏକାଂତ ଉପାସ୍ୟ ଥିଲେ ଅହୁରମେଜଦା । ଏଇଠାରେ ପ୍ରଥମେ ଈଶ୍ୱର ନିର୍ଦ୍ଦେଶିତ ଧର୍ମ (Religion of revilation) ଇତିହାସରେ ମାନବ-ସମାଜରେ ପ୍ରଥମେ ପ୍ରଚ୍ଚଳିତ ହୋଇଥିଲା ବୋଲି ପ୍ରମାଣ ମିଳେ ।

## ଏଥିରୁ ବାହାରିଲା କ୍ରମେ ଯିହୋଭାଂକ ଖ୍ରୀଷ୍ଟଧର୍ମ ପ୍ରଭୃତି—

ଏଇ ଅହୁର ମେଜଦାରୁ କ୍ରମେ କିପରି ସେକାଳରେ ପାରସ୍ୟରେ ବଂଦୀ ହୋଇଥିବା ପାଲେସ୍ଟାଇନର ଜିଉ (ଇହୁଦୀ ମାନେ ନିଜର ଜାତ୍ୟାଭିମାନ ଓ ଅହଂକାର ଯୋଗୁ ଆପଣାର 'ଜିଓଏ' ନାମକ ସାଂପ୍ରଦାୟିକ ଦେବତାର ଅହୁର ମେଜଦା ଅନୁକରଣରେ ସେ ବିଶ୍ୱର ଈଶ୍ୱର 'ଜିହୋଦା' ରେ ପରିଣତ କରିଥିଲେ ଓ ସେହି ଜିହୋଦାରୁ କାଳକ୍ରମେ କିପରି ଈଶ୍ୱର ନିର୍ଦ୍ଦେଶମାନ କ୍ରମେ ଯିଶୁଖ୍ରୀଷ୍ଟ ଓ ଅନ୍ୟାନ୍ୟ କ୍ଷୁଦ୍ରତର ଧର୍ମ ନିର୍ଦ୍ଦେଶକମାନେ ଓ ପରିଶେଷରେ ଈଶ୍ୱରଦୂତ ମହମ୍ମଦ ପ୍ରଭୃତି ବାହାରିଥିଲେ, ତାହା ସାଧାରଣ ଇତିହାସର କଥା ହେଲେହେଁ ଏଇଠାରେ ମନେ ରଖିବାର ଅଛି । ଏଥିରୁ ଭିନ୍ନ ମାନବସମାଜର ଅନ୍ୟଧର୍ମଟି ହେଉଚି ଅଧ୍ୟାତ୍ମ ଧର୍ମ । ସେ ବିଷୟରେ ଜୈନଧର୍ମ ଆଲୋଚନା ବେଳେ ବିଶେଷ କରି କୁହାଯାଇଚି ।

## ଭାରତରେ ଏକ ଈଶ୍ୱର ନିର୍ଦେଶିତ ଧର୍ମର ପ୍ରଭାବ—

ଠିକଏ ଅବାଂତର ହେଲେ ମଧ୍ୟ ଏଠାରେ କୁହାଯାଇପାରେ, ଏଇ ଧର୍ମର ପ୍ରଭାବରେ ପରବର୍ତ୍ତୀ କାଳରେ ଉତ୍ତରପଶ୍ଚିମ ଭାରତରେ ଅତି ପ୍ରାଚୀନ ପାରସ୍ୟର ପ୍ରଥମ ଡେ଼ରାୟୁସ ପ୍ରଭୃତି ଆକମିନିସ୍ୟାନ ସମ୍ରାଟମାନେ, ପରେ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ଆଲେକଜାଂଡ଼ର ଓ ତା ପରେ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀଠାରୁ ବହୁ ଶତାବ୍ଦୀ ପର୍ଯ୍ୟଂତ ଗ୍ରୀକ୍‌ମାର ସାତ୍ରାପ୍ (କ୍ଷେତ୍ରପ) ମାନଂକ ପ୍ରଭାବରେ ପ୍ରଭାବାନ୍ୱିତ ଉତ୍ତରପଶ୍ଚିମ ଭାରତରେ ଏଇ ଜାଣସ୍ତ ଈଶ୍ୱରଂକଠାରେ ଆତ୍ମଦାନ ଓ ଆତ୍ମ ଉତ୍ସର୍ଗମୂଳକ ଭକ୍ତିଧର୍ମ ପ୍ରଚଳିତ ହୋଇଥିଲା । ଏହାର ନାମ ହେଉଛି ଐକାଂତିକ ଧର୍ମ, ଅର୍ଥାତ୍ ଏକ ଈଶ୍ୱରରେ କେବଳ ଭକ୍ତି କରିବା ଧର୍ମ । ପ୍ରଥମେ ହୁଏତ ବୌଦ୍ଧଧର୍ମର ମହାଯାନର ପୂର୍ବବର୍ତ୍ତୀ ମହାସଂଘିକବାଦ ଏହାର ପ୍ରଭାବର ଫଳ । ମହାଯାନଟି ଯେ ଯଥାର୍ଥ ବୌଦ୍ଧଧର୍ମ ନୁହେ ଏହା ପରେ କୁହାଯାଉଛି । ତା'ଛଡ଼ା ଏଇ ଅନୁକରଣରେ ଭାରତର ସେଇ ଅଂଚଳମାନଂକରେ ବାସୁଦେବ-କୃଷ୍ଣ ଓ ତାହାଂରୁ ପରବର୍ତ୍ତୀ ବୈଷ୍ଣବଧର୍ମମାନ ମଧ୍ୟ ବାହାରିଥିଲା । ସେ ଇତିହାସ ସଂବଂଧରେ ପ୍ରସଂଗାଂତରରେ ଅର୍ଥାତ୍ ଜୈନଧର୍ମର ପ୍ରଭାବ ବୁଝାଇଲାବେଳେ ଠିକଏ ବିଶେଷ କରି କୁହାଯାଉଛି ।

## ଏଇଥିରୁ ସାମ୍ରାଜ୍ୟବାଦ—

ଏଇ ଈଶ୍ୱର ଭାବର ନାନାବିଧ ବିକାଶ କଥା କହିବା ସଂଗେ ଆଉ ଗୋଟିଏ ପ୍ରାସଂଗିକ ପ୍ରକାଶ ପ୍ରତି ଲକ୍ଷ୍ୟ ରଖିବାର ଅଛି । ତା ହେଉଛି ରାଜ୍ୟ ଓ ସାମ୍ରାଜ୍ୟ ଭାବ । ଏଇ ଧର୍ମମାନଂକ ଇତିହାସରେ ବରାବର ଲୋକଂକୁ ଏକମୁଖୀ କରି ଏଇ ରାଜ୍ୟ ସାମ୍ରାଜ୍ୟ ଭାବ ସଂଗେ ମିଶାଇ, ସେଇ ଭାବକୁ ପୁଷ୍ଟ ଓ ବଳିଷ୍ଠ କରିବାର ଉଦ୍ୟମ ପୃଥିବୀରେ ବରାବର ହୋଇଆସିଛି । ଏପରିକି ସେଦିନ ମହାତ୍ମା ଗାଂଧୀ ମଧ୍ୟ ସାରା ଭାରତରେ ଏକ ପ୍ରକାର ପ୍ରାର୍ଥନା ସଭା ମତାଇ ଥିଲେ—ହୁଏତ ଧର୍ମ ନାମରେ ଜାତିକୁ ଏକ ଓ ଏକମୁଖୀ କରି ଶତ୍ରୁର ସମ୍ମୁଖୀନ କରିବା ପାଇଁ । ଏଇ ଧର୍ମର ପ୍ରଭାବ ଓ ପ୍ରଚାର ହେତୁ ମାନବସମାଜରେ ରାଜ୍ୟ-ସାମ୍ରାଜ୍ୟ ପ୍ରଭୃତି ବିକାଶ ପାଇଥିଲା ଓ ସେଇଭାବ ନାନାଭାବରେ ଏବେ ସଭ୍ୟମାନବକୁ ଘାରୁଛି । ସେ କଥା ଅବଶ୍ୟ ଏଠି ଆଉ ବିଶେଷ କରିବାର ନୁହେ ।

## ଈଶ୍ୱର ଧର୍ମରୁ ଭିନ୍ନ ଜୈନଧର୍ମ—

କିଂତୁ ଏସବୁ କଥା—ଈଶ୍ୱର ଧର୍ମ ସଂବଂଧରେ ଏସବୁ ବିକାଶ ଓ ବିସ୍ତାର ଗୋଟିଏ କଥା । ନାନା ପରିସ୍ଥିତି ହେତୁ ନାନା ଭାବରେ ଏସବୁ ବିକାଶ ପାଇଥିଲେ ମଧ୍ୟ ସୂଚନାରେ କୁହାଯାଇଛି । ଏ ସବୁ ଅଧ୍ୟାତ୍ମ ମଧ୍ୟରୁ ଭିନ୍ନ ଅଧ୍ୟାତ୍ମ ଧର୍ମର ମୂଳ

ହେଉଚ ଜୈନଧର୍ମ । ପୂର୍ବେ ଓଡ଼ିଶାରେ ଜୈନଧର୍ମ ପ୍ରତିଷ୍ଠିତ ଥିବା କଥାଟା ଜଣାଶୁଣା । ସାରଳା ଦାସଙ୍କ ଲେଖାରେ ତା'ର ଖୁବ ପ୍ରମାଣ ମିଳେ । ଅହିଂସା-ମୂଳକ ଥିବାରୁ ଜୈନଧର୍ମ ପୃଥିବୀରେ ପ୍ରସାର ପାଇ ପାରୁନାଇ । ଅବଶ୍ୟ ତତ୍ତ୍ୱତଃ ଏକଥା କେତେକ ପରିମାଣରେ ସତ୍ୟ ହେଲେ ମଧ୍ୟ ଏହାର ଯଥାର୍ଥ ବ୍ୟାପ୍ତି ଟିକିଏ ଭିନ୍ନ । ଇତିହାସରୁ ଜଣାଯାଏ ଯେ ଭାରତୀୟ ସମାଜକୁ ଶୃଙ୍ଖଳିତ କରିବାରେ ଜୈନ-ଧର୍ମର ଶକ୍ତି ବଡ଼ କମ୍ ନୁହେ । ଜୈନ ପରଂପରାରେ ଅଛି, ସ୍ୱୟଂ ମୌର୍ଯ୍ୟ ଚଂଦ୍ରଗୁପ୍ତ ଆଲେକଜାଂଡ଼ରଂକ ଭାରତ ଆକ୍ରମଣ ଠିକ୍ ପରେ ସମସ୍ତ ଭାରତକୁ ଏକ ସାମ୍ରାଜ୍ୟରେ ଶୃଂଖଳିତ କରିଥିଲେ । ମାତ୍ର ସେଇ ଚଂଦ୍ରଗୁପ୍ତ, ଦେଶରେ ଅନାବୃଷ୍ଟି ଓ ଦୁର୍ଭିକ୍ଷ ପଡ଼ିବାରୁ ଲୋକେ ନ ଖାଇ କି କଷ୍ଟରେ ରହୁଂଚନ୍ତି ଜାଣିବା ପାଇଁ ନିଜେ ଯାଇ ନିଜ ଜୈନଗୁରୁ ଭଦ୍ରବାହୁଂକ ସହିତ ଦାକ୍ଷିଣାତ୍ୟରେ ଅନାହାରରେ ପ୍ରାଣତ୍ୟାଗ କରିଥିଲେ । ଖାରବେଳ ମଧ୍ୟ ଏକ ବିରାଟ ସାମ୍ରାଜ୍ୟ ଶୃଂଖଳିତ କରି ତହିଁରେ ରାଜତ୍ୱ କରୁଥିଲେ । ତଥାପି ସେ ଯେତେବେଳେ ମଗଧରୁ ଜିନାସନକୁ କଳିଂଗ ଫେରାଇ ଆଣିବା ପାଇଁ ଯାଉଥିଲେ, ଠିକ୍ ସେତିକିବେଳେ କୌଣସି ଯବନରାଜ ମଗଧକୁ ଆକ୍ରମଣ କରିବାକୁ ଆସୁଥିବାରୁ ସେ ସେଥିରେ ନିଜର ସୁବିଧା ନ ଦେଖି ଆଗ ନିଜର ସୈନ୍ୟବଳ ନେଇ ସେଇ ଯବନକୁ ଦୂରକୁ ତଡ଼ିଦେବା ପାଇଁ ଆଗ୍ରା ପର୍ଯ୍ୟଂନ୍ତ ଯାଇଥିଲେ । ଶତ୍ରୁକୁ ଅସୁବିଧାରେ ପକାଇ କାର୍ଯ୍ୟ ସାଧନ କରିବା ଗୋଟିଏ ଯଥାର୍ଥ ହିଂସାତ୍ମକ ବୃତ୍ତି । ସେ ବୃତ୍ତିରେ ସେ ପରାଙ୍ମୁଖ ଥିଲେ । ପୁଣି ଦେଖ, ଅଶୋକଂକ କଳିଂଗ ବିଜୟ କଥା । କଳିଂଗ ବିଜୟବେଳେ, ଅଶୋକଥିଲେ ବୈଦିକ ଦେବଧର୍ମୀ, ଏହା ସ୍ପଷ୍ଟ । କଳିଂଗ ବିଜୟ ପରେ ଉପଗୁପ୍ତ ତାଂକୁ ବୌଦ୍ଧ ଦୀକ୍ଷାରେ ଦୀକ୍ଷିତ କରିଥିଲେ । କିଂତୁ ସେଇ କଳିଂଗ ବିଜୟରେ କଳିଂଗର ସମ୍ରାଟ କିଏ ଥିଲା, ଶିଳାଲିପି ବା ଅନ୍ୟ କୌଣସି ପ୍ରାମାଣିକ ଉପାୟରେ ସେକଥାର କୌଣସି ଉଲ୍ଲେଖ ମିଳୁନାଇ । ଏ ବିଷୟକ କୌଣସି ତେଲୁଗୁ ବା ତାମିଲ୍ କାବ୍ୟରେ ଥିବା ଯେଉଁ କଳିଂଗ ବଂଶୀ ଗୃରୁବାକ୍ଷାଂକ କଥା ଲେଖାଅଛି, ତା ବହୁକାଳ ପରଲେଖା ଓ ତା ଏକ କାଳ୍ପନିକ ମିଥ୍ୟା । ଗୃରୁବାକ୍ଷାଂକ ଲୋଭରେ ଅଶୋକ ଯେ ଯୁଦ୍ଧ କରିବାକୁ ଆସି ନ ଥିଲେ, ସେକଥା ପ୍ରମାଣ କରି ଦେଖାଇବା ଦରକାର ନାଇ । ଯଥାର୍ଥରେ ଯୁଦ୍ଧଟି ହୋଇଥିଲା, ମଗଧ ସାମ୍ରାଜ୍ୟ ସଙ୍ଗେ ବା ସମ୍ରାଟ ଅଶୋକଂକ ସଙ୍ଗେ କଳିଂଗର ଜୈନ ଜନତାର । ଅବଶ୍ୟ ସେଇ ଜୈନ ଜନତାକୁ ବୌଦ୍ଧ ବୋଲି କୁହାଯାଇଛି । ତାର କାରଣ ଅଛି । ତାର କାରଣ ହେଉଚ, ପ୍ରାୟ ସମସ୍ତେ ଜୈନମାନଂକୁ ଅଶୋକଂକ କାଳରୁ କ୍ରମେ ବୌଦ୍ଧ ବୋଲି ଲୋକେ ଗ୍ରହଣ କରି ଆସିଥିଲେ । କେବଳ ଯେଉଁମାନେ ନିଜର ଜୈନ ନାମ ରଖିବାକୁ ଲୋଡ଼ିଥିଲେ, ସେଇମାନେ ଏକା ତା ପରେ ଜୈନ ହୋଇ ରହିଲେ ଓ ପରେ କେବଳ ସଭ୍ୟତା ଓ ସଂସ୍କୃତି ଅବଲଂବନରେ ଏଇ ଧର୍ମ ବଢ଼ି ବଢ଼ି ଆଜିର ଅବସ୍ଥାକୁ ଆସିଚି । ବିଦେଶରେ ରାଜ୍ୟ ସାମ୍ରାଜ୍ୟ କରିବା ପାଇଁ ଜୈନମାନଂକୁ ପ୍ରେରଣା ବା ଅବକାଶ ମିଳିନାଇ ।

## ମୈତ୍ରୀ ଧର୍ମ ଓ କରୁଣା ଧର୍ମ—

ମୈତ୍ରୀଧର୍ମ ଏଠାରେ ବିଶେଷଭାବରେ ଦେଖିବାକୁ ହେବ । ଜୈନଧର୍ମଟି ହେଉଚି ମୈତ୍ରୀ ଧର୍ମ । ଏଥିରେ ସମ୍ରାଟ ହୁଅଂତୁ ବା କୃଷକ ହୁଅଂତୁ, ସମସ୍ତେ ସ୍ୱରାଟ, ଅର୍ଥାତ୍ ଆତ୍ମବାନ୍ । ବିଶ୍ୱର କେବଳ ମାନବ କାହିଁକି ଯେ କୌଣସି ପ୍ରାଣୀ ସଂଗେ ଏମାନଂକର ମୈତ୍ରୀ । ଦୁର୍ଭିକ୍ଷ ପଡ଼ିଲେ ମଧ୍ୟ ସାହାଯ୍ୟ କରି ଲୋକଂକୁ ବଂଚାଇବା ଆଡ଼କୁ ତାଂକର ମତ ନ ଯାଇ ଯାଏ ଦୁର୍ଭିକ୍ଷରେ ଲୋକେ କିପରି ରହଂଛି ତାହା ଅନୁଭବ କରି ତାଂକ ସଂଗେ ସମାନ ହେବା ପାଇଁ । ନିଜକୁ ବଡ଼ ମନେକରି ଦରିଦ୍ର ସେବାରେ ନିଜେ ପତିତପାବନଂକ ଅନୁକରଣରେ ସେଇଭଳି ନ ହୋଇ ଅନୁଭବରେ ସାମ୍ୟ ପ୍ରତିଷ୍ଠା କରି ମୈତ୍ରୀର ଆଚରଣରେ ଆତ୍ମଲାଭର ପ୍ରଚେଷ୍ଟା କରଂତି । ଏହାଇ ମୈତ୍ରୀ, ପୁଣି ଯାହାର ଆଦର୍ଶ ହେଉଚି ସବ୍ବ ସଂଭୋଗ ତ୍ୟାଗ ଅର୍ଥାତ୍ ତୃଷ୍ଣାତ୍ୟାଗ, ତାର ଅନ୍ୟ ପଂଥା ବା କଣ ହୋଇପାରେ ?

## କରୁଣା ଧର୍ମ—

ଦ୍ୱିତୀୟ ଧର୍ମଟି କୁହାଯାଇଚି, ଅନାତ୍ମ ଧର୍ମ ବା ଈଶ୍ୱର ଧର୍ମ । ତାହା କରୁଣା ଉପରେ ପ୍ରତିଷ୍ଠିତ । ଏଇ କରୁଣା ପ୍ରଥମେ ବୌଦ୍ଧଧର୍ମରେ ପ୍ରବେଶ କରି ବୁଦ୍ଧଂକୁ ମହା କରୁଣାମୟ ରୂପେ କଳନା କରି ମହାଯାନର ସୃଷ୍ଟି କରିଥିଲା । ସେଇଠାରୁ ଜୈନଭୂମି ଭାରତରେ ସବୁ ଈଶ୍ୱରଧର୍ମ, ଭକ୍ତିଧର୍ମ ବା କରୁଣାଧର୍ମ ପ୍ରବେଶ କଲା । ଈଶ୍ୱର ସବ୍ବଦା କରୁଣାମୟ ମୈତ୍ରୀଦେବ ନୁହଂତି । ଏଥିରେ ଜୈନଧର୍ମ ଆଉ ଭିତରେ ବା ବାହାରେ ସାମ୍ରାଜ୍ୟମାନ ବିସ୍ତାର କରି ଜୈନ ହୋଇ ରହିବ କିପରି ? ଚଂଦ୍ରଗୁପ୍ତ ମୌର୍ଯ୍ୟଂକ ଆଦର୍ଶରେ ସମ୍ରାଟ ହେବା ଅଂତତଃ ମହାଯାନ କାଳରୁ ଆଉ ପୃଥିବୀରେ କାହିଁକି ଏ ଭାରତରେ ତିଷ୍ଠିବା ସଂଭବପର ନୁହେ । ଏଥିରେ ଜୈନମାନେ ଅହିଂସ ଥିବାରୁ ଭାରତ ବାହାରେ ସାମ୍ରାଜ୍ୟ କରିପାରିଲେ ନାଇ, ଏକଥା ଖୁବ୍ କୁହାଯାଇପାରେ, କିଂତୁ ଯଥାର୍ଥତଃ ମନେହେଉଚି, ଏକଥା ଯେ ଭାବରେ କୁହାଯାଇଚି ଠିକ୍ ସେ ଭାବରେ ସତ୍ୟ ନୁହେ ।

## ଜୈନଧର୍ମ ବାହାରେ ସାମ୍ରାଜ୍ୟ ନ କରିବା କଥା ବିଚାରର ଆଉ ଗୋଟିଏ ଦିଗ—

ଆଉ ଗୋଟିଏ ଆଡ଼ୁ ମଧ୍ୟ ଏ କଥାଟି ଦେଖା ଯାଇପାରେ । ଜୈନଧର୍ମ ଆତ୍ମମୂଳକ ହେବାରୁ, ଏହା ବହୁ ପରିମାଣରେ ଖାଲି ବ୍ୟକ୍ତିଗତ ନୁହେ, ବ୍ୟକ୍ତିର ସଭ୍ୟତା ଓ ସଂସ୍କୃତି ସଂଗେ ଏହାର କ୍ରିୟା ଓ ପ୍ରଭାବ ପ୍ରତ୍ୟେକ ଲୋକଠାରେ ଭିନ୍ନ ଭିନ୍ନ । କୁହାଯାଇଛି, ଈଶ୍ୱରଧର୍ମରେ ମନୁଷ୍ୟ କିଛି ନ ବୁଝି ଆତ୍ମସମର୍ପଣ କଲେ ଏକମୁଖ ହୁଏ । ପୁଣି ଈଶ୍ୱରଧର୍ମୀ ବଡ଼ ଅସହିଷ୍ଣୁ । ଏକମୁଖ ହୋଇ ପ୍ରାର୍ଥନାଦ୍ୱାରେ

ଏକ ନ ହେଲେ ସେ ଅନ୍ୟକୁ ଦ୍ୱେଷାକରେ । ଖାଲି ଦ୍ୱେଷ କରେନାଇ, ହିଂସା କରେ । ଏହା ଈଶ୍ୱର ଧର୍ମ, ବୌଦ୍ଧଧର୍ମ ବା ଭକ୍ତି ଧର୍ମର ରୀତି—ନିତ୍ୟ ରୀତି ।

ସେଥିପାଇଁ ପୃଥିବୀର ଇତିହାସରେ ଦେଖାଯାଏ ଏଇସବୁ ମାନବସମାଜ-ମାନଙ୍କ ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ହୁଏ, ସେଥିରେ ଅପେକ୍ଷାକୃତ ଅସଭ୍ୟ ମାନବସଂହତି ବା ସମାଜ, ଅର୍ଥାତ୍, ଜାତି ତାଙ୍କଠାରୁ ବେଶୀ ସଭ୍ୟ ଥିବା ଜାତିଙ୍କୁ ଦୈହିକ ବଳରେ ସୈନ୍ୟସାମନ୍ତ ଦ୍ୱାରା ଜିଣିଯାଆନ୍ତି, କିନ୍ତୁ ଫଳରେ ହୁଏ, ପରେ ସେଇ ବିଜେତାମାନେ ଧର୍ମ ଓ ସଭ୍ୟତାରେ ବିଜିତ ହୋଇଯାଆନ୍ତି । ଏହାଇ ଭାରତରେ, ଗ୍ରୀସରେ ଓ ଅନ୍ୟତ୍ର ଘଟିଛି । ଭାରତରେ ଦ୍ରାବିଡ଼ମାନେ ଜୈନ ଥାଇ ବେଶୀ ବଳଶାଳୀ ଓ ସେକାଳର କ୍ଷିପ୍ର ଅଶ୍ୱରଥଚାଳକ ଆର୍ଯ୍ୟମାନଙ୍କଦ୍ୱାରା ବିଜିତ ହୋଇଛନ୍ତି ସତ, ସେଇ ଆର୍ଯ୍ୟମାନଙ୍କ ନାମରେ ଭାରତର ସଭ୍ୟତା ନାମିତ ହୋଇଛି । ଆଜି ଭାରତର ଦକ୍ଷିଣ ସୀମାନ୍ତ ଦ୍ରାବିଡମାନେ ମଧ୍ୟ ନିଜକୁ ଖାଲି ଆର୍ଯ୍ୟ ବୋଲି ପରିଚୟ ଦିଅନ୍ତି ସେତିକି ନୁହେଁ । କିନ୍ତୁ ଭାରତର ସାଂଖ୍ୟଠାରୁ ବେଦାନ୍ତଯାଏ ମହାଯାନ ସମେତ ଶକ୍ତି ଓ ବୈଷ୍ଣବବାଦ ସବୁ ଧର୍ମ ଏଇ ଦ୍ରାବିଡ଼ମାନଙ୍କ ଜୈନଧର୍ମ ଦ୍ୱାରା ପୁରାପୁରି ପ୍ରଭାବିତ ହୋଇ ରହିଛି । ସେ କଥା ପ୍ରସଙ୍ଗକ୍ରମେ ଅନ୍ୟତ୍ର କୁହାଯାଇଛି । ଏଠାରେ କହିବାର କଥା । ଯେଉଁ ଜୈନମାନେ ଏପରି ବିଜୟ କରିଚନ୍ତି, ସେମାନଙ୍କ ଏଇ ବିଜୟ ସେକାଳେ ସମସ୍ତ ଇଉରୋପରେ ମଧ୍ୟ ବ୍ୟାପି ଯାଇଥିବାର ପ୍ରମାଣ ମିଳେ ।

ଏବେ ଖ୍ରୀଷ୍ଟିୟାନ ଧର୍ମପରି ବିଭିନ୍ନ ଧର୍ମରେ ମଧ୍ୟ ଜୈନ ଧର୍ମର ସ୍ପଷ୍ଟ ପ୍ରଭାବ ଥିବା ଲକ୍ଷ୍ୟ କରାଯାଇ ପାରେ । ହିନ୍ଦୁଧର୍ମରେ ନିରାମିଷ ଭୋଜନ ପରି ଖ୍ରୀଷ୍ଟଧର୍ମରେ ମଧ୍ୟ ପ୍ରଥମେ ପାଇଥାଗୋରିୟାନ୍ ଓ ଗ୍ରୀକ୍ ଦର୍ଶନଠାରୁ ଖ୍ରୀଷ୍ଟପୂର୍ବ ପାଲେଷ୍ଟାଇନର ଏସିନ୍‌ମାନେ ତଥା, ସେକାଳ ଇଜିପ୍ଟ୍‌ର ଥେରାପିଉଟିକ୍ ନାମକ ଜୈନମାନେ ଯେ ପ୍ରଭାବ ରଖି ଯାଇଛନ୍ତି, ତାହା ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ । ଏଇପରି ନିଜର ଆତ୍ମ ପରିଚୟ ପର୍ଯ୍ୟନ୍ତର ଅହଂକାର ନ ରଖି ଜୈନମାନେ ଏକପ୍ରକାର ବିଶ୍ୱବିଜୟୀ । ପାର୍ଥିବ ସାମ୍ରାଜ୍ୟ ବିସ୍ତାର ବିଷୟରେ ଓ ବିଦେଶରେ ସାମ୍ରାଜ୍ୟ କରିପାରି ନାହାନ୍ତି ବୋଲି ତାଙ୍କ ସମ୍ବନ୍ଧରେ ଆକ୍ଷେପ କରିବାର କିଛିନାଇ ।

## ଜୈନଧର୍ମ ବି ନିଜେ ବିଦ୍ରୋହ ଓ ବିଜୟ—

ମାତ୍ର ଏ ସମସ୍ତ ଭିତରେ ଦେଖିବାର ଅଛି ପ୍ରକୃତତଃ ଜୈନଧର୍ମ ଓ ଈଶ୍ୱର ଧର୍ମ ଭିତରେ ତାଙ୍କୁ ତଳପା ପରି ପ୍ରଭେଦ । ଜୈନଧର୍ମ ଈଶ୍ୱରଧର୍ମଠାରୁ ସଂପୂର୍ଣ୍ଣ ଭିନ୍ନ । ମାତ୍ର ଏଇଠାରେ ଦେଖିବାର ଅଛି, ଜୈନଧର୍ମ ଆତ୍ମଜ୍ଞାନରେ ପ୍ରତିଷ୍ଠିତ ଥିବାରୁ ସେଥିରେ ମାନବ ଆତ୍ମସ୍ଥ ଓ ସ୍ୱାଧୀନ ହୁଏ । ମନୁଷ୍ୟକୁ ସବୁମଂତେ ଆତ୍ମୋତ୍ସର୍ଗରେ

ବାଧ୍ୟ କଲେ, ସେ ମନକୁ ବିଦ୍ରୋହରେ ଫୁଲାଉଠେ । ଏହିପରି ଆତ୍ମୋତ୍ସର୍ଗରେ ବାଧ୍ୟ କରିବାକୁ ଅତି ପ୍ରାଚୀନ କାଳରେ ଏହି ବିଦ୍ରୋହରେ ମନକୁ ଜୈନ ଜନଶ୍ରୁତି ବାହାରି ପଡ଼ିଥିଲା । ମନୁଷ୍ୟ ସର୍ବସ୍ୱ ସମର୍ପଣ କରିବାକୁ ବାଧ୍ୟ କଲେ ସେ ତାହା ମୁଣ୍ଡ ପୋତି ସହିବା ସ୍ୱାଭାବିକ ନୁହେଁ । ଯଥାର୍ଥରେ ଏଇଠାରେ ଅତି ଅଧମ କାଳରେ ନା ଆତ୍ମ-ଜ୍ଞାନର ପ୍ରତିଷ୍ଠା ଓ ଆତ୍ମିକ ସ୍ୱାଧୀନତାର ଆରମ୍ଭ ହୋଇଥିଲା । ଏତିକବେଳେ ସେ ବୁଝିଥିଲା ସବୁ ଉପୁଜାଇ ସେ ନିଜର ସମ୍ଭୋଗ ଓ ସୁଖ ସ୍ୱାଚ୍ଛନ୍ଦ୍ୟ ନିମନ୍ତେ ରଜା, ସମ୍ରାଟଙ୍କଠାରେ ଆତ୍ମସମର୍ପଣ କରିବାଠାରୁ ସମସ୍ତ ସମ୍ଭୋଗ ତୃଷ୍ଣା ପରିତ୍ୟାଗ କରି ସାଧନା ଫଳେ ମନୁଷ୍ୟର ଆତ୍ମପ୍ରତିଷ୍ଠାର ଧର୍ମ ଆରମ୍ଭ ହୋଇଥିଲା । ସେଇ ହେଉଛି ଜୈନଧର୍ମ ।

## ଜୈନଧର୍ମର ମୂଳ ପ୍ରକୃତି—

ଆଉ ଟିକିଏ ବୁଝାଇ କହିଲେ ବୁଝାଯିବ ଯେ ଈଶ୍ୱରଧର୍ମ ବା ଭକ୍ତିଧର୍ମରେ ମାନବକୁ ଜିଣିବା ଓ ନିଜ ମତରେ ଅନୁକୂଳ କରିବା ଓ ନିଜ ଭାବରେ ଅଙ୍ଗୀଭୂତ କରିବା ପ୍ରଭୃତି ସ୍ପଷ୍ଟ ବିକାଶ ପାଇଥିଲା । କିନ୍ତୁ ଜୈନଧର୍ମରେ ମନୁଷ୍ୟ ଭିତରକୁ ଗୁହିଁଲା । ନିଜକୁ ଜୟକଲେ ଅଉ କାହାକୁ ଅପେକ୍ଷା କରିବା ଦରକାର ନାହିଁ ବୋଲି ମନୁଷ୍ୟ ଏଇଠାରେ ପ୍ରଥମେ ଭାବିଲା । ଏହାହିଁ ଆତ୍ମାକୁ ଜିଣିବା ଲୋକର ଧର୍ମ । ସେ ଏଇପରି ଆତ୍ମାକୁ ଜିଣେ ବା ବାହାର ସମ୍ପର୍କକୁ ଛାଡ଼ି ସମ୍ପୂର୍ଣ୍ଣ ଆତ୍ମସ୍ଥ ହୁଏ, ସେଇ ହେଉଛି ଯଥାର୍ଥ ଆତ୍ମବିଜେତା ବା ଜିଣ; ତାହାର ଧର୍ମ ହେଉଛି ଜୈନଧର୍ମ । ଏଇ ଜୈନ-ଧର୍ମ ସଙ୍ଗେ ସଙ୍ଗେ ତୃଷ୍ଣାର ସ୍ଥାନ ବା ଇନ୍ଦ୍ରିୟମାନଙ୍କୁ ଜିଣି ଆତ୍ମସ୍ଥ ହେବାରେ କାଳକ୍ରମେ ଗୋଟିଏ ସାଧନାମାର୍ଗ ମଧ୍ୟ ଫିଟିଥିଲା ।

## ଏଇ ଜୈନତତ୍ତ୍ୱଟି କଣ ?—

ଜଗତର ଅନୁଭବ, ଦୁଇଟି ଅବିଚ୍ଛିନ୍ନ ବିଭାଗରେ ପରସ୍ପର ସମ୍ବନ୍ଧରେ ରହିଛି । ଏଇ ଅବିଚ୍ଛିନ୍ନ ବିଭାଗ ଦୁଇଟି ହେଉଛି ଜୀବ ଓ ଅଜୀବ । ଜୀବ ଓ ଅଜୀବ ଦୁଇଟି ପରସ୍ପର ସମ୍ବନ୍ଧରେ ଆସିବାରୁ ଜଗତରେ ସବୁ ନାମ, ରୂପ ସମ୍ଭବ ହୋଇଛି । ଏଇ ନାମ ରୂପମୟ ଜଗତ ଯେପରି ସତ୍ୟ ତାର ଅବିଚ୍ଛେଦ୍ୟ ସମ୍ବନ୍ଧରେ ଥିବା ଜୀବ ମଧ୍ୟ ସେହିପରି ସତ୍ୟ । ଏଇ ଜୀବରୁ ଅଜୀବର ସମ୍ପର୍କ ତୁଟାଇ ଦେଇ ଜୀବ ହୁଏ ସ୍ୱାଧୀନ । ତାହାକୁ କହନ୍ତି କେବଳ ଜୀବ । ଏଇ କେବଳ ଜୀବର ଯେ ଅଧିକାରୀ ସେଇ ହେଉଛି କେବଳୀ । ଏଇ କେବଳୀର ଅବସ୍ଥାକୁ ବୁଝାଯାଏ କୈବଲ୍ୟ । ଏଇ କୈବଲ୍ୟରେ ସାଧକର ସିଦ୍ଧି ହୁଏ । ଭାରତୀୟ ଧର୍ମମାନଙ୍କର ଏହାକୁହିଁ କହନ୍ତି ମୁକ୍ତି ।

## କର୍ମ ଓ ସାଧନା—

କର୍ମ ହେତୁ ଏଇ ଜୀବ ଓ ଅଜୀବର ଅବିଚ୍ଛେଦ୍ୟ ସମ୍ପର୍କ ଲଗିରହିଛି । କର୍ମର ଅବସାନ ହେଲେ ଏଇ ସମ୍ବନ୍ଧ ଛିନ୍ନ ହେବ । ଏଇ କର୍ମର ସ୍ଥାନ ହେଉଛି ତୃଷ୍ଣା ବା ଭୋଗସ୍ପୃହା । ଭୋଗସ୍ପୃହା ନଥିଲେ କର୍ମ ନାଇ କି ଜୀବ ଓ ଅଜୀବର ସମ୍ବନ୍ଧ ନାଇ । ଏଇ ତୃଷ୍ଣାକୁ ତ୍ୟାଗ କରିବାର ସମସ୍ତ ଉଦ୍ୟମ ହେଉଛି ଜୈନର ସାଧନା । ଏଇ ଜୈନଧର୍ମ ପୀଠରେ ପୃଥିବୀର ଅଧ୍ୟାତ୍ମ ଧର୍ମ ପ୍ରତିଷ୍ଠିତ । ଏଇ ଅଧ୍ୟାତ୍ମ ଧର୍ମ ପୃଥିବୀରେ ଯେତେ ଧର୍ମ ଅଛି, ନାନାଭାବରେ ତାକୁ ପ୍ରଭାବିତ ମଧ୍ୟ କରିଛି । ଭାରତର ଧର୍ମ—ବିଶେଷରେ ହିନ୍ଦୁମାନଙ୍କ ଧର୍ମରେ—ଏହାର ପ୍ରଭାବ ଖୁବ୍ ଦେଖାଯାଏ । ଅନେକ ଉପାଖ୍ୟାନ ପ୍ରଚଳିତ ଅଛି, ଯାହା ଦେଖିଲେ ପୃଥିବୀର ପ୍ରାଚୀନ ଦେଶମାନଙ୍କ ଭିତରେ ଅନ୍ତତଃ ଭାରତଠାରୁ ଇଉରୋପଯାଏ ଆଦାନ ପ୍ରଦାନର ଐତିହାସିକ ପ୍ରବାହ ବିଷୟର ଦେଖିବାକୁ ମିଳେ । ଏଥିରେ ନାନା ଉପାଖ୍ୟାନ ସଙ୍ଗେ ନାନା ଆଖ୍ୟାୟିକା ମଧ୍ୟରେ ଧର୍ମର ପ୍ରବାହ ଲୁଚି ରହିଛି । ଧର୍ମ ସଙ୍ଗେ ସମାଜର ନିତ୍ୟ ସମ୍ପର୍କ । ସାମାଜିକ ଉପାଖ୍ୟାନ—ଧର୍ମର କୌଣସି ସାକ୍ଷାତ ସମ୍ବନ୍ଧ ନଥିଲା ପରି ଲାଗିଲେ ମଧ୍ୟ ବହୁତ ଦେଖାଯାଏ । ସେକଥା ଏବେ ଥାଉ । ଏବେ ଜୈନଧର୍ମର ଆଦି ବିକାଶ ସମ୍ବନ୍ଧରେ ଦୁଇଟି ସ୍ପଷ୍ଟ ଉପାଖ୍ୟାନର କଥା ଆଗ କୁହାଯାଉ ।

## ଜୈନଧର୍ମର ଆଦିବିକାଶ—ଋଷ୍ୟଶୃଙ୍ଗ ଓ ଇଥ୍ବା-ବାଣୀ ଉପାଖ୍ୟାନ—

ଏଇ ଜୈନଧର୍ମର ଆଦିବିକାଶ ବୁଝିବାରେ ଯୋଡ଼ିଏ ଉପାଖ୍ୟାନ ପ୍ରତି ଲକ୍ଷ୍ୟ କରାଯାଉ ।

**୧-ଋଷ୍ୟଶୃଙ୍ଗ**—ଆମ ଭାରତର ଓ ପୁରାଣରେ ଥିବା ଋଷ୍ୟଶୃଙ୍ଗ ମୁନିଙ୍କ ଉପାଖ୍ୟାନ ସମସ୍ତେ ଜାଣିଥିବେ । ବିଭାଣ୍ଡକ ମୁନିଙ୍କର ଋଷ୍ୟଶୃଙ୍ଗ ବୋଲି ଗୋଟିଏ ପୁଅଥିଲା ତାଙ୍କ ଆଶ୍ରମ ଥିଲା କୌଶିକୀ ନଦୀକୂଳରେ । ସେଇ ଆଶ୍ରମରେ ବାପ ସେଇ ପୁଅଟିକୁ ଯେନ ବିଲବର ମାନବସମାଜର ସମସ୍ତ ସମ୍ପର୍କ ଛାଡ଼ି ବଣରେ ରହୁଥିଲେ । ସେ ପୁଅଟି ବିଲବର ପଶୁମାନଙ୍କ ସଙ୍ଗେ ତାଙ୍କ ସାହଚର୍ଯ୍ୟରେ ବଢ଼ୁଥିଲା । ଏପରି କି ବନ୍ୟଫଳ ମୂଳ, ପତ୍ରାଦି ଖାଉଥିଲା ଓ ଝରଣାରୁ ପାଣି ପିଉଥିଲା । ତାର ଜଟା ସବୁ ଏପରି ବଢ଼ି ଯାଇଥିଲା ଯେ, ସେସବୁ ଦେଖିଲେ ହରଣଶିଂଘ ବୋଲି ମନେ ହେଉଥିଲା । ପୁରାଣ କହିଚନ୍ତି, ସେ ବିଭାଣ୍ଡକଙ୍କଠୁ ହରଣୀଗର୍ଭରେ ଜାତହେବାରୁ ତାଙ୍କର ହରଣ ପରି ଶିଂଘଥିଲା ବୋଲି ତାଙ୍କ ନାମ ହୋଇଥିଲା ଋଷ୍ୟଶୃଙ୍ଗ । ବିଭାଣ୍ଡକ ଅନେକ ସମୟରେ ଅନୁପସ୍ଥିତ ରହୁଥିଲେ । କାଳକ୍ରମେ ସେଇ ଋଷ୍ୟଶୃଙ୍ଗଙ୍କର ଅଦ୍ଭୁତ କ୍ଷମତା ଅଛି ବୋଲି ଲୋକସମାଜରେ ଖୁବ୍ ପ୍ରଚାର ପାଇଥିଲା । ଏ ମଧ୍ୟରେ ଅଙ୍ଗ ରାଜ୍ୟରେ ବହୁକାଳ ଲଗି ଅନାବୃଷ୍ଟି ହେବାରୁ ଘୋର ଦୁର୍ଭିକ୍ଷ ଓ ମଡ଼କ ବ୍ୟାପି ରହିଲା । କି

ପ୍ରତିକାର କରିବାକୁ ହେବ ବୋଲି ମନୀଷୀମାନେ ଚିନ୍ତିତ ହୋଇ ଅଂଗରାଜ ଲୋମପାଦଂକୁ ପରାମର୍ଶ ଦେଲେ । "ଆପଣ ଋଷ୍ୟଶୃଂଗ ମୁନିଂକୁ ଆଣିଲେ ବର୍ଷା ହେବ ଓ ଦୁର୍ଭିକ୍ଷ ମଡ଼କ ଆଦିର ଆଶୁ ପ୍ରତିକାର ହେବ ।" ଋଷ୍ୟଶୃଂଗ ଅାଣିବେ କପରି ? ବେଶ୍ୟାମାନଂକୁ ଡ଼କାଗଲା । ସେମାନେ ମନସ୍ୱୀ ଓ ଦୃଢ଼ବ୍ରତ ଋଷ୍ୟଶୃଂଗଂକ ପାଖକୁ ଯିବାକୁ ଡ଼ରିଲେ । ଶେଷକୁ ଗୋଟିଏ ବୃଦ୍ଧା ବେଶ୍ୟା ରାଜିହୋଇ ନିଜର କନ୍ୟା ଓ ଅନ୍ୟ ସୁନ୍ଦରୀ ଯୁବତୀମାନଙ୍କୁ ଧରି ଗୋଟିଏ ନୌକା ସଜାଡ଼ି ସେଥିରେ ନଦୀକୂଳରେ ଥିବା ସେଇ ଆଶ୍ରମକୁ ଗଲେ । ବିଭଂଡ଼କ ନ ଥିଲା ବେଳେ ସେଇ ଯୁବତୀମାନେ କୌଣସି ପ୍ରକାରେ ନିଜ ଗୃହୁମୂଷ୍ଟିରେ ଋଷ୍ୟଶୃଂଗକୁ ଭୁଲାଇ ଅଂଗକୁ ଘେନି ଆସିଲେ । ସେ ଆସି ଅଂଗରେ ପହଞ୍ଚିବା ମାତ୍ରେ ବର୍ଷା ହେଲା, ମଡ଼କ ଗଲା, ସୁଭିକ୍ଷ ହେଲା ।

ତା ପରେ ସେଇ ଋଷ୍ୟଶୃଂଗ ଏଇପରି ଅନ୍ୟାନ୍ୟ ଅନେକ ସୁକାର୍ଯ୍ୟ କରି ଅନ୍ୟ ରାଜ୍ୟମାନ ରକ୍ଷା କରିଥିବା କଥା କିଂବଦଂତୀ କହୁଂଛି ଓ ସେଇ କିଂବଦଂତୀରୁ ଜଣାଯାଏ ଯେ ଅଂଗରାଜ ଲୋମପାଦ ସନ୍ତୁଷ୍ଟ ହୋଇ ନିଜ କନ୍ୟା ଶାଂତାଂକ ସଂଗେ ଋଷ୍ୟଶୃଂଗଂକୁ ବିବାହ କରାଇ ଦେଇଥିଲେ । ସେ ଋଷ୍ୟଶୃଂଗ ଗୋଟିଏ ପୁତ୍ର ସନ୍ତାନ ଲାଭ କଲା ପରେ ସବୁ ଛାଡ଼ି ପୁଣି ବଣକୁ ଯାଇ ତପସ୍ୟାରେ ନିବିଷ୍ଟ ରହିଥିଲେ । ଜଣାଯାଏ, ଏଇ ଋଷ୍ୟଶୃଂଗ ଥିଲେ ଗୋଟିଏ ଶ୍ରେଷ୍ଠ ଜୈନମୁନି । ପରେ ସମ୍ଭୋଗରେ ଲିପ୍ତ ହୋଇ ଗୃହସ୍ଥାଶ୍ରମ କରିଥିଲେ ସତ, ମାତ୍ର ଏହାଂକର ଅସାମାନ୍ୟ ଶକ୍ତି ହ୍ରାସ ହୋଇ ନ ଥିଲା । ଏ ରାଜା ମହାରାଜାମାନଂକ ଉପକାରରେ ମଧ୍ୟ ଅତ୍ୟଂତ ସମର୍ଥ ଥିଲେ । ଅବଶ୍ୟ ଏ ଗପଟି ଗୋଟିଏ ପାରଂପରିକ ଉପାଖ୍ୟାନ । କେତେ ପ୍ରାଚୀନ କହିହେବ ନାଇ ।

## ଏଇ ସଂବଂଧୀୟ ସୁମେରୀୟ ଗଳ୍ପର କାଳରେ ପ୍ରାଚୀନତା—

କିନ୍ତୁ କାଳରେ କେତେକ ପରିମାଣରେ ଜଣାଥିବା ଠିକ୍ ଏଇପରି ଗୋଟିଏ ସୁମେରୀୟ ଉପାଖ୍ୟାନ ପ୍ରାଚୀନ ବ୍ୟାବିଲନ ବା ସୁମେର ଦେଶର ପରଂପରାରେ ମିଳେ । ପଂଡ଼ିତମାନେ ସେଇ ଦେଶର ଲେଖ ଓ ପ୍ରାଚୀନ ବର୍ତ୍ତୁଳ ମୁଦ୍ରା (Cylinder Seal) ପ୍ରଭୃତିରୁ ଏଇ ଗଳ୍ପଟି ପାଉଂଛି । ପରେ ଏଇ ଗଳ୍ପକୁ ଘେନି ସେ ଦେଶର ସେ କାଳର ଲେଖରେ ୧୨ଟି ଲେଖପଟା ବା ଫଳକ ଉଥାପିତ ହୋଇଥିଲା । ଆଜକୁ ପ୍ରାୟ ୮୦ ବର୍ଷ ତଳେ ପଂଡ଼ିତମାନେ ଅସୁରଦେଶର ସେ କାଳର ସମ୍ରାଟ ଅସୁର ବନିପାଲଂକ (ଖ୍ରୀ: ପୂ ୬୬୮ରୁ ୬୨୬) ସଂଗୃହୀତ ସେଇ ବିରାଟ ଫଳକାଗାର ପାଇଚଂଛି । ଏସବୁ ଶୁଖିଲା ବା ପୋଡ଼ା ମାଟି ପଟା ଉପରେ ସେକାଳର କୋଣଶୀର୍ଷ (Cuniform) ଅକ୍ଷରରେ ଲେଖା ହୋଇଥିଲା । ଅସୁର ବନିପାଲ ନିଜର ବିରାଟ ସାମ୍ରାଜ୍ୟ ଭିତରୁ ସେସବୁ ସଂଗ୍ରହ କରି ଏବର

ପୁସ୍ତକାଗାର ପରି ଗୋଟିଏ ବିରାଟ ଫଳକାଗାର ତିଆରି କରିଥିଲେ । ସେଥିରେ ପ୍ରାୟ ୮୦ ହଜାର ଫଳକ ମିଳିଛି । ତା ମଧ୍ୟରେ ଏ ୧୨ଟି ଫଳକ ଥିଲା । ଏ ବାରଟି ଖ୍ରୀଷ୍ଟପୂର୍ବ ପ୍ରାୟ ଦୁଇହଜାର ବର୍ଷ ପୂର୍ବେ ଲେଖା ହୋଇଥିବ; କାରଣ ଏହା ସେଇ କାଳ ଲିପି ହେଲେ ହେଁ ଏଥିରେ ଯେଉଁ ଗଳ୍ପ ବା କଂବଦଂତୀ ଅଛି, ତାହା ଯେଉଁ ସୁମେର ଦେଶ ଉପରେ ପରେ ବ୍ୟାବିଲନ ଦେଶ ପ୍ରତିଷ୍ଠିତ ହୋଇଥିଲା, ସେଇ ସୁମେର ଦେଶର ଆଦ୍ୟକାଳର ଇରେକ ନାମକ ସହର ବା ସହର ରାଜ୍ୟର ଘଟଣା । ତେଣୁ ଏ ଘଟଣା ଆଜକୁ ଅଂତତଃ ପାଂଚ ହଜାର ବର୍ଷରୁ ଅଧିକ କାଳର କଥା । ଏଥିରେ ସେଇ ଇରେକ ରାଜ୍ୟର ଯେଉଁ ଗଳ୍ପଟି ଅଛି, ତା ନିମ୍ନରେ ଦିଆଗଲା ।

## ୨-ଇସ୍ତା-ବାଣୀ—

ଇରେକର ସମ୍ରାଟ୍ ଥିଲେ ଅତି ପରାକ୍ରମୀ ଓ ବଳବଂତ ଗିଲଗାମେସ । କିଂତୁ ସେ ଇରେକ ଶାସନ କରିବାରେ ଦକ୍ଷତା ଦେଖାଇ ପାରିଲେ ନାଇ । ଇରେକରେ ଆକ୍ରମଣଜନିତ ପରାଜୟ ଓ ତହିଁ ସଂଗେ ସଂଗେ 'ମହାମାରୀ ବ୍ୟାପିଲା । ସେଥିପାଇଁ ଜଣେ ମହାପୁରୁଷ ସାହାଯ୍ୟ କରିବା ପାଇଁ ଦରକାର ବୋଲି ସ୍ଥିର କରାହେଲା । ଘୋର ଜଂଗଲରେ ଥିଲେ ଇସ୍ତା-ବାଣୀ ଅର୍ଥାତ୍, ସେ କାଳର ଶ୍ରେଷ୍ଠ ଦେବତା ଇସ୍ତାଂକ ପ୍ରିୟ (କେହି କେହି ପଢ଼ିଚଂତି, ଏଂକଡ୍ରୋ) ନାମକ ସେଇ ମହାପୁରୁଷ । ସେ ମନୁଷ୍ୟ ସମାଜ ଦେଖି ନାହାନ୍ତି । ପଶୁ ପକ୍ଷୀଂକ ସଂଗେ ଫଳମୂଳ ଖାଇ ଝରଣାରୁ ପାଣି ପିଇ ରହୁଂଛ । ସେଥିପାଇଁ ତାଂକର ବାଳ ବଢ଼ି ଶିଂଗପରି କଣ୍ଟାମାନ ହୋଇଥିଲା । ଦେହର ରୁମ ନଖ ସବୁ ବଢ଼ି ଯାଇଥିଲା ଓ ଲେଖାଅଛି ତାଂକର ପାଦ ସ୍ଥାନରେ ହୋଇଯାଇଥିଲା ବଡ଼ ବଡ଼ ଶାଗୁଣାର ନଖଯୁକ୍ତ ପାଦ ପରି ପାଦ । କିଂତୁ କଥା ଥିଲା, ତାଂକର କ୍ଷମତା ଅଦ୍ଭୁତ । ତାଂକୁ ଆଣିଲେ ଇରାକ ରାଜ୍ୟର ଉଦ୍ଧାର ହେବ । ତାଂକୁ ବଣରୁ ସହରକୁ ଆଣିବା ପାଇଁ ଜଣେ ବ୍ୟାଧକୁ ବରାଦ କରାଗଲା । ବ୍ୟାଧ ତାଂକୁ ଆଣିବାକୁ ଅସମର୍ଥ ହୋଇ ଶେଷକୁ ଇସ୍ତର ଦେବୀଂକ ମଂଦିରରୁ ଗୋଟିଏ ସୁଂଦରୀ ଯୁବତୀ ଦେବଦାସୀଙ୍କୁ ପଠାଇଲା । ତାଂକୁ ଭୁଲାଇ ସହରକୁ ଆଣିବା ପାଇଁ, ସେ ଯୁବତୀ ବାରନାରୀ; କୌଶଳରେ ତାଂକୁ ହାତ କଲେ । ଯୁବତୀ ବାରନାରୀଂକ ପ୍ରେମରେ ପଡ଼ିବାରୁ ତାଂକ ସଂଗେ ମୁଖରେ ଥିବା ବଣ୍ୟ ପଶୁମାନେ ଆଉ ତାଂକ ପାଖ ପଶିଲେ ନାଇ ବୋଲି ଲେଖା-ଅଛି । ସେ ଆସି ଇରେକ ରାଜ୍ୟରେ ରାଜା ଗିଲଗାମେସଂକ ସଂଗରେ ଶତ୍ରୁମାନଂକୁ ଜିଣିଲେ ଓ ସେ ରାଜ୍ୟରୁ ପରାଜୟ ଓ ତହିଁ ସଂଗେ ସଂଗେ ମଡ଼କ ଘୁଞ୍ଚିଗଲା । ଏହିପରି ତାଂକ ଅଦ୍ଭୁତ କ୍ଷମତା ଫଳରେ ସବୁ ବଦଳିଗଲା । ଲୋକେ ମହା ସୁଖରେ ରହିଲେ । ଶେଷକୁ ସେ ପୁଣି ବଣକୁ ଫେରିଯାଇ ପୂର୍ବପରି ତପସ୍ୟା କରିତ ରହିବାକୁ ଇଚ୍ଛା କଲେ ନାଇଁ; କିନ୍ତୁ ସେ ରାଜା ଗିଲଗାମେସଂକ ସଂଗରେ ରହିଲେ ।

ବହୁ ସମ୍ମାନ ଓ ଉଚ୍ଚ ପଦର ଅଧିକାରୀ ହେବେ ବୋଲି ତାଂକୁ ଲୋଭ ଦେଖାଇ ଗିଲଗାମେସଙ୍କ ସଂଗେ ରହିବାକୁ ନିଜେ ସୂର୍ଯ୍ୟଦେବତା ଅନୁରୋଧ କରିଥିଲେ । ତେଣୁ ସେ ଗିଲଗାମେସଙ୍କ ସଂଗେ ରହିଲେ ।

## ଉପାଖ୍ୟାନ ଦୁଇଟିର ସଂକେତ—

ଭାରତୀୟ ଉପାଖ୍ୟାନଟିରେ ଗୋଟିଏ କଥା ଲେଖାନାଇ । ସେ ଯୁବତୀ ପ୍ରେମରେ ପଡ଼ିବାରୁ ବଣର ପଶୁମାନେ ତାଂକ ସଂଗ ତ୍ୟାଗ କଲେ । ଏହା ଭାରତୀୟ ଉପାଖ୍ୟାନରେ ନାଇ । କିଂତୁ ଏପରି ଲୋକସମାଗମ ତଥା ନାରୀ ସମାଗମ ନ ଥିବା ଲୋକର କ୍ଷମତା ଯେ ଅଭୂତ ଭାବରେ ବଢ଼ିଯାଏ, ଏହା ଦୁଇଟି ଉପାଖ୍ୟାନରେ ଅଛି । କିଂତୁ ସୁମେରୀୟ ଉପାଖ୍ୟାନରେ ସେଇ ରାଜ୍ୟ ସାମ୍ରାଜ୍ୟ ବିଜୟ ବିରୁଦ୍ଧରେ ହିଁ ଏ ସିଦ୍ଧିର ପ୍ରୟୋଗ । ଭାରତୀୟ ଉପାଖ୍ୟାନରେ ତା ନୁହେ । ବରଂ ଏଥିରେ ଦୈବୀ ଦୁର୍ବିପାକ ଘୁଞ୍ଚିଗଲା । ଆଉରି ମଧ୍ୟ ଭାରତୀୟ ଉପାଖ୍ୟାନରେ ଅଛି ଯେ ଋଷ୍ୟଶୃଂଗ ନିଜର ଅଧ୍ୟାତ୍ମ କ୍ଷମତା ବଳରେ ଲୋକୋପକାର କରିସାରି ପୁଣି ବଣରେ ଯାଇ ପୂର୍ବପରି ତପସ୍ୟାନିରତ ରହିଲେ । କିଂତୁ 'ଇସ୍ତା-ବାଣୀ' ଭବିଷ୍ୟତରେ ବଡ଼ ହେବେ ବୋଲି ଆଶା ପାଇ ଲୋଭରେ ପଡ଼ି, ତପସ୍ୟା ପାଇଁ ପୁଣି ବଣକୁ ଯିବା କଥା ଛାଡ଼ିଦେଲେ । ଏ ଭେଦଗୁଡ଼ିକ ଅବଶ୍ୟ ଲକ୍ଷ୍ୟ କରିବାର ଜିନିଷ ।

## ଅପ୍‌ସରୀ ଓ ବେଶ୍ୟା—ସ୍ୱର୍ବେଶ୍ୟା—

ପୁଣି ଦେଖିବାର ଅଛି, ସୁମେରର ଈଶ୍ୱର ଦେବୀଂକ ପୀଠ, ଯୁବତୀ ଦେବଦାସୀମାନଂକର ସମାଗମର ପ୍ରଧାନ ସ୍ଥଳୀ ଥିଲା । ଋଷ୍ୟଶୃଂଗ ଉପାଖ୍ୟାନରେ ସେ କଥା ନାଇ । କିନ୍ତୁ ଅଂଗର ରାଜା ଯୁବତୀ ବେଶ୍ୟାଂକୁ ପଠାଇବା କଥା ଅଛି । ସେ କାଳେ ବହୁ ପତ୍ନୀ ଓ ବେଶ୍ୟାଦି ବହୁରକ୍ଷିତା ରାଜା ସମ୍ରାଟ୍‌ମାନେ ଝୁଲି ରଖୁଥିଲେ । ରାମାୟଣ ମଧ୍ୟ କହୁଂଛି ଦଶରଥଂକ ଉପପତ୍ନୀଂକ ସଂଖ୍ୟା ଥିଲା ୩,୫୦୦ । କିଂତୁ ଦେବ ଦେବୀଂକ ସଂଗେ ବେଶ୍ୟାଂକ ସଂପର୍କ ଅଂତତଃ ଉତ୍ତର-ଭାରତରେ ଅର୍ଥାତ୍ ଆର୍ଯ୍ୟ ଭାରତ ଭୂମିରେ ସେକାଳେ ଥିବା କଥାର ପ୍ରମାଣ ନାଇ । ମନେ ହେଉଛି, ବ୍ୟାବିଲନ ପ୍ରଭୃତିର ଈଶ୍ୱର ଦେବୀଂକ ଅଗ୍ରସ୍ଥରେ ଯେଉଁ ଦେବଦାସୀର ପ୍ରତିଷ୍ଠା ଭୀଷଣ ଭାବେ ଆଚରିତ ହେଉଥିବା ଇତିହାସରୁ ପ୍ରମାଣ ମିଳେ, ସେଇ ଦେବଦାସୀ ପ୍ରଥା ଆମ ଦ୍ରାବିଡ଼ରେ ସେଇ ପଶ୍ଚିମ ଆଡ଼ୁ ଆସି ପ୍ରଚଳିତ ଓ ପ୍ରଗୃହୀତ ହୋଇଥିଲା । ଆମ ଦେବଦାସୀମାନଂକ ମୂଳନାମ ଅପ୍‌ସରୀ, ଅର୍ଥାତ୍, ଅପ୍ ବା ଜଳରେ ଯେଉଁମାନେ ଆସିଥିଲେ । ପୁରାଣରେ ଅଛି, ଏମାନେ ସମୁଦ୍ରବାଟେ ବୋଇତରେ ଆସି ଏ ଦେଶରେ ପ୍ରଥମେ ପ୍ରତିଷ୍ଠା ପାଇଥିଲେ । କ୍ରମେ ଭାରତ ସାହିତ୍ୟରେ ଉର୍ବଶୀ, ମେନକା, ରଂଭା, ମିଶ୍ରକେଶୀ, ତିଲୋତ୍ତମା ପ୍ରଭୃତି ସ୍ୱର୍ବେଶ୍ୟା-

ମାନେ ଏଇ ବିଦେଶାଗତ ଅପସଂସ୍କୃତିମାନଂକ ପ୍ରତିଷ୍ଠା ଓ ପ୍ରଭାବ ଫଳରେ ପ୍ରକାଶ ପାଇଥିଲେ ବୋଲି ମନେହୁଏ ।

## ଏଇ ଋଷ୍ୟଶୃଂଗ ଓ ଇସ୍ଥା-ବାଣୀ ଦୁହେଁ ହେଉଛଂନ୍ତି ଜୈନ—'ଜୀ' ଜୈନ ସାଧନା ଓ ତୃଷ୍ଣାତ୍ୟାଗ—

ମନେହେଉଛି ଏଇ ଋଷ୍ୟଶୃଂଗ ଓ ଇସ୍ଥାବାଣୀ ଦୁହେଁ ହେଉଛଂନ୍ତି ଜୈନ ।

ଜୈନ ବୋଇଲେ, ଜିନ, ଜିଣ ବା ଜେତା—ଜିଣିବା ଲୋକ । ଓଡ଼ିଆରେ ଏଇ ପ୍ରାକୃତ ଧାତୁରୁ ହୋଇଛି ଜିଣିବା । 'ଜି' ଅର୍ଥାତ୍ ଜୟ କରିବା ଧାତୁର ଓଡ଼ିଆ ପ୍ରାକୃତରେ ଏବେ ମଧ୍ଯ ଜିଣ୍ ହୁଏ, ଜିତ୍ ମଧ୍ଯ ହୁଏ । (ତାଂକର ଜିଣା ହେଲି—ତାଂକର ଜିତାପଟ୍ଟ) ସେ ଜିଣିଲେ ସେ ଜିତିଲେ । ଏଇ ସଂପର୍କରେ ସୁମେରୀୟ 'ଜି' (ଭାରତୀୟ ଜିବ) ଶବ୍ଦର ବିଶେଷ ସଂପର୍କ ରହିଛି । ଜୈନଧର୍ମଟି ଗୋଟିଏ ଜୀବାଜୀବ ଭେଦ୍ ଓ ସେଇ ସାଧନାର ପରଂପରା ବୋଲି ସ୍ବୀକୃତ ଦିଆଯାଇଛି । ଜିଣ ଶବ୍ଦଟି ସଂଗେ ମୂଳତଃ ସୁମେରୀୟ କିଂବା ଦ୍ରାବିଡ଼ ଭାଷାରେ ଏଇ 'ଜି' ଶବ୍ଦର ଖୁବ୍ ସଂପର୍କ ଥିଲାପରି ଜଣାଯାଏ । କ୍ରିୟା ବା ଧାତୁରେ 'ଜି' ବୋଇଲେ ଜିଣିବା—ମଧ୍ଯ ହୋଇପାରେ ଜିଇବା, ବଂଚିବା । ବିଶେଷ୍ୟ ପଦ ଭାବରେ ସେଇ 'ଜି' ପୁଣି ହୋଇ ପାରେ ଜିବ । ପରେ ଏହା ହୁଏତ ସଂସ୍କୃତରେ ପ୍ରବେଶ କରିଥିଲା । ଏଇ ଜିଣର ଅଦ୍ଭୂତ ଜ୍ଞାନ ଓ ଅଦ୍ଭୁତ କ୍ଷମତା ହେବା କଥା ଜୈନଶାସ୍ତ୍ର ଓ ପରଂପରାରେ ସୁବିଦିତ ପୁଣି ଯୌନଚର୍ଯା ବା ନାରୀ ସମାଗମ ବନ୍ଦ କରି ଏଇ ଜିଣତ୍ୱ ଆଡ଼କୁ ଅଭ୍ୟାସ କରିବାକୁ ହୁଏ । ଏଇ ଅଭ୍ୟାସରେ ନାରୀ ସମାଗମ ପଡ଼ିଗଲେ ସାଧକ ଭ୍ରଷ୍ଟ ହୁଏ । ଏହା ଜୈନଧର୍ମର ନିତ୍ୟ କଥା ।

ଏଇ ଜିଣତ୍ୱ ଲାଭ କରିବା ପାଇଁ କେବଳ ଯେ ଯୌନସ୍ପୃହା ସଂଯତ ଓ ତ୍ୟାଗ କରିବାକୁ ହୁଏ, ସେତିକି ନୁହେଁ; କେବଳ ଜିହ୍ୱା, ଯୋନସ୍ପୃହା ଛାଡ଼ିବାରେ ଏହା ପରିବନ୍ଧ ନୁହେଁ । ଏହା ଗୋଟିଏ ସମସ୍ତ ସ୍ପୃହା ବା ତୃଷ୍ଣା ତ୍ୟାଗ କରିବାର ଚିର ପରଂପରା ଏହା ଜୈନଦର୍ଶନ ଅନୁସନ୍ଧିତ୍ସୁମାନଙ୍କୁ ଅଜଣା ନାଇ ।

## ଏଇ ଜୈନ ହେବାର ମୂଳ ପ୍ରେରଣା-ଆତ୍ମସମର୍ପଣ ଓ ଭକ୍ତିରେ ଏହା ଏକ ବିଦ୍ରୋହ—

ପୂର୍ବେ କୁହାଯାଇଛି । ସେ କାଳର ରାଜା ସମ୍ରାଟମାନଂକ କଥା । ରାଜା ସମ୍ରାଟ ବିଶେଷରେ ଅସୁର ସମ୍ରାଟ ଓ ସେଇ ପ୍ରଭାବରେ ପ୍ରଭାବିତ ସମ୍ରାଟ ବା ରାଜାମାନଂକ କଥା । ସେମାନଂକ ପାଖରେ ସମସ୍ତେ ଭୌତିକ ତଥା ଆଂତରିକ

ଭାବରେ ଆତ୍ମସମର୍ପଣ କରୁଥିଲେ । ସନ୍ଦେଶ ବା ଯାହା ଗୃହ ପ୍ରଭୃତିରେ ଆମଦାନି କରୁଥିଲେ, ସେସବୁ ସମର୍ପଣ କରୁଥିଲେ । ଅଧିକାଂଶ ବାଧ୍ୟ ହୋଇ କରୁଥିଲେ । ତାହା କରି ନଜର ଯାହା ଦରକାର ସେଇଆକୁ 'ପ୍ରାର୍ଥନା'ରେ ଲାଭ କରୁଥିଲେ । ପରେ ଏଇ ଭାବ ଓ ଏଇ ଅଭ୍ୟାସ ପୃଥିବୀର ସମସ୍ତ ଭକ୍ତିଧର୍ମ ତଥା ଏକେଶ୍ୱର ଧର୍ମ ପ୍ରଭୃତିକୁ ପ୍ରଭାବିତ ଓ କ୍ରମବର୍ଦ୍ଧିଷ୍ଣୁ ଭାବରେ ପୁଷ୍ଟ କରିଥିଲା । ଯେଉଁମାନଙ୍କୁ ଏଇ ବାଧ୍ୟବାଧକତା ଅତ୍ୟନ୍ତ କ୍ଲେଶଜନକ ହେଉଥିଲା ସେପରି ଲୋକ ସେତେବେଳେ ସମାଜରେ ନ ଥିଲେ ନୁହେଁ—ନିଶ୍ଚୟ ଥିଲେ । କାରଣ ଏ ଭୌତିକ ଅତ୍ୟାଚାରର ବିରୁଦ୍ଧରେ ମୁଣ୍ଡ ଟେକିବା ଲୋକ ସବୁବେଳେ ସମାଜରେ ଥାଆନ୍ତି ଓ ରହିବେ । ସେକାଳେ ଏଇପରି ବିଦ୍ରୋହୀମାନଙ୍କର ବାହାରେ ବିଦ୍ରୋହ କରି ମୁଣ୍ଡ ଟେକିବାର ଅନ୍ୟ କୌଣସି ପନ୍ଥା ନ ଥିଲା; ସାହସ ହୁଏତ ନ ଥିଲା । ସେମାନେ ନିଜ ଭିତରକୁ ଚାହିଁଥିଲେ ଓ ଦେଖିଥିଲେ । ଏ ସମସ୍ତ ଅତ୍ୟାଚାରର ମୂଳ ହେଉଛି ଭୋଗତୃଷ୍ଣା ବା ତୃଷ୍ଣା । ଏଇ ଭୋଗର ବାସନା ଛାଡ଼ିଦେଲେ ରଜା ସମ୍ରାଟଙ୍କର ଆଉ କିଛି ଅତ୍ୟାଚାର କରିବାର ନାହିଁ । ସେମାନେ ତେଣୁ କାଳକ୍ରମେ ମନୁଷ୍ୟ ସମାଜ ତ୍ୟାଗ କରି ବଣକୁ ଗଲେ ଓ ବଣରେ ଫଳମୂଳାଦି ଖାଇ ନିଶ୍ଚିନ୍ତ ଜୀବନ ଯାପନ କଲେ । ସେମାନଙ୍କର ମତ ହେଲା ।

"ସ୍ୱଚ୍ଛନ୍ଦ ବନ ଜାତନେ ଶାକେନାପି ପ୍ରପୂର୍ୟତେ,
ଅସ୍ୟ ଦଗ୍ଧୋଦରସ୍ୟାର୍ଥେ କଃ କୁର୍ଯାତ୍ ପାତକଂ ମହତ୍" ।

ବୋଇଲେ; ସ୍ୱଚ୍ଛନ୍ଦ ବନଜାତ ଶାଗ ପତ୍ରରେ ଯଦି ପେଟ ପୂରୁଛି, ତେବେ ସେଇ ପେଟ ପାଇଁ ଏତେ ପାତକ କରିବା ଦରକାର କଣ ? ଏଠାରେ ଉଦର ପୂରଣ ହେଉଛି ସମସ୍ତ ଭୋଗ ବା ବାସନା ପୂରଣ ।

## ଋଷ୍ୟଶୃଙ୍ଗ ବା ଇସୃ-ବାର୍ଣୀଙ୍କ ପରି ଏଇ ବିଦ୍ରୋହୀମାନେ ହେଲେ ଆଦି ଜୈନ—

ଏଇମାନେ, ଅର୍ଥାତ୍, ଏଇଭଳି ଆତ୍ମପ୍ରତିଷ୍ଠା ଓ ସ୍ୱାଧୀନତା ପାଇଁ ଯେଉଁମାନେ ନଗର ଛାଡ଼ି ବଣରେ ଆଶ୍ରୟ ନେଲେ, ସେଇମାନେ ହେଲେ ମୌଳିକ ଜୈନ ବା ଜିଣପନ୍ଥୀ । ପ୍ରସଙ୍ଗାନ୍ତରରେ ସୂଚନା ଦିଆଯାଇଛି, ଏଇ ଜିଣ କଥାଟିର ପ୍ରକୃତ ଅର୍ଥ ଜିଣ ଅର୍ଥାତ୍, ଜିଣିବା ଲୋକ । ତାର ସଂସ୍କୃତ ଅର୍ଥ ହେଉଛି 'ଜୟୀ' ବା 'ଜେତା' । ପୁଣି ଏହାର ଅର୍ଥ ବି ହୋଇ ପାରେ ଜିନ୍ ବା ଜୀଇବା ଲୋକ । କିମ୍ବା କେବଳ ପ୍ରକୃତି ଉପରେ ନିର୍ଭର କରି ରହିବା ଲୋକ । ଏଇଠାରେ 'ଜୀ' ବା 'ଜୀବ' କଥାଟି ସମ୍ବନ୍ଧରେ ଆଉ ଟିକିଏ କୁହାଯାଉ । ଅତି ପ୍ରାଚୀନ ବ୍ୟାବିଲନ ଭାଷାରୁ ଜଣାଯାଉଛି, ସେ ଭାଷାରେ ବହୁ ସହସ୍ର ବର୍ଷ ପୂର୍ବେ 'ଜୀ'

ବୋଲି ଗୋଟିଏ କଥା ବାହାର ଥିଲା । ଏ ଯୁଗର ଅତି ଆଦିମ ଆସିରିଆ ସମ୍ବନ୍ଧୀୟ ବିଦ୍ୟା ବିଶାରଦ (ଆସିରଓଲଜିଷ୍ଟ) ପ୍ରଫେସର ସଇସ (Prof. Sayce) କହିଚନ୍ତି *'ସୁମେରୀୟ ଭାଷାର 'ଜୀ' ହେଉଚି ସମସ୍ତ ଭୌତିକ ରାଜ୍ୟକୁ ଜୀବନରେ ପ୍ରଭାବିତ କରୁଥିବା ଶକ୍ତି ବା ବସ୍ତୁ । ଏଥିରେ ହିଁ ଜୀବନ ବା ଜୀବନ୍ତତା ପ୍ରକାଶିତ ହେଉଚି । ବସ୍ତୁର ଗତି ଦେଖି ମନେ କରାଯାଉଥିଲା, ସେ ବସ୍ତୁର ଜୀବନ ବା ନିଜକୁ ଚଳାଇବା ଶକ୍ତି ଅଛି । ଏଇ ହିସାବରେ ନଦୀ ମଧ୍ୟ ଗୋଟିଏ ଜୀବନ୍ତ ବସ୍ତୁ । ସେଇପରି ମଧ୍ୟ ଝରଣା ! ପାହାଡ଼ ଉପରୁ ଯେଉଁ ପଥର ଗଡ଼ି ପଡ଼ୁଚି—ସେ ମଧ୍ୟ ନିଜେ ସେଇପରି ଜୀବନ୍ତ ଥିବାରୁ ଗଡ଼ି ପଡ଼ୁଚି । ଗଛ କେଁ କେଁ ହେଉଚି, କାହିଁକି ନା, ପତନ ବାଜିବାରୁ ତାକୁ ବଡ଼ କଷ୍ଟ ହେଉଚି । ସେଇ ହିସାବରେ ଏବେ ଆମର ମଧ୍ୟ ଶାସ୍ତ୍ରରେ ଅଛି ଓ କଥା ଅଛି । 'ଅନ୍ତଃ ସଂଜ୍ଞା ଭବନ୍ତ୍ୟେତେ ସୁଖ ଦୁଃଖ ସମନ୍ୱିତାଃ' ଅର୍ଥାତ୍ ସମସ୍ତ ଜାଗତିକ ବସ୍ତୁ, ବିଶେଷରେ ଉଦ୍ଭିଦ ଓ ଜଡ଼ ପଦାର୍ଥରେ ମଧ୍ୟ ସୁଖ ଦୁଃଖ ଜାଣି ପାରିବା ଭଳି ସଂଜ୍ଞା ବା ଚେତନା ଅଛି ।

## 'ଜୀ' ଓ ଜୀବ—ତାର କାଳ ନିର୍ଣ୍ଣୟ—

ଆମ ସମସ୍ତ ସଂସ୍କୃତ ଓ ସଂସ୍କୃତମୂଳକ ସାହିତ୍ୟ ତଥା ଦର୍ଶନାଦିର ଯେଉଁ ଜୀବ ଶବ୍ଦଟି ଅଛି ତାହାର ମୂଳ ହେଉଚି, ଯେଉଁ 'ଜୀ' କଥା ଉପରେ କୁହାଗଲା । ସେଇ 'ଜୀ' ବସ୍ତୁର ଜୀବନ୍ତତା । ଏଠାରେ ଅନେକ ପ୍ରଶ୍ନ କରି ପାରନ୍ତି—(କଣ ଏଇ ସୁମେରୀୟ 'ଜୀ'ରୁ ସଂସ୍କୃତ ଜୀବ ଶବ୍ଦର ଉତ୍ପତ୍ତି ? ଅସମ୍ଭବ ନୁହେଁ । କାରଣ ସାଧାରଣତଃ ତତ୍‌ବିଦ୍ ପଣ୍ଡିତମାନେ ବେଦାଦି ମୌଳିକ ସଂସ୍କୃତ ସାହିତ୍ୟର ଯେ ସମୟ ଅନୁମାନ କରୁଚନ୍ତି । ଆଦିମ ସୁମେରୀୟ ସଭ୍ୟତା ଏପରିକି ସୁମେରୀୟ ତଥା ପ୍ରାଚୀନ ବ୍ୟାବିଲନୀୟ ଲେଖମାଳା, ତାହାର ବହୁ ପୂର୍ବବର୍ତ୍ତୀ କାଳର କଥା ।

## କାଳ ନିର୍ଣ୍ଣୟରେ ଅନ୍ତରାୟ—

କିନ୍ତୁ ଏଇ ପ୍ରାଚୀନ ବସ୍ତୁ ଓ ସାମାଜିକ ଅଭିବ୍ୟକ୍ତିମାନଙ୍କର ଯେଉଁ କାଳ ନିର୍ଣ୍ଣୟ ପଣ୍ଡିତମାନେ କରୁଚନ୍ତି, ତାହା ହଠାତ୍ ବିଶ୍ୱାସ କରିଯିବା ଭଳି ଉପାଦାନରେ ସବୁଦା ଗଢ଼ା ହୋଇଚି ବୋଲି ମନେ ହେଉନାହିଁ । ପୁଣି ଗୋଟିଏ କଥା, ସମସ୍ତେ ନିଜ ନିଜର ଜାତୀୟତାକୁ ଯେନ ସୁବିଧା ମିଳିଲେ ସବୁଠାରୁ ପ୍ରାଚୀନ ବୋଲି ଦେଖାଇ ହେବାରେ ବଡ଼ କମ ଜ୍ଞାତ ବା ଅଜ୍ଞାତ ଉଦ୍ୟମ କରୁ ନାହାନ୍ତି । ତା ଉପରେ ପୁଣି ଧର୍ମଭାବ, ଅର୍ଥାତ୍ ଭକ୍ତି ଧର୍ମଭାବ

---

* Hibbert Lectures (1878)
Prof. Sayce. Page 328.

ଓ ପୌରାଣିକ ମିଥ୍ୟା ସଙ୍ଗେ ଭଲକ ମିଥ୍ୟାର ପ୍ରଭାବ ବଡ଼ କମ ନୁହେ । ଏପରିକି ଇଉରୋପୀୟ ଲେଖକମାନେ ବାଇବଲରେ ଲେଖା ହୋଇଥିବା ଆଖ୍ୟାନ ଓ ଗଳ୍ପମାନଂକରେ ଐତିହାସିକ ପ୍ରାଚୀନତା ପ୍ରକାଶ କରିଥାଂନ୍ତି । ସେଥିପାଇଁ ଗବେଷଣାର ଶାଖା, ପ୍ରଶାଖାମାନ ସେଥିରେ ଯୋଡ଼ି ବିଶ୍ୱସାହିତ୍ୟରେ ଯେ ସ୍ଥାୟୀ ଉପଦ୍ରବମାନ ସୃଷ୍ଟି କରବାରେ ଲଗିଚଂନ୍ତି ତା ଦେଖିଲେ ବିସ୍ମିତ ହେବାକୁ ହୁଏ ।

ପୁଣି ଆଉ ଗୋଟିଏ କଥା । ମୁସଲମାନ ଧର୍ମକଥା କହିବାକୁ ଆମ ପ୍ରକୃତ ଓ ପରଂପରାରେ ବହୁତ ବାଧା ଅଛି । ସେଇ ମୁସଲମାନେ ଧର୍ମ ଆଗରୁ ତାହାର ମୌଳିକ ଭିତ୍ତି ରୂପେ ପ୍ରତିଷ୍ଠିତ ଓ ପ୍ରଚାରିତ ହୋଇଥିବା ଖ୍ରୀଷ୍ଟିୟାନ ଧର୍ମ ସଭ୍ୟ ଜଗତର ଗୋଟିଏ ମହାବ୍ୟାଧି ଓ ମିଥ୍ୟାର ଅବତାରଣା ପ୍ରସଙ୍ଗାଂତରରେ ସୂଚନା ଦିଆଯାଇଚି, ଅତୁର ମେଜଦା ଧର୍ମ ପ୍ରଭାବିତ ଜିହୋଭା ଧର୍ମ, ତଥା ତହିଁରୁ ବାହାରିଥିବା ଖ୍ରୀଷ୍ଟିୟାନ ଧର୍ମରେ ବହୁ ଆଦମ କାଳରେ 'ଏକେଶ୍ୱରବାଦ' ବୋଲି ଗୋଟିଏ ମହାବ୍ୟାପକ କୁସଂସ୍କାର ପ୍ରଥମେ ତିଆରି ହୋଇଥିଲା । ସେଇ ମହାରୋଗ ଏବେ ମଧ୍ୟ ପାଶ୍ଚାତ୍ୟ ପଂଡ଼ିତମାନଂକୁ ଓ ତାଙ୍କ ସଙ୍ଗେ ପ୍ରତ୍ନତତ୍ତ୍ୱସେବୀମାନଂକୁ ଘାରୁଚି । ଏପରିକି ପ୍ରଧାନ ନିରପେକ୍ଷ ପ୍ରାଚ୍ୟ ପ୍ରତ୍ନତତ୍ତ୍ୱସେବୀ ସ୍ୱର୍ଗତ ମାକସମୁଲର ସାହେବ ମଧ୍ୟ ନିଜର ଅତି ଉପାଦେୟ ବେଦାଂତ ସଂବଂଧୀୟ ଗ୍ରଂଥର ବହୁସ୍ଥଳରେ ବାରଂବାର God ବା ଈଶ୍ୱର ଶବ୍ଦ ପ୍ରୟୋଗ କରି ବ୍ରହ୍ମକୁ ବୁଝାଇବାର ପ୍ରତିଷ୍ଠିତ ମାନସିକତା ଓ ତଦ୍‌ଗତ ଉଦ୍ୟମ ଛାଡ଼ିପାରି ନାହାଂନ୍ତି । ତା ଛଡ଼ା ଖ୍ରୀଷ୍ଟିୟାନ ମିସନାରୀମାନଂକ ମଧ୍ୟରେ ମଧ୍ୟ ଯେଉଁ ପଂଡ଼ିତଂମନ୍ୟମାନେ ପ୍ରତ୍ନତତ୍ତ୍ୱ ଦେବା ଉପରେ ପ୍ରବଂଧ ଓ ପୁସ୍ତକମାନ ପ୍ରକାଶ କରଂନ୍ତି, ସେ ସବୁ ଦେଖିଲେ ବେଳେବେଳେ ଭେଟଣା ଲଗିବ । ସର୍ବୋପରି ସାମ୍ରାଜ୍ୟ ଶକ୍ତି ଓ ତଦ୍‌ଗତ୍ ଧର୍ମ ବିଜୟବାଦର ମୂଢ଼ ଅହଂକାର ସର୍ବଦା ଏଇଭଳି ପଂଡ଼ିତମାନଂକ ମଧ୍ୟରେ ଯେ ଅନ୍ତଂରାୟ ସୃଷ୍ଟିକରେ ତାହା ବର୍ଣ୍ଣନା କରି କହିବା ଏକ ପ୍ରକାର ଅସଂଭବ । ଅବଶ୍ୟ ଉଦାହରଣ ଦେଇ ଏସବୁ ଓ ସବୁପ୍ରକାରର ଜ୍ଞାତ, ଅଜ୍ଞାତ ପ୍ରତିବାଦ ବୁଝାଇବାର ଅବକାଶ ଏଠାରେ ନାଇ । ଜୈନଧର୍ମର ମୌଳିକତା ଓ ପ୍ରାଚୀନତା ସଂବଂଧରେ ଏକା ଏଠାରେ ଟିକିଏ କୁହାଯାଇପାରେ ।

## ସେ କାଳ ଦ୍ରାବିଡ଼ ସଂଗେ ସୁମେର ପ୍ରଭୃତି ଦେଶର ସଂବଂଧ— ଏଇ ସଂବଂଧରେ ଦେବୀଧର୍ମ—

ଋଷ୍ୟଶୃଂଗ ଓ ଇୟା-ବାଣୀ ଉପାଖ୍ୟାନରୁ ବେଶ ଅନୁମାନ କରାଯାଇ-ପାରେ, ହୁଏତ ସୁମେର ଓ ବ୍ୟାବିଲନ ଆଡ଼ୁ ଜୈନଧର୍ମ ଭାରତକୁ ଆସିଥିଲା । 'ଜୀ' ଓ ଜୀବ କଥା କହିଲେବେଲେ ଅନୁମାନ କରାଯାଇଚି, ହୁଏତ ସୁମେରୀୟ 'ଜୀ'

ଶବ୍ଦରୁ ଜ୍ଞାତ ହେବ ଆସିଥାଇପାରେ । ଏହି ସମ୍ପର୍କରେ ବର୍ତ୍ତମାନ ଦେବୀ ଧର୍ମର କଥା ପ୍ରତି ଲକ୍ଷ୍ୟ କରାଯାଉ । ଏହି ଦେବୀଧର୍ମ ପଶ୍ଚିମର ଭୂମଧ୍ୟସାଗରସ୍ଥିତ କ୍ରୀଟ୍ ଦ୍ୱୀପରୁ ଭାରତକୁ ଆସିଥିବାର ବହୁ ପ୍ରମାଣମାନ ମିଳେ । ଏହା ହୁଏତ ଅତି ପ୍ରାଚୀନ କାଳରେ କାପାଡ଼ୋସିଆ ( ଏବର ତୁରସ୍କ ) ଓ ସୁମେର ବାଟେ ଦ୍ରାବିଡ଼ରେ ଆସି ବ୍ୟାପିଥିଲା ଓ ପଶ୍ଚିମର ଦେବୀଧର୍ମ ମଧ୍ୟ ଦ୍ରାବିଡ଼ ସଙ୍ଗେ ଆଦାନପ୍ରଦାନରେ ବଢ଼ୁଥିଲା । ସେ ଦେଶରେ ମଧ୍ୟ ଏହି ଦେବୀଙ୍କ ନାମ ହେଉଛି, 'ମା', 'ଅମ୍ମା' ଓ 'ମାମୀ' । ସୁମେରଠାରୁ କାପାଡ଼ୋସିଆ ପର୍ଯ୍ୟନ୍ତ ଲେଖାମାନଙ୍କରୁ ପ୍ରମାଣ ମିଳୁଛି ଏହି ନାମମାନଙ୍କରେ ଦେବୀ ନାମିତ ହେଉଥିଲେ । ବୋଉ (Bau ବା Baau) ବୋଲି ମାତୃ ଦେବୀଙ୍କର ନାମ ବି ସେକାଳେ ଫିନିସିଆ ପ୍ରଭୃତି ଦେଶରେ ଥିଲା । ଆଶ୍ଚର୍ଯ୍ୟ କଥା, ଏହି ବୋଉ କଥାଟି ଏବେ ଓଡ଼ିଶା ଓ ଉତ୍ତରପ୍ରଦେଶରେ 'ମା' ଅର୍ଥରେ ଅତ୍ୟନ୍ତ ପ୍ରଚଳିତ । ଆସାମରେ ମଧ୍ୟ ଏହି 'ମା' ଅର୍ଥରେ ଏହି ଶବ୍ଦଟି ଚଳେ । ତା ଛଡ଼ା ବ୍ୟାବିଲନ ପ୍ରଭୃତି ଆଡ଼େ ଇସ୍ତର ଓ ମିଶର ପ୍ରଭୃତି ଆଡ଼େ ଇସିସ୍ (Isis) ବୋଲି ମଧ୍ୟ ଦେବୀଙ୍କର ନାମ ଥିଲା । ବିଶେଷରେ ଇସ୍ତରଙ୍କ କଥା ଏଠାରେ ଉଲ୍ଲେଖଯୋଗ୍ୟ । ଏହି ମାତୃଦେବୀମାନଙ୍କ ସମ୍ବନ୍ଧରେ ଯାହା ଲେଖାମାନଙ୍କରୁ ମିଳୁଛି ସେଥିରୁ ଜଣାଯାଏ, ଏମାନଙ୍କୁ ଘେନି ଯୌନ ସ୍ୱେଚ୍ଛାଚାର ଅନୁଷ୍ଠାନମାନ ନିତ୍ୟ ଭାବରେ ଲାଗି ରହୁଥିଲା । ଏ ଦେବୀ ହେଉଛନ୍ତି, ସେ ଦେଶମାନଙ୍କରେ ପ୍ରଜନନର ପ୍ରତୀକ । ଦେଖିବାର ଅଛି, ଏ ଦେଶର ଦେବୀଧର୍ମରେ ମଧ୍ୟ ନାନା ଭାବରେ ସେହି ଯୌନ ସ୍ୱାଧୀନତା ଓ ତହିଁ ସଙ୍ଗେ ଜଡ଼ିତ, ଯୌନ ସମ୍ଭୋଗର ସ୍ୱାଧୀନତା ବରାବର ପ୍ରକାଶ ପାଇଆସିଛି । ପୁଣି ମଧ୍ୟ ଆମ ଦେବୀ ସବୁବେଳେ ସିଂହବାହିନୀ ଓ ପର୍ବତୀ ବା ପର୍ବତକନ୍ୟା । କ୍ରୀଟରେ ମଧ୍ୟ ଏହି ଦେବୀଙ୍କର ସିଂହ ବା ସିଂହଦ୍ୱାର ଉପରେ ରହିଥିବାର ପ୍ରାଚୀନ ଖୋଦିତ ମୂର୍ତ୍ତି ମିଳୁଛି । କାପାଡ଼ୋସିଆର ପର୍ବତରେ ଏହି ଦେବୀ ସିଂହ ବାହନରେ ଖୋଦିତ ରହିଥିବାର ମୂର୍ତ୍ତି ମଧ୍ୟ ଦେଖାଯାଏ । ଅବଶ୍ୟ ଭାରତରେ ଜୈନ ପ୍ରଭାବରେ ଏହାଙ୍କର ଅନ୍ୟରୂପ ଓ ଅନ୍ୟଭାବ ପ୍ରକାଶ ପାଇଥିଲା । ଉପନିଷଦରେ ଋଷି ତାଙ୍କୁ ହୈମବତୀ ବା ହିମାଳୟ କନ୍ୟା ଉମାରୂପେ ଚିତ୍ରକରି ଦେଖାଇଛନ୍ତି । ସେହି ହେଉଛନ୍ତି, ଏକମାତ୍ର ବ୍ରହ୍ମଜ୍ଞାନମୟୀ । ଏହି ଉମା ଶବ୍ଦଟି ହେଉଛି ଦ୍ରାବିଡ଼ ବା ସୁମେରୀୟ "ଆମ୍ମା" ଶବ୍ଦର ରୂପାନ୍ତର ମାତ୍ର । ସେ କଥା ପ୍ରସଙ୍ଗାନ୍ତରରେ କୁହାଯାଉଛି । କିନ୍ତୁ ଏଠାରେ ଦେଖିବାର କଥା, ଏହି ମାତୃଦେବୀଙ୍କ ଧର୍ମ ବା ପ୍ରଜନନ ଧର୍ମ ଜୈନ ଧର୍ମପରି କୌଣସି ବିଦ୍ରୋହ ନୁହେଁ ବା ଏଥିରେ ମୂଳତଃ ଆତ୍ମ ପ୍ରତିଷ୍ଠା ବା ସ୍ୱାଧୀନତାର ଭାବ ନାହିଁ । ମାତ୍ର ଏବେ ଦ୍ରାବିଡ଼ ଭାଷାରେ ଚଳୁଥିବା ନାମସବୁ ତଥା ଓଡ଼ିଶାର ବୋଉ ନାମ ସେତେବେଳେ ବି ସେସବୁ ପଶ୍ଚିମ ଦେଶର ଦେବୀମାନଙ୍କର ଥିଲା ।

ମନେ ହେଉଚ, ଏ ନାମ ସବୁ ଆସିଥିଲା, ସେ ଦେଶରୁ ଏ ଦେଶକୁ । ଯେତେ ଦୂର ସଂଭବ ହେଉଚ, କେବଳ ନାମ ଆସି ନ ଥିଲା । ଲୋକ ଓ ଲୋକସଂଘ ସବୁ ସେଆଡ଼ୁ ଆସି ଏଠାରେ ବସତ କରଥିଲେ । ଦେବୀ ଖୁବ୍ ସଂଭବ ଆଗ ଦ୍ରାବିଡ଼ରେ ପ୍ରତିଷ୍ଠିତ ହୋଇଥିଲେ । ମହେଂଜୋଦାରୋ ପ୍ରଭୃତିରୁ ଯେଉଁ ପ୍ରାଚୀନ ଅବଶେଷ ସବୁ ମିଳୁଚ ସେଥିରେ ଅନୁମାନ ହେଉଚ, ଏଇ ଦେବୀ ପ୍ରଭାବ ଓ ଦେବୀପୂଜା ଅତ୍ୟଂତ ପ୍ରଚଳିତ ଥିଲା । ଆମ ଲିଂଗ ଯୋନିର ପୂଜା ସେଠାରେ ଥିଲା ବୋଲି ପଂଡ଼ିତମାନେ ଅନୁମାନ କରଂତି ।

## ତଂନ୍ତ୍ରଧର୍ମ ଓ ଶିବଧର୍ମ—

ପୁଣି ଏଠାରେ ଦେଖିବାର ଅଛି, ଏ ଦେଶରେ ତଂତ୍ର ଧର୍ମ ବା ଦେବୀ ଧର୍ମ ତଥା ବିଶ୍ୱନାଥ ବା ଶିବ ଧର୍ମ ବହୁ ପ୍ରାଚୀନ । ଏ ଦୁଇଟି ଯାକ ଧର୍ମ ପଶ୍ଚିମରେ ମିଶର ବ୍ୟାବିଲନ ପ୍ରଭୃତିରେ ଥିବାର ସଂକେତ ଅଛି । ଅବଶ୍ୟ ସେସବୁ ସେତେ ସ୍ପଷ୍ଟ ବା ଅବିସଂବାଦିତ ବୋଲି କୁହାଯାଇ ନ ପାରେ । କିଂତୁ ମାନବର ଆଦ୍ୟ ଶୃଂଖଳିତ ଧର୍ମ ହେଉଚ ପ୍ରଜନନ ଧର୍ମ । କିଛି ନ ଥିବାରୁ ନୂଆ ଜିନିଷ ବାହାରିବା ହେଉଚ ପ୍ରଜନନ । ବର୍ଷାରେ ଶସ୍ୟ ହୁଏ । ଋତୁ ସ୍ପର୍ଶରେ ଗଛ ପଲ୍ଲବିତ, ପ୍ରଫୁଲ୍ଲିତ ଓ ଫଳବନ୍ତ ହୁଏ । ଏସବୁ ଆଦିମ ମାନବର ପ୍ରଜନନ । ଜୀବର ମଧ୍ୟ ପ୍ରଜନନ ଏହା ସହିତ ସମାନ । ଏବେ ଯେଉଁ ଶିବଶକ୍ତିର ପୂଜା ଅଛି ଏହା ସେଇ ପ୍ରଜନନର ପ୍ରତୀକ । ସମସ୍ତ ପ୍ରଜନନ ହେଉଚ, ମହାଲିଂଗ ଓ ମହାଯୋନିର କଳ୍ପନାରେ ପରିବଦ୍ଧ, ଏହାହିଁ ଶିବ ଶକ୍ତିର କଳ୍ପନା । ଏ ଦୁଇଟି ଯାକ ଧର୍ମରେ ସମସ୍ତ ଦର୍ଶନ ବା ଅଧ୍ୟାତ୍ମବାଦର ଭିତ୍ତି ପ୍ରକାଶ ପାଇଥିଲା । ଏବେ ମଧ୍ୟ ଦାର୍ଶନିକ ହିଂଦୁମାନଂକ ଭିତରେ ଉପାସ୍ୟ ଶିବ ହେଉଚଂତି ଯେପରିକି ଶ୍ରେଷ୍ଠ ଦର୍ଶନ, ବେଦାଂତର ପ୍ରତୀକ । ଅବଶ୍ୟ ଅନ୍ୟ ଦେଶର କୌଣସି ଶିବ ସଂଗେ ବା ଶିବ ଭାବ ସଂଗେ ଆମ ଶିବ ଭାବର ସାକ୍ଷାତ ସଂପର୍କଥିବା ପ୍ରମାଣ ଖୋଜାଯାଇ ନାଇ ବା ମିଳିନାଇ ।

## ଶକ୍ତିଧର୍ମ ସଂବଂଧୀୟ ଉପାଖ୍ୟାନ—

ଶକ୍ତିର ଅବସ୍ଥା କିଂତୁ ଅନ୍ୟ ପ୍ରକାରର । ଏଇ ଶକ୍ତିର ସାମର୍ଥ୍ୟ ଓ ଶକ୍ତି ଭାବର ବ୍ୟାପ୍ତି ପେନ୍ଦ୍ ଗୋଟିଏ ସଂ ପ୍ରସୃରିତ ଉପାଖ୍ୟାନର କଥା ଦେଖାଯାଉ ।

## ଶକୁଂତଳା କଥା—

ଏଇ ଦେଖ ଶକୁଂତଳା ଉପାଖ୍ୟାନଟିର କଥା । ମେନକା ଅତ୍ୟଂତ ସୁଂଦରୀ ଓ ଦେବତାଂକର ବେଶ୍ୟା । ଋଷି ବିଶ୍ୱାମିତ୍ର କଠୋର ତପସ୍ୟାରେ ପ୍ରବୃତ୍ତ ହେଲେ । ଏଇ ତପସ୍ୟାର ପ୍ରତିଷ୍ଠା ଭାରତ ସାହିତ୍ୟରେ ବଡ଼ ଉନ୍ନତ ଓ ପ୍ରସିଦ୍ଧ ଥିଲା । କୌନ

ସାଧନାରେ ଅଦ୍ଭୁତ ଜ୍ଞାନ ଓ ଶକ୍ତି ଉପୁଜିବାର କଥା ପ୍ରତି ଲକ୍ଷ୍ୟ କରାଯାଇଚି । ସବୁ ତପସ୍ୟାର ମୂଳ ମଧ୍ୟ ମନେ ହେଉଚି ଏଇ ଜୈନ ସାଧନା । ଭାରତର ପରଂପରା ଅଛି, ଋଷିମାନେ ତପସ୍ୟା କଲେ, ସିଦ୍ଧ ହେବା ପୂର୍ବରୁ ସେମାନେ ଆଗ ଇଂଦ୍ରପଦ ଲାଭ କରଂତି । ଏଇପରି ଏଇ ଇଂଦ୍ର ପଦଟି କଠୋର ତପସ୍ୟାର ଫଳରୂପେ ମିଳେ । ଯେ ଇଂଦ୍ର ଥାଂତି, ସେ କଠୋର ତପସ୍ୱୀଂକ ପାଖକୁ ବେଶ୍ୟା ପଠାଇ ତାଂକର ତପୋଭଙ୍ଗ କରିବାର ପ୍ରଯତ୍ନ କରଂତି ଓ ସେଥିରେ ତପୋଭଂଗ ହେଲେ ଆଉ ଇଂଦ୍ରପଦ ମିଳେ ନାଇ । ଋଷି ବିଶ୍ୱାମିତ୍ର ଏଇପରି ତପସ୍ୟା ଆରଂଭ କରିଥିଲେ । ଇଂଦ୍ର ତାଂକ ତପୋଭଂଗ ପାଇଁ ସ୍ୱର୍ବେଶ୍ୟା ମେନକାଂକୁ ପଠାଇଲେ । ବିଶ୍ୱାମିତ୍ରଂକ ତପୋଭଂଗ ହେଲା । ଫଳରେ ମେନକା ଗୋଟିଏ କନ୍ୟା ଜନ୍ମ କଲେ । ସେଇ କନ୍ୟାର ନାମ ହେଉଚି ଶକୁଂତଳା । ଜନ୍ମ କରିବା ସଂଗେ ସଂଗେ ମେନକା ନିଜେ ଯାଇ ଶିଶୁଟିକୁ ବଣରେ ଫିଙ୍ଗିଦେଇ ଦେବତାଂକୁ ଭଜିବାକୁ ଚାଲିଗଲେ । ବିଶ୍ୱାମିତ୍ର ମଧ୍ୟ ଶିଶୁଟିକୁ ପଚାରିଲେ ନାଇ । କେତେଗୁଡ଼ିଏ ଶକୁଂତ ବା ପକ୍ଷୀ ଶିଶୁଟିକୁ ଡେଣାରେ ଘୋଡ଼ାଇ ହେପାଜତରେ ରଖିଲେ । କଣ୍ୱ ମହର୍ଷି ସେ ବାଟେ ଯାଉଥିଲେ । ସେ ଶକୁଂତଳାକୁ ନିଜ ଆଶ୍ରମକୁ ଘେନିଗଲେ । ସେଇଠାରେ ପରମ ରୂପବତୀ ଶକୁଂତଳା ଏକୁଟିଆ ଥିଲାବେଳେ ଅନ୍ୟ ବହୁପତ୍ନୀସେବିତ ମହାରାଜା ଦୁଷ୍ମଂତଂକୁ ଦେଖି ତାଂକ ସଂଗେ ମିଳିତ ହେଲେ । ଦୁଷ୍ମଂତ ଚାଲିଗଲେ । ଗର୍ଭବତୀ ଶକୁଂତଳା ତାଂକ ଘରକୁ ଯାଇ ତାଂକଦ୍ୱାରା ପ୍ରତ୍ୟାଖ୍ୟାନ ହେଲେ । ଦୁଷ୍ମଂତ ତାଂକୁ ପତ୍ନୀରୂପେ ଗ୍ରହଣ କରିବାକୁ ନାରାଜ ହେଲେ । ତହୁଁ ଶକୁଂତଳା ଲଜ୍ଜାରେ କଣ୍ୱଂକ ଆଶ୍ରମକୁ ନ ଫେରି ନିଜେ କୌଣସିମତେ ସ୍ୱର୍ଗକୁ ଚାଲିଗଲେ ଓ ସେଠାରେ ଏକ ତପସ୍ୱୀଂକ ଆଶ୍ରମରେ ରହିଲେ । ଶକୁଂତଳାଙ୍କ ପୁତ୍ର ହେଲେ ଭରତ । ପରେ କୌଣସିମତେ ଦୁଷ୍ମଂତ ଭରତଂକ ସହିତ ତାଂକୁ ଆପଣାର ବୋଲି ଗ୍ରହଣ କଲେ । ସେଇ ଭରତଂକ ନାମାନୁସାରେ ଏ ଦେଶର ନାମ ହେଲା ଭାରତବର୍ଷ । ଏହା ଉତ୍ତର ଭାରତର କଥା । ଜାହ୍ନିକନା ଦକ୍ଷିଣ ଭାରତର କୌଣସି ଅଂଶ ଭାରତବର୍ଷର ଅଂଶ ନ ଥିଲା । ଏଇ ଶକୁଂତଳା ଉପାଖ୍ୟାନଟିରେ କୌଣସି ଦେବୀର ବା ଶକ୍ତିର ସାକ୍ଷାତ ସମ୍ପର୍କ ନାଇ ।

## ସେମିରାମିସ କଥା—

କିନ୍ତୁ ପଶ୍ଚିମ ଦେଶର ଠିକ୍ ଏଇପରି ଉପାଖ୍ୟାନଟି ପ୍ରତି ଦୃଷ୍ଟି ଦିଆଯାଉ । ଏଇ ଉପାଖ୍ୟାନଟି ଆସିରିଆର ସେକାଳର ଇତିହାସର ସଂଗେ ମଧ୍ୟ ଜଡ଼ିତ ଅଛି । ସେଠା ଉପାଖ୍ୟାନଟି ହେଉଚି—"ଠିକ୍ ଶକୁଂତଳା ପରି ସେମିରାମିସ୍ କୌଣସି ସୁଂଦରୀ ସୁରନାରୀଂକଠାରୁ ଜନ୍ମହୋଇ ସେଇ ସୁରନାରୀଂକ ଦ୍ୱାରା ବଣରେ ପରିତ୍ୟକ୍ତ ହେଲେ । କପୋତମାନେ ତାଂକୁ ସେଠାରେ ରକ୍ଷା କରିଥିଲେ ଓ ରାଜାଂକ ପ୍ରଧାନ ମେଷପାଳକ (ସେକାଳେ ସେଠାରେ ଆମ ରାଜାଂକ ଗୋଧନ ପରି ସେ ରାଜା ବଡ଼

ଲୋକମାନଂକର ବଡ଼ ବଡ଼ ମେଂଢ଼ାପଲ ସବୁ ଥିଲେ ଓ ତାଂକୁ ରକ୍ଷଣାବେକ୍ଷଣ କରିବା ପାଇଁ ମେଷପାଳକମାନେ ଥିଲେ । ) ସେଠାରେ ତାଂକୁ ଦେଖି ଘରକୁ ନେଇଯାଇ ପାଳି ବଢ଼ାଇଥିଲେ । ସଂସ୍କୃତରେ ଶକୁଂତ ବୋଇଲେ ପକ୍ଷୀ । ସେଇ ପକ୍ଷୀମାନେ ସଂଖାଳି ରଖିଥିବାରୁ ନାମ ହେଲା ଶକୁଂତଳା ( ଶକୁଂତଳା ବା ପକ୍ଷୀ ରକ୍ଷିତା ) ଏଠାରେ ସେମିରାମିସଂକୁ ସୁମ୍ମାତ୍ ଅର୍ଥାତ୍, କପୋତ ସଖାଳି ରଖିଥିଲେ । ତେଣୁ ସେମିରାମିସ୍ ବୋଇଲେ, ଅର୍ଥ ହେଉଛି କପୋତରୂପିଣୀ ଦେବୀ ଯାହାଂକୁ ସୁଖ ପାଆଂଛ । ଏଇ ଅର୍ଥରେ ନାମଟି ହୋଇଥିଲା ସେମିରାମିସ୍ ।

## ଦୁଇଟି ଉପାଖ୍ୟାନର ଆଦର୍ଶ ଭେଦ—

ଭାରତବର୍ଷରେ ଉପାଖ୍ୟାନଟିରେ ଦୁଷ୍ମଂତଙ୍କ ସଙ୍ଗେ ମନ ମିଳିଯାଇ ଗୁପ୍ତ ପ୍ରେମରେ ବଦ୍ଧ ହୋଇଥିବା ଓ ଦୁଷ୍ମଂତ ପରେ ଶକୁଂତଳାଂକୁ ପ୍ରତ୍ୟାଖ୍ୟାନ କରିଥିବା ପ୍ରଭୃତି ସଂକେତ ଥିଲେ ମଧ୍ୟ କୌଣସି ପ୍ରକାରେ ଭାରତୀୟ ଆଦର୍ଶରେ ଘୋର ସଂଯମ ବଦ୍ଧ ସତୀତ୍ୱର ପଂଥାଧରି ଭାରତର ପ୍ରଥମ ସମ୍ରାଟ ଭରତଂକ ନାମରେ ଉପାଖ୍ୟାନଟି କାଳରେ କ୍ରମେ ଗଢ଼ି ଆସିଛି । କିଂତୁ ଏଠାରେ ସତୀତ୍ୱର ଆଦର୍ଶ ସାକ୍ଷାତ ଜୈବ ସାଧନାର ପୀଠ ଉପରେ ଚିରକାଳ ପ୍ରତିଷ୍ଠିତ ଅଛି । ମାତ୍ର ସେ ସବୁ ଦେଶର ଧର୍ମ ତଥା ସମାଜର ସେ ପୀଠ ବା ପ୍ରଭାବ । କେବେ ସ୍ଥାୟୀ ହୋଇ ରହି ନାଇ । ସେ ସବୁ ଦେଶରେ ନରନାରୀର ସମାଗମ ସତୀତ୍ୱ ପରି କୌଣସି ବିଶିଷ୍ଟ ଆଦର୍ଶରେ କେବେ ଦୃଢ଼ ଭାବରେ ବଢ଼ିନାଇ ପ୍ରେମରେ ଅକାଟ୍ୟ ଆତ୍ମସମର୍ପଣ କଦାଚିତ୍ ଥାଇପାରେ । କିଂତୁ ତାହା ଭାରତୀୟ ସତୀତ୍ୱର ଆଦର୍ଶ ପରି ନୁହେ । ତେଣୁ ସେ ସବୁ ଦେଶର ନାରୀ ଦେଖି ତା ସୌଂଦର୍ଯ୍ୟରେ ଭୁଲିବା, ସେଇ ନାରୀର ଆତ୍ମଦାନ ଅବାଧରେ ଗ୍ରହଣ କରି ଫଳରେ ଦୁର୍ବିପାକ ଭୋଗିବା, ସେଇ ନାରୀକୁ ବଳାତ୍କାରରେ ନେଇଯିବା ଓ ରାଜ୍ୟ ସାମ୍ରାଜ୍ୟ ସବୁର ପ୍ରତିଷ୍ଠା କରିବା ଓ ସେଇଥିରେ ମାତିବା ପ୍ରଭୃତି ହେଉଛି ସେ ଦେଶର ଆଦର୍ଶର ଆନୁସଙ୍ଗିକ କ୍ରିୟା ।

## ସେମିରାମିସ୍ ଓ ମାତୃଦେବୀ—

ଏଇ ସେମିରାମିସଂକୁ ମଧ୍ୟ ସେ ଦେଶର ମାତୃଦେବୀ ବୋଲି ଉପାଖ୍ୟାନରେ କଳ୍ପନା କରାଯାଏ । ସେଇ ମାତୃଦେବୀ ଥିଲେ ଆସିରିଆ ଓ ବ୍ୟାବିଲନର "ଇସ୍ତର ।" ଏଇ ଇସ୍ତର ଓ ଅନ୍ୟାନ୍ୟ ମାତୃଦେବୀମାନଂକର ଅନେକ ପତି ଓ ଉପପତି ଥିଲେ । ସେଇସବୁ ପତି ଓ ଉପପତିମାନଂକୁ ସେ କିଛିକାଳ ପାଇଁ ନିଜର କରି ତା ପରେ ପରିତ୍ୟାଗ କରିଥିବାର ଓ ମାରି ଦେଇଥିବାର ଉପାଖ୍ୟାନ ଓ ପରଂପରା ସେ ସବୁ ଭୂମିରେ ଥିଲା ।

ଗିଲ୍‌ଗାମେସଙ୍କ ଚରିତର ବାରଟି ଫଳକରେ ଥିବା ବିଷୟରୁ ଉଦ୍ଧୃତ ।

Myths of Babylonia and Assyria by D. A. Mackenzie—P. 176.

## ସେମିରାମିସଂକ ଜୀବନକାଳ—

ଡେଣ୍ଟ୍ର ସେମିରାମିସଙ୍କ ଉପାଖ୍ୟାନଟି ମୂଳତଃ ଏ ଦେଶର ଶକୁନ୍ତଳା ଉପାଖ୍ୟାନ ସଙ୍ଗେ ପ୍ରାୟ ଏକ ରୂପ ହେଲେ ମଧ୍ୟ ସେ ଦେଶରେ ନିମ୍ନଲିଖିତ ପ୍ରକାରରେ ପ୍ରକାଶ ପାଇଥିଲା ।

ଏଇ ସେମିରାମିସ୍ ଆସିରିଆର ରାଜଧାନୀ ନିନେଭେ ( Nineveh ) ସହରର ଶାସନକର୍ତ୍ତା ଓନେସଙ୍କର ପତ୍ନୀ ହୋଇଥିଲେ । ସେଇ ଓନେସ୍ ସେଇ ନିନେଭେ ରାଜ୍ୟର ପ୍ରତିଷ୍ଠାତା ରାଜା ନିନସଙ୍କର ଗୋଟିଏ ସେନାନାୟକ ଥିଲେ । ସୁନ୍ଦରୀ ସେମିରାମିସ୍ ସେଇ ଓନେସଙ୍କ ସଙ୍ଗେ ବକ୍ଟ୍ରିଆରେ ଯୁଦ୍ଧ କରିବାକୁ ଯାଇଥିଲେ ଓ କଥା ଅଛି, ବକ୍ଟ୍ରିଆରୁ କିପରି ଜିଣିବାକୁ ହେବ, ସେ ବିଷୟରେ ରାଜାଙ୍କୁ କୌଶଳ ବତାଇଥିଲେ । ରାଜା ନିନସ୍ ତାଙ୍କ ସଙ୍ଗେ ପ୍ରେମରେ ପଡ଼ିଲେ । ଓନେସ୍ ସେମିରାମିସ୍ଙ୍କୁ ରାଜାଙ୍କ ପତ୍ନୀ ହେବାପାଇଁ ଛାଡ଼ି ଦେବାକୁ ନାରାଜ ହୋଇ ଶେଷକୁ ଚାଲିଯାଇ ନିଜେ ଦଉଡ଼ି ଲଗାଇଦେଇ ଆତ୍ମହତ୍ୟା କଲେ । ଫଳରେ ସେଇ ସୁନ୍ଦରୀ ପୁଂଶ୍ଚଳୀ ସେମିରାମିସ୍ ରାଜା ନିନସଙ୍କ ପତ୍ନୀହେଲେ । ଉପାଖ୍ୟାନରେ ଦୃଷ୍ଟି ଅଛି ସହଜରେ ଭଲ ପାଇଥିବା ଏଇ ନିନସଙ୍କ ଉପରେ ସେମିରାମିସ୍ ଏପରି ପ୍ରଭାବ ବିସ୍ତାର କରିଥିଲେ ଯେ, ସେ ଶେଷକୁ ପାଂଚଦିନ ପାଇଁ ଏଇ ସେମିରାମିସ୍ଙ୍କୁ ହିଁ ଏଇ ଆସିରିଆର ସମ୍ରାଟ୍ କରି ଦେଇଥିଲେ । ସେମିରାମିସ୍ ରାଣୀ ହୋଇ ସିଂହାସନରେ ବସିଲେ । ପ୍ରଥମ ଦିନ ସେ ଗୋଟାଏ ବଡ଼ ଭୋଜି ଦେଲେ । ଦ୍ୱିତୀୟ ଦିନ ସେ ନିନସଙ୍କୁ ବନ୍ଦୀଶାଳାରେ ପକାଇ ଦେଇ ହତ୍ୟା କରାଇ ଦେଲେ । ଏହିପରି ରାଜ୍ୟଟି ପାଇ ସେ ସେଠାରେ ୪୦ ବର୍ଷକାଳ ସମ୍ରାଟ ହୋଇଥିଲେ ।

(ଏଇଠାରେ ଫ୍ରେଜର ସାହେବ ଅନୁମାନ କରନ୍ତି ଏଇ ଉପାଖ୍ୟାନରେ ଗୋଟିଏ ମାତୃଦେବୀଙ୍କ ସମ୍ବନ୍ଧୀୟ ପାରମ୍ପାରିକ ଉପାଖ୍ୟାନର ଛାୟା ପଡ଼ିଛି । ରୀତି ଥିଲା, ପୂର୍ବେ ୫ ଦିନ ପାଇଁ ରାଜାମାନେ ଦୁଇ ଜଣଙ୍କୁ ବ୍ୟାଜ ରାଜା ଓ ରାଣୀ କରି ବସାଇ ଦେଉଥିଲେ । ଏଠାରେ ସେମିରାମିସ୍ ମଧ୍ୟ ମାତୃଦେବୀଙ୍କ ସ୍ଥାନରେ କଳ୍ପନା କରାଯାଇଛନ୍ତି । ସେଇ ହିସାବରେ ତାଙ୍କ ପତି ଉପପତିଙ୍କୁ ମାରିବା କଥାଟି ଲଗାଇ ଦିଆଯାଇଛି ) ।

କିନ୍ତୁ ପୁଣି ପରମ୍ପରାଗତ ଇତିହାସରୁ ଜଣାଯାଏ ସେମିରାମିସ୍ ଆସିରିଆରେ ବଡ଼ ପ୍ରତିପତ୍ତିଶାଳିନୀ ସମ୍ରାଟ୍ ଥିଲେ । ସେ ଭୂମିରେ ଓ ପର୍ବତ ଉପରକୁ ବହୁ ରାସ୍ତା ନିର୍ମାଣ କରିଥିଲେ, ବହୁ ଅଫିସ ଓ ବଡ଼ ବଡ଼ ଘରମାନ ତାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଚାରିଆଡ଼େ ସେ ନାନା-ଯୁଦ୍ଧକରି ବିଜୟଶ୍ରୀଶାଳିନୀ ହୋଇଥିଲେ, କେବଳ ଭାରତ ସଙ୍ଗେ ଯୁଦ୍ଧ କରିବାକୁ ଆସି ସେ ଆଗେଇ ପାରି ନ ଥିଲେ ବୋଲି

କଥା ଅଛି । ସେ ପାଂଚ ପୁରୁଷ ପର୍ଯ୍ୟନ୍ତ ରାଜ୍ୟରେ ଏକାଧିପତ୍ୟ କରୁଥିଲେ । ଅବଶ୍ୟ ତାଂକ ପୁଅ ନାତିମାନେ ସେତେବେଳକୁ ରାଜଗାଦିରେ ବସୁଥିଲେ ଓ ସେ ମଧ୍ୟ ପଛରୁ ପର୍ଯ୍ୟବେକ୍ଷଣରେ ଆତ୍ମଦାନ କରୁଥିଲେ । ତାଂକର ଯୌବନ ବଡ଼ ଚିରସ୍ଥାୟୀ ଥିଲା । ଶେଷକୁ ଏଇ ଆତ୍ମଦାନ ସଂପର୍କରେ ତାଂକ ନାତି ସମ୍ରାଟ ପଦବୀରେ ଥାଇ ତାଂକ ପ୍ରତି ଅତ୍ୟନ୍ତ ଘୃଣା ଓ ଅନାଦର ପ୍ରକାଶ କରିବାରୁ ସେ ନିଜେ ଗୋଟିଏ କପୋତ ରୂପେ ଆକାଶକୁ ବା ସ୍ୱର୍ଗକୁ ଉଡ଼ିଯାଇଥିଲେ ।

## ଉପାଖ୍ୟାନ ଦୁଇଟିର ଆଲୋଚନା ଓ ଶକ୍ତ ଧର୍ମ—

ଅବଶ୍ୟ ଏ ଉପାଖ୍ୟାନ ଓ ଇତିହାସ ଏକାଠି ଜଡ଼ିତ ରହି କେଉଁ ସମୟର କେଉଁ ଘଟଣାକୁ ନିର୍ଦ୍ଦେଶ କରୁଛି ତା ନାନା ଭାବରେ ବୁଝାଯାଇଥିଲେ ମଧ୍ୟ ସିଦ୍ଧାନ୍ତ କରି କହିବା କଷ୍ଟ । ଏ ଅତି ପ୍ରାଚୀନକାଳର ଉପାଖ୍ୟାନ ମାତ୍ର ମନେ ହୁଏ, ସେମିରାମିସଂକ ଇତିହାସ ସଂଗେ ଯୋଡ଼ି ଦିଆଯାଇଛି । ତଥାପି ଏଥିରେ କେବଳ ପ୍ରକଟିତ ନିସ୍ଥା ଓ ଆଦର୍ଶମାନଂକର ଅସାମଂଜସ୍ୟଟି ଛାଡ଼ିଦେଲେ ଏହା ଶକୁନ୍ତଳା ସଂଗେ ଏକ ବୋଲି ମନେହୁଏ । ଶକୁନ୍ତଳା କଥାଟିରେ ସୌନ୍ଦର୍ଯ୍ୟ ଓ ଗୁପ୍ତ ପ୍ରଣୟର ବର୍ଣ୍ଣନା ଅଛି । ତାଂକ ପୁତ୍ର ପ୍ରବଳ ସମ୍ରାଟ୍ ହୋଇଥିଲେ । ଏଠାରେ ସେମିରାମିସ୍ ନିଜେ ତାହାହିଁ ହୋଇଥିଲେ । ଭରତଙ୍କ ନାମ ଯେପରି ଭାରତରେ ପ୍ରଖ୍ୟାତ, ସେମିରାମିସଂକ ନାମ ଅସୁର ଦେଶକୁ ସାଇପ୍ରାସ ଓ ଗ୍ରୀସ ଯାଏ ସେହିପରି ବ୍ୟାପ୍ତ । ମାତୃଦେବୀଂକ ସଂପର୍କ ସେମିରାମିସ୍ ଉପାଖ୍ୟାନରେ ଅଂଗାଗୀ ଭାବରେ ଜଡ଼ିତ ଅଛି । କିଂତୁ ଭାରତରେ ଶିବ ଓ ଶକ୍ତିଂକ ଧର୍ମ ତଥା ଶକ୍ତିଂକର ସାଭିଷ୍ଟ ଓ ସ୍ୱଚ୍ଛଂଦ ଯୌନନିଷ୍ଠା ପରବର୍ତ୍ତୀ କାଳରେ ପ୍ରାକୃତ ଧର୍ମ ଭାବରେ ଖୁବ୍ ପ୍ରକାଶ ପାଇଥିଲେ ମଧ୍ୟ କେଉଁଠାରୁ ଶକ୍ତିଧର୍ମର ଏ ଉପାଖ୍ୟାନ ସବୁ ଆସିଥିଲା, ତା ଭାବିବାର କଥା । ଖୁବ୍ ସଂଭବ ଏହାର ମୂଳ ଅଛି ପଶ୍ଚିମ ଦେଶରେ ।

## ଶିବଧର୍ମ—

କିଂତୁ ପୁଣି ଦେଖିବାର ଅଛି ଶିବ ଧର୍ମଟି ଅତି ପ୍ରାଚୀନ । ମହେଂଜୋଦାରୋର ପ୍ରାଚୀନ ସଭ୍ୟତାରେ ଏହାର ନାନା ସଂକେତ ମିଳୁଛି । ସେଠାରେ ମଧ୍ୟ ମନେହୁଏ ଶିବ, ପଶୁପତି, ଅର୍ଥାତ୍ କିଂତୁ ଜଗତର ଅଧୀଶ୍ୱର । ଅନ୍ୟଥା ଇତିହାସରେ ଦାର୍ଶନିକ ଭାବରେ ଶିବଂକର ସଂକେତ ଅତି ପ୍ରତିଷ୍ଠିତ । ଧର୍ମଟି ଶିବ ନାମରେ ହେଲେ ମଧ୍ୟ ଶିବ ହେଉଚନ୍ତି ମୂଳ ବିଶ୍ୱଦେବ । ତାଂକ ନା ହେଉଚି ବିଶ୍ୱନାଥ, କିଂତୁ ଶକ୍ତି ଛିନ୍ନ ହେଲେ ଶିବ ନିଜେ ମଧ୍ୟ ସ୍ପନ୍ଦିତ ହୋଇପାରିବେ ନାହିଁ । ବେଦାଂତରେ ବ୍ରହ୍ମ ଓ ମାୟା, ଅବିଦ୍ୟା ଯେ ସ୍ଥାନରେ ଅଛଂତି ଏଇ ଶିବ ଓ ଶକ୍ତି ଧର୍ମ ମଧ୍ୟ ଭାରତ ଦର୍ଶନରେ ସେହି ସ୍ଥାନ ଅଧିକାର କରିଚଂତି । ହେଲେହେଁ ଏ ସବୁ ଅତି

ପ୍ରାଚୀନ । ଉପନିଷଦକାଳରୁ ହିଁ ଏହି ଶିବ ଶକ୍ତି ଭାବ ପ୍ରତିଷ୍ଠିତ ହୋଇ ଯାଇଥିଲା । ଅତଃ ଏବଂ ପ୍ରକାଶିତ ଶକ୍ତି ଯେ ଯଥାର୍ଥରେ ବିଶ୍ୱମୂଳ ଏହା ପୁଣି ହିମାଳୟ ସଙ୍ଗେ ସଂପୃକ୍ତ । ଏପରିକି ହିମାଳୟର କନ୍ୟା ବା ହିମାଳୟରୂପୀ ଶିବଂକର ଶକ୍ତି ତାହାର ସଙ୍କେତ ମଧ୍ୟ କେନୋପନିଷଦରୁ ମିଳୁଚି ।

## କେନୋପନିଷଦରେ ବ୍ରହ୍ମ ଓ ଉମା—

କେନୋପନିଷଦର ତୃତୀୟ ଖଂଡରେ ପରିଷ୍କାର ଅଛି, ବ୍ରହ୍ମ ଦେବତାମାନଂକ ପାଇଁ ଅସୁରଂକୁ ଜିଣିଲେ । କିଂତୁ ଦେବତାମାନେ ମନେ ମନେ ତାହା ନିଜର ବୋଲି ବଡ଼ାଇ କଲେ, ବ୍ରହ୍ମ ଏହା ବୁଝିପାରିଲେ ଓ ଦେବଂକ ଆଗରେ ଆସି ପ୍ରତିଭାତ ହେଲେ । ହେଲେହେଁ ଦେବତାମାନେ ଏ ଯକ୍ଷ ମହାପୁରୁଷ କିଏ ବୋଲି ଜାଣିପାରିଲେ ନାହିଁ ।

ସେମାନେ ଅଗ୍ନିଙ୍କୁ କହିଲେ, 'ଜାତବେଦା' ଯାଅ ଦେଖ ଏ କିଏ । ଅଗ୍ନି ରାଜି ହେଲେ, ତାଂକ ପାଖକୁ ଗଲେ । ବ୍ରହ୍ମ ତାଂକୁ କହିଲେ "ତୁମ କିଏ" ? ଅଗ୍ନି କହିଲେ, "ମୁଁ ହେଉଛି ଅଗ୍ନି, ମୁଁ ହେଉଚି ଜାତବେଦା ।" ବ୍ରହ୍ମ କହିଲେ ତୁମଠାରେ କି କ୍ଷମତା ଅଛି, ଅଗ୍ନି ଉତ୍ତର ଦେଲେ, "ପୃଥିବୀରେ ଯାହା ଅଛି ସବୁ ମୁଁ ପୋଡ଼ି ଦେଇପାରେ" ।

ସେଠାରୁ ବ୍ରହ୍ମ ତାଂକ ଆଗେ ଗୋଟିଏ କୁଟା ଥୋଇ ଦେଇ କହିଲେ, "ଏହାକୁ ପୋଡ଼" । ଅଗ୍ନି ସେ କୁଟା ପାଖକୁ ଯାଇ ସର୍ବସମଂତେ ତାକୁ ପୋଡ଼ିବାକୁ ଚେଷ୍ଟା କଲେ । କିଂତୁ ପୋଡ଼ି ପାରିଲେ ନାହିଁ । ତା ପରେ ସେ ଦେବତାମାନଂକ ପାଖକୁ ଫେରିଯାଇ କହିଲେ, "ଏ କିଏ ମୁଁ ଜାଣି ପାରିଲି ନାହିଁ" । ତା ପରେ ଦେବତାମାନେ ବାୟୁଂକୁ କହିଲେ । ବାୟୁ ଗଲେ, ସବୁ ଉଡ଼ାଇ ଦେବେ ବୋଲି କହିଲେ । କିଂତୁ କୁଟାଟିଏ ମଧ୍ୟ ଉଡ଼ାଇ ଦେଇପାରିଲେ ନାହିଁ, ତା ପରେ ଦେବତା-ମାନେ ଇନ୍ଦ୍ରଂକୁ କହିଲେ । ଇଂଦ୍ର ଗଲେ । କିଂତୁ ସେ ପହଂଚିବାରୁ ବ୍ରହ୍ମ ଅଂତର୍ଧାନ ହୋଇଗଲେ ।

ଯେଉଁଠାରେ ବ୍ରହ୍ମ ଥିଲେ ସେଇଠାରେ ସୁଂଦରୀ ସାଭରଣା ହୈମବତୀ ଉମା ଆବିର୍ଭୂତା ହେଲେ । ( ହୋଇପାରେ ହିମାଳୟର ଏକ ଶୃଂଗରେ) ଇଂଦ୍ର ତାଂକୁ ପଚାରିଲେ, ଏ ଯେଉଁ ଯକ୍ଷ (ଏଠାରେ ଥିଲେ) ସେ କିଏ ? "ଉମା କହିଲେ, ସେ ହେଉଚଂତି ବ୍ରହ୍ମ । ତାଂକର ବଳରେ ତୁମେ ଅସୁରଂକୁ ଜିଣିଲ । ନିଜେ ଜିଣିଲ ବୋଲି ଅହଂକାର କରନାହିଁ । "

ଏଇ ଉପନିଷଦରେ ପୁଣି କୁହାଯାଇଚି, ଅଗ୍ନି, ବାୟୁ ଓ ଇଂଦ୍ର ଏହାଂକୁ ଜାଣିବାକୁ ଇଚ୍ଛା କରିଥିବାରୁ, ସେଇମାନେ ହେଉଚଂତି ଅନ୍ୟ ଦେବତାମାନଂକଠାରୁ ବଡ଼ । ଶେଷରେ ଇଂଦ୍ରହିଁ ଏହାଂକୁ ପ୍ରଥମେ ବ୍ରହ୍ମ ବୋଲି ଜାଣିଥିବାରୁ ସେଇ ଏକା ହେଲେ ଦେବ ଶ୍ରେଷ୍ଠ ।

ତା ପରେ ଏଇଠାରେ ଏଇ ବ୍ରହ୍ମକୁ ପାଇବା ଉପାସକର ଏକାଂତ କାମ୍ୟ ଓ ଉପାସକର ମନ ଏଇ ବ୍ରହ୍ମ ଆଡ଼କୁ ଯାଉ ଓ ସର୍ବଦା ଏଇ ବ୍ରହ୍ମକୁ ସ୍ମରଣ କରୁ ବୋଲି କାମନା କରିବା ସଂଗେ ସଂଗେ ଏଇ ବ୍ରହ୍ମକୁ ଜଗତର ଅଧାତ୍ମ ବୋଲି କୁହାଯାଇଚି । ଏଇ ବ୍ରହ୍ମ ସଂବଂଧରେ ଯାହା କୁହାଗଲା ତାହା ତପ, ଦମ ଓ କର୍ମ ପ୍ରଭୃତିର ତଥା ବେଦବେଦାଂଗ ସବୁ ଏଇ ବ୍ରହ୍ମର ପ୍ରତିଷ୍ଠା ଅର୍ଥାତ୍ ଭିତ୍ତି । ସତ୍ୟ ଏହାର ଆୟତନ ବା ଏକାଂତ ଆଶ୍ରୟ ବୋଲି କୁହାଯାଇଚି । ଯେ ଏହାକୁ ଏଇପରି ଜାଣେ, ସେ ପାପରୁ ରକ୍ଷା ପାଏ ଓ ଅଂତତଃ ସ୍ୱର୍ଗଲୋକରେ ପ୍ରତିଷ୍ଠିତ ହୁଏ ବୋଲି ମଧ୍ୟ ଏଇ ଉପନିଷଦ ଏଇଠାରେ କହୁଚଂତି । ଟିକିଏ ଚିଂତା କଲେ ଦେଖାଯିବ ବ୍ରହ୍ମ ଓ ବ୍ରହ୍ମର ଏଇସବୁ ଗୁଣ ସଂକେତମାନ ଜୈନଧର୍ମର "ଜୀବ" ବା ଆତ୍ମାକୁ କ୍ରମେ ଧାର୍ମିକ ଚିଂତା ରୂପେ ବେଦରେ ପ୍ରକାଶ କରିଚି ।

## ଏଇ ଉମାର ପରିଚୟ—

ପୁଣି ଦେଖିବାକୁ ଗଲେ ଦେଖାଯିବ ଏଇ ହୈମବତୀ ଉମା ହେଉଚଂତି ସେଇ ଅସୁର ପ୍ରଭୃତି ଦେଶର ମାତୃଦେବୀ । ଦ୍ରାବିଡ଼ ଅମ୍ମା, ମା ଓ ମାମୀ ଶବ୍ଦରୁ ଏଇ ଉପାଖ୍ୟାନଟି ବାହାରିଚି ବୋଲି ମନେହୁଏ । ହୈମବତୀ ବୋଇଲେ ହିମାଳୟ କନ୍ୟା ବା ହିମାଳୟ ରୂପେ ସ୍ଥିତା । ଏଇ ଅମ୍ମା, ମା ଓ ମାମୀ ନାମରେ ଅତି ପ୍ରାଚୀନ କାଳରେ ସୁମେରଠାରୁ ଏବ ତୁର୍କୀର କାପାଡୋସିଆ ପର୍ଯ୍ୟଂତ ସର୍ବତ୍ର ଦେବୀମାନଂକର ନାମ ଥିବାର ସଂକେତ ମିଳେ । ଏହା ପ୍ରାୟ ସାଢ଼େ ଚାରି ହଜାର ବର୍ଷ ତଳର କଥା । ଏଠାରେ କହିହୁଏ, ସେହି ସ୍ଥାନମାନଂକରେ "ମା"ର ନାମ ଥିଲା ବୋଉ କିଂବା ବାଉ ( Bau ବା Baau ) ମାତା ଅର୍ଥରେ ସେଇ ବଉ ଶବ୍ଦ ଏବେ ଓଡ଼ିଶାରେ ଓ କଦାଚିତ୍ ଆସାମରେ ଚଳୁଚି ଏହା କୁହାଯାଇଚି ।

ମା ଶବ୍ଦଟି ପୁଣି ମୂଳତଃ ସଂସ୍କୃତ ଶବ୍ଦ ନୁହେ । ଏହା ଦ୍ରାବିଡ଼ ବା ସୁମେରୀୟ । ସଂସ୍କୃତ ହେଉଚି ମାତୃ । ଯେତେ ଟାଣିଲେ ମଧ୍ୟ ବୁଝାଯାଉଚି । ଏଇ ଔପନିଷଦିକ ଉପାଖ୍ୟାନଟି କଦାପି ଏତେ ପ୍ରାଚୀନ ନୁହେ । ସେତେବେଳକୁ ଦ୍ରାବିଡ଼ ବା ସୁମେରୀୟ ଆମ୍ମା ଓ ମା ଶବ୍ଦ ଉତ୍ତର ଭାରତୀୟ ମୁଖ ସଂଜ୍ଞ ଓ ପାରିପାର୍ଶ୍ୱିକ ପରିସ୍ଥିତିର ପ୍ରଭାବରେ ଉମାରେ ପରିଣତ ହୋଇଯାଇଥିଲା ।

## ଉପାଖ୍ୟାନମାନଙ୍କର ସାମଂଜସ୍ୟ—

ଏସବୁ ଉପାଖ୍ୟାନମାନଙ୍କରୁ ସେ ଦେଶ ଓ ଭାରତ ମଧ୍ୟରେ ବହୁ ଆଦାନପ୍ରଦାନର ପ୍ରମାଣ ମିଳୁଛି । ସେଇପରି ବ୍ୟାବିଲନୀୟ "ଜୁ" ପକ୍ଷୀ ଓ ସେଇ ସବୁ ଭୂମିର ଇଷ୍ଟାଂକ ଇଗଲ ବା ବଡ଼ ଶାଗୁଣା (ଗରୁଡ଼) ପ୍ରଭୃତି ଉପାଖ୍ୟାନ ତଥା ସେ ଦେଶର ଆକ୍‌କାଡ଼ ସମ୍ରାଟ ସାରଗନ ଓ ମହାଭାରତରେ କର୍ଣ୍ଣ ଉପାଖ୍ୟାନ-ମାନଂକ ମଧ୍ୟରେ ସାମଂଜସ୍ୟ ବହୁତ ଅଛି ।

## ଋଷ୍ୟଶୃଂଗ ଉପାଖ୍ୟାନ ମୂଳତଃ ମନେହୁଏ ଦ୍ରାବିଡ଼ ଉପାଖ୍ୟାନ

ପୁଣି ଏଇ ଋଷ୍ୟଶୃଂଗ ଉପାଖ୍ୟାନ ଭାରତୀୟ ପୁରାଣମାନଙ୍କରେ ଅଛି ସତ, ମାତ୍ର ଏହା ଦ୍ରାବିଡ଼ ପରଂପରା ନୁହେ ବୋଲି କହିବାର କୌଣସି ଉପାୟ ନାଇ । ବୈଦିକ ସାହିତ୍ୟରେ ଉମା ଅଛନ୍ତି କିନ୍ତୁ ଋଷ୍ୟଶୃଂଗଂକର ଉଲ୍ଲେଖ ନାଇ । ଅଂଗ ଦେଶ ସହିତ ଋଷ୍ୟଶୃଂଗଂକର ଯେଉଁ ସମ୍ପର୍କ ପୁରାଣରୁ ମିଳେ ସେଥିରୁ ଋଷ୍ୟଶୃଂଗ ଉପାଖ୍ୟାନଟି ବୈଦିକ ଥିବାର ମଧ୍ୟ ପ୍ରମାଣ ମିଳୁନାଇ । ଅଂଗ ହେଉଛି ଅତି ପ୍ରାଚୀନ କାଳର ଅନାର୍ଯ୍ୟଭୂମି । ଏହା ମଧ୍ୟ ଦ୍ରାବିଡ଼ ଭୂମି । କାରଣ ଅନାର୍ଯ୍ୟମାନଂକ ମଧ୍ୟରେ ମୁଖ୍ୟମାନେ ଥିଲେ ଦ୍ରାବିଡ଼ । ଏଇ ଦ୍ରାବିଡ଼ ସମାଜରେ ଲୋକେ ମୁଖ୍ୟ ଭାବରେ ଆଗଂତୁକ ତଥା ଆକ୍ରମଣକାରୀ ଆର୍ଯ୍ୟମାନଙ୍କର ସମ୍ମୁଖୀନ ହୋଇଥିଲେ । ଏ ସବୁ କଥା ଦେଖି ମନେହୁଏ । ଏଇ ଜୈନର ବିଦ୍ରୋହଟି ଦ୍ରାବିଡ଼ କିଂବା ସୁମେର କେଉଁଠାରୁ ଆଖ୍ୟାୟିକାର ମୂଳ ଆଦାନ ପ୍ରଦାନରେ କେଉଁଠାକୁ ଯାଇଥିଲା, ତାହା ବୁଝିବାର ଅଛି ।

## ମୂଳ ଜୈନଧର୍ମ—ସୁମେରୀୟ ନା ଦ୍ରାବିଡ଼ ?

ସୂଚନା ଦିଆଯାଇଛି ଦେବୀଧର୍ମ, ସୁମେର ପ୍ରଭୃତି ଆଡ଼ୁ ଦ୍ରାବିଡ଼କୁ ଓ ଉତ୍ତର ଭାରତକୁ ଆସିଥିଲା । "ମା" "ବୋଉ" ପ୍ରଭୃତି ଶବ୍ଦ ମନେହୁଏ, ମୂଳତଃ ସୁମେରୀୟ । ହୋଇପାରେ ଏହା ଦ୍ରାବିଡ଼ । ଦ୍ରାବିଡ଼ରୁ ଯାଇ ସେଠାରେ ପ୍ରତିଷ୍ଠିତ ଦେବୀମାନଂକୁ ନାମ ଦେଇଥିଲା । ସେପରି ଅନୁସନ୍ଧାନର ପ୍ରମାଣ ଅବଶ୍ୟ ନାଇ । କିନ୍ତୁ ଦେବୀଧର୍ମ ପରି ପ୍ରାକୃତ ଧର୍ମ ସୁମେର ପ୍ରଭୃତି ଆଡ଼ୁ ପ୍ରଥମେ ଆସିଥିବା ସମ୍ଭବ । କିନ୍ତୁ ଜୈନଧର୍ମ ଦେବୀଧର୍ମ ପରି ମୌଳିକ ଓ ପ୍ରାକୃତ ନୁହେ । ପରେ ଅବଶ୍ୟ ଜୈନଧର୍ମ ଦେବୀଧର୍ମ ଓ ଅନ୍ୟାନ୍ୟ ଅନେକ ଧର୍ମକୁ ସେଇ ଧର୍ମମାନଂକର ମୂଳ ଭୂମି ବିଶେଷତଃ ଏଇ ଭାରତଭୂମିରେ ଖୁବ୍ ପ୍ରଭାବିତ କରିଛି । କିନ୍ତୁ ମାନବର ବିଦ୍ରୋହ ହେଉଛି କୌଣସି ମୂଳଧର୍ମରୁ ବିଦ୍ରୋହ । ବର୍ତ୍ତମାନ ଦେଖିବାର କଥା ଏଇ ଜୈନ ଧର୍ମ ସମ୍ବନ୍ଧରେ—ଏପରିକି ଋଷ୍ୟଶୃଂଗ ଓ ଇସ୍ତା-ବାଣୀ ଉପାଖ୍ୟାନ ସମ୍ବନ୍ଧରେ ମଧ୍ୟ ଦ୍ରାବିଡ଼, ଦ୍ରାବିଡ଼ ଓ ସୁମେର ମଧ୍ୟରେ ସେ କାଳେ କି ସମ୍ପର୍କ ଥିଲା । ଏ ବିଦ୍ରୋହ

ଓ ବ୍ରୋଞ୍ଜ ଯୁଗ ସୁମେରରୁ ଭାରତକୁ ଆସିଥାଇ ପାରେ । କିଂବା ଭାରତରୁ ସୁମେରକୁ ଯାଇଥାଇ ପାରେ । ମୋଟ କଥା ଏ ବ୍ରୋଞ୍ଜର ବିକାଶ ସମୟକୁ ଏ ଦୁଇ ଦେଶର ସମାଜ ଓ ସଭ୍ୟତା ପ୍ରାୟ ଏକ ଥିଲା ବୋଲି ମନେହୁଏ ।

## ସୁମେର ପ୍ରଭୃତ ଦେଶ ଓ ଦ୍ରାବିଡ଼ରେ ସେକାଳ ସମାଜ ଧର୍ମାଦ ହୁଏତ ଏକାପର ଥିଲା—

ଏଠାରେ ଟିକିଏ ପଛକୁ ଗୃହି ପୁଣି ଦେଖାଯାଉ । ପ୍ରାଚୀନ ସୁମେର ଦେଶର ଇତକେ ନଗର ରାଜ୍ୟ ସମ୍ବନ୍ଧରେ ଇୟା-ବାଣୀଂକର ଯେଉଁ ଉପାଖ୍ୟାନଟି କୁହା ଯାଇଚ, ତାହାର ସ୍ପଷ୍ଟ ପଟ ଫୁଟାଇବା ପାଇଁ ସେ କାଳର ଆଦିମ ରାଜ୍ୟ-ସାମ୍ରାଜ୍ୟ ତଥା କିଛୁ ଦିନ ପରେ ପ୍ରକାଶ ପାଇଥିବା ସାଉଥ୍ର ଅସୁର ଦେଶ ଓ ଅସୁର ସମ୍ରାଟଂକ ବ୍ୟବହାର କଥା ବିଷୟରେ ସୂଚନା ଦିଆଯାଇଚ । କିଂତୁ ବୁଝିବାର ଅଛି ଏପରି ରାଜା ସମ୍ରାଟମାନଂକର ବାଧ୍ୟବାଧକତାରେ କର ଆଦାୟ କରିବା ଓ ଲୋକଂକୁ ଅପଣାର କରିବା କେବଳ ଯେ ସେଇ ସୁମେରୁ, ବ୍ୟାବିଲନ ଓ ଇଜିପ୍ଟରୁ ବାହାରିଥିବା ଅସିରିଆ ପ୍ରଭୃତ ଦେଶମାନଂକରେ ପ୍ରକାଶ ପାଇଥିଲା ତା ନୁହେ । ଯେଉଁ ମନୁ ମେନେଷ୍ ମିନୋ ପ୍ରଭୃତିଂକ କଥା କୁହାଯାଇଚ ସେହିପରି ସଭ୍ୟତାର ପ୍ରବର୍ତ୍ତକ ଆଦିପୁରୁଷ-ମାନେ ଦ୍ରାବିଡ଼ରେ ମଧ୍ୟ ଥିଲେ—ମନୁ ତାହାର ପ୍ରଧାନ ଆଦି ପୁରୁଷ ଏ କଥା କହିବାରେ ନିଶ୍ଚିତତା ନ ଥାଇ ପାରେ, କିଂତୁ ଦ୍ରାବିଡ ଦେଶରେ ଓ ଦ୍ରାବିଡ଼ ସଭ୍ୟତାରେ ଥିଲେ ମୀନ ସୁମେର ଦେଶର ଆଦିପୁରୁଷ ଇୟା ବା ଓୟାନମ୍ (ଇୟାହୋନ୍-ଇୟାଂକ ପୁଅ ବା ଓଡ଼ିଆରେ ହେବ ଇୟା ପୁଅ) ଦ୍ରାବିଡ଼ମାନଂକପରି ଇୟା ବୋଇଲେ ମଧ୍ୟ ମାଛ । ପୁଣି ଇୟା ବାଣୀ ବୋଇଲେ ହେଉଚ ଇୟା ଯାହାକୁ ସୁଖ ପାଆଂତ । ଏଇ ଆଦି ପୁରୁଷ ଓ ପ୍ରସିଦ୍ଧ ପୁରୁଷମାନଂକ ଆଧିପତ୍ୟରେ ମନେହୁଏ ସେକାଳେ ସମାଜ ଖଂଡମାନ ସବୁଆଡ଼େ ଅର୍ଥାତ୍ ପଶ୍ଚିମ ଭୂମି ଓ ଦ୍ରାବିଡ଼ ଦୁଇଆଡ଼େ ଏଇପରି ଅଧିକୃତ ନିୟଂତ୍ରିତ ହେଉଥିଲା । ଅସୁର ହୁଏତ ଗୋଟାଏ ସ୍ୱତଂତ୍ର ବିକାଶ ହୋଇପାରେ । ଅତ୍ୟାଚାରର ବୀଭତ୍ସତା, ସେଥିରେ ଖୁବ୍ ବଢ଼ି ଯାଇଥିଲା । କିଂତୁ ମାନବର ପ୍ରାକୃତ ଭକ୍ତ ଧର୍ମ ସବୁଆଡ଼େ ଯେ ରାଜା, ଶକ୍ତିଶାଳୀ ଓ ବଡ଼ ପୁରୁଷମାନଂକୁ ଧରି ବଢ଼ୁଥିଲା, ତାହା ସହଜରେ ଅନୁମାନଗମ୍ୟ । ଅତଏବ ଦ୍ରାବିଡ଼ରେ ଠିକ୍ ସେଇକାଳରେ ବା ସେଇଭଳି ପ୍ରାଚୀନ କାଳରେ ଯେ ଦୁଇ କାରଣରୁ ଜୈନସାଧନ ବାହାରି ନ ଥିଲା ତାହା କିଏ କହିବ ? ହୁଏତ ବାହାରି ଥିଲା । ମହେଂଜୋଦାରୋ ଓ ହରପ୍ପା ପ୍ରଭୃତରୁ ସର୍ଜନ୍ ମାର୍ଶାଲଂକ ତତ୍ତ୍ୱାବଧାନରେ ପ୍ରାୟ ୩୦।୩୫ ବର୍ଷ ପୂର୍ବେ ଯେଉଁ ପ୍ରାଚୀନ ମୂର୍ତ୍ତିମାନ ବାହାରୁଚ ସେଥିରେ ସାପ ଫଣାତଳେ ନିର୍ମିତ କଂକାଳମାତ୍ରାବଶିଷ୍ଟ ଜୈନଯୋଗୀଙ୍କ ମୂର୍ତ୍ତି ଦେଖିଲେ ବିସ୍ମିତ ହେବାକୁ ହୁଏ । ଏ ଖୋଦିତ ମୂର୍ତ୍ତି ଅଂତତଃ ଆଜକୁ ୪ ହଜାର ବର୍ଷ ତଳର ମୂର୍ତ୍ତି । ଏହା ଛଡ଼ା ଏବେ ପ୍ରାଚୀନ ସୁମେରର ଖୋଦନରେ ଯେଉଁ

ଭାରତୀୟ ମୁଦ୍ରା ✻ ଓ ମଂହେଞ୍ଜୋଦାରୋ ହରପ୍ପା ପ୍ରଭୃତିର ଖୋଦନରେ ଯେଉଁ ସୁମେରୀୟ ବର୍ତ୍ତୁଳ ମୁଦ୍ରା ବାହାରିଛି ତାହା ମଧ୍ୟ ଅନ୍ତତଃ ସେଇକାଳର । ଏଇପରି ନାନା କାରଣରୁ ମନେହୁଏ ସୁମେରୁ ପ୍ରଭୃତି ପ୍ରାଚୀନ ଇରାକ୍ ଭୂମିରେ ଥିବା ଦେଶମାନ ଓ ଭାରତର ଦ୍ରାବିଡ଼ ଠିକ୍ ଏକାପରି ଭୂମି ଥିଲା—ଏ ଭୂମିମାନଂକରେ ସମାଜ ମଧ୍ୟ ଏକାପରି ଥିଲା । ଭୂମିରେ ତଥା ସମୁଦ୍ରରେ ଏଇ ଦୁଇ ଭୂମିଖଂଡ଼ ମଧ୍ୟରେ ଆଦାନ ପ୍ରଦାନ ମଧ୍ୟ ବରାବର ଲାଗି ରହିଥିଲା । ତେଣୁ କହୁଛି ସୁମେର ବା ଭାରତ ଦୁହିଂକ ଭିତରେ ପ୍ରାଚୀନ, ଅର୍ବାଚୀନ ବିଚାର ଏଠାରେ ନ କରି, କିଂବା କେଉଁ ଭୂମିରୁ କେଉଁ ଭୂମିକୁ ଉପାଖ୍ୟାନ ଓ ତହିଁ ସଙ୍ଗେ ସମାଜର ପ୍ରଭାବ ଆସିଛି, ସେ କଥା ଏଠାରେ ବିଚାର ନ କରି, କୁହାଯାଇ ପାରେ, ସେ କାଳର ବ୍ୟାବିଲନ ଆସିରିଆ (ବର୍ତ୍ତମାନର ଇରାକ) ପ୍ରଭୃତି ଦେଶର ଜନତା, ସମାଜ ଏବଂ ଧର୍ମବୋଧ ତଥା ଭାରତର ସେଇ ସବୁ ବସ୍ତୁ ଓ ତଦ୍‌ଗତ ଅନୁଷ୍ଠାନମାନ ଏକା ପ୍ରକାରର ଥିଲା ।

## ଆର୍ଯ୍ୟ ଆଗମନ ପୂର୍ବରୁ ଭାରତ ଥିଲା ଦ୍ରାବିଡ଼ ଭୂମି—

ଅଂଗଦେଶ କଥା କହିଲାବେଳେ ସୂଚନାରେ କୁହାଯାଇଛି ଆର୍ଯ୍ୟମାନେ ଭାରତରେ ଆସି ବସତି ସ୍ଥାପନ କରିବା ପୂର୍ବରୁ ଭାରତ ଥିଲା ଦ୍ରାବିଡ଼ ଭୂମି । ଦ୍ରାବିଡ଼ ମୁଖ୍ୟମାନେ ଭାରତର ସର୍ବଶ୍ରେଷ୍ଠ ସମାଜ ଓ ସାହିତ୍ୟର ମୁଖ୍ୟରୂପେ ପରିଚିତ ଥିଲେ ଓ ସମସ୍ତେ ଆତ୍ମିକ ଧର୍ମରୂପେ ଏଇ ଜୈନଧର୍ମକୁ ଆଶ୍ରୟ କରିଥିଲେ । ଅବଶ୍ୟ ଜୈନଧର୍ମ ପ୍ରାକୃତ ଧର୍ମ ବା ଭକ୍ତିଧର୍ମରୁ ଭିନ୍ନ ଥିଲା । ଦେଶର ଜନସାଧାରଣ ଏବେ ଯେପରି ପ୍ରାକୃତ ଧର୍ମ ଧରି ଚାଲୁଛଂତି ସେଇପରି ଧର୍ମ ଧରି ଚାଲୁଥିଲେ ।

## ତାଂକ ପୂର୍ବେ ଦ୍ରାବିଡ଼ ଓ ସେହି ଦ୍ରାବିଡ଼ଂକ ସଂଗେ ଆଦାନ ପ୍ରଦାନ—

ଭାରତୀୟ ଆର୍ଯ୍ୟମାନେ ବା ବୈଦିକ ଆର୍ଯ୍ୟଜାତି ବହୁ ପରିମାଣରେ ଏ ଦେଶରେ ଆଗଂତୁକ । ଗାଂଧାର ପ୍ରଭୃତି ଭାରତର ଉତ୍ତର ପଶ୍ଚିମାଂଚଳରେ ଅବଶ୍ୟ ଆର୍ଯ୍ୟମାନେ ବହୁ ପ୍ରାଚୀନ । କେତେ ପ୍ରାଚୀନ ଏଠାରେ କହିବାର ଅବକାଶ ଖୋଜା ଯାଉନାଇ । କିଂତୁ ଏମାନେ ଯେତେଦୂର ସଂଭବ ଅସୁର ପ୍ରଭୃତି ମାନବ ସମାଜମାନଂକ ସଂପର୍କରେ ଆସିଥିଲେ । ଋକ୍‌ବେଦ ମନ୍ତ୍ରରୁ ଜଣାଯାଏ ଯେ ପ୍ରଥମେ ପ୍ରଥମେ ଏମାନେ କହିଥିଲେ, "ମହତ୍ ଦେବାନାମସୁରତ୍ୱମେକଂ" ✻ ଅର୍ଥାତ୍ ଦେବତାମାନଂକ ମହିମା ଓ ଅସୁରତ୍ୱ ଏ ଦୁହେଁ ଏକ । ସେଇଥିରୁ ପରେ ଗାଂଧାର ପ୍ରଭୃତି ଅଚଂଳର ବୈଦିକ ଆର୍ଯ୍ୟମାନଂକ ଅସୁର ଦ୍ୱେଷ ଓ ଘୃଣା ଓ ସେଇପରି ପାରସ୍ୟର ଆର୍ଯ୍ୟମାନଙ୍କ, ଅର୍ଥାତ୍ ପ୍ରାଚୀନ

---

✻ ଋକ୍‌ବେଦ ୩।୫୫।୧

ଜୋରାଷ୍ଟ୍ରୀୟ (ଜାରାଥୁଷ୍ଟ୍ରୀୟ) ମାନଂକ ଅସୁର ବା ଅହୁର ପ୍ରୀତି ଓ ତାହାଁ ସଂଗେ ଦେବମାନଂକ ପ୍ରତି ବିଦ୍ୱେଷ ଓ ଘୃଣା ଏଠାରେ ଉଲ୍ଲେଖଯୋଗ୍ୟ । ମନେହୁଏ, ବୈଦିକ କାଳ ପୂର୍ବରୁ ଯେଉଁ ଆଦାନ ପ୍ରଦାନମାନ ହୋଇଥିଲା, ତା ସ୍ପଷ୍ଟ ବ୍ୟାବିଲନ ଓ ଅସୁର ଦେଶ ପ୍ରଭୃତିର ସମାଜମାନଂକ ସଂଗେ ଭାରତୀୟ ଦ୍ରାବିଡ଼ମାନଂକର ହୋଇଥିଲା ଓ ସେଠାରେ ନାନା ବିଧି ଓ ଅନୁଷ୍ଠାନମାନ ଏଇ ଭାରତୀୟମାନଂକ ଦ୍ୱାରା ପ୍ରଭାବିତ ହୋଇଥିଲା । ଅପରଂତୁ ଭାରତୀୟ ଆର୍ଯ୍ୟେତରମାନେ ତଥା ସୁମେର ପ୍ରଭୃତିରୁ ବାହାର-ଥିବା ବ୍ୟାବିଲନ ଓ ଆସିରିଆ ପ୍ରଭୃତିର ମାନବସମାଜମାନେ ବହୁଭାବରେ ଏକାପରି ଥିଲେ । ଖୁବ୍ ସଂଭବ ସମୁଦ୍ର ତଥା ଭୂମିଭାଗର ବାଣିଜ୍ୟାର୍ଦ୍ଦ ସୂତ୍ରରେ ସେମାନଂକ ମଧ୍ୟରେ ସଂପର୍କ କଦାପି ଦୂର ନ ଥିଲା । ଆଦାନ ପ୍ରଦାନ ବରାବର ଚାଲୁଥିଲା ଓ ସେଇ ସୂତ୍ରରେ ଏଇ ଜୈନ ଆଚାରର ଆଦାନପ୍ରଦାନର ନିଦର୍ଶନମାନ ମଧ୍ୟ ମିଳୁଛି ।

## ପ୍ରଧାନ ପ୍ରାଚ୍ୟ ପ୍ରତ୍ନବିତ୍ ହଲ୍ ସାହେବ କଣ କହୁଚଂତି ଶୁଣ—

ଏଇ କଥାର ପୋଷକତାରେ କୁହାଯାଇପାରେ ହଲ୍ ସାହେବ ନିଜର ପ୍ରାଚୀନ ଇତିହାସରେ ଏ ବିଷୟରେ ବହୁ ପ୍ରମାଣମାନ ଦେଇ ଆଲୋଚନା କରିଚଂତି । ※

ଏଇ ଗ୍ରଂଥରେ ହଲ୍ ସାହେବ ଯାହା ଲେଖିଚଂତି, ସେଥିରୁ କେତେକ ଉଦ୍ଧାର କରିଦେଲେ ପାଠକମାନଂକର ଧାରଣା କରିବାରେ ଟିକିଏ ସୁବିଧା ହେବ ।

"ସୁମେରୀୟମାନେ ସୁମେର ଭୂମିରେ ଆସି ବସତି କରିବା ପୂର୍ବରୁ ସେଠାରେ ଅନ୍ୟମାନେ ଥିଲେ । ଏହାର ନିଶ୍ଚିତ ପ୍ରମାଣ ମିଳୁଚି, ଏମାନେ ହେଉଚଂତି ସେମିଟିକ୍ ଜାତିର ଲୋକ । ତେଣୁ ସୁମେରୀୟମାନଂକ ଦେବତାମାନେ ସେମିଟିକ୍‌ମାନଂକ ପରି ଯୋଉବାଲ ରଖିଚଂତି, କିଂତୁ ସୁମେରୀୟମାନେ ଖିଅର ହେଉଥିଲେ । ଏପରିକି ଖାଲି ଖିଅର ହେଉ ନଥିଲେ । ଅନେକ ଲଂଡ଼ା ମଧ୍ୟ ହେଉଥିଲେ । ଲୁଗା ପିଂଧିବାରେ ମଧ୍ୟ ସେଇପରି ଭେଦ ବେଶ୍ ବାରି ହୁଏ ।" × × ×

"ସୁମେରୀୟମାନେ ସେଇ ଦେଶକୁ ଅନ୍ୟଆଡ଼ୁ ଆସି ଜିଣିଥିଲେ । ସେମାନେ ସ୍ଥାନୀୟ ସେମିଟିକ୍ ଦେବତାଙ୍କୁ ଆଦର ଯାଇଥିଲେ । ପ୍ରାଚୀନ କାଳରେ ଏ ଏକ ସ୍ୱାଭାବିକ ରୀତି । ତେବେ ନିଜର ସୁମେରୀୟ ଦେବତାମାନେ ନ ଥିଲେ ନୁହେ । ସେମାନେ କିନ୍ତୁ ନିଜର ବେଶଭୂଷାଦିରେ କ୍ରମେ ସେମିଟିକ୍‌ମାନଂକ ପରି ହୋଇ-ଯାଇଥିଲେ ।"

---

※ H. R. Hall's Ancient History of the Near East—7th Edition PP. 171, 172, 173, 174.

ଏଇଠାରେ ପାଦଟୀକାରେ ହଲ୍ ସାହେବ ଅନ୍ୟ ପଂଡ଼ିତମାନଙ୍କୁ ଉଦ୍ଧାର କରି କହୁଚଂତି, "ଯେଉଁଠାରେ ସୁମେରୀୟମାନଙ୍କ ମୂର୍ତ୍ତି ମିଳୁଚି, ସେଠାରେ ତାଙ୍କର ମସ୍ତକ ପୂରାପୂରି ଖିଅର ହେଲାପରି ହୋଇଚି । ବୋଧହୁଏ, ଏଇ ଖିଅର ହୋଇଥିବା ଲୋକେ ହେଉଚଂତି ସୁମେରୀୟ ପୁରୋହିତ । ପୁରୋହିତ କହିଲେ ସେ ଜାତିର ବଡ଼ ବଡ଼ ଲୋକେ ବୋଲି ବୁଝିବାକୁ ହେବ । ଏଇ ପୁରୋହିତମାନେ ପୁଣି ଧର୍ମାନୁଷ୍ଠାନମାନ ଆଚରଣ କଲାବେଳେ କେବଳ ଯେ ଖାଲି ମୁଂଡ଼ ଓ ଥୋଡ଼ି, ନଣ ଖିଅର ହୋଇଚାଂତି ସେତକ ନୁହେଁ, ସୁମେରୀୟ ରୀତି ଅନୁସାରେ ସେମାନେ ହେଉଚଂତି ସମ୍ପୂର୍ଣ୍ଣ ଉଲଗ୍ନ ।"

"ସୁମେରମାନଂକ ପୂର୍ବରୁ ଅନ୍ୟମାନେ ସେ ଭୂମିରେ ଥିଲେ ମଧ୍ୟ, ସୁମେରୀୟମାନେ ଯେଉଁ ସଭ୍ୟତା ଘେନିକରି ଆସିଥିଲେ, ତାହା ଏକାବେଳକେ ନୂତନ ଓ ଅନ୍ୟଠାରେ ଏହା ପୂର୍ଣ୍ଣ ବିକାଶ ପାଇ ସୁମେରରେ ଆସି ପ୍ରତିଷ୍ଠିତ ହୋଇଥିଲା ବୋଲି ମନେହୁଏ । ଏହି ଅନ୍ୟ ସ୍ଥାନଟି ପୁଣି ନିକଟରେ ନୁହେଁ, ଏହା ବହୁ ଦୂରର । ଲୋକଂକର ମୂର୍ତ୍ତି ତଥା ରୀତି, ନୀତି, ଆଚାର ବ୍ୟବହାର ଭେଦରୁ ଏହା ସ୍ପଷ୍ଟ ହେଉଚି । ଅବଶ୍ୟ ଏଇ ପୂର୍ଣ୍ଣ ସଭ୍ୟତା ଘେନି ଆସି ପହଂଚିଥିବା ସୁମେରୀୟମାନେ କେବେ ଆଦିମ ଓ ଅସଭ୍ୟ ଥିଲେ ସେ ବିଷୟରେ ଆମର କୌଣସି ଜ୍ଞାନ ବା ପ୍ରମାଣ ନାଇ । ଖ୍ରୀଷ୍ଟ ପୂର୍ବ ୪ର୍ଥ ସହସ୍ର ବର୍ଷରେ ଆମେ ଯେତେବେଳେ ତାଂକୁ ପ୍ରଥମେ ସୁମେରରେ ଦେଖିଲୁ, ସେତେବେଳେ ସେମାନେ ସଭ୍ୟତାରେ ପୂର୍ଣ୍ଣ ବିକଶିତ । ସେମାନେ ଧାତୁ ବ୍ୟବହାର କରୁଥିଲେ ଓ ବଡ଼ ବଡ଼ ସହରରେ ଶୃଂଖଳିତ ହୋଇ ବାସ କରୁଥିଲେ । ବହୁ ଜଟିଳତାପୂର୍ଣ୍ଣ ଅକ୍ଷର ଲେଖିବା ପଦ୍ଧତି ତାଂକର ଥିଲା । ସେମାନେ ବଡ଼ ବଡ଼ ରଜା ଓ ପୁରୋହିତମାନଂକ ବଂଶ ଅଧୀନରେ ଦୃଢ଼ ସରକାରମାନ ଗଢ଼ି ତହିଁରେ ରହୁଥିଲେ । ନିଜର ବିକଶିତ ସଭ୍ୟତା ସେମାନେ ସ୍ଥାନୀୟ ଆଦିମମାନଂକ ଉପରେ ବିସ୍ତାର କରିଥିଲେ ଓ ଏଇ ଆଦିମମାନଂକର ଯାହା କିଛି ସଭ୍ୟତା ବିକାଶ ବୋଲି ଥିଲା, ତା ମଧ୍ୟ ନିଜ ନିଜ ସଭ୍ୟତାରେ ମିଶାଇ ଦେଇଥିଲେ ।"

"ଏଇ ସୁମେରୀୟମାନଂକ ସଭ୍ୟତାରେ ଆଦିମ ଅବସ୍ଥା ବ୍ୟାବିଲନର କୌଣସି ଭୂମି ଉପରେ ବଢ଼ି ନ ଥିଲା । ଏହା ଅନ୍ୟ ଦେଶରେ ବଢ଼ି ପୂର୍ଣ୍ଣତା ପାଇଥିଲା । ଏଇ ଅନ୍ୟ ଦେଶଟି ପୂର୍ବ ଆଡ଼କୁ ପାରସ୍ୟର ପର୍ବତମାଳା ଆରପାଖେ । (ଏହାର ପ୍ରମାଣମାନ ମଧ୍ୟ ଦିଆଯାଇଚି ଓ ପୂର୍ବରୁ ଆସିବା ବାଟରେ ଇଲାମାଇଟ୍ ପ୍ରଭୃତି ପରି ଜାତିମାନଂକୁ ମଧ୍ୟ ଲକ୍ଷ୍ୟ କରାଯାଇଚି) । ଏଇ ସୁମେରୀୟମାନଂକର ସେ କାଳର ଯେଉଁ ଖୋଦିତ ବା ଗଠିତ ମୂର୍ତ୍ତିମାନ ମିଳେ, ସେଥିରୁ ଜଣାଯାଏ, ସେମାନେ ପାଖଆଖର କୌଣସି ଜାତିର ମନୁଷ୍ୟପରି, ଅର୍ଥାତ୍ ଆରବୀୟ ସେମାଇଟସ୍ ବା ସେମିଟିକ୍ସ କିଂବା ଆର୍ଯ୍ୟ ପ୍ରଭୃତିଂକ ପରି ନ ଥିଲେ । ଖାଲି ଗଠନଭଂଗୀରେ ନୁହେଁ, ଭାଷାରେ ମଧ୍ୟ

ଏମାନେ ପାଖଆଖ ଜାତିର ଲୋକଙ୍କ ପରି ନ ଥିଲେ । ସେମାନେ ନିଶ୍ଚିତରେ ଭାରତୀୟ ଥିଲେ ।”

ହଲ୍ ସାହେବ ବହୁ ଆଲୋଚନା କରି କହିଛନ୍ତି—“ଏଇ ଭାରତୀୟ ହେଉଛନ୍ତି ଦ୍ରାବିଡ଼ । ହଲ୍ ସାହେବ ଏଇଠାରେ ଯୁକ୍ତିକରି କହନ୍ତି, ସେଇ ଖୋଦିତ ଓ ଗଠିତ ମୂର୍ତ୍ତିମାନେ ଦେଖାଯାଉଛନ୍ତି ଏବର ସାଧାରଣ ଭାରତୀୟପରି । ଏବର ସାଧାରଣ ଭାରତୀୟମାନେ ହଜାର ହଜାର ବର୍ଷ ପୂର୍ବର ପ୍ରାଚୀନ ଦ୍ରାବିଡ଼ ପୂର୍ବପୁରୁଷମାନଙ୍କ ପରି ଦେଖାଯାନ୍ତି । ଏହା ପୃଥିବୀର ନିୟମ ଏବଂ ଗ୍ରୀସ ଓ ଇଟାଲୀରେ ମଧ୍ୟ ଅତି ପୂର୍ବେ ଯେଉଁ ଆଦିମ ଆଦିବାସୀ ଥିଲେ, ଏବ ଲୋକେ ଗଠନାଦିରେ ତାଙ୍କର ପରି ଦେଖାଯାନ୍ତି । ଏହା ପୃଥିବୀର ଜାତିମାନଙ୍କ ନିୟମ । ସେଇପରି ଭାରତରେ ଆର୍ଯ୍ୟମାନେ ଜିଣିକରି ଆସି ଅଧିବାସ କରିଥିଲେ ମଧ୍ୟ ଆଜି ଭାରତୀୟ ଆକୃତିରେ ସେ ଆର୍ଯ୍ୟଙ୍କର ସତ୍ତା ନାଇ । ଦ୍ରାବିଡ଼ମାନଙ୍କର ଆକୃତି ସବୁଥିର ଆଜି ପ୍ରତିଷ୍ଠିତ । ସେ କାଳ ସୁମେରର ଯେଉଁ ମୂର୍ତ୍ତିମାନ ମିଳୁଛି, ସେଥିରୁ ଜଣାଯାଏ, ସେମାନେ ଭାରତର ଏଇ ଦ୍ରାବିଡ଼ ଜାତି, ଦକ୍ଷିଣ ଭାରତର ଯେଉଁ ଦ୍ରାବିଡ଼ମାନେ ଏବେ ମଧ୍ୟ ଦ୍ରାବିଡ଼ଭାଷା କହନ୍ତି, ଏଇ ପ୍ରାଚୀନ ସୁମେରୀୟମାନେ ଠିକ୍ ତାଙ୍କର ପରି ।”

ଏଥିରୁ ସ୍ପଷ୍ଟ ଜଣାଯାଉଛି—“ଏଇ ସୁମେରୀୟମାନେ ହେଉଛନ୍ତି, ସେ କାଳ ଭାରତୀୟ ବା ଦ୍ରାବିଡ଼ । ସେମାନେ ଭୂମିବାଟେ ଓ ଖୁବ୍ ସମ୍ଭବ ସମୁଦ୍ରବାଟେ ମଧ୍ୟ, ଭାରତରୁ ସୁମେରଭୂମିରେ ପହଞ୍ଚିଥିଲେ । * ସେମାନଙ୍କର ବାସସ୍ଥାନ ଭାରତରେ (ଖୁବ ସମ୍ଭବ ସିନ୍ଧୁ ଉପତ୍ୟକାରେ) ଥିଲା । ସେତିକବେଳେ, ତାଙ୍କର ସଭ୍ୟତା ବିକାଶ ପାଇ ବଢ଼ିଥିଲା । ସେଇଠାରେ ତାଙ୍କ ଲେଖା ଅକ୍ଷର ଆବିଷ୍କୃତ ହୋଇଥିବ ଓ ପ୍ରଥମେ ସେଇ ଲେଖା ଚିତ୍ରରେ ବିକାଶ ପାଇ, କ୍ରମେ ଅକ୍ଷର ସଙ୍କେତରେ ପରିଣତ ହୋଇଥିବ । ପରେ ଲେଖନ ସରଞ୍ଜାମର ପ୍ରକୃତି ଯୋଗୁ ଏହା କୋଣ-ଶୀର୍ଷ-ମସ୍ତ (Cuniform) ଅକ୍ଷରରେ ପରିଣତ ହୋଇଥିବ ।”

## ଏସବୁର ଆଲୋଚନା

## (୧) ସେକାଳେ ସୁମେରରେ ଜୈନଧର୍ମ—

ହଲ ସାହେବ କହିଥିବା କଥାରୁ ଗୋଟାଏ ପ୍ରଧାନ କଥା ଲକ୍ଷ୍ୟ କରିବାର ଅଛି, ତା ହେଉଛି ଏଇ ଆଦିମକାଳରେ ସେ ଦେଶରେ ପରିଣତ ଜୈନ ଥିଲେ । ସେମାନଙ୍କର ଉଲଙ୍ଗ ରହିବା ଆଗ୍ରହ ମଧ୍ୟ ଖୁବ୍ ପ୍ରତିଷ୍ଠିତ ଥିଲା । ହୁଏତ ଯାହାଙ୍କୁ

* Page 172 and Footnote and Afterwards—The Ancient History of the Near East—M. R. Hall.

ଏଠାରେ ପୁରୋହିତ ବା ଦେବୋପାସକ ବୋଲି କୁହାଯାଇଛି । ସେମାନେ ଥିଲେ ପ୍ରତିଷ୍ଠିତ ଜୈନ ଯୋଗୀ । ପୁଣି ହିଲ ସାହେବ କହନ୍ତି, ଏଇ ଜୈନ ଯୋଗୀମାନେ ମଧ୍ୟ ଆକୃତିରେ ଥିଲେ ଦ୍ରାବିଡ଼ । ଅବଶ୍ୟ ଏସବୁ ହଜାର ହଜାର ବର୍ଷର ମୂର୍ତ୍ତି । କଳନାରେ ନିଶ୍ଚିତ ବୋଲି କହିବାଭଳି ବସ୍ତୁ ଏଥିରେ ନ ଥାଇପାରେ । କିନ୍ତୁ ଜୈନଧର୍ମ ପ୍ରାଚୀନ କାଳରେ କେବଳ ଭାରତରେ ନୁହେଁ, ସୁମେର ପ୍ରଭୃତି ପଶ୍ଚିମ ଦେଶରେ ଖୁବ୍ ପ୍ରଚଳିତ ଥିଲା । ତାହା କହିବାରେ ହୁଏତ ଅସଙ୍ଗତି ନାହିଁ । ହୁଏତ ସୁମେରରେ ଇୟା-ବାଣୀ ଏଇ ଦ୍ରାବିଡ଼ଙ୍କ ଭିତରୁ ବାହାରିଥିଲେ । କିମ୍ବା ବିଷ୍ଣୁଙ୍କ ଉପାଖ୍ୟାନ ସେଇ ଆଦିମ ଜୈନମାନଙ୍କ ଭିତରେ ସୁମେରରେ ଯାଇ ଇୟା-ବାଣୀ ଉପାଖ୍ୟାନରେ ପରିଣତ ହୋଇଥିଲା ।

## (୨) ଇୟା ବା ମୀନଦେବ ଓ ଆଦାନ ପ୍ରଦାନ—

କେବଳ ସେତିକି ନୁହେଁ ଆଉ ଗୋଟିଏ ଘଟଣା ପ୍ରତି ଲକ୍ଷ୍ୟ କରିବାର ଅଛି । ସୁମେରୀୟମାନଙ୍କର ପୁରାଣରେ ଅଛି, 'ଇୟା' ନାମକ ତାଙ୍କର ଶ୍ରେଷ୍ଠ ଦେବ ମାଛ ରୂପରେ ସମୁଦ୍ରରୁ ତାଙ୍କ ଭୂମିକୁ ଉଠି, ତାଙ୍କ ଲୋକଙ୍କୁ କର୍ଷଣ, ରନ୍ଧନ, ବୟନ ପ୍ରଭୃତି ସଭ୍ୟତାର ଉପାଦାନ ଓ ସରଞ୍ଜାମମାନ ଶିଖାଇଥିଲେ । ସେଇ ଇୟା ଦେବଙ୍କୁ ବରାବର ମତ୍ସ୍ୟଚର୍ମାବୃତ ମାନବ ରୂପେ ଚିତ୍ର କରାଯାଉଥିଲା । ଏଠାରେ ପାରସ୍ୟ ଉପସାଗରରୁ ଉଠି ଆସିଥିବା 'ଇୟା'ରେ ଯେ ଭାରତରୁ ଆସିଥିବା ଦ୍ରାବିଡ଼ ପୂର୍ବ ପୁରୁଷ ଓ ଦ୍ରାବିଡ଼ ବୀରମାନଙ୍କ ସଙ୍କେତ ନାହିଁ—ତାହା କୁହାଯାଇ ନ ପାରେ । କାରଣ ଭାରତୀୟ ଦ୍ରାବିଡ଼ମାନଙ୍କର ମଧ୍ୟ ଆଦ୍ୟ ପୁରୁଷ ହେଉଛନ୍ତି ମୀନ ।

## ଦ୍ରାବିଡ଼ମାନେ ଭୂମିବାଟେ ସୁମେରକୁ ଯାଇଥିବାର ପ୍ରମାଣ— ଭାରତରେ ଆଦିମ ଦ୍ରାବିଡ଼ମାନଙ୍କର ବିଶାଳ ପ୍ରତିଷ୍ଠା—

ଅତି ପ୍ରାଚୀନ ସୁମେରୀୟମାନେ ଏଇ ଦ୍ରାବିଡ଼ ଜାତି । ସେମାନେ ଭାରତର ସିନ୍ଧୁ ପ୍ରଦେଶରୁ ସମୁଦ୍ର ବାଟେ ଟାଇଗ୍ରୀସ-ଇଉଫ୍ରେଟିସ୍ ଭୂମିକୁ ଯାଇଥିଲେ । ଭୂମିବାଟେ ମଧ୍ୟ ଯାଇଥିବାର ପ୍ରମାଣ ହେଉଛି, ବାଟରେ ଏବେ ସିନ୍ଧୁ ପ୍ରଦେଶରେ ଥିବା ବ୍ରାହୁଇ ଜାତି ଓ ଦକ୍ଷିଣ ପାରସ୍ୟରେ ସେବେ ଥିବା ଇଲାମାଇଟ୍ ଜାତି । ଏମାନେ ହେଉଛନ୍ତି ଟାଇଗ୍ରୀସ—ଇଉଫ୍ରେଟିସ ଭୂମିକୁ ଭୂମି ମାର୍ଗରେ ଯାଇଥିବା ଜନତାର ଅବଶେଷ । ପୁଣି ଭାରତରେ ମଧ୍ୟ ଭାରତୀୟ ଆର୍ଯ୍ୟମାନଙ୍କ ପୂର୍ବରୁ ଯେଉଁ ସଭ୍ୟ ମାନବ ଦ୍ୱାରା ଏ ଦେଶ ଅଧ୍ୟୁଷିତ ହୋଇଥିଲା, ସେମାନେ ହେଉଛନ୍ତି ଦ୍ରାବିଡ଼ । କୁହାଯାଇଛି ମହେଞ୍ଜୋଦାରୋରୁ ଏବେ ଯେଉଁ ପ୍ରାଚୀନ ସଭ୍ୟତାର ଅବଶେଷ ମିଳୁଛି, ସେ ସବୁ ଦ୍ରାବିଡ଼ ସଭ୍ୟତା ବୋଲି ପଣ୍ଡିତମାନେ ଅନୁମାନ କରୁଛନ୍ତି ।

ଦକ୍ଷିଣ-ଭାରତରେ ଦ୍ରାବିଡ଼ ଭାଷା ଓ ଦ୍ରାବିଡ଼ ଜାତି ଏବେ ଅଛନ୍ତି । ଏଇ ଦ୍ରାବିଡ଼ ଶବ୍ଦ ବାହାରିଛି ଆର୍ଯ୍ୟ ଦେଇଥିବା ତାମିଲ ବା ଦାମିଳ ଶବ୍ଦରୁ । ମାଲୟଲମ୍, କ୍ୟାନାରିକ୍ (କର୍ଣ୍ଣାଟ), ତେଲୁଗୁ ଓ ତୁଲୁ ପ୍ରଭୃତି ଭାଷା ଏଇ ମୂଳ ତାମିଲ ଭାଷାର ଭିନ୍ନ ଭିନ୍ନ ରୂପ । ତା ଛଡ଼ା ମରହଟ୍ଟୀ, ହିନ୍ଦି, ବଙ୍ଗଳା, ଆସାମୀ, ଓଡ଼ିଆ ପ୍ରଭୃତି ସବୁ ଭାଷାରେ ଖାଲି ତାମିଲ ଶବ୍ଦ ନୁହେଁ, ତାମିଲ ପ୍ରକାଶ ଭଙ୍ଗୀ ଓ ତାମିଲ ବ୍ୟାକରଣର ପ୍ରତିଷ୍ଠା ଓ ପ୍ରକାଶ ଦେଖିଲେ ଏବେ ମଧ୍ୟ ବିସ୍ମିତ ହେବାକୁ ହୁଏ ।

## ଦ୍ରାବିଡ଼ମାନେ ପରାସ୍ତ ହେଲେ ମଧ୍ୟ ସଂସ୍କୃତିରେ ଆର୍ଯ୍ୟମାନଙ୍କୁ ଅଭିଭୂତ କରିଥିଲେ—

ପୁଣି ଦେଖିବାର ଅଛି, ଭାରତର ଏଇ ଯଥାର୍ଥ ଅଧିବାସୀ ବହୁ ପ୍ରତିଷ୍ଠିତ ସଭ୍ୟତାରେ ବହୁ ଉନ୍ନତ ଦ୍ରାବିଡ଼ମାନଙ୍କୁ ଆଗନ୍ତୁକ ଆର୍ଯ୍ୟମାନେ ଭୌତିକ ସାମର୍ଥ୍ୟରେ ଅଧୀନ କରିଥିଲେ ସତ, କିନ୍ତୁ ସବୁଠି ଯେପରି ହୁଏ, ଭାରତରେ ମଧ୍ୟ ତାହାର ଐତିହାସିକ ଅଭିନୟ ହୋଇଛି । ଦ୍ରାବିଡ଼ମାନେ ବଳରେ ପରାସ୍ତ ହୋଇ ମଧ୍ୟ ନିଜର ସଂସ୍କୃତି ଓ ସଭ୍ୟତାରେ ଆର୍ଯ୍ୟମାନଙ୍କୁ ଅଭିଭୂତ କରି ଅଧୀନ କରିଛନ୍ତି । ଆମ ଭାରତୀୟମାନଙ୍କ ସଭ୍ୟତା, ଏକ ପ୍ରକାର କହିବାକୁ ଗଲେ, ସେଇ ଦ୍ରାବିଡ଼ ସଭ୍ୟତାର ଭୂୟୋବିକାଶ । ଇତସ୍ତତଃ ବହୁ ପ୍ରମାଣର ଅଭାବ ନ ଥିଲେ ମଧ୍ୟ ଏ ଦିଗରେ ସୁବିଧାବଦ୍ଧ ଭାବରେ ଆଲୋଚନା ହୋଇ ସିଦ୍ଧାନ୍ତ ପ୍ରକାଶିତ ହୋଇଛି ବୋଲି ମନେ ହେଉନାହିଁ । ଆଜି ଭାରତ ସ୍ୱାଧୀନ, ଗବେଷଣା ଓ ଆଲୋଚନାରେ କ୍ରମେ ସ୍ୱାଧୀନ ଅଭିମୁଖ୍ୟ ଓ ଦୃଷ୍ଟିଭଙ୍ଗୀ ଫିଟିବ ଓ ଫଳରେ ଏ ସତ୍ୟ ପ୍ରକାଶିତ ହେବ ।

## ଏଇ ପ୍ରାଚୀନ ସୁମେରୀୟ ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କ ସଂବନ୍ଧରେ ପ୍ରତ୍ନବିତ ମାନଙ୍କର ଅନ୍ୟମତ—

ଏଠାରେ ହୁଏତ ଅବାନ୍ତର ପରି ଲାଗି ପାରେ, ତଥାପି ଅନ୍ୟ ଗୋଟିଏ ବିଷୟର ଅଂଶତଃ ଉଲ୍ଲେଖ କରିବା ଦରକାର ପଡ଼ୁଛି । ହଲ ସାହେବ ସୁମେରୀୟ ଆଦି ଉପନିବେଶକମାନଙ୍କୁ ଦ୍ରାବିଡ଼ ବୋଲି ଅନୁମାନ କରି କ୍ଷାନ୍ତ ରହି ନାହାନ୍ତି । ହଲ ସାହେବଙ୍କ ପୂର୍ବରୁ ପ୍ରତ୍ନବିତ୍‌ମାନେ ଏଇ ଆଦି ସୁମେରୀୟମାନଙ୍କୁ ଉତ୍ତର ଆଡ଼ୁ ଏପରିକି ଚୀନ ସୀମାନ୍ତ ଆଡ଼ୁ ଆସିଥିବା କଥା ଅନୁମାନ କରିଥିଲେ । ଦ୍ରାବିଡ଼ରୁ ଆସିଥିବା ଅନୁମାନ ହଲଙ୍କ ପୂର୍ବରୁ ଅନ୍ୟ କେହି ହୁଏତ କରି ନ ଥିଲେ । ଏହାକୁ ଇ ଧରି ଏବେ ଅନେକ ଭାରତୀୟ ପଣ୍ଡିତ ଆମ ପୁରାଣ ଭିତ୍ତିରେ ବହୁ କଳ୍ପନାଜଳ୍ପନା କରିବାର ଦେଖାଯାଏ । ମାତ୍ର କୁହାଯାଇଛି, 'ଆମଦେଶ' ଓ 'ଆମଜାତି' ବୋଲି ଅନେକ ସମୟରେ ପ୍ରତ୍ନ ନାମରେ ପୁରାଣ ଓ କାବ୍ୟ ଲେଖା ହୁଏ । ଚୀନ ପାଖ ଆଡ଼ୁ ସୁମେରକୁ ଯେ କାଳେ ଲୋକ ଆସିଥିଲେ, ଏକଥା ପ୍ରାଚ୍ନକମାନଙ୍କଠାରୁ ଶୁଣି ଶୁଣି

ଆମ ପଣ୍ଡିତେ ପୁରାଣ ପଢ଼ି ଅର୍ଥ କଲେ,—ପୁରାଣରେ ଅଛନ୍ତି ଇଳାଙ୍କ ପୁତ୍ର ଐଳ । ଏଇ ଐଳରୁ ବାହାରିଥିଲେ ଚନ୍ଦ୍ରବଂଶ । ଏଇ ଐଳଙ୍କ ଘର ଭାରତବର୍ଷରେ ନ ଥିଲା । ଏହା ଯେଉଁଠାରେ ଥିଲା, ତା'ର ନାମ 'ଇଳାବୃତ ବର୍ଷ' । ଆଜିକାଲିର ପାମିର ଉତ୍ତରକୁ ହେଉଛି 'ଇଳାବୃତ ବର୍ଷ'—ଅର୍ଥାତ୍, ଆଜିକାଲିର ଚୀନ, ତୁର୍କୀସ୍ଥାନ । ପାମିର ହେଉଛି ସୁମେରୁ । ଇଳାବୃତ ବର୍ଷଟି ମେରୁପାଖେ ବିସ୍ତୃତ ଥିଲା । ଏଇ ପୌରାଣିକ କଳ୍ପନା ଏବା ଆଜିର ନୁହେ । ୧୮୪୦ ଖ୍ରୀଷ୍ଟାବ୍ଦ ବା ତନ୍ନିକଟବର୍ତ୍ତୀ ସମୟରେ ଏଇ ଆମ ଦେଶକୁ ଆସିଥିଲେ ରୁଷୀୟ ମହିଳା ମାଡ଼ାମ ବ୍ଲାଭେଟ୍ସ୍କି । ଥିଅସଫି ବୋଲି ସେ ଆମ ପୁରାଣମାନଙ୍କରୁ ଗୋଟିଏ ଈଶ୍ୱରଙ୍କ ଧର୍ମ ବାହାର କରିଥିଲେ । ଏହାକୁଇ ଏବେ ଆମ ଦେଶରେ କହୁଛନ୍ତି ବ୍ରହ୍ମବିଦ୍ୟା । ଈଶ୍ୱର ଥିବା ଧର୍ମ—ବିଶେଷତରେ ଈଶ୍ୱର ଆଦେଶିତ ଧର୍ମ କଦାପି ବ୍ରହ୍ମବିଦ୍ୟା ହୋଇ ନ ପାରେ । ତଥାପି ଆମର ଶିକ୍ଷିତ ବୋଲିଉଥିବା ଲୋକେ ଏଇ ବ୍ରହ୍ମବିଦ୍ୟାର ବଡ଼ ଆଦର କରନ୍ତି । ବିଶେଷତଃ ମୃତ୍ୟୁ ନିକଟ ହେଲେ, ଏଥିରେ ଲୋକେ ଖୁବ୍ ମାତନ୍ତି ଓ ନିବିଷ୍ଟ ହୁଅନ୍ତି । କାରଣ ଏଥିରେ ମଲାପରେ ଜନ୍ମଜନ୍ମାନ୍ତର ପ୍ରଭୃତି ଯେନ ପୂର୍ଣ୍ଣ ଅମରତ୍ୱ ବା ବାସ୍ତବ ଅମରତ୍ୱ ଲାଭ କରିବାର ବହୁତ କଳ୍ପନା ସତ୍ୟରୂପେ ଅନୁସନ୍ଧାନ କରାଯାଏ । ଏଇଥିରୁ ବାହାରିଥିଲା ଏକ ପୌରାଣିକ ଭୂଗୋଳ ଓ ସେଇ ଅନୁସାରେ ଜାତି ପରେ ଜାତିର ଇତିହାସ । ପ୍ରଥମେ ମେରୁ ଗିରିପଟେ ମାତ୍ର ପୃଥିବୀରେ ଭୂଭାଗ ଥିଲା । ତାହାର ନାମ ପୁଷ୍କରଦ୍ୱୀପ । ସେତିକିବେଳେ ଯେଉଁ ମନୁଷ୍ୟମାନେ ଥିଲେ, ସେମାନଙ୍କୁ କୁହାଯାଉଛି ଲେମୁରିଆନ୍ସ । ସେମାନେ ସିନ୍ଧୁ ଘୋଟକ ପରି ସମୁଦ୍ରରେ ତଥା ପଙ୍କରେ ଘାଣ୍ଟି ହେଉଥିଲେ । ତା'ପରେ ଭୂମିର କ୍ରମ ପରିବର୍ତ୍ତନରେ ବାହାରିଛି ଆଜିର ପୃଥିବୀ ଓ ମାନବର କ୍ରମ ପରିବର୍ତ୍ତନରେ ବାହାରିଛି ଆଜିର ମନୁଷ୍ୟସମାଜ । ଆମ ଦେଶୀ ପଣ୍ଡିତ-ମାନଙ୍କର ଅନେକଙ୍କର ଏସବୁ ଅଧ୍ୟୟନ ଓ ଆଲୋଚନା କରିବାର ଖୁବ୍ ଅଭ୍ୟାସ ମଧ୍ୟ ଥିଲା । ସେଇ ହିସାବରେ ସେମାନେ କହିଲେ ଏଇ ଇଳାବୃତବର୍ଷରୁ ଉପନିବେଶ କରିବା ପାଇଁ ଲୋକେ ଉତ୍ତର-ଭାରତକୁ ଓ ଉତ୍ତର ଭାରତରୁ ଦ୍ରାବିଡ଼କୁ ଗଲେ । ସେଇଠାରୁ ଅନ୍ୟ ଏକ ମାନବଧାରା ଗଲେ ସୁମେରୁକୁ । ତା'ପରେ ଏଇ ଇଳାବୃତବର୍ଷରୁ ଚନ୍ଦ୍ରବଂଶୀ ଓ ଅନ୍ୟ ମାନବମାନେ କ୍ରମେ ମଧ୍ୟ ଉତ୍ତର ଭାରତରେ ବ୍ୟାପ୍ତ ହୋଇଥିଲେ । ଅତଏବ ସୁମେର, ଦ୍ରାବିଡ଼, ଆର୍ଯ୍ୟ ଏ ସମସ୍ତେ ମୂଳତଃ ଏକା ଜାତି । ଯେତେ ପ୍ରାଚୀନ ହେଲେ ମଧ୍ୟ ଏ ସବୁଥିରେ ମାନବୀୟ ଜାତିର ଭେଦାଭେଦ କରିବା କିଛି ନାଇ । କିନ୍ତୁ ଏ ସମସ୍ତ ବିଷୟଟି ପୁରାଣ ଓ ପୁରାଣକୁ ଧରି କଳ୍ପନା କରିବା ଛଡ଼ା ଅନ୍ୟ କୌଣସି ପ୍ରାକୃତିକ ସତ୍ୟ ବା ଭିତ୍ତି ଉପରେ ପ୍ରତିଷ୍ଠିତ ବୋଲି ମନେହେଉ ନାଇ ।

## ଏ ବିଷୟରେ ଆଉ ଗୋଟିଏ ଆଧୁନିକ ପ୍ରାନ୍ତିକ ମତ—

ମାତ୍ର ଯଥାର୍ଥରେ ପ୍ରତ୍ନତତ୍ତ୍ୱ ଜଗତରେ ଏ ସବୁର କିଛି ସମାଧାନ ହୋଇ ନାଇ । ଆର୍ଯ୍ୟ, ଭାରତୀୟ ଓ ପାରସ୍ୟିକ ଆର୍ଯ୍ୟ, ହିଟାଇଟ୍ ଓ ଇଉରୋପୀୟ

ଆର୍ଯ୍ୟ, ପ୍ରାଚୀନ ଗ୍ରୀକ୍, କ୍ରୀଟାନ୍, ଫିନସୀୟ, ମିଶରୀୟ, କାପାଡ଼ୋସିୟ, ବ୍ୟାବିଲୋନୀୟ, ସୁମେରୀୟ, ଆରବ ଓ ଇହୁଦୀ ପ୍ରଭୃତି ଜାତି, ଅସୁର ଓ ବ୍ୟାବିଲୋନୀୟ, ପ୍ରାଚୀନ ପାରସ୍ୟିକ, ଦ୍ରାବିଡ଼ ପ୍ରଭୃତି ଅନେକ ଜାତିଙ୍କ ସମ୍ବନ୍ଧରେ ପ୍ରତ୍ନତତ୍ତ୍ୱ ଗବେଷଣା ପାଇଁ ବହୁ ଦ୍ରବ୍ୟ ଓ ବହୁ ପ୍ରାଚୀନତାର ଅବଶେଷ ଖୋଲା ହୋଇ ବାହାରୁଛି । ଭିନ୍ନ ଭିନ୍ନ ସ୍ଥାନରେ, ବହୁସ୍ତର ଖୋଲାହୋଇ ମାନବ ସଭ୍ୟତା କ୍ରମବର୍ଦ୍ଧିଷ୍ଣୁ ଭାବରେ ବଢ଼ିଥିବାର ମଧ୍ୟ ଦେଖାଯାଉଛି । ସେଥିମଧ୍ୟରୁ ଉପରେ ଯେଉଁ ଇଳାବୃତବର୍ଷ କଥା କୁହାଗଲା, ସେଥିରେ ଥିବା ଆଜିକାଲି ଆନାଉ (Anau) ନାମକ ସ୍ଥାନରେ ଅତି ପ୍ରାଚୀନ ସଭ୍ୟତା ବହୁକାଳ ପୂର୍ବେ—ଅନ୍ତତଃ ୪୫୦୦ ବର୍ଷରୁ ଅଧିକକାଳ ପୂର୍ବେ ଥିବାର ସଙ୍କେତମାନ ମିଳିଛି । ସେତିକି ନୁହେଁ, ସେ କାଳର ଲେଖା ଅକ୍ଷର ବହୁ ସ୍ଥାନରେ ମିଳିଛି । ସେଥିମଧ୍ୟରୁ ପ୍ରଧାନ ସ୍ଥାନମାନ ହେଉଛି ମିଶର, ଆସିରିଆ ଓ ବ୍ୟାବିଲନ, ତଥା ସୁମେର ଓ ଆକ୍‌କାଡ଼୍, ଫିନସୀୟ, କ୍ରୀଟ, କାପାଡ଼ୋସିୟ, ମୋଆବାଇଟ୍ ବା ହିଟାଇଟ ଲିପି, ପ୍ରାଚୀନ ସିନ୍ଧୁଲିପି ପ୍ରଭୃତି ବହୁପ୍ରକାର ଲିପି ମିଳିଛି । ବହୁକଷ୍ଟରେ ମିଶରୀୟ, ଫିନିସିୟ, ମୋଆବାଇଟ୍, ଆସିରୀୟ, ବ୍ୟାବିଲୋନୀୟ ଓ ସୁମେରୀୟ ତଥା ଆକ୍‌କାଡ଼ୀୟ ପ୍ରଭୃତି କେତୋଟି ମାତ୍ର ପଣ୍ଡିତମାନେ ପଢ଼ିବାକୁ ସମର୍ଥ ହୋଇଛନ୍ତି । ବାକି ଅନେକ ପ୍ରାଚୀନ ଲିପି ଏପର୍ଯ୍ୟନ୍ତ ପଢ଼ାଯାଇ ନାହିଁ । ନାନା ପଣ୍ଡିତ ଏ ବିଷୟରେ ବହୁପ୍ରକାର ବହୁ ଉଦ୍ୟମରେ ତତ୍ପର ଅଛନ୍ତି । ବମ୍ବେର ସ୍ୱର୍ଗତ ରେଭେରେଣ୍ଡ଼ ହେରାସ ପ୍ରାଚୀନ ସିନ୍ଧୁଲିପି ବା ମହେଞ୍ଜୋଦାରୋ ଲିପିକୁ ଅତି ପ୍ରାଚୀନ ତାମିଲ ଭାଷାର ଲିପି ବୋଲି କଳ୍ପନା କରି ଯାଇଛନ୍ତି । ସାର ଜନ୍ ମାର୍ଶାଲ୍ ଓ ମାକେ ପ୍ରଭୃତି ପ୍ରଥମେ ଆବିଷ୍କାର କଲାବେଳେ ଏହି ଲିପିକୁ ମଧ୍ୟ ପ୍ରାଚୀନ ତାମିଲ ଲିପି ବୋଲି ଅନୁମାନ କରିଥିଲେ । ମନେ ହୁଏ ଏହାହିଁ ହେଲା, ହେରାସ ସାହେବଙ୍କ ଆଲୋଚନା ଓ କଳ୍ପନାର ଭିତ୍ତି ।

## ଅଧ୍ୟାପକ ଡ଼କ୍ଟର ବେଡ଼ରିଚ ହ୍ରୋଜନୀଙ୍କ (Bedrich Hrozny) ମତ—

ଏହି ବେଡ଼ରିଚ ହ୍ରୋଜନୀ ହେଉଛନ୍ତି ଚେକୋସ୍ଲୋଭାକିଆର ରାଜଧାନୀ ପ୍ରେଗ (Prague) ବିଶ୍ୱବିଦ୍ୟାଳୟର ପ୍ରାଚ୍ୟ ଭାଷା ଓ ଇତିହାସର ଅଧ୍ୟାପକ । ଏ ଆଧୁନିକ ଯୁଗର ଜଣେ ପ୍ରସିଦ୍ଧ ନୃତତ୍ତ୍ୱସେବୀ । ଗବେଷଣା ଓ ସିଦ୍ଧାନ୍ତରେ ଏହାଙ୍କର ଅନେକ ମୌଳିକତା ପ୍ରକାଶ ପାଇଛି । ଏ ମହାଶୟ ଏବେ ପ୍ରାୟ ଦଶବର୍ଷ ତଳେ 'ପଶ୍ଚିମ ଏସିଆ, ଭାରତ ଓ କ୍ରୀଟର ପ୍ରାଚୀନ ଇତିହାସ' (Ancient History of Western Asia, India & Crete) ବୋଲି ଖଣ୍ଡେ ବିଖ୍ୟାତ ପୁସ୍ତକ ପ୍ରକାଶ କରିଛନ୍ତି । ଏହା ପୂର୍ବରୁ ସେ ଏହି ପ୍ରତ୍ନତତ୍ତ୍ୱ ବିଷୟରେ ଅନେକ ପୁସ୍ତକ ଲେଖିଥିଲେ ମଧ୍ୟ ଏ ପୁସ୍ତକଟି ଏ କ୍ଷେତ୍ରରେ ଗୋଟିଏ

ବିଖ୍ୟାତ ଗ୍ରନ୍ଥ । ଏଥିରେ ସେ କାପାଡ଼ୋସିଆରେ ପ୍ରାଚୀନ ହିଟାଇଟ ଲିପି, କ୍ରୀଟର ଲିପି, ତଥା ପ୍ରାଚୀନ ସିଂଧୁ ପ୍ରଦେଶର ମହେଂଜୋଦାରୋ ଲିପି ପ୍ରଭୃତି ବହୁ ଉଦ୍ୟମ କରି ପଢ଼ିଚଂନ୍ତି । ସେଥିପାଇଁ ସେ ବହୁ ପ୍ରାକୃତିକ ଅବଶେଷର ସାହାଯ୍ୟ ମଧ୍ୟ ନେଇଚଂନ୍ତି । ଅବଶ୍ୟ ତାଂକ ପାଠ ଠିକ୍ କି ନୁହେଁ ସେ ବିଷୟରେ ପଂଡ଼ିତମାନେ ଏକମତ ନୁହଂନ୍ତି । ତଥାପି ବର୍ତ୍ତମାନ ପାଇଁ ସେ ମୋଟାମୋଟି ପ୍ରାଚୀନ ମାନବ ଜାତି ଓ ତାର ଭିନ୍ନ ଭିନ୍ନ ସ୍ଥାନକୁ ଯିବା ଆସିବା, ବସତି ଓ ଉପନିବେଶ କରିବା ସଂବଂଧରେ ଯେଉଁସବୁ ତଥ୍ୟ ଆବିଷ୍କାର କରିଚଂନ୍ତି, ତାର ମୋଟାମୋଟି କଥାଟି ନିମ୍ନରେ ଦିଆଗଲା ।

ପୃଥିବୀର ସମସ୍ତ ପ୍ରାଚୀନ ଆଦି ସଭ୍ୟଜାତିମାନଂକର ସ୍ଥାନ ସଂବଂଧରେ ଏତେ ଭେଦ ବିଚାର କରିବାର କିଛି ନାଇ । କିଏ ଟିକିଏ ଅଧିକ ପ୍ରାଚୀନ, କିଏ ବା ଟିକିଏ ଅପେକ୍ଷାକୃତ ଅର୍ବାଚୀନ । ସମସ୍ତଂକର ଆଦିନିବାସ ହେଉଚି, ମୋଟାମୋଟି ପୂର୍ବ ଭୂମଧ୍ୟସାଗର, କୃଷ୍ଣସାଗର ଓ କାଷ୍ପିୟାନସାଗରର ମଧ୍ୟବର୍ତ୍ତୀ ଅଚଂଳଠାରୁ ତେଣେମଧ୍ୟ ଏସିଆର ଅଲଟାଇ ପର୍ବତମାଳା ଓ ଏଣେ ପାମିର, କାଶ୍ମୀର ଓ ପୂର୍ବ ପାରସ୍ୟ ପ୍ରଭୃତି ଭୂମି ପର୍ଯ୍ୟଂତ । ସେଇଠାରୁ ପୁଣି ଏକଆଡ଼େ ଗ୍ରୀସ୍ ଓ କ୍ରୀଟ ଏବଂ ଅନ୍ୟଆଡ଼େ ସିଂଧୁ ଓ ଦକ୍ଷିଣ ଭାରତ ପର୍ଯ୍ୟଂତ ବିସ୍ତୃତ ଥିଲା । ଏଇ କ୍ଷେତ୍ରରେ ନାନା ଜାତି ଜନ୍ମିଥିଲେ ଓ ଏକସ୍ଥାନରୁ ଅନ୍ୟସ୍ଥାନକୁ—ଏଥିମଧ୍ୟରେ ଖୁବ୍ ଦୂରଦୂରାଂତର ସ୍ଥାନକୁ—ଗତି କରିଥିଲେ । ଏଇସବୁ ବିଷୟ ଆଲୋଚନାକୁ ଆଣି ବିସ୍ତୃତ ଭାବରେ ବିଚାର ଓ କଳ୍ପନା କଲେ, ଦ୍ରାବିଡ଼, ସୁମେରୀୟ ପ୍ରଭୃତି ସେକାଳର ଭେଦାଭେଦର ସୀମା ବହୁ ପରିମାଣରେ ହୁଏତ ସଂକୁଚିତ ହେବ । ସୁମେର ଓ ଦ୍ରାବିଡରେ ସଂପୂର୍ଣ୍ଣ ଏକରୂପ ମାନବ ଥାଂନ୍ତୁ, ବା ନ ଥାଂନ୍ତୁ ସେମାନଂକର ଉପର ଶ୍ରେଣୀ ଓ ସଭ୍ୟତା ଯେ ଏକରୂପ ଥିବ, ଏଥିରେ ବିଶେଷ ସନ୍ଦେହ କରିବାର କିଛି ନାଇ । ତା'ପରେ ଏଇ ସ୍ଥିତି ଅନୁସଂଧାନ କରି ବିଚାର କଲେ ଦେଖାଯିବ, ଇଉରୋପୀୟ, ଭାରତୀୟ ଓ ପାରସୀୟକ ଆର୍ଯ୍ୟ, କ୍ରୀଟୀୟ ହିଟାଇଟ ଅସୁର ଓ ବ୍ୟାବିଲନୀୟ ଅର୍ଯ୍ୟ ଓ ଅନାର୍ଯ୍ୟ ଜାତିମାନଂକ ମଧ୍ୟରେ ଆଦାନ ପ୍ରଦାନର ସୀମା ଅତି ବିସ୍ତୀର୍ଣ୍ଣ ଓ ପ୍ରାଚୀନ ଜଗତର ସାହିତ୍ୟ ଲେଖ ତଥା ଅନ୍ୟାନ୍ୟ ନିଦର୍ଶନମାନଂକରେ ଏଇ ଆଦାନ ପ୍ରଦାନ ଓ ପ୍ରଭାବର ସଂକେତ ପୂର୍ଣ୍ଣ ରହିଚି ।

## ଅତି ପ୍ରାଚୀନକାଳରେ ଏଇ ଜୈନ ସଭ୍ୟତାର ସେଇସବୁ ପଶ୍ଚିମ ଦେଶରେ ଗୋଟିଏ ପ୍ରାଭାବିକ ସଂକେତ—

ଜୈନର ଜୀବାଜୀବ କଥା କୁହାଯାଇଚି । ଏଇ ଜୀବର କର୍ଷଣ ଓ ସାଧନାରେ ସଂପ୍ରେ ଜୈନମାନେ ଆବିଷ୍କାର କରିଥିଲେ ଆତ୍ମା । ପରେ ଏଇ ଆତ୍ମାର ସେମାନେ

ପୁରୁଷ ଓ ପୁରୁଷରୁ ପୁରୁଷୋତ୍ତମକୁ ମାନବ ଉଠିଥିବା କଥା ପରେ ଜଗନ୍ନାଥ ପ୍ରସଙ୍ଗରେ କୁହାଯିବ । ଜୀବ, ଆତ୍ମା ଓ ପୁରୁଷ ଏକାର୍ଥକ ଶବ୍ଦ ହେଲେ ମଧ୍ୟ ଜୀବଠାରୁ ଆତ୍ମାରେ ସୀମା ଓ ନିର୍ଦ୍ଦିଷ୍ଟତା ଅଧିକ ଅଛି । ଜୈନମତରେ ଜଳରେ ମଧ୍ୟ ଜୀବ ଥାଏ । କିନ୍ତୁ ଆତ୍ମାର ଧାରଣା ପ୍ରକାଶ ପାଇବାକୁ କ୍ରମେ ଜୀବନ୍ତ ପଦାର୍ଥ ମଧ୍ୟରେ, ଆତ୍ମା ବୋଲି ଗୋଟିଏ ବସ୍ତୁର ଧାରଣା ହେଲା । ପୁଣି କ୍ରମେ ମାନବାତ୍ମାର ଧାରଣ ସଙ୍ଗେ ପ୍ରକାଶ ପାଇଲା ପୁରୁଷ । ସେଇ ପୁରୁଷଟି ହେଉଚି ମୁଁ-ତ୍ୱ । ଆମର ଏଠାରେ ଆତ୍ମାର କଥା ଦେଖିବାକୁ ହେବ । ଏଇ ଆତ୍ମା କଥାଟି ସେତେବେଳେ ଜୀବାତ୍ମା ଓ ପରମାତ୍ମା ଦୁଇ-ପ୍ରକାର ଧାରଣାକୁ ଅଧିକାର କରିଥିଲା । ପରମାତ୍ମା ବୋଇଲେ ଏଇ ବିଶ୍ୱର ଆତ୍ମା । ବିଶ୍ୱ, ଜାଗ୍ରତ ଓ ଜୀବନ୍ତ ହେବାର ଏହାଇ ହେଉଚି ଉପାଦାନ । ଏହାର ବିଶ୍ୱ ଧାରଣାର ଗୋଟିଏ ପ୍ରକାର । ଏଇ ପ୍ରକାରରେ ସେକାଳ ଭାରତୀୟ ଆର୍ଯ୍ୟ ବା ବୈଦିକ ଆର୍ଯ୍ୟମାନଙ୍କ ଭିତରେ ପ୍ରକାଶ ପାଇଥିଲା—ସୂର୍ଯ୍ୟ ଆତ୍ମା ଜଗତ—ସ୍ତସ୍ଥୁଷଶ୍ଚ, * ଅର୍ଥାତ ସମସ୍ତ ବିଶ୍ୱରେ ଚଳନ୍ତା ଓ ଅଚଳନ୍ତା ସବୁ ବସ୍ତୁର, ଅର୍ଥାତ୍, ଚରାଚରର ଆତ୍ମା ହେଉଚି ସୂର୍ଯ୍ୟ । ଏତିକବେଳେ ମିଟାନ୍ନୀ ବୋଲି ରାଜ୍ୟ ଅସୁର ଦେଶର ପଶ୍ଚିମକୁ ପ୍ରାୟ ଖ୍ରୀ: ପୂ: ୨୦୦୦ ବର୍ଷ ବେଳରୁ ପ୍ରକାଶ ପାଇଥିଲା । ସେଠାରେ ଉପର ସ୍ତରର ଅଧିବାସୀମାନେ ଥିଲେ ଠିକ୍ ଭାରତୀୟ ଆର୍ଯ୍ୟ । ପଣ୍ଡିତମାନେ କହନ୍ତି ପଶ୍ଚିମଆଡ଼ୁ ଭାରତକୁ ଆସିବା ବାଟରେ ଏମାନେ ଏଇ ମିଟାନ୍ନୀରେ ବସତି କରିଥିଲେ । ତଳସ୍ତରରେ ସେତେବେଳର ଭାରତର ଆର୍ଯ୍ୟଭିନ୍ନ ଅନାର୍ଯ୍ୟମାନଙ୍କୁ ପେନ ସେମାନେ ରାଜ୍ୟ କରୁଥିବାର ପ୍ରମାଣ ଅଛି । ପ୍ରାୟ ଖ୍ରୀ: ପୂ: ୧୦୦୦ ବର୍ଷ ବେଳକୁ ସେଠାରେ ଯେଉଁ ରାଜା ଥିଲେ ତାଙ୍କର ନାମ ହେଉଚି ଦଶରଥ । ସେ ଇୟୁଫ୍ରେଟିସ୍ ନଦୀ ପାର ହୋଇ ଅସୁର ଦେଶ ଜିଣିଥିବାର ଲେଖା ପ୍ରମାଣ ମିଳେ । ମନେହୁଏ, ଏଇ ଘଟଣାର ପାରମ୍ପରିକ ଉପାଖ୍ୟାନକୁ ଲକ୍ଷ୍ୟକରି ରାମାୟଣ ଗଳ୍ପଟି କଳ୍ପିତ ହୋଇଥିଲା । ହୁଏତ ସେ ଦେଶର ଉପାଖ୍ୟାନ ଭିତ୍ତିରେ ଏ ଦେଶରେ କାବ୍ୟ ରଚିତ ଓ ପ୍ରଚାରିତ ହୋଇଥିଲା । ଦୁଇ ଦେଶର ସଭ୍ୟତା ଓ ସମାଜ ଏକରୂପ ଥିବାର ମଧ୍ୟ ଅନ୍ୟ ନିଦର୍ଶନ ଖୋଜା ଯାଇପାରେ । ସେ ଯାହାହେଉ ଏଇ ଦଶରଥଙ୍କ ସମ୍ବନ୍ଧରେ ସେ କାଳର ମିଶରୀୟ ରାଜାମାନଙ୍କ ସଙ୍ଗେ କେତେଗୁଡ଼ିଏ ଚିଠିପତ୍ର ମିଳୁଚି । ସେଥିରୁ ଜଣାଯାଏ, ଏ ଦଶରଥଙ୍କର ଝିଅ ଓ ଭଉଣୀ ମିଶର ସମ୍ରାଟଙ୍କୁ ବିଭା ହୋଇଥିଲେ । ଏଇ ଦଶରଥଙ୍କର ମଧ୍ୟ ଅନେକ ସନ୍ଧି ପ୍ରଭୃତିରେ ଯେଉଁସବୁ ସର୍ତ୍ତର ଲେଖାମାନ ମିଳୁଚି, ସେଥିରେ ଇନ୍ଦ୍ର, ବରୁଣ, ନାସତ୍ୟ ପ୍ରଭୃତି ବୈଦିକ ଦେବତାମାନଙ୍କ ନାମ କରି ନିଯ୍ୟମ କରାଯାଇଚି । ଗୋଟିଏ ବିଶେଷ କଥା—ଏଇ ଦଶରଥଙ୍କର ଯେଉଁ ଭଉଣୀ ଓ ଝିଅ ମିଶରୀୟ ରାଜାମାନଙ୍କୁ ବିଭା ହୋଇଥିଲେ, ସେଇ ସମ୍ପର୍କରେ ମିଶରୀୟ ରାଜାଙ୍କ ଉପରେ ଯେଉଁ ପ୍ରଭାବ ପଡ଼ିଥିଲା, ସେଥିରେ ସେଇମାନଙ୍କ

* ଋକ୍‌ବେଦ—୧.୧୧୫.୧ ।

ଉପରେ ସୂର୍ଯ୍ୟ ଯେ ଚରାଚର ଜଗତର ଆତ୍ମା, ଏଇ ପ୍ରଭାବ ପୂର୍ଣ୍ଣ ଭାବରେ ପଡ଼ିଥିଲା । ସେ କାଳର ମିଶର ସମ୍ରାଟ୍ ୪ର୍ଥ ଆମାନହୋଟେପ୍ ବା ଆଟେନ୍ଟନ୍, ଏଇ ଧର୍ମକୁ ମାନବର ଏକମାତ୍ର ଶ୍ରେଷ୍ଠଧର୍ମ ବୋଲି ପ୍ରଚାର କରି ସେକାଳ ମିଶରର ଅନ୍ୟସବୁ ଧର୍ମ ଉଠାଇ ଦେଇ ଏହାକୁଇ ସବୁଠାରେ ପ୍ରତିଷ୍ଠା ଦେଇଥିଲେ । ଏଇ ସୂର୍ଯ୍ୟଦେବଙ୍କ ନାମ ହେଉଚି ଆଟନ୍ । ମନେହେଉଚି, ଏହା ହେଉଚି ସଂସ୍କୃତ ଆତ୍ମନ୍ । ଏଇ ଆଟନ୍ ହିଁ ସବୁ । ଆଉ ଦେବଦେବୀ କେଇ କିଛି ନୁହଁନ୍ତି । ଏହାଇ ଥିଲା ଆଟନ ଉପାସନାର ଏକମାତ୍ର ମନ୍ତ୍ର । ଏଥିରୁ ସ୍ପଷ୍ଟ ଜଣାଯାଉଚି, ସେକାଳେ ସେ ଦେଶରେ ଜୈନମାନଙ୍କ ଏଇ ଜୀବାଜୀବ ବା ଆତ୍ମନାତ୍ମ ମତ ସେ ସବୁ ଦେଶର ଆର୍ଯ୍ୟ ଓ ଅର୍ଯ୍ୟେତରମାନଙ୍କ ଭିତରେ କିପରି ପ୍ରଭାବ ବିସ୍ତାର କରିଥିଲା ।

## ଆଦାନପ୍ରଦାନର ଆଉ ଗୋଟିଏ ସଂକେତ—

ଜୈନମାନଙ୍କର ଆଉ ଗୋଟିଏ ଯୋଗରୂଢ଼ ପାରିଭାଷିକ ଶବ୍ଦ ଅଛି—'ଧର୍ମ-ଚକ୍ର' । ଦେଖାଯାଉଚି, ଏଇ ଧର୍ମଚକ୍ର ଖୁବ୍ ସମ୍ଭବ ଜୈନଧର୍ମକୁ ଆସିଥିଲା, ସେଇ ପଶ୍ଚିମ ଭୂମିରୁ । ଧର୍ମଚକ୍ର କହିଲେ ମୂଳତଃ ସୂର୍ଯ୍ୟଚକ୍ର, ଅର୍ଥାତ୍ ଷଡ଼ଋତୁର ଅଧିପତି ଚକ୍ରରୂପୀ ସୂର୍ଯ୍ୟ । ଏହା ଆମ ବିଷ୍ଣୁଙ୍କ ସୁଦର୍ଶନ ଚକ୍ରରେ ମଧ୍ୟ ଏବେ ବି ପ୍ରତିଭାତ ହେଉଚି । * ଅସୁର ଦେଶର ଦେବତା ଅସୁରଙ୍କ ଉପାସ୍ୟ ଅସୁର ଦେବଙ୍କର ମଧ୍ୟ ଗୋଟିଏ ଚକ୍ରସଂକେତ ଥିଲା । ପରବର୍ତ୍ତୀ କାଳରେ ପାରସ୍ୟର ଅହୁରମେଜଦା ଗୋଟିଏ ପକ୍ଷଯୁକ୍ତ ଚକ୍ରରେ ଚିହ୍ନିତ ହେଉଥିଲେ । ବ୍ୟାବିଲୋନୀୟ 'ସମାସ' ବା ସୂର୍ଯ୍ୟଦେବ ଓ ଇସ୍ତର ବା ସ୍ୱର୍ଗର ଦେବୀ ସମସ୍ତଙ୍କର ଗୋଟିଏ ଚକ୍ର ସଂକେତ ଥିବାର ପ୍ରମାଣ ମିଳୁଚି । ସମାସଙ୍କ ଆଗରେ ସୂର୍ଯ୍ୟରୂପେ ସ୍ପଷ୍ଟ ଗୋଟିଏ ଚକ୍ର ରହୁଥିଲା । ହିଟାଇଟମାନଙ୍କ ମଧ୍ୟରେ ଅବା ଯେଉଁ ଦେବଙ୍କର ପ୍ରତିକୃତି ମିଳୁଚି, ତା' ସଙ୍ଗେ ମଧ୍ୟ ଅର୍ଦ୍ଧଚକ୍ରମାନ ଯୋଡ଼ା ହୋଇ ରହିଥିବାର ସଂକେତ ସ୍ପଷ୍ଟ ଅଛି । ଏଇଥିରୁ ଜୈନମାନଙ୍କ ଧର୍ମଚକ୍ର କଥାଟି ଆସିଥିଲା ବୋଲି ଅନୁମାନ ହୁଏ । ପ୍ରସଙ୍ଗା-ନ୍ତରେ କୁହାଯାଇଚି, ଶାକ୍ୟମୁନି ବୁଦ୍ଧଙ୍କର ପ୍ରଥମ ସୂକ୍ତଟି ହେଉଚି, ଧର୍ମଚକ୍ର ପ୍ରବର୍ତ୍ତନ ସୂତ୍ର (ଧର୍ମଚକ୍ର ପ୍ରବର୍ତ୍ତନ ସୂକ୍ତ) । ଏଇପରି ବ୍ୟାବିଲନ ପ୍ରଭୃତି ପଶ୍ଚିମ ଦେଶରେ ଜୈନଭାବ ଯେ ବହୁ ଆଦାନପ୍ରଦାନ ସୂତ୍ରରେ ପରିପୁଷ୍ଟ ହୋଇଥିଲା, ତାହା ଆଉ ବିଶେଷ କହିବା ଦରକାର ନାହିଁ ।

## ଭାରତ ଓ ପାରସ୍ୟ ଆଦିରେ ଅତି ପ୍ରାଚୀନକାଳରେ ସେଇସବୁ ଜୈନ ପ୍ରଭାବର ସଂକେତ—

ଆଗନ୍ତୁକ ଆର୍ଯ୍ୟମାନେ ଦ୍ରାବିଡ଼ମାନଙ୍କୁ ଭୌତିକ ସାମର୍ଥ୍ୟରେ ଅଧୀନ କରିଥିଲେ ମଧ୍ୟ ଦ୍ରାବିଡ଼ମାନେ ନିଜର ସଂସ୍କୃତିରେ ଓ ସଭ୍ୟତାରେ ଆର୍ଯ୍ୟମାନଙ୍କୁ

* ଋକ୍‌ବେଦ ୧-୧୬୪ ସୂକ୍ତ ଏହି ସମ୍ପର୍କରେ ଦେଖ ।

ଅଭିଭୂତ କରିଥିଲେ । ଏମରି ପୃଥିବୀର ଇତିହାସରେ ବରାବର ଘଟିଥାଏ । ସେ ସବୁ କଥା ପରେ ପ୍ରସଙ୍ଗାନ୍ତରରେ କୁହାଯାଉଛି । ଭାରତୀୟ ଆର୍ଯ୍ୟମାନେ ପାରସ୍ୟୀକ ଆର୍ଯ୍ୟମାନଙ୍କ ଭାଇପରି ଥିଲେ । ଏମାନେ ସେକାଳେ ପ୍ରାୟ ଏକପ୍ରକାର ଥିଲେ । ମନେହେଉଛି, ଯେପରିକି ପାରସ୍ୟୀକମାନେ ଆର୍ଯ୍ୟଙ୍କଠାରୁ ବେଶି ପ୍ରଭାବବାନ୍ ଓ ଉନ୍ନତତର ମଧ୍ୟ ଥିଲେ । ନାରାୟଣୀୟ ଧର୍ମ ବା ବୈଷ୍ଣବଧର୍ମ ପାରସ୍ୟଆଡ଼ୁ ଭାରତକୁ ଆସିବାର ସ୍ପଷ୍ଟ ପ୍ରମାଣ ମିଳେ । ସେଇ ନାରାୟଣୀୟ ଧର୍ମ ବା ଐକାନ୍ତିକ ଧର୍ମର ନାମ ଏ ଦେଶରେ ହୋଇଥିଲା ସାତ୍ୱତ ଧର୍ମ ବା ପାଂଚରାତ୍ର ଧର୍ମ । ଏହାର ମୂଳ ନାମ ଥିଲା ନାରାୟଣୀୟ ଧର୍ମ । ଏହା ଅଧ୍ୟାତ୍ମ ଧର୍ମ ନୁହେ । ଏହା ପୂର୍ବାପର ଏକ ଈଶ୍ୱର ନିର୍ଦ୍ଦେଶିତ ଧର୍ମ ବା ଭୌତିକ ଧର୍ମ । ଭାରତ ଛଡ଼ା ପଶ୍ଚିମ ଦେଶମାନଙ୍କରେ ଅତୀତ ଅସୁର ଧର୍ମ କାଳରୁ ଏଇ ଐକାନ୍ତିକ ଧର୍ମ ଥିଲା । ମାତ୍ର ଜୀବହିଂସାର ସ୍ଥାନ ଏଥିରେ ଥିଲା କି ନାହିଁ ଓ ଥିଲେ କେତେ ଥିଲା ଜାଣିବା କଠିନ । କିନ୍ତୁ ଏଇ ଐକାନ୍ତିକ ଧର୍ମ ଭାରତରେ ପ୍ରଚଳିତ ହେଲାବେଳକୁ ଜୈନପ୍ରଭାବରେ ଭାରତୀୟ ଆର୍ଯ୍ୟମାନଙ୍କ ଭିତରେ ଜୀବହିଂସା ନ କରିବାର ଭାବ ପୂର୍ବାପର ପ୍ରଚଳିତ ହୋଇ ସାରିଥିଲା । ସେଇ ପ୍ରଭାବରେ ସମସ୍ତ ଭାରତୀୟ ସମାଜ ଅଭିଭୂତ ଥିଲା ।

## ପର୍ବତ ଓ ନାରଦଙ୍କ କଥା—

ବେଦରେ ଜୈନଧର୍ମର ସଙ୍କେତ ଦେଖାଇବାକୁ ଯାଇ କେଶୀ ଓ ଦିଗମ୍ବରଙ୍କ (ଋକ୍ ଦଶମ ମଣ୍ଡଳ ୯୦ମ ସୂକ୍ତ) ବର୍ଣ୍ଣନାରେ ଜୈନମାନଙ୍କ ଋଷଭ ଦେବ ଓ ଋଷିମାନଙ୍କ ଶିବଙ୍କ ପ୍ରତି ଲକ୍ଷ୍ୟ କରାଯାଇଛି ବୋଲି ଅନୁମାନ ହୁଏ । ଏଥିରେ ପ୍ରତ୍ନତାତ୍ତ୍ୱିକମାନଙ୍କର ମଧ୍ୟ ମତୈକ୍ୟ ଅଛି । ପୁଣି ସେଇଠାରେ ଜୈନ ହରିବଂଶରୁ ପର୍ବତ ଓ ନାରଦଙ୍କ କଥୋପକଥନରେ ଗୋଟିଏ ବୈଦିକ ବାକ୍ୟର ଜୈନ ବ୍ୟାଖ୍ୟା ପ୍ରତି ଲକ୍ଷ୍ୟ କରିଛନ୍ତି । ସେ ହେଉଛି—"ଅଜୈର୍ଯଷ୍ଟବ୍ୟମ୍" ଏହି ବୈଦିକ ଶବ୍ଦର ଅର୍ଥ ବିଷୟରେ ଆଲୋଚନା ଚାଲିଥିଲା । ପର୍ବତ ଏହି ବାକ୍ୟର ଅର୍ଥ କଲେ 'ଅଜ', ଅର୍ଥାତ୍ ଚତୁଷ୍ପାଦ ପଶୁବିଶେଷ, ତଦ୍ୱାରା ଯଜ୍ଞ କରିବା ବିଧେୟ । କିନ୍ତୁ ନାରଦ ତାହା ସ୍ୱୀକାର ନ କରି କହିଲେ, ଅଜର ଅର୍ଥ ଯହିଁରୁ କିଛି ଜାତ ହୁଏନାହିଁ, ଅର୍ଥାତ୍ ତିନିବର୍ଷର ପୁରୁଣାଶସ୍ୟ, ତଦ୍ୱାରା ଯଜ୍ଞ କରିବା ବିଧେୟ । ଏହି ଆଲୋଚନା ଏତିକିରେ ସରିଲା ନାହିଁ । ତୃତୀୟ ବ୍ୟକ୍ତିଦ୍ୱାରା ଏହାର ସମାଧାନ ଲୋଡ଼ି ବାଦୀ, ପ୍ରତିବାଦୀ ଦୁହେଁ କୌଣସି ରାଜାଙ୍କ ନିକଟକୁ ଗଲେ । ତାଙ୍କ ସଭାରେ ନାନା ଯୁକ୍ତିତର୍କ ପରେ ନାରଦଙ୍କ ମତ ଯଥାର୍ଥ ବୋଲି ସ୍ୱୀକୃତ ହେଲା । ତହୁଁ ପରାଜିତ ଅଭିମାନୀ ପର୍ବତ ଅନ୍ୟ ଜଣେ ରାଜାଙ୍କର ଆଶ୍ରୟରେ ହିଂସାଦ୍ୱାରା ଯଜ୍ଞକରଣ ମତକୁ ପ୍ରଚାର କଲେ । ନାରଦ ଅହିଂସାର ପ୍ରଚାରରେ ଲାଗିଲେ ।"

## ତାହାର ଆଲୋଚନା—

ଏ ପର୍ବତ ନାରଦଙ୍କ କଥାଟି ଜୈନ ହରିବଂଶରୁ ପରଂପରାର କିଂବଦଂତୀରୁ ଆସିଅଛି । ଏହା ପୂର୍ବରୁ ଏ ଉପାଖ୍ୟାନର ନାନାଭାବରେ ପ୍ରଚଳନ ଏ ଦେଶରେ ଥିଲା । ଜୈନମାନେ ଏଇ ଉପାଖ୍ୟାନର ତତ୍ତ୍ୱକୁ ଘେନି ନାନାପ୍ରକାର ଗଳ୍ପ ପ୍ରଚାର କରୁଥିବେ । କାରଣ, ଜୈନଙ୍କ ଭିତରେ ଅତି ପ୍ରାଚୀନକାଳରେ ମୁହଁର କଥା ଏପରିକି ସାଧନାର ସଙ୍କେତ ଛଡ଼ା ଅନ୍ୟ ପ୍ରକାର ଦର୍ଶନାଦିର ପ୍ରଚାର ଓ ତା'ର ଉଦାହରଣ କଥା ମଧ୍ୟ ବଡ଼ ବେଶୀ ନ ଥିଲା । ଜୈନମାନଙ୍କ ଶ୍ରୁତି ଅର୍ଥରେ ବୁଝାଯାଏ, ସଙ୍କେତ । ବେଦର ଶ୍ରୁତି ହେଉଛି ମନ୍ତ୍ରାଦି ଓ ତହିଁ ସଂଗେ ସେ ସବୁର ଉଚ୍ଚାରଣ ଓ ପ୍ରୟୋଗ । ତେଣୁ ବୈଦିକ ସାହିତ୍ୟରେ ଜୈନଧର୍ମ କିପରି ପ୍ରଭାବ ବିସ୍ତାର କରିଥିଲା, ତା'ର ଗୋଟିଏ ସ୍ପଷ୍ଟ ଉଦାହରଣ ହେଉଛି, ଏଇ ପର୍ବତ ନାରଦଙ୍କ କଥା । ଏହା ବୈଦିକ ସାହିତ୍ୟରେ ଅତି ଭିନ୍ନ ରୂପରେ ଓ ପୁରା ଭିନ୍ନ ପରିସ୍ଥିତିରେ ଆଉରି ଭଲକରି କୁହାଯାଇଛି । ତାଂ ହେଉଛି ମହାଭାରତର ଶାଂତି ପର୍ବରେ ନାରାୟଣୀୟ ଧର୍ମର ପ୍ରାରଂଭରେ ବର୍ଣ୍ଣନା କରାଯାଇଥିବା ଉପରିଚର ବସୁଙ୍କ କଥା । ଏହା ପୂର୍ବେ ମୁଖବଂଧରେ କୁହାଯାଇଛି ।

## ଉପରିଚର ବସୁଙ୍କ କଥା—

ଯାଗଯଜ୍ଞାଦିରେ ଦେବତାମାନଙ୍କୁ ବୈଦିକମାନେ ଆରାଧନା କରୁଥିଲେ । ଏଇ ଯାଗଯଜ୍ଞରେ ପଶୁବଧାଦି ଗୋଟିଏ ନିତ୍ୟକ୍ରିୟା ଥିଲା । ଅହିଂସାର ନାମ ଗନ୍ଧପର୍ଯ୍ୟନ୍ତ ସେ ସବୁରେ ନଥିଲା । ଦେବତାମାନଙ୍କର ଏଇ ଯାଗଯଜ୍ଞରେ ଋଷିମାନେ ଆପତ୍ତି କଲେ ଓ ସେଇ ଆପତ୍ତିରେ ଶାସ୍ତ୍ରର ମଧ୍ୟ ଭିନ୍ନ ଅର୍ଥ କଲେ । ଋଷିମାନେ କହିଲେ 'ଅଜୈର୍ଯଯତ' ଏଇ ପଦଟିର ଅର୍ଥ ହେଉଛି ଅଜରେ ଯଜ୍ଞ କରିବାର ବିଧି । ଏଠାରେ ଅଜ ବୋଇଲେ ଛେଳି ନୁହେ । ଅଜ ବୋଇଲେ ଯେଉଁ ଶସ୍ୟରୁ ଗଛ ଜନ୍ମ ନୋହିବ, ଅର୍ଥାତ୍ ପୁରୁଣାଶସ୍ୟ। ଛେଳି ପ୍ରଭୃତି ହାଣି ଯେଉଁ ଯଜ୍ଞ କରାଯାଏ, ତାହା ଠିକ୍ ଯଜ୍ଞ ନୁହେ । ପୁରୁଣା ଯବ ପ୍ରଭୃତିରେ ଯେଉଁ ଯଜ୍ଞ ବା ପୂଜା କରାଯାଏ, ତାହାଇ ଯଥାର୍ଥ ଯଜ୍ଞ; ଏଇ କଳି ଲାଗିଛି । ଏତିକିବେଳକୁ ରାଜା ଉପରିଚର ବସୁ (ଯେ କି ଉପରେ ଅର୍ଥାତ୍ ଆକାଶରେ ସ୍ୱଚ୍ଛଂଦ ବୁଲି ପାରଂତି) ସେଇବାଟେ ଯାଉଥିଲେ । ତାଙ୍କୁ ଦେଖି ଦେବତା ପକ୍ଷ ଓ ଋଷିପକ୍ଷ ଦୁହେଁ ମଧ୍ୟସ୍ଥ ମାନିଲେ । ସେ କାହାର କେଉଁ ମତ ବୋଲି ପଚାରି ବୁଝିଗଲେ ଓ ଯେତେବେଳେ ଜାଣିଲେ ଦେବତାମାନଙ୍କ ମତ ହେଉଛି ଅଜ ବୋଇଲେ ଛେଳି, ସେତେବେଳେ ସେ ସେଇ ଦେବତାମାନଙ୍କ ପକ୍ଷରେ ମତ ଦେଲେ । ତହୁଁ ଋଷିମାନେ ଅଭିଶାପ ଦେଇ ରାଜା ବସୁଙ୍କୁ ଭୂମିର ଗୋଟିଏ ଗର୍ତ୍ତ ମଧ୍ୟରେ ଭର୍ତ୍ତି କରିଦେଲେ । ମାତ୍ର ସେ ଐକାଂତିକ ଧର୍ମରେ ରହି ନାରାୟଣଙ୍କୁ ପ୍ରାର୍ଥନା କରୁଥିବାରୁ ସେଇ ଐକାଂତିକ ପ୍ରାର୍ଥନାବଳରେ ପରେ ସେଇ ଅଭିଶାପରୁ ଉଦ୍ଧାର ପାଇଥିଲେ ।

## ଐକାଂତିକ ଧର୍ମ—

ରାଜା ଉପରିଚରବସୁ ଥିଲେ ଐକାନ୍ତିକ ବା ଏକମାତ୍ର ନାରାୟଣ ଉପାସକ । ଏଇ ଐକାଂତିକ ଧର୍ମର ଅର୍ଥ ହେଉଛି, କେବଳ ଏକମାତ୍ର ନାରାୟଣରେ ଆତ୍ମ ସମର୍ପଣ କରି ସେଇ ନାରାୟଣଂକଠାରୁ ପ୍ରାର୍ଥନାରେ ଯାହା ମିଳିବ, ତାହାଇ ପାଇବା । ଏଇଠାରେ ଏଇ ଐକାଂତିକ ଧର୍ମ କୁଆଡ଼ୁ ଆସିଲା, କିପରି ଆସିଲା, ତାହାର ସଂକେତ ମାନ ଦିଆଯାଇଛି—ନରନାରାୟଣ ଦୁଇ ଋଷି ବଦରିକା ଆଶ୍ରମରେ ତପସ୍ୟା କରୁଥିଲେ । ନାରଦ ତାଂକୁ ବିଶ୍ୱ ସର୍ବପ୍ରଧାନ ହର୍ତାକର୍ତା ଓ ବିଧାତା ରୂପେ ଜାଣିଥିଲେ ଓ ବଦରିକାଶ୍ରମକୁ ଯାଇ ତାଂକୁ ତପସ୍ୟା କରିବାର ଦେଖି ପଚାରିଲେ, "ଆପଣମାନେ କେଉଁ କାମନା ସିଦ୍ଧି ପାଇଁ ଏ ତପସ୍ୟା କରୁଚଂତି ? ଓ ତପସ୍ୟାରେ କାହାକୁ ଭଜୁଚଂତି ?" ଋଷିମାନେ କହିଲେ, ଆମେ ନାରାୟଣଂକୁ ପାଇବାକୁ ତପସ୍ୟା କରୁଚୁ ।" ନାରଦ ସେଇ ନାରାୟଣଂକୁ ପାଇବାକୁ ଇଚ୍ଛା ପ୍ରକାଶ କରିବାରୁ ଋଷିମାନେ ତାଂକୁ ଉତ୍ତର ପଶ୍ଚିମ ଆଡ଼କୁ ଯାଇ କ୍ଷୀର ସାଗର ମଧ୍ୟରେ ଥିବା ଶ୍ୱେତ-ଦ୍ୱୀପରେ ସେଇ ନାରାୟଣଂକୁ ଦେଖିବେ ବୋଲି ସଂକେତ ଦେଲେ । ଏଇଠାରେ ଲକ୍ଷ୍ୟରଖିବାର ଅଛି, ଅନ୍ୟ ପୁରାଣମାନଂକରେ କୁହାଯାଇଚି, ଏଇ କ୍ଷୀର ସାଗର ମଧ୍ୟରେ ଯେଉଁ ଦ୍ୱୀପଟି ଅଛି, ତାହାର ନାମ ହେଉଚି ଶାକଦ୍ୱୀପ । ତେଣୁ ସେଇ ଶାକଦ୍ୱୀପଟି ଏଠାରେ ହେଉଚି ଶ୍ୱେତଦ୍ୱୀପ । ପ୍ରାଚୀନ ପୁରାଣର ଏଇ ଶାକଦ୍ୱୀପଟି ପାରସ୍ୟ ବୋଲି ପଂଡ଼ିତମାନେ ଅନୁସଂଧାନରେ ସ୍ଥିର କରିଚଂତି, ଅର୍ଥାତ୍, ଉତ୍ତର ପଶ୍ଚିମ ଆଡ଼େ ଥିବା ଶ୍ୱେତଦ୍ୱୀପଟି ହେଉଚି ପାରସ୍ୟ । ଏଇ ପାରସ୍ୟର ନାରାୟଣ ହେଉଚଂତି ଖୁବ୍ ସଂଭବ ଏକେଶ୍ୱର ଅହୁର-ମେଜଦା । ସାଧନାରେ ସିଦ୍ଧ ତେଣୁ ନିରାହାର, 'ନିରିଂଦ୍ରୀୟ' ଏଇ ନାରାୟଣଂକ ଶିଷ୍ୟମାନଂକ ବର୍ଣନା ଏଠାରେ ଯାହା ଦିଆଯାଇଚି, ସେଥିରୁ ମନେ ହେଉଚି ସେମାନେ ପୂରାପୂରି ଜୈନସାଧକ ଓ ଜୈନସିଦ୍ଧ । ଏଇପରି ପାରସ୍ୟରୁ ଅତି ପ୍ରାଚୀନକାଳରେ ଭାରତର ଆର୍ଯ୍ୟମାନେ ଯେଉଁ ଐକାଂତିକ ଧର୍ମ, ନାରାୟଣୀୟ ଧର୍ମ ବା ସେ କାଳ ବାସୁଦେବ ଧର୍ମ ତଥା ପରବର୍ତୀକାଳର ବୈଷ୍ଣବଧର୍ମ ଗ୍ରହଣ କରିଥିଲେ, ତା ଐତିହକ ଧର୍ମ ବା ଈଶ୍ୱରନିର୍ଦେଶିତ ଧର୍ମ ହେଲେ ମଧ୍ୟ ପୂରାପୂରି ଜୈନର ଜୀବହିଂସା ତଥା ଜୈନସାଧକର ସିଦ୍ଧିରେ ପୂରାପୂରି ପ୍ରଭାବିତ ରହିଚି ।

## ଭାରତୀୟ ଆଧୁନିକ ଧର୍ମମାନଂକ ଭିତ୍ତି—

ସ୍ପଷ୍ଟ ବୁଝାଗଲା, ଏଇ ଐକାଂତିକ ଧର୍ମ ବା ବାସୁଦେବ, ଅର୍ଥାତ୍, ଦକ୍ଷିଣ ପଶ୍ଚିମ ଏସିଆର ଏଇ ଧର୍ମମାନଂକ ପରି ଗୋଟିଏ ଈଶ୍ୱର ଧର୍ମ । ଏଇଥିରୁ ବାହାରିଚି ଆମର ବୈଷ୍ଣବ ଧର୍ମ ଓ ତଦନୁକ୍ରମେ ପ୍ରବର୍ତିତ ଓ ପ୍ରଚଳିତ ଅନ୍ୟାନ୍ୟ ଧର୍ମମାନ । ବୌଦ୍ଧଧର୍ମର ମହାଯାନ ପ୍ରକାରଟି ଠିକ୍ ଏଇ ଧର୍ମରୁ ବାହାରିଚି । ପୂର୍ବେ କୁହାଯାଇଚି, ଏଇ ପଶ୍ଚିମ

**ଆଜି** ଆସିଥିବା ଦେଶୀ ଧର୍ମଟି ମଧ୍ୟ ପ୍ରଥମେ 'ହୈମବତୀ ଉମାଙ୍କ' ଧର୍ମ । ତା' ପରେ ଶକ୍ତିଧର୍ମ ଓ ତାହା ସଂଗେ ଜଡ଼ିତଥିବା ଶିବଧର୍ମରେ ପରିଣତ ହୋଇଥିଲା । ଭାରତର ଏ ସବୁ ଧର୍ମରେ ଜୈନଧର୍ମର ଛାପ ଓ ପ୍ରଭାବ ସ୍ପଷ୍ଟ । ଏ ସବୁ ଧର୍ମରେ ନାନା ଭାବରେ ଭାରତୀୟ ଦର୍ଶନର ଅଧ୍ୟାତ୍ମ ତତ୍ତ୍ୱ ସବୁ ଅଂଗାଗୀଭାବେ ଯୋଡ଼ିବାର ଉଦ୍ୟମ କରାଯାଇଛି । କାଳକ୍ରମେ ଶିବଧର୍ମ ସଂଗେ ଶକ୍ତି ଧର୍ମ, ମହାଯାନ ସଂଗେ ବଜ୍ରଯାନ, ସହଜଯାନ ପ୍ରଭୃତି ବୌଦ୍ଧଧର୍ମ, ବୈଷ୍ଣବଧର୍ମରୁ ବୃଂଦାବନର ରାଧାକୃଷ୍ଣ ଧର୍ମ ଓ ପରକୀୟା ପ୍ରେମଧର୍ମ ତଥା ସହଜିୟା ବା ଗୌଡ଼ୀୟ ବୈଷ୍ଣବ ଧର୍ମ ପ୍ରଭୃତି ନାନା ବିକଟ ଓ ବୀଭତ୍ସ ଧର୍ମ ସବୁ ଭାରତରେ କାଳକ୍ରମେ ବାହାରିଛି ଓ ବିସ୍ତାର ପାଇଛି ସତ, କିଂତୁ ଏ ସମସ୍ତର ମଜ୍ଜାରେ ଜୈନର ଅହିଂସା ଓ ସ୍ଥଳବିଶେଷରେ ଯୁକ୍ତିର ଆବଶ୍ୟକତା ପାଇଁ ଜୈନଧର୍ମରୁ ବାହାରିଥିବା ଦାର୍ଶନିକ ତତ୍ତ୍ୱସବୁ ବଡ଼ ଅଂଗାଂଗୀଭାବେ ଯୋଡ଼ିବାର ଉଦ୍ୟମ ମଧ୍ୟ କରାଯାଇଛି ।

## ନିରାମିଷ ଭୋଜନ—

ଭାରତବର୍ଷରେ ତଥା କଳିଂଗରେ ଜୈନଧର୍ମର ପ୍ରଭାବ ଅତି ଗଭୀର ଓ ଅତି ପ୍ରାଚୀନ । ଏସବୁ ଭିତରୁ ଏବେ ସବୁଠୁ ସ୍ପଷ୍ଟ ଦେଖାଯିବା ଭଳି ଗୋଟିଏ ପ୍ରଧାନ ସଂକେତ ହେଉଛି ନିରାମିଷ ଭୋଜନ । ଦୃଷ୍ଟାଂତ ସ୍ୱରୂପ ଗୋଟିଏ କଥାକୁ ଲକ୍ଷ୍ୟ କରାଯାଉ । ଏ ଦେଶର ନିରାମିଷ ଭୋଜନ । ଏପରି ନିରାମିଷ ଭୋଜନର ଦୃଷ୍ଟାଂତ ପୃଥିବୀରେ ଆଉ ନାଇ । ଦ୍ରାବିଡ଼ମାନଙ୍କ ମଧ୍ୟରେ ନିରାମିଷ ଭୋଜନ ଗୋଟିଏ ଅତି ପବିତ୍ର ଶିଷ୍ଟାଚାର । ସେଥିରେ ନିରାମିଷ କହିଲେ, ଡିଂବସମେତ ସମସ୍ତ ଜୀବହିଂସା ଏକାଂତ ନିଷିଦ୍ଧ । ପୁଣି ସମସ୍ତ ଭାରତବର୍ଷରେ ମଧ୍ୟ ଅନେକ ଆନୁଷ୍ଠାନିକ ଓ ପବିତ୍ର ଦିନମାନଙ୍କରେ ନିରାମିଷ ଭୋଜନ ବ୍ୟବସ୍ଥା ଅଛି । ଓଡ଼ିଶା, ବଂଗଳା ପ୍ରଭୃତିରେ ବିଧବାମାନଙ୍କ ଭୋଜନରେ ଏହାର ବ୍ୟାପ୍ତି ଏକାବେଳକେ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ବାଜପେୟୀ ଓ ବଂଗଳାର ରଘୁନଂଦନ ପ୍ରଭୃତି ନିଜ ନିଜ ସ୍ମୃତିମାନଙ୍କରେ ଏହି ବ୍ୟବସ୍ଥାର ସମ୍ୟକ୍ ବିଧାନ କରିଛଂତି । ପୁଣି ଏହି ଶିଷ୍ଟାଚାରଗତ ତଥା ଆନୁଷ୍ଠାନିକ ଓ ବିଧିବାଦ ସେବିତ ନିରାମିଷ ଭୋଜନ ଯେଉଁମାନଙ୍କ ଭିତରେ ଚଳେ, ସେମାନେ କେବଳ ଗୁଜୁରାଟ, ରାଜସ୍ଥାନ ପ୍ରଭୃତି ଲୋକଙ୍କ ଛଡ଼ା ଆର୍ଯ୍ୟମାନଙ୍କ ରକ୍ତ ତଥା ସଂସ୍କୃତିର ବଂଶଧର ବୋଲି ନିଜକୁ ଦାବୀ କଲେ ହେଁ ଏ ନିରାମିଷ ଭୋଜନ ବିଧିଟି ଭାରତୀୟ ଦୀର୍ଘ ପ୍ରତିଷ୍ଠିତ ପରଂପରାରୁ ଯେ ଆସିଛି, ତାହାର ପ୍ରମାଣ ଦେବାର ଦରକାର ନାଇ । ବିଶେଷରେ ରାଜସ୍ଥାନ ଓ ଗୁଜୁରାଟ ପ୍ରଭୃତି ପାରଂପାରିକ ଜୈନ ଭୂମିମାନଙ୍କରେ ଏହି ବିଧିଟି ଖୁବ୍ ଗଭୀର ଓ ବ୍ୟାପକ ଭାବରେ ପ୍ରଚଳିତ ଥିବାର ଦେଖାଯାଏ । ଏହା ମୂଳତଃ ଜୈନ ବିଧି ।

## ସଂଖୁଡ଼ି—

ଏହି ସଂପର୍କରେ ଓଡ଼ିଶାରେ ସବୁଠୁ ଚଳୁଥିବା 'ସଂଖୁଡ଼ି' ନୀତିଟି ପ୍ରତି ଲକ୍ଷ୍ୟ କରିବାର ଅଛି । ବିଜେଂଦ୍ର ଅଭିଧାନଟି ହେଉଛି ଜୈନ ଅଭିଧାନ । ଏହି ଅଭିଧାନରେ

ଏଇ 'ସଖୁଡ଼ି' ଶବ୍ଦ ଉପରେ ଗୋଟିଏ ପ୍ରବନ୍ଧ ଅଛି । ସେଥିରୁ ଦେଖାଯାଏ ବିବାହାଦି ଭୋଜିମାନଙ୍କରେ ଯେଉଁ ଖାଦ୍ୟସବୁ ବ୍ୟବହୃତ ହେଉଥିଲା, ତାହାର ନାମ ହେଉଛି ସଖୁଡ଼ି । ଜୈନ ସାଧୁମାନଙ୍କର ଏଇପରି ଭୋଜି ଅର୍ଥାତ୍ 'ସଖୁଡ଼ି' ସର୍ବଦା ପରିତ୍ୟାଜ୍ୟ ଥିଲା । ସେଇଠାରୁ ଏଇ ସଖୁଡ଼ି ଶବ୍ଦର ଉତ୍ପତ୍ତି । ଆଜି ଫଳାହାର ବା ଓଡ଼ିଆ ଭଷାରେ 'ନିସଖୁଡ଼ି' ଭୋଜନ ବୋଲି ସାମାଜିକ ବ୍ୟବହାରଗତ ଗୋଟିଏ ଶବ୍ଦ ଚଳେ । ଏଥିରେ କିଏ ସଖୁଡ଼ି କିଏ ସଖୁଡ଼ି ନୁହେଁ, ତାହା ପାରଂପାରିକ ବ୍ୟବହାର ଅନୁସାରେ ଆମ ଓଡ଼ିଆ ଲୋକେ—ବିଶେଷତଃ ମାଇପେ—ଭଲ କରି ଜାଣନ୍ତି । ଖାଦ୍ୟ ବା ଖାଦ୍ୟର ଉପାଦାନାଦି ନିର୍ଦ୍ଦେଶ କରି ଏହାକୁ ବୁଝାଇବା ବଡ଼ କଷ୍ଟ । କେହି କେହି ପଣ୍ଡିତମାନେ ନିସଖୁଡ଼ିକୁ ଲକ୍ଷ୍ୟ କରି ଶ୍ଳୋକ ବୋଲିବାର ଶୁଣାଯାଏ ।

"ଘୃତ ପକ୍ୱଂ ପୟଃ ପକ୍ୱମ୍
ପକ୍ୱଂ କେବଳ ବହ୍ନିନା
ତଦ୍ରବ୍ୟଂ ଫଳବତ୍ ଗ୍ରାହ୍ୟଂ
ଧର୍ମ୍ମୋୟଂ ମନୁରବ୍ରବୀତ୍ ।"

ଅର୍ଥାତ୍—ଯାହା ଘିଅରେ ରନ୍ଧା ବା ପୁଆ ହୋଇଛି, ଯାହା ଦୁଧରେ ରନ୍ଧା ହୋଇଛି, ଯାହା କେବଳ ନିଆଁରେ ପୋଡ଼ା ହୋଇ ସିଦ୍ଧ ହୋଇଛି, ସେ ସବୁ ଦ୍ରବ୍ୟକୁ ଫଳକୁ ଗ୍ରହଣ କଲା ପରି ଗ୍ରହଣ କରିବ । ଏହାଇ ଧର୍ମ ବୋଲି ମନୁ କହିଛନ୍ତି । କିନ୍ତୁ ନିସଂଖୁଡ଼ିର ଏହା ସଜ୍ଞା ହେଲେ ମଧ୍ୟ ଆମ ଗୁଡ଼ିଆ-ଭଜା ନିସଖୁଡ଼ି ନୁହେଁ । କିମ୍ବା ଘିଅରେ ପୁଆ ହୋଇଥିବା ଆମ ଗୁଡ଼ିଆ କାକରା, ବ୍ରାହ୍ମଣ ଶାସନ-ମାନଙ୍କରେ ଓପନ କାକରା ନିସଖୁଡ଼ି ହୁଏ ନାହିଁ । ପୋଡ଼ା ବାଇଗଣ ଆଳୁ ବା ସାରୁ ପ୍ରଭୃତିରେ ଲୁଣ ପକାଇ ଚକଟି ଖାଇଲେ ତା ମଧ୍ୟ ନିସଂଖୁଡ଼ି ହୁଏ କି ନା କହି ହେଉନାହିଁ । ପୁଣି ଚୁଡ଼ା ପ୍ରଭୃତି ନ ରାନ୍ଧି ବା ଅଳ୍ପ ରାନ୍ଧି ଯେପରି ତିଆରି କଲେ ମଧ୍ୟ ନିସଂଖୁଡ଼ି ହୁଏ । ସାକ୍ଷୀଗୋପାଳଙ୍କ ମନ୍ଦିରରେ ଚୁଡ଼ାପଖାଳଠାରୁ ଲୁଣ ନ ପଡ଼ି ଭଜା ହୋଇଥିବା କଦଳୀ ପର୍ଯ୍ୟନ୍ତ ନିସଂଖୁଡ଼ି ହୁଏ । ତା ଛଡ଼ା ଅନେକ ସିଦ୍ଧଦ୍ରବ୍ୟ ଲୁଣ ପଡ଼ିବା ପୂର୍ବରୁ ମଧ୍ୟ ନିସଂଖୁଡ଼ି ହୁଏ । ଭାତରେ ଲୁଣ ପଡ଼େ ନାହିଁ । ତଥାପି ତାହା ସଂଖୁଡ଼ି ଶ୍ରେଷ୍ଠ । ବରିପିଠା ଓ ଗୁଡ଼ିଆ ପିଠା ପୁରାପୂରି ସଂଖୁଡ଼ି । କିନ୍ତୁ ଗହମ ପିଠା ସଂଖୁଡ଼ି ହୁଏ ନାହିଁ । ଓଡ଼ିଶାରେ ରୁଟି ମଧ୍ୟ ସଂଖୁଡ଼ି ନୁହେଁ । ଏଇପରି ଗୋଟି ଗୋଟି କରି ପରୀକ୍ଷା କରି ବସିଲେ କୌଣସି ସଂଜ୍ଞା ନିର୍ଦ୍ଦେଶ କରିବାରେ ସଂଖୁଡ଼ି, ନିସଂଖୁଡ଼ି ଜିନିଷର ଠିକ୍ ବ୍ୟାପ୍ତି ବ୍ୟାଖ୍ୟା କରି ହେଲାପରି ମନେ ହେଉନାହିଁ ।

## ଜଗନ୍ନାଥ ନାଥ ପଂଥୀ ଓ ମହାପ୍ରସାଦ—

ଏଠାରେ ପ୍ରାସଂଗିକ ଭାବରେ ଟିକିଏ ଜଗନ୍ନାଥଙ୍କ କଥା କହୁଛି । ଜଗନ୍ନାଥ ପାରଂପାରିକ ଜୈନ ଦେବ । କିଂତୁ ତାହା ତଥାକଥିତ ବଜ୍ରଯାନାଦି ତଂତ୍ର ଧର୍ମ ପ୍ରଭାବରେ ପଡ଼ିଥିଲା ପରି ବୋଧହୁଏ । ପ୍ରଥମେ ଉପାସ୍ୟ ପୁରୁଷ ଅର୍ଥରେ ନାଥ ଶବ୍ଦ ମୂଳତଃ ଜୈନଶବ୍ଦ । ୨୪ଟି ତୀର୍ଥଂକରମାନଂକ ମଧ୍ୟରୁ ଅଂତତଃ ୧୧ ଟିଂକ ନାମରେ ନାଥ ଅଛି । ସେଇ ଅନୁକରଣରେ ଲୋକଙ୍କ ପ୍ରିୟଂକର ଇଂଦ୍ରିୟ ଭୋଗ ସବୁ ନାନା ଅଦ୍ଭୁତ କ୍ରିୟା ଓ ଅଦ୍ଭୁତ କଥାରେ ପ୍ରଚାର କରିବା ପାଇଁ ଜଗନ୍ନାଥ ଅନୁକରଣରେ ବାହାରିଥିଲେ, ନାଥପଂଥୀ ବଂଗଳା ଓ ପୂର୍ବ ମଗଧର ତଥା ପରବର୍ତ୍ତୀକାଳରେ ଉତ୍ତର ଭାରତରେ ଅନ୍ୟତ୍ର ପ୍ରଚାରିତ ହୋଇଥିବା ଗୋରଖନାଥ, ନେମିନାଥ ପ୍ରଭୃତିଂକ ତାଂତ୍ରିକ ପଂଥା ଏଇ ଜଗନ୍ନାଥର ନାମ ସାମ୍ୟରେ ବାହାରିଥିଲା । ସଂଗେ ସଂଗେ ଲୁଇପା ବା ଲୋହିଦାସ ପ୍ରଭୃତିଂକର ତଦ୍‌ବିଧ ତଂତ୍ରଧର୍ମ ସେଇପରି ଜିହ୍ୱା ଯୋନିର ଲୋକ ମୁଗ୍‌ଧକର ପ୍ରବଳ ଓ ବିଶାଳ ପ୍ରଚାରରେ ପୂର୍ବ ମଗଧ, ଆସାମ, ବଂଗ ଏପରିକି ଉତ୍ତର ଓଡ଼ିଶା ପର୍ଯ୍ୟଂତ ବ୍ୟାପି ଯାଇଥିଲା । ସେତିକିବେଳେ ମନେ ହେଉଚି, ସେଇ ପ୍ରଭାବରେ ଲୋକେ ଜଗନ୍ନାଥ ସେ ଜୈନ ପ୍ରବର୍ତ୍ତିତ ସଖୁଡ଼ି ଭୋଗ ପ୍ରଚାର କରି ମହାପ୍ରସାଦର ସୃଷ୍ଟି କରିଥିଲେ । ଏବେ ମଧ୍ୟ ଆମ ମହାପ୍ରସାଦ ସ୍ପଷ୍ଟତଃ ଚାଉଳ, ବରି ଓ ଡ଼ାଲି ତରକାରି ଛଡ଼ା ଅନ୍ୟ କୌଣସି ରଂଧା ହୋଇଥିବା ପଦାର୍ଥରେ ମୁଖ୍ୟତଃ ପ୍ରୟୋଗ କରା ହୁଏ ନାଇ । ଶୁଣିଲି ମହାପ୍ରସାଦ ବୋଲି ଯାହା କାଳକ୍ରମେ ତା ଭିତରେ ପଶି ଯାଇଛି ସେଥିରେ ମଧ୍ୟ ସ୍ପଷ୍ଟ ଭାବରେ ଗହମ ପଶି ନାଇ । ବାଇଗଣ, କଖାରୁ ପରି ଧାର୍ମିକ ଓ ନିଷ୍ଠାପର ଲୋକେ ନ ଖାଉଥିବା ଜିନସ ବାବା ବ୍ରହ୍ମଚାରୀଙ୍କ ପରି ମହାପୁରୁଷମାନେ ଏବେ ମଂଦିରରେ ମହାପ୍ରସାଦ ଭିତରେ ଭର୍ତ୍ତି କରିଚଂତି । ଆମ ଓଡ଼ିଶାର ବ୍ରାହ୍ମଣୀ ବିଧବାମାନଂକର କାର୍ତ୍ତିକ ମାସରେ ହବିଷ୍ୟାନ୍ନରେ ଏବେ ମଧ୍ୟ କଖାରୁ, ବାଇଗଣ ପ୍ରଭୃତି ଚଳନାଇ, ଅଥଚ କାଳକ୍ରମେ ସେଇ ମହାପ୍ରସାଦରେ ମଧ୍ୟ ସଖୁଡ଼ି ମହାପ୍ରସାଦ ଓ ନିସଖୁଡ଼ି ମହାପ୍ରସାଦ ବୋଲି ଗୋଟିଏ ଭେଦ ପଶିଯାଇଚି । ତାହା ଅର୍ବାଚୀନ, ତଥାପି ସେଥିରୁ ସଂଖୁଡ଼ି, ନିସଂଖୁଡ଼ିର ପ୍ରଭେଦ ମଧ୍ୟ ବାରି ହେଉଚି ।

## ଓଡ଼ିଶା ଜୈନଭୂମି—ଜଗନ୍ନାଥ ଜୈନଦେବ—

ଏଇ ସଂଖୁଡ଼ି ଶବ୍ଦଟି ଜୈନଶବ୍ଦ । ଜୈନ ସାଧୁମାନେ ଏକତ୍ର ପରସ୍ପର ଉଚ୍ଛିଷ୍ଟ ନ ଖାଇବା ଜିନସ ହିଁ ସଂଖୁଡ଼ି । ଏ ଶବ୍ଦଟି ଓଡ଼ିଶା ଛଡ଼ା ଅନ୍ୟତ୍ର ଏ ଅର୍ଥରେ ଚଳେ ନାଇ । ବଂଗ ଦେଶରେ ସଖୁଡ଼ି ଶବ୍ଦଟି ଚଳେ । କିଂତୁ ସେଠାରେ ସଂଖୁଡ଼ିର ଅର୍ଥ ଭିନ୍ନ ।

ଏଇ ସଂଖୁଡ଼ି ଶବ୍ଦର ଅର୍ଥ ସଂଗେ ତାହାର ଏକ ପ୍ରକାର ଦୂର ସଂବଂଧ ଥିଲେ ମଧ୍ୟ ଦେଶରେ ସଂଖୁଡ଼ି ବୋଇଲେ ଉଚ୍ଛିଷ୍ଟ । ଆମେ ଯାହାକୁ ଅଇଁଠା କହୁ ସେମାନେ ତାକୁ କହୁଂଛ ସଂଖୁଡ଼ି । ଏଇ ସଂଖୁଡ଼ି ଶବ୍ଦରୁ ହୁଏତ ତାହା ଗ୍ରହଣ କରାଯାଇଚ । ପରଂତୁ ବ୍ୟାପ୍ତିରେ କାଳକ୍ରମେ ଭିନ୍ନ ହୋଇ ପଡ଼ିଚ । ଅନ୍ୟାନ୍ୟ ପ୍ରମାଣ ଛଡ଼ା ଏଇପରି ନିତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟ ଓ ଅନୁଷ୍ଠାନମାନଂକରେ ପ୍ରମାଣମାନ ଭାରତ ସମାଜରେ ତଥା ଓଡ଼ିଶାରେ ଖୁବ୍ ମିଳିବ । ଓଡ଼ିଶା ମୁଖ୍ୟତଃ ଜୈନଭୂମି ଏହା ଖାରବେଳଂକଠାରୁ—ପରବର୍ତ୍ତୀକାଳରେ ନୂତନ ପର୍ଯ୍ୟାୟରେ ସୃଷ୍ଟିଥିବା ଜୈନ-ମାନଂକଠାରୁ ନୁହେ । ସିଂହଭୂମି ଓ କେନ୍ଦୁଝର ପ୍ରଭୃତିରେ ଥିବା ବଡ଼ ବଡ଼ ସରାକ ପୋଖରୀମାନ ହୁଏତ ସେଦିନ ହୋଇଥିଲା । ସେଇ କେବଳ ଓଡ଼ିଶା ଜୈନ-ଭୂମି ଥିବାର ପ୍ରମାଣ ନୁହେ । ପରେ କୁହାଯାଇଚ ଜଗନ୍ନାଥ ଜୈନଦେବ । ଚିରକାଳ ସେ କଳିଂଗ ତଥା ଓଡ଼ିଶାର ସଂପଦ ।

## ବୌଦ୍ଧଧର୍ମ ଜୈନଧର୍ମରୁ ଆଗ ନୁହେ—

ଏଇଠାରେ ଗୋଟିଏ ତାତ୍ତ୍ୱିକ ବସ୍ତୁ ପ୍ରତି ଦୃଷ୍ଟି ଆକର୍ଷଣ କରିବା ଉଚିତ । ଇଉରୋପୀୟ ପ୍ରାଚ୍ୟ ପ୍ରତ୍ନତତ୍ତ୍ୱବିତ୍‌ମାନେ ବୌଦ୍ଧଧର୍ମ ବିଷୟରେ ବହୁ ଅନୁସନ୍ଧାନ କରିଥିଲେ । ବହୁପରେ ଜୈନଧର୍ମ ସଂବଂଧରେ କେତେକ ଶାସ୍ତ୍ର ଓ ବ୍ୟବହାର ତାଂକ ଅନୁସଂଧାନକୁ ଆସିଥିଲା । ସେମାନେ ମନେ କରିଥିଲେ ଜୈନଧର୍ମ ବୌଦ୍ଧଧର୍ମ ଏକ ନାମାଂତର ମାତ୍ର । ଏପରିକି ବୌଦ୍ଧଧର୍ମ ପ୍ରଚାରକ ଶାକ୍ୟମୁନି ଓ ଜୈନ ଧର୍ମ ପ୍ରଚାରକ ମହାବୀର ଦୁହେଁ, ଏକ ବ୍ୟକ୍ତି ବୋଲି ତାଂକର ଧାରଣା ଜନ୍ମିଥିଲା । ଜର୍ମାନ ପଂଡ଼ିତବର ହରମନ ଜାକୋବି (Hermann Jacobi) ପ୍ରଥମେ ଅନୁସନ୍ଧାନ କରି ପଂଡ଼ିତ ମାନଂକର ଏ ଧାରଣା ବଦଳାଇବା ସୂତ୍ରପାତ କରିଥିଲେ । ମାକ୍ସ ମୁଲରଂକ ସଂପାଦିତ (ପୂର୍ବ ଦେଶମାନଂକର ପବିତ୍ର ଗ୍ରଂଥମାଳା ) (Sacred Books of the East ) ନାମରେ ଯେଉଁ ଗ୍ରଂଥାବଳୀଟି ପ୍ରକାଶ କରିଚଂତି, ଜାକୋବି ସାହେବ ସେଇ ଗ୍ରଂଥ ବା ଗ୍ରଂଥମାଳାରେ ଜୈନମାନଂକର ଦୁଇଟି ସୂତ୍ର ଅନୁବାଦ କରି ପ୍ରକାଶ କରିଚଂତି * । ସେ ଜୈନ ମୁଖବଂଧଟି କେବଳ ବିରାଟ ନୁହେ । ଏହା ଅତ୍ୟଂତ ଗବେଷଣା ତଥା ପାଂଡ଼ିତ୍ୟପୂର୍ଣ୍ଣ । ସେଥିରେ ସେ ପ୍ରମାଣ କରିଚଂତି, ଜୈନଧର୍ମ ବୌଦ୍ଧଧର୍ମଠାରୁ ପ୍ରାଚୀନତର । ଖାଲି ଯେ ଜୈନଂକ ଶେଷ ତୀର୍ଥଂକର ମହାବୀର, ଶାକ୍ୟମୁନି ବୁଦ୍ଧଂକଠାରୁ କେତେକ ବର୍ଷ ମାତ୍ର ବଡ଼ । ସେତିକି ନୁହେ, ସେଇ ମହାବୀରଙ୍କ ଅଢ଼େଇଶହ ବର୍ଷ ପୂର୍ବରୁ ଅର୍ଥାତ୍ ତ୍ରୟୋବିଂଶ ତୀର୍ଥଂକର ପାର୍ଶ୍ୱନାଥଂକ କାଳବେଳକୁ ଜୈନଧର୍ମ ଏ ଦେଶରେ ପ୍ରତିଷ୍ଠିତ ଥିଲା ।

---

* Sacred Books of the East Vol. XXII & XLV

## ଯଥାର୍ଥରେ ଜୈନଧର୍ମ ବୌଦ୍ଧଧର୍ମରୁ ପ୍ରାଚୀନ—

ସେଇଠାରୁ ପ୍ରାଚ୍ୟ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କର ସ୍ୱର ଏ ସମ୍ପର୍କରେ ବରାବର ବଦଳିଗଲା ।

ଆଜିଯାଏ ତାହାହିଁ ଚାଲିଛି । ସମସ୍ତେ ଜାଣନ୍ତି ଜୈନଧର୍ମ ଆଗ ଥିଲା । ତା ପରେ ବୌଦ୍ଧଧର୍ମ ପ୍ରତିଷ୍ଠିତ ହେଲା । ଏତିକି ଛଡ଼ା ଆଉ ଦୂରକୁ ଯିବାକୁ ଆମ ପଣ୍ଡିତ ସାହସ କରିବାର ମୁଁ ଦେଖିନାହିଁ । ମାତ୍ର ବସ୍ତୁତଃ କଥାଟି ଏତିକି ନୁହେଁ ।

## ବୌଦ୍ଧଧର୍ମ ଜୈନଧର୍ମର ଗୋଟିଏ ସଂସ୍କୃତ ସଂସ୍କରଣ ମାତ୍ର—

କଥାଟି ହେଉଛି, ଜୈନଧର୍ମ ଓ ବୌଦ୍ଧଧର୍ମ ଏ ଦୁହିଁଙ୍କ ମଧ୍ୟରେ ବିଶେଷ କିଛି ପ୍ରଭେଦ ନାହିଁ । ବୌଦ୍ଧଧର୍ମଟି ଜୈନଧର୍ମର ଗୋଟିଏ ବିଶେଷ ସଂସ୍କାର (Reform) । ଐତିହାସିକ ଭାବରେ ଜୈନଧର୍ମ ହେଉଛି ଭାରତର ଯଥାର୍ଥ ଧର୍ମ । ବୈଦିକ ଆର୍ଯ୍ୟମାନେ ଏ ଦେଶକୁ ଆସିବା ପୂର୍ବରୁ ଏ ଦେଶର ଅଧିବାସୀ ଦ୍ରାବିଡ଼-ମାନଙ୍କ ଭିତରେ ଜୈନଧର୍ମର ପ୍ରସାର ଓ ପ୍ରତିଷ୍ଠା ଅତ୍ୟନ୍ତ ଦୃଢ଼ ଥିଲା । ଏଇ ଜୈନଧର୍ମ ଛଡ଼ା ଏ ଦେଶର ସଂସ୍କୃତ ବା ସଂସ୍କୃତିସମ୍ପନ୍ନ ଦ୍ରାବିଡ଼ମାନଙ୍କ ଭିତରେ ଅନ୍ୟ ଧର୍ମ ନଥିଲା । ଅନ୍ତତଃ ଦାର୍ଶନିକ ଉନ୍ନତ ଧର୍ମ ଭାବରେ ଏଇ ଜୈନଧର୍ମ ପ୍ରତିଷ୍ଠିତ ଓ ପ୍ରଚଳିତ ଥିଲା ।

## ଜୈନଙ୍କ ସଙ୍ଗେ ଆର୍ଯ୍ୟ ସମ୍ପର୍କ—

ବୈଦିକ ଆର୍ଯ୍ୟମାନେ ଏ ଦେଶକୁ ଆସିଲେ, ଯାଗଯଜ୍ଞର ଘଟା ଘେନି । ଏଇ ଯାଗଯଜ୍ଞରେ ମଦ୍ୟ ମାଂସାଦିର ସ୍ରୋତ ଛୁଟିଲା । ସାଧାରଣ ମାନବ ବୈଦିକ ମଦ ମାଂସାଦି ଭୋଜନ ପ୍ରତି ଆକୃଷ୍ଟ ହେଲା, ଜୈନର ସଂଯମ ସାଧନାଦି ଅଭ୍ୟାସ ଆଡ଼କୁ ତଥା ଅହିଂସା ପ୍ରତି ସେତେ ଆକୃଷ୍ଟ ହେଲା ନାହିଁ । କ୍ରମେ ଏଇ ଯାଗଯଜ୍ଞ ସଙ୍ଗେ ବୈଦିକମାନଙ୍କ ଭିତରେ ଜାତିଭେଦର ପ୍ରଭାବ ବଢ଼ିଲା । ଶିଷ୍ଟ ଜୈନମାନେ ଦେଖିଲେ ସମାଜ ଭ୍ରଷ୍ଟ ହେଲା । ମନୁଷ୍ୟର ମନୁଷ୍ୟତା କ୍ରମେ ବିଭ୍ରଷ୍ଟ ହେବାକୁ ଗଲା ।

## ଏହି ସମ୍ପର୍କର ଫଳ—ଜୈନ ଆଚାରର ପ୍ରଭାବ—

କାଳକ୍ରମେ ଜୈନମାନଙ୍କ ଭିତରେ ଯେଉଁ ଚବିଶଟି ତୀର୍ଥଙ୍କର ବା ଶ୍ରେଷ୍ଠ ଧର୍ମୋପଦେଶକମାନଙ୍କ ଉପାଖ୍ୟାନ ବାହାରିଛି ତାହା ଯେପରି ଅଛି ଖୁବ୍ ସମ୍ଭବ ସେପରି ସତ୍ୟ ନୁହେଁ, ମାତ୍ର ସେ ଉପାଖ୍ୟାନଗୁଡ଼ିକ ତତ୍ତ୍ୱତଃ ବରାବର ଅସତ୍ୟ ଉପରେ ଗଢ଼ା ହୋଇନାହିଁ, ତଥାପି ପ୍ରାଚୀନକାଳରୁ ବୈଦିକ ଆର୍ଯ୍ୟମାନଙ୍କ ଏ ଖଣ୍ଡ ଦେଶୀ ସମାଜର ଧାରା ଦୁଇଟି ଦିଗରେ ବିକାଶ ଲଭିଥିଲା । ବୈଦିକ ଆର୍ଯ୍ୟମାନେ

ବଳଶାଳୀ ଓ ଯୁଦ୍ଧାଦରେ ପୁର ଓ ଜନପଦ ସବୁ ଅଧିକାର କରି ଆପଣାର କରିବାରେ କୁଶଳୀ ଥିଲେ । ସେମାନେ ଦେଶର ଅନୁନ୍ନତ ଏପରିକି ନରମାଂସଭୋଜୀ ଜନତାଙ୍କୁ ହଟାଇ ଦେଇ ନିଜର ଯଜ୍ଞ ବା ଯଜ୍ଞଭୂମି ପ୍ରସାର କରିବାର ପ୍ରମାଣ ବହୁତ ଅଛି । ସେଥିରେ ସଂସ୍କୃତିପନ୍ନ ଜୈନମାନଂକୁ ମଧ୍ୟ ସେମାନେ ପରାସ୍ତ କରିଥିଲେ । ଅନେକ ବୈଦିକ ଉପାଖ୍ୟାନରୁ ସେସବୁ ପ୍ରମାଣ ଖୁବ୍ ମିଳେ । ବୈଦିକ ଆର୍ଯ୍ୟ ବୀର ଇଂଦ୍ର ଆର୍ଯ୍ୟେତର ପ୍ରଧାନ ପୁରୁଷ ନମୁଚିଂକ ସଙ୍ଗେ ଯୁଦ୍ଧ କରିଥିବାର ଗୋଟିଏ ଉପାଖ୍ୟାନ ବେଦରେ ଅଛି । * ଏଇ ଶତ୍ରୁ ଷ୍ଠାନୀୟ ନମୁଂଚିକ ପରି ଆର୍ଯ୍ୟେତରମାନଂକ ଭିତରେ ସ୍ଥିତ ଥିଲା । ଦିନ ଶେଷରେ ଦୁଇ ଶତ୍ରୁ ଓ ଦୁଇ ପକ୍ଷର ଲୋକେ ସକାଳେ ପୁନରାୟ ଯୁଦ୍ଧକୁ ଯିବା ପୂର୍ବରୁ ରାତିରେ ବଂଧୁ ଭାବରେ ମିଳିତ ହେଉଥିଲେ । ଅତଏବ ସକାର ପରେ ନମୁଂଚ ଇଂଦ୍ରକୁ ଇଂଦ୍ର ଭୋଜ୍ୟ ସୁରାରେ ଅତ୍ୟଂତ ଆପ୍ୟାୟିତ କରିଥିଲେ । ଏପରିକି ସକାଳକୁ ଇଂଦ୍ର ମଦ ନିଶାରେ ବେହୋସ ହୋଇ ପଡ଼ିଥିବାର ଦେଖାଗଲା । ଇଂଦ୍ରଂକ ଲୋକେ ଅର୍ଥାତ୍ ଆର୍ଯ୍ୟମାନେ ଅଶ୍ୱିନୀକୁମାର ବୈଦ୍ୟଂକୁ ଡାକି ଆଣିଲେ । ଅଶ୍ୱିନୀକୁମାର ସରସ୍ୱତୀଂକ ସାହାଯ୍ୟରେ ଇଂଦ୍ରଂକୁ ଚେତା କରାଇଥିଲେ । ମନେହୁଏ ଏହାର ଅର୍ଥ ହେଉଚି, ବୈଦ୍ୟମାନେ ବେହୋସରେ ଥିବା ଇଂଦ୍ରଂକୁ ସରସ୍ୱତୀ ନଦୀରେ ବାରଂବାର ବୁଡ଼ାଇ ଚେତା କରାଇଥିଲେ ।

## ଆର୍ଯ୍ୟଂକ ବିଜୟ—

ଏଇପରି ବହୁ ଗଳ୍ପରୁ ବେଶ୍ ଅନୁମାନ କରିହୁଏ ଆର୍ଯ୍ୟେତର ଅର୍ଥାତ୍ ସେକାଳରେ ଭାରତ ଅଧିବାସୀ ଦ୍ରାବିଡ଼ମାନଂକ ଭିତରେ ଅତି ଉଚ୍ଚ ଚରିତ୍ର ଓ ସାମାଜିକ ଶିକ୍ଷାଚାରପରାୟଣ ବ୍ୟକ୍ତିମାନେ ଥିଲେ; ଇଂଦ୍ରଂକର ଗୋଟିଏ ନାମ ହେଉଚି ପୁରଂଦର । ପୁର ବୋଇଲେ ସୁଦୃଢ଼ ଦୁର୍ଗ । ଶତ୍ରୁମାନଂକର ସୁଦୃଢ଼ ଦୁର୍ଗ ଭେଦି କରି ପାରୁଥିଲେ ବୋଲି ତାଂକ ନାମ ପୁରଂଦର । ଏଇ ସୁଦୃଢ଼ ଦୁର୍ଗରେ ଥିବା ଶତ୍ରୁମାନେ ଅବଶ୍ୟ ଅତ୍ୟଂତ ଉଚ୍ଚ ଦରର ଲୋକ ଥିଲେ ସନ୍ଦେହ ନାହିଁ ।

## ଆର୍ଯ୍ୟମାନେ ବଳରେ ଜିଣିଲେ କିଂତୁ ସଂସ୍କୃତିରେ ପ୍ରଭାବିତ ହେଲେ—

ମାତ୍ର ଆର୍ଯ୍ୟମାନେ ଦ୍ରାବିଡ଼ମାନଂକୁ ଜିଣିକରି ତାଂକ ରାଜ୍ୟ କ୍ରମେ ଆପଣାର କରିବାରେ ଲାଗିଲେ । ପୃଥିବୀରେ ଅନ୍ୟତ୍ର ଯେପରି ଘଟିଚି ଏଇ ଭାରତରେ ମଧ୍ୟ ସେଇପରି ଘଟିଥିଲା । ଆର୍ଯ୍ୟମାନେ ଶାରୀରିକ ବଳରେ ଜିଣିଲେ ସତ, କିଂତୁ ଦ୍ରାବିଡ଼-ମାନଂକର ଆଧ୍ୟାତ୍ମିକ ତଥା ସାମାଜିକ ପ୍ରଭାବରେ ପଡ଼ିଗଲେ, ଏଇ ଦ୍ରାବିଡ଼ମାନଂକର

---

* ଋକ୍‌ବେଦ—୧୦ । ୧୩୧ ।

ଭିତରୁ ବଡ଼ ବଡ଼ ମନୀଷୀ ଓ ଦାର୍ଶନିକମାନେ । ନିଜେ ଆର୍ଯ୍ୟମାନଂକ ବେଦାଦି ଶାସ୍ତ୍ରରେ ହୁଏତ ନିଜେ ସେକାଳେ ମଂତ୍ରମାନ ଲେଖିଥିଲେ, ଋକ୍‌ବେଦର ପୁରୁଷ ସୂକ୍ତ, ନାସଦୀସ୍ନ ସୂକ୍ତ ପ୍ରଭୃତି ଅନାର୍ଯ୍ୟ ମନୀଷୀମାନଂକର ପ୍ରଭାବ ବା ଲେଖନୀର ଫଳ ବୋଲି ମନେହୁଏ, ତା ଛଡ଼ା ଉପନିଷଦ ସବୁ ଅରଣ୍ୟରେ ଯେଉଁ ଋଷିମାନେ ସବୁ ଲେଖିଥିଲେ ସେମାନେ ସମ୍ପୂର୍ଣ୍ଣରୂପେ ଜୈନ ଦ୍ରାବିଡ଼ମାନଂକ ଦ୍ୱାରା ପ୍ରଭାବିତ । ହୁଏତ ଅନେକ ସ୍ଥଳରେ ଏଇ ଉପନିଷଦକାର ଋଷି ଓ ଅଂତେବାସୀମାନେ ମୂଳତଃ ଦ୍ରାବିଡ଼ ଛଡ଼ା ଅନ୍ୟ କିଛି ନୁହଂତି ।

## ସେଇ କଥାର ନିଦର୍ଶନ ଓ ଆଧୁନିକ ଉଦାହରଣ—

ମୁଁ ଅନ୍ୟତ୍ର କହିଚି କୃଷ୍ଣ, ଅର୍ଜୁନ ( ଅର୍ଜୁନଂକର ଅନ୍ୟ ନାମ କୃଷ୍ଣ ), କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ, କୃଷ୍ଣା (ଦ୍ରୌପଦୀ) ପ୍ରଭୃତି ନାମ ସବୁ ଶୁଭ୍ର ଚର୍ମା ଆର୍ଯ୍ୟ-ମାନଂକର ନାମ ବୋଲି ମନେ ହେଉନାଇ । ଏଇ ଜୈନ ଦ୍ରାବିଡ଼ମାନେ କ୍ରମେ ନିଜକୁ ବିଜେତା ଆର୍ଯ୍ୟ ବୋଲି ପରିଚୟ ଦେଲେ, ଏହା ମଧ୍ୟ ପୃଥିବୀରେ ସ୍ୱାଭାବିକ ବସ୍ତୁ, ଅନ୍ୟତ୍ର ମଧ୍ୟ ଏହା ଦେଖାଯାଏ । ବଂଗଳାର ମନୀଷୀ ସ୍ୱର୍ଗତ ଅରବିଂଦ ଘୋଷଂକ ପିତା ନିଜର ଗର୍ଭିଣୀ ପତ୍ନୀଂକୁ ଇଂଲଂଡ଼କୁ ପଠାଇ ଦେଇଥିଲେ । କାରଣ ସେ ଗର୍ଭରୁ ସନ୍ତାନ ବ୍ରିଟିଶ ଜାତ ପ୍ରଜା (British born subject) ହେବେ, ସେଇ ଗର୍ଭରୁ ସନ୍ତାନ ଅରବିଂଦଂକ ସାନଭାଇ ବାରୀଂଦ୍ରକୁମାର ଘୋଷ ଦେଶଭକ୍ତ ସ୍ୱାଧୀନତା ସଂଗ୍ରାମର ହେଉଚଂତି ଜଣେ ଆଦିମ ଓ ପ୍ରସିଦ୍ଧ ବୀର ପୁରୁଷ । ସେଇ ବାରୀଂଦ୍ର ମାନିକତୋଳାଠାରେ ଇଂରେଜମାନଂକ ବିରୁଦ୍ଧରେ ବିଷ୍ଫୋଟ ବୋମା କାରଖାନା ଲୁଚାଇ କରି ତିଆରି କରୁଥିଲେ । ୧୯୦୭-୮ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସେ ଧରା ହୋଇ ଜେଲ ଗଲେ ଓ ସେଇ ଜେଲରୁ ଜଜଂକ ଆଗକୁ ଅଣାଗଲେ, ସେତେବେଳେ ଇଂରେଜ ଜାତ ପ୍ରଜାଂକ ପରି (ପରାଧୀନ ଭାରତ ଜାତ ପ୍ରଜା ନୁହଂତି), ତାଂକର ବିଚାର କରିବାର ବ୍ୟବସ୍ଥା କରିବା ପାଇଁ ଜଜ କହିଲେ, ସେତେବେଳେ ସେ ଦୃଢ଼ ଭାବରେ ନିଜ ଜନ୍ମ ପ୍ରସଂଗରେ କୌଣସି ପ୍ରକାର ବିଜେତା ଇଂରେଜମାନଂକ ସଂପର୍କ ଥିବା କଥା ପ୍ରତି ଅତ୍ୟଂତ ଘୃଣା ପ୍ରକାଶ କରି ସେ ଘଟଣାରେ ସମସ୍ତ ସୁବିଧା ( ସେ ସୁବିଧା କିଛି କମ ନୁହେ । ଭାରତୀୟ ହେଲେ ପ୍ରାଣଦଂଡ଼ ହୋଇପାରେ, କିଂତୁ ଇଂରେଜ ହେଲେ ତା ହେବ ନାଇ ), ଗାରଦର୍ପରେ ପ୍ରତ୍ୟାଖ୍ୟାନ କରିଥିଲେ ।

## ବୁଦ୍ଧଂକ ମଧ୍ୟ ପଂଥା—

ଏଇଠାରେ ବୁଦ୍ଧଂକ ମଧ୍ୟପଂଥାଟି ଦେଖିବାର ଦରକାର । ରକ୍ଷଣଶୀଳ ଜୈନଂକ ଅତି କଠୋର ଧର୍ମାଚରଣ ଏଇପରି କ୍ରମେ ଏକ ଦିଗରେ ଆର୍ଯ୍ୟମାନଂକ ପ୍ରଭାବରେ

ତଥା କାଳଗତର ପ୍ରଭାବରେ କ୍ରମେ ଶିଥିଳ ହୋଇ ଆସିଲା । ସେଥିରେ ଦୁଇଟି ଧାରା ସ୍ପଷ୍ଟ ହେଲା । (୧) ଗୋଟିଏ କୃଚ୍ଛ୍ର ସାଧନା, (୨) ଅନ୍ୟଟି ଭୋଗରେ ମାତ୍ର ସିଦ୍ଧ ହେବାକୁ ଯିବା । ପ୍ରାଚୀନକାଳରେ ଏଇ ପନ୍ଥା ବଭେଦର ବହୁତ ପ୍ରମାଣ ମିଳେ । ଏହା ଜୈନର ଶେଷକାଳ । ଏତକବେଳେ ବୁଦ୍ଧ ବାହାରିଲେ ନିଜର ମଧ୍ୟପନ୍ଥା ପ୍ରଚାର କରିବାକୁ । ଏଇ ମଧ୍ୟ ପନ୍ଥାର ନାମ ହେଉଛି, ବୁଦ୍ଧଙ୍କ କଥାରେ ଆର୍ଯ୍ୟ ପନ୍ଥା । ରେଭରେଣ୍ଡ ହେରାସ୍ ଏବେ ପ୍ରାଚୀନ ତାମିଲ ଭାଷା ଅନୁସନ୍ଧାନ କରି ସ୍ଥିର କରିଚନ୍ତି, ଏଇ ଆର୍ଯ୍ୟ ଅର୍ଥ ନୁହେ ରକ୍ତରେ ବା ମାଂସରେ ଆର୍ଯ୍ୟ । ଏହା ପ୍ରାଚୀନ ଦ୍ରାବିଡ଼ରେ ଅରିଅ (rare) ବା ଲକ୍ଷକେ ଜଣଙ୍କର ପନ୍ଥା । ଏଇପରି ବୌଦ୍ଧ ନାମରେ ହେଉ ବା ଜୈନ ନାମରେ ହେଉ, ଏଇ ଉତ୍କଳ ବା କଳିଙ୍ଗର ସଂସ୍କୃତି ବରାବର ପରଂପରାକ୍ରମେ ଜୈନ ସଂସ୍କୃତି ଥିଲା । ଏଇ ଜୈନ ସଂସ୍କୃତି ବୁଦ୍ଧଦେବଙ୍କ ପରେ ଟିକିଏ ଅଶୋକଙ୍କ କଳିଙ୍ଗ ଯୁଦ୍ଧରେ ଭିନ୍ନ ପ୍ରକାର ହୋଇ ଯାଇଥିଲା । ତଥାପି ବୁଦ୍ଧଙ୍କ ମଧ୍ୟ ପନ୍ଥା ଧରି ସମ୍ଭବତଃ ମହାଯାନ ନାମରେ କଳିଙ୍ଗର ସଂସ୍କୃତି ଉତ୍ତର ଭାରତ ପାଖ ଦକ୍ଷିଣ ଭାରତରେ ବରାବର ପ୍ରତର୍ଷିତ ଥିଲା । ଏଠାରେ ସଂସ୍କୃତିକୁ ଟିକିଏ ଭଲକରି ଦେଖି ବୁଝି ରଖିବା ଉଚିତ । କଳିଙ୍ଗଟି ଥିଲା ଯାଜପୁର ଠାରୁ ପୂର୍ବ ପାରଲାଖେମୁଣ୍ଡିର ବଂଶଧାରା ନଦୀ କୂଳରେ ମୁଖଲିଙ୍ଗ ସହିତ । ଦାକ୍ଷିଣାତ୍ୟର ଜୈନ ସଂସ୍କୃତି ସଙ୍ଗେ ଏହା ସାମିଲ ଥିଲା । ସେଇଠାରୁ ୧୪ଶ ଶତାବ୍ଦୀରେ ଶେଷ କବି ସାରଳାଦାସ ବାହାରିଥିଲେ । ସାରଳାଦାସଙ୍କର ସଂଶୋଧିତ ଗ୍ରନ୍ଥ ଏବେ ବି ପ୍ରକାଶ ପାଇନାଇ । ତଥାପି ପୂର୍ବେ ପୁରୀର ପ୍ରକାଶିକା ସମିତିରୁ ଯାହା ପ୍ରକାଶ ପାଇଥିଲା, ସେଥିରୁ ଜଣାଯାଏ, ସାରଳାଦାସ ଜୈନପ୍ରଭାବରେ ବରାବର ଓତପ୍ରୋତ ଭାବରେ ଜଡ଼ିତ ଥିଲେ । ସାରଳାଦାସଙ୍କ ପୁନର୍ଜନ୍ମ ପ୍ରଭୃତି ଯେପରି ବିଶଦ ଭାବରେ ସାରଳା ମହାଭାରତରେ ବର୍ଣ୍ଣିତ ରହିଅଛି, ମୂଳ ମହାଭାରତ ପର୍ଯ୍ୟନ୍ତ ତାହାର ପଟାନ୍ତର ନାଇ । ଏପରି ସାହିତ୍ୟ ଭାରତର ଅନ୍ୟ କୌଣସି ଅଂଚଳରେ ଆଉ ପ୍ରାୟ ଦେଖାଯାଏ ନାଇ ।

## ଇନ୍ଦ୍ରଭୂତିଙ୍କ ଜ୍ଞାନସିଦ୍ଧି—

ଜଗନ୍ନାଥ ଠିକ୍ କରୁଚି ଜୈନଦେବ ନୁହନ୍ତି । ତଥାପି ଜୈନମାନଙ୍କ ପ୍ରଭାବରେ ଉଡ୍ଡିୟାନରେ ଥିବା ଜଗନ୍ନାଥ ୮ମ ଶତାବ୍ଦୀର ପ୍ରଥମଭାଗ ପର୍ଯ୍ୟନ୍ତ ସେକାଳ ସମ୍ବଲପୁରର ରାଜା ଇନ୍ଦ୍ରଭୂତିଙ୍କ ଲେଖାରେ ନିମ୍ନଲିଖିତରୂପେ ବର୍ଣ୍ଣିତ ହୋଇଚନ୍ତି । କୁହାଯାଇଚି ଇନ୍ଦ୍ରଭୂତି ସେଇ ଜଗନ୍ନାଥଙ୍କୁ ପ୍ରଣିପାତ କରି ତାଙ୍କ 'ଜ୍ଞାନସିଦ୍ଧି' ପୁସ୍ତକ ଆରମ୍ଭ କରିଚନ୍ତି—

"ପ୍ରଣିପତ୍ୟ ଜଗନ୍ନାଥଂ
ସର୍ବଜିନ ବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧି—
ବ୍ୟାପିନୋ ଗଗନୋପମମ୍ ।" *

ଏଠାରେ ଇଂଦ୍ରଭୂତି ଉଡ୍‌ଡ୍ଡିୟାନର ଜଗନ୍ନାଥଂକୁ ସର୍ବଜିନ ବରାର୍ଚ୍ଚିତ, ସର୍ବବୁଦ୍ଧମୟଂ ସିଦ୍ଧିରେ ବ୍ୟାପି ଓ ଗଗନପରି ଶୂନ୍ୟ ବୋଲି କହୁଛଂନ୍ତି । ଜଗନ୍ନାଥଂକୁ ଯେତେ ଶୂନ ବୋଲି କଳ୍ପନା କଲେ ମଧ୍ୟ ସେସବୁ ପ୍ରସିଦ୍ଧଜିନଂକ ଦ୍ୱାରା ଅର୍ଚ୍ଚିତ, ବୁଦ୍ଧଂକପରି ବୋଲି କହିବାର ଖୁବ୍ ଉଲ୍ଲେଖଯୋଗ୍ୟ । ଜୈନ ଓ ବୌଦ୍ଧ ପ୍ରତିଷ୍ଠା ପ୍ରକାଶ ପାଉଚି । ଉଡ୍‌ଡ୍ଡିୟାନର ଜଗନ୍ନାଥ ୧୦୭୭ ଖ୍ରୀଷ୍ଟାବ୍ଦ ପୂର୍ବରୁ ଓଡ଼ିଶାର ଜିନାସନପୀଠକୁ ଆସିନାହାଂନ୍ତି । କିଂତୁ ତଥାପି ଶୂନ୍ୟରୂପ ଜଗନ୍ନାଥ ମଧ୍ୟ ସର୍ବଜିନ ବରାର୍ଚ୍ଚିତ ଅଥଚ ସର୍ବବୁଦ୍ଧମୟ ବୋଲି ବର୍ଣ୍ଣନା କରାଯାଇଚଂନ୍ତି । ଖ୍ରୀଷ୍ଟ ୧୧ଶ ଶତାବ୍ଦୀବେଳକୁ ମଧ୍ୟ ଏଇ ଜଗନ୍ନାଥ ଜିନଙ୍କ ସଙ୍ଗେ ସମାନ ବୋଲି ପ୍ରତିଷ୍ଠିତ ମତ ଥିଲା । ଏହାଇ ଓଡ଼ିଶାର ସଂସ୍କୃତି । ଉଡଡ୍ଡିୟାନ ସଙ୍ଗେ କଳିଂଗର ଏଇ ସଂସ୍କୃତି ସମ୍ମିଳନରୁ ପରେ ନୂତନ ଓଡ଼ିଶା ନିର୍ମିତ ହେଲା । ଅନୁମାନ ହୁଏ ବସ୍ତୁତଃ ସେତେବେଳର ଜଗନ୍ନାଥ ନାମତଃ ଜଗନ୍ନାଥ ହେଲେ ମଧ୍ୟ ଚୋଡ଼ଗଂଗ ଦେବ ତାଂକୁ ପୁରୀକୁ ଆଣିବା ପୂର୍ବରୁ ସେ ଓଡ଼ିଶାରେ ନ ଥିଲେ ।

---

* ଜ୍ଞାନସିଦ୍ଧି, ଅଧ୍ୟାୟ ୧, ଶ୍ଳୋକ ୧ ।

# ଟିପ୍ପଣୀ

ଏଇଠାରେ ବିଷୟଟିକୁ ଭଲକରି ବୁଝାଇ ଦେବାରେ ସାହାଯ୍ୟ କରିବା ନିମଂତେ କେତେଗୁଡ଼ିଏ ଟିପ୍ପଣୀର ଆବଶ୍ୟକତା ମନେ କରାଯାଉଚି । ସେଇ ଟିପ୍ପଣୀଗୁଡ଼ିକ ତଳେ ଦିଆଗଲା ।

## (୧) ନାରାୟଣ—

ନାରାୟଣ କଥାଟି ଏ ଦେଶରେ ସୁପରିଚିତ । ନାରାୟଣ ଶବ୍ଦଟିର ଅର୍ଥ ଯେ ଜଳରେ ଥାଆଂତି । ଏଇ ସଂପର୍କରେ ଏବେ ଜଣାଯାଉଚି, ସୁମେରୁର ମତ୍ସ୍ୟରୂପେ ଈଶ୍ୱରଂକୁ ଲକ୍ଷ୍ୟ କରାଯାଇଚି । ଆମ ସାହିତ୍ୟରେ ମଧ୍ୟ ଅଛି, ନରନାରାୟଣ ରିଷି ବଦରିକା ଆଶ୍ରମରେ ନାରଦଂକୁ କହିବାମତେ ନାରଦ ଉତ୍ତର-ପଶ୍ଚିମ ଆଡ଼କୁ ସେଇ ନରନାରାୟଣଂକ ତପସ୍ୟା ଦେଖିବା ନିମନ୍ତେ ଯାଇଥିଲେ । ସେଇ ଉତ୍ତର-ପଶ୍ଚିମ ଭୂମିଟି ହେଉଚି, 'ଶାକଦ୍ୱୀପ' । ତାହା ଏବର ପାରସ୍ୟ । ସେଇ ଶାକଦ୍ୱୀପରେ ସେ ଜୈନଯୋଗୀମାନଂକୁ ଦେଖିଚଂତି । ଅନୁମାନ ହୁଏ, ସୁମେରୁର ଇୟା ବା ଇୟା-ହେନ (ଇୟା-ପୁଅ) ବା ମୀନର ପ୍ରଭାବ ସେତେବେଳକୁ ପାରସ୍ୟରେ ବ୍ୟାପ୍ତ ହୋଇଥିଲା । ତା' ନ ହେଲେ ଆମ ହିଂଦୁଂକ ମଧ୍ୟରେ ଯେତେ ପ୍ରଚଳିତ ହେଲେ ମଧ୍ୟ ନାରାୟଣର ଅନ୍ୟ ସଂକେତ ନାଇ । ଏଇ ନାରାୟଣଂକୁ କୃଷ୍ଣଂକଠାରୁ ଜଗନ୍ନାଥ ପର୍ଯ୍ୟଂତ ସମସ୍ତ ଦେବରୂପ ଆମ ହିଂଦୁଂକ ପୂର୍ବପୁରୁଷମାନେ ଦେଖି ଆସିଚଂତି । ଆମ ପଂଚଦେବତା ପୂଜା ଭିତରେ ଅଛି—

"ଗଣେ ନାରାୟଣେ ରୁଦ୍ରେ ଅଂବିକେ ଭାସ୍କରେ ତଥା" ଏହା ଆମ ହିଂଦୁଂକର ନିତ୍ୟ ଉପାସ୍ୟ ।

ମହାଭାରତରେ ଏଇ ନାରାୟଣଂକ କଥା ବହୁତ ଅଛି । ସେ ସବୁ ବୌଦ୍ଧଧର୍ମ ଠାରୁ ଏପରିକି ଗୀତାଠାରୁ ଅର୍ବାଚୀନ ଲେଖା । ସେଥିରେ ଗୀତା ଧର୍ମକୁ ବର୍ଣ୍ଣନା କରି କୁହାଯାଇଚି—

"ନାରଦେନ ତୁ ସଂପ୍ରାପ୍ତଃ ସ ରହସ୍ୟଃ ସସଂଗ୍ରହଃ
ଏସଧର୍ମୋ ଜଗନ୍ନାଥାତ୍ ସାକ୍ଷାତ୍ ନାରାୟଣୋ ନୃପ ।
ଏବମେଷ ମହାନ୍‌ଧର୍ମଃ ସତେ ପୂର୍ବଂ ନୃପୋତ୍ତମ
କଥିତୋ ହରିଗୀତାସୁ ସମାସବିଧିକଳ୍ପିତଃ ।"

ବୈଶଂପାୟନ କହୁଚଂନ୍ତି—"ଏଇ ଧର୍ମ ସାକ୍ଷାତ ନାରାୟଣ ଜଗନ୍ନାଥଂକଠାରୁ ସମସ୍ତ ରହସ୍ୟ ଓ ସଂଗ୍ରହ ସହିତ ନାରଦ ପ୍ରାପ୍ତ ହୋଇଥିଲେ । ସେଇ ମହାନ୍ ଧର୍ମଇ ତୁମକୁ ପୂର୍ବେ ଭଗବଦ୍ ଗୀତାରେ ସମାସ ଓ ବିଧି ସହ କହିଚ ।

ଏହା ଅଛୁ, ଶାଂନ୍ତିପର୍ବ ଶେଷକୁ ନାରାୟଣ ଉପାଖ୍ୟାନରେ । ସେଥିରେ 'ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ—ଏ ଚାରୋଟି ନାମ ଖୁବ ବିଶଦଭାବରେ ବିଷ୍ଣୁଂକର ଚତୁର୍ଧାରୂପ ବୋଲି କୁହାଯାଇଚ ଓ ପୁରୁଷ, ପୁରୁଷୋତ୍ତମ ପ୍ରଭୃତି ଜଗନ୍ନାଥପରି ବାରଂବାର ବିଷ୍ଣୁଂକ ନାମରେ ବ୍ୟବହାର କରାଯାଇଚ । ଅତଏବ, ଏଇ ଶାଂନ୍ତିପର୍ବ ପ୍ରଭୃତି ଲେଖାରେ କୌଣସି ମୌଳିକତା ନାଇ । ଏଥିରେ ନାରାୟଣ ମଧ୍ୟ ବାରଂବାର ଅଛୁ । ଏସବୁ ନାରଦ ପାରସ୍ୟରୁ ଆଣି ପ୍ରଚାର କରିବାର ସ୍ପଷ୍ଟ ଅଛୁ । ତାଂ'ଛଡ଼ା ଉତ୍ତର ଭାରତରେ ଏପରି ଜଳରେ ଥିବା ଭଗବାନ୍ ଆଉ କୁତ୍ରାପି ନାହାଂନ୍ତି କେବଳ ମୀନର ଅନୁକରଣରେ 'ମନୁ ଉପାଖ୍ୟାନ'ଟି ବେଳେବେଳେ ଉତ୍ତର ଭାରତୀୟ ରୂପେ ଦେଖିବାକୁ ମିଳେ । ତା' ମଧ୍ୟ ଭାରତରେ ମୌଳିକ ନୁହେ ।

ଏଥିରୁ ଜଣାଯାଇଚ, ଏଇ ଜଗନ୍ନାଥଂକୁ ନାରାୟଣ ବୋଲି କହିଲେ ମଧ୍ୟ, ସେ ନିଜେ ନାରାୟଣ ନୁହଂନ୍ତି । ପୁଣି ଏ ମହାଭାରତ କୃଷ୍ଣଂକଠାରୁ ବହୁତ ଅର୍ବାଚୀନ ଭାବରେ ଏଠାରେ ବ୍ୟବହାର କରାଯାଇଚଂନ୍ତି । ମହାଭାରତର ଏଇ ନାରାୟଣ ସୁମେରରେ ଇୟାଂକ ଠାରୁ ଭାରତକୁ ଆସିଥିଲେ ବୋଲି ଅନୁମିତ ହୁଏ । ଏଇ ଇୟା ବା ଇୟା-ପୁଅ(ଗ୍ରୀକରେ ହେଉଚଂନ୍ତି ଇୟାପୁଅ (Ja-hen)-ଓ୍ୟାନସ୍ (ମୀନ) ଏଇ ମୀନ ମଧ୍ୟ ଦ୍ରାବିଡ଼ର ଆଦିପୁରୁଷ । ଏ ପାରସ୍ୟ ଉପସାଗରକୁ ଆସି ସେଠାରୁ ଭୂମିକୁ ଉଠି ସୁମେର ଲୋକଂକୁ ସଭ୍ୟତା ଶିଖାଇଥିଲେ । ପୂର୍ବେ ରାମୋଜନ୍ ପ୍ରଭୃତି ପଂଡ଼ିତମାନେ ଏହାଂକୁ ଚୀନ ପ୍ରଭୃତି ଆଡ଼ୁ ସୁମେରକୁ ଆସୁଥିଲେ ବୋଲି ବାଇବେଲ Old Testament ଗଳ୍ପ-ମାନଂକୁ ଧରି ଅର୍ଥ କରିଥିଲେ । କିଂତୁ ଏବେ Dr. Hall ଏହାଂକୁ ଦକ୍ଷିଣ ଭାରତୀୟ ବୋଲି ଓ ସମୁଦ୍ରରେ ଆସିଥିଲେ ବୋଲି ବହୁତ ପ୍ରମାଣ ପାଇଅଛଂନ୍ତି । ସେଇସବୁ ପ୍ରମାଣ ହଲଂକ The Ancient History of the Near East 7th Edition— PP. 172-178 ପ୍ରଭୃତିର Footnoteରେ ରହିଚ ।

ସେଇ ସୂତ୍ରରେ ସୂକ୍ତ ମଧ୍ୟ ଏ ଦେଶର ବେଦକୁ ଆସିଚଂନ୍ତି ଓ ଅନ୍ୟାନ୍ୟ ଇଂଦ୍ର, ମିତ୍ର ପ୍ରଭୃତି ବୈଦିକ Indo-Aryan (ଇଂଡ଼ୋ ଏରିଆନ୍) ଦେବତା ମାନେ ମଧ୍ୟ ଭାରତରେ ପ୍ରଚାରିତ ହୋଇଚଂନ୍ତି ।

**କୃଷ୍ଣ (୧) —**

କୃଷ୍ଣ ହେଉଚଂନ୍ତି ଗୀତାର ପ୍ରଧାନ ପୁରୁଷ । କୃଷ୍ଣ କେଉଁଠାରୁ ବାହାରିଲେ ତାହା ଏବେ ଜାଣିବା ସଂଭବ ନୁହେ । ବେଦରେ ବହୁସ୍ଥଳରେ କୃଷ୍ଣ କଥାଟି

କୁହାଯାଇଚ । ଜଣେ ଅନାର୍ଯ୍ୟ ପୁରୁଷ କୃଷ୍ଣ ଅଂଶୁମତୀ (ଯମୁନା) କୂଳରେ ଦଶୋଟି ଇଂଦ୍ର ପୂଜକ ରାଜାଂକ ଦ୍ୱାରା ପରାସ୍ତ ହୋଇଥିବା କଥା କୁହାଯାଇଚ । ଏହାବାଦ 'ଛାଂଦୋଗ୍ୟ ଉପନିଷଦ'ରେ ଅଛୁ, ଜଣେ ଦେବକୀ 'ପୁତ୍ର କୃଷ୍ଣ 'ଘୋର ଅଂଗୀରସଂକ ପାଖେ ଯଜ୍ଞତତ୍ତ୍ୱ ପଢ଼ୁଥିଲେ । ତା'ବାଦ ଆହୁରି ଅନେକ କୃଷ୍ଣ ବେଦରେ ଅଛଂତି । ଏପରିକି ଜଣେ କୃଷ୍ଣ ବେଦର କୌଣସି ମଂତ୍ର ମଧ୍ୟ ଲେଖିଚଂତି । କିଂତୁ ମନେହୁଏ, ଏଇ ଇଂଦ୍ରବିରୋଧୀ କୃଷ୍ଣ ବା ଦେବକୀପୁତ୍ର କୃଷ୍ଣ ବଡ଼ ପ୍ରଧାନ ପୁରୁଷ ଥିଲେ । ସେ ଥିଲେ ଆର୍ଯ୍ୟେତର । ସେ ଗୀତାର ୪ର୍ଥ ଅଧ୍ୟାୟରେ ଯେଉଁ ଯଜ୍ଞତତ୍ତ୍ୱ ଅଛୁ, ସେଇଭଳି ଯଜ୍ଞତତ୍ତ୍ୱ ଘୋର ଅଂଗୀରସଂକଠାରୁ ଶିକ୍ଷା କରିଥିବାର ଅନୁମିତ ହୁଏ । ସେଇ କୃଷ୍ଣ ଜଣେ ମହାପୁରୁଷ ରୂପେ ଭାରତରେ ଖ୍ୟାତି ଲଭିଥିଲେ । ଜଣେ କୃଷ୍ଣ ଦଶୋଟି ଇଂଦ୍ରପୂଜକ ରାଜାଂକ ଦ୍ୱାରା ପରାସ୍ତ ହୋଇଥିଲେ ସତ, କିଂତୁ ସେପରି କୃଷ୍ଣଂକ ପ୍ରତିପତ୍ତି ଭାରତରେ ଖୁବ୍ ଥିଲା । ସେଇ କୃଷ୍ଣଂକୁ ଧରି ଗୀତା ଲେଖାଯାଇଚ ।

## କୃଷ୍ଣ (୨)—

ଏହା ପରେ ଗୀତା ଲେଖା ହେବାର ପ୍ରାୟ ୧୩୦୦ ବର୍ଷ ପରେ R. D. Vandarkar ଆଉ ଜଣେ କୃଷ୍ଣଂକୁ ଭାରତ ସାହିତ୍ୟରୁ ବାହାର କଲେ । ସେ ହେଉଚଂତି ତାମିଲ ଦେଶର କୃଷ୍ଣ । ପ୍ରାୟ ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀବେଳକୁ କିଂବା ତା ପୂର୍ବରୁ—ତାମିଲ ଗଉଡ଼୍ଣୀ ଟୋକୀ ଆମ ରାସଯାତ୍ରା ପରି ଗୋଟିଏ 'ହାଲ୍ଲୀସକ' (ଏବର ରାସଯାତ୍ରା ପରି) ନୃତ୍ୟ ବର୍ଷକୁ ବର୍ଷ କରୁଥିଲେ । ସେଇ କୃଷ୍ଣଂକୁ ଧରି କାଳକ୍ରମେ ଗଉଡ଼ ଟୋକା ଟୋକୀଂକର ନୃତ୍ୟ ହେଉଥିଲା । ସେଥିରୁ ପରେ କୃଷ୍ଣ ଓ ଗୋପୀଂକ ନୃତ୍ୟ ବାହାରିଥିଲା । ସେଇ ନୃତ୍ୟ ହେଉଚ, ଭାଗବତ ଦଶମ ଅଧ୍ୟାୟରେ ବର୍ଣ୍ଣିତ ହୋଇଥିବା ଗୋପୀଂକ କୃଷ୍ଣ । ସେଇଠାରୁ ଭାଗବତ କାବ୍ୟ ବୋପଦେବ (ତାମିଲ ରାଜସଭା ପଂଡ଼ିତ) ଲେଖିଥିଲେ । ତାହା ବ୍ୟାସଂକ ନାମରେ ପ୍ରଚାରିତ ହୋଇଥିଲେ ମଧ୍ୟ ମହାଭାରତରେ ସେଥିର ଯଥାର୍ଥ ସ୍ଥାନ ନାଇ ।

ସେଇ କୃଷ୍ଣରୁ କାଳକ୍ରମେ ତେଲୁଗୁ ଦେଶର ରାଧାକୃଷ୍ଣ ଲୀଳା ବାହାରି ବୃଂଦାବନବାଟେ ଏ ଦେଶ ସାହିତ୍ୟରେ ଖୁବ୍ ପଶିଗଲା । ଏବେ ମଧ୍ୟ ଲୋକେ ଗୀତା ଆଲୋଚନା କରିବା ପର୍ଯ୍ୟଂତ ଦୁଇ କୃଷ୍ଣଂକୁ ଏକ ବୋଲି ବିଚାରଂତି ।

## ଜଗନ୍ନାଥ—

ଜଗନ୍ନାଥ ବ୍ୟବହାରରେ ଅର୍ବାଚୀନ ହେଲେ ମଧ୍ୟ ସେ ଉଡ଼୍ଡ଼ିୟାନରୁ ଓଡ଼ଶାକୁ ଆସିଥିଲେ ଖ୍ରୀଷ୍ଟ ୧୧୦୦ ଶତାବ୍ଦୀରେ (ମହାଭାରତରେ ବିଶେଷତଃ ଶାଂତିପର୍ବରେ ଖୁବ୍ ପ୍ରତିଷ୍ଠା ପାଇଚଂତି ଉପରେ କୁହାଯାଇଚ । ) କିଂତୁ ଯଥାର୍ଥରେ ସେ ଖୁବ୍ ପ୍ରାଚୀନ ହେଲେ ମଧ୍ୟ ଜୈନଯୁଗର ନୁହଂତି । ପୂର୍ବେ "କେନୋପନିଷଦ"

ଖଣ୍ଡରେ ଥିବା ହୈମବତୀ ଉମାଂକ କଥା କୁହାଯାଇଚ । ସେତେବେଳୁ ଏ ନାରୀମୂର୍ତ୍ତି ବୌଦ୍ଧମାନଂକର ଆଦ୍ୟ ଦେବୀରୂପେ ପ୍ରକାଶ ପାଇଥିଲେ । ବୋଧହୁଏ, ବୃଂଦାବନ ଅଂଚଳରେ ଏ ପ୍ରଥମେ ପ୍ରକାଶ ପାଇଥିଲେ । କାଳକ୍ରମେ ହୁଏତ ସୁଭଦ୍ରା-ରୂପେ କିଂବା ଅନ୍ୟ କୌଣସି ରୂପରେ ମହାନଦୀ ଓ ଯୋଂକର ସଙ୍ଗମସ୍ଥଳୀରେ ଥିବା ସୌରନାରାୟଣ ଗ୍ରାମରେ ଜଗନ୍ନାଥ ରୂପେ ପ୍ରକାଶ ପାଇ ପରେ ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ରକୁ ୧୧ଶ ଶତାବ୍ଦୀରେ ଆସି ସେଠାରେ ପ୍ରତିଷ୍ଠା ଲଭିଥିଲେ ।

ଏଇ ଜଗନ୍ନାଥଂକ ସମ୍ପର୍କରେ ବିଶ୍ୱଦେବ ଶୂନ୍ୟରୁ ବାହାରିଥିଲା । ତା'ପୂର୍ବରୁ କୁହାଯାଇଚ । କିଂତୁ ସେଥିରେ ଗୀତାର କୌଣସି ସମ୍ପର୍କ ନ ଥିଲା । ସେଇ ସୂତ୍ରରେ କୁହାଯାଇପାରେ, ଗୀତାର ସମ୍ପର୍କ ଥିଲା, ପୁରୁଷୋତ୍ତମ ସଙ୍ଗେ ।

## ପୁରୁଷୋତ୍ତମ—

ଏଇ ପୁରୁଷୋତ୍ତମ କଥାଟି ବଡ଼ ପ୍ରାଚୀନ । ଗୀତାର କାଳ ହେଉଚ, ଅଂତତଃ ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ । ସେଇ ଗୀତାରେ ମଧ୍ୟ ୧୫ଶ ଅଧ୍ୟାୟଟି ଯେତେ ଦର୍ଶନଶସ୍ତ୍ରର ଆଲୋଚନାରେ ପୂର୍ଣ୍ଣ ହେଲେ ମଧ୍ୟ ସେଥିରେ ଅଛି—

"ଅତୋଽହଂ ଲୋକେ ବେଦେ ଚ ପ୍ରଥିତ ପୁରୁଷୋତ୍ତମ"

( ୧୫ଶ ଅଧ୍ୟାୟ, ୧୮ଶ ଶ୍ଳୋକ )

ଏଥିର ଅର୍ଥ ସ୍ପଷ୍ଟ ହେଉଛି ଯେ, ମୁଁ ଲୋକଉପାସନାରେ 'ପୁରୁଷୋତ୍ତମ' । ଏହା ଖ୍ରୀ: ପୂ: ୪ର୍ଥ ଶତାବ୍ଦୀବେଳକୁ ଭାରତରେ ପ୍ରତିଷ୍ଠିତ ହୋଇଥିଲା । ଏହା ଗୋଟିଏ ଜୈନର ପ୍ରତିଷ୍ଠିତ ଭାବ । ଏହାର ନାମ ପୁରୁଷ ବା ପୁରୁଷୋତ୍ତମ । ଏଇ 'ପୁରୁଷ' ଶବ୍ଦଟି ଦ୍ରାବିଡ଼ ସମ୍ପର୍କରେ ବେଦରେ ପଶିଥିବା କଥା କୁହାଯାଇଚ । କିଂତୁ ଏହାର ଜଗନ୍ନାଥ ମୂର୍ତ୍ତି ବା ମୂର୍ତ୍ତିମାନଂକ ସଙ୍ଗେ କୌଣସି ସମ୍ପର୍କ ନାଇ । ଖ୍ରୀଷ୍ଟ ୧୧ଶ ଶତାବ୍ଦୀରେ ଚୋଡ଼ଗଂଗଦେବ ଯେତେବେଳେ ଜଗନ୍ନାଥଂକୁ ସୌରନାରାୟଣ ଗ୍ରାମରେ ମହାନଦୀରେ ଭସାଇ ପୁରୀକୁ ନେଇ ଆସିଲେ, ସେତେବେଳେ ଏଇ ପୁରୁଷୋତ୍ତମ ପୀଠ ବର୍ତ୍ତମାନ ଥିଲା । ଜଗନ୍ନାଥ ନାମର ଏଇ ପୁରୁଷୋତ୍ତମ ପୀଠରେ ହୁଏତ ଭକ୍ତମାନେ ଲଗାଉଥିଲେ ଓ ଫଳରେ ପୁରୁଷୋତ୍ତମ ଓ ଉକ୍ତସ୍ଥାନର ଜଗନ୍ନାଥ ଏକ ବୋଲି ଅନେକ ଲୋକଂକର ହୁଏତ ଧାରଣା ପଡ଼ିଯାଇ ଥିଲା । ଏଇ ପୁରୁଷ ବା ପୁରୁଷୋତ୍ତମ ପୁଣି ଗୀତାରେ ଆଉ କୁତ୍ରାପି ନାହାଂତି । ପରେ ଏହାଂକର ସମ୍ପର୍କ ଏଇ ଜଗନ୍ନାଥ ସଂଗେ ବୋଲି ସ୍ପଷ୍ଟ ଅନୁମାନ ହେଉଚ । କିଂତୁ ଜଗନ୍ନାଥ ଓ ପୁରୁଷୋତ୍ତମ ତଥାପି ଏକ ନୁହଂତି । ଏଇ ଜଗନ୍ନାଥ ମୂଳରୁ ଗୋଟିଏ ତଂତ୍ର ଦେବତା । ଏହା କୁହାଯାଉଚ । ସୌରନାରାୟଣ ବା ସେଇଭଳି

ଅନ୍ୟ କୌଣସିଠାରୁ—ଉଡ଼୍ଡ଼ିସ୍ଥାନରୁ ଏଇ ଜଗନ୍ନାଥ ତଂତ୍ର ଧର୍ମ କ୍ରମେ ଆସାମବାଟେ ଉତ୍କଳକୁ ଯାଇଥିଲା । କାମାକ୍ଷାରେ ଓ ସିଲହଟରେ ତାହାର ସଂକେତ ଅଛୁ । ଅନ୍ୟ ପ୍ରଧାନ ସଂକେତ ହେଉଛି, "ଓଁ ମଣି ପଦ୍ମେ ହୁଁ ।" ଏହାର ତଂତ୍ର ଅନୁସାରେ ପ୍ରକୃତ ଅର୍ଥଟି ହେଉଛି ।

'ମଣି' ବୋଇଲେ ଲିଂଗ—ବାସ୍ତ୍ୱାୟନ
'ପଦ୍ମ' ବୋଇଲେ ଯୋନି—ବାସ୍ତ୍ୱାୟନ
'ହୁଁ' ବୋଇଲେ କାମଚେଷ୍ଟା ଚରିତାର୍ଥ କରିବାର ସଂକେତ ।

ତେଣୁ ହେଲା, 'ଓଁ ମଣିପଦ୍ମେ ହୁଁ' ବୋଲି ପ୍ରାଚୀନ ଶୂନ୍ୟବାଦୀ ବୌଦ୍ଧର ମଂତ୍ର । ଏହାକୁ ବାରଂବାର ଆବୃତ୍ତି କଲେ ମୁକ୍ତ ହୁଏ ବୋଲି ଉତ୍କଳ ପ୍ରଭୃତିରେ ଧାରଣା । କିଂତୁ ଏହା ଖ୍ରୀଷ୍ଟ ୮ମ ଶତାବ୍ଦୀର କଥା । ଜଗନ୍ନାଥ ପୁରୀରେ ପ୍ରତିଷ୍ଠିତ ହେଲା ପରେ ଏ ତଂତ୍ର ସଂପର୍କ ମଂତ୍ରରେ ପରିଣତ ହୋଇଥିଲେ ମଧ୍ୟ ଆଉ ସେତେ ପ୍ରଚ୍ଚରିତ ହୋଇନାଇ ।

## ଜଗନ୍ନାଥ ଓ ପୁରୁଷୋତ୍ତମ—

ଜଗନ୍ନାଥଟି ଗୋଟିଏ ନିଷାଦ ଧାରଣାରୁ ବାହାରିଛି । ମହାଭାରତର ଶାଂତି ପର୍ବରେ ଏହାର ସ୍ପଷ୍ଟ ବର୍ଣ୍ଣନା ଥିଲେ ମଧ୍ୟ ଏହାର ମୌଳିକ ଧାରଣା ନିଷାଦ ଛଡ଼ା ଆଉ କିଛୁ ନୁହେଁ । ଏହା ଫିନିସିଆ ବାଟେ କ୍ରୀଟଦ୍ୱୀପ ଓ ସେଠାରୁ କାପାଡ଼ୋସିଆ ତଥା ଆସିରିଆ, ବ୍ୟାବିଲନ୍‌ବାଟେ ପାରସ୍ୟ ଓ ଭାରତକୁ ଆସିଥିଲା । ଏହା ପରେ ବେଦ ପୂର୍ବକାଳରୁ ପୁରୁଷୋତ୍ତମ କଥାଟି ଭାରତକୁ ଆସିଥିଲା ନା ଭାରତରୁ ପ୍ରଥମେ ଉଦ୍‌ଭବ ହୋଇ ଯାଇଥିଲା, ତାହା କହିବା ବଡ଼ କଷ୍ଟ । ଖ୍ରୀଷ୍ଟପୂର୍ବ ୧୪ଶ ଶତାବ୍ଦୀରେ ଇଜିପ୍ଟରେ ଫାରୋଆଆକ୍ନେଟନ୍ ଯେଉଁ ସର୍ବବ୍ୟାପୀ ଆତ୍ମନ (ଆଟେନ୍) ଧର୍ମକୁ ରାଜ୍ୟର ଏକମାତ୍ର ଧର୍ମ ବୋଲି ପ୍ରଚ୍ଚର କରି ସମସ୍ତ ସାମ୍ରାଜ୍ୟକୁ ପଣ କରିଥିଲେ, ସେଥିରେ ଜୈନର ମୌଳିକ ଆତ୍ମ ଧାରଣା ଥିଲା ପରି ଲାଗୁନାଇ । ଏଇଥିରୁ ପୁଣି ବାହାରିଥିଲା—

"ସୂର୍ଯ୍ୟଆତ୍ମା ଜଗତ୍ ତସ୍ଥୁଷଶ୍ଚ" ※



※ ଅବଶ୍ୟ ଭାବିବାର କଥା, ଏଇ ବେଦ ମଂତ୍ରଟି ସେଇ ମିଶରୀୟ ସୂର୍ଯ୍ୟ ଆଟେନ୍ ରୂପେ ପ୍ରକାଶିତ ହେବାରୁ ବାହାରିଥିଲା, କିଂବା ଭାରତରୁ ଏଇ ଦ୍ରାବିଡ଼ୀୟ ମୌଳିକ ଭାବ ମିଶରୀବାଟେ ଭାରତକୁ ଆସିଥିଲା, ଏହା କହିବା ବଡ଼ କଷ୍ଟ । ଭାରତରେ ଉପନିଷଦକାଳରେ, ଯେଉଁ ଜୀବାତ୍ମା, ପରମାତ୍ମାର ସଂପର୍କ ଓ ସମସ୍ୟରେ ଖୁବ୍ ବିସ୍ତୃତ

ଇସ୍ୱୟାଇଚ, ଅଉ ଯେଉଁ ଜୀବାତ୍ମା ପରମାତ୍ମାର ସଂପର୍କ ଘେନି ଓଡ଼ିଶାର ଅଣାକାର ଚିନ୍ତା ବାହାରିଚ, ତାହା ଦ୍ରାବିଡ଼ୀୟମାନଂକ :ମୂଳ ଜୈନଭାବରୁ ବାହାରିଚ କିଂବା ଦ୍ରାବିଡ଼ୀୟମାନଂକ ଜୈନଭାବମୂଳରୁ ସୂର୍ଯ୍ୟପରି ମହାଜୀବନୀ ଶକ୍ତିକୁ ବିଶ୍ୱର ଆତ୍ମା ବୋଲି ବିସ୍ତୃତ କରି ସେଥିରୁ ମାନବ କ୍ରମେ ଜୈନର ବ୍ୟକ୍ତିଗତ ଆତ୍ମଭାବକୁ ଆସିଚ, ତାହା ଠିକ୍‌କରି କହିବାର କୌଣସି ଅନୁସନ୍ଧାନର ଫଳ ପ୍ରକାଶ ପାଇ ନାଇ । ମାତ୍ର ପୁରୁଷଭାବ ଜଗନ୍ନାଥର ପୁରୁଷୋତ୍ତମରେ ବ୍ୟକ୍ତିଗତ ପୁରୁଷ ଭାବରୁ ବା ଆତ୍ମ ଭାବରୁ ବାହାରିଥିବା ଖୁବ୍ ସମ୍ଭବ ବୋଲି ଅନୁମାନ ହୁଏ । ଏଇ ବ୍ୟକ୍ତିଗତ ଆତ୍ମତ୍ତ୍ୱବରୁ ପରେ ଔପନିଷଦିକମାନଙ୍କର ବ୍ୟକ୍ତିଗତ ଆତ୍ମା ଓ ବିଶ୍ୱାତ୍ମାର ଐକ୍ୟ ଏବଂ ଏକଭାବ ଶଂକରାଚାର୍ଯ୍ୟଂକ କାଳକୁ ଭାରତର ବେଶ୍ ପ୍ରତିଷ୍ଠିତ ଭାବ ଥିଲା । ତାହା ସାଂଖ୍ୟର ଦ୍ୱୈତଭାବରୁ କ୍ରମେ ବେଦାଂତର ଐକ୍ୟଭାବରେ ଭାରତ ସାହିତ୍ୟରେ ପ୍ରକାଶିତ ହୋଇଥିଲା ।



# ଗୀତା-ପ୍ରବେଶ

## ୧ । ସୂଚନା

### ଗୀତାଧର୍ମ ସାର୍ବଜନୀନ—

ବିଶ୍ୱତତ୍ତ୍ୱ ତଥା ମାନବର କର୍ତ୍ତବ୍ୟ ନିରୂପଣ କଥା ଗୀତାରେ କୁହାଯାଇଛି । ବିଶ୍ୱତତ୍ତ୍ୱର ପ୍ରତିଷ୍ଠା ଓ ସେଇ ଅନୁକ୍ରମେ ମାନବ ମାତ୍ରର କର୍ତ୍ତବ୍ୟ, ଧର୍ମ ବା 'ସ୍ୱଧର୍ମ'— ଏହାହିଁ ଏକ କଥାରେ ଗୀତାର ବିଷୟ ବା ଗୀତାଧର୍ମ । ଏଇ ଗୀତାଧର୍ମରେ ପୁଣି ଦେଶକାଳ ବା ପରିସ୍ଥିତି ଭେଦ ନାହିଁ । ଏହା ସାର୍ବଜନୀନ; ଯେଉଁଠାରେ ମନୁଷ୍ୟ ଅଛି, ସେଠାରେ ଗୀତାଧର୍ମର ସମାନ ବ୍ୟାପ୍ତି । ସଭ୍ୟ ଓ ବିକଶିତ ସମାଜ, ପୁଣି ଅସଭ୍ୟ ଓ ଅନୁନ୍ନତ ସମାଜ—ଏ ସବୁ ଭେଦରେ ଗୀତାଧର୍ମର ଇତର ବିଶେଷ ନାହିଁ । ଏଥିରେ ଲୋକସାଧାରଣର ଆଚାରବିଧି ବା ଲୋକ-ଶୁଦ୍ଧି ରୀତି ପ୍ରଭୃତିର ବ୍ୟୂହ ବିଚାର ବା ବିଶେଷ ପର୍ଯ୍ୟାଲୋଚନା ନାହିଁ । ମାନବ ସଙ୍ଗେ ସେଇ ସବୁ ଆଚାର ଓ ରୀତି-ତତ୍ତ୍ୱ ବା ନୀତିର ସମ୍ବନ୍ଧ ଗୀତାରେ ଏପରି ସୁନ୍ଦରରୂପେ ପ୍ରତିପାଦିତ ହୋଇଛି ଯେ, ଯେ କୌଣସି କାଳ, ସ୍ଥାନ, ଅବସ୍ଥା ଓ ପରିସ୍ଥିତିରେ ଗୀତାଧର୍ମରେ ମନୁଷ୍ୟ ନିଜର ମନୁଷ୍ୟତ୍ୱ ବିକାଶ କରିପାରିବ । ପୃଥିବୀରେ ବହୁ ଧର୍ମଗ୍ରନ୍ଥ ଅଛି; ମାତ୍ର ସେସବୁ ବିଶିଷ୍ଟ ଦେଶ, କାଳ ଓ ପରିସ୍ଥିତି ଘେନି କର୍ତ୍ତବ୍ୟ ଓ ତଦନୁଯାୟୀ ତତ୍ତ୍ୱ ପ୍ରଚାର କରନ୍ତି— ମନୁଷ୍ୟଙ୍କୁ ଗୋଟିଏ ଗୋଟିଏ କରି ହୁଏତ ବିଶେଷ କର୍ତ୍ତବ୍ୟର ଉପଦେଶ ଦିଅନ୍ତି, ପୁଣି ଅନିର୍ଦ୍ଦିଷ୍ଟ, ଏଇ ଜଗତରୁ ଭିନ୍ନ ଈଶ୍ୱର-ପୁରୁଷର ହୁଏତ ଆରୋପ କରି ସେସବୁ ଉପଦେଶ ପ୍ରମାଣ କରନ୍ତି; ଫଳତଃ ଏ ସବୁରେ ହୁଏତ ଜ୍ଞାନଠାରୁ ବିଶ୍ୱାସ ବା ଅମୂଳକ ଭକ୍ତିରେ ବେଶି ନିର୍ଭର କରନ୍ତି । ଗୀତାର ସମୂହତତ୍ତ୍ୱ କଥା ନିତ୍ୟ କର୍ତ୍ତବ୍ୟ-କଳ୍ପନାରେ ସେସବୁର ସ୍ଥାନ ନାହିଁ; ନ ବୁଝିବା ତତ୍ତ୍ୱରେ ବାଧ ହୋଇ ଭକ୍ତି କରିବାର ନାହିଁ, କିମ୍ବା କର୍ମ ବା କର୍ତ୍ତବ୍ୟ ଧାରଣାରେ ନିର୍ଦ୍ଦିଷ୍ଟ ପରିସ୍ଥିତିକୁ ଧରି କ୍ଷୁଦ୍ର ଉପଯୋଗିତାର ବିଚାର ନାହିଁ । ଉଦାହରଣ ସ୍ୱରୂପ, ଗୀତା କୁତ୍ରାପି କହି ନାହାନ୍ତି, ଏପରି ଏତେଟି ବିବାହ କରିବ, ଯାହାର ଜିନିଷ ତାକୁ ଫେରାଇ ଦେବ, ପୁତ୍ର ହୋଇ ପିତାମାତାଙ୍କୁ ଭକ୍ତି କରିବ, ମିଛ କହିବ ନାହିଁ, ଜୀବ ମାରିବ ନାହିଁ, ଅମୁକ ଜିନିଷ, ଜନ୍ତୁ ବା ମନୁଷ୍ୟଙ୍କୁ ଛୁଇଁବ ନାହିଁ—ଇତ୍ୟାଦି । ମାତ୍ର ଗୀତାଧର୍ମରେ

ଏ ସବୁ ନାହିଁ, ନୁହେ । ଗୀତାଧର୍ମ ଧଇଲେ, ଲୋକେ ପରିସ୍ଥିତି-ଭେଦରେ ଏସବୁ ସହଜରେ ଠିକ୍ ଜାଣିପାରିବ । ଗୀତାଧର୍ମର ନିର୍ଯାସ ହେଉଚି, ଏକ ଆତ୍ମିକ ପରିସ୍ଥିତି । ଏଇ ପରିସ୍ଥିତିରେ ତାର ବିଶ୍ୱ ସଙ୍ଗେ ନିତ୍ୟ-ସମ୍ବନ୍ଧ । ସେଇ ପରିସ୍ଥିତି ପୁଣି ସେଇ ସମ୍ବନ୍ଧର ଧାରଣାରେ ସେ ନିଜେ ନିଜର ସମସ୍ତ କର୍ମ ଅଭ୍ରାନ୍ତଭାବରେ କରି-ପାରେ । ଏଥିପାଇଁ ଗୀତାର ଧର୍ମ ବିଶ୍ୱଧର୍ମ ।

## ଗୀତାର 'ଯୋଗ' ନିତ୍ୟ—

ଏକ ବିକାଶମୟ ଅଥଚ ସ୍ଥିର ଅପରିବର୍ତ୍ତିନୀୟ ବିଶ୍ୱତତ୍ତ୍ୱର ଜ୍ଞାନ, ସେଇ ଧାରଣାରେ ସେଇ ବିକାଶରେ ବ୍ୟକ୍ତି ବିଶ୍ୱରେ ଈଶ୍ୱର ଜ୍ଞାନ ଓ ଭକ୍ତି, ପୁଣି ସେଇ ବିଶ୍ୱବିକାଶରେ ନିଜକୁ ମିଶାଇଦେଇ ସେ ଅନୁସାରେ କର୍ମ—ଏଇ ଜ୍ଞାନ, ଭକ୍ତି ଓ କର୍ମଭିତ୍ତିର ସମନ୍ୱୟରେ ଗୀତାର ପ୍ରତିଷ୍ଠା । ଗୀତାର ବିଶ୍ୱଧର୍ମରେ ଏ ତିନୋଟି ଯାକ ଅଚ୍ଛେଦ୍ୟ ସମ୍ପର୍କରେ ଅଙ୍ଗାଙ୍ଗିଭାବେ ଜଡ଼ିତ । ଭକ୍ତିର ପ୍ରେରଣାରେ, ଜ୍ଞାନର ସ୍ଥିତିରେ ସମାଜରେ ସ୍ୱଭାବ-ନିୟତ କର୍ମ ବା ସ୍ୱଧର୍ମ ସାଧନାହିଁ ଗୀତାର 'ଯୋଗ' । ଗୋଟିଏ କଥାରେ ଏଇ ଯୋଗର ଅର୍ଥ—ନିର୍ବିକଳ୍ପ ଅଥଚ ସର୍ବତୋମୁଖ ବିକଳ୍ପ ବା ବିକାଶମୟ 'ପୁରୁଷୋତ୍ତମ'ରେ ଭକ୍ତି ଦ୍ୱାରା ଗ୍ରଳିତ ହୋଇ ଅପରିବର୍ତ୍ତିନୀୟ ସ୍ଥିର ବ୍ରହ୍ମରେ ବୁଦ୍ଧି ସ୍ଥିର ଅଚଞ୍ଚଳ ରଖି, ସେଇ ବ୍ରହ୍ମର ବିଶ୍ୱବିକାଶ ରୂପ କର୍ମରେ ନିଜ କର୍ମଧାରା ମିଶାଇ ଦେବା ବ୍ରହ୍ମରେ ସମ୍ପୂର୍ଣ୍ଣ ଯୁକ୍ତ ରହିବା । ଏଇ 'ଯୋଗ'ହିଁ ଗୀତା-ଧର୍ମ । ଏଇ ଯୋଗସ୍ଥିତିରେ ଅନ୍ୟ କାହାର ବା କାହିଁର ଅପେକ୍ଷା ନ ରଖି ମାନବ ନିଜେ ନିଜର କର୍ମ କରିବାହିଁ ଗୀତାର ସାର କଥା ।

## ଗୀତା-ଧର୍ମ ସନାତନ—

ତେଣୁ ଗୀତାଧର୍ମ ସନାତନ । ଏହା ଶ୍ରୀକୃଷ୍ଣ ପ୍ରକାଶ କରିଛନ୍ତି ମାତ୍ର, ଗୀତାରେ ପ୍ରଥମେ ପ୍ରବର୍ତ୍ତାଇ ନାହାନ୍ତି । ଏ ଧର୍ମ ଶାଶ୍ୱତ—ସୃଷ୍ଟି ସଙ୍ଗେ ବରାବର ଗ୍ରଲିଚି । ସମାଜର ବିକାଶ ସଙ୍ଗେ ଏହାର ଅବିଚ୍ଛିନ୍ନ ଧାରା ଠିକ୍ ରହିଚି । ଏହା ନିତ୍ୟ ଓ ଏକରୂପ ହେଲେ ମଧ୍ୟ ନିତ୍ୟ ବିକାଶରେ ନିତ ନୂତନ । ସେଥିପାଇଁ ସାଧାରଣବୋଧ କଥାରେ ଶ୍ରୀକୃଷ୍ଣ କହିଚନ୍ତି—

"ଯେ ଯଥା ମାଂ ପ୍ରପଦ୍ୟନ୍ତେ
ତା ସ୍ତଥୈବ ଭଜାମ୍ୟହମ୍ ।"

ଅର୍ଥାତ୍, ଯେ ଯେପରି ମତେ ପାଇବାକୁ ଲୋଡ଼େ, ମୁଁ ତାକୁ ସେପରି ପ୍ରାପ୍ତ ହୁଏ । ଅସଭ୍ୟର କାଠପୂଜାଠାରୁ 'ଅନୀଶ୍ୱର' ଶୂନ୍ୟବାଦୀ ପର୍ଯ୍ୟନ୍ତ କେହି ଗୀତାଧର୍ମ ଲଣ୍ଡନାରୁ ବାହାରେ ନାହାନ୍ତି । ବିଶ୍ୱବିକାଶରେ ଯାହା ସମ୍ଭବ, ଗୀତାଧର୍ମରେ ସେ ସବୁ ପାଇଁ ସ୍ଥାନ ଅଛି— ସ୍ଥାନ ଏକା ନୁହେଁ, ଆଦର ଅଛି । ଗୀତାଧର୍ମରେ ତେଣୁ ଏଇ

ନିତ୍ୟତା ତଥା ନିତ୍ୟ ନୂତନତାର ପୂର୍ଣ୍ଣସାମଂଜସ୍ୟ ଓ ସମାଧାନ । ନୂତନ ପରିସ୍ଥିତିରେ ନୂତନ କର୍ତ୍ତବ୍ୟ ଫିଟୁଚି, ଗୀତା ସେଥିପାଇଁ ଉନ୍ମୁକ୍ତ । 'ଶାସ୍ତ୍ରବିଧି' ବା ଚଳିଆସୁଥିବା ପଂଥା, ଏକମାତ୍ର ପଂଥା ନୁହେ । ଶାସ୍ତ୍ରପଂଥା ଛାଡ଼ି ମଧ କେହି ନୂତନ ପଂଥା ଦରକାର ମନେକଲେ ଓ ଧଇଲେ, ସେ ପଂଥା ସାତ୍ତ୍ୱିକ, କି ରାଜସ, କି ତାମସ, (ଭଲ, କି ମଧ୍ୟମ, କି ମଂଦ) ତା ସ୍ଥିର କରି ସେ ପଂଥାର ମୂଲ୍ୟ ନିରୂପଣ କରିବାକୁ ହେବ । ଏଇ ଭଲ, ମଧ୍ୟମ, ମଂଦର ବିଗ୍ଭର-ମାତ୍ରହିଁ ନିତ୍ୟ । ମାତ୍ର ନିର୍ଦ୍ଦିଷ୍ଟ ପଂଥା ବା କର୍ମ ପରଂପରାର ବିକାଶକୁ ନିତ୍ୟ ବୋଲି ଧଇଲେ ମନୁଷ୍ୟ ଜଡ଼ । ସେଥିରେ ଧର୍ମ ନାହିଁ । ଏହାର ସୂଚନା ଗୀତାରେ ସ୍ପଷ୍ଟ (୧୭.୧—୩ ଦେଖ) ।

# ୧। ଆର୍ଯ୍ୟଧର୍ମ ଗୀତାର ବିଷୟ

## ଭାରତ-ଧର୍ମର ପ୍ରାଚୀନତା—

ଭାରତର ଧର୍ମହିଁ ଆର୍ଯ୍ୟଧର୍ମ । ଏହା ପୃଥିବୀରେ ସର୍ବପ୍ରାଚୀନ ଜୀବନ୍ତ ଧର୍ମ । ଯୁଗରେ ଲୋକେ ପୁରାଣକୁ ସତ୍ୟ ବୋଲି ବୁଝିବେ ନାହିଁ । ଇତିହାସ ପ୍ରମାଣ ଦେଖି ପରୀକ୍ଷା କରି ଦେଖିବେ । ବେଦର ଭାଷା ଓ ପରିସ୍ଥିତି ବିଚାର କରି ପାଶ୍ଚାତ୍ୟ ପଂଡ଼ିତମାନେ ଏ ଦେଶର ସଭ୍ୟତାକୁ ୩୦୦୦ ବର୍ଷରୁ ଅଧିକ ପ୍ରାଚୀନ ବୋଲି ମନେ-କରୁ ନ ଥିଲେ । ଏବେ ବାରବର୍ଷ ଭିତରେ ସେ ଧାରଣା ସମ୍ପୂର୍ଣ୍ଣ ବଦଳିଯାଇଛି । ସିଂଧୁ ନଦୀର ଉପତ୍ୟକାରେ 'ମହେଂଜୋଦାରୋ' ଓ 'ହରପ୍ପା' ବୋଲି ଦୁଇଟି ସ୍ଥାନ ଖୋଳା ହୋଇ ଭାରତର ପାଞ୍ଚ ଛଅ ହଜାର ବର୍ଷ ତଳର ଯେ ସଭ୍ୟତାର ଅବଶେଷ ବାହାରିଛି, ସେଥିରୁ ପ୍ରମାଣ ହେଉଛି, ଲିଂଗରୂପୀ ଶିବପୂଜା ସେତେବେଳେ ମଧ୍ୟ ଥିଲି । କଟି, ପୃଷ୍ଠ, ଗ୍ରୀବା ଋଜୁଭାବରେ ସ୍ଥିର ରଖି ନାସିକାଗ୍ରକୁ ଦୃଷ୍ଟି ଯୋଗ-ନିବିଷ୍ଟ ଥିବା (୭·୧୩ ଦେଖ) ଲୋକର ସେକାଳ ମାଟିଗଢ଼ା ମୂର୍ତ୍ତି ମଧ୍ୟ ମିଳିଛି । ପୁଣି ପ୍ରମାଣ ମିଳିଛି, ଏଇ ୫୦୦୦ ବର୍ଷର ସଭ୍ୟତା ନୂତନ ବା ହଠାତ୍ ବିଦେଶାଗତ ନୁହେଁ । ଏହା ବହୁ ପୂର୍ବରୁ ବିକାଶ ପାଇ ସେତେବେଳେ ଅତି ପ୍ରାଚୀନ ଓ ପ୍ରତିଷ୍ଠିତ ହୋଇ ସାରିଥିଲି । ପୁଣି ମାକେ (E. Mackey), ଚାଇଲ୍ଡ଼ (V.G. Childe) ପ୍ରଭୃତି ପୃଥିବୀର ପ୍ରତ୍ନତତ୍ତ୍ୱସଂଧିତ୍ସୁମାନେ ଏବେ ମତ ଦେଉଛଂତି, ଏଇ ସଭ୍ୟତା ମିଶର, ସୁମେର (ବ୍ୟାବିଲନ) ପ୍ରଭୃତି ପୃଥିବୀର ସମସ୍ତ ପ୍ରାଚୀନ ସଭ୍ୟତାର ଏକ ପ୍ରକାର ଜନନୀ ଥିଲି । (୧) ଓ ସେଇ ସୂତ୍ରରେ ପରେ ସଭ୍ୟତାର ଧାରା ଇଉରୋପ ପ୍ରଭୃତିରେ ବ୍ୟାପିଥିବାର ମଧ୍ୟ ଚାଇଲ୍ଡ଼ ସ୍ପଷ୍ଟ କହୁଂଛି । (୨) । ଅବଶ୍ୟ ମୁଂଡ଼ର ଦୀର୍ଘପ୍ରସ୍ଥ ମାପ ବା ସେଇଭଳି ଅନ୍ୟାନ୍ୟ ମାନବର ଜାତିତତ୍ତ୍ୱ ନିରୂପଣରେ ସେକାଳ ଭାରତୀୟଙ୍କୁ ଆର୍ଯ୍ୟ କି ଦ୍ରାବିଡ଼ କି ଆଉ କ'ଣ କହୁଚଂତି, ସେ ସ୍ୱତଂତ୍ର କଥା । ମାତ୍ର ଆର୍ଯ୍ୟ ଏ ଦେଶରେ ସଭ୍ୟତା ହିସାବରେ ପରିଚିତ ଓ ସେଇ ସଭ୍ୟତା ଏ ଭୂମିରେ

---

(୧) E. Mackey's— "The Indus Civilisation", P. 12, V. G. Childe's— "The Most Ancient East", pp. 202-3, 79, 144, 200, 217 "The Aryans"— pp. 34.6

(୨) V. G. Childe— "The Most Ancient East" Chap. X.

ନହୁ ପ୍ରାଚୀନ—ପୃଥିବୀର ସବୁ ଜଣାଥିବା ସଭ୍ୟତାରେ ପ୍ରାଚୀନତମ—ଏ ବିଷୟରେ ଏବେ ସନ୍ଦେହ ରହୁ ନାହିଁ ।

## ଭାରତଧର୍ମର ମୌଳିକତା, କର୍ତ୍ତବ୍ୟ—

ଭାରତୀୟର ଚିରକାଳ ଏହି ଧାରଣା । ଏହି ଧାରଣାରେ ସେ ନିଜ ସଭ୍ୟତା ଓ ସଂସ୍କୃତି ଧରି ରଖିଛି । ଏହି ସଂସ୍କୃତିବିକାଶର ମୂଳ ମନ୍ତ୍ର ହେଉଛି, ସମସ୍ତେ ନିଜ ନିଜର କର୍ତ୍ତବ୍ୟ ପ୍ରତି ଦୃଷ୍ଟି ଦେବେ । ଅନ୍ୟଠାରୁ ଦାବୀ କରି ବା ଅଯଥା ଆହରଣ କରି ନିଜର ସମୃଦ୍ଧି-ବୃଦ୍ଧିରେ ମାତିବେ ନାହିଁ । ସମସ୍ତେ ସମାଜ-ହିତରେ ନିଜ ନିଜର କର୍ତ୍ତବ୍ୟ ସ୍ଥିର କରି ସେଥିରେ ଲାଗିଗଲେ, ସଭ୍ୟତାରେ ବିକାଶଧାରା ଅବିଚଳିତ ରହି କ୍ରମବର୍ଦ୍ଧନରେ ବିସ୍ତୃତ ହେବ ଓ ଅନବଚ୍ଛିନ୍ନ ଭାବରେ ଚାଲିବ । ତା ନ କରି ସମସ୍ତେ ଲୋଭ ଓ କାମନାର ଦୁର୍ଦ୍ଦମ ଧାରାରେ ଆପଣାକୁ ଛାଡ଼ିଦେଇ 'ମୋର ଏ, ତୋର ନୁହେଁ' ବୋଲି ଅଧିକାର ଓ ଭୋଗ ଦାବୀ କରି ବସିଲେ ବିକାଶ ଧାରାରେ ବିକ୍ଷୋଭ ଉପସ୍ଥିତ ହୋଇ ସମାଜ ସ୍ଥିତି ହରାଇବ ଓ ପ୍ରଗତିର ହାନି ହେବ । ଏହି ମତ ଧରି ଭାରତ-ସଭ୍ୟତା ଚାଲିଆସିଛି । ସେହି ସଭ୍ୟତାକୁ ଭାରତୀୟମାନେ ଆର୍ଯ୍ୟ-ସଭ୍ୟତା କହି ଆସିଚନ୍ତି । ଏହି ମତରେ ପ୍ରତିଷ୍ଠିତ ଥିବାରୁ ଏହା ଅବିରାମ ଧାରାରେ ପ୍ରଗତିରେ ଚାଲିଛି । ପୃଥିବୀର ଅନ୍ୟ କୌଣସି ସଭ୍ୟତା ଏତେ କାଳ ଏପରି ଅବଚ୍ଛିନ୍ନ ଧାରାରେ ଚାଲି ନାହିଁ । ଏହି ଧାରାର ଗତିରେ ବାଧାପଡ଼ିଲେ, ମୁଖ୍ୟ ଲୋକେ କାମନାର ଦୁରନ୍ତ କ୍ରିୟାରେ ମାନବ-ଭୋଗ ଦାବୀ କରି ବସିଲେ, ଏହିଧାରା ଛିନ୍ନ ହେବାର ଶଙ୍କା ହୁଏ । ସେତିକି ବେଳେ ଏହି ଆର୍ଯ୍ୟଧର୍ମ ଚେତାଇ ଦେବା ଦରକାର । ଶ୍ରୀକୃଷ୍ଣ ଗୀତାରେ ତାହାହିଁ କରିଚନ୍ତି ।

## କୁରୁକ୍ଷେତ୍ର ଯୁଦ୍ଧାରମ୍ଭରେ ଅର୍ଜ୍ଜୁନଙ୍କ କର୍ତ୍ତବ୍ୟମୋହ—

ଦୁର୍ଯ୍ୟୋଧନ ଅଯଥା କାମନାଗ୍ରସ୍ତ ( ଲୋଭୋପହତଚେତା—୧.୩୮ ) ହୋଇ ପାଣ୍ଡବମାନଙ୍କୁ ରାଜ୍ୟରେ ସ୍ଥାନ ମାତ୍ର ନ ଦେଇ ନିଜେ ସବୁ ଭୋଗ କରିବାକୁ ବସିଲେ । କୃଷ୍ଣ ଯାଇ ପାଣ୍ଡବଙ୍କ ପାଇଁ ପାଞ୍ଚଖଣ୍ଡି ମାତ୍ର ଗାଁ ମାଗିଲେ । ଦୁର୍ଯ୍ୟୋଧନ ସେଥିରେ ନାରାଜ ହେଲେ । ଦେଖାଗଲା, ଆର୍ଯ୍ୟଧର୍ମର ଧାରା ଲୋପ ହେବାକୁ ବସିଲା । ଯେ ଯେ ଲୋକ ଏ ଧାରାରେ ବାଧା ଦେଇଥିଲେ, ହୁଏତ ଅନ୍ୟ ସମାଧାନ ହୋଇଥାନ୍ତା । ମାତ୍ର ସମାଜର ମୁଖ୍ୟତମ ଲୋକେ ଆସି ଦୁର୍ଯ୍ୟୋଧନ ପାଇଁ କୁରୁକ୍ଷେତ୍ର ରଣାଙ୍ଗନରେ ଠିଆହେଲେ । ଶ୍ରୀକୃଷ୍ଣ ଆର୍ଯ୍ୟ-ଧର୍ମଧାରା ରକ୍ଷାରେ କ୍ଷାତ୍ରଧର୍ମ ପାଳନ କରିବା ପାଇଁ ପାଣ୍ଡବମାନଙ୍କୁ ଧରି ସେହି ରଣାଙ୍ଗନରେ ମଧ୍ୟ ସମ୍ମୁଖୀନ ହେଲେ, ମାତ୍ର ଯୁଦ୍ଧକୁ ଠିଆହୋଇ ଅର୍ଜ୍ଜୁନ ଦେଖିଲେ ବଡ଼ 'ବିଷମ' ଅବସ୍ଥା । ସେ କାହା ସଙ୍ଗେ ଯୁଝିବେ ? ବିପକ୍ଷମାନେ ସମସ୍ତେ ତାଙ୍କର ସ୍ୱଜନ—ଆପଣାର ଲୋକ, କିଏ

ଭାଇ, କିଏ ପୁରୁଷ, କିଏ ମାମୁଁ, କିଏ ଶଳା, କିଏ ଗୁରୁ, କିଏ ବନ୍ଧୁ—କେହି ତ ଇତର ନୁହନ୍ତି । ଏସବୁ ଦେଖି ଅର୍ଜ୍ଜୁନଙ୍କର ସ୍ୱଜନ ମୋହ ବା 'କୃପା' ହେଲା । ତାଙ୍କ ମୁଣ୍ଡ ଘୂରିଗଲା । 'ମାରିବି କି ନାହିଁ' ବୋଲି ସେ ମହାକର୍ତ୍ତବ୍ୟସଂଶୟ ବା 'ଧର୍ମସଙ୍କଟ'ରେ ପଡ଼ିଗଲେ । ସେଇ ସମ୍ପର୍କରେ ବ୍ୟାକୁଳ ହୋଇ ସେ କହିଲେ—ଏମାନଙ୍କୁ ମାଇଲେ 'କୁଳକ୍ଷୟ' ହେବ, କୁଳଧର୍ମ ବୁଡ଼ିଯିବ, ପିତୃମାନେ ପିଣ୍ଡପାଣି ନ ପାଇ ନରକରେ ପଡ଼ିବେ; କୁଳନାରୀମାନେ ଅନ୍ୟ ପୁରୁଷ ଆଦରିବେ ଓ ଆର୍ଯ୍ୟଜାତି ନଷ୍ଟ ହୋଇଯିବ । 'ମତେ କୌରବମାନେ ମାରିଦିଅନ୍ତୁ, ମୁଁ ସେମାନଙ୍କ ଉପରେ ଶସ୍ତ୍ର ଉଠାଇବି କିପରି ? ଏହା କହି ସେ ରଥରେ ଧନୁଶର ଫିଙ୍ଗିଦେଇ ବସି ପଡ଼ିଲେ । (୧.୩୮—୪୬)

## ଶ୍ରୀକୃଷ୍ଣଙ୍କ ବିଗ୍ରହ—

ଶ୍ରୀକୃଷ୍ଣ ଦେଖିଲେ ଯଥାର୍ଥ 'ବିଷମ' ଅବସ୍ଥା । ସମସ୍ତେ ଭାରତର ବଡ଼ ବଡ଼ ରାଜା ଓ ନେତୃସ୍ଥାନୀୟ ଲୋକେ ଦୁର୍ଯ୍ୟୋଧନର ଏଇ ଦୁର୍ବାର ଲାଳସାରେ ଆପତ୍ତି କରି ଧର୍ମ-ଧାରଣାଗତ ଆର୍ଯ୍ୟର ଠିକ୍ ରଖିବା ଦୂରରେ ଥାଉ, ଏଥିରେ ସହାୟ ହୋଇ ଆସି ଦୁର୍ଯ୍ୟୋଧନ ପକ୍ଷରେ ଅଣ୍ଟା ଭିଡ଼ି ଯୁଦ୍ଧକୁ ଠିଆ ହୋଇଛନ୍ତି । ଏମାନେ ଯେ କେବଳ ଆର୍ଯ୍ୟଧର୍ମ ଦେଖୁ ନାହାନ୍ତି ତା ନୁହେଁ, ଏ ଯୁଦ୍ଧରେ ଦୁର୍ଯ୍ୟୋଧନର ସମ୍ୟକ୍ ଶାସ୍ତି ନ ହେଲେ ସମଗ୍ର ଭାରତରୁ ଆର୍ଯ୍ୟଧର୍ମର ଧାରା ଲୁଚି ଯିବାର ସମ୍ଭାବନା ସ୍ପଷ୍ଟ ଦେଖାପଡ଼ୁଛି । ଲାଳସା ଏକା ଦୁର୍ଯ୍ୟୋଧନର ନୁହେଁ, ମନୁଷ୍ୟର ଏହା ସ୍ୱଭାବଗତ । ଧର୍ମର ସଂଯମହିଁ ଲାଳସାର ସଂଗ୍ରାମରେ ସ୍ଥିତି ଠିକ୍ ରଖେ । ସେ ସଂଯମ ଏବେ ତୁଟିବା ଉପରେ । ପୁଣି ଅର୍ଜ୍ଜୁନ କୁଳଧର୍ମ, କୁଳାଚାର କଥା କହୁଛନ୍ତି । କୁଳସ୍ତ୍ରୀମାନେ ଜାତି ଠିକ୍ ରଖିବା କଥା କହୁଛନ୍ତି । ଜନ୍ମଗତ ଜାତି ଠିକ୍ ରଖିଲେ କିଛି ଆର୍ଯ୍ୟଧର୍ମ ଠିକ୍ ରହିବ ନାହିଁ । ଅର୍ଯ୍ୟଭାବରେ ହିଁ ଆର୍ଯ୍ୟଧର୍ମ ରହିବ । ଦୁର୍ଯ୍ୟୋଧନର ତ କୌରବ-ରକ୍ତ ଠିକ୍ ଅଛି । ଯେତେ ରାଜା ଓ ବୀରମାନେ ଏଠାରେ ଠିଆହୋଇଛନ୍ତି—କାହାର କି ରକ୍ତ କିଏ ଜାଣେ ? ମାତ୍ର ଏ ରକ୍ତରୁ କି ଲାଭ ? ଧର୍ମ ଓ ସଂସ୍କୃତି ତ ରକ୍ତରେ ନାହିଁ ? ଏ ସବୁ ଅର୍ଜ୍ଜୁନଙ୍କର କି କଥା ? ପୁଣି ସମୂହ ଆର୍ଯ୍ୟଧର୍ମ ବିନାଶ ପାଇଲେ, କାହା କୁଳଧର୍ମରୁ ବା କି ଲାଭ ? ସେ କୁଳଧର୍ମ ବା କେତେ ଦିନ ? ଲାଳସାର କରାଳ ବହ୍ନି ଦେଶରେ ଜାଳିବାର ଆରମ୍ଭ ହେଲେ, ତାର ଉପଶମର ପନ୍ଥା ନ ଫିଟିଲେ—ଯେ ଯାହା କର୍ତ୍ତବ୍ୟରେ ନିୟତ ଭାବରେ ସ୍ଥିର ରହି ଅନ୍ୟର ଅଧିକାର ଓ କର୍ତ୍ତବ୍ୟକୁ ଆଦର ନ କଲେ—ମୋଟ କଥା, ଆର୍ଯ୍ୟନୀତି ଦେଶରୁ ତୁଟିଗଲେ କାହା ପିତୃଲୋକେ କେତେ ବା ପିଣ୍ଡ ପାଣି ପାଇବେ ? କେଉଁ କୁଳାଚାର ବା ଠିକ୍ ରହିବ ? କେଉଁ ନାରୀ ବା କେତେ କିପରି ସତୀ ହେବେ ? ଲୋଭଲାଳସା ଓ ଭୋଗର ବନ୍ୟା ଯେ ଦେଶରେ ଛୁଟିବ । ସବୁ ତ ଉଚ୍ଛନ୍ନ

ହୋଇଯିବ । କେହି କାହାର ନ୍ୟାଯ୍ୟ ଅଧିକାରରେ ସ୍ଥିର ରହିବେ ନାହିଁ । ଯାହାର ବଳ, ଯାହାର ସମୃଦ୍ଧି, ତାର ସବୁ ହେବ । ଏ ସ୍ଥିତିରେ ପୁଣି ଭାଙ୍ଗୁଥିବ, ପୁଣି ଗଢ଼ା ହେଉଥିବ । ସଂଚିତର ସର୍ବନାଶ ତଥା ଆହୃତର ଘୋର ଅସ୍ଥିରତା ମଧ୍ୟରେ ସମାଜର ପ୍ରଗତି ରହିବ କପରି ? ଅର୍ଜୁନଙ୍କର ଏ ଦୁର୍ବୁଦ୍ଧି କାହିଁକି ହେଲା ? ଏ ତ ଅନାର୍ଯ୍ୟଭାବ । ଆର୍ଯ୍ୟଧର୍ମରେ ଧାରଣା ଦୃଢ଼ଥିଲେ ଏହା ତ ହୁଅନ୍ତା ନାହିଁ । ଅର୍ଜୁନ ବୁଝି ପାରୁ ନାହାନ୍ତି ।

## ଶ୍ରୀକୃଷ୍ଣ ଚେତାଇ ଦେଲେ—ଏ ଅନାର୍ଯ୍ୟ ଆଚରଣ—

ସେଥିପାଇଁ ଅର୍ଜୁନଙ୍କୁ କହିଲେ, "ଅର୍ଜୁନ, ଏ 'ବିଷମ' ସମୟରେ ମହାଭାରତ ଧର୍ମର ଏ ସଙ୍କଟ କାଳରେ ତୋର ଏ କି ଭାବ ? ଏ କି ଦୁର୍ବଳତା ? ଏ ଯେ, 'ଅନାର୍ଯ୍ୟଜୁଷ୍ଟ' (୨.୨) ଅନାର୍ଯ୍ୟଙ୍କ ଭାବ । ଅନାର୍ଯ୍ୟମାନେ ଏଇପରି ଆଚରଣ କରନ୍ତି । ତତେ ଏ ସୁନ୍ଦର ନୁହେ । ତୋର ଆର୍ଯ୍ୟଧର୍ମ-ଧାରଣା ଏତେବେଳେ ଠିକ୍ ରହିବା ଉଚିତ । ତୋଠୁ ଏହାର ଆଶା କରାଯାଏ ? ଏ ମହାସଙ୍କଟ ବେଳେ ଆର୍ଯ୍ୟଧର୍ମ ମୂଳରେ କୁଠାରାଘାତ କରି, ପିଣ୍ଡପାଣି ପାଇ ସ୍ୱର୍ଗକୁ ଯିବା ଆଶା ବୃଥା । ତା ହେବ ନାହିଁ । ଧର୍ମକୁ ମାରି କୁଳଧର୍ମ କେହି ରଖେ ନାହିଁ । ଖାଲି କୁଳଧର୍ମକୁ ଗୃହିବା ଆର୍ଯ୍ୟଧର୍ମ ନୁହେ । ଆର୍ଯ୍ୟଧର୍ମର ଆଜି କି ଅବସ୍ଥା ? ସେ କଥାକୁ ଚାହାଁ । ତୋପରି ଲୋକ ଏହା ନ ବୁଝିଲେ, ଆଉ କିଏ ଧର୍ମ ରଖିବ ? ତୁ ଏହା ନ କଲେ ଅକୀର୍ତ୍ତି ମିଳିବ । ଏ ଦୁର୍ବଳତା ପାଖ ଯାନା, ମୁଁ କହୁଛି । ଏ ତୋ ଭଳି ଲୋକର ଭାବ ନୁହେଁ । ଏ ଅଳ୍ପକ ଲୋକ କଥା । ଭାରତ ଧର୍ମର ଏ ବିପତ୍ତିକୁ ଗୃହାଁ । ଆର୍ଯ୍ୟଧର୍ମ ରଖ୍ । କର୍ତ୍ତବ୍ୟ କର୍ । ଉଠ୍ ଠିଆ ହୋ । ଶତ୍ରୁ ମାର୍ ।" (୨, ୨, ୩)

## ଅର୍ଜୁନ ବୁଝି, ବୁଝିଲେ ନାହିଁ—

ଅର୍ଜୁନ କିଛି ଯେ ସେ ଲୋକ ନୁହନ୍ତି, ସେ ଜଣେ ମହାବ୍ୟକ୍ତିତ୍ୱବାନ୍ ପୁରୁଷ । ଭାରତରେ ଯେତେବେଳେ ତାଙ୍କୁ ନ ଜାଣେ କିଏ ଧର୍ମଧାରଣା ତାଙ୍କଠାରୁ ଆଶା କରାଯାଏ । ଏହା ପୁଣି ତାଙ୍କୁ କୁହାଗଲା । ଫେର କହିଲେ କିଏ ? ନା, ଶ୍ରୀକୃଷ୍ଣ । ଶ୍ରୀକୃଷ୍ଣ ମହାପୁରୁଷ । ଅର୍ଜୁନ ତାଙ୍କ ସାଙ୍ଗ ହେଲେ ମଧ୍ୟ ତାଙ୍କ ବ୍ୟକ୍ତିତ୍ୱର ପ୍ରଭାବ ବୁଝିଥିଲେ । ଶ୍ରୀକୃଷ୍ଣ କହିବା ସଂଗେ ସଂଗେ ଅର୍ଜୁନଙ୍କର ଚେତା ପଶିଗଲା, ହୋସ୍ ଆସିଗଲା । ସେ ବୁଝିଲେ, ମୁଁ କାହା ଆଗେ କ'ଣ ଗୁଡ଼ାଏ କହୁଛି ? କୁଳକ୍ଷୟ, ବ୍ୟଭିଚାର କଥା କାହାକୁ ବୁଝାଉଛି ? ଇତରଲୋକକୁ ବୁଝାଇଲା ପରି କର୍ତ୍ତବ୍ୟ ଛାଡ଼ି ପିତୃ ପିଣ୍ଡପାଣି ପାଇବା କଥା କାହା ଆଗେ କହୁଛି ? ବାସ୍ତବିକ ଆର୍ଯ୍ୟଧର୍ମ ହିସାବରେ ମୋର ଏ ଯୁକ୍ତି ଏଇକ୍ଷଣି କରିବା ତ ଦରକାର ।

ଏପରି କାମନା ଓ ଲାଳସା ପଣି ଧର୍ମଧାରଣା ଭିନ୍ନ ହେଲାବେଳେ ତ କ୍ଷତ୍ରିୟ ଯୁଦ୍ଧକରି ଆର୍ଯ୍ୟଧର୍ମ ଠିକ୍ ରଖିବାର କଥା । ଲାଳସା-ମୋହରେ ପଡ଼ି ଯେ ଆର୍ଯ୍ୟଧର୍ମ ନାଶ କରିବାରେ ମାତିଛି, ସେଇ ତ ସମାଜର ଶତ୍ରୁ । ତାକୁଇ ମାରିବା ତ କ୍ଷତ୍ରିୟର କାମ । ଏହାହିଁ ତ ଧର୍ମର ( ଧର୍ମାନୁମୋଦିତ ) ଯୁଦ୍ଧ । ମୁଁ କାହାକୁ କଣ ଗୁଡ଼ାଏ କହିଗଲି ?"

## ଅର୍ଜୁନଙ୍କ ସଂନ୍ୟାସ ବୁଦ୍ଧି—

ଅର୍ଜୁନ ଟିକିଏ ଇତସ୍ତତଃ ହୋଇଗଲେ ସତ, କ୍ଲାନ୍ତ ହେଲେ ସତ, ବ୍ୟାକୁଳ ହେଲେ ସତ, ଗାଣ୍ଡୀବ ଧନୁ ଛାଡ଼ି ଦେଲେ ସତ, କିନ୍ତୁ ଯୁଦ୍ଧ କରିବାକୁ ଏତେ ବେଗେ ହାତ ଉଠିବ କିପରି ? ସେ ତ ଯଥାର୍ଥରେ ସ୍ୱଜନ ଦେଖି ବିବ୍ରତ ହୋଇ ଯାଇଥିଲେ । ତାଙ୍କୁ ପୁଣି ଏକ ବଡ଼ ଯୁକ୍ତି ଦିଶିଗଲା । ସେ କହିଲେ, "ସବୁ ହେଲା, ଆର୍ଯ୍ୟଧର୍ମ ରଖିବାକୁ ଯୁଦ୍ଧ କରିବା ହୁଏତ ଠିକ୍ । କିନ୍ତୁ ମତେ ଧର୍ମ ଶିଖାଇବା ଲୋକ—ମୋର ପିତାମହ ଭୀଷ୍ମ ଓ ଶିକ୍ଷାଗୁରୁ ଦ୍ରୋଣ ଯେ, ମୋ ସଙ୍ଗେ ଯୁଝିବାକୁ ଠିଆ ହୋଇଛନ୍ତି । ସେ ମତେ ଶର ମାରିଲେ ବି ମୁଁ କିପରି ମାରିବି ? ମୁଁ ତ ସର୍ବଥା ତାଙ୍କ ପାଦପୂଜା କରିବା ଲୋକ ( ୨.୪ ) । ସେ ତ ମୋର ଶତ୍ରୁ ହୋଇ ନ ପାରନ୍ତି । ତଥାପି ଯେବେ କହୁଛ, ତାଙ୍କ ମତି ବିଗିଡ଼ି ଯାଇଛି, ଦୁର୍ଯ୍ୟୋଧନର ଧନ ଖାଉଥିବାରୁ ତାଙ୍କ ଧର୍ମଧାରଣା ଖରାପ ହୋଇଯାଇଛି, ତେବେ ମୁଁ ବା ମାରିବି କାହିଁକି ? ତାଙ୍କୁ ମାରି କି ରାଜ୍ୟ ବା ଭୋଗ କରିବି ? ମତେ ସେ ରାଜ୍ୟ ତ କେବେ ଧର୍ମରାଜ୍ୟ ବୋଲି ସନ୍ତୋଷ ଦେବ ନାହିଁ । ସେ ଯେ ମୋର ଗୁରୁ; ତଥାପି ଯେବେ ମୋତେ ଆର୍ଯ୍ୟଧର୍ମ ରକ୍ଷା କରିବାକୁ ହେବ, ତେବେ ଆର୍ଯ୍ୟଧର୍ମରେ କ୍ଷତ୍ରିୟର ତ ସବୁ ସଂସାରକର୍ମ ଛାଡ଼ି ସନ୍ନ୍ୟାସୀ ହୋଇ ଭିକ୍ଷ ମାଗି ଖାଇବାର ବିଧି ଅଛି । ସେଥିରେ ତ ମୋର ଆର୍ଯ୍ୟଧର୍ମ ରକ୍ଷା ହେବ । ତେଣିକି ଯା ହେଉ । ମୁଁ କାହିଁକି ଗୁରୁହତ୍ୟା କରିବି ? କାହିଁକି ବା ଯାହାଙ୍କୁ ମାରି ବଞ୍ଚିବାକୁ ଇଚ୍ଛା ହେଉ ନାହିଁ, ତାଙ୍କୁ ମାରିବି ? କାହିଁକି ବା ଏପରି ଧର୍ମ ରକ୍ଷା କରିବାକୁ ଯାଇ ଚିରଜୀବନ ଶୋକରେ ପଡ଼ିବି ? (୨.୫, ୬) ଅବଶ୍ୟ ମୁଁ ଜାଣୁଛି, ଲୋଭୋପହତଚେତା (୧.୩୮) ବା ଲାଳସାରେ ହତବୁଦ୍ଧି ହୋଇଥିବା ଏଇ ଦୁର୍ଯ୍ୟୋଧନ-ପକ୍ଷୀୟମାନେ ଆର୍ଯ୍ୟଧର୍ମର ସ୍ଥିତି ନାଶ କରିବାରେ ଲାଗିଛନ୍ତି, ତଥାପି ମୋ ପାଇଁ ତ ଆର୍ଯ୍ୟଧର୍ମରେ ସନ୍ନ୍ୟାସ ପନ୍ଥା ଫିଟି ରହିଛି ? ଏବେ କଣ କହୁଛ ?

## ବୁଝାଇଦେବାକୁ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା—

ଅବଶ୍ୟ ଶ୍ରୀକୃଷ୍ଣଙ୍କ ମହାବ୍ୟକ୍ତିତ୍ୱର ପ୍ରଭାବରେ ଅର୍ଜୁନ ଟିକିଏ ବ୍ୟତିବ୍ୟସ୍ତ ହୋଇ ଯାଇଥିଲେ । ଏଥର ବଡ଼ ଯୁକ୍ତିଟାଏ ଦେଖାଇଲେ ସତ, କିନ୍ତୁ ଆଉ "ଯୁଦ୍ଧ ଛାଡ଼ି ଦେଉଛି" ବୋଲି ଏଥର କାଟି କରି କଥାଟି କହି ଦବାକୁ ସାହସ ହେଲା ନାହିଁ ।

ସେ ଟିକିଏ ନରମ ହୋଇ ଏଥର କହିଲେ, ଏବେ ମୁଁ ଯୁଝିବି ନାହିଁ (୨·୯) । ହୁଏ ତ 'କୃପା'ରେ ମୋର ସମ୍ମୋହ ଆସିଛି, କାଣ୍ଡଜ୍ଞାନ ତୁଟିଯାଇଛି, ଯୁଦ୍ଧରେ ଜିଣି ଏ ରାଜ୍ୟ କ'ଣ, ସ୍ୱର୍ଗରେ ଇନ୍ଦ୍ରରାଜ୍ୟ ପାଇଲେ ବି ଏ ଶୋକ ଯେ ମୋର ଉପରୁ ଯିବ, ତା ତ ବୁଝି ପାରୁ ନାହିଁ । ଜାଣେ, ତୁମେଇ ଏଠାରେ ଶରଣ । ମୁଁ ତୁମକୁ ଅନୁରୋଧ କରୁଛି, ତମର ଶିଷ୍ୟ ହେବି (ତମ କଥା ମାନିବି) ମତେ ବୁଝାଇ ଦିଅ ।" (୨·୭, ୮) ।

## ଚେତାଇ ଦେବାରେ ମୋହ ତୁଟିଲା ନାହିଁ—

ଶ୍ରୀକୃଷ୍ଣ ଅର୍ଜୁନଙ୍କ ରାଗକୁ 'ଅନାର୍ଯ୍ୟଜୁଷ୍ଟ' କହିବାରେ ସ୍ପଷ୍ଟ ବୁଝାଯାଉଛି, ଶ୍ରୀକୃଷ୍ଣ ଆର୍ଯ୍ୟ ଆଚରଣର ପ୍ରତିଷ୍ଠା ପାଇଁ ବ୍ୟାକୁଳ । ଲୋଭୋପହତ କୌରବମାନଙ୍କୁ ଶାସ୍ତି ନ ଦେଲେ ଆର୍ଯ୍ୟଧର୍ମ ରହୁନାହିଁ । ଅର୍ଜୁନଙ୍କୁ ସେକଥା କହିଲେ । ମାତ୍ର ଏବେ ଦେଖିଲେ, କଥାଟା ଏଡ଼େ ସହଜ ନୁହେଁ । ଏକ ଦିଗରେ ଅର୍ଜୁନ ହୁଏତ ଭାବୁଛନ୍ତି, ଦୁର୍ଯ୍ୟୋଧନ ତ ଅର୍ଯ୍ୟଧର୍ମର ଉତ୍ତରାଧିକାରୀ । ସେ ଭୋଗଲୋଭରେ ନିଜ କର୍ତ୍ତବ୍ୟ ଦେଖୁଛନ୍ତି, ସେ କଣ ଏପରି ଅନ୍ୟାୟ କରୁଚନ୍ତି ଯେ, ଅର୍ଜୁନ ନିଜେ ଏତେ ଭାଇ କୁଟୁମ୍ବ ମାରି ଆର୍ଯ୍ୟମାନଙ୍କ ବଂଶନାଶ କରିବେ ? ଯଦି ଏଥିରେ କିଛି ଅନ୍ୟାୟ ଥାଏ, ତେବେ ଏ ଅନ୍ୟାୟଠାରୁ ବଂଶ ନାଶ କରିବା ଅନ୍ୟାୟଟା ଯେ ବଡ଼, ହୁଏତ ଅର୍ଜୁନଙ୍କର ଧାରଣା ହୋଇଥିବ । କାରଣ ସ୍ୱର୍ଗ ଓ ଅନ୍ୟାନ୍ୟ ଭୋଗାଦି କାମନାରେ ତ ଲୋକେ ଯଜ୍ଞକ୍ରିୟାମାନ କରନ୍ତି । ଯୁଧିଷ୍ଠିର ତ ନିଜେ ରାଜସୂୟ ପୁଣି କରିଥିଲେ । ଯଜ୍ଞ କଣ ଆର୍ଯ୍ୟଧର୍ମ ନୁହେଁ ? ତେବେ ଦୁର୍ଯ୍ୟୋଧନର ଏ ରାଜ୍ୟକାମନା ଲାଗି ଏତେ ବ୍ୟସ୍ତ ହେବାର କଣ ଅଛି ? ଅନାର୍ଯ୍ୟର ଦୁର୍ବଳତା, ଅକୀର୍ତ୍ତି ପ୍ରଭୃତି କଥା କହି ଦେବାରୁ ହୁଏତ କ୍ଷତ୍ରିୟ ବୀର ଅର୍ଜୁନଙ୍କର ହଠାତ୍ ସ୍ୱଜନ ପ୍ରତି କୃପା ଟିକିଏ ମୂହୂର୍ତ୍ତକ ପାଇଁ ତୁଟିଗଲା । ପୁଣି ତ ଅନ୍ୟ ଆଡ଼ୁ ଅର୍ଜୁନ ସେଇ ଶୋକର କଥା ଆଣି ପକାଇଲେ । ତେବେ ସେ ମୋହ ବା ସମ୍ପୂର୍ଣ୍ଣ ତୁଟିଲା କାହିଁ ?

## ଶ୍ରୀକୃଷ୍ଣଙ୍କର ଏଇ ଶୋକରେ ସଂନ୍ୟାସ କଥାକୁ ଅପସନ୍ଦ—

ଯେ ଯା ହଉ ଏ ଦୁର୍ବଳତା ଓ ଅକୀର୍ତ୍ତି ଉପରେ ଜୋର ଦେଇ ଶ୍ରୀକୃଷ୍ଣ ହୁଏତ ପୁଣି ନିଜର ବ୍ୟକ୍ତିତ୍ୱ ବଳରେ ଅର୍ଜୁନଂକୁ ଯୁଦ୍ଧରେ ମତାଇ ଦେଇଥାନ୍ତେ । ମାତ୍ର ଅନ୍ୟ ଆଡ଼ୁ ଅର୍ଜୁନ ପୁଣି ସେଇ ଅର୍ଯ୍ୟଧର୍ମର ଏକ ପନ୍ଥା ଆଣି ଥୋଇଲେ । କର୍ମ ଛାଡ଼ି ସଂନ୍ୟାସ ନେଇ ଭିକ୍ଷ ମାଗି ବୁଲିବା ତ ଆର୍ଯ୍ୟପନ୍ଥା ବୋଲି ପୁଣି ପଚାରିଲେ । ତା ନ କରି ଅର୍ଜୁନ ସ୍ୱଜନ ମାରି—ଗୁରୁହତ୍ୟା କରି—ଶୋକରେ ପଡ଼ିବେ କାହିଁକି ? ଏଥିରେ ଅବଶ୍ୟ ଘୋର ଦୁର୍ବଳତା ଘୋଡ଼ାଇ ହୋଇଅଛି । କାରଣ ସଂନ୍ୟାସ ଏଠାରେ ଶୋକରୁ ତ୍ରାଣ ପାଇବାର ପନ୍ଥା—ଏହା ସ୍ପଷ୍ଟ ଜଣାପଡ଼ୁଛି । ସଂନ୍ୟାସ

ନ କରି ମୁଁ କାହିଁକି ରାଜ୍ୟଲୋଭରେ ଏଡ଼େ ବଡ଼ ଇନ୍ଦ୍ରିୟତାପନ ଶୋକରେ ପଡ଼ିବି (୨.୮) ? ଅର୍ଜୁନ ଏହା ସ୍ପଷ୍ଟ କହୁଚନ୍ତି । ଶୋକ ଏଡ଼ିବାର ପ୍ରେରଣାରେ କର୍ମତ୍ୟାଗସନ୍ୟାସ ପରି ପ୍ରଚଳିତ ଓ ପ୍ରତିଷ୍ଠିତ ପନ୍ଥାର ଯୁକ୍ତି ଦେଖି ଶ୍ରୀକୃଷ୍ଣ ହସି-ପକାଇ ଆଗ ଶୋକନାଶ କଥା କହି ବୁଝାଇ ବସିଲେ । ଶ୍ରୀକୃଷ୍ଣ ହସି ହସି କହି ବସିଲେ—ଅର୍ଜୁନ, ବଡ଼ ଜାଣିବା ଲୋକ ପରି ସଂନ୍ୟାସ ଯୁକ୍ତି ଥୋଉଚୁ । ମାତ୍ର ଶୋକ ଏଡ଼ିବାକୁ ସନ୍ୟାସ କରିବା ପାଇଁ ବାହାରିଚୁ । ଯେଉଁମାନେ ବା ଏପରି କର୍ମ ଛାଡ଼ି ସନ୍ୟାସ କରନ୍ତି, ସେମାନେ କଣ ଏଇପରି କରନ୍ତି ? ସେମାନଙ୍କର କଣ ମନୁଷ୍ୟ ମଲା ଜୀଇଲାରେ ଭ୍ରୂଭଙ୍ଗୀ ଥାଏ ? ( ୨. ୧୧ )

## ମରିବାରେ ଶୋକ ନାଇ—ଆତ୍ମା ନିତ୍ୟ, ପୁଣି ଶୋକରେ କର୍ମ ଛାଡ଼ିଲେ ଅକୀର୍ତ୍ତି— •

ଏଇଠାରୁ ମନୁଷ୍ୟ ମରିଗଲେ ଯେ ଶୋକ କରିବାର କିଛି ନାହିଁ ଆତ୍ମାହିଁ ଯେ ଏ ଦେହରେ ଯଥାର୍ଥ ଦେହୀ, ଦେହନାଶରେ ଆତ୍ମାର କ୍ଷୟ ବୃଦ୍ଧି ନାହିଁ, କେହି ଯେ ଯଥାର୍ଥରେ ମରନ୍ତି ନାହିଁ, ଆତ୍ମାର ଦେହାନ୍ତର ମାତ୍ର ହୁଏ, ଇନ୍ଦ୍ରିୟସ୍ପର୍ଶଦ୍ୱାରେ ଯେଉଁ ସୁଖଦୁଃଖ ହୁଏ, ସେଥିରେ ଆତ୍ମା ଲିପ୍ତ ନୁହେ, ଏହା ବୁଝି ଯେ ସୁଖଦୁଃଖରେ ପଡ଼େ ନାହିଁ, ସେଇ ଏକା ଠିକ୍ ମନୁଷ୍ୟ । ଶରୀର ଜନ୍ମୁଚି ମରୁଚି, ଆତ୍ମା ଦେହ ଛାଡ଼ି ଦେହ ଧରୁଚି, ଏଥିରେ ମରିବା ମାରିବାରେ ଶୋକ କରିବାର ନାହିଁ, ଯେ ଏଇପରି ବୁଝେ ସେ ବିନା ସଂନ୍ୟାସ କରି ମୁକ୍ତିପାଏ । ଶୋକକୁ ଡରି ସଂନ୍ୟାସ କରିବା ଲୋକ ସଂନ୍ୟାସ କରେ ନାହିଁ । ଅତଏବ ସଂନ୍ୟାସ ପନ୍ଥା ନୁହେ । ଶୋକ କରିବା ବି ମନୁଷ୍ୟତା ନୁହେ । (୨.୧୨-୩୧) ଏହା ଠିକ ଠିକ କହିଦେଇ ସାରି, ପୁଣି କହିଲେ, "ଏଇପରି ଶୋକକୁ ଡରି ଯେଉଁ ସଂନ୍ୟାସ ସେ ଆର୍ଯ୍ୟଧର୍ମ ନୁହେ କି କୌଣସି ଧର୍ମ ନୁହେ । ଏଇ ଶୋକ ଏଡ଼ି ଦେଇ ନିଜର କର୍ତ୍ତବ୍ୟ କରିବାହିଁ 'ସ୍ୱଧର୍ମ' । ସେଇ ସ୍ୱଧର୍ମ ଆଗରେ ପଡ଼ିଚି । ଧର୍ମଯୁଦ୍ଧ ହିଁ କ୍ଷତ୍ରିୟର ସ୍ୱଧର୍ମ । ଆର୍ଯ୍ୟଧର୍ମର ରକ୍ଷା ନିମନ୍ତେ ଏ ଯୁଦ୍ଧ କରିବା ତୋର ଦରକାର । ଏଥିକି ଡରିବା ଠିକ୍ ନୁହେ (୨.୩୧) । ଏଥିରେ ଆଉ କିଛି ହେଉ ନ ହେଉ ଖାଲି ଏଇ ଯୁଦ୍ଧ କଲେ ମଧ୍ୟ ସ୍ୱର୍ଗଲାଭ ହେବ । ସବୁ କ୍ଷତ୍ରିୟଙ୍କୁ ପୁଣି ଏ ସୁବିଧା ମିଳେ ନାହିଁ । ଫେର ଏ 'ଧର୍ମସଂଗ୍ରାମ' ନ କଲେ, 'ସ୍ୱଧର୍ମ' ଯିବ, କୀର୍ତ୍ତି ବି ଯିବ । ଲୋକେ ତୋର ଅକୀର୍ତ୍ତି ଗାଇ ବୁଲିବେ । ତୋ ପରି ବ୍ୟକ୍ତିତ୍ୱବାନ୍ ସ୍ୱଧର୍ମଧାରଣାନିଷ୍ଠ ଲୋକ ଯେ ଶୋକକୁ ଡରି ସ୍ୱଧର୍ମ ଛାଡ଼ିଦେଲା, ଏହା କେହି ବୁଝିବେ ନାହିଁ, ଅର୍ଜୁନ ପରି ଆର୍ଯ୍ୟଧର୍ମ ସ୍ୱଧର୍ମନିଷ୍ଠ ବୀର ଯୁଦ୍ଧରେ ଅନିବାର୍ଯ୍ୟ ଲୋକନାଶ ଓ ତଜ୍ଜନିତ ଶୋକରେ ସ୍ୱଧର୍ମ ଛାଡ଼ିଲା, ଏହା କେହି ବିଶ୍ୱାସ କରିବେ ନାହିଁ । ବୋଲିବେ ଅର୍ଜୁନ ଯୁଦ୍ଧକୁ ଡରିଗଲା । ସଂସାରରେ ଏ ନିନ୍ଦା ବା କାହିଁକି ମୁଣ୍ଡାଇବୁ ? ଆଉ ସବୁ କଥା

ଗ୍ଭଡ଼ିଦେଲେ ବ, ଏ ଧର୍ମଯୁଦ୍ଧରେ ମଲେ, ଆର୍ଯ୍ୟଧର୍ମ ରକ୍ଷା କର୍ବାକୁ ଯାଇ ମରବୁ, ସ୍ୱର୍ଗକୁ ଯିବୁ, ଜିଣିଲେ ଧର୍ମରାଜ୍ୟ ଭୋଗିବୁ, ତେବେ ଆଉ 'ଦୋଦୋ ପଞ୍ଝା' କାହିଁକ ? ଯୁଦ୍ଧ କରବୁ ବୋଲି ଠିକ୍ କର ଠିଆ ହୋ ( ୨.୩୨-୩୭ ) ।

## ସୁଖଦୁଃଖାଦିରେ ସମତ୍ୱହିଁ ସଂନ୍ୟାସ ବୁଦ୍ଧି—

"ତେବେ ତୁ ହୁଏତ କହିବୁ, କୀର୍ତ୍ତି ଅକୀର୍ତ୍ତି ଅଲଗା କଥା । ଅକୀର୍ତ୍ତି ହେଲେ ହବ । ସନ୍ୟାସ କରିବାକୁ ଯେ ବସିଛ, ତାର ଆଉ କୀର୍ତ୍ତି କଣ, ପୁଣି ଅକୀର୍ତ୍ତି କଣ ? ତେବେ ଶୋକକୁ ଡର ଆପଣା ଲୋକଙ୍କୁ 'କୃପା' କର ସ୍ୱଧର୍ମ ଗ୍ଭଡ଼ିଦେଇ ପଳାଇବାରେ ବା କ ସନ୍ୟାସ ? ଏ ସନ୍ୟାସ ନୁହେ, ସମୋହ । ଏହା ବୁଝି ଦେଖ୍ । କୀର୍ତ୍ତି ଅକୀର୍ତ୍ତିରେ ଯେବେ କିଛି ନାହିଁ, ସନ୍ୟାସର ଯେବେ ଏହି ହିଁ ହେଲା ସାଧନା, ତେବେ ଭଲ କଥା; ଆଉ ସ୍ୱଜନ-ଲାଭରେ ସୁଖ କଣ, ସ୍ୱଜନ ନାଶରେ ଦୁଃଖ କଣ ? ଆଉ ଲାଭକ୍ଷତିରେ ବା କଣ ଅଛି, ଜିଣିଲେ ବା ହାରିଲେ କଅଣ ବା ହୋଇ-ଯାଉଛ ? ଏହି ବୁଦ୍ଧି ତ ସନ୍ୟାସଲକ୍ଷଣ ? ଏହି ବୁଦ୍ଧି ଧର ତେବେ ଯୁଦ୍ଧରେ ଲଗିଯା । ଏହି ବୁଦ୍ଧି ଠିକ୍ ଥିଲେ ଆଉ ପାପ ଛୁଇଁବ ନାହିଁ । ଏହି ବୁଦ୍ଧିରେ ମାଇଲେ ବ ଗୁରୁହତ୍ୟା ନାହିଁ କ ମଲେ ବ ଆତ୍ମହତ୍ୟା ନାହିଁ । ଆଉ ସନ୍ଦେହ କଣ ରହିଲା ?" ( ୨.୩୮ )

## ସଂନ୍ୟାସ ବୁଦ୍ଧିରେ 'କର୍ମ-ଯୋଗ'—

"ତେବେ ତୁ ଅବା ବୁଝିବୁ ଥିବୁ, କର୍ମରେ ତ କୀର୍ତ୍ତି ଅକୀର୍ତ୍ତି; ସୁଖ ଦୁଃଖ, ଲାଭ କ୍ଷତି, ଜୟ ପରାଜୟ ସବୁ ଲଗିରହିଛ । ପୁଣି ଅକୀର୍ତ୍ତି ଗ୍ଭଡ଼ିବାକୁ ଯାଇ ତ କୀର୍ତ୍ତି ପାଇଁ କର୍ମ ଧରିବ; ଏଥିରେ ପୁଣି ସୁଖଦୁଃଖାଦି ଗ୍ଭଡ଼ିବ କପରି ? କର୍ମ ଗ୍ଭଡ଼ି ସନ୍ୟାସ କଲେ ସିନା କର୍ମ ସାଙ୍ଗେ ସୁଖଦୁଃଖାଦି ସବୁ ତୁଟିଯିବ; କର୍ମରେ ଲଗିଲେ ସେସବୁ ତୁଟିବ କପରି ? ସତ କଥା । ଆତ୍ମାର ଯଥାର୍ଥ ଜ୍ଞାନ ଆସିଗଲେ, ସେ ଜ୍ଞାନରେ ବୁଦ୍ଧି ଠିକ୍ ରହିଲେ (ସାଂଖ୍ୟ ବା ଜ୍ଞାନରେ ବୁଦ୍ଧି ବସିଲେ) କପରି ଶୋକଦୁଃଖାଦି ତୁଟିଯାଏ, ସେତକ ମାତ୍ର କହିଦେଇ 'ସ୍ୱଧର୍ମରେ ଲଗିଯା ବୋଲି ମୁଁ କହିଲି । ସେହି ବୁଦ୍ଧିରେ ଠିକ୍ ରହି କପରି ସ୍ୱଧର୍ମ ସାଧନା କରିବାକୁ ହୁଏ (ଯୋଗରେ ସେଇ ବୁଦ୍ଧି କପରି ହୁଏ), ତା ଏବେ କହୁଛ, ଶୁଣ । ଏହି ବୁଦ୍ଧିରେ ଯୋଗ ବା ସ୍ୱଧର୍ମ-ସାଧନା କଲେହିଁ, କର୍ମ ସଙ୍ଗେ ଯେଉଁ ସୁଖଦୁଃଖାଦି ବନ୍ଧନ ଅଛି, ସେସବୁ ଗ୍ଭଡ଼ି ହୁଏ ।"
( ୨.୩୯ )

ଏଠାରେ କିନ୍ତୁ ଭଗବାନ ଶ୍ରୀକୃଷ୍ଣ ସ୍ପଷ୍ଟ କରି କହିଲେ ନାହିଁ ଯେ କର୍ମ ଗ୍ଭଡ଼ି, ସନ୍ୟାସ କରିବା ଆର୍ଯ୍ୟଧର୍ମର ପ୍ରକୃଷ୍ଟ ପନ୍ଥା ନୁହେ । ସନ୍ୟାସ-ବୁଦ୍ଧିରେ ସ୍ୱଧର୍ମ କରିଯିବାକୁ ହେବ, ଏତିକ ମାତ୍ର କହି, କପରି ସେହି ସ୍ୱଧର୍ମ କରିଯିବାକୁ ହେବ,

ଏହାହିଁ ବୁଝାଇବାରେ ଗ୍ଲେଲେ । ସନ୍ୟାସ-ବୁଦ୍ଧି ଠିକ୍ ହୋଇଯିବା ସ୍ଥଳେ ସ୍ୱଧର୍ମ ଯେ ଆଉ କାହିଁକି କରିବାକୁ ହେବ, ଆତ୍ମାର ନିତ୍ୟତ୍ୱରେ ବୁଦ୍ଧି ବସିଲା ପରେ ସ୍ୱଧର୍ମ ଯେ କାହିଁକି ଆଉ ଲୋଡ଼ା ପଡ଼ିବ, ପୁଣି ସେହି ନିତ୍ୟବୁଦ୍ଧି (ବ୍ରାହ୍ମୀସ୍ଥିତି—୨.୭୨) ରେ ଠିକ୍ ରହି ଅବିରତ ସ୍ୱଧର୍ମସାଧନା କରିବାହିଁ ଯେ ଆର୍ଯ୍ୟଧର୍ମର ମୁଖ୍ୟ ପଂଥା; ଏସବୁ ଏଠାରେ କିଛି କହିଲେ ନାହିଁ । ଭଗବାନ୍ ବିଗ୍ଚରିଲେ, ନିତ୍ୟ ସ୍ୱଧର୍ମ ସାଧନାରେ ଅର୍ଜ୍ଜୁନଂକର ବିଶ୍ୱାସ ସ୍ଥିର ଅଛି, ଶୋକରେ ପଡ଼ିବା ଭୟରେ ସେ ତା ଛାଡ଼ି ସନ୍ୟାସ ନେବାକୁ ବାହାରିଚଂତି, ସେହି ଶୋକଦୁଃଖର ଭାବ ଭୁଝାଇ ଦେଲେ, ଅର୍ଜ୍ଜୁନଂକର ଆଉ କିଛି ଅସୁବିଧା ହେବନାହିଁ । ସେଥିପାଇଁ ଜ୍ଞାନରେ ବୁଦ୍ଧି କିପରି ଜଗତ ଜଂଜାଳ ଓ ଇଂଦ୍ରିୟଭୋଗରୁ ଉପରକୁ ଉଠି ସ୍ଥିର ହୁଏ, ଏତିକି କହିଦେଇ, ସେଇ ବୁଦ୍ଧିରେ କିପରି (କାହିଁକି—ନୁହେ) କର୍ମରେ ଲାଗିବାକୁ ହୁଏ, ତା ବୁଝାଇବାକୁ ବସିଲେ ।

ତଥାପି ମୂଳଚନାରେ ଭଗବାନ୍ ପ୍ରଥମରୁ ଆରମ୍ଭ କଲେ—

## କାମନା ଛାଡ଼ି ଆଦର୍ଶରେ ବୁଦ୍ଧି ଠିକ୍ ରଖିବା—

"ଏ ବୁଦ୍ଧିରେ ଠିକ୍ ରହି କର୍ମ ଆରଂଭ କଲେ, ଆଉ କର୍ମ ଛାଡ଼ିବା ଦରକାର ହୁଏ ନାହିଁ, କାରଣ, ଏଥିରେ ବିଘ୍ନ ନାହିଁ । ବୁଦ୍ଧି ବ୍ରହ୍ମରେ ଠିକ୍ ରଖି କର୍ମ ଆରଂଭ କଲେ, ଆଉ ବୁଦ୍ଧି କାମନାରେ ପଡ଼ି ଖସିଯାଏ ନାହିଁ । ଏ ସାଧନାରୁ ଅଳ୍ପ କଲେ ମଧ୍ୟ ଅର୍ଥାତ୍ ମନୁଷ୍ୟ ତାର ଚରମ ଓ ସ୍ଥିର ଆଦର୍ଶ ବ୍ରହ୍ମକୁ ନ ଉଠି ମଧ୍ୟ, 'ମତେ ଆର୍ଯ୍ୟଧର୍ମ ରଖିବାକୁ ହେବ, ଦେଶର ଦଶର କାମ କରିବାକୁ ହେବ', ଏପରି ବିସ୍ତୀର୍ଣ୍ଣରୁ ବିସ୍ତୀର୍ଣ୍ଣତର ଆଦର୍ଶରେ ବୁଦ୍ଧି ସ୍ଥିର ରଖି କାମ କରି ବସିଲେ ମଧ୍ୟ ଏହା ସଙ୍କୀର୍ଣ୍ଣ ସ୍ୱାର୍ଥ-ଜନିତ—କାମନାଜନିତ—ଧର୍ମ ଓ ସମାଜର ଘୋର ବିପ୍ଳବ, ବିଶୃଂଖଳା ଓ ଧ୍ୱଂସମୂଳକ ମହାଭୟରୁ ତ୍ରାଣ କରେ (୨.୪୦) । କାରଣ ସଙ୍କୀର୍ଣ୍ଣ ସ୍ୱାର୍ଥକୁ ଉଠି ମନୁଷ୍ୟ ସମସ୍ତ ବିଶ୍ୱରେ ବ୍ୟସ୍ତ ଓ ନିତ୍ୟ ବ୍ରହ୍ମ-ଧାରଣାଠାରୁ ଯେ କୌଣସି ଜନସଙ୍ଘର ମଂଗଳ ସେବା ପର୍ଯ୍ୟନ୍ତ, ଯେ କୌଣସି ଆଦର୍ଶକୁ ନିଶ୍ଚୟ କରି ଧରି ବୁଦ୍ଧିକୁ ସେଇଥିରେ ସ୍ଥିର ରଖି ସେଇ ନିଶ୍ଚିତ ବୁଦ୍ଧିରେ ନିଜର କର୍ତ୍ତବ୍ୟ ଠିକ୍ କରି ସେଇ କର୍ତ୍ତବ୍ୟର ପଂଥା ଧରିଲେ ତାର ଭୋଗ କାମନାଜନିତ ସ୍ୱାର୍ଥ ସଂଯତ ହୁଏ ଓ ସମସ୍ତ କର୍ମ ସେଇ ଆଦର୍ଶ ଆଡ଼କୁ ଏକମୁଖୀ ହୁଏ । ଅନ୍ୟଥା, ଏପରି ନିଶ୍ଚିତ ଆଦର୍ଶ ନ ଧରି 'ମୁଁ ଯାହା ପାଇବି, ତା ଭୋଗ କରିବି; ମୋର ପୁତ୍ର, ପଶୁ, ଦାସଦାସୀ ହେବେ, ମୋ କଥାରେ ସମସ୍ତେ ବଶୀଭୂତ ହେବେ'—ପ୍ରଭୃତି ସଙ୍କୀର୍ଣ୍ଣ ସ୍ୱାର୍ଥବୁଦ୍ଧିଜନିତ କାମନାରେ ମାତିଲେ, ବୁଦ୍ଧି କୌଣସି ଆଦର୍ଶରେ ସ୍ଥିର ରହେ ନାହିଁ—ଏଆଡ଼େ, ସେଆଡ଼େ, ଚାରିଆଡ଼େ ଧାଉଁଥାଏ ।" (୨.୪୧)

ଏଇଠାରେ ଭଗବାନ୍ ମୂଳଚନାରେ କହିଦେଲେ, ଏହିପରି ନିଜର ଭୋଗ ପାଇଁ ବାସନା-ବୁଦ୍ଧିମାନ ଧରି କାମନାରେ ମାତିଲେ ତାରି 'ଲୋକଭୋଗସନ୍ତପ୍ତ' ହୁଏ । ଏହା

ଆର୍ଯ୍ୟଧର୍ମ ନୁହେଁ । ଏଥିରେ ଆର୍ଯ୍ୟଧର୍ମର 'ସ୍ୱଧର୍ମ' ଧାରଣା ରହିପାରେ ନା । ଦୁର୍ଯ୍ୟୋଧନ ପ୍ରଭୃତି 'ରାଜ୍ୟ-ସୁଖ-ଲୋଭ' ବାସନାରେ ମାତି ଏହି ଆର୍ଯ୍ୟଧର୍ମ ବୁଡ଼ାଇବାକୁ ବସିଛନ୍ତି । ତାଙ୍କୁ ମାରିବା ଉଚିତ ।

## ଯଜ୍ଞର କ୍ରିୟାକାଣ୍ଡ ଓ ବାସନା—ଠିକ୍ ନୁହେ—

ମାତ୍ର ଏଇ ଭୋଗବାସନା ଯେ ଆର୍ଯ୍ୟସମାଜରେ ନ ଥିଲା, ନୁହେଁ । କିନ୍ତୁ ଆର୍ଯ୍ୟ-ଧର୍ମୀ ଯଜ୍ଞନାମରେ ବହୁ କ୍ରିୟାକାଣ୍ଡ, ଆଡ଼ମ୍ବର ଓ ପଶୁବଳି ସହିତ ଇନ୍ଦ୍ରାଦି ଦେବତାଙ୍କୁ ପୂଜା କରି, ସେଇ ପୂଜାରେ ଇହକାଳରେ ଏଇ ଯଜ୍ଞକର୍ମର ଫଳ ସ୍ୱରୂପ ପୁତ୍ର, ପଶୁ ପ୍ରଭୃତି ନାନା ଭୋଗ ଓ ଐଶ୍ୱର୍ଯ୍ୟ ପୁଣି ପରକାଳରେ ସ୍ୱର୍ଗରେ ରମ୍ଭା, ଉର୍ବଶୀ, ନନ୍ଦନ ପାରିଜାତ ପ୍ରଭୃତିର ଭୋଗ କାମନା କରୁଥିଲେ । ସମାଜରେ ଏଇସବୁ କାମନାଜନିତ କର୍ମ ବା କାମ୍ୟକର୍ମର ଘୋର ପ୍ରତିପତ୍ତି ମଧ୍ୟ ଥିଲା । ପରେ ଭଗବାନ କହିବେ ଏଇସବୁ କାମ୍ୟକର୍ମ ଯଥାର୍ଥ ଯଜ୍ଞକର୍ମ ନୁହେ । ସେଇ ସମ୍ପର୍କରେ ଆର୍ଯ୍ୟ-ଧର୍ମର ଯଜ୍ଞ କର୍ମ କଅଣ, ତା ମଧ୍ୟ ବୁଝାଇବେ । (୩.୯-୧୬; ୪.୨୩-୩୩; ୧୭.୪; ୧୮.୫) । ମାତ୍ର ଆର୍ଯ୍ୟଧର୍ମନିଷ୍ଠ ଅର୍ଜୁନଙ୍କୁ ସେସବୁ ବୁଝାଇବା ଦରକାର ପଡ଼ିବ ବୋଲି ଏବେ ହୁଏତ ଜଣା ନାହିଁ । ଏଇଠାରେ କିନ୍ତୁ ଭଗବାନ୍ ସମସ୍ତ ସନ୍ଦେହ ଛିଣ୍ଡାଇ, କାମନାମୂଳକ ଇନ୍ଦ୍ରାଦି ପୂଜାରୂପ ଯଜ୍ଞ ଯେ ଆର୍ଯ୍ୟଧର୍ମମୂଳକ ଯଥାର୍ଥ କର୍ମ ନୁହେ, ଫଳାର୍ଥେ ଏଇ ଇନ୍ଦ୍ରାଦି ପୂଜା ଯେ ଆର୍ଯ୍ୟଧର୍ମଗତ ଯଜ୍ଞର ଅନର୍ଥ ଓ ଅପବ୍ୟବହାର, ଏହା ସ୍ପଷ୍ଟ କହିଦେଲେ । କହିଦେଲେ—"ଏଇ କାମନାସେବୀ ଯାଜ୍ଞିକମାନେ, ଭୋଗ-ଲୋଭ ଦେଖାଇ ଏଇ ଯଜ୍ଞର ପ୍ରଶଂସା କରି ଲୋକଙ୍କ ମନ ଭୁଲାନ୍ତି ସତ; ମାତ୍ର ଏମାନେ ଭୋଗଲୋଭରେ ମାତିଥାନ୍ତି, ସେଇଥିରେ ଆତ୍ମାକୁ ଢାଳିଦେଇ କାମନା ପଛେ ପଛେ ଦୌଡ଼ୁଥାନ୍ତି । ଏମାନଙ୍କର ମନୁଷ୍ୟତାର କୌଣସି ସ୍ଥିର ଆଦର୍ଶରେ ବୁଦ୍ଧି ବସେ ନାହିଁ (୨.୪୨-୪୪); ଏମାନଙ୍କ କ୍ରିୟା ଆର୍ଯ୍ୟ-ଧର୍ମ ନାମରେ ହେଲେହେଁ ଆର୍ଯ୍ୟଧର୍ମର ଅପଳାପ ମାତ୍ର । ଏମାନେ ଭ୍ରଷ୍ଟ ଓ ଭ୍ରଷ୍ଟାଚାରୀ । ଆର୍ଯ୍ୟଧର୍ମର ଯଥାର୍ଥ ପ୍ରକାଶକ ଓ ପ୍ରତିପାଦକ ବେଦ ନାମରେ ଏପରି ଦୁରାଚାର ଲାଳସାପର ଅପକର୍ମରେ ମାତିବା ଯାହା, 'ମୋ ପୁଅ, ମୋ ମାଇପ, ମୋ ଘର, ମୋ ସମ୍ପତ୍ତି, ମୋ ଭୋଗ, ମୋ ଐଶ୍ୱର୍ଯ୍ୟ'—ପ୍ରଭୃତି ବୋଲି ସଙ୍କୀର୍ଣ୍ଣ ସ୍ୱାର୍ଥ ଧରି ଉତ୍ତେଜିତ କେବଳ ଜୀବ-ଧର୍ମରେ 'ଆହାର-ନିଦ୍ରା-ଭୟ-ମୈଥୁନ' ମାତ୍ର ଘେନି ସଂସାରରେ ଘାଣ୍ଟି ହେବା ସେଇଆ । ତୁ ଏ ସବୁ କାମନା ଓ ସଂସାରରେ ଘାଣ୍ଟି ହବା ବୁଦ୍ଧିରେ ପଡ଼ ନା । ଏଥିରେ ପଡ଼ିଲେ ଲୋକେ ସର୍ବଦା ସୁଖଦୁଃଖାଦି (ଦ୍ୱନ୍ଦ୍ୱରେ ଘାଣ୍ଟି ହୁଏ, ନ ପାଇବାଯାଏ 'ପାଇବି', 'ପାଇବି' ବୋଲି ବ୍ୟାକୁଳ ହେଉଥାଏ; ପାଇଲେ ବି ସମ୍ଭାଳିବା ପାଇଁ ପୁଣି ସେଇ ବ୍ୟାକୁଳତା । ପ୍ରକୃତି ବା ଦେହର ସ୍ୱଭାବରେ ସୃଷ୍ଟି ହେବାରୁ ସେ ସତ୍ତ୍ୱ, ରଜ, ତମ ଏଇ ତିନି ଗୁଣ ପ୍ରଭାବରେ ଭଲ, ମଧ୍ୟମ, ମନ୍ଦ ସବୁ

କାର୍ଯ୍ୟରେ ମାତିବାକୁ ଯାଇ ଖାଲି ଏପାଖ ସେପାଖ ହେଉଥାଏ; ଆଦର୍ଶ ଠିକ୍ ନ ଥିବାରୁ ସବୁବେଳେ ଭୁଲ କରୁଥାଏ; ପୁଣି ସଂଶୋଧନ କରିବାକୁ ଯାଉଥାଏ; ପୁଣି ଭୁଲ୍ କରୁଥାଏ; କେବେ ଭ୍ରମ ପ୍ରମାଦରୁ ରକ୍ଷା ପାଏ ନାହିଁ; ସେ କେବେ 'ଆତ୍ମବାନ୍' ହୁଏ ନାହିଁ, ଅର୍ଥାତ୍ ଆତ୍ମାର ଆଦର୍ଶରେ ଚିତ୍ତ ସ୍ଥିର ରଖି ଭ୍ରାନ୍ତିହୀନ ହୋଇ ନିଷ୍ଠିତ ବୁଦ୍ଧିରେ କାର୍ଯ୍ୟ କରିପାରେ ନାହିଁ । ତୁ ଆତ୍ମବାନ୍ ହୋଇ ବା ଆଦର୍ଶରେ ବୁଦ୍ଧି ଠିକ୍ ରଖି, ସୁଖଦୁଃଖାଦି (ଦ୍ୱନ୍ଦ୍ୱ) ରେ ବିଚଳିତ ନ ହୋଇ, ସର୍ବଦା ବିଶ୍ୱମଂଗଳରେ ମାତି, ଅର୍ଥାତ୍ 'ନିତ୍ୟସତ୍ତ୍ୱସ୍ଥ' ହୋଇ, ପାଳିବା ସଂଭାଳିବାରେ ବିକ୍ଷିପ୍ତଚିତ୍ତ ନ ହୋଇ ଯଥାର୍ଥ ଆର୍ଯ୍ୟଧର୍ମ ରକ୍ଷାରେ ଲାଗ୍ (୨.୪୫) । ଦୁର୍ଯ୍ୟୋଧନର ଲୋଭ ଯାହା, ତୋର ଶୋକ ତାହା; ଯଜ୍ଞର ଅର୍ଥକୁ ଅନର୍ଥ କରି କ୍ରିୟାକାଣ୍ଡର ଅପକର୍ମରେ ମାତିବା ମଧ୍ୟ ଠିକ୍ ସେଇପରି । ଯେ ବ୍ରହ୍ମ ବା ବେଦକୁ ଯଥାର୍ଥରେ ଜାଣେ, ସେଇ ଏକା ଜ୍ଞାନୀ ବ୍ରାହ୍ମଣ । ସବୁଆଡ଼ ବଢ଼ିପାଣିରେ ବୁଡ଼ିଗଲେ, ଗାଡ଼ିଆରେ ଲୋକର ଯେପରି ବୁଦ୍ଧି ହୁଏ, ସେଇ ଜ୍ଞାନୀ ବ୍ରାହ୍ମଣର ବେଦ ନାମରେ କରା ହେଉଥିବା ସମସ୍ତ କ୍ରିୟାକାଣ୍ଡରେ ସେଇପରି ହେୟ ବୁଦ୍ଧି ହୁଏ ।" (୨.୪୬)

ଏଠାରେ ଭଗବାନ୍ ଏଇ ଉପମାରେ ସ୍ପଷ୍ଟ ଜଣାଇ ଦେଲେ, ଏସବୁ ଅପକର୍ମର ପ୍ରଚାରରେ ଲୋକେ ଭୁଲିଲେ ମଧ୍ୟ, ଏସବୁ କ୍ରିୟାକାଣ୍ଡ ଯେ ହେୟ ତା ବ୍ରାହ୍ମଣ, ଅର୍ଥାତ୍, ବେଦଜ୍ଞମାନେ ଭଲ କରି ଜାଣନ୍ତି । ସେଥିରେ ଆର୍ଯ୍ୟଧର୍ମର କ୍ଷତି ହେବା ସମ୍ଭବ ନୁହେଁ । ବେଦର ନାମ ଧରି ସାଧାରଣ ଲୋକେ ଏଥିରେ ମାତିଲେ ମଧ୍ୟ, ଏ କାମନାର ହୀନମାର୍ଗ ଯେ ବେଦ ମାର୍ଗ ନୁହେଁ, ଏହା ଜାଣିବା ଶୁଣିବା ଲୋକେ ବୁଝିଥିବାରୁ, ସମାଜରେ ଧର୍ମର ପରିସ୍ଥିତି ଏଥିରେ ବିଗିଡ଼ିଯିବ ନାହିଁ । ଯେ ବେଦ ବୁଝିବାକୁ ଲୋଡ଼ିବ, ସେ ଏ ପନ୍ଥା ସଙ୍ଗେ ସଙ୍ଗେ ଛାଡ଼ିଦେବ । ଦୁର୍ଯ୍ୟୋଧନ ରାଜ୍ୟ କାମନାରେ ସମସ୍ତ ଭାରତର ସମାଜନେତାମାନଙ୍କୁ ସ୍ୱପକ୍ଷ କଲା ପରି, ଏଥିରେ ଭୀଷଣତା ନାହିଁ । ଏଥିପାଇଁ କାଳେ ଅର୍ଜୁନଙ୍କ ସନ୍ଦେହ ଥିବ ବୋଲି, ଭଗବାନ୍ ଏତିକ ମାତ୍ର ସୂଚନା ଏଠାରେ ଦେଇଛନ୍ତି । ପରେ ପ୍ରସଙ୍ଗରେ ଯଜ୍ଞର ତାତ୍ତ୍ୱିକ ଅର୍ଥକୁ ଲକ୍ଷ୍ୟ କରି ବୁଝାଇବା ଦରକାର ପଡ଼ିଛି । ମାତ୍ର ଏ କ୍ରିୟାକାଣ୍ଡ କଥା ଅର୍ଜୁନ ଆଉ ପଚାରି ନାହାନ୍ତି, କି ଶ୍ରୀକୃଷ୍ଣଙ୍କୁ ଆଉ ଏତେ ସ୍ପଷ୍ଟ କରି ବୁଝାଇବାକୁ ପଡ଼ିନାହିଁ । ଅର୍ଜୁନ ହୁଏତ ଆଗରୁ ଜାଣିଥିଲେ, ଲୋକରେ ଏପରି ଚାଲିବାରେ କିଛି କ୍ଷତି ନାହିଁ । ବୁଝିବା ଲୋକେ ଏହା କରିବେ ନାହିଁ, ନ ବୁଝିବା ଲୋକେ ସାଧାରଣ ସାଂସାରିକ କ୍ରିୟାରେ ପୁତ୍ର, ପଶୁ ପ୍ରଭୃତି କାମନାଗ୍ରସ୍ତ ହୋଇ ଏହା କରିବେ । ଏବେ ନ ବୁଝିବା ଯାଏ ସେମାନଙ୍କର 'ବୁଦ୍ଧିଭେଦ' (୩.୨୬) ଜନ୍ମାଇବା ଠିକ୍ ନୁହେଁ । କାରଣ, ସେମାନେ ବେଦ ନାମରେ—ଆର୍ଯ୍ୟଧର୍ମ ନାମରେ ତା କରୁଛନ୍ତି, ଦିନେ ସେଇଥିରୁ ବେଦ ଠିକ୍ ବୁଝିବାକୁ ଯିବେ । ଅତଏବ, ଏ ହେୟ

ବସ୍ତୁ ଯେନ ବିବ୍ରତ ହେବା ଦରକାର ନାହିଁ । ଏ ଘୃତ ସମାଜର କ୍ଷୟାତ୍ମକ ନୁହେ, କିମ୍ବା ଏ ଜାତି ଆର୍ଯ୍ୟଧର୍ମ-ଧାରଣ ରୁ ପୃଥକ୍ ନୁହେ । ଲୋକଙ୍କୁ ନ ବୁଝାଇ ଧର୍ମ ମାର୍ଗ ଏହା ଛଡ଼ାଇବାକୁ ଯିବା ମଧ୍ୟ ଠିକ୍ ନୁହେ । ତାହା ମଧ୍ୟ ଆର୍ଯ୍ୟଧର୍ମର ପନ୍ଥା ନୁହେ । ଆତ୍ମବିକାଶର ସହଜ ଓ ଶାନ୍ତ ଧାରା ସେଥିରେ ଭିନ୍ନ ହେବ ।

ମାତ୍ର ଭଗବାନ ଏ କଥା ଏଠାରେ ଉଠାଇବାର ଅନ୍ୟ ପ୍ରକାରେ ପ୍ରାସଙ୍ଗିକତା ଅଛି । ଭଗବାନ୍ ଆତ୍ମାର ନିତ୍ୟତ୍ୱରେ, ତଥା ମନୁଷ୍ୟତାର ଅନ୍ୟ ଅଳଙ୍ଘ ଆଦର୍ଶରେ ବୁଦ୍ଧି ଠିକ୍ ରଖି କିପରି କର୍ମ କରିବାକୁ ହୁଏ, ସେଇ କଥା କହୁଥିଲେ । ପ୍ରସଙ୍ଗତଃ କହିଗଲେ, କାମନାରେ ଆତ୍ମାର ଆଦର୍ଶ ସ୍ଥିର ରହେ ନାହିଁ । ଫଳ ପାଇଁ କର୍ମ କଲେ, ସେଥିରେ କାମନା ହିଁ ପ୍ରକାଶ ପାଏ । ଉଦାହରଣରେ କହିଲେ, ବେଦଧର୍ମୀ ଯାଜ୍ଞିକମାନେ ଫଳ ପାଇଁ କର୍ମ କରନ୍ତି । କର୍ମରେ ତ ଫଳ ଲାଗି ରହିଛି । ତେବେ ଏ ଫଳ ସଙ୍ଗେ କର୍ମର ଏ ନିତ୍ୟ ସମ୍ପର୍କ ଯୋଗ ବୁଦ୍ଧିରେ ଯେପରି, ଯାଜ୍ଞିକଙ୍କ ବୁଦ୍ଧି ବା ବାସନାରେ ସେପରି ନୁହେ । ଯାଜ୍ଞିକମାନେ କର୍ମରେ ମାତିଥାନ୍ତି; ଧର୍ମ ତଥା ବେଦଧର୍ମ ନାମରେ ସେମାନେ ମାତିଥାନ୍ତି । ମାତ୍ର ଫଳ ପାଇଁ ସେମାନେ କର୍ମରେ ମାତନ୍ତି; ଏଣୁ ତାଙ୍କର କର୍ମ 'ଯୋଗ' ନୁହେ । ବେଦଜ୍ଞ ବ୍ରାହ୍ମଣମାନେ କର୍ମର ଯଥାର୍ଥ ତତ୍ତ୍ୱ ବୁଝନ୍ତି । ତାଙ୍କର କର୍ମ ହିଁ ବେଦଧର୍ମାନୁମୋଦିତ— ତାହା ହିଁ 'ଯୋଗ' । ତେଣୁ ଯାଜ୍ଞିକମାନଙ୍କ କର୍ମରେ ମୁଖବନ୍ଧ କରି, ଅର୍ଜୁନଙ୍କ ସଂଶୟର ସମ୍ଭାବନାରେ ବାଟ ସଫା କରି ଆର୍ଯ୍ୟଧର୍ମର ଆଦର୍ଶନିଷ୍ଠ କର୍ମ ବା 'ଯୋଗ'ରେ ଏଇ କର୍ମ ପୁଣି କର୍ମଜ ଫଳ ମଧ୍ୟରେ କି ସମ୍ପର୍କ, ଏହା ବୁଝାଇବାକୁ ଗଲେ ।

## 'ଯୋଗ'ରେ କର୍ମ ଓ ଫଳର ସଂବନ୍ଧ—

ପୂର୍ବରୁ କହିଛନ୍ତି 'ଯୋଗରେ ଏଇ ବୁଦ୍ଧି କଥା ଶୁଣ' (୨.୩୯) । ପୁଣି ସୂଚନା ଦେଇଛନ୍ତି 'ବ୍ୟବସାୟାତ୍ମିକା ବୁଦ୍ଧି'ରେ କର୍ମ କରିବା ହିଁ 'ଯୋଗ' (୨.୪୧); ଅର୍ଥାତ୍ ମନୁଷ୍ୟ ତାର ଆଦର୍ଶ ସ୍ଥିର କରି—ଅର୍ଥାତ୍, ସଙ୍କୀର୍ଣ୍ଣ ସ୍ୱାର୍ଥର ବନ୍ଧନ ଗ୍ରନ୍ଥି ମୁକ୍ତର ଆଦର୍ଶ ଠିକ୍ କରି—ସେହି ଆଦର୍ଶରେ ଯେଉଁ ନିଶ୍ଚିତ ବୁଦ୍ଧି ହୁଏ, ତାହା ହିଁ ବ୍ୟବ-ସାୟାତ୍ମିକା ବୁଦ୍ଧି—ବା ନିଶ୍ଚିତ, ଏକନିଷ୍ଠ ବୁଦ୍ଧି । ଏଥିରେ ସବୁ କାର୍ଯ୍ୟ ଏକ ଆଦର୍ଶରେ ପ୍ରଭାବିତ ହୁଏ ଓ ସବୁ କର୍ମରେ ଗତି ସେହି ଆଡ଼କୁ ହୁଏ—ଏଣେ ତେଣେ ହୁଏ ନାହିଁ । ପୁଣି ସଙ୍କେତ କଲେ, "ଏହି ମୁକ୍ତିର ଆଦର୍ଶରେ ନିଜର ସମସ୍ତ ଆତ୍ମାକୁ ମିଳାଇ ରଖିଲେ, ଅର୍ଥାତ୍ ସମାଧି ବା ଆଦର୍ଶ ଓ ବ୍ୟକ୍ତିତ୍ୱର ଏକତାବସ୍ଥିତି (ବିଶ୍ୱାତ୍ମା ଓ ପ୍ରତ୍ୟାଗାତ୍ମାର ଏକ ଭାବ ବା ସ୍ଥିତି), ବ୍ୟବସାୟାତ୍ମିକା ବୁଦ୍ଧି ହୁଏ । ଆତ୍ମାକୁ କାମନାରେ ବିକ୍ଷିପ୍ତ କଲେ ବ୍ୟବସାୟାତ୍ମିକା ବୁଦ୍ଧି ହୁଏ ନାହିଁ ।" (୨.୪୪) । ଅତଏବ ଆତ୍ମାର ଆଦର୍ଶ ବା ବ୍ରହ୍ମରେ ଆତ୍ମାକୁ ସମାଧିରେ ରଖିଲେ କର୍ମରେ ଯେଉଁ ନିଶ୍ଚିତ

ଏକମୁଖୀ ବୁଦ୍ଧି ହୁଏ, ସେଇ ବୁଦ୍ଧିରେ କର୍ମ କରିବାହିଁ ଯୋଗ । ସେଇ ଯୋଗରେ କର୍ମ ଆଉ ଫଳର ସମ୍ବନ୍ଧ ବୁଝାଇ ସେହି ସେହି ଯୋଗକୁ ବର୍ଣ୍ଣନା କରୁଛନ୍ତି—

ଅର୍ଜୁନ, ଏ କର୍ମରେ ସ୍ୱଜନ ମାଇଲେ ତୋର ଶୋକ ହବ, ଇତ୍ୟାଦ ଫଳର କଳ୍ପନା କରି ତୋର ମତିଭ୍ରମ ହେଉଛି । କିନ୍ତୁ କର୍ମ କରିବା ସିନା ତୋ ହାତେ ଅଛି, ତୁ କରିପାରିବୁ, ଫଳ କଣ ତୋ ହାତେ ? ଯେତେ ମାପି ବୁଝି କଲେ ମଧ୍ୟ ଯାହା ଫଳ ପାଇବୁ ବୋଲି ବିଚାରି କର୍ମ କରିବୁ, ତା କଣ ପାଇବୁ ? ସମାଜର ପରିସ୍ଥିତିରେ ତୋର କେତେଗୁଡ଼ିଏ କର୍ମ ନିର୍ଦ୍ଦିଷ୍ଟ ଅଛି । ଏଠାରେ ଧର୍ମରକ୍ଷା ତୋ କର୍ମ । ସେତକ କରିବା ତୋ ଅଧିକାରରେ ଅଛି, ତୋ ହାତେ ଅଛି । କିନ୍ତୁ ଫଳରେ କଅଣ ହେବ, ସମାଜ ରକ୍ଷା ହେବ କି ନାଶ ହେବ, ତା କଣ ତୋ ହାତେ ଅଛି ? ଏହିପରି ଫଳ ହେବ କି ନା, ବୋଲି ବିଚାରି ବସିଲେ ପୃଥ୍ୱୀ କଣ କୌଣସି କର୍ମ-ଧାରା ଠିକ୍ ରହିବ ? ତେବେ ଫଳ କଥା ବିଚାରିବା ଠିକ୍ ନୁହେଁ, କିମ୍ବା କର୍ମ ଛାଡ଼ି ବଣକୁ ସନ୍ନ୍ୟାସ କରିବାକୁ ଯିବା କଥା ବିଚାର ନା (୨.୪୭) । 'କର୍ମରେ ମୋର ଫଳ ହବ; ଏ କର୍ମ କଲେ ଏହା ଫଳିବ', ଏପରି ବିଚାରିବାରେ କର୍ମରେ ଆସକ୍ତି ବା ସକ୍ତି ଆସେ । ସେଥିରେ କର୍ମ ସ୍ଥିର ରହେ ନାହିଁ । ଫଳ କଳ୍ପନା କରି କରି ଏ କର୍ମ କରିବ, କି ସେ କର୍ମ କରିବ, ଏହିପରି ଲୋକ ଲୋଭରେ ଇତସ୍ତତଃ ହେଉଥାଏ । ସେଥିରେ ମାନବର ଆତ୍ମସ୍ଥିତି ବିଗିଡ଼ି ଯାଏ । ଅତଏବ ସେ ସକ୍ତି ଛାଡ଼ି ସିଦ୍ଧି ଅସିଦ୍ଧି ବା ଫଳ ହେଲା ନ ହେଲାରେ ସମାନ ରହି ତୋ କର୍ମ (କର୍ତ୍ତବ୍ୟ) ତୁ କରି ଯା । ଏହିପରି ସିଦ୍ଧି ଅସିଦ୍ଧିରେ ସମାନ ହୋଇ କର୍ମ କଲେ, କର୍ମରେ ଯୋଗ ସ୍ଥିତି ଆସିଛି ବୋଲି ବୁଝାଯାଏ । ଏହି ସମତ୍ୱକୁ ହିଁ ଯୋଗ ବୋଲି ଜାଣ (୨.୪୮) । ଫଳ ବୁଝି ବୁଝି ସକ୍ତି ଧରି ଯେଉଁ କର୍ମ କରାଯାଏ, ସେ କର୍ମ ଏ ବୁଦ୍ଧି ଯୋଗରୁ ବହୁ ଦୂରରେ । ସେ କର୍ମ ବୁଦ୍ଧି-ଯୋଗର ଆଖପାଖକୁ ଆସିପାରେ ନାହିଁ । ଅତଏବ ସେହି ଯୋଗର ବୁଦ୍ଧିକି ଧ । ଫଳପାଇଁ ଯେ କର୍ମ କରନ୍ତି, ଏ କାର୍ଯ୍ୟଟା ଭଲ, ଏଉଟା ସୁକୃତ, ସେ କାର୍ଯ୍ୟଟା ଖରାପ, ସେଉଟା ଦୁଷ୍କୃତ ବୋଲି ସେ ପ୍ରତି ମୁହୂର୍ତ୍ତି ମାପୁଥାନ୍ତି; ଫଳର ଆଶା ଟିକିଏ ଏପାଖ ସେପାଖ ହୋଇଗଲେ ତ ମୁହୂର୍ତ୍ତିକୁ ମୁହୂର୍ତ୍ତି ତାଙ୍କର ସୃଷ୍ଟି ପ୍ରଳୟ ହୋଇ ଯାଉଥାଏ । ସେମାନେ ଅତି ହୀନ ଜନ୍ତୁ—ଅମନୁଷ୍ୟ । (୨.୪୯) । ବୁଦ୍ଧି-ଯୋଗ ଯାହାର ଅଛି, ତାର ତ ଆଉ ଏପାଖ ସେପାଖ ହବାର କିଛି ନାହିଁ, ତାର ଅଉ ସୁକୃତ କ'ଣ ? ଦୁଷ୍କୃତ କ'ଣ ? ତେଣୁ ଯୋଗରେ ଲାଗ୍ । ଯୋଗହେଉଛି ଯଥାର୍ଥ କର୍ମ କରି ଜାଣିବା ।" (୨.୫୦)

## ଆଦର୍ଶର ବ୍ୟାପ୍ତି—

ଏହିଠାରେ ଆର୍ଯ୍ୟଧର୍ମର ସ୍ଥିର ଧାରଣାଟି ପରିଷ୍କାର କରି ମନେ ରଖିବା ଉଚିତ ଯେ, ଯେଉଁ ଆଦର୍ଶରେ ବୁଦ୍ଧି ସ୍ଥିର ରଖିବାକୁ ହୁଏ, ଯେଉଁଥିରେ ନିଜ

ଆତ୍ମାର ସମାପ୍ତି କରିବାକୁ ହୁଏ, ସେ ଆଦର୍ଶଟି କଣ ? ଯେଉଁ ଆଦର୍ଶରେ ଫଳାଫଳ ସମ୍ପୂର୍ଣ୍ଣ ଏକରୂପ ବା ସମାନତା ପାଇବ, ଏହା ସେହି ଆଦର୍ଶ । ସାଧାରଣ ଲୋକ କର୍ମରେ ପଡ଼ିଲେ ଆଦର୍ଶଟି ଧରାଇ ଦେବାପାଇଁ ଭଗବାନ୍ ଅର୍ଜୁନଙ୍କୁ କହିଥିଲେ, ଏ ଧର୍ମରୁ ଅଳ୍ପ ହେଲେ ମଧ୍ୟ ମହାଭୟରୁ ତ୍ରାଣ କରେ ( ୨.୪୦ ) । ସଙ୍କୀର୍ଣ୍ଣ ସ୍ୱାର୍ଥପର କାମନା ପଛରେ ଧାଇଁବା ଖରାପ । ଦେଖ, କେହି ନିଜ ଗ୍ରାମର ମଙ୍ଗଳରେ ଲାଗିଛି. ତାର ଆଦର୍ଶ ଅବଶ୍ୟ ସଙ୍କୀର୍ଣ୍ଣ ସ୍ୱାର୍ଥ ନୁହେ । ନିଜର ଇନ୍ଦ୍ରିୟଭୋଗ ତାର କାମ୍ୟ ନୁହେଁ । ଦଶ ଜଣଙ୍କ ପାଇଁ ସେ ସ୍ୱାର୍ଥକୁ ତ୍ୟାଗ କରି, ଦଶ ଜଣଙ୍କ ମଙ୍ଗଳରେ ଆଦର୍ଶ ରଖିଛି । ଇନ୍ଦ୍ରିୟଭୋଗକାମୀଠାରୁ ସେ ଭଲ । ସେଇ ଆଦର୍ଶ ସମାଧିରେ ନିଜକୁ ରଖି ସେ କର୍ମ କଲେ, ବହୁ ଚିତ୍ତକ୍ଷୋଭରୁ ରକ୍ଷା ପାଇବ, ପୁଣି ନିଜେ ଭୋଗ ପାଇଁ ବ୍ୟାକୁଳ ନ ହେବାରୁ ସମାଜ ବହୁ ବିପ୍ଳବରୁ ନିସ୍ତାର ପାଇବ । କାରଣ, ସେ ଯଦି କ୍ଷମତାଶାଳୀ ହୋଇଥାଏ ଓ ନିଜ ସୁଖ ଅନ୍ୱେଷଣରେ ସେଇ କ୍ଷମତା ଜାରି କରେ ତେବେ ତା ଫଳରେ ସମାଜର ବହୁ ଦୁରବସ୍ଥା ଓ ସ୍ଥିରଧର୍ମହୀନ ଘଟିପାରେ; ଅନ୍ୟର ସେଇ ବୁଦ୍ଧି ଆସିପାରେ ଓ ଶେଷରେ ହୁଏତ ଦୁର୍ଯ୍ୟୋଧନ ଯାହା କରୁଛି, ସେଇପରି ଅବସ୍ଥା ଆସିପାରେ । ମାତ୍ର ଆଦର୍ଶକୁ ଗ୍ରାମ, ଦେଶ ବା ସମାଜ ବିଶେଷର ମଙ୍ଗଳରେ ସ୍ଥିର କରି କାର୍ଯ୍ୟ କଲେ, ମନୁଷ୍ୟର ସ୍ୱାର୍ଥ ସେଇ ଆଦର୍ଶରେ ସଂଯତ ହୁଏ । ସେଥିପାଇଁ ଏହି ଯୋଗବୁଦ୍ଧିରୁ ଟିକିଏ ହେଲେ ମହାଭୟରୁ ରକ୍ଷା କରେ । ପୁଣି ଏହି ତ୍ୟାଗର ସଂଯମରେ ଲୋକର ଆଦର୍ଶ ସେଇ ତ୍ୟାଗ ଆଡ଼େ ଉନ୍ନତରୁ ଉନ୍ନତତର ହୁଏ ଓ ଆଦର୍ଶ କ୍ରମେ ବିସ୍ତୀର୍ଣ୍ଣ ହୋଇ ପୂର୍ଣ୍ଣ ବିଶ୍ୱଧର୍ମ ଯୋଗରେ ପର୍ଯ୍ୟବସିତ ହୋଇପାରେ । ଏ ଅଭିପ୍ରାୟ ମଧ୍ୟ ସେଠାରେ ଅଛି ।

## ଶ୍ରେଷ୍ଠ ଆଦର୍ଶ—ଆତ୍ମଲାଭ—ମୁକ୍ତି—

ସେ ଯାହା ହେଉ, ଏଭଳି ଅଳ୍ପ ଆଦର୍ଶରେ କର୍ମରୁ ଫଳର ସମ୍ପର୍କ ବରାବର ତୁଟେ ନାହିଁ । ଗ୍ରାମର ମଙ୍ଗଳ ପାଇଁ ଯେ କାମ କରେ, ଗ୍ରାମର ଅମଙ୍ଗଳର ଆଶଙ୍କା ସେ ସହେ ନାହିଁ । ସେଥିରେ ବ୍ୟକ୍ତି-ଭୋଗ ଆଦର୍ଶର ଅତ୍ୟାଗ୍ରହ ପରି ସମାଜରେ ଉପଦ୍ରବ ତୀବ୍ର ନ ହୋଇପାରେ, ମାତ୍ର କର୍ମରେ ଫଳର ସ୍ପୃହାଜନିତ ସମ୍ପର୍କ ଅଛି । ସେଥିପାଇଁ ଆର୍ଯ୍ୟଧର୍ମର ଆଦର୍ଶ ବିସ୍ତୀର୍ଣ୍ଣତମ ଓ ବିଶ୍ୱବ୍ୟାପୀ, ଯେଉଁଠାରେ ଫଳା-ଫଳର କଳନା ମନୁଷ୍ୟର କାର୍ଯ୍ୟ ହୋଇ ନ ପାରେ । ବିଶ୍ୱର ଅଧ୍ୟାତ୍ମା ବା ପରମାତ୍ମା ବିଶ୍ୱଦେହରେ, ମାନବ ଶରୀରରେ ମାନବାତ୍ମା ପରି ଗୁପ୍ତ । ବିଶ୍ୱ ହିଁ ସେହି ପରମାତ୍ମାର ବିକାଶ ବା କର୍ମ । ସେ କର୍ମ ପରଂପରାରେ ଚାଲିଛି । ଦେଖା ଦେଇ ପରଂପରାରେ ସୂର୍ଯ୍ୟ ଉଠୁଛି, କିରଣ ଦେଉଛି, ବୁଡ଼ୁଛି, ପୁଣି ଉଠୁଛି, ଗ୍ରହ ତାରା ନିଜ ଗତିରେ ଚାଲିଚନ୍ତି; ଋତୁ ବଦଳୁଛି, ଆହାରକାରୁ ଜଗତ୍‌ମାନ ଫିଟୁଛି, ପୁଣି ଆହାରକାରେ ଲିଭୁଛି, ବିଶ୍ୱର ମୂଳ ବସ୍ତୁ ପରମାଣୁରେ ବିଭିନ୍ନ ହୋଇ ବିଶ୍ୱ ତିଆରି କରୁଛି ଓ ପୁଣି

ପରମାଣୁ ବିଶ୍ୱମୂଳ ବସ୍ତୁରେ ପରିଣତ ହେଉଛି । ମାନବସମାଜ ତଥା ମାନବ ସେଇ ବିକାଶର ଅଂଶ ମାତ୍ର । ଏଇ ବୁଦ୍ଧିରେ ବିଶ୍ୱକର୍ମରେ ନିଜକୁ ଏକ କରି—ପରମାତ୍ମାରେ ନିଜ ଆତ୍ମାକୁ ସମାଧିରେ ରଖି—ସେ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ପରମାଣୁ ପରି ନିଜର ସମାଜନିର୍ଦ୍ଦିଷ୍ଟ କର୍ମ ବା ସ୍ୱଧର୍ମ କରିଯିବ । ଏଇ ସମାଧିରେ ସେ ବିଶ୍ୱ ସଙ୍ଗେ ଏକ ଧର୍ମୀ-ତାର ଆତ୍ମା ବିଶ୍ୱାତ୍ମା ବା ପରମାତ୍ମା ସଙ୍ଗେ ଏକ । ଏ ସମାଧିରେ ବୁଦ୍ଧି ସ୍ଥିର ହେଲେ ଆଉ ଭୋଗର ଦାବି ନାହିଁ, ଫଳାଫଳର କଳନା ନାହିଁ—ସେସବୁ ସମ୍ଭବ ନୁହେଁ । ଅଛି କେବଳ କର୍ମ । ସମସ୍ତ ବିଶ୍ୱବସ୍ତୁର ଯେପରି ନିଜ ନିଜ କର୍ମରେ ବିକାଶର ସ୍ଥିତି ଓ ଗତି ଠିକ୍ ଅଛି, ସେହିପରି ମାନବ ନିଜର ପରିସ୍ଥିତିରେ ଯେଉଁ କର୍ମର ଅଧିକାରୀ, ଯେଉଁ କର୍ମକୁ ଯୋଗ୍ୟ, ସେଇ କର୍ମ ବା 'ସ୍ୱଧର୍ମ' କରିଯିବ । ସେଥିରେ ଭୋଗ ଥାଇପାରେ; କିନ୍ତୁ ଭୋଗର ଲାଳସା ନାହିଁ । କର୍ମର ପରସ୍ପର ଆପେକ୍ଷିକତାରେ ଅନ୍ୟଠାରୁ ପାଇବା ଥାଇପାରେ, କିନ୍ତୁ କାହାରିଠାରୁ କିଛି ପାଇବାର ଦାବି ନାହିଁ । ଯେପରି କି ଦେଖ, ଗ୍ରହଜଗତ୍ ସୂର୍ଯ୍ୟ-କିରଣ ପାଉଛି, କିନ୍ତୁ ପାଇବାକୁ କାମନା କରୁ ନାହିଁ କି ଦାବି କରୁ ନାହିଁ ।

ଏହାହିଁ ଆର୍ଯ୍ୟର ଶ୍ରେଷ୍ଠ ଆଦର୍ଶ ଏଇ ବିଶ୍ୱ-କର୍ମ-ଧାରଣାହିଁ ଆର୍ଯ୍ୟର ଧର୍ମ ବା ସ୍ୱଧର୍ମ-ଧାରଣା । ଏଇ ଆଦର୍ଶରେ ବୁଦ୍ଧି ବସିଲେ ବିଶ୍ୱଧର୍ମୀ ଆର୍ଯ୍ୟର ଆତ୍ମଲାଭ, ଆତ୍ମାର ଯଥାର୍ଥ ଉପଲବ୍‌ଧି ବା ମୁକ୍ତି । ଏଇ ଆଦର୍ଶକୁ ଦୃଢ଼ କରିବା ପାଇଁ ଭଗବାନ୍ କହୁଛନ୍ତି—

"ଏଇପରି ବୁଦ୍ଧିଯୁକ୍ତମାନେ କର୍ମଜ ଫଳ ନିଃଶେଷରେ ଛାଡ଼ି ସବୁ ଉପଦ୍ରବହୀନ ଶାନ୍ତିମୟ ସ୍ଥାନ ପାଆନ୍ତି । ବିଶ୍ୱାତ୍ମାର ସମାଧିରେ ସେମାନେ ବିଶ୍ୱବିକାଶ ଧର୍ମରେ ନିଜ ବିକାଶ ଏକ କରି ଦିଅନ୍ତି । ( ୨.୫୧ ) । ଏଇପରି ଆଦର୍ଶର ବିସ୍ତୀର୍ଣ୍ଣତାରେ ଉଠି ଉଠି ଯେତେବେଳେ ତୋ ବୁଦ୍ଧି ସବୁ ପ୍ରକାର ମୋହ ଅର୍ଥାତ୍ ମୋ ଗ୍ରାମ, ମୋ ଲୋକ ଇତ୍ୟାଦି ସବୁ ପ୍ରକାର କର୍ମଫଳମୂଳକ ମମତା ଛାଡ଼ି ସବୁ ଉପରକୁ ଉଠିଯିବ, ସେତେବେଳେ ସବୁ ଶାସ୍ତ୍ର, ସବୁ ଯୁକ୍ତି ତୋ ପକ୍ଷରେ ସମାନ ହୋଇଯିବ । ଶାସ୍ତ୍ର ବା ଯୁକ୍ତିରେ ଯେଉଁସବୁ ଜ୍ଞାନ ଅଛି, ସେସବୁର ଉପରକୁ ଉଠି ତୁ ଶାନ୍ତି ପାଇବୁ । ଏଇ ଶ୍ରେଷ୍ଠ ସମାଧିର ଶାନ୍ତିରେ ତୋର ବୁଦ୍ଧି ବସିଗଲେ ତୋର ଯୋଗ ହେଲା ।" ( ୨.୫୨, ୫୩ ) ।

କର୍ମ କିପରି କରିବାକୁ ହେବ, ବୁଦ୍ଧି ସମାଧିରେ ସ୍ଥିର ହେଲେ କର୍ମ 'ଯୋଗ' ହୋଇଯିବ, ଏ କଥା ଭଗବାନ୍ ବେଶ୍ ବୁଝାଇଗଲେ । ମାତ୍ର କର୍ମ ଯେ ନିଶ୍ଚେ କରିବାକୁ ହେବ, ଏହା ଭଗବାନ୍ ସ୍ପଷ୍ଟ କହି ନାହାନ୍ତି ବରଂ ଭଗବାନଙ୍କ କଥାରୁ ବୁଝାଗଲା, ସମାଧିରେ ବୁଦ୍ଧି ଠିକ୍ ରଖିବା କର୍ମଠାରୁ ବହୁତ ବଡ଼ କଥା ( ୨.୪୯ ) । ଅର୍ଜୁନଙ୍କର ତ ମନରେ କର୍ମ ଛାଡ଼ି ସନ୍ୟାସ କରିବାର ଧାରଣା ପଶିଛି, ସେ ଏବେ

ପଚାରିଲେ, ଲୋକର ଏଇପରି ବୁଦ୍ଧି ବସିଛି ବୋଲି କିଣ ଦେଖିଲେ ଜାଣିବ ? ( ୨·୪୮ ଦେଖ ) । ଏହି ଅଭିପ୍ରାୟରେ ଅର୍ଜୁନ ପଚାରିଲେ । ମାତ୍ର ଭଗବାନ୍ କହିଲେ—

## ବୁଦ୍ଧି ଆତ୍ମାରେ ସ୍ଥିରଥିବା ଲୋକର ଲକ୍ଷଣ—

"କାମନା ବଶରେ ସାମାନ୍ୟ ଲୋକ ଫଳରେ କ୍ଷଣିକ ସନ୍ତୋଷ ପାଏ, ମାତ୍ର କାମନା ଶୂନ୍ୟ, ଯେତେବେଳେ ଆପଣା ଭିତରେ ଲୋକ ନିଜ ସନ୍ତୋଷରେ ସ୍ଥିର ରହେ, ସେତିକିବେଳେ ଜାଣିବ ସେ ସ୍ଥିତପ୍ରଜ୍ଞ ବା ସ୍ଥିରବୁଦ୍ଧି । ସେ ଦୁଃଖରେ ବ୍ୟାକୁଳ ହୁଏ ନାହିଁ କି ସୁଖ ଲୋଡ଼େ ନାହିଁ; ତାର ସଉକ୍ ନାହିଁ, କି ଭୟ ନାହିଁ; କି ଚିଡ଼ିବା ନାହିଁ, ସେଇ ମୁନି ଏକା ସ୍ଥିତଧୀ, ସ୍ଥିରବୁଦ୍ଧି । ସେ ଶୁଭାଶୁଭ ଲୋଡ଼େ ନାହିଁ, କି ପାଇଲେ ତାର କିଛି ଆସେ ଯାଏ ନାହିଁ, ସେ ଇନ୍ଦ୍ରିୟମାନଙ୍କୁ ଭୋଗରୁ ଛଡ଼ାଇ ଆଣି ଆପଣା ଭିତରେ ରଖିଥାଏ ।" ( ୨.୫୫—୫୮ )

## ଇନ୍ଦ୍ରିୟ ନିଗ୍ରହର ଅର୍ଥ—

ଏଠାରେ ଅବଶ୍ୟ ଇନ୍ଦ୍ରିୟକୁ ଭୋଗରୁ ରୋକିବା ଅର୍ଥ, ଇନ୍ଦ୍ରିୟର କ୍ରିୟା ବନ୍ଦ କରିବା ନୁହେ, ମାତ୍ର ଭଗବାନ୍ ତା ସ୍ପଷ୍ଟ କରି ବୁଝାଇ କହିଲେ ନାହିଁ । ଭଗବାନ୍ ପରେ ଯାହା ବୁଝାଇଲେ, ସେଥିରେ ମଧ୍ୟ କର୍ମତ୍ୟାଗ-ସନ୍ୟାସ-ପ୍ରେମୀ ଅର୍ଜୁନଙ୍କର ସ୍ପଷ୍ଟ ହୃଦ୍‌ବୋଧ ହେଲା ପରି ନୁହେ । ଭଗବାନ କହିଗଲେ—

"ଇନ୍ଦ୍ରିୟ ଖାଲି ରୋକି ଦେଇ ବସିଲେ, ଭୋଗ ନ ଥାଏ ସତ, ମାତ୍ର 'ରସ' ବା ସେଥିରେ ସଉକ୍ ଥାଏ । ପରମାତ୍ମାରେ ବୁଦ୍ଧି ବସିଲେ ଏକା ସେ ସଉକ୍ ତୁଟେ । ଅତଏବ ସଉକ୍ ତୁଟିଲେ ଯାଇ ବୁଦ୍ଧି ସ୍ଥିର ହୋଇଛି । ଖାଲି ଭୋଗ ରୋକିବାଟା କିଛି ନୁହେ । (୨·୫୯) କାହିଁକି ନା, ଇନ୍ଦ୍ରିୟମାନେ ବଡ଼ ବଳବନ୍ତର । ଜ୍ଞାନୀ ବିଚକ୍ଷଣ ଲୋକର ମନକୁ ସେମାନେ ଝିଙ୍କି ଭୋଗରେ ଲଗାଇ ଦିଅନ୍ତି । ତେଣୁ ତାକୁ ସବୁ ଆତ୍ମାରେ ସଂଯତ କରି ଯୋଗୀ ମୋଠାରେ ( ଭଗବାନ୍ ପୁରୁଷୋତ୍ତମଙ୍କଠାରେ) ମନ ଦେଇ ବା ଆତ୍ମସମର୍ପଣ କରି ଠିକ୍ ରହିବ । ଇନ୍ଦ୍ରିୟ ଯାହାର ବଶ, ସେଇ ଏକା ସ୍ଥିରବୁଦ୍ଧି ।" ( ୨·୬୦, ୬୧ ) ।

## ଶ୍ରୀକୃଷ୍ଣ ଓ ପରମାତ୍ମା ଏକ—

ପୂର୍ବରୁ ଭଗବାନ୍ କହିଥିଲେ, ପରମାତ୍ମାଙ୍କୁ ଦେଖିଲେ ଭୋଗର 'ରସ' ଯାଏ । ଏଠାରେ ସ୍ପଷ୍ଟ କହିଲେ, ମୋରଠି ଆତ୍ମସମର୍ପଣ କରି ବସିଲେ ଇନ୍ଦ୍ରିୟର ସଂଯମ ସୁଗମ ହୁଏ । ଏଇଠାରେ ଶ୍ରୀକୃଷ୍ଣ ଯୋଗସ୍ଥ । ତାଙ୍କଠାରେ ବିଶ୍ୱାତ୍ମାର ପୂର୍ଣ୍ଣ ପ୍ରକାଶ । ଧର୍ମର ଏ ମହାସଙ୍କଟ ବେଳେ ମାନବର କର୍ତ୍ତବ୍ୟ ସ୍ଥିର କରିବାରେ ଶ୍ରୀକୃଷ୍ଣ

ଏକାବେଳକେ ବିଶ୍ୱାତ୍ମାର ବିଶ୍ୱଧର୍ମରେ ତନ୍ମୟ । ଅବସ୍ଥା ସାଙ୍ଘାତିକ । ଏକ ଆଡ଼େ ସମସ୍ତ ଭାରତର ଶ୍ରେଷ୍ଠ ବୀରମାନେ ଧର୍ମର ମହାଧ୍ୱଂସଲୀଳାରେ ତତ୍ପର ହୋଇ ଦୁର୍ଯ୍ୟୋଧନ ଭଳି ମହା ପ୍ରଭାବଶାଳୀ ବ୍ୟକ୍ତିର ଭୋଗଲୋଭକୁ ଆର୍ଯ୍ୟଧର୍ମ ବା ବିଶ୍ୱଧର୍ମ ଆଦର୍ଶ ରୂପେ ଟେକି ଧରିବାକୁ ପ୍ରାଣ ପଣ କରି ଠିଆହୋଇଛନ୍ତି । ଅନ୍ୟ ଆଡ଼େ ଆର୍ଯ୍ୟଧର୍ମର ଏକମାତ୍ର ପ୍ରତୀକସମ ମହାବ୍ୟକ୍ତିତ୍ୱବାନ୍ ମହାବୀର ଅର୍ଜୁନ ଧର୍ମରକ୍ଷାରେ ନିଜର ମହାକର୍ତ୍ତବ୍ୟ ବିସ୍ମୃତ ହୋଇ ସ୍ୱଜନ-ମୋହର କାତରତାରେ ଏକପ୍ରକାର ଧର୍ମ-ତ୍ୟାଗରେ ବ୍ରତୀ । ଭାରତର ମହାଧର୍ମ—ତଥା ବିଶ୍ୱଧର୍ମର ପରମ୍ପରା ଏବେ ଛିନ୍ନଭିନ୍ନ ହେବା ଉପରେ । ମାନବର ବିଶ୍ୱବିକାଶରେ ଏ ଘୋର ଦୁର୍ଗତି ଦେଖିଲେ ଏକମାତ୍ର ଶ୍ରୀକୃଷ୍ଣ ଦେଖୁଛନ୍ତି, ପଛରେ ଯୁଗଯୁଗାନ୍ତବ୍ୟାପୀ ବିଶ୍ୱଧର୍ମର ନିର୍ମଳ ଧାରା, ମାତ୍ର ଆଗରେ ସମସ୍ତ ମାନବସମାଜର ବିପ୍ଳବ ଓ ଧ୍ୱଂସ, କାମନାର ମହାତାଣ୍ଡବରେ ବିଶ୍ୱବାସୀର ହାହାକାର, ଉନ୍ନତ ମାନବସଭ୍ୟତାର ଏ କରାଳ କାଳାଗ୍ନିରେ ପ୍ରଧୂମିତ ପ୍ରଳୟର ଭୃଙ୍ଗଶିଖା ଯେପରି କି ତାଙ୍କ ଆଗେ ସହସା ରୌରବଦୀପ୍ତିରେ ଜଳି ଉଠିଲା । ଅର୍ଜୁନଙ୍କୁ ବୁଝାଇଲେ, ମାତ୍ର ବୁଝାଇବାରେ ସେ ମୁହଁରୁ ଦେଖିଲେ ସହଜରେ ଅର୍ଜୁନଙ୍କ ମନ ଧର୍ମରେ ବସୁ ନାହିଁ । ମହାପୁରୁଷ ଶ୍ରୀକୃଷ୍ଣ ଏବେ ମହା-ବିଶ୍ୱଧର୍ମର ପ୍ରଚଣ୍ଡ ପ୍ରେରଣାରେ ଦୀପ୍ତ ହୋଇ ସେଇ ସମରାଙ୍ଗନରେ ସମାଧିରେ ଯୋଗସ୍ଥ ହେଲେ—ବିଶ୍ୱାତ୍ମାରେ ତାଙ୍କ ଆତ୍ମାମିଶି ଏକାକାର ହେଲା । ସେ ବିଶ୍ୱଧର୍ମ —ମାନବଧର୍ମ—ଆର୍ଯ୍ୟଧର୍ମ—କଳ୍ପନା ଓ କଳନା କରିବାକୁ ନ ଯାଇ, ଦୀପ୍ତ ଓ ଜୀବନ୍ତ ଅନୁଭୂତି ତଥା ସ୍ପଷ୍ଟ ଆତ୍ମ-ବିକାଶରେ ପ୍ରକାଶ କଲେ ।

## ଅର୍ଜୁନ ଏହା ଅନୁଭବ କଲେ—

ଅର୍ଜୁନ ଶ୍ରୀକୃଷ୍ଣଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଅନୁଭବରେ ଜାଣିଥିଲେ । 'ସଙ୍କଟବେଳେ ଆର୍ଯ୍ୟପର କର୍ତ୍ତବ୍ୟ ଠିକ୍ କରି କାମ କରିବା ଛାଡ଼ି ଅନାର୍ଯ୍ୟ-ଆଚରଣରେ ମାତିଚ' ବୋଲି ଯେତେବେଳେ ଭଗବାନ୍ କହି ଛାଡ଼ି ଦେଲେ, ପୁଣି ଯେତେବେଳେ 'ଭିକ ମାଗି ସଂନ୍ୟାସ କରିବା' କଥାରେ, 'ବଡ଼ ପଣ୍ଡିତ ପରି କଥା କହୁଛୁ, ଅଥଚ ମଣିଷ ମରିଯିବ ବୋଲି କାନ୍ଦୁଛୁ' ବୋଲି ଭଗବାନ୍ ଉପହାସରେ ବୁଝାଇବା ଆରମ୍ଭ କଲେ, ସେତେବେଳକୁ ଅର୍ଜୁନ କ୍ରମେ ସେ ମହା ବ୍ୟକ୍ତିତ୍ୱରେ ଅଭିଭୂତ ହୋଇ ଆସିଥିଲେ । ଏବେ ଅର୍ଜୁନ କୃଷ୍ଣରୂପରେ କ୍ରମେ ସ୍ୱପ୍ରକାଶ ବିଶ୍ୱାତ୍ମାକୁ ଦେଖି ବୁଝିପାରିଲେ । ସେଥିପାଇଁ ଭଗବାନ୍ ଯେତେବେଳେ 'ମୋ ଠାରେ ମନ ଦେ' ବୋଲି କହି ନିଜକୁ ପରମେଶ୍ୱର 'ବିଶ୍ୱଧର୍ମ-ଗୋପ୍ତା' ବୋଲି ପ୍ରକାଶ କରି ପକାଇଲେ, ସେତେବେଳେ ସେ କଥା ଅର୍ଜୁନଙ୍କୁ ଅଲଗା ଲାଗିଲା ନାହିଁ । ଶ୍ରୀକୃଷ୍ଣ ମଧ୍ୟ ମହା-ଯୋଗସ୍ଥ-ବୁଦ୍ଧିରେ ସ୍ୱତୋବିକାଶରେ ଏହା ପ୍ରକାଶ କଲେ । ସେ ମଧ୍ୟ ଏଥିରେ କିଛି ଅଲଗା ଦେଖିଲେ ନାହିଁ ।

## ଅବତାରବାଦ—

ଏହାହିଁ ଆର୍ଯ୍ୟଧର୍ମର ଅବତାରବାଦ । ଏଇଠାରେ ହିଁ ଆର୍ଯ୍ୟଧର୍ମର ଯୋଗରେ ଭକ୍ତିର ଭିତ୍ତି । ଅବାଙ୍ମନସଗୋଚର ବିଶ୍ୱାତ୍ମା, ବିଶ୍ୱବିକାଶମୟ, ବିକାଶର ସ୍ଥିତିର ସତ୍ୟ ପରମାତ୍ମା ମନୋବାଂଛିତ ମାନବାତ୍ମାରୁ ଅତୀତ ହୋଇ ପାରନ୍ତି, କିନ୍ତୁ ସେଥିରୁ ଭିନ୍ନ ନୁହନ୍ତି । ଭିତରର ନିରନ୍ତର ଅବନତ (Concavity) ଓ ବାହାରର ନିରନ୍ତର କୁଂଚିତ ବହିର୍ନତ (Convexity) ଦୁଇଟିରୁ ବୃତ୍ତଟି ଅତୀତ ସତ, କିନ୍ତୁ କୌଣସିଟିରୁ ଭିନ୍ନ ନୁହେ । ମନୋବାଂଛିତ ଶାନ୍ତ ପ୍ରତୀତଲବ୍ଧ ଆତ୍ମାର କଳନାରୁ ବିଶ୍ୱାତ୍ମା ପରମାତ୍ମା ଅତୀତ ହେଲେହେଁ ଭିନ୍ନ ନୁହନ୍ତି । ସେଥିପାଇଁ ସେ ପରମେଶ୍ୱର— ବିଶ୍ୱର ପରମ ନିୟାମକ, ତଥା ମାନବର ଚରମ ନିୟନ୍ତା । ସଙ୍କଟରେ—ମହାସଙ୍କଟରେ ଯଥାର୍ଥ ଯୋଗସ୍ଥ ହେଲେ ତାଙ୍କର ଏଇପରି ଅବତାର ହୁଏ । ଏହାହିଁ ଆର୍ଯ୍ୟଧର୍ମର ଭକ୍ତିର ମୂଳମନ୍ତ୍ର । ଏଇଠାରେ ଅର୍ଜୁନଙ୍କ ବୁଦ୍ଧି ସମାଧିସ୍ଥ କରିବାକୁ ସେଇ ଅବତାରର ଆବିର୍ଭାବ । ପରମାତ୍ମାର ସ୍ୱରୂପ ଏହିପରି ପରମେଶ୍ୱର-ପ୍ରତୀତିରେ ଅନୁଭବ-ସୁଗମ ହେଲେ, ଆଉ ବୁଦ୍ଧି ସ୍ଥିର ହେବାରେ ଅସୁବିଧା ନାହିଁ । ଏ ସମାଧି ଅତି ସୁଲଭ ।

ଏହି ସୁଗମ ଓ ସୁଲଭ ପ୍ରତୀତିରେ ଅର୍ଜୁନଙ୍କର ପ୍ରଶ୍ନ କ୍ରମେ କମି ଆସିଲା । ଭଗବାନ୍ ବିଶ୍ୱଧର୍ମକୁ ଏଣିକି ସାମାନ୍ୟ ପ୍ରଶ୍ନ ମାତ୍ରରେ ପ୍ରକାଶ କରିଗଲେ । ଏବେ ଭଗବାନ୍ କହିଗଲେ—

## ଇନ୍ଦ୍ରିୟ ପ୍ରଶ୍ରୟର ଗତି ଓ ସଂଯମର ଫଳ—

"ଭୋଗର ବିଷୟକୁ ମନେ କଲେ ସେଥିରେ ଆସକ୍ତି ହୁଏ । ଆସକ୍ତିରୁ କାମନା, କାମନାରୁ ପାଇବାକୁ ବ୍ୟାକୁଳତା—ବାଧାର କଳ୍ପନାରେ ବ୍ୟତିବ୍ୟସ୍ତ ହେବା । ସେଥିରୁ 'ସମ୍ମୋହ' ବା କାଣ୍ଡଜ୍ଞାନଶୂନ୍ୟତା । ତହିଁ 'ସ୍ମୃତି'ରେ ଭ୍ରମ, ଅର୍ଥାତ୍, ମୁଁ କିଏ, ମୋର କଣ କରଣୀୟ—ଏସବୁରେ ବିଶୃଙ୍ଖଳତା । ସେଥିରୁ ବୁଦ୍ଧିନାଶ, ଅର୍ଥାତ୍ କୌଣସି କର୍ମ ନିଷ୍ପନ୍ନ କରି ସେଥିରେ ଲାଗିବାରେ ସାମର୍ଥ୍ୟ ନାଶ । ଶେଷକୁ ସର୍ବନାଶ ବା ମନୁଷ୍ୟତା ନାଶ । ✻ (୨.୬୨, ୬୩)

"ଇନ୍ଦ୍ରିୟରୁ ଏଇ ସଙ୍ଗ ବା ରାଗ ଦ୍ୱେଷ ଛଡ଼ାଇ, ଇନ୍ଦ୍ରିୟକୁ ସମାଧିସ୍ଥ ଆତ୍ମାର ଅଧୀନରେ ରଖି ଯେ ଇନ୍ଦ୍ରିୟକ୍ରିୟା କରିଯାଏ, ସେ ପ୍ରସାଦ ବା ଶାନ୍ତି, ଅର୍ଥାତ୍ କାମନାର କ୍ରୋଧାଦି ଚଞ୍ଚଳତାରୁ ଚିର ଅବ୍ୟାହତି ପାଏ । ଏହି ପ୍ରସନ୍ନତା ବା

---

✻ ଏଠାରେ 'ସମ୍ମୋହ' ଓ 'ସ୍ମୃତି' ଏଇ ପଦ ଦୁଓଟି ମନେ ରଖିବାର ଅଛି । ଏହାର ବ୍ୟବହାର ଗୀତାରେ ଅନ୍ୟତ୍ର ଦେଖି ବୁଝିବା ମଧ୍ୟ ଦରକାର । ( ୨.୭ରେ 'ଧର୍ମସମ୍ମୂଢ଼-ଚେତା' ଦେଖ ) ।

ଶାନ୍ତିର ଆନନ୍ଦରେ ସବୁ ଦୁଃଖ, ଅର୍ଥାତ୍, ଦୁଃଖ ଓ ଦୁଃଖ ତୁଳନାରେ ସୁଖ-ନାମକ ଦୁଃଖ—ସେ ସବୁ ପ୍ରକାର ଦୁଃଖ ଭୁଟିଯାଏ ଓ ବୁଦ୍ଧି ସ୍ଥିର ହୁଏ । (୨.୬୪, ୬୫; ୧୮.୩୬ ରେ 'ଦୁଃଖାନ୍ତଂ ଚ ନଗଚ୍ଛତି'—ଦେଖ) ।

ଏଠାରେ ମଧ୍ୟ ଭଗବାନ୍ କହିଲେ, ଇନ୍ଦ୍ରିୟକୁ ସଂଯତ କରି ଯେ ଇନ୍ଦ୍ରିୟ-କ୍ରିୟା କରିଯାଏ, ସେ ଚିର ଆନନ୍ଦ ପାଏ । କିନ୍ତୁ ଇନ୍ଦ୍ରିୟ ସଂଯତ କରି ଇନ୍ଦ୍ରିୟ-କ୍ରିୟା କରିବା ଯେ ନିଶ୍ଚୟ ଦରକାର, ଏ କଥା ମଧ୍ୟ ଏଠାରେ ସ୍ପଷ୍ଟ ନୁହେ । ଇନ୍ଦ୍ରିୟକୁ ସଂଯତ କରି ଇନ୍ଦ୍ରିୟକ୍ରିୟାରେ ନ ଲଗିଲେ ଯେ ଶାନ୍ତି ହବ ନାହିଁ, ଏହା କୁହାଯାଇ ନାହିଁ । ତେବେ କର୍ମ ଛାଡ଼ି ସନ୍ୟାସ କଲେ ବି ହୁଏ । ଏ ଯୁଦ୍ଧରେ ନିଶ୍ଚୟ ଲଗିବାକୁ ହେବ, ଏହାର ପ୍ରମାଣ ଭଗବାନଙ୍କ ମୁହଁରେ କାହିଁ ?

ସେଠାରୁ ଭଗବାନ୍ ସେଇ କଥାକୁ ପୁଣି ବ୍ୟାଖ୍ୟା କରି କହିଲେ—

"ଯୋଗ ବା ସମାଧି ନ ଥିଲେ ସ୍ଥିର ବୁଦ୍ଧି ନାହିଁ କି ଈଶ୍ୱର ଧ୍ୟାନ ନାଇ, ତେବେ ଆଉ ତନ୍ମୟତା ବା ସମାଧିର ସୁଖ କାହୁଁ ଆସିବ ?" (୨.୬୬)

ଏଠାରେ ମଧ୍ୟ ଯୋଗ କହିଲେ ସମାଧିର କର୍ମତତ୍ପରତା । କାରଣ ସେଇ ଅର୍ଥରେ ଏ ପ୍ରସଙ୍ଗରେ ଯୋଗ ଶବ୍ଦର ପ୍ରୟୋଗ ଆରମ୍ଭ କରାହୋଇଛି (୨.୩୯ ଦେଖ) । ପରେ ମଧ୍ୟ ସେଇ ଅର୍ଥରେ ବ୍ୟାଖ୍ୟା କରିଛି । ମାତ୍ର ଅର୍ଜୁନଙ୍କ ସନ୍ୟାସବୁଦ୍ଧି ଭାଙ୍ଗିବା ଭଳି ସ୍ପଷ୍ଟ କରି କୁହାଯାଇ ନାହିଁ । ଯୁକ୍ତ ବୋଇଲେ ଏଠାରେ ସମାଧିଯୁକ୍ତ ହୋଇପାରେ ।

ମାତ୍ର ଭଗବାନ୍ କହୁଚନ୍ତି—

"କାରଣ, ଇନ୍ଦ୍ରିୟମାନେ କ୍ରିୟାରେ ଲଗିଥିଲାବେଳେ, ଯେ ମନକୁ ସେଇ ଇନ୍ଦ୍ରିୟଙ୍କ ପଛେ ଛାଡ଼ିଦିଏ, ଅର୍ଥାତ୍ ଇନ୍ଦ୍ରିୟଭୋଗ ଯୁଆଡେ ଝିଙ୍କି ହୋଇଯାଏ, ସେ ମନ ସେ ଲୋକର ବୁଦ୍ଧିକୁ ଆଉ ଠିକ୍ ରଖି ଦିଏ ନାହିଁ । ଅତଏବ ଯାହାର ଇନ୍ଦ୍ରିୟମାନେ ଇନ୍ଦ୍ରିୟକାମ୍ୟ ଭୋଗରୁ ସଂଯତ ସେଇ ଏକା ସ୍ଥିରବୁଦ୍ଧି ।" (୨.୬୭, ୬୮) । ଲୋକେ କହିବେ, ଭୋଗ ନାହିଁ କି ସୁଖ ନାହିଁ, ଖାଲି ଇନ୍ଦ୍ରିୟଙ୍କୁ କାମରେ ଲଗାଇ ଘୋଷାରୁ ଥିବ । ଇନ୍ଦ୍ରିୟ ତେବେ ଆଉ ଅଛୁ କିଆଁ ? ଏଇ ହେଉଚି ଠିକ୍ ସଂଯମୀର କାର୍ଯ୍ୟ । ଆଉ ଲୋକେ ଯୁଉଁଠେଇଁ ଇନ୍ଦ୍ରିୟ ଲଗାଇ ଭୋଗର ମଜା ମାରୁଥିବେ, ସଂଯମୀର ସେଥିରେ କାମ ନାହିଁ ।" (୨.୬୮) ।

ଏଠାରେ ବି ଅର୍ଥ ହୋଇପାରେ, ଲୋକେ ସୁଖରେ ବସିରୁଥିବେ ଲୋକଟା କିଛି କାମ କରୁ ନାହିଁ, ଶୋଇଚ ପରା ? ସେଇ ଏକା ସଂଯମୀର କାମ । ତେବେ କର୍ମର ଅବଶ୍ୟ-କର୍ତ୍ତବ୍ୟତା ସ୍ପଷ୍ଟ ହେଲା କାହିଁ ?

## ଯୋଗ ଓ ବ୍ରାହ୍ମୀସ୍ଥିତି—

ଶେଷକୁ ଭଗବାନ୍ କହିଲେ—"ସମୁଦ୍ରରେ ଚଞ୍ଚଳ ତରଙ୍ଗିତ ନଦୀ ପଶି ମିଶି ସ୍ଥିର ହୋଇଗଲା ପରି, ସ୍ଥିତଧୀ ଯୋଗୀଠାରେ କାମନା ସବୁ ପଶି ତା ଭିତରେ ସ୍ଥିର ହୋଇଯାଏ । ଯେ ସବୁ କାମନା ଛାଡ଼ି, ସ୍ପୃହା ଛାଡ଼ି, ମମତା ଛାଡ଼ି, ଅହଂକାର ଛାଡ଼ି, ପୁରୁଷ ପରି କାମ କରିଯାଏ, ସେଇ ଏକା ଶାନ୍ତି ପାଏ । ଏଇ ହେଉଛି ଏକା 'ବ୍ରାହ୍ମୀସ୍ଥିତି' ବା ବ୍ରହ୍ମ ସମାଧିରେ ରହିବା । ଏ ସ୍ଥିତିରେ ରହିଲେ ମୋହ ନାହିଁ, ଅର୍ଥାତ୍, ସ୍ୱଧର୍ମ କଣ, ତା ସ୍ମରଣ କରି କାମ କରିଯିବାରେ କୌଣସି ଭ୍ରାନ୍ତି ନାହିଁ । ମଲାବେଳେ ଏଇ ସ୍ଥିତିରେ ଥିଲେ ଲୋକେ ବିଶ୍ୱାତ୍ମା ବ୍ରହ୍ମରେ ଲୀନ ହୁଏ—ବା ଏକ ହୋଇ ମିଶିଯାଏ ।" (୨.୭୦-୭୨)

ମମତା, ଅହଂକାର, ମୋହ ପ୍ରଭୃତି କହିବାରେ ଅର୍ଜୁନଙ୍କ ସ୍ୱଜନ-ପ୍ରୀତି, 'ମୁଁ ମାରିବି କିପରି' ଏଇ ଅହଂକାର ଓ ସ୍ୱଧର୍ମ ଭୁଲିଯିବାର ମୋହ ବା 'ସ୍ମୃତି'-ନାଶ ପ୍ରଭୃତିକୁ ଲକ୍ଷ୍ୟ ହୁଏତ ଅଛି । ମାତ୍ର କର୍ମତ୍ୟାଗ ସନ୍ନ୍ୟାସ ଯେ ଠିକ୍ ନୁହେଁ, ବୁଦ୍ଧିସ୍ଥିର କରି କର୍ମ ଛାଡ଼ିବା ଯେ ଏକାବେଳକେ ଅନାଚରଣୀୟ, ଏହା ସ୍ପଷ୍ଟ ନ ହେବାରୁ, ଅର୍ଜୁନ ପୁଣି ବ୍ୟାକୁଳ ହୋଇ ପଚାରିଲେ—

## କର୍ମ କରିବ କାହିଁକି ?—

"କର୍ମରୁ ଯେବେ ବୁଦ୍ଧି ବଡ଼, ବୁଦ୍ଧି ଠିକ୍ ରହିଲେ ଯେବେ ସବୁ ହେଲା ବୋଲି ତୁମ ମତ, ତେବେ, ଭଗବାନ୍, ମତେ ଏ ଘୋର କର୍ମରେ କାହିଁ ଲଗାଉଚ ? କେତେବେଳେ ହୁଏତ କହି ଦେଉଚ ବୁଦ୍ଧି ଠିକ୍ କରି କର୍ମରେ ଲାଗିବା ଲୋକ ଯଥାର୍ଥ ଯୋଗୀ, ପୁଣି କହୁଚ ଯେ ଇନ୍ଦ୍ରିୟ ରୋକି ଆପଣା ଭିତରେ ରଖେ ସେଇ ଏକା ସ୍ଥିତଧୀ—ଏଇପରି ମିଶାମିଶି କଥା କହିବାରୁ ମୋ ବୁଦ୍ଧି କାହିଁରେ ବସୁ ନାହିଁ । କୁ କଥାଟି ଠିକ୍ ? କର୍ମ କରିବା ନା ଛାଡ଼ିବା, ମୋର କାହିଁରେ ଯଥାର୍ଥ ମଙ୍ଗଳ ବା ମୁକ୍ତି ହେବ, ଠିକଣା କରି ବତାଇ ଦିଅ ।" (୩. ୧,୨) ସମସ୍ତ ଆର୍ଯ୍ୟଧର୍ମର ବ୍ୟାଖ୍ୟା ସଂକ୍ଷେପରେ ସୂଚନାରେ ଶେଷ କରି ଏବେ ଭଗବାନ୍ ଦେଖିଲେ, ଅର୍ଜୁନ ସବୁ ବୁଝି ନାହାନ୍ତି । କର୍ମ ଛାଡ଼ି—ସନ୍ନ୍ୟାସ କରିବାର ଯେ ପ୍ରତିଷ୍ଠିତ ପନ୍ଥାଟି ପଡ଼ିଯାଇଚି, ଏ ବେଳେ ପଡ଼ିଯିବାରୁ ସେ ସେଇଥିରେ ଭଳିଚନ୍ତି । ଦୁର୍ବଳତାର ତାହା ଏକ ଆଚ୍ଛାଦନ ବୋଲି ହୁଏତ ବୁଝିପାରୁ ନାହାନ୍ତି, କିଂବା ଆର୍ଯ୍ୟଧର୍ମ-ଧାରଣାରେ ତାହାର ଅନୁପଯୋଗିତା—ବିଶେଷତଃ କ୍ଷତ୍ରିୟ ପକ୍ଷରେ ପୁଣି ଏ ଧର୍ମସଙ୍କଟରେ ଏକାନ୍ତ ଅନୁପଯୋଗିତା—ବୁଝି ପାରୁ ନାହାନ୍ତି । ସେଠାରୁ କର୍ମ ଯେ ଅବଶ୍ୟ କର୍ତ୍ତବ୍ୟ, ଏଇଠାରୁ ଆରମ୍ଭ କରି ଭଗବାନ ଏଇ ଦୀର୍ଘ ସଂବାଦ ବା କଥୋପକଥନାତ୍ମକ ଗୀତାରେ ତନ୍ନ ତନ୍ନ କରି କର୍ମ ଭକ୍ତି ଜ୍ଞାନ ସବୁଆଡ଼ୁ ଶାଖାପ୍ରଶାଖା ଧରି କ୍ରମେ ସ୍ପଷ୍ଟରୁ

ସ୍ପଷ୍ଟତର କରି ସମସ୍ତ ଆର୍ଯ୍ୟଧର୍ମର ବିବୃତି ଦେବେ । ଆଉ ସେସବୁ ବିଶଦ ବ୍ୟାଖ୍ୟା ଏଠାରେ ଦେବା ଦରକାର ନାହିଁ । ଏଠାରେ ଏତିକି କହିବା ଦରକାର ଯେ, ଏ ଦୀର୍ଘ ବିବୃତିରେ ଭଗବାନ ଅର୍ଜୁନଙ୍କ ମୋହ ଛଡ଼ାଇ ଦେଲେ । ଆର୍ଯ୍ୟଧର୍ମକୁ ଏ ସଙ୍କଟରେ ରକ୍ଷା କରିବା ତାଙ୍କର 'ସ୍ୱଧର୍ମ' ଏ ଜ୍ଞାନ ଅର୍ଜୁନଙ୍କର ଆସିଗଲା, ସନ୍ଦେହ ତୁଟିଗଲା । ସବୁ କହି ବୁଝାଇ ସାରି ଭଗବାନ ଶେଷକୁ ପଚାରିଲେ—

"ଅର୍ଜୁନ, ଏକାଗ୍ର ମନରେ ଏସବୁ କଥା ଶୁଣିଲୁ ତ ? ଧନଞ୍ଜୟ, ତୋର ଅଜ୍ଞାନ ସମ୍ମୋହ ପୂରି ତୁଟିଲା ତ ?" (୧୮.୭୨) । ଶ୍ରୀକୃଷ୍ଣଙ୍କର କହିବାର ଅଭିପ୍ରାୟ, "ତୋର ଯେ ଆର୍ଯ୍ୟ-ପରଂପରା ଓ ଆର୍ଯ୍ୟଧର୍ମରେ ଭ୍ରାନ୍ତ ହେଉଥିଲୁ, ସେ ଅଜ୍ଞାନ ତୋର ଗଲା ତ ? ଆର୍ଯ୍ୟଧର୍ମରେ ଯେ ସ୍ୱଜନ ପରଜନ ଜାତି କୁଟୁମ୍ବିତା ନାହିଁ, ଆହା ଯେ ଏକ ସ୍ୱତନ୍ତ୍ର ନିତ୍ୟଧର୍ମ—ନିଷ୍କାମ କର୍ତ୍ତବ୍ୟର ଆପେକ୍ଷିତ ପରଂପରା ଓ ଶ୍ରେଣୀ ଯେ ତହିଁ ଧର୍ମ ପାଇଁ, ତଥା ସେଇ ଧର୍ମର ଏ ସଙ୍କଟ ବେଳେ ସେ ଧର୍ମକୁ ରକ୍ଷା କରିବା ପାଇଁ, ଯୁଦ୍ଧ କରିବାକୁ ହେବ, ଏ ଜ୍ଞାନ ତୋର ଆସିଲା ତ ? ମୋହରେ 'ମୁଁ କିଏ, କିଣ, ମୋର କିଣ କରଣୀୟ ?—ଏସବୁ ଯେ ଭୁଲି ଯାଉଥିଲୁ (ମୂର୍ଚ୍ଛିତ ହୋଇଥିଲୁ ), ସେ ଅଜ୍ଞାନ ମୋହ ଏବେ ତୁଟିଲା ତ ?

## ଅର୍ଜୁନଙ୍କର ମୋହନାଶ ଓ ଧର୍ମାଶ୍ରୟ—

ସେଠାରୁ ଅର୍ଜୁନ କହିଲେ—"ଅଚ୍ୟୁତ, ତୁମ ଅନୁଗ୍ରହରୁ ମୋର ମୋହ ତୁଟିଲା; (ମୁଁ ଯେ ଯଥାର୍ଥ ଆର୍ଯ୍ୟସଂସ୍କୃତିର ଉତ୍ତରାଧିକାରୀ, ଅତଏବ ଆର୍ଯ୍ୟସଂତାନ ଓ ଯଥାର୍ଥ ଆର୍ଯ୍ୟଧର୍ମ ଯେ ମୋର ପାଳନୀୟ ) ଏ ସ୍ମୃତି (ହୋସ୍) ଏବେ ମୋର ଆସିଲା । ମୋର ଆଉ ସନ୍ଦେହ (କର୍ତ୍ତବ୍ୟରେ ସଂଶୟ ବା ଧର୍ମସଙ୍କଟ) ନାହିଁ । ତୁମରି କଥା କରିବି ।" (୧୮.୭୩) ।

## ୩ । ଆର୍ଯ୍ୟଧର୍ମରେ ପ୍ରତକ୍ରିୟାର ସମାଧାନ

ଭଗବାନ୍ ଅର୍ଜ୍ଜୁନଙ୍କୁ ଆର୍ଯ୍ୟଧର୍ମ ଗୀତାରେ ବୁଝାଇଚନ୍ତି । ସେହି ଆର୍ଯ୍ୟଧର୍ମର ଆଶ୍ରୟ ଉପରେ ଦଆଗଲା । ଯୋଗ ଓ ସ୍ୱଧର୍ମହିଁ ସେଇ ଆର୍ଯ୍ୟଧର୍ମର ଭିତ୍ତି । ଏଇ ଯୋଗସିଦ୍ଧ ହେବା ପାଇଁ ବ୍ରହ୍ମରେ ବୁଦ୍ଧି ସ୍ଥିର ରଖିବା ଦରକାର । ବ୍ରହ୍ମହିଁ ମନୁଷ୍ୟର ସ୍ଥିର ଓ ଚରମ ଆଦର୍ଶ । ବ୍ରହ୍ମ ଯେପରି ସ୍ଥିର, ଅଥଚ ବଶ୍ୱକର୍ମରେ ପ୍ରକାଶମୟ, ସେଇପରି ବ୍ରହ୍ମର ଆଦର୍ଶରେ ବୁଦ୍ଧି ସ୍ଥିର ରଖି ନିଷ୍କାମ ଅଥଚ ନରଳସ ଭାବରେ ନଜର କର୍ମ କରଯିବା ହିଁ ଯୋଗ ।

### 'ସ୍ୱଧର୍ମ'—

ଏଇ କର୍ମ କଣ ? କେଉଁ କର୍ମ ମନୁଷ୍ୟ କରିବ ? ବ୍ରହ୍ମର ବକାଶମୟ ସ୍ୱରୂପ, ବଶ୍ୱକର୍ମ । ମନୁଷ୍ୟ କିଛି ବଶ୍ୱର ସବୁ କର୍ମ ଏକାବେଳକେ କରବ ନାହିଁ । ବଶ୍ୱବକାଶ ମନୁଷ୍ୟ ଦେଖି ବସିଲେ କଣ ଦେଖିବ ? ବକାଶର ଗୋଟି ଗୋଟି ଅଂଶହିଁ ମନୁଷ୍ୟ ଦେଖିବ । ଧର ସୂର୍ଯ୍ୟ ଗୋଟିଏ ବଶ୍ୱବକାଶର ଅଂଶ । ସୂର୍ଯ୍ୟ ସକାଳୁ ଉଠେ, ତାର ପ୍ରକାଶ ବା କର୍ମ ହେଉଚ, ଧର କରଣ ଦେବା । ସେ କରଣ ଦେଇଯାଏ । ସେ କରଣରେ କେଉଁଠାରେ କ୍ଷେତ ପୋଡ଼ିଯାଉଚ, କେଉଁଠାରେ ବା ମାଲେରିଆ ନଷ୍ଟ ହେଉଚ; ସେ କରଣ କେଉଁଠାରେ ପଦ୍ମ ପୋଖରୀରେ ପଡ଼ିବାରୁ ପଦ୍ମ ଫୁଟୁଚ, କେଉଁଠାରେ ଆବର୍ଜ୍ଜନା କୁଢ଼ ଉପରେ ପଡ଼ିବାରେ ସେ ପୋଚଆ ହୋଇ ଉଦ୍ଗୁକ୍ତ କର ଘୋର ଦୁର୍ଗନ୍ଧ ବସ୍ତାର କରୁଚ; କେତେ ଅନନ୍ତ ଶୂନ୍ୟ ବ୍ୟୋମରେ ସେ କରଣ ନଷ୍ଟ ହେଉଚ, କେତେ ପୁଣି ମୃତ ଜଡ଼ ଓ ଅତ ଶୀତ ଚନ୍ଦ୍ର ଭଳି ଉପଗ୍ରହଙ୍କୁ ଦୀପ୍ତ ଓ ଦୂରରେ ସ୍ନିଗ୍ଧ କରୁଚ । ଏଇପରି ବ୍ରହ୍ମର ବଶ୍ୱ ପ୍ରକାଶରେ ସୂର୍ଯ୍ୟ ତାହାର ନଜ ପ୍ରକାଶ କର୍ମ ବା ସ୍ୱଧର୍ମ କର ଯାଉଚ; ଏଥିରେ କୌଣସି ଫଳାଫଳର ଅପେକ୍ଷା ନାହିଁ; କିନ୍ତୁ ଫଳରେ ବଶ୍ୱର ମହାବକାଶର ଧାରା ପୁଷ୍ଟ ହେଉଚ । ଏଇପରି ଧର୍ମ ବା ସ୍ୱଧର୍ମରେ ବଶ୍ୱର ସମସ୍ତ ବସ୍ତୁ ଜନ୍ତୁ ନୟମିତ ।

ସେଇ ବଶ୍ୱପ୍ରକାଶ ଓ ତହିଁରେ ପ୍ରକାଶ ପାଉଥିବା ସ୍ୱଧର୍ମହିଁ ମାନବର ଚରମ ଆଦର୍ଶ । ଏଇ ଆଦର୍ଶରେ କର୍ମନଷ୍ଠ ହେବାହିଁ ମନୁଷ୍ୟର ଧର୍ମ । ଆର୍ଯ୍ୟମାନେ ଏହା ଦେଖିଥିଲେ । ଏହା ଆର୍ଯ୍ୟ ଧର୍ମ ।

### ଆର୍ଯ୍ୟ ଓ ଅନାର୍ଯ୍ୟ ଧର୍ମ—

ଦେଖ ସୂର୍ଯ୍ୟ କରଣ ଦଏ; ଜଳ ବାଷ୍ପ ହୁଏ; ଉପରକୁ ଯାଏ; ବାଷ୍ପରେ ଶୀତ ଲାଗେ; ମେଘ ହୁଏ; ମେଘ ପଡ଼େ; ମାଟି ଓଦା ହୁଏ ଓ ଗଛ ଚେରରେ ଲାଗେ; ଗଛ ବଢ଼େ; ପୁଣି କେତେକାଳ ପରେ ପଡ଼ କାଠ ଭୂମିରେ ପକାଇ ଦଏ;

ସେଥିରୁ ପୁଣି ମାଟି ହୁଏ, ପୁଣି ପାଣି ହୁଏ; ଏଇ ପାଣି ମାଟି ପୁଣି ଜଗତର ବିକାଶରେ ପରସ୍ପର ଆତ୍ମଦାନ କରେ । ଏହାହିଁ ଦୃଶ୍ୟମାନ ଜଗତର ବିକାଶ ଧର୍ମ । ସମସ୍ତେ ସ୍ୱଧର୍ମ କରି ଯାଉଚନ୍ତି । କାହାର କାହାରିକୁ ଅପେକ୍ଷା ନାହିଁ; କିନ୍ତୁ ଏକର ଯାହା ଦରକାର ଅନ୍ୟର ସ୍ୱଧର୍ମରେ ତାହା ପୂର୍ଣ୍ଣହୁଏ । କେହି କୌଣସି କାର୍ଯ୍ୟଟି ହେବ ବୋଲି କିଛି କରୁ ନାହିଁ—ହେଲା କି ନ ହେଲା ବୁଝୁ ନାହିଁ । ଏହାହିଁ ଫଳାଶାହୀନ ବା ନିଷ୍କାମ କର୍ମ । ଏହାହିଁ ସ୍ୱଧର୍ମର ଯଥାର୍ଥ ଧାରଣା । ମନୁଷ୍ୟ ଏହିପରି କର୍ମ ବା ସ୍ୱଧର୍ମ କରିବା ହିଁ ଆର୍ଯ୍ୟଧର୍ମର ଆଦର୍ଶ ।

କିଂତୁ ଜଗତର ଜଡ଼ ବସ୍ତୁରେ ଏ ସ୍ୱଧର୍ମ ଓ ଏ ବିଶ୍ୱବିକାଶ ଦେଖାଗଲା । ମାନବ ଏଇ ବିଶ୍ୱର ଏକ ଅଂଶ ସତ, କିନ୍ତୁ ମାନବର ବିଶେଷ ଅଛି । ତାର ବିକାଶ ସମାଜରେ । ସମାଜ ତାର ଏକ ଜଗତ । ଏଇ ସମାଜରେ ଆତ୍ମବିକାଶର ଧାରା ନ ଧଇଲେ ମନୁଷ୍ୟ ମନୁଷ୍ୟ ହୋଇ ରହିବ ନାହିଁ । ତେଣୁ ସମାଜରେ ଏଇ ଆତ୍ମବିକାଶର ଧାରାହିଁ ମନୁଷ୍ୟର ଧର୍ମ । ଯେଉଁଠାରେ ମନୁଷ୍ୟର ବିକାଶ ଅଛି, ସେଠାରେ ଏଇ ସମାଜରେ ଆତ୍ମବିକାଶ ଦେଖାଯାଏ, କେଉଁଠାରେ ଅଧିକାର ଓ ଭୋଗ ଛଡ଼ାଛଡ଼ିର ଘୋର ଆହରଣ ଓ ସଂଗ୍ରାମ ଭିତରେ ଏଇ ଆତ୍ମପ୍ରକାଶ ଦେଖାଯାଏ; କେଉଁଠାରେ ବା ଅଧିକାର ଆଡ଼କୁ ଦୃଷ୍ଟି ନ ଦେଇ କର୍ତ୍ତବ୍ୟ ବା ସ୍ୱଧର୍ମପାଳନରେ ସେଇ ଆତ୍ମବିକାଶ ଦେଖାଯାଏ । ଅର୍ଥାତ୍, କେଉଁଠାରେ ପ୍ରତ୍ୟେକେ ନିଜର ଯାହା ଭୋଗ ଦରକାର ସମାଜରୁ କୌଣସି ପ୍ରକାରେ ତାହା ଆଦାୟ କରିବାରେ ସର୍ବଦା କର୍ମ-ନିରତ; ପୁଣି କେଉଁ ସମାଜରେ ନିଜର ଭୋଗକୁ ଅପେକ୍ଷା ନ ରଖି ନିଜର ଅନ୍ୟ ପ୍ରତି ଯାହା କର୍ତ୍ତବ୍ୟ ତାହା କରିଯିବାରେ କର୍ମନିରତ । ପ୍ରଥମ ପ୍ରକାର ଧର୍ମଟି ଅନାର୍ଯ୍ୟ ଆଚରଣ ବା ଅନାର୍ଯ୍ୟଧର୍ମ, ଦ୍ୱିତୀୟଟି ଆର୍ଯ୍ୟଧର୍ମ—ଏହାହିଁ ଗୀତାରେ ଭଗବାନ୍‌ଙ୍କ ମତ ।

## ଭୋଗ ଓ ତ୍ୟାଗ—

ଅବଶ୍ୟ ଏକ ଦିଗରେ ସ୍ପୃହା ବା ଭୋଗ, ଅନ୍ୟ ଦିଗରେ ସଂଯମ ବା ତ୍ୟାଗ, ଏଇ ଦୁଇଟି ହେଲା ମୋଟରେ ମାନବର ଆତ୍ମପ୍ରକାଶର ପନ୍ଥା । ଗୋଟିକର ପ୍ରକାଶ ଦାବିରେ, ଅପରଟିର କର୍ତ୍ତବ୍ୟରେ । କିନ୍ତୁ ଏପରି ବୁଝିବା ଉଚିତ ନୁହେ ଯେ, କୌଣସି ମାନବସମାଜରେ ଗୋଟିକର ସତ୍ତା ଲୋପ ହୋଇ କେବଳ ଅପରଟି ଥାଏ । ଗୋଟିଏ ବା ଅପରଟିର ଆଦର୍ଶରେ ସମାଜ ଚାଲେ, ଏତିକି ମାତ୍ର ବୁଝିବାକୁ ହେବ । ମାତ୍ର ଭୋଗ ଭିତରେ ତ୍ୟାଗ ଥାଏ, ପୁଣି ତ୍ୟାଗ ବା କର୍ତ୍ତବ୍ୟର ଆଦର୍ଶରେ ଚାଳିତ ସମାଜରେ ଭୋଗ ବା ଅଧିକାର ଦାବି କରି କାଢ଼ିନେବା ମଧ୍ୟ ପ୍ରକାଶ ପାଏ । କାରଣ ସ୍ପୃହା ମନରେ ସ୍ୱାଭାବୃତ୍ତି—ଏହା ସହଜ ଓ ପ୍ରକୃତିଗତ । ଜନ୍ମରୁ ମାନବ ଯାହା ପାଏ, ପାଟିରେ ପୁରାଏ ଓ ମରିବା ଯାଏ ତାହାର ଲାଳସା ସ୍ପଷ୍ଟ ପ୍ରକାଶ ପାଏ । ଏପରିକି, ଦେଖାଯାଇଚି,

ଜୀବନଯାକ ସଂଯମରେ ଥିବା ଲୋକ ମଲା ପୂର୍ବରୁ ନିଜର କୌଣସି ପରିତ୍ୟକ୍ତ ବସ୍ତୁର ଖାଇବାର ସ୍ପୃହା ପ୍ରକାଶ କରିଚ ଓ ତାହା ଖାଇ ମରିଚ ।

ଅତଏବ ଏ ସ୍ପୃହାରୁ ଜୀବ ମାନବର ପରିତ୍ରାଣ ନାହିଁ । କେବଳ ସ୍ପୃହା ରୋକିବାର ସଂଯମ ମଧ୍ୟ ଏଥିରେ କାର୍ଯ୍ୟକର ହୁଏ ନାହିଁ । ସେଥିପାଇଁ ଭାରତର ଆର୍ଯ୍ୟଧର୍ମୀମାନେ କର୍ତ୍ତବ୍ୟମାନଙ୍କୁ ଜୀବନର ଆଦର୍ଶ କରିଥିଲେ । ଏଥିରେ ତ୍ୟାଗ ଅନ୍ତର୍ନିହିତ ଥିଲେ ମଧ୍ୟ 'ମୁଁ ତ୍ୟାଗ କରୁଚି' ବୋଲି କେହି କିଛି କରେ ନାହିଁ । ତା କଲେ ମଧ୍ୟ ସାଧାରଣ ମାନବ ପରଂପରାରେ ତିଷ୍ଠି ପାରିବ ନାହିଁ । ତ୍ୟାଗ ସ୍ୱାଭାବିକ ନୁହେ । ମାତ୍ର ବିଶ୍ୱଧର୍ମରେ ନିଜକୁ ମିଶାଇ କର୍ତ୍ତବ୍ୟ କରିବାରେ ଲାଗିଲେ ଦୃଷ୍ଟି ନିଜ ଭିତରୁ ସହଜରେ ବାହାରକୁ ଯାଏ ନାହିଁ । ଏହାହିଁ ଆର୍ଯ୍ୟନୀତି ।

## ମାନବ କ୍ରିୟାରେ ଭୋଗ ଓ ତ୍ୟାଗର ନିତ୍ୟସଂପର୍କ—

ପୃଥିବୀର ମାନବ-ନୀତି ମଧ୍ୟ ଏଇପ୍ରା । କେବଳ ଦେଖି ବୁଝିବାରେ ଯାହା ଭ୍ରମ ହୁଏ । ଏଇ ତ୍ୟାଗମୂଳକ କର୍ତ୍ତବ୍ୟ ନୀତି ଛଡ଼ା ସମାଜର ବିକାଶ କୁତ୍ରାପି ସଂଭବ ନୁହେ, ହୋଇ ନାହିଁ । ଭୋଗ ଆହରଣ ଓ ଦାବିର ବାଗ ଗୁଡ଼ିଦେଲେ, ସ୍ପୃହାର ଯଥେଚ୍ଛା ପ୍ରଶ୍ରୟ ଦେଲେ, ମାନବସମାଜର ବିକାଶ କୁତ୍ରାପି ସଂଭବ ନୁହେ । ଯେଉଁ ଅନାର୍ଯ୍ୟଧର୍ମୀମାନେ ଭୋଗ ଓ ଦାବିର ବିକ୍ଷୋଭ ଭିତରେ ସମାଜବିକାଶ କରି ଆସିଚନ୍ତି, ସେମାନେ ମଧ୍ୟ ଯଥାର୍ଥଭୋଗ ଯଥେଚ୍ଛା ପ୍ରସାରରେ ବଢ଼ି ନାହାନ୍ତି । ତ୍ୟାଗର ଘୋର ସଂଯମ ପରମ୍ପରା ଫୁଟି ନ ଥିଲେ, ସେମାନଙ୍କର ସମାଜ ଆଜି ନ ଥାନ୍ତା, ଏହା ଦେଖିବାର ଅଛି । ମାତ୍ର ସେଇ ତ୍ୟାଗ ବିଶ୍ୱଧର୍ମ—ବା ବିଶ୍ୱମାନବରେ ହୁଏତ ସର୍ବଦା ବ୍ୟାପ୍ତ ହୋଇ ନାହିଁ କିଂବା ଜନସାଧାରଣ ଭୋଗର ଚିର ସଂଗ୍ରାମ ଓ ବିକ୍ଷୋଭ ଭିତରେ ସେ ତ୍ୟାଗର ସେ ମହାଜ୍ୟୋତିକୁ ଧରି ପାରି ନାହାନ୍ତି । ସେଥିପାଇଁ ଆଜି ସେଇ ମହାତ୍ୟାଗର ପରିଣାମରେ ସାମ୍ରାଜ୍ୟବାଦ, ପୁଞ୍ଜିବାଦ, ଲୋକଙ୍କ ଉପରେ ନିଜ ଧର୍ମ ଚପି ଦେଇ ତାଙ୍କୁ ସ୍ୱର୍ଗକୁ ନେବା ଓ ନିଜେ ସ୍ୱର୍ଗକୁ ଯିବାର ବାଦ ବା ଧାରଣା ସବୁ ପୃଥିବୀର ମାନବ-ସମାଜରେ ଏକ ଦିଗରେ ଘୋର ଜୁଲମ ଓ ଅପର ଦିଗରେ ଘୋର ଘୃଣା ବା ପ୍ରତିକ୍ରିୟା ସୃଷ୍ଟି କରି ମାନବର ଚିନ୍ତା ଓ ଆଦର୍ଶକୁ ଇତସ୍ତତଃ ଓ ବିକ୍ଷୋଭିତ କରୁଅଛି । ମାନବ ଯେପରି କ୍ରମିକ ପାରମ୍ପରିକ ବିକାଶର ବାଟ ପାଉନାହିଁ । ପ୍ରତିକ୍ରିୟାର-ମହାଧ୍ୱଂସ ଓ ପୁଣି ମହାତ୍ୟାଗର ଗଠନ ଭିତରେ ଛିନ୍ନଭିନ୍ନ ମାନବ-ସମାଜର ବ୍ୟବଚ୍ଛେଦରେ ପରୀକ୍ଷା ଓ ଭିନ୍ନ ଭିନ୍ନ ଅବସ୍ଥାମାନଙ୍କରେ ପ୍ରଗତିର ପ୍ରଚେଷ୍ଟା ଚାଲିଚ । ସମୂହ ମାନବୀୟତା କେବେ କେବେ ଚକ୍ରବାଳରେ ଦେଖାଗଲେ ମଧ୍ୟ ତାର ସ୍ଥିତି ସ୍ଥିର ରହୁ ନାହିଁ ।

ଆର୍ଯ୍ୟଧର୍ମର ପ୍ରଗତିର ଧାରା ବର୍ଣ୍ଣନା କରିବା ପୂର୍ବରୁ ଏଇ ଅନାର୍ଯ୍ୟ ଗତି ଟିକିଏ ଉଦାହରଣରେ ବୁଝାଇଦେବା ଉଚିତ । କାରଣ, ଏବେ ପୃଥିବୀରେ ଏଇ ଅନାର୍ଯ୍ୟ ଧର୍ମର ମହାପ୍ଲାବନ ବେଳେ, କଥାଟି ଏତେ ସାମାନ୍ୟ ସୂଚନାରୁ ବୁଝିନେବା ସମସ୍ତଙ୍କର ସୁବିଧାଜନକ ନ ହୋଇପାରେ ।

## ଅନାର୍ଯ୍ୟ ଧର୍ମ—

ମନେ ରଖିବାକୁ ହେବ, ନରକଂକାଳ ପରୀକ୍ଷା କରି ଆର୍ଯ୍ୟ ଅନାର୍ଯ୍ୟ ସ୍ଥିର କରିବା ଗୀତାର ଉଦ୍ଦେଶ୍ୟ ନୁହେଁ; କିମ୍ବା ଧର୍ମ ହିସାବରେ ତାହା ସ୍ମରଣୀୟ ନୁହେଁ । ସେ ହିସାବରେ ହୁଏତ ଭାରତର ନରକଂକାଳ ଓ ରକ୍ତରେ ଆର୍ଯ୍ୟ ଗୁଣ ଅଛି କି ନା ସନ୍ଦେହ । ଥିଲେ ହୁଏତ ସାମାନ୍ୟ ଅଛି । ପୃଥିବୀରେ ହୁଏତ ଅନ୍ୟ ଜାତିର ଶତକଡ଼ା ୫୦ରୁ ବେଶୀ ଥାଇପାରେ । କଂକାଳତତ୍ତ୍ୱବିତ୍‌ମାନଙ୍କର ଏ ଗଣନାର କଥା ଏଠାରେ କୁହାଯାଉ ନାହିଁ । ସମାଜର ସଂସ୍କୃତି ହିସାବରେ ଭାରତଧର୍ମ ହିଁ ଆର୍ଯ୍ୟଧର୍ମ ଓ ଅନ୍ୟାନ୍ୟ ଧର୍ମ ଅନାର୍ଯ୍ୟଧର୍ମ । ସେ ଦୁହିଙ୍କ ପ୍ରକୃତି ଓ ପ୍ରକ୍ରିୟାରେ ଏହା ହିଁ ପ୍ରକାଶ ପାଇଆସିଛି । ଅନ୍ୟଠାରେ ଯଦି କେବେ ଆର୍ଯ୍ୟଧର୍ମ ଥିଲା, ତାହା ଇତିହାସରେ କେବେ ପ୍ରକାଶ ପାଇ ନାହିଁ । ଉଦାହରଣ ସ୍ୱରୂପ ଦେଖ, ଇତିହାସର ଆଦିକାଳରେ ଯୀଶୁଖ୍ରୀଷ୍ଟ କହିଲେ, "ମାଗ, ତୁମକୁ ଦିଆଯିବ ।" ଦ୍ୱାରରେ ଧକ୍‌କା ଦିଅ, ତୁମ ପାଇଁ ଏହା ଫିଟିବ ।" ମାନବ ଈଶ୍ୱରଙ୍କୁ ମାଗିବ ଓ ଦ୍ୱାରରେ ଧକ୍‌କା ଦେବ । ଅବଶ୍ୟ ଭକ୍ତ ହିସାବରେ ଏ ବଡ଼ ସୁନ୍ଦର କଥା । ମାତ୍ର ଭୋଗପ୍ରେପ୍ସୁ ମାନବକୁ ଏ ସାନ୍ତ୍ୱନା ବାଣୀ ଧର୍ମ ଓ ସଂସ୍କୃତିର ପ୍ରକୃତି ସ୍ପଷ୍ଟ ପ୍ରକାଶ କରୁଛି । ଅବଶ୍ୟ ଋଗ୍‌ବେଦ ମନ୍ତ୍ରରେ ଏଇପରି ଇନ୍ଦ୍ରଙ୍କଠାରେ ପୁତ୍ର ପଶୁ ପ୍ରାର୍ଥନା କରି ସ୍ତୁତି କରିବାରେ ଦେଖା ନ ଯାଏ ନୁହେ । ସେସବୁ ଯଜ୍ଞକ୍ରିୟାରେ ପ୍ରୟୋଗ କରାଯାଏ । ମାତ୍ର ଏସବୁ ଯଜ୍ଞକ୍ରିୟା ଯେ ମୂଳ ଆର୍ଯ୍ୟଧର୍ମର ଯଥାର୍ଥ ଆଦର୍ଶର ପ୍ରକୃତିଗତ ନୁହେ ଏହା ଭଗବାନ୍ ସ୍ପଷ୍ଟ କହିଛନ୍ତି (୨.୪୨—୪୪) । ପ୍ରକୃତ ଯଜ୍ଞ ବର୍ଣ୍ଣନା କଲାବେଳେ ଭଗବାନ୍ କହିଛନ୍ତି, "ଯଜ୍ଞ ଅର୍ଥାତ୍ କର୍ତ୍ତବ୍ୟ ପରଂପରା ସୃଷ୍ଟି କରି ବିଧାତା କହିଲେ, ଏଇ ଯଜ୍ଞରେ ତୁମେ (ଲୋକ) ବଢ଼ । ଏଥିରେହିଁ ତୁମର କାମନା ପୂର୍ଣ୍ଣ ହେବ ।" (୩.୧୦) ଅର୍ଥାତ୍ ସମସ୍ତେ ପରସ୍ପର ପ୍ରତି ନିୟତ ଭାବରେ ନିଜ ନିଜର କର୍ତ୍ତବ୍ୟ କରିଗଲେ, ତୁମର ଯାହା ପାଇବାର ଥିବ ତା ତୁମେ ପାଇଯିବ । ଛଡ଼ାଛଡ଼ିରେ କାମ ହେବ ନାହିଁ । ସେଇ କଥା ସ୍ପଷ୍ଟ କରି କହିଲେ, "ଯଜ୍ଞରେ ତୁମେ ଦେବତାଙ୍କୁ ଭାବ । ସେଇ ଦେବତାମାନେ ବଳେ ତୁମକୁ ଭାବିବେ । ଏଇପରି ପରସ୍ପରକୁ ଭାବିବାରେ ସମସ୍ତେ ଶ୍ରେୟ ପାଇବ ।" (୩.୧୧) । ଅର୍ଥାତ୍ ତୁମେ ଅନ୍ୟ ପ୍ରତି କର୍ତ୍ତବ୍ୟ କରି ଯିବ ଓ ସେଇ ଧର୍ମରେ ଅନ୍ୟ ତୁମ ପ୍ରତି କର୍ତ୍ତବ୍ୟ କରିବ । ଏଇପରି ପରସ୍ପର ପ୍ରତି କର୍ତ୍ତବ୍ୟ କରିବାରେ ସମସ୍ତଙ୍କର ଶ୍ରେୟ ହେବ । ପୁଣି ଫିଟାଇ କହିଲେ, "ତୁମେ ଯଜ୍ଞରେ

ଦେବତାଙ୍କୁ ଭାବିଲେ ବା ତାଙ୍କ ପ୍ରତି କର୍ତ୍ତବ୍ୟ କଲେ, ସେ ତୁମ ବାଞ୍ଛିତ ଭୋଗ ତୁମକୁ ଦେବେ । ସେ ଦେବା ସ୍ଥଳେ ତାଙ୍କୁ ତାଙ୍କ ଡକା ନ ଦେଇ ଯେ ଭୋଗ କରି ବସେ ସେ ଚୋର ।" (ଗୀ. ୧୨) । ମୂଳରୁ ପ୍ରସଙ୍ଗ ଆରମ୍ଭ କରି ମଧ୍ୟ ଭଗବାନ୍ କହିଛନ୍ତି, "ଯଜ୍ଞ ଭାବରେ କର୍ମ ନ କରି ଅନ୍ୟ ଭାବରେ (ଅର୍ଥାତ୍, କେବଳ ନିଜ ଭୋଗ ପାଇଁ) କର୍ମ କଲେ, ସେ କର୍ମରେ ଲୋକ ବାନ୍ଧି ହୋଇ ପଡ଼େ ।" (ଗୀ.୯) ଅର୍ଥାତ୍, କର୍ତ୍ତବ୍ୟବୁଦ୍ଧିରେ କର୍ମ ନ କରି ଭୋଗ ସଂଗ୍ରହରେ ଲାଗିଲେ, ଲୋକ କର୍ମରେ ଘାଣ୍ଟି ହୁଏ । ତାର କର୍ମ ଛୁଟେ ନାହିଁ—ସେ କର୍ମରେ କୌଣସି ସମାଧାନ ବା ଶାନ୍ତିର ଆଶା ନାହିଁ । ଏଇ କଥା ସଙ୍ଗେ ଆର୍ଯ୍ୟଧର୍ମରେ ମାନବର ଜନ୍ମ ସଙ୍ଗେ ସଙ୍ଗେ 'ଋଣତ୍ରୟ'ର କଥା ସ୍ମରଣୀୟ । ଆର୍ଯ୍ୟଶାସ୍ତ୍ର କହନ୍ତି, ମନୁଷ୍ୟ ଏ ଜଗତରେ ଦେବ ଋଣ, ଋଷି ଋଣ, ପିତୃ ଋଣ ଏଇ ତିନୋଟି ଋଣ ନେଇ ଜନ୍ମ ହୁଏ । ତାହା ପରିଶୋଧ ନ କଲେ ମୁକ୍ତିର ପନ୍ଥା ମିଳେ ନାହିଁ । ପରିବାର ପ୍ରତି, ସମାଜ ପ୍ରତି ଓ ଜଗତ ପ୍ରତି କର୍ତ୍ତବ୍ୟ ମାତ୍ର ନେଇ ସେ ଜନ୍ମ ପାଏ; ଯେପରି କି ଜୀବନଯାକ ତାର ଋଣ ଶୋଧ ଲାଗିଛି । କାହାରିଠାରୁ ଋଣ ଅଦାୟ କରିବାର କଳ୍ପନା ନାହିଁ । ମାତ୍ର ଅନ୍ୟର ଋଷି-ଋଣ ପ୍ରଭୃତି ଶୋଧ ଦେବାରେ ସେ ତାହାର ମୂଳ କଳନ୍ତର ସବୁ ଦାବି ନ କରି ମଧ୍ୟ ସବୁ ପାଇଯାଉଛି ।

## ଖ୍ରୀଷ୍ଟଧର୍ମରେ ଦୃଷ୍ଟାନ୍ତ—

ସେଇପରି ଖ୍ରୀଷ୍ଟଧର୍ମର ମୌଳିକ ନୀତିରେ ଅଛି, "ଚୋରି କର ନାହିଁ", "ପରଦାରାକୁ ଛୁଅଁ ନାହିଁ", "ମନୁଷ୍ୟ ମାର ନାହିଁ"—ଏ ପ୍ରଭୃତିରୁ ପ୍ରକାଶ ପାଏ ମନୁଷ୍ୟ ଯେପରିକି ଏହାହିଁ କରିଯାଉଚି, ତାକୁ ମନା କରିବାହିଁ ଧର୍ମର ଆଦର୍ଶ । ଆର୍ଯ୍ୟଧର୍ମର ସାମାଜିକ କ୍ରିୟାପ୍ରଣାଳୀର ବିଶେଷ ବିବୃତିରେ ଏସବୁର ପ୍ରକାଶ ନ ପାଇଚି, ନୁହେଁ । ମନୁଷ୍ୟ ମାତ୍ରର ଲୋଭ, ଭୋଗସ୍ପୃହା ଅଛି ଓ ତାହା ନିବାରଣ କରି ଆଦର୍ଶ ଠିକ୍ ରଖିବା ଦରକାର ହୁଏ । ମାତ୍ର ଏହାହିଁ ଯେଉଁଠାରେ ଆଦର୍ଶ, ସେଠାରେ ଧର୍ମର ପ୍ରକୃତି ଯେ ଭୋଗରେ ଏହା ସ୍ପଷ୍ଟ । ଭଗବାନ୍ ଗୀତାରେ ଏପରିଭାବରେ କୌଣସି ମାନବକ୍ରିୟାର ଆଲୋଚନା କରିନାହାନ୍ତି । ସାଧାରଣ କଥାରେ ମଧ୍ୟ ଯୀଶୁଖ୍ରୀଷ୍ଟ କହିଛନ୍ତି, "ଏ ଗାଲରେ କେହି ମାଇଲେ, ସେ ଗାଲ ଦେଖାଇ ଦିଅ ।" ବଡ଼ ଭଲ କଥା । କିନ୍ତୁ ଏଥିରୁ ପ୍ରକାଶ ପାଉଛି, ମନୁଷ୍ୟ ଯେପରିକି ଖାଲି ଗାଲରେ ଚାପୁଡ଼ା ଖାଇ ପ୍ରତିଶୋଧ ନେବା ପାଇଁ ଜନ୍ମ ହୋଇଚି ।

ମାତ୍ର ଏସବୁରେ ଯୀଶୁଖ୍ରୀଷ୍ଟଙ୍କର ଗୌଣତା ଯେପରି କେହି ନ ବୁଝନ୍ତି । ସମାଜ ଯାହା ଥିଲା ତ କିଛି ସୁଧାରିବା ପାଇଁ ସେ ଏସବୁ କହିଥିଲେ । ସେଠାରେ ଗୀତାର କର୍ତ୍ତବ୍ୟ ପରଂପରାମାନରେ ସମାଜ ରକ୍ଷା ଲୋକେ ବୁଝିଲେ ନାହିଁ; କାରଣ ସେଥିପାଇଁ କ୍ଷେତ୍ର ନ ଥିଲା । ସେଠାରୁ ଆରମ୍ଭ କରି ବୁଦ୍ଧିଅର ଆଧୁନିକ ମହାତ୍ମା

ଲେନିନ୍‌ଙ୍କ ପର୍ଯ୍ୟନ୍ତ ସେଇ ଧାରା । ଲେନିନ୍ ମଧ୍ୟ କହନ୍ତି, "ପ୍ରପୀଡ଼ିତ, ଅପହରଣଗ୍ରସ୍ତ ଭୂମିକ କୃଷକଙ୍କର ଧନ ରକ୍ଷିତସ୍ୱାର୍ଥରେ ପୁଞ୍ଜୀଭୂତ ରହିଛି । ତାଙ୍କୁ ବଳପୂର୍ବକ ଛଡ଼ାଇ ବାଣ୍ଟିଦିଅ ।" ଏ ମଧ୍ୟ ସେଇ ଭୋଗ ଛଡ଼ାଛଡ଼ିର ମାମଲା । ଏଥିରେ ଜଗତ ଏକ ଛଡ଼ାଛଡ଼ିରୁ ଅନ୍ୟ ଛଡ଼ାଛଡ଼ିର ଘୋର ପ୍ରତିଦ୍ୱନ୍ଦ୍ୱିତାରେ ହୁଏତ ଗ୍ରସିବ । ମାତ୍ର ଏଥିରେ ମଧ୍ୟ ପ୍ରଗତିର ଯେ ଧାରାଟି ଦେଖାଯାଏ, ତାହାର ମୂଳ କଣ ? ତାହାର ମୂଳ ସେଇ ମହାତ୍ୟାଗ ଓ କର୍ତ୍ତବ୍ୟପ୍ରାଣତା । ତା ନ ଦେଖିବା ଯାଏ, ସେ ଆଦର୍ଶ ପ୍ରତିଷ୍ଠିତ ନ ହେବାଯାଏ ଶାନ୍ତି ନାହିଁ । ରାଷ୍ଟ୍ରସଙ୍ଘ ଗଢ଼ି ଯୁଦ୍ଧ ଉପକରଣ ବଢ଼ାଇଲେ ବା କମାଇଲେ ସେ ଶାନ୍ତି ବା ସମାଜର ପ୍ରଗତି-ଧାରା ଫିଟିବ ନାହିଁ ।

## କ୍ରମିକ ଗତି—

ଏ ତ୍ୟାଗ ଦେଖିବା ଦୂରରେ ନାହିଁ । କିନ୍ତୁ ତ୍ୟାଗର ଆଦର୍ଶରେ, କର୍ତ୍ତବ୍ୟର ଭିତ୍ତିରେ ସମାଜ ପ୍ରତିଷ୍ଠିତ ନ ହେବାରୁ ସେ ତ୍ୟାଗ ଦିଶୁନାହିଁ । ଯୀଶୁ ଖ୍ରୀଷ୍ଟ ଯେ ମାନବର ଅଧିକାର ମାନବକୁ ଦେବାର ଯତ୍ନ କରିଥିଲେ, ସେ ନିଜେ କେଉଁ ଅଧିକାରଟି ନିଜପାଇଁ ଦାବି କରିଥିଲେ, କେହି କହିବେ କି ? ଯୀଶୁ ଖ୍ରୀଷ୍ଟଙ୍କ ପରି ମହାତ୍ୟାଗପୂତ ଓ କର୍ତ୍ତବ୍ୟମାତ୍ର-ନିଷ୍ଠ ମହାପୁରୁଷ ପୃଥିବୀରେ କେତେ ଜଣ ଜନ୍ମି-ଛନ୍ତି ? ଲେନିନ୍ ଯେ ଅପହରଣଗ୍ରସ୍ତ, ପ୍ରପୀଡ଼ିତ ଲୋକଙ୍କ ଭୋଗର ଅଧିକାର ସେଇ ଲୋକଙ୍କୁ ଦେବାପାଇଁ ଜୀବନ ପଣ କରିଥିଲେ, ସେ ନିଜ ପାଇଁ କେଉଁ ଭୋଗଟି ସଂଗ୍ରହ କରିବାରେ ଲାଗିଥିଲେ ? ତାଙ୍କ ପରି ମଧ୍ୟ ତ୍ୟାଗୀ କର୍ତ୍ତବ୍ୟ-ସର୍ବସ୍ୱ ବ୍ୟକ୍ତି ଇତିହାସରେ କେତେ ମିଳିବେ ? ଯୁଗେ ଯୁଗେ ଏହିମାନଙ୍କ ଭଳି ବ୍ୟକ୍ତିଙ୍କ କର୍ମ ଓ ବ୍ୟକ୍ତିତ୍ୱ ପ୍ରଭାବ ବିନା ଆଜି ପୃଥିବୀରେ ଅନାର୍ଯ୍ୟ ସଭ୍ୟତାର ଚିହ୍ନ ନ ଥାନ୍ତା । ସେତିକି ନୁହେଁ, ଏଇ ଭୋଗର ବଣ୍ଟାବଣ୍ଟି କରି ସମାଜର ସ୍ଥିତି ରଖିବା ପାଇଁ ତ୍ୟାଗପୂତ କର୍ମବୀରମାନେ କାଳେ କାଳେ ସେସବୁ ଭୂମିରେ ଜନ୍ମିଛନ୍ତି । ତଥାପି କୌଣସି ସେସବୁ ଭୂମିରେ ସ୍ଥିର ନାହିଁ । ପୁରୁଣା ଗ୍ରୀକ୍ ଓ ରୋମ ସଭ୍ୟତା ପରେ ଖ୍ରୀଷ୍ଟ ସଭ୍ୟତା ତା ପରେ ପୁଣି ମଧ୍ୟଯୁଗର ପୋପ୍ ସଭ୍ୟତା, ତା ପରେ ପୁଣି ଲୋକ ସ୍ୱାଧୀନତା ଓ ସ୍ୱାଧୀନ ଚିନ୍ତାର ବିକାଶରୂପ ଘୋର ପ୍ରତିଦ୍ୱନ୍ଦ୍ୱିତା ଫଳରେ ସବୁ ଓଲଟ୍ ପାଲଟ୍ ହୋଇ ସେଥିରୁ ଜାତୀୟତାର ବିକାଶ ଓ ଶେଷରେ ଏବେ ରୁଷିଆରେ ପୂର୍ଣ୍ଣ ସଂସ୍ଥାପ୍ତ ଜନଶକ୍ତି ଓ ଜନ-ଅଧିକାରର ପ୍ରଳୟ ତାଣ୍ଡବ ।

## ସମାଜର ସ୍ଥିତି—

ଏହିପରି ପ୍ରତିଦ୍ୱନ୍ଦ୍ୱିତା ପରେ ପ୍ରତିଦ୍ୱନ୍ଦ୍ୱିତା ସମାଜର ପରିସ୍ଥିତିକୁ ଅସ୍ତବ୍ୟସ୍ତ କରିଦେଇ ପୁଣି ଗଢ଼ିଛି ଓ ଗଢ଼ୁଛି । ସମସ୍ତ ପ୍ରତିଦ୍ୱନ୍ଦ୍ୱିତାର ପୋଷଣରେ ସମାଜର ଶାନ୍ତି ଓ ସଦାନ ବିକାଶ ହୋଇ ନାହିଁ, ତାହାର କାରଣ, ତ୍ୟାଗରେ ବାରଂବାର ସମାଜର ସ୍ଥିତି ପ୍ରତିଷ୍ଠିତ ହେବାର ସ୍ପଷ୍ଟ ଦେଖାଗଲେ

ମଧ୍ୟ, ସେଇ ତ୍ୟାଗ-ଧର୍ମର ଆଦର୍ଶରେ ସମାଜର ବିକାଶଧାରା ସ୍ଥିର ରଖିବାର ଉଦ୍ୟମ ହୋଇନାହିଁ । କର୍ମର ଘୋର ଜଞ୍ଜାଳ ମଧ୍ୟରେ ସେ ତ୍ୟାଗମନ୍ତ୍ରର ଅନୁସନ୍ଧାନ କରି ଆଦର କରିବାର ସେ ସଭ୍ୟତାରେ ଉଦ୍ୟମ ହୋଇନାହିଁ । କାହିଁକି ହୋଇନାହିଁ, ତାର କାରଣ ଅଛି । ତାହା ପରେ ଅନ୍ୟ ପ୍ରକରଣରେ କୁହାଯିବ । ଏବେ ଯେଉଁ ପ୍ରତିଷ୍ଠାର ପରଂପରା କଥା ଉପରେ କୁହାଗଲା, ଉଦାହରଣର ସୂଚନା ଦେଇ ତାକୁ ଟିକିଏ ବିଶଦ କରି-ଦେଲେ ଆର୍ଯ୍ୟଧର୍ମର ବିକାଶଧାରା ସଙ୍ଗେ ତାକୁ ତୁଳନା କରି ଦେଖିବାର ସୁବିଧା ହେବ । ମାତ୍ର ସେସବୁ ସୂଚନା ଦେବା ପୂର୍ବରୁ ଏତକ ଏଠାରେ ପୁଣି କହିରଖିବା ଉଚିତ ଯେ, ଜଗତରେ ପ୍ରକୃତିର ଏକାନ୍ତ ବିରୋଧରେ କୌଣସି ସ୍ଥିତି ଥାଏ ନାହିଁ । ଯେଉଁ ବସ୍ତୁର ଯାହା ଯଥାର୍ଥ ପ୍ରକୃତି, ତାହାର ଯଥାଯଥ ଅନୁସନ୍ଧାନ କରି ସମାଜର ପ୍ରତିଷ୍ଠାନ ଓ ଅନୁଷ୍ଠାନାଦି ତାହାରି ଉପରେ ଥୋଇଲେ ସ୍ଥାୟୀ ହୁଏ । ଗଛର ପ୍ରକୃତି ଅଳୁଅକୁ ଡାଳ ଲମ୍ବାଇ ଦବା, ତେଣୁ ଆଲୁଅରେ ଗଛକୁ ରଖି ବଢ଼ାଇବାକୁ ହୁଏ । ମାତ୍ର ମାନବର ବୃକ୍ଷାଦି ପ୍ରାକୃତିକ ବସ୍ତୁଠାରୁ ପ୍ରଭେଦ ସ୍ପଷ୍ଟ । ମାନବ କ୍ରିୟାରେ ଯାହା ପ୍ରକାଶ ପାଇଲା ପରି ଲାଗେ, ସେ କ୍ରିୟାର ପ୍ରକୃତି ତାହା ନୁହେଁ । ପ୍ରକାଶରେ ଦେଖାଯାଏ, ହାତ ଧରୁଚି, ଗୋଡ଼ ଚାଲୁଚି, ପାଟି ଖାଉଚି—ଇତ୍ୟାଦି । କିନ୍ତୁ ପ୍ରକୃତିର ଅନୁସନ୍ଧାନ ଦୃଷ୍ଟିରେ ଦେଖିଲେ, ଏମାନେ ସବୁ ଯଥାର୍ଥରେ କେହି କାମ କରୁନାହାନ୍ତି—କରୁଛି ମନ । ମନ ନ କହିଲେ ହାତ ଗୋଡ଼ କେହି ଉଠିବେ ନାହିଁ । କାହାକୁ ଯଦି କୁହାଯାଏ, 'ଗୋଡ଼ ଚାଲୁ ନାହିଁ, ମନ ଚାଲୁଚି ।' ସେ ହୁଏତ ହଠାତ୍ ହସିବ । କିନ୍ତୁ ହସିଲେ କଣ ହେଲା, କଥାଟି ଏକା ସତ । ପୁଣି ଆଉ ଟିକିଏ ଭିତରକୁ ଅନୁସନ୍ଧାନ କରି ଦେଖିଲେ ଦେଖାଯିବ, ମନକୁ ଚଳାଇବାକୁ ଆଉରି ଏକ ବୃତ୍ତି ଅଛି, ସେ ହେଉଛି 'ବୁଦ୍ଧି' । 'ହଁ, ମୁଁ ଏହା କରିବି, କି କରିବି ନାହିଁ'—ଏହା ସ୍ଥିର ହୁଏ ବୁଦ୍ଧିରେ । 'ହଁ, କରିବି ବୋଲି ବୁଦ୍ଧି ସ୍ଥିର ନ କଲେ ମନ ବି ଚଳିବ ନାହିଁ, ଆଉ ହାତ ଗୋଡ଼ ପ୍ରଭୃତି ଇନ୍ଦ୍ରିୟ ତ ପରର କଥା, ପୁଣି ଅନୁସନ୍ଧାନ କରି ଦେଖିଲେ ଦେଖାଯିବ, ବୁଦ୍ଧିର ଚାଳକ ହେଉଚି, ଅହଂକାର, 'ମୁଁ' ବା ଆତ୍ମା । 'ଏ କାର୍ଯ୍ୟରେ ମୋର ମଙ୍ଗଳ ହେବ, ଏ ଭାବ ନ ଆସିଲେ ବୁଦ୍ଧିରେ କାର୍ଯ୍ୟଟି କରିବାକୁ ନିଶ୍ଚୟ ବା 'ବ୍ୟବସାୟ' ଆସିବ ନାହିଁ । ଆଉ ମନ ଇନ୍ଦ୍ରିୟକୁ ପ୍ରେରଣା ଆସିବ କାହୁଁ । ଉଦାହରଣ ସ୍ୱରୂପ ଦେଖ, ଚୋର ଚୋରି କରିବାକୁ ବାହାରିଲାବେଳେ ମଧ୍ୟ କୌଣସି ନା କୌଣସି କାରଣରୁ ତାର ନଜର, କୌଣସି ଦ୍ରବ୍ୟ ବା କଳ୍ପିତ ମଙ୍ଗଳ ପାଇଁ ଚୋରି ଯେ ତାହାର କରିବା ଉଚିତ, ଏ ନିଶ୍ଚୟ ବୁଦ୍ଧି ତାହାର ଆଗ ହୁଏ, ତାପରେ ସେ ଚୋରି କରେ । ଏ ଆତ୍ମମଙ୍ଗଳ ବା ଆତ୍ମକଳ୍ୟବୁଦ୍ଧି ନ ହେଲେ, ତାର ମନ ଇନ୍ଦ୍ରିୟ

କେହ ସ୍ଥେଶ କରିବାକୁ ଚଳିବେ ନାହିଁ । ଏଠାରେ ମଧ୍ୟ ଦେଖିବାକୁ ହେବ, ଏଇ ଅମଙ୍ଗଳ ବା ଆତ୍ମଲାଭବୁଦ୍ଧି ମଧ୍ୟ ଯାହା ଲାଗେ, ତା ନୁହେ । ଯାହା ମଙ୍ଗଳ ପରି ଲାଗେ, ତାକୁ ମଧ୍ୟ ପୁଣି ଅନୁସନ୍ଧାନ କରି ଦେଖିବାକୁ ହେବ । ମଙ୍ଗଳବୁଦ୍ଧି ବାସନାବୁଦ୍ଧି, ଅର୍ଥାତ୍ କଥା କଥାକେ ପ୍ରକାରେ ପ୍ରକାରେ, ନା ସର୍ବଦା ଏକଭାବାପନ୍ନ, ବା ଏକ ବ୍ୟବସାୟତ୍ମକ । ( ୨.୪୧ ) । ଯେଉଁ ଆତ୍ମଧାରଣାରେ ଏଇ ଏକ ବ୍ୟବସାୟତ୍ମକ ବୁଦ୍ଧି ବା ଗୀତାର ପରିଭାଷାରେ 'ବ୍ୟବସାୟାତ୍ମିକା ବୁଦ୍ଧି ହୁଏ, ତାହାହିଁ ଆତ୍ମାର ଯଥାର୍ଥ ଧାରଣା । ( ୩. ୪୨. ୪୩; ୬. ୫, ୬ ଦେଖ ) ।

## ସ୍ଥିତ ଓ ପ୍ରତୀତ—

ସେ କଥା ଥାଉ । ଏଠାରେ ଦେଖିବାର କଥା, ମନୁଷ୍ୟ ଇନ୍ଦ୍ରିୟରେ ଯାହା ଦେଖାଗଲା ପରି ଲାଗେ, ତା ପ୍ରକୃତ ବସ୍ତୁ ନୁହେ । ସେଇ ସାକ୍ଷାତ୍ ପ୍ରତୀତ ଭିତରେ ଯଥାର୍ଥ ବସ୍ତୁ ଅନୁସନ୍ଧାନ କରି ଇନ୍ଦ୍ରିୟର ଆଦର୍ଶ ସେଇଥିରେ ପ୍ରତିଷ୍ଠିତ କରିବାକୁ ହେବ । ଉପରେ ଉଦାହରଣ ସ୍ୱରୂପ ସେଇ କଥା ଦେଖାଗଲା । ଏବେ ଦେଖାଯାଉ, ମନୁଷ୍ୟ ଯେଉଁ ଭୋଗର ଆହରଣ କରେ, ଅନ୍ୟର ଅଧିକାର କଳେବଳେ କୌଶଳେ ଛଡ଼ାଇ ନିଜର କରି ସଞ୍ଚୟ କରେ, ତାର ପ୍ରକୃତ କଣ ? ମନୁଷ୍ୟ ଆପାତତଃ ବିଶ୍ୱରେ, ସେ ଭୋଗର ଆହରଣ ଓ ସଞ୍ଚୟ କରି ଭୋଗ କରୁଛି । କିନ୍ତୁ ଭିତରକୁ ଆଲୋଚନା କରି ଦେଖିଲେ ତା ନୁହେଁ । ଯେ ବଡ଼ କୋଠାଘର କରି ସେଥି ଛଣା ପାଣି, କଳ, ବିଜୁଳିବତି, ବେତାର ସ୍ୱରବହ ଯନ୍ତ୍ର ତଥା ବାଷ୍ପଯାନ ଘରେ ରଖି, ଦାସ ଦାସୀ ଘେନି ବିଳାସ ଭୋଗରେ ଭାସୁଛି, ସେ କଣ କରୁଛି ? ସେ କେବଳ ସବୁ ଦାନ କରି ବିସ୍ତରୁଛି ସେ ଭୋଗ କରୁଛି । କୋଠାର ମାଲମସଲା କିଣିବା, ମଜୁରି ଦବା, ମଟର ପ୍ରଭୃତି କିଣିବା, ଦାସ ଦାସୀଙ୍କୁ ମଜୁରି ଦେବା ପ୍ରଭୃତିରେ ସବୁ ଖର୍ଚ୍ଚ କରିବାହିଁ ତାର ଭୋଗର ଉପାଦାନ ଓ ଉପକରଣ । ଫଳରେ ନିଜେ ଭୋଗ କରିବା ନାମରେ ସେ ଅନ୍ୟର ଖାଦ୍ୟପେୟ ଯୋଗାଡ଼ କରୁଛି । କିନ୍ତୁ ସେ ତାହା ଜାଣୁ ନାହିଁ । ଏଇପରି ସବୁ ଅଧିକାର ଦାବି ଓ ସବୁ ଭୋଗର ଯଥାର୍ଥ ପ୍ରକୃତିରେ ତ୍ୟାଗ ପୂରି ରହିଛି । ( ୩. ୧୧ ଟୀକା ଦେଖ ) । ଅତଏବ ଏଇ ତ୍ୟାଗ ହିଁ ମାନବ ସମାଜର ସ୍ଥିର ଆଦର୍ଶ । ଭୋଗ ଏଇ ତ୍ୟାଗର ରୂପାନ୍ତର ମାତ୍ର ।

## ଅନାର୍ଯ୍ୟ ସଭ୍ୟତାରେ ପ୍ରତିଦ୍ୱନ୍ଦ୍ୱିତାର ପରମ୍ପରା—

ଏଠାରେ ଏ ଅବାନ୍ତର ବ୍ୟାଖ୍ୟା ଏତିକିରେ ଥାଉ । ଏବେ ଭୋଗମୂଳକ ଅନାର୍ଯ୍ୟ ସଭ୍ୟତାର ଯେ ପ୍ରତିଦ୍ୱନ୍ଦ୍ୱିତା ପରମ୍ପରାରେ ବିନାଶ ବିକାଶରେ ଗଢ଼ି ଗୁଲିଛି, ଉଦାହରଣ ସୂଚନାରେ ତାକୁ ବିଶଦ କରାଯାଉ । ପ୍ରତ୍ନତତ୍ତ୍ୱସେବୀମାନଙ୍କ ଅନୁସନ୍ଧାନ

ଉପରେ ନିର୍ଭର କରି ନିତାନ୍ତ ପ୍ରାଗୈତିହାସିକ ଯୁଗକୁ ଯିବା ଦରକାର ନାହିଁ । ପରେ ଆର୍ଯ୍ୟଧର୍ମର ମୌଳିକ ପ୍ରଭାବ କଥା କହିଲା ବେଳେ ସେ ସବୁର କିଛି ଆଭାସ ଦିଆଯିବ । ଏଠାରେ କେବଳ ଐତିହାସିକ ଯୁଗର ଆଭାସ ଦିଆଯାଉଛି ।

## ସକ୍ରେଟିସ—

ଯୀଶୁଖ୍ରୀଷ୍ଟଙ୍କ କିଛି ପୂର୍ବରୁ ଏହି ଯୁଗ ଆରମ୍ଭ । ଯୀଶୁଖ୍ରୀଷ୍ଟଙ୍କର ପ୍ରାୟ ୪୦୦ ବର୍ଷ ପୂର୍ବରୁ ଗ୍ରୀସ୍ ଦେଶରେ ପ୍ରଥମେ ମହାମନୀଷୀ ସକ୍ରେଟିସ୍ କହିଲେ, 'ଆତ୍ମା ଅମର; ଏସବୁ ଭୋଗ ବା ଦୁଃଖରେ ଆତ୍ମାର କିଛି ଯାଏ ଆସେ ନାହିଁ । ଏହି ଆତ୍ମଜ୍ଞାନରେ ସ୍ଥିର ଥିବା ବ୍ୟକ୍ତିର ଦେବଦେବୀ-ପୂଜା ଦରକାର ନାହିଁ ।' ସେ କାଳର ଗ୍ରୀସ୍ ରାଜ୍ୟ, ମନୀଷୀପୁଙ୍ଗବଙ୍କର ଏ ଦୁର୍ବିନୀତତା ସହିଲା ନାହିଁ । ଏହା ପ୍ରଚାର କରି ସକ୍ରେଟିସ୍ ଗ୍ରୀସ୍ ଦେଶର ଯୁବକଙ୍କୁ ଖରାପ କରି ଦେଉଛନ୍ତି ବୋଲି ସକ୍ରେଟିସଙ୍କର ପ୍ରାଣଦଣ୍ଡ ଆଦେଶ ହେଲା । ସକ୍ରେଟିସ୍ କିନ୍ତୁ ଅମ୍ଳାନ ବଦନରେ ସେ ଆଜ୍ଞା ଶିରୋଧାର୍ଯ୍ୟ କରି ନିଜେ ଘାତୁକଠାରୁ ବିଷପେୟ ବଢ଼ାଇ କରି ମାଗି ପ୍ରାଣ ଦେଲେ । ଏଥେନ୍ସ୍ ସହରରୁ ପଳାଇ ଯାଇଥିଲେ, ସେ ପ୍ରାଣଦଣ୍ଡ ପାଇ ନ ଥାନ୍ତେ । ଶିଷ୍ୟମାନେ କେତେ ତାଙ୍କୁ ସେ ମନ୍ତ୍ରଣା ଦେଲେ । ମାତ୍ର ସେ କହିଲେ, 'ଭୁଲ କରୁ, ଭଲ କରୁ, ରାଜ୍ୟ ଯାହା କରୁଛି, ତାକୁ ମାନିବାର ବିଧି ।' ଶୃଙ୍ଖଳାର ପରମ୍ପରା ଠିକ୍ ରଖି ମାନବ ସମାଜର ଏ ସ୍ଥିର ବିକାଶ-କାମନା ସକ୍ରେଟିସଙ୍କ ତ୍ୟାଗ ଓ କର୍ତ୍ତବ୍ୟପରାୟଣତାର ପରାକାଷ୍ଠା । ମୌଳିକ ବୌଦ୍ଧ ଭାବର ସଂସର୍ଗରେ ସକ୍ରେଟିସଙ୍କର ଏ ମହତ୍ତ୍ୱ ଫୁଟିଥିଲା, ସେ କଥା ପରେ କୁହାଯାଉଛି । ମାତ୍ର ଏ ସଂଘର୍ଷ ତତ୍‌କାଳୀନ ଗ୍ରୀକ୍ ସମାଜ ସହିଲା ନାହିଁ, କିମ୍ବା ଏସବୁ ତାତ୍ତ୍ୱିକ ବୃତ୍ତିକୁ ନିଜ ଧର୍ମରେ ଅଙ୍ଗୀଭୂତ କରି ପ୍ରତିଦ୍ୱନ୍ଦ୍ୱିତାର ସମାଧାନ ଲୋଡ଼ିଲା ନାହିଁ । ଭାରତ ଆର୍ଯ୍ୟଧର୍ମରେ ଏହା ହୋଇଥିଲା, ତାହା ପରେ ଭଲ କରି ବୁଝାଇ ଦିଆଯିବ ।

## ପ୍ଲେଟୋ—

ସେ ଯାହା ହେଉ, ସକ୍ରେଟିସଙ୍କ ଶିଷ୍ୟ ପ୍ଲେଟୋ, ସେହି ସକ୍ରେଟିସ୍ ଧର୍ମରେ ଦୀକ୍ଷିତ ହୋଇ ମଧ୍ୟ ନିଜେ ଯେଉଁ ସମାଜସଂସ୍ଥାର ପ୍ରଚାର କରିଥିଲେ, ତହିଁରେ ଜୋର କରି ଲୋକଙ୍କ ଭିତରେ ଭୋଗ ବାଣ୍ଟି ସମାଜର ପରିସ୍ଥିତି ଦୃଢ଼ ରଖିବାର କଳ୍ପନା ସ୍ପଷ୍ଟ । ଗଣତନ୍ତ୍ର (Republic) ନାମକ ପୁସ୍ତକରେ ସେ ଏହି କଳ୍ପନାର ସ୍ପଷ୍ଟ ବ୍ୟାଖ୍ୟା କରିଛନ୍ତି । ସେ କହିଛନ୍ତି, 'ରାଜ୍ୟର କେତେକ ବଛା ଲୋକ ରାଜ୍ୟ କରିବାର ଭାର ନେବେ । ସବୁ ଭୋଗ ସେମାନେ ଏକାଠି ନିଜ ଅଧିକାରରେ ଠୁଳ କରି, ସମସ୍ତଙ୍କୁ ବାଣ୍ଟିବେ ଓ ବ୍ୟକ୍ତିର କର୍ତ୍ତବ୍ୟ ନିର୍ଦ୍ଧାରଣ କରି ଲୋକଙ୍କୁ କାମରେ ଲଗାଇବେ । ଏହା ଛଡ଼ା ବ୍ୟକ୍ତିର କୌଣସି କର୍ତ୍ତବ୍ୟ ନାହିଁ, କି ଅଧିକାର ନାହିଁ ।

ଏପରି କି ସମାଜର ଲୋକରକ୍ଷା ସଙ୍ଗେ ଲୋକ ବୃଦ୍ଧିର ଭାର ମଧ୍ୟ ରାଜ୍ୟ ନେବେ । ସୁଧାର ବଳିଷ୍ଠ ନରନାରୀଙ୍କୁ ରାଜ୍ୟ ପିଲା ଜନ୍ମ କରିବାରେ ଲଗାଇବେ । ଦୁର୍ବଳ ରୋଗୀ ନରନାରୀ ତଥା ଶିଶୁଙ୍କୁ ରାଜ୍ୟ ମାରି ନଷ୍ଟ କରି ଦେବେ—ଇତ୍ୟାଦି ।' ଆଜି ଏତେଦିନ ପରେ ମଧ୍ୟ ପ୍ରତିକ୍ରିୟାରୁ ପ୍ରତିକ୍ରିୟାରେ ଗତି କରି ସେଇ ସଭ୍ୟତାରୁ ଯେଉଁ ସାମ୍ୟବାଦର ପ୍ରତିକ୍ରିୟା ଫୁଟିଚି, ସେଥିରେ ଏବେ ବି ଏଇପରି କଥା ପୁଣି ଶୁଣା-ଯାଉଚି । ଯେ ଯା ହେଉ, ଏଥିରେ ମନୁଷ୍ୟର ବ୍ୟକ୍ତିତ୍ୱ ଓ ଭିତରକୁ ଦେଖିବାର ଆଦୌ କଳ୍ପନା ନାହିଁ । କେବଳ ବାହାରର ଭୋଗାଭୋଗର ଗଣନାରେ ସମାଜର କଳ୍ପନା ସ୍ପଷ୍ଟ ।

## ଆରିଷ୍ଟଟଲ ଓ ଆଲେକ୍‌ଜାଣ୍ଡର—

ତାଙ୍କ ଶିଷ୍ୟ ଆରିଷ୍ଟଟଲ । ତାଙ୍କ ଦର୍ଶନ ଶାସ୍ତ୍ରରେ ପ୍ରାଚୀନ ଭାରତୀୟ ଭାବ ବା ବୌଦ୍ଧ ଭାବ ସ୍ପଷ୍ଟ । ଠିକ୍ ସାଂଖ୍ୟର ପ୍ରକୃତି ପୁରୁଷ ପରି ସେ ଈଶ୍ୱର ଦ୍ୱୈତ ତତ୍ତ୍ୱ କଳ୍ପନା କରି ବିଶ୍ୱ ବ୍ୟାଖ୍ୟା କରିଚନ୍ତି । ସେ ମହାପଣ୍ଡିତ ଓ ମନୀଷୀ ଥିଲେ । ଏପରି ବିଦ୍ୟା ବା ବିଭାଗ ନ ଥିଲା, ଯହିଁରେ ସେ ସେକାଳେ ପ୍ରବେଶ କରି ସେ ସବୁର ତନ୍ନ ତନ୍ନ ଆଲୋଚନା କରି ନାହାନ୍ତି । ସମାଜ ନୀତି, ବିଜ୍ଞାନ, ଅର୍ଥନୀତି, ଗଣିତ, ସାହିତ୍ୟ, ନ୍ୟାୟଶାସ୍ତ୍ର ପ୍ରଭୃତି ସବୁ ବିଭାଗର ସେ ପଥପ୍ରଦର୍ଶକ କହିଲେ ଚଳେ । ମାତ୍ର ଏ କ୍ଷୁଦ୍ର ଲେଖରେ ତାଙ୍କ ଧର୍ମର ବିବୃତି ବିଶେଷ ନ ଦେଇ ପ୍ରଭାବର ଫଳରେ ତାହା ଦେଖିଲେ ସୁବିଧା ହେବ । ତାଙ୍କ ଗ୍ରନ୍ଥ ମହାବୀର ଆଲେକ୍‌ଜାଣ୍ଡର । ସେଇ ଆଲେକ୍‌ଜାଣ୍ଡରଙ୍କ ଶିରସ୍ତ୍ରାଣରେ ଶୃଙ୍ଗ ସହିତ ମହିଷ ମୁଣ୍ଡର ପ୍ରତିକୃତି ଥିଲା । ଏଣୁ ଅନୁମାନ ହୁଏ, ଭାରତର ବିଚକ୍ଷଣ ପୁରାଣକାରମାନେ ସେଇ ଆଲେକ୍‌ଜାଣ୍ଡରଙ୍କୁ ମହିଷାସୁର କରି 'ଚଣ୍ଡୀଯୁଦ୍ଧ'ର କଳ୍ପନା କରିଥିଲେ । ପ୍ରମାଣ ମିଳେ, ଆଲେକ୍‌ଜାଣ୍ଡର ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ହିମାଳୟ ଭୂମିରୁ ସିଂଧୁକୂଳସ୍ଥିତ କୌଣସି ରାଜ୍ୟ ଜୟ କରି ସେଠାରି ସୁନ୍ଦରୀ ଯୁବତୀ ରାଣୀଙ୍କୁ ଉପଭୋଗ କରିବା ମାନସରେ ବଳାତ୍କାରରେ ସଙ୍ଗେ ଘେନି ଯାଇଥିଲେ । ସତୀ ରାଜଦାରା ବହୁ ଗୃହୀକ୍ଷି କାନ୍ଥିରେ ମଧ୍ୟ ଆଲେକ୍‌ଜାଣ୍ଡରଙ୍କୁ ଆତ୍ମଦାନ କଲେ ନାହିଁ । ଶେଷକୁ ବାବିଲନ୍‌ଠାରେ ଆଲେକ୍‌ଜାଣ୍ଡର୍ ବଳାତ୍କାର କରିବାକୁ ଆରମ୍ଭ କରିବା ବେଳେ, ହିମାଳୟବାଳା ସ୍ତ୍ରୀୟ ପରିଧେୟ-ନିଗୂଢ଼ ବିଷଲିପ୍ତ ଛୁରିକାରେ ପୃଥିବୀବିଜୟୀ ମହାବୀରଙ୍କ ଶରୀର କ୍ଷତ କଲେ । ସେଇ ବିଷଜନିତ ରୋଗରେ ତ୍ରିଂଶଦ୍‌ବର୍ଷୀୟ ଯୁବବୀର ଆଲେକ୍‌ଜାଣ୍ଡର ପ୍ରାଣତ୍ୟାଗ କରିଥିଲେ । ସେଇ ହିମାଳୟ ଭୂମିରୁ ପୁଣି ଆଲେକ୍‌ଜାଣ୍ଡର ଏକ ସିଦ୍ଧ ଯୋଗୀଙ୍କୁ ଦେଖି କୌତୂହଳ ଓ ଆଗ୍ରହରେ ମଧ୍ୟ ସଙ୍ଗେ ଘେନି ଯାଇଥିଲେ । ବାବିଲନ୍-ଠାରେ ଯୋଗୀ ଦିନେ ହଠାତ୍ କହିଲେ—"ମହାବୀର, ମୋର ଚିତା ସଂଗ୍ରହ କରନ୍ତୁ, ମୁଁ ଦେହତ୍ୟାଗ କରିବି । ଏ ସଂସାରରେ ଆଉ ରହିବାର ଇଚ୍ଛା ନାହିଁ ।"

ଆଲେକ୍‌ଜାଣ୍ଡର ଅବାକ୍ ହୋଇଗଲେ । କିଛି ବୁଝିପାରିଲେ ନାହିଁ । ରାଜସଂମାନରେ ନିତ୍ୟ ଭୋଗ ବିଳାସରେ ରହି ମନୁଷ୍ୟ ପୁଣି କିପରି ଇଚ୍ଛା କରି ଦେହ ତ୍ୟାଗ କରିବ ? ବହୁତ ନିବର୍ତ୍ତାଇବାକୁ ଚେଷ୍ଟା କଲେ ହେଁ କିଛି ହେଲା ନାହିଁ । ଆଲେକ୍‌ଜାଣ୍ଡର ନିଜ ଦେଶରେ ମଧ୍ୟ ଡାୟୋଜିନସ୍‌ଙ୍କ ପରି ସଂସାରତ୍ୟାଗୀ ନଗ୍ନ ବନବାସୀଙ୍କୁ ଦେଖିଥିଲେ । କିନ୍ତୁ ଏ ଦେହତ୍ୟାଗର ସଂକଳ୍ପ ତାଙ୍କୁ ବଳିଗଲା । ଶେଷରେ ଚନ୍ଦନକାଷ୍ଠରେ ଚିତା ସଜ୍ଜିତ ହେଲା । ଘିଅ ଅଜାଡ଼ାହୋଇ ନିଆଁ ଲଗିଲା । ଚିତା ହୁତ୍ ହୁତ୍ ଜଳିଲା । ଯୋଗୀ ଉଚ୍ଚସ୍ୱରରେ ଅଧ୍ୟାତ୍ମ ବିଦ୍ୟା ଆବୃତ୍ତି କରି ଚିତା ପ୍ରଦକ୍ଷିଣ କରି ଜ୍ୱଳନ୍ତ ଅଗ୍ନିଶିଖା ଭେଦ କରି ନିର୍ବିକଳ୍ପ ମୁଖରେ ଧୀରେ ଧୀରେ ଚିତାର ଶିଖର ଦେଶରେ ଯାଇ ପଦ୍ମାସନ କରି ବସିଲେ । ଅଙ୍ଗ ପ୍ରତ୍ୟଙ୍ଗ ଜଳି ଯାଉଥାଏ । ଯୋଗୀ ସେଇପରି ନିର୍ବିକାର ମୁଖରେ ଉଚ୍ଚରେ ଅଧ୍ୟାତ୍ମ ବିଦ୍ୟା ଆବୃତ୍ତି କରୁଥାନ୍ତି । ଏପରି ଅଦ୍ଭୁତ ନିର୍ବାଣ ସେଇ ପୁରାଣରେ ଶୁଣାଯାଏ ସତ, ମାତ୍ର ଆଲେକ୍‌ଜାଣ୍ଡରଙ୍କ ସହିତରେ ଥାଇ ଆଖିରେ ଏହା ଦେଖିଥିବା ଲେଖକମାନେ ଯାହା ଲେଖିଥିଲେ ସେଥିରୁହିଁ ଏ ଘଟନାଟି ସଂଗ୍ରହ କରାଯାଇଛି । ମାକ୍ କ୍ରିଣ୍ଡଲ୍ ସାହେବ "ପ୍ରାଚୀନ ଭାରତ" (Ancient India) ନାମକ ଗ୍ରନ୍ଥରେ ସବୁ ଭାରତ ସମ୍ବନ୍ଧୀୟ ପ୍ରାଚୀନ ଗ୍ରୀକ୍ ଲେଖା ସଂଗ୍ରହ କରି ଅନୁବାଦ କରିଚନ୍ତି । ସେଥିରେ ଏ ଘଟନାଟିର ବର୍ଣ୍ଣନା ଦେଖାଯାଏ ।

## ମହିଷାସୁର ଓ ଚଣ୍ଡୀଯୁଦ୍ଧ—

ଏଇ ସିଦ୍ଧ ଯୋଗୀଙ୍କ ସଙ୍ଗେ ଶିବ ସମ୍ପର୍କ ଥାଉ, ନ ଥାଉ, ରାଜଦାରା ଯଥାର୍ଥ ଚଣ୍ଡୀ * ଓ ଆଲେକ୍‌ଜାଣ୍ଡର ଯେ ମହିଷାସୁର—ଏ କଳ୍ପନାରେ ସନ୍ଦେହ କରିବାର ବିଶେଷ କିଛି ନାହିଁ । ସର୍ବଦେବ ଶକ୍ତିରେ—ଭାରତ ଧର୍ମର ସଂରକ୍ଷଣରେ ଏଇ ଚଣ୍ଡୀଙ୍କର ଯେପରି କି ଆବିର୍ଭାବ ହୋଇଥିଲା । ଏ ଚଣ୍ଡୀ ମଧ୍ୟ ସର୍ବଦେବତାଙ୍କୁ ରକ୍ଷା କରିଥିଲେ ।

ଭାରତରେ ଚକ୍ରବର୍ତ୍ତୀ ହେବା ପାଇଁ, ରାଜଧର୍ମ ବା ପ୍ରଜାରକ୍ଷା ଓ ପାଳନ ଶିଖିବା ପାଇଁ ରାଜାମାନେ ଦିଗ୍‌ବିଜୟ କରନ୍ତି । ମାତ୍ର ଭାରତ ଲୋକେ ଏପରି ମହିଷାସୁର-ଦୌରାତ୍ମ୍ୟ ଦେଖି ନାହାନ୍ତି । ରାଜ୍ୟ ଧନ ଓ ନାରୀ ଲୋଭରେ ଆଲେକ୍‌ଜାଣ୍ଡର ଏକ ବାତ୍ୟା ପରି ଗ୍ରୀସରୁ ଭାରତ ଯାଏ ଯେପରି ମାଡ଼ି ଆସିଥିଲେ ଓ ଶେଷରେ ତାଙ୍କର ଯେ ପରିଣାମ ହେଲା, ସେଥିରେ ବୀରତ୍ୱର ସାହସିକତା ଯଥେଷ୍ଟ ଅଛି; ମାତ୍ର ବୃଥାରେ ପରସ୍ୱାପହରଣର କରାଳ ପ୍ରବୃତ୍ତି କମ୍ ନାହିଁ ।

---

* ଚଣ୍ଡୀ = ଅତି କୋପନା; "ଚଣ୍ଡସ୍ତ୍ୱତ୍ୟନ୍ତକୋପନଃ"—ଇତି ବିଶ୍ୱଃ

## ସେସବୁ ଦେଶରେ ବୌଦ୍ଧ ପ୍ରଭାବ—

ଆଭାସରେ କୁହାଯାଇଛି, ସେସବୁ ଦେଶରେ ଆଗେ ପ୍ରାଚୀନ ଭାରତର ଅନ୍ତର୍ଦୃଷ୍ଟି-ସର୍ବସ୍ୱ ଆଦିମ ବୌଦ୍ଧଭାବ ଓ ଯୋଗର ପ୍ରଭାବ ସିଦ୍ଧାର୍ଥ-ବୁଦ୍ଧଙ୍କ ବହୁ ସହସ୍ର ବର୍ଷ ପୂର୍ବରୁ ପଡ଼ି ଆସିଥିଲା । ପରେ ବୁଝାଇ ଦିଆଯିବ, ବୌଦ୍ଧଭାବ ଏ ଦେଶର ଆଦିମ ଧର୍ମ ଧାରଣା । ଏହା ବାବିଲନ୍ ବାଟେ ୫୦୦୦ ବର୍ଷ ତଳେ ଗ୍ରୀସ୍ ପ୍ରଭୃତି ଦେଶ ପର୍ଯ୍ୟନ୍ତ ବ୍ୟାପିଥିଲା । ସେଇ ଭାବର ଆଘାତ ପ୍ରତିଘାତରେ ଥେଲ୍ସ୍ ସକ୍ରେଟିସ୍, ପ୍ଲେଟୋ, ଆରିଷ୍ଟଟ୍ଲ୍, ଯେନୋ, ଅରିଷ୍ଟିଫେନ୍ସ ପ୍ରଭୃତି ମହାମନୀଷୀମାନେ ସେ ଦେଶରେ ଆବିର୍ଭୂତ ହୋଇଥିଲେ । ସେଇ ପରଂପରାରେ ଷ୍ଟୋଇକ୍ ବା ବହିର୍ଜଗତର କ୍ରିୟାରେ ଅତ୍ୟନ୍ତ ଉଦାସୀନ ତ୍ୟାଗୀ ଦାର୍ଶନିକମାନେ ଯୋଗସାଧନାରେ ନର ସଂସର୍ଗରୁ ବାହାରେ ଥାଇ ଜୀବନ କଟାଇଲେ । ତ୍ୟାଗର ଏ ମହାଲୀଳା କିଂତୁ ସେ ଜଗତରେ ସ୍ଥାୟୀ ହୋଇ ନ ଥିଲା । ସେ ଦେଶମାନଙ୍କର ଭୋଗସର୍ବସ୍ୱ ଧର୍ମକୁ ଧକ୍କା ଦେଇ ନ ପାରି ଏ ତ୍ୟାଗଧର୍ମ ତା ସଙ୍ଗେ ସେ କାଳେ ସାଲିସ୍‌ର ଉଦ୍ୟମ କରୁଥିଲା ।

## ଯୀଶୁଖ୍ରୀଷ୍ଟ—

ସେଇ ସାଲିସ୍‌ର ଶ୍ରେଷ୍ଠ ପ୍ରତୀକ ଯୀଶୁଖ୍ରୀଷ୍ଟ । ପୂର୍ବ ପ୍ରକରଣରେ ତାଙ୍କ ଧର୍ମର ମର୍ମ କଥାରେ ଏଠାରେ ଯାହା ପ୍ରାସଙ୍ଗିକ, ତାହା କୁହାଯାଇଛି । ସେଇ ଖ୍ରୀଷ୍ଟଙ୍କ ବ୍ୟକ୍ତିଗତ ତ୍ୟାଗ ପ୍ରଭାବରେ ଇଉରୋପ କେତେ କାଳ ପ୍ରଭାବିତ ହୋଇଥିଲା ସତ, ମାତ୍ର ସେ ତ୍ୟାଗରେ ନିଜ କର୍ତ୍ତବ୍ୟ ପ୍ରତି ଦୃଷ୍ଟି ନ ଫେରି, ଜଗତର କର୍ତ୍ତବ୍ୟ ସମାଧାନ ପ୍ରତି ଯେଉଁ ବ୍ୟାକୁଳତାର ନିର୍ଝର ଫିଟିଲା, ସେଥିରେ ରୋମର ଧର୍ମାଧିପତି ପୋପ୍ ନରଦେବତା ରୂପେ ଗଜୁରି ଉଠିଲେ । ଜଗତର ଅଧିକାର ଓ କର୍ତ୍ତବ୍ୟ ବାଣ୍ଟିବା ତାଙ୍କ କାମ ହେଲା । ମଲାବେଳେ ମନୁଷ୍ୟ ପାଖକୁ ଯାଇ ସେ ତାର ମୁକ୍ତିର ମଧ୍ୟ ବ୍ୟବସ୍ଥା କଲେ । ସେ ରାଜ୍ୟ ନ ଦେଲେ, କେହି ରାଜା ହେଲେ ନାହିଁ । ତାଙ୍କର ଦଣ୍ଡ ସର୍ବଥା ଅଖଣ୍ଡ ହେଲା । ଧର୍ମ ନାମରେ ତାଙ୍କ ନାମ ଧରି ଲୋକେ ଦେଶ ବିଦେଶରେ ମନୁଷ୍ୟକୁ ତୋଟି ଧରି ମୁକ୍ତି ବାଣ୍ଟିବାକୁ ବାହାରି ପଡ଼ିଲେ । ଲୋକଙ୍କ ଉପରେ ଏଇପରି କ୍ଷମତାର ଅହଂକାରରେ ଦୃପ୍ତ ହୋଇ ଧନଲୋଭରେ ନରହତ୍ୟା, ତଥା ରାଜ୍ୟ ଓ ସଭ୍ୟତା ନାଶ କରିବାରେ ଲାଗିଗଲେ । ପୁଣି ସେଥିରେ ମଧ୍ୟ ଲୋକଙ୍କୁ ଧରି କର୍ତ୍ତବ୍ୟ ଓ ଅଧିକାରରେ ଠିକ୍ ରଖୁଛନ୍ତି ବୋଲି ପୋପ୍‌ଙ୍କଠାରୁ ତଥା ସମାଜରୁ ମଧ୍ୟ ବାହାବା ପାଇଲେ । ସେକାଳର ଆମେରିକା-ଜେତ୍ରୀ ନରପିଶାଚ ସ୍ପେନୀୟ, ପୁଣି ଭାରତ ଓ ପୂର୍ବ ଦ୍ୱୀପ ଉପଦ୍ୱୀପମାନଙ୍କରେ ଶାନ୍ତ-ବୌଦ୍ଧ ସଭ୍ୟତା ଧ୍ୱଂସକାରୀ ବୀଭତ୍ସକର୍ମା ପର୍ତ୍ତୁଗୀଜ୍‌ମାନଙ୍କ କ୍ରୂର ଧର୍ମାନ୍ଧତା ଓ ପାଶବିକ ଲୋଭ ଏଠାରେ ବର୍ଣ୍ଣନା କରିବା ଦରକାର ନାହିଁ—ଅବକାଶ ମଧ୍ୟ ନାହିଁ ।

## ପୋପ ଓ ଜାତୀୟତା—

ଏଥିରେ ସମାଜର ସ୍ୱାଭାବିକ ପରିସ୍ଥିତି ଧ୍ୱଂସ ହେଲା । ଅତ୍ୟାଚାରରେ ପ୍ରପୀଡ଼ିତ ମାନବ ଜାଗି ଉଠିଲା । ସେ ଯାତନାର ଜ୍ୱାଳାରେ ଯେ ପ୍ରତିକ୍ରିୟା ଘୋଟି ଉଠିଲା, ପୋପ୍ ଲକ୍ଷ ଲକ୍ଷ ଲୋକଙ୍କୁ, ଦଣ୍ଡ ଦେଇ, ଅଗ୍ନିରେ ପୋଡ଼ି ମଧ୍ୟ ତାହା ଅଟକାଇ ପାରିଲେ ନାହିଁ । ନିଜେ ସେଥିରେ ପୋଡ଼ିହୋଇ ଏକପ୍ରକାର ଧ୍ୱଂସ ହେଲେ । ମାତ୍ର ପୋପ୍‌ଙ୍କର କୃତ୍ରିମ ବନ୍ଧନ ତୁଟିଯିବା ସଙ୍ଗେ ସଙ୍ଗେ ୟୁରୋପର ମାନବୀୟ ଏକତା ଧ୍ୱଂସ ହେଲା । ଇଉରୋପରେ ଆଉ ମାନବ ଦେଖାଦେଲେ ନାହିଁ । ଏଣିକି ଦେଖାଦେଲା, ଏକ ନୂଆ ସଙ୍ଘବଦ୍ଧ ଜନ୍ମଭୂମିର ପ୍ରଚେଷ୍ଟା । ଏଇ ସଙ୍ଘଟିର ନାମ ଜାତି ଓ ଏଇ ଧର୍ମର ନାମ ଜାତୀୟତା (nationalism) । ମାନବର ମାନବୀୟତାରେ ଏଇ ଜାତିର ପ୍ରତିଷ୍ଠା ନୁହେ । ଏଥିରେ ମାନବଭାବରେ ମାନବର ପ୍ରାକୃତିକ ବିକାଶର କଳ୍ପନା ପର୍ଯ୍ୟନ୍ତ ନାହିଁ । ଜଗତରେ ନିଜର ଭୋଗ ଓ ଲୋଭର ସାମଗ୍ରୀ ଆୟାସ କରିବା ପାଇଁ ଏହା ଏକ ସଙ୍ଘବଦ୍ଧ ପ୍ରୟତ୍ନର ପ୍ରତୀକ । ଏଥିରେ ଜାତି ଜାତିରେ ମାତ୍ସର୍ଯ୍ୟଭାବ କ୍ରମେ ପ୍ରବଳ ଭାବରେ ଦେଖାଗଲା । ପୁଣି କ୍ରମେ ତାହାର ବ୍ୟାପ୍ତିରେ ଏକ ଜାତି ଭିତରେ ପ୍ରବଳ ଦୁର୍ବଳ ଉପରେ ଅତ୍ୟାଚାର ଆରମ୍ଭ କଲା । ଏ ଅତ୍ୟାଚାର ବାଧାପାଇଲା ଓ କ୍ରମେ ସେଥିରୁ ଏକ ଗଣତନ୍ତ୍ର (democracy) ଫୁଟି ଉଠିଲା । ଏଥିରେ ମଧ୍ୟ ପ୍ରବଳ ଦୁର୍ବଳ ଉପରେ ଦଳବଦ୍ଧ ଅତ୍ୟାଚାର ଆରମ୍ଭ କଲେ । ଶେଷକୁ ଏଇ ଅତ୍ୟାଚାରର ପ୍ରତିକ୍ରିୟାର ପରିଣାମରେ ଏବେ ସାମ୍ୟବାଦକୁ ଆଦର୍ଶ ଉଠିଛି । ଏ ସାମ୍ୟବାଦର ମଧ୍ୟ ଦଳେ ନିଷ୍ଠାପର ଭାବରେ ଜନସାଧାରଣରେ ତାଙ୍କ ଅଧିକାର ବାଣ୍ଟୁଛନ୍ତି । ଜୋର କରି ଏପରି ଭୋଗ ଓ ଅଧିକାର ବାଣ୍ଟିବା କପରି କେତେଦିନ ସ୍ଥାୟୀ ହେବ, ତାହା ବୁଝାଯାଉନାହିଁ । କ୍ଷମତାକୁ କରାୟତ୍ତ କରି ଯେଉଁମାନେ ଆଜି ଲୋକରେ ଭୋଗ ଅଧିକାର ବାଣ୍ଟୁଛନ୍ତି ବା ବାଣ୍ଟିବା ଆଦର୍ଶରେ ଅସ୍ତ୍ର ଧରି ସଂଚିତ ଭୋଗ ଧ୍ୱଂସ କରିବାର କଳ୍ପନା କରୁଛନ୍ତି; ସେମାନଙ୍କର ଆଦର୍ଶ, ତ୍ୟାଗ ଓ ସାଧୁତା ପ୍ରଶଂସନୀୟ, ସନ୍ଦେହ ନାହିଁ । ମାତ୍ର ସେଇ କ୍ଷମତା କାଲି କାହା ହାତେ ପଡ଼ିବ ଓ ତାର କି ବ୍ୟବହାର ହେବ, ସେ କଳ୍ପନାର ଏବେ କି କଳନା ଅଛି ? ପ୍ରତିକ୍ରିୟା ସର୍ବଦା ସୁନ୍ଦର, ମାତ୍ର ସେଥିରେ ଋଦ୍ଧ ପରିଣାମ ଗଣନା କରିବା ସୁଗମ ନୁହେଁ । କ୍ଷମତା ଏକ ହସ୍ତରେ ସ୍ଥିର ନୁହେ, କିମ୍ବା ମାନବର ସ୍ପୃହାରେ ଅଙ୍କୁଶ ନାହିଁ । ସେ ଅଙ୍କୁଶ ବାହାରରୁ ଆସେ ନାହିଁ—ଆସିଲେ ସ୍ଥାୟୀ ହୁଏ ନାହିଁ ତା କର୍ତ୍ତବ୍ୟର ସାଧନା ହିଁ ଏ କ୍ଷେତ୍ରରେ ନିତ୍ୟ ଓ ସ୍ଥିର ସମାଧାନ । ଏହାହିଁ ଆର୍ଯ୍ୟଧର୍ମ ।

## ଆର୍ଯ୍ୟ ଓ ଆର୍ଯ୍ୟଧର୍ମ—

ମନେ ରଖିବାକୁ ହେବ ଆର୍ଯ୍ୟଧର୍ମ କହିଲେ କୌଣସି ଆର୍ଯ୍ୟଜାତିର ଧର୍ମ ବା ଏପରି କିଛି ଜନ୍ମ ବା ରକ୍ତଗତ ସଙ୍ଘର ସଙ୍କୁଚିତ ବୋଲି ବୁଝିବାକୁ ହେବ ନାହିଁ ।

ଇଉରୋପର ସାମ୍ୟବାଦ ପ୍ରତକ୍ରିୟାର ବିକାଶ ପୂର୍ବରୁ ଏଇପରି ଜାତି ବୋଲି ଗୋଟିଏ କୃତ୍ରିମ ଅନୁଷ୍ଠାନ ବାହାରି ଥିବା କଥା କୁହାଯାଇଛି । ସେଇ ଅନୁକ୍ରମେ ଆର୍ଯ୍ୟଜାତି ବା ଭାରତୀୟ ଜାତୀୟତା କଥାଟି ଏବେ ଆମେ ବ୍ୟବହାର କରୁ । ମାତ୍ର ଯେଉଁ ଶ୍ରୀକୃଷ୍ଣ ଆର୍ଯ୍ୟ-ଆଚରଣ ଗୀତାରେ ଉପଦେଶ ଦେଲେ, ଜନ୍ମତଃ ସେ କେଉଁ ଜାତିର ଲୋକ ଥିଲେ ତାହା କହିବାର ଉପାୟ ନାହିଁ । ପଣ୍ଡିତମାନେ କଙ୍କାଳତତ୍ତ୍ୱ ସଙ୍ଗେ ପ୍ରାଚୀନ ଆଚାର ମିଳାଇ ଯାହାକୁ ଆର୍ଯ୍ୟଜାତି ବୋଲି କହୁଛନ୍ତି, ଖୁବ୍ ସମ୍ଭବ କୃଷ୍ଣ ସେ ଜାତିର ଲୋକ ନ ଥିଲେ । ସେକଥା ପରେ କୁହାଯିବ । ଭାରତର ଆର୍ଯ୍ୟଧର୍ମ ଗୋଟିଏ ଆଚାର-ସଂସ୍କାର । ଏହାକୁ ଏବେ ସଂସ୍କୃତି କହୁଛନ୍ତି । ଆର୍ଯ୍ୟଶାସ୍ତ୍ରରେ ଏହାର ନାମ 'ବିନୟ' । ଭଗବାନ୍ ସେଇ ଅର୍ଥରେ କହିଛନ୍ତି, "ବିଦ୍ୟାବିନୟସମ୍ପନ୍ନ" (୫.୧୮), ଅର୍ଥାତ୍ ବିଦ୍ୟାଜନିତ ବିନୟ ବା ଆଚାର ସଂସ୍କାରଯୁକ୍ତ; ଅଥବା ବିଦ୍ୟା ବା ଶାସ୍ତ୍ରଜ୍ଞାନ ଓ ବିନୟ ବା ଆଚାର ସଂସ୍କାର—ତହିଁରେ ସମ୍ପନ୍ନ ବା ସମୃଦ୍ଧିମନ୍ତ ।

ପ୍ରାତ୍ନିକମାନେ ଏବେ ଯେଉଁ ପ୍ରାଚୀନ ଜାତିକୁ ଆର୍ଯ୍ୟ ବୋଲି କହନ୍ତି, ସେମାନଙ୍କର ଆଦି ସ୍ଥାନ ଭାରତରେ ନୁହେ ବୋଲି ସେଇ ପଣ୍ଡିତମାନଙ୍କ ମତ । ମାତ୍ର ସେମାନେ କେବେ ଏ ଦେଶକୁ ଠିକ୍ ଆସିଥିଲେ, ତାର କଳନା ନାହିଁ । ବହୁ ଆଦିମ କାଳରେ ସେମାନେ ଏ ଦେଶର ଉତ୍ତର-ପଶ୍ଚିମ ହିମାଳୟ ଭୂମିରେ ଥିଲି କଥା ଋଗ୍‌ବେଦ ସଂହିତାରୁ ଜଣାପଡ଼େ । ସେଥିରୁ ଜଣାଯାଏ, ସେମାନେ ବା ସେମାନଙ୍କ ଭିତରୁ ଅନ୍ତତଃ ଦଳେ ପାର୍ବତ୍ୟ ଓ ମାରବ ଭୂମିର ନିଃସ୍ୱ ଓ ରୁକ୍ଷପ୍ରକୃତିଜନିତ ଘୋର ଜୀବନସଂଗ୍ରାମରେ ନିପୀଡ଼ିତ ଓ ବ୍ୟତିବ୍ୟସ୍ତ ହୋଇ ଭୋଗପାଇଁ ଇନ୍ଦ୍ରାଦି ଦେବତାଙ୍କୁ ପ୍ରାର୍ଥନା କରୁଥିଲେ । ଏଇ ଭୋଗକାଙ୍ଗାଳ 'ଆର୍ଯ୍ୟ'ମାନେ ସେକାଳେ ଦୁର୍ଦ୍ଦାନ୍ତ ଯୋଦ୍ଧା ଥିଲେ—ହେବାର କଥା । ଭୋଗସଂକୁଳ ଭୂମିର ସମୃଦ୍ଧିପାଳିତ ମାନବ ଶାନ୍ତ ହୁଏ । ଯା ହଉ, ଏଇ ଆର୍ଯ୍ୟମାନେ ଏଇଦେଶର ଉନ୍ନତତର ସଭ୍ୟତାରେ ଏକପ୍ରକାର ଆତ୍ମଦାନ କରିଥିଲେ । ଏ ଦେଶରେ ସେତେବେଳକୁ ଏକପ୍ରକାର ସଂସାରତ୍ୟାଗ ଓ ଯୋଗରେ ନିର୍ବାଣ ବା ମୁକ୍ତିସାଧନାର ବ୍ୟକ୍ତିନିର୍ଦ୍ଦିଷ୍ଟ ସାମାଜିକ ଆଚାର ସଂସ୍କାର ପ୍ରତିଷ୍ଠିତ ହୋଇ ସାରିଥିଲା । ଏସବୁର ଐତିହାସିକ ସଂଘର୍ଷ ଓ ସମାଧାନର କଥା ପରେ କୁହାଯିବ । ମାତ୍ର ଏଠାରେ ଏତିକି କୁହାଯାଉଛି ଯେ, ଏଇ ବିଜେତା 'ଆର୍ଯ୍ୟ'ମାନେ ବିଜିତମାନଙ୍କ ଧର୍ମରୁ ବହୁ ପରିମାଣରେ ନିଜର ଆଚାର ସଂସ୍କାରର ପରମ୍ପରା ସଂଗ୍ରହ କରିଥିଲେ । ସେଇ ସମନ୍ୱୟ ଓ ସମାଧାନ ହିଁ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ପ୍ରଚାର କରିଛନ୍ତି ।

## ଆର୍ଯ୍ୟଧର୍ମ ପରମ୍ପରା—

କୁହାଯାଇଛି, ଏଇ ଧର୍ମର ଭିତ୍ତି ହେଉଛି ନିଜ କର୍ତ୍ତବ୍ୟର ଅବଧାରଣ ଓ ସାଧନା । ଏଇ ସାଧନା ଭାରତ ପରମ୍ପରାରେ କୌଣସି ପ୍ରତିକ୍ରିୟାରେ ନଷ୍ଟ

ହୋଇନାହିଁ । ଅବଶ୍ୟ ଏହା ବୁଝିବାର ଅଛି ଯେ, ଯେ କୌଣସି ଭିତ୍ତିରେ ସମାଜ ପ୍ରତିଷ୍ଠିତ ହେଉ ନା କାହିଁକି, ମାନବ ଯେତେଦିନ ମାନବ ଅଛି, ସେତେଦିନ ଭୋଗର ସ୍ପୃହା ତାର ପ୍ରକୃତିଗତ । ଯେତେ ସାମାଜିକ ଆଗ୍ରହ ପରଂପରା ଶୃଙ୍ଖଳା ଥାଉ ନା କାହିଁକି, ଏ ପ୍ରକୃତିର ପ୍ରକାଶ ଅନିବାର୍ଯ୍ୟ, ସେଥିରେ ପ୍ରତିକ୍ରିୟା ମଧ୍ୟ ସ୍ୱାଭାବିକ । ମାତ୍ର ଅର୍ଥ ସଂସ୍କୃତିରେ ଏଇ ପ୍ରତିକ୍ରିୟାମାନ କାଳେ କାଳେ ପରିସ୍ଥିତି ଭେଦ କରି ଉଠି ପାରିନାହିଁ, ଏହାହିଁ କହିବାର ଅଭିପ୍ରାୟ । ଭଗବାନ ସେଇ ପ୍ରତିକ୍ରିୟା ଦୁର୍ଦ୍ଧର୍ମମୟ ପ୍ରଭାବକୁ ଲକ୍ଷ୍ୟ କରି କହିଚନ୍ତି:—

"ଯଦା ଯଦା ହି ଧର୍ମସ୍ୟ
ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ
ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୂନାଂ
ବିନାଶାୟ ଚ ଦୁଷ୍କୃତାଂ
ଧର୍ମସଂସ୍ଥାପନାର୍ଥାୟ
ସମ୍ଭବାମି ଯୁଗେ ଯୁଗେ ।" (୪·୭, ୮)

ଅର୍ଥାତ୍, ବେଳେ ବେଳେ ଏଇ ପ୍ରତିକ୍ରିୟା ପ୍ରଭାବରେ ଧର୍ମ ମଳିନ ଆସେ ଓ ଅଧର୍ମ ମୁଣ୍ଡ ଟେକେ । ସେତେବେଳେ ଈଶ୍ୱର ନିଜେ ମାନବ ଦେହ ଧରନ୍ତି । ଏଇପରି ଈଶ୍ୱର ଯୁଗେ ଯୁଗେ ସାଧୁର ପରିତ୍ରାଣ, ଦୁଷ୍କର୍ମଙ୍କୁ ବିନାଶ କରି ଧର୍ମର ପ୍ରତିଷ୍ଠା ଠିକ୍ କରନ୍ତି ।

ଏଇ ଧର୍ମପ୍ରତିଷ୍ଠା ନିମନ୍ତେ ଈଶ୍ୱରଧର୍ମସଂପନ୍ନ ଲୋକ ଜନ୍ମିବାର କଥା କୁହାଯାଇଚି । ତା ମହାଭାରତ ଯୁଦ୍ଧରେ ଥରେ ହୋଇଥିଲା । ଦୁର୍ଯ୍ୟୋଧନ କାମନାଗ୍ରସ୍ତ ହୋଇ ଯେପରି ଧର୍ମର ଧ୍ୱଂସ କରି ଦେବାକୁ ବସିଥିଲେ, ସେତେବେଳେ ସ୍ୱୟଂ ଈଶ୍ୱର ଏହା ରକ୍ଷା କରିବାର କଥା । ଏଇପରି ଭାରତ ଇତିହାସରେ ଅବତାର ବିଶ୍ୱାସ ପ୍ରବେଶ କରି ଧର୍ମକୁ କାଳେ କାଳେ ଜାଗ୍ରତ ରଖିଚି । ଭକ୍ତ ଧର୍ମର ବ୍ୟାପ୍ତିରେ ଏଇ ଈଶ୍ୱରଭାବହିଁ ସମାଜର ପାରଂପରିକ ସ୍ଥିତି ମଧ୍ୟ ଠିକ୍ ରଖିଚି । ଇଉରୋପୀୟ ଧର୍ମ ଓ ପ୍ଲାବନୀ ପ୍ରତିକ୍ରିୟାରେ ମହାତ୍ୟାଗବୀରମାନେ ମଧ୍ୟ ଏଇପରି ପ୍ରତିକ୍ରିୟାର ଘୋର ବିକ୍ଷୋଭରେ ନିଜର ବିଶ୍ୱକର୍ତ୍ତବ୍ୟ ପାଳନ କରିଚନ୍ତି ଓ କରୁଚନ୍ତି । ସେ କଥା ପୂର୍ବେ କୁହାଯାଇଚି । ମାତ୍ର ସେମାନଙ୍କୁ ଧର୍ମରକ୍ଷାକାରୀ ଈଶ୍ୱର ବୋଲି ସେମାନେ ନ ଧରି, ନବ ଧର୍ମପ୍ରଚାରକାରୀ ମାନବ ବୋଲି ବୁଝିବାର ଶୈଳୀ ସେ ଦେଶରେ ପଡ଼ି ଯାଇଚି । ଭାରତରେ ସେମାନେ ଈଶ୍ୱର ବା ଈଶ୍ୱରାଂଶ ହୋଇ ରହିଚନ୍ତି । ତେଣୁ ପ୍ରତିକ୍ରିୟାରେ

ଧର୍ମଧାର ଧ୍ୱଂସ ହୋଇ ନାହିଁ । ତ୍ୟାଗପୂତ ମନୀଷୀମାନଙ୍କର ତ୍ୟାଗ ପନ୍ଥକୁ ରହ୍ୱ, ଭୋଗର ଛଡ଼ାଛଡ଼ିରେ ସମାଜ ପୁଣି ଶୀଘ୍ର ପ୍ଲାବକ ପ୍ରତକ୍ରିୟାର ସମ୍ମୁଖୀନ ହୋଇନାହିଁ । ସେଇ ମନୀଷୀମାନେ ଯାହା କହିଚନ୍ତି, ତା ସଙ୍ଗେ ଭାରତ ଲୋକେ, ତାଙ୍କ ଜୀବନର ତତ୍ତ୍ୱ ମିଳାଇ ଦେଖି ଆସିଚନ୍ତି । କେବଳ ତାଙ୍କ କଥାରେ ମାତ୍ର ତାଙ୍କୁ ଭୁଲ ନାହାନ୍ତି । ଭକ୍ତମୂଳକ ଅବତାର ବିଶ୍ୱାସ ବା ଶ୍ରଦ୍ଧାର ଏହାହିଁ ବିଶେଷତ୍ୱ । ସେ କଥା ପରେ ପୁଣି ଅନ୍ୟଦୃଷ୍ଟିରୁ କୁହାଯିବ । ଭକ୍ତର ଭିତ୍ତି ବୁଝାଇ ଦିଆଯିବ ।

ମାତ୍ର ଏବେ ଭାରତ-ସମାଜର ଇତିହାସରେ ପ୍ରତକ୍ରିୟା ପରଂପରାରେ କ ଗତ ହୋଇ ଆସିଚ, ତା ଦେଖାଯାଉ । ତା ହେଲେ ଧର୍ମର ପ୍ରତିଷ୍ଠା ଓ ପ୍ରତକ୍ରିୟା-ସହିଷ୍ଣୁତା ଭଲ ବୁଝାଯିବ । କେବଳ ଦୃଷ୍ଟାନ୍ତର ସୂଚନାରେ ସେକଥା ଏଠାରେ ପୂର୍ବ ଅନାର୍ଯ୍ୟ ସଭ୍ୟତାର ପ୍ରତକ୍ରିୟା-ପରଂପରା ସଙ୍ଗେ ତୁଳନା କରିବା ପାଇଁ କୁହାଯିବ ।

## ପ୍ରାଚୀନ ଭିତ୍ତି ଓ ଧର୍ମ-ଧାରଣା—

ଯେଉଁ 'ସୋମପା' ବେଦସ୍ତୁତ ପାଠକ ଆର୍ଯ୍ୟମାନେ ଏ ଦେଶକୁ ଆସିଲେ, କୁହାଯାଇଚ, ସେମାନେ ହୁଏତ ଭୋଜ-କାଙ୍ଗାଳ ପରି ନିଜର ଉପାସ୍ୟ ଦେବତାଙ୍କ ପାଖେ ପୁତ୍ର ପଶୁ କାମନା କରୁଥିଲେ । ଏ ଦେଶରେ ପ୍ରତିଷ୍ଠିତ ଲୋକଙ୍କ ସଙ୍ଗେ ତାଙ୍କର ବରାବର ପଦେ ପଦେ ଯୁଦ୍ଧ ଚାଲିଲା । ଏ ଦେଶ ଲୋକଙ୍କୁ ସେମାନେ 'ଅସୁର', 'ଦାସ', 'ଦସ୍ୟୁ' ପ୍ରଭୃତ ନାମରେ କହୁଥିଲେ; 'ଶିଶ୍ନଦେବ' ବା ଲିଙ୍ଗ ଉପାସକ ବୋଲି ଘୃଣା ମଧ୍ୟ କରୁଥିଲେ । ଅନ୍ୟଥା ସେମାନେ ପ୍ରକୃତର ଶକ୍ତି ପ୍ରକାଶମାନଙ୍କ ମଧ୍ୟରେ ଯେଉଁ ଦେବତାମାନ କଳ୍ପନା କରି ସ୍ତୁତ କରୁଥିଲେ, ସେଥିରେ ଏକ ବିଶ୍ୱମହାଶକ୍ତିର ଆବିର୍ଭାବ ଓ ପ୍ରକାଶ ମଧ୍ୟ ଦେଖୁଥିଲେ । ଅତି ପ୍ରାଚୀନ ଋକ୍ ମନ୍ତ୍ରରେ ମଧ୍ୟ ଦେଖାଯାଏ, ଋଷି ଗାଇଚନ୍ତି—

"ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" (ଋଗ୍‌ବେଦ ୧.୧୬୪. ୪୬)

ଅର୍ଥାତ୍, ଏକ ନିତ୍ୟ ବସ୍ତୁକୁ ବା ବିଶ୍ୱଦେବତାଙ୍କୁ ବେଦାଭ୍ୟାସୀମାନେ ଇନ୍ଦ୍ର ଅଗ୍ନି ପ୍ରଭୃତ ନାନା ପ୍ରକାରେ କହନ୍ତି । ହେଲେ ହେଁ ଦେବତାଙ୍କ ପୂଜା ଓ ତାଙ୍କୁ ପ୍ରାର୍ଥନା କରିବାହିଁ ଗୋଟିଏ ଦଳର ଧର୍ମ ହୋଇଥିଲା । ସେମାନେ ଦେବତାଙ୍କୁ ପ୍ରୀତ କରି ଏଇ ପ୍ରାର୍ଥନା ଓ ପୂଜାର ଆଡମ୍ବରରେ ଯଜ୍ଞ ପ୍ରଚାର କଲେ । ମାତ୍ର ଏ ଦେଶରେ ଅନ୍ୟତ୍ର ଯେଉଁ ଯୋଗବିଧି ଓ ନିର୍ବାଣ ସାଧନା ଥିଲା, ତାହାର ପ୍ରଭାବ ଏଡ଼ିପାରିଲେ ନାହିଁ । କର୍ମରେ କାମନା ଲାଗିରହିଚ । ଅତଏବ କର୍ମ ଛାଡ଼ି ଆତ୍ମ-କଲ୍ୟାଣ ସାଧନା କରିବାକୁ ହେବ । ଏ ଶାନ୍ତି-ସାଧନାର ପରଂପରା ଏ ଦେଶରେ ଦୃଢ଼ ଥିଲା । ତା ପାଖେ ଯଜ୍ଞକ୍ରିୟା

ଓ ସକାମ ଉପାସନା ମୁଣ୍ଡ ଟେକ ପ୍ରବଳ ପ୍ରତିକ୍ରିୟା ଛୁଡ଼ା କରି ପାରିଲା ନାହିଁ । ଆର୍ଯ୍ୟଧର୍ମରେ ଦୁଇଟି ମତ ଦେଖାଗଲା । ଗୋଟିଏ ଯଜ୍ଞକ୍ରିୟା । ସେଥିରେ ମଧ୍ୟ କାଳକ୍ରମେ ନିଷ୍କାମ ସାଧନା ପ୍ରବେଶ କଲା । ସେଇ ନିଷ୍କାମ ସାଧନା ଏବେ 'ମୀମାଂସକ' ମତ ନାମରେ ବିଦିତ । ସେମାନେ କହିଲେ, ସମସ୍ତ କର୍ମ, ଧନ-ସଞ୍ଚୟ, ଭୋଗସାମଗ୍ରୀ ପ୍ରଭୃତି ସବୁ ଆହରଣ ଯଜ୍ଞ ପାଇଁ—ପୁରୁଷର ବା ବ୍ୟକ୍ତିର କାମନା ପୂରଣ ପାଇଁ ନୁହେ । ଏଇପରି ସେମାନେ ଯଜ୍ଞାର୍ଥ କର୍ମ ଓ ପୁରୁଷାର୍ଥ କର୍ମର ପ୍ରଭେଦ କରି ମତ ପ୍ରଚାର କଲେ ( ୩.୯ ଟୀକା ଦେଖ ) । ଅନ୍ୟତ୍ର କର୍ମ ଶୁଦ୍ଧି ଯୋଗରେ ନିର୍ବିଷ୍ଟ ରହିବାର ପନ୍ଥା ମଧ୍ୟ ଫିଟିଲା । ତାହା ପରେ କପିଳଙ୍କ 'ସାଂଖ୍ୟ' ମତରେ ସ୍ପଷ୍ଟ କରାଯାଇଛି । ସେ କଥା ପରେ କୁହାଯିବ । ଏ ଦୁଇଟି ମଧ୍ୟରେ କର୍ମ ନ ଶୁଦ୍ଧି 'ସାଂଖ୍ୟ' ବୁଦ୍ଧିରେ ସାଧନାର ମାର୍ଗ ହେଉଛି ପ୍ରକୃତ 'ବେଦଧର୍ମ' ବା ବେଦାନ୍ତ, ଅର୍ଥାତ୍ ବେଦର ସିଦ୍ଧାନ୍ତ—ଏହାଇ ଭଗବାନ୍ ସ୍ପଷ୍ଟ କରି ପ୍ରଚାର କରିଚନ୍ତି । ପରବର୍ତ୍ତୀ ପ୍ରକରଣରେ ଏଇ ବେଦାନ୍ତ ଓ ଆର୍ଯ୍ୟ-ଧର୍ମର ସମ୍ପର୍କ କଥା ଭଲ କରି କୁହାଯିବ । ଏଠାରେ ଏତିକି କହିବାର କଥା—ଏକ ଦିଗରେ ଦୁର୍ବାର କାମନ ଜନିତ କର୍ମ ଓ ଅନ୍ୟ ଦିଗରେ ଆତ୍ମସାଧନାରେ କର୍ମର ତ୍ୟାଗ ଓ ଯୋଗ, ଏ ଦୁଇଟିରୁ କୌଣସିଟି ଆର୍ଯ୍ୟଭାବରେ ଘୋର ପ୍ରତିକ୍ରିୟା ସୃଷ୍ଟି କରି ପାରିଲା ନାହିଁ । ସମସ୍ତେ ଯେ ବେଦାନ୍ତ ମାନି ଯାଇଥିଲେ, ଏହା ମଧ୍ୟ ନୁହେ । ଯେଉଁ ଶ୍ରୀକୃଷ୍ଣ ଏଇ ଦୁଇ ବିପରୀତମୁଖୀ ପନ୍ଥାର ସମାଧାନ କରି ନିତ୍ୟ ବେଦାନ୍ତର ପ୍ରଚାର କରିଥିଲେ, ତାଙ୍କର ଉଭୟ ମତାବଲମ୍ବୀଙ୍କ ଭିତରେ ଶତ୍ରୁ କମ୍ ନ ଥିଲେ । ଚେଦିର ଶିଶୁପାଳ, ମଗଧର ଜରାସନ୍ଧ ଓ ପୌଣ୍ଡ୍ର ବାସୁଦେବ ପ୍ରଭୃତି ପୂର୍ବଭାରତର ରାଜାମାନେ କୃଷ୍ଣଙ୍କର ଘୋର ବିରୋଧ କରି ତାଙ୍କୁ ଘୃଣା କରୁଥିବା କଥା ପୁରାଣପ୍ରସିଦ୍ଧ । ପୁଣି ଦୁର୍ଯ୍ୟୋଧନ କୃଷ୍ଣଙ୍କ ବିରୋଧୀ ଥାଇ ମଧ୍ୟ ନିଜେ କୃଷ୍ଣଙ୍କ ବଡ଼ଭାଇ ବଳରାମଙ୍କୁ ବେଳେ ବେଳେ ହାତ କରି ପାରୁଥିଲେ ଏହା ମଧ୍ୟ ହରିବଂଶ ଦରୁ ଜଣାପଡ଼େ । ହେଲେହେଁ ପ୍ରତିକ୍ରିୟା ମୁଣ୍ଡ ଟେକ ପାରି ନ ଥିଲା । କର୍ତ୍ତବ୍ୟ ଓ ତ୍ୟାଗମୂଳକ ବିଶ୍ୱଧର୍ମର ଏହାହିଁ ବିଶେଷ । ମାତ୍ର ପ୍ରତିକ୍ରିୟା ନ ଥିଲା, ନୁହେ । ଆର୍ଯ୍ୟଧର୍ମର ବିଶାଳତା ମଧ୍ୟରେ ତାହା ଏକ ଅଙ୍ଗ ପରି ପ୍ରବେଶ କରି ଲୀନ ହୋଇଥିଲା । ଆର୍ଯ୍ୟଧର୍ମ ସେଥିପାଇଁ କହିଚନ୍ତି—

"ଚତୁର୍ବିଧା ଭଜନ୍ତେ ମାଂ
ଜନାଃ ସୁକୃତିନୋ ଽର୍ଜୁନ !
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ
ଜ୍ଞାନୀ ଚ ଭରତର୍ଷଭ !" (୭.୧୬)

ଅର୍ଥାତ୍ ଚାରି ପ୍ରକାରରେ ଲୋକେ ମତେ ଭଜନ୍ତି, ବା ବିଶ୍ୱଧର୍ମ ଆଶ୍ରା କରନ୍ତି । ସେ ଚାରି ପ୍ରକାର ହେଉଚନ୍ତି—ଆର୍ତ୍ତ ବା ବିପଦ୍‌ଗ୍ରସ୍ତ, ଜିଜ୍ଞାସୁ ବା ତତ୍ତ୍ୱ

ଜାଣିବାକୁ ଲୋଡ଼ିବା ଲୋକ, ଅର୍ଥାର୍ଥୀ ବା ଭୋଗର କାମନା କରି ତା ପାଇବାକୁ ଲୋଡ଼ିବା ଲୋକ ଓ ଜ୍ଞାନୀ । ଏଥିରେ କାହାରି ପ୍ରତି ଦୁରନ୍ତ ଘୃଣାରେ ଜବତ୍ କରିବାର ବ୍ୟବସ୍ଥା ଦିଆଯାଇ ନାହିଁ । ବରଂ ଭଗବାନ୍ କହୁଚନ୍ତି, "ଉଦାରାଃ ସର୍ବ ଏବୈତେ" । (୭.୧୮), ଅର୍ଥାତ୍ ଏ ସମସ୍ତେ ଆଚ୍ଛା ଲୋକ । କାହାକୁ ମୁଁ ଫିଙ୍ଗି ଦିଏ ନାହିଁ । ସମାଜ ଏଥିମଧ୍ୟରୁ କାହାରିକୁ ଫିଙ୍ଗିଦେବା ଠିକ୍ ନୁହେ । ବରଂ ଆଉରି ସ୍ପଷ୍ଟ କରି କଥାଟିକୁ ସାର୍ବଜନୀନ ଭାବରେ ପୁଣି ଭଗବାନ୍ କହୁଚନ୍ତି—

"ଯେ ଯଥା ମାଂ ପ୍ରପଦ୍ୟନ୍ତେ
ତାଂସ୍ତଥୈବ ଭଜାମ୍ୟହଂ,
ମମ ବର୍ତ୍ମାନୁବର୍ତ୍ତନ୍ତେ
ମନୁଷ୍ୟାଃ ପାର୍ଥ ସର୍ବଶଃ ।" ( ୪.୧୧ )

ଅର୍ଥାତ୍ ଯେ ଯେପରି ମତେ ପାଇବାକୁ ଲୋଡ଼ନ୍ତି, ମୁଁ ତାଙ୍କୁ ସେପରି ମିଳେ । ମନୁଷ୍ୟମାନେ ସର୍ବପ୍ରକାରରେ ମୋରି ନିର୍ଦ୍ଦିଷ୍ଟ ପନ୍ଥା ଧରିଥାନ୍ତି । ନିଜ ସାମର୍ଥ୍ୟ ବା ପରିସ୍ଥିତି ଅନୁସାରେ ଯେ ଯେପରି ବିଶ୍ୱଧର୍ମ ପାଳନ କରିବାକୁ ଯାନ୍ତି, ସେ ସେଇପରି ନିଜ କର୍ମର ଫଳ ପାଆନ୍ତି । ସବୁପ୍ରକାର ପନ୍ଥା ମୋରି । ଲୋକେ କାମନାରେ ଫଳ ପାଇବାକୁ ମଧ୍ୟ ମତେ ଆଶ୍ରା କରନ୍ତି ବା ବିଶ୍ୱଧର୍ମକୁ ସେଇ ଫଳ ପ୍ରାପ୍ତିର ଅନୁରୂପ ବୁଝି ସେଇଥିରେ ମନ ଦିଅନ୍ତି । ମାତ୍ର ବୁଝିବାର ଅଛି, ଏଇ ଫଳକାମନା ମଧ୍ୟ ଆଦର୍ଶ ପନ୍ଥା ନ ହେଲେ ବି ହେୟ ବା ଘୃଣ୍ୟ ନୁହେ । ବିଶ୍ୱଧର୍ମରେ ଏହାର ମଧ୍ୟ ସ୍ଥାନ ଅଛି । ଯାହା ବିଶ୍ୱବିକାଶରେ ପ୍ରକାଶ ପାଏ, ସେ କୌଣସିଟି 'ମୋ'ଠୁଁ ଅଲଗା ନୁହେ । ସମସ୍ତେ ବିଶ୍ୱପ୍ରକାଶ ବା ବିଶ୍ୱଧର୍ମର ଅଙ୍ଗୀଭୂତ ହେଲେ ହେଁ ଆଦର୍ଶ ଧର୍ମ ପନ୍ଥା ଲୋଡ଼ି ଲୋକେ ଏପରି ପନ୍ଥାରେ ମାତନ୍ତି କାହିଁକି ? ତାର କାରଣ ଦେଖାଇ ଭଗବାନ୍ କହୁଚନ୍ତି—

"କାଂକ୍ଷନ୍ତଃ କର୍ମଣାଂ ସିଦ୍ଧିଂ
ଯଜନ୍ତ ଇହ ଦେବତାଃ ।
କ୍ଷିପ୍ରଂ ହି ମାନୁଷେ ଲୋକେ
ସିଦ୍ଧିର୍ଭବତି କର୍ମଜା । ( ୪.୧୨ )

ଆଦର୍ଶ ଧର୍ମରେ କର୍ମର ଯେଉଁ ସିଦ୍ଧି, ତାହା ନିକଟରେ ନାହିଁ । ସେଇପରି ଆତ୍ମବାନ୍ ନ ହେଲେ ତାହା ଧରି ରଖି ସେଇ ପନ୍ଥାରେ ଗତି କରିବା ସହଜ ହୋଇ ପାରେ ନା; ମାତ୍ର ସାଧାରଣତଃ ଫଳ ପାଇଁ ଯେଉଁ କର୍ମ କରାଯାଏ, ସେଥିରେ ସିଦ୍ଧି ବା ଫଳଲାଭ ଶୀଘ୍ର ହୁଏ । ସେଥିପାଇଁ ଲୋକେ ସେଥିରେ ମାତନ୍ତି । ଅସଲ କଥା, ଆଦର୍ଶ ଯାଏ ସମସ୍ତେ ଉଠିବା ସହଜ ନୁହେ । ମାତ୍ର ଆଦର୍ଶର ପ୍ରଭାବ ସର୍ବଦା ସମାଜରେ

ନିସ୍ୱାକୁ ପ୍ରବର୍ତ୍ତିତ କରିବା ଉଚିତ । ଭଗବାନ୍ ଗୀତାରେ ନିଜକୁ 'ପୁରୁଷୋତ୍ତମ'ଙ୍କ ଅବତାର ବା ବିଶ୍ୱଧର୍ମ ତଥା ଆର୍ଯ୍ୟଧର୍ମର ପ୍ରବର୍ତ୍ତକ ବୋଲି ସ୍ପଷ୍ଟ ଦେଖାଇଛନ୍ତି ଓ ସେଇ ହେତୁ କହୁଛନ୍ତି—

"କାମୈସ୍ତୈସ୍ତୈର୍ହୃତଜ୍ଞାନାଃ
ପ୍ରପଦ୍ୟନ୍ତେଽନ୍ୟଦେବତାଃ ।
ତଂ ତଂ ନିୟମମାସ୍ଥାୟ
ପ୍ରକୃତ୍ୟା ନିୟତାଃ ସ୍ୱୟା ।
ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ
ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ॥
ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ
ତାମେବ ବିଦଧାମ୍ୟହମ୍ ।
ସ ତୟା ଶ୍ରଦ୍ଧୟା ଯୁକ୍ତଃ
ତସ୍ୟାରାଧନମୀହତେ
ଲଭତେ ଚ ତତଃ କାମାନ୍
ମୟୈବ ବିହିତାନ୍ ହିତାନ୍ ॥ (୭·୨୧-୨୨)

ଅର୍ଥାତ୍, ଜଗତରେ ଜୀବ ମାନବର ପ୍ରକୃତି ବା ଦେହ-ସ୍ୱଭାବ ହେଉଛି କାମନା ବା ଭୋଗତୃଷ୍ଣାରେ ଭଜିଯିବା । ସେଥିପାଇଁ ସାଧାରଣତଃ ଲୋକେ ବିଶ୍ୱଧର୍ମର ପୂର୍ଣ୍ଣ ଧାରଣା ସହ ମେଳ ନ ଖୋଜି, କାମନା ପାଇବାର ପନ୍ଥାମାନ ଧରି, ଅନ୍ୟ ଦେବତାର ଉପାସନା କରନ୍ତି । ମାତ୍ର ଅର୍ଯ୍ୟଧର୍ମର ନିୟତ ବିଶ୍ୱ-ଶୃଙ୍ଖଳାରେ ପଦାଘାତ କରିବାକୁ ନ ଯାଇ, କେବଳ କାମନା ପାଇବାକୁ ସେମାନେ ଯେବେ ନିଷ୍ଠା ଓ ବିଶ୍ୱାସରେ ଦେବତା ଭଜନ୍ତି, ତେବେ ମୁଁ ସେ ନିଷ୍ଠା ଓ ବିଶ୍ୱାସ ଆଦର କରେ । ପୁଣି ସେଇ ଶ୍ରଦ୍ଧା ହେତୁରୁ ମୁହିଁ ଏକା ତାଙ୍କର ସେଇ କାମନା ପୂର୍ଣ୍ଣ କରେ । ଭକ୍ତର ଭାଷାରେ ଏ କଥାଟି କୁହାଗଲେ ମଧ୍ୟ ଏହାର ତାତ୍ପର୍ଯ୍ୟ ସ୍ପଷ୍ଟ । ଏହାର ତାତ୍ପର୍ଯ୍ୟ ହେଉଛି, କାମନା ହିଁ ମନୁଷ୍ୟର ନିତ୍ୟ ସ୍ୱାଭାବିକ ପ୍ରେରଣା । ସେଇ ପ୍ରେରଣାରେ ମଙ୍ଗଳ ଲୋଡ଼ି ଯଦି କେହି ଶ୍ରଦ୍ଧା ବା ନିଷ୍ଠାରେ କର୍ମରେ ଲାଗେ, ତେବେ ତାକୁ ଘୃଣା, ତାଚ୍ଛଲ୍ୟ ଓ ଅନାଦର କରି ଗୋଳ ଉଠାଇବା ଠିକ୍ ନୁହେ । ଆମେ ଯାହା ଧରିଚୁ ସେଇ ଏକା ଠିକ୍ ଧର୍ମ, ଆଉ ଯେ ସବୁ କାମନାରେ ଲାଗିଚନ୍ତି ସେସବୁ ମୂଢ଼, ଦୁର୍ବୁଦ୍ଧି ଓ ଦୁର୍ବିନୀତ, ଏପରି ବୁଝିବାରେ ବିଶ୍ୱଧର୍ମର ଅପଲାପ ହୁଏ । ଏହା ଧାର୍ମିକତା ନୁହେଁ, ଧର୍ମାନ୍ଧତା । ଏଥିରେ ହିଁ ଅଧର୍ମ ଘୋଟିଯାଏ । ତେଣୁ ଯେ ଯାହା ବିଶ୍ୱାସରେ କରୁଚି, ତାକୁ ଧକ୍କା ମାରି ଭାଙ୍ଗିଦେବାକୁ ଉଦ୍ୟମ କରିବା କୌଣସି ଆର୍ଯ୍ୟଧର୍ମୀର ଠିକ୍ ନୁହେଁ, ସେପରି କରିବା ଆର୍ଯ୍ୟଧର୍ମ ନୁହେଁ । ସେଥିରେ ବିରୋଧ ବଢ଼େ, ବିରୋଧର ସମାଧାନ ହୁଏ

ନାହିଁ । 'ତାର ସେଠକ ଦୂର ଦୌଡ଼, ସେ ସେଇଆ କରୁ, ଶ୍ରଦ୍ଧା ଥିଲେ ବଳେ ନିଜ କର୍ମର ଫଳରେ କ୍ରମେ ବୁଝିଯିବ । କି ବା ତାର କର୍ମଫଳ ଦେଖି ସମାଜର ଲୋକେ ସେଠକ ପ୍ରଭାବିତ ହେବାର କଥା ସେତିକି ହେବ ।' ଏଇ ଭାବରେ ଲୋକ ସାଧାରଣର କାମନାମୟ କର୍ମକୁ ଆଦରରେ ଦେଖିଲେ ଜଗତରେ କର୍ମ ବିରୋଧର ସମାଧାନ ହୁଏ । ବୃଥା ଅସହିଷ୍ଣୁ ହୋଇ ବଳାତ୍କାର କରି ବସିବା କୌଣସି ମହତ୍ତ୍ୱ-ପ୍ରତିଷ୍ଠାର ଉପାୟ ନୁହେ । ଭଗବାନ୍ ମଧ୍ୟ ସ୍ପଷ୍ଟ ସୂଚନା ଦେଇ କହିଛନ୍ତି—

"ଅନ୍ତବତ୍ତୁ ଫଳଂ ତେଷାଂ
ତଦ୍ ଭବତ୍ୟଳ୍ପମେଧସାଂ" (୭.୨୩)

ଅର୍ଥାତ୍, ସେଭଳି ଅଳ୍ପ ବୁଦ୍ଧି ଲୋକଙ୍କର କର୍ମର ଫଳ ବେଶୀ ଦିନ ରହେ ନାହିଁ । ସେଥିରେ ବିଶ୍ୱଧର୍ମ ନାଶ ହୋଇପାରେ ନା, ଫଳରେ ଗୌରବ-ଲାଘବ କ୍ରମେ ସମାଜ ବୁଝିନିଏ ।

## ଅଧିକାର—

ଏଇ କଥାଟି ଆର୍ଯ୍ୟସାହିତ୍ୟରେ 'ଅଧିକାର' ନାମରେ ପ୍ରସିଦ୍ଧ ହୋଇଥିଲା । ଏକ ଧର୍ମର ପ୍ରଭାବରେ ଲୋକେ ଭିନ୍ନ ଭିନ୍ନ ଶ୍ରଦ୍ଧା ବା ଶ୍ରେୟ ଧରି ଭିନ୍ନ ଭିନ୍ନ କର୍ମରେ ପ୍ରବର୍ତ୍ତିବାର ପ୍ରଧାନ ବ୍ୟାଖ୍ୟା ହେଉଛି—ଅଧିକାର ଭେଦ । ଏଇ କଥାକୁ ଲକ୍ଷ୍ୟ କରି ମହାକବି ଭବଭୂତି କହିଲେ—"ଗୁରୁ ବିଚକ୍ଷଣ ଓ ହୀନବୁଦ୍ଧି ଗ୍ରହିତାକୁ ଏକ ବିଦ୍ୟା ପଢ଼ାଏ । ମାତ୍ର ସ୍ଫଟିକରେ ଯେପରି ପ୍ରତିବିମ୍ବ ପଡ଼େ, ଅଥଚ ମାଟିରେ ପଡ଼େ ନାହିଁ ଫଳରେ ଗୁରୁଙ୍କ ଶିକ୍ଷାର ପରିଣାମ ତାହାହିଁ ହୁଏ ।"

ଭାରତରେ ଛଅଟି ଆସ୍ତିକ, ଷୋଳଟି ଦର୍ଶନ ମତ ଅଛି । ମାଧବାଚାର୍ଯ୍ୟ ଗୋଟି ଗୋଟି କରି ସେ ସବୁର ପରିଚୟ 'ସର୍ବଦର୍ଶନସଂଗ୍ରହ' ଗ୍ରନ୍ଥରେ ଦେଇଛନ୍ତି । ସେଥିରେ ପ୍ରତ୍ୟେକରେ ବିଶ୍ୱତତ୍ତ୍ୱ ତଥା ମାନବର କର୍ମ ସମ୍ବନ୍ଧରେ ଧାରଣା ଓ ବ୍ୟାଖ୍ୟା ଭିନ୍ନ ଭିନ୍ନ । ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ ତତ୍ତ୍ୱ ଧାରଣା ସଙ୍ଗେ କାମନାବାଦ, ଶୂନ୍ୟବାଦ, କ୍ଷଣିକବାଦ, ନିତ୍ୟ ତତ୍ତ୍ୱବାଦ, ଅଦ୍ୱୈତ ବସ୍ତୁବାଦ, ଅଦ୍ୱୈତ ଆତ୍ମବାଦ, ଦ୍ୱୈତବାଦ, ବହୁତ୍ୱବାଦ ପ୍ରଭୃତି କୌଣସି ବାଦ ବା ବ୍ୟାଖ୍ୟାର ସେଥିରେ ଅଭାବ ନାହିଁ; ମାତ୍ର ଆର୍ଯ୍ୟଧର୍ମୀର ଏ କାହିଁରେ ଅନାଦର ବା ତାଚ୍ଛଲ୍ୟ ନାହିଁ । ସେ ବୁଝେ, ଏ ସବୁ ବିଶ୍ୱଧର୍ମର ଅଙ୍ଗୀଭୂତ—ଲୋକର ଅଧିକାର-ଭେଦରେ ଭିନ୍ନ ଭିନ୍ନ ହୋଇ ପ୍ରକାଶ ପାଇଛି ମାତ୍ର । ଏଥିପାଇଁ ପ୍ରସିଦ୍ଧ 'ଅନ୍ଧ-ହସ୍ତୀ' ନ୍ୟାୟର ପ୍ରୟୋଗ କରି ତାର୍କିକମାନେ ମଧ୍ୟ ଶାନ୍ତ । ଗୋଟିଏ ହାତୀକୁ କେତେଗୁଡ଼ିଏ ଅନ୍ଧ ଦେଖିବାକୁ ଗଲେ । କିଏ ଲାଙ୍ଗୁଡ଼ ଦରାଣ୍ଡିଲା, କହିଲା—ହାତୀ ଗୋଟାଏ ଦଉଡ଼ି ପରି ଓ ତାର ଗୋଟାଏ ମୁଣ୍ଡରେ ଗୋଚ୍ଛାଏ ବାଳ ଅଛି, କିଏ ଗୋଡ଼ ଦରାଣ୍ଡିଲା, କହିଲା—ହାତୀ

ଗୋଟାଏ ଝମ୍ପ ପର ଭୂମିରେ ଥୁଆ ହୋଇଥାଏ; କିଏ କାନ ଦରାଣ୍ଡି ଲା, କହିଲା—ହାତି ଗୋଟାଏ ପତଳା କୁଲା ପରି ଲହ ଲହ ହୋଇ ଖାଲି ହଲୁଥାଏ; କିଏ ଯୋଡ଼ପାହାର ଦରାଣ୍ଡି ଲା—କହିଲା, ହାତି ଗୋଟାଏ ମୋଟା ସାପ ପରି, କ୍ରମେ ତଳକୁ ସରୁଆ ହୋଇ ଓହଳି ଥାଏ; କିଏ ଦାନ୍ତ ଦରାଣ୍ଡି ଲା, କହିଲା—ହାତି ଗୋଟାଏ ଚକ୍‌କଣ ଚାଞ୍ଛୁଆ ନାରଗୁଣୀ ଠେଙ୍ଗାପରି—ଇତ୍ୟାଦି । ଯେ ସମ୍ପୂର୍ଣ୍ଣ ହାତିଟି କଣ ତା ଜାଣେ, ସେ ଏଥିରେ କ୍ଷିପ୍ର ବା ଉତ୍ତ୍ୟକ୍ତ ହେବାର କିଛି ନାହିଁ—ଅନାଦର କରିବାର ବି କିଛି ନାହିଁ । ଅନ୍ଧକୁ ମାରି ମନାଇବାର ଉଦ୍ୟମ କରିବା ମଧ୍ୟ ନିଷ୍ଫଳ । ବିଶ୍ୱଧର୍ମର ଆଂଶିକ ଧାରଣାରେ ମଧ୍ୟ ଆର୍ଯ୍ୟଧର୍ମୀ ଠିକ୍ ସେଇପରି ବୁଝି କରେ । ଏଥିରେ ବିବାଦ ଓ ବିରୋଧର ସୁସମାଧାନ ହୁଏ ଓ ସମାଜର ପ୍ରଗତି ଚାଲିଥାଏ ।

## ଆର୍ଯ୍ୟଧର୍ମରେ ପ୍ରତିକ୍ରିୟାର ପ୍ରତିବିଧାନ ନୁହେଁ, ସମାଧାନ—

ପୃଥିବୀର ଅନ୍ୟାନ୍ୟ ସଭ୍ୟତାର କଥା କହିଲା ବେଳେ କୁହାଯାଇଛି, ସେ ସବୁ ସଭ୍ୟତାର ପରଂପରା ବାରଂବାର ବିଧ୍ୱସ୍ତ ହୋଇ ଥରକୁ ଥର ନୂତନ ସଭ୍ୟତାର ଅଙ୍କୁରାରୋପଣ ହୋଇଛି, ପ୍ରାଚୀନର ସ୍ମୃତି ପର୍ଯ୍ୟନ୍ତ ନୂତନ ଲୁଣ୍ଠାଇ ଦେବାର ଉଦ୍ୟମ କରିଛି, କୃତକାର୍ଯ୍ୟ ମଧ୍ୟ ହୋଇଛି । ପିରାମିଡ କିଏ କରିଥିଲା, ତାର ଚିନ୍ତା ଓ କ୍ରିୟାଧାରା କଣ ଥିଲା, ମିଶରରେ ସେସବୁର ସ୍ମୃତି ଆଜି ମିଶରବାସୀର ପ୍ରାଣରେ ପ୍ରଭାବ ଜନ୍ମାଉ ନାହିଁ । ଗ୍ରୀସ୍ ରୋମର ସେ କାଳ ସଭ୍ୟତା ଆଜି ଆଉ ଥରେ ଯେପରିକି କବରରୁ ଖୋଳାହେଉଛି । ରୁଷିଆରେ ସେଦିନ ପ୍ରାଚୀନ ଶିଳ୍ପ, ସାହିତ୍ୟ ପର୍ଯ୍ୟନ୍ତ ଧ୍ୱଂସ କରି ଦେବାର ଉଦ୍ୟମ ହେଉଥିଲା; ଗୀର୍ଜା, ମସଜିଦ୍ ଜୋର କରି ଉଠାଇ ଦେଇ ଲୋକଙ୍କୁ ସମାନ କରି ଦିଆହେଉଛି; ଯାହାର ସମ୍ପତ୍ତି ଅଛି, ତାକୁ ରାଜ୍ୟରେ ଅଧିକାର ଦିଆ ହେଉ ନାହିଁ । ଜଗତରେ ଶିଶୁର ଏକମାତ୍ର ବିକାଶ ହେତୁ, ପ୍ରକୃତିଦତ୍ତ ଆଦର-ଲାଳନ-ପ୍ରବଣତାର ଭିତ୍ତି, ଗର୍ଭଧାରିଣୀ ଜନନୀଙ୍କୁ ଶିଶୁଠାରୁ ଅନ୍ତର କରି, ଶିଶୁକୁ ଚକସାଲାପରି କୃତ୍ରିମ ପାଳନରେ ମନୁଷ୍ୟ ବା ନାଗରିକ ରାଜ୍ୟସମ୍ପତ୍ତିର ଉପାଦାନ କରି ଗଢ଼ିବାର ଉଦ୍ୟମ ହେଉଥିଲା । ମାତ୍ର ଆଦିମ କାଳରୁ ଭାରତର ଆର୍ଯ୍ୟ ଆଚାର ଓ ସଂସ୍କାର ଧାରା ଠିକ୍ ଚାଲି ଆସିଛି । ଏଥିରେ ପ୍ରତିକ୍ରିୟା ଓ ପ୍ରତିବିଧାନ ଯେ ହୋଇ ନାଇ ତା ନୁହେଁ; ମାନବସମାଜରେ ଏହା ନ ହେବା ସମ୍ଭବ ନୁହେଁ । ମାତ୍ର ଏ ପ୍ରତିବିଧାନରେ ସମୂହ ଧ୍ୱଂସ ଉପରେ ନୂତନ ଅଙ୍କୁରାରୋପଣ କେବେ ହୋଇ ନାହିଁ । ପ୍ରାଚୀନର ସ୍ମୃତି ପର୍ଯ୍ୟନ୍ତ ବଳାତ୍କାରରେ ଧ୍ୱଂସ କରି ନୂତନ ସଂସ୍କାରର ଅଙ୍କୁରାରୋପଣର ଉଦ୍ୟମ ହୋଇଥିଲେ ମଧ୍ୟ ତା ସ୍ଥାୟୀ ହୋଇ ନାହିଁ । ଏକ କଥାରେ ପ୍ରତିକ୍ରିୟାର ପ୍ରତିବିଧାନ ନ ହୋଇ ସମାଧାନ ହୋଇ ଆସିଛି କହିଲେ ହୁଏ ।

ଆର୍ଯ୍ୟଧର୍ମ ମାନବର ମାନବଵିକତାରେ ଏତେ ଦୃଢ଼ ଓ ବଳିଷ୍ଠଭାବରେ ସ୍ଥାପିତ ଓ ବିଶ୍ୱଧର୍ମର ସମୂହଧାରଣାରେ ଏତେ ସଯତଭାବରେ ପ୍ରତିଷ୍ଠିତ ଯେ, ସେଥିରେ ପ୍ରତିକ୍ରିୟା ଜନ୍ମାଇ ତାକୁ ଧ୍ୱଂସ କରିବା ଭଳି ଆଉ କାହାରି ସମ୍ଭବ ହୋଇ ନାହିଁ। ବ୍ୟକ୍ତିତ୍ୱବାନ୍ ଲୋକ ସାମାନ୍ୟ ଲୋକର ସମାଲୋଚନାରେ ବିଚଳିତ ନ ହେଲା ପରି, ଆର୍ଯ୍ୟଧର୍ମ ପ୍ରତିକ୍ରିୟାରେ ଏକାନ୍ତ ପ୍ରତିହତ ଓ ବିବ୍ରତ ହୋଇ ନାହିଁ। ଇତିହାସରେ ଆର୍ଯ୍ୟଧର୍ମର ସେ ଗୌଣ ମାନସିକତା କେବେ ଫୁଟି ନାହିଁ। ଆର୍ଯ୍ୟ ଆଉ ଭିତରରେ ସଗ୍ରହ ଘଟିଛି, ମାତ୍ର ଆତ୍ମତତ୍ତ୍ୱରେ ଅନ୍ଧ ଅନୁକରଣ କେବେ ଘଟି ନାହିଁ। ନିଜର ଆଉର ସଂସ୍କାରରେ ଆର୍ଯ୍ୟଧର୍ମୀ କେବେ ବିଶ୍ୱାସ ହରାଇ ନାହିଁ।

ରାଜନୀତିକ ଭାବରେ ଏ ଦେଶ ବହୁକାଳ ପରାଧୀନ ହୋଇଛି। ଦିନେ ପାରସୀକ ପୁଣି ଗ୍ରୀକ୍ ଏ ଦେଶରେ ବିଜେତା ହୋଇ ପଶିଥିଲେ। ପରେ ପୁଣି ଶକମାନେ ନାନାରୂପରେ ଶତ ଶତ ବର୍ଷ ଧରି ଏ ଦେଶର ସଭ୍ୟତାରେ ପ୍ରତିକ୍ରିୟାର ତରଙ୍ଗ ଉଠାଇଥିଲେ। ସେ ସମସ୍ତେ ଏ ଦେଶରେ ମିଶିଛନ୍ତି। କିନ୍ତୁ ସମସ୍ତେ ଆଜି ଆର୍ଯ୍ୟଧର୍ମୀ। ତାଙ୍କର ନିଜର ବୋଲି କିଛି ଚିହ୍ନ ବର୍ତ୍ତି ନାହିଁ।

## ଭାରତର ସଂସ୍କାର—

ଅତି ନିକଟବର୍ତ୍ତୀ ଜୀବନ୍ତ ମୃତ୍ୟୁର ଇତିହାସ ଆଲୋଚନା କରିବାର ପ୍ରୟୋଜନ ନାହିଁ। ଗୋଟିଏ ମାତ୍ର କଥାର ଉଲ୍ଲେଖ କରି ଉପଲକ୍ଷ୍ୟରେ ତା ପ୍ରତି ସୂଚନା ମାତ୍ର କରାଯାଇ ପାରେ। କେତେ ଦିନ ତଳେ ଭାରତରେ ପରାଜୟ ସଙ୍କୁଚିତମାନଙ୍କର ରାଜନୀତିକ ସ୍ୱାଧୀନତାର କାମନା ଯେତେବେଳେ ତ୍ୟାଗଧର୍ମର ଏକ ଚରମ ପରୀକ୍ଷାରେ ଭୋଗକାମୀ ବିଜେତାମାନଙ୍କର ଆତଙ୍କ ଜନ୍ମାଇ ଥିଲା, ସେତେବେଳେ ଜନତା ଉପରେ ଠେଙ୍ଗାମାଡ଼ କରି ଜନତାର ସେ ତ୍ୟାଗ ନିଷ୍ଠା ଭାଙ୍ଗିବା ପାଇଁ ବିଜେତାମାନେ ଉଦ୍ୟମ ଆରମ୍ଭ କରି ଦେଲେ। ଏହା ଦେଖି ଜଣେ କହିଥିଲେ, "ଆଉ ଭାରତର ଆଶା ନାହିଁ, ଶାନ୍ତିର ଆହ୍ୱାନକୁ ଏପରି ପଶୁଧର୍ମରେ ପ୍ରତିବିଧାନ କଲେ, ଭାରତର ମୁକ୍ତିର କଳ୍ପନା ପର୍ଯ୍ୟନ୍ତ ଲୋପ ପାଇବ।" ଏହା ଶୁଣି ଆଉ ଜଣେ ହଠାତ୍ କହି ଉଠିଲେ—'ସେ ବୃଥା ଶଂକା କରିବା ଠିକ୍ ନୁହେ। ଏଇ ପୁରାଣପ୍ରସିଦ୍ଧ ଭୂମିରେ ବିଜେତାମାନେ ବସି ଅବସରରେ ନରହତ୍ୟାରେ ମାତିବା ପାଇଁ ସୈନ୍ୟମାନଙ୍କୁ ନିରଂକୁଶଭାବରେ ସାତ ସାତ ଦିନ ଛାଡ଼ ଦେବାର ଇତିହାସରେ ଦେଖାଯାଇଛି। ବିଜେତାମାନେ ରାସ୍ତାରେ ଦାକ୍ଷିଣାତ୍ୟକୁ ଗଲାବେଳେ ନିରୀହ ଜନତାର ନରମୁଣ୍ଡରେ ଦେଉଳ ପରି ସ୍ତୂପମାନ ବାଟସାକ ସଜାଡ଼ି ରଖିଦେଇ ଯିବାର ଦେଖାଯାଇଛି। ସେଥିରେ ଭାରତ ଯାଇ ନାହିଁ। ଏ ଠେଙ୍ଗା-ମାଡ଼ ତା ପାଖରେ କିଛିଭି ମାତ୍ର କଥା। କିନ୍ତୁ ମନେରଖ, ଭାରତ ଯଥାର୍ଥରେ ଯିବ—ଯେତେବେଳେ ବିଜେତାଙ୍କ ଅନାର୍ଯ୍ୟପ୍ରଭାବର ଅଜ୍ଞାତ କ୍ରିୟାରେ ଭାରତର ଆଉର

ସତ୍ତାର ଲୋପ ପାଇବ । ଯେତେବେଳେ ଗୌଣ ମନୋଭାବରେ ଅଭିଭୂତ ହୋଇ ଭାରତ ଆଗ୍ରହର ଶୁଷ୍କ ଅନୁକରଣକୁ ଆଭରଣ କରିବ । ଆଗ୍ରହର ଆହରଣରେ ଭାରତ ଯାଇ ନାହିଁ, ଯିବ ନାହିଁ । ବିଜାତୀୟ ଆଗ୍ରହର ଅଜ୍ଞାତ ପ୍ରଭାବରେ ଯେତେବେଳେ ଭାରତ ତାକୁ ଆଭରଣ କରିବ, ସେତେବେଳେ ଯଥାର୍ଥ ଭାରତ ଲୋପ ହେବ । ଜାତି ଓ ସଂସ୍କୃତିରେ ଲୋପ ହୁଏ—ଏଇପରି ।' ଏ କଥାର ଆଉ ବିଶେଷ ବ୍ୟାଖ୍ୟା କରିବା ଦରକାର ନାହିଁ ।

ଏ ଗଳ୍ପ ବାହାରର ଆକ୍ରମଣରେ ଆର୍ଯ୍ୟଧର୍ମର ପାରଂପରିକ ସମାଧାନର ଉଦାହରଣ । ମାତ୍ର ଭିତରର ପ୍ରତିକ୍ରିୟାରେ ମଧ୍ୟ ଏଇ ସମାଧାନର ଭିତ୍ତି ଚିର ଜାଗ୍ରତ ଅଛି । ଏହାର ଶ୍ରେଷ୍ଠ ଦୃଷ୍ଟାନ୍ତ 'ଚାର୍ବାକ ମତ' । କାମନାର ସହଜ ବୃତ୍ତିରେ ଆର୍ଯ୍ୟଧର୍ମରେ ଏ ଏକ ଚୂଡ଼ାନ୍ତ ପ୍ରତିକ୍ରିୟାର ସମାଧାନ । ଅନ୍ୟ ପ୍ରତିକ୍ରିୟା ଓ ସମାଧାନର କଥା ନ କହି, ଏଇ ଗୋଟିକର ଉଦାହରଣ ଦେଲେ ଆର୍ଯ୍ୟଧର୍ମର ନିତ୍ୟତା ଓ ବଳିଷ୍ଠତା ପୂର୍ଣ୍ଣ ପ୍ରକାଶ ପାଇବ ।

## ଏକ ଘୋର ପ୍ରତିକ୍ରିୟାର ଦୃଷ୍ଟାନ୍ତ—

ଆଜି ସାମ୍ୟବାଦରେ ମାନବର ଭୋଗ ବାଣ୍ଟିଦେବା, ପୁଣି ରକ୍ଷିତ ସ୍ୱାର୍ଥରୁ ଛଡ଼ାଇ ତାହା ଲୋକରେ ସମାନ ଭାଗ କରିଦେଇ, ଲୋକର ସହଜ କାମନା ଚରିତାର୍ଥ କରିବାର ଯେ ଉଦ୍ୟମ ହେଉଚି, ସେଥିରେ ପୃଥିବୀର ପ୍ରତିଷ୍ଠିତ ସଭ୍ୟତା ତ୍ରସ୍ତ ଓ ଘୋର ପଶୁବଳର ବଳାତ୍କାରରେ ସେଇ ସାମ୍ୟବାଦର ପ୍ରଚାର ପର୍ଯ୍ୟନ୍ତ ଜବତ୍ କରିବାକୁ ବାଧ୍ୟ ହେଉଛନ୍ତି । ଏଥିରେ ସାମ୍ୟବାଦର ଦୁରନ୍ତତାଠାରୁ ପ୍ରତିଷ୍ଠିତ ସଭ୍ୟତାର ଭିତ୍ତି-ହୀନତାହିଁ ବେଶୀ ପ୍ରକାଶ ପାଉଚି, ସନ୍ଦେହ ନାହିଁ । ପ୍ରକାଶ ପାଉଚି ତ୍ରସ୍ତ ସଭ୍ୟତା ଆତ୍ମପ୍ରତିଷ୍ଠାରେ ବଳୀୟାନ୍ ନୁହେ । ତା ହୋଇଥିଲେ ସେ ଦୃଢ଼ଭାବରେ କହିପାରନ୍ତା ସାମ୍ୟବାଦ, ଆସ, ଆମ ପାଖେ ଆତ୍ମପ୍ରକାଶ ଓ ପରୀକ୍ଷାରେ ତିଷ୍ଠି ପାରିଲେ, ତୁମେ ରହିବ । ନଚେତ୍ ତୁମର ଫଳ 'ଅନ୍ତବନ୍ତ୍' ହେବ, ଓ ତୁମେ ନିଜେ ସଙ୍କୁଚିତ ହେବ । ମାତ୍ର ଏ ସମାଧାନ ପାଇଁ ପୃଥିବୀର ଭୋଗକାଂଗାଳ ରକ୍ଷିତ ସ୍ୱାର୍ଥର ଶକ୍ତି ଥିଲା ପରି ଦିଶୁ ନାହିଁ । ତେଣୁ ଅସୁନ୍ଦରର ବିରାଟ ଆୟୋଜନ ହେଉଚି, ସାମ୍ୟବାଦର ଧ୍ୱଂସ କରିବାକୁ । ସାମ୍ୟବାଦୀ ମଧ୍ୟ ଏ ବିରୋଧର ଭିତର ଦୁର୍ବଳତା ବୁଝୁଚି ଓ ହସୁଚି—ବିଦ୍ରୂପ କରୁଚି, ଏ ଦୁର୍ବଳ ସଭ୍ୟତା କେତେ ଦିନ ? ମୋର ଦିନ ଆସୁଚି ।

## ବାର୍ହସ୍ପତ୍ୟ ମତ ବା ଚାର୍ବାକ୍—

କିନ୍ତୁ ଭାରତରେ ଭୋଗର ଏହି ଚୂଡ଼ାନ୍ତ ସାମ୍ୟମତ ବୃହସ୍ପତିଙ୍କ ନାମରେ ବହୁ ପ୍ରାଚୀନ କାଳରେ ପ୍ରଚାରିତ ହୋଇଥିଲା । ଯାଗଯଜ୍ଞାଦିର କ୍ରିୟାକାଣ୍ଡ ଦ୍ୱାରେ ଭୋଗକାମନା ଆର୍ଯ୍ୟଧର୍ମରେ ଅନାଦୃତ ହେଲା ସତ, ମାତ୍ର ଭୋଗ ସାଧାରଣ ମାନବର

ନିତ୍ୟ କାମ୍ୟ । ସେ କାମନାର ପ୍ରତିକ୍ରିୟା କ୍ରମେ ଘନୀଭୂତ ହେଲା । ନ୍ୟାୟତଃ ସମସ୍ତ ଭୋଗ ଜନସାଧାରଣର, ଧନୀର ସଞ୍ଚିତ ଧନରେ ଅଧିକାର ନାହିଁ, କମ୍ବା ତତ୍ତ୍ୱବାଦୀର ମତବାଦଗତ ସ୍ୱାର୍ଥରେ ମନୁଷ୍ୟଙ୍କୁ ଅନ୍ଧ କରି ରଖି ତାକୁ ଭୋଗରୁ ବଞ୍ଚିତ କରିବା ଠିକ୍ ନୁହେଁ । ତେଣୁ ନ୍ୟାୟଦେବ ଦେବଗୁରୁ ବୃହସ୍ପତିଙ୍କ ନାମରେ ସୂତ୍ର ରଚିତ ହେଲା ଓ ତହିଁରେ ପ୍ରଚାରିତ ହେଲା—

"କେବଳଂ ଶାସ୍ତ୍ରମାଶ୍ରିତ୍ୟ
ନ କର୍ତ୍ତବ୍ୟୋବିନିର୍ଣ୍ଣୟଃ ।
ଯୁକ୍ତିହୀନବିଚାରେ ତୁ
ଧର୍ମହାନିଃ ପ୍ରଜାୟତେ ।"

ଅର୍ଥାତ୍ ଖାଲି ଶାସ୍ତ୍ର ବା ପ୍ରତିଷ୍ଠିତ ଆପ୍ତର ଧରି କର୍ତ୍ତବ୍ୟ ଠିକ୍ କରାଯାଏ ନାହିଁ । ଯୁକ୍ତିକି ନ ପାଇଲେ ଭଲ ବିଚାରରେ କାର୍ଯ୍ୟ କଲେ ଧର୍ମହାନି ହୁଏ । ଏ ଯୁକ୍ତି କଣ ? ମନୁଷ୍ୟର ସ୍ୱାଭାବିକ କାମନାକଳାପ ଛଡ଼ା ଏ ଯୁକ୍ତିର ଅନ୍ୟ କୌଣସି ଭିତ୍ତି ନାହିଁ । ସେଥିପାଇଁ ସେମାନେ ଯେଉଁ ସାମ୍ୟବାଦର ଚୂଡ଼ାନ୍ତ ନୀତି ପ୍ରଚାର କରିଥିଲେ, ତାକୁ ବର୍ଣ୍ଣନା କରି ପରେ ଆର୍ଯ୍ୟଧର୍ମୀମାନେ ଗୋଟିଏ କଥାରେ ତାର ମୂଳତ୍ତ୍ୱ ମାତ୍ର ରଖିଛନ୍ତି । ତାହା ଏଇ—

"ଯାବଜ୍ଜୀବେତ୍ ସୁଖଂ ଜୀବେତ୍
ଋଣଂ କୃତ୍ୱା ଘୃତଂ ପିବେତ୍ ।
ଭସ୍ମୀଭୂତସ୍ୟ ଦେହସ୍ୟ
ପୁନରାଗମନଂ କୁତଃ ?"

ଅର୍ଥାତ୍, ଜୀଇଥିବା ଯାକ ସୁଖରେ ରହିବାର କଥା । ଋଣ କର, ଘିଅ ଖାଅ । ଶରୀର ପାଉଁଶ ହୋଇଗଲା ପରେ ଆଉ ଫେର୍ ପୁଣି ଆସିବ କାହୁଁ । ଏଥିକରେ ମଧ୍ୟ ମତଟିର ବଳିଷ୍ଠତା ସ୍ପଷ୍ଟ । ଜୀବ ମାନବର ଭୋଗ ହିଁ ଲୋଡ଼ା । ସମସ୍ତଙ୍କୁ ସେ ଭୋଗର ସୁବିଧା ଦିଆଯାଉ । ଋଣରେ କିଛି ପରିଶୋଧ କରିବାର ଦାୟିତ୍ୱ ନାହିଁ । ଯାହାର ବେଶି ଅଛି, ସେଇ ଋଣ ଦିଏ । ଯାହାର ନାହିଁ, ସେ ନିଏ । ଯାହାର ନାହିଁ, ସେ ଥିଲାବାଲାଠାରୁ ଯେ କୌଣସି ମତରେ ନେଇ ଭୋଗ କରୁ । ମଲା ପରେ ପୁଣି ଗୋଟାଏ ଆତ୍ମାର ସ୍ଥାୟିତ୍ୱ କଣ, ଏ ଜୀବନ ଗଲେ ତ ସବୁ ସରିଲା । ଆଉ ଫେରେ ଭବିଷ୍ୟତ୍ ଜୀବନର ଚିନ୍ତା କଣ ? ସ୍ୱର୍ଗ ନରକର କଳ୍ପନାରେ ଲୋକଙ୍କୁ ଭୁଲାଇ ଭୋଗରୁ ବଞ୍ଚିତ କରି ରଖିବା ରକ୍ଷିତସ୍ୱାର୍ଥର ଏକ ଗୁଳକ—ଏହା ଯୁକ୍ତିକି ଅଣ୍ଟୁ ନାହିଁ ।

ଏହା ହିଁ ମୋଟାମୋଟି ବୃହସ୍ପତି-ଦର୍ଶନର ମତ । ଲୋକଙ୍କୁ ଏ ସୁଖ ଲାଗିବାର କଥା । ସେଥିପାଇଁ ଲୋକେ ଏହାକୁ କହିଲେ— ଚାରୁବାକ୍ ବା

ପ୍ରୀତିକର ବାଣୀ । ସେଇଥିରୁ କହୁ କହୁ ହେଲା ଚାରୁବାକ୍ ବା 'ଚାର୍ବାକ୍' । ଏହାକୁ ଚାର୍ବାକ୍ ମତ କହନ୍ତି ।

## ସାମ୍ୟବାଦ ଓ ଚାର୍ବାକ—

ଏବେ ପୃଥିବୀର ସଭ୍ୟତା ଉପରେ ସାମ୍ୟବାଦର ଯେଉଁ ଘୋର ପ୍ରତିକ୍ରିୟାର ପ୍ରସ୍ଥ ଫିଟୁଛି, ତାର ମାନବିକ ଭୋଗ ପ୍ରୟୋଜନର ସାଧାରଣ ନୀତି ସଙ୍ଗେ ତୁଳନା କଲେ ଚାର୍ବାକ ନୀତିର କି ବିଶେଷ ପ୍ରଭେଦ ଅଛି ? ଅବଶ୍ୟ ଚାର୍ବାକ୍ ମତର ତତ୍ତ୍ୱବାଦଟି ଏବେ କୌଣସିଠାରେ ଆଦରର ସହିତ ଲକ୍ଷିତ ହୋଇଥିବାର କୌଣସି ପ୍ରାମାଣିକ ଗ୍ରନ୍ଥାଦି ନାହିଁ । ତଥାପି 'ଚାର୍ବାକ' ଏଇ କଥାଟିରୁ ଯଥେଷ୍ଟ ବୁଝାପଡ଼ୁଛି, ଏହା ପ୍ରପୀଡ଼ିତ ଜନସାଧାରଣଙ୍କୁ କିପରି ପ୍ରୀତିକର ହୋଇଥିଲା । ସାଧାରଣ ଏଥିରେ ନିଜ ଦୁଃଖର ଅତ୍ୟନ୍ତ ଅବସାନର ଭରସା ପାଇ ଯେପରି କି ଉଲ୍ଲସିତ ହୋଇ ଏ ମତର ନାମ ଦେଇଥିଲେ 'ଚାର୍ବାକ' ବା ରମ୍ୟବାଣୀ । ହେଲେହେଁ ଚାର୍ବାକ୍ ମତ ଯାହା ହେଉ, ଭାରତର ଆର୍ଯ୍ୟଧର୍ମୀ ବଳ-ପ୍ରୟୋଗ କରି ଏହାକୁ ଜବତ୍ କରିବାକୁ ଯାଇ ନାହିଁ । ଫଳପ୍ରେପ୍ସୁ ଓ ଭୋଗକାମୀ ମାନବର ଏ ଏକ ସହଜ କ୍ରିୟା ବୋଲି ଆର୍ଯ୍ୟଧର୍ମର ମନୀଷୀମାନେ ଏହାକୁ ସ୍ୱାଭାବିକ କ୍ରିୟାପ୍ରବାହର ଧର୍ମରେ ଛାଡ଼ିଦେଇ ନିଶ୍ଚିନ୍ତ ହେଲେ । ଫଳରେ ହୁଏତ ନିଜର ପରିଣାମରେ ଏହାର ଶକ୍ତି ଓ ତୀବ୍ରତାର ଅବସାନ ହେଲା । ତେଣୁ ଆଜି ଏହା ଏ ଭୂମିରେ ସ୍ୱତନ୍ତ୍ର ପ୍ରତିଷ୍ଠା ପାଇ ନାହିଁ । ଏହା ବୋଲି ଏହାର ଛାପ ଯେ ଆର୍ଯ୍ୟ-ସଂସ୍କାରରେ ପଡ଼ି ନାହିଁ, ତା କୁହା ଯାଇ ନ ପାରେ । କୌଣସି ମାନବିକ କ୍ରିୟାପ୍ରବାହର ପ୍ରଭାବ ସଂସ୍କାରରେ ଲୋପ ପାଏ ନାହିଁ । ହୁଏତ ଚାର୍ବାକ୍‌ବାଦ ସେତେବେଳର କେଉଁ ଅଯଥା ଦୃପ୍ତ ଦୃଢ଼ୀଭୂତ ରକ୍ଷିତ ସ୍ୱାର୍ଥର ଆତିଶଯ୍ୟ ବିରୁଦ୍ଧରେ ବାହାରିଥିଲା, ତାକୁ ଲୋପ କରି, ସମାଜର ଅପଚାର ପରିଷ୍କାର କରିଛି, କିମ୍ବା ଲୋକସ୍ୱାର୍ଥ ପ୍ରତି ମୁଖ୍ୟମନ୍ୟଙ୍କର ଦୃଷ୍ଟି ଫେରାଇ ସମାଜର ମଙ୍ଗଳ ସାଧନ କରୁଛି ଓ ଆର୍ଯ୍ୟଧର୍ମର ସାମୟିକ ମଳିନତା ନଷ୍ଟକରି ଆଦର୍ଶକୁ ମାଜି ଉଜ୍ଜ୍ୱଳ କରିଛି—ମାତ୍ର ଅଭିଭୂତ କରି ନାହିଁ । ଏପରି ପ୍ରତିକ୍ରିୟାର ଉପଯୋଗିତା ଯଥେଷ୍ଟ ଅଛି । ବହୁ ପ୍ରତିକ୍ରିୟାର ଛାପ ସନାତନ ଆର୍ଯ୍ୟସମାଜରେ ମିଳିବ । ସେମାନଙ୍କର ଐତିହାସିକ ପ୍ରଭାବ ମଧ୍ୟ ଖୋଜିଲେ ଦେଖାଯିବ । ମାତ୍ର ଏକକର୍ତ୍ତୃବ୍ୟବସ୍ଥ ବିଶିଷ୍ଟ ଆର୍ଯ୍ୟଧର୍ମରେ ସମସ୍ତେ ଲୀନ । ଏଇପରି ପ୍ରତିକ୍ରିୟାକୁ ଆତ୍ମସାତ୍ ଓ ହୁଏତ ଅଙ୍ଗୀଭୂତ କରି ଆତ୍ମପ୍ରତିଷ୍ଠା ଠିକ୍ ରଖିବା ହିଁ ଆର୍ଯ୍ୟଧର୍ମର ଯଥାର୍ଥ ବିଶିଷ୍ଟତା । ତେଣୁ ସବୁ ପ୍ରତିକ୍ରିୟା ସତ୍ତ୍ୱେ ସେଇ ନିତ୍ୟ ଆର୍ଯ୍ୟଧର୍ମ ଛଡ଼ା ଆଉ କାହାରି ସତ୍ତା ନାହିଁ ।

## ସନାତନ ସମାଧାନ--

ଏହା ହିଁ ସନାତନ ଧର୍ମ ବା ସଂସ୍କୃତର ଲକ୍ଷଣ । ଆର୍ଯ୍ୟଧର୍ମ ସନାତନ । ଦୀର୍ଘ ପରାଧୀନତାର ଅଜ୍ଞାତ ପ୍ରଭାବଜନିତ ଅନ୍ଧ ଓ ରୂଢ଼ ଆତ୍ମରକ୍ଷା ପ୍ରବୃତ୍ତି ହେତୁରୁ ଆଜି ଏଇ ସନାତନ ଧର୍ମ କହିଲେ ଏ ଦେଶରେ ଧର୍ମରେ ରକ୍ଷିତ ସ୍ୱାର୍ଥ ଏକଦଳ ସାମାଜିକ ବୁଝନ୍ତି, ଯେଉଁ ଧର୍ମର ତ୍ରିକାଳରେ ବୃଦ୍ଧି କ୍ଷୟ ବା ପରିଣାମ ନାହିଁ, ଯାହା ସର୍ବଦା ଏକପ୍ରକାର ଓ ଏକନିଷ୍ଠାନିଷ୍ଠ, ସୃଷ୍ଟିଠାରୁ ଆରମ୍ଭ କରି କ୍ଷୁଦ୍ର ଲୋକାଚାରର କୁସଂସ୍କାର ପର୍ଯ୍ୟନ୍ତ ସବୁ ଯେଉଁ ଧର୍ମରେ ଅକାଟ୍ୟ ବିଧି, ତାହା ହିଁ ସନାତନ ଧର୍ମ । ଅବଶ୍ୟ ଦେଶରେ ସ୍ୱାଧୀନ ମନୋଭାବର ବ୍ୟାପ୍ତି ନିମନ୍ତେ ନାନା କାରଣରୁ ଏବେ କ୍ଷେତ୍ର ବଡ଼ ସଂକୁଚିତ ଓ ସୀମାବଦ୍ଧ । ସେଥିପାଇଁ ଏପରି ଏକ ଅନାର୍ଯ୍ୟ ମତର ପ୍ରସାର ଓ ପ୍ରତିପତ୍ତି ଅଛି । ସେସବୁ ବିଚାର ଏଠାରେ କରିବାର ଅବକାଶ ନାହିଁ, ମାତ୍ର ସନାତନ ଶବ୍ଦଟିର ଅର୍ଥ ପ୍ରକାଶ କରିବା ପାଇଁ ଭଗବାନ୍ ବ୍ରହ୍ମର ସ୍ୱରୂପ ନିରୂପଣରେ ସ୍ପଷ୍ଟ କହିଛନ୍ତି—

ନିତ୍ୟଃ ସର୍ବଗତଃ ସ୍ଥାଣୁରଚଳୋଽୟଂ ସନାତନଃ । (୨.୨୩)

ଅର୍ଥାତ୍, ଏହା ନିତ୍ୟ ବା ସର୍ବଦା ଏକାପରି, ସର୍ବଗତ ବା ସର୍ବତ୍ର ବିଦ୍ୟମାନ, ସ୍ଥାଣୁ ବା ଶୁଖିଲା ଗଛପରି ସ୍ଥିର, ଅଚଳ ବା ପଥର ପରି ସ୍ପନ୍ଦନହୀନ, ପୁଣି ସନାତନ ନିତ୍ୟ ବିବର୍ଦ୍ଧମାନ । ଏଠାରେ ନିତ୍ୟ ଓ ସନାତନ ଏକ ବସ୍ତୁ ନୁହେଁ । ବ୍ରହ୍ମଠାରେ ସମସ୍ତ ପ୍ରକାର ବିରୋଧୀ ଲକ୍ଷଣ; ଅର୍ଥାତ୍ ଯେଉଁ ଲକ୍ଷଣମାନଙ୍କର ଏକତ୍ର ସମାବେଶ ମାନବ-ଚିନ୍ତାର ଅଗମ୍ୟ, ସେଇସବୁ ଲକ୍ଷଣ କହିବାକୁ ଯାଇ ନିତ୍ୟ, ସ୍ଥାଣୁ, ଅଚଳ, ସର୍ବଗତ ଓ ସନାତନ ଏଇ କଥାଗୁଡ଼ିକ କୁହାଯାଇଛି । ସନାତନର ଆକ୍ଷରିକ ଅର୍ଥ 'ସଦା-ଜାତ' ବା ନିତ୍ୟ ନୂତନ ବା ଯାହା ସର୍ବଦା ନୂଆ ନୂଆ ଭାବରେ ବିକାଶ ପାଉଛି । ଆର୍ଯ୍ୟଧର୍ମ ଏଇପରି ସନାତନ ।

## କର୍ତ୍ତବ୍ୟର ଆପେକ୍ଷିକ କ୍ରିୟା ପ୍ରତିକ୍ରିୟା—

ମୂଳତଃ ଆର୍ଯ୍ୟଧର୍ମ ବିଶ୍ୱବିକାଶର ନିୟମ ଧରି କର୍ତ୍ତବ୍ୟ ସାଧନାର ଆପେକ୍ଷିକ କ୍ରିୟା-ପ୍ରତିକ୍ରିୟାରେ ପ୍ରଯତ୍ନପର ଆତ୍ମବିକାଶର ଏକ ମହାପ୍ରବାହ । ଯଜ୍ଞ, ଦାନ ଓ ତପ, ଏହାର ନିତ୍ୟକର୍ମ । ଏଇ ତିନୋଟି ପୀଠ ଉପରେ ଆର୍ଯ୍ୟଧର୍ମର କର୍ମପରଂପରା ପ୍ରତିଷ୍ଠିତ । (୧୮.୫) । ଯଜ୍ଞ, ଅର୍ଥାତ୍ ବିଶ୍ୱର ବିକାଶ କର୍ମରେ ବ୍ୟକ୍ତିର ଆତ୍ମବଳି ବା ମୁଁ ଏଇ ବିଶ୍ୱବିକାଶରେ ଏକ ଏଇ ଭାବ । ଦାନ ଏଇ ଯଜ୍ଞବୁଦ୍ଧିର କ୍ରିୟାବିକାଶ ମାତ୍ର । ବିଶ୍ୱବିକାଶ ଏକ କର୍ମ ବା ପ୍ରତି ବସ୍ତୁର କର୍ତ୍ତବ୍ୟ-ପରଂପରା । ସେଥିରେ

ସମସ୍ତେ କର୍ତ୍ତବ୍ୟ କରୁଚନ୍ତି । ନିଜ ପାଇଁ କେହି କିଛି ଦାବି କରୁ ନାହାନ୍ତି । ଅନ୍ୟ ପ୍ରତି କଣ କରିବାର ଅଛି, ଏହା ହିଁ ସମାଜରେ ପ୍ରତ୍ୟେକ ବ୍ୟକ୍ତିର ଲକ୍ଷ୍ୟ ହେବା ଉଚିତ । ଏହା ଏକ ନିତ୍ୟ ଦାନ-କ୍ରିୟା । ପୁଣି ଏଇ ଯଜ୍ଞବୁଦ୍ଧିରେ ପର ପାଇଁ କର୍ତ୍ତବ୍ୟ କରଣୀୟ ବୋଲି ନିଷ୍ଚେଷ୍ଟ ହୋଇ ପଡ଼ିବାର ଯେ ଶଙ୍କା ଅଛି, ତାହାର ପ୍ରତିବିଧାନ ନିମନ୍ତେ ନିତ୍ୟ ନିଯୁକ୍ତ କର୍ତ୍ତବ୍ୟସ ଧନରେ ତତ୍ପର ରହିବାକୁ ହେବ । ଏହାହିଁ ତପ । ଆର୍ଯ୍ୟଧର୍ମର ଏହି ନିତ୍ୟକର୍ମ ସର୍ବଦା ମନେ ରଖିବାକୁ ହେବ ।

## ଶ୍ରଦ୍ଧାର ଆଦର ଓ ସହିଷ୍ଣୁତାର ବିକାଶ—

କର୍ତ୍ତବ୍ୟ ସାଧନାର ଏଇ ନିତ୍ୟ ପୀଠ ଧରି ଚାଲିବାକୁ ହେବ । ସେଥିରେ ପ୍ରତିକ୍ରିୟା ଦେଖି ବିଚଳିତ ହେବାର କିଛି ନାହିଁ । କାହାକୁ ମାରି ଧରି ମନାଇ ଚୁପ୍ କରିବାର ପ୍ରୟୋଜନ ନାହିଁ । ଯଦି କେହି କୌଣସି ନୂତନ କ୍ରିୟାପ୍ରବାହର ଧାରା ଧରିବାକୁ ଯାଏ, ତେବେ ତାର ଯଦି ଶ୍ରଦ୍ଧା ଠିକ୍ ଥାଏ (୧୦.୧-୫), ତେବେ ସେଇ ଶ୍ରଦ୍ଧାରେ ତାକୁ ତାର କର୍ତ୍ତବ୍ୟରେ ବାଧା ଦେବାର କିଛି ନାହିଁ । ସେଇ ଦୃଷ୍ଟିରେ ଦଧୀଚିର ଆତ୍ମଦାନଠାରୁ ସତୀଦାହର ଘୋର କ୍ରିୟା, ସ୍ୱୟମ୍ବରଠାରୁ ବାଲ୍ୟ ବିବାହ, ଦମୟନ୍ତୀଙ୍କ ପରି ସତୀ ସଧବାଙ୍କ ଦ୍ୱିତୀୟ ବିବାହ ବ୍ୟବସ୍ଥାଠାରୁ ବିଧବାର ଚିର ବ୍ରହ୍ମଚର୍ଯ୍ୟ, କାମିନଠାରୁ କ୍ଷେତ୍ରଜ ସନ୍ତାନ, ପିତୁଳାପୂଜାଠାରୁ ଶୂନ୍ୟ ଧ୍ୟାନରେ ନିର୍ବାଣ, ଶଙ୍କରଙ୍କ ସନ୍ୟାସଠାରୁ ଗୌଡ଼ୀୟ ବୈଷ୍ଣବଙ୍କ ବ୍ରଜଲୀଳା, ଇହଜନ୍ମରେ ଦାନ କୀର୍ତ୍ତି ପ୍ରଭୃତି କରି ନାମ ନ ରଖିବାଠାରୁ ପରଜନ୍ମର ଭୋଗକାମନାରେ କଳ୍ପବଟରୁ ଗଙ୍ଗାକୁ ଡ଼େଇଁ ଆତ୍ମହତ୍ୟା କରିବା ପ୍ରଭୃତି, ପୁଣି ଦ୍ୱୈତ, ଅଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତ, ଶୁଦ୍ଧାଦ୍ୱୈତ, ଶୂନ୍ୟବାଦ, ଅଗ୍ନିଷ୍ଟୋମ, ଗ୍ରହଯଜ୍ଞ, ଶ୍ରାଦ୍ଧକ୍ରିୟା, କାଳୀପୂଜା ଓ ବଳିଦାନ, ସ୍ୱୈରର ଧର୍ମନିଷ୍ଠାରେ ସ୍ୱୈର, ମଦ୍ୟପର ତନ୍ତ୍ର ନାମରେ ଅପଚାର, ଦେବପ୍ରତିଷ୍ଠା ପାଇଁ ବେଶ୍ୟା ଦ୍ୱାରରୁ ପବିତ୍ର ମୃତ୍ତିକାସଂଗ୍ରହ ପ୍ରଭୃତି ସବୁ ପ୍ରକାର ମତ, କ୍ରିୟା, ସଂସ୍କାର କୁସଂସ୍କାର ସମାନ ଭାବରେ ଏ ଭୂମିର ସଂସ୍କୃତି ଓ ଧର୍ମରେ ସ୍ଥାନ ପାଇଚି । ପ୍ରତିକ୍ରିୟା ହେଉଚି ଓ ଚାଲିଚି । ପ୍ରାକୃତିକ ପ୍ରତିବିଧାନରେ ତାହା ଧର୍ମର ବିଭାବମାନଙ୍କରେ ପରିଣତ ହେଉଚି ବା ନିଜର ପ୍ରଭାବ ରଖି ନ ପାରି ଲୋପ ପାଉଚି । ସମାଜରେ ଅପଚାର ହେଉଚି; ପୁଣି ପ୍ରତିକ୍ରିୟାରେ ତାର ଆପେ ମାର୍ଜ୍ଜନା ହେଉଚି । ଏହିପରି ବିଭିନ୍ନ ବିଭାଗ ଓ କ୍ରିୟାମାନ ବିକାଶ କରି ବିଳକ୍ଷ୍ଣ ପୀଠ ଉପରେ ସନାତନ ଆର୍ଯ୍ୟଧର୍ମର ସାର୍ବଜନୀନ ପରମ୍ପରା ବଢ଼ି ଚାଲିଚି । ଏଇ ବିଚିତ୍ରତା ଓ ସହିଷ୍ଣୁତାର ଶକ୍ତି ଓ ସେହି ସହିଷ୍ଣୁତାର ସମାଧାନ କେବଳ କର୍ତ୍ତବ୍ୟ-ସର୍ବସ୍ୱ ଆର୍ଯ୍ୟଧର୍ମରେ ସମ୍ଭବ ହୋଇଆସିଚି । ସେଇ ଆର୍ଯ୍ୟଧର୍ମ ହିଁ ଗୀତା ଧର୍ମ ।



## ୪ । ଆର୍ଯ୍ୟଧର୍ମରେ କର୍ମନୀତିର ଭିତ୍ତି—ସମାଧି

କର୍ତ୍ତବ୍ୟ ସାଧନାରେ ଆତ୍ମୋତ୍ସର୍ଗ ହିଁ ଆର୍ଯ୍ୟଧର୍ମର ଭିତ୍ତି । ଏହା ପୂର୍ବେ କୁହାଯାଇଛି । କିନ୍ତୁ ଧର୍ମ କହିଲେ ଠିକ୍ ଏ ଦେଶରେ କଣ ବୁଝାଯାଏ, ତାହା ସ୍ପଷ୍ଟ କରି ମନେ ରଖି ସମସ୍ତ ଆର୍ଯ୍ୟଶାସ୍ତ୍ର ଓ କ୍ରିୟା ବୁଝିବା ଉଚିତ । କର୍ତ୍ତବ୍ୟ ବା ନିର୍ଦ୍ଦିଷ୍ଟ କର୍ମ ଏହି ଅର୍ଥରେ ଏ ଦେଶରେ ଧର୍ମ ଶବ୍ଦ ବ୍ୟବହୃତ ହୋଇଥାଏ ।

### ଧର୍ମ ଓ ନୀତି—

ମାତ୍ର ଏବେ ଖ୍ରୀଷ୍ଟଧର୍ମ, ମହମ୍ମଦ୍ (ମୁସଲମାନ) ଧର୍ମ, ଇହୁଦୀ ଧର୍ମ, ପାର୍ଶି ଧର୍ମ ପ୍ରଭୃତି କଥାଗୁଡ଼ିକରେ ଧର୍ମ ଠିକ୍ ସେ ଅର୍ଥରେ ବ୍ୟବହୃତ ହୁଏନାହିଁ । ଟିକିଏ ପ୍ରଭେଦ ଅଛି । ତେଣୁ କଥାଟି ସ୍ପଷ୍ଟ ମନେ ରଖିବା ଭଲ । ଖ୍ରୀଷ୍ଟଧର୍ମ, ମହମ୍ମଦ୍ ଧର୍ମ ପ୍ରଭୃତିରେ ଧର୍ମ ଶବ୍ଦର ଅର୍ଥ ପାରଲୌକିକ ସୁଖ-ମାର୍ଗ । ସେସବୁ ଧର୍ମରେ ମନୁଷ୍ୟର କେତେଗୁଡ଼ିଏ ବନ୍ଦନା କ୍ରିୟା, ଉପବାସାଦିର ବ୍ୟବସ୍ଥା ମଧ୍ୟ ଅଛି । ସେସବୁ ସେଇ ପାରଲୌକିକ ସୁଖର ପ୍ରାପ୍ତି ନିମନ୍ତେ ସାଧନ । ସମାଜରକ୍ଷାର ଉଦ୍ଦେଶ୍ୟ ସେଥିରେ ଥିଲେହେଁ, ତାହା ଅବାନ୍ତର ମାତ୍ର । ପୁଣି ସେସବୁ ବ୍ୟକ୍ତିପ୍ରବର୍ତ୍ତିତ ଧର୍ମମାନଙ୍କରେ ଧର୍ମର ପ୍ରବର୍ତ୍ତକମାନେ ପାରଲୌକିକ ସୁଖକୁ ଉଦ୍ଦେଶ୍ୟ କରି ଦେଖାଇ ମନୁଷ୍ୟକୁ ସେଥିରେ ବାନ୍ଧିବା ପାଇଁ କେତେକ କର୍ତ୍ତବ୍ୟ ନିର୍ଦ୍ଦେଶ କରନ୍ତି । ଯେପରି କି ମୁସଲମାନ ଧର୍ମରେ ଏକେଶ୍ୱରରେ ବିଶ୍ୱାସ କରିବ, ମଦ ଖାଇବ ନାହିଁ, ସୁଧ ନେବ ନାହିଁ, ଚାରୋଟିଯାଏ ପତ୍ନୀ ଏକ ସଙ୍ଗେ ଗ୍ରହଣ କରିପାରିବ—ଇତ୍ୟାଦି । ପୁଣି ଏହାହିଁ ସମସ୍ତଙ୍କୁ ଧରି କରାଇବ । ଆଲ୍ଲାର ପ୍ରତିମୂର୍ତ୍ତି ଛୁଇଁବ ନାହିଁ । ରମଜାନ ମାସରେ ଦିନରେ ଖାଇବ ନାହିଁ । ଆକାଶରେ ଚନ୍ଦ୍ର ଦେଖିଲେ ଇଦ୍ ପର୍ବ ପାଳିବ—ଇତ୍ୟାଦି ସବୁ ସେଇ ପାରଲୌକିକ ସୁଖସାଧନା ସଙ୍ଗେ ଜଡ଼ିତ । ପୁଣି ଖ୍ରୀଷ୍ଟଧର୍ମରେ—ମନୁଷ୍ୟ ମାରିବ ନାହିଁ; ପର ଦାରାକୁ ଗ୍ରହିବ ନାହିଁ; ଚୋରି କରିବ ନାହିଁ; ନିର୍ଦ୍ଦିଷ୍ଟ ୪୦ ଦିନ ଉପବାସ ଧର୍ମ ପାଳିବ—ଇତ୍ୟାଦି ଠିକ୍ ସେଇପରି । ଏସବୁ ମିଶି ସେମାନଙ୍କ ଧର୍ମ । ସେଥିରେ ହୁଏତ ପ୍ରବର୍ତ୍ତକମାନେ ନିଜର ପାରିପାର୍ଶ୍ୱିକ ଅବସ୍ଥା ଦେଖି କେତେଗୁଡ଼ିଏ କର୍ମନୀତିକୁ ଧର୍ମ ସଙ୍ଗେ ମିଶାଇ ପାରଲୌକିକ ସୁଖର ସାଧନ ରୂପେ ତାକୁ ପ୍ରକାଶ କରିଥିବେ । ମାତ୍ର ପାରଲୌକିକ ସୁଖ ସଙ୍ଗେ ସେସବୁର କି ସ୍ୱାଭାବିକ ବା ଯୁକ୍ତିଯୁକ୍ତ ସମ୍ପର୍କ ଅଛି, ତାହା ସ୍ପଷ୍ଟ ଜାଣିବାର କିଛି ଉପାୟ ନାହିଁ କିମ୍ବା ସମାଜରକ୍ଷା ପାଇଁ ସେ କର୍ତ୍ତବ୍ୟମାନଙ୍କର ଉପଯୋଗିତା ସ୍ପଷ୍ଟ ନୁହେଁ । ବିଚାର ନ କରି ସେସବୁ ମାନିବାକୁ ହୁଏ । ଜଗତରୁ ଭିନ୍ନ କୌଣସି ଈଶ୍ୱରଙ୍କ ଆଦେଶ ବୋଲି ସେସବୁ ଧରିନେବାକୁ ହୁଏ । ସେଇ ଈଶ୍ୱରଙ୍କ ଆଦେଶ ପୁଣି ନ ମାନିଲେ

ନରକର ଦଣ୍ଡ । ଏସବୁରେ ଏକଦିଗରେ ଯୁକ୍ତିହୀନ ବଳାତ୍କାର ବିଶ୍ୱାସରେ ଧର୍ମାନ୍ଧତା ଆସେ, ଅନ୍ୟ ଦିଗରେ ଏଇ ଧର୍ମାନ୍ଧତା ଭୁଟିଲେ ସେମାନେ ଲୋକବ୍ୟବହାର ପାଇଁ ନାନା ନିୟମ କରି ତାହା ଧରି ଚଳିବାକୁ ବାଧ୍ୟ ହୁଅନ୍ତି । ସେସବୁ ନିୟମର ମଧ୍ୟ ସର୍ବତ୍ର ସମଭାବରେ ପ୍ରୟୋଗ ଓ ପ୍ରଚାର କରିବା ଭଳି ଭିତ୍ତିମାନ କଳ୍ପନା କରିବାକୁ ହୁଏ । ସେସବୁକୁ ସେମାନେ 'ନୀତି' ( Morals ) କହନ୍ତି । ପ୍ରାୟ ଚାରି ଶହ ବର୍ଷ ହେଲା ଇଉରୋପର ଖ୍ରୀଷ୍ଟଧର୍ମୀମାନଙ୍କ ମଧ୍ୟରେ ପୋପ୍ ଶାସନ ଓ ଧର୍ମାନ୍ଧତା ଫାଟିଯିବାର ଆରମ୍ଭ ହୋଇଥିବା କଥା ସୂଚିତ ହୋଇଚି । ସେସବୁ ସମାଜରେ ଧର୍ମାନ୍ଧତା ଏବେ ବହୁପରିମାଣରେ ସଙ୍କୁଚିତ ହୋଇଯାଇଚି । ଏଣୁ ସେଠାରେ ଧର୍ମରୁ ଅତିରିକ୍ତ ନୀତିବିଜ୍ଞାନ (Ethics) ପ୍ରକାଶ ପାଇଚି । ଏଇ ନୀତିବିଜ୍ଞାନରେ ମାନବ ସମାଜ ଚଳିବାର କର୍ତ୍ତବ୍ୟ ଅବଧାରଣର ପ୍ରଯତ୍ନ ଫୁଟିଚି ।

## ନିରୁତା କର୍ମନୀତିର ଆତ୍ମିକ ଭିତ୍ତି—

ଏକ ଭାବରେ ଏ ନୀତିବିଜ୍ଞାନର ଆଲୋଚନା ହୋଇ ନାହିଁ । ପ୍ରଥମ କଥା, ଏହା ଧର୍ମରୁ ବିଚ୍ଛିନ୍ନ ହୋଇ ଗଢ଼ିବାରୁ ପାରଲୌକିକ ସୁଖର ସମ୍ବନ୍ଧ ଏଥିରେ ନାହିଁ । ତଥାପି ଖ୍ରୀଷ୍ଟପୂର୍ବ ଯୁଗରେ ଗ୍ରୀକ୍ ପଣ୍ଡିତମାନେ ଯେଉଁ ନୀତି-ବିଜ୍ଞାନର ଆଲୋଚନା କରିଥିଲେ, ସେଥିରେ 'ଅତ୍ୟନ୍ତ ହିତ' ଓ 'ସଦ୍‌ଗୁଣର ପରାକାଷ୍ଠା' ପ୍ରଭୃତିରେ ଆତ୍ମପୀଠରେ ଆଲୋଚନା କରିବାର ଆଭାସ ପ୍ରକାଶ ପାଇଥିଲା । ମନୁଷ୍ୟର କର୍ମାକର୍ମ ବିଚାରରେ ଆରିଷ୍ଟଟ୍‌ଲ୍ 'ଆତ୍ମାର କଲ୍ୟାଣ'କୁ ଆଦର୍ଶ କରିବାର ଉଦ୍ୟମ ମଧ୍ୟ କରିଥିଲେ । ଅବଶ୍ୟ ସେ ଉଦ୍ୟମରେ ସେ କୌଣସି ସ୍ପଷ୍ଟ ସମାଧାନ କରିପାରି ନଥିଲେ । ତଥାପି ଇଉରୋପରେ ଧର୍ମାନ୍ଧତାର ବିରୁଦ୍ଧରେ ଯୁକ୍ତିବାଦର ଯେ ପ୍ରତିକ୍ରିୟା ଆରମ୍ଭ ହେଲା, ସେଥିରେ ସେଇ ପ୍ରାଚୀନ ଗ୍ରୀକ୍ ନୀତିବିଜ୍ଞାନର ସ୍ମୃତି କେତେକଙ୍କ ଭିତରେ ଜାଗ୍ରତ ହେଲା । ସେମାନେ ତେଣୁ ସ୍ପଷ୍ଟ ଆତ୍ମିକତା ବା ଆତ୍ମତତ୍ତ୍ୱ ବିଚାରରେ ନୀତିର ସ୍ପଷ୍ଟ ସମାଧାନ ନ କଲେ ମଧ୍ୟ କହିଲେ, ମାନବ-ସ୍ୱଭାବରେ ଦୟା, କ୍ଷମା, ତ୍ୟାଗ, ପରୋପକାର ପ୍ରଭୃତି ସଦ୍‌ଗୁଣସବୁ ଆତ୍ମାର ଇଂଗିତରେ ପ୍ରକାଶ ପାଏ । ସେଠାରେ କିଛି ଯୁକ୍ତି ନାହିଁ । ମାତ୍ର ତାହା ନ କଲେ ମାନବ-ପ୍ରାଣରେ କାହିଁକି କେଜାଣି ଘୋର ଅପରିତୋଷ ଓ ଅଶାନ୍ତି ହୁଏ । ସେଇ ହେତୁରୁ ଏଇ ତ୍ୟାଗ ଓ ସଂଯମମୂଳକ ପରାର୍ଥପର କ୍ରିୟାସବୁ ସ୍ୱାର୍ଥ ଓ ଭୋଗ-ସର୍ବସ୍ୱ ମାନବ-ଜୀବନରେ ପ୍ରକାଶ ପାଏ । ଏଇ ସ୍ୱତୋବିକଶିତ ଆତ୍ମିକ ସୂଚନାରେ ସେମାନେ ସମସ୍ତ ସାମାଜିକ କର୍ତ୍ତବ୍ୟର ବ୍ୟାଖ୍ୟା କରନ୍ତି । ନିଜେ ନିଜ ସୁଖାଧାନ ପାଇଁ କର୍ମ କରିବା ମାନବର ସ୍ୱଭାବ ହେଲେହେଁ ଏଇ ଆତ୍ମିକ ସୂଚନାରେ ସେ ପରପାଇଁ କାର୍ଯ୍ୟ କରିବାକୁ ଯାଏ । ମାତ୍ର ଯୁକ୍ତି କରି ବସିଲେ ସେଥିରେ କୌଣସି ଅଗମୂଳ ମିଳିବ ନାହିଁ । ସ୍ୱାର୍ଥପର ଏ ପରାର୍ଥ ମଧ୍ୟ ମାନବର ସ୍ୱଭାବ । ଏହା ହିଁ ଆତ୍ମିକ-ସୂଚନ-ପନ୍ଥୀଙ୍କ ମତ ।

## ଭୌତିକ ଭିତ୍ତି—ଦୂର ସ୍ୱାର୍ଥ—

ମାନ୍ୟ ଈଶ୍ୱର ଯୀଶୁଖ୍ରୀଷ୍ଟଙ୍କର ଯେଉଁ ବାଣୀ ପୃଥିବୀରେ ଥରେ ପ୍ରଚାର କରାଇଥିଲେ, 'ପୋପ୍'ଙ୍କ ହାତେ ସେଇ ବାଣୀ-ଶାସନରେ ବଢ଼ିଥିବା ଘୋର ଧର୍ମାନ୍ଧତାରୁ ଯେଉଁମାନେ ପ୍ରତିକ୍ରିୟାରେ ଫୁଲି ଉଠିଚନ୍ତି, ତାଙ୍କ ଯୁକ୍ତି ପାଖେ ଏ ଆତ୍ମିକ ସୂଚନା ଅଜ୍ଞାନ ଏକ ଅକାରଣ ବନ୍ଧନ ଛଡ଼ା ଆଉ କଣ ହୋଇପାରେ ? ସେମାନେ ନୀତି ଖୋଜିଲେ ବରାବର ଭୂତ ରାଜ୍ୟରେ ବା ଜଗତର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ଭିତରେ । ସେମାନଙ୍କ ଦୃଷ୍ଟି ଭୌତିକ ଜଗତରେ ଆବଦ୍ଧ । ସେମାନେ ସମ୍ପୂର୍ଣ୍ଣ ଆଧିଭୌତିକବାଦୀ । ମାନବର କାମନା ଓ ଭୋଗସ୍ପୃହା ହିଁ ନିତ୍ୟବୃତ୍ତି । ସେଥିରେ ଏ ଆତ୍ମିକ ଇଙ୍ଗିତ ବା ଯଦି ଥାଏ, ତା କାହୁଁ ଆସିଲା ? ଯଦି ଏହା ମାନବ-ସ୍ୱଭାବରେ ଥାଏ, କେବେ କାହିଁକି ବା କପରି ଅଛି ? ଆଧିଭୌତିକ ବ୍ୟାଖ୍ୟା ଛଡ଼ା ଏଥିରେ ମାନବର ବୁଝିବାର ଆକାଂକ୍ଷାର ଅବସାନ ହେବ ନାହିଁ । ସ୍ୱାର୍ଥହିଁ ସବୁ ବୃତ୍ତିର ମୂଳ । ତେବେ ଏଠାରେ ଅଭ୍ୟାସ ଓ ପରଂପରାର ପ୍ରଭାବ ଫଳରେ ସ୍ୱାର୍ଥ ନିକଟରେ ନ ରହି ଟିକିଏ ଦୂରକୁ ଯାଇଚି । ଅନ୍ୟର ଧନ ଲୁଟି କରିବା ମୋର ଇଚ୍ଛା । କାହିଁକି ନା, ମୋର ତାହା ହିଁ ସ୍ୱାର୍ଥ । ମୁଁ ତାହା ପାରିଲେ ବି କରୁ ନାହିଁ କାହିଁକି ? କାରଣ ସେପରି ହେଲେ ମୋ ଧନ ବି ଯେ ପାରିବ ସେ ଲୁଟି କରିନେବ । ସମାଜର ଏ ବିଶୃଙ୍ଖଳାରେ ମୋର ଘୋର ଅନିଷ୍ଟ ହେବ । ଏଇ ପାରଂପରିକ ପ୍ରଭାବରେ ମାନବ ପରାର୍ଥପର ହୁଏ । ଏହା ସ୍ୱାର୍ଥସାଧନ ପାଇଁ ସ୍ୱାର୍ଥକୁ ଦୂରକୁ ରଖିଦେବା ଛଡ଼ା ଆଉ କିଛି ନୁହେ । ଏଇପରି ଗଭୀର ଓ ଯୁଗଯୁଗାନ୍ତ ଅନୁଭବସିଦ୍ଧ ପ୍ରଭାବରେ ମଧ୍ୟ ପିତାମାତା ପୁତ୍ରାଦିଙ୍କୁ ସ୍ନେହ କରନ୍ତି । କାହିଁକି ନା, ବୁଢ଼ା ଓ ଅକର୍ମଣ୍ୟ ହେଲେ ସନ୍ତାନ ପୋଷିବ । ସମସ୍ତ ସ୍ନେହ-ପ୍ରୀତି-ଦୟା-ଦାକ୍ଷିଣ୍ୟ-ଉଦାରତା-କୃତଜ୍ଞତା ସେମାନେ ଏଇପରି 'ଦୂର ସ୍ୱାର୍ଥ'-ବାଦରେ ବ୍ୟାଖ୍ୟା କରନ୍ତି ।

## ଲୋକଶ୍ରେୟ—

ଏଇ ଦୂର-ସ୍ୱାର୍ଥବାଦୀଙ୍କର ଆଉ ଏକ ଦିଗରେ ବିକାଶ ହେଉଚି 'ବହୁତମ ଲୋକଙ୍କର ବହୁତମ ଶ୍ରେୟ-'ବାଦ । ମାନବ ସାମାଜିକ ପ୍ରାଣୀ । ପରସ୍ପର ପରସ୍ପରକୁ ସାହାଯ୍ୟ ଓ ଆଦାନ ପ୍ରଦାନରେ ନିଷ୍ଠା ନ ରଖିଲେ, ମାନବର କୌଣସି ସ୍ୱାର୍ଥସାଧନ ସମ୍ଭବ ହେବ ନାହିଁ । ତେଣୁ ମାନବ ସମାଜ ପାଇଁ ପରାର୍ଥପର ହୁଏ । ଏ ପରାର୍ଥ-ପରତାର ମାପକାଠି ହେଉଚି, ବହୁ ଲୋକଙ୍କର ଯହିଁରେ ବହୁ ଶ୍ରେୟ ହେବ, ସେଇଭଳି କାର୍ଯ୍ୟ କରଣୀୟ । କିନ୍ତୁ ଏଇ ବହୁ ଲୋକଙ୍କର ବହୁ ସ୍ୱାର୍ଥସିଦ୍ଧିର ବା କି ନିତ୍ୟ ମାନଦଣ୍ଡ ଅଛି ? କିଏ ସମସ୍ତଙ୍କୁ କହିଦେବ ଯେ, ଏଇ କାର୍ଯ୍ୟରେ ବହୁ ଲୋକଙ୍କର ବହୁ ସ୍ୱାର୍ଥସିଦ୍ଧି ହେବ ? ଅତଏବ ସମାଜର ସମୂହ-ମଙ୍ଗଳ କଲେ ବ୍ୟକ୍ତିର ଯଥାର୍ଥ ମଙ୍ଗଳ ପାଇଁ ଏଇ ପନ୍ଥାଟି ଆଦରଣୀୟ ?

## ଆତ୍ମୋପମାରେ ଜନସେବା—

ସେଥିପାଇଁ ପୁଣି ଦୁଇ ପନ୍ଥାର ସମନ୍ୱୟ କରି, ଆଧିଭୌତିକ ଆତ୍ମବାଦୀ ମଧ୍ୟ ଗୋଟିଏ ପ୍ରାଚୀନ ସୂତ୍ର ବାକ୍ୟ ଧରି କହିଲେ, 'ତୁମେ ଅନ୍ୟଠାରୁ ଯେପରି ବ୍ୟବହାରଟା ପାଇବାକୁ ଲୋଡ଼, ଅନ୍ୟ ପ୍ରତି ସେହିପରି ବ୍ୟବହାର କର ।' ଏଠାରେ ସମାଜ ତଥା ଦୂର ସ୍ୱାର୍ଥର ଆଦର୍ଶ ପୁଣି ଏକାନ୍ତ ସଙ୍କୁଚିତ ହୋଇ ଆସି ବ୍ୟକ୍ତି ମାନଙ୍କରେ ନିବଦ୍ଧ ହେଲା । ବାସ୍ତବିକ କୌଣସି ଆତ୍ମିକ ତତ୍ତ୍ୱ ଉପରେ ଏହାର ଚରମ ପ୍ରତିଷ୍ଠା ନ ରହିଲେ, ଏଥିରେ ପୂର୍ଣ୍ଣ ଶ୍ରଦ୍ଧା ଆସିବା ଭୋଗ ଓ ସ୍ୱାର୍ଥବାଦୀ ମାନବ ପକ୍ଷରେ ଏକାନ୍ତ ଅସମ୍ଭବ । ଭୂତ ଓ ଭୋଗ ମାତ୍ର ବାଦୀ ଏ ନୀତିରେ କାର୍ଯ୍ୟ କରିବସିଲେ, ପ୍ରତି ମୁହୂର୍ତ୍ତିରେ ଫାଙ୍କିଦେବା ସ୍ୱାଭାବିକ । ଏ ନୀତିର ଭିତ୍ତି କେବଳ ସ୍ୱାର୍ଥ ଉପରେ ରହି ନ ପାରେ ।

## ଦୂର ସ୍ୱାର୍ଥର ସୀମା— 'ଜାତି'—

ତେଣୁ ଆଧିଭୌତିକ ନୀତିରେ ଦୂର ସ୍ୱାର୍ଥ ବା ସାମାଜିକ ବହୁ ମଙ୍ଗଳବାଦ ହିଁ ସମାଜ ଧାରଣ ଓ ଲୋକସ୍ୱାର୍ଥ-ସ୍ଥିତିର ମୂଳ ପିଣ୍ଡ ହେଲା । ଏଥିରେ ଏକ ପ୍ରକାର 'ଆତ୍ମୀୟ ଇଙ୍ଗିତ' ତଥା 'ଆତ୍ମୌପମ୍ୟେନ ଭୂତେଷୁ' ଭାବର ବ୍ୟାଖ୍ୟା ଆଧିଭୌତିକ ଭିତ୍ତିରେ କରାଗଲା । ମାତ୍ର ଏଇ ଦୂର ସ୍ୱାର୍ଥର ସୀମା କେଉଁଠାରେ ? ଏଇ ସାମାଜିକତାର ବ୍ୟାପ୍ତି କେତେ ଦୂର ? କେତେ ଲୋକଙ୍କ ଭିତରେ ମାନବ ସ୍ୱାର୍ଥକୁ ବିସ୍ତୃତ କରି ନିଜର ଦୂର ସ୍ୱାର୍ଥ ଦେଖିବ ? କେଉଁ ଜନସଂଘ, ଅର୍ଥାତ୍ କେଉଁ ସୂତ୍ରରେ ଆବଦ୍ଧ ଜନସଂଘରେ ନିଜ-ସ୍ୱାର୍ଥରକ୍ଷା ଭିତ୍ତିରେ 'ବହୁ ଜନର ବହୁ ମଙ୍ଗଳ' ସାଧନ କରିବ ? ଆଧିଭୌତିକ ଦୃଷ୍ଟିରେ ନିଜ ସ୍ୱାର୍ଥର ମାପକାଠି ମାପିଲେ ଗଣନା କଲେ ସମସ୍ତ ଜୀବ-ଜଗତ୍ କଥା ଦୂରେ ଥାଉ, ସମସ୍ତ ମାନବ ମାନଙ୍କରେ ଏ ବ୍ୟାପ୍ତି ବିସ୍ତୃତ ହେବା ସହଜ ନୁହେଁ, କି ସମ୍ଭବ ମଧ୍ୟ ନୁହେ । ଅଷ୍ଟ୍ରେଲିଆ ବା ଟାସମେନିଆର ଆଦିମ ଲୋକଙ୍କ ମଙ୍ଗଳରେ ଇଂରେଜର କେବେ କି ସ୍ୱାର୍ଥରକ୍ଷା ହେବ ? ଚୀନ ଦେଶରେ ଜୋର କରି ଅଫିମ ବିକି ପଇସା କଲେ, ବା ଭାରତ-ଶିଳ୍ପ ନାଶ କରି ଭାରତବଜାର ଲୁଟି କଲେ, ତାର ଲାଭ ଛଡ଼ା କି କ୍ଷତିର ବା କେବେ କି ଆଶଙ୍କା ଅଛି ? ଏବେ ହୁଏତ ଆନ୍ତର୍ଜାତିକ ସଂଘର୍ଷରେ ଜାତି ଜାତିର ସଂପର୍କ ବଢ଼ି ଟିକିଏ ହୁଏତ ସ୍ୱାର୍ଥ ପ୍ରସାରର ସୂଚନା ଦେଖା ଯାଇପାରେ; ମାତ୍ର କୋଡ଼ିଏ ବର୍ଷ ତଳ ଯାଏ ଏ ସମାଜ ଓ ଦୂର ସ୍ୱାର୍ଥର ସୀମା ଯାହା ଥିଲା—ତାର ନାମ 'ଜାତି' ବା 'ଜାତୀୟତା' । ଗତ ଶହେ ଦୁଇଶ ବର୍ଷ ଭିତରେ ଇଉରୋପରେ ଏଇ ନିରୁତା ଆଧିଭୌତିକ ନୀତିବଜ୍ଞାନ ଫଳରେ 'ଜାତି' ବା 'ଜାତୀୟତା' ବୋଲି ଗୋଟିଏ କୃତ୍ରିମ ବସ୍ତୁ ଫୁଟି ପଡ଼ିଲା । କେତେକ ସାଧାରଣ ଭୋଗସଂଗ୍ରହ ବା ଆର୍ଥିକ ସ୍ୱାର୍ଥ ଦୃଷ୍ଟିରେ ଏହା କ୍ରମେ ଗଢ଼ି ହୋଇଉଠିଲା ।

## ସ୍ୱାର୍ଥର କୃତ୍ରିମ ବନ୍ଧନରେ ଏହାର ପ୍ରତିଷ୍ଠା—

ମାତ୍ର ମାନବର ମାନବୀୟତା ଉପରେ ଏହାର ପ୍ରତିଷ୍ଠା ନୁହେ । କୌଣସି ଆତ୍ମିକ ପରିସ୍ଥିତିରେ ଏହା ପ୍ରତିଷ୍ଠିତ ନୁହେ । ଏହା ଏକ କୃତ୍ରିମ ବନ୍ଧନ ଓ ବ୍ୟକ୍ତିର ସ୍ୱାର୍ଥସାଧନ ମନ୍ତ୍ର ହିଁ ଏହାର ହେଲା ସାଧନ । ତ୍ୟାଗ ବା ପରାର୍ଥପରତାର ଆଶ୍ରୟରେ ଏହା ରଚାଣିତ ହେଲ ବାହାରକୁ ଚକ୍ ଚକ୍ ଦିଶିଲେ ମଧ୍ୟ ଏହା ଭିତରର ସମସ୍ତ ଗଠନତନ୍ତ୍ର ଓ ନିର୍ମାଣସାମଗ୍ରୀ ହେଲା ବ୍ୟକ୍ତିଗତ ସ୍ୱାର୍ଥ ଓ ଭୋଗ ।

## ପାଦ୍ରୀ ତଥା ଅଧ୍ୟାତ୍ମବାଦୀଙ୍କ ପ୍ରକାଶ ଓ ତାର ବ୍ୟବହାର—

ଅବଶ୍ୟ ଭୁଲିବା ଉଚିତ ନୁହେ, ଏଥିମଧ୍ୟରେ ଆତ୍ମିକ ପରିସ୍ଥିତିର ସମ୍ୟକ୍ ଆଲୋଚନା ଓ ପ୍ରଚାରରେ ଜାତୀୟତା ଉପରକୁ ଉଠି ମାନବୀୟତା ଉପରେ ସମାଜ-ପ୍ରତିଷ୍ଠାର ଚିନ୍ତା ବା ଉଦ୍ୟମ ହୋଇ ନାହିଁ । ମାନବର ଚିନ୍ତା ବିକାଶ ହେଲେ ତାହା କଦାପି ଏକଦେଶଦର୍ଶୀ ହୁଏ ନାହିଁ । ଇଉରୋପରେ ମଧ୍ୟ ତା ହୋଇ ନାହିଁ । ଏକ ଦିଗରେ ଧର୍ମାନ୍ଧ ପାଦ୍ରୀମାନେ ଯୀଶୁଖ୍ରୀଷ୍ଟଙ୍କ ଅବତାର ରୂପ ଜଗତରୁ ଭିନ୍ନ ଜଗତର ପାଳକ ଈଶ୍ୱରଙ୍କ ଯୀଶୁମୁଖପ୍ରଚାରିତ ବାଣୀମାନ ସମ୍ବଳ କରି ଦେଶ ଦେଶରେ ମାନବକୁ ବର୍ଣ୍ଣନିର୍ବିଶେଷରେ ସଭ୍ୟ ଅସଭ୍ୟ ଭେଦ ନ ମାନି 'ପାରତ୍ରିକ ସୁଖ' ବାଣ୍ଟିବାରେ ପ୍ରାଣପଣ କରି ଲାଗିବାରେ ତ୍ରୁଟି କରି ନାହାନ୍ତି । ସେମାନେ ହେଲେ ପୋପ୍-ପ୍ରଭାବର ଅବଶେଷ । ଅନ୍ୟ ଦିଗରେ ଏ ଭୌତିକତାର ବିଭବ ବ୍ୟାପ୍ତିର ପ୍ରତିବିଧାନ ନିମନ୍ତେ ଆତ୍ମିକ ତତ୍ତ୍ୱପନ୍ଥୀମାନେ ଗ୍ରୀକ୍ କର୍ମନୀତି ତଥା ଗ୍ରୀକ୍ ଓ ଭାରତୀୟ ତତ୍ତ୍ୱବୋଧ ଉପରେ ଯଥାସାଧ୍ୟ ନିଜର ଆତ୍ମିକ ମତ ପ୍ରଚାର କରି ସମାଜକୁ ପ୍ରଭାବିତ କରିବାରେ କମ୍ ଉଦ୍ୟମ କରି ନାହାନ୍ତି । ସ୍ପାଇନୋଜା, କାଣ୍ଟ୍, ହେଗେଲ ପ୍ରଭୃତି ଏହି ଯୁଗର ପ୍ରଥମ ଦାର୍ଶନିକ-ମାନଙ୍କଠାରୁ ଆରମ୍ଭ କରି ସୋପେନ ହାଵାର, ଗ୍ରୀନ୍, ମାର୍ଟିନୋ, କେଆର୍ଡ଼ ପ୍ରଭୃତିଙ୍କ ପରି ଅଧ୍ୟାତ୍ମବାଦୀମାନେ ନିଜ ନିଜର ଦର୍ଶନ ମତ ଓ ତଦନୁରୂପ ଆତ୍ମିକ କର୍ମନୀତି ଦୃଢ଼ ଭାବରେ ପ୍ରଚାର କରିଛନ୍ତି । ଏହି ଯୁଗରେ ମଧ୍ୟ ଭାରତ-ସାହିତ୍ୟର ଆଲୋଚନା ଇଉରୋପରେ ମନୀଷୀମାନଙ୍କୁ ବେଳେ ବେଳେ ଅଭିଭୂତ କରି ଦେଇଛି । କିନ୍ତୁ କହିବାର ଅଭିପ୍ରାୟ ସମାଜର କର୍ମପରମ୍ପରା ସେଥିରେ ପ୍ରଭାବିତ ହୋଇ ନାହିଁ । ଯେପରି ପ୍ରଭାବିତ ହେବା ଭଳି ପରିସ୍ଥିତି ସେଠାରେ ପହଞ୍ଚି ନାହିଁ । ଭୋଗ ଓ ସ୍ୱାର୍ଥର କରାଳ ପ୍ରବାହରେ ସେସବୁ କ୍ଷୀଣ ସ୍ରୋତ ଭାସି ଯାଇଛି । ବରଂ ଏହା ସତ୍ୟ ଯେ, ପାଦ୍ରୀଙ୍କ କାର୍ଯ୍ୟକୁ ଜାତୀୟତା ନିଜ ଲୁଣ୍ଠନର ଏକ ହତିଆର କରି ବ୍ୟବହାର କରିଛି ଓ ଆତ୍ମିକ ଦାର୍ଶନିକମାନଙ୍କ ସୁଶ୍ରାବ୍ୟ ଯୁକ୍ତିମାନ ଲଗାଇ ଲୋକଙ୍କୁ ପ୍ରବଞ୍ଚନାରେ ମୋହିତ କରିବାରେ ବହୁ ସ୍ଥଳରେ

କୃତକାର୍ଯ୍ୟ ହୋଇଛି । ଏଇ ଜାତୀୟତାର କରାଳ ବାତ୍ୟା ପ୍ରଥମେ ଦାସ-ବ୍ୟବସ୍ଥାରେ ବା କଳା ଲୋକଙ୍କୁ ପଶୁ ପରି କିଣା ବିକା କରି, ପଶୁ ପରି ନିର୍ମମଭାବରେ ବ୍ୟବହାର କରି କାମରେ ଲଗାଇ, ଏଇ ଜାତି-ମାତି ବା ଲୁଣ୍ଠନ-ବୃତ୍ତି ପୃଥିବୀରେ ପ୍ରତିଷ୍ଠିତ କରିଛି । ମୂଢ଼ ଧର୍ମାନ୍ଧ ପାଦ୍ରୀମାନେ ପୁଣି ଏଇ ନର-ପଶୁ ଦାସମାନଙ୍କୁ 'ପାରତ୍ରିକ ସୁଖ' ବାଣ୍ଟିବାରେ ଲାଗିଚନ୍ତି; ସେ ସମସ୍ତଙ୍କୁ ଖ୍ରୀଷ୍ଟାନ କରିଦେଇ ଆତ୍ମ-ପ୍ରସାଦରେ ବିହ୍ୱଳ ହୋଇଚନ୍ତି । ପକ୍ଷାନ୍ତରରେ ଉନ୍ନତତର ଲୋକଙ୍କୁ ଲୁଣ୍ଠନ କରିବାରେ ଦାର୍ଶନିକମାନଙ୍କ କଥା ପୃଥିବୀରେ ବହୁତ କାମ ଦେଖାଇଚି ।

## 'ଜାତି'ରୁ ଲୋକଶାସନ—

ମାତ୍ର ଏସବୁ କଥା ଏଠାରେ କହି ବୁଝାଇବାର ଏ କ୍ଷେତ୍ରରେ ଅବକାଶ ନାହିଁ । ଏତିକି କହିବାର କଥା, ଏଇ ଆଧିଭୌତିକ କର୍ମନୀତିବାଦ ସମାଜକୁ କାର୍ଯ୍ୟରେ ପ୍ରଭାବିତ କରିଚି ଓ ତାର ପରିଣାମରେ 'ଜାତି' ସୃଷ୍ଟି ହୋଇ ପୃଥିବୀରୁ ମାନବୀୟତା ଧ୍ୱଂସ କରିଚି । କୁହାଯାଇଚି, ଏଇ 'ଜାତୀୟତା'ର ଗଠନସାମଗ୍ରୀ ସାକ୍ଷାତ୍ ସ୍ୱାର୍ଥ ଓ କାମନା । ସେଥିପାଇଁ ଏହା ଯେ କେବଳ ଜାତି ପାଇଁ ଅପର ମାନବର ଲୁଣ୍ଠନରେ ପର୍ଯ୍ୟବସିତ ରହିଲା, ତାହା ନୁହେ । ନିଜ ଭିତରେ ମଧ୍ୟ ଏଇ ସ୍ୱାର୍ଥ ଓ ଭୋଗସଂଗ୍ରହ ମହାଭେଦ ସୃଷ୍ଟିକଲା । ଯାହାର ଧନ, ବୁଦ୍ଧି ବା କ୍ଷମତା ବେଶି ହେଲା, ସେ ଅନ୍ୟକୁ ଲୁଣ୍ଠନ କରି ସଂଚୟ କରିବାକୁ ଛାଡ଼ିଲା ନାହିଁ । ରକ୍ଷିତ ସ୍ୱାର୍ଥର ସୃଷ୍ଟି ହେଲା । ପ୍ରଜା ଓ ଶ୍ରମିକ ଲୁଣ୍ଠିତ ଓ ପୀଡ଼ିତ ହେଲେ । ପ୍ରତିକ୍ରିୟା ପ୍ରକାଶ ପାଇଲା । ସେଥିରୁ ଲୋକପ୍ରତିନିଧିମୂଳକ ଶାସନର ସୂତ୍ରପାତ ହେଲା । ନିଜ ଜାତିର ସ୍ୱାର୍ଥ ସମସ୍ତ ଜାତିର କରିବା ପାଇଁ ଏଇ ପ୍ରତିନିଧି ଶାସନ ମାତିଲା; କିନ୍ତୁ ସେଥିରେ ମଧ୍ୟ ରକ୍ଷା ନାହିଁ । ରକ୍ଷିତସ୍ୱାର୍ଥ ପ୍ରତିନିଧିଙ୍କୁ ଧନ ଓ କ୍ଷମତାରେ ହସ୍ତଗତ କରି ପୂର୍ବପରି ପ୍ରତିଷ୍ଠିତ ରହିଲା । ଲୋକପ୍ରତିନିଧି ସମସ୍ତେ କିଛି ଏକମତ ହେବେ ନାହିଁ । ବହୁପକ୍ଷର ମତରେ ଜାତି ବା ସମାଜର କାର୍ଯ୍ୟ ଚଳିବ । ସେଇ ବହୁପକ୍ଷ ଧନ ଓ କ୍ଷମତାର ଅଧୀନ ହେବାରେ ବିଶେଷ କିଛି ଅସୁବିଧା ହେଲା ନାହିଁ ।

## ସାମ୍ୟବାଦ ଓ ରାଷ୍ଟ୍ରସର୍ବସ୍ୱତା—

ସେଥିରୁ ଯେଉଁ ପ୍ରତିକ୍ରିୟା, ତାହା ଏବେ ଏକ ମହାବିପ୍ଲବରେ ପରିଣତ । ତାହା ହିଁ ସାମ୍ୟବାଦ । ସାମ୍ୟବାଦର ଆଦର୍ଶ ଓ ପରିଣତି ଏବେ ଠିକ୍ ନାହିଁ । ମାତ୍ର ଯାହା ଦେଖାଯାଉଚି, ସେଥିରେ ଏବେ ରାଜ୍ୟ (State) ର ସ୍ୱାର୍ଥ ହିଁ ବ୍ୟକ୍ତିର ଆଦର୍ଶ । ରାଜ୍ୟ ପାଖେ କାହାରି ସ୍ୱତନ୍ତ୍ର ସ୍ୱାର୍ଥ ନାହିଁ । ସମସ୍ତଙ୍କ ସମସ୍ୱାର୍ଥ ବା ଯଥାପ୍ରୟୋଜନର ପ୍ରତୀକ ରାଜ୍ୟ । ବ୍ୟକ୍ତିର ସତ୍ତା ଲୋପ କରି ରାଜ୍ୟକୁ ଧରିବାକୁ

ହେବ । ସେଇ ରାଜ୍ୟରୁ ସମସ୍ତେ ନିଜର ଯଥାପ୍ରୟୋଜନ ଲାଭ କରି ସୁଖୀ ହେବେ, କିଂତୁ ଏଠାରେ ମଧ୍ୟ ସେଇ ଭୋଗ ଓ ସ୍ୱାର୍ଥ ହିଁ ଆଦର୍ଶ । ଆତ୍ମିକ ପରିସ୍ଥିତି ଫୁଟିବାର ସମ୍ଭ ନାହିଁ । ରାଜ୍ୟ ପୁଣି ଅଧିକ ସଂଖ୍ୟକ ବା ଅଧିକ ବଳଶାଳୀଙ୍କ ଆଜ୍ଞା ଛଡ଼ା ଆଉ କିଛୁ ହେବାର କଳ୍ପନା ହେଉ ନାହିଁ । ଆତ୍ମିକ ପରିସ୍ଥିତି ବିନା ଏଇ କୃତ୍ରିମ ଆର୍ଥିକ ପରିସ୍ଥିତିର ପରିଣାମ ଦେଖିବାର ବସ୍ତୁ । ମାନବର ମାନବତା ଅଧୋମୁ । ତାହା ଛଡ଼ା ଏ କୃତ୍ରିମ ଆର୍ଥିକତାର ନିତ୍ୟ ବିବଦମାନ ପରିସ୍ଥିତିର କି ସମାଧାନ, ତାହାର ଇତିହାସ ସୂଚିତ ହେଉଛି । ବିଶେଷ କହିବା ଏବେ ନିଷ୍ପ୍ରୟୋଜନ, ପୁଣି ତାହା ଏଠାରେ ଯଥାସ୍ଥିତ ମଧ୍ୟ ହୋଇ ନ ପାରେ ।

## ଏବେ ଭାରତରେ ଆର୍ଯ୍ୟକର୍ମନୀତି ସ୍ପଷ୍ଟ ଖୋଜି ପାଇବାରେ ଅସୁବିଧା—

ଏଇ ବନକ ଦିଆ କନା ଉପରେ ଏବେ ଆର୍ଯ୍ୟଧର୍ମର କର୍ମନୀତିର ଚିତ୍ରଟି ଫୁଟାଇବାକୁ ହେବ । କୁହାଯାଇଛି, ଆର୍ଯ୍ୟଧର୍ମ ଭାରତର ପାରଂପରିକ ଧର୍ମ । ମାତ୍ର ଏବେ ଭାରତୀୟ ଆଚାରର କୌଣସି କୌଣସି ବିକାଶ ବା ବିଭବ ଦେଖି ଲୋକେ ହୁଏତ ସାମଞ୍ଜସ୍ୟ ଖୋଜି ପାଇବେ ନାହିଁ । ସେଥିରେ ବିବ୍ରତ ବା ନିରାଶ ହେବାର କିଛୁ ନାହିଁ । ଏବେ ନାନା କାରଣରୁ ବାଧ୍ୟ ହୋଇ ଭାରତ ଜାତିଧର୍ମ ( Nationalism ) ଓ ତଦୁଦ୍‌ଗତ ପ୍ରତିକ୍ରିୟା ବା ବିପ୍ଳବର ଅନୁକରଣ ଜୀବନର କୌଣସି ବିଭାଗରେ ଫୁଟାଇବାର ଉଦ୍ୟମ କରୁଛି । ମାତ୍ର ତାହା ଦେଖି ଆର୍ଯ୍ୟଧର୍ମ ବୁଝିବାର ପ୍ରୟାସ କରିବା ଠିକ୍ ନୁହେ । ଏବର ଘୋର ଆତ୍ମସଙ୍କୋଚ ଓ ଅନୁକରଣଜନିତ ନାନା ସ୍ୱାଭାବିକ ଓ ଅସ୍ୱାଭାବିକ କ୍ରିୟା ପ୍ରତିକ୍ରିୟାର ସ୍ତରସବୁ ଭେଦ କରି ନିର୍ମଳ ଆର୍ଯ୍ୟଧର୍ମ ବା ଗୀତାଧର୍ମର ଆଦର୍ଶ ଏ ଦେଶରେ ଦେଖିବାକୁ ହେବ । ପୁଣି କୁହାଯାଇଛି, ମାନବର କ୍ରିୟାରେ କୌଣସି ପ୍ରକାରର ଅଭାବ ନାହିଁ । ଇଉରୋପରେ ଯେପରି ବସ୍ତୁତତ୍ତ୍ୱସନ୍ଧିତ୍ସୁ ଦାର୍ଶନିକ ମନୀଷୀଙ୍କ ଅଧ୍ୟାତ୍ମିକତା ପ୍ରକାଶ ପାଇଛି, ଏ ଦେଶରେ କାଳେ କାଳେ ସେଇପରି ଆଧିଭୌତିକ କର୍ମନୀତିବାଦ ଓ କ୍ରିୟାପରଂପରା ମଧ୍ୟ ଇତିହାସରେ ଯଥେଷ୍ଟ ପ୍ରକାଶ ପାଇଛି । ପୂର୍ବ ପ୍ରକରଣରେ ତାହାର ଚୂଡ଼ାନ୍ତ ଉଦାହରଣ ସ୍ୱରୂପ 'ଚାର୍ବାକ'ର ଉଦାହରଣ ଦିଆହୋଇଛି । ଇତିହାସ ଖୋଜିଲେ ଆଉ କେତେ ଚାର୍ବାକ, ଅନୁଚାର୍ବାକ, ଉପଚାର୍ବାକ ମତର ପ୍ରମାଣ ମିଳିବ । ତାହା ସବୁ ଏଠାରେ ଉଲ୍ଲେଖ କରି ଦେଖାଇବା ଦରକାର ନାହିଁ ।

## ତାହା କିପରି ଖୋଜିବାକୁ ହେବ—

ଏଠାରେ କର୍ମନୀତିର ଆଦର୍ଶ ଓ ସେଇ ଆଦର୍ଶ ସମାଜ ପରିସ୍ଥିତିର ପୀଠ ଦେଖିବାକୁ ହେବ । ଯେଉଁ ଆଦର୍ଶରେ ସମାଜର କ୍ରିୟାରାଶି ଅଭିଭୂତ, ତାହାର

ଯେଇ ସମାଜର ଧର୍ମ ଓ ସେଥିରେ ହିଁ ସେଇ ସମାଜର କର୍ମନୀତି ନିୟମିତ ହୁଏ । ଅନ୍ୟସବୁ ମତବାଦ ଓ ବିଶ୍ୱାବକାଶ ଗୌଣ ସ୍ଥାନ ପାଏ । ଇଉରୋପୀୟ ସଭ୍ୟତାରେ ଏଇ ଆଦର୍ଶ ଆଧିଭୌତିକ କର୍ମନୀତି । ସେଥିରେ ଆତ୍ମିକ କର୍ମନୀତି ପ୍ରକାଶ ପାଇଲେ ମଧ୍ୟ ତାହା ସମ୍ପୂର୍ଣ୍ଣ ଅଭିଭୂତ । ସେଇପରି ଭାରତରେ ଯେଉଁ ଅଧ୍ୟାତ୍ମ-ବୁଦ୍ଧିରେ କର୍ମନୀତି ପ୍ରେରିତ; ତହିଁରେ ଆଧିଭୌତିକ କର୍ମନୀତି ପ୍ରକାଶ ପାଇଲେ ମଧ୍ୟ ତାହା ଅଭିଭୂତ । ଏହାଇ ଦେଖିବାକୁ ହେବ, ସଙ୍ଗେ ସଙ୍ଗେ ସେଇ ଆତ୍ମିକ କର୍ମନୀତିର ପୀଠ ଓ କ୍ରିୟା ପରମ୍ପରାର ବ୍ୟାପ୍ତି ଓ ସ୍ତର ବୁଝିବାକୁ ହେବ ।

## ଆର୍ଯ୍ୟର ଧର୍ମ ହିଁ ନୀତି—

ଆଗ ଦେଖାଯାଉ, ଧର୍ମ କଥାଟିର ଅର୍ଥ ଓ ପ୍ରୟୋଗ ଏ ଦେଶରେ କି ଭାବରେ ହୋଇଆସିଛି । କର୍ମନୀତିକୁ ଏବେ ସାଧାରଣତଃ ନୀତି ବୋଲି କହନ୍ତି; ମାତ୍ର ଏ ଦେଶ ସାହିତ୍ୟରେ ଏଇ ନୀତି ଶବ୍ଦର ସାଧାରଣ ଅର୍ଥ ଥିଲା, ଦଣ୍ଡନୀତି ବା ରାଜନୀତି । ବର୍ତ୍ତମାନ ନୀତି କହିଲେ ବୁଝାଏ, ସମସ୍ତ କର୍ମରେ ଯେ ନୀତି ଅବଲମ୍ବନ କରାଯାଏ । ତାହାକୁ ହିଁ ଏ ପ୍ରସଙ୍ଗରେ ନାମ ଦିଆଯାଇଛି କର୍ମନୀତି । ଏହାର ଅର୍ଥ କୌଣସି ଆଦର୍ଶ, ଅର୍ଥାତ୍ ବ୍ୟକ୍ତିତ୍ୱ ବା ବସ୍ତୁତ୍ୱ ଅଥବା ତତ୍ତ୍ୱରେ ବା ସେଇ ଦୃଷ୍ଟିରେ ନିୟମିତ କର୍ମ । ଏଇ ଆଦର୍ଶ ବା ତତ୍ତ୍ୱ-ନିୟମିତ କର୍ମ ହିଁ କର୍ମନୀତି । ଏହାକୁ ହିଁ ଆର୍ଯ୍ୟ ସାହିତ୍ୟରେ କହନ୍ତି ଧର୍ମ । ଏଇ ଅର୍ଥରେ ଆମେ କହୁ, ରାଜଧର୍ମ, ପ୍ରଜାଧର୍ମ, ବର୍ଣ୍ଣଧର୍ମ, ଜାତିଧର୍ମ, ଦେଶଧର୍ମ, କୁଳଧର୍ମ, ମିତ୍ରଧର୍ମ, ଶତ୍ରୁଧର୍ମ, ପୁଣି ପଶୁଧର୍ମ, ବୃକ୍ଷଧର୍ମ, ଗ୍ରହଧର୍ମ, ନକ୍ଷତ୍ରଧର୍ମ—ଆହୁରି ସ୍ୱଧର୍ମ, ବିଶ୍ୱଧର୍ମ ଓ ମୋକ୍ଷଧର୍ମ ଇତ୍ୟାଦି । ଆମେ ଯେତେବେଳେ ହିନ୍ଦୁଧର୍ମ, ଖ୍ରୀଷ୍ଟଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ ପ୍ରଭୃତି ଶବ୍ଦ ବ୍ୟବହାର କରୁ, ତା ମଧ୍ୟ ମୂଳତଃ ଏଇ ଅର୍ଥରେ । ଏଠାରେ ଧର୍ମ ବୋଇଲେ ସେଇ ସେଇ ଆଦର୍ଶ ବା ତତ୍ତ୍ୱ ନିୟମିତ, ବା ଆର୍ଯ୍ୟ-ସାହିତ୍ୟ-ଭାଷାରେ 'ପ୍ରେରିତ' କର୍ମନୀତି । ଏବେ ଆମେ ସାଧାରଣତଃ ଏଇ ଧର୍ମ ଶବ୍ଦଟି ପରବର୍ତ୍ତିରେ ଭାଷାରେ ସାଧାରଣତଃ ଏଇ ଅର୍ଥରେ 'ନୀତି' ଶବ୍ଦଟି ମଧ୍ୟ ବ୍ୟବହାର କରୁ । ଭର୍ତ୍ତୃହରି ଯେଉଁ 'ନୀତିଶତକ' ଲେଖିଛନ୍ତି, ସେଥିରେ ମଧ୍ୟ ସାମାଜିକ ମାନବର ଧର୍ମ ଅର୍ଥରେ ଏଇ ନୀତି ଶବ୍ଦଟି ବ୍ୟବହୃତ ହୋଇଛି ।

## ବେଦ-ଧର୍ମ ଓ ମୀମାଂସା-ଦର୍ଶନ—

କୁହାଯାଇଛି ଖ୍ରୀଷ୍ଟଧର୍ମ, ମୁସଲମାନଧର୍ମ ପ୍ରଭୃତିରେ ଧର୍ମ ବୋଇଲେ ପାରତ୍ରିକ ସୁଖପ୍ରାପ୍ତିର ପନ୍ଥା । ଏଇ ସଙ୍କୁଚିତ ଅର୍ଥରେ ମଧ୍ୟ ଅତି ପ୍ରାଚୀନ

ବୈଦିକକର୍ମପନ୍ଥୀମାନେ ଧର୍ମ ଶବ୍ଦ ବ୍ୟବହାର କରିଛନ୍ତି, ଏହା ଏଠାରେ ଲକ୍ଷ୍ୟ କରିବାର ଅଛି । ସେଇ ଅର୍ଥରେ ଜୈମିନି ମୀମାଂସା-ଦର୍ଶନର ପ୍ରଥମ ସୂତ୍ରରେ କହିଚନ୍ତି 'ଅଥାତୋ ଧର୍ମଜିଜ୍ଞାସା,' ଅର୍ଥାତ୍, ଏଇଠାରୁ ଧର୍ମ କଣ ସେ କଥା ବୁଝାଇବାକୁ ହେବ । ଏହା କହିସାରି ସେ ଯଜ୍ଞାଦି କର୍ମର ପାରତ୍ରିକ ଉପଯୋଗିତା ବୁଝାଇଚନ୍ତି । ଠିକ୍ ତା ପର ସୂତ୍ରରେ ଜୈମିନି କହିଚନ୍ତି—"ଚୋଦନା ଲକ୍ଷଣୋଽର୍ଥୋ ଧର୍ମଃ" ଅର୍ଥାତ୍, ଯେଉଁ ପ୍ରୟୋଜନ କର୍ମର ଲକ୍ଷଣ ବା ତାକୁ ଜାଣିବାର ଚିହ୍ନ ହେଉଚି 'ଚୋଦନା', ସେଇ ହେଉଚି ଧର୍ମ । ଏଠାରେ 'ଚୋଦନା' ବୋଇଲେ ପ୍ରେରଣା, ପ୍ରବର୍ତ୍ତନା । ଏଇ ଚୋଦନାର ଭିତ୍ତି କଣ ?

## ଚୋଦନା ଓ ଆଚାର

ପ୍ରଥମତଃ କୌଣସି ଲୋକର ଆଦେଶ ହିଁ ଚୋଦନା । ଅସଭ୍ୟ ଓ ବନ୍ୟ ଅବସ୍ଥାରେ ମନୁଷ୍ୟର ଯେତେବେଳେ ଯେଉଁ ମନୋବୃତ୍ତି ପ୍ରବଳ ହୁଏ, ସେଇ ପ୍ରବୃତ୍ତିରେ ସେ କର୍ମ କରିଯାଏ । କ୍ରମେ ଏପରି ସ୍ୱେଚ୍ଛାଚାର ଶ୍ରେୟସ୍କର ନୁହେ ବୋଲି ବୁଝାଯାଏ । ଏଇଠାରେ ସମାଜର ପ୍ରଥମ ଶୃଙ୍ଖଳା ଆରମ୍ଭ ହୁଏ । ଆଧିଭୌତିକ ବିଚାରରେ ଏଇ ଶୃଙ୍ଖଳା ପ୍ରଥମେ ହୁଏତ ବିକାଶ ପାଏ । ଏହା ହିଁ ଅନେକ ଇଉରୋପୀୟ ପଣ୍ଡିତଙ୍କର ମଧ୍ୟ ମତ । ଏଇପରି ସ୍ୱେଚ୍ଛାଚାରର ସଂଯମବିଧି ସବୁ ସମାଜରେ ପ୍ରତିଷ୍ଠିତ ହୋଇ ଶାସ୍ତ୍ର ହୁଏ । କୌଣସି କୌଣସି ମନୀଷୀ ଏଇପରି ସଂଯମ ଶୃଙ୍ଖଳା ପ୍ରଥମରୁ ଆରମ୍ଭ କରନ୍ତି । ସେମାନଙ୍କ ନାମରେ ମଧ୍ୟ ସେହିସବୁ ବିଧି ପ୍ରଚରିତ ହୁଏ । କାଳ ଓ ପରିସ୍ଥିତି ଭେଦରେ ମଧ୍ୟ ଏଇ ବିଧିର ପରିବର୍ତ୍ତନ ଦେଖାଯାଏ । ମନୁ କହନ୍ତି—

"ଅନ୍ୟେ କୃତଯୁଗେ ଧର୍ମାଃ
ତ୍ରେତାୟାଂ ଦ୍ୱାପରେଽପରେ
ଅନ୍ୟେ କଳିଯୁଗେ ନୃଣାଂ
ଯୁଗହ୍ରାସାନୁରୂପତଃ ।"

ଅର୍ଥାତ୍, ଯୁଗମାନ ଅନୁସାରେ କୃତ (ସତ୍ୟ), ତ୍ରେତା, ଦ୍ୱାପର ଓ କଳି—ଏମାନଙ୍କ ଧର୍ମ ବି ଭିନ୍ନ ଭିନ୍ନ ହୁଏ । ( ମନୁ ୧.୮୫ ) । ମହାଭାରତରେ ବ୍ୟାସ ମଧ୍ୟ ଏହାର ଉପଯୋଗିତା ନିର୍ଦ୍ଦେଶ କରିଚନ୍ତି । (ମହା. ଶାନ୍ତି. ୨.୬୨.୮—ବଙ୍ଗବାସୀ ସଂସ୍କରଣ) । ପୂର୍ବକାଳରେ ନାରୀଙ୍କର ବିବାହର ସୀମା ନ ଥିଲା । ଅତିଥି ଘରକୁ ଆସିଲେ ମଧ୍ୟ, ଆତଥେୟ ପତ୍ନୀଙ୍କୁ ସମ୍ଭୋଗ କରି ପାରୁଥିଲେ । ଏହି ଆଚାରର ଦୁଷ୍ପରିଣାମ ବୁଝିପାରି ଶ୍ୱେତକେତୁ ଏହା ନିବାରଣ କରି ବିବାହର ସୀମା ନିର୍ଦ୍ଦେଶ କଲେ ( ମହା. ଆଦି. ୧୨୨ ) । ସେଇପରି ଶୁକ୍ରାଚାର୍ଯ୍ୟ ସୁରାପାନର

ନିଷେଧ ପ୍ରବର୍ତ୍ତାଇଥିଲେ (ମହା. ଆଦି. ୭୭) । ଏଇପରି ଯେଉଁ ଦୂରଦର୍ଶୀ ମନୀଷୀ ମହାପୁରୁଷମାନେ ଯେଉଁ ନିର୍ଦ୍ଦେଶ ଦିଅନ୍ତି, ତାହା ଆପ୍ତବାଣ । ଆପ୍ତ ବୋଇଲେ, ପ୍ରାପ୍ତ ବା ଯେ ଜ୍ଞାନ ପାଇଛି । ପ୍ରବୃତ୍ତିମୂଳକ ସ୍ୱେଚ୍ଛାଗ୍ରହ କର୍ମରେ ଶାସ୍ତ୍ର ଓ ଆପ୍ତ-ବଚନ ହେଉଛି, ଚୋଦନା । କର୍ମ ପ୍ରବୃତ୍ତିମୂଳକ ଓ ଧର୍ମ ଚୋଦନାମୂଳକ । ମନୁ କହନ୍ତି—

"ନ ମାଂସ ଭକ୍ଷଣେ ଦୋଷୋ
ନ ମଦ୍ୟେ ନ ଚ ମୈଥୁନେ ।" (ମନୁ ୫.୫୬)

ଅର୍ଥାତ୍, ମାଂସଭକ୍ଷଣ, ମଦ୍ୟପାନ ଓ ମୈଥୁନରେ ସୃଷ୍ଟିକର୍ମର ବିରୁଦ୍ଧ କୌଣସି ଦୋଷ ନାହିଁ । ସଙ୍ଗେ ସଙ୍ଗେ ପର ପାଦରେ କହିଛନ୍ତି—"ପ୍ରବୃତ୍ତିରେଷା ଭୂତାନା", ଅର୍ଥାତ୍ ଭୂତ ବା ଜୀବମାନଙ୍କର ଏହା ପ୍ରବୃତ୍ତି, ଅର୍ଥାତ୍ ସ୍ୱତଃ କର୍ମବିକାଶର ହେତୁ । ଏସବୁ ପ୍ରବୃତ୍ତିରେ ସଂଯମ ଆସିଲେ ଯେଉଁ କର୍ମର ବିକାଶ ହୁଏ, ତାହା ଧର୍ମ । ପ୍ରବୃତ୍ତି ଜୀବନର କର୍ମ, ମାତ୍ର ମନୁଷ୍ୟର ବିଶେଷ ହେଉଛି ଧର୍ମ । ସେଇ ହିସାବରେ କୁହାଯାଇଛି—

"ଆହାର-ନିଦ୍ରା-ଭୟ-ମୈଥୁନଂ ଚ
ସାମାନ୍ୟମେତତ୍ ପଶୁଭିର୍ନରାଣାଂ ।
ଧର୍ମୋ ହି ତେଷାମଧିକୋ ବିଶେଷୋ
ଧର୍ମେଣ ହୀନାଃ ପଶୁଭିଃ ସମାନାଃ ।।
(ମହା. ଶାନ୍ତି. ୨୯୪, ୨୯) ।

ଅର୍ଥାତ୍, ଆହାର, ନିଦ୍ରା, ଭୟ ଓ ମୈଥୁନ ଜୀବର ପ୍ରବୃତ୍ତି । ଏଥିରେ ପଶୁ ଓ ମନୁଷ୍ୟ ସମାନ । ଧର୍ମ ବା ଚୋଦନାଗ୍ରହିତ କର୍ମ ମନୁଷ୍ୟର ବିଶେଷ । ଏହା ହିଁ ମନୁଷ୍ୟର ଆଧିକ୍ୟର କାରଣ । ଏ ଧର୍ମ ଯେଉଁ ମନୁଷ୍ୟର ନାହିଁ, ସେ ପଶୁ ସଙ୍ଗେ ସମାନ ।

ଏଇ ପ୍ରକାର ଐହିକ ଓ ପାରତ୍ରିକ ଚୋଦନାରେ ପ୍ରକାଶ ପାଇବା କର୍ମ ହେଲା ଧର୍ମ । ଏହି ଚୋଦନାସବୁ ଶାସ୍ତ୍ର ଓ ଆପ୍ତ-ବଚନରୁ ଜଣାଯାଏ । ଶିଷ୍ଟମାନେ ଏଇ ଚୋଦନାକୁ ଧରି ରହନ୍ତି । କାରଣ, ଜୀବ-ପ୍ରବୃତ୍ତିପର ସାମାନ୍ୟ ମାନବ ସବୁବେଳେ ଏସବୁ ଚୋଦନା ଜାଣିପାରେ ନାହିଁ, କି ଜାଣିଲେ ମାନି ପାରେ ନାହିଁ । ତେଣୁ ଏଇ ଚୋଦନାମୂଳକ କର୍ମକୁ ଶିଷ୍ଟାଗ୍ରହ କହନ୍ତି । ଏଇ ଶିଷ୍ଟାଗ୍ରହ ଅନୁସାରେ ସମାଜରେ ଆଗ୍ରହ ପ୍ରତିଷ୍ଠିତ ହୁଏ । ଧର୍ମ ଏଇ ଆଗ୍ରହରେ ପ୍ରକାଶ ପାଏ । ଅତଏବ ବଚନ ଅଛି—

"ଆଗ୍ରହପ୍ରଭବୋ ଧର୍ମଃ" (ମହା. ଅନୁ. ୧୦୪. ୧୫୭)

ଅର୍ଥାତ୍, ଆଗ୍ରହରେ ଧର୍ମର ପ୍ରକାଶ । ମନୁ ଆହୁରି ସ୍ପଷ୍ଟ ଓ ସୀମାବଦ୍ଧ କରି କହନ୍ତି—

"ଆଗ୍ରହଃ ପରମୋ ଧର୍ମଃ" ( ମନୁ ୧.୧୦୮ )

ଅର୍ଥାତ୍, ଆଗ୍ରହ ହେଉଛି, ଶ୍ରେଷ୍ଠ ଧର୍ମ । କିଂବା "ଆଗ୍ରହ-ପରମୋ ଧର୍ମଃ", ଅର୍ଥାତ୍, ଧର୍ମର ଶ୍ରେଷ୍ଠ ମାପକାଠି ହେଉଛି, ଆଗ୍ରହ ।

## ଆଗ୍ରହର ମୂଳ ଓ ଧର୍ମସଂକଟ—

ମାତ୍ର ଯଦି ଆଗ୍ରହ ବା ଧର୍ମର ମୂଳ ଏଇପରି ହୁଏ, ତେବେ ଈଶ୍ୱରାଦେଶଗତ ଧର୍ମ ବା ପାରତ୍ରିକ-ସୁଖ-ସାଧନବାଦୀ ତଥା ଆଧିଭୌତିକନୀତିବାଦୀଠାରୁ ଏ ଧର୍ମ ବା ଆଗ୍ରହର ବିଶେଷ ପ୍ରଭେଦ ରହିଲା କଣ ? ଏଇ ଆଗ୍ରହର ବା ଯଥାର୍ଥ ମୂଳ କେଉଁଠାରେ ? ଜୈମିନିଙ୍କ 'ଧର୍ମ ଜିଜ୍ଞାସା' ତଥା ଶିଷ୍ଟାଚରିତ ଗ୍ରେଦନାର କାରଣ ବା କଣ ? 'ମୀମାଂସା'-କାର ଜୈମିନି କର୍ମର 'ଯଜ୍ଞାର୍ଥ', 'ପୁରୁଷାର୍ଥ' ବିଭାଗ କରି ସେଥିରେ ଯେତେ ନିଷ୍କାମତା ଢାଳିଁ କଲେ ମଧ୍ୟ, ଯଜ୍ଞାଦି କର୍ମର ଫଳ ଯେ ସ୍ୱର୍ଗାଦି ପାରତ୍ରିକ ସୁଖ, ତାହା ଅସ୍ୱୀକାର କରିବାର ଉପାୟ ନାହିଁ । (୩.୯ ଟୀକା ଦେଖ) । ତେଣୁ ଖ୍ରୀଷ୍ଟ, ମୁସଲମାନ ପ୍ରଭୃତି ଧର୍ମ ବା ଧର୍ମନିଷ୍ଠାଠାରୁ ଏ ଜୈମିନିଧର୍ମର ପ୍ରକୃତିଗତ ବିଶେଷ ପ୍ରଭେଦ ନାହିଁ । ପୁଣି ଏ ଧର୍ମର ଆଗ୍ରହ ଛଡ଼ା ଆଉ ଯେଉଁ ଶିଷ୍ଟାଗ୍ରହର କଥା କୁହାଗଲା, ସେଥିରେ ଭୌତିକ ସମାଜ ବିଗ୍ରହର ଦୂରସ୍ୱାର୍ଥ ବା ସେଇଭଳି ମୀମାଂସା ଛଡ଼ା ଆଉ କି ଭିତ୍ତି ବା ଦେଖାଯାଉଛି ? ଏ ଭିତ୍ତିରେ ଆଗ୍ରହର ପ୍ରତିଷ୍ଠା କରି ମାନବର କର୍ମରେ ଧର୍ମର ସଂଯମ ପୁଣି ବେଶି ଦୂରକୁ ଯିବାର ଉପାୟ ନାହିଁ । ପୁଣି ମାନବନିଷ୍ଠାରେ ଏଇ ଆଗ୍ରହ-ସଂଶୟ ବା ଧର୍ମସଂକଟର ମଧ୍ୟ ସୀମା ନାହିଁ । ଆର୍ଯ୍ୟ-ସାହିତ୍ୟରେ କେବଳ ମହାଭାରତ ଯୁଦ୍ଧକ୍ଷେତ୍ରରେ ଯେ ଏପରି ଧର୍ମସଂକଟ ହୋଇଥିଲା, ତା ନୁହେଁ । ଅର୍ଜୁନଙ୍କର ମହାପେ ର ଧର୍ମ-ସଙ୍କଟ ହେଲେ ମଧ୍ୟ, କ୍ଷୁଦ୍ରତର ସଂକଟର ବହୁ ନିର୍ଦ୍ଦେଶ ଓ ବିଗ୍ରହ ଏଇ ଆର୍ଯ୍ୟ-ଶାସ୍ତ୍ରାଦିରେ ଦେଖାଯାଏ । ମହାଭାରତରେ ମଧ୍ୟ ଆତ୍ମୀୟମାନଙ୍କର ଶ୍ରାଦ୍ଧବେଳେ ଶୋକରେ ଯୁଧିଷ୍ଠିରଙ୍କର ଘୋର ଧର୍ମ-ସଙ୍କଟ ଉପସ୍ଥିତ ହୋଇଥିଲା । ସେଥିପାଇଁ ଶାନ୍ତି ପର୍ବରେ ଭୀଷ୍ମ ଯୁଧିଷ୍ଠିରଙ୍କୁ ବୁଝାଇଥିଲେ । ଅନ୍ୟତ୍ର ମନୁଯାଜ୍ଞବଲ୍କ୍ୟାଦି ସ୍ମୃତିକାରମାନେ ମଧ୍ୟ ଏଇସବୁ ଧର୍ମ-ସଂକଟର କଳ୍ପନା କରି ତାର ସମାଧାନର ସିଦ୍ଧାନ୍ତମାନ କରିଚନ୍ତି । ଅନ୍ୟାନ୍ୟ ଶାସ୍ତ୍ରରେ ମଧ୍ୟ ଏଇପରି ଦେଖାଯାଏ । ସାମାନ୍ୟ କେତୋଟି ଉଦାହରଣ ଦିଆଯାଉଛି ।

"ଅହିଂସା ପରମୋ ଧର୍ମଃ"—(ମହା. ଆଦି. ୧୧.୧୩) ଏ କଥାଟି ସମସ୍ତେ ଜାଣନ୍ତି । ମନୁ ଧର୍ମ ଲକ୍ଷଣରେ କହିଚନ୍ତି—

"ଅହିଂସା ସତ୍ୟମସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ" (ମନୁ ୧୦.୬୩)
ମାତ୍ର ସେଇ ମନୁ କହନ୍ତି—

ଗୁରୁଂ ବା ବାଲ-ବୃଦ୍ଧୌ ବା
ବ୍ରାହ୍ମଣଂ ବା ବହୁଶ୍ରୁତଂ
ଆତତାୟିନମାୟାନ୍ତଂ
ହନ୍ୟାଦେବାବିଚାରୟନ୍ ।" (ମନୁ ୮.୩୫୦)

ଅର୍ଥାତ୍, ଗୁରୁ ହଉ, ବାଳକ ହଉ, ବୃଦ୍ଧ ହଉ, ବ୍ରାହ୍ମଣ ହଉ, ପଣ୍ଡିତ ହଉ, ଆତତାୟୀ ଦେଖିଲେ କିଛି ନ ବିଚାରି ତାକୁ ହତ୍ୟା କରିବ । ସେଇ ମନୁ ଏଇ ହତ୍ୟାର ସାଧୁତା ଦେଖାଇ କହୁଚନ୍ତି, ଏଥିରେ ପାପ ନାହିଁ । କାରଣ ଆତତାୟୀ ନିଜ ପାପରେ ମରେ । (୧.୩୭ ଟୀକା ଦେଖ) । ପୁଣି ମହାଭାରତରେ ଅଛି, ବାୟୁ, ଜଳ ପ୍ରଭୃତି ସର୍ବତ୍ର କ୍ଷୁଦ୍ର କ୍ଷୁଦ୍ର ଅଦୃଶ୍ୟ ଓ ଅନୁମାନଗମ୍ୟ କେତେ ଜୀବ ନାହାନ୍ତି ? ସେସବୁର ହତ୍ୟା କିପରି ବନ୍ଦ ହେବ ? (ମହା. ଶାନ୍ତି. ୧୫. ୨୬; ୩୭୬; ଅନୁ. ୧୧୫.୫୬) । ଏଇପରି ଯୁକ୍ତିରେ ମୃଗୟା ମଧ୍ୟ ସମର୍ଥନ କରାହୋଇଚି (ଅନୁ. ୧୧୬) । ବନପର୍ବରେ ଜଣେ ବ୍ରାହ୍ମଣ ଏକ ପତିବ୍ରତା ନାରୀଙ୍କୁ ଅଭିଶାପ ଦେଇ ନିଷ୍ଫଳ ହେବାରୁ ସେଇ ନାରୀଙ୍କଠାରୁ ଧର୍ମତତ୍ତ୍ୱ ବୁଝିବାକୁ ଲୋଡ଼ିଲେ । ସେଥିପାଇଁ ନାରୀ ଏକ ବ୍ୟାଧଙ୍କଠାକୁ ବ୍ରାହ୍ମଣଙ୍କୁ ପଠାଇଦେଲେ । ବ୍ୟାଧଟି ବଡ଼ ପିତୃମାତୃଭକ୍ତ ଓ ଜୀବ ମାରି ମାଂସ ବିକୁଥିଲେ । ବ୍ରାହ୍ମଣ ବିସ୍ମିତ ହୋଇ ବ୍ୟାଧଙ୍କୁ ପଚାରିବାରୁ ବ୍ୟାଧ ତାଙ୍କୁ ଅହିଂସାର ତତ୍ତ୍ୱ ବୁଝାଇ କହିଲେ—ଜଗତରେ କିଏ କାହାକୁ ନ ଖାଏ ? ଭାଗବତରେ ବି ଅଛି—"ଜୀବୋ ଜୀବସ୍ୟ ଜୀବନ" (ଭାଗ. ୧. ୧୩. ୪୬) । ମନୁ ମଧ୍ୟ କହନ୍ତି— ଆପତ୍ କାଳରେ "ପ୍ରାଣସ୍ୟାନ୍ନମିଦଂ ସର୍ବଂ" (ମନୁ ୫. ୨୮; ମହା. ଶାନ୍ତି. ୧୫. ୨୧) । ଏ କଥା ଉପନିଷଦରେ ମଧ୍ୟ ଅଛି । ଅହିଂସା ଯେପରି, କ୍ଷମା, ଶାନ୍ତି, ଦୟା ପ୍ରଭୃତି ସେଇପରି ଧର୍ମ । କିନ୍ତୁ ମହାଭାରତରେ ପ୍ରହ୍ଲାଦ ନିଜ ନାତି ବଳିରାଜାଙ୍କୁ କହିଚନ୍ତି—

"ନ ଶ୍ରେୟଃ ସତତଂ ତେଜଃ
ନ ନିତ୍ୟଂ ଶ୍ରେୟସୀ କ୍ଷମା ।
ତସ୍ମାନ୍ନିତ୍ୟଂ କ୍ଷମା ତାତ
ପଣ୍ଡିତୈରପବାଦିତା ।" (ମହା. ବନ.୨୮.୬.୮)

ଅର୍ଥାତ୍, ବାବୁ, ତେଜସ୍ୱିତା ବା କ୍ଷମା କୌଣସିଟି ସବୁବେଳେ ଭଲ ନୁହେ । ତେଣୁ ନିଯ୍ୟତ କ୍ଷମାକୁ ପଣ୍ଡିତମାନେ ଭୁଲ୍ ବୋଲି କହନ୍ତି । ଯଦି କେହି ଆଗରେ ସ୍ତ୍ରୀ ପୁତ୍ରଙ୍କୁ ଧରି ନେଇ ଯାଉଥିବ, ତେବେ ସେଠାରେ କ୍ଷମା ଠିକ୍ ନୁହେ ।

ପୁଣି ଦେଖ, ସବୁଠାରୁ ବଡ଼ ଧର୍ମ, ସତ୍ୟ । ଋଗ୍‌ବେଦ କହନ୍ତି, ସମସ୍ତ ସୃଷ୍ଟିର ମୂଳରେ ଋତ (ବିଶ୍ୱନିୟମ ବା ଧର୍ମ) ଓ ସତ୍ୟ ଉତ୍ପନ୍ନ ହୁଅନ୍ତି । "ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ ତପସୋଽଧ୍ୟଜାୟତ" (ଋଗ୍‌ବେଦ, ୧୦. ୧୯୦. ୧) । ପୃଥିବୀ ସତ୍ୟରୁ ବିକାଶ ପାଇଲା । "ସତ୍ୟେନ ଉ ଭବିତା ଭୂମିଃ" (ଋଗ୍‌ବେଦ, ୧୦. ୮୫. ୧) । ମହାଭାରତରେ ଅଛି—

"ଅଶ୍ୱମେଧସହସ୍ରଂ ଚ
ସତ୍ୟଂ ଚ ତୁଳୟା ଧୃତଂ
ଅଶ୍ୱମେଧସହସ୍ରେଷୁ
ସତ୍ୟମେବାତିରିଚ୍ୟତେ ।"

ଅର୍ଥାତ୍, ସହସ୍ର ଅଶ୍ୱମେଧ ଓ ସତ୍ୟ ଦୁହିଁକି ତୌଲିଲେ, ସତ୍ୟର ଓଜନ ବେଶି (ମହା. ଆଦି. ୭୪. ୧୦୨) । ପୁଣି—

"ସତ୍ୟେନାର୍କଃ ପ୍ରତପତି
ସତ୍ୟେନାପ୍ୟାୟତେ ଶଶୀ
ସତ୍ୟେନାମୃତମୁଦ୍‌ଭୂତଂ
ସତ୍ୟେ ଲୋକାଃ ପ୍ରତିଷ୍ଠିତାଃ ।"

ଅର୍ଥାତ୍, ସତ୍ୟ ହେତୁ ସୂର୍ଯ୍ୟ କିରଣ ଦିଏ, ସତ୍ୟ ହେତୁ ଚନ୍ଦ୍ର ଆନନ୍ଦ ଦିଏ, ସତ୍ୟରୁ ଅମୃତ ବାହାରେ, ସତ୍ୟରେ ଜଗତର ପ୍ରତିଷ୍ଠା । ଏହି ସତ୍ୟହିଁ ବ୍ରହ୍ମ । ଏଇ ସତ୍ୟ ହିଁ ସର୍ବାଧାର । ଉପନିଷଦରେ ଏଇ ସତ୍ୟକୁ ଭଜିବାର ପ୍ରଧାନ ପନ୍ଥା ସତ୍ୟ କହିବା ବୋଲି କୁହାଅଛି—'ସତ୍ୟଂ ବଦ', 'ଧର୍ମଂ ଚର' ( ସତ୍ୟ କହ ଓ ଧର୍ମାଚରଣ କର)—(ତୈତ୍ତିରୀୟ ଉପନିଷଦ୍—୧. ୧୧. ୧ ) । ମନୁ କହନ୍ତି—

"ବାଚ୍ୟର୍ଥା ନିୟତାଃ ସର୍ବେ
ବାଙ୍ମୂଳା ବାଗ୍‌ବିନିଃସୃତାଃ
ତାଂ ତୁ ଯଃ ସ୍ତେନୟେଦ୍‌ବାଚଂ
ସ ସର୍ବସ୍ତେୟକୃନ୍ନରଃ ।"

ମନୁଷ୍ୟ ମାନଙ୍କର ସବୁ ବ୍ୟବହାର ବାକ୍ୟରେ ହୁଏ । ବାକ୍ୟ ସବୁର ମୂଳରେ ଓ ବାକ୍ୟରେ ସବୁର ପ୍ରକାଶ । ଏପରି ବାକ୍ୟକୁ ଯେ ଚୋରି କରେ ( ଗୋଳିଆ ପୋଳିଆ କରି କହେ ବା ଯେ ମିଥ୍ୟା କହେ) ସେଇ ଏକା ସର୍ବ ଚୋର ( ବଡ଼ ଚୋର ) । ଅତଏବ "ସତ୍ୟପୂତାଂ ବଦେଦ୍‌ବାଚଂ" ( ସତ୍ୟରେ ଶୁଦ୍ଧ ହୋଇଥିବା କଥା କହିବ ) । ( ମନୁ ୬. ୪୬ ) । ଏଇପରି ସତ୍ୟ, ତଥା ବ୍ୟବହାରରେ ସତ୍ୟ

କହିବାର କେତେ ବା ପ୍ରଶଂସା କରିଯିବ ? ଏହା ପୃଥିବୀରେ ସର୍ବଧର୍ମ ଓ ସର୍ବବାଦସମ୍ମତ ।

କିନ୍ତୁ ପୁଣି ସେଇ ଶାସ୍ତ୍ରରେ ଅଛି—

"ନାପୃଷ୍ଟଃ କସ୍ୟଚିଦ୍ ବ୍ରୂୟାନ୍
ନ ଚାନ୍ୟାୟେନ ପୃଚ୍ଛତଃ"
(ମନୁ ୨, ୧୧୦; ମହା. ଶାନ୍ତି. ୨୮୭.୩୪)

ଅର୍ଥାତ, ନ ପଚାରିଲେ କାହାକୁ କିଛି କହିବ ନାହିଁ, କିଂବା ଅନ୍ୟାୟରେ ପଚାରିବା ଲୋକକୁ କହିବ ନାହିଁ । ଦେଖ, କିଏ, ଆତତାୟୀ ଦସ୍ୟୁ ହାତରୁ ମୁକ୍ତି ପାଇବାକୁ ବଣରେ ଲୁଚିଛି । ତୁମେ ତା ଜାଣିଚ । ଦସ୍ୟୁ ତମକୁ ପଚାରିଲେ, ତମେ କଣ କହିବ ? ପୁଣି ମହାଭାରତରେ ଅନେକଠାରେ କୁହାଅଛି—

"ଜାନନ୍ନପି ହି ମେଧାବୀ
ଜଡ଼ବଲ୍ଲୋକ ଆଚରେତ୍ ।"

ଅର୍ଥାତ୍ ( ଅବସ୍ଥା ପଡ଼ିଲେ ) ବୁଦ୍ଧିମାନ୍ ଲୋକ ଜାଣିଥିଲେ ବି ବଗା ପରି 'ହୁଁ' 'ହୁଁ' କରି କୌଣସି ପ୍ରକାରେ ଏଡ଼ିଦେବ । ଏ କଣ ମିଥ୍ୟା ନୁହେ ? ପୁଣି ମଧ୍ୟ ସେଇ ମହାଭାରତରେ ସ୍ପଷ୍ଟ କହିଚନ୍ତି—

"ଅକୂଜନେନ ଚେନ୍ମୋକ୍ଷୋ
ନାବକୂଜେତ୍ କଥଂଚନ ।
ଅବଶ୍ୟଂ କୂଜିତବ୍ୟେ ବା
ଶଙ୍କେରନ୍ ବାପ୍ୟକୂଜନାତ୍ ।
ଶ୍ରେୟସ୍ତତ୍ରାନୃତଂ ବକ୍ତୁଂ
ସତ୍ୟାଦିତି ବିଚାରିତଂ ।"
(ମହା. କର୍ଣ୍ଣ. ୬୯.୬୧; ଶାନ୍ତି ୧୦୯. ୧୫, ୧୬)

ଅର୍ଥାତ୍, କିଛି ନ କହିଲେ ଯେବେ ମୁକ୍ତି ମିଳିବ, ତେବେ କିଛି କହିବ ନାହିଁ । ନ କହିଲେ ଯେବେ ବିପଦର ଶଂକା ଥାଏ, ଚେଷ୍ଟା କହିବା ଯେବେ ନିତାନ୍ତ ଦରକାର ହୁଏ, ତେବେ ମିଛ କହିବ । ଏହା ହିଁ ଠିକ୍ ବିଚାର । ଧର, ଡକାୟତ ଗୃହ ଉପରେ ଛୁରି ଧରି ବସି ପଚାରୁଚ, 'ଧନ କୁଉଠି ରଖିଚୁ, କହ ।' ସେତେବେଳେ କି ବିଚାର ? ସେଭଳି ଅବସ୍ଥାରେ ଏ ବିଚାର ହୋଇଥାଇଚି । ପୁଣି ସେଇ ମହାଭାରତରେ ଅଛି—"ସତ୍ୟ କହିବା ଭଲ । ହେଲେହେଁ ସର୍ବଭୂତ-ହିତ ଯାହା, ତାହାହିଁ ପ୍ରକୃତ ସତ୍ୟ ।" (ଶାନ୍ତି. ୩୨୯. ୧୩; ୨୮୭. ୧୯) ।

"ଯଦ୍ଭୂତହିତମତ୍ୟନ୍ତଂ
ତତ୍ ସତ୍ୟମିତି ଧାରଣା ।" (ବନ. ୨୦୮.୪)

ଅର୍ଥାତ୍, ଯହିଁରେ ଖୁବ୍ ଲୋକହିତ, ସେଇ ଏକା ଯଥାର୍ଥ ସତ୍ୟ । ପୁଣି ଦେଖ—

"ଅହିଂସା ସତ୍ୟବଚନଂ
ସର୍ବଭୂତହିତଂ ପରଂ ।" ( ବନ. ୨୦୬. ୭୬ )

ଅର୍ଥାତ୍ ସର୍ବ ପ୍ରାଣୀଙ୍କ ହିତ ଯାହା, ତାହା ହିଁ ଯଥାର୍ଥ ଅହିଂସା ଓ ତାହା ହିଁ ଯଥାର୍ଥ ସତ୍ୟ ବଚନ । ତଥାପି ମହାଭାରତ ଓ ମନୁ କହନ୍ତି, ଯେ ମନୁଷ୍ୟ ମାରିଥିବ, ତାର ପ୍ରାଣଦଣ୍ଡ ନ୍ୟାୟତଃ ଉଚିତ । ତାକୁ ରକ୍ଷା କରିବା ନିମନ୍ତେ ମିଥ୍ୟା ସାକ୍ଷ୍ୟ କଦାପି ଦେବ ନାହିଁ ( ମନୁ ୮.୮୯-୯୯; ମହା. ଆଦି. ୭.୩ ) । ସେତିକି ନୁହେଁ, ଦ୍ରୋଣଙ୍କୁ ମାରିବା ପାଇଁ ଯୁଧିଷ୍ଠିର ମଧ୍ୟ "ଅଶ୍ୱତ୍ଥାମା ହତଃ ସତ୍ୟଂ" କହିସାରି "ନରେ ବା କୁଞ୍ଜରେ ବା" ବୋଲି ଗୋଳେଇ ପୋଳେଇ ଦେଇଥିଲେ । କର୍ଣ୍ଣ ନିରସ୍ତ୍ର ଥିଲାବେଳେ ଅର୍ଜୁନ ମାରିବାରୁ କର୍ଣ୍ଣ 'ଏହା ଅଧର୍ମ' ବୋଲି ଚେତାଇଦେଇ, ଉତ୍ତର ପାଇଥିଲେ—'ପିଲା' ଅଭିମନ୍ୟୁଙ୍କୁ ନିରସ୍ତ୍ର କରି ସପ୍ତରଥୀ ମିଳି କପଟରି ମାରିଥିଲେ । ପୁଣି ଭୀଷ୍ମଙ୍କୁ ନିଜେ ମାରି ନ ପାରି ଅର୍ଜୁନ ନପୁଂସକ ଶିଖଣ୍ଡୀଙ୍କ ଆଗରେ ରଖି ଭୀଷ୍ମଙ୍କୁ ଅପୋଶରେ ମାରିଥିଲେ । ଏସବୁ କଥା ଏ ଦେଶରେ ପୁରପଲ୍ଲୀରେ ଜାଣନ୍ତି । ଏଥିରେ ହୁଏତ ମହାଭାରତକାର କିଛି କିଛି ପରେ ପ୍ରାୟଶ୍ଚିତ୍ତ କରାଇ ଦେଇଚନ୍ତି, କହିଚନ୍ତି, ଦ୍ରୋଣଙ୍କୁ ମିଛ କହି ମାରିବାରୁ ଯୁଧିଷ୍ଠିରଙ୍କ ରଥ ଯାହା ଟିକିଏ ଭୂମିକୁ ଛାଡ଼ି ଚାଲୁଥିଲା, ତାହା ଆଉ ହେଲା ନାହିଁ । ତେଣିକି ଅନ୍ୟାନ୍ୟ ରଥ ପରି ତଳେ ଚକଡ଼ାର ପଇ ମଡ଼ାଇ ଚାଲିଲା ଓ ସେଇ ପାପ ପାଇଁ ପୁଣି ଘଡ଼ିଏ ଖଣ୍ଡେ ଯୁଧିଷ୍ଠିରଙ୍କ ଭାଗ୍ୟରେ ପରେ ନରକବାସ ଘଟିଥିଲା । ଅର୍ଜୁନ ଶିଖଣ୍ଡୀଙ୍କୁ ଆଗରେ ରଖି ଭୀଷ୍ମଙ୍କୁ ମାରିବା ଫଳରେ ପରେ ନିଜ ପୁତ୍ର ବଭ୍ରୁବାହନ ହାତେ ପରାସ୍ତ ହୋଇଥିଲେ—ଇତ୍ୟାଦି । କିନ୍ତୁ ସେ ଯାହା ହେଉ, ଏହିପରି ଧର୍ମସଙ୍କଟ ଓ ତାର ମୀମାଂସାମାନଙ୍କରେ ଭାରତ-ସାହିତ୍ୟ ପୂର୍ଣ୍ଣ । ମନୁ ଶ୍ରେଷ୍ଠ ସ୍ମୃତିଗ୍ରନ୍ଥ ଓ ମହାଭାରତ ଆମର "ପଞ୍ଚମ ବେଦ" । ସେଥିପାଇଁ ଏ ଦୁଇଥିରୁ ପ୍ରାୟ ଉଦାହରଣ ଦିଆଗଲା । ଅନ୍ୟାନ୍ୟ ଶାସ୍ତ୍ର ତଥା ଶିଷ୍ଟ ବ୍ୟବହାରରେ ଓ ଲୋକାଚାରରେ ଏଇଭଳି ସଙ୍କଟ ଓ ମୀମାଂସା ପୂରି ରହିଛି । ଲୋକବ୍ୟବହାରରେ ଏହା ନ ହେବାକୁ ଚାରା ନାହିଁ । ସେମାନଙ୍କର ଆଚାର-ମୂଳ ପ୍ରେରଣା ସମ୍ବନ୍ଧରେ ଯେଉଁ ବିଚାର ଆଗରୁ ଦିଆଯାଇଚି, ସେଇସବୁ ନୀତିରେ ସେମାନେ ସେସବୁ ବିଚାର କରନ୍ତି । ମାତ୍ର ତାହା ସାର୍ବଜନୀନ ହୁଏ ନାହିଁ । ଆସ୍ତିକ ଇଙ୍ଗିତବାଦୀମାନେ ମଧ୍ୟ ଯୁକ୍ତିରେ ଏଇଭଳି କେତେ ସଂଶୟର ସମାଧାନ କରି ନ ପାରି ଏକାବେଳକେ ଛାଡ଼ି ଦେଇଚନ୍ତି ।

## ଏକ ସଂକଟର ଭିନ୍ନ ଭିନ୍ନ ସମାଧାନ—

ସେ କଥା ଥାଉ । ଏବେ ଏସବୁ ଯେ ଧର୍ମ-ସଙ୍କଟ, ତାର ସମାଧାନ କଣ ? ଏ ଭାରତ-ସଂସାରରେ କି ଭିତ୍ତି ଉପରେ ଏସବୁର ଏତେ ପ୍ରକାର ସମାଧାନ ପ୍ରବୃତ୍ତ ହୋଇଚି ? ମନୁ ବା ମହାଭାରତରୁ ଅନ୍ତତଃ ଯେଉଁ ଉଦାହରଣ ଦିଆଗଲା, ସେଥିରେ କିଛି ମନମୁଖିଆ ସମାଧାନ କରି ହୋଇ ନାହିଁ । ଏ ସମସ୍ତ ସମାଧାନ ମୂଳରେ କଣ ଅଛି ? ମନୁଷ୍ୟର କର୍ମରେ କେତେ ଏପରି ସଂଶୟ ପଡ଼ିବ, ସବୁ କିଛି ମହାଭାରତ ବା ମନୁ ଗୋଟି ଗୋଟି କରି ବୁଝାଇ କହିପାରିବେ ନାହିଁ । କହିଲେ ବି ତାହାର ଯୁକ୍ତି ଖୋଜି ନ ପାଇଲେ ଲୋକେ ମଧ୍ୟ ସର୍ବଦା 'ଗୁରୁଦେବ'ଙ୍କ ଆଜ୍ଞା ଧରି ସେସବୁ ମାନିପାରନ୍ତି । ସାଧାରଣ ବ୍ୟବହାର ପାଇଁ ଏ ଦେଶରେ ଶାସ୍ତ୍ର, ଆପ୍ତ-ବାକ୍ୟ ପ୍ରଭୃତିର ବ୍ୟବସ୍ଥା ଥିଲେ ସୁଦ୍ଧା ଏସବୁ 'ଗୁରୁଦେବ'ଙ୍କ ଆଜ୍ଞା ବୋଲି କେହି କେବେ କଳ୍ପନା କରନ୍ତି ନାହିଁ । କୌଣସି ଏକ ବିଶାଳ ପ୍ରେରଣାର ଏସବୁ ଅଙ୍ଗୀଭୂତ ନ ଥିଲେ, ଏ ଦେଶର ମୁଖ୍ୟମାନେ ମଧ୍ୟ ମାନନ୍ତେ ନାହିଁ—ମାନିବା କୌଣସି ସନାତନ ବା ବର୍ଦ୍ଧିଷ୍ଣୁ ସମାଜର ଉଚିତ ନୁହେ । କୁହାଯାଇଚି, ଆର୍ଯ୍ୟ-ସମାଜର କର୍ମଗତ ସନାତନ ଧର୍ମ ବା ବେଦନାରେ ପ୍ରତିଷ୍ଠିତ । ପୁଣି ସେପରି କିଛି ନିତ୍ୟ ବେଦନାରେ ସ୍ଥିତ ବିନା ଶାସ୍ତ୍ରକାରମାନେ ମଧ୍ୟ ସବୁ ସଙ୍କଟର ଯେ ସମାଧାନ କରି-ପାରି ନାହାନ୍ତି, ତାର ଏକ ପ୍ରଧାନ ସାକ୍ଷ୍ୟ ହେଉଛି; ମନୁ ଏହିପରି ସମାଧାନ କରିବାକୁ ଯାଇ ଧର୍ମର ସଂଜ୍ଞା ନିର୍ଦ୍ଧାରଣ କରିବାକୁ ଯାଇ ଅନ୍ୟତ୍ର କହିଚନ୍ତି—

"ବେଦଃ ସ୍ମୃତିଃ ସଦାଚାରଃ
ସ୍ୱସ୍ୟ ଚ ପ୍ରିୟମାତ୍ମନଃ ।" (ମନୁ ୨.୧୨)

ଅର୍ଥାତ୍, ଧର୍ମ ହେଉଚି, ବେଦର ଚୋଦନା ଓ ସ୍ମୃତିର ଚୋଦନାଜନିତ କର୍ମ, ସଦାଚାର ପୁଣି ଆପଣାର ବା ଆତ୍ମାର ଯାହା ପ୍ରିୟ । ଏଇ ଆପଣାର ପ୍ରିୟ କଥାଟିର କିଛି ମାପକାଠି ଅଛି କି ? ସେ ମାପକାଠିଟି କଣ ? ପୁଣି ଅନ୍ୟତ୍ର ଟିକିଏ ଯୁକ୍ତିକରି କହିଚନ୍ତି, "ଅସୁଖୋଦର୍କ" ଅର୍ଥାତ୍ ଯାହାର ପରିଣାମରେ ଦୁଃଖ ହୁଏ, ସେପରି କର୍ମ ଛାଡ଼ିବାର କଥା । ସେସବୁ କରିବା ଧର୍ମ ନୁହେଁ । ଏଥିରେ ବି କି ମୀମାଂସା ହେଲା ? ଏପରି ତାର୍କିକଭାବରେ ଧର୍ମ କି ସ୍ଥିର କରିଯାଇପାରେ ? ଏ ପରିଣାମ ସୁଖ କାହାର ? ଏ କଥା କିଏ କହିଦେବ ? ଏଇ ପ୍ରକାର ତର୍କକୁ ଆକ୍ଷେପ କରି 'ପନ୍ଥା କଣ' ଏଇ ପ୍ରଶ୍ନର ଉତ୍ତର 'ଧର୍ମ'ଙ୍କୁ ଦେଲାବେଳେ ପୁଣି ଯୁଧିଷ୍ଠିର କହିଥିଲେ—

"ତର୍କୋଽପ୍ରତିଷ୍ଠଃ ଶ୍ରୁତୟୋ ବିଭିନ୍ନାଃ
ନୈକୋ ମୁନିର୍ଯସ୍ୟ ବଚଃ ପ୍ରମାଣଂ
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ
ମହାଜନୋ ଯେନ ଗତଃ ସ ପନ୍ଥାଃ ।"

ଅର୍ଥାତ୍, ତର୍କର ସ୍ଥିତି ଠିକ୍ ନାହିଁ । ବୁଦ୍ଧିର ତାରତମ୍ୟରେ ତର୍କର ସିଦ୍ଧାନ୍ତ ଭିନ୍ନ ଭିନ୍ନ ହୁଏ । ଶ୍ରୁତି ବା ବେଦରେ ସବୁଠି ଏକ କଥା କୁହା ହୋଇ ନାହିଁ । ସ୍ମୃତି କଥା ଯଦି କହ, ତେବେ ମୁନି ଗୋଟିକେ ମତ ଗୋଟିଏ; କାହାର କଥା ଏକମାତ୍ର ପ୍ରମାଣ ନୁହେ । ତେବେ ଲୋକାଗ୍ରହଗତ ଧର୍ମ କଥା ଯଦି ପଚାରୁଛ, ତେବେ ତା ଗୁହାରେ ଅଛି ବା ଅନ୍ଧକାରାଚ୍ଛନ୍ନ, ଅର୍ଥାତ୍, ସାଧାରଣ ବୁଦ୍ଧିର ଅଗମ୍ୟ (କେହି ଅର୍ଥ କରନ୍ତି, ଗୁହାରେ ନିହିତ ବୋଇଲେ; ଜ୍ଞାନୀଙ୍କ ହୃଦୟ-କନ୍ଦରରେ ଗୂଢ଼) । ଅତଏବ ମହାଜନ ଯେ ପନ୍ଥାରେ ଯାଇଚନ୍ତି ( ବା ଯାଆନ୍ତି ), ସେଇ ଏକା ପନ୍ଥା । ଏଇ ମହାଜନ ତେବେ କିଏ ? ବହୁଲୋକ ? ତେବେ ତ କର୍ମନୀତିରେ ହୁଏ ତ କୌଣସି ଶୃଙ୍ଖଳା ରହିବ ନାହିଁ । କାରଣ, ବହୁ ଲୋକଙ୍କର କେବେ କୌଣସି ଧର୍ମାଧର୍ମର ସଂଶୟ ହୁଏ ନାହିଁ । କେବଳ ସେଇମାନଙ୍କୁ ଆଦର୍ଶ କରି ପନ୍ଥା ଠିକ୍ କରିବା କିପରି କଥା ? ବହୁଲୋକ ବରଂ ପ୍ରଚଳିତ ପନ୍ଥା ବା ପରଂପରାର ଆଗ୍ରହ ଧରି ଚଳନ୍ତି । ପୁଣି ମହାଜନ ବୋଇଲେ ଯେବେ ବଡ଼ ବଡ଼ ଲୋକ ବୁଝିବାକୁ ହୁଏ, ତେବେ ସମାଲୋଚନାର ଦୃଷ୍ଟିରେ ଦେଖିଲେ, ବଡ଼ ବଡ ଲୋକଙ୍କ କାର୍ଯ୍ୟରେ ମଧ୍ୟ କି ଶୃଙ୍ଖଳା ଅଛି ? ବେଦରେ ମଧ୍ୟ ଇନ୍ଦ୍ର ମାୟାରେ ପ୍ରବଞ୍ଚନାରେ ଶତ୍ରୁ ନାଶ କରିବା; ପିତୃହତ୍ୟା ଓ ବ୍ରହ୍ମହତ୍ୟା କରିବା; କୃଷ୍ଣଙ୍କର ଗର୍ଭିଣୀ ପତ୍ନୀମାନଙ୍କୁ ହତ୍ୟା କରିବା; ଯମୀ ନିଜ ଭାଇ ଯମଙ୍କଠାରେ ରତି ପ୍ରାର୍ଥନା କରିବା; ବ୍ରହ୍ମା ନିଜ କନ୍ୟାକୁ ବିଭା ହେବା—ଇତ୍ୟାଦି, ପୁଣି ପୁରାଣ ଇତିହାସରେ ଇନ୍ଦ୍ର ଚନ୍ଦ୍ର ଗୁରୁତଳ୍ପଗମନ କରିବା, ନିଷ୍ପାପ ରାମଚନ୍ଦ୍ର ଅଗ୍ନିଶୁଦ୍ଧା ନିଜ ଧର୍ମପତ୍ନୀ ସୀତାଙ୍କୁ ଲୋକାପବାଦମାତ୍ର ଭୟରେ ଅନ୍ତଃସତ୍ତ୍ୱା ଅବସ୍ଥାରେ ପରିତ୍ୟାଗ କରିବା, ସେଇ ରାମଚନ୍ଦ୍ର ସୁଗ୍ରୀବ ସଙ୍ଗେ ସ୍ୱାର୍ଥ ଲାଗି ମିଳିତା କରି ଲୁଚି କରି ସୁଗ୍ରୀବ ବଡ଼ଭାଇ ବାଲିକୁ ମାରିବା; ପରଶୁରାମଙ୍କ ମାତୃହତ୍ୟା—ପ୍ରଭୃତି ମହାଜନ ଚରିତ୍ର କି ନୀତିରେ ବୁଝିବାକୁ ହେବ ? ହୁଏତ ଏସବୁଥିରେ କାରଣ ଅଛି । କିନ୍ତୁ କାରଣ ଅଛି ବୋଲି ଖାଲି ମାନିଯାଇ ସେଇ ଅନୁକ୍ରମେ ଚଳିବା ସହଜ ନୁହେ, କି ସୁନ୍ଦର ନୁହେ ।

## ମଧ୍ୟ ପନ୍ଥା—

ଏଇପରି ବିଚାର କଲେ 'ଶୁଚେର୍ଭେଦର୍କ' 'ସର୍ବଭୂତହିତ', 'ସ୍ୱସ୍ୟ ଚ ପ୍ରିୟମାତ୍ମନଃ' ( ଆପଣା ଆତ୍ମାର ପ୍ରିୟ )—ପ୍ରଭୃତି ଯେତେ କଥା ଧରି କର୍ମନୀତି ବୁଝିବାର ଆଭାସ ଦିଆଗଲା, ସେସବୁ ଅପ୍ରତିଷ୍ଠ ତର୍କରେ ଭାସିଯିବ । ପୁଣି ମନୁଷ୍ୟଙ୍କୁ ତର୍କରୁ ବରାବର ଛଡ଼ାଇ, ତାର ନିଜ ବିଚାରଶକ୍ତି ଲୋପ କରି ଚଳି ହେବ ନାହିଁ । ଅନ୍ତତଃ ଆଦର୍ଶସ୍ଥାନୀୟ ଲୋକଙ୍କ ବିଚାରରେ କର୍ମନୀତି ପ୍ରତିଷ୍ଠିତ ନ ହେଲେ, ମାନବ-ସମାଜ ହୁଏ ତ ଜଡ଼ସଂଘ ହେବ ଓ ମାନବ ଧର୍ମାନ୍ଧ ହୋଇପଡ଼ିବ, କିମ୍ବା ବିପ୍ଳବର ପ୍ରତିକ୍ରିୟା ବ୍ୟାପିବ । ଏଇ ଦୁଇ ପନ୍ଥା ଛାଡ଼ି କେହି କେହି କହନ୍ତି, କର୍ମନୀତିର ମାନ

ହେଉଛି, ଦୁଇ ଆଡ଼େ 'ଅତ୍ୟନ୍ତ'କୁ ଛାଡ଼ି ମଝିମଝିଆ ପନ୍ଥା ଧରିବା । କଥା ଅଛି, "ଅତି ସର୍ବତ୍ର ବାଧତେ" । 'ଅତିଶଯ୍ୟ' କରିବା କେତେବେଳେ ଭଲ ନୁହେ । ନୀତି ପ୍ରବଚନ ଅଛି—

"ଅତିଦର୍ପାତ୍ ହତା ଲଙ୍କା
ଅତିମାନାଚ୍ଚ କୌରବାଃ
ଅତିଦାନାଦ୍ ବଲିର୍ବଦ୍ଧଃ
ସର୍ବମତ୍ୟନ୍ତଗର୍ହିତଂ ।"

ଅର୍ଥାତ୍, ଅତିଦମ୍ଭ (ବା ଆତ୍ମପ୍ରତିଷ୍ଠା ପ୍ରଯତ୍ନ) ରେ ଲଙ୍କା ନଷ୍ଟ ହେଲା, ଅତିଶଯ୍ୟ ଆତ୍ମମର୍ଯ୍ୟାଦା-ରକ୍ଷାର ପ୍ରୟାସରେ କୌରବମାନେ ବିନଷ୍ଟ ହେଲେ, ଅତିଦାନ କରି ବଳି ବନ୍ଧା ହେଲା । ଅତଏବ, ସବୁ 'ଅତ୍ୟନ୍ତ' କରିବା ଭଲ ନୁହେଁ । ହଉ, ହେଲେହେଁ, ସେଥିରେ ମଧ୍ୟ କି ସ୍ଥିତି, କି ସୀମା ବା କିଏ ବିଗ୍ଭରକ ଅଛି ?

## ଆର୍ଯ୍ୟ ଧର୍ମରେ ଏଇ ନୀତିର ସ୍ୱତନ୍ତ୍ର ତାତ୍ତ୍ୱିକ ବିଗ୍ଭର ନାହିଁ—

ସେଥିପାଇଁ ଆର୍ଯ୍ୟ-ସାହିତ୍ୟରେ କର୍ମନୀତିର ସ୍ୱତନ୍ତ୍ର ବିଗ୍ଭର ଦର୍ଶନ ( Ethics ) ବା ବିଜ୍ଞାନ ବେଶି କିଛି ପ୍ରକାଶ ପାଇ ନାହିଁ । କୌଣସି ଏକ ମହାନୀତିର ବିକାଶ ସ୍ୱରୂପ କର୍ମସବୁର ନୀତି ଦେଖିବାକୁ ହୁଏ । କର୍ମସଙ୍କଟରେ ସେଇ ହିସାବରେ ମନୀଷୀମାନେ ସମାଧାନ କରନ୍ତି ।

ମୂଳକଥା, ଏ ଦେଶର କର୍ମଚ୍ଚୋଦନା କୌଣସି ବ୍ୟକ୍ତିର ଆଦେଶ ନୁହେଁ । ମୀମାଂସାର ସ୍ୱର୍ଗାଦିଲାଭର ତାତ୍ତ୍ୱିକ ବ୍ୟାଖ୍ୟାର ଗୁରୁତ୍ୱରେ ଏ ଚ୍ଚୋଦନା ନାହିଁ । 'ସୁଖୋଦର୍କ'ର ବ୍ୟକ୍ତିଗତ କଳ୍ପନା ବା ସର୍ବଭୂତ-ମଙ୍ଗଳର କୃତ୍ରିମ ଆଧିଭୌତିକ କଳନାରେ ଏ ଚ୍ଚୋଦନାର ପୀଠ ନୁହେଁ । 'ଅତି ସର୍ବତ୍ର' ଛାଡ଼ି ମଧ୍ୟ ମଧ୍ୟପନ୍ଥା ଖୋଜିବାର ପାରଂପରିକ ଉପଦେଶରେ ଏ ଚ୍ଚୋଦନାର ସ୍ଥିତି ନାହିଁ । କିନ୍ତୁ ଏସବୁର ଚ୍ଚୋଦନାର ମୂଳ ଏକାବେଳେକେ ନାହିଁ ବୋଲି ମଧ୍ୟ କୁହାଯାଇ ନ ପାରେ । ମାତ୍ର ଏଇସବୁ ଚ୍ଚୋଦନାର ମୂଳ ଧରି ନୀତିର ତତ୍ତ୍ୱବିଗ୍ଭର ସମ୍ଭବ ନୁହେଁ । ପୂର୍ବେ କୁହାଯାଇଛି, ଏଇପରି ମାନବ କର୍ମନୀତିର ନାନା ଆଦର୍ଶ କଳନା କରି ଓ କଳ୍ପନା କରି ଇଉରୋପରେ ନୀତିବିଜ୍ଞାନ ତତ୍ତ୍ୱ (Ethics) ବିଗ୍ଭର କରାଯାଇଛି । କିନ୍ତୁ ସେ ବିଗ୍ଭରରେ କୌଣସି ମୂଳ ମିଳି ନାହିଁ । ବିଶ୍ୱତତ୍ତ୍ୱର ବିଗ୍ଭରରେ ନାନା ତତ୍ତ୍ୱର ଗମ୍ଭୀର ଓ ସମୀଚୀନ ବିଗ୍ଭରର ଉଦ୍ୟମ ସେ ଦେଶରେ ହୋଇଥିଲେହେଁ, ନୀତିକୁ ତାଠାରୁ ବିଚ୍ଛିନ୍ନ କରି ଆଲୋଚନା କରିବାରୁ ମଧ୍ୟ ଜଗତ ଓ ମାନବ ଜୀବନରେ କୌଣସି ସାମଞ୍ଜସ୍ୟ ମିଳି ନାହିଁ ।

## ଏଇ ସ୍ୱତନ୍ତ୍ର ବର୍ଣ୍ଣନାରେ ମାନବର କର୍ମସ୍ୱାତନ୍ତ୍ର୍ୟ ଓ ନୀତ୍ୟ ଦ୍ୱୈତ—

ମାନବର କାମ-ଚେତନା ବା କାମନାର ପ୍ରେରଣାରେ ସ୍ୱାତନ୍ତ୍ର୍ୟ ଅଛି ବୋଲି ନୀତି ଦର୍ଶନରେ ସ୍ୱୀକାର କରାଯାଇଛି । ଜଡ଼ ଓ ଜନ୍ତୁ ଜଗତ୍ ଯେପରି ବନ୍ଧା ଗତିରେ କର୍ମ କରନ୍ତି ବା କର୍ମର ଅଧୀନ ହୁଅନ୍ତି, ମାନବ ସେପରି ହୁଏ ନାହିଁ । ଏହା ସାଧାରଣ କଥା । ସେଥିପାଇଁ ମାନବର ଏଇ କର୍ମସ୍ୱାତନ୍ତ୍ର୍ୟର ଭିତ୍ତି ଖୋଜିବାରେ ଜଗତ୍ ଓ ମାନବ ଦୁଇଟି ଅଲଗା ହୋଇପଡ଼ିଛି । କର୍ମନୀତିରେ କୌଣସି ଯୁକ୍ତିଯୁକ୍ତ ଆଧ୍ୟାତ୍ମିକ ଭିତ୍ତି ମିଳୁ ନାହିଁ । ବରଂ ସ୍ପଷ୍ଟତଃ ଈଶ୍ୱର ଓ ମନୁଷ୍ୟ ଦୁଇଙ୍କର ଯେ ଦ୍ୱୈତ ଖ୍ରୀଷ୍ଟ ଧର୍ମରେ ପ୍ରଚାରିତ, ତାହାର ସମର୍ଥନ କରିବାକୁ ଯାଇ ମନୁଷ୍ୟକୁ ଦୋଷୀ କରି, ଈଶ୍ୱରଙ୍କ ଆଦେଶରେ ତାକୁ ଶୁଦ୍ଧ ଓ ସାଧୁ କରିବାର ଉଦ୍ୟମ କରାଯାଇଛି ।

## ଜଗତର ଦୁଃଖାଦିରେ ମାନବର ଏକା ଦାୟିତ୍ୱ—

କର୍ମର ଏଇପରି ତତ୍ତ୍ୱ-ବିଚାର ସଙ୍ଗେ ମଧ୍ୟ ଜଗତର ଦୁଃଖ ଓ ପାପ (Evil) ବିଚାର କରିବାକୁ ଯାଇ, ମାନବର ସ୍ୱାଧୀନତାକୁ ସେଥିଲାଗି ଦାୟୀ କରାଯାଇଛି । ମୋଟ କଥା, ମନୁଷ୍ୟ ନିଜ ସ୍ୱାଧୀନତାର ଅପଚାର ଓ ଅପବ୍ୟବହାର କରି ଜଗତ୍‌କୁ ଦୁଃଖ ଆଣିଛି । ଏଇ ସ୍ୱାଧୀନତା ବା ସ୍ୱାଧୀନ ଇଚ୍ଛାଶକ୍ତି (ପ୍ରବୃତ୍ତି) ଠିକ୍ କରିବାର ଔଷଧ ଦରକାର । ଇଉରୋପରେ ଯେତେ କର୍ମନୀତିର ବିଜ୍ଞାନ ଆଲୋଚିତ ହୋଇଛି, ସେଥିରେ ମାନବ କର୍ମର ବିବୃତି ଓ ବ୍ୟାଖ୍ୟା ଏଇ ତତ୍ତ୍ୱ ଉପରେ କରାହୋଇଛି ।

## ଚେତନାର ପୀଠ—ବ୍ୟକ୍ତିତ୍ୱ—ଯୁକ୍ତିର ଅନବସ୍ଥା—

ମାତ୍ର ଏ ସ୍ୱାଧୀନତାର ମଧ୍ୟ ବିସ୍ତୀର୍ଣ୍ଣତର ତାତ୍ତ୍ୱିକ ବିଚାର ଓ ପୀଠ ଲୋଡ଼ା । ଏଇ ପୀଠ ଲୋଡ଼ିବାକୁ ଯାଇ ଇଉରୋପରେ ବ୍ୟକ୍ତିର କର୍ମନୀତି ବା ଚେତନାର ପରମସ୍ଥାନକୁ ବ୍ୟକ୍ତିତ୍ୱ ବା ଚରିତ୍ର (Character) ବୋଲି କହି, ସେଇଥିରେ ନୀତିବିରୋଧ (ଧର୍ମସଙ୍କଟ)ର ସମାଧାନ ଲୋଡ଼ନ୍ତି । ଏଇ ବ୍ୟକ୍ତିତ୍ୱକୁ ବୁଝାଇବାକୁ ଯାଇ ସେମାନେ କହନ୍ତି, ଏଇ ବ୍ୟକ୍ତିତ୍ୱ (ଚରିତ୍ର) ହେଉଛି, 'ସମ୍ପୂର୍ଣ୍ଣ ନିୟମିତ ମନୋ-ବୃତ୍ତି'—ମନର ଯେ ସଙ୍କଳ୍ପାତ୍ମକ ବୃତ୍ତି ବା ପ୍ରବୃତ୍ତି, ସେଇ ବୃତ୍ତି ସମ୍ପୂର୍ଣ୍ଣ ନିୟମିତ ହେଲେ ହୁଏ, ଏଇ ବ୍ୟକ୍ତିତ୍ୱ ବା ଚରିତ୍ର (Character is a completely fashioned will) । ମାତ୍ର ମନୋବୃତ୍ତି ନିୟମିତ ହେବ କାହିଁରେ ? କିପରି ? ବ୍ୟକ୍ତିତ୍ୱରେ ମନୋବୃତ୍ତି ନିୟମିତ ହେବ, ପୁଣି ମନୋବୃତ୍ତି ନିୟମିତ ହେଲେ ବ୍ୟକ୍ତିତ୍ୱ ହେବ । ଏଠାରେ ଯୁକ୍ତିର ଏ ଘୋର ଅନବସ୍ଥା ଦୋଷରୁ (Begging the question —argument in a circle) ରୁ ଉଦ୍ଧାର ନାହିଁ । ଗୋଟି

ଗୋଟି କର କର୍ମ ପରଖି ତାର ମୂଳ ଖୋଜିଲେ ଏହାଠାରୁ ବେଶି ଦୂରକୁ ବିଜ୍ଞାନ ଯିବ ନାହିଁ । ଜଡ଼ ବିଜ୍ଞାନର ସମସ୍ତ ଯୁକ୍ତିଧାରା ଏହିପରି । ଦେଖ, ମାଧ୍ୟାକର୍ଷଣ ଗୋଟିଏ ଜଡ଼ବିଜ୍ଞାନତତ୍ତ୍ୱ । ପୃଥିବୀରେ ଜିନିଷସବୁ ତଳକୁ ପଡ଼େ ବା ଗ୍ରହାଦି କକ୍ଷରେ ବୁଲନ୍ତି କାହିଁକି ? ଉତ୍ତର, ମାଧ୍ୟାକର୍ଷଣ ଯୋଗୁଁ । ପୁଣି, ମାଧ୍ୟାକର୍ଷଣ କ'ଣ ? ଉତ୍ତର ଯାହା ଯୋଗୁଁ ଦ୍ରବ୍ୟସବୁ ତଳକୁ ପଡ଼େ ବା ଗ୍ରହାଦି କକ୍ଷରେ ବୁଲନ୍ତି । ପଡ଼ିବାର ହେତୁ, ମାଧ୍ୟାକର୍ଷଣ ଓ ମାଧ୍ୟାକର୍ଷଣର ପ୍ରମାଣ ପଡ଼ିବା । ଏପରି ଯୁକ୍ତିରେ ଭୌତିକ ବିଜ୍ଞାନ ହୁଏତ ଚଳିପାରେ, କିନ୍ତୁ କର୍ମନୀତିରେ ଏକଥାର ସମାଧାନ ହେବ ନାହିଁ ।

## ଆର୍ଯ୍ୟଧର୍ମର ସମାଧାନ—

ଏହି ବ୍ୟକ୍ତିତ୍ୱର ଗୁହ୍ୟବେଦନାପୀଠ ଓ ଏହି ସୁଖ ଦୁଃଖ ତଥା ନର-ଈଶ୍ୱର ଦ୍ୱୈତର ସମାଧାନ ବେଦରୁ ଏକ । ଏହା ହିଁ ଏକ ଦିଗରେ ନୀତି, ପୁଣି ଅପର ଦିଗରେ ସୁଖ-ଦୁଃଖମୟ କର୍ମ ଓ ନର-ଈଶ୍ୱର-ରୂପ କର୍ତ୍ତା, ଦ୍ୱନ୍ଦ୍ୱ ବା ଦ୍ୱୈତର ମହାସମନ୍ୱୟ ଭୂମି । ବେଦବାଦର ଏଠାରେ ପ୍ରତିପତ୍ତି ନାହିଁ କିମ୍ବା ଭୌତିକ ଆତ୍ମିକର ବ୍ୟବଧାନ ନାହିଁ । ଏହା ହିଁ ଗୀତାର ବିଶ୍ୱଧର୍ମ ବା ଆର୍ଯ୍ୟଧର୍ମର ନୈତିକ ତଥା ତାତ୍ତ୍ୱିକ ସମାଧାନ । ଏଠାରେ ନୀତି ବା କର୍ମନୀତି ପୁଣି ନର-ଈଶ୍ୱର ବା ବ୍ୟକ୍ତି ଓ ବିଶ୍ୱ ସବୁ ଏକାକାର । ଏକତତ୍ତ୍ୱର ପ୍ରତିଷ୍ଠା ଓ ଏହି ତତ୍ତ୍ୱର ପ୍ରକାଶ ହିଁ ଗୁହ୍ୟବେଦନା । ଏହି ଗୁହ୍ୟବେଦନା ଓ ଏହି ସତ୍ୟକୁ ବର୍ଣ୍ଣନ କରି ବେଦ କହୁଛନ୍ତି—

"ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ତପସୋଽଧ୍ୟଜାୟତ ।"

—ଋଗ୍‌ବେଦ, ୧୦, ୧୯୦, ୧

ଅର୍ଥାତ୍, ସତ୍ୟ ଅର୍ଥାତ୍ ଇନ୍ଦ୍ରିୟଉପଲବ୍‌ଧ ବିଶ୍ୱ ବା କର୍ମର ମୂଳତତ୍ତ୍ୱ ଓ ଋତ ଅର୍ଥାତ୍ ବିଶ୍ୱପ୍ରକାଶର ନିତ୍ୟ ନିୟମ—ଏ ଦୁହେଁ ଘୋର ପ୍ରଦୀପ୍ତ ତପସ୍ୟାରୁ ବାହାରିଲେ । ଏହି ଇନ୍ଦ୍ରିୟଉପଲବ୍‌ଧ ବା ପ୍ରକାଶିତ ବିଶ୍ୱ ହିଁ କର୍ମ । ଭଗବାନ୍ ଏହି କଥାକୁ ବୁଝାଇ କହୁଛନ୍ତି—

"ଭୂତଭାବୋଦ୍ଭବକରୋ
ବିସର୍ଗଃ କର୍ମସଂଜ୍ଞିତଃ ।" (୮, ୩)

ଅର୍ଥାତ୍, ଭୂତ ବା ଦୃଶ୍ୟମାନ ଜଗତ୍ ଓ ଭାବ ବା ଚିନ୍ତ୍ୟମାନ ଜଗତ୍ ଏସବୁ କର୍ମ । ଏହି କର୍ମହିଁ ମଧ୍ୟ ସତ୍ୟ । ମନେ ରଖିବାକୁ ହେବ, ସତ୍ୟର ବୈଦିକ ସାହିତ୍ୟରେ ଦୁଇଟି ଅର୍ଥ (୯,୧୯ ଟୀକା ଦେଖ) । ଏଠାରେ 'ସତ୍ୟ' ବୋଇଲେ, ଏହି ବିଶ୍ୱପ୍ରକାଶ ତତ୍ତ୍ୱ ବା ସମୂହ ଧାରଣା ବୁଝିବାକୁ ହେବ । ଏହି ସତ୍ୟରେ ଯେ ନିୟମ ପ୍ରକାଶ ପାଏ

ତାହା ହିଁ 'ଋତ' ବୋଲି ବେଦରେ କୁହାଯାଏ । କର୍ମ ଓ କର୍ମନିୟମ ଏହି ଦୁଇଟି ପରମାତ୍ମାଙ୍କ ପ୍ରକାଶ ।

## ମାନବକର୍ମର ପୀଠ—ବିଶ୍ୱନିୟମ—ଋତ—

ମାତ୍ର ଗୀତାରେ ସାଧାରଣତଃ କର୍ମର ଅର୍ଥ ଆଚରଣ ବା ବ୍ୟାପାର । କରିବା, ଯାହା କରାହୁଏ, ତାକୁ କର୍ମ କହନ୍ତି । ପୁଣି ସେହି ଅର୍ଥରେ ଏକପ୍ରକାର ମୀମାଂସକମାନେ ଯଜ୍ଞକ୍ରିୟାଦିକୁ କର୍ମ କହନ୍ତି । ଯଜ୍ଞକର୍ମର ଚୋଦନା ଦେବତାଙ୍କର ଆଦେଶ । ମାନବକର୍ମର ଚୋଦନା ବର୍ଣ୍ଣନ କରି ଭଗବାନ୍ କହୁଚନ୍ତି—

"ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା
ତ୍ରିବିଧା କର୍ମଚୋଦନା ।" ( ୧୮.୧୮ )

ଅର୍ଥାତ୍, କର୍ମର ଚୋଦନାରେ ଏହି ତିନୋଟିର ଅଂଶ ଅଛି । ଯଥା—ଜ୍ଞାନ ବା କଣ କରିବାକୁ ହେବ; ଜ୍ଞେୟ ବା କି ଲକ୍ଷ୍ୟରେ କରିବାକୁ ହେବ; ପରିଜ୍ଞାତା ବା କିଏ କରିବ ? ଏହି ତିନୋଟିର ଉପରରେ କର୍ମର ଚୋଦନା ହୁଏ । ସେହି କର୍ମକୁ ବର୍ଣ୍ଣନ କରି ପୁଣି କହୁଚନ୍ତି—ଦେଖିବା, ଶୁଣିବା, ଛୁଇଁବା, ଖାଇବା ଇତ୍ୟାଦି ମନୁଷ୍ୟ ଯାହା କରେ (୫.୮,୯)—କାୟିକ, ବାଚିକ, ମାନସିକ ସବୁ ବ୍ୟାପାର କର୍ମ । ଏପରି ବଞ୍ଚିବା ଓ ମରିବା ମଧ୍ୟ କର୍ମ । ବଞ୍ଚିବା ଓ ମରିବା ଭିତରେ କେଉଁ କର୍ମ କରିବା ଉଚିତ, ତା ମଧ୍ୟ ବାଛିବାର ଅବକାଶ ଅଛି । ପୂର୍ବେ କେଉଁ ନୀତି ବା ଧର୍ମର ବିଚାର କରାଯାଇଚି, ଏହି ମାନବିକ କର୍ମ ସେଥିର ବିଷୟ । କିନ୍ତୁ ଏ ନୀତିର ପୀଠ ମନୁଷ୍ୟ କର୍ମ ଖୋଜିଲେ ମିଳୁ ନାହିଁ । ଏହାର ପୀଠ ବିଶ୍ୱମୟ କର୍ମରେ ଖୋଜିବାକୁ ହେବ । ମନୁଷ୍ୟର ନୀତିର ପୀଠ ହେଉଚି, ସେହି 'ଋତ' ବା ବିଶ୍ୱକର୍ମ ନିୟମ ।

## ପରମାତ୍ମା ଓ ପ୍ରତ୍ୟଗାତ୍ମା—ବିଶ୍ୱତତ୍ତ୍ୱ ଓ ମୁଁ—

ଏହି ନୀତି ଓ ଋତ ମଧ୍ୟରେ ସମ୍ବନ୍ଧ କଣ ? ପିଣ୍ଡରେ ଯାହା ବ୍ରହ୍ମାଣ୍ଡରେ ସେଇଆ—ଏହି ଭାବରେ ଚିନ୍ତା ବିଶ୍ୱ ସଙ୍ଗେ ନିଜର ସମ୍ବନ୍ଧ ସ୍ଥାପନ କରେ । ନିଜର ବ୍ୟକ୍ତିତ୍ୱ ଓ କର୍ମ ସଙ୍ଗେ ଠିକ୍ ସମ୍ପର୍କରେ ଦେଖି ମନୁଷ୍ୟକୁ ବିଶ୍ୱ ବୁଝିବାକୁ ହୁଏ । ବିଶ୍ୱ ଆମର ଇନ୍ଦ୍ରିୟଲବ୍ଧ । ଏହି ଇନ୍ଦ୍ରିୟସବୁ ବ୍ୟକ୍ତିତ୍ୱ ବା ଆତ୍ମାର ଦ୍ୱାର । ଏଠାରେ ଅବଶ୍ୟ ବ୍ୟକ୍ତିତ୍ୱ କହିଲେ ଆଉ କର୍ମରୁ ଭୌତିକ ଦୃଷ୍ଟିରେ ନିର୍ମିତ ବ୍ୟକ୍ତିତ୍ୱ ନୁହେଁ । ଏହି ବ୍ୟକ୍ତିତ୍ୱ ହେଉଚି ଆତ୍ମା । ଏହି ଆତ୍ମାର ଅନୁଭୂତି ଅଛି । କିନ୍ତୁ ତାହାର ବର୍ଣ୍ଣନା ନାହିଁ । ପ୍ରତ୍ୟେକେ ସବୁ କର୍ମ କରିବାରେ ଜାଣନ୍ତି—ଅନୁଭବ କରନ୍ତି, 'ମୁଁ କରୁଚି' । କିନ୍ତୁ ଏ 'ମୁଁ' କଣ ? କର୍ମରୁ ଧରି ଧରି ଏ ମୁଁ-କୁ କେହି ଉଠି, ଏ ମୁଁ ର ଧାରଣା କେହି କରିପାରେ ନାହିଁ । ସମସ୍ତ କର୍ମର ଚୋଦନାର

ସ୍ଥାନ ଏଇ ମୁଁ । ଏ ସର୍ବତ୍ର ଅଛି, ଅର୍ଥାତ୍, ସବୁ କର୍ମରେ ଏହାର ସତ୍ତା ଅଛି, କିନ୍ତୁ କେଉଁଠି ଅଛି ଏହା କେହି କହିପାରିବେ ନାହିଁ । ମାତ୍ର ଏ ନ ଥିଲେ କୌଣସି କର୍ମ ନାହିଁ । କିନ୍ତୁ ଏ କୌଣସି କର୍ମ ପରି ନୁହେ ବା କର୍ମ ନୁହେ । ଏପରି ବା ଏତିକି, ବା ଏଠି ପ୍ରଭୃତିରେ ଏହାକୁ କେହି ଲକ୍ଷ୍ୟ କରି ଚହ୍ନାଇ ପାରିବେ ନାହିଁ । ମାତ୍ର ଏ ନ ଥିଲେ ଆଉ କୌଣସି କର୍ମର ସତ୍ତା ନାହିଁ । (୬.୫ ଟୀକା ଦେଖ) । ଏଇ 'ମୁଁ' ହେଉଛି ସମସ୍ତ ବ୍ୟକ୍ତ କର୍ମର ବେଦନାର ସ୍ଥାନ । ଏଇ 'ମୁଁ'ରୁ ପୁଣି ପ୍ରବୃତ୍ତି ବାହାରି କର୍ମରେ ପରିଣତ ହୁଏ । ସମସ୍ତ ବ୍ୟକ୍ତ କର୍ମ ଏଇ ମୁଁ-ର ପ୍ରକାଶ । ଏହା ହିଁ ବ୍ୟକ୍ତିତ୍ୱର ଆଦର୍ଶ ବା ଯଥାର୍ଥ ବ୍ୟକ୍ତି-ତତ୍ତ୍ୱ, ଅର୍ଥାତ୍, ବ୍ୟକ୍ତିତ୍ୱ । ପ୍ରତୀତିଲବ୍ଧ ବିଶ୍ୱକର୍ମ ସଙ୍ଗେ ବିଶ୍ୱତତ୍ତ୍ୱର ଠିକ୍ ସେଇ ସମ୍ବନ୍ଧ । ବିଶ୍ୱର କର୍ମର ବ୍ୟକ୍ତିଠାରୁ ସ୍ୱତନ୍ତ୍ର ସତ୍ତା ଥିଲା ପରି ଲାଗୁଛି । ମୁଁ ଯେତେବେଳେ ଖଣ୍ଡାର ଚାପ ସହୁଛି ବା ଜାଣୁଛି, ସେତେବେଳେ ମୋର ଆତ୍ମାରୁ ଯେଉଁ ଜାଣିବା କର୍ମ ହେଉଛି, ତାଠାରୁ ଭିନ୍ନ ଖଣ୍ଡାର ସତ୍ତା ଥିଲା ପରି ଲାଗୁଛି । ଏଇପରି ବିଶ୍ୱରେ ଯେପରି କି କର୍ମପରମ୍ପରା ମୋତେ ଆଘାତରେ ଜଣାଇଦେଉଛି, ସେ ଅଛି । ମାତ୍ର ଏଇ ବିଶ୍ୱକର୍ମ ବା ବିଶ୍ୱପ୍ରକାଶରେ ଏକ ନିୟମ ବା ଶୃଙ୍ଖଳା ମଧ୍ୟ ଜଣାଯାଉଛି । ତେଣୁ ଏଇସବୁ କର୍ମର ଏକ ବେଦନାର ପୀଠ ଅଛି । ଏହା ବିଶ୍ୱର ମୁଁ । ଏହା ହିଁ ପରମାତ୍ମା ବା ବଡ଼ ଆତ୍ମା ବିଶ୍ୱାତ୍ମା । ପୁଣି ମୁଁ ନ ଥିଲେ ବା ବିଶ୍ୱାତ୍ମା କାହିଁ ? ମୋଠାରେ ବିଶ୍ୱାତ୍ମାର ବିକାଶ କର୍ମ ଆଘାତ କରି ଯେଉଁ ଜ୍ଞାନ କର୍ମ ଜାତ କରୁଛି, ସେଥିରେ ହିଁ ମୋର ପ୍ରବୃତ୍ତି ଜାଗ୍ରତ ହେଉଛି । ଧର, ଖଣ୍ଡା କାଟିଲେ, ମୁଁ ଘୁଞ୍ଚି ଯିବାକୁ ଚାଲିଯାଉଛି । ଖଣ୍ଡାର ଆଘାତରେ ମୋର କାଟିବାର ଜ୍ଞାନ ଓ ସେଇ ଜ୍ଞାନରୁ ମୋର ଆତ୍ମାରେ ଘୁଞ୍ଚିବାର ବେଦନା, ପୁଣି ପରେ, ଘୁଞ୍ଚିବା ରୂପ କ୍ରିୟା । ତେବେ ମୋର କର୍ମର ବେଦନା ଠିକ୍ 'ମୁଁ' ବା ଆତ୍ମା ନୁହେ । 'ମୁଁ' ବା ଆତ୍ମା, ଜାଣିବା ଘୁଞ୍ଚିବାର ପ୍ରତ୍ୟକ୍ଷ ବେଦନାର ପୀଠ ହେଲେହେଁ, ଯଥାର୍ଥ ବେଦନା ଆସୁଛି ସେଇ ବିଶ୍ୱାତ୍ମାରୁ । ତାହା ହିଁ ସମସ୍ତ କର୍ମର ପରମ ବେଦନାପୀଠ । ତେଣୁ ତାହା ପରମାତ୍ମା ଓ ପ୍ରତ୍ୟକ୍ଷ ଆତ୍ମା—ପ୍ରତ୍ୟଗାତ୍ମା । ଏଇ ପ୍ରତ୍ୟଗାତ୍ମା ଓ ବିଶ୍ୱାତ୍ମା ବା ପରମାତ୍ମା ପୁଣି ଏକ ପ୍ରକୃତିର ବସ୍ତୁ । ପ୍ରତ୍ୟଗାତ୍ମାକୁ ପୁଣି ଅଲଗା କରି ଅନୁଭବ କରିବାର ଉପାୟ ନାହିଁ । କର୍ମ ବିନା ଏହାର ଅନୁଭୂତି ସମ୍ଭବ ନୁହେ । ବିଶ୍ୱାତ୍ମାର ପ୍ରକାଶ ହିଁ କର୍ମ । ତେଣୁ ବିଶ୍ୱାତ୍ମା ଓ ପ୍ରତ୍ୟଗାତ୍ମା ଏକ ବସ୍ତୁ । ମାତ୍ର ଏଇଠାରେ କହିରଖିବା ଉଚିତ, ଏଇ ବିଶ୍ୱାତ୍ମା ଓ ପ୍ରତ୍ୟଗାତ୍ମା ଏକ, ଏକ ପ୍ରକୃତିର ଓ ଭିନ୍ନଭିନ୍ନ—ଏଇପରି ତିନୋଟି ମତ ହେବାର ମଧ୍ୟ ଅବକାଶ ଅଛି । ତାହା ହିଁ ଆର୍ଯ୍ୟଆଧ୍ୟାତ୍ମିକଧାରାରେ ଦେଖାଯାଇଛି । ସେ ତିନୋଟିର ନାମ ଯଥାକ୍ରମେ ଅଦ୍ୱୈତ, ବିଶିଷ୍ଟାଦ୍ୱୈତ ଓ ଦ୍ୱୈତ ବେଦାନ୍ତ ମତ । ସେ କଥା ଅନ୍ୟ ଦୃଷ୍ଟିରୁ ପରେ ବୁଝାଇ ଦିଆଯିବ । ମାତ୍ର ଏଠାରେ ଏତିକି ମନେ ରଖିବା ଉଚିତ, ଏ ଦ୍ୱୈତରେ କୌଣସି ବ୍ୟକ୍ତିବିଶେଷଦ୍ୱାରା ପ୍ରକାଶିତ (Revealed)

ଈଶ୍ୱରଙ୍କର ଆଦେଶର ଧାରଣା ବା ଭାବ ନାହିଁ । ଏ ଦ୍ୱୈତରେ ଈଶ୍ୱର ବାହାରରୁ ଜଗତର ମାନବଙ୍କୁ ଶାସନ କରି ଜଗତ ଓ ସମାଜ ଚଲାଇବାର କଳ୍ପନା ନାହିଁ । ଏହା ଭକ୍ତିତତ୍ତ୍ୱ ବୁଝାଇଲା ବେଳେ ବୁଝାଇ ଦିଆଯିବ ।

## ଦୁଇଙ୍କର ଏକ ସ୍ଥିତି—ସମାଧି—

ଏଇ ବିଶ୍ୱସତ୍ତା ହିଁ ଆର୍ଯ୍ୟଧର୍ମରେ କର୍ମନୀତିର ଭିତ୍ତି । ଏଇ 'ଋତ' ବା ବିଶ୍ୱ ସତ୍ତା ନିୟମରେ ମାନବର କର୍ମନୀତି ପ୍ରକାଶ ପାଏ । ପ୍ରତ୍ୟଗାତ୍ମାର ଅନୁଭୂତିରେ ମାନବର ବ୍ୟକ୍ତିତ୍ୱ ହିଁ ସମସ୍ତ ମାନବ କର୍ମଚେତନାର ମୂଳ ହେଲେହେଁ, ଏହା ପୁଣି ବିଶ୍ୱନିୟମର ଅଙ୍ଗୀଭୂତ । ମାନବର ସ୍ୱାତନ୍ତ୍ର୍ୟ ନାହିଁ, ଏହା ନୁହେଁ । ସ୍ୱତନ୍ତ୍ର ପ୍ରବୃତ୍ତିର କ୍ଷେତ୍ର ସର୍ବଦା ଚତୁର୍ଦ୍ଦିଗରେ ସମସ୍ତ ମାନବୀୟ କର୍ମକ୍ଷେତ୍ରରେ ବିସ୍ତୃତ ରହିଛି ସତ, ମାତ୍ର ଏଇ ସ୍ୱତନ୍ତ୍ର ଆତ୍ମିକ ଚେତନାରେ ବାସନା ବା କାମନା ଜାଗ୍ରତ ହୁଏ । ତେଣୁ ଏହା ବିଶ୍ୱଧର୍ମ-ଧାରଣା ବା 'ବ୍ୟବସାୟାତ୍ମିକା' ବୁଦ୍ଧିରେ ନିୟମିତ କରିବାକୁ ହେବ । ଏଇ ବିଶ୍ୱଧର୍ମ-ଧାରଣାରେ କର୍ମଚେତନା ନିବଦ୍ଧ ହେଲେ ମାନବ ବ୍ରହ୍ମ-ସମାଧିରେ ରହି ଯୋଗ ପାଏ । ସେଥିପାଇଁ ଭଗବାନ୍ କହିଛନ୍ତି—

"ଶ୍ରୁତିବିପ୍ରତିପନ୍ନା ତେ
ଯଦା ସ୍ଥାସ୍ୟତି ନିଶ୍ଚଳା
ସମାଧାବଚଳା ବୁଦ୍ଧିଃ
ତଦା ଯୋଗମବାପ୍ସ୍ୟସି" ( ୨.୫୩ )

ଅର୍ଥାତ୍, ବେଦର ଫଳବତ୍-କର୍ମନୀତି ଓ ଅନ୍ୟାନ୍ୟ ବାସନା ସମନ୍ୱିତ ସିଦ୍ଧାନ୍ତରେ ଅସ୍ଥିର ହେଉଥିବା ବୁଦ୍ଧି ଯେତେବେଳେ ବ୍ରହ୍ମର ବିଶ୍ୱଧର୍ମ ଚେତନାର ପରିସ୍ଥିତିରେ ସ୍ଥିର ହୁଏ, ସେତେବେଳେ ମନୁଷ୍ୟ ଯୋଗ ପାଏ । ଏହାହିଁ କର୍ମନୀତିର ଭିତ୍ତି ବା ଚେତନାର ସ୍ଥିତି । ତେବେ ମାନବର ଆତ୍ମା ନିଜର ସ୍ୱାତନ୍ତ୍ର୍ୟରେ କିପରି ଏ ସ୍ଥିତି ପାଏ ଓ ତାର ଏଇ ବିସ୍ତୀର୍ଣ୍ଣ ବିଶ୍ୱକର୍ମର ଚେତନାରେ ଆତ୍ମାର ସ୍ୱାତନ୍ତ୍ର୍ୟ ଥାଇ ମଧ୍ୟ କିପରି ସମାଧି ବା ବ୍ରହ୍ମରେ ପ୍ରତ୍ୟଗାତ୍ମା ବା ଜୀବାତ୍ମାର ଏକ ସ୍ଥିତି ହୁଏ, ପୁଣି ସେଇ ସ୍ଥିତି ଓ ସେଇ ଚେତନାରେ ସମାଜର କର୍ମପରଂପରା କିପରି ଚାଲେ, ଏ ସବୁ ପର ପ୍ରକରଣରେ କୁହାଯାଉଛି ।

## ଯଥାର୍ଥ ଚେତନାର ଭିତ୍ତି କାମନାରେ କର୍ମ କରିଯିବାରେ ନାଇଁ, କି ସନ୍ନ୍ୟାସ ବୋଲି କର୍ମ ଛାଡ଼ିଦେବାରେ ନାଇଁ—

ଏଠାରେ ଗୋଟିଏ କଥା ମନେ ରଖିବାକୁ ହେବ, ଉପରେ ଏଇ ଯେଉଁ ଶ୍ରୁତି ବା ବେଦ ସିଦ୍ଧାନ୍ତ ତଥା ତଦ୍‌ବିଧ ସିଦ୍ଧାନ୍ତରେ ଚଳି ବିଚଳିତ ବା ଅସ୍ଥିର ହେବା

କଥା କୁହାଯାଇଚ, ତାହା ଯଥାର୍ଥ ବେଦସିଦ୍ଧାନ୍ତ ନୁହେ । ବେଦର କର୍ମକାଣ୍ଡରେ କାମନାଲଭ ଓ ସ୍ୱର୍ଗସୁଖର ଶ୍ରେଦନା ବେଦର ସିଦ୍ଧାନ୍ତ ବା ବେଦାନ୍ତ ନୁହେ । ତାହା ଭଗବାନ୍ ଗୀତାରେ କହୁଚନ୍ତି । ଯଥାର୍ଥ ବୈଦିକ ଧର୍ମ ଏକ ଦିଗରେ କାମନାର ସ୍ୱାଭାବିକ ପ୍ରଭାବ ଓ ଅନ୍ୟ ଦିଗରେ କାମନା ଗ୍ଭଡ଼ିବା ଉଦ୍ୟମରେ କର୍ମ ଗ୍ଭଡ଼ିବା ଏଇ ଦୁଇଟି ଭିନ୍ନ ଚୋଦନାରେ ବିପଥଗାମୀ ହୋଇଥିଲ ଓ ଭଗବାନ୍ ଅର୍ଜୁନଙ୍କୁ ଏଇ ଦୁଇ ଦିଗରୁ ଛଡ଼ାଇ ଯଥାର୍ଥ ବୈଦିକଭିତ୍ତି ଦେଖାଇ କର୍ମରେ ଲଗାଇଥିଲେ । ସେ କଥା ପରେ ଭଲ କରି ପ୍ରସଙ୍ଗକ୍ରମେ କୁହାଯିବ । (୩.୩ ଟୀକା; ୪.୨, ୩ ଟୀକା ଦେଖ )



## ୫ । କର୍ମନିୟମର ପ୍ରକାଶ ଓ ପ୍ରସାର—ଯଜ୍ଞ

### କାମନା ଓ ସମ୍ବେଦନା—

ଜୀବାତ୍ମାର ଅନୁଭୂତ ବିଶ୍ୱବସ୍ତୁ ବା ବିଶ୍ୱକର୍ମର ସମ୍ପର୍କ ତଥା ସଂଘର୍ଷରେ ପ୍ରକଟିତ ହେଲେହେଁ, ତାହା ସ୍ୱତନ୍ତ୍ର । ବିଶ୍ୱକର୍ମର ଧାରା ଯେ ନିୟମରେ ପ୍ରକାଶ ପାଏ, ମାନବକର୍ମର ଧାରା, ସେ ନିୟମରେ ପ୍ରକାଶ ପାଏ ନାହିଁ । ବିଶ୍ୱକର୍ମରେ କୌଣସି କାମନାର ବ୍ୟାକୁଳତା, ସିଦ୍ଧି ତଥା ଅସିଦ୍ଧିର ସୂଚନା ଆମକୁ ମିଳେ ନାହିଁ । ମାନବେତର ଜନ୍ତୁର କାମନା ପ୍ରକାଶ ପାଏ, ମାତ୍ର ମାନବ କାମନାର ଶତଧାରା ସହସ୍ରଧାରା, ସେହି କାମନାର ଆହରଣ ପାଇଁ ସାଧନର ଜଟିଳତା ଦେଖା ଯାଏ ନାହିଁ । "ଆହାର ନିଦ୍ରା ଭୟ ମୈଥୁନ" ମାତ୍ରରେ ସେମାନଙ୍କର ଯେଉଁ କାମନାର ଆଶ୍ରୟ ପ୍ରକାଶ ପାଏ, ତହିଁରେ ପ୍ରକୃତ ଓ ବ୍ୟାପ୍ତି ମଧ୍ୟ ଦେଶ-କାଳାଦି ପରିସ୍ଥିତିରେ ଏତେ ସମାନ ଯେ, ଜନ୍ତୁର ବିଶ୍ୱଠାରୁ ସ୍ୱାତନ୍ତ୍ର୍ୟ ସେଥିରେ ଦେଖିବାର ନାହିଁ । ଯେଉଁ ଜନ୍ତୁ ସୃଷ୍ଟିର ପ୍ରଥମ ଦିନ ଯେ କାମନାରେ ଯେପରି ଭାବରେ ଚାଳିତ ହୋଇ ଯେ କର୍ମ ଆଚରଣ କରିଥିଲା, ତାହା ପ୍ରାୟ ସେହିପରି ଅଛି । ଏପରି କି, କୋକଶିଆଳ ବର୍ଷାରୁ ରକ୍ଷା ପାଇବାକୁ ଯେପରି ଉଚ୍ଚ ଅକର୍ଷଣୀୟ ଭୂମିରେ ଗାତ କରି ରହି ପିଲା କରୁଥିଲା, ସେହିପରି କରିଆସୁଛି । ପକ୍ଷୀ ଯେପରି ଡିମ୍ବ ଦେବା ପୂର୍ବରୁ କାଠି କୁଟା ଗୋଟାଇ ସୁରକ୍ଷିତ ବସା ତିଆରି କରୁଥିଲା, ସେହିପରି କରିଆସୁଛି । କୋଇଲି ଯେପରି କୌଶଳରେ କୁଆ ବସାରେ ଡିମ୍ବ ରଖି ପଳାଉଥିଲା, ସେହିପରି କରୁଛି । ଏପରି ଉଦାହରଣ ସର୍ବତ୍ର ଦିଆଯାଇ ପାରେ । ମାଙ୍କଡ଼ର ବହୁତ ବୁଦ୍ଧି ଓ ଏକପ୍ରକାର ସମାଜବୋଧ ନ ଦେଖାଗଲେ ମଧ୍ୟ, କାଳରେ ତାର ବିକାଶ ବା ପରିଣାମ ଦେଖାଯାଏ ନାହିଁ । ପ୍ରକୃତରେ ଯାହାକୁ ଆମେ ଜଡ଼ ବସ୍ତୁ କହୁ, ଏସବୁର ସେସବୁ ଜଡ଼ ବସ୍ତୁ ସଂଗେ କିଛି ପ୍ରଭେଦ ନାହିଁ । ଗ୍ରହଜଗତ୍ ଶୂନ୍ୟରେ ଲମ୍ବମାନ ଥାଇ କି କୌଶଳରେ ସୂର୍ଯ୍ୟ ଚାରିପାଖେ ସମାନ ବୃତ୍ତାଭାସ ରେଖା ଧରି ବୁଲୁଚନ୍ତି, ତାର ବର୍ଣ୍ଣନା ଅସମ୍ଭବ; ସେଥିରେ ଯେପରି ବୁଦ୍ଧି ଓ ବିଚକ୍ଷଣତା ଅନୁମାନ କରାଯାଇପାରେ, ଜନ୍ତୁର ବସାନିର୍ମାଣ ପ୍ରଭୃତି ସେହି ଶ୍ରେଣୀର । କୁକୁର ପ୍ରଭୃତି ଜନ୍ତୁ ମନୁଷ୍ୟ-ସଂସର୍ଗରେ ମନୁଷ୍ୟ ପରି ଛତା ଓ ଚଟି କାମୁଡ଼ି ଈପ୍ସିତ ସ୍ଥାନକୁ ନେବାର ମଧ୍ୟ ଦେଖାଯାଏ । ସେହିପରି ଧୂମକେତୁ ଗ୍ରହ ସମ୍ପର୍କରେ ଆସି ଛିନ୍ନଭିନ୍ନ ହୋଇ ଗ୍ରହ ଉପରେ ବେଳେ ବେଳେ ଉଲ୍‌କା ମଧ୍ୟ ବର୍ଷଣ କରେ । ସେଥିରେ ସବୁ ମାନବର ସ୍ୱାତନ୍ତ୍ର୍ୟ ପରି ସ୍ୱାତନ୍ତ୍ର୍ୟ ନାହିଁ । ମାନବର, ବ୍ୟକ୍ତି-ସର୍ବସ୍ୱତାରୁ ସମାଜ ଓ ବିକ୍ଷିପ୍ତ କାମନାସେବାରୁ ଶୃଙ୍ଖଳିତ କର୍ମପରଂପରାର ଶ୍ରୀବୃଦ୍ଧି ପନ୍ଥାରେ, ଯିବାରେ ସ୍ୱାତନ୍ତ୍ର୍ୟର ନିଦର୍ଶନ ସ୍ପଷ୍ଟ । ଏହି ସ୍ୱାତନ୍ତ୍ର୍ୟରେ ବିଶ୍ୱକର୍ମର ସମ୍ବେଦନା କିପରି

ସ୍ଥିର ହେବ ଓ ସେଥିରେ ସମାଜର ସ୍ଥିତି ଓ ବିକାଶ କିପରି ସମ୍ଭବ ହେବ, ତାହା ହିଁ ଦେଖିବାର କଥା ।

## ଯଜ୍ଞର ସୂଚନା—

ଏଇ ବିଶ୍ୱକର୍ମ ହିଁ ବ୍ରହ୍ମର ଯଜ୍ଞ । ସମସ୍ତ କାମନାର ସ୍ୱାତନ୍ତ୍ର୍ୟ ସତ୍ତ୍ୱେ ଏଇ ବିଶ୍ୱ କର୍ମରେ ନିଜ କର୍ମକୁ ବଳି ଦେବା ମାନବର ଯଜ୍ଞ କର୍ମ, ଏ କଥାର ସୂଚନା ଆଗେ ଦିଆଯାଇଚି । ଏବେ ମାନବର ଯଥାର୍ଥ ସ୍ୱାତନ୍ତ୍ର୍ୟ ଏଇ ଯଜ୍ଞ କର୍ମରେ କିପରି ପ୍ରତିଷ୍ଠିତ ରହି ମଧ୍ୟ ଦ୍ୱୈତର ସମାଧାନ ହୋଇଚି, ତା ବୁଝିବା ପୂର୍ବରୁ ଆର୍ଯ୍ୟଧର୍ମର ଏଇ ଯଜ୍ଞ କଥାଟିର ବ୍ୟାପ୍ତି ଓ ଯଥାର୍ଥ ତାତ୍ପର୍ଯ୍ୟ ବୁଝାଯାଉ ।

## ବେଦବାଦର ଫଳବତ୍ ଯଜ୍ଞ—

'ବେଦବାଦ'ରୁ କ୍ରିୟା କାଣ୍ଡରେ ଏଇ ଯଜ୍ଞର ପ୍ରୟୋଗ ସାଧାରଣତଃ ସୁପରିଚିତ । ବୈଦିକ ଧର୍ମର ବିକାଶରେ କାଳକ୍ରମେ ଏଇପରି ଇନ୍ଦ୍ରାଦିଙ୍କ ଉପାସନାରେ ସନ୍ତୋଷ କରି ସ୍ୱର୍ଗାଦି ଫଳଲାଭ କରିବା କାମନାରେ, ଲୋକେ ଏସବୁର କ୍ରିୟା-କାଣ୍ଡ ସୃଷ୍ଟି କରିଥିଲେ । ଏଇ ବେଦବାଦର ନାମ ଥିଲା କର୍ମ-ମାର୍ଗ । ସବୁ କର୍ମ ଛାଡ଼ି ସନ୍ୟାସ କରି ମୁକ୍ତିରେ ମନ ଦେବା ସେଇ ବେଦର ଅନ୍ୟ ବିଭାଗ ଥିଲା । ତାକୁ ଜ୍ଞାନମାର୍ଗ କହୁଥିଲେ । ତେଣୁ ଜ୍ଞାନ-ମାର୍ଗରୁ ଭିନ୍ନ ବୋଲି ଚିହ୍ନାଇବା ପାଇଁ ଏହାକୁ କହିଲେ କର୍ମ-ମାର୍ଗ । କିନ୍ତୁ ଏଇ କର୍ମ ମାର୍ଗ ବା ଯଜ୍ଞରେ ସ୍ୱର୍ଗାଦି ଫଳଲାଭ ହିଁ ଉଦ୍ଦେଶ୍ୟ । ଫଳ ପାଇବାର ଉଦ୍ଦେଶ୍ୟ ରହିଲେ ସେ କର୍ମ ହେଲା, ହେତୁ ବା ପ୍ରେରଣା ହେଲା କାମନା । ଏଇ କାମନା ମାତ୍ର ସତ୍ୟ ବୋଲି ଯେଉଁମାନେ କହି ଏଇ ଧର୍ମ ଧରନ୍ତି, ତାଙ୍କୁ ଅସୁରପ୍ରକୃତିକ ବୋଲି ଭଗବାନ୍ କହିଅଛନ୍ତି—

"ଅସତ୍ୟମପ୍ରତିଷ୍ଠଂ ତେ
  ଜଗଦାହୁରନୀଶ୍ୱରଂ
ଅପରସ୍ପରସମ୍ଭୂତଂ
  କିମନ୍ୟତ୍ କାମହୈତୁକଂ । (୧୬.୮)

ଅର୍ଥାତ୍, ସେମାନେ କହନ୍ତି, ଏ ଜଗତ୍ ସତ୍ୟ ନୁହେଁ, ଏହାର କୌଣସି ପ୍ରତିଷ୍ଠା ବା ସ୍ଥିର ସ୍ଥିତି ନାହିଁ, ଏହା ଅନୀଶ୍ୱର ବା ବେନିୟମରେ ଚାଲେ, ଏଥିର ପ୍ରକାଶମାନଙ୍କ ମଧ୍ୟରେ କାହାର ସଙ୍ଗେ କାହାର ସମ୍ବନ୍ଧ ନାହିଁ । ମନୁଷ୍ୟ, ଯେପରି ଯେଉଁ କାମନା ଯେତେବେଳେ ହୁଏ, ସେଥିରେ ଏକନିଷ୍ଠା ହୋଇ, ଅଉ କାହାର ସେଥିରେ ଭଲ ମନ୍ଦ ହେଲା କି ନାହିଁ ନ ବିଚାରି କର୍ମ କରିଯାଏ, ଏ ଜଗତର କର୍ମରାଶି ସେଇପରି । ଏଥିରେ କାହାର କାହାର ପ୍ରତି ଅପେକ୍ଷା ନାହିଁ ।

ଏ ଜଗତର ସବୁ କର୍ମର ହେତୁ କାମ ବା କାମନା । ଯେପରି କି, ସୂର୍ଯ୍ୟର ଇଚ୍ଛା ହେଲା, ସେ କ୍ଷେତ ପୋଡ଼ିଦେଲା; ନଈର ଇଚ୍ଛା ହେଲା ସେ ଗାଁଗଣ୍ଡା ବୁଡ଼ାଇ ମାଡ଼ିଗଲା —ଇତ୍ୟାଦିରେ କୌଣସି ଶୃଙ୍ଖଳା ନାହିଁ । ଜଗତର କ୍ରିୟାବଳି ଏକ ଏକ କାମନାରେ ପ୍ରତ୍ୟେକ ସ୍ୱତନ୍ତ୍ର ଭାବରେ ଗୃହୀତ ।

## କର୍ମବନ୍ଧନ—

କାମନା ଧରି ଫଳ ଉଦ୍ଦେଶ୍ୟରେ କର୍ମ କଲେ ନିଜର ଯେପରି କର୍ମରେ ଶୃଙ୍ଖଳା ଲୁଟିଯିବ, ସେଇ ଅନୁକ୍ରମେ ଜଗତର ଏଇ ଧାରଣା ହେବାରେ ବିଚିତ୍ରତା କିଛି ନାହିଁ । ଏଥିରେ ବିଶୃଙ୍ଖଳ କାମନାବଳି ମଧ୍ୟରେ ମନୁଷ୍ୟତାର ସ୍ଥିର ଆଦର୍ଶ ଫୁଟିବ କାହୁଁ ? କୌଣସି ଆଦର୍ଶ ନ ଥିବାରୁ କାମନାଜନିତ କର୍ମ ଛଡ଼ା ମନୁଷ୍ୟ ବୋଲି ଲୋକ ଭିତରେ ଆଉ କିଛି ଦେଖାଯିବ ନାହିଁ । ମନୁଷ୍ୟ ଖାଲି କର୍ମରେ ଛନ୍ଦାଛନ୍ଦି ବସ୍ତୁମାତ୍ରରେ ପରିଣତ ହେବ । ମୋଟକଥା, କର୍ମରେ ଘାଣ୍ଟି ହେଉଥିବ ବା କର୍ମରେ ବାନ୍ଧି ହୋଇପଡ଼ିବ । କାମନାମାନ ଧରି ଧରି କାମନାରୁ କାମନାକୁ ଡେଉଁଥିବ । ଜୀବନରେ ଶୃଙ୍ଖଳା ବା ଶାନ୍ତି ପାଇବ ନାହିଁ । ଅସୁରପ୍ରକୃତିର ଲୋକ ବୋଲି ଏମାନଙ୍କୁ ସୁବୋଧ୍ୟ ଭାଷାରେ ବର୍ଣ୍ଣନା କରି ଭଗବାନ୍ କହିଚନ୍ତି—

"କେଉଁ କାର୍ଯ୍ୟ କରିବାକୁ ହେବ, କେଉଁ କାର୍ଯ୍ୟ ନ କରିବାକୁ ହେବ, ଏହା ଏମାନଙ୍କୁ ଜଣା ନାଇ ଏହାଙ୍କର ନିଷ୍ଠା (ଶୌଚ) ନାହିଁ, କି ଆଦର୍ଶ ନିୟମିତ କର୍ମ (ଆଚାର) ନାହିଁ, କିଂବା ସତ୍ୟ ନାହିଁ (୧୬.୭) । ଏମାନଙ୍କର ଆତ୍ମା ବା ବ୍ୟକ୍ତିତ୍ୱ ନଷ୍ଟ ହୋଇଥାଏ, ଏମାନଙ୍କର ବୁଦ୍ଧି ବା କର୍ମବେଦନାରେ ଇନ୍ଦ୍ରିୟ ଉନ୍ନତ ନୁହେଁ, ଏମାନେ ଅନ୍ୟର ଭଲ ମନ୍ଦକୁ ଅପେକ୍ଷା ନ କରି ନିଜ କାମନା ପେଣ୍ଡି ମାଡିଯାନ୍ତି (ଉଗ୍ରକର୍ମା) । ଏଣୁ ଏମାନେ ଜଗତର ଅହିତ ହିଁ କରନ୍ତି ଓ ସେଥିରେ ଶ୍ରୀବୃଦ୍ଧି ନ ହୋଇ ନିସ୍ତ ବା ସମ ଜର ହାନି ହୁଏ; କାମନାର ଶେଷ ନାହିଁ, ସେଇ କାମନା ଧରି 'ଆମେ' 'ଆମେ' ହୋଇ ଦମ୍ଭ, ଅଭିମାନ ଓ ଉନ୍ମାଦନାରେ ବୁଡ଼ିଥାନ୍ତି । ଅଜ୍ଞାନରେ ମୂଢ଼ ହୋଇ ଏମାନେ ନିଷ୍ଠାହୀନ ହୋଇ ମନ୍ଦ କର୍ମର ଆଡ଼ମ୍ବରରେ ମାତନ୍ତି । ଏମାନଙ୍କର ଆକାଂକ୍ଷାର କଳ୍ପନାରେ ସୀମା ନ ଥାଏ, ଯେପରି କି ପ୍ରଳୟ ଯାଏ ରହି ଭୋଗ କରୁଥିବେ ବୋଲି ବିଚାରନ୍ତି । କାମ ଓ ଭୋଗ ହିଁ ସବୁ ବୋଲି ଏମାନେ ଠିକ୍ କରିଥାନ୍ତି । ଅନନ୍ତ ଆଶାମାନଙ୍କରେ ବାନ୍ଧି ହୋଇ କାମନା ଓ ବାଧା ପାଇଲେ କ୍ରୋଧରେ ଖାଲି ବିଭୋର ହୋଇ ରହନ୍ତି; କାମ ଭୋଗ ପାଇଁ ଯେ କୌଣସିମତେ ଧନ ଆଣି ରଖନ୍ତି, ସବୁବେଳେ ବିଚାରୁଥାନ୍ତି, ଧନ ଥିବାରୁ ଆଜି ଯାହା ମିଳିଲା, ପୁଣି ପରେ ପୁଣି ମିଳିବ, ମୋର ଏତେ ଅଛି, ପୁଣି କେତେ ପାଇବି; ଆଜି ଯାହାକୁ ଅଣ୍ଡା କରିବି, ପୁଣି ଯାହାକୁ ତାକୁ କେତେ ଲୋକଙ୍କୁ ଠିକ୍ କରିବି; ମୁହିଁ ପଇସାବାଲା, ମୁହିଁ ଭୋଗୀ, ଫଳ ଲାଭରେ ମୁହିଁ ସିଦ୍ଧ, ମୁହିଁ ବଳୁଆ, ମୁହିଁ ସୁଖୀ, ମୁହିଁ ଧନରେ ବଡ଼, ମୁହିଁ ଜାଣିଆ,

ମୋ ପର ଆଉ କିଏ ? ମୁହିଁ ଯାଗ କରିବି, ମୁହିଁ ଦେବ, ମୁହିଁ ମଉଜ କରିବି, ଏଇ ସବୁରେ ସେମାନେ ହତଜ୍ଞାନ । ତାଙ୍କ ଚିତ୍ତ ପ୍ରକାରକୁ ପ୍ରକାର, ସେଇ ଭ୍ରମରେ ସେ ଭୁଲୁଥାନ୍ତି; ମୋହଜାଲରେ ବାନ୍ଧ ହୋଇଥାନ୍ତି, କାମ ଭୋଗରେ ମାତିଥାନ୍ତି ଓ ନରକରେ ହିଁ ପଡ଼ି ଭୋଗୁଥାନ୍ତି······ଇତ୍ୟାଦି (୧୬.୧-୧୬) । ସେମାନେ ଯେଉଁ ଯଜ୍ଞ କରନ୍ତି (୧.୦୫) ସେ ନାମଯଜ୍ଞ ବା ନାଁକୁ ମାତ୍ର ଯଜ୍ଞ (୧.୧୭) । ସେ ଯଥାର୍ଥ ଯଜ୍ଞ ନୁହେଁ ।" (ଏଇ ନାମଯଜ୍ଞ ସମ୍ପର୍କରେ ପୁଣି ୨.୪୨-୪୪ ଦେଖ) ।

## ପୂଜା ଓ ବଳିଦାନ ଯଜ୍ଞ ନୁହେଁ—

ଏଇପରି କାମନାରେ ଗ୍ରସିତ ହୋଇ ଫଳ ପାଇଁ ଯଜ୍ଞ କରିବା ଯଥାର୍ଥ ଯଜ୍ଞ ନୁହେଁ । କିଂବା ପଶୁଚ୍ଛେଦ କରି ସେଇ ପଶୁମାଂସ ଓ ଘୃତାଦିରେ ହୋମ କରି ଇନ୍ଦ୍ରାଦିଙ୍କୁ ସ୍ତୁତ କରିବା ଯଜ୍ଞର ତାତ୍ପର୍ଯ୍ୟ ନୁହେଁ । ଏହା ଭଗବାନ୍ ବୁଝାଇଚନ୍ତି । ପୁଣି ପ୍ରକୃତ ଯଜ୍ଞ କଣ, ତା ମଧ୍ୟ ସଙ୍ଗେ ସଙ୍ଗେ କହିଚନ୍ତି । ମାତ୍ର ସେସବୁ କଥା ବୁଝାଇବା ପୂର୍ବରୁ ଯଜ୍ଞକ୍ରିୟା ଓ ଭାବର କିପରି ବିକାଶ ଓ ପ୍ରକାଶ ହୋଇଥିଲା, ତାହା ଏଠାରେ କହିଦେବା ଉଚିତ ।

## ଯଜ୍ଞର ଆଦିମ ବିକାଶ—

ଯଜ୍ଞ କହିଲେ ବୁଝାଯାଏ ବଳି, ଅର୍ଥାତ୍, ଇଚ୍ଛା ବା ଅଭିଳାଷ ପୂରଣ ନିମନ୍ତେ ଉପଯୋଗୀ ଓ ମୂଲ୍ୟବାନ୍ ଦ୍ରବ୍ୟ ତ୍ୟାଗ କରିବା । ଏହାହିଁ ମୂଳତଃ ଯଜ୍ଞର ଅର୍ଥ । ମାନବ ଅଦୃଶ୍ୟ ଓ କ୍ଷମତାଶାଳୀ ମାନବର କଳ୍ପନା କରି ସେଇ ବଳିଦାନ ଆରମ୍ଭ କରେ । ମାନବ-ତତ୍ତ୍ୱବିତ୍ ପଣ୍ଡିତମାନେ ସ୍ଥିର କରନ୍ତି, ମୂଳରୁ ଭୟରେ ଏହାର ଆରମ୍ଭ । କେହି କେହି କହନ୍ତି, ଅତି ଅସଭ୍ୟ ମାନବ ନିଜ ବା ଅନ୍ୟ କୌଣସି ଦଳର କୌଣସି ଅତି ଦୁର୍ଦ୍ଦାନ୍ତ ଭୟାବହ ନେତାର ସ୍ମୃତିରେ ଏଇ ବଳି ଆରମ୍ଭ କରିଚି । ଦୁର୍ଦ୍ଦାନ୍ତ ଭୟାବହ ଲୋକଟି ମରିଗଲା ପରେ, ତାର ପ୍ରଭାବ ଥାଇପାରେ ବୋଲି ଭୟରେ, ତାର ପ୍ରିୟ ବସ୍ତୁ ଓ ବିଶେଷରେ ଖାଦ୍ୟସବୁ ତଦର୍ଥେ ଦେବାରେ ଏଇ ବଳିର ଆରମ୍ଭ *। ମାନବବିଦ୍ୟା-ପଣ୍ଡିତ ଟାଇଲର୍ କହନ୍ତି—ପ୍ରକୃତିର ଜୀବନ୍ତ ଓ ଜଡ଼ ଶକ୍ତିରେ ଆତ୍ମା ଓ ବ୍ୟକ୍ତିତ୍ୱ ଆରୋପ କରିବା ଆଦିମ ମାନବର ଯେପରି କି ସ୍ୱଭାବସିଦ୍ଧ †। ଏଇ ମତରେ ଆଦିମ ମାନବର ଜଗତ କେବଳ ନର ଓ ଜନ୍ତୁରକ୍ତ ଲୋଲୁପ 'ଭୂତ'ମାନଙ୍କରେ ପୂର୍ଣ୍ଣ ଥିଲା । ତେଣୁ ରୋଗ-ମଡ଼କ, ଦୁର୍ଭିକ୍ଷ ପ୍ରଭୃତି ବିପତ୍ତି ପଡ଼ିଲେ ଆଦିମ ମାନବ ବିଶ୍ୱାସ କରୁଥିଲା, କୌଣସି ରକ୍ତଲୋଲୁପ ଅଦୃଶ୍ୟ ଭୂତ

---

* See—Evolution of the Idea of God" by Grant Allen.

† See—"Primitive Culture" by E. B. Tyler.

ଏହାର ହେତୁ । ତେଣୁ ଜନ୍ତୁ ବା ନରବଳି ଦେଇ ତାକୁ ସନ୍ତୋଷ କରୁଥିଲ । ଏହାହିଁ ଯଜ୍ଞର ମୂଳ ।

ବହୁ ସହସ୍ର ବର୍ଷ ପୂର୍ବେ ମାନବ ଯେତେବେଳେ ପଥର ଛଡ଼ା ଅନ୍ୟ କୌଣସି ବସ୍ତୁ, ଅର୍ଥାତ୍, ତମ୍ବା କିମ୍ବା ଲୁହା ପ୍ରଭୃତିର ବ୍ୟବହାର ଜାଣି ନ ଥିଲା, ପଥରରେ ଅସ୍ତ୍ରଶସ୍ତ୍ର କରି ଜନ୍ତୁ ମାରି ପେଟ ପୋଷୁଥିଲା, ସେତେବେଳେ ମଧ୍ୟ ମନୁଷ୍ୟ ଭିତରେ ଲୋକେ ରାଜା ହେବାର ଆରମ୍ଭ କରିଥିଲେ, ପୁରୋହିତ ହୋଇ ପୂଜା ଓ ବଳି ଦେଉଥିଲେ, ପୁଣି କୁହୁକବିଦ୍ୟାରେ ଲୋକମଙ୍ଗଳରେ ଲାଗିଥିଲେ । କେହି କିନ୍ତୁ ଲୋକଙ୍କୁ ଠକିବାକୁ ଏହା କରୁଥିଲେ, ବରାବର ଏପରି ଭାବିବା ଠିକ୍ ନୁହେଁ । ରାଜା ଯଥାର୍ଥରେ ନିଜର ସ୍ୱତ୍ୱରେ, କୁହୁକୀ ନିଜର ବିଦ୍ୟାରେ ଓ ପୁରୋହିତ ନିଜର ପୂଜା ଓ ବଳିରେ ବିଶ୍ୱାସ କରୁଥିଲେ; ଲୋକେ ମଧ୍ୟ ବିଶ୍ୱାସ କରୁଥିଲେ । କୌଣସି କ୍ଷମତାପନ୍ନ ପ୍ରାଚୀନ ମାନବର ସ୍ମୃତି ହୁଏତ କ୍ରମେ ଦେବତା ରୂପେ ପୂଜା ପାଇଥିଲା । କୌଣସି ବିପତ୍ତି ପଡ଼ିଲେ, ଲୋକେ ସେଇ ଦେବତାଙ୍କୁ ପୂଜା ଓ ବଳି ଦେଇ ସନ୍ତୋଷ କରୁଥିଲେ । ସେମାନେ ରାଜା ଓ ବଡ଼ଲୋକ ମଲାବେଳେ ସେଥି ସଙ୍ଗେ ତାଙ୍କ ପତ୍ନୀ ଓ ଭୃତ୍ୟମାନଙ୍କୁ ବଳି ଦେଉଥିଲେ । କୌଣସି ବିପତ୍ତି ପଡ଼ିଲେ ସେମାନେ ଦେବତାଙ୍କୁ ସନ୍ତୋଷ କରିବାକୁ ନରନାରୀ ଓ ପିଲାଙ୍କୁ ମଧ୍ୟ ବଳି ଦେଉଥିଲେ । ଏଇପରି ଭୟରେ ପୁରୋହିତ ଓ କୁହୁକୀଙ୍କ ଆଦେଶରେ ସେମାନେ ନିଜର ପ୍ରିୟମାନଙ୍କୁ ବଳି ଦେଲେ ଦେବତାର ସନ୍ତୋଷ ହୁଏ ବୋଲି ଧରୁଥିଲେ * । ଅତି ପ୍ରାଚୀନ ମିଶର ଓ ବାବିଲନରେ ଏଇପରି ରାଜାଙ୍କ କବରରେ ରାଣୀ, ଦାସଦାସୀଙ୍କଠାରୁ ବିଶିଷ୍ଟ ରାଜପୁରୁଷ, ସେନାପତି ଓ ରାଜସେନାମାନେ ହଣା ହୋଇଥିବାର ଓ ରଥ, ରଥବାହକ, ପଶୁ, ସାରଥି, ସୁନା, ରୂପା, ଅଳଙ୍କାର, ଖାଦ୍ୟ, ପେୟ ବସ୍ତୁ କବରରେ ପୋତା ହୋଇଥିବାର କବର ଖୋଳାହୋଇ ଦେଖାଯାଉଛି କାରଣ, ଏଇ ଅତି ପ୍ରାଚୀନ ରୀତି ସେକାଳ ପର୍ଯ୍ୟନ୍ତ ଚାଲି ଆସିଥିଲା । ଧର୍ମ-ରୀତି ବଡ କଷ୍ଟରେ ଲୋପ ପାଏ ।

## ବେଦବାଦରେ ଯଜ୍ଞର ଐତିହାସିକ ବିକାଶ—

ଏଇସବୁ ରୀତିରେ ଭାରତର ଯଜ୍ଞବିଧିର ମୂଳ ଥାଇପାରେ । ଅତି ପ୍ରାଚୀନ କାଳରେ କେବେ ନରବଳି ଦେଇ ଯଜ୍ଞ କରୁଥିବାର ସ୍ମୃତିର କିଂଚିତ୍ ଅବାନ୍ତର ଆଭାସ ବେଦରେ ମଧ୍ୟ ମିଳୁଅଛି । ଶତପଥ ବ୍ରାହ୍ମଣରେ ଅଛି, ଯଜ୍ଞର ସାର ପ୍ରଥମେ ପୁରୁଷ (ମନୁଷ୍ୟ)ରେ ଥିଲା । ତହିଁରୁ ଘୋଡ଼ା, ଘୋଡ଼ାରୁ ଗୋରୁ, ଗୋରୁରୁ ମେଣ୍ଢା, ମେଣ୍ଢାରୁ ଛେଳି, ଛେଳିରୁ ଯବ ଓ ଚାଉଳର ପୁରୋଡ଼ାଶ (ପିଠା)ରେ ରହିଲା । ତେଣୁ ଦେବତାଙ୍କୁ ପିଠା ବଳି ଦେଇ ଯଜ୍ଞ ଏବେ ହୁଏ । ପରେ ହୁଏତ ଏଇ ସ୍ମୃତିରେ

* "Outlines of History" by H. G. Wells (George Newnes Ltd.) pp. 77 & 78.

ପୁରୁଷମେଧ ପୁଣି ଆରମ୍ଭ କରିବାକୁ କେହି କେହି ଉଦ୍ୟମ କରିଥିବାର ମଧ୍ୟ ବେଦର ଅର୍ବାଚୀନ ଭାଗମାନଙ୍କରେ ପ୍ରମାଣ ମିଳେ । ମନୁଷ୍ୟର ଏଇ ଆଦିମ ଅନୁଷ୍ଠାନ ଏବେ ମଧ୍ୟ କାଳୀ ଓ ଦେବୀପୂଜାରେ କେହି କେହି ଚଳାଇବାକୁ ଯାଇ ପ୍ରାଣଦଣ୍ଡ ପାଉଥିବାର ଖବରକାଗଜରୁ ସମ୍ବାଦ ମିଳେ । ଲୋକେ ଦେବୀପୂଜାରେ ଏଇ ନର ବା ଜନ୍ତୁବଳି ପରିବର୍ତ୍ତିରେ ବିରିପିଠା ବଳି ଦେବାର ମଧ୍ୟ ସମସ୍ତେ ହୁଏତ ଜାଣିଥିବେ, ନଚେତ୍, ଅନୁସନ୍ଧାନ କରିପାରନ୍ତି ।

## ଦେବ, ଦାନବ ଓ ଅଗ୍ନି—

ସେ ଯାହାହେଉ, ଅତି ଆଦିମ ବେଦକାଳକୁ ନରବଳି ଏ ଦେଶରେ ଆର୍ଯ୍ୟଧର୍ମିମାନଙ୍କ ଭିତରେ ଲୋପ ପାଇଥିଲା । ବେଦବେଳକୁ ଲୋକେ ବହୁ ସହସ୍ର ବର୍ଷ ପୂର୍ବରୁ ପଥର ବ୍ୟବହାରରୁ ଉଠି ଧାତୁ ଏପରିକି କାହାର କାହାରି ମତରେ * ଲୁହା ବ୍ୟବହାରକୁ ଆସି ପାରିଥିଲେ । ସେମାନଙ୍କ ଦେବତାଜ୍ଞାନ ମଧ୍ୟ ବହୁଦୂର ବିକାଶ ପାଇଥିଲା; ସୂର୍ଯ୍ୟାଦି ଲୋକହିତକର ଶକ୍ତିରେ ପୁରୁଷ-କଳ୍ପନା କରି ସେମାନଙ୍କୁ ଦେବତା ବା ଆଲୋକମୟ ପୁରୁଷ ବୋଲି ନାମ ଦେଇଥିଲେ । ସେଇପରି ଅଶୁଭ ଶକ୍ତିମାନଙ୍କୁ ସେମାନେ ଦାନବ, ରାକ୍ଷସ ପ୍ରଭୃତି ନାମ ଦେଇଥିଲେ । ଏଇ ଦାନବଙ୍କୁ ପରେ 'ଅସୁର' ବୋଲି ମଧ୍ୟ କହୁଥିଲେ । ଦେବାସୁରମାନଙ୍କ ଭିତରେ ସର୍ବଦା ଯୁଦ୍ଧ ଲାଗିଥିବାର କବିତ୍ୱ କଳ୍ପନା ସତ୍ୟ ବୋଲି ବୁଝି, ସେଇ ଯୁଦ୍ଧରେ ଦେବତାଙ୍କୁ ସାହାଯ୍ୟ କରିବା ନିମନ୍ତେ, ଦେବତାଙ୍କ ବଳ ବୃଦ୍ଧି କରି ନିଜର ମଙ୍ଗଳ କରିବା ଉଦ୍ଦେଶ୍ୟରେ ସେମାନେ ଘୃତପିଷ୍ଟକ, ସୋମରସ, ଏପରି କି ପଶୁବଳି ଦେଇ ଯଜ୍ଞ କରୁଥିଲେ । ଅଗ୍ନି ଏଇ ଯଜ୍ଞରେ ସେମାନଙ୍କର ପ୍ରଧାନ ଅବଲମ୍ବନ ଥିଲା । ଅଗ୍ନିର ଆଲୋକରେ ସେମାନଙ୍କର ଅନ୍ଧକାରର ଭୟ ସର୍ବଦା ନିବାରିତ ହୋଇ ପାରୁଥିଲା । ସେଥିପାଇଁ ସେମାନେ ସର୍ବଦା ଅଗ୍ନି ରଖୁଥିଲେ । କାରଣ ରାକ୍ଷସାଦି ଅନ୍ଧକାରର ଭୟଙ୍କର ସତ୍ତ୍ୱମାନଙ୍କୁ ନିବାରଣ କରିବାରେ ଆଲୋକମୟ ଅଗ୍ନି ବା ଅଗ୍ନି ଦେବତା ସେମାନଙ୍କର ସର୍ବଦା ସୁଲଭ ଓ ସହାୟ ଥିଲେ । ଏଇ ଅଗ୍ନିଙ୍କୁ ଦେବ-ପୁରୋହିତ, ଦେବତାଙ୍କର 'ହୁତବହ' ବା ଯଜ୍ଞଭାଗ-ବହନକାରୀ ବୋଲି ବିଚାରି ସେଇ ଅଗ୍ନି ପୂଜା ଓ ସତତ ଚିରଦୀପ୍ତ ଅଗ୍ନିରେ ସେମାନେ ଦେବତାମାନଙ୍କ ପାଇଁ ନାନାପ୍ରକାର ଯଜ୍ଞ କରୁଥିଲେ । ସେଥିରୁ କ୍ରମେ ନାନାପ୍ରକାର ଗୃହ୍ୟ ଯଜ୍ଞ ଓ ଶ୍ରୌତ ଯଜ୍ଞର କ୍ରିୟାକାଣ୍ଡ ବାହାରିଥିଲା । ଗୃହ୍ୟ ଓ ଶ୍ରୌତ ସୂତ୍ରରେ ସେସବୁର

---

* 'ଅୟସ୍' ଶବ୍ଦ ବେଦରେ ଅଛି, ଅନେକ ପଣ୍ଡିତ କହନ୍ତି ଏହା 'ତମ୍ବା' । 'ଅୟୋଦଂଷ୍ଟ୍ର' ବୋଲି ଅଗ୍ନିକୁ କୁହାଯାଇଥିବାରୁ ଓ ଅଗ୍ନି ତାମ୍ରବର୍ଣ୍ଣ ଥିବାରୁ ସେମାନେ ଏ ଅନୁମାନ କରନ୍ତି । ମାତ୍ର Prof A. Macdonald କହନ୍ତି— ବେଦରେ 'ଅୟସ୍' ଅର୍ଥ ଲୁହା, 'ଅୟୋଦଂଷ୍ଟ୍ର' (ଋଗ୍‌ବେଦ ୧୦. ୮୭. ୨ ଦେଖ) ।

ଯେ ବର୍ଣ୍ଣନା ଅଛୁ, ସେଥିରୁ ଦେଖାଯାଏ ଗୃହସ୍ଥର କେବଳ ଯଜ୍ଞ ଏକମାତ୍ର ଯେପରକ କାମ ଥିଲା । କାଠ ଯୋଗଇବାଠାରୁ, ପିଠା ପାଇଁ ଗୃଣ୍ଡିଲ କରିବାଠାରୁ, ପିଠୋଉ ବାଟିବାଠାରୁ, ପିଠା ସେକିବାଠାରୁ, ସୋମଲତା ଆଣିବାଠାରୁ, ତାକୁ ଛେଚିବା ଗୁଣିବା ଇତ୍ୟାଦିଠାରୁ, ଅଗ୍ନିରେ ପକାଇ ଯଜ୍ଞ କରିବା ପର୍ଯ୍ୟନ୍ତ; ସେଇପରି ଖୁଣ୍ଟ ପୋତିବାଠାରୁ, ପଶୁକୁ ଆଣିବାଠାରୁ, ତାକୁ ବାନ୍ଧିବାଠାରୁ, ତା ବେକମୋଡ଼ି ମାରିବାଠାରୁ †, ତା ନାଭିରୁ ଚର୍ବି ( ବସା ) କାଢ଼ିବାଠାରୁ, ତାକୁ ନେଇ ଅଗ୍ନିରେ ଦେବତାଙ୍କ ନାମରେ ଦେବା ପର୍ଯ୍ୟନ୍ତ ସବୁର ପ୍ରତ୍ୟେକ ସାମାନ୍ୟ କ୍ରିୟାରେ ମଧ୍ୟ କୁଆଡ଼କୁ ମୁହଁ କରିବ, କିଏ କେଉଁଠାରେ କେତେ ଦୂରରେ କିପରି ଠିଆହୋଇ ଠିକ୍ କିପରି କେଉଁ କାର୍ଯ୍ୟ କରିବ, ପ୍ରଭୃତି ବିଧି ଓ ପ୍ରତିକାର୍ଯ୍ୟରେ ବେଦମନ୍ତ୍ର ଉଚ୍ଚାରଣ ବା ବ୍ରହ୍ମସ୍ମରଣ ପ୍ରଭୃତିର କ୍ରିୟାମାନ ପୂର୍ଣ୍ଣ ରହିଚି । କିଛି ମନକୁ କରିବାର ନାଇ କି ମୁହୂର୍ତ୍ତେ ଫୁରୁସତ୍ ନାହିଁ ଏଥିରେ ପୁଣି ସାଧାରଣ ଯଜ୍ଞରେ ହୋତା, ଅଧ୍ୱର୍ଯ୍ୟୁ, ଉଦ୍‌ଗାତା ଓ ବ୍ରହ୍ମା; ପୁଣି ବଡ଼ ବଡ଼ ଯଜ୍ଞରେ ଆହୁରି ବେଶି ପୁରୋହିତର ବରଣ ଓ ସେମାନଙ୍କର ଯଥାସ୍ଥାନରେ କ୍ରିୟା ଓ ନିର୍ଦ୍ଦିଷ୍ଟ ବେଦମାନଙ୍କରୁ ନିର୍ଦ୍ଦିଷ୍ଟ ମନ୍ତ୍ରମାନଙ୍କର ପାଠ ମଧ୍ୟ ସେଇପରି ବନ୍ଧା ରହିଚି । ଫଳ ପାଇଁ ଯଜ୍ଞକାର୍ଯ୍ୟ ଯେ ପ୍ରଥମେ କରାହେଉଥିଲା ଓ ସେଇ ଉଦ୍ଦେଶ୍ୟ ଯେ ସେଥିରେ ପ୍ରଚ୍ଛନ୍ନ ଥିଲା ଓ ଦେବତାଙ୍କୁ ଖାଦ୍ୟପେୟାଦିରେ ସାହାଯ୍ୟ କଲେ ଦେବତାମାନେ ଖୁସି ହୋଇ ମଲା ପରେ ଯାଜ୍ଞିକକୁ ସ୍ୱର୍ଗକୁ ନେବେ, ଏସବୁ କାମନା ଓ ଅଭିଳାଷ ଯେ ସେଥିରେ ଅନ୍ତର୍ନିହିତ ଥିଲା, ଏଥିରେ ସନ୍ଦେହ ନାହିଁ ।

## କାମନାରୁ ଆନୁଷ୍ଠାନିକ ନିଷ୍କାମତା—

ମାତ୍ର ବେଦର କଠୋର, ନିୟମବଦ୍ଧ, ନିସନ୍ଧା ଅନୁଷ୍ଠାନିକତା ପ୍ରତି ଦୃଷ୍ଟିଦେଲେ ସ୍ପଷ୍ଟ ବୁଝାଯାଏ, ଏଥିରେ କୌଣସି ଅଭିଳାଷ ବା ଉଦ୍ଦେଶ୍ୟକୁ ଗୃହିବାର ଅବକାଶ ବା ଅଭିରୁଚି ପାଇଁ ଆଦୌ ସ୍ଥାନ ନାହିଁ । ଅନୁଷ୍ଠାନର ନିଷ୍ଠା ଓ ତତ୍ପରତାରେ ମନୁଷ୍ୟର ସ୍ୱାର୍ଥ, ଫଳକାମନା ବା ଅଭିଳାଷ ନିମନ୍ତେ ସମୟ ବା ଚିନ୍ତାର ରହୁ ନାହିଁ । ପୁଣି ଯଜ୍ଞପର ବ୍ୟକ୍ତିର ଜୀବନର କ୍ରିୟା ପ୍ରତି ଦୃଷ୍ଟି ଦେଲେ ବିସ୍ମିତ ହେବାକୁ ହୁଏ । ସକାଳୁ ଉଠିବାରେ ମନ୍ତ୍ର ଓ ଅନୁଷ୍ଠାନ, ସେଇଠାରୁ ବହିର୍ଦ୍ଦେଶ ଯିବା, ହାତମାଟି କରିବା, ଦାନ୍ତକାଠି ଭାଙ୍ଗିବା, ତାକୁ ଶାସ୍ତ୍ରୀୟ ମାପରେ ମନ୍ତ୍ର ବୋଲି ତିଆରି କରିବା, ଦାନ୍ତ ଘଷିବା, ମନ୍ତ୍ର ବୋଲି ନିଷ୍ଠାରେ ଜଳରେ ପଶିବା—ଏଇପରି ଶୋଇବାକୁ ଯିବା ପର୍ଯ୍ୟନ୍ତ ସବୁର ନିଷ୍ଠା ବିଧି ଓ ଅନୁଷ୍ଠାନ । ତାର

† ଯଜ୍ଞରେ ଛେଳିକୁ ବେକ ମୋଡ଼ି ମାରିବାର ବିଧି । କଟାରି ବା ଖଣ୍ଡା ଲାଗେ ନାହିଁ ।

ଜୀବନର ପ୍ରତ୍ୟେକ କ୍ରିୟା ଯଜ୍ଞ, ପ୍ରତ୍ୟେକ କର୍ତ୍ତବ୍ୟ ଯେପରି କି ନିଜ ପାଇଁ ନୁହେଁ । । ଏବେ ମଧ୍ୟ ଏପରି ଅନେକ ନିଷ୍ଠାପର ଯଜ୍ଞସାଧକ ପ୍ରାଚୀନପନ୍ଥୀମାନଙ୍କ ଭିତରେ ଦେଖା ଯାଇପାରନ୍ତି । ସେମାନେ ପ୍ରାଚୀନମାନଙ୍କ ପରି ଅବଶ୍ୟ 'ଆହିତାଗ୍ନି' ହୋଇ ଠିକ୍ ଗୃହ୍ୟ ଓ ଶ୍ରୌତସୂତ୍ର ବିଧିରେ ଯଜ୍ଞମାନଙ୍କର ଅନୁଷ୍ଠାନରେ ନିରତ ରତ ନୁହନ୍ତି । କାଳକ୍ରମେ ଯଜ୍ଞର ପ୍ରକୃତି, ତଥା ଅନୁଷ୍ଠାନର ପ୍ରକାର ବଦଳି ଯାଇଛି । ମାତ୍ର ଏଇମାନଙ୍କୁ ଦେଖି ଯଦି ସେକାଳ 'ଆହିତାଗ୍ନି' ଯାଜ୍ଞିକମାନଙ୍କ ଜୀବନ କଳ୍ପନା କରାଯାଏ, ତେବେ କେହି କହିବେ କି ସେମାନେ କାହିଁକି, କି କାମନାରେ ଏପରି ଲାଗିଥାନ୍ତି । କେହି ଗାଳି ଦେଲେ ସେଥିରେ ରାଗ କରିବାକୁ ପର୍ଯ୍ୟନ୍ତ ତାଙ୍କର ବେଳ ନ ଥାଏ । ତରକାରୀ କଣ ହେବ ନ ହେବ, ଧାନ ହେଲା କି ବାଲି ମରୁଡ଼ି ମଲା, ଏଥିପାଇଁ ଚିନ୍ତା କରିବାକୁ ବେଳ ନଥାଏ । ଏପରି କି ପୁଅ ମାଇପ ମରିଗଲେ ମଧ୍ୟ ଦୁଃଖ କରିବାର ଅବକାଶ ନଥାଏ । ସକାଳୁ ଉଠି ଶୋଇବା ଯାଏ କାମ । ଏଥିରେ ପୁଣି ଏଇ ନିତ୍ୟ ଶ୍ରାଦ୍ଧ, ପ୍ରାୟଶ୍ଚିତ୍ତ ଆଦି ପଡ଼ିଗଲେ, ସେ ନୈମିତ୍ତିକ କ୍ରିୟା ପାଇଁ ତାଙ୍କୁ ବହୁ କଷ୍ଟରେ ନିତ୍ୟକ୍ରିୟା ସଂକ୍ଷେପ ବା ସଂକୁଚିତ କରି କ୍ଷୁବ୍ଧ ହେବାକୁ ହୁଏତ ପଡ଼େ । ସେଇମାନଙ୍କ କର୍ମ ଏକପ୍ରକାର କାର୍ଯ୍ୟରେ ନିଷ୍କାମ ନୁହେଁ କି ? ବେଦର କର୍ମକାଣ୍ଡୀମାନଙ୍କ ମଧ୍ୟରେ ଯେଉଁ ନିଷ୍କାମ କର୍ମର ପ୍ରସାର ହୋଇଥିଲା, ତାହା ଠିକ୍ ଏଇପରି । ତାହା କାହିଁକି ଓ କିପରି ହେଲା, କୁହାଯାଉଛି ।

## ବେଦରେ ବହୁଦେବତାରେ ଏକର ଧାରଣା—

ମାନବତତ୍ତ୍ୱବିତ୍ ପଣ୍ଡିତମାନଙ୍କ ଗବେଷଣାର ପନ୍ଥା ଓ ସିଦ୍ଧାନ୍ତମାନ ପର୍ଯ୍ୟାଲୋଚନା କରି ଦେଖିବସିଲେ ହୁଏତ ଦେଖାଯିବ, ଅତି ଆଦିମ ଅବସ୍ଥାରେ— ମନୁଷ୍ୟ ଯେତେବେଳେ ହୁଏତ ମନୁଷ୍ୟପଦବାଚ୍ୟ ନ ଥିଲା, ଘୋର ଓ ଦୂର ଅଜ୍ଞାତର ସେଇ ଅନ୍ଧକାରଯୁଗରେ—ଭୟରେ ଦୁରନ୍ତ ଦେବତାଙ୍କୁ ସନ୍ତୋଷ କରିବା ନିମନ୍ତେ ପୂଜା, ବଳି ବା ଯଜ୍ଞ ଆଦିର ଉଦ୍ଭବ ହୋଇଥିଲା । ସେଥିରେ ହୁଏତ କୁହୁକ ବିଦ୍ୟା ମିଶି ଅତି ସାମାନ୍ୟ ଓ ସୁଲଭ କ୍ଷୁଦ୍ର ଅନୁଷ୍ଠାନର ସୃଷ୍ଟି ହୋଇଥିଲା । ଏବେ ପୃଥିବୀର ଅତି ଅସଭ୍ୟମାନଙ୍କ ଭିତରେ ଯେଉଁ ପୂଜା ଓ ବଳିର ବିଧି ଦେଖାଯାଏ, ସେ ବିଧି ହୁଏତ ତାଠାରୁ ଆଉରି ଆଦିମ, ସରଳ ଓ ଯୁକ୍ତିହୀନ ଥିଲା । ମାତ୍ର ବେଦର, ଆଦିକାଳ ଓ ସେ ଆଦିମ ଅସଭ୍ୟକାଳ ମଧ୍ୟରେ ବ୍ୟବଧାନ ଆକାଶ ପାତାଳ । ଏହା ସେଇ ବେଦରୁ ପ୍ରମାଣିତ ହୁଏ । ଋଗ୍‌ବେଦ ସଂହିତାର ପ୍ରାଚୀନତମ ସୂକ୍ତରେ ମଧ୍ୟ ଅଛି—

"ଇନ୍ଦ୍ରଂ ମିତ୍ରଂ ବରୁଣଂ ଅଗ୍ନିଂ ଆହୁଃ
ଅଥୋ ଦିବ୍ୟଃ ସଃ ସୁପର୍ଣ୍ଣଃ ଗରୁତ୍ମାନ୍ ।
ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି
ଅଗ୍ନିଂ ଯମଂ ମାତରିଶ୍ୱାନଂ ଆହୁଃ ।

(ଋଗ୍‌ବେଦ, ୧. ୧୬୪.୪୬)

ଅର୍ଥାତ୍—ଇନ୍ଦ୍ର, ମିତ୍ର, ବରୁଣ, ଅଗ୍ନି ବୋଲି (ତାଙ୍କୁ) କହନ୍ତି; ସେଇ ଏକା ଦିବ୍ୟ ପକ୍ଷଯୁକ୍ତ ପକ୍ଷୀ (ସୂର୍ଯ୍ୟ); ଏକମାତ୍ର ସତ୍ତ୍ୱ ବା ପ୍ରକାଶର ମୂଳତତ୍ତ୍ୱକୁ ବେଦଜ୍ଞ-ମାନେ ବହୁ ପ୍ରକାରରେ କହନ୍ତି; ( ତାଙ୍କୁଇ ) ଅଗ୍ନି, ଯମ ଓ ମାତରିଶ୍ୱା ବୋଲି କହନ୍ତି । ବେଦର ଅନ୍ୟାନ୍ୟ ସ୍ଥଳରେ ସ୍ପଷ୍ଟଭାବରେ ଏଇ ବିଶ୍ୱର ଏକତତ୍ତ୍ୱ ଓ ସୃଷ୍ଟି ବା ପ୍ରକାଶର ଏକ ମୂଳ ପ୍ରଭୃତିର ଉଲ୍ଲେଖ ଦେଖାଯାଏ । କେତେ ବା ପୁଣି କବିତାରେ ଅତି ସୁନ୍ଦରଭାବରେ ଏଇ ଭାବର ବର୍ଣ୍ଣନାଚିତ୍ର ବିରାଟ ପୁରୁଷ ପ୍ରଭୃତିରେ ପ୍ରକାଶ ପାଇଥିବାର ଦେଖାଯାଏ । ସେସବୁ ପରେ ପ୍ରସଙ୍ଗକ୍ରମେ କୁହାଯିବ ।

## ଅନୁଷ୍ଠାନ-ପ୍ରୟୋଗରେ ସଂସ୍କାର ପ୍ରକ୍ରିୟା—

ଏଠାରେ ଏତିକିମାତ୍ର କହିବାର କଥା ଯେ, ବେଦର ଅତି ଆଦିମକାଳରେ ମଧ୍ୟ ମାନବ-ମନୀଷା ଏସବୁ ଦେବତା କଳ୍ପନା ମଧ୍ୟରେ ବିଶ୍ୱତତ୍ତ୍ୱର ଧାରଣାକୁ ଉଠିଥିଲା । ଫଳରେ ଯଜ୍ଞାଦିର କର୍ମ କାଣ୍ଡୀୟ ସମାଜର ଅନ୍ତତଃ ଏକ ଶ୍ରେଣୀର ଲୋକଙ୍କ ମଧ୍ୟରେ ଗୌଣ ବିବେଚିତ ହୋଇଥିଲା । ସେମାନେ ହୁଏତ ଏସବୁ ଯଜ୍ଞାଦିର କର୍ମକୁ ଏକାବେଳକେ ପରିତ୍ୟାଗ କରିଥିଲେ, କିମ୍ବା ବେଦର ଏପରି ସ୍ୱର୍ଗାଦି କାମନା ବା ଦେବତାଙ୍କ ପ୍ରୀତି ଓ ଜଗତର ଶୁଭ କର୍ମରେ ବଳଶାଳୀ କରିବା ଅଭିଳାଷରେ ଯଜ୍ଞର ପ୍ରକୃତ ଯଜ୍ଞତ୍ୱ ନୁହେ ବୋଲି ମତ ପ୍ରଚାର କରିଥିଲେ । ହେଲେହେଁ ଧର୍ମର କୌଣସି ଅନୁଷ୍ଠାନ ଥରେ ପଡ଼ିଗଲେ ତା ସମାଜ ସହଜରେ ଛାଡ଼େ ନାହିଁ । ଯେପରି ତା ଥିଲା, ପୂର୍ବ ପୂର୍ବପୁରୁଷମାନେ ଯେପରି କରିଥିଲେ, ସେଇପରି କରିବାରେ ହିଁ ଯଥାର୍ଥ ଧର୍ମ ଅଛି ବୋଲି ସାଧାରଣତଃ ଲୋକେ ବୁଝନ୍ତି । ଏହା ଛାଡ଼ି ଅନ୍ୟ ପ୍ରକାର କରିଯିବା ମଧ୍ୟ ମୁଖ୍ୟମାନଙ୍କ ଭିତରେ ସହଜ ହୁଏ ନାହିଁ । ସେମାନେ ତେଣୁ ସେଇସବୁ ପ୍ରଥା ବା ସଂସ୍କାରକୁ ଅର୍ଥ କରି ସେଇ ମାର୍ଗରେ ଟିକିଏ ସଂଶୋଧନ କରି ହୁଏତ କର୍ମର ଧାରା କିଛିତ ଫେରାଇଦିଅନ୍ତି । ଏବେ ସମାଜରେ ଯାହାକୁ ଶାସ୍ତ୍ର-ସଂସ୍କାରକମାନେ କୁସଂସ୍କାର ବୋଲି ଛାଡ଼ି ଦେଉଚନ୍ତି, ରକ୍ଷଣଶୀଳ ସମାଜ ସେଥିରୁ କିପରି ଅର୍ଥ ବାହାର କରି ସେଇ ସଂସ୍କାରର ଟିକିଏ ଧାରା ବଦଳାଇ ଚାଲୁଚନ୍ତି, ତା ପର୍ଯ୍ୟାଲୋଚନା କଲେ ଏ ବିଷୟ ଏଠାରେ ସୁବୋଧ ହେବ ।

## ଉଦାହରଣ 'ନିନାଥମେଳା'—

ଆଜକୁ ପ୍ରାୟ ୩୫ ବର୍ଷ ତଳେ କଟକର ସାହୁ ଉପାଧିଧାରୀ ଜଣେ ବହି-ଦୋକାନୀ ନିଜେ ଚଳମ ଖାଉଥିଲେ । ତାଙ୍କୁ ଧର୍ମର ଅନୁଷ୍ଠାନରେ ପକାଇ, ଯୋଗୀ ମହାଦେବଙ୍କ ଦ୍ୱାହି ଦେଲେ ମଧ୍ୟ ଲୋକେ ମାନିଲେ ନାହିଁ । ସେ ଧର୍ମକ୍ରିୟା ବୋଲି ଚଳମ ଖାଇ ନ ପାରି ହୁଏତ ଲଜ୍ଜିତ ହେଲେ ଓ ଫଳରେ 'ନିନାଥମେଳା' ବୋଲି ଖଣ୍ଡିଏ 'ଚଳମ-ଯଜ୍ଞ'ର ଶାସ୍ତ୍ର (ବେଦ ?) ଲେଖି ତାକୁ ଛପାଇ ପଇସାଏ ଲେଖାଏଁ

ଅନ୍ୟାନ୍ୟ ବହୁ ସାଙ୍ଗେ ଲିଖିଲେ । ସେ ପୁସ୍ତକରେ ସାଧୁଙ୍କ ନାମ ମଧ୍ୟ ଥିଲା । ହେଲେ ହେଁ ଲୋକେ କ୍ରମେ 'ନିନାଥମେଳା'ର ମହାଯଜ୍ଞରେ ବଂଶଧାରାଠାରୁ ସୁବର୍ଣ୍ଣରେଖା ଯାଏ, ପୁଣି ସୁବର୍ଣ୍ଣରେଖା ଡେଇଁ କଲିକତା, ରେଙ୍ଗୁନ୍, ଜାମସେଦପୁର ଓ ଆସାମ ଚା' ବଗିଚା କୁଲି ବସ୍ତିର ପଂକ୍ତିପର୍ଯ୍ୟନ୍ତ ସବଂଶ କଲିକାତା କଲ ଓ ତାମ୍ର-କୂଟର ଯେଉଁ ପାବନ ଧୂମ୍ରଧୂମ ଉଠାଇ ଏ ଦେଶରେ ଶୁଭ୍ରାନ୍ତ ପରେ ମୁଦ୍ଗର ଘଣ୍ଟା ଦେଖାଇଲେ, ତା ବିଶେଷ ଅଜଣା କଥା ନୁହେ । କେତେକ ଶିଷ୍ଟଲୋକ ସେଥିରେ ଘୃଣା କଲେ ସତ, ମାତ୍ର ଲୋକେ ବୁଝିଲେ ମଧ୍ୟ ପିଲାଙ୍କ ପାଇଁ ପୀରପୂଜା ଓ ପାଲା ଯାଇଥିଲା ପରି ନିନାଥମେଳା ଯାତ ସମାଜର ଗତାନୁଗତିକ ଚିହ୍ନ ଛାଡ଼ି ପାରିଲେ ନାହିଁ । ଶେଷକୁ ପୁରୀର ଜଣେ ପ୍ରସିଦ୍ଧ ପଣ୍ଡିତ ଗଞ୍ଜାମର କୌଣସି ଜମିଦାର ରାଜାଙ୍କ ଆନୁକୂଲ୍ୟ ଓ ଗଞ୍ଜେର ପୃଷ୍ଠପୋଷକତାରେ ସେଇ ସାଧୁ ରଚିତ ବହୁ ସଂସ୍କରଣଗତ 'ନିନାଥମେଳା'କୁ ସଂସ୍କୃତରେ ଏକ ଶାସ୍ତ୍ରରୂପେ ଅନୁଷ୍ଟୁପ୍ ଶ୍ଳୋକରେ ବାନ୍ଧିଦେଇ ମୁଦ୍ରାଯନ୍ତ୍ରରୁ କାଢ଼ି ଚାରିପଇସା ମୂଲ୍ୟରେ ବଜାରରେ ପକାଇ ଦେଲେ ! ପଣ୍ଡିତ ମହାଶୟଙ୍କର ବିଶେଷ ଭକ୍ତିରେ ପୁସ୍ତକଟିର ମୂଳରେ ଏବେ ଲେଖା ହେଉଛି—

କୈଳାସ ଶିଖରେ ରମ୍ୟେ
ଗୌରୀ ପୃଚ୍ଛତି ଶଂକରଂ
ଅଦ୍ୟୈବ ବ୍ରୂହି ମେ ନାଥ
ନିନାଥମିଳନାଂ କଥାଂ ।

ଏଇପରି ବ୍ୟାଖ୍ୟାଯୁକ୍ତ ହେବାରୁ 'ନିନାଥମେଳା' ଏବେ କେବଳ ଭଜନ ପଇସାର ଗଞ୍ଜେଇ, ଧୂଆଁପତ୍ର, ତେଲ ମାତ୍ରରେ ନ ରହି, ନାମକୁ ମାତ୍ର ଗ୍ରହଣଦ୍ୱାରା ପରିପ ଲଗିଲାପରି ଗଞ୍ଜେଇର ତାତ୍ତ୍ୱିକ ସମ୍ପର୍କ ରଖି ଚୁଡ଼ାଘସା କଦଳୀଚକଟାର ଘୋର ଘଟାରେ ହୁଏତ ପରିଣତ ହୋଇ 'ସତ୍ୟନାରାୟଣ ପୂଜା'ର ଶିରିଣି ( ଚିନି ) ଅବଲମ୍ବନରେ ଅତିଥିଭୋଜନର ଆଡ଼ମ୍ବରକୁ ବଳିଗଲାଣି । ନିନାଥମେଳାରେ ମୁଖ୍ୟମାନେ ହୁଏତ ଗଞ୍ଜେଇ ଖାଇବେ ନାହିଁ, ଗଞ୍ଜେଇ ପୂଜାକରି ଯଜମାନଙ୍କୁ ଛୁଆଁଇ ଦେଇ ପାଣିକି ପକାଇ ଦେବେ ବା ଦ୍ରବ୍ୟ ଲୋଭର ବଶବର୍ତ୍ତୀ ହୋଇ ବାବାଜୀ ଖୋଜି ଦେଇ ପକାଇବେ; ମାତ୍ର ସତ୍ୟନାରାୟଣ ନାମରେ ପୀରପୂଜା ରହିଲା ପରି ନିନାଥମେଳା 'ଗୌରୀ ପୃଚ୍ଛତି ଶଂକରଂ' ନାମ ଧରି ଅନ୍ତତଃ ଅତିଥିସେବାର ବାହାନାରେ ଭୋଜିର ଆଡ଼ମ୍ବରରେ ରହିବ । ସଂସ୍କାରର ଏହା ସ୍ୱାଭାବିକ ନିୟମ । ମୁଖ୍ୟମାନେ ମଧ୍ୟ ଏଥିରୁ ସାହସ କରି ସହଜରେ ବାହାରିପାରନ୍ତି ନାହିଁ । ମାତ୍ର ଯଥାର୍ଥ ବିବେଚନାପର ଓ ସତ୍ସାହସଯୁକ୍ତ ଶିଷ୍ଟମାନଙ୍କ ପ୍ରଭାବରେ ସଂସ୍କାରମାନଙ୍କ ପ୍ରକାର ବଦଳିଯାଏ ଓ ଫଳରେ ସେଥିରେ ହୁଏତ ତତ୍ତ୍ୱ ପର୍ଯ୍ୟାଲୋଚନାରେ ଦୋଷ ରହିଲେ ମଧ୍ୟ କାର୍ଯ୍ୟରେ ସେପରି କିଛି ଦୋଷ ଦେଖିବାକୁ ନ ଥାଏ । ଆଦିମ ବୈଦିକ ଯୁଗରୁ ଯଜ୍ଞର ଏଇ ଅବସ୍ଥା

ଘଟିଥିଲା । ତପୋନିଷ୍ଠ ଶିଷ୍ଟମାନେ ବିଶ୍ୱ ପ୍ରକାଶର ସେଇ ସତ୍ୟ, ସତ୍ୟ ବା ତତ୍ତ୍ୱଠାରେ ମନଦେଇ ଫଳ ପାଇଁ କରାଯାଉଥିବା ଯଜ୍ଞକର୍ମରେ ଘୋର ଅସାରତା ଦେଖିଲେ । କାମନା ହିଁ କର୍ମର ଘୋର ବନ୍ଧନ ବୋଲି ମଧ୍ୟ ପ୍ରଚାର କଲେ । ପୂର୍ବେ ଯେଉଁ ଅସୁରପ୍ରକୃତିକ ଲୋକଙ୍କ କାର୍ଯ୍ୟ କୁହାଯାଇଚି, କାମନାମୂଳକ କର୍ମକୁ ସେଇପରି ବୋଲି ହୁଏତ କ୍ରମେ ବର୍ଣ୍ଣନ କରିଥିବା ମଧ୍ୟ ସମ୍ଭବ । କାରଣ, ବିଶ୍ୱର ଏକ ତତ୍ତ୍ୱରେ ମନ ବସିଲେ କାମନାରେ ରୁଚି ଆଉ ବା କାହୁଁ ଆସିବ ?

## ଅନୁଷ୍ଠାନର ପ୍ରସାର—

ଯଜ୍ଞପର ମୁଖ୍ୟମାନଙ୍କ ଉପରେ ଏହାର ପ୍ରଭାବ ପଡ଼ିଲା । ସେମାନେ କ୍ରମେ ଯଜ୍ଞକୁ ଏକ ମହାପବିତ୍ର କର୍ମପରଂପରା ଓ ଜୀବନର ଧର୍ମସାଧନା ବୋଲି ଧରି ବସିଲେ । ଫଳରେ କର୍ମକାଣ୍ଡର ବିସ୍ତୀର୍ଣ୍ଣତା, ସୂକ୍ଷ୍ମାତିସୂକ୍ଷ୍ମ ବିଧି ଓ ନିର୍ଦ୍ଦେଶମାନ ବାହାର ପଡ଼ିଲା । ଏହା ହିଁ ବେଦର ପର ସ୍ତରର ବିକାଶ । ଏହାକୁ ବ୍ରାହ୍ମଣ କହନ୍ତି । ସେ କଥା ଏବେ ଥାଉ । ଏଇ କର୍ମକାଣ୍ଡର ମନୁଷ୍ୟ କ୍ରମେ ନିଜର ନିତ୍ୟ ନୈମିତ୍ତିକ ତଥା କାମ୍ୟକର୍ମ ସବୁକୁ ଭଲ କରି ବାନ୍ଧିଲା ଓ ନିଷ୍ଠାରେ ସେଥିରେ ଲାଗିଲା । କ୍ରମେ ସେ କର୍ମପାଇଁ ମାତ୍ର କର୍ମ କଲା । କାମନା ମନରୁ ବହୁ ଦୂରକୁ ଚାଲିଗଲା । ଏଇପରି ଜ୍ଞାନ ସଙ୍ଗେ କର୍ମର ଏକ 'ମୀମାଂସା' ହୋଇଗଲା । ଏଇ କର୍ମତତ୍ତ୍ୱ ପରେ ମୀମାଂସା ଦର୍ଶନରେ ଜୈମିନି ବିଧିବଦ୍ଧ ଓ ସୂକ୍ଷ୍ମଯୁକ୍ତିଭାବରେ ପ୍ରକାଶ କରିଥିଲେ । ( ୩. ୩ ଟୀକା, ୩.୯ ଟୀକା ଦେଖ )—

## ଜୈମିନିଙ୍କ ନିଷ୍କାମ ଯଜ୍ଞାର୍ଥ କର୍ମ—

ଜୈମିନିଙ୍କ ମୀମାଂସା-ସୂତ୍ରରେ ପରେ ପ୍ରକାଶିତ କର୍ମବାଦ ଏଇପରି ବସ୍ତୁତଃ ନିଷ୍କାମ କର୍ମରେ ପରିଣତ ହେଲା । କର୍ମର ପ୍ରତ୍ୟେକ ବିଭାଗ, ଉପବିଭାଗ ଓ ଅନୁବିଭାଗରେ ସୂକ୍ଷ୍ମରୁ ସୂକ୍ଷ୍ମାତିସୂକ୍ଷ୍ମ କ୍ରିୟାମାନ ଧରି ଅବଶ୍ୟ କର୍ତ୍ତବ୍ୟ•ବିଧି ସବୁ ଧରି ବିଧି ବାନ୍ଧି ଦିଆଗଲା । ଗୃହସ୍ଥ କିଛି ନ ଜାଣି ମଧ୍ୟ ସେଇସବୁ ବିଧିବଦ୍ଧ କର୍ତ୍ତବ୍ୟର ଅତି ପ୍ରସାରିତ ଅଥଚ ସୀମାବଦ୍ଧ ପରିସ୍ଥିତି ମଧ୍ୟରେ ନିଜକୁ ବରାବର ନିଯୁକ୍ତ ରଖିବା ହିଁ ତାର ଏକ-ମାତ୍ର କର୍ମ ହେଲା । ଏବେ ମଧ୍ୟ ଦେଶରୁ ଏ ରୀତି ଓ ଏ ଧାରଣାରେ କର୍ମ କରିସିବା ଲୋପ ହୋଇ ନାହିଁ । ପ୍ରାଚୀନମାନଙ୍କ ମଧ୍ୟରେ ଏପରି ବହୁ ଲୋକ ଏବେ ଅଛନ୍ତି, ଯେଉଁମାନେ ଏଇପରି ଆଚାର-ନିଷ୍ଠ ଓ ଅନୁଷ୍ଠାନକୁ ସର୍ବସ୍ୱ ମାନି କର୍ମ କରୁଥାନ୍ତି । ସେମାନେ କହନ୍ତି, ସନ୍ଧ୍ୟା-ବନ୍ଦନା, ବୈଶ୍ୱଦେବ ପ୍ରଭୃତି ନିତ୍ୟ ତଥା ଶ୍ରାଦ୍ଧାଦି ନୈମିତ୍ତିକ କାର୍ଯ୍ୟ କଲେ କିଛି ଲାଭ ନାହିଁ; ମାତ୍ର ନ କଲେ ପାପ ଲାଗେ । ସେ କାହିଁକି ସେସବୁ ଶୌଚ, ଆଚାର ଓ ନିଷ୍ଠାରେ କରନ୍ତି, ତା ସେ ନିଜେ କହିପାରିବେ ନାହିଁ । ମାତ୍ର ବର୍ଣ୍ଣାଶ୍ରମ ଧର୍ମରେ ଏହା ତାଙ୍କର ଏକାନ୍ତ କର୍ତ୍ତବ୍ୟ ବୋଲି ସେ ମାନି

ଚଳୁଥାନ୍ତି । ଏଇ ଉଦାହରଣରେ ମୀମାଂସକମାନଙ୍କ ଯଜ୍ଞାର୍ଥ କର୍ମ ବୁଝିବାକୁ ହେବ । ଯଜ୍ଞ ଏକାନ୍ତ କର୍ତ୍ତବ୍ୟ । ଯାହା କରିବ ଯଜ୍ଞାର୍ଥ କରିବ । ଏପରିକି ଧନ ଅର୍ଜିଲେ 'ଯଜ୍ଞାର୍ଥ' ଅର୍ଜିବ । ନିଜର ସ୍ୱାର୍ଥ ପାଇଁ ବା 'ପୁରୁଷାର୍ଥ' ପାଇଁ କିଛି କରିବ ନାହିଁ ।

## ଆନୁଷ୍ଠାନିକତାର ବ୍ୟାପ୍ତି ଓ ପ୍ରତିକ୍ରିୟା—

କାମନାରେ ଯେଉଁ ଯଜ୍ଞର ମୂଳ, ତାକୁ ଏଇପରି ନିଷ୍କାମ ବା କାମନାହୀନ କର୍ମରେ ପରିଣତ କରି ଲୋକଙ୍କରେ କର୍ତ୍ତବ୍ୟ ଧାରାର ସ୍ଥିତି ଠିକ୍ ରଖିବାରେ ଯେ ଘୋର କୃତ୍ରିମତା ଓ ଆବେଗ ଶୂନ୍ୟତାର ପଦ୍ଧତି ଫିଟିଲା, ସେଥିରେ କିନ୍ତୁ ସମାଜର ଜୀବନ୍ତତା ହ୍ରାସ ହେବାର କଥା । ମନୁଷ୍ୟ ନ ବୁଝି ନ ବିଚାରି କଳ ପରି କର୍ତ୍ତବ୍ୟ ବୋଲି ଯାହା ଧରିଚି, ତା କରିଯିବାରେ, ଜନସାଧାରଣର କର୍ମପ୍ରବୃତ୍ତି ଓ କର୍ମ-ସଙ୍କଟର ସମାଧାନ ହୋଇପାରେ; ମାତ୍ର ଉନ୍ନତମନା ମନୀଷୀମାନେ ସେଥିକରେ ସନ୍ତୋଷ ରହିବେ କିପରି ? ପୁଣି ଅତି ପ୍ରାଚୀନକାଳରୁ ମଧ୍ୟ ଯଜ୍ଞରେ ଦେବାର୍ଚ୍ଚନରୁ ମନ ଛାଡ଼ି ଆସିବାର ଦେଖାଯାଇଥିଲା । ସବୁ ବେଦର ତତ୍ତ୍ୱ ଏକ ବୁଝି ସେମାନେ କର୍ମ ଏକାବେଳକେ ଛାଡ଼ି ଆସୁଥିଲେ । ସେଥିପାଇଁ ଦୁଇଟିର ସମାଧାନ କରି ସେମାନେ କହିଲେ, ଗୃହସ୍ଥ ଥିବାଯାଏ, ଏଇପରି ଯଜ୍ଞକର୍ମରେ କର୍ତ୍ତବ୍ୟସର୍ବସ୍ୱ ହୋଇ ରହିଲେ, ଚିତ୍ତଶୁଦ୍ଧି ହେବ; ଅର୍ଥାତ୍ ମନୁଷ୍ୟ ଅନୁଷ୍ଠାନର ଏକାନ୍ତ ନିର୍ବିଘ୍ନର ପାଳନରେ 'ଯଜ୍ଞାର୍ଥ' ବା ନିଷ୍କାମ କର୍ମ ସାଧନରେ ଅଭ୍ୟସ୍ତ ହୋଇ ପଡ଼ିବ । ଏଇପରି କାମନାର ଅପେକ୍ଷା ତୁଟିଗଲେ ତେଣିକି ଗୃହସ୍ଥ ତା ସଙ୍ଗେ କର୍ମ ଛାଡ଼ି ସନ୍ନ୍ୟାସ କରିବ । ବଣକୁ ଯାଇ ସେଠି ଏକ ବ୍ରହ୍ମଧ୍ୟାନରେ କାଳ କଟାଇବ ।

## ଗୀତାରେ ଆନୁଷ୍ଠାନିକ ନିଷ୍କାମତା ଓ କର୍ମତ୍ୟାଗ ସଂନ୍ୟାସର ପ୍ରତିବାଦ—

ଏହାକୁ ହିଁ ଭଗବାନ ସାଂଖ୍ୟମାର୍ଗ ବା ଜ୍ଞାନରେ କର୍ମ ଛାଡ଼ି ସନ୍ନ୍ୟାସମାର୍ଗ ବୋଲି ଗୀତାରେ ବରାବର ଲକ୍ଷ୍ୟ କରିଚନ୍ତି । ଏଇ ମାର୍ଗର ସ୍ଥିତି ସ୍ଥିର ନୁହେଁ । ଏଥିରେ ସତ୍‌କାରୀ ଲୋକ ମିଥ୍ୟାଚାର ବା ପଣ୍ଡିତମ୍ମନ୍ୟ ହୁଏ ବୋଲି ଭଗବାନ୍ କହିଚନ୍ତି । (୩.୬) । ତଥାପି ଏଇ କର୍ମପନ୍ଥୀମାନଙ୍କୁ କାମନାପର ଅସୁରପ୍ରକୃତି ଯାଜ୍ଞିକଙ୍କଠାରୁ ଭିନ୍ନ ବୋଲି ସୂଚନା ଦେଇ ଓ ଟିକିଏ ଆଦର କରି ମଧ୍ୟ କହିଚନ୍ତି, ସବୁଠାରୁ ଭଲ ଅବସ୍ଥା ହେଲେ ମଧ୍ୟ ଏଇ 'ଯଜ୍ଞାର୍ଥ' ନିଷ୍କାମଙ୍କର ସ୍ୱର୍ଗଲାଭ ହୁଏ । ମାତ୍ର ପୁଣି ଭୋଗକାଳ ସରିଗଲେ ଏମାନେ ପୁନର୍ଜନ୍ମ ପାଆନ୍ତି । ମୁକ୍ତି ଏମାନଙ୍କର ନାହିଁ । ଏଇ କଥା ବୁଝାଇବାକୁ ଭଗବାନ୍ କହିଚନ୍ତି—"ଲୋକେ ଏପରି କର୍ମାନୁଷ୍ଠାନ ଯଜ୍ଞ ଛାଡ଼ି ଜ୍ଞାନ-ଯଜ୍ଞରେ ଯଜ୍ଞ କରନ୍ତି । ସେଥିରେ ଏକ ବି ମୁହିଁ, ବହୁ ବି ମୁହିଁ; କାରଣ ମୁଁ ନାନା ଦେବ ପ୍ରକାଶରେ ବିଶ୍ୱତୋମୁଖ । ଏଇ ଜ୍ଞାନ-ଯଜ୍ଞରେ ମୁହିଁ ହଉଚି

ନରୁ (ନିଷ୍ଟସ୍ପ ଶ୍ରେଦନାର ସ୍ଥିତି ଓ ସ୍ଥିରତା), ମୁହିଁ ଯଜ୍ଞ, ମୁହିଁ ବେଦପାଠ, ମୁହିଁ ସୋମ, ମୁହିଁ ମନ୍ତ୍ର, ମୁହିଁ ପୁରୋଡ଼ାସ ( ପିଠା), ମୁହିଁ ଅଗ୍ନି, ମୁହିଁ ଘିଅ ।” (୯.୧୬, ୧୭) । ତା ପରେ ପରମେଶ୍ୱରଙ୍କର ସର୍ବପ୍ରକାଶତ୍ୱ କହିସାରି, ଏଇ ନିଷ୍କାମ ଯଜ୍ଞାର୍ଥ କର୍ମୀଙ୍କୁ ଆଦର ଦେଖାଇ କହିବନ୍ତି—

“ବେଦମନ୍ତ୍ରକୁ ସବୁ ବୋଲି ବିଶ୍ୱାସ କରୁଥିବା ଲୋକେ ଯଜ୍ଞରେ ସୋମାଦି ପାନ କରି ପାପ ଛଡ଼ାଇ (ନିଷ୍କାମ ହୋଇ) ସ୍ୱର୍ଗଗତି ହିଁ ପ୍ରାର୍ଥନା କରନ୍ତି । ସେମାନେ ସମସ୍ତ ନିଷ୍କାମତା ସତ୍ତ୍ୱେ ଇନ୍ଦ୍ରଲୋକରେ ଦେବଭୋଗ ପାଇ, ସେଠାରେ ବହୁକାଳ ସ୍ୱର୍ଗ-ଭୋଗ ପରେ ବି ପୁଣ୍ୟ ସରିଲେ ପୁଣି ଏଇ ମର୍ତ୍ତ୍ୟ ଲୋକକୁ ଫେରନ୍ତି । ଏଇ ବେଦ ଧର୍ମର କାମନା ହିଁ ମୂଳ ଶ୍ରେଦନା । ଏଣୁ ସେମାନେ ସ୍ୱର୍ଗକୁ ଯା’ଆସ ମାତ୍ର କରୁଥାନ୍ତି । ଏମାନଙ୍କର ମୁକ୍ତି ହୁଏ ନାହିଁ । (୯. ୨୦-୨୧ ) । ଏଠାରେ ଅବଶ୍ୟ ୨.୪୨-୪୪ ପରି ଭର୍ତ୍ସନା ନାହିଁ । ତଥାପି ଏ ଯଜ୍ଞାର୍ଥ କର୍ମ ଅନୁଷ୍ଠାନ-ସର୍ବସ୍ୱତାରେ ଯେତେ ନିଷ୍କାମ ହେଲେ ହେଁ, ମୁଖ୍ୟ ପନ୍ଥା ନୁହେ । ଏହା ସ୍ପଷ୍ଟ ।

## ଯଜ୍ଞାର୍ଥ ବେଦଧର୍ମର ଯଜ୍ଞ—‘ପୁରୁଷସୂକ୍ତ’—

ତେବେ ମୁଖ୍ୟ ପନ୍ଥା କଣ ? କର୍ମ ଛାଡ଼ିବା ନୁହେ କି ଯଜ୍ଞକର୍ମରେ ଲାଗିବା ନୁହେ । ଯଜ୍ଞର ଅର୍ଥ କାମନା-ଚୋଦିତ ପୁରୁଷାର୍ଥ କର୍ମ ନୁହେ, କି ଅନୁଷ୍ଠାନ ଶ୍ରେଣିରେ ଆତ୍ମବିମୁଢ଼ ହେବାର ନିଷ୍କାମ ସାଧନା ନୁହେ । ଯଜ୍ଞ ତେବେ କଣ ?

ଏଇ ଦୁଇଟି ଛଡ଼ା ବେଦରେ ଆଉ ଗୋଟିଏ ଯଜ୍ଞତତ୍ତ୍ୱ ପ୍ରକାଶ ପାଇଥିଲା । କୁହାଯାଇଚି, ଯଜ୍ଞର ଆଦିମ ଭାବ ଯାହା କହୁ ଥିଲା, ତା ଯଜ୍ଞରେ ମୋଟେ ନାହିଁ । ଏପରି କି, ବେଦ ଆରମ୍ଭ ବେଳକୁ ଅନୁଷ୍ଠାନାଦି ମଧ୍ୟ ପ୍ରାଚୀନତା ଧରିଥିବାର ବେଦରୁ ପ୍ରମାଣ ମିଳେ । ‘ସ୍ୱାହା’, ‘ସ୍ୱଧା’, ‘ବଷଟ୍’ ପ୍ରଭୃତିର ବ୍ୟବହାର ବେଦରେ ଦେଖା-ଯାଏ । କେତେବେଳେ ‘ସ୍ୱାହା’ ଓ ‘ବଷଟ୍‌କାର’ ଦେବତାରୂପେ କଳ୍ପିତ ହୁଅନ୍ତି । କିନ୍ତୁ କି ଅନୁଷ୍ଠାନରେ କେବେ ସେସବୁ ଶବ୍ଦ କି ଅର୍ଥରେ ପ୍ରଥମେ ପ୍ରଯୁକ୍ତ ହୋଇଥିଲା, ତାହାର କୌଣସି ପ୍ରମାଣ ମିଳୁ ନାହିଁ । ପୁଣି ବେଦ ବେଳକୁ ସୂର୍ଯ୍ୟ, ରୁଦ୍ର ପ୍ରଭୃତି ପ୍ରକୃତିର ସ୍ପଷ୍ଟ ଅନୁଭବ୍ୟ ଶକ୍ତି ଛଡ଼ା ବିଶ୍ୱକର୍ମା, ପ୍ରଜାପତି, ମନ୍ୟୁ, ଶ୍ରଦ୍ଧା ପ୍ରଭୃତି ସୂକ୍ଷ୍ମ କଳ୍ପନାର ବସ୍ତୁ ବା ଭାବସବୁ ଦେବତା ହୋଇ ସାରିଥିଲେ । ସମାଜ ତଥା ଚିନ୍ତା ବେଦବେଳକୁ ବହୁ ଉନ୍ନତ ହୋଇଥିଲା, ସନ୍ଦେହ ନାହିଁ । ଯଜ୍ଞକୁ ବିଶ୍ୱ ତତ୍ତ୍ୱରେ ମିଳାଇ ଚିନ୍ତା କରିବାର ସାମଞ୍ଜସ୍ୟ ବେଦରେ ସ୍ପଷ୍ଟ । ବିଶ୍ୱତତ୍ତ୍ୱକୁ ପୁରୁଷରୂପେ କଳ୍ପନା କରି, କୁହାଯାଇଚି ଦେବତା ଓ ଋଷିମାନେ ଏଇ ପୁରୁଷର ଯଜ୍ଞ କରିବାରେ ବିଶ୍ୱପ୍ରକାଶ ହୋଇଥିଲା । ଯେଉଁ ସୂକ୍ତରେ ଏଇ ଭାବ ପ୍ରକାଶ ପାଇଚି, ତାକୁ ପୁରୁଷ-

ସୂକ୍ତ କହନ୍ତି । ଉକ୍ତିଟି ବୈଦିକ ଋଷିଙ୍କ ଉନ୍ମୁକ୍ତ ସ୍ୱାଧୀନ ସରସ୍ୱତୀରେ କବିତାରେ ପ୍ରକାଶ ପାଇଛ । ସେଥିପାଇଁ ସମସ୍ତ ସୂକ୍ତିଟି ତଳେ ଦିଆଗଲା । ଋଷି ଭାବରେ ବିହ୍ୱଳ ହୋଇ ଗାଇଚନ୍ତି—

ସହସ୍ର-ଶୀର୍ଷା ପୁରୁଷଃ ସହସ୍ର-ଅକ୍ଷଃ ସହସ୍ର-ପାତ୍
ସଃ ଭୂମିଂ ବିଶ୍ୱତଃ ବୃତ୍ୱା ଅତି ଅତିଷ୍ଠତ୍ ଦଶ ଅଙ୍ଗୁଳଂ । ୧ ।
ପୁରୁଷଃ ଏବ ଇଦଂ ସର୍ବଂ ଯତ୍ ଭୂତଂ ଯତ୍ ଚ ଭବ୍ୟଂ
ଉତ ଅମୃତତ୍ୱସ୍ୟ ଈଶାନଃ ଯତ୍ ଅନ୍ନେନ ଅତି-ରୋହତି । ୨ ।
ଏତାବାନ୍ ଅସ୍ୟ ମହିମା ଅତଃ ଜ୍ୟାୟାନ୍ ଚ ପୁରୁଷଃ
ପାଦଃ ଅସ୍ୟ ବିଶ୍ୱା ଭୂତାନି ତ୍ରି-ପାତ୍ ଅସ୍ୟ ଅମୃତଂ ଦିବି । ୩ ।
ତ୍ରି-ପାତ୍ ଊର୍ଦ୍ଧ୍ୱଃ ଉତ୍ ଐତ୍ ପୁରୁଷଃ ପାଦଃ ଅସ୍ୟ ଇହ ଅଭବତ୍ ପୁନଃ
ତତଃ ବିଷ୍ୱଙ୍ ବି ଅକ୍ରାମତ୍ ସାଶନାନଶନେ ଅଭି । ୪ ।
ତସ୍ମାତ୍ ବିରାଟ୍ ଅଜାୟତ ବି-ରାଜଃ ଅଧିପୁରୁଷଃ
ସଃ ଜାତଃ ଅତି ଅରିଚ୍ୟତ ପଶ୍ଚାତ୍ ଭୂମିଂ ଅଥୋ ପୁରଃ । ୫ ।
ଯତ୍ ପୁରୁଷେଣ ହବିଷା ଦେବାଃ ଯଜ୍ଞଂ ଅତନ୍ୱତ
ବସନ୍ତଃ ଅସ୍ୟ ଆସୀତ୍ ଆଜ୍ୟଂ ଗ୍ରୀଷ୍ମଃ ଇଧ୍ମଃ ଶରତ୍ ହବିଃ । ୬ ।
ତଂ ଯଜ୍ଞଂ ବର୍ହିଷି ପ୍ରୌକ୍ଷନ୍ ପୁରୁଷଂ ଜାତଂ ଅଗ୍ରତଃ
ତେନ ଦେବାଃ ଅଯଜନ୍ତ ସାଧ୍ୟାଃ ଋଷୟଃ ଚ ଯେ । ୭ ।
ତସ୍ମାତ୍ ଯଜ୍ଞାତ୍ ସର୍ବ-ହୁତଃ ସଂଭୃତଂ ପୃଷତ୍-ଆଜ୍ୟଂ
ପଶୂନ୍ ତାନ୍ ଚକ୍ରେ ବାୟବ୍ୟାନ୍ ଆରଣ୍ୟାନ୍ ଗ୍ରାମ୍ୟାନ୍ ଚ ଯେ । ୮ ।
ତସ୍ମାତ୍ ଯଜ୍ଞାତ୍ ସର୍ବ-ହୁତଃ ଋଚଃ ସମାନି ଜଜ୍ଞିରେ
ଛଂଦାଂସି ଜଜ୍ଞିରେ ତସ୍ମାତ୍ ଯଜୁଃ ତସ୍ମାତ୍ ଅଜାୟତ । ୯ ।
ତସ୍ମାତ୍ ଅଶ୍ୱାଃ ଅଜାୟନ୍ତ ଯେ କେ ଚ ଉଭୟାଦତଃ
ଗାବଃ ହ ଜଜ୍ଞିରେ ତସ୍ମାତ୍ ତସ୍ମାତ୍ ଜାତାଃ ଅଜା ବୟଃ । ୧୦ ।
ଯତ୍ ପୁରୁଷଂ ବି ଅଦଧୁଃ କତିଧା ବି-ଅକଳ୍ପୟନ୍
ମୁଖଂ କିଂ ଅସ୍ୟ କୌ ବାହୂ କୌ ଉରୂପାଦୌ ଉଚ୍ୟତେ । ୧୧ ।
ବ୍ରାହ୍ମଣଃ ଅସ୍ୟ ମୁଖଂ ଆସୀତ୍ ବାହୂ ରାଜନ୍ୟଃ କୃତଃ
ଉରୁ ତତ୍ ଆସ୍ୟ ଯତ୍ ବୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରଃ ଅଜାୟତ । ୧୨ ।
ଚନ୍ଦ୍ରମାଃ ମନସଃ ଜାତଃ ଚକ୍ଷୋଃ ସୂର୍ଯ୍ୟ ଅଜାୟତ
ମୁଖାତ୍ ଇନ୍ଦ୍ରଃ ଚ ଅଗ୍ନିଃ ଚ ପ୍ରାଣାତ୍ ବାୟୁଃ ଅଜାୟତ । ୧୩ ।
ନାଭ୍ୟାଃ ଆସୀତ୍ ଅଂତରିକ୍ଷଂ ଶୀର୍ଷ୍ଣଃ ଦ୍ୟୌଃ ସମ୍ଅବର୍ତ୍ତତ
ପଦ୍ଭ୍ୟାଂ ଭୂମିଃ ଦିଶଃ ଶ୍ରୋତ୍ରାତ୍ ତଥା ଲୋକାନ୍ ଅକଳ୍ପୟନ୍ । ୧୪ ।

ସପ୍ତ ଅସ୍ୟ ଆସନ୍ ପରି-ଧୟଃ ତ୍ରିଃ ସପ୍ତ ସମିଧଃ କୃତାଃ
ଦେବାଃ ଯତ୍ ଯଜ୍ଞଂ ତନ୍ୱାନାଃ ଅବଧ୍ନନ୍ ପୁରୁଷଂ ପଶୁଂ । ୧୫ ।
ଯଜ୍ଞେନ ଯଜ୍ଞଂ ଅଯଜନ୍ତ ଦେବାଃ ତାନି ଧର୍ମାଣି ପ୍ରଥମାନି ଆସନ୍
ତେ ହ ନାକଂ ମହିମାନଃ ସଚନ୍ତ ଯତ୍ର ପୂର୍ବେ ସାଧ୍ୟାଃ ସନ୍ତି ଦେବାଃ । ୧୬ ।

(ଋଗ୍‌ବେଦ, ୧୦ମ ମଣ୍ଡଳ ୯୦ତମ ସୂକ୍ତ । କେହି ମନ୍ତ୍ରଗୁଡ଼ିକ ମୂଳରେ ବୁଝିବାକୁ ଇଚ୍ଛାକଲେ ସୁବିଧା ହେବ ବୋଲି ଏଠାରେ ପଦ-ପାଠ ଅକ୍ଷର ନିୟମରେ ସେସବୁ ଦିଆହୋଇଛି । ଦରକାର ହେଲେ ସନ୍ଧି କରି ସଂହିତା-ପାଠ ଅନୁସାରେ ପଢ଼ା ଯାଇପାରେ । )

## ଓଡ଼ିଆରେ ଏଇ ପୁରୁଷ ସୂକ୍ତର ଅର୍ଥ—

ପୁରୁଷର ସହସ୍ର (ଅନନ୍ତ, ଅସଂଖ୍ୟ) ଶିର, ସହସ୍ର ଆଖି ଓ ସହସ୍ର ପାଦ । ସେଇ ପୁରୁଷ ସବୁଆଡ଼େ ସମସ୍ତ ଭୂମି ଆବୃତ କରି (ଭୂମିରେ ବ୍ୟାପ୍ତ ହୋଇ) ତା ପରେ ଦଶ ଅଙ୍ଗୁଳ ବ୍ୟାପିଥିଲେ । ୧ । ପୁରୁଷ ହିଁ ଏଇ ସମସ୍ତ ବିଶ୍ୱଜଗତ୍, ଯାହା ହୋଇଛି ଓ ଯାହା ହେବ, ସବୁ ପୁରୁଷ । ପୁରୁଷ ହିଁ ଅମୃତତ୍ୱର ଅଧିକାରୀ (ନିୟନ୍ତା) ଏଇ ଅମୃତତ୍ୱ ଅନ୍ନରେ ବଢ଼େ (ଅନ୍ନ ଏଠାରେ ଇନ୍ଦ୍ରିୟଲବ୍ଧ ବିଶ୍ୱବିକାଶ, ସେଇଥିରେ ଏ ଅମୃତତ୍ୱର ପ୍ରତିଷ୍ଠା । ଯଜ୍ଞରେ ଯାହା ଦିଆଯାଏ ତା ଅନ୍ନ । ଏଇ ପୁରୁଷର ଯେ ଯଜ୍ଞ କଥା କୁହାଯାଉଛି, ସେଥିରେ ବିଶ୍ୱବିକାଶର କର୍ମ ହିଁ ସେଇ ଅନ୍ନ—ଏହା ପରେ ବୁଝାଯିବ ) । ୨ । ଏଇ ହେଉଛି ଏ ପୁରୁଷର ମହତ୍ତ୍ୱ, ନା, ଏହାଠାରୁ ଅଧିକ ମହତ୍ ଏ (ଅପରିମେୟ ) । ଏହାର ଏକ ପାଦ (ଚଉଠ) ହେଉଛି, ସମସ୍ତ ଭୂତ (ଯାହା ହେଉଛି ବା ବିଶ୍ୱପ୍ରକାଶ); ତିନିପାଦ (ତିନି ଚଉଠି) ଦିବ୍ୟ ଲୋକରେ ଅମୃତ (ସ୍ୱର୍ଗରେ ଅମରମାନେ) । ୩ । ପୁରୁଷ ତିନି ପାଦ ଉପରେ ବିସ୍ତାର କଲେ ଓ ପାଦେ ଏ ଜଗତରେ ରହିଲା । ସେଥିରେ (ସେଇ ପାଦକେ) ହିଁ ସେ ଯେ ଖାଆନ୍ତି ଓ ଯେ ଖାଆନ୍ତି ନାହିଁ (ଜଡ଼ ଚେତନ ) ସବୁରେ ସବୁଆଡ଼େ ସର୍ବତୋଭାବେ ବିସ୍ତୃତ ହେଲେ । ୪ । ସେଥିରୁ ବିରାଜ୍ (ବିରାଟ୍) ପ୍ରକାଶ ପାଇଲେ; ବିରାଜ ବୋଲି ଏକ ଅତି ଦୀର୍ଘ ୪୦ ଅକ୍ଷରଯୁକ୍ତ ବୈଦିକ ଛନ୍ଦ ଅଛି । ଏଇ ଛନ୍ଦ ଯଜ୍ଞରୁ ପ୍ରକାଶ ପାଏ ବୋଲି ଶତପଥ ବ୍ରାହ୍ମଣ କହନ୍ତି । ବେଦରେ ତତ୍ତ୍ୱଯୁକ୍ତ କବିତାର ଏଇପରି ଅର୍ଥମାନ କର୍ମକାଣ୍ଡରେ କ୍ରମେ ପ୍ରକାଶ ପାଇଥିଲା) । ଏଇ ବିରାଟରୁ ପୁଣି ପୁରୁଷ ହେଲେ । ଜନ୍ମ ହୋଇ ଏଇ ପୁରୁଷ ଆଗ ପଛ ଦୁଇଆଡେ ପୃଥିବୀ ଡେଇଁ ବ୍ୟାପ୍ତ ହେଲେ । ୫ । ଏଇ ପୁରୁଷ ହବିରେ ଦେବତାମାନେ ଯେତେବେଳେ ଯଜ୍ଞ ବିସ୍ତାର କଲେ, ସେତେବେଳେ ବସନ୍ତ ହେଲା ଏଇ ଯଜ୍ଞର ଆଜ୍ୟ (ହୋମଘୃତ), ଗ୍ରୀଷ୍ମ ହେଲା ହୋମକାଠ, ଶରତ୍ ହେଲା ହବିଃ ( ଅନ୍ୟ ଅର୍ପଣୀୟ ସାମଗ୍ରୀ) (ଯାହା ଯଜ୍ଞ ହୋମରେ ଦିଆଯାଏ ସବୁ ହବିଃ ହେଲେ ହେଁ, କେବଳ ଘୃତ ଓ ଅନ୍ୟ କୌଣସି

ବିଶେଷ ଅର୍ପଣୀୟ ସାମଗ୍ରୀରେ ହବିଃ ଶବ୍ଦର ପ୍ରୟୋଗ ମଧ୍ୟ ସାଧୁ ) ।୬। କୁଶାସ୍ତରଣରେ ସେଇ ଯଜ୍ଞକୁ (ଯଜ୍ଞ ପଶୁକୁ ?)—ସର୍ବଆଗରୁ ଜାତ ସେଇ ପୁରୁଷଙ୍କୁ—ପ୍ରୋକ୍ଷଣ କଲେ (ବଳି ଦିଆହେବା ପଶୁକୁ ମନ୍ତ୍ର ବୋଲି ପାଣି ପକାଇ ଆଗ ପ୍ରୋକ୍ଷଣ କରାହୁଏ) । ସାଧ୍ୟ ଦେବମାନେ (ବ୍ରହ୍ମାଙ୍କ ସଙ୍ଗେ ଏଇ ସାଧ୍ୟ ଦେବଗଣଙ୍କୁ ବେଦରେ ଆହ୍ୱାନ କରାହୁଏ । ତାଙ୍କୁ ଆରାଧନା କଲେ ସହଜରେ ମନୋରଥ ଲାଭ ହୁଏ ବୋଲି ତାଙ୍କ ନାମ ସାଧ୍ୟ) ଓ ଯେଉଁମାନେ ଋଷି (ଦ୍ରଷ୍ଟା) ସେ ସମସ୍ତେ ଏଇ ପୁରୁଷ ବଳି ଦେଇ ଯଜ୍ଞ କଲେ । ୭ । ସେଇ ଯଜ୍ଞ ସମ୍ପୂର୍ଣ୍ଣ ହେବାରେ ସେଥିରୁ ଯେଉଁ ଚର୍ବି ଗଳୁଥିଲା, ତାହା ସଂଗ୍ରହ କଲେ (ପଶୁର ନାଭିସ୍ଥାନର ଚର୍ବି ହୋମରେ ଦେଇ ପରେ ଯଜମାନାଦିଙ୍କ ପାଇଁ ତହିଁରୁ ଗଳିତ ଅଂଶ ସଂଗ୍ରହ କରାହୁଏ); ସେଇ କାଳରୁ (ସେଇ ଚର୍ବିରୁ) ହେଲେ ବାୟୁ ଅରଣ୍ୟ ଓ ଗ୍ରାମର ସମସ୍ତ ପଶୁ (ଜନ୍ତୁମାନେ) । ୮ । ସେଇ ଯଜ୍ଞ ସାଙ୍ଗ ହେବାରୁ ଋକ୍-ମନ୍ତ୍ର ଓ ସାମ-ଗାନ ସେଥିରୁ ବାହାରିଲେ; ସେଇଥିରୁ ଛନ୍ଦ (ବେଦର ରାଗମାନ) କିଂବା, ପରେ ଅଥର୍ବ ବେଦରେ ପ୍ରକାଶ ପାଇବା ମନ୍ତ୍ର ଗୁଣି-ସାଧନା) ବାହାରିଲା, ସେଇଥିରୁ ଯଜୁଃ ଅର୍ଥାତ୍ ଯଜ୍ଞବିଧି ବାହାରିଲା । (ଏଠାରେ ଋଗ୍‌ବେଦ, ସାମବେଦ, ଅଥର୍ବ ବେଦ ବା ଯଜୁର୍ବେଦ, ଏପରି ଅର୍ଥ ନୁହେଁ । ସେତେବେଳକୁ ବେଦର ବିଭାଗ ହୋଇ ନଥିଲା । ପରେ ଏଇ ମନ୍ତ୍ରର ଆଶ୍ରୟରୁ ଏଇପରି ଭାଷା ଧରି ବେଦର ବିଭାଗ ହେଲା । ଏଠାରେ, ଋଚ୍ = ଆରାଧନା ମନ୍ତ୍ର; ସାମ = ଗାନ ବା ଗାନ-ମନ୍ତ୍ର; ଛନ୍ଦଃ = ଗୁଣି ସାଧିବା ମନ୍ତ୍ର, ଯଜୁଃ = ଯଜ୍ଞର ବିଧି ଓ ମନ୍ତ୍ର । ) ୯ । ସେଇଥିରୁ ଘୋଡ଼ା ହେଲେ (ଜନ୍ମିଲେ—ସର୍ବତ୍ର ଏଇ ଜନ୍ମିବାର ପ୍ରୟୋଗ), ଓ ଦିପାଟି ଦାନ୍ତ ଥିବା ଜନ୍ତୁମାନେ ହେଲେ, ସେଇଥିରୁ ଗୋରୁ ହେଲେ, ସେଇଥିରୁ ଛେଳି ଓ ମେଣ୍ଢା ଜାତ ହେଲେ । ୧୦ । ଯେତେବେଳେ ପୁରୁଷକୁ ବିଧିରେ ବାଣ୍ଟିଲେ, କେତେ ଭାଗରେ ତାକୁ କଳ୍ପନା କଲେ (ଯଜ୍ଞ ପଶୁକୁ ବଳି ପରେ ବାଣ୍ଟି ଭିନ୍ନ ଭିନ୍ନ କର୍ମ ପାଇଁ ଅଲଗା ଅଲଗା କରି ରଖାଯାଏ) ? ଏହାର ମୁଖ କିଏ ? ବାହୁ କାହାକୁ, ଊରୁ (ଜଂଘ) କାହାକୁ, ପାଦ କାହାକୁ କୁହାଯାଏ (କୁହାଗଲା) ? ୧୧ । ବ୍ରାହ୍ମଣ ହେଲା ଏହାର ମୁଖ; ବାହୁ ରାଜନ୍ୟ (କ୍ଷତ୍ରିୟ) କରାହେଲା; ବୈଶ୍ୟ ଯେ ସେ ଏହାର ଜଂଘ; ପାଦରୁ ଶୂଦ୍ର ଜାତ ହେଲେ । ୧୨ । ମନରୁ ଚନ୍ଦ୍ର ଜାତ ହେଲା; ଚକ୍ଷୁରୁ ସୂର୍ଯ୍ୟ ଜନ୍ମିଲା; ମୁଖରୁ ଇନ୍ଦ୍ର ଓ ଅଗ୍ନି; ପ୍ରାଣରୁ ବାୟୁ ଜନ୍ମ ହେଲେ । ୧୩ । ନାଭିରୁ ଅନ୍ତରୀକ୍ଷ (ବାୟୁମଣ୍ଡଳର ସ୍ଥାନ) ହେଲା; ମୁଣ୍ଡରୁ ଉପରର ଆକାଶ ପ୍ରକାଶ ପାଇଲା; ପାଦରୁ ଭୂମି, କାନରୁ ଦିଗ (ଶୂନ୍ୟ ଦେଶ ବା ଦେଶ, ଇଂରେଜୀରେ Space, Regions) ହେଲା । ଏଇପରି ସେମାନେ ସର୍ବଲୋକ (ପ୍ରକାଶ ବା ସୃଷ୍ଟି)ର କଳ୍ପନା କଲେ (ରଚନା କଲେ) । ୧୪ । ଦେବମାନେ ଯେତେବେଳେ ଯଜ୍ଞ କରିବା ପାଇଁ ଏଇ ପୁରୁଷ ପଶୁକୁ ବାନ୍ଧିଲେ, ସେତେବେଳେ ଏହା ପାଇଁ ସାତୋଟି ପରିଧି ହେଲା, ସାତ ସାତଟି ଲେଖାଏଁ ତିନି

ପ୍ରସ୍ତୁତ ସମିଧ କରାହେଲା । (ପଶୁ ବଳି ଯଜ୍ଞରେ ପଶୁକୁ ବାନ୍ଧି ତା ଚାରିପାଖେ ଅଟେଇ କଲା ପରି ଯେଉଁ କାଠ ଦିଆଯାଏ ତାକୁ 'ପରିଧି' କହନ୍ତି । ହୋମ ପାଇଁ ଯେଉଁ କାଠ ସଜଡ଼ା ହୋଇ ରଖା ହୁଏ ତାକୁ ସମିଧ କହନ୍ତି) । (ଏଠାରେ ସପ୍ତପରିଧି, ସପ୍ତ ଗଣନାରେ ହେଉଥିବା ଭୂଲୋକ, ସ୍ୱର୍ଗଲୋକ, ପାତାଳଲୋକ । ତ୍ରିସପ୍ତ ସମିଧ ସେଇ ଏକୋଇଶି ଲୋକ—ପୃଥିବୀର ସପ୍ତଦ୍ୱୀପ, ସପ୍ତ ସ୍ୱର୍ଗଲୋକ ଓ ସପ୍ତ ପାତାଳଲୋକ) । ୧୫ । ଦେବମାନେ ଯଜ୍ଞରେ ଯଜ୍ଞକୁ ଯଜ୍ଞ କଲେ (ଏଇପରି ଯଜ୍ଞର ପ୍ରଚଳିତ ବିଧିରେ ବିଶ୍ୱମୟ ପୁରୁଷର ବଳି ବା ଆତ୍ମପ୍ରକାଶକୁ ଯଜ୍ଞ ରୂପରେ ଧାରଣା କଲେ) । ସେଇ ସବୁ ( ବିଶ୍ୱପୁରୁଷର ପ୍ରକାଶମାନଙ୍କର ଯଜ୍ଞରୂପ ଧାରଣାମାନ) ପ୍ରଥମ ଧର୍ମ ହେଲା । ସେଇ ମହତ୍‌ମାନେ ସର୍ବୋପରି ଥିବା ସ୍ୱର୍ଗ ପାଇଲେ, ଯେଉଁ ସ୍ୱର୍ଗରେ କି ସାଧ୍ୟ (ସୁଖୋପାସ୍ୟ) ପୂର୍ବର ଦେବମାନେ ଅଛନ୍ତି । ୧୬ ।

## 'ପୁରୁଷ ସୂକ୍ତ'ର ସଙ୍କେତ—

କବିତା ଓ ପ୍ରଚଳିତ ଯଜ୍ଞବିଧିର ପୂର୍ଣ୍ଣୋପମାମୂଳକ ରୂପକ ବର୍ଣ୍ଣନା ଛାଡ଼ିଦେଲେ ଏଠାରେ ଯେଉଁ ଯଜ୍ଞର ସ୍ପଷ୍ଟ ସୂଚନା ଦିଆଯାଇଛି, ଭଗବାନ୍ ଗୀତାରେ ଯଜ୍ଞର ସେ ତତ୍ତ୍ୱ ବୁଝାଇଛନ୍ତି । ସେ ତତ୍ତ୍ୱରେ କର୍ମରେ ବିରକ୍ତିଜନିତ କର୍ମତ୍ୟାଗର ସଂନ୍ୟାସ ନାହିଁ, କି ବେଦବାଦର କ୍ରିୟାକାଣ୍ଡସମନ୍ୱିତ ଯଜ୍ଞକର୍ମ ନାହିଁ । କର୍ମର ଅଧିଷ୍ଠାନ ପୁରୁଷ (ମନୁଷ୍ୟର ମୁଁ-ତ୍ୱ) । ସେଥିପାଇଁ ଏଠାରେ ବିଶ୍ୱକର୍ମର ଅଧିଷ୍ଠାନକୁ ପୁରୁଷ (ବିରାଟ୍ ପୁରୁଷ) କୁହାଯାଇଛି । ସାଧ୍ୟ ବା ବେଦବାଦଗତ ଯଜ୍ଞ କର୍ମାଦିରେ ଆରାଧ୍ୟ ଦେବତା ତଥା ଋଷିମାନେ ଏଇ ବିଶ୍ୱ ପୁରୁଷର ତତ୍ତ୍ୱ ଓ ବିକାଶ ସଂବଧରେ ଯେଉଁ ଧାରଣା କରିଥିଲେ ତାହା ଏଠାରେ ଯଜ୍ଞ ରୂପରେ କୁହାଯାଇଛି । ସରଳ ନିରଳଂକାର କଥାରେ ତାହା ହେଉଛି—

## ବ୍ରହ୍ମର ଆତ୍ମବିକାଶ ବା ଆତ୍ମୋତ୍ସର୍ଗ ହିଁ ଯଜ୍ଞ—

ବିଶ୍ୱତତ୍ତ୍ୱ ବା ବ୍ରହ୍ମ ଅନନ୍ତ ଓ ଅସୀମ । ସମସ୍ତ ପ୍ରକାଶରେ ସେ ବ୍ୟକ୍ତ ହେଲେହେଁ, ଏଇ ପ୍ରକାଶମାନଙ୍କରେ ଅବଚ୍ଛିନ୍ନ ନୁହନ୍ତି । ତାଙ୍କର ଏକ ଅଂଶହିଁ ଏ ସମସ୍ତ ପ୍ରକାଶ । ବାକୀ ଏଥିରୁ ଅଧିକା ପ୍ରକାଶ ବାହାରେ (୧୦.୪୨ ଦେଖ) । ଏଇ ପ୍ରକାଶ (ବିସର୍ଗ ବା ସୃଷ୍ଟି, ୮.୩ ଦେଖ) ଧର୍ମ ନିଜକୁ ଅବଚ୍ଛିନ୍ନ ବା ବ୍ୟକ୍ତ କରିବା ହିଁ ଏଇ ବ୍ରହ୍ମ ପୁରୁଷର ଏକ ବିରାଟ ଯଜ୍ଞ କର୍ମ । ବ୍ରହ୍ମର ଏଇ ଯଜ୍ଞ ବିନା ସୃଷ୍ଟି ବା ପ୍ରକାଶ ଅସମ୍ଭବ । ଏଇ ଯଜ୍ଞ ହିଁ ବ୍ରହ୍ମପୁରୁଷର ଆତ୍ମବିସ୍ତାର, ଆତ୍ମବଳି ବା ଆତ୍ମତ୍ୟାଗ ରୂପେ ଦେବ ଓ ଋଷିମାନଙ୍କଠାରେ ପ୍ରତିଭାତ । ଏଥିରେ ହିଁ ଯାହା ହୋଇଛି ବା ଯାହା ହେବ, ସମସ୍ତ ଭୂତ ଓ ଭବରେ ପ୍ରକାଶ । ଏଇ ଯଜ୍ଞ ବିନା ପୃଥିବୀ ନାହିଁ, ଆକାଶ ନାହିଁ, ସ୍ୱର୍ଗ ନାହିଁ, ଦେବ ନାହାନ୍ତି, ଋଷି ନାହାନ୍ତି, ଋତୁ ନାହିଁ, କାଳ ନାହିଁ, ଦେଶ ନାହିଁ, ପୁଣି ପୃଥିବୀରେ ଘୋଡ଼ା, ଗୋରୁ, ଛେଳି, ମେଣ୍ଢା, ପଶୁ, ପକ୍ଷୀ କେହି

ନାହାନ୍ତି; ଆତ୍ମର ସମାଜ ନାହିଁ, ମନୁଷ୍ୟ ନାହିଁ, କ ସମାଜରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ବୋଲି କର୍ମଭାଗ ନାହିଁ—ଋକ୍ ଯଜୁ ସାମ ଛନ୍ଦ ନାହିଁ, କିଛୁ ନାହିଁ ସବୁ ନିଷ୍ଠିତ୍ତ, ନିର୍ବାଣ, ନିର୍ବିକଳ୍ପ—ବ୍ରହ୍ମ ବା ଶୂନ୍ୟ କିଏ ରହିବ ? (ଋଗ୍ ବେଦ; ୧୦. ୧୨୯ ଦେଖ) । ସୃଷ୍ଟି ତେଣୁ ବ୍ରହ୍ମର ମହାଯଜ୍ଞ ।

## ଯଜ୍ଞରେ ବିଶ୍ୱଧର୍ମର ବ୍ୟାପ୍ତି—

ଏଇ ମହାବିକାଶ ଧର୍ମରେ ସୃଷ୍ଟ ବସ୍ତୁର ବ୍ୟକ୍ତିତ୍ୱ ବା ଅହଂକାର ପ୍ରକାଶ ପାଏ । ପୁରୁଷ ମୁଁ ବୋଲି ନିଜକୁ ସର୍ବକର୍ମର ଅଧିଷ୍ଠାନ ରୂପେ ବିଗ୍ରହବାରେ ଏଇ ବ୍ୟକ୍ତିତ୍ୱ ସ୍ପଷ୍ଟ । ଏଇ ବ୍ୟକ୍ତିତ୍ୱକୁ ଦାର୍ଶନିକ ଭାଷାରେ ଅହଂକାର କହନ୍ତି । ସେସବୁ ବିକାଶର ବ୍ୟାଖ୍ୟା କରିବାର ଅବକାଶ ନେଲେ କୁହାଯିବ । ମାତ୍ର ଏଠାରେ କହିବାର କଥା, ଏଇ ବ୍ୟକ୍ତି ଧର୍ମରେ ହିଁ ସମୂହ ବିକାଶ ଧର୍ମର ଧାରଣା । ଏହାହିଁ ବିଶ୍ୱପୁରୁଷର ଆତ୍ମବଳି ବା ତ୍ୟାଗର ଧର୍ମ । ଏଇ ଧର୍ମରେ ବିଶ୍ୱ ଧୃତ ହୋଇ ରହିଛି । ସେଥିପାଇଁ ଏହାର ନାମ ଧର୍ମ ବା ଯହିଁରେ ଧୃତ ହୋଇଥାଏ । ସେଇ ଅର୍ଥରେ ମହାଭାରତ କହନ୍ତି—

ଧାରଣାତ୍ ଧର୍ମମିତ୍ୟାହୁଃ
　　ଧର୍ମୋ ଧାରୟତେ ପ୍ରଜାଃ
ଯତ୍ ସ୍ୟାଦ୍ ଧାରଣସଂଯୁକ୍ତଂ
　　ସ ଧର୍ମ ଇତି ନିଶ୍ଚୟଃ ।
　　( ଶାନ୍ତି ପର୍ବ, ୧୦୯. ୧୨, କର୍ଣ୍ଣ, ୬୯. ୫୮ )

ଅର୍ଥାତ, ଧର୍ମ ଶବ୍ଦ ଧୃ ଧାତୁ ( = ଧାରଣ କରିବା ) ରୁ ବାହାରିଛି । ଧର୍ମରେ ସମସ୍ତ ପ୍ରଜା ଧୃତ ହୋଇ ବା ବନ୍ଧା ହୋଇ ରହିଛନ୍ତି । ଏହାହିଁ ସ୍ଥିର ଯେ, ଯହିଁରେ ( ସକଳ ପ୍ରକାର ) ଧାରଣ ହୁଏ, ତାହାହିଁ ଧର୍ମ । ଏଇ ଧର୍ମ ହିଁ ତେଣୁ ଧାରଣ ବା ବନ୍ଧନ । ଏହା ଛିଡ଼ିଗଲେ, ମାଧ୍ୟାକର୍ଷଣ ବ୍ୟତୀତ ଆକାଶରେ ସୂର୍ଯ୍ୟ ଓ ଜ୍ୟୋତିଷ୍କମାନଙ୍କର ବା କର୍ଣ୍ଣଧାର ବ୍ୟତୀତ ସମୁଦ୍ରରେ ଜାହାଜର ଯେ ଅବସ୍ଥା ହେବାର କଥା, ଜଗତର ତଥା ସମାଜର ସେଇ ଅବସ୍ଥା ହେବ । ଏଠାରେ ପ୍ରଜା ଶବ୍ଦ ମାନବସମାଜ ଅର୍ଥରେ ହୁଏତ ପ୍ରସଙ୍ଗତଃ ପ୍ରଯୁକ୍ତ ହୋଇଛି । କିନ୍ତୁ ପ୍ରଜା କହିଲେ ମଧ୍ୟ ଅର୍ଥ ହୁଏ—ଯାହା ଜନ୍ମିଛି ବା ସୃଷ୍ଟ ହୋଇଛି । ସମସ୍ତ ପ୍ରକାଶର ବ୍ୟକ୍ତି ମାନେ ହିଁ ପ୍ରଜା । ସେଥିରେ ମଧ୍ୟ ସୂର୍ଯ୍ୟାଦି ଗ୍ରହ ତାରାଠାରୁ ବୃକ୍ଷ ଲତା, ପାଷାଣ, ଜଳ, ଜନ୍ତୁ ପ୍ରଭୃତି ସମସ୍ତେ ଅନ୍ତର୍ଭୁକ୍ତ । ମାତ୍ର ମନୁଷ୍ୟ କେବଳ ଇନ୍ଦ୍ରିୟ-ଚାଳିତ ଓ କାମନାଗ୍ରସ୍ତ ହୋଇ ସ୍ୱେଚ୍ଛାଚ୍ଛନ୍ଦ ହେବାର ଆଶଙ୍କା ଥିବାରୁ ପ୍ରଜା ତଥା ଧର୍ମ ଦୁଇଟିଯାକ କଥା ମନୁଷ୍ୟଠାରେ ପ୍ରୟୋଗ କରାହୁଏ ।

## ବ୍ୟକ୍ତିର ଆତ୍ମୋତ୍ସର୍ଗ—

ତେଣୁ ମନୁଷ୍ୟର ଧର୍ମ ଧାରଣା ବସ୍ତୁତଃ ଈଶ୍ୱର ଯଜ୍ଞ ଓ ଧର୍ମ ଧାରଣାରୁ ଡାହାଣିତ । ଈଶ୍ୱର ଏଇ ଯଜ୍ଞ ବା ବ୍ରହ୍ମର ଆତ୍ମୋତ୍ସର୍ଗରେ ସୃଷ୍ଟି ବ୍ୟକ୍ତିରୂପ ପ୍ରକାଶ ପାଆନ୍ତି । ସମସ୍ତେ ସେଇ ଯଜ୍ଞ ବା ଆତ୍ମୋତ୍ସର୍ଗ ଭିତରେ ନିଜ ନିଜ ଧର୍ମରେ ନିୟୁତ ଓ ଧୃତ । ଯେଉଁ ମାଧ୍ୟାକର୍ଷଣ ଧର୍ମ କଥା ଉପରେ ଦୃଷ୍ଟାନ୍ତରେ କୁହାଗଲା, ସେଥିରେ ଦେଖ ଏକ ଜ୍ୟୋତିଷ୍କ ଅନ୍ୟକୁ ଟାଣୁଛି, ଯେ ଯାହାଦ୍ୱାରା ଟଣା ହେଉଛି, ସେ ପୁଣି ଟାଣିବା ବସ୍ତୁକୁ ଟାଣୁଛି । ଏହା ହେଲା ସେମାନଙ୍କ ଧର୍ମ । ସେମାନେ ପ୍ରତ୍ୟେକେ ନିଜ ନିଜର ବ୍ୟକ୍ତିତ୍ୱକୁ ଏଇପରି କେତେଗୁଡ଼ିଏ ଧର୍ମରେ ଉତ୍ସର୍ଗ କରନ୍ତି; ମାତ୍ର ଏହା ଛଡ଼ା ତାଙ୍କର ବ୍ୟକ୍ତିତ୍ୱ ବା ପ୍ରକାଶର ଅନ୍ୟ କିଛି ଅର୍ଥ ନାହିଁ । ସେଇପରି ଋତୁ ଆସେ, ଫୁଲ ଫୁଟାଇ ଦିଏ ବା ବର୍ଷା କରାଇ ଦିଏ, ସୂର୍ଯ୍ୟ ଗଛ ବଢ଼ାଇ ଦିଏ, ପବନ ବୁହେଇ ତାହା ଶୁଖାଇ ଦିଏ—ଏଇପରି ବିଶ୍ୱମଯ୍ୟ ସମସ୍ତେ ନିଜ ନିଜର ଧର୍ମ ପାଳନ କରି ଏ ବିଚିତ୍ର ସୃଷ୍ଟି ପ୍ରକାଶ ଠିକ୍ ନିୟମ ( ଋତ ) ରେ ରଖିଚନ୍ତି । ତେଣୁ, ସତ୍ୟ ବା ବିକାଶତତ୍ତ୍ୱର ପୂର୍ବରୁ ଏଇ ଋତ ( ବିଶ୍ୱ ନିୟମ ) ପ୍ରକାଶ ପାଇଥିଲା ବୋଲି ବେଦ କହନ୍ତି ( ଋଗ୍‌ବେଦ, ୧୦. ୧୯୦ ) ।

## ଧର୍ମ—'ସ୍ୱଭାବନିୟତ କର୍ମ'—

ମାନବ-କର୍ମ-ବ୍ୟାଖ୍ୟାରେ ଏଇ ଧର୍ମକୁ 'ନିୟତ କର୍ମ' ବା ନିତ୍ୟ କର୍ତ୍ତବ୍ୟ ବୋଲି ଭଗବାନ୍ କହିଚନ୍ତି—ଏହା ହିଁ 'ସ୍ୱଭାବନିୟତ' କର୍ମ । ( ୩. ୮, ୧୮, ୭, ୨୩, ୪୭) ଈଶ୍ୱର ବ୍ୟକ୍ତି, ଅର୍ଥାତ୍, ସାଧାରଣ କଥାରେ ବସ୍ତୁମାନେ ନିଜ ନିଜର ସ୍ୱଭାବନିୟତ କର୍ମ କରନ୍ତି । ସେଥିରେ ହିଁ ଆତ୍ମୋତ୍ସର୍ଗ ବା ଯଜ୍ଞ କରନ୍ତି । ସେଥିରେହିଁ ପ୍ରଜା ବା ବିଶ୍ୱବସ୍ତୁର ପ୍ରକାଶ ଧରାହୋଇଚି । ଏଇ କର୍ତ୍ତବ୍ୟମାନଙ୍କରେ ବିଶ୍ୱପ୍ରକାଶର ସ୍ଥିତି ଠିକ୍ ଅଛି । ଏ ସମସ୍ତ କର୍ମ ପୁଣି ନିଷ୍କାମ । ଏଥିରେ କେହି କିଛି କାମନାରେ କର୍ମ କରୁ ନାହାନ୍ତି—କେହି କିଛି ଦାବି କରିବାର ପ୍ରକାଶ ପାଉ ନାହିଁ. ମାତ୍ର କର୍ମର ଆଦାନ ପ୍ରଦାନ ଜାଲ ପରି ଛନ୍ଦି ହୋଇ ରହି ପ୍ରକାଶକୁ ବାନ୍ଧି ରଖିଲା ପରି ରଖିଚି । ସମସ୍ତେ ନିଜ ନିଜର ଆତ୍ମୋତ୍ସର୍ଗ ବା ପ୍ରକାଶ ଧର୍ମରେ ଅନ୍ୟୋନ୍ୟର ଅଭାବ ପୂରଣ କରି କରି ଚାଲିଚନ୍ତି । ଏଥିରେ ବିଶ୍ୱବିକାଶ ଚାଲିଚି ।

## ଏଇ 'ଯଜ୍ଞ' ଧର୍ମରେ 'ଦାନ' ଓ 'ତପ'—

ଏଇ ଆତ୍ମୋତ୍ସର୍ଗ ବା ଆତ୍ମବଳି, ଏଇ ନିତ୍ୟନିୟମ ଦାନ ବା ତ୍ୟାଗ-ଧର୍ମ ତଥା ଏଇ ତ୍ୟାଗ-ଧର୍ମରେ ଅତନ୍ଦ୍ରିତ ତପ ବା ପ୍ରଯତ୍ନ ବିଶ୍ୱସାରା ଚାଲିଚି । କର୍ତ୍ତବ୍ୟ ହିଁ ସମସ୍ତଙ୍କର ଯେପରି ଆତ୍ମପ୍ରକାଶ, ଏଇ କର୍ତ୍ତବ୍ୟରେ ପାଇବାର ସ୍ପୃହା ନାହିଁ, ଯାହା ନିଜ ଅଭାବ ପୂରଣ ଲାଗି ମିଳୁଚି, ସେଥିପାଇଁ ଅପେକ୍ଷା ନାହିଁ, ଅଥଚ ତାହା

ମିଳିବାର, ଏଣୁ ମିଳୁଛି । ଏଇ ଦାନ ବା ତ୍ୟାଗରେ କର୍ମ କରିବାକୁ ହେଉଛି ବୋଲି ଜଗତରେ କେହି କାହାର ଧର୍ମ ଛାଡ଼ୁ ନାହିଁ, ମୁହୂର୍ତ୍ତେ ହେଲେ ପଡ଼ୁ ନାହିଁ । ଏଥିରେ ପୁଣି ଭଲ ମନ୍ଦ, ଲାଭ କ୍ଷତି, ଜୟ ପରାଜୟର କିଛି ପ୍ରଭେଦ ନାହିଁ । ସୂର୍ଯ୍ୟୋଦୟପରେ ଗଛରେ ପତ୍ର ଫୁଲ ଯେପରି ବାହାରୁଛି, ଗଛ ସେଇପରି ପୋଡ଼ି ହି ଯାଉଛି । ବିଶ୍ୱପ୍ରକାଶ ଧର୍ମ - ସେଥିରେ ଅବ୍ୟାହତ ଚାଲିଛି । ସଂଚୟ ଓ ଅପଚୟ ମଧ୍ୟରେ ସୃଷ୍ଟିର ବିକାଶ ସମାନ ଗତି କରୁଛି । ବରଗଛର କେତୋଟା ମଞ୍ଜି ଗଛ ହୁଏ ? ତଥାପି ସେଇ ନିୟତ ଧର୍ମରେ କୋଟି କୋଟି ମଞ୍ଜି ବରଗଛ ଧରୁଛି, ବଢ଼ାଉଛି । ନାହିଁ କରି ହେଲେଇ ରହି ଯାଉ ନାହିଁ । କ୍ଷେତ ପୋଡ଼ିଗଲା ବେଳେ ଧାନ ଗଛ କାନ୍ଦୁ ନାହିଁ, କି କାତର ହେଉ ନାହିଁ । ସେଇ ସମତ୍ୱ ବା ମନୁଷ୍ୟ ଯାହାକୁ ସୁଖ ଦୁଃଖ କହେ. ସେଥିରେ 'ସମବୁଦ୍ଧି' ହେବା ହିଁ ବିଶ୍ୱଧର୍ମ ବା କର୍ମର ଯଥାର୍ଥ ପ୍ରୟୋଗ ଓ ଗତି । ବିଶ୍ୱଯଜ୍ଞରୁ ଉଦ୍ଭୂତ ଧର୍ମରେ ଏଇ ନିୟମ ।

## ସ୍ୱଧର୍ମ—

ଏଇ ବିଶ୍ୱଯଜ୍ଞରେ ବ୍ୟକ୍ତିର ସ୍ୱଧର୍ମ ବା ନିୟତ କର୍ମ ହିଁ ଆତ୍ମସାଧନ ଓ ଆତ୍ମ-ବିକାଶର ପ୍ରତୀକ । ଏଇ ଧର୍ମର ପ୍ରକୃତି ନିଜର କର୍ତ୍ତବ୍ୟମାନଙ୍କରେ ଆତ୍ମୋତ୍ସର୍ଗ ବା ଯଜ୍ଞ । ଏଇ ଆତ୍ମୋତ୍ସର୍ଗରେ ନିଜର ଲାଭାଲାଭ ବିଚାର ନାହିଁ—ଏହା ଏକ ଦାନ କର୍ମର ଯେପରି କି ଅବିଚ୍ଛିନ୍ନ ଧାରା । ଏହା କାମନାହୀନ—ନିଷ୍କାମ । ଏଥିରେ ପୁଣି କାମନା ନାହିଁ ବୋଲି ହେଲେଇ ଥକିଯିବାର ନାହିଁ । ଏହି ଧର୍ମ ସର୍ବଦା 'ତପ' ବା ପ୍ରଯତ୍ନରେ ଜାଗ୍ରତ । ପୁଣି ଏଥିରେ ସୁଖ ଦୁଃଖ ଲାଭାଲାଭାଦିର ଗଣନା ବା କଳ୍ପନା, କି କଳନା ନାହିଁ । ଦ୍ୱନ୍ଦ୍ୱରେ ସମତ୍ୱ ହିଁ ଏହାର ଏକମାତ୍ର ସ୍ଥିତି । ଏଇ ଯଜ୍ଞ ଦାନ ତପରେ ଦ୍ୱନ୍ଦ୍ୱ—ସମତ୍ୱ ରଖି ନିଷ୍କାମରେ ସ୍ୱଧର୍ମ କରିବା ହିଁ ବିଶ୍ୱଧର୍ମ । ଏଥିରେହିଁ ସୃଷ୍ଟି ପ୍ରତିଷ୍ଠିତ ଓ ନିତ୍ୟବିକାଶରେ ପ୍ରକାଶିତ । ଏ ଧାରା ଛିନ୍ନ ହେଲେ ସୃଷ୍ଟିରେ ସବୁ ବିଶୃଙ୍ଖଳ ଓ ଅସ୍ତବ୍ୟସ୍ତ । ଏହା ହିଁ ସ୍ଥିତିର ଲୀଳା ବା ସ୍ୱଭାବ-ପ୍ରକାଶର ଧର୍ମ । ବିଶ୍ୱପୁରୁଷଙ୍କ ଯଜ୍ଞ ବର୍ଣ୍ଣନା କରିବାରେ କବି-ଋଷିଙ୍କ ଏଇ ଧାରଣାର ସୂଚନା ସ୍ପଷ୍ଟ ।

## ଆର୍ଯ୍ୟଧର୍ମହିଁ ଗୀତାର ଯୋଗ—

ମାନବ-ସମାଜରେ ଏହାର ପ୍ରୟୋଗ ହିଁ ଆର୍ଯ୍ୟଧର୍ମ, ଏହା ହିଁ ଗୀତାର ଯୋଗରେ ପ୍ରକାଶ ପାଏ । ସମାଜରେ ମାନବ କର୍ମର ଯୋଜନାର ମହାମନ୍ତ୍ର ଏଇ-ଠାରେ । ଏଇ ବ୍ରହ୍ମ ଯଜ୍ଞ ବା ବିଶ୍ୱଧର୍ମର ଯୋଜନାରେ ମାନବ ନିଜର ନିୟତ କର୍ମ ବୁଝିବ ଓ କରିବ । କିପରି ? ତାହା କୁହାଯାଇଛି । ମାନବର କର୍ମ ଯୋଜନା ଠିକ୍ କରିବା କିପରି ଏକପ୍ରକାର ଅସମ୍ଭବ ପରି ଲାଗେ, ତା ପୂର୍ବେ କୁହାଯାଇଛି । କାମନା ମାନବର ସ୍ୱାଭାବିକ ଧର୍ମ । ହୁଏତ ମାନବର 'ସ୍ୱଭାବନିୟତ କର୍ମ' କହିଲେ, ଏଇ

କାମନାପ୍ରେରିତ ଧର୍ମ ବୁଝାଯାଏ । ମାତ୍ର 'ନିୟତ' (ନିୟନ୍ତ୍ରିତ) କଥାଟି ଏଠାରେ ମନେ ରଖିବାକୁ ହେବ ଓ ସେଇ ହିସାବରେ ସ୍ୱଭାବକୁ ବୁଝିବାର ଅଛି । ସେ ସ୍ୱଭାବ କଣ ଓ ସେଥିରେ କର୍ମ କିପରି ନିୟତ ହେବ ? ସେଇଠାରେ ଯଜ୍ଞ—ଯଥାର୍ଥ ଯଜ୍ଞର ପ୍ରୟୋଗ । ମାନବର ଯେଉଁ ବିଶୃଙ୍ଖଳ ପ୍ରବୃତ୍ତି ସର୍ବଦା ଜାଗ୍ରତ ହୁଏ, ତାହାହିଁ ହିଁ ଠାରୁ ମାନବର ବ୍ୟକ୍ତି-ଧର୍ମ ବୋଲି ମନେ ହୁଏ । ତାହାର ମୂଳ କାମନା, ଭୋଗ ବା ଫଳତୃଷ୍ଣା । ଇନ୍ଦ୍ରିୟମାନେ ଏଇ କାମନାର ଅଧିଷ୍ଠାନ । ଏଇ ଇନ୍ଦ୍ରିୟ-ଚାଳନା ବା ଇନ୍ଦ୍ରିୟଭୋଗରେ କାମନା ପଶି କ୍ରମେ ମନ ଓ ବୁଦ୍ଧିକୁ ଅଭିଭୂତ କରେ । ସେଥିରେ ଆତ୍ମଜ୍ଞାନ ବା ଯଥାର୍ଥ ବ୍ୟକ୍ତିତ୍ୱ-ଜ୍ଞାନ ନଷ୍ଟ ହୁଏ (୩.୪୦) । ଏଇ ବ୍ୟକ୍ତିତ୍ୱ ଜ୍ଞାନ କଣ ?

## ଯଜ୍ଞରେ ବ୍ୟକ୍ତି ଓ ବିଶ୍ୱ-ଧର୍ମର ସମନ୍ୱୟ—

ଇନ୍ଦ୍ରିୟଭୋଗରେ କାମନା ବା ସ୍ୱାର୍ଥ ବା 'ପୁରୁଷାର୍ଥ' କର୍ମପ୍ରେରଣା ପ୍ରକାଶ ପାଏ । ତାହା ବ୍ୟକ୍ତିତ୍ୱକୁ ବିଶୃଙ୍ଖଳ କରେ । ଏହା ପ୍ରତ୍ୟେକ ମାନବ ଅନୁଭବରେ ଜାଣେ । ଏହାକୁ ହିଁ କୌଣସି ଆଦର୍ଶରେ ଶୃଙ୍ଖଳିତ ବା 'ନିୟତ' କରିବା ପ୍ରତ୍ୟେକ ସାମାଜିକ ମାନବର କାର୍ଯ୍ୟ ହୋଇଥାଏ, ଏହା ପୂର୍ବେ କୁହାଯାଇଛି । ସେଥିପାଇଁ ଆଇନ, ନୀତି, ଧର୍ମ, ସମାଜ, ଦେଶ ଓ ଦଶ, ସବୁର ବିକାଶ ପାଇଛି । କିନ୍ତୁ କୌଣସିଟିରେ ସମୂହ ମାନବ-ସମାଜର ସ୍ଥିର ଶାନ୍ତ କର୍ମଧାରା ଫୁଟିବାର ଉପାଦାନ ନାହିଁ । ଭୋଗର ନିର୍ବୋଧ ପ୍ରସାର କଳନାରେ ଭୋଗକୁ ସଂଯତ କଲେ, କାମନାର ଚରମ ପ୍ରାପ୍ତି ଆଦର୍ଶରେ କାମନାକୁ ଦଣ୍ଡିଲେ, କର୍ମର ଅଧିଷ୍ଠାନ ସ୍ଥିର ନୁହେ, ଏହା ଦେଖାଯାଇଛି; ମାତ୍ର ଏହା ମଧ୍ୟ ଦେଖାଯାଇଛି, ନିଜର ନିକଟ ସ୍ୱାର୍ଥରେ କର୍ମ-ବୁଦ୍ଧି ବା ପ୍ରେରଣା ନ ରଖି ଯେତିକି ସ୍ୱାର୍ଥର ପ୍ରସାର ତ୍ୟାଗ ବା ଉତ୍ସର୍ଗ କରାଯାଏ, କାମନା ସଂଯମ ହିସାବରେ ସେତିକି ଅଗ୍ରସର ହୁଏ । ମୋ ନିଜ ପାଇଁ ଭୋଗ ନ ଖୋଜି ମୁଁ ଯଦି କୁଟୁମ୍ବ ପାଇଁ, ଗ୍ରାମ ପାଇଁ ବା ଜାତି ପାଇଁ ଖୋଜେ, ତେବେ କାମନାର ବିଶୃଙ୍ଖଳତା ଅଧିକରୁ ଅଧିକ ସଂଯତ ହୁଏ । କ୍ରମେ ଏଇପରି ଲୋକ ନିଜର ଭୋଗ ବଳି ଦେଇ ଅନ୍ୟ ପ୍ରତି କର୍ତ୍ତବ୍ୟ କରିବାରେ ନିଜର ପୁରୁଷାର୍ଥ ଦେଖେ । ଏ ଦେଶର ସ୍ମୃତି ବାକ୍ୟମାନଙ୍କରେ ସେଇ ପୁରୁଷାର୍ଥ (ଲୋକର ପ୍ରୟୋଜନ)ର କ୍ରମିକତା ଦେଖାଇ ଧର୍ମ, ଅର୍ଥ, କାମ ଓ ମୋକ୍ଷ, ଏଇ ଚାରୋଟି ଆଦର୍ଶରେ ପ୍ରେରଣାର ପୀଠ ରଖିଥିଲେ । ପରେ ଦ୍ୱୈତବାଦୀ ବୈଷ୍ଣବମାନେ ଏଥିରେ 'ପ୍ରେମ'କୁ ପଞ୍ଚମ ପୁରୁଷାର୍ଥ ରୂପେ ଯୋଡ଼ିଲେ । ଏଥିରେ କାମ, ଅର୍ଥ, ଧର୍ମ, ପ୍ରେମ ଓ ମୋକ୍ଷ ଏଇପରି କ୍ରମୋର୍ଦ୍ଧ୍ୱ ସୋପାନ ଦେଖିବାକୁ ହେବ । କାମ, କାମନାର ଲାଭ ମାତ୍ର, ଅର୍ଥ; ପରେ କାମନା ଲାଭ କରିବା ନିମନ୍ତେ ଏବେ କଷ୍ଟ ପଡ଼ି ଆୟୋଜନର ସାମର୍ଥ୍ୟ ବା ଧନ ସଂଗ୍ରହ; ଧର୍ମ ଇହଲୋକର କାମନା ସଂଯତ କରି କଷ୍ଟ ପଡ଼ି, ପରଲୋକ ସୁଖ ନିମନ୍ତେ କର୍ତ୍ତବ୍ୟ କର୍ମ; ପ୍ରେମ, ସମସ୍ତଙ୍କଠାରେ ସମବୁଦ୍ଧି କରି ସର୍ବଭୂତ ହିତରେ ମନ ଦେବା;

ମୋକ୍ଷ, କର୍ମରେ ସବୁ କାମନାର ବନ୍ଧନ ତୁଟାଇ ମୁକ୍ତ ହେବା । ପ୍ରେମ ପୁଣି ମୋକ୍ଷର ସାଧନ । ତେଣୁ ପ୍ରେମ ଓ ମୋକ୍ଷକୁ ଏକ ବସ୍ତୁକୁ ଦୁଇ ଦଗରୁ ଦେଖିବାର କଥା—କର୍ମର ପ୍ରକାର ଦୃଷ୍ଟିରେ ଏହା ପ୍ରେମ ଓ ଆଦର୍ଶ ବା ବ୍ୟକ୍ତିତ୍ୱ ଦୃଷ୍ଟିରେ ଏହା ମୋକ୍ଷ । ଏଠାରେ ଦେଖିବାକୁ ହେବ, କାମନା, ତୃଷ୍ଣା ବା ସ୍ୱାର୍ଥର କ୍ରମିକ ତ୍ୟାଗରେ ଏଇ ବ୍ୟକ୍ତିତ୍ୱର କ୍ରମୋନ୍ନତ ଧାରଣା । ଯେତେ ତ୍ୟାଗ, ବ୍ୟକ୍ତିତ୍ୱ ସେତେ ଉନ୍ନତ । ଏଇ ତ୍ୟାଗହିଁ ସ୍ୱାର୍ଥ ବା ଆତ୍ମାର ଉତ୍ସର୍ଗ—ବଳି । ଏହା ହିଁ ଯଜ୍ଞ । ଭୋଗସଂଗ୍ରହର ଉଦ୍ୟମ ଛାଡ଼ି ଦାନ ବା କର୍ତ୍ତବ୍ୟ ଧଇଲେ, ହେଲା ଯଜ୍ଞ । ମୋକ୍ଷ ପୁରୁଷାର୍ଥରେ ଏଇ ବ୍ୟକ୍ତି-ଯଜ୍ଞର ପୂର୍ଣ୍ଣାହୁତି କହିଲେ ଚଳେ । ମୋକ୍ଷ କେବଳ ପାରତ୍ରିକ ସୁଖର ଆଦର୍ଶରେ ବର୍ତ୍ତମାନ କାମନାର ସଂଯମ ମାତ୍ର ନୁହେଁ—ଏହା ଇହ ପର ସମସ୍ତ ସୁଖ କାମନା ବା କର୍ମବନ୍ଧନର ଅତ୍ୟନ୍ତାବସାନ । ଏହା ଦୁଃଖାନ୍ତ । ଏଥିରେ ସମସ୍ତ ଦୁଃଖର ନିବୃତ୍ତି । ଜଗତରେ ଲଭ୍ୟ ସମସ୍ତ ସୁଖ, ଦୁଃଖର ତୁଳନାରେ କଳମୀଷ୍ଟ ଓ କଲୁମୀଷ୍ଟ ମଧ୍ୟ । ତେଣୁ ଯାହାକୁ ଆମେ ସୁଖ କହୁଁ ସେ ନିତ୍ୟ ନୁହେଁ—ସେଥିରେ ଦୁଃଖାନ୍ତ ହୁଏ ନାହିଁ । ଏଇ ଦୁଃଖାନ୍ତର ସାଧନାରେ ସମସ୍ତ ତୃଷ୍ଣା ଓ କାମନା ବଳି ଦେଇ ଐହିକ, ପାରତ୍ରିକ—କୌଣସି ସୁଖ ଦୁଃଖରେ ଆତ୍ମାକୁ ଭୁଲାଇ କାମରେ ଲଗାଇବାର ପ୍ରଯତ୍ନ ନ କଣ, କର୍ମ ବା କର୍ତ୍ତବ୍ୟରେ ଲାଗିବାକୁ ହୁଏ । ଏହା ଆପାତତଃ କାମନା ତ୍ୟାଗରେ କଷ୍ଟକର ହେଲେହେଁ ସ୍ଥିରବୁଦ୍ଧିର ଅଭ୍ୟାସରେ ଆତ୍ମପ୍ରସାଦ ବା ବ୍ୟକ୍ତିତ୍ୱରେ ସନ୍ତୋଷ ଧାରଣା ଆସିଲେ ପରିଣାମରେ ଅମୃତ ପର ହୁଏ—ଅର୍ଥାତ୍ ମୁକ୍ତିର ଅମୃତ ବା ଚରମ ସନ୍ତୋଷର ଶାନ୍ତିରେ ପରିଣତ ହୁଏ । ( ୧୮.୩୬, ୩୭ )

## ଆତ୍ମାରେ ବୁଦ୍ଧି ନିବେଶ—

"ଆତ୍ମବୁଦ୍ଧି ପ୍ରସାଦ"ରୁ ଏହା ହୁଏ ବୋଲି କୁହାଯାଇଛି । ଏହାର ଅର୍ଥ ଆତ୍ମା ବା ମନୁଷ୍ୟତାର ଚରମ ଆଦର୍ଶର ଚେତନା କର୍ମପ୍ରବୃତ୍ତିରେ ସ୍ଥିର ହେଲେ ଏ ଶାନ୍ତି ବା ପ୍ରସନ୍ନତା ଆସେ । ପୁଣି ଏହାର ସାଧନା ପ୍ରଥମରୁ କଷ୍ଟ ବା ଦୁଃଖକର ବୋଲି ମନେହୁଏ । ଯେ କୌଣସି ଆଦର୍ଶରେ ବ୍ୟକ୍ତିତ୍ୱକୁ ଉନ୍ନତ କଲେ ମଧ୍ୟ, ଏଇ ପ୍ରକାର ସାଧନା ମନକୁ ହୋଇଥିବାର ଦେଖାଯାଏ । ପୁଣି ଅଭ୍ୟାସରେ ସ୍ଥାୟୀ ହୋଇଗଲେ ସେଥିରେ ଆନନ୍ଦ ଓ ସନ୍ତୋଷ ହୁଏ । କୌଣସି ଉଚ୍ଚ ଅଭିଳାଷରେ ବୁଦ୍ଧି ଠିକ୍ ରଖି କାମ କଲେ ମଧ୍ୟ ଏହା ହିଁ ଦେଖାଯାଏ । ତାଠାରୁ ଆଉରି ଉଚ୍ଚ ଅଭିଳାଷରେ ଆହୁରି ଅଧିକ ମଧ୍ୟ ଦେଖାଯାଏ । ପିଲାଏ ବା କୁଟୁମ୍ବ ଭଲରେ ଚଳିବେ ବୋଲି, ଲୋକେ ନିଜେ କଷ୍ଟରେ ନିଜର ଭୋଗ ଛାଡ଼ି, ପିଲାଙ୍କର ଟିକିଏ ସୁଖ ଦେଖି ସେଥିରେ ହିଁ ଆନନ୍ଦ ପାନ୍ତି । ଲିଭିଂଷ୍ଟୋନ୍ ପରି ଇଂରେଜମାନେ ପୃଥିବୀର ଅଜ୍ଞାତ ଦେଶ ଓ ଲୋକଙ୍କୁ ଆବିଷ୍କାର କରି ନିଜକୁ ତଥା ଜାତିକୁ ସ୍ମରଣୀୟ କରିବେ ଓ ସେଇ ସୂତ୍ରରେ ଜ୍ଞାନ ବଢ଼ାଇ ଲୋକର ଉପକାର କରିବେ ବୋଲି କିପରି ସମସ୍ତ ଜୀବନ

ଆଫ୍ରିକାର ଜଙ୍ଗଲରେ ସିଂହମୁଖରେ ବାରଂବାର ପଡ଼ି ଓ ଅସଭ୍ୟ ଲୋକଙ୍କ କବଳରେ ନିତ୍ୟ ରହି ମଧ୍ୟ ସମସ୍ତ ଜୀବନ ସେହି ଦେଶ ଓ ଲୋକଙ୍କ ଭିତରେ କଟାଇଥିଲେ, ତା ସମସ୍ତେ ଜାଣିଥିବେ । ବାରମ୍ବାର ଇଂଲଣ୍ଡକୁ ଫେରି ମଧ୍ୟ ଲଣ୍ଡନର ସ୍ୱଚ୍ଛନ୍ଦ ଜୀବନ ଓ ସରକାରୀ ବୃତ୍ତି ତାଙ୍କୁ ସନ୍ତୋଷ ଦେଇପାରି ନ ଥିଲା । ଦେଶର ମଙ୍ଗଳରେ ନିଜର କର୍ତ୍ତବ୍ୟ ଦେଖି ଲୋକେ କେତେ ଦୁଃଖ ସହି ଶେଷରେ କିପରି ପ୍ରାଣପାତ କରି ସେଇଥିରେ ସନ୍ତୋଷ ଦେଖୁଛନ୍ତି, ତାର ଦୃଷ୍ଟାନ୍ତ ଏ ଯୁଗରେ ଅଳ୍ପ ନୁହେ । ମାତ୍ର ଏସବୁଠାରୁ ଉପରେ ହେଉଛି ମୁକ୍ତି ବା ଆତ୍ମଜ୍ଞାନ—ଆତ୍ମାର ଯଥାର୍ଥ ପ୍ରକାଶ । କୁହାଯାଇଛି ଏହା ସବୁଥିରେ ଥିଲେହେଁ କାହିଁରେ ଲଗା ବା ଲିପ୍ତ ନୁହେ । ଏହି ଜ୍ଞାନ ସ୍ଥିର ହେଲେ ଏହି ନିର୍ମଳ ଆତ୍ମାରେ ଚେତନା ପ୍ରତିଷ୍ଠିତ ହେଲେ କର୍ମ ନିଷ୍କାମ ହୁଏ ।

ଏହି ନିଷ୍କାମତା, ଅର୍ଥାତ୍ କାମନା ଛାଡ଼ି କର୍ମ କରିବାରେ 'ଯୋଗ' 'କ୍ଷେମ' ପାଇଁ ବ୍ୟାକୁଳତା ନାହିଁ—ରହି ନ ପାରେ । ଯୋଗ ଆହରଣ, ସଂଗ୍ରହ, ପାଇବା; କ୍ଷେମ ସଞ୍ଚୟ, ପାଇବା ଦ୍ରବ୍ୟକୁ ସମ୍ଭାଳିବା ( ୨.୪୫ ) ।

## କର୍ତ୍ତବ୍ୟର ଧାରଣା—

ମାନବର ଇନ୍ଦ୍ରିୟମାନେ ଏକପ୍ରକାର ଅଦମ୍ୟ । କାମନା ଏହି ଇନ୍ଦ୍ରିୟରେ ରହି କ୍ରମେ ମନ ବୁଦ୍ଧିକୁ ଅଧିକାର କରି ଏହି ଆତ୍ମଭାବ ବା ବ୍ୟକ୍ତିତ୍ୱ ଆଦର୍ଶକୁ ମଳିନ କରିଦିଏ । ତେଣୁ ଇନ୍ଦ୍ରିୟରେ ଆତ୍ମବୁଦ୍ଧି ହୁଏ । ଏହି ଇନ୍ଦ୍ରିୟରୁ ଆତ୍ମବୁଦ୍ଧି ଉଠାଇ କିପରି କ୍ରମେ କ୍ରମେ ନିର୍ମଳ ଆତ୍ମାର ଧାରଣା କରିବାକୁ ହେବ, ସେଥିପାଇଁ ୩. ୪୦-୪୩ ଓ ୬.୫,୬ ଟୀକା ଦେଖ । ଏହି ଇନ୍ଦ୍ରିୟସଂଯମ ବା ଆତ୍ମସଂଯମର ମୂଳମନ୍ତ୍ର ନିଜେ ସବୁ ଭୋଗ କରିବ ବୋଲି ବ୍ୟାକୁଳ ନ ହୋଇ ତ୍ୟାଗର ଅଭ୍ୟାସ କରିବ । ଜଗତରେ ନିଜର କଣ କର୍ତ୍ତବ୍ୟ ଅଛି, ସେହି ଆଡ଼କୁ ଦୃଷ୍ଟି ଦେବ । ସର୍ବଦା କର୍ତ୍ତବ୍ୟ ଖୋଜି ସେହି ଦୃଷ୍ଟିରେ ନିଜ କର୍ମ ନିୟମିତ କରିବ । କାମନା ବା ନିଜସ୍ୱ ସ୍ୱାର୍ଥକୁ ତ୍ୟାଗ କରି କର୍ତ୍ତବ୍ୟକୁ ଗ୍ରହିବ । କର୍ତ୍ତବ୍ୟରେ ନିଜର ଆତ୍ମବିକାଶ । ସବୁବେଳେ ପାଇବି ସମ୍ଭାଳିବି ବୋଲି ବ୍ୟାକୁଳ ହେବାରେ ଆତ୍ମବିକାଶ ହୁଏ ନାହିଁ । ଆତ୍ମାର ସେଥିରେ ଅଶାନ୍ତି ବଢ଼େ ଓ ସଙ୍କୋଚରେ ଆତ୍ମାର କର୍ମ ବିଶୃଙ୍ଖଳ ହୁଏ । ଆତ୍ମା ମୋହରେ ମଳିନ ହୁଏ । ମାତ୍ର କର୍ତ୍ତବ୍ୟର ଧାରଣାରେ ଦୃଢ଼ ରହିଲେ, ନିଜର ସ୍ୱାର୍ଥ ଯେ ସାଧିତ ନ ହୁଏ, ତା ନୁହେଁ । ସମାଜରେ ସମସ୍ତେ ନିଜ ପାଇଁ ବା ପର ପାଇଁ—ଯାହା ବିସ୍ତର କର୍ମ କରନ୍ତୁ, କେହି ଆତ୍ମାକୁ ବା ଆପଣାକୁ ସମ୍ପୂର୍ଣ୍ଣରୂପେ ଅନ୍ୟଠାରୁ ଅଲଗା ରଖି ଭୋଗ ଆହରଣ ମଧ୍ୟ କରିପାରିବ ନାହିଁ । ଭୋଗର ଆହରଣରେ ମଧ୍ୟ ନିଜର ସାମଗ୍ରୀ ଅନ୍ୟର କରିଦେବାକୁ ହୁଏ ( ୩. ୧୧ ) । ସମସ୍ତେ ନିଜ ନିଜର କର୍ତ୍ତବ୍ୟରେ ରହିଲେ ପୁଣି ଅନାୟାସରେ ସମସ୍ତଙ୍କ ସ୍ୱାର୍ଥସିଦ୍ଧି ହୁଏ । ସେଥିରେ ଅନ୍ୟ କର୍ତ୍ତବ୍ୟରୁ ନିଜର

ଭୋଗ ଧାନ ଓ ନଜ କର୍ତ୍ତବ୍ୟରେ ଅନ୍ୟର ଭୋଗାଧାନ—ଏଇପର ଆପେକ୍ଷିକତାର ଶୃଙ୍ଖଳାରେ ସମାଜର ବିକାଶ ସ୍ପଷ୍ଟ ଓ ଶାନ୍ତ ଧାରାରେ ଚାଲେ । ଏହା ହିଁ ଆଦର୍ଶ କରି-ପାରିଲେ ଆତ୍ମା ନର୍ମଳ ହୁଏ । ଏଇ ଆଦର୍ଶ କର ଭଗବାନ୍ କହୁଚନ୍ତି—"ଯାହା ମିଳଲା ସେଥିକରେ ନଜର ସ୍ୱାର୍ଥ ସିଦ୍ଧି ହେଲା ବୋଲି ସନ୍ତୁଷ୍ଟ ରହି, କାହାର ଭୋଗାଧାନରେ ଈର୍ଷା ନ କରି, ସୁଖ ଦୁଃଖ ସବୁ ଜଗତରେ ସମାନ ବୋଲି ବୁଝି ନଜର ନସ୍ତୃତ କର୍ମ ବା କର୍ତ୍ତବ୍ୟମାନଙ୍କରେ ବୁଦ୍ଧି ଦେଲେ, ଲୋକ କର୍ମର କାମନା ବନ୍ଧନ ତୁଟାଇପାରେ ।" (୪.୨୨)

ଏଇ କର୍ତ୍ତବ୍ୟ-ବୁଦ୍ଧିରେ ନଜର ଜଗତକୁ ବା ସମାଜକୁ ଦବାର କଣ ଅଛୁ ଏହା ହିଁ ବିଚାର କରି କର୍ମ କରିବା ହିଁ ବ୍ୟକ୍ତିର ଯଜ୍ଞ । ବ୍ୟକ୍ତି ଏଥିରେ ବିଶ୍ୱରେ ଲୀନ ନୁହେ । ବିଶ୍ୱ-ମାନ ସୃଷ୍ଟିରେ ଏକା ବ୍ୟକ୍ତିର ଅସ୍ତିତ୍ୱ ନୁହେ । ବ୍ୟକ୍ତି ହିଁ ଦେବା ଲୋକ, ବିଚାର କରି ନଜର ବିକାଶ ବା ନର୍ମଳ ଆଦର୍ଶ ସାଧନରେ ଲାଗିଚ ବ୍ୟକ୍ତି ।

ସେଥିପାଇଁ ଭଗବାନ୍ କହୁଚନ୍ତି—

"ମୋର ଏ କର୍ମ ବା ଭୋଗଟି କାମ୍ୟ ବା ପ୍ରିୟ ବୋଲି, କର୍ମରେ ଯେଉଁ ଆସକ୍ତି ହୁଏ, ଯେଉଁ ହେତୁରୁ ଲୋକର କର୍ତ୍ତବ୍ୟରେ ଭ୍ରମ ହୁଏ, ସେଇ ଆସକ୍ତି ଛାଡ଼ି, କର୍ମର ଏଇ ବନ୍ଧନରୁ ମୁକ୍ତ ହୋଇ ଯଥାର୍ଥ କର୍ତ୍ତବ୍ୟମସ୍ତ ବିକାଶପର ଆତ୍ମାର ଜ୍ଞାନରେ ମନକୁ ଠିକ୍ ରଖି ଏଇ ବ୍ୟକ୍ତି ଯଜ୍ଞରେ କର୍ମ କଲେ, ଲୋକର କର୍ମଫଳର ସ୍ପୃହା ଲୋପ ପାଇବା ହେତୁରୁ କର୍ମର ଦୋଷ ରହେ ନାହିଁ (୪.୨୩) । ଯେ ଯେଉଁ କର୍ତ୍ତବ୍ୟର ସାଧନାରେ ଏଇ କର୍ମ ଦୋଷ ଛାଡ଼ିବାକୁ ଲୋଡ଼ୁ ନା କ ହିଁକ, ସବୁଥିରେ ସେ ସେଇ କର୍ତ୍ତବ୍ୟରେ ନଜକୁ ବା ନଜର ସ୍ପୃହା ଅଭିଳାଷାଦକୁ ବଳି ଦଏ । ଦ୍ରବ୍ୟରେ, ତପରେ, ଯୋଗରେ ସ୍ୱାଧ୍ୟାୟରେ, ଜ୍ଞାନରେ—ଯହିଁରେ ଲୋକ ମୁକ୍ତି ଖୋଜେ, ସବୁଥିରେ ଏଇ ଯଜ୍ଞ—ଏଇ ଆତ୍ମଦାନ ଓ ଏଇ କର୍ତ୍ତବ୍ୟଭାବରେ କର୍ମ । (୪.୨୮ ଓ ତତ୍ପୂର୍ବ ଓ ପର ଶ୍ଳୋକମାନ ଦେଖ) । ଏଇ ଯଜ୍ଞଭାବ ବ୍ୟତୀତ ଧର; ଦ୍ରବ୍ୟ ଦେଇ ଯେବେ ଭୃତ୍ୟତା ବା ଅନ୍ୟକଛି ପ୍ରତିଦାନ ଦାବି କରାଯାଏ, କିଂବା ଧର, ସୁଧପାଇଁ ଯଦ ଟଙ୍କା କରଜ ଦଆଯାଏ, ଖିରିପିଠା ଖାଇବାକୁ ମିଳିବା ପୂର୍ବରୁ । ପେଟ ପରିଷ୍କାର କରିବା ଉଦ୍ଦେଶ୍ୟରେ ଯଦ ପ୍ରାଣାୟାମ (ତପ) କରାଯାଏ, ଆଶ୍ଚର୍ଯ୍ୟ କ୍ଷମତା ଦେଖାଇ ପ୍ରଭୁତ୍ୱ କରିବା ପାଇଁ ଯଦ ଯୋଗ କରାଯାଏ, ପୌରୋହିତ୍ୟରେ ପ୍ରତିପତ୍ତି ବଢ଼ାଇବାକୁ ଯେଉଁ ସ୍ୱାଧ୍ୟାୟ କରାଯାଏ, ପରକାଶ ଚାକିରି ପାଇଁ ପ୍ରତିଯୋଗିତାରେ ଅନ୍ୟକୁ ଟପିବା ନମନ୍ତେ କେବଳ ଯେଉଁ ଜ୍ଞାନ ଅର୍ଜନ କରାଯାଏ, ସେଥିରେ ଯଜ୍ଞ ଧାରଣା ଦୃଢ଼ ନୁହେ । ମୁଁ ମୋର କର୍ତ୍ତବ୍ୟ ମାତ୍ର କରୁଚ, ଫଳ ଯାହା ହେଉ ବୋଲି ସେସବୁ କରାଯାଏ ନାହିଁ । ଅବଶ୍ୟ ଏସବୁ କରିବାରେ ଏକ ଏକ ଉଦ୍ଦେଶ୍ୟରେ ଚେତନା ଠିକ୍ ରଖି କଷ୍ଟ ପାଇ ଆତ୍ମାର ଦୂରରେ ମଙ୍ଗଳ ବା ଦୂର

ସ୍ୱାର୍ଥରେ ବୃଦ୍ଧି ଦେବାକୁ ହୁଏ ସତ, ମାତ୍ର ତାଠାରୁ ଆହୁରି ଦୂର ସ୍ୱାର୍ଥ ମଧ୍ୟ କଳ୍ପନାରେ ଦେଖାଯାଉଛି । ତେଣୁ ଏସବୁ ଯଜ୍ଞ ହେଲେହେଁ, ସେ ଯଜ୍ଞରେ ଆତ୍ମାର ଚରିଶାନ୍ତି ବା ସନ୍ତୋଷ ନାହିଁ । ସେସବୁରେ ଯଜ୍ଞବୁଦ୍ଧି ନିତ୍ୟ-ଭାବରେ ପ୍ରତିଷ୍ଠିତ ରହି ନ ପାରେ । ଏସବୁ ଯଜ୍ଞଭାବରେ ସମାଜର ନିତ୍ୟ ମଙ୍ଗଳ-କାମନା ବୃଥା । ତାହା ବ୍ୟକ୍ତିତ୍ୱର ଚରମ-ବିକାଶର ମାର୍ଗ ନୁହେଁ । ଯେଉଁ ଜ୍ଞାନରେ ଅଖିଳ କର୍ମ ପରିସମାପ୍ତ ବା ନିତ୍ୟଶାନ୍ତି-ଧାରାରେ ନିଯୁକ୍ତ ହୁଏ, ଏଥିରେ ସେ ଜ୍ଞାନ ନାହିଁ । ଅନ୍ୟକୁ ବଂଚିତ କରିବା ଅସୁବିଧାରେ ପକାଇ ଆତ୍ମକଲ୍ୟାଣ ସାଧନ କରିବାର ବୁଦ୍ଧି ଥିବାଯାଏ ଏ ବ୍ୟକ୍ତି-ଯଜ୍ଞରେ ପୂର୍ଣ୍ଣାହୁତି ହୁଏ ନାହିଁ । ସେଥିପାଇଁ ବ୍ୟକ୍ତିର ଏହି ଯଜ୍ଞକୁ ଦୃଢ଼ଭିତ୍ତିରେ ସ୍ଥାପନ କରି ଭଗବାନ୍ ମୂଳରୁ କହିଚନ୍ତି—

> ବ୍ରହ୍ମାର୍ପଣଂ ବ୍ରହ୍ମହବିଃ
> ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତଂ ।
> ବ୍ରହ୍ମୈବ ତେନ ଗନ୍ତବ୍ୟଂ
> ବ୍ରହ୍ମ-କର୍ମ-ସମାଧିନା ॥ (୪. ୨୪)

ଏହା ହିଁ ପୂର୍ଣ୍ଣ ମୁକ୍ତିର ଆଦର୍ଶରେ ବ୍ୟକ୍ତିର ସମାଧି । ଏହାହିଁ "ବ୍ରହ୍ମ-କର୍ମ-ସମାଧି" । ଏଥିରେ ହିଁ ମନୁଷ୍ୟ ବ୍ରହ୍ମ ପାଏ ବା ବ୍ରହ୍ମତ୍ୱ ପାଏ—ମୁଁ ଓ ବ୍ରହ୍ମ ଏକ ପ୍ରକୃତିର ତତ୍ତ୍ୱ ବୋଲି ବୁଝିଯାଏ ଓ ତାର ନିତ୍ୟ ଶାନ୍ତି ହୁଏ—ସେ ଆଉ ଭୋଗ-କାମନାଦିରେ ବ୍ୟତିବ୍ୟସ୍ତ ବା ଇତସ୍ତତଃ ହୁଏ ନାହିଁ ।

## କର୍ତ୍ତବ୍ୟରେ ବ୍ୟକ୍ତି ଓ ବିଶ୍ୱର ସମନ୍ୱୟ—

ଏଇଠାରେ ବ୍ୟକ୍ତି ଓ ବିଶ୍ୱବସ୍ତୁର ମହାସମନ୍ୱୟ । ବିଶ୍ୱର ବ୍ୟକ୍ତି, ଧରି ସୂର୍ଯ୍ୟ; ସେ ନିର୍ବିକଳ୍ପଭାବରେ ନିଜର କର୍ତ୍ତବ୍ୟ ହିଁ କରିଯାଉଛି । ସେଥିରେ କାମନା ନାହିଁ, ଆସକ୍ତି ନାହିଁ, ଲଭାକ୍ଷତିର ଭାବ ପ୍ରଭୃତି ଦ୍ୱନ୍ଦ୍ୱ ନାହିଁ, କର୍ତ୍ତବ୍ୟରେ କାହାକୁ ରଖିବାକୁ ହେବ, କାହାକୁ ମାରିବାକୁ ହେବ—ଏସବୁ କିଛି ନାହିଁ । ବ୍ରହ୍ମର ଯଜ୍ଞ ବା ବିଶ୍ୱବିକାଶର ଅଂଶରୂପେ ସେମାନେ ନିଜ ନିଜର ନିଃସଙ୍ଗ ଓ ନିଷ୍କାମ କର୍ତ୍ତବ୍ୟ-ସ୍ଥିତିରେ ଦୃଢ଼ ଓ ଅଚଳ । ଏଇପରି ବିଶ୍ୱ ବ୍ୟକ୍ତିମାନଙ୍କର ଅଟଳ କର୍ତ୍ତବ୍ୟର ଆପେକ୍ଷିକ ପ୍ରବାହରେ ଅନନ୍ତ ବୃଦ୍ଧି-କ୍ଷୟ, ଉପଚିତି ଅପଚୟ ବିକାଶ-ବିନାଶ ମଧ୍ୟରେ ବିଶ୍ୱକର୍ମର ମହାଲୀଳା । ଏହାହିଁ ବ୍ରହ୍ମର ମହାଯଜ୍ଞ ବା ଆତ୍ମୋତ୍ସର୍ଗ—କର୍ମରେ ଆତ୍ମପ୍ରକାଶ । ଏଥିରେ ମଧ୍ୟ ବ୍ୟକ୍ତି ନିଜ ନିଜ କର୍ମପ୍ରବାହରେ ସେଇପରି ଆତ୍ମୋତ୍ସର୍ଗ କରି ଯଜ୍ଞସ୍ଥିତିରେ ବର୍ତ୍ତମାନ ସମସ୍ତ ସୃଷ୍ଟି ଏକ ଆତ୍ମବିକାଶ ଓ ଯଜ୍ଞର ମହାଲୀଳା । ନିଯୁକ୍ତ କର୍ତ୍ତବ୍ୟହିଁ ଏଇ ଯଜ୍ଞଲୀଳାର ସ୍ଥିତି ଓ ପ୍ରତିଷ୍ଠା । ମାନବ ମଧ୍ୟ ସେଇ ବିଶ୍ୱ ବିକାଶର ଅଂଶ । ସେଇ ଆତ୍ମୋତ୍ସର୍ଗ, ଆତ୍ମବିକାଶ ବା ନିତ୍ୟନିଯୁକ୍ତ ଆପେକ୍ଷିକ କର୍ତ୍ତବ୍ୟର ନିରବଚ୍ଛିନ୍ନ ପ୍ରବାହ

ଧାରାରେ ବର୍ତ୍ତମାନ ରହି ଯେ ମଧ୍ୟ ଏଇ ଅନନ୍ତ ଲୀଳାରେ ଆତ୍ମୋତ୍ସର୍ଗ କରି ନିଜ ବ୍ୟକ୍ତିତ୍ୱର କର୍ମ ନିୟମିତ କରିବ । ଏହାହିଁ ତାର ମୁକ୍ତି । ଏହାହିଁ ଦୁଇ ଦିଗରୁ ତାର ଯଜ୍ଞ । ଏକ ଦିଗରେ ନିଜର ବ୍ୟକ୍ତିତ୍ୱକୁ କର୍ମଲୀଳା ବା କର୍ତ୍ତବ୍ୟମାନଙ୍କର ପରଂପରାରେ ପ୍ରକାଶ କରି ଆତ୍ମପ୍ରକାଶ ବା ଆତ୍ମୋତ୍ସର୍ଗର ଯଜ୍ଞ । ଅନ୍ୟ ଦିଗରେ ନିଜର ବ୍ୟକ୍ତିତ୍ୱକୁ ବିଶ୍ୱ-ବିକାଶର ଆବଶ୍ୟକ ଅଂଶ ବୋଲି ଧାରଣା କରି ସେଇ ବିଶ୍ୱ-ବିକାଶ ମହା-ଯଜ୍ଞରେ ନିଜକୁ ସମ୍ପୂର୍ଣ୍ଣରୂପେ ବଳି ଦେବା ବା ଉତ୍ସର୍ଗ କରିବା । ଏହାହିଁ ଯଥାର୍ଥ ଯଜ୍ଞ-ବୁଦ୍ଧି ବା 'ବ୍ରହ୍ମ'-କର୍ମ-ସମାଧି । ଏଥିରେ କାମନାର ସ୍ଥାନ ନାହିଁ, ଆସକ୍ତିର ଅବକାଶ ନାହିଁ, ଏଥିରେ ବୁଦ୍ଧି ପ୍ରତିଷ୍ଠିତ ହେଲେ, ସ୍ଥିତପ୍ରଜ୍ଞର ବ୍ରାହ୍ମୀ ସ୍ଥିତି ବା ମୁକ୍ତି । କର୍ମର ଜଂଜାଳ ଏଥିରେ ଶାନ୍ତ; 'କର୍ମବନ୍ଧନ ଆଦୌ ନାହିଁ; ବନ୍ଧନ ନ ଥିଲେ ହିଁ ମୁକ୍ତି ବା କର୍ମଜାଲରୁ ସ୍ୱାଧୀନ । ଏଇ କର୍ମ ହିଁ ସଂସାର ବା ଜନ୍ମ-ମୃତ୍ୟୁ-ପରଂପରାର କାରଣ—ସୁଖ-ଦୁଃଖାଦି ଦ୍ୱନ୍ଦ୍ୱର ହେତୁ, ବା ବରଂ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱ ଏଇଥିରେ ଲଗି ରହି ହଇରାଣ କରୁଛି । ଅତଏବ ମୁକ୍ତିରେ ଆଉ ଏସବୁ ଜଞ୍ଜାଳର ଅନନ୍ତ କାଳରେ ମଧ୍ୟ ଶଂକା ନାହିଁ । ବ୍ରାହ୍ମୀ ସ୍ଥିତିରେ ଆଉ ପୁନର୍ଜନ୍ମ ନାହିଁ ।

## ଯଜ୍ଞ ହିଁ ଏଠାରେ ସମାଧାନ—

ସୃଷ୍ଟିର ବ୍ୟକ୍ତିମାନେ ଏଇ ଯଜ୍ଞରେ ଦାନ ଓ ତପରେ ନିବିଷ୍ଟ । ଏଇ ଦାନ-ନିଷ୍ଠା ଓ ତପୋନିଷ୍ଠାରେ ହିଁ ଏଇ ଯଜ୍ଞର ଧାରଣା । ଅନ୍ୟଥା ଏ ଯଜ୍ଞର କିଛି ସଂକେତ ନାହିଁ । ପ୍ରତ୍ୟେକେ ନିଜର କର୍ତ୍ତବ୍ୟ କରୁଚନ୍ତି, ଅର୍ଥାତ୍, ଅନ୍ୟ ପ୍ରତି ବା ଜଗତ୍ ବିକାଶରେ ନିଜର ନିର୍ଦ୍ଦିଷ୍ଟ କର୍ମ କରୁଚନ୍ତି । ଏଥିରେ ସ୍ୱାର୍ଥ ନାହିଁ । ଏହା ଏକ ମହା-ଦାନର ଲୀଳା । ସ୍ୱାର୍ଥ ନ ଥିଲେ କାମ କାହିଁକି ବା କିପରି କରିବ ? ମନୁଷ୍ୟର ଏଇ ବୁଦ୍ଧି ଫୁଟିବା ସ୍ୱାଭାବିକ । ଏପରି କି ମୁକ୍ତିକାମୀ ମଧ୍ୟ ମୁକ୍ତିର କାମନା କରେ । ସେହି ଇଚ୍ଛା ବା ସ୍ୱାର୍ଥ ଥିବାରୁ ତାର ନାମ 'ମୁମୁକ୍ଷୁ' ଅର୍ଥାତ୍ ଯେ ମୁକ୍ତି ଇଚ୍ଛା କରେ, ବା ମୁକ୍ତିରେ ଯାହାର ସ୍ୱାର୍ଥ ଅଛି । ମାତ୍ର ଯଜ୍ଞ-ବୁଦ୍ଧିରେ କର୍ମ କଲେ, ସେ ଭାବ ପାଇ ଅବକାଶ ନାହିଁ । ସୃଷ୍ଟିର ବ୍ୟକ୍ତି-ମାନେ ତପୋନିଷ୍ଠ ସ୍ୱାର୍ଥ ପରାର୍ଥ ଜ୍ଞାନରେ କର୍ମ ନ କରି ସର୍ବଦା ପ୍ରଯତ୍ନପର ବା ନିଜ କର୍ମମାନଙ୍କରେଇ ନିବିଷ୍ଟ । ଏହାହିଁ ବିଶ୍ୱଯଜ୍ଞର ମୂଳମନ୍ତ୍ର । ଏପରି କଲେ ମୋର ମୁକ୍ତି ହେବ ବୋଲି ଭାବ ରଖି କର୍ମ କଲେ, ପ୍ରଯତ୍ନ ଦୃଢ଼ ହୋଇପାରେ, ମାତ୍ର ନିଜର କଳ୍ପିତ ମୁକ୍ତିକର୍ମରେ ବାଧା ପଡ଼ିଲେ କ୍ରୋଧ ହେବ । ପୁରାଣ-କଥାସବୁ ଯତି ବା ମୁକ୍ତିକାମୀ ପ୍ରଯତ୍ନପର ଲୋକଙ୍କର ଏଇପରି କ୍ରୋଧ ଓ ଅଭିଶାପରେ ପୂର୍ଣ୍ଣ । ସେଇ ଅଭିଶାପ ଦେଇସାରି ମଧ୍ୟ ପ୍ରାୟଶ୍ଚିତ୍ତ କରିବାର ବିଧି ଥିବାର ଦେଖାଯାଏ । ପୁଣି ମୁକ୍ତିକାମନା ଚରିତାର୍ଥ କରିବାରେ ପ୍ରଯତ୍ନପର ହେଲେ, ଯଜ୍ଞ-ଭାବରେ ବିଶ୍ୱକର୍ମରେ ବୁଦ୍ଧି ଠିକ୍ ନ କରି, ବ୍ରହ୍ମଧାରଣାଟା କରି ନେଇ ସହଜରେ ମୁକ୍ତି ପାଇଯିବାର ଉଦ୍ୟମ ଆସିଯିବା ସ୍ୱାଭାବିକ । ସେଥିରେ ପୁଣି

ନାନାବିଧ ବାହ୍ୟ ଅନୁଷ୍ଠାନ ବା ବହିରାବରଣ ଲାଗି, ତାହା, ଏବେ ଯାହାକୁ 'କୁସଂସ୍କାର' କହନ୍ତି, ସେଥିରେ ପରିଣତ ହେବା ଖୁବ୍ ସମ୍ଭବ । ଭାରତ-ସଭ୍ୟତାରେ ମଧ୍ୟ କର୍ମ ଛାଡ଼ି ସନ୍ନ୍ୟାସ କରି ଏଇପରି ମୁକ୍ତିକାମନା କରିବାର ଏକ ଦୃଢ଼ ପନ୍ଥା ଫିଟିଥିଲା । ଐତିହାସିକ କାଳରେ ମଧ୍ୟ ସିଦ୍ଧାର୍ଥ-ବୁଦ୍ଧ ଓ ତଦନୁସାରୀ ଶଙ୍କରାଚାର୍ଯ୍ୟାଦି ଏଇ ପନ୍ଥା ପ୍ରଚାର କରିଥିଲେ । ସେମାନେ ପ୍ରଶ୍ନ କଲେ, ମୁକ୍ତି ତ ଚରମ ସ୍ୱାର୍ଥ ବା ମୋକ୍ଷ ତ ପରମ ପୁରୁଷାର୍ଥ; ସେଇ ମୋକ୍ଷରେ ତ ବ୍ରହ୍ମରେ ଏକ ହୋଇଯିବାର କଥା; ଜୀବାତ୍ମା ଓ ପରମାତ୍ମାରେ ତ ପ୍ରଭେଦ ନାହିଁ, ଦୁହେଁ ଏକ ନିତ୍ୟ ବସ୍ତୁ ବା ଦୁହେଁ ଶୂନ୍ୟ; ମାୟାର ବନ୍ଧନ ମିଥ୍ୟା; ଏଇ ମିଥ୍ୟାଟା ଜାଣିଗଲେ ଆଉ ବିକାର ବା ବିକାଶ ବା ପରିଣାମ ତଥା କର୍ମ ରହିବ ନାହିଁ; ତେବେ ଆଉ କର୍ମରେ ଯତ୍ନପର ହେବା କି ଦରକାର ? ଏହା ଯୁକ୍ତିକରି ସେମାନେ ମିଥ୍ୟା ଛାଡ଼ିବାର ଜ୍ଞାନମାତ୍ର ସାଧିବାକୁ ହିଁ ପନ୍ଥା ବୋଲି ପ୍ରଚାର କଲେ । ଏଥିରୁ ଏକ ଯୋଗ ଓ ତପ ବାହାରିଲା । ସେଥିରେ କେତେ କୃଚ୍ଛ୍ର କଠୋର ବ୍ରତ, ଉପବାସ କରି ଲୋକେ ବ୍ରହ୍ମଧ୍ୟାନରେ ଖାଲି ମନ ବାନ୍ଧି ରଖିବାର ଯୋଗ ସାଧିବାରେ ଲାଗିଲେ । ଆଉ କିଛି କର୍ମ କଲେ ନାହିଁ । ଫଳରେ ସେଥିରେ ନାନା କୁସଂସ୍କାର ଓ ଅହଂକାର ଅତି ଶୀଘ୍ର ପ୍ରକାଶ ପାଇଲା । ସେଇ ପନ୍ଥୀମାନେ ବୁଲି ବୁଲି ଲୋକରେ ଖାଲି ଐଶ୍ୱର୍ଯ୍ୟ ଓ ସୁଖ ବାଣ୍ଟିବାରେ ଲାଗିଲେ । ଏବେ ମଧ୍ୟ ଯଦି କେହି ଲଙ୍ଗଳା ହୋଇ ବା କୌପୁନି ମାରି ମୌନୀ ହୋଇ ବସି କଦାଚିତ୍ ଦୁଇଟା ବ୍ରହ୍ମ ବା ତତ୍ତ୍ୱକଥା କହନ୍ତି, ତେବେ ଲୋକେ ମୁଗ୍ଧ, ତାଙ୍କର ଦାସାନୁଦାସ ଓ ଅନୁଗତ । ତାଙ୍କଠାରୁ ଐହିକ ପାରତ୍ରିକ ସୁଖ ପାଇବା ପାଇଁ ତାଙ୍କର ଦୈହିକ ମାନସିକ ସୁଖ ବିଳାସ ଆଧାନରେ ଅତ୍ୟନ୍ତ ତତ୍ପର । ଗୀତାର ଯଜ୍ଞ-ବୁଦ୍ଧିରେ ଏସବୁ ପାଇଁ ଅବକାଶ ନାହିଁ । ଏସବୁକୁ ଭଗବାନ୍ ମିଥ୍ୟାଚାର ବା ପଣ୍ଡକର୍ମ ( କପଟାଚରଣ ? ) ବୋଲି କହିଛନ୍ତି ( ୩. ୫, ୬ ) । ଏଥିରେ ଯଜ୍ଞ ନାହିଁ; ଯୋଗସାଧନ ଏପରି କାମନାର ପ୍ରଯତ୍ନରେ ମୁକ୍ତି ମିଳେ ନାହିଁ । ସେଥିପାଇଁ ଏଇ ପ୍ରଣାଳୀରୁ ବହୁକାଳ ପୂର୍ବେ 'ହଠଯୋଗ', ଅର୍ଥାତ୍ ଲୋକଙ୍କୁ ବିସ୍ମିତ କରିବା ଭଳି କ୍ଷମତା ସଂଗ୍ରହର ଯୋଗ ବାହାରିଥିଲା । କର୍ମ ଛାଡ଼ି ଯୋଗ କରିବାର ସାଧନା, ସାଧନା ନୁହେ । 'ଲୋକ ସଂଗ୍ରହ' ଏଇ ଯଜ୍ଞଭାବର ଏକ ପରମ ସଙ୍କେତ ଓ ଉପାଦାନ । ଯେଝା କାମ ସେ କରୁଛନ୍ତି । ନିଜର ବୁଦ୍ଧି ଓ ସଂସ୍କାରରେ ସେମାନେ ନିଜର କର୍ତ୍ତବ୍ୟ କରୁଛନ୍ତି । ତାଙ୍କୁ ସବୁ ତତ୍ତ୍ୱଜ୍ଞାନ ଦେଖାଇବାକୁ ଯାଇ ଅସ୍ତବ୍ୟସ୍ତ କରିଦେବ ନାହିଁ । କ୍ଷୁଦ୍ର କାମନାରେ ରହି ସେମାନେ ନିଜ କର୍ମରେ ହୁଏତ ଦିନେ କ୍ଷୁଦ୍ର ଯଜ୍ଞରୁ ମହାଯଜ୍ଞକୁ ଉଠିବେ । ମାତ୍ର ଅଳ୍ପକେ ମହାମୁକ୍ତିର ବାଟ ତାଙ୍କୁ ଦେଖାଇ ଦବାର ଉଦ୍ୟମ କରି ତାଙ୍କୁ ମତାନ୍ଧ କରିବ ନାହିଁ—ନିଜେ ଜ୍ଞାନର ବାହାଦୁରି ଦେଖାଇ ତାଙ୍କୁ ବିଗାଡ଼ି ଦବ ନାହିଁ । ବ୍ୟକ୍ତି-ପ୍ରଚାରିତ ତତ୍ତ୍ୱ, ଧର୍ମ, ଦୀକ୍ଷା, କାନଫୁଙ୍କା, ମନ୍ତ୍ରଦିଆ ପ୍ରଭୃତିର ଆଦେଶ ଲୋକଙ୍କୁ

ଏଇପରି ନିଜର ଅତି ପାବନତ୍ୱ ଓ ସନ୍ମାର୍ଗପରତ୍ୱ ବୁଦ୍ଧିରେ ପହଞ୍ଚାଇ ଦେଇ କୁସଂସ୍କାରାଘ ମତାନ୍ଧ ଓ ଅସହିଷ୍ଣୁ କରିଥିବାର ଦୃଷ୍ଟାନ୍ତ ଜଗତରେ ଖୋଜିବା ଦରକାର ନାହିଁ । ଦୃଷ୍ଟାନ୍ତ ଦେଲେ ମଧ୍ୟ କାହା ମନରେ କଷ୍ଟ ବା ବିକାର ଜନ୍ମିବାରେ ହୁଏତ ଲୋକସଂଗ୍ରହ ଧର୍ମରେ ତ୍ରୁଟି ଘଟିପାରେ । ସେ ଉଦ୍ଦେଶ୍ୟ ଏଠାରେ ନାହିଁ ।

## ଏଠି ସମାଧାନରେ ଉଦାରତାର ବିକାଶ—

କିନ୍ତୁ ଯାଙ୍କ ବୁଦ୍ଧିରେ ସ୍ଥିର ରହି, ସେଇ ପରିସ୍ଥିତିରେ ଯେଉଁ ତପ ଓ ଯୋଗ କଥା ଭଗବାନ୍ ବୁଝାଇଚନ୍ତି, ସେଥିରେ କୁସଂସ୍କାର, ଅହଂକାର, ଅସହିଷ୍ଣୁତା ପ୍ରଭୃତି ପଶିବାର ସନ୍ଧି ନାହିଁ । ଭଗବାନ କୌଣସି ମୁକ୍ତି-ପନ୍ଥା ଗ୍ରୈଦ୍ୱତ କିମ୍ବା ବିରୁଦ୍ଧରେ କିଛି କହି ନାହାନ୍ତି । ତାହା କହିବା ଗୀତା ଧର୍ମ ନୁହେଁ । ଯେ ଯେଉଁଥିରେ ଶ୍ରଦ୍ଧା (ବିଶ୍ୱାସ)ରେ ଲାଗିଛି, ତାକୁ ସାତ୍ତ୍ୱିକ କିପରି କରାଯାଇପାରେ ସେତିକି ମାତ୍ର ସୂଚନା ଦେଇଚନ୍ତି । ତଥାପି ସେ ସ୍ପଷ୍ଟ କହିଚନ୍ତି—

ନିୟତସ୍ୟ ତୁ ସନ୍ୟାସଃ
କର୍ମଣୋ ନୋପପଦ୍ୟତେ ।
ମୋହାତ୍ ତସ୍ୟ ପରିତ୍ୟାଗଃ
ତାମସଃ ପରିକୀର୍ତ୍ତିତଃ । (୧୮.୭)

ଏପରି ସ୍ପଷ୍ଟ କଥା ଭଗବାନ୍ ଆର୍ଯ୍ୟଧର୍ମ-ବ୍ୟାଖ୍ୟାରେ ଅନ୍ୟତ୍ର ଥରେ ମାତ୍ର କହିଚନ୍ତି । ତାହା ବୈଦିକ କ୍ରିୟାର ଅନୁଷ୍ଠାନ ସଂବଂଧରେ (୨.୪୨-୪୪) । ଏଇ ଦୁଇ ପ୍ରକାରେ ବେଦଧର୍ମର ଅନର୍ଥ ଓ ଅପଚାର, ଏହା ପୂର୍ବେ କୁହାଯାଇଚି । ଏହା ଛଡ଼ା ଶ୍ରଦ୍ଧାଯୁକ୍ତ କୌଣସି ମୁକ୍ତିଧର୍ମରେ ଭଗବାନ୍ ଅନାସ୍ଥା ଦେଖାଇ କହି ନାହାନ୍ତି । ବରଂ କହିଚନ୍ତି—

ଯେ ଯଥା ମାଂ ପ୍ରପଦ୍ୟନ୍ତେ
ତାଂସ୍ତଥୈବ ଭଜାମ୍ୟହଂ ।
ମମ ବର୍ତ୍ମାନୁବର୍ତ୍ତନ୍ତେ
ମନୁଷ୍ୟାଃ ପାର୍ଥ ସର୍ବଶଃ ॥
କାଂକ୍ଷନ୍ତଃ କର୍ମଣାଂ ସିଦ୍ଧିଂ
ଯଜନ୍ତ ଇହ ଦେବତାଃ ।
କ୍ଷିପ୍ରଂ ହି ମାନୁଷେ ଲୋକେ
ସିଦ୍ଧିର୍ଭବତି କର୍ମଜା । (୪. ୧୧,୧୨)

ପୁଣି କହୁଚନ୍ତି, ଅନ୍ୟ ଦେବତାଭକ୍ତମାନେ ମଧ୍ୟ ଅବିଧିରେ ହେଲେହେଁ ମତେ ଭଜନ୍ତି । (୯.୨୩) । ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ—ଏସମସ୍ତ ମତେ ଭଜନ୍ତି, ଏ ସମସ୍ତେ ଉଦାର । (୭.୧୬, ୨୩) । ଯେ ଯେଉଁ କାମରେ ମତେ ଭଜନ୍ତି, ତାଙ୍କର ସେଥିରେ ମୁଁ ଶ୍ରଦ୍ଧା ଜନ୍ମାଇ, ସେଇ କାମକୁ ତାଙ୍କର ସିଦ୍ଧ କରେ (୭. ୨୧, ୨୨) । ମାତ୍ର ଭକ୍ତିସମ୍ପର୍କରେ ଏସବୁର ଉପଯୋଗ ଓ ସେଇ ସମ୍ପର୍କରେ ଏସବୁ ସୁବୋଧ୍ୟ ହେବ । ବ୍ୟକ୍ତ ଓ ଅବ୍ୟକ୍ତ ବିଶ୍ୱତତ୍ତ୍ୱରୁ ଅତୀତ, ଅର୍ଥାତ୍, ଦୁଇଟିଯାକ ତତ୍ତ୍ୱର ପୂର୍ଣ୍ଣ ସମନ୍ୱୟରେ ଯେଉଁ ପୁରୁଷୋତ୍ତମ ପରମେଶ୍ୱରଙ୍କ ଧାରଣା, ସେଇ ପରମେଶ୍ୱରରେ ବୁଦ୍ଧି ଦେଇ କର୍ତ୍ତବ୍ୟ ସେବା କରିବା ସୁଗମ ଓ ସୁଲଭ । ଯଜ୍ଞତତ୍ତ୍ୱର ବିସ୍ତୃତିରେ ବୁଦ୍ଧି ବ୍ରହ୍ମରେ ଦେବା ସେତେ ସୁଲଭ ନୁହେଁ । ସେଥିପାଇଁ ପୁରୁଷୋତ୍ତମରେ ମନ ଦେଲେ କର୍ମରେ ସହଜରେ ଶ୍ରଦ୍ଧା ଆସେ । ସେଇ ସମ୍ପର୍କରେ ଏସବୁ ଭିନ୍ନ ଭିନ୍ନ ଧର୍ମ-ଧାରଣାର ସ୍ଥିତି ବୁଝିବା ସୁଗମ । ଏଇ ଭକ୍ତିରେ କାମ କଲେ ନିଷ୍କାମତା ଓ ଆତ୍ମୋତ୍ସର୍ଗ ସହଜ, ଏହା ବୁଝାଇବା ଦରକାର ନାହିଁ । ଯଜ୍ଞଗତ ବ୍ରହ୍ମ ଧାରଣାରେ ମଧ୍ୟ ଏଇ ଭକ୍ତି ପୁଣି ସ୍ୱତଃ ହୁଏ । ଈଶ୍ୱର ଭାବରେ ମାନବିକ ଧାରଣା ହେଲେ ପୁଣି ଏଇ ଭକ୍ତିରେ ହିଁ କର୍ତ୍ତବ୍ୟ ସୁନିଯ୍ରିତ ହୁଏ । ତେଣୁ ଜ୍ଞାନ ଓ ଭକ୍ତିରେ କର୍ମ ବା କର୍ତ୍ତବ୍ୟ ସ୍ଥିତି ହିଁ ଗୀତାର 'ଯୋଗ' । ଏହା ଏଠାରେ ଆଉ ବୁଝାଇବା ଦରକାର ନାହିଁ । ( ୯ମ ଅଧ୍ୟାୟ ଶେଷ ଶ୍ଳୋକରେ ଥିବା ସୂଚନା ଦେଖ । )

## ଗୀତାର ଯୋଗ ଓ କର୍ମ ତ୍ୟାଗୀର ଯୋଗ—

ସେ ଯାହା ହଉ, କର୍ମତ୍ୟାଗୀ ସନ୍ୟାସୀମାନେ ଯେଉଁ ଯୋଗରେ ଜ୍ଞାନ ସାଧନ୍ତି, ମନକୁ ସ୍ଥିର କରିବାରେ ସେଇ ସେଇ ଯୋଗ ଯେ ଦରକାର ତାହା ବୁଝାଇଚନ୍ତି । ମନକୁ ସ୍ଥିର କରିବାରେ ସେଇ ଅଭ୍ୟାସ ନିୟମିତ ସମୟରେ ନିୟମିତରୂପେ କରିବାର ଉପଯୋଗିତା କହୁଚନ୍ତି । (୬.୧୦,୧୫) । ଠିକ୍ ଏହା ପୂର୍ବରୁ କହୁଚନ୍ତି କିପରି ଆତ୍ମ ବା ବ୍ୟକ୍ତିତ୍ୱ ଭାବକୁ କ୍ରମେ ଉପରକୁ ଉଠାଇ ସର୍ବତ୍ର ସମବୁଦ୍ଧିରେ କର୍ତ୍ତବ୍ୟ କରିବାରେ ଯୋଗର ଧାରଣା କରିବ । ମାତ୍ର ଏ ସବୁ ସତ୍ତ୍ୱେ କାଳେ ଅର୍ଜ୍ଜୁନ ଯୋଗ ସାଧିବାର ଏଇ ଉପଯୋଗିତା-ସମ୍ବନ୍ଧୀୟ କଥାଗୁଡ଼ିକ ଶୁଣି, ନିଜ କର୍ମ ଛାଡ଼ିଦେଇ ସନ୍ୟାସ କରିବା ବୁଦ୍ଧିକୁ ହଠାତ୍ ଢଳି ପଡ଼ି ପୁଣି ପଶ୍ଚିମ ବସିବେ, ସେଥିପାଇଁ ଠିକ୍ ପର ଶ୍ଳୋକରେ ଯଥାର୍ଥ ଯୋଗୀକୁ ଚିହ୍ନାଇ କହୁଚନ୍ତି—

"ଅବଶ୍ୟ ଖୁବ୍ ଖାଇ ପିଇ ମଉଜରେ ରହିଲେ ବା ଇନ୍ଦ୍ରିୟ ଭୋଗକୁ ଯଥେଚ୍ଛ ପ୍ରଶ୍ରୟ ଦେଲେ, ଯୋଗ ହୁଏ ନାହିଁ । ମାତ୍ର ଖାଲି ଜ୍ଞାନ ସାଧିବା ଯୋଗୀଙ୍କ ଉପଷ୍ଟର୍ଯ୍ୟା ପରି ବରାବର ଦୀର୍ଘ ଉପବାସ ବ୍ରତମାନ କରି ବା ବରାବର ଇନ୍ଦ୍ରିୟନିଗ୍ରହକୁ ରେକ ବସିଲେ କିମ୍ବା ବରାବର କର୍ମ ଛାଡ଼ିଦେଇ ନିରାଳମ୍ବ ଶୋଇ ରହିଲେ, ଅଥବା ବରାବର ଜାଗ୍ରତ ହୋଇ ଏକଗୋଡ଼ିକିଆ ହୋଇ, ପଞ୍ଚାଗ୍ନି ସ୍ଥାପନ କରି ବସି

ରହିବା ଭଳି କଠୋର ତପଶ୍ଚର୍ଯ୍ୟାରେ ମାତିଲେ, ଯୋଗ ହୁଏ ନାହିଁ । ” ସେଠାରୁ ପୁଣି ସ୍ପଷ୍ଟ କରି କହିଦେଲେ,—“ଯେତିକି ଉପଯୁକ୍ତ ତା ଦରକାର ସେତିକି ଆହାରବିହାରାଦି କରି, ଯେପରି ସାଧାରଣତଃ ଲୋକେ କର୍ମରେ ଲାଗନ୍ତି ସେଇପରି ଆବଶ୍ୟକ ମୁତାବକ କର୍ମକରି ଓ ଠିକ୍ ସେଇପରି ନିୟମିତରୂପେ ଶୋଇବା ଜାଗିବାରେ ଯେଉଁମାନେ ରହନ୍ତି, ସେଇମାନେ ଏକା ଠିକ୍ ଯୋଗୀ । ଦୁଃଖାନ୍ତ ଏକା ତାଙ୍କର ଯୋଗରେ ଲାଭ ହୋଇପାରେ । କେବଳ ଚିତ୍ତକୁ ଇନ୍ଦ୍ରିୟାଦିରୁ ନିୟମିତ କରି ଆତ୍ମାରେ ସ୍ଥିର ରଖି କାମନାରେ ନିଃସ୍ପୃହ ହୋଇ କର୍ମ କଲେଇ ଲୋକ ଯୋଗୀ ହୁଏ ।” ( ୬, ୧୬-୧୮ ) ।

## ଉଦାହରଣରେ ଜନକ—

କର୍ମରେ ରହି କପରି ଯୋଗସିଦ୍ଧ ହେବ କୁ ହୁଏ, ଏ ବିଷୟରେ ଭଗବାନ୍ ଜନକଙ୍କ ଉଦାହରଣ ଦେଇଚନ୍ତି । ଏଇ ଜନକ ମିଥିଳା ( ବିଦେହ )ର ରାଜା ଥିଲେ । ସମସ୍ତ ରାଜଧର୍ମ ଯଥାନିୟମରେ ପାଳନ କରି ପ୍ରଜାରଂଜନ କର୍ମରେ ସର୍ବଦା ନିଯୁକ୍ତ ଥିଲେ ମଧ୍ୟ କହୁଥିଲେ—

“ମିଥିଳାୟାଂ ପ୍ରଦୀପ୍ତାୟାଂ
ନ ମେ ଲଭ୍ୟେ ନ ମେ କ୍ଷତିଃ ।”

ଅର୍ଥାତ୍, ମିଥିଳା ରାଜ୍ୟଟାଯାକ ଯଦି ପୋଡ଼ିଯାଏ, ତେବେ ମୋର କିଛି ଯାଏ ଆସେ ନାହିଁ । ତଥାପି ମୁଁ ମିଥିଳାର ରାଜା । ଏ ସ୍ଥିତିରେ ମୋର ଧର୍ମ ବା ସ୍ୱଧର୍ମ ହେଉଚି ମିଥିଳାର ପ୍ରଜା-ପାଳନ କରିବା, ପ୍ରଜାଙ୍କ ସୁଖ ଦୁଃଖକୁ ନିଜର ସୁଖ ଦୁଃଖ ବୋଲି ବୁଝି ସେଇ ଦୃଷ୍ଟିରେ ନିଜର କର୍ମ ନିୟମିତ କରିବା । ମୁଁ ତାହା କରୁଚି । ମାତ୍ର କୌଣସି କାମନାରେ ତାହା କରୁନାହିଁ ।

## ଲୋକ-ସଂଗ୍ରହ—

ଏଇଠାରେ ସଙ୍ଗେ ସଙ୍ଗେ ଭଗବାନ୍ “ଲୋକ-ସଂଗ୍ରହ” କଥା କହିଚନ୍ତି । ଲୋକରକ୍ଷାର ପ୍ରଧାନ ପନ୍ଥା ହେଉଚି, ‘ଲୋକେ ଯାହା ବୁଝି ଯେଉଁ ବିଶ୍ୱାସରେ କାମରେ ଲାଗିଚନ୍ତି, ତାଙ୍କର ସେ ବିଶ୍ୱାସ ଟହଲାଇ ଦେଇ ତାଙ୍କୁ ଭ୍ରଷ୍ଟ କରି ଦେବ ନାହିଁ । ଏହାର ଅର୍ଥ ନୁହେଁ ଯେ, ଲୋକଙ୍କ ଭିତରେ ଭଲ କଥାର ପ୍ରଚାର କରିବ ନାହିଁ । ମାତ୍ର ବଡ଼ ବଡ଼ ତତ୍ତ୍ୱ ଓ ତତ୍ତ୍ୱାନୁସାରେ କ୍ରିୟାର ଛଟା ହଟା ଦେଖାଇ ତାଙ୍କୁ ଭ୍ରଷ୍ଟ କରିଦେବ ନାହିଁ । କିଛି ନ ବୁଝି ହଠାତ୍ ଅଳ୍ପକେ ସେ ତତ୍ତ୍ୱ ପାଇଯାଇ, କିଂବା ସ୍ୱର୍ଗ ବା ମୁକ୍ତିକୁ ଅତି ସହଜଲଭ୍ୟ ବୋଲି ବିଚାରି, ନିଜେ ଅହଂକାରରେ ମତାନ୍ଧ ହୋଇ, କିଂବା ଖାଲି ବଡ଼ ବଡ଼ଙ୍କ ଅନୁକରଣରେ ଭେକ ମାତ୍ର ଧରି, କିବା ଅସହିଷ୍ଣୁ ଶିଷ୍ୟତ୍ୱ ଧରି ଯେପରି ସମାଜରେ ଅପଚାର ଓ ବ୍ୟଭିଚାର

ସୃଷ୍ଟି ନ କରନ୍ତୁ, ସେଥିପ୍ରତି ସାବଧାନ ଥିବାର ଉଚିତ । ବିଶେଷରେ ନିଜେ ଜ୍ଞାନରେ କର୍ମତ୍ୟାଗୀ ସନ୍ୟାସୀ ହୋଇ ଏକାବେଳକେ ଅତିମାନୁଷ ହୋଇ ବସିଲେ, ସମାଜର ଏ ବିପଦ ଯେ ପଦେ ପଦେ ଅଛି, ତାହା ବୁଝାଇବା ଦରକାର ନାହିଁ । କାହିଁ କେଉଁ ଯୁଗର ବୁଦ୍ଧ ଶଙ୍କର ରାମାନୁଜ ଚୈତନ୍ୟଙ୍କ ସନ୍ୟାସ ଭେକ ଧରି ଆଜି ସମାଜରେ ଲୋକେ କି ବ୍ୟଭିଚାର ଅପଚାର ଅନାଚାର ଭ୍ରଷ୍ଟାଚାର ପ୍ରଭୃତିର ସୃଷ୍ଟି କରୁଚନ୍ତି, ତା ଅନେକେ ସହଜରେ ବୁଝିପିବେ । ଗୀତାର 'ଯୋଗ'ରେ ଏ ସବୁର ଅବକାଶ ନାହିଁ । ଭଗବାନ୍ କହୁଚନ୍ତି—

ସକ୍ତାଃ କର୍ମଣ୍ୟବିଦ୍ୱାଂସୋ
ଯଥା କୁର୍ବନ୍ତି ଭାରତ ।
କୁର୍ଯାଦ୍ ବିଦ୍ୱାଂସ୍ତଥାଽସକ୍ତଃ
ଚିକୀର୍ଷୁର୍ଲୋକସଂଗ୍ରହମ୍ ॥ (୩, ୨୫)

ଅର୍ଥାତ୍, ଯଜ୍ଞ-ଭାବରେ କର୍ମନିଷ୍ଠ ଯୋଗୀ ସର୍ବତୋଭାବରେ ବ୍ୟବହାରରେ ସାଧାରଣ ମନୁଷ୍ୟ ପରି ଆହାର ବ୍ୟବହାରରେ ରହି ନିଜର ନିଯୁକ୍ତ କର୍ମରେ ଲାଗି ରହିଥିବ । ସାଧାରଣ ଲୋକେ କାମନାଯୁକ୍ତ ହୋଇ ଯେପରି କାମ କରୁଥିବେ, ନିଜେ ନିଷ୍କାମ ହେଲେହେଁ ତତ୍ପର ହୋଇ ସେଇପରି କର୍ମନିରତ ଥିବ । କୌଣସି ଅତି-ମାନୁଷତା, ଅତିନିଷ୍ଠା ବା ବାହାଦୁରି ବଡ଼ପଣିଆ ଯେପରି ତା କାମରେ ପ୍ରକାଶ ନ ପାଏ । ତା ହେଲେ ଏକ ଦଗରେ ଲୋକେ ବହିରାବରଣମାନ ଅନୁକରଣ କରି ଭ୍ରଷ୍ଟ ହେବେ, ଅନ୍ୟଥା ହୁଏତ ପାଖେ ପଶି ନ ପାରି ଦୂରରେ ରହିବେ । ଆଦର୍ଶ ବା ଜନଲଭ୍ୟ ଉପଦେଶରେ ଲୋକଙ୍କୁ ସତ୍ ପନ୍ଥା ଦେଖାଇବାର ମାର୍ଗ ଏ ନୁହେଁ । ଲୋକେ ଯେପରି କୌଣସିମତେ ଅଲଗା ବା ଭ୍ରଷ୍ଟ ନ ହୁଅନ୍ତି, ସେଇପରି ସାଧାରଣ ଆଚରଣରେ ରହିବା ହିଁ ଯୋଗୀର କର୍ତ୍ତବ୍ୟ । ଏହାହିଁ ଲୋକସଂଗ୍ରହ । ଏଥିରେ ହିଁ ଲୋକେ ସ୍ୱତଃ ପ୍ରଭାବିତ ହୁଅନ୍ତି ଓ ସହଜ ଭାବରେ ଉପଦେଶ ଗ୍ରହଣ କରନ୍ତି । ବ୍ୟବହାରର ବ୍ୟତିକ୍ରମରେ ଲୋକଙ୍କୁ ଚହଲାଇ ଦେଲେ, ଏକ ଆଡ଼େ ଲୋକେ ହୁଏତ ମୁଣ୍ଡିଆ ମାରନ୍ତି, କିନ୍ତୁ ଅନୁବର୍ତ୍ତନ କରିବାରେ ଭୀତ ହୁଅନ୍ତି, ଅନ୍ୟ ଦଗରେ ମତାନ୍ଧ ଓ ଅସନ୍ତୁଷ୍ଟ ହୋଇ ଅନାଚାରରେ ପଡ଼ନ୍ତି ।

## ଏଇ ବେଦଧର୍ମର ବ୍ୟାପ୍ତି—

'ଲୋକ-ସଂଗ୍ରହ' କରିବାର ବା ଲୋକଙ୍କୁ କ୍ରମେ ଉନ୍ନତ ମାର୍ଗରେ ଚଲାଇବାର ଏ ସୁପନ୍ଥାରେ ଆଉ କାହା କର୍ମ ପ୍ରତି ଘୃଣା, ତାଚ୍ଛଲ୍ୟ ବା ଅନାଦର କାହୁଁ ଅଇଲା ? ଏ ଯୋଗ ତେଣୁ ଉଦାରତାର ଏକମାତ୍ର ଅଭିବ୍ୟକ୍ତ କହିଲେ ଚଳେ । ଏହି ଆଦର୍ଶରେ ଚାଳିତ ହେବାକୁ ବଣରେ କାଠ-ପୂଜାଠାରୁ ଚାର୍ବାକର ଭୌତିକତା ପର୍ଯ୍ୟନ୍ତ ସବୁ ଏ

ଯୋଗଧର୍ମର ଅଙ୍ଗୀଭୂତ ହୋଇଅଛି । ଏଇ ସମସ୍ତ ବିସଦୃଶ କର୍ମ ଓ ଆଚାର-ବିସ୍ତୃତି ମଧ୍ୟରେ କାଳେ କାଳେ ଭାରତର ଆର୍ଯ୍ୟଧର୍ମ ନିଜର ଶାନ୍ତି ଓ ବର୍ଦ୍ଧିଷ୍ଣୁ ପରିସ୍ଥିତି ଠିକ୍ ରଖି ଆସିଅଛି । ସମସ୍ତେ ସ୍ୱକର୍ମରେ ରହି ଏକ ମହାଯଜ୍ଞରେ ନିଜର ସାଧ୍ୟ ସମନ୍ୱୟ ଦେଖିଛନ୍ତି । ଅପରନ୍ତୁ ଏହାକୁ ଅଭିଭୂତ କରିନାହିଁ କିଂବା ପ୍ରତିକ୍ରିୟାର ପ୍ଲାବନରେ ଏହା ସ୍ଥିତିଭ୍ରଷ୍ଟ ଓ ବିଶୃଙ୍ଖଳ ହୋଇ ନାହିଁ । ଏପରିକି ବିଧର୍ମରେ ସଙ୍କୁଚିତ ହୋଇ ମଧ୍ୟ ଏହାର ଜୀବନଧାରା ଲୋପ ପାଇନାହିଁ । ଏ ସବୁ ପୂର୍ବେ ବିସ୍ତୃତଭାବରେ କୁହାଯାଇଛି ।



## ୭ । ଯଜ୍ଞରେ ବ୍ୟକ୍ତଧର୍ମ—ଭକ୍ତି

### ସୃଷ୍ଟି ଶୃଙ୍ଖଳାରେ ଅନନ୍ତ ବ୍ୟକ୍ତଭେଦ—

ଏଇ ବିଶ୍ୱଯଜ୍ଞରେ ବ୍ୟକ୍ତଧର୍ମ କଣ ? ଈଶ୍ୱର ତତ୍ତ୍ୱ ଅବ୍ୟକ୍ତ ହେଲେହେଁ ପ୍ରକାଶ ବା ବ୍ୟକ୍ତ ସବୁଟି ଏକାପରି ନୁହେଁ । ଜଳ ଆକାଶ ଜ୍ୟୋତି ବାୟୁ ଭୂମି—ତଥା ମୃତ୍ତିକା ପର୍ବତ ମାନବ ନଦୀ ଜନ୍ତୁ ବୃକ୍ଷ ଲତା— ଏପରି କି ଚିନ୍ତାଭାବ ଧାରଣା ସମ୍ବେଦନା ବୁଦ୍ଧି ପ୍ରୀତି ଏପରି ଯେତେ ନାମ କର କେହି କାହାର ପରି ନୁହନ୍ତି । ଦୁଇଟି ବରପନ୍ଥ ମଧ୍ଯ ଜଗତର ଏକାପରି ନୁହେଁ । ଏଥିରେ ପୁଣି କାଳର ପରିମାଣ ଓ ସ୍ଥାନ, ପରିସ୍ଥିତି ପ୍ରଭୃତିରେ ଭେଦ ରହିଛି । କୌଣସି ବସ୍ତୁ ପୂର୍ବ ମୁହୂର୍ତ୍ତରେ ଯାହା ଥିଲା ଏ ମୁହୂର୍ତ୍ତରେ ନିଶ୍ଚୟ ତାହା ନାହିଁ । ସ୍ପଷ୍ଟ ଜଣାପଡ଼ୁ ବା ନ ପଡ଼ୁ ପରିମାଣ ହେତୁରୁ ତାର ଭେଦ ଅଛି । ଏକ ସ୍ଥାନର ବସ୍ତୁଟି ସ୍ଥାନାନ୍ତରରେ ନିଶ୍ଚୟ ଭିନ୍ନ । ଏଇ କ୍ଷଣିକତ୍ୱ ଭିତରେ କି ଏକ ସମନ୍ୱୟ ଓ ସାମଞ୍ଜସ୍ୟ ଅଛି, ତାହା ବର୍ଣ୍ଣନାର ଅତୀତ ହେଲେହେଁ, ଅଛି । ମୋର ଚିନ୍ତା ବୁଦ୍ଧି ସମ୍ବେଦନା ଧାରଣା ଅନୁଭବ ସବୁ ଭିନ୍ନ, ତଥାପି ସବୁ ମୋର । ଏଇ 'ମୁଁ' ବସ୍ତୁ ବା ଆତ୍ମାରେ ସେମାନଙ୍କର ଯେ ସମନ୍ୱୟ ବା ସାମଞ୍ଜସ୍ୟ ଅଛି ତା କେହି ବର୍ଣ୍ଣନା କରିପାରିବେ ନାହିଁ, ମାତ୍ର ତାହା ଅଛି । ଏଇ ନିତ୍ୟ ଅନୁଭୂତ ଅବର୍ଣ୍ଣନୀୟ ଅକଳନ 'ମୁଁ' ବା ଆତ୍ମା ଯେପରି ମୋର କାୟିକ ବାଚିକ ମାନସିକ ସମସ୍ତ ପ୍ରକାଶ ମଧ୍ୟରେ ଏକ ଓ ଅଭିନ୍ନ; ସେଇପରି ସମସ୍ତ ବ୍ୟକ୍ତ ବିଶ୍ୱ ମଧ୍ୟରେ ତତ୍ତ୍ୱ ବା ବ୍ରହ୍ମ ଏକ ଓ ଅଭିନ୍ନ । ସେଥିପାଇଁ ଆମେ କୁମାରିକାଠାରେ ଗୋଟିଏ ବରପନ୍ଥ ଦେଖି ଆସି, ହିମାଳୟରେ ମଧ୍ଯ ଆଉ ଗୋଟିଏ ବରପନ୍ଥ ଦେଖିଲେ କହୁଁ, 'ଏହା ବର ପନ୍ଥ ।' କିନ୍ତୁ କଣ ଦେଖି ଏ ଦୁଇଟିରେ ସମାନତା ନିର୍ଦ୍ଦେଶ କଲୁ, ତା କହିବାର ସାଧ୍ୟ ନାହିଁ । ଏଇପରି ବିଚାର କଲେ ଦେଖାଯିବ, ଏଇ ଅନନ୍ତ ନାମରୂପମୟ ଜଗତ୍ ବା ପ୍ରକାଶ ମଧ୍ୟରେ ଏଇ ସାମଞ୍ଜସ୍ୟ ଓ ସମନ୍ୱୟର ଏକ ମହାସୂତ୍ର ବା ଶୃଙ୍ଖଳା ରହିଛି । ଏହାକୁ ହିଁ ବେଦ କହନ୍ତି ଋତ । ସତ୍ୟ, ଅର୍ଥାତ୍, ପ୍ରକାଶ ତତ୍ତ୍ୱ ସଙ୍ଗେ ଏହାର ମଧ୍ଯ ପ୍ରକାଶ ହୋଇଛି । (ଋଗ୍‌ବେଦ ୧୦. ୧୯୦. ୧) ।

### ନାମ ରୂପ 'ଅହଂକାର'—କର୍ମ—

ପ୍ରକାଶ ବା 'ବିସର୍ଗ'ର ଏଇ ମହାଶୃଙ୍ଖଳାରେ ଶୃଙ୍ଖଳିତ କିଏ ? ପ୍ରକାଶିତ ବସ୍ତୁ ହିଁ ଏଥିରେ ଶୃଙ୍ଖଳିତ । ବ୍ୟକ୍ତିର ବସ୍ତୁ ବା ବ୍ୟକ୍ତି ହିଁ ଏଇ ମହାଶୃଙ୍ଖଳାରେ ଆବଦ୍ଧ ଏହାକୁ 'ନାମରୂପ' ବା 'କର୍ମ' କହନ୍ତି । ନାମ ଓ ରୂପ ଘେନି ଏହା ଭିନ୍ନ ଭିନ୍ନ ହୋଇ ପ୍ରକାଶ ପାଏ । ଦୃଶ୍ୟମାନ ବସ୍ତୁରେ ରୂପ ଓ ନାମ, ପୁଣି ଅନ୍ୟ ପ୍ରକାରେ ଉପଲବ୍ଧ ବସ୍ତୁରେ କେବଳ ନାମରେ ଏଇ ବ୍ୟକ୍ତି ପ୍ରକାଶିତ ହୁଏ । ଏଇ ବ୍ୟକ୍ତି ନ ଥିଲେ ପ୍ରକାଶ

ନାହିଁ । ଦାର୍ଶନିକ ଭାଷାରେ ଏଇ ବ୍ୟକ୍ତିକୁ 'ଅହଂକାର' କହନ୍ତି । ମୂଳ ଅବ୍ୟକ୍ତ ପ୍ରକୃତିର ବିକାଶ ପରିଣାମରେ ଏଇ 'ଅହଂକାର' ପ୍ରଥମେ ଜାଗ୍ରତ ହୁଏ ବୋଲି ଦାର୍ଶନିକ କହନ୍ତି । ଏଇ ବ୍ୟକ୍ତିସମୂହକୁ କର୍ମ ମଧ କହନ୍ତି । କାରଣ, ଏଇ ପ୍ରକାଶ ବ୍ରହ୍ମର 'କର୍ମ' । ଏଠାରେ ମାନବର 'ମୁଁ'ର ଦୃଷ୍ଟାନ୍ତରେ କଥାଟି ସ୍ପଷ୍ଟ ହେବ । ମାନବର ଦୈହିକ ବାଚକ ମାନସିକ କର୍ମରେ ହିଁ ବ୍ୟକ୍ତିତ୍ୱ ବା ଆତ୍ମାର ବିକାଶ । ଦେହ ଚିନ୍ତା ବାକ୍ୟ ସବୁ କର୍ମ । ଏଇ କର୍ମରେ ଆତ୍ମାର ପ୍ରକାଶ । ସେଇପରି ବ୍ରହ୍ମର କର୍ମହିଁ ବିଶ୍ୱର ବିକାଶ । ଏ ସମସ୍ତ କର୍ମ ମଧରେ ଯେଉଁ ଏକ ଆତ୍ମା ବା ଅବ୍ୟକ୍ତ ଅଧ୍ୟାତ୍ମ, ସେଇ ବ୍ରହ୍ମ ।

## ବ୍ୟକ୍ତି ଧର୍ମ ଓ କର୍ମ—

ବ୍ୟକ୍ତିର ଅନ୍ତରାଳରେ ଯେ 'ଋତ'ର ପୀଠ ଅବ୍ୟକ୍ତ ତତ୍ତ୍ୱ-ସନ୍ଧାନ ଅବଶ୍ୟ ସ୍ୱତନ୍ତ୍ର କଥା । ସେ ଯା' ହେଉ ପ୍ରକାଶର ଆଲୋଚନାରେ କର୍ମ ଛଡ଼ା ବ୍ୟକ୍ତିର ଧାରଣା ନାହିଁ । ପୁଣି ଏ ବ୍ୟକ୍ତିମାନେ ଏକରୁ ଅପର ଭିନ୍ନ ହେଲେ ହେଁ, ସେମାନେ ସମସ୍ତେ ଏହି ପ୍ରକାଶର ଅଂଶ ଓ ଅଙ୍ଗ । ଏଇ ଏକତ୍ୱର ଅନୁସନ୍ଧାନରେ ଦେଖାଯାଏ, ସେମାନେ କେବଳ କର୍ମରେ ହିଁ ଯେପରିକି ଧରି ହୋଇଅଛନ୍ତି । ତେଣୁ ଏଇ କର୍ମର ନାମ ଧର୍ମ, ଏହା କୁହାଯାଇଛି । ଧର, ପତ୍ରଟି ବିକାଶରେ ଗୋଟିଏ ବ୍ୟକ୍ତି । ଏହାର ଉପରେ ଧାରଣା କରାଯାଏ । ଏହାର ବ୍ୟକ୍ତିଧର୍ମରେ ହିଁ ଏହାର ଧାରଣା । ବୃକ୍ଷରୁ ଏହା ବାହାରିବ ବୃକ୍ଷର ଜୀବନ ପାଇଁ । ଏହା ବାହାରି ବୃକ୍ଷବାଟେ ଭୂମିରୁ କଢ଼ାହୋଇ ଜଳ ଓ ଖାଦ୍ୟ ପାଇବ । ବୃକ୍ଷଧର୍ମରେ ବୃକ୍ଷ ପୁଣି ତା ଦେବ । ତହୁଁ ପତ୍ର-ଧର୍ମରେ ପତ୍ର ପବନରୁ କଣିକା କଣିକା କରି ସୂର୍ଯ୍ୟକିରଣ ଲଗାଇ ଅଗ୍ନି ଫଟାଇ ଅଙ୍ଗାର ପରମାଣୁ ଏକତ୍ର କରି ସେଥିରେ ଜଳ ଦେଇ ଜୀବ-କଣିକା ତିଆରି କରିବ । ସେଇ ଜୀବ-କଣିକାରୁ ପୁଣି ଅଙ୍ଗାର ଓ ଖଡ଼ି କାଢ଼ି ଗଛ ଭିତରକୁ ଗୁଡ଼ି ଦେଇଥିବ । ଏଇପରି ଅଶ୍ରାନ୍ତ କର୍ମରେ ତାର ଜୀବନ କାଳ ସରିଗଲେ, ଶେଷକୁ ହରିତ୍ ଜୀବ-କଣିକା ଅଳ୍ପ ହେବେ ନାହିଁ । ପତ୍ର ହଳଦିଆ ହେବ ଓ ତେଣୁ ତାକୁ ଅଉ ଧରିବ ନାହିଁ । ତେଣୁ ମୂଳ ଆପେ ଝଡ଼ି ଆସି ଗଛ ଦେହରେ ମିଶିଯିବ, ପତ୍ରଟି ପଡ଼ିଯିବ । ପୁଣି ଜଳ ଓ ବାୟୁ-ସଂଯୋଗରେ ଅମ୍ଳଜାନ ସେଥିରେ ଲାଗି ତାକୁ ଖତ ବା ବୃକ୍ଷ ଦର ଖାଦ୍ୟରେ ପରିଣତ କରିଦେବ । ଏଇ ପତ୍ର-ଧର୍ମରେ କେତେ କର୍ମର ଆଧାନ । ଏ କର୍ମ ପୁଣି ଏକା ପତ୍ରର ହେଲେ ମଧ, ଏକା ତାରି ଯେପରି ହୋଇ ନ ପାରେ । ବୃକ୍ଷ ପତ୍ରକୁ କାଢ଼ିବ । ସୂର୍ଯ୍ୟ କିରଣ ଦେବ । ବାୟୁ ଅଙ୍ଗାରଯୁକ୍ତ ଅମ୍ଳଜାନର ଅଣୁ ଆଣି ଠିକ୍ ସମୟରେ ଯୋଗାଇବ । ସେ ଅଣୁ ପୁଣି ଆପଣା ଦେହରୁ ଅମ୍ଳଜାନ ପରମାଣୁ ଫିଙ୍ଗି ଦେଇ ସେଇ ସ୍ଥାନରେ ଖଡ଼ିରୁ ଟିକିଏ ଲଗାଇ ନିଜକୁ ପତ୍ର ଭିତରକୁ ଯିବାପାଇଁ ତିଆରି କରିବ, ପୁଣି ସେଇ ଖଡ଼ିଟିକ ଧରି ଗଛ ଭିତରେ ପଶି କାଠ ହେବ । କାହିଁକି ନା ବେଳ ପଡ଼ିଲେ ପୁଣି ଅମ୍ଳଜାନ ଟିକ

ଗ୍ରହଣ କରି ପୂର୍ବପରି ହବ ଓ ଖରାଟିକ ନିଆଁ ରୂପରେ ଛାଡ଼ିଦେବ । ସେଇ ନିଆଁ ପୁଣି ଆମେ ଶୀତ ଦିନରେ ଉଂଭେଇରେ ଜାଳିବୁ ।

## କର୍ମରୁ ଅଲଗା ବ୍ୟକ୍ତି ଅଛି କି ?

ସେତିକି ନୁହେଁ, ଏଇ ଯେ ବ୍ୟକ୍ତି ସେଥିରେ ପୁଣି ଏଇ କର୍ମ ଛଡ଼ା ଆଉ କିଛି ଅଛି କି ନା, ସେ ତତ୍ତ୍ୱ ମଧ୍ୟ ବଡ଼ ଜଟିଳ । ଉପରେ ପତ୍ରଟିର ଜୀବନ କର୍ମ କଥା କୁହାଗଲା । ମାତ୍ର ପତ୍ର ବୋଲି ବସ୍ତୁଟି କଣ ? ଦେଖ, ପୁଣି ପତ୍ରର ବର୍ଣ୍ଣ । ଝରି ପଡ଼ି ଯାଉଛି । ଖରାରେ ସାତଟି ବର୍ଣ୍ଣ ମାତ୍ର ଅଛି—ମିଶିକରି ଏକାଠି ଅଛି । ଏଇ ସାତଟି ବର୍ଣ୍ଣ ପୁଣି କଣ ? ବ୍ୟୋମମଣ୍ଡଳରେ ଗୋଟିଏ ଗୋଟିଏ ପ୍ରକାର କମ୍ପନ ମାତ୍ରହିଁ ଗୋଟିଏ ଗୋଟିଏ ବର୍ଣ୍ଣ । ବ୍ୟୋମମଣ୍ଡଳ କଣ ? ଅତି ଲଘୁ ପରମାଣୁମାନଙ୍କର ହୁଏତ ସମବାୟ । ସେଇ ପରମାଣୁ କଣ ? କେତେଗୁଡ଼ିଏ ଚଳୁଥିବା ବା କଂପିତ ହେଉଥିବା ଶକ୍ତିର ସଂଘର୍ଷ । ଏଇ ଶକ୍ତି ପୁଣି କଣ ? ଏହା ଗୋଟିଏ ଚଳନ କର୍ମ ମାତ୍ର । ସବୁ ତ କର୍ମ । ପୁଣି ପତ୍ରର ବର୍ଣ୍ଣ କଥା । ଏଇ ଖରା ପଡ଼ିଲେ ପତ୍ରର ଜୀବ କଣିକା ଛଅଟି ବର୍ଣ୍ଣ ଭିତରେ ପୂରାଇ ଦିଏ, ଅର୍ଥାତ୍ ଛଅଟି ବର୍ଣ୍ଣର ତରଙ୍ଗର କଂପନ ନଷ୍ଟ ହୋଇଯାଏ । ସଙ୍ଗେ ସଙ୍ଗେ ସେଇ କର୍ମନାଶରେ ସେ ବର୍ଣ୍ଣ ଧ୍ୱଂସ ପାଏ । ଆଉ ଖାଲି ହରିତ୍‌ବର୍ଣ୍ଣଟି ଉପରେ ଦେଖାଯାଏ । ଏଇ ହରିତ୍‌ବର୍ଣ୍ଣଟି ଗୋଟିଏ କଂପନ ମାତ୍ର । ପୁଣି ଜୀବକଣିକା ବା କଣ ? ଏହା ଅଙ୍ଗାର, ଉଦଜାନ ଓ ଅମ୍ଳଜାନ କଣିକା ବା ପରମାଣୁ ସଂଘର୍ଷର ସମବାୟ । ଏଇ ପରମାଣୁ ପୁଣି, କୁହାଯାଉଛି, ମୂଳତଃ କେତେଗୁଡ଼ିଏ ଭିନ୍ନ ଭିନ୍ନ ଚଳନ୍ତା ଶକ୍ତି ବା କଂପନମାତ୍ର । ଏହା କେବଳ କର୍ମ । ପତ୍ରର ପୁଣି ଓଜନ । ଏହା ମଧ୍ୟ ଗୋଟିଏ ଟଣାଟଣି ଶକ୍ତି ବା କର୍ମ ଛଡ଼ା ଆଉ କିଛି ନୁହେଁ । ଏହାକୁ ମାଧ୍ୟାକର୍ଷଣ କହନ୍ତି । ପୁଣି ପତ୍ରର ଉଷ୍ଣତା ବା ଶୀତଳତା, କହ, ପତ୍ରର ତାପ । ଏଇ ତାପ ମଧ୍ୟ ମୂଳତଃ ଏକ କଂପନ କ୍ରିୟା ବା କର୍ମ । ଏହିପରି ଖାଲି ଖରା ବା ପତ୍ର କାହିଁକି, ଯେ କୌଣସି ବସ୍ତୁକୁ ବିଶ୍ଳେଷଣ କଲେ ତାହା କେତେଗୁଡ଼ିଏ କର୍ମର ସମବାୟ । ଏଇ କର୍ମ ଛଡ଼ା ସେ ବିଶ୍ଳେଷଣରୁ ଆଉ କିଛି ଅବଶେଷ ମଧ୍ୟ ମିଳିବ ନାହିଁ ।

## ବ୍ୟକ୍ତିଧର୍ମର ଆପେକ୍ଷିକତା ଓ ସଂହତି—

ସେ କଥା ଥାଉ । ଏବେ ଦେଖାଗଲା, ଧର, ପତ୍ର ବୋଲି ଗୋଟିଏ ବ୍ୟକ୍ତି-ଧର୍ମରେ କେତେ କର୍ମ । ସେ କର୍ମ ପୁଣି ଅଣୁ, ବୃକ୍ଷ, ସୂର୍ଯ୍ୟ, ବାୟୁ, ଚତୁର୍ଦ୍ଦିଗର ଆକର୍ଷଣ ପ୍ରଭୃତି ଆଉ କେତେ ବ୍ୟକ୍ତି-ଧର୍ମର କର୍ମକୁ ଅପେକ୍ଷା କରୁଛି । ଏଇପରି ପରସ୍ପର ଭିତରେ ଅନନ୍ତ ଆଦାନପ୍ରଦାନ ଓ ଆପେକ୍ଷିକତା ବିନା କୌଣସି ବ୍ୟକ୍ତିଧର୍ମର କଳ୍ପନା ନାହିଁ । କର୍ମର ଏଇ ଅପରିମେୟ ଆପେକ୍ଷିତାରେ ହିଁ ବ୍ୟକ୍ତି ଫୁଟୁଛି । ଏଇ କର୍ମ ଛଡ଼ା ବ୍ୟକ୍ତି ବୋଲି ପ୍ରକାଶରେ କିଛି ଧାରଣା ନାହିଁ । ପୁଣି ଏଇ ଅନନ୍ତ ଆପେକ୍ଷିକତା ବିନା

ବ୍ୟକ୍ତି-ଧର୍ମ ବା କର୍ମର ଧାରଣା ମଧ୍ୟ ଅସମ୍ଭବ । ବ୍ୟକ୍ତିଧର୍ମ କର୍ମମୟ । ହେଲେହେଁ କୌଣସି କର୍ମ ବା କର୍ମ ସମ୍ବନ୍ଧ କୌଣସି ଏକ ବ୍ୟକ୍ତିରେ ଆବଦ୍ଧ ନୁହେ । ସମ୍ବନ୍ଧ ଓ ବ୍ୟକ୍ତିର, ସମଷ୍ଟି ଓ ବ୍ୟଷ୍ଟିର ଏଇ ସମ୍ବନ୍ଧ ହିଁ ବିଶ୍ୱ-ବିକାଶର ଅନ୍ୟ ଏକ ବିଚିତ୍ରତା । କୌଣସି କର୍ମ କୌଣସିଠାରେ ଆବଦ୍ଧ ନୁହେଁ । ତଥାପି କର୍ମର ଏକତ୍ରସଂସ୍ଥିତ ବ୍ୟତୀତ ବ୍ୟକ୍ତି ନାହିଁ । ସମ୍ବନ୍ଧ ଛଡ଼ା ବ୍ୟକ୍ତିର ବୈଶିଷ୍ଟ୍ୟତା ଠିକ୍ ଅଛି, ତାହା ଲୋପ ହେଉ ନାହିଁ । ଅଥଚ ସମ୍ବନ୍ଧ ଛଡ଼ା ବ୍ୟକ୍ତି ବୋଲି ପୁଣି କିଛି ନାହିଁ । କର୍ମର ନିତ୍ୟ ଆଦାନ ପ୍ରଦାନରେ ଏଇ ବ୍ୟକ୍ତି-ଧର୍ମର ବିକାଶ । ବ୍ୟକ୍ତି-ସମ୍ବନ୍ଧର ଏଇ ଧର୍ମ ବୁଝିଲେ ଜୀବାତ୍ମା ପରମାତ୍ମାର ସମ୍ପର୍କ ମଧ୍ୟ ବୁଝିବାର ସୁବିଧା ହେବ । ଅଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତ—ଉପନିଷଦୀୟ କଳ୍ପନାର ସମନ୍ୱୟ ଓ ସମାଧାନ ଏଇ ବ୍ୟକ୍ତି-ସମ୍ବନ୍ଧ କଳ୍ପନାର ସମାଧାନ ସଙ୍ଗେ ସମାନ । ବ୍ୟକ୍ତି ସମ୍ବନ୍ଧରୁ ଭିନ୍ନ । କାରଣ ପ୍ରତ୍ୟକ୍ଷ ଏଠାରେ ପ୍ରମାଣ । ପତ୍ର-ଧର୍ମରେ ଯେଉଁ ପତ୍ରର ବିକାଶ ତାହା ସୂର୍ଯ୍ୟ ବୃକ୍ଷ ବାୟୁ ଜଳ ଭୂମି ସବୁଠାରୁ ଭିନ୍ନ । କିନ୍ତୁ ଯଥାର୍ଥ ଭିନ୍ନତା କେଉଁଠାରେ ? କର୍ମର ଆଦାନ ପ୍ରଦାନରେ ବିଶ୍ଳେଷଣ କଲେ, ଅନ୍ୟ ସମସ୍ତଙ୍କର ଯେଉଁ ପ୍ରକୃତି, ପତ୍ରର ମଧ୍ୟ ଠିକ୍ ସେଇ ପ୍ରକୃତି । ଆଦାନ ପ୍ରଦାନ ପରିସ୍ଥିତି ତୁଟିଗଲେ ସମସ୍ତ କେତେଗୁଡ଼ିଏ କର୍ମର ସଂହତି—ଭେଦ କିଛି ମାତ୍ର ନାହିଁ । କର୍ମ ନ ରହିଲେ ହୁଏତ ସମସ୍ତେ ସେଇ ଅବ୍ୟକ୍ତ ତତ୍ତ୍ୱରେ ଏକ । ଏପରି ଭିତରକୁ ଯାଇ ଦେଖିଲେ, ସମସ୍ତ କର୍ମ ମାୟା ବା ପ୍ରହେଳିକା ନୁହେ ତ ଆଉ କଅଣ ? ଏହା ମଧ୍ୟ ଅଜ୍ଞାନ । ପତ୍ରକୁ ସଂପୂର୍ଣ୍ଣ ପୃଥକ୍ ବୋଲି ବିଚାରରେ ଯଥାର୍ଥ ତତ୍ତ୍ୱଜ୍ଞାନ ନାହିଁ । କିନ୍ତୁ ଏହା ଯେ ପୃଥକ୍ ସତ୍ତାରେ ବିଦ୍ୟମାନ ନୁହଁ, ତା ମଧ୍ୟ ନୁହେଁ । ଏ ମାୟା—ଏ ଅଜ୍ଞାନକୁ ଉଡ଼ାଇ ଦେବାର ଉପାୟ ନାହିଁ । ପୁଣି ଏହାକୁ ମଧ୍ୟ ତତ୍ତ୍ୱତଃ ବୁଝିବାର ଅଛି । ବିକାଶପକ୍ଷେ କେବଳ କର୍ମମାତ୍ର ବା ଅଜ୍ଞାନ, ତେବେ ବ୍ୟକ୍ତି ଫୁଟିଲା କାହୁଁ ? ପୁଣି ବିଶ୍ୱର ସତ୍ତା ଯେବେ ବ୍ୟକ୍ତିରେ ବିଭକ୍ତ, ତେବେ ବ୍ୟକ୍ତି ବର୍ଗର ସଂହତି କଣ ? କର୍ମ ହିଁ ଯଦି ସଂହତିର ସଂକେତ ହୁଏ, ତେବେ ପୁଣି ବ୍ୟକ୍ତି ବା କଣ ? ଗୁଡ଼ି, ଏ କଥା ଏଠାରେ ନୁହେଁ ।

## ବ୍ୟକ୍ତି କ'ଣ ମୂଳତଃ ଶୂନ୍ୟ—

ବ୍ୟକ୍ତିଧର୍ମ କଣ, ତା ଏବେ ବୁଝାଗଲା । ସ୍ୱତୋଉଦ୍‌ଗତ କର୍ମର ବିକରଣ ହିଁ ବ୍ୟକ୍ତି-ଧର୍ମ । ଏଇ ବିକରଣରେ ଆଦାନ ପ୍ରଦାନ ହିଁ ବିଶ୍ୱକର୍ମର ପ୍ରକୃତି ଓ ବ୍ୟକ୍ତିର ମଧ୍ୟ ଏଇଥିର ପରିଚୟ । ତେବେ ବ୍ୟକ୍ତିର ସ୍ୱତନ୍ତ୍ର ସ୍ଥିତି ଅଛି କି ନା ? ଏହା ଖାଲି ଧର୍ମର ସଂଘର୍ଷ ସମବାୟ, ନା କାହାର ସ୍ୱତନ୍ତ୍ର ଧର୍ମ ? ବୌଦ୍ଧବାଦ—ମାଧ୍ୟମିକ ବୌଦ୍ଧର 'ଶୂନ୍ୟ' ବାଦ, ସୌତ୍ରାନ୍ତିକ ବୌଦ୍ଧର 'କ୍ଷଣିକ' ବାଦ, ବୈଭାଷିକ ବୌଦ୍ଧର 'ଦୁଃଖ' ବାଦ ଓ ଯୋଗାଚାରର ବୌଦ୍ଧର 'ଜ୍ଞାନ' ବାଦ—ରେ ସର୍ବତ୍ର ଏଇ ସତ୍ତାର

ଅସ୍ୱୀକାର ଦେଖାଯାଏ । ମାଧ୍ୟମିକ କହନ୍ତି ପ୍ରକାଶ କର୍ମମସ୍ତ, କର୍ମ ମାତ୍ର ହିଁ ପ୍ରକାଶ; ସତ୍ତା ବୋଲି କିଛି ନାହିଁ, ସବୁ ମୂଳରେ ଶୂନ୍ୟ । ସୌତ୍ରାନ୍ତିକ ପ୍ରମାଣ କରନ୍ତି ସବୁ ପ୍ରତୀତ କ୍ଷଣିକ, ବର୍ତ୍ତମାନ ଯାହା ଅଛି, ଠିକକ ପୂର୍ବେ ନ ଥିଲା, ଠିକକ ପରେ ନାହିଁ; ଏ-କ୍ଷଣିକ ପ୍ରତୀତ ଭିତରେ ଆଉ ସତ୍ତାର ବନ୍ଧନ କାହୁଁ ଅଇଲା ? ବୈଭାଷିକ କହନ୍ତି, କର୍ମର ଏଇ କ୍ଷଣିକତାରେ ବନ୍ଧନ ହେଉଚି ଦୁଃଖ; କାହିଁରେ କିଛି ସ୍ଥିରତା ନାହିଁ, କି କାହିଁରେ, କିଛି ନିର୍ଭର କରିବାର ନାହିଁ; ଏଇ କର୍ମ ତଥା ଦୁଃଖର ଅବସାନ ହେଲେ, ସବୁ ଶୂନ୍ୟ ବା କର୍ମର 'ନିର୍ବାଣ' । ଯୋଗାଚାରମାନେ ଏ ସବୁର ତତ୍ତ୍ୱ ଦେଖାଇବାକୁ ଯାଇ କହନ୍ତି, ସବୁ ଜ୍ଞାନ ବା ଇନ୍ଦ୍ରିୟର ଲୀଳା; ତା ଛଡ଼ା ଆଉ କି ସତ୍ତା କେଉଁଠାରେ ଅଛି ? ଇନ୍ଦ୍ରିୟକ୍ରିୟା ଶେଷ ହେଲେ ସବୁ ଶୂନ୍ୟ; ଏହାହିଁ ନିର୍ବାଣ । ଏଇ ଜ୍ଞାନବାଦରେ ତେଣୁ ଆଉ ସବୁ ବୌଦ୍ଧବାଦର ସମାପ୍ତି କହିଲେ ଚଳେ । ଏଇ ଜ୍ଞାନ ହିଁ କ୍ଷଣିକ, ଏଇ ଜ୍ଞାନ ହିଁ ଦୁଃଖ, ଏଇ ଜ୍ଞାନର ମୂଳ ହିଁ ଶୂନ୍ୟ । ଏଠାରେ ବୁଝି ରଖିବାକୁ ହେବ, ଏଇ 'ଜ୍ଞାନ' ଗୀତାର ଜ୍ଞାନ ବା ତତ୍ତ୍ୱଜ୍ଞାନ ନୁହେଁ । ଏହା ବହିର୍ଦ୍ଦୃଶ୍ୟ ବା ଇନ୍ଦ୍ରିୟରେ ଉପଲଭ୍ୟମାନ ପ୍ରକାଶର ଜ୍ଞାନ । ଏଇ ଅର୍ଥରେ 'ଜ୍ଞାନ' ଏଠାରେ ଗୋଟିଏ ସ୍ୱତନ୍ତ୍ର ପାରିଭାଷିକ ଶବ୍ଦ । ଏଇ ଜ୍ଞାନ କଥା ପ୍ରସଂଗାନ୍ତରରେ ପରେ କୁହାଯିବ ।

## ଏ ଶୂନ୍ୟର ପ୍ରତୀତି ନାହିଁ, କି ଧାରଣା ନାହିଁ—

ମାତ୍ର ଖାଲି ଅନ୍ୟର ଯୁକ୍ତି କାଟି ତର୍କ କରିବାରେ ହୁଏତ ଏ ସିଦ୍ଧାନ୍ତ କାମ ଦେଇପାରେ । ଏହା ବୁଝିବାର ବାଟ ନୁହେଁ । ମୁଁ ବୋଲି କିଛି ନାହିଁ, ମୁଁ ଯାହା ଅନୁଭବ କରୁଚି, ସେ ସବୁରେ କିଛି ନାହିଁ, ଖାଲି ସମସ୍ତେ ବୁଜୁଳାଏ ଲେଖାଏଁ ଜ୍ଞାନ ବା କର୍ମ—ସେ ଜ୍ଞାନ ବା କର୍ମ ପୁଣି ଖାଲି ଶୂନ୍ୟରୁ ବାହାରି ଶୂନ୍ୟରେ ମିଶି ଯାଉଚନ୍ତି, ଏହା ବୁଝାଇ ମନାଇବା ତ ଦୁଷ୍କର; ପୁଣି ବୁଝିବା ମଧ୍ୟ ଦୁଷ୍କର । ପ୍ରଥମ କଥା ଶୂନ୍ୟରୁ ପୂର୍ଣ୍ଣ ବାହାରିବାର ଧାରଣା ମନୁଷ୍ୟର ହୋଇ ନ ପାରେ । ଏହା ବାହାରୁଚି କପରି, କିଏ ବା ବାହାର କରୁଚି ? ଯଦି କହ କିଏ ବାହାର କରୁଚି, ତେବେ ସେଇ 'କିଏ' ତର୍କରେ ଶୂନ୍ୟବାଦ ଧ୍ୱଂସ । ମନୁଷ୍ୟର ଜ୍ଞାନମାତ୍ର ହିଁ ବର୍ଣ୍ଣ, ଏଇ ଜ୍ଞାନରେ ମଧ୍ୟ ଶୂନ୍ୟରୁ ପୂର୍ଣ୍ଣର ପ୍ରକାଶ ନାହିଁ । ଶୂନ୍ୟର ଚିନ୍ତା ବା ଧାରଣା ମଧ୍ୟ ମନୁଷ୍ୟର ନାହିଁ । ଖୁବ୍ ଭିତରକୁ ଯାଇ ଦେଖିଲେ ପୂର୍ଣ୍ଣର ଅଭାବକୁ ହିଁ କଳ୍ପନାରେ ଶୂନ୍ୟ କହନ୍ତି । ସ୍ଥୂଳର ଅଭାବ ହେତୁ ସୂକ୍ଷ୍ମ ଆକାଶକୁ ଶୂନ୍ୟ କୁହାଯାଇଥାଏ । ମାତ୍ର ଆକାଶ ଶୂନ୍ୟ ନୁହେଁ । ତତ୍ତ୍ୱ ବିଚାର କରିବା ଲୋକେ ଏହାକୁ ଏକ ମହାଭୂତ—ନ ହେଲେ ବି ତନ୍ମାତ୍ର ବା ସୂକ୍ଷ୍ମ ଭୂତ ବା ବସ୍ତୁ ବୋଲି ଠିକ୍ କରନ୍ତି । ବୌଦ୍ଧ ଆକାଶକୁ ପୃଥିବୀ ଜଳ ପରି ଗୋଟିଏ ଜ୍ଞାନ ବୋଲି କହନ୍ତି । ତେବେ ଆକାଶର ମଧ୍ୟ ଅଭାବ ଯେ ଶୂନ୍ୟ, ତାହା କପରି ? ତେଣୁ ଶୂନ୍ୟ ଏକ ସୂକ୍ଷ୍ମତମର କଳ୍ପନା ମାତ୍ର,

ବୌଦ୍ଧ ତନ୍ତ୍ର (ପରେ ହିନ୍ଦୁ ତନ୍ତ୍ର—କାଳୀ ତନ୍ତ୍ର) ଏହାଙ୍କୁ ଅଦ୍ଭୁତମ କହନ୍ତି । 'ଅଦ୍ଭୁତମ' ବୋଲି ଗୁଣର ଆରୋପ କରି କେହି ଶୂନ୍ୟ ବୁଝାଇ ପାରେ ନାହିଁ । ପୁଣି ବ୍ୟକ୍ତିର ଯେ ପ୍ରତୀତି, ସେଥିରେ କର୍ମ ବା ଗୁଣର ଯେଉଁ ବୁଜୁଲାଟି କଥା ଉପରେ ରୂପକରେ କୁହା-ଯାଇଚି, ସେ ବୁଜୁଲାଟା ବନ୍ଧା ହେଲା କପରି ? ବାନ୍ଧିଲା କିଏ ? ଏଇ 'କିଏ' ଓ 'କପରି'ର ଉତ୍ତର ଶୂନ୍ୟ ହୋଇପାରେ ନା ।

## ସତ୍ତାରେ ହିଁ ଯୁକ୍ତିର ଏକାନ୍ତ ଅବସାନ—ସତ୍ତା ପ୍ରତୀତିଗମ୍ୟ—

ଏ ଶୂନ୍ୟ ଦର୍ଶନର ପ୍ରତିବାଦରେ ଆଉ ବେଶି ଦୂରକୁ ଯିବା ଦରକାର ନାହିଁ । ଏଇ ବ୍ୟକ୍ତିଧର୍ମର କର୍ମ ଜାଲ ଭିତରେ ତତ୍ତ୍ୱର ସତ୍ତା ବିନା ବ୍ୟକ୍ତିର ପ୍ରତୀତି ତଥା ଧାରଣା ନାହିଁ । ସତ୍ତା ନିଶ୍ଚୟ ଅଛି । ତା ନ ହେଲେ ଏ ପ୍ରକାଶ ବା କର୍ମ କାହାର ? ଖାଲି ପ୍ରକାଶରୁ ପ୍ରକାଶରେ ଗତି କଲେ ଯୁକ୍ତିରେ ଅନବସ୍ଥା ଘଟିବ । କେଉଁ ପ୍ରକାଶରୁ କେଉଁ ପ୍ରକାଶ, ପୁଣି ତାର ମୂଳ କେଉଁ ପ୍ରକାଶ—ଇତ୍ୟାଦି ଅନନ୍ତ କାଳଯାଏ ଛୁଟିବ ନାହିଁ । ତେଣୁ ଅନାଦି ପ୍ରକାଶରେ ରହିବାକୁ ହେବ । ତାହା ହିଁ ସତ୍ତା । ପ୍ରତୀତି ମଧ୍ୟ ତାହା ହିଁ ପ୍ରମାଣ କରୁଚି । ଏ ପ୍ରତୀତି ଏକ ପ୍ରକାର ନିତ୍ୟ ପ୍ରତ୍ୟକ୍ଷ ପ୍ରମାଣ । ଯୁକ୍ତିର ଅନବସ୍ଥା ବା ଆଦିହୀନତାରେ, ଏଇ ପ୍ରତ୍ୟକ୍ଷ ହିଁ ଏକମାତ୍ର ସ୍ଥିତି, କହିବାକୁ ହେବ ।

## ବ୍ୟକ୍ତିର ସତ୍ତା—

ବ୍ୟକ୍ତିର ମୂଳରେ ମଧ୍ୟ ସେଇ ସତ୍ତାର ଧାରଣା ଅପରିହାର୍ଯ୍ୟ । ଧର, ଗୋଟିଏ ଗିଲାସ ଦେଖିଲେ, ତାହା କଣ ? ଖାଲି ବର୍ଣ୍ଣ, କଠିନତା, ଶୀତଳତା, ଓଜନ ପ୍ରଭୃତିର ସମବାୟ ଗିଲାସ ନୁହେ । ଉପରେ ପଦାର୍ଥର ଉଦାହରଣ ଦିଆଯାଇଚି । ତେଣୁ ଏଇ ଗୁଣ ବା କର୍ମସମବାୟର ପୀଠରୂପେ ଗିଲାସର ବ୍ୟକ୍ତି ସତ୍ତା ଅଛି । ଏହା ମଧ୍ୟ ବୁଝାଗଲା ଏ ସମସ୍ତ ଗୁଣ ଯାହାର ବିକାଶ, ସେଇ ଏକା ବ୍ୟକ୍ତି । ଏହାର ଧାରଣା ଓ ପ୍ରତୀତି ଓତପ୍ରୋତ ଭାବରେ ବିଶ୍ୱସତ୍ତାର ଧାରଣା ସଙ୍ଗେ ଜଡ଼ିତ ରହିଚି । ବରଂ ଏହା କହିଲେ ବିଶେଷ ସଙ୍ଗତ ହେବ ଯେ, ଏଇ ବ୍ୟକ୍ତି-ସତ୍ତାର ଅନୁଭୂତ ପ୍ରତୀତିରୁ ଜଟିଳ ଓ ସୂକ୍ଷ୍ମ ବିଶ୍ୱସତ୍ତାର ଧାରଣାକୁ ଉଠିବାକୁ ହୁଏ । ଏଇ ବ୍ୟକ୍ତିସତ୍ତା ହିଁ ସାକ୍ଷାତ୍ ପ୍ରତୀତି । ବିଶ୍ୱସତ୍ତା ବରଂ ସୂକ୍ଷ୍ମ ଓ ଅନୁମାନଗମ୍ୟ । ବ୍ୟକ୍ତିର କର୍ମ ବିଶ୍ଳେଷଣରେ ସତ୍ତାର ଯେଉଁ ସ୍ପଷ୍ଟ ଅବବୋଧ ହୁଏ, ସେଇଥିରୁ ଅନୁମାନରେ ବିଶ୍ୱସତ୍ତାର ଅସ୍ତିତ୍ୱ ସ୍ଥିର କରାଯାଏ ।

## ମାନବର ବ୍ୟକ୍ତିତ୍ୱ ଓ 'ତତ୍ତ୍ୱମସି'—

ସେ କଥା ବେଶି କରି କହିବା ପୂର୍ବରୁ, ଯାହାକୁ ସାଧାରଣ ଭାଷାରେ ବ୍ୟକ୍ତି ବୋଲି କହନ୍ତି, ସେଇ ମାନବ ବ୍ୟକ୍ତିର ଆଲୋଚନା କରାଯାଉ । ମାନବ ସବୁ ଜାଣୁଚି, ଅନୁଭବ କରୁଚି, କର୍ମ କରୁଚି । ଯେ ଜାଣୁଚି ତାଙ୍କୁ ଜ୍ଞାତା ବା 'ଜ୍ଞ' ପୁଣି ଯାହା ଜାଣୁଚି ( କରୁଚି ବା ବୁଝୁଚି ) ସେସବୁକୁ 'ଜ୍ଞେୟ' କହନ୍ତି (ଇଂରେଜୀରେ

( Subject—'ଜ୍ଞ' ଓ Object—'ଜ୍ଞେୟ' )। ଏଇ 'ଜ୍ଞ' ଓ 'ଜ୍ଞେୟ' ତମ-ପ୍ରକାଶ (ଅନ୍ଧାର ଆଲୁଅ ) ପରି ପ୍ରକୃତିରେ ପରସ୍ପରର ବିରୋଧୀ ବୋଲି ଶଙ୍କରାଚାର୍ଯ୍ୟ ଉପମାରେ ବୁଝାଇ ତାଙ୍କ ଅଦ୍ୱୈତବାଦ ପ୍ରକାଶକ ଶାରୀରକ ଭାଷ୍ୟ ( ବ୍ରହ୍ମସୂତ୍ରର ବ୍ୟାଖ୍ୟାସୂଚନା ) ଆରମ୍ଭ କରିଛନ୍ତି। ଯଥାର୍ଥରେ 'ଜ୍ଞ' ର କର୍ମ 'ଜ୍ଞେୟ'ରେ ପ୍ରକାଶ ପାଏ। ମାତ୍ର ଜ୍ଞେୟର କୌଣସି ପରିମାଣ ବା ପରିଣାମରେ ଜ୍ଞ-ର କଳନା ନାହିଁ। ପୁଣି ଜ୍ଞ ମାନେ ଜ୍ଞେୟର ଆତ୍ମପ୍ରକାଶର ଯଥାର୍ଥ ପ୍ରତୀକ ହେଲେହେଁ ଜ୍ଞ-ର କୌଣସି ବିକାର ବା ପରିଣାମରେ ଜ୍ଞେୟ ତିଆରି ହେଉ ନାହିଁ। ସୁନା କୁଣ୍ଡଳ ହେଲାପରି ଜ୍ଞ ଜ୍ଞେୟରେ ପରିଣତ ହେଉ ନାହିଁ। ଏ କର୍ମ ଓ କର୍ମୀ, ଦେହ ଓ ଦେହୀର ସମ୍ବନ୍ଧ ଅତି ଜଟିଳ ଓ ଦୁର୍ଜ୍ଞେୟ। ପୁଣି ମାନବର ବ୍ୟକ୍ତି-ଧର୍ମରେ ସତ୍ତ୍ୱର ପୀଠ ନାହିଁ; ଖାଲି ଜ୍ଞାନଗୁଡ଼ିଏ ବୁଜୁଳା ବନ୍ଧା ହୋଇ ମାନବର ବ୍ୟକ୍ତି 'ଜ୍ଞ' ବା 'ମୁଁ' ହୋଇଛି—ଏହା ମଧ୍ୟ ନୁହେ। କୁହାଯାଇଛି, ଏ ଯୁକ୍ତି ପ୍ରତୀତିର ବିରୋଧୀ। ଏହି ପ୍ରତୀତି-ବିରୋଧରେ ସାଧନା ସ୍ଥାୟୀ ହୁଏ ନାହିଁ। ଦାର୍ଶନିକ ଏହା କଳ୍ପନାରେ କହିଲେ ମଧ୍ୟ ଲୋକରେ ଏହି ପୀଠରେ ସାଧନା ପ୍ରତିଷ୍ଠିତ ହେବ ନାହିଁ, ଏହା ମଧ୍ୟ ଏଠାରେ ଦେଖିବାର ଅଛି। ଏଥିରେ ସାଧନା ସ୍ଥାପନ କଲେ ଲୋକ କର୍ମର ବିଶୃଙ୍ଖଳାରେ ମୂଢ଼ାଚାର ଓ ଭ୍ରଷ୍ଟ ହେବ। କାରଣ ମୁଁ ବୋଲି ଯେ ପ୍ରତୀତି ତାର ଜଡ଼ବସ୍ତୁମାନଙ୍କରେ କଳନା ନାହିଁ, କର୍ମମାତ୍ରରେ ତାର ବ୍ୟାଖ୍ୟା ନାହିଁ। ମାନବର ସମସ୍ତ କର୍ମ ତାର ବିକାଶ, ମାତ୍ର ସେ କୌଣସି କର୍ମର ବିକାଶ ନୁହେ। ବରଂ ଜଗତର ସମସ୍ତ ବ୍ୟକ୍ତିବୋଧର ମୂଳରେ ଏଇ ବ୍ୟକ୍ତିବୋଧ ରହିଛି, ଏହା କୁହାଯାଇପାରେ। ମୁଁ ଯେପରି ମୋର ସବୁ କର୍ମ, ଅର୍ଥାତ୍, ସବୁ କର୍ମର ଦାନ ଓ ଅନ୍ୟକୃତ କର୍ମରେ ଆଦାନ ଭିତରେ ସତ୍ତାରୂପେ ରହିଛି, ଅନ୍ୟ ବ୍ୟକ୍ତିମାନେ, ଜଡ଼ ଚେତନ ସମସ୍ତେ ସେଇପରି କର୍ମ ବା ଗୁଣର ଆଦାନ ପ୍ରଦାନ ମଧ୍ୟରେ ବ୍ୟକ୍ତିତ୍ୱର୍ ସତ୍ତାରେ ପ୍ରତିଷ୍ଠିତ ଅଛନ୍ତି। ଏଥିରୁହିଁ ବ୍ୟକ୍ତିତ୍ୱର ବ୍ୟାଖ୍ୟା ଜଗତ ହୁଏ। ମୋର ଅନୁଭୂତି କଣ ? ମୁଁ ଦେଖୁଛି, ଶୁଣୁଛି, ଶୁଙ୍ଘୁଛି, ଛୁଉଁଛି, ଚାଖୁଛି, କହୁଛି, ଧରୁଛି, ଚାଲୁଛି, ମୁତୁଛି, ହଗୁଛି, ଜାଣୁଛି, ବୁଝୁଛି—ଏ ସବୁ କର୍ମ ଭିତରେ ମୁଁ। ମାତ୍ର ଦେଖିବାର ରୂପରେ ମୁଁ ଅଛି, ନା ଶୁଣିବାର ଶବ୍ଦରେ ମୁଁ ଅଛି, ନା ସେଇପରି କହିବାର କଥାରେ, ନା ଧରିବାର ବସ୍ତୁରେ, ନା ଜାଣିବାର ଜ୍ଞାନରେ, ନା ବୁଝିବାର ସିଦ୍ଧାନ୍ତରେ, କାହିଁରେ ମୁଁ ଅଛି ? ଏସବୁ ଭିତରେ କୌଣସିଠାରେ ମୁଁ ନାହିଁ, କିମ୍ବା ସବୁଥିରେ ମୁଁ ଭୁ ମଧ୍ୟ ଟିକିଏ ଟିକିଏ ନାହିଁ। ଏ ସବୁଥିରେ ମୁଁ, ଅଥଚ ଏ ସବୁଥିରୁ ଭିନ୍ନ। ମାତ୍ର ମୁଁ ଅଛି। ମୋର କର୍ମରେ ସବୁ ଦେଶକାଳ ଅବସ୍ଥା ପ୍ରକାଶ ପାଉଛି, ମୋ ଜ୍ଞାନରେ ମଧ୍ୟ ମୁହୂର୍ତ୍ତିକେ ପୃଥିବୀର ସ୍ଥାନମାନଙ୍କଠାରୁ ତାରା-ଜଗତର ମହାବିସ୍ତାର ଯାଏ, ଆଜିଠାରୁ ନୀହାରିକ ତଥା ନବସୃଷ୍ଟିର ଉପାଦାନ ବସ୍ତୁ (Cosmic matter)ର ପୂର୍ବ ଯୁଗଯାଏ ସବୁ ପ୍ରକାଶ

ପାଉଛି, ମାତ୍ର 'ମୁଁ' ବସ୍ତୁକୁ ଏଡ଼ିକି, ଏପରି ପ୍ରଭୃତିରେ ପ୍ରକାଶ କରିବାର ଉପାୟ ନାହିଁ । କିନ୍ତୁ ମୁଁ ଅଛି । ଏଇ ଯେ 'ମୁଁ'ର ଅଛି-ତ୍ୱ ବା ଅସ୍ତିତ୍ୱର ପ୍ରତୀତି ସେଇ ମୋର ବ୍ୟକ୍ତିତ୍ୱ । ଏହି ବ୍ୟକ୍ତିତ୍ୱର ବିକାଶରେ କର୍ମର ଯେପରିକି ଅବିରତ ଧାରା ଛୁଟିଛି । ପୁଣି ଅବିରତ ଅନ୍ୟର କର୍ମଧାରା ଏଥିରେ ବାଜୁଛି । ଏଇ 'ମୁଁ' ବା ବ୍ୟକ୍ତିତ୍ୱ ଅନୁସାରେ ମାନବ ଅନ୍ୟ ଜଡ ଚେତନ ସବୁରି ବ୍ୟକ୍ତିତ୍ୱର ସଙ୍କେତ ପାଇ ଈଶ୍ୱର କଳ୍ପନା କରୁଛି । ଏଇ 'ଜ୍ଞ'ର ବ୍ୟକ୍ତିତ୍ୱ-ମାନଦଣ୍ଡରେ ଜ୍ଞେୟର ବ୍ୟକ୍ତିତ୍ୱର ସତ୍ତା କଳ୍ପନା କରି, ସେଥିରେ ତାର ଅବବୋଧ ଦୃଢ଼ ହୋଇ, ଅନୁଭୂତିରେ ପରିଣତ ହେଲେ, 'ଜ୍ଞ' ଓ 'ଜ୍ଞେୟ' ଯେ ଏକ, ସେ ଧାରଣା ପ୍ରତିଷ୍ଠିତ ହେଉଛି । 'ଜ୍ଞେୟ'ର ବ୍ୟକ୍ତି-ସତ୍ତାରୁ ବିଶ୍ୱସତ୍ତା ବା ବ୍ରହ୍ମକୁ ଉଠି ବୁଝୁଛି, ସେ ସତ୍ତା ଯେଉଁ ପ୍ରକୃତିର ନିଜ ସତ୍ତା ସେଇ ପ୍ରକୃତିର ସେଇ ସତ୍ତାର ଉପାସନା କରି (ବା ସବୁବେଳେ ନିଜକୁ ସେଇ ସତ୍ତା ପାଖରେ ରଖି) ନିଜକୁ ସେଇ ସତ୍ତା ସଙ୍ଗେ ମିଳାଇ ଦେବା ହିଁ ସତ୍ତାର ଯଥାର୍ଥ ଅନୁଭୂତି ଓ ଦୁଇ ସତ୍ତା ଏକ ଅଭିନ୍ନ । ଏଇ ତିନୋଟି ହେଉଛି ଯଥାକ୍ରମେ ବିଶିଷ୍ଟାଦ୍ୱୈତ, ଦ୍ୱୈତ ଓ ଅଦ୍ୱୈତ ମତ । ମାତ୍ର ବସ୍ତୁତଃ ଏ ତିନୋଟିରେ ଏକ କଥାକୁ ତିନି ଦିଗରୁ ଦେଖିବା ଛଡ଼ା ଆଉ କିଛି ଭେଦ ନାହିଁ । ତିନୋଟିରେ ଆଦର୍ଶ ଓ ଉଦ୍ଦେଶ୍ୟ 'ତତ୍ତ୍ୱମସି' ଅର୍ଥାତ୍, 'ତୁ ହେଉଚୁ ତାହା ।' 'ମୁଁ' ହେଉଛି ଜ୍ଞେୟର ତତ୍ତ୍ୱ । ଏହାହିଁ ବ୍ୟକ୍ତିର ମୁକ୍ତି, ଏହାହିଁ ଗୀତାର ତତ୍ତ୍ୱ ।

## ସଚ୍ଚିଦାନନ୍ଦ—

ଈଶ୍ୱର ବା ମନୁଷ୍ୟର ଜ୍ଞେୟରାଜ୍ୟର ବ୍ୟକ୍ତିମାନେ ବିଶ୍ୱପଙ୍କର ଅଙ୍ଗୀଭୂତ । ମାନବ ନିଜ ଚେତନାର ସ୍ୱାତନ୍ତ୍ର୍ୟକୁ ଗୁହିଁ ଯେସବୁ ବ୍ୟକ୍ତିର ବିଶ୍ଳେଷଣରେ ଯେସବୁ ବ୍ୟକ୍ତିଙ୍କୁ ଜଡ଼ କହୁ ବା ମୁକ୍ତ କହୁ, ସେଇସବୁ ବ୍ୟକ୍ତିର ପୀଠରୂପ ଜ୍ଞେୟର ତତ୍ତ୍ୱ ତା ପାଖେ ପ୍ରତିଭାତ । ନିଜର ଚେତନାର ସଙ୍କେତ ଧରି ସେଇ ଈଶ୍ୱର ବସ୍ତୁପୀଠକୁ ଆଲୋଚନା କରେ । କିନ୍ତୁ ମାନବ ଭିତରେ ଚେତନାର ଇତର ବିଶେଷ ସୋପାନ ଅନୁଧାବନ କରି ଯେସବୁକୁ ଜଡ଼ କହିଲେ ମଧ୍ୟ ବିକାଶର ଗତି ସେଇଠାରେ ସ୍ଥିର ଓ ନିଶ୍ଚିତଭାବରେ ନିର୍ଦ୍ଧାରଣ କରେ ଓ ମନୁଷ୍ୟକୁ ବା ନିଜକୁ ଶ୍ରେଷ୍ଠ ସ୍ଥାନ ଦିଏ । ମନୁଷ୍ୟର ଚେତନ ବ୍ୟକ୍ତି କାମନାର ବେଦନା ଧରି ବିଶ୍ୱଶୃଙ୍ଖଳାରେ ଆପାତ ବିଶୃଙ୍ଖଳାର ସୃଷ୍ଟି କଲେହେଁ, ଚେତନାର ଏଇ ସ୍ୱାଧୀନ ଓ ସ୍ୱାବଲମ୍ବୀ ପ୍ରକୃତି ଦୃଷ୍ଟିରେ ଶୃଙ୍ଖଳାର ଧାରଣା କରି କହେ ବ୍ରହ୍ମ 'ସତ୍ ଚିତ୍' । ସତ୍ତା, ଚେତନ । ଚେତନାର ପ୍ରକୃତି ସ୍ୱାବଲମ୍ବୀ ହେଲେହେଁ, ମାନବ ଚେତନା, କାମନାଜନିତ କର୍ମର ବନ୍ଧନରେ ଜଡ଼ିତ ଥିବାରୁ ସୁଖଦୁଃଖାଦି ଭୋଗ କରେ । ଏଇ ସମସ୍ତ ସୁଖ-ଦୁଃଖାଦି 'ଦ୍ୱନ୍ଦ୍ୱ' ବା ଦୁଇଟିର ତୁଳନାଜନିତ ଆପେକ୍ଷିକ ଅନୁଭୂତି । ଅନ୍ୟ ଏକ ଅନୁଭବ ତୁଳନାରେ ଗୋଟିଏ ଅନୁଭବ ସୁଖ ବା ଦୁଃଖ । ଯେ ପୂର୍ବ କରି

ଖାଇବାକୁ ନ ପାଇ ଦୁଃଖରେ ଥାଏ, ପୂର୍ବ କରି ଖାଇବାକୁ ପାଇଲେ ତାର ସୁଖ, ପୁଣି ସବୁବେଳେ ପୂର୍ବ କରି ଖାଇବାକୁ ପାଇବା ଲୋକ ପକ୍ଷରେ ଯୋଗାଡ଼ କରି ସେଇ ଖାଦ୍ୟ ସଂଗ୍ରହ କରିବା ଦୁଃଖ । ବିନା ଯୋଗାଡ଼ରେ ସେତକ ମିଳିଗଲେ ତାର ସୁଖ । ବିନା ଯୋଗାଡ଼ରେ ଯାହାକୁ ପେଟପୂର୍ବ ମିଳୁଚି, ତାର ବିଛଣା ସଜାଡ଼ିବାରେ ଦୁଃଖ । ଭୃତ୍ୟ ଥାଇ, ବିଛଣା ସଜାଡ଼ିବା ପ୍ରଭୃତି କଲେ, ତାର ସୁଖ । ପୁଣି ଏସବୁ ଯାହାର ଅଛି, ତାର ଏସବୁ ଦୁଃଖ ଯେବେ ଚଲାବୁଲା ପାଇଁ ମଟରକାର ନାହିଁ । ଏପରି ସବୁ ଅନୁଭବ ତୁଳନାରେ ହିଁ ଦୁଃଖ ବା ସୁଖ ହୁଏ । ସବୁ 'ଦ୍ୱନ୍ଦ୍ୱ' ଏହିପରି । ଶୀତୋଷ୍ଣ, ଦେଖ । ଏକର ତୁଳନାରେ ଯେ ଶୀତଳ, ଅପରର ତୁଳନାରେ ସେ ଉଷ୍ଣ । ମାନ ଅପମାନ; ଲାଭ କ୍ଷତି; ଆଲୁଅ ଅନ୍ଧାର; ପୂର୍ଣ୍ଣ ଶୂନ୍ୟ; ଉଚ୍ଚ ନୀଚ—ସବୁ ଏହିପରି । ଏଇ ଦ୍ୱନ୍ଦ୍ୱ ଛଡ଼ା ଚେତନ ବ୍ୟକ୍ତି, ମାନବର ପ୍ରକାଶ ସମ୍ବନ୍ଧରେ ଅନ୍ୟ ଧାରଣା ନାହିଁ । ସମସ୍ତ କର୍ମର ଧର୍ମ ଏଇ 'ଦ୍ୱନ୍ଦ୍ୱ' । ଅନୁଭବର ଦୁଃଖ ଏଇ ଦ୍ୱନ୍ଦ୍ୱହେତୁକ । ସୁଖମାନେ ଏଇ ଦୁଃଖର ଅନ୍ତର୍ଗତ । ଦୁଃଖର ତୁଳନାରେ ହିଁ ସୁଖ । ସୁଖ ବୋଲି ଆଉ କିଛି ନାହିଁ । ଏହା ହିଁ ପ୍ରକାଶ ଧର୍ମ । ପ୍ରକାଶର ପୀଠରେ ଏ ଆପେକ୍ଷିକତା ନାହିଁ । ବ୍ୟକ୍ତିର ଗୁଣ, ଧର୍ମ ବା କର୍ମରେ ଏଇ ଆପେକ୍ଷିକତା ଛଡ଼ା ଆଉ କିଛି ନାହିଁ । ସମସ୍ତ କର୍ମରେ ଏକର ଅପରକୁ ଅପେକ୍ଷା । ମାତ୍ର କର୍ମର ଯେ ଦୁର୍ଜ୍ଞେୟ ପୀଠ, ସେଥିରେ ଅପେକ୍ଷାର ସୂଚନା ନାହିଁ; ସେଥିରେ ଦେଶକାଳର କଳନା ନାହିଁ, ମୁଁ ବୋଲି ଯେଉଁ ସତ୍ତ୍ୱର ଅନୁଭବ ନିତ୍ୟ ଓ ସର୍ବଦା ଅନାହତ, ତାର ଦେଶକାଳର କଳନା ନାହିଁ, ଏହା ବୁଝାଯାଇଚି । ଏଥିରେ ଅଂଶ ବା ଭାଗ କରିହେବ ନାହିଁ; ପୁଣି ଏହାର କାଳରେ ପରିଣାମ ମଧ୍ୟ ନାହିଁ । ମୋର ଶରୀରର ପରିଣାମରେ 'ମୁଁ'ର ପରିଣାମ ହେଉ ନାହିଁ । ସେଇପରି ଧର, ଗିଲାସ ଗୋଟିଏ ବ୍ୟକ୍ତି । ଏହାର ବର୍ଣ୍ଣ, ତାପ, ଗୁରୁତ୍ୱାଦିର ପରିବର୍ତ୍ତନ ହେଉଚି । ଏହା ଯେପରି ଗିଲାସ ଥିଲା, ତାହା ରହୁ ନାହିଁ । ମାତ୍ର ଗିଲାସ ବୋଲି ଯେ ବସ୍ତୁର ଅନୁଭବ ଥିଲା, ତା ଏକ ଓ ଅବିକଳ । ସେଇପରି ଗଛ । ଗଛ ବୋଲି ବସ୍ତୁଟି କଣ ? ଯେଉଁଠାରେ ମୂଳକାଣ୍ଡ ଡାଳପତ୍ରାଦିର ପ୍ରକାଶ ଦେଖୁଁ ତାକୁ ଆମେ କହୁଁ ଗଛ । କିନ୍ତୁ ଯେ ଗଛଟି କଣ ? ଗଛ ନ ଦେଖାଇ, ସେ ବସ୍ତୁ ବୁଝାଇ ହେବ ନାହିଁ । ପୁଣି ଗୋଟିଏ ଶିଶୁକୁ ଗୋଟିଏ ଦୁଇଟି ମାତ୍ର ଗଛ ଦେଖାଇ, ତାକୁ ଯଦି କହି ଦିଆଯାଏ, ଏ ଗଛ । ତାର ସେଥିରେ କି ବସ୍ତୁ ଧାରଣା ହୁଏ, କେଜାଣି, ମାତ୍ର ସେ ପୃଥିବୀରେ ଯେ କୌଣସି ସ୍ଥାନରେ ଗଛ ଦେଖିଲେ, କହେ ଏ ଗଛ । ସେଇପରି ଡାଳ ପତ୍ର ସବୁ ଗଛର ଅଂଶ ହେଲେହେଁ, ଏକ ଏକ ସ୍ୱତନ୍ତ୍ର ବସ୍ତୁ । ଏ ବସ୍ତୁ କଣ ? ଏଥିରେ ଅପେକ୍ଷା ନାହିଁ, ଅଂଶ ବା ପରିଣାମ ବିଗ୍ରହ ନାହିଁ । ଏଥିରେ ଦ୍ୱନ୍ଦ୍ୱର ଅନୁଭବ ନାହିଁ । ଏ ଅନୁଭବ ବା ପ୍ରତୀତି ସ୍ୱତନ୍ତ୍ର । ଏଥିରେ ଶୀତୋଷ୍ଣାଦି ଆରୋପ କରି ହେବ ନାହିଁ । ଏ ବସ୍ତୁ ବା ତତ୍ତ୍ୱ ଶୀତୋଷ୍ଣାଦିରୁ ଅତୀତ । ଅର୍ଥାତ୍ ଶୀତ ଏଇ

ଉଷ୍ମ ଏଇ; ସୁଖ ଏଇ ଦୁଃଖ ଏଇ । କାରଣ ଏସବୁ ବସ୍ତୁରେ ନାହିଁ ବ ନୁହେ । ନାହିଁ ତ ଅଇଲା କାହୁଁ ? ଏହାକୁ ପ୍ରକାଶ ଆଡ଼ୁ ଦେଖିଲେ ସମସ୍ତ କର୍ମ—ସୁଖ ଦୁଃଖାଦ ଦ୍ୱନ୍ଦ୍ୱ; ତତ୍ତ୍ୱ ଆଡ଼ୁ ଦେଖିଲେ ଏହା ସେସବୁରୁ ଅଲଗା । ଗୋଟିଏ ବାଟୁଳି ଖଡ଼ାକୁ ଭିତରପଟୁ ଗୃହିଁଲେ, ଏହା ନୁଆଁଣିଆ (Concave) ବାହାରପଟୁ ଗୃହିଁଲେ, ଏହା ଠେଲାଲିଆ (Convex) । ବାଟୁଳିଖଡ଼ାଟି କଣ ? ନୁଆଁଣିଆ ନା ଠେଲାଲିଆ ? ଏ ଦୁଇଟିରୁ ଅତୀତ, ଅର୍ଥାତ୍ ନୁଆଁଣିଆ ଏଇ; ପୁଣି ଠେଲାଲିଆ ଏଇ ।

ଏଇ ସୁଖ ଦୁଃଖାଦ ଦ୍ୱନ୍ଦ୍ୱରୁ ଯେ ଅତୀତ, ବା ସୁଖ ଓ ଦୁଃଖ ଯେଉଁଠାରେ ସମାନ—ଏକ ବସ୍ତୁକୁ ଏକଆଡ଼ୁ ଗୃହିଁଲେ ସୁଖ, ଅନ୍ୟଆଡ଼ୁ ଗୃହିଁଲେ ଦୁଃଖ—ଯେ ସୁଖ, ସେଇ ଦୁଃଖ—ସେଇ ପରସ୍ଥିତି ହେଉଚ ବସ୍ତୁ ତତ୍ତ୍ୱ ବା ବ୍ରହ୍ମ । ଏଇ ପରସ୍ଥିତିକୁ 'ଦୁଃଖାନ୍ତ' କହନ୍ତି (୯. ୩୭); ଏହା ମଧ୍ୟ ସୁଖାନ୍ତ । ତତ୍ତ୍ୱ ବା ଚେତନା ଏଇ ତୁଳନାତ୍ମକ ସୁଖ ଦୁଃଖରୁ ଅତୀତ । ଏହାକୁ ହିଁ ନାମ ଦଆଯାଇଚ ଆନନ୍ଦ । ଗୁଣ ବା କର୍ମରୁ ଅତୀତ ବା ନିର୍ଗୁଣାତୀତ ହିଁ ଆନନ୍ଦ । ଏଇପର ସତ୍ ବା ତତ୍ତ୍ୱ ହିଁ ଚେତନା; ସେଇ ଆନନ୍ଦ । ବିଶ୍ୱତତ୍ତ୍ୱ ସତ୍-ଚିତ୍-ଆନନ୍ଦ । ଏହାକୁ ସତ୍ ବା ଅଚ୍ଛି କହ, ଚେତନା କହ, ବା ଆନନ୍ଦ କହ—ଏକା କଥା । ମାନବର 'ମୁଁ' ବା ପ୍ରତ୍ୟଗାତ୍ମା ଏଇ ବସ୍ତୁ । ବିଶ୍ୱର ଅଧ୍ୟାତ୍ମ ଏଇ ବସ୍ତୁ ।

## ପୁରୁଷୋତ୍ତମ—

ଏଇ ସଚ୍ଚିଦାନନ୍ଦର ସଙ୍କେତ ମାନବ ଭିତରେ ମିଳେ । ଭିତରର ଶୃଙ୍ଖଳାରୁ ବାହାରେ ତାହା ବୁଝିବାକୁ ହୁଏ । କର୍ମରେ ଆତ୍ମାର ପ୍ରକାଶ । ଦେହୀର ପ୍ରକାଶ ବା କର୍ମ ଦେହ । ଦେହ, କର୍ମ ନୁହେ । ମାତ୍ର କର୍ମ ଛଡ଼ା ଦେହୀର ଧାରଣା ନାହିଁ । ବିଶ୍ୱ-କର୍ମରେ ହିଁ ବିଶ୍ୱସତ୍ତାର ଧାରଣା । କିନ୍ତୁ ସତ୍ତା କର୍ମରେ ହିଁ ଆତ୍ମୋତ୍ସର୍ଗ କଲେହେଁ କର୍ମ ହିଁ ସତ୍ତା ନୁହେଁ । ସତ୍ତାର କର୍ମ । ଏଇ ବିଶ୍ୱର ଧାରଣରେ କର୍ମ ବା ପ୍ରକାଶ ଯେପର ସତ୍ୟ, ସତ୍ତା ମଧ୍ୟ ସେଇପର । ସତ୍ତା କର୍ମରେ ଆତ୍ମପ୍ରକାଶ କଲେହେଁ, ସେଇ କର୍ମ ମାତ୍ରରେ ଆତ୍ମବିମୁକ୍ତ ନୁହେଁ । ମାନବର ବ୍ୟକ୍ତିରେ ଏଇ ଧାରଣାର ସୂଚନା ସ୍ପଷ୍ଟ । ସବୁଜ ମାନବ କର୍ମ 'ମୁଁ'ର ବିକାଶ । ମାତ୍ର ମୁଁ ଏଇ ବିକାଶମାତ୍ରରେ ହିଁ ଗୁପ୍ତ ହେଲେହେଁ ଲୁପ୍ତ ନୁହେଁ, ସବୁ କର୍ମରେ ମୁଁ ପୂର ରହଲେହେଁ, ବିକାଶ ଛଡ଼ା ମୁଁ ର ପ୍ରତୀତ ସ୍ପଷ୍ଟ । ଅତଏବ ବିଶ୍ୱ ତଥା ବ୍ୟକ୍ତିରେ ଏଇ ବିକାଶ ଓ ବିକାଶ-ପୀଠ, କର୍ମ ଓ ସତ୍ତା, ଗୋଟିଏ ବସ୍ତୁକୁ ଦୁଇଆଡ଼ୁ ଦେଖିବା ଛଡ଼ା ଆଉ କିଛି ନୁହେ । ସତ୍ତାର ବିକାଶ କର୍ମ ଓ କର୍ମର ସ୍ଥିତି ସତ୍ତା । ସତ୍ତା ଆଡ଼ୁ ଚିନ୍ତାକଲେ କର୍ମଟି ଆରପାଖେ ଅଛି । କର୍ମ ଆଡ଼ୁ ଚିନ୍ତା କଲେ ସତ୍ତା ବିନା ତାର

କିଛି ଅର୍ଥ ନାହିଁ । କର୍ମ ଓ ସତ୍ତା ସେହିପରି ଏକ ତତ୍ତ୍ୱର ଦୁଇଟି ବିଭାବ । ଏହି ତତ୍ତ୍ୱଟି ଦୁଇଟିରୁ ଅତୀତ, ଅର୍ଥାତ୍, ଗୋଟିକରେ ଏହାର ଧାରଣା ପୂର୍ଣ୍ଣ ନୁହେ ।

ପୁରୁଷ ବା ମନୁଷ୍ୟର ବ୍ୟକ୍ତିତ୍ୱରେ ଏହି ଧାରଣା ସ୍ପଷ୍ଟ । ପୁରୁଷ କଣ ? ସମସ୍ତ କର୍ମ ଭିତରେ ଏହା ଏକ ଚେତନାର ସ୍ଥିତି । ଏହି ସଚ୍ଚିଦାନନ୍ଦ କର୍ମରୁ ଅଲଗା ନୁହେ କି କର୍ମରେ ଲଗା ନୁହେ । କର୍ମରେ ଏହାର ବିଭାଗ ପରିବର୍ତ୍ତନ ବା କ୍ଷୟ ନାହିଁ । ମାତ୍ର ଏହାକୁ କର୍ମ ଆଡ଼ୁ ଦେଖିଲେ, ଯେପରି କି ଏହା ବିଭାଗ, ପରିଣାମ ଓ କ୍ଷୟ ଛଡ଼ା ଆଉ କିଛି ନୁହେ । ଜଗତର ସତ୍ତା ଓ କର୍ମ ମଧ୍ୟ ସେହିପରି । ସମସ୍ତ ବିଶ୍ୱ ସତ୍ତା ଓ କର୍ମରେ ସେହି ପୁରୁଷର ହିଁ ଧାରଣା । କର୍ମ କ୍ଷୟର ନିତ୍ୟ ପରଂପରା । ଏହି କ୍ଷୟର ପୁରୁଷ ବା କ୍ଷର ପୁରୁଷ ଏହାର ଅନ୍ୟ ପଟର ଧାରଣାଟି ଅକ୍ଷର ବା ଅକ୍ଷୟ । ଏହା ଅକ୍ଷର ପୁରୁଷ । ଦୁଇଟିରୁ ଅତୀତ ବା ଦୁଇଟିର ସମୂହ ଧାରଣା ହେଉଛି କ୍ଷର ଓ ଅକ୍ଷର, ପୁଣି କ୍ଷର ନୁହେଁ, କି ଅକ୍ଷର ନୁହେଁ—ଏହା 'ପୁରୁଷୋତ୍ତମ' । (୧୫. ୧୬. ୧୭)

## କ୍ଷେତ୍ର, କ୍ଷେତ୍ରଜ୍ଞ—

ଏହି କ୍ଷର ଓ ଅକ୍ଷରକୁ ମାନବ ବ୍ୟକ୍ତିତ୍ୱରେ ଲକ୍ଷ୍ୟ କରି କ୍ଷେତ୍ର ଓ କ୍ଷେତ୍ରଜ୍ଞ କୁହାଯାଇଛି । ଭଗବାନ୍ ପୁରୁଷୋତ୍ତମର ଅବତାର । ସେ ସେଇଥିପାଇଁ କହୁଛନ୍ତି—

"କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ
ଯତ୍ତଜ୍ଜ୍ଞାନଂ ମତଂ ମମ" । ( ୧୩.୨ )

ଅର୍ଥାତ୍, କ୍ଷେତ୍ର ଓ କ୍ଷେତ୍ରଜ୍ଞର ଯେ ସମୂହ-ଜ୍ଞାନ, ସେହି ହେଉଛି, ମୋ ସଂଧରେ ଯଥାର୍ଥ ଜ୍ଞାନ । ଶରୀରକୁ ଏଠାରେ ଶସ୍ୟ ଉତ୍ପନ୍ନକାରୀ କ୍ଷେତ୍ର ଓ ଆତ୍ମାକୁ ସେହି କ୍ଷେତ୍ରର ଅଧିକାରୀ ବୋଲି ଉପମାରେ କୁହାଯାଇଛି । କ୍ଷେତରେ ହଳ ହୋଇ, ମଞ୍ଜି ପଡ଼ି, ଗଛ ଓ ଫଳ ହୁଏ । କ୍ଷେତ୍ରପତି ତାହା ନିଜର କରେ ବା ଭୋଗ କରେ । ସେହିପରି ବିଷୟ ଇନ୍ଦ୍ରିୟରେ ଲାଗି ଜ୍ଞାନରୂପେ ମନରେ କର୍ମ-ବୀଜ ହୁଏ । ସେଠାରୁ କର୍ମ ହୋଇ ବାହାରି, ଫଳ ଧରେ । ଆତ୍ମା ତାହାସବୁ ନିଜର କରେ ବା ଦେହକୁ ମୋର ବୋଲି ଭୋଗ କରେ । ଏହା ହିଁ ସେ ଉପମାର ତାତ୍ପର୍ଯ୍ୟ ।

## ଜ୍ଞାନ-ବିଜ୍ଞାନ—

ପୁଣି ବିଶ୍ୱର ବିକାଶ ହିସାବରେ ଏହାକୁ ଜ୍ଞାନ ବିଜ୍ଞାନ କୁହାଯାଇଛି (୭ମ ଓ ଅଷ୍ଟମାଧ୍ୟାୟ) । ବିଜ୍ଞାନ ହେଉଛି ଅନୁଭବ ବା କର୍ମର ସମୂହଧାରଣା । ଜ୍ଞାନ ହେଉଛି ସେହି କର୍ମର ଅକ୍ଷୟ ପୀଠ । ଏହାକୁ ହିଁ ଅକ୍ଷର ବ୍ରହ୍ମ

କୁହାଯାଇଛି । ପୁଣି ସମସ୍ତ ବିଶ୍ୱର 'ଜ୍ଞାନ-ବିଜ୍ଞାନସମେତ ସମ୍ପୂର୍ଣ୍ଣ-ଜ୍ଞାନକୁ ବର୍ଣ୍ଣନା କରି କୁହାଯାଇଛି—

"ମତେ ( ପୁରୁଷୋତ୍ତମଙ୍କୁ ) ବ୍ରହ୍ମ, କର୍ମର ଅଧ୍ୟାତ୍ମ ବ୍ୟକ୍ତିର ଦେବତା, ଯଜ୍ଞର ଭୋକ୍ତା, ପୁଣି ଦେହର ଦେହୀ—ସବୁ ବୋଲି ସର୍ବତୋଭାବରେ ଜାଣିବାକୁ ହୁଏ ।" ( ୭. ୨୯, ୩୦ )

ପୁଣି ଅର୍ଜୁନ ବୁଝିବାକୁ ଲୋଡ଼ିବାରୁ କହୁଛନ୍ତି—"ଅକ୍ଷର-ତତ୍ତ୍ୱ ହେଉଛି ବ୍ରହ୍ମ; ସ୍ୱଭାବ ବା କର୍ମର ବେଦନା-ପୀଠ ବା ସ୍ୱଭାବ ଅଥବା ପ୍ରକାଶର କାରଣ-ଭୂତ ପ୍ରତିଷ୍ଠା ହେଉଛି, ଅଧ୍ୟାତ୍ମ ଭୂତ ଓ ଭାବର ପ୍ରକାଶ କରୁଥିବା ବିସ୍ତାର ବା ସୃଷ୍ଟି ହେଉଛି, କର୍ମ; ଭୂତ ମାନେ କ୍ଷର, ବ୍ୟକ୍ତିତତ୍ତ୍ୱ ପୁରୁଷ, ଯଜ୍ଞ-ତତ୍ତ୍ୱ ଓ ଦେହର ଦେହୀ 'ମୁଁ' ।" (୮.୩,୪)

## ଅଧ୍ୟାତ୍ମ—

ଏଠାରେ ସଚ୍ଚିଦାନନ୍ଦ ଭାବରେ ଭକ୍ତିର ଉପଯୋଗିତା । ଏଇ ଭକ୍ତି ସମ୍ବନ୍ଧରେ ପୁଣି ଅଧ୍ୟାତ୍ମ ଓ ଅଧିଦେବ—ଏଇ ଦୁଇଟି କଥା ବିଶେଷରେ ପ୍ରଣିଧାନ-ଯୋଗ୍ୟ । 'ଅଧ୍ୟାତ୍ମ'କୁ ସ୍ୱଭାବ କୁହାଯାଇଛି । ଏହା ବ୍ୟକ୍ତି ବା କର୍ମର ଅଧ୍ୟାତ୍ମ ବା ବେଦନାର ପୀଠ । ସଚ୍ଚିଦାନନ୍ଦର ଧାରଣାର ଅନ୍ୟ ଦୃଷ୍ଟିରେ ଯେଉଁ ପ୍ରକାଶ-ବିଭାବଟିର କଥା କୁହାଗଲା, ସେଥିରେ ବୁଝିବାର ଅଛି, ଏଇ ସମସ୍ତ ପ୍ରକାଶ ବା କର୍ମର ମୂଳଟି ସଚ୍ଚିଦାନନ୍ଦର ଗୋଟିଏ ସ୍ୱଭାବ । ସେଥିରୁ ହିଁ କର୍ମର ବିକାଶ । ଏହାକୁ ସ୍ୱଭାବ କୁହାଯାଇଛି । ଏହା ହିଁ ପ୍ରକୃତି, ମାୟା ବା କର୍ମର ବୀଜ । 'ଜ୍ଞାନ' ବା ଅନୁଭୂତି ପ୍ରକାଶର ଏହା ହିଁ ମୂଳ । ବ୍ରହ୍ମ ବା ପୁରୁଷୋତ୍ତମଙ୍କର ଏଇ ପ୍ରକୃତି ଚେତନ ଅଚେତନ ସବୁ ପ୍ରକାଶର ମୂଳ । ସେଇ ଦୁଇଟି ବିଭାବକୁ 'ପରା' ଓ 'ଅପରା' ପ୍ରକୃତି କୁହାଯାଇଛି । ପରା ପ୍ରକୃତିର ବିକାଶ ବା ପ୍ରକୃତିର ପର (ଶ୍ରେଷ୍ଠ) ବିକାଶ, ଜୀବ; ପୁଣି ଅପରା ପ୍ରକୃତିର ବିକାଶ ବା ପ୍ରକୃତିର ଅପର ( ଅପକୃଷ୍ଟ ) ବିକାଶ ଜଡ଼ ( ୭. ୪, ୫; ୧୫. ୭ ) । ଏଠାରେ ମଧ୍ୟ ବୁଝିବାକୁ ହେବ, ଜୀବ ଜଡ଼ ଦୁଇଟି ବସ୍ତୁ ନୁହେ । ଏକ ପ୍ରକୃତିକୁ ଦୁଇ ପ୍ରକାର ବୁଝିବାର ପ୍ରଣାଳୀ ମାତ୍ର । ଜୀବ ଜଡ଼ରେ ହିଁ ପ୍ରକାଶ ପାଏ; ପୁଣି ଜଡ଼ର ମଧ୍ୟ ଜୀବ ବିନା ପ୍ରକାଶ ନାହିଁ । ଜୀବର ଅନୁଭୂତିରେ ଜଡ଼ ଓ ଜଡ଼ର ସମ୍ପର୍କରେ ଜୀବ ପ୍ରକାଶ ପାଏ । ଅନୁଭୂତି ବିନା 'ମୁଁ' ନାହିଁ, କିମ୍ବା ମୁଁ ନ ଥିଲେ ଅନୁଭୂତି ନାହିଁ । ଏଇ କଥାକୁ ବୁଝି ରଖିବାକୁ ହେବ ।

## ଅଧ୍ୟାତ୍ମରୁ ବିକାଶ—

କ୍ରମ-ପରିଣାମର ମୂଳ ଧରି ବିକାଶ ବୁଝାଇଲା ବେଳେ କହନ୍ତି, ଅବ୍ୟକ୍ତର ଅବ୍ୟକ୍ତ ହେଉଛି, ଅକ୍ଷର ବ୍ରହ୍ମ (୮.୨୦) । ଏହାର ପ୍ରକୃତି ବା ମାୟା ମଧ୍ୟ

ଦେଖ୍ୱ । ଅନୁଭୂତ୍ତିରେ ଏଇ ମାୟାରେ ହିଁ ଦେବ-ଭାବ ହୁଏ (୭.୧୪) । ଏଇ ମାୟାରୁ ସବୁ ହେଉଛି ବୋଲି ଧାରଣା ହୁଏ । ଏଇ ମାୟା ହିଁ ବିଶ୍ୱ-ଦେବତା ବୋଲି ବୁଝାପଡ଼େ । ଏଇ ମାୟା ବା କର୍ମବୀଜ ପର୍ଯ୍ୟନ୍ତ ଯାଇ ଲୋକେ ରହିଯାନ୍ତି । ଏଇ ମାୟାରେ ହିଁ ତାଙ୍କ ଜ୍ଞାନ ଅପହୃତ ହୁଏ ବୋଲି ଭଗବାନ୍ ସ୍ପଷ୍ଟ କହିଛନ୍ତି (୭.୧୫) । ଏଇ ମାୟାରୁ ପର ଅବ୍ୟୟକୁ ଧରି ସବୁ ବୁଝିବାକୁ ହେବ (୭.୧୩) । ଏଇ ମାୟାରୁ ପରକୁ ଧରି ପୁରୁଷୋତ୍ତମଙ୍କୁ ବୁଝିବାର ସଙ୍କେତ ହେଉଛି ଜୀବ ବା ମାନବର ବ୍ୟକ୍ତିତ୍ୱ, ଅର୍ଥାତ୍ 'ମୁଁ' ଭାବ । ଏହା ହିଁ 'ମୋର ଅଂଶ' ବୋଲି ସ୍ପଷ୍ଟ ଭଗବାନ୍ କହିଛନ୍ତି (୧୫.୭) । ସେଥିପାଇଁ ଏଇ ଜୀବରେ ପରା ପ୍ରକୃତି ପ୍ରକାଶ ପାଏ ବୋଲି କୁହାଯାଇଛି (୭.୫) । ମାତ୍ର ଏହା ମଧ୍ୟ ସେଇ ପ୍ରକାଶ ବୀଜ, ପ୍ରକୃତି ବା ମାୟାର ଅନ୍ତର୍ଗତ; କିନ୍ତୁ ନିର୍ମଳତ୍ୱ ହେତୁରୁ ଯଥାର୍ଥ ବ୍ରହ୍ମର ସଙ୍କେତ । ଏଇ 'ମୁଁ' ବା ଜୀବାତ୍ମାରୁ କିପରି ବିଶ୍ୱ-ତତ୍ତ୍ୱର ଧାରଣା ହୁଏ, ତା ପୂର୍ବେ କୁହାଯାଇଛି ।

## ବିକାଶର କ୍ରମ—

ସେ ଯା ହେଉ, ବିକାଶର ପରିଣାମରେ ଏଇ କର୍ମବୀଜ, ଅଧ୍ୟାତ୍ମ ବା ଅବ୍ୟକ୍ତ ପ୍ରକୃତି ଅଥବା 'ମହଦ୍ ବ୍ରହ୍ମ' (୧୪.୩) ହିଁ ବୁଦ୍ଧି ବା କର୍ମ-ସ୍ପନ୍ଦନାର ପୀଠ । ଏଥିରୁ ଅହଙ୍କାର ବା ବ୍ୟକ୍ତିଭାବ ଜାଗ୍ରତ ହୁଏ । ଏଇ ଅହଙ୍କାରରେ ଚେତନ ଜଡ଼ର ପ୍ରଭେଦ ନାହିଁ । ପରା ଅପରା ଦୁଇ ପ୍ରକୃତି ଏଠାରେ ସମାନ । ତାହା ପରେ ଚେତନ ବିଭାଗ ଜଡ଼ରୁ ଭିନ୍ନ ହୁଏ । ଚେତନର ବିକାଶରେ ମନ, ପଞ୍ଚ ଜ୍ଞାନେନ୍ଦ୍ରିୟ (ଦର୍ଶନ, ଶ୍ରବଣ, ସ୍ୱାଦନ, ଘ୍ରାଣ, ସ୍ପର୍ଶ) ପ୍ରକାଶ ପାଏ ଓ ଜଡ଼ ବିଭାଗରୁ ପଞ୍ଚତନ୍ମାତ୍ର ବା ସୂକ୍ଷ୍ମଭୂତ, ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚସ୍ଥୂଳ ମହାଭୂତ ପ୍ରକାଶ ପାଏ । ଗୀତା ଓ କୌଣସି କୌଣସି ବେଦାନ୍ତ ମତରେ ପ୍ରକୃତି ଆଠ ପ୍ରକାର ହୁଏ ବୋଲି କହନ୍ତି । ଏଇ ଆଠ ପ୍ରକାର ହେଉଛି— ଅହଙ୍କାର, ବୁଦ୍ଧି, ମନ ଓ ପଞ୍ଚଭୂତର ତନ୍ମାତ୍ର ବା ସୂକ୍ଷ୍ମ ରୂପ (୭. ୪) । ଆଉ ସବୁ ସ୍ଥୂଳ ବୋଲି ଗ୍ରହଣ କରନ୍ତି । କେବଳ ଏହା ଛଡ଼ା ଚେତନ ଜୀବର ବିକାଶର ବିକାଶଟି ନିର୍ଦ୍ଦେଶ କରନ୍ତି । ଏହା ପରା ପ୍ରକୃତି । ଏଇ ପରା ଓ ଅପରା ପ୍ରକୃତିର ସଙ୍ଘର୍ଷରେ ବିଶ୍ୱ ବିକାଶ ହୁଏ । ସ୍ଥୂଳ କଥା, ବିକାଶରେ ପରା ଓ ଅପରା ପ୍ରକୃତି, ଦୁଇଟି ବିଭାବ, ବା ଏକ ବସ୍ତୁକୁ ଦୁଇଆଡ଼ୁ ଦେଖିବା କଥା ମାତ୍ର । (୭ ୪, ୬ ଟୀକା ଦେଖ) ।

## ଭକ୍ତି ଓ 'ଯୋଗ'—

ଏ ଗଲା ଅଧ୍ୟାତ୍ମ । ଏହାକୁ ସ୍ୱଭାବ ବା ପ୍ରକାଶର ପ୍ରକୃତି କହନ୍ତି (୮.୩) । ଏଇ ସ୍ୱଭାବର ବିକାଶ ବ୍ୟକ୍ତ, ଏହା ବୁଝାଇ ଦିଆଯାଇଛି । ତେଣୁ ଏଇ ବ୍ୟକ୍ତରେ ପୁରୁଷ-ଭାବ । ମନୁଷ୍ୟର ପୁରୁଷ-ଭାବ ସ୍ପଷ୍ଟ । ଯେ ସବୁ କର୍ମର କର୍ତ୍ତା ବା ଚେତନ ଅଧିଷ୍ଠାନ ସେ ପୁରୁଷ । ନିଜର ଏଇ ଚେତନ ଅଧିଷ୍ଠାନ ସଙ୍କେତରୁ ବିଶ୍ୱକର୍ମର ବ୍ୟକ୍ତ

ବୁଝାଯାଏ । ତେଣୁ ଏଇ ବିଶ୍ୱକର୍ମର ବ୍ୟକ୍ତରେ ମଧ୍ୟ ପୁରୁଷ ଭାବ । ସେଇ ବୋଧର ଭୂମ୍ୟାବକାଶରେ ପୁଣି ବିଶ୍ୱକର୍ମ ମାତ୍ରରେ ଯଜ୍ଞ-ପୁରୁଷୋତ୍ତମ ବା ପରମେଶ୍ୱର । ସେଇ ଏକା ବିଶ୍ୱକର୍ମର କର୍ତ୍ତା, ଭୋକ୍ତା ଓ ଈଶ୍ୱର । ଏହା ହିଁ ଗୀତାର ଭକ୍ତିଧର୍ମ କର୍ମ ତଥା ଜ୍ଞାନ-ସଙ୍ଗେ ଏହା ଓତପ୍ରୋତଭାବରେ ଜଡ଼ିତ । ବିଶ୍ୱଧାରଣାରେ କର୍ମ, ଜ୍ଞାନ ଓ ଭକ୍ତି ତିନି ଦିଗରୁ ତିନି ପ୍ରକାର ଦୃଷ୍ଟି ଭେଦ ମାତ୍ର । ଏ ତିନିଙ୍କ ଭିତରେ କିଛି ଭେଦ ନାହିଁ । ତିନି ପ୍ରକାରରେ ବିଶ୍ୱ-ତତ୍ତ୍ୱର ଧାରଣା ଠିକ୍ ରଖିବା ହିଁ 'ଯୋଗ' । ଏକ ପ୍ରକାରରେ ପୂର୍ଣ୍ଣ ଧାରଣା ଆସିଗଲେ ପୁଣି ଆଉ ଦୁଇଟି ପ୍ରକାର । ସେଥିରେ ମନକୁ ଅଙ୍ଗୀଭୂତ ରହିବାର କଥା । ଜ୍ଞାନର ଧାରଣାରେ ବିଶ୍ୱଯଜ୍ଞରେ ଆତ୍ମସମର୍ପଣ ବା ଆତ୍ମୋତ୍ସର୍ଗ, ସେଇଥିରେ ବେଦନାର ପୀଠ ଦେଖି ତଦନୁସାରେ କର୍ମଶୃଙ୍ଖଳାର ପ୍ରବୃତ୍ତି, ପୁରୁଷୋତ୍ତମର ଭକ୍ତିରେ ତତ୍ପର ରହି ସେଇ ଈଶ୍ୱରଙ୍କ କାର୍ଯ୍ୟ କରିବା—ଏ ତିନିହେଁ ଏକା କଥା । ଏଥିରୁ ଗୋଟିଏ ଭାବ ଦୃଢ଼ ହେଲେ, ଅପର ଦୁଇଟି ଆପେ ଆପେ ହୋଇଯିବ ।

## ଭକ୍ତିତତ୍ତ୍ୱ ଓ କୃଷ୍ଣ—

ବୁଝିବାର ଅଛି, ଏଇ ଭକ୍ତି ବିଷୟଟି ଗୀତାରେ ଭଗବାନ୍ ବେଶି ସ୍ପଷ୍ଟ କରିଛନ୍ତି । କିପରି ତାହା ଦେଖାଯାଉ । ବେଦରେ ଭକ୍ତି ନ ଥିଲା, ନୁହେ । ମାତ୍ର ତାହାର ସଙ୍କେତ ଏପରି ବ୍ୟାପକ ନ ଥିଲା, କିମ୍ବା ସେଥିରେ ଅବତାରବାଦର କୌଣସି ସୂଚନା ଦେଖାଯାଏ ନାହିଁ । ଗୀତାର ଭକ୍ତିତତ୍ତ୍ୱରେ ଏଇ ଅବତାରବାଦ ଧରି ଭକ୍ତିର ସାଧନା ସମ୍ବନ୍ଧ ଦେଖାଯାଏ । ଏହା ହିଁ ଗୀତାତତ୍ତ୍ୱର ପୀଠ କହିଲେ ଚଳେ । ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ନିଜେ ପୁରୁଷୋତ୍ତମ; ସମ୍ବନ୍ଧ ସେ ସେଇ ଭାବରେ ଅର୍ଜୁନଙ୍କୁ ବୁଝାଇଛନ୍ତି । ଏଇ ଅବତାରବାଦର ତତ୍ତ୍ୱ ଏଥିପୂର୍ବେ ପ୍ରସଙ୍ଗାନ୍ତରରେ କୁହାଯାଇଛି । ପୁଣି ଗୀତାତତ୍ତ୍ୱ ସଂଗେ ବେଦର ତାତ୍ତ୍ୱିକ ସମ୍ବନ୍ଧର ସୂଚନା ଦିଆଯାଇଛି । କର୍ମାସକ୍ତି ଓ କର୍ମତ୍ୟାଗ ଏଇ ଦୁଇପ୍ରକାର ବେଦାର୍ଥରୁ ସ୍ୱତନ୍ତ୍ର ବେଦର ଯଥାର୍ଥ ଅର୍ଥ ଗୀତାରେ ଭଗବାନ ବୁଝାଇଛନ୍ତି । ଏବେ ଭକ୍ତି ବିଷୟରେ ଗୀତାର ବେଦ ସଂଗେ ସମ୍ପର୍କ ବୁଝାଯାଉ ।

## ବେଦବାଦର ଯଜ୍ଞରେ ଭକ୍ତି—

କୁହାଯାଇଛି, ବ୍ୟକ୍ତରେ ବିଶ୍ୱପ୍ରକାଶ ବୁଝିବାକୁ ହୁଏ । ବ୍ରହ୍ମପୁରୁଷର ଏଇ ପ୍ରକାଶ ଯଜ୍ଞକୁ ଉଠିବା ପୂର୍ବରୁ ବ୍ୟକ୍ତିର କର୍ମ ଓ ଯଜ୍ଞରେ ପ୍ରକାଶ ଯେ ଋଷିମାନଙ୍କ ପାଖେ ପ୍ରତିଭାତ ହୋଇଥିଲା, ଏହା ବୁଝିବାରେ ଅସୁବିଧା କିଛି ନାହିଁ । ବିଶ୍ୱର ବ୍ୟକ୍ତ-ଧର୍ମ ପଛରେ ପୁରୁଷର ଧାରଣା ବିଶ୍ୱଧାରଣାର ପ୍ରଥମ ସୋପାନ । ସେଇ ପୁରୁଷର ଧାରଣା ଆଗ ଫୁଟିଲା କାହିଁରେ ? ପତ୍ର, ଘାସ, ନଖ, ବାଳ ପରି କ୍ଷୁଦ୍ର ବ୍ୟକ୍ତିତ୍ୱରେ

ବା ଚନ୍ଦ୍ରା ଅନୁଭବ ପର ମାନସ ବ୍ୟକ୍ତରେ ନୁହେଁ । କନ୍ତୁ ବ୍ୟକ୍ତ ମଧ୍ୟରେ ଯେଉଁଠାରେ ଅଦ୍ଭୁତ ସୌନ୍ଦର୍ଯ୍ୟ ତେଜ ପ୍ରଭୃତ ଶ୍ରେଷ୍ଠ ମାନବକୁ ଅଭିଭୂତ କରେ, ସେଇଠାରେ ଏ ପୁରୁଷଭାବ ଆଗ ଫୁଟିବାର କଥା (୧୦.୪୧) । ତାହାଇ ହୋଇଥିଲା । ଅଗ୍ନି, ମରୁତ୍, ବରୁଣ (ଜଳ), ଦ୍ୟୌ (ଆକାଶ), ଭୂମି, ସୂର୍ଯ୍ୟ, ଉଷା, ବଜ୍ର, ଝଡ଼ ପ୍ରଭୃତରେ ବେଦରେ ଏଇ ପୁରୁଷଭାବ ଆଗେ ଫୁଟିବାର ଦେଖାଯାଏ । ଏଇମାନଙ୍କ କର୍ମର ଆଦାନ ପ୍ରଦାନ ମାନବର ଜୀବନକ୍ରିୟା ତଥା ସ୍ଥିତରେ ପ୍ରଭାବ ବିସ୍ତାର କରିବା ମଧ୍ୟ ଅନୁଭୂତ ହୋଇଥିଲ । ବଜ୍ରର ଦେବତା ବଜ୍ର ମାର ବର୍ଷାର ଧାରା ଫିଟାଇଦେଲେ ପୃଥିବୀରେ ଶସ୍ୟ ହୁଏ, ମାନବ ତା ଖାଇ ସୁଖରେ ରହେ । ସୂର୍ଯ୍ୟ କରଣ ଦଏ, ଅଗ୍ନି ତାପ ଦଏ, ଗୃହରେ ଦୁର୍ଗନ୍ଧ ଦୁର୍ଜୀବକୁ ରକ୍ଷା କରେ । ଏମାନେ ସମସ୍ତେ ମନୁଷ୍ୟର ମଙ୍ଗଳ ପାଇଁ ଯେପର କ କାର୍ଯ୍ୟ କରନ୍ତି; ପୁଣି ବେଳେ ବେଳେ ଠିକ୍ ସମୟରେ କାର୍ଯ୍ୟ କରନ୍ତ ନାହିଁ । ସେଥିରେ ଅବର୍ଷଣ, ଅନ୍ଧକାର ପ୍ରଭୃତ ହୋଇ ମନୁଷ୍ୟର ଅକାର୍ଯ୍ୟ ହୁଏ, ମନୁଷ୍ୟମାନଙ୍କ ଭିତରେ ନଜ ନଜ ମଧ୍ୟରେ ଯେପର କର୍ମର ଆଦାନ ପ୍ରଦାନରେ ପରସ୍ପରର ମଙ୍ଗଳ ହୁଏ, ନଜ ନଜ ମଧ୍ୟରେ ଯେପର ପାଇ ନ ଦେଲେ ଅସୁବିଧା ହୁଏ, କାରଣ, ଭବିଷ୍ୟତରେ ପୁଣି ମିଳିବାର ଅସୁବିଧା ହୁଏ, ସେଇପର ଧାରଣାରେ ବିଶ୍ୱରେ ପ୍ରକାଶିତ ଏଇ ବ୍ୟକ୍ତ ପୁରୁଷମାନଙ୍କୁ ଉପାସନା କର ବଳି ପ୍ରଭୃତ ଦେବାର ଆରମ୍ଭ ହେଲା । ଏହାର ନାମ ହେଲା ଯଜ୍ଞ ବା 'ଅଭୀଷ୍ଟ-ସିଦ୍ଧି ପାଇଁ ଦେବା ।' ଏଇ ଯଜ୍ଞ ହେଉଛ କର୍ମର ପ୍ରତି-ଦାନରେ କର୍ମ, କମ୍ବା କର୍ମପାଇଁ ବନ୍ଧନୀ । ଯାହାହେଉ, ଏହା ନଜର ଅନ୍ୟ ପାଇଁ କର୍ତ୍ତବ୍ୟ କରିବା । ନଜର ନୟୁତ କର୍ମ କରିବା, କୌଣସି ଉଦ୍ଦେଶ୍ୟରେ ନଜର ନୟୁତ ଯେଉଁ କର୍ମ ତା କରିବା । ସେ ଯାହା ହେଉ, ଏଇ ଯଜ୍ଞରେ ପୁରୁଷରେ ଭକ୍ତ ଶ୍ରେଷ୍ଠ । ଏଇ ଭକ୍ତରେ ଇନ୍ଦ୍ର ବରୁଣାଦ ପୁରୁଷର ଉପାସନା ହିଁ ପ୍ରଥମ ଯଜ୍ଞ ।

## ଉପନିଷଦର ଭକ୍ତ-ପ୍ରତୀକ—

ଏଇ ବ୍ୟକ୍ତର ଉପାସନାହିଁ ଭକ୍ତର ପ୍ରଥମ ସୋପାନ । କିନ୍ତୁ ଏ ଭକ୍ତ କେବଳ ସ୍ୱାର୍ଥବୁଦ୍ଧିରେ ହେଲା, ପୁଣି ପରେ ଏଥିରେ ଦୁରଧିଗମ୍ୟ କ୍ରିୟାକାଣ୍ଡମାନ ଫିଟିଲା । ଏହା ଏକ ଦଗରେ ଭ୍ରଷ୍ଟ ହେଲା । ପରେ ଅନ୍ୟ ଦଗରେ ମନୀଷୀମାନେ କ୍ରମେ ବ୍ୟକ୍ତର ତତ୍ତ୍ୱରୁ ବିଶ୍ୱତତ୍ତ୍ୱକୁ ଉଠି କହିଲେ, "ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" (ଋଗ୍‌ବେଦ ୧.୧୬୪. ୪୬) ଅର୍ଥାତ୍ ସେ ଏକ ସତ୍ ବା ନିତ୍ୟ ବସ୍ତୁକୁ ବେଦଜ୍ଞମାନେ ନାନା ଦେବତା ନାମରେ କହନ୍ତି । କିମ୍ବା

"ଏକଂ ସନ୍ତଂ ବହୁଧା କଳ୍ପୟନ୍ତି ।"
(ଋଗ୍‌ବେଦ, ୧୦.୧୧୪. ୫)

ଅର୍ଥାତ୍ ଏକ ସତ୍ ବା ନିତ୍ୟ ବସ୍ତୁକୁ ବହୁ ନାମରେ କହନ୍ତି । ପୁଣି ମଧ୍ୟ ଦେଖିବାକୁ ମିଳେ—

"ଦେବାନାଂ ପୂର୍ବ୍ୟେ ଯୁଗେ
ଅସତଃ ସତ୍ ଅଜାୟତ
ଦେବାନାଂ ଯୁଗେ ପ୍ରଥମେ
ଅସତ୍ ସତ୍ ଅଜାୟତ ।"
(ଋଗ୍ ବେଦ, ୧୦.୭୨.୨ ଓ ୩)

ଅର୍ଥାତ୍, ଦେବମାନଙ୍କ ପୂର୍ବ ଯୁଗରେ ଅସତ୍ ବା ଅବ୍ୟକ୍ତରୁ ସତ୍ ବା ବ୍ୟକ୍ତ ବାହାରିଥିଲା । ସେଇ ବ୍ୟକ୍ତର ବିକାଶରେ ସୂର୍ଯ୍ୟାଦି ଦେବପୁରୁଷମାନେ ହେଲେ । ଏହାଇ ଅଭିପ୍ରାୟ । ଏ ଚିନ୍ତାର ଆଘାତରେ କ୍ରମେ ଏଇ ବ୍ୟକ୍ତରୁ ବ୍ୟକ୍ତର ମୂଳ ବା ଅବ୍ୟକ୍ତ ବ୍ରହ୍ମକୁ ଭକ୍ତି ଉଠିଲା । କିଂତୁ ବ୍ୟକ୍ତର ଉପାସନାରେ ଭକ୍ତି ଯେପରି ସୁଗମ ଓ ସୁଲଭ, ଅବ୍ୟକ୍ତ-ଉପାସନାରେ ସେପରି ନୁହେ ( ୧୨.୫ ) । ଏଇ ଅବ୍ୟକ୍ତ-ଉପାସନା କେବଳ ଧ୍ୟାନମାତ୍ରରେ ପରିଣତ ହେଲା । ଏ ଧ୍ୟାନର ପୁଣି ସ୍ଥିତି ଠିକ୍ ରଖିବା ପାଇଁ ଶ୍ରଦ୍ଧା ବା ବିଶ୍ୱାସ ହିଁ ଏକମାତ୍ର ଅବଲଂବନ । ବ୍ୟକ୍ତକୁ ଦେଖି ଭକ୍ତି କରିଯାଇପାରେ । ସେଥିରେ ପୁଣି ଶ୍ରଦ୍ଧା ନ ହେଲେ ଭକ୍ତି ହୁଏ ନାହିଁ ସତ, ମାତ୍ର ଅବ୍ୟକ୍ତରେ ଶ୍ରଦ୍ଧା ଥିଲେ ମଧ୍ୟ ଭକ୍ତି ହେବା ସହଜ ନୁହେଁ । ଏଇ ଶ୍ରଦ୍ଧା ଶିଖାଇବାର ଗୋଟିଏ ଉଦାହରଣ ଛାନ୍ଦୋଗ୍ୟ ଉପନିଷଦରୁ ଦିଆଗଲା । ଦିନେ ଶ୍ୱେତକେତୁଙ୍କ ପିତା ଶ୍ୱେତକେତୁଙ୍କୁ କହିଲେ, 'ଗୋଟିଏ ବର ଫଳ ଆଣ, ତାକୁ ଭାଙ୍ଗି ଦେଖ, କଣ ଅଛି ?' ଶ୍ୱେତକେତୁ କହିଲେ, 'ଛୋଟ ଛୋଟ ମଞ୍ଜି ଗୁଡ଼ିଏ ଅଛି ।' ପିତା କହିଲେ, 'ସେଇ ମଞ୍ଜିରୁ ଗୋଟିଏ ଭାଙ୍ଗି ଦେଖ, କଣ ଅଛି ?' ଶ୍ୱେତକେତୁ କହିଲେ, 'କିଛି ନାହିଁ ।' ପିତା ସେଠାରୁ କହିଲେ, "ଏଇ 'କିଛି ନାହିଁ' ରୁ ବିରାଟ ବରଗଛ ହୋଇଛି ।" ଅତଏବ 'ଶ୍ରଦ୍ଧସ୍ୱ' (ବିଶ୍ୱାସ କର) । ଏଇ ଅବ୍ୟକ୍ତ ଓ ବ୍ୟକ୍ତମୂଳ ତତ୍ତ୍ୱର ଉପାସନା ଉପନିଷଦ୍‌ରେ ସ୍ପଷ୍ଟ ପ୍ରକାଶ ପାଇଥିଲା । ମାତ୍ର ଏ ଉପାସନା ପାଇଁ ଧ୍ୟାନର ସ୍ଥିତି ଠିକ୍ ରଖିବାରେ ପୁଣି ଏଇ ଅବ୍ୟକ୍ତ ବ୍ରହ୍ମ ବ୍ୟକ୍ତ ଆଡ଼କୁ ଢଳିଲା ଓ ମନ ଠିକ୍ ରଖିବାକୁ ଏଇ ଅବ୍ୟକ୍ତର 'ପ୍ରତୀକ'ମାନ କ୍ରମେ ବାହାରିଲା । ଓଁକାର ବ୍ରହ୍ମର ପ୍ରତୀକ, ଏହା ଜଣା-ଅଛି ( ୮.୧୧ ଓ ୧୩ ) । ତା ଛଡ଼ା ଉପନିଷଦ୍‌ରେ ପ୍ରାଣ, ମନ ପ୍ରଭୃତି ସଙ୍ଗେ ଏଇ ବ୍ରହ୍ମର ପ୍ରତୀକ ରୂପେ ଆଦିତ୍ୟ ( ସୂର୍ଯ୍ୟ ), ଅନ୍ନ ପ୍ରଭୃତିର ନିର୍ଦ୍ଦେଶ ମଧ୍ୟ ସ୍ପଷ୍ଟ ଦେଖା-ଯାଏ । (ତୈତ୍ତିରୀୟ ୩.୨-୬; ଛାନ୍ଦୋଗ୍ୟ ୭ ) ।

## ସେଥିରୁ ଯୋଗସାଧନ—

ଉପନିଷଦର ଏଇ ବ୍ୟକ୍ତ ପ୍ରତୀକ ବା ବ୍ୟକ୍ତରେ ବ୍ରହ୍ମର ସଙ୍କେତ ଧରି ଭକ୍ତି ଦୃଢ଼ କରିବାର ସୁବିଧା ହେଲା ନାହିଁ । ମନ ଏପରି ସ୍ଥିର ହେବା ସହଜ ନୁହେ ।

ଏଇ ଧ୍ୟାନ ଠିକ୍ ରଖିବାରେ ଲୋକେ କର୍ମ ତ୍ୟାଗ କରି ନିର୍ଜନ ସ୍ଥାନରେ ବ୍ରତୋପବାସାଦିରେ ତପସ୍ୟା କରି ସର୍ବଦା ମନକୁ ବିଶ୍ୱାସ (ଶ୍ରଦ୍ଧା) ରେ ଠିକ୍ ରଖିବା ପାଇଁ ଯୋଗ ବା ଚିତ୍ତବୃତ୍ତି-ନିରୋଧ କରି ନିରତ ଧ୍ୟାନପ୍ରବାହରେ ମାତିଲେ । ସେଥିରୁ ଏକ ଯୋଗସାଧନ ବିଧି ବାହାରି ପଡ଼ିଲା । ପରେ ପତଞ୍ଜଳି ସେଇ ଯୋଗକୁ ସୂତ୍ରରେ ପ୍ରକାଶ କରିଥିଲେ ।

## ବୈଦିକ ପୁରୁଷଯଜ୍ଞର ଭକ୍ତିରେ ବିକାଶ—

ଭକ୍ତି ହେଉଚି, "ଈଶ୍ୱରେ ପରାନୁରକ୍ତି ।" ଏ ଭକ୍ତି ପାଇଁ ଏତେ ପ୍ରତୀକ ଖୋଜିବା ଦରକାର କଣ ? ସେଇ ବେଦରେ ମଧ୍ୟ ପୁରୁଷରୂପୀ ପରମେଶ୍ୱର, ବିରାଟ ପୁରୁଷ ବା ପୁରୁଷୋତ୍ତମଙ୍କର ବିଶ୍ୱପ୍ରକାଶରୂପ । ମହାଯଜ୍ଞ କଥା କୁହାଯାଇଚି (ପୁରୁଷ ସୂକ୍ତ—ଋଗ୍‌ବେଦ ୧୦, ୧୨୯) । ସେଥିରେ ପୁଣି ପ୍ରତ୍ୟେକ ବ୍ୟକ୍ତିରେ ପୁରୁଷର ବିକାଶ । ଏଇ ବିଶ୍ୱବିକାଶରେ ପୁରୁଷର ପାଦେ ଓ ତିନି ପାଦ ଏ ବିକାଶରୁ ଅତୀତ ହେଲେହେଁ, ବ୍ୟକ୍ତିରୁ ସମଷ୍ଟିର ଧାରଣା । ପୁଣି ଏଇ ସମଷ୍ଟି ବା ବ୍ରହ୍ମ-ବ୍ୟକ୍ତିରେ ବାର୍ଣ୍ଣି ହୋଇ ମଧ୍ୟ ନାଇଁ । ଏହା ସବୁ ବ୍ୟକ୍ତିରେ ପୂର୍ଣ୍ଣ । ମୋର ସବୁ କର୍ମରେ ଯେପରି 'ମୁଁ', ଏଇ ବିଶ୍ୱର ସବୁ ବ୍ୟକ୍ତିରେ ସେଇପରି ପରମେଶ୍ୱର ପୂର୍ଣ୍ଣ—ଏ କଥା ବୁଝାଇ ଦିଆ ହୋଇଚି । ଅତଏବ ମନୁଷ୍ୟର ମନ ଲାଗିବା ଭଳି ଯେ କୌଣସି ବ୍ୟକ୍ତିରେ ଈଶ୍ୱରାନୁରକ୍ତି ବା ଭକ୍ତି କରାଯାଇପାରେ । ଏପରି କି, କାଠ, ପଥର, ଯେ କୌଣସି ବସ୍ତୁ (ବ୍ୟକ୍ତି) ରେ ଭକ୍ତି କରି ସେଇ ସୂତ୍ରରେ ଈଶ୍ୱର ଭକ୍ତି ଓ ଧାରଣା ପ୍ରତି ଆଭିମୁଖ୍ୟ ଠିକ୍ କରାଯାଇପାରେ । ସେଥିପାଇଁ ପରବର୍ତ୍ତୀ ଭାରତ-ସାହିତ୍ୟ—ଯୋଗବାଶିଷ୍ଠରେ ସ୍ପଷ୍ଟ ଉଲ୍ଲେଖ ଅଛି—

"ଅକ୍ଷରାବଗମଲବ୍ଧୟେ ଯଥା
ସ୍ଥୂଳ-ବର୍ତ୍ତୁଳ-ଦୃଷତ୍ ପରିଗ୍ରହଃ
ଶୁଦ୍ଧ-ବୁଦ୍ଧ-ପରିଲବ୍ଧୟେ ତଥା
ଦାରୁ-ମୃଣ୍ମୟ-ଶିଳାମୟାର୍ଚ୍ଚନ"

ଅର୍ଥାତ୍, ଅକ୍ଷର ପରିଚୟ ଲାଭ କରିବା ପାଇଁ ଯେପରି ସ୍ଥୂଳ ବର୍ତ୍ତୁଳ ପଥର (ଗୋଡ଼ି, ମଞ୍ଜି ପ୍ରଭୃତି) ବ୍ୟବହାର କରାଯାଏ, ସେଇପରି ଶୁଦ୍ଧ ବୁଦ୍ଧ ପରଂବ୍ରହ୍ମର ଜ୍ଞାନ ଲାଭ କରିବାରେ କାଠ, ମାଟି ଓ ପଥରର ଅର୍ଚ୍ଚନା ସ୍ୱୀକାର କରିବାକୁ ହୁଏ ।

## ସେଥିରୁ ବ୍ୟକ୍ତିଭକ୍ତି – ଗୀତାର ବିଭୂତି ଯୋଗ—

ସେ ଯା ହେଉ, ଗୀତାର ସମସ୍ତ ଦଶମ ଅଧ୍ୟାୟରେ ଭଗବାନ୍, ପୁରୁଷୋତ୍ତମଙ୍କର ଯେଉଁ ବିଭୂତିମୟ ବ୍ୟକ୍ତି ବିକାଶ କଥା କହିଚନ୍ତି, ସେଥିରେ ଆଉ ନ ବୁଝିବାର

କିଛି ନାହିଁ । କେବଳ ମନୁଷ୍ୟର ମନକୁ ଧରି ରଖିବାରେ ଏଇପରି ବିଭୂତି, ଶୋଭା, ତେଜ ଓ ମନୀଷାସମ୍ପନ୍ନ ବ୍ୟକ୍ତିର ଉଦାହରଣ ସେଥିରେ ଦିଆଯାଇଛି ମାତ୍ର । ଭଗବାନ୍ ଅର୍ଜୁନଙ୍କର ବିଭୂତି ଦେଖିବାର ପ୍ରାର୍ଥନାରେ ଉତ୍ତର ଦେଇ ମୂଳରୁ କହିଛନ୍ତି, "ମୁଁ ତୋତେ ଦିବ୍ୟ ଅର୍ଥାତ୍ ମୋର ବିକାଶରେ ଦେଦୀପ୍ୟମାନ, କେତେକ ବ୍ୟକ୍ତି ଠିକେ ଠିକେ ଦେଖାଇ ଦେଇ କହିବି ମାତ୍ର । ସେଇଗୁଡ଼ିକ ପ୍ରଧାନ । ତା ଛଡ଼ା ସବୁ କହିବା ସମ୍ଭବ ନୁହେଁ । ମୋ ବିଭୂତିର ଶେଷ ନାହିଁ ।" (୧୦.୧୯) । ଶେଷକୁ ପୁଣି କହିଛନ୍ତି—"ଚରାଚର ସମସ୍ତ ଭୂତ ବା ବ୍ୟକ୍ତିରେ ଏପରି କିଛି ନାହିଁ, ଯାହା ମୋ ବିନା ଅଛି । (୧୦.୩୯) । ମୋର ଦିବ୍ୟ ବିଭୂତିର ଶେଷ ନାହିଁ । ଦେଖାଇ ଦେବା ପାଇଁ ଦୃଷ୍ଟାନ୍ତରେ ମାତ୍ର ଏଇ କେତୋଟା କହିଲି । ତା ନ:ହେଲେ ମୋର ବିଭୂତି ବିସ୍ତର (୧୦. ୪୦) । ଯେଉଁଠାରେ ବିଭବ, ଯେଉଁଠାରେ ଶୋଭା, ଯେଉଁଠାରେ ପ୍ରଭାବ ସେସବୁ ମୋର ଅଂଶରେ ବ୍ୟକ୍ତ (ଅଂଶ ଏଠାରେ ଭଗବତ୍ତାର ଅଂଶ ନୁହେଁ । ମୋର ଅଂଶ ବୋଇଲେ ମୋର ପ୍ରଭାବ ବା ଶକ୍ତି) । (୧୦.୪୧) । କିଂବା ଏତେ କଥା ତତେ କହିବା ଦରକାର ନାହିଁ, ତୁ ଜାଣ୍, ସମସ୍ତ ଜଗତ୍ ବ୍ୟାପିକରି ମୁଁ ଅଛି । ଏହା ଛଡ଼ା ଏଥିରୁ ଅତୀତ ହୋଇ ମଧ୍ୟ ମୁଁ ଅଛି (୧୦. ୪୨) ।",

## ବ୍ୟକ୍ତିରେ ପୁରୁଷଧାରଣା—

ଗୀତାରେ ଏଇ ବିଭୂତି ବର୍ଣ୍ଣନ ପ୍ରକାଶ-ତତ୍ତ୍ୱର ମହାମନ୍ତ୍ର । ଏଥିରେ ଚେତନ ଓ ଜଡ଼ ବ୍ୟକ୍ତିର ଭେଦ ନାହିଁ । ଭକ୍ତ ନିମନ୍ତେ ଯେ କୌଣସି ବ୍ୟକ୍ତିର ଉପାସନା କଲେ ମଧ୍ୟ ପୁରୁଷୋତ୍ତମ ଧାରଣାର ଅପଲାପ ନାହିଁ । ଏଇ ବ୍ୟକ୍ତି ଭିତରେ ପୁରୁଷୋତ୍ତମ ଦେଖିବା ସୁଲଭ । ତେଣୁ ବ୍ୟକ୍ତ ବା ବ୍ୟକ୍ତିର ଭକ୍ତି ହିଁ ଯଥାର୍ଥ ଭକ୍ତି । ଏଇ ବ୍ୟକ୍ତିରେ ପୁରୁଷଧାରଣା ସ୍ୱାଭାବିକ । ପୁଣି ସେଥିପାଇଁ ପରମାତ୍ମା 'ପୁରୁଷୋତ୍ତମ' ।

ବ୍ୟକ୍ତିରେ ପୁରୁଷଧାରଣାରୁ ଭକ୍ତି ଓ ଉପାସନାର ଆରମ୍ଭ । ସେଇଥିରୁ ବ୍ରହ୍ମର ଧାରଣା, ପୁଣି ବ୍ରହ୍ମ ସେଇଥିରେ ବିରାଟ ପୁରୁଷ । ସେଇ ବ୍ୟକ୍ତିରେ ପୁରୁଷ-ଧାରଣା ଓ ଭକ୍ତି ହିଁ ଈଶ୍ୱରପ୍ରାପ୍ତିର ଯଥାର୍ଥ ସୁଗମ ପନ୍ଥା । ଜଗତର ମନୀଷା ସେଇ ବ୍ୟକ୍ତିରୁ ବ୍ରହ୍ମକୁ ଯାଇଛି ଓ ସେଇ ବାଟେ ଫିରିବାର ଘଣ୍ଟା ପଡ଼ି ରହିଛି । ତା ନ କରି ଘଟିତ ଉପଲବ୍ଧିର ଫଳ ଧରି ହଠାତ୍ ଖାଇବାକୁ ଯାଇ, ହଠାତ୍ ନିର୍ଗୁଣ ଅବ୍ୟକ୍ତ ପରଂବ୍ରହ୍ମଙ୍କୁ ଧରି ଧ୍ୟାନ କରି ବସିଲେ—

"ଅବ୍ୟକ୍ତା ହି ଗତିର୍ଦୁଃଖଂ
ଦେହବଦ୍ଭିରବାପ୍ୟତେ ।" (୧୨.୫)

ଯେ ଦେହବନ୍ତ, ସେ ଦେହରେ ବା ବ୍ୟକ୍ତରେ ଯେତେବ ପରମେଶ୍ୱରଙ୍କୁ ନ ଖୋଜିବ, ତେବେ ପାଇବା କଷ୍ଟ ।

ଯେ କୌଣସି ପ୍ରକାରେ ବ୍ୟକ୍ତ-ଭକ୍ତ ପ୍ରତି ଆକୃଷ୍ଟ ହେଲେ ଈଶ୍ୱରଙ୍କ ଅଡ଼କୁ ଯିବାର ପନ୍ଥାରେ ଲୋକ ପଡ଼ିଯାଏ । ଭକ୍ତିରେ ଆତ୍ମୋତ୍ସର୍ଗହିଁ ମୂଳମନ୍ତ୍ର । ତା ନ ହେଲେ ଉପାସ୍ୟରେ ପରାନୁରକ୍ତି ହୁଏ ନାହିଁ । ଆତ୍ମୋତ୍ସର୍ଗ ହିଁ ଯଜ୍ଞ । ନିଷ୍କାମ-ଭାବରେ କର୍ତ୍ତବ୍ୟ ବୋଲି କର୍ମ କରିବାର ଏହା ହିଁ ସୁପନ୍ଥା । ଏଥିରେ ହିଁ ବିରାଟ ପୁରୁଷଙ୍କର ବିଶ୍ୱଯଜ୍ଞର ଧାରଣା ସୁଗମ । ପୁରୁଷୋତ୍ତମଙ୍କ ବିକାଶ ମଧ୍ୟରେ ମୁଁ ଏକ ବିକାଶ । ସେଇ ପୁରୁଷୋତ୍ତମ ବା ଉପାସ୍ୟ ପୁରୁଷ ମୋର ସମସ୍ତ କର୍ମର ଗ୍ରେଦନାର ସ୍ଥାନ ମୋର ବୋଲି—ମୋ କାମନା ପେନ ବା ମୁଁ ଫଳ ପାଇବ ବୋଲି—ମୋର କର୍ମ ନାହିଁ । ଆର୍ତ୍ତ ହୁଅ, ଜିଜ୍ଞାସୁ ହୁଅ, ଅର୍ଥୀ ହୁଅ, ବା ଜ୍ଞାନୀ ହୁଅ, ସମସ୍ତେ ଏ ଭକ୍ତି ଘରକୁ ଆସିଲେ ଠିକ୍ ବାଟ ଧରନ୍ତି । ଜ୍ଞାନୀ ସହଜରେ ପନ୍ଥା ଧରି ଚାଲିଯାଏ ସତ, ମାତ୍ର ଏ ସମସ୍ତେ ଉଦାର । ଏମାନେ ଭକ୍ତିରେ ଆତ୍ମସମର୍ପଣ କରିସାରି ଆଉ କାମନାଦ୍ୱର ବାଟକୁ ସହଜରେ ଫେରନ୍ତି ନାହିଁ ( ୭.୧୬-୧୮ ) ।

## ପୁରୁଷୋତ୍ତମ ଧାରଣା—

ଏଇ ଭକ୍ତିରେ ଜ୍ଞାନ କର୍ମ ସବୁ ମିଶି ଏକାବେଳକେ ଏକାକାର ହୋଇଯାଏ । ଭକ୍ତିରେ ପୁରୁଷୋତ୍ତମ ବା ଉପାସ୍ୟର ସବୁ, ମୋର କିଛି ନାହିଁ ବୋଲି ଈଶ୍ୱରାନୁରକ୍ତି ଆସିଲେ ବ୍ୟଷ୍ଟି ସମଷ୍ଟିର ଜଟିଳ ସମସ୍ୟା ଆଉ କର୍ମର ଗ୍ରେଦନା ବାଟରେ ଅଟକାଏ ନାହିଁ । 'ଈଶ୍ୱର' ଶବ୍ଦର ଅର୍ଥ 'ଗ୍ରେଦନାର ପୀଠ' । ଯେଉଁ ପୁରୁଷରେ ଭକ୍ତି ଦୃଢ଼ ହେବ, ସେଠାରେ ଗ୍ରେଦନାର ପୀଠ ଦୃଢ଼ ହେବ । ଆଉ ଦୁରାଚାର ବା ଦୁଷ୍କୃତ ରହିବ ନାହିଁ । ସେଥିରେ ଲୋକ ଶୀଘ୍ର ଧର୍ମାତ୍ମା ହେବ ଓ ଶାନ୍ତି ପାଇବ । ଏଇ ଶାନ୍ତି ହିଁ ମୁକ୍ତି (୯.୩୦-୩୩) । ତେବେ ଖାଲିରେ ଏ ଭକ୍ତି ହେବ ନାହିଁ । କପଟାଚାରରେ ଭକ୍ତି ଦେଖାଇବାରେ ଏ ବାଟ ସଫା ନୁହେଁ । ଭଗବାନ୍ ସର୍ବକର୍ତ୍ତା ନିୟନ୍ତା, ତାଙ୍କ ଛଡ଼ା ଗଛରୁ ପତ୍ରଟିଏ ମଧ୍ୟ ପଡ଼େ ନାହିଁ, ଯାହା ମୁଁ କରୁଛି ସବୁ ତାଙ୍କରି କର୍ମ, ସେଇ ଏକା ଗତି, ଭର୍ତ୍ତା, ପ୍ରଭୁ, ସାକ୍ଷୀ, ନିବାସ, ଶରଣ, ସୁହୃତ୍, ଜନ୍ମ, ମରଣ, ସ୍ଥିତି, ଏଇ ଭାବରେ ଭକ୍ତି କରିବାର କଥା । ଏଥିପାଇଁ ଯୁକ୍ତି କରି ବୁଝିବାକୁ ଗଲେ, ସେ ମାର୍ଗ ଅଲଗା । ସେ କଷ୍ଟ ମାର୍ଗ କଥା କୁହାଯାଇଛି । ଏଥିପାଇଁ ଶ୍ରଦ୍ଧାହିଁ ଏକମାତ୍ର ଉପାୟ । ଶ୍ରଦ୍ଧା ବିନା ଭକ୍ତି ଏକ କପଟାଚାର । ସବୁ .ପରମେଶ୍ୱର ଓ ପରମେଶ୍ୱର ବୋଲି ଏଇପରି ଭାବ ଆସିଲେ, ଆଉ ସୁଖ ବା ଦୁଃଖର ବିଚଳନ ସମ୍ଭବ ନୁହେଁ । ଦ୍ୱନ୍ଦ୍ୱରେ ସମତା ଅତି ସୁଗମ । ଭଗବାନ୍ ଦୁଃଖ ଦେଲେ ରାଗ କରିବ, ସୁଖ ଦେଲେ ଘଣ୍ଟା କରି ପୂଜା କରିବ—ଏ ଭକ୍ତିର ଲକ୍ଷଣ ନୁହେଁ । ସେଥିପାଇଁ ଭଗବାନ ୯ମ ଅଧ୍ୟାୟ ମୂଳରୁ ଅର୍ଜୁନଙ୍କୁ କହିଛନ୍ତି, ''ଏ ଅତି ଗୂଢ଼ କଥା ତତେ ମୁଁ କହୁଛି ।

କାହିଁକି ନା, ତୁ ଦୋଷ ବାଛୁ ତର୍କ କରୁ ନାହିଁ । ଏହା ମୁଁ ଜାଣେ । ଏ ଗୂଢ଼ଯାକରେ ଗୂଢ଼ । ମାତ୍ର ଶ୍ରେଷ୍ଠ ଜ୍ଞାନ ଏଇଠାରେ । ଏ ବଡ଼ ସୁଲଭ ପନ୍ଥା । ତତ୍ତ୍ୱ ଏଥିରେ ପ୍ରତ୍ୟକ୍ଷ ପର । ଏଥିରେ ଯଥାର୍ଥ ଧର୍ମ ବା ବିହିତ ଓ ନିଷ୍କୃତ କର୍ମପନ୍ଥା ସହଜରେ ଫିଟିଯାଏ । ମାତ୍ର ଶ୍ରଦ୍ଧା ବା ବିଶ୍ୱାସ ନ ଥିଲେ, ଲୋକ ଏହା ପାଏ ନାହିଁ ।" (୯. ୧-୩ ଓ ୯ମ ଅଧ୍ୟାୟ ଶେଷ ବ୍ୟାଖ୍ୟା ସୂଚନା ଦେଖ ।)

ଶ୍ରଦ୍ଧା ଏଥିରେ ମୂଳ । ଅତଏବ କାହିଁରେ ବିଶ୍ୱାସ କରିବାକୁ ହେବ, ତାହା କହିବାକୁ ଯାଇ ଭଗବାନ୍ ସଙ୍ଗେ ସଙ୍ଗେ କହୁଛନ୍ତି—"ମୋର ମୂର୍ତ୍ତି ସ୍ପଷ୍ଟ ନ ହେଲେହେଁ, ମୁଁ ଏ ଜଗତରେ ସର୍ବତ୍ର ବ୍ୟାପ୍ତ । ମୋଠାରେ ସମସ୍ତ ବ୍ୟକ୍ତମାନେ, ମାତ୍ର ମୁଁ ସେଥିରେ ନାହିଁ । ଫେର୍ ମୋଠାରେ ବି ଭୂତମାନେ (ବ୍ୟକ୍ତର ବ୍ୟକ୍ତସବୁ) ନାହାନ୍ତି । ମୁଁ ଭୂତମାନଙ୍କର ପାଳକ (ପ୍ରକାଶକ ଓ କର୍ମର ଅଧିକାରୀ); କିନ୍ତୁ ମୁଁ ଭୂତରେ ନାହିଁ । ମୁହିଁ କିନ୍ତୁ ଭୂତର ସୃଷ୍ଟିକର୍ତ୍ତା ।" (୯. ୪-୭) । ବ୍ୟକ୍ତ ବା ପ୍ରକାଶିତ ଭୂତମାନଙ୍କରେ ତତ୍ତ୍ୱ କିପରି ଅଛି ପୁଣି ନାହିଁ, ଏହା ପୂର୍ବେ ବୁଝାଇ ଦିଆଯାଇଛି । ଏଠାରେ ସେଇ ବିଶ୍ୱାସରେ ବ୍ୟକ୍ତରେ ଭକ୍ତି କରିବା ହିଁ ସେଇ ଧାରଣାର ସୁଲଭ ପନ୍ଥା ବୋଲି କୁହାଯାଉଛି ।

## ଅବତାର-ତତ୍ତ୍ୱ—

ଏଇ ବ୍ୟକ୍ତ ବା ବ୍ୟକ୍ତି ବ୍ୟକ୍ତିରୁ ଅବତାର-ବିଶ୍ୱାସକୁ ଆସିବାରେ ଆଉ କିଛି ଅସୁବିଧା ନାହିଁ । ସର୍ବତ୍ର ବ୍ୟକ୍ତିରେ ପରମେଶ୍ୱରର ପ୍ରକାଶ ସ୍ପଷ୍ଟ । ବିଶ୍ଳେଷଣରେ ଏହାହିଁ ବୁଝାଯାଇଥିଲା । ଏବେ ଭକ୍ତିର ବିକାଶ ପରମ୍ପରା ଆଲୋଚନା କରି ସେଇଆ ସ୍ଥିର ହେଲା । ଯେଉଁ ବ୍ୟକ୍ତିରେ ବିଭୂତି, ଶୋଭା ଓ ପ୍ରଭାବ ଯେତେ ବେଶି, ସେଠାରେ ପୁରୁଷଭାବ ସେତେ ସ୍ପଷ୍ଟ । ଏଇପରି ସବୁଠାରେ ଭଗବାନଙ୍କର ଅବତାର । ଅବତାର ଅର୍ଥ ତଳକୁ ଓହ୍ଲାଇବା । ମନୁଷ୍ୟ ଦେଶ କାଳରେ ଚିନ୍ତା କରେ । ଦେଶ କାଳ ଛଡ଼ା ସେ ଚିନ୍ତା ପ୍ରକାଶ କରିବ କିପରି ? ସେଥିପାଇଁ 'ଜୀବ ବ୍ରହ୍ମର ଅଂଶ' 'ପରମେଶ୍ୱରଙ୍କର ଏକାଂଶରେ ଜଗତ୍ ଅଛି' । ବିରାଟ ପୁରୁଷଙ୍କର ଏକପାଦ ଜଗତ୍ ଓ ତିନିପାଦ ଉପରେ ଅମୃତରେ ଅଛି, ଏଇଭଳି କହି ବୁଝାଇ ଦିଆଯାଏ । ମାତ୍ର ଏସବୁରେ ଅଂଶ, ପାଦ, ଉପର ତଳ କେବଳ ମାନବକୁ ବୁଝାଇବା ବା ମାନବ ବୁଝିବାର ଭାଷା ମାତ୍ର । ବାସ୍ତବରେ ଏଥିରେ ଅଂଶ, ପାଦ ବା ଉପର ତଳ ନାହିଁ । ବ୍ରହ୍ମ ବିଶ୍ୱରେ ଅଛି ଓ ବିଶ୍ୱରୁ ଅତୀତ । ଏଇ କଥାକୁ ଆମେ ତଳେ ବ୍ୟାପ୍ତ ରହିଛନ୍ତି ଓ ପୁଣି ଉପରେ ଅଛନ୍ତି ବୋଲି କହି ବୁଝୁ ମାତ୍ର । ସେଇପରି ଅବତାର ବା ପରମେଶ୍ୱରଙ୍କର ତଳକୁ ବା ମର୍ତ୍ତ୍ୟକୁ ଓହ୍ଲାଇବା । କିନ୍ତୁ ଯଥାର୍ଥରେ ମର୍ତ୍ତ୍ୟ ତଳେ ନୁହେଁ କି ସ୍ୱର୍ଗ ଉପରେ ନୁହେ । ଆତ୍ମା ସମ୍ବନ୍ଧରେ ଏ ସ୍ଥାନଭେଦ ନାହିଁ । ମୋର ଚିନ୍ତା ବା ଅନୁଭୂତିରେ ଯେଉଁ ଆତ୍ମା ବ୍ୟାପ୍ତ, ସେ

କେଉଁଠାରେ ଅଛୁ, କହିବାର ଉପାୟ ନାହିଁ । ମୋ ଦେହରେ ଯେଉଁ ଆତ୍ମା ଅଛୁ, ସେ ମଧ୍ୟ କେଉଁଠାରେ ଅଛୁ ? ଯଦି କହ ଦେହରେ ଅଛୁ, ତେବେ ଆଙ୍ଗୁଠିରେ ଘା ହେଲେ କଣ ଆତ୍ମାରେ ଘା ହୁଏ ? ଆଙ୍ଗୁଠିଟି ଛୁଡ଼ିଗଲେ କଣ ଆତ୍ମାରୁ ଟିକିଏ ଖଣ୍ଡିଆ ହୋଇଯାଏ ? ଯେବେ କହିବ, ହୃଦୟ ମସ୍ତିଷ୍କ ବା ଅନ୍ୟ କୌଣସି ସ୍ଥାନରେ ଅଛୁ, ତେବେତ ସେଇ ଖଣ୍ଡି କାଟିନେବାରେ କଣକର ଆତ୍ମା ଆଉ ଜଣେ ଗ୍ରହଣ କରି ନେଇଥାନ୍ତା ? ତା ନୁହେଁ । ଆତ୍ମାର ସ୍ଥାନ କାଳରେ ନିର୍ଦ୍ଦେଶ ନାହିଁ । ପରମାତ୍ମାଙ୍କର ପ୍ରକାଶରେ ସେଇପରି ସମ୍ପର୍କ । ମାତ୍ର ମାନବ-ଆତ୍ମାରେ ପରମାତ୍ମାଙ୍କର ମାନବଠାରେ ପୂର୍ଣ୍ଣ ପ୍ରକାଶକୁ ଅବତାର ବୁଝାଯାଏ । ମାନବାତ୍ମାରେ ବିଶ୍ୱାସର ସ୍ପଷ୍ଟ ସଙ୍କେତ ରହିଛି । ଅନ୍ୟ ଭୂତ-ବ୍ୟକ୍ତିରେ ମଧ୍ୟ ସେଇ ସଙ୍କେତ ଯେପରି ବୁଝାଯାଇଛି, ଗିଳସରେ ଗିଳସତ୍ତ୍ୱ ବା ବ୍ୟକ୍ତିତ୍ୱକୁ ଆଲୋଚନା କଲେ, ଏଠାରେ ମଧ୍ୟ ସେଇ ବ୍ରହ୍ମ-ବସ୍ତୁର ସଙ୍କେତ ମିଳିବ । ମାତ୍ର ମାନବ ବା ଚେତନ ବ୍ୟକ୍ତି ହିଁ ତା ବିଷୟ କରି ଜାଣିଛି । ତେଣୁ ଏଇ ଚେତନାରେ ସଙ୍କେତ ପ୍ରତ୍ୟକ୍ଷ—ଅନ୍ୟତ୍ର ପରୋକ୍ଷ । ତେବେ ଯେଉଁ ଚେତନ ବ୍ୟକ୍ତି ବା ମାନବର ଆତ୍ମାରେ ପରମାତ୍ମା ସଙ୍କେତରେ ସବୁବେଳେ ଉଦ୍‌ଭିନ୍ନ, ସେଥିରେ ସଙ୍କେତ, ବିବୃତିରେ ପରିଣତ ହେବାରେ ଅସମ୍ଭବ ବା ଅସାମଞ୍ଜସ୍ୟ କିଛି ନାହିଁ । ପୁଣି ଦେଖାଯାଏ, ବିଭୂତି ପ୍ରଭାବାଦିରେ ମନୁଷ୍ୟ ମନୁଷ୍ୟରେ ପ୍ରଭେଦ ସ୍ପଷ୍ଟ । ଏଇ ବିଭୂତି ପ୍ରଭୃତିକୁ ଲୋକରେ ବହୁଗୁଣ ବା ଐଶ୍ୱର୍ଯ୍ୟ କହନ୍ତି । ଏହାର ଆଧିକ୍ୟରେ ଈଶ୍ୱର-ସଙ୍କେତ ମାନବରେ ତଥା ସର୍ବାଦି ଭୂତ-ବ୍ୟକ୍ତିରେ କ୍ରମେ ସ୍ପଷ୍ଟତର ହୁଏ । ଏଇ ବିଭୂତି ବା ଐଶ୍ୱର୍ଯ୍ୟର ପୂର୍ଣ୍ଣ ବିକାଶ ହିଁ ମାନବରେ ଅବତାରରୂପେ ପ୍ରକାଶ ପାଏ । ହେଲେହେଁ ଭଗବାନ ନିଜେ ଏଇ ଅବତାର-ତତ୍ତ୍ୱ ବୁଝାଇ କହିଛନ୍ତି—

"ଅବଜାନନ୍ତି ମାଂ ମୂଢ଼ା
ମାନୁଷୀଂ ତନୁମାଶ୍ରିତାଂ
ପରଂ ଭାବମଜାନନ୍ତୋ
ମମ ଭୂତମହେଶ୍ୱରଂ ।" (୯. ୧୧)

ଏଠାରେ ସ୍ପଷ୍ଟ ସୂଚନା ଅଛୁ, ଏଇ ଦେହରେ ଆତ୍ମା ହିଁ ପରମେଶ୍ୱର । ମହାତ୍ମାମାନେ ଏହାକୁ ହିଁ ଭୂତାଦି ଓ ଅବ୍ୟୟ ବୋଲି ଜାଣନ୍ତି । ଏଇ ଜ୍ଞାନ ସ୍ପଷ୍ଟ ଜାଗ୍ରତ ହେଲେ, ମନୁଷ୍ୟ ନିଜେ ପୂର୍ଣ୍ଣ ପରମେଶ୍ୱର ସତ୍ତାରେ ବ୍ୟକ୍ତ ହୁଏ । ଏହା ହିଁ ଅବତାର । ଏହାର ସୂଚନା ପୂର୍ବେ ଦିଆଯାଇଛି । ଯଥାର୍ଥ ଯୋଗସ୍ଥ ହେଲେ ମନୁଷ୍ୟ ହିଁ ଅବତାର ହୁଏ ।

## ଲୋକଗୁରୁ ମହାପୁରୁଷଙ୍କ ଅବତାର—

ଏଇ କଥା ଶ୍ରୀକୃଷ୍ଣ ନିଜେ ମହାଭାରତରେ ଅନ୍ୟତ୍ର ସ୍ପଷ୍ଟ କହିଛନ୍ତି । ମହାଭାରତ ଯୁଦ୍ଧପରେ ଆଉ ଦିନେ ଏକାନ୍ତରେ ଅର୍ଜୁନ କୃଷ୍ଣ ଦୁହେଁ ଥିଲାବେଳେ ଅର୍ଜୁନ

କହିଲେ, "ଯୁଦ୍ଧବେଳେ ମୋତେ ଯେଉଁ ତତ୍ତ୍ୱ ବୁଝାଇଥିଲ, ତାହା ମୁଁ ସେତେବେଳେ ଶୁଣି ଉପକୃତ ହୋଇଥିଲି । କିନ୍ତୁ ତାହା ମୁଁ ଭୁଲିଯାଇଛି । ମତେ ସେ ତତ୍ତ୍ୱ ଆଉ ଥରେ କହ ।" ସେଠାରୁ କୃଷ୍ଣ କହିଲେ, "ଅର୍ଜୁନ, ମୁଁ ସେତେବେଳେ 'ଯୋଗଯୁକ୍ତ' ହୋଇ କହିଯାଇଥିଲି । ଏବେ ଆଉ ସେପରି କହିପାରିବି ନାହିଁ ।" ମାତ୍ର କୃଷ୍ଣ ଅର୍ଜୁନଙ୍କ ଅନୁରୋଧ ରକ୍ଷାକରି ସେଇ ତତ୍ତ୍ୱର କେତେକ ଆବୃତ୍ତି କରିଥିଲେ । ତାହାକୁ 'ଅନୁଗୀତା' କହନ୍ତି (ମହା—ଅଶ୍ୱମେଧ, ୧୬.୫-୧୩) । ଏଇପରି ଜଗତରେ ଧର୍ମସଙ୍କଟ କାଳ ଉପସ୍ଥିତ ହେଲେ, ଲୋକଙ୍କୁ ମାର୍ଗ ଦେଖାଇବା ଦରକାର ହେଲେ, ମନୀଷୀ ମହାପୁରୁଷ ବିଶ୍ୱଧର୍ମର ପ୍ରେରଣାରେ ଯୋଗସ୍ଥ ହେବାର ଦେଖାଯାଏ । ଆପଦ୍‌କାଳରେ ଏଇପରି ଈଶ୍ୱରଙ୍କର ଅବତାର ହୁଏ । ଶାସ୍ତ୍ର କହନ୍ତି, ଏଇ ଅବତାର ଆଂଶିକ ହୁଏ, ପୂର୍ଣ୍ଣ ହୁଏ । ବିଶ୍ୱଧର୍ମର ସଙ୍କେତ ଯେ ଯେପରି ବୁଝନ୍ତି, ତାଙ୍କଠାରେ ସେଇପରି ଅବତାରତ୍ୱ ଆରୋପିତ ହେବାର କଥା । ନିଜ ପରିସ୍ଥିତିରୁ ବାହାରି ଯେ ଯେ ପରିମାଣରେ ଦେଶ କାଳର ପ୍ରଭାବ ଭେଦ କରି ମାନବର ମାନବତ୍ୱ ପ୍ରକାଶ କରନ୍ତି ସେ ସେତିକି ଅବତାରଭାବରେ ଉନ୍ନତ ଓ ବିସ୍ତୀର୍ଣ୍ଣ । ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, ଶଙ୍କର, ଚୈତନ୍ୟ, ଲେନିନ୍, ଗାନ୍ଧି ପ୍ରଭୃତି ସମସ୍ତେ ଏଇ ଭାବରେ ଅବତାର । ଏମାନଙ୍କ ମଧ୍ୟରେ କିଏ କର୍ମତ୍ୟାଗରେ ସଂସାରର ପରିସ୍ଥିତି ସଜାଡ଼ିବାକୁ କହିଛନ୍ତି, କିଏ ଅତ୍ୟାଗ୍ରହୀଙ୍କୁ ସହି ସ୍ୱର୍ଗକୁ ଗୁହିଁବାକୁ କହିଛନ୍ତି, କିଏ ଏକେଶ୍ୱରଙ୍କୁ ରାଜା କରି ଥୋଇ ଦେଇ ମନୁଷ୍ୟଙ୍କୁ ଭୋଗରେ ଲଗାଇ ଦେଇଛନ୍ତି, କିଏ ଈଶ୍ୱର ଛାଡ଼ି ଭୋଗ ବିଭାଗର ସୂତ୍ର ଧରାଇ ଦେଇଛନ୍ତି, କିଏ ବା ଅହିଂସାରେ ପଶୁଶକ୍ତିକୁ ଶାସନ କରିବାକୁ ବତାଇଛନ୍ତି—ଯାହା କରନ୍ତୁ, ସମସ୍ତେ ମନୁଷ୍ୟଙ୍କୁ ଆପଦ୍‌କାଳରେ ଧର୍ମସଙ୍କଟରେ ଧର୍ମ ବତାଇଛନ୍ତି । ଏ ସମସ୍ତେ ଏକ ଏକ ଅବତାର । ଧର୍ମର ଗ୍ଲାନିରେ ଏ ସମସ୍ତଙ୍କର ଲୋକରେ ଧର୍ମପ୍ରତିଷ୍ଠା—ଦୁଷ୍ଟନାଶ ଓ ଶିଷ୍ଟପାଳନ—ପାଇଁ ଆବିର୍ଭାବ । ଭଗବାନ୍ କହିଛନ୍ତି—

"ଯଦା ଯଦା ହି ଧର୍ମସ୍ୟ
ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍‌ଥାନମଧର୍ମସ୍ୟ
ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୂନାଂ
ବିନାଶାୟ ଚ ଦୁଷ୍କୃତାଂ
ଧର୍ମସଂସ୍ଥାପନାର୍ଥାୟ
ସମ୍ଭବାମି ଯୁଗେ ଯୁଗେ ।" (୪.୭,୮)

ଯେପରି ସଙ୍କଟକାଳରେ ଶ୍ରୀକୃଷ୍ଣ ଯୋଗସ୍ଥ ହୋଇ ଅର୍ଜୁନଙ୍କୁ ଧର୍ମ କହୁଥିଲେ, ତା ବୁଝାଯାଇଛି । ଶ୍ରୀକୃଷ୍ଣ ବେଦର ଯେଉଁ ବିଶ୍ୱତତ୍ତ୍ୱ ପ୍ରଚାର କରିଥିଲେ, ତାହା

ମାନବର ଶାଶ୍ୱତ ଧର୍ମ । ସେଥିରେ ଦେଶକାଳର ଭେଦ ନାହିଁ । ବେଦକୁ ଅପୌରୁଷେୟ କହନ୍ତି ଅର୍ଥାତ୍, ବେଦ କୌଣସି ପୁରୁଷ ବା ବ୍ୟକ୍ତିର କଳ୍ପିତ ବା ରଚିତ ଗ୍ରନ୍ଥ ନୁହେ । ଈଶ୍ୱରବର ସ୍ୱତଃ ଉଚ୍ଛ୍ୱାସରେ ବେଦମନ୍ତ୍ର ବାହାରି ପଡ଼ିଥିଲା । ଋଷି ତାହା ଗାଇଥିଲେ, ମାତ୍ର ଶ୍ରମ କରି କଳ୍ପନାର ଖେଳରେ ରଚନା କରି ନଥିଲେ । ଏଇ ଯେ ବିଶ୍ୱାସ ଅଛି, ତାହା ଗୀତାଧର୍ମରେ ସ୍ପଷ୍ଟ ପ୍ରମାଣିତ । ସେଥିପାଇଁ ଏ ଦେଶରେ ଶ୍ରୀକୃଷ୍ଣ ଈଶ୍ୱରଙ୍କ ପୁଅ ନୁହନ୍ତି କି ପୟଗମ୍ବର (ଦୂତ) ନୁହନ୍ତି । ସେ ସ୍ୱୟଂ ଈଶ୍ୱରଙ୍କର ପୂର୍ଣ୍ଣରୂପ ବା ଅବତାର । ଗୀତା ନବମ ଅଧ୍ୟାୟ ଏକାଦଶ ଶ୍ଳୋକ ଉପରେ ଉଦ୍ଧାର କରାଯାଇ ଯାହା କୁହାଯାଇଛି, "ମୋର ଭୂତମହେଶ୍ୱର-ଭାବ—ଶ୍ରେଷ୍ଠ ବିଶ୍ୱାତ୍ମଭାବ ନ ଜାଣି ମତେ ମନୁଷ୍ୟଦେହଧାରୀ ବୋଲି ଯେ ଅବଜ୍ଞା କରନ୍ତି ସେ ମୂଢ଼ । ସେମାନଙ୍କର କର୍ମ, ଜ୍ଞାନ, ଚିନ୍ତା, ଆଶା, ସବୁ ବ୍ୟର୍ଥ । ସେମାନଙ୍କର ପ୍ରକୃତି, ମାୟା ଭେଦକରି ପୁରୁଷୋତ୍ତମ ସତ୍ତାକୁ ଧରି ନାହିଁ । ମାତ୍ର ମହାତ୍ମାମାନେ ମତେ ଯଥାର୍ଥ ଭୂତାଦି ଓ ଅବ୍ୟୟ ବୋଲି ଜାଣି ମନକୁ ଆଉ କାହିଁରେ ନ ଦେଇ ମତେ ମାୟାରୁ ଅତୀତ ବିଶ୍ୱଧର୍ମ-ଗୋପ୍ତା ରୂପେ ଭଜନ୍ତି । ( ୯. ୧୧-୧୩ )

## ଭକ୍ତିର ଐତିହାସିକ ଭିତ୍ତି—

ଏଇଠାରେ ଗୀତାର ଏଇ ଭକ୍ତିତତ୍ତ୍ୱର ଐତିହାସିକ ଭିତ୍ତି ସମ୍ବନ୍ଧରେ କିଛିଏ କହିଯାଉ, ଏଇ ଭକ୍ତିବିଷୟରେ ଭଗବାନ୍ ଯାହା ଉପଦେଶ କରିଛନ୍ତି, ତାକୁ ଆଉ ଥରେ ପରିଷ୍କାର ଦେଖାଇ ଦେଇ ପ୍ରସଙ୍ଗ ଶେଷ କରିବାକୁ ହେବ ।

## କୃଷ୍ଣଙ୍କ ପରିଚୟ—

କୃଷ୍ଣ କିଏ ? ଭାଗବତ ଦଶମସ୍କନ୍ଧ, ମହାଭାରତ ଓ ହରିବଂଶରେ ଯେଉଁ ପରଂପରାଗତ କୃଷ୍ଣଙ୍କ ଉଲ୍ଲେଖ ଅଛି, ସେଥିରୁ ଜଣାଯାଏ, କୃଷ୍ଣ ଦେବକୀ ପୁତ୍ର ଓ କୃଷ୍ଣ ମଥୁରାର ଏକ ରାଜପୁରୁଷ । ଯେଇ କୃଷ୍ଣଙ୍କ ପିତାଙ୍କ ନାମ ବସୁଦେବ । ତେଣୁ କୃଷ୍ଣ ମଧ୍ୟ ବାସୁଦେବ । ତତ୍‌କାଳୀନ ରାଜାମାନଙ୍କ ଭିତରେ ମଗଧର ଜରାସନ୍ଧ, ପୌଣ୍ଡ୍ର ବାସୁଦେବ, ଚେଦୀର ଶିଶୁପାଳ ଓ ମଥୁରା ପାଖରେ କଂସ ପ୍ରଭୃତି ତାଙ୍କର ବହୁ ଶତ୍ରୁ ଥିଲେ । ସେ ନିଜେ ଯମୁନାକୂଳର ଗୋପ ନଗରର ପାଳିତ ହୋଇ ବହୁ ଆଦରରେ ବଢ଼ିଥିଲେ । ଗୋପକୁମାର ତଥା ଗୋପନାରୀମାନେ ତାଙ୍କୁ ଅତି ସ୍ନେହ ଓ ଯତ୍ନ କରୁଥିଲେ ଓ ତାଙ୍କ ନେତୃତ୍ୱରେ ସେଠା ଲୋକେ ତାଙ୍କର ସମସ୍ତ ଆଦେଶ ପାଳନ କରିବାକୁ ପ୍ରସ୍ତୁତ ଥିଲେ । କୃଷ୍ଣ ଇନ୍ଦ୍ରଙ୍କ ଉପାସନାକୁ ମାନୁ ନ ଥିଲେ । ଏପରି କି ଥରେ ଗୋପ ନଗରର ରାଜା 'ନନ୍ଦ' ଇନ୍ଦ୍ରଯଜ୍ଞ କରିବାର ଆୟୋଜନ କରିଥିଲେ । ମାତ୍ର କୃଷ୍ଣ ଗୋପବାଳକମାନଙ୍କୁ ମତାଇଦେବାରୁ ସେ ସମସ୍ତେ ଯଜ୍ଞପୂର୍ବରୁ ବଳି ଓ ପୂଜାସାମଗ୍ରୀ ସବୁ ନିଜେ ଖାଇ ନଷ୍ଟ କରିଦେଲେ । ଫଳରେ ଇନ୍ଦ୍ର କ୍ରୋଧରେ ସାତ

ଦ୍ୱାରା ଗୋପନଗର ଉପରେ ବଜ୍ରପାତ ଓ ଘୋର ବୃଷ୍ଟି କଲେ । ମାତ୍ର କୃଷ୍ଣ ଗୋବର୍ଦ୍ଧନ ଗିରିକୁ ଟେକି ଛତା ପରି ଧରି ସମସ୍ତ ଗୋପଙ୍କୁ ଇନ୍ଦ୍ରଙ୍କ ଆକ୍ରମଣରୁ ରକ୍ଷା କଲେ । ଇନ୍ଦ୍ରପୂଜା ବା ଯଜ୍ଞର ବିରୋଧୀ ଥିଲେ ମଧ୍ୟ, କୃଷ୍ଣ କର୍ମ ଶୁନ୍ୟ ସନ୍ନ୍ୟାସ ଆଦରିବା ଲୋକ ନ ଥିଲେ । ଗୋପବାଳକଙ୍କ ସଙ୍ଗେ ଖେଳିବା, ଗୋରୁ ଚରାଇବାଠାରୁ କୌଶଳରେ କଂସ, ଜରାସନ୍ଧ ପ୍ରଭୃତିଙ୍କୁ ମାରିବା, ପଞ୍ଚମହର୍ଷୀମାନଙ୍କୁ ଓ ପୁଅ ନାତିଙ୍କୁ ଘେନି ସୁଖରେ ଘର କରି ଗୃହସ୍ଥର ସବୁ କର୍ତ୍ତବ୍ୟ ବିଧିମତେ କରିବାଠାରୁ ପାଣ୍ଡବ-ମାନଙ୍କର ସହାୟ ହୋଇ ସବୁ ବଳ କଳ କୌଶଳ ପ୍ରୟୋଗ କରି ଦୁଷ୍ଟ କୌରବଙ୍କୁ ସଂହାର କରିବା—ଏପରି କି ନିଜ ବଂଶର ଲୋକେ ମଦ୍ୟପ ଓ ଦୁର୍ବୃତ୍ତ ହେବାର ଦେଖି, କୌଶଳରେ ତାଙ୍କୁ ଧ୍ୱଂସ କରାଇ, ଦେଶରେ ଶାନ୍ତିସ୍ଥାପନ କରିବା ପ୍ରଭୃତି ସମସ୍ତ ସାଂସାରିକ କାର୍ଯ୍ୟରେ ସେ ବରାବର ଲାଗି ରହିଥିଲେ । ପୁଣି ଦେଖାଯାଏ, ଏଡ଼େ କୌଶଳୀ ଓ ରାଜନୀତିନିପୁଣ ଥାଇ ମଧ୍ୟ ତାଙ୍କର ରାଜ୍ୟ ବା ଭୋଗର କୌଣସି କାମନା ନ ଥିଲା । ଧର୍ମରାଜ ଯୁଧିଷ୍ଠିରଙ୍କ ହାତେ ରାଜ୍ୟ ଦେବାପାଇଁ ସେ ଘୋର ମହାଭାରତ ଯୁଦ୍ଧରେ ଏକମାତ୍ର ନୀତିଶକ୍ତି ରୂପେ ପ୍ରାଣପଣ କାର୍ଯ୍ୟ କରିଥିଲେ । ପୁଣି ନିଜର ମଥୁରା ରାଜ୍ୟରେ ବା ଦ୍ୱାରକାରେ ସମସ୍ତ ରାଜକାର୍ଯ୍ୟ ଓ ଗୃହସ୍ଥ୍ୟକାର୍ଯ୍ୟରେ ଏକମାତ୍ର ନେତା ଓ ନିୟନ୍ତା ହୋଇ ମଧ୍ୟ, ରାଜ୍ୟର ଲୋଭ ତାଙ୍କର ନ ଥିଲା । ଶେଷରେ ଦୁରନ୍ତ ନିଜ ବଂଶୀୟମାନଙ୍କୁ ଧ୍ୱଂସ କରାଇଦେଇ ମଧ୍ୟ ରାଜ୍ୟରେ ଆଉ ରହି ନଥିଲେ; ଏପରି କି ମହାଭାରତ ଯୁଦ୍ଧବେଳୁ ମଧ୍ୟ ନିଜର ନାରାୟଣୀ ସେନାମାନଙ୍କ ଦୁରନ୍ତ ବୃତ୍ତି ଲକ୍ଷ୍ୟ କରି, ସେମାନଙ୍କୁ କୌଶଳରେ ନାଶ କରିବା ପାଇଁ ଦୁର୍ଯ୍ୟୋଧନ ପକ୍ଷରେ ଯୁଦ୍ଧ କରିବାକୁ ପଠାଇ ଦେଇଥିଲେ । ଏହିପରି ସମସ୍ତ କାର୍ଯ୍ୟ କଲେ ମଧ୍ୟ ସର୍ବତ୍ର ତାଂକର ଶକ୍ତି ଓ ବୁଦ୍ଧି କାର୍ଯ୍ୟ କଲେହେଁ, ମୁହୂର୍ତ୍ତିକ ପାଇଁ ସେ କାମନା ବା ଭୋଗ ଇଚ୍ଛାରେ ଗ୍ଳାନିତ ହୋଇ ନ ଥିଲେ । ପ୍ରକୃତ ଦୁରନ୍ତ ଶାସନ କରିବାରେ ତାଂକର ନିଜ ପର ବିଚାର ନ ଥିଲା । ସେ ସବୁ କାମ କରୁଥିଲେ, କୌଣସି କର୍ମରେ ଲେଶ ହେଲା ବା ତ୍ରୁଟି କରୁ ନଥିଲେ । ମାତ୍ର ସବୁ ନିଃସଙ୍ଗ ବା ଅନାସକ୍ତଭାବରେ କରି ଯାଉଥିଲେ । ଏହା ହିଁ ପରଂପରାର କୃଷ୍ଣ । ଏଇ କୃଷ୍ଣ ଅର୍ଜୁନଙ୍କୁ ସମର ପ୍ରାଙ୍ଗଣରେ ଗୀତାର ଉପଦେଶ ଦେଇ ମୋହ ଛଡ଼ାଇ କର୍ତ୍ତବ୍ୟ ବୋଲି ଦୁରନ୍ତ ନିଜ ବଂଶୀୟଂକ ନାଶରେ ଲଗାଇଥିଲେ ।

## ବେଦରେ କୃଷ୍ଣ—

ଋଗ୍‌ବେଦ ସଂହିତାରେ ଏଇ କୃଷ୍ଣସେନା ବା କୃଷ୍ଣଙ୍କ ସେନାଙ୍କୁ ବା (କୃଷ୍ଣଯୋନି) ଇନ୍ଦ୍ର ଯୁଦ୍ଧରେ ନାଶ କରିବାର ବାରଂବାର ଉଲ୍ଲେଖ ଅଛି । (ଋଗ୍‌ବେଦ ୨.୨୦.୭; ୪.୧୬. ୧୩) । ବୈଶ୍ୱାନର ମଧ୍ୟ ଏଇ କୃଷ୍ଣସେନାଙ୍କୁ ଧ୍ୱଂସ କରି ଅସ୍ତବ୍ୟସ୍ତ କରିଥିଲେ (ଋଗ୍‌ବେଦ ୭. ୫. ୩) । ପୁଣି ସ୍ପଷ୍ଟ ଅଛି, ଅଂଶୁମତୀ-କୂଳରେ ଦଶ ସହସ୍ର ଲୋକଙ୍କୁ ନିଜ ନେତୃତ୍ୱରେ ରଖି କ୍ଷିପ୍ରଭାବରେ ବୁଲୁଥିବା ('ଚରନ୍ତ'—ଗୋଚରଣ

ନୁହେଁ ତ ?) କୃଷ୍ଣଙ୍କ କୋଳାହଳ-ଶବ୍ଦରୁ ଜାଣିପାରି ସେଇ ଅଂଶୁମତୀ କୂଳରେ ଭେଟିଥିଲେ । କୃଷ୍ଣ ତହୁଁ ଅଂଶୁମତୀକୂଳରେ ଦେଦୀପ୍ୟମାନ ହୋଇ ଦେଖା ଦେଇଥିଲେ । ବୃହସ୍ପତିଙ୍କ ସଙ୍ଗେ ଇନ୍ଦ୍ର ସେଇ କୃଷ୍ଣଙ୍କ ଦେବହୀନ ସେନାଙ୍କୁ ପରାସ୍ତ କରିଥିଲେ (ଋଗ୍‌ବେଦ ୮.୯୬. ୧୩-୧୫) । ଇନ୍ଦ୍ର କୃଷ୍ଣଙ୍କ ଗର୍ଭବତୀ ପତ୍ନୀମାନଙ୍କୁ ହତ୍ୟା କରିଥିଲେ (ଋଗ୍‌ବେଦ ୧. ୧୦୧.୧) । ଏଇ ଅଂଶୁମତୀ ନଦୀ ଯମୁନାର ଗୋଟିଏ ନାମ ବୋଲି ଠିକ୍ କରାହୋଇଛି । ଋଗ୍‌ବେଦରେ ମଧ୍ୟ ପୁଣି ଅଛି, ଏଇ ଯମୁନା କୂଳରେ ଗୋରୁ ଗାଈ ଖୁବ୍ ବଢ଼ୁଥିଲେ । ଗାଈମାନେ ବଡ଼ ଦୁଧିଆଳୀ ହେଉଥିଲେ । (ଋଗ୍‌ବେଦ ୫. ୫୨. ୧୭)

ପୁଣି ଛାନ୍ଦୋଗ୍ୟ ଉପନିଷଦରେ 'ମନୁଷ୍ୟର ଜୀବନ ଏକ ଯଜ୍ଞ' ଏହା କହି ଯଜ୍ଞର ମାହାତ୍ମ୍ୟ ବର୍ଣ୍ଣନ କରିବା ଅବସର ସେଠି କୁହାଯାଇଛି, "ଏଇ ଯଜ୍ଞ ବିଦ୍ୟା 'ଘୋର ଆଙ୍ଗିରସ' ନାମକ ଋଷି ଦେବକୀ-ପୁତ୍ର କୃଷ୍ଣଙ୍କୁ କହିଥିଲେ ।" ( ଛାନ୍ଦୋଗ୍ୟ ଉପନିଷଦ୍ ୩. ୧୭. ୧୭) ।

ଏସବୁର ଆଲୋଚନାରୁ ଅନୁମାନ ହୁଏ, କୃଷ୍ଣ ନାମକ କେହି ଯମୁନାକୂଳରେ ଇନ୍ଦ୍ର, ଅଗ୍ନି, ବୃହସ୍ପତିଙ୍କ ପୂଜା ବା ଯଜ୍ଞକ୍ରିୟା ('ବେଦ ବାଦ'—୨. ୪୨)ର ଘୋର ବିରୋଧୀ ଥିଲେ । ପୁଣି ଜ୍ଞାନମୂଳକ ବରଂ କର୍ମତ୍ୟାଗ-ସନ୍ନ୍ୟାସମୂଳକ ଛାନ୍ଦୋଗ୍ୟରେ ଏପରି 'ଯଜ୍ଞ' ତତ୍ତ୍ୱ ସଙ୍ଗେ ଗୀତାର 'ଜ୍ଞାନ-ଯଜ୍ଞ'ର ଶ୍ରେଷ୍ଠତା (୪.୩୩) ମିଳାଇ ଦେଖିବାର କଥା । ଗୀତାରେ ଘୋର ଆଙ୍ଗିରସଙ୍କ ନାମ ନାହିଁ ସତ, ମାତ୍ର କୃଷ୍ଣ ପିଲାଦିନେ ଯେଉଁ ଗୁରୁଙ୍କ ଘରେ ପାଠ ପଢ଼ିଥିଲେ, ତାଙ୍କ ନାମ ମଧ୍ୟ ଗୀତାରେ ନାହିଁ । ସେ ଯେ ଏଇ ଘୋର ଆଙ୍ଗିରସଙ୍କ ପାଖେ ଏଇ ଗୀତାର ଯଜ୍ଞତତ୍ତ୍ୱର ସୂଚନା ପିଲାଦିନେ ଗୁରୁକୁଳରେ ପାଇ ନ ଥିଲେ, ଓ ଏଇ ଘୋର ଆଙ୍ଗିରସ ଯେ କୃଷ୍ଣଙ୍କ ଶିକ୍ଷାଗୁରୁ ଥାଇ, ଅଧିକାଂଶ ବେଶି କୃଷ୍ଣଙ୍କୁ ଏଇ ତତ୍ତ୍ୱ କହି ନଥିଲେ, ତା ଜାଣିବାର କିଛି ଉପାୟ ନାହିଁ । ହୁଏତ ତାହାହିଁ ହୋଇଥିଲା । କାରଣ, ଦେବକୀ-ପୁତ୍ର କୃଷ୍ଣ ବୋଲି ଲେଖା ଅଛି । ବେଦକାଳରେ ଏହିପରି ମାତୃନାମରେ ନାମକରଣ କରିବା ଖୁବ୍ ପ୍ରଚଳିତ ଥିଲା । ଚନ୍ଦ୍ରବଂଶର ଧୃତରାଷ୍ଟ୍ରଙ୍କୁ 'ଆମ୍ବିକେୟ' (ଅମ୍ବିକା-ପୁତ୍ର) ବୋଲି କୁହାଯାଇଛି । ଦେବତାମାନଙ୍କୁ ଆଦିତ୍ୟ (ଅଦିତି-ପୁତ୍ର), ଓ ଅସୁରଙ୍କୁ ଦୈତ୍ୟ (ଦିତିଜାତ ବା ଦିତିପୁତ୍ର) ବୋଲି ବରାବର କୁହାଯାଏ । ଏହିପରି ବ୍ୟବହାର ବେଦ ଓ ଅନ୍ୟ ପ୍ରାଚୀନ ଭାରତ-ସାହିତ୍ୟରେ ବହୁତ ମିଳେ । ଦାନବ, ସାରମେୟ, ଶୈଳ, ମୌର୍ଯ୍ୟ ପ୍ରଭୃତି ପରି ଉଦାହରଣମାନ ବହୁତ ମିଳିବ । ସେ ଯା ହେଉ, ଏଇ ଗୁରୁଙ୍କଠାରୁ କୃଷ୍ଣ, ଯଜ୍ଞ ବା ଯଥାର୍ଥ ବିଶ୍ୱପ୍ରକାଶ ସମ୍ବନ୍ଧୀୟ ଜ୍ଞାନତତ୍ତ୍ୱ ପାଇଥିବାର ସଙ୍କେତ ମଧ୍ୟ ଗୀତାରେ ସ୍ପଷ୍ଟ ଅଛି । ଯଜ୍ଞର ତତ୍ତ୍ୱ ବୁଝାଇ ସାରି ଜ୍ଞାନଯଜ୍ଞ ଯେ ସବୁ ଯଜ୍ଞରୁ ବଡ଼, ପୁଣି ସବୁ କର୍ମ ଜ୍ଞାନରେ ହିଁ ପରିସମାପ୍ତ (୪.୩୩) ଏହା କହିବା ସଙ୍ଗେ ସଙ୍ଗେ

କହୁଚନ୍ତି, "ଏଇ ଜ୍ଞାନ ପ୍ରଣିପାତ, ପରିପ୍ରଶ୍ନ ଓ ଶୁଶ୍ରୂଷା ସହିତ ଗୁରୁଙ୍କଠୁ ଶିକ୍ଷା କର । ତତ୍ତ୍ୱଦର୍ଶୀ ଜ୍ଞାନୀମାନେହିଁ ଏ ଜ୍ଞାନ ତତେ କହିଦେବେ (୪.୩୪) ।" କହିବାର ଅଭିପ୍ରାୟ, ନମ୍ରତା, ପ୍ରଶ୍ନର ଭଙ୍ଗୀ ଓ ଶୁଣିବାରେ ଆଭିମୁଖ୍ୟ ପ୍ରଭୃତି ଦେଖି ଗୁରୁ ଅଧିକାରୀ ବୋଲି ବୁଝିଗଲେ ଶିଷ୍ୟଙ୍କୁ ଏହା କହିଦେବେ । ପୁଣି ଯାହା କହିଦେବେ ସେଥିରେ, "ତୁ ଏଇ ଯଜ୍ଞତତ୍ତ୍ୱ ବୁଝି, ଈଶ୍ୱରରେ ତଥା ନିଜ ଭିତରେ ଅନନ୍ତ ସୃଷ୍ଟି ପ୍ରକାଶ ଦେଖିବୁ, ଆଉ ଏପରି ମୋହରେ ପଡ଼ିବୁ ନାହିଁ (୪.୩୫) ।" ଏଇ ଯଜ୍ଞତତ୍ତ୍ୱ କଥା ସମ୍ପର୍କରେ ଏଠାରେ ଏପରି ଗୁରୁଙ୍କ ସୂଚନା ଦେବାରେ ବ୍ୟକ୍ତିଗତ ଅନୁଭବର ଛାୟା ଥିବା ଖୁବ୍ ସମ୍ଭବ । । ଦେବକୀ-ପୁତ୍ର କୃଷ୍ଣ ଏଇ ଜ୍ଞାନଯଜ୍ଞର ତତ୍ତ୍ୱଗୁରୁ ଘୋର-ଆଙ୍ଗିରସଙ୍କଠାରୁ ପାଇଥିଲେ । ସେହି ଦେବକୀ-ପୁତ୍ର କୃଷ୍ଣ ଏଠାରେ ଆତ୍ମପ୍ରକାଶ କରିଥିବା ଖୁବ୍ ଅନୁମାନ ହୁଏ । କାରଣ, ଅନ୍ୟ କୌଣସି ସମ୍ପର୍କରେ ଗୀତାରେ ଏପରି ଗୁରୁ ଉପଦେଶର କଥା ଭଗବାନ୍ ଶ୍ରୀକୃଷ୍ଣ କହି ନାହାନ୍ତି । ଶ୍ରଦ୍ଧାର କଥା ଭକ୍ତିସମ୍ବନ୍ଧରେ କହିଚନ୍ତି । ମାତ୍ର ସେଠାରେ ଏପରି ଗୁରୂପଦେଶ କଥା ନାହିଁ । ସମାଜରେ ଏବେ କିନ୍ତୁ ଯେଉଁ ଗୁରୁ, ମନ୍ତ୍ର ଚଳେ, ତାହାର ଭିତ୍ତି ଭକ୍ତି ହେଲେହେଁ, ପରିସ୍ଥିତି ଓ ପ୍ରକୃତି ସ୍ୱତନ୍ତ୍ର; ସେଥିରେ କାନ ଫୁଙ୍କିବାର 'ଅଧିକାରୀ' ବିଚାର ନାହିଁ । ତେଣୁ ବୈଦିକ ଓ ଉପନିଷଦ୍ର ଗୁରୁପରଂପରା ସଙ୍ଗେ ତାର ସାକ୍ଷାତ୍ ସମ୍ପର୍କ ନାହିଁ । ଏହା ସାକ୍ଷାତ୍ ଭାବରେ ପରବର୍ତ୍ତୀ କାଳରେ ବାଭତ୍ସ ବୌଦ୍ଧ-ତାଂତ୍ରିକ ସାଧନା ପରଂପରାରୁ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମରେ ପଶି ସମାଜରେ ସେଇ ଘୋର କଳଙ୍କ ସ୍ମୃତିକୁ ଜାଗ୍ରତ ରଖିଚି ମାତ୍ର । ହେଲେହେଁ ଏସବୁ ଏଠାରେ ପ୍ରାସଙ୍ଗିକ ନୁହେଁ । କୃଷ୍ଣ ଘୋର-ଆଙ୍ଗିରସଙ୍କଠାରୁ ଏଇ ଯଜ୍ଞ-ବିଦ୍ୟା ଶିଖିଥିଲେ, ଏହାଇ ଅନୁମାନ ହୁଏ । ଏହିପରି ଗୁରୁ ସଙ୍କେତ ପାଇ କୃଷ୍ଣ ବେଦବାଦର ଯଜ୍ଞକୁ ଛାଡ଼ି ଜପରି ବିରାଟ ପୁରୁଷର ବିଶ୍ୱଯଜ୍ଞ ତଥା ମନୁଷ୍ୟର ଜ୍ଞାନଯଜ୍ଞ (ଆତ୍ମନ ଅଥ ମଯ୍ୟି ୪.୩୫) ଏହି ଦୁହିଙ୍କ ସମବାୟରେ ଯଥାର୍ଥ ଯଜ୍ଞ କରିବାକୁ ହୁଏ, ତା ଗୀତାରେ କହି ଅର୍ଜୁନଙ୍କୁ କର୍ତ୍ତବ୍ୟର ତପସ୍ୟାରେ ଜାଗ୍ରତ କରିଚନ୍ତି ।

## ବେଦଧର୍ମର ସଂସ୍କାରକ କୃଷ୍ଣ—

କୃଷ୍ଣ ଘୋର ଆଙ୍ଗିରସଙ୍କଠାରୁ ଜ୍ଞାନଯଜ୍ଞର ବିଦ୍ୟା ଶିଖିଥିଲେ । ଠିକ୍ କଣ କେତେ ଶିଖିଥିଲେ, ତାର କୌଣସି ପ୍ରମାଣ ମିଳୁ ନାହିଁ । ମାତ୍ର ଏଇ ଯଜ୍ଞକୁହିଁ ସେ ଯେପରି ବିଶ୍ୱଧର୍ମ ଓ ମାନବଧର୍ମର ସର୍ବସ୍ୱ କରି ବୁଝି ବୁଝାଇ ପାରିଥିଲେ, ତାହା ପୃଥିବୀରେ ଅଦ୍ୱିତୀୟ କହିଲେ ଚଳେ । ସେତିକି ନୁହେଁ, ଭକ୍ତିତତ୍ତ୍ୱର ଏଥିରେ ସାମଞ୍ଜସ୍ୟ ଓ ସମନ୍ୱୟ ଘଟାଇ, କୃଷ୍ଣ ବେଦର ଏ ଆର୍ଯ୍ୟଧର୍ମକୁ ଏକାବେଳକେ ସରସ ଓ ବିଶ୍ୱସେବ୍ୟ କରିଥିଲେ । ଏଇ ଭକ୍ତିର ବିକାଶ ସମ୍ବନ୍ଧରେ ବେଦ ଓ ଆର୍ଯ୍ୟଶାସ୍ତ୍ର କଣ କହନ୍ତି, ତା ଟିକିଏ ଦେଖାଯାଉ ।

କୁହାଯାଇଛି, ଗୀତାରେ ଯେ ଭକ୍ତି ଯେପରି ଭାବରେ କୁହାଯାଇଛି, ତା ବେଦରେ ସେପରି ନାହିଁ । ବେଦର ଇନ୍ଦ୍ରାଦି ଭକ୍ତି ଓ ଉପନିଷଦର ପ୍ରତୀକ ଧ୍ୟାନ, ଗୀତ-ଭକ୍ତି ପରି ନୁହେଁ । ସେଇଥିରୁ ଗୀତାର ଭକ୍ତି କମ୍ଭୁ ବାହାରିଥିଲା । ତେବେ ଗୀତାର ଏଇ ଭକ୍ତି କିପରି କେଉଁଠାରେ ପ୍ରକାଶ ପାଇଥିଲା, ତା ଦେଖିବାରେ ବୁଝାଯାଏ । କୃଷ୍ଣ ସମ୍ଭବତଃ ଏଇ ଗୀତାର ନିଷ୍କାମଧର୍ମର ସ୍ଥିତି ସ୍ଥିର ରଖିବା ପାଇଁ ବେଦର ପ୍ରତୀକାଦି ଭକ୍ତିକୁ ଏଇ ବ୍ୟାପକ ଭିତ୍ତି ଦେଇଥିଲେ ।

## ନାରାୟଣୀୟ ଭାଗବତ ଧର୍ମ ଓ କୃଷ୍ଣ—

ଏଇ ଭକ୍ତିର ବିକାଶ ଅନ୍ୟତ୍ର ଦେଖିବାକୁ ଗଲେ, ଭାଗବତ ପୁରାଣ, ଶାଣ୍ଡିଲ୍ୟ ସୂତ୍ର, ନାରଦ ପାଞ୍ଚରାତ୍ର ଓ ନାରଦ ସୂତ୍ର ପ୍ରଭୃତି ପ୍ରାଚୀନ ଗ୍ରନ୍ଥମାନଙ୍କରେ ଏହା ଦେଖିବାକୁ ମିଳେ । ମାତ୍ର ଭାଗବତ ପୁରାଣରେ ସ୍ପଷ୍ଟ ଅଛି, ବ୍ୟାସ ମହାଭାରତ, ଅତଏବ ଗୀତାର ନୈଷ୍କର୍ମ୍ୟମୂଳକ ଯେଉଁ ଭକ୍ତିର ପ୍ରଚାର କଲେ, ସେଥିରେ ଭକ୍ତି ବିଭାବ ଖୁବ୍ ସ୍ପଷ୍ଟ ନ ହେବାରୁ ଅର୍ଥାତ୍ ଲୋକେ ପାରଂପରିକ ନୈଷ୍କର୍ମ୍ୟରୁ ଭକ୍ତିଟି ସହଜରେ ଧରି ନ ପାରିବାରୁ , ନାରଦଙ୍କ ପରାମର୍ଶ ଅନୁସାରେ ବ୍ୟାସ କେବଳ ଭକ୍ତିର ପ୍ରତିଷ୍ଠା କରିବା ପାଇଁ ଭାଗବତ ପୁରାଣ ଲେଖିଲେ । ପୁଣି ଶାଣ୍ଡିଲ୍ୟ ସୂତ୍ର, ନାରଦ ପାଞ୍ଚରାତ୍ର ଓ ନାରଦ-ସୂତ୍ର ପ୍ରଭୃତିର ଆଭ୍ୟନ୍ତରୀଣ ପ୍ରମାଣରୁ ସ୍ପଷ୍ଟ ଜଣାପଡ଼େ, ଏସବୁ ଭାଗବତ ପୁରାଣଠାରୁ ଅର୍ବାଚୀନ । ମାତ୍ର ମହାଭାରତରେ ଏଇ ଭକ୍ତିର ପ୍ରାଚୀନତମ ବିକାଶ ସମ୍ବନ୍ଧରେ ଶାନ୍ତି-ପର୍ବ ଶେଷକୁ ନାରାୟଣୀୟ ଉପାଖ୍ୟାନରେ ଭାଗବତ-ଧର୍ମର ଯେ ଉଲ୍ଲେଖ ଦେଖାଯାଏ, ତାହା ହିଁ ଏ କ୍ଷେତ୍ରରେ ଭକ୍ତି ବିଷୟରେ ସର୍ବପ୍ରାଚୀନ ଉଲ୍ଲେଖ । (ମହାଭାରତ, ଶାନ୍ତି-ପର୍ବ, ୩୩୪-୩୫୧ ଅଧ୍ୟାୟ ) ଏଥିରେ ଅବତାରର ଉଲ୍ଲେଖ ଅଛି । ମାତ୍ର ବୁଦ୍ଧଙ୍କ ନାମ ଏ ଅବତାରରେ ନାହିଁ । ଏଥିରେ ପ୍ରଥମ ଅବତାର ହଂସ ଓ ନବମ କୃଷ୍ଣ, ତା ପରେ ଦଶମ କଲ୍କି । ଏଥିରୁ ଅନୁମାନ ହୁଏ, ଏହା ବୁଦ୍ଧ ପୂର୍ବରୁ ପ୍ରଚଳିତ; ମହାଭାରତରେ ପରେ ପ୍ରକ୍ଷେପ ନୁହେଁ । ଏଇ ନାରାୟଣୀୟ ଆଖ୍ୟାନରେ ଅଛି—ନର ନାରାୟଣ ନାମକ ଦୁଇ ଋଷି ପରଂବ୍ରହ୍ମଙ୍କର ଅବତାର । ସେଇ ଦୁହେଁ ପ୍ରଥମେ ନାରାୟଣୀୟ ବା ଭାଗବତ ଧର୍ମ ପ୍ରବର୍ତ୍ତିତ କରନ୍ତି । ସେହି ଦୁହିଙ୍କ କଥା ଅନୁସାରେ ନାରଦ ଶ୍ୱେତ ଦ୍ୱୀପକୁ ଯିବାରୁ ସେଠାରେ ଭଗବାନ୍ ନାରଦଙ୍କୁ ଏଇ ଧର୍ମର ଉପଦେଶ ଦିଅନ୍ତି । ସେଇ ନାରାୟଣୀୟ ଭାଗବତ ଧର୍ମକୁ ପାଞ୍ଚରାତ୍ର ଧର୍ମ କୁହାଯାଇଛି । ସେଇ ସମ୍ପର୍କରେ 'ପଞ୍ଚରାତ୍ର' ଶବ୍ଦକୁ ଅର୍ଥ କରି କୁହାଯାଇଛି ଏଥିରେ ଚାରି ବେଦ ପୁଣି ସାଂଖ୍ୟ (ଜ୍ଞାନ) ବା ଯୋଗ ଏଇ ପାଞ୍ଚୋଟିର ସମାବେଶ ହେବାରୁ ଏହାର ନାମ ପାଞ୍ଚରାତ୍ର ଧର୍ମ । (ମହାଭାରତ, ଶାନ୍ତି, ୩୩୯. ୧୦୭) । ପୁଣି ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ପରେ ନର ନାରାୟଣ ବୋଲି ଯେଉଁ ପାରଂପରିକ କଳ୍ପନା ସେଥିରୁ ମଧ୍ୟ ଜଣାଯାଏ, ଗୀତାର ଧର୍ମ ଏଇ ଭାଗବତ ଧର୍ମର ଅଭିବ୍ୟକ୍ତି । ବେଦ ଧର୍ମର ଏଇ ପ୍ରକାର ଧାରଣାଟି ବହୁ ପୂର୍ବରୁ

ଫୁଟିଥିଲା । ମାତ୍ର କୃଷ୍ଣ ଏହା ସ୍ପଷ୍ଟ ଓ ପୁଷ୍କଳ ଭାବରେ ପ୍ରଚାର କରି ଏହାକୁ ପ୍ରତିଷ୍ଠିତ କରିଥିଲେ । କାରଣ ବେଦାନ୍ତ ବା ଉପନିଷଦ୍‌ର କର୍ମତ୍ୟାଗ ନିଷ୍କାମତାରେ ଏ ଭକ୍ତି-ଧର୍ମ ମୁଣ୍ଡ ଟେକି ପାରୁ ନଥିଲା । ଶ୍ରୀକୃଷ୍ଣ ଏଇ କଥାକୁ ଲକ୍ଷ୍ୟ କରି କହୁଛନ୍ତି—

"ଇମଂ ବିବସ୍ୱତେ ଯୋଗଂ
ପ୍ରୋକ୍ତବାନହମବ୍ୟୟଂ ।
ବିବସ୍ୱାନ୍ ମନବେ ପ୍ରାହ
ମନୁରିକ୍ଷ୍ୱାକବେଽବ୍ରବୀତ୍ ॥
ଏବଂ ପରଂପରାପ୍ରାପ୍ତଂ
ଇମଂ ରାଜର୍ଷୟୋ ବିଦୁଃ ।
ସ କାଳେନେହ ମହତା
ଯୋଗୋ ନଷ୍ଟଃ ପରଂତପ ॥
ସ ଏବାୟଂ ମୟା ତେଽଦ୍ୟ
ଯୋଗଃ ପ୍ରୋକ୍ତଃ ପୁରାତନଃ ।
ଭକ୍ତୋଽସି ମେ ସଖା ଚେତି
ରହସ୍ୟଂ ହ୍ୟେତଦୁତ୍ତମଂ ॥"

(୪.୧-୩)

## ଭକ୍ତି ଧର୍ମର ପରଂପରା—

ଭଗବାନ୍ ଏହା ପ୍ରଥମେ ବିବସ୍ୱାନଙ୍କୁ କହିଥିଲେ । ବିବସ୍ୱାନ୍ ସ୍ୱପୁତ୍ର ମନୁଙ୍କୁ, ମନୁ ସ୍ୱପୁତ୍ର ଇକ୍ଷ୍ୱାକୁଙ୍କୁ କହିଲେ । ଏଇ ପରଂପରାରେ ରାଜର୍ଷିମାନେ ଜାଣିଥିଲେ । ପରେ ଏହା କାଳରେ ନଷ୍ଟ ହେଲା । (୪.୨ ବ୍ୟ: ସୂ: ଦେଖ) । ତୁ ଭକ୍ତ ପୁଣି ସଖା ବା 'ସମପ୍ରାଣ' ବୋଲି ତତେ ଏବେ ଗୂଢ଼ ରହସ୍ୟ କହୁଛି । ସେଠାରୁ ପୁଣି ଅର୍ଜୁନ ପଚାରିବାରୁ କହୁଛନ୍ତି, ମୋର ବହୁ ଜନ୍ମ ବିତିଯାଇଛି । ଏଠାରେ ଅଳ୍ପରେ ଏ ପରଂପରା ଭଗବାନ୍ କହିଦେଲେ । କିନ୍ତୁ ନାରାୟଣୀୟ ଆଖ୍ୟାନରେ ବୈଶମ୍ପାୟନ ଜନମେଜୟଙ୍କୁ ଏଇ ଧର୍ମର ପରଂପରା ବିସ୍ତର ଭାବରେ .ଯାହା କହିଛନ୍ତି, ତା ଏଇ— ବ୍ରହ୍ମାଙ୍କର ସାତ ଜନ୍ମ । ସେଥିରୁ ପ୍ରଥମ ଛଅ ଜନ୍ମରେ ନାରାୟଣୀୟ ଧର୍ମର ପରଂପରା ପରେ ବ୍ରହ୍ମାଙ୍କର ଏଇ ସପ୍ତମ ଜନ୍ମର କୃତଯୁଗ ଶେଷ ହେବା ଉତ୍ତାରୁ ଏଇ ଧର୍ମକୁ—

"ତ୍ରେତାଯୁଗାଦୌ ଚ ତତୋ
ବିବସ୍ୱାନ୍ ମନବେ ଦଦୌ ।
ମନୁଶ୍ଚ ଲୋକଭୃତ୍ୟର୍ଥଂ
ସୁତାୟେକ୍ଷ୍ୱାକବେ ଦଦୌ ॥

ଇକ୍ଷ୍ୱାକୁଣା ଚ କଥିତୋ
ବ୍ୟାପ୍ୟ ଲୋକାନବସ୍ଥିତଃ ।
ଗମିଷ୍ୟତି କ୍ଷୟାନ୍ତେ ଚ
ପୁନର୍ନାରାୟଣଂ ନୃପ ॥
ଯତୀନାଂ ଚାପି ଯୋ ଧର୍ମଃ
ସ ତେ ପୂର୍ବଂ ନୃପୋତ୍ତମ ।
କଥିତୋ ହରିଗୀତାସୁ
ସମାସବିଧିକଳ୍ପିତଃ ॥"

( ମହାଭାରତ, ଶାନ୍ତି, ୩୪୮.୫୧-୫୩ )

ଅର୍ଥାତ୍, ତ୍ରେତା ଯୁଗାରମ୍ଭରେ ବିବସ୍ୱାନ୍ ମନୁଙ୍କୁ ଦେଲେ । ମନୁ ଲୋକ-ଧାରଣ ନିମନ୍ତେ ଏହାକୁ ନିଜ ପୁତ୍ର ଇକ୍ଷ୍ୱାକୁଙ୍କୁ ଦେଲେ । ଇକ୍ଷ୍ୱାକୁଙ୍କଠାରୁ ଏହା ଲୋକରେ ବ୍ୟାପ୍ତ ହୋଇଛି । କିନ୍ତୁ ପୁଣି ଲୋକକ୍ଷୟ ହେଲେ ଏଇ ଧର୍ମ ନାରାୟଣଙ୍କଠାକୁ ଚାଲିଯିବ । ଏଇ ଧର୍ମ ପୁଣି ଏଇ ସମ୍ପର୍କରେ ଯତିଧର୍ମ ବା ସନ୍ୟାସ ସାଧନାର ଧର୍ମ ତୁମକୁ ପୂର୍ବେ ହରିଗୀତା (ଭଗବଦ୍‌ଗୀତା) କଥା କହିଲା ବେଳେ କହିଛି । ଏଠାରେ 'ହରିଗୀତାସୁ' କଥାଟି ମାନ୍ୟାର୍ଥେ ବହୁବଚନ । ହରିଗୀତ ନ ହୋଇ ହରିଗୀତା ହେବାର କାରଣ ହେଉଛି, ଏହା ଏକ ଉପନିଷଦ୍ ବା ତତ୍ତ୍ୱଜ୍ଞାନ ବୋଲି କୁହାଯାଏ । ଉପନିଷଦ୍ ଶବ୍ଦ ସଂସ୍କୃତରେ ସ୍ତ୍ରୀଲିଙ୍ଗ । ସେଥିପାଇଁ ଏକ-ବଚନରେ ହରିଗୀତା-ଉପନିଷଦ୍, ବା ମାନ୍ୟରେ ବହୁବଚନ କରି 'ହରିଗୀତାସୁ-ଉପନିଷତ୍ସୁ' ସପ୍ତମୀରେ କୁହାଯାଏ । ଅର୍ଥ—'ହରିଗୀତା ଉପନିଷଦ୍‌ରେ ।' ଗୀତାରେ ମଧ୍ୟ ସେଇପରି ପ୍ରତି ଅଧ୍ୟାୟ ଶେଷରେ 'ଭଗବଦ୍‌ଗୀତାସୂପନିଷତ୍ସୁ' (ଅମୁକ) ଅଧ୍ୟାୟ ବୋଲି ଲେଖାଯାଏ । ସେଇଥିପାଇଁ ଗ୍ରନ୍ଥର ନାମ ମଧ୍ୟ 'ଭଗବଦ୍-ଗୀତଂ' ନ ହୋଇ ହୋଇଛି, 'ଭଗବଦ୍‌ଗୀତା'—ଏହା ମଧ୍ୟ ଲକ୍ଷ୍ୟ କରିବାର ଅଛି । ) ତେବେ ଏଠାରେ ଭଗବଦ୍ ଗୀତାରେ ଏଇ ନାରାୟଣୀଙ୍କ ଧର୍ମ କୁହାଯାଇଥିବା ସ୍ପଷ୍ଟ ବୈଶମ୍ପାୟନ କହିଛନ୍ତି । ପୁଣି ଅନ୍ୟତ୍ର ମଧ୍ୟ ସେଇ ବୈଶମ୍ପାୟନ କହିଛନ୍ତି—"ଏଇ ଧର୍ମ ପ୍ରଥମେ ଶ୍ୱେତଦ୍ୱୀପରେ ଭଗବାନଙ୍କଠାରୁ—

ନାରଦେନ ତୁ ସମ୍ପ୍ରାପ୍ତଃ
ସରହସ୍ୟଃ ସସଂଗ୍ରହଃ ।
ଏଷ ଧର୍ମୋ ଜଗନ୍ନାଥାତ୍
ସାକ୍ଷାନ୍ନାରାୟଣାନ୍ନୃପ ॥

ଏବମେଷ ମହାନ୍ ଧର୍ମଃ
ସ ତେ ପୂର୍ବଂ ନୃପୋତ୍ତମ ।
କଥିତୋ ହରଗୀତାସୁ
ସମାସବିଧିକଳ୍ପିତଃ ॥

( ମହାଭାରତ, ଶାନ୍ତି, ୩୪୬. ୯, ୧୦ )

ଅର୍ଥାତ୍, ସାକ୍ଷାତ୍ ଜଗନ୍ନାଥ ନାରାୟଣ ପାଇଥିଲେ । ତାଙ୍କଠୁ ନାରଦ ପାଇଲେ । ହେ ରାଜନ୍, ଏଇପରି ଏ ମହାଧର୍ମକୁ ମୁଁ ତୁମକୁ ପୂର୍ବେ ହରଗୀତାରେ ସମାସ ଓ ବିଧି ସହିତ କହିଛି ।" ପୁଣି ଅନ୍ୟତ୍ର ମଧ୍ୟ କହିଛନ୍ତି—"ଯୁଦ୍ଧେ ବାମନଙ୍କ ଅର୍ଜୁନଙ୍କୁ ଏଇ ଧର୍ମ ବୁଝାଯାଇଥିଲା ।" (ମହାଭାରତ, ଶାନ୍ତି, ୩୪୮.୮) ।

## କୃଷ୍ଣହିଁ ଭକ୍ତିଧର୍ମର ଯଥାର୍ଥ ପ୍ରଚାରକ—

କୃଷ୍ଣ ଓ କୃଷ୍ଣ ବଂଶରେ ଏଇ ଧର୍ମ ଖୁବ୍ ପ୍ରସାର ଲଭିଥିବା କଥା ଏଇ ଭାଗବତ ଧର୍ମର ପରଂପରାରୁ ସ୍ପଷ୍ଟ ଅନୁମାନ ହୁଏ । ଏଇ ଭାଗବତ ଧର୍ମର ତତ୍ତ୍ୱ ଆଲୋଚନାରେ ପରମାତ୍ମାର ନାମ ବାସୁଦେବ, ଜୀବାତ୍ମାର ନାମ ସଂକର୍ଷଣ, ମନର ନାମ ପ୍ରଦ୍ୟୁମ୍ନ ଓ ଅହଂକାରର ନାମ ଅନିରୁଦ୍ଧ । ଏଇ ଅନିରୁଦ୍ଧହିଁ ବ୍ରହ୍ମଦେବ ବା ବ୍ରହ୍ମା । (୧.୬ ବ୍ୟାଖ୍ୟାସୂଚନା ଦେଖ) । ଏଇ ନାମ ସବୁ କୃଷ୍ଣଙ୍କ ବଂଶରେ ମିଳେ । କୃଷ୍ଣ ନିଜେ ବାସୁଦେବ, ତାଙ୍କ ବଡ଼ ଭାଇ ବଳରାମଙ୍କ ନାମ ସଂକର୍ଷଣ, କୃଷ୍ଣଙ୍କ ପୁଅ ପ୍ରଦ୍ୟୁମ୍ନ ଓ ନାତି ଅନିରୁଦ୍ଧ । ଏହା ଛଡ଼ା ଏଇ ଭାଗବତ ଧର୍ମର 'ସାତ୍ୱତ' ବୋଲି ଅନ୍ୟ ନାମ ଅଛି । କୃଷ୍ଣ ଯାଦବମାନଙ୍କର ଯେଉଁ ଶାଖାରେ ଜନ୍ମିଥିଲେ, ତାର ନାମ 'ସାତ୍ୱତ' କୁଳ ବା ସାତ୍ୱତ ଜାତି । ଅତଏବ ସଂଭବତଃ ଏଇଧର୍ମ ବେଦର ଯଥାର୍ଥ ତତ୍ତ୍ୱ ବୋଲି ମନୁ, ଇକ୍ଷ୍ୱାକୁ ପ୍ରଭୃତି ସୂର୍ଯ୍ୟବଂଶୀୟ କ୍ଷତ୍ରିୟମାନେ ଧରିଥିଲେ । ସେମାନେ ଭକ୍ତିରେ ଏଇ ଯଜ୍ଞବୁଦ୍ଧି ଧରି କର୍ମନିରତ ଥିଲେ । ସେ କଥା ଭଲକରି ପର ପ୍ରକରଣରେ ବୁଝାଯିବ । ପରେ ଏହାର ଲୋପ ହେଉଥିଲା; ମାତ୍ର ସାତ୍ୱତ ଚନ୍ଦ୍ରବଂଶୀ କୃଷ୍ଣ ଏହା ଧରି ସେ କାଳର ଇନ୍ଦ୍ର ପୂଜକମାନଙ୍କର ଅପ୍ରିୟ ହୋଇଥିଲେ । ଅର୍ଜୁନଙ୍କୁ ସେ ଏଇ ଧର୍ମର ଉପଦେଶ ଦେଇଥିବାରୁ ପରେ କୃଷ୍ଣ ଓ ଅର୍ଜୁନ ଏଇ ପରଂପରାନୁସାରେ ନର-ନାରାୟଣ ବୋଲି ପୂଜା ପାଇଲେ । ଏଠାରେ ମନେ ରଖିବାର ଅଛି, ମହାଭାରତର ଲେଖା ଓ ସଂସ୍କରଣ ଯେତେ ଅର୍ବାଚୀନ ହେଉ ନା କାହିଁକି, ସେଥିରେ ବହୁ ଅତିପ୍ରାଚୀନ ବୈଦିକ ଏପରି କି ପ୍ରାଗ୍‌ବୈଦିକ ପରଂପରାର ସଂକେତ ଅଛି । ଅନେକ ପୁରାଣ ସଂବନ୍ଧରେ ମଧ୍ୟ ସେଇ କଥା । ମାତ୍ର ସେ ସବୁର ଆଲୋଚନା ପାଇଁ ଅବକାଶ ଏଠାରେ ନାହିଁ । ଏଠାରେ ଏଇ ନାରାୟଣୀୟ ଭାଗବତ ଧର୍ମର ପରଂପରାଟି ଯେ ବହୁ ପ୍ରାଚୀନ ସ୍ମୃତିର ସଂକେତ, ଏହାହିଁ ବୁଝିବାର ଅଛି ।

## ଭକ୍ତିଧର୍ମର ବିଶିଷ୍ଟ ସଙ୍କେତ—

ବେଦରେ ବ୍ୟାପକ ଯଜ୍ଞତତ୍ତ୍ୱ କଥା ପୂର୍ବେ କୁହାଯାଇଥିଲା । ଏବେ ସେଇ ସମ୍ପର୍କରେ ଓ ସେଥି ସଙ୍ଗେ ଭକ୍ତିର ପରଂପରା ବୁଝାଗଲା । ମାତ୍ର ଗୀତାଧର୍ମର ଏଇ ଭକ୍ତିର କେତୋଟି ବିଶିଷ୍ଟ ସଙ୍କେତ ପ୍ରତି ଦୃଷ୍ଟି ନ ଦେଇ ଏ ବିଷୟ ଶେଷ କରିବା ଠିକ୍ ନୁହେଁ । ତେଣୁ ସେଇ କେତୋଟି ସଙ୍କେତ ପ୍ରତି ଦୃଷ୍ଟି ଦେଇ ଏ ପ୍ରକରଣ ଶେଷ କରିବାକୁ ହେବ ।

## ଶ୍ରଦ୍ଧା—

ଶ୍ରଦ୍ଧା କଥା କୁହାଯାଉଛି । ଯୁକ୍ତିରେ ଯଜ୍ଞର ଧାରଣା ଜ୍ଞାନରେ ସ୍ଥିର କରାଯାଇପାରେ । ବ୍ରହ୍ମର ସର୍ବବ୍ୟକ୍ତ ତଥା ସ୍ପଷ୍ଟବ୍ୟକ୍ତିରେ ବିକାଶ କଥା ବୁଝାଯାଇପାରେ । ମାତ୍ର ପରମାତ୍ମା ପରମେଶ୍ୱର ହେଲେହେଁ ମନୁଷ୍ୟଧର୍ମୀ ନ ହେଲେ ସେ ପୁଣି "ଭର୍ତ୍ତା, ପ୍ରଭୁ, ସାକ୍ଷୀ, ଶରଣ, ସୁହୃତ୍" କିପରି ହେବେ ? (୯. ୧୮) ଯେଉଁ ବିଶ୍ୱାତ୍ମାର ଧାରଣାରେ ବର୍ଣ୍ଣନା ହେଉଛି 'ଅବାଙ୍ମନସଗୋଚର' ବିଶ୍ୱବସ୍ତୁରେ ବା ମାନବର ତୁଳନାଗତିକ ମନରେ ଯାହାର ମାପ ବା କଳନା ନାହିଁ, ସେ ପୁଣି ମାନବ ବା ମାନବ ପରି ହେବେ କିପରି ? ଅବଶ୍ୟ କେହି ଯୁକ୍ତି କରି ବୁଝାଇ ପାରନ୍ତି, ମାନବ ଭିତରେ ଯେଉଁ 'ମୁଁ' ବା 'ଆତ୍ମା' ସେଥିରେ ତୁଳା କଳନାହୀନ ଅବାଙ୍ମନସ-ଗୋଚରଙ୍କର ସଙ୍କେତ ସ୍ପଷ୍ଟ । ପୁଣି ଯେ ଅବାଙ୍ମନସଗୋଚର, ତାଙ୍କର ତ ବିକାଶ ପତ୍ର ପର୍ବତଠାରୁ ମାନବାତ୍ମାର ମହାମହତ୍ତ୍ୱ, କୌଣସି ବିକାଶରେ ତ ସେ ଖଣ୍ଡ ଖଣ୍ଡ ନୁହନ୍ତି, ସବୁ ବ୍ୟକ୍ତିରେ ଅବ୍ୟକ୍ତ ପୂର୍ଣ୍ଣ, ଅଥଚ କଳନାହୀନ । ତେବେ ବନ୍ଧୁ ସୁହୃତ୍ ଶରଣ ସାକ୍ଷୀ ତ ଗୋଟିଏ ଗୋଟିଏ ପ୍ରିୟ ବ୍ୟକ୍ତି, ସେଥିରେ ହିଁ ଭଗବାନଙ୍କର ପୂର୍ଣ୍ଣବିକାଶର ସଙ୍କେତ ଦେଖି ସରସ ପ୍ରାଣରେ ବିଶ୍ୱବେଦନାରେ ନିଜକୁ ସମର୍ପଣ କରିବାର ସୁବିଧା ଛାଡ଼ିବ କାହିଁକି ? ସାଧୁ ଯୁକ୍ତିର ଏ ସ୍ୱାଦ୍ୟ ସୁଯୋଗର ସୁବିଧା ଦେଇ ଭକ୍ତିରେ ଆପ୍ଳୁତ ରହି ବିଶ୍ୱଜ୍ଞାନ ଓ ବିଶ୍ୱଧର୍ମ ସେବା କରିବା ଏତେ ସହଜ ନୁହେଁ । ମାନବର କାମନା ସ୍ୱାଧୀନତାର ବିଶୃଙ୍ଖଳାରେ ଇନ୍ଦ୍ରିୟ ଧର୍ମରେ ସବୁ ଜ୍ଞାନ ଧାରଣା ପଣ୍ଡ କରିଦଏ । ସେଥିପାଇଁ ଏଇ ଭକ୍ତିରେ ଶ୍ରଦ୍ଧାର ଏକାନ୍ତ ପ୍ରୟୋଜନୀୟତା । ବ୍ୟବହାରରେ ମଧ୍ୟ ଏଇ ଶ୍ରଦ୍ଧା ନ ଥିଲେ କର୍ମର ଶୃଙ୍ଖଳା ମୁହୂର୍ତ୍ତେ ରହିବ ନାହିଁ । ଦେଖ, ସୂର୍ଯ୍ୟ କାଲି ସନ୍ଧ୍ୟାରେ ଯାଇ ସକାଳେ ଉଠୁଛି । କାଲି ସକାଳେ ଉଠିବ ବୋଲି ପ୍ରମାଣରେ ବୁଝିବାର କଣ ଅଛି ? ଏଠାରେ ଶ୍ରଦ୍ଧା ଛଡ଼ା ଆଉ କିଛି ମାନବକୁ ସାହାଯ୍ୟ କରି ନ ପାରେ । ପୁଣି ଦେଖ, ଜ୍ୟାମିତି କହନ୍ତି ଦୁଇଟି ସରଳରେଖା ସମାନ୍ତର ଭାବରେ ବଢ଼ିଲେ, ଆଉ ମିଳିବେ ନାହିଁ । ଏଠାରେ ଶ୍ରଦ୍ଧା ଛଡ଼ା ଆଉ କଣ ଅଛି ? ଦଶହାତଯାଏ ନ ମିଳିଲେ ବୋଲି ବରାବର ମିଳିବେ ନାହିଁ କାହିଁକି ? ତଥାପି ଶିଶୁ ଏହା ଶିଖେ । ଏହା ହିଁ ଶ୍ରଦ୍ଧା ବା ବିଶ୍ୱାସ—ଜାଣିବା ଲୋକଙ୍କ

କଥାରେ ବିଶ୍ୱାସ । ଏଇପରି ପ୍ରତ୍ୟେକ କାର୍ଯ୍ୟରେ ବୁଝିବାର ଅଛି । ସେଇ ଶ୍ରଦ୍ଧାରେ ଭକ୍ତି ଦୃଢ଼ ରଖିବାକୁ ହୁଏ । ଏଥିପାଇଁ ଭଗବାନ୍ ବିଗ୍ରବର ଶ୍ରଦ୍ଧାର କଥା କହି ଭକ୍ତିଦ୍ୱାରି ଯଜ୍ଞ ବା ବିଶ୍ୱଧାରଣାରେ କର୍ମର ଉପଦେଶ ଦେଇଛନ୍ତି । ଆର୍ଯ୍ୟଧର୍ମରେ ଏଇ ଶ୍ରଦ୍ଧା ଜାଗ୍ରତ ରଖିବାକୁ ଶ୍ରୁତି ଓ ଆପ୍ତ ବାକ୍ୟକୁ ପ୍ରମାଣ ବୋଲି ମାନନ୍ତି । ସମସ୍ତେ ଯୁକ୍ତି କରି କରି ସବୁ ବୁଝିପାରିବେ ନାହିଁ । ସେଥିପାଇଁ ଶ୍ରୁତି ବା ଶାସ୍ତ୍ରର ଆପ୍ତବଚନ ପ୍ରମାଣ ବୋଲି ଧରାଯାଏ । ଆପ୍ତ ଅର୍ଥ, ବିଶ୍ୱାସଯୋଗ୍ୟ । ହଠାତ୍ କେହି ଯଦି ପଚାରେ, 'ହିମାଳୟର ଉଚ୍ଚତା କେତେ ?' ଆମେ କହୁ, '୨୯୦୦୧ ଫୁଟ ।' ସେଇପରି 'ବ୍ରହ୍ମ କିପରି ?' ପଚାରିଲେ କହୁ 'ବ୍ରହ୍ମ ନିର୍ଗୁଣ ।' ଏହା ଶ୍ରଦ୍ଧାରେ ହିଁ ସମ୍ଭବ । ଆପ୍ତବଚନରେ ଏହାର ପ୍ରମାଣ ସୁଗମ । ଭକ୍ତିର ମୁଖ୍ୟ ଉପାଦାନ ଏଇ ଶ୍ରଦ୍ଧା । ପ୍ରମାଣ ଏଇ ଶ୍ରଦ୍ଧାରେ । ଅନ୍ୟଥା ସୁଗମ ନୁହେ ।

## ଭକ୍ତିରେ ଜ୍ଞାନହିଁ ଶ୍ଳାଘ୍ୟ—

ଦ୍ୱିତୀୟ କଥା ଭକ୍ତି ଜ୍ଞାନମୂଳକ । ଯହିଁରେ ଈଶ୍ୱରଜ୍ଞାନ ହେଉ ନା କାହିଁକି, ତହିଁ ପୂର୍ଣ୍ଣ 'ଯଜ୍ଞ ପୁରୁଷ'ର ଜ୍ଞାନ ନ ହେଲେ ସେ ଭକ୍ତି ଠିକ୍ ନୁହେ । ସେଥିପାଇଁ ଭଗବାନ୍ ସ୍ପଷ୍ଟ କହିଛନ୍ତି—

"ଯେଽପ୍ୟନ୍ୟଦେବତାଭକ୍ତା
ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଽପି ମାମେବ କୌନ୍ତେୟ
ଯଜନ୍ତ୍ୟବିଧିପୂର୍ବକମ୍ । (୯. ୨୩)

ଶ୍ରଦ୍ଧା ଥାଇ ମଧ୍ୟ ଯେ ଅନ୍ୟ ଦେବତାଙ୍କୁ ଭଜନ୍ତି ବା ସେବନ୍ତି ଦେବତାଙ୍କର ଫଳଦାତୃତ୍ୱରେ ମନ ଦିଅନ୍ତି, ସେ ମତେ ଅବିଧିରେ ଭଜନ୍ତି । ଅବଶ୍ୟ ସେ ସମସ୍ତେ ମୋର ବିଶ୍ୱନିୟମରେ ନିଜ ନିଜ ଫଳ ଲାଭ କରନ୍ତି । ତଥାପି ସେମାନଙ୍କ ଫଳ ସରିଯାଏ । (୭.୨୦-୨୩) । କିନ୍ତୁ 'ବାସୁଦେବ ସବୁ' ବୋଲି ଭକ୍ତି କରିବାର ଲୋକ କୋଟିକେ ଗୋଟିଏ । ସେଇ ଯଥାର୍ଥ ଭକ୍ତ । (୭. ୧୯ ) ।

## ଅଜ୍ଞାନକୃତ ଭକ୍ତି ବିନିନ୍ଦ୍ୟ ନୁହେ—

ଏଇପରି ଜ୍ଞାନମୂଳକ ଭକ୍ତିକୁ ଶ୍ରେଷ୍ଠ ବୋଲି ବୁଝାଇଲେ ମଧ୍ୟ (୭.୧୭) ଭଗବାନ୍ ସ୍ପଷ୍ଟ କହିଛନ୍ତି, ଯେ ଯେପରି ଯାହାକୁ ଭଜୁ, ଶ୍ରଦ୍ଧା ହେତୁରୁ ସେମାନେ ସମସ୍ତେ ଉଦାର (୭.୧୮) । ମୁଁ ସର୍ବତ୍ର ସମାନ ଭାବରେ ଅଛି, ବା ସମସ୍ତଙ୍କ ପାଖେ ସମାନ । ମୋର କେହି ଶତ୍ରୁ ବା କେହି ପ୍ରିୟ, ଏପରି ବୁଝିବା ଠିକ୍ ନୁହେ । କାରଣ ମୋ ଛଡ଼ା ଯେ ବିକାଶ ନାହିଁ (୯. ୨୯) । ଏଇ ଶ୍ରଦ୍ଧାମୂଳ ଭକ୍ତିର

ବିଶେଷତ୍ୱ ଦେଖାଇ କହିଚନ୍ତି, "ଅତି ନ ବୁଝି ଦୁରାଚାର ମଧ୍ୟ ମତେ ଏକାନ୍ତ ଭାବରେ ଭଜନା କଲେ ତାକୁ ସାଧୁ ବୋଲି ବୁଝିବାକୁ ହେବ । ସବୁ ଈଶ୍ୱରଙ୍କର ବୋଲି ବିଚାରି ସେ ନିଜର ଓ ନିଜ କର୍ମର ସମର୍ପଣ କରିବାଦ୍ୱାରା, ପୁଣି ଶ୍ରଦ୍ଧା ହେତୁରୁ ଶୀଘ୍ର ଧର୍ମାତ୍ମା ବା କର୍ମୋତ୍ସର୍ଗପରାୟଣ ହୋଇ ଶାନ୍ତି ପାଏ ( ୯.୩୦, ୩୧ ) । ଭକ୍ତିରେ ଏଇପରି ଈଶ୍ୱରଙ୍କ ସର୍ବମୟତ୍ୱ-ବୋଧ ଶୀଘ୍ର ଜାଗ୍ରତ ହେଲେ କର୍ମରୁ କାମନା, ଦ୍ୱନ୍ଦ୍ୱ ପ୍ରଭୃତି ସହଜରେ ତୁଟିଯାଏ ।

## ଭକ୍ତି ସୁଲଭ ପନ୍ଥା—

ପୁଣି ଏଇ ଭକ୍ତି ସୁଲଭ ପନ୍ଥା । ଜ୍ଞାନୀଙ୍କର ଭକ୍ତି ହେବା ସହଜ । ନ ହୋଇ ଖାଲି ଜ୍ଞାନର ପରିପକ୍ୱତାରେ କର୍ମ ଚାଲିପାରେ । ମାତ୍ର ଯେଉଁମାନଙ୍କର ଜ୍ଞାନଲଭ୍ୟ ବା ସହଜଲଭ୍ୟ ନୁହେଁ, ତାଙ୍କର ବିଶ୍ୱପୁରୁଷ ବା ଈଶ୍ୱରରେ ବିଶ୍ୱାସ ଓ ଭକ୍ତି ହିଁ ଧର୍ମାତ୍ମା ହେବାର ଏକମାତ୍ର ପନ୍ଥା । ଏହା ସୂଚନା କରିବାକୁ ଭଗବାନ୍ ସ୍ପଷ୍ଟ ସଙ୍କେତ ଦେଇଛନ୍ତି ଯେ—

## ଏହା ଜନସାଧାରଣର ପ୍ରଶସ୍ତ ମାର୍ଗ—

"ଜ୍ଞାନୀ ବ୍ରାହ୍ମଣ ଓ ସ୍ୱଧର୍ମନିରତ କ୍ଷତ୍ରିୟମାନେ ବିଶ୍ୱଯଜ୍ଞ ଧାରଣା ଠିକ୍ ରଖିବାକୁ ଭକ୍ତି କରନ୍ତି । ଏଥିରେ କିଛି ବିଚିତ୍ରତା ନାହିଁ । କାରଣ ଏ ଲୋକ ଅନିତ୍ୟ ଓ ଅସୁଖ । ଏଥିରେ ସବୁ କ୍ଷଣିକ ଓ ଦୁଃଖ ଏଇ ନିତ୍ୟ ଅନୁଭୂତ ଜ୍ଞାନ ଠିକ୍ ରଖି ହୁଏ ନାହିଁ । ଅତଏବ ଜ୍ଞାନୀମାନେ ଭକ୍ତିକୁ ଧରନ୍ତି । ବିଶ୍ୱବିକାଶ ଓ କର୍ମନିୟମ ବା ଋତରେ ସ୍ପଷ୍ଟ ବ୍ୟକ୍ତଚେତନାମୂଳ ପୁରୁଷ ଦେଖି, ସେଇ ପୁରୁଷରେ ସହଜରେ ଆତ୍ମସମର୍ପଣ କରି, ଅନିତ୍ୟରେ ନିତ୍ୟତା ଓ ଅସୁଖରେ ଦ୍ୱନ୍ଦ୍ୱହୀନତାର ଆଶ୍ରୟ କରନ୍ତି (୯.୩୩) । କିନ୍ତୁ ଭକ୍ତିର ଆଉରି ବିଶେଷତ୍ୱ ଏହି ଯେ, ପାପଜନ୍ମ ପ ଷଣ୍ଡ, ପୁଣି ନାରୀ, ବୈଶ୍ୟ ଓ ଶୂଦ୍ର ଯେଉଁମାନେ କୁକର୍ମ କରନ୍ତି, ଧନାର୍ଜନରେ ଲାଗିଥାନ୍ତି, ଗର୍ଭଧାରଣ-କଷ୍ଟରେ ପଡ଼ିବାରୁ ବରାବର ନିର୍ଭରଶୀଳା ହୁଅନ୍ତି, କିମ୍ବା ଭୃତ୍ୟତ୍ୱରେ ରହି ପରର ଆଦେଶ ପାଳନରେ ଜୀବନ କଟାନ୍ତି—ଏପରି ଲୋକ ମଧ୍ୟ, ଅର୍ଥାତ, ଯେଉଁମାନଙ୍କର ଜ୍ଞାନ ପାଇବାର ସୁବିଧା ନାହିଁ, ସେମାନେ ମଧ୍ୟ ମୋତେ ଭକ୍ତିରେ ଧରିଲେ ମୁକ୍ତି ପାଇ ପାରନ୍ତି । ତାଙ୍କର ମଧ୍ୟ କର୍ମବନ୍ଧନ ତୁଟିଯାଏ । ଏଥିରୁ ସ୍ପଷ୍ଟ ହେଉଚି, ଭକ୍ତି ଏଇମାନଙ୍କର ବିଶେଷ ପ୍ରୟୋଜନ । ଜନସାଧାରଣର ସାଧନା ଓ ଚେତନାର ପୀଠ ଭକ୍ତି, ଏହାହିଁ ଭଗବାନ ଏଠାରେ ସଙ୍କେତରେ କହିଚନ୍ତି (୯.୩୨) । ତେଣୁ ଭକ୍ତି ହେଉଛି ରାଜବିଦ୍ୟା (ଶ୍ରେଷ୍ଠଜ୍ଞାନ), ରାଜଗୁହ୍ୟ (ଅତି ଗୂଢ଼, ଅବିଶ୍ୱାସୀକୁ କହିବା ଜିନିଷ ନୁହେ), ପବିତ୍ର ( ଲୋକଶୁଦ୍ଧିକର ), ଉତ୍ତମ ( ଅତି ସୁନ୍ଦର ପନ୍ଥା ), ପ୍ରତ୍ୟକ୍ଷାବଗମ

(ଈଶ୍ବରତତ୍ତ୍ୱକୁ ତର୍କାରେ ବିଶ୍ଳେଷଣ କରି ଜାଣିବା ଭଳି ଅନୁମାନସିଦ୍ଧ ନୁହେ— ଈଶ୍ୱର ପୁରୁଷଙ୍କୁ ଆଗରେ ଦେଖି ବୁଝିବାର ବସ୍ତୁ), ଧର୍ମ୍ୟ (ଏଇ ଆତ୍ମ ସମର୍ପଣରେ ଯଜ୍ଞଧର୍ମର କ୍ରିୟା ଅନୁସାରେ କର୍ମ ନିୟୁକ୍ତ ହୁଏ), କରିବାକୁ ସୁଖ (ସୁଲଭ) ଓ ଅବ୍ୟୟ (ଏଥିରେ କ୍ଷୟବୃଦ୍ଧି ବା ସନ୍ଦେହାଦିର ଅବକାଶ ନାହିଁ) (୯. ୨)" ।

## ଭକ୍ତିର ଶେଷ କଥା—

ସମସ୍ତ ଭକ୍ତ ଲକ୍ଷଣ ଏକତ୍ର କରି ଶେଷରେ ଭଗବାନ୍ ଅର୍ଜୁନଙ୍କୁ କହିଚନ୍ତି— "ଅତି ଶ୍ରଦ୍ଧା ବା ବିଶ୍ୱାସରେ ମାତ୍ର ଶୁଣନ୍ତି ଯେଉଁ କଥା ସେଇ ଶେଷ ଗୁହ୍ୟତତ୍ତ୍ୱ— ମୋର ଶେଷ କଥା ଶୁଣ (୧୮.୬୪) । ମୋ'ରଠି ମନ ଦେ (କର୍ମର ପ୍ରେରଣା ମୁହିଁ), ମତେଇ ଭକ୍ତ କର୍ (ଭକ୍ତିରେ ଆରାଧ୍ୟ ପୁରୁଷୋତ୍ତମ ମୁହିଁ) ମୋର ପାଇଁ ସବୁ କର୍ମ କର୍ (ମତେଇ ଜାଣି ଯଜ୍ଞଭାବରେ ଆତ୍ମୋତ୍ସର୍ଗ କର), ମତେଇ ନମସ୍କାର କର୍ (ମୋର ଅଂଶ ବୋଲି ନିଜକୁ ବିଚାରି ମତେଇ ସର୍ବସ୍ୱ କର୍)— ଏଇପରି ଜ୍ଞାନରେ କର୍ମର ଉତ୍ସର୍ଗ କରି ମୋ'ଠି ଭକ୍ତି କଲେ ମତେ ପାଇବୁ ବା ମୁକ୍ତ ହେବୁ—କର୍ମବନ୍ଧନ ତୁଟିଯିବ । (୧୮.୬୫) । ସବୁ ଧର୍ମ ବା ଅନ୍ୟ କର୍ମପ୍ରେରଣା ଛାଡ଼ି ମୋର ଆଶ୍ରା ନେ । ମୁଁ ତତେ ସବୁ ପାପ ବା କର୍ମବନ୍ଧନରୁ—କାମନାରୁ ମୁକ୍ତ କରିବି ।" (୧୮.୬୬) ।



## ୭ । ଯଜ୍ଞରେ ସମାଜଧର୍ମ—ସ୍ୱଧର୍ମ ଚାତୁର୍ବର୍ଣ୍ୟ—କ୍ଷତ୍ରିୟତ୍ୱ

### 'ପ୍ରଜା'ର ଅର୍ଥ ଓ ବ୍ୟାପ୍ତି—

ବିଶ୍ୱପୁରୁଷ ଓ ଯଜ୍ଞତତ୍ତ୍ୱ ତହିଁରେ ଜଡ଼ଚେତନ-ଭେଦରେ ଯେଉଁ ବ୍ୟକ୍ତିତତ୍ତ୍ୱ କୁହାଗଲା ସେଥିରେ ବୁଝାଯାଉଛି ଏଇ ବ୍ୟକ୍ତି ତଥା ବିଶ୍ୱତନ୍ତ୍ରର ଯଥାର୍ଥ ଅଭିବ୍ୟକ୍ତିର ସ୍ଥାନ ମାନବର ଆତ୍ମା । ମାନବର ଆତ୍ମୋତ୍ସର୍ଗ ବା କର୍ମର ଉତ୍ସର୍ଗ ହିଁ ଯଜ୍ଞ ତଥା ଭକ୍ତିର ସାଧନା । ମାତ୍ର ଦେଖିବାକୁ ହେବ, ଯଥାର୍ଥରେ ଏଇ କର୍ମରେ ଯେଉଁ ବାସନାତ୍ମିକା ଓ ବ୍ୟବସାୟାତ୍ମିକା ବୁଦ୍ଧିର କଥା କୁହାଯାଇଛି, ତାର ପ୍ରୟୋଗ କେଉଁଠାରେ ? କାମନାରେ ସୂର୍ଯ୍ୟର କିରଣ ଆତ୍ମସାତ୍ କଲେ, ବାୟୁର ପ୍ରବାହ ବ୍ୟବହାର କଲେ, ବିଦ୍ୟୁତ୍‌ର କମ୍ପନକୁ ଧରି କାମରେ ଲଗାଇଲେ, କିମ୍ବା ବୃଷର ବ୍ୟବହାରରେ କୃଷି କଲେ ବି ସେ କାମନା ଧରାପଡ଼ନ୍ତା ନାହିଁ । ସେ ଧରାପଡ଼େ କେଉଁଠାରେ, ଯେଉଁଠାରେ ସେଇ କାମନାରେ ଅନ୍ୟ ମାନବର ଅଧିକାରରେ ବାଧା ପଡ଼େ । ମୁଁ ସୂର୍ଯ୍ୟକିରଣ ଆତ୍ମସାତ୍ କରିବାରେ ଯେବେ ଅନ୍ୟ ମନୁଷ୍ୟର କ୍ଷତି ନ ହେଲା, ମୁଁ ବାୟୁର ପ୍ରବାହ ବ୍ୟବହାର କରିବାରେ ଯେବେ ଅନ୍ୟର ଘରୁ ଦୁର୍ଗନ୍ଧ ଯିବାରେ ବାଧା ପଡ଼ିଲା, ମୁଁ ବିଦ୍ୟୁତ୍‌ର କମ୍ପନକୁ କାମରେ ଲଗାଇବାରେ ଯଦି ଅନ୍ୟର ପେଟ ପୂରିବାରେ ବ୍ୟାଘାତ ହେଲା, ତେବେ ଯାଇ କାମନାର ବିଶୃଙ୍ଖଳା ଧରାପଡ଼େ । ଅନ୍ୟଥା ଜଡଶକ୍ତିର ବ୍ୟବହାର ତ ଦେବତାର ପୂଜା, ସେଥିରେ ତ ଶୀଘ୍ର କାମନା ଲାଭ ହୁଏ ବୋଲି କହିଲେହେଁ ଭଗବାନ୍ ସେଇ ଭକ୍ତିକୁ ଅବିଧିପୂର୍ବକ ଭଗବାନଙ୍କ ଆରାଧନା ବୋଲି କହିଛନ୍ତି । (୪.୧୨; ୭. ୨୧, ୨୨; ୯.୨୩-୨୭) କିନ୍ତୁ ଏସବୁରେ ଅନ୍ୟର ସ୍ୱାର୍ଥରେ ସଂଘର୍ଷ ହିଁ ଦୁଷ୍କୃତିର ହେତୁ । ଏଣୁ ସମାଜ ହିଁ ମନୁଷ୍ୟର ସାଧନାର ମୁଖ୍ୟ କ୍ଷେତ୍ର । ଏଇ ଅନିତ୍ୟ ଓ ଅସୁଖ ଲୋକକୁ ନିତ୍ୟ ଓ ସୁଖମୟ କଲେ ଶାନ୍ତି ତଥା ମୁକ୍ତି ମିଳେ । (୯.୩୩ ଓ ବ୍ୟା:ସୂ: ଦେଖ) ସେଥିପାଇଁ ପ୍ରଜା କହିଲେ ସମସ୍ତ ପ୍ରକାରର ବ୍ୟକ୍ତିକୁ ବୁଝାଇଲେ ମଧ୍ୟ ପ୍ରଜା ବୋଇଲେ ପ୍ରାଣୀ ଓ ମୁଖ୍ୟତଃ ମନୁଷ୍ୟ ସମାଜକୁ ବୁଝିବାକୁ ହୁଏ । ଶଂକରାଚାର୍ଯ୍ୟ ପ୍ରଭୃତି ଏଣୁ ପ୍ରଜାର ଅର୍ଥ ସବୁଠାରେ କରିଛନ୍ତି 'ବ୍ରାହ୍ମଣାଦ୍ୟାଃ ପ୍ରଜାଃ' ବା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରରେ ନିରୂପିତ ସମାଜ ।

### ସମାଜ ଓ ଯଜ୍ଞ—

ଯଜ୍ଞାର୍ଥ ଓ ପୁରୁଷାର୍ଥ କର୍ମର ବ୍ୟାପ୍ତି ମଧ୍ୟ ମୁଖ୍ୟତଃ ଏଇ ସମାଜରେ ବୁଝିବାକୁ ହେବ । ଯଜ୍ଞ, ଦାନ ଓ ତପ ଯେ ନିତ୍ୟକର୍ମ, ତାହା ଏଇ ସାମାଜିକ

ବ୍ୟକ୍ତିଠାରେ ଦେଖିବାକୁ ହେବ । ଏଇ ଲକ୍ଷ୍ୟରେ ବୈଦିକ ଯଜ୍ଞ-ଚକ୍ରକୁ ଲକ୍ଷ୍ୟ କରି ଯଜ୍ଞାର୍ଥ କର୍ମକୁ ବୁଝାଇ ଭଗବାନ୍ କହୁଚନ୍ତି—

"ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା
ପୁରୋବାଚ ପ୍ରଜାପତିଃ ।
ଅନେନ ପ୍ରସବିଷ୍ୟଧ୍ୱଂ
ଏଷ ବୋଽସ୍ତ୍ୱିଷ୍ଟକାମଧୁକ୍ ॥" (୩. ୧୦)

ବିଧାତା ସୃଷ୍ଟି କଲାବେଳେ ଯଜ୍ଞ ସହିତ ପ୍ରଜା ବା ସାମାଜିକ ମାନବଙ୍କୁ ସୃଷ୍ଟି କରିଚନ୍ତି । ସୃଷ୍ଟି କରି ସେପରି କି କହି ଦେଇଚନ୍ତି—ଏଇଥିରେ ତୁମେମାନେ ବଢ଼ । କାମନାରେ ଛଟ୍‌ପଟ୍ ହୁଅ ନାହିଁ । ଏଇ ଯଜ୍ଞ କଲେ ମନକୁ ତୁମର ଯାହା ପାଇବାର ତା ତୁମକୁ ମିଳିବ । ନିଜେ ପାଇବାକୁ ଛଟ୍‌ପଟ୍ ହୋଇ ସମାଜରେ ବିଶୃଙ୍ଖଳା ସୃଷ୍ଟି କର ନାହିଁ । ଅବଶ୍ୟ ଏ କଥାଗୁଡ଼ିକ ବେଦର ଯଜ୍ଞକର୍ମ ଉପମାରେ ମାନବଙ୍କୁ ଉପଦେଶ ଦେଲା ପରି ବୁଝାଇଚନ୍ତି, କିନ୍ତୁ ଗୀତାର ସମାଜଧର୍ମ ଏଥିରେ ସଙ୍କେତରେ ପ୍ରକାଶ ପାଇଚି । ତେଣୁ ପୁଣି ସେଇ କଥାକୁ ବୁଝାଇ କହୁଚନ୍ତି—

"ଦେବାନ୍ ଭାବୟତାନେନ
ତେ ଦେବା ଭାବୟନ୍ତୁ ବଃ ।
ପରସ୍ପରଂ ଭାବୟନ୍ତଃ
ଶ୍ରେୟଃ ପରମବାପ୍ସ୍ୟଥ ॥ (୩. ୧୧)

ଏଇ ଯଜ୍ଞରେ ବା ନିଜର କର୍ମ-ଉତ୍ସର୍ଗ ଅଥବା ଦାନ କରି—ଫଳକଥା, ନିଜର କର୍ତ୍ତବ୍ୟ କରିବାରେ ତୁମେ ଦେବଙ୍କୁ ଭାବ ବା ଲକ୍ଷ୍ୟ କର । ସେଥିରେ ତୁଷ୍ଟ ହୋଇ ସେମାନେ ତୁମକୁ ଭାବନ୍ତୁ ବା ତାଙ୍କ କର୍ମରେ ତୁମକୁ ଲକ୍ଷ୍ୟ କରନ୍ତୁ । ଏଇପରି ପରସ୍ପରକୁ ଭାବିବାରେ ସମସ୍ତେ ପରମ ଶ୍ରେୟ ଲାଭ କର । ସମାଜର ଏଇଥିରେ ମଙ୍ଗଳ ଓ ଶ୍ରୀବୃଦ୍ଧି ହେଉ । କଥାକୁ ଆଉରି ସ୍ପଷ୍ଟ କରି କହିଲେ— ତୁମେ ଯେଉଁ ଦେବଙ୍କୁ ଯଜ୍ଞ ବା ନିଜ କର୍ମରେ ଭାବୁଚ ସେମାନେ ତୁମକୁ ଇଷ୍ଟ ଭୋଗ ଦିଅନ୍ତୁ, ବା ତାଙ୍କ କର୍ମରେ ତୁମକୁ ତୁମର ଯା ଦରକାର ତା ମିଳୁ । କିନ୍ତୁ ତା ମିଳିଲେ ମଧ, ତାଙ୍କଠାରୁ ପାଇ ମଧ ତାଙ୍କୁ ନ ଦେଇ ଯେ ଖାଲି ପାଇବା ଓ ଭୋଗ କରିବାରେ ମନ ଦିଏ, ସେଇ ଏକା ଚୋର (୩.୧୨) । ଏଇପରି ନିଜର କର୍ମ ଅନ୍ୟ ପ୍ରତି କରି ତହିଁର ନିସ୍ୱତ ପ୍ରତିଦାନରେ ମିଳୁଥିବା ଭୋଗ ଯେ ଭୋଗ କରେ ( 'ଯଜ୍ଞଶିଷ୍ଟାଶୀ' ) ସେଇ ଏକା କର୍ମବନ୍ଧନରୁ ମୁକ୍ତ ହୁଏ । ନଚେତ୍ ଯେ ଖାଲି ଆପଣା ପାଇଁ ସବୁ ଭୋଗ ଯୋଗାଡ଼ କରିବାରେ ମାତି ଲାଗିଯାଏ, ସେ ଭୋଗ କରେ ନାହିଁ ଯେ ଖାଲି ପାପ ଗିଳେ । ଅର୍ଥାତ୍ ସେ କାମନାରେ ଛଟ୍‌ପଟ୍ ହୋଇ

କର୍ମରେ ଘାର୍ଣ୍ଣି ହୁଏ (୩. ୧୩) । ତା ପରେ ଏଇ କର୍ମର ଆଦାନ ପ୍ରଦାନ ଭାବକୁ ଦୃଢ଼ କରିବା ପାଇଁ ବିଶ୍ୱକର୍ମରେ ବ୍ୟକ୍ତିର ଆଦାନ ପ୍ରଦାନ ଲକ୍ଷ୍ୟରେ ଯଜ୍ଞଚକ୍ରର କଥା କହି ପୁଣି କହୁଚନ୍ତି, ଏଇ କର୍ମର ଆଦାନ-ପ୍ରଦାନ-ଚକ୍ରରେ ଯେ ସମାଜରେ ନ ଚଳେ, ସେଇ ଏକ ଇନ୍ଦ୍ରିୟତର୍ପିସ୍ୱାରେ ସୁଖ ଖୋଜି ପାପରେ ଜୀବନ କଟାଏ । ତା ଜନ୍ମ ବୃଥା (୩.୧୪-୧୬) । ତା ପରେ ୪ର୍ଥ ଅଧ୍ୟାୟରେ ଏଇ ଯଜ୍ଞର କର୍ମ-ଉତ୍ସର୍ଗ ବା କାମନା ସଂଯମ ତତ୍ତ୍ୱର ଜ୍ଞାନ ବୁଝାଇସାରି (୪. ୨୩-୩୪) ସ୍ପଷ୍ଟ କହୁଚନ୍ତି, 'ଯଜ୍ଞଶିଷ୍ଟାଶୀ'ମାନେ ହିଁ ସନାତନ ବ୍ରହ୍ମ ପାଆନ୍ତି । ମାତ୍ର ଯେ ଏଇ ଯଜ୍ଞ ବୁଦ୍ଧିରେ କର୍ମ ନ କରେ, ତାର ବ୍ରହ୍ମଲୋକ ପାଇବା ତ ପରକଥା, ଏଇ ମନୁଷ୍ୟ ଲୋକ ହିଁ ନାହିଁ; ଅର୍ଥାତ୍ ଏଇ ସମାଜରେ ତାର ଶାନ୍ତି ବା ସୁଖ ନାହିଁ (୪.୩୧) । କାହିଁକି ନା, ଏ ଯେତେ ପ୍ରକାର ଯଜ୍ଞର କଥା କୁହାଗଲା, ସେସବୁ କର୍ମସମ୍ବନ୍ଧୀୟ କଥା । ଏହା ହିଁ ଜାଣିଲେ ଏକା କର୍ମ ବନ୍ଧନରୁ ବା କାମନା ତାଡ଼ନାରୁ ମୁକ୍ତି ପାଇବ (୪.୩୨) କର୍ମରେ ହିଁ—ଏଇ ମନୁଷ୍ୟ ଲୋକ ବା ସମାଜର କର୍ମରେ ହିଁ —ଏଇ ଯଜ୍ଞର ତତ୍ତ୍ୱ ବୁଝିନେବାକୁ ହେବ । ଏହା ହିଁ ମାନବର ସମାଜର-ଧର୍ମ । ଏଇ ସମ୍ପର୍କରେ ମଧ୍ୟ ଭଗବାନ୍ କହୁଚନ୍ତି, 'ଗୁଣ କର୍ମ ବିଭାଗରେ ମୁଁ ଚାତୁର୍ବର୍ଣ୍ଣ୍ୟ ସୃଷ୍ଟି କରିଚି ।' ତେବେ ଏଇ ସମାଜ ଧର୍ମ, ବା ଯେଉଁ କର୍ମରେ ସମାଜରେ ଯଜ୍ଞ ବୁଦ୍ଧି ଫୁଟେ, ସେ କଣ ? ଚାତୁର୍ବର୍ଣ୍ଣ୍ୟର ତା ସଙ୍ଗେ କି ସମ୍ବନ୍ଧ ? ପରସ୍ପର ପ୍ରତି କର୍ମ ବା କର୍ତ୍ତବ୍ୟଦୃଷ୍ଟିରେ କର୍ମସାଧନ ହିଁ ସେଇ ସମାଜଧର୍ମ ବା ଏ ଲୋକରେ ଯଜ୍ଞ ସାଧନା ।

## ସମାଜର ଆଦର୍ଶ—'ସତ୍ୟଂ ଶିବଂ ସୁନ୍ଦରଂ'

ପ୍ରଥମ କଥା ଏଇ ସାମାଜିକ ବ୍ୟକ୍ତିର ଯଜ୍ଞରେ ଆଦର୍ଶ ଠିକ୍ ବ୍ରହ୍ମ ନୁହେ । ଏଇ ବିଶ୍ୱ-ଯଜ୍ଞପୁରୁଷଙ୍କୁ ସାମାଜିକ ମାନବ କହେ—"ସତ୍ୟଂ ଶିବଂ ସୁନ୍ଦରଂ ।" ଜଗତର ସତ୍ୟ ବା ଅଧ୍ୟାତ୍ମ ସମ୍ବନ୍ଧରେ ଏଇ ଧାରଣାଟି ଭଲ କରି ବୁଝିବାକୁ ହେବ । ଏଇ ସତ୍ୟ ହିଁ ଶିବ, ଅର୍ଥାତ୍ ମଙ୍ଗଳ । ପୁଣି ଏଇ ମଙ୍ଗଳ ହିଁ ସୁନ୍ଦର । ଏ ମଙ୍ଗଳ କାହାର ? ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ପ୍ରଭୃତି ବିଶ୍ୱ ବ୍ୟକ୍ତିର ଯଦି କିଛି ମଙ୍ଗଳ ଥାଏ, ତାହା ମାନବ ମଙ୍ଗଳର ହିଁ କଳ୍ପନାର ପ୍ରସାର ବା ସୂର୍ଯ୍ୟାଦିରେ ଆରୋପ । ପୁଣି 'ସୁନ୍ଦର' ଅନୁଭୂତିଟି ସ୍ପଷ୍ଟ ମନୁଷ୍ୟର । ଏଇ ଜଗତର ସତ୍ୟକୁ ମଙ୍ଗଳରେ ହିଁ 'ସୁନ୍ଦର' ବୋଲି ଦେଖିବାକୁ ହେବ । କେବଳ ସେତିକି ନୁହେଁ, 'ସଚ୍ଚିଦାନନ୍ଦ'ର କଥା କୁହାଯାଇଚି । ସେଠାରେ ମଧ୍ୟ ବୁଝାଯାଇଚି ମାନବର 'ମୁଁ'ର ଧାରଣା ଓ ସୁଖାନୁଭୂତିକୁ ବିସ୍ତୀର୍ଣ୍ଣ କରି, ବିଶ୍ୱ ବ୍ୟକ୍ତିରେ ଏଇ ମାନବଭାବ ଆରୋପ କରିବା ହିଁ ସଚ୍ଚିଦାନନ୍ଦର ଭିତ୍ତି । ମାନବର ବୁଝିବା ବା ଧାରଣା କରିବା ପାଇଁ ନିଜ ଛଡ଼ା ଅନ୍ୟ କିଛି ସାଧନା ନାହିଁ । ସେଇ ସାଧନରେ ସେ ବିଶ୍ୱର ଧାରଣା

କରେ । ବିଶ୍ୱବ୍ୟାଖ୍ୟାର ସୂତ୍ର ପାଇଁ ସେ ଭିତରକୁ ଗୃହେଁ । ତେଣୁ ସଚ୍ଚିଦାନନ୍ଦରେ ପହଞ୍ଚି ଶାନ୍ତ ହୁଏ । ନିଜେ ପୁରୁଷ । ତେଣୁ ବିଶ୍ୱପୁରୁଷଙ୍କୁ ସେଇ ସାଧନରେ ବ୍ୟାଖ୍ୟା କରେ । ତା ଛଡ଼ା ଅନ୍ୟ କିଛି ଉପାୟ ଏ ବିଶ୍ୱରେ ତା ହାତେ ନାହିଁ । ହେଲେହେଁ ଏଠାରେ ବ୍ୟକ୍ତିର ଭିତର ଛଡ଼ା ଆଉ କୁଆଡ଼େ ଗୃହିଁବାର ପ୍ରୟୋଜନ ନାହିଁ । ମାତ୍ର ସତ୍ୟକୁ ଶିବ ଓ ସୁନ୍ଦର ବୋଲି ଧାରଣା କରିବାରେ କି ତତ୍ତ୍ୱ ଅଛି ଦେଖାଯାଉ । ଏ ସତ୍ୟର ଶିବ ଓ ସୁନ୍ଦର ପୁଣି ଗୁଣ ନୁହେ । ସଚ୍ଚିଦାନନ୍ଦରେ ଯେପରି ଯାହା ସତ୍, ତାହା ହିଁ ଚିତ୍, ପୁଣି ତାହା ହିଁ ଆନନ୍ଦ । ଏ ତିନୋଟି ଏକ ବସ୍ତୁ—ନାମ କେବଳ ଭିନ୍ନ । ସେଇପରି ସତ୍ୟ ଯାହା, ମଙ୍ଗଳ ତାହା, ସୁନ୍ଦର ତାହା । ଏଇପରି ସତ୍ୟକୁ ମଙ୍ଗଳ ରୂପେ ଓ ସୁନ୍ଦର ରୂପେ ଦେଖିବାରେ ମୂଳ ହେଉଛି ସମାଜର ଧାରଣା । ଲୋକର ମଙ୍ଗଳ ହିଁ ନିଜର ମଙ୍ଗଳ । ସେଇ ଏକା ସୁନ୍ଦର । ତାହା ହିଁ ସତ୍ୟ । ତ ହାର ହିଁ ସେବା କରିବାକୁ ହେବ । ଏଇ ମଙ୍ଗଳ ଯଦି ଆଦର୍ଶ ହୁଏ, ତେବେ ସମାଜ ଛଡ଼ା ଏହାର ସାଧନା କ୍ଷେତ୍ର ନାହିଁ । ଯେଉଁଠାରେ ଲୋକ ଲୋକ ମଧ୍ୟରେ କାମନାରେ ବିରୋଧ, ସେଇଠାରେ ସମତା ରଖିଲେ ମଙ୍ଗଳ ହେବ । ସେ ହେଉଛି ସମାଜ । ଉପରେ ଯେଉଁ ଯଜ୍ଞର ଆଦାନ ପ୍ରଦାନ କଥା କୁହାଗଲା, ତାହା ଏଇ ସମାଜର ଧାରଣା ବା ଧର୍ମ ।

## କାମନା ଓ ଆତ୍ମଜ୍ଞାନ—

କାମ ବା କାମନା ମନୁଷ୍ୟର ପ୍ରାକୃତିକ ବୃତ୍ତି କହିଲେ ଚଳେ । ଭୋଗର ସ୍ପୃହା ଓ ସେଇ ଭୋଗପାଇଁ ସଂଗ୍ରହ ବା ସଂଚୟ ମାନବର ଜୀବଧର୍ମ, ଏ କଥା ପ୍ରସଂଗାନ୍ତରରେ ବୁଝାଇ ଦିଆଯାଇଛି । ଏଇ କାମନା ମାନବର ବିଶେଷ । ଜନ୍ତୁର ତାହା ଅଛି; ମାତ୍ର ଜନ୍ତୁ-ଜଗତରେ ଆୟୋଜନ ଓ ସଂଚୟ ପାଇଁ ବୁଦ୍ଧି ବା ସ୍ଥିର ଆତ୍ମଜ୍ଞାନ ନାହିଁ । ଯଦି ଅଛି, ତାହା ଆଦୌ ସ୍ପଷ୍ଟ ନୁହେ । କାଲି ବିରାଡ଼ି ଦୁଧ ଖାଇଯାଇଛି ବୋଲି ଆଜି ତାକୁ ଦଣ୍ଡ ଦେବାର କିଛି ଅର୍ଥ ନାହିଁ । ବିରାଡ଼ିର ସ୍ଥିର ଆତ୍ମଜ୍ଞାନ ଥିବାର କୌଣସି ପ୍ରମାଣ ନାହିଁ । ପୋଷା ମାନିବାରେ ଯାହା କିଛିଏ ସ୍ଥିର ଆତ୍ମଜ୍ଞାନର ଧାର୍‌ ଦେଖାଯାଏ, ତାହାର ଦୃଢ଼ତା ନାହିଁ । ମାତ୍ର ମନୁଷ୍ୟର ଆତ୍ମଜ୍ଞାନ ଧାରାବାହିକ ଭାବରେ ସ୍ଥିର । ପିଲାଦିନେ ଆମେ ଯେଉଁ ବ୍ୟକ୍ତି, ଏବେ ମଧ୍ୟ ସେଇ ବ୍ୟକ୍ତି । ଆମର ଦୋଷ ଗୁଣ ଯେତେ ପୂର୍ବେ ହେଉ ନା କାହିଁକି ତାର ଦଣ୍ଡ ପୁରସ୍କାର ଆଜି ହୋଇପାରେ । ଏପରି କି ସେଇ ଧାରଣାରେ ଜନ୍ମାନ୍ତରରେ ମଧ୍ୟ ବିଶ୍ୱାସ କରିବାକୁ ହୁଏ । ଯେଉଁ ମାନବ ଭିତରେ ଜନ୍ମାନ୍ତରର ସ୍ପଷ୍ଟ ଧାରଣା ନାହିଁ, ସେମାନଙ୍କର ପରକାଳ ଓ ତହିଁରେ ଦଣ୍ଡ ପୁରସ୍କାରର ଧାରଣା ଅଛି । ଏ ଜନ୍ମରେ ଦୁଷ୍କୃତ ସୁକୃତ ଦଣ୍ଡ ଓ ପୁରସ୍କାରରେ ସମାପ୍ତ ହେଉ ନାହିଁ । ଏ ଜନ୍ମର ଦୁଷ୍କୃତରେ ମଧ୍ୟ ଲୋକର ବିଭବ, ପୁଣି ସୁକୃତରେ ଦୁରବସ୍ଥାର ମୀମାଂସା କରିବାକୁ

ଯାଇ ପରଜନ୍ମ ଓ ପରକାଳରେ ବିଶ୍ୱାସ କରିବାକୁ ହୁଏ । ଗୀତା ଓ ଭାରତ-ଧର୍ମରେ କର୍ମବନ୍ଧନ ଥିବାଯାଏ ଜନ୍ମ ହେଉଥାଏ । ପୁଣି କର୍ମର ଫଳକାମନା ତୁଟି କର୍ମ ନିଷ୍କାମ ହୋଇଗଲେ ସେ ଜନ୍ମବନ୍ଧ ଛିନ୍ନ ହୁଏ ଓ ମୁକ୍ତ ହୁଏ । ସେ କଥା ଆଉ ବିଶେଷ ବୁଝାଇବାର ସ୍ଥାନ ଏ ନୁହେ । ମାତ୍ର ଆତ୍ମଧାରଣାର ଏଇ ସ୍ଥିତିରେ ମାନବ କାମନା ପାଇଁ ଫଟସ୍ତ କରେ, ସେଥିରେ ପୁଣି ଅନ୍ୟକୁ ବଂଚିତ କରି ନିଜେ ସବୁ ନିଜର କରିନେବାକୁ ଯାଏ ।

## ଇନ୍ଦ୍ରିୟାଦି କାମନାର ସ୍ଥାନ—

ଏଇ କାମନାର ପ୍ରଧାନ ଅଧିକାର-ଭୂମି ଇନ୍ଦ୍ରିୟ । ଏଇ ଇନ୍ଦ୍ରିୟକୁ ଅଧିକାର କରି କାମ କ୍ରମେ ମନ ଓ ବୁଦ୍ଧିକୁ ଯାଏ । ବୁଦ୍ଧି କାମନାର ଅଧୀନ ହେଲେ ସବୁ କର୍ମରେ ଏଇ କାମନା ବା ଭୋଗର ଇଚ୍ଛା ହିଁ ପ୍ରେରଣାର ସ୍ଥାନ ହୁଏ (୩.୪୦) । ଏଇ କାମନା ଭୋଗରେ ପୂର୍ଣ୍ଣ ନ ହୋଇ କ୍ରମେ ଘିଅରେ ନିଆଁ ଜଳିଲା ପରି ବେଳକୁ ବେଳ ବଢ଼େ (୩.୩୭) । ଆତ୍ମଜ୍ଞାନ-ଗତ ସ୍ୱଧର୍ମରେ ଏହାହିଁ ଶତ୍ରୁ (୩.୩୩,୩୪) । ଇନ୍ଦ୍ରିୟ ମନ ବୁଦ୍ଧିରୁ ଆତ୍ମଜ୍ଞାନ ଛଡ଼ାଇ କ୍ରମେ ଉଠାଇବ ଓ ସମସ୍ତଙ୍କ ଉପରେ ବା ଏସବୁରୁ ଅତୀତ ଆତ୍ମାରେ ଠିକ୍ ରହିଲେ, ଏ କାମ ନଷ୍ଟ ହେବ (୩.୪୨, ୪୩) । ଇନ୍ଦ୍ରିୟର ଅର୍ଥ ବା ଭୋଗଜନିତ କର୍ମରେ ନ ମାତିବାର ଉପାୟ ହେଉଛି ଭୋଗର ସ୍ପୃହା ଛାଡ଼ିବା । ସେଇ ଛାଡ଼ିବାରେ ହିଁ ମନୁଷ୍ୟ ଯୋଗାରୂଢ଼ ହୁଏ । ସେଥିପାଇଁ ଇନ୍ଦ୍ରିୟ ଭୋଗକୁ ଧରି କର୍ମ ନ କରି, 'ମୁଁ' ଇନ୍ଦ୍ରିୟ ନୁହେ, କି ଇନ୍ଦ୍ରିୟର ଚାଳକ ଓ ଇନ୍ଦ୍ରିୟରେ ପ୍ରଭାବିତ ମନ ନୁହେ । ତାଠାରୁ ଅଧିକ ଓ ଅତୀତ ମୁଁ । ସେ ମୁଁ-ରେ ବୁଦ୍ଧି ଠିକ୍ ରଖି କର୍ମ କଲେ କର୍ମ ନିଷ୍କାମ ହୁଏ (୬. ୪, ୫) । ଏଇପରି ଗୀତାରେ ଇନ୍ଦ୍ରିୟଭୋଗ ଓ ଦୁରନ୍ତ କାମନାରୁ ମନକୁ ଛଡ଼ାଇ ଆତ୍ମଜ୍ଞାନ ଠିକ୍ ରଖିବାର ବହୁ ଉପଦେଶ ଅଛି ।

## କାମନାର ସମାଜରେ ଗତି—

ଏଇ କାମନା ଛାଡ଼ି କର୍ମ କରିବା ହିଁ ମଙ୍ଗଳ । ଏଇ ମଙ୍ଗଳ ନିଜର ହେଲେହେଁ, ମନୁଷ୍ୟ ଯଦି ଏକା ଥାନ୍ତା, ତେବେ କାମନାରେ ମଙ୍ଗଳ ଅମଙ୍ଗଳ ସମାନ ହୁଅନ୍ତା । ନିଜର କାମନାରେ ଅନ୍ୟର ପ୍ରାପ୍ୟର ବାଧା ନ ପଡ଼ିଲେ, କାମନାରେ ମଧ୍ୟ ଅମଙ୍ଗଳ କଣ ତା ବୁଝି ହୁଅନ୍ତା ନାହିଁ; ଧନୀ ଭୋଗୀ ଓ ଦରିଦ୍ର ଦୁର୍ଗତର ପ୍ରଭେଦ ଦେଖାଯାଆନ୍ତା ନାହିଁ । ଜଣେ ଭୋଗର ଆୟୋଜନରେ ଧନୀ ହୁଏ, ସେଥିରେ ଅନ୍ୟମାନଙ୍କର ପ୍ରାପ୍ୟ, ଅନ୍ୟମାନଙ୍କୁ ମିଳେ ନାହିଁ । କାମନାର ଏଇ ମହାପାପଲୀଳା ସମାଜରେ ସର୍ବତ୍ର ଲକ୍ଷ୍ୟ କରାଯାଇପାରେ ।

## କାମନା ଓ ସମାଜ କର୍ମ—

ଏଇ କାମନାର ପାପଲୀଳା ଧ୍ୱଂସ ନ ପାଇଲେ ମାନବର ଆତ୍ମାର ମୁକ୍ତି ନାଇ । ଏଇ ମୁକ୍ତି ସମାଜରେ କିପରି ସାଧନ କରିବାକୁ ହେବ ? ଭୋଗସୁଖ ପାଇଁ

ଯ୍ବା ପାଇବ, ତା ରଖିବ ବୋଲି କାମନା ପଛରେ ଦୌଡ଼ିଲେ ତା ହେବ ନାହିଁ । ମୋର ଯାହା ଦବାର ଅଛି, ତା ମୁଁ ଅନ୍ୟକୁ ଦେବ; ସେଥିରେ ହିଁ ମୋର ଇଷ୍ଟ ଲାଭ ହେବ । ଏଇ ଯଜ୍ଞ-ଭାବରେ କର୍ମ କଲେ ଏଇ କାମନା ରହି ନ ପାରେ । ଏଇ ଯଜ୍ଞରୁ ଯାହା ଅବଶେଷ ବା ଏଇପରି ମୁଁ ଅନ୍ୟକୁ ମୋର ଦବାର ଦେଲେ, ଅନ୍ୟର ଦବାରେ ମୋତେ ଯାହା ମିଳିବ ତାହାଇ ମୋର ସବୁ ବୋଲି ଯଜ୍ଞଶିଷ୍ଟାଶୀ ହେବାଇ ମୁକ୍ତିର ପନ୍ଥା । ନିଜେ ସବୁ ପାଇବା ବୁଦ୍ଧିରେ କର୍ମ କଲେ ପାପ ହୁଏ ବା ସେଇ ପ୍ରାପ୍ତି ପାପର ପ୍ରାପ୍ତି ହୁଏ ବୋଲି ସୂଚନା ଦିଆଯାଇଛି (୩.୧୩; ୪.୩୧) । ଯଜ୍ଞରୁ ବୃଷ୍ଟି ହୁଏ, ବୃଷ୍ଟିରୁ ଅନ୍ନ ହୁଏ, ଅନ୍ନରୁ ଭୂତ (ପ୍ରାଣୀ) ମାନେ ହୁଅନ୍ତି ଓ ଭୂତରୁ କର୍ମ ହୁଏ, ପୁଣି କର୍ମରୁ ଯଜ୍ଞ ହୁଏ (୩. ୧୪) । ଏଇ କର୍ମ ପୁଣି ବ୍ରହ୍ମର ପ୍ରକାଶ-ପ୍ରକୃତି । ତେଣୁ ସର୍ବବ୍ୟାପୀ ବ୍ରହ୍ମ କର୍ମରେ ପ୍ରତିଷ୍ଠିତ (୩.୧୫) । ଏଠାରେ ମଧ୍ୟ ଯେଉଁ କର୍ମଚକ୍ରଟି ବ୍ରହ୍ମର ଯଥାର୍ଥ ସ୍ୱରୂପ ବୋଲି କୁହାଯାଇଛି, ସେଥିରେ ଏକର କର୍ମରେ ଅପରର ଜନ୍ମ,, ଅର୍ଥାତ୍ ଏକର ଆତ୍ମବିକାଶରେ ଅପରର ଅଭାବରେ ସଦ୍‌ଭାବ ଏଇ ପରଂପରାରେ ସମସ୍ତ ବିକାଶର କର୍ମ ଚାଲିଛି ଏ ଭାବଟି ମଧ୍ୟ ସ୍ପଷ୍ଟ । ଯଜ୍ଞାର୍ଥ କର୍ମ ତେଣୁ ଅପରର ଅଭାବ-ପୂରଣ ଉଦ୍ଦେଶ୍ୟରେ କରାହେବା କର୍ମ ବା ଅନ୍ୟ ପ୍ରତି ନିଜର କର୍ତ୍ତବ୍ୟ । ସେଥିରେଇ ବିଶ୍ୱର ପ୍ରକାଶ ଓ ସେଥିରେଇ ପ୍ରଜାର ଶ୍ରୀବୃଦ୍ଧି ଓ ଜଗତ୍ ତଥା ସମାଜର ପରମ ଶ୍ରେୟଃ ବା ମଙ୍ଗଳ (୩. ୯,୧୦) ।

## ସମାଜ ହିଁ ମାନବର ସାଧନାକ୍ଷେତ୍ର—

ଏଇ ସମାଜ ହିଁ ମନୁଷ୍ୟର ସାଧନାକ୍ଷେତ୍ର । ମାନବ-କର୍ମର ଲୀଳା ଏଇ ସମାଜ ମଧ୍ୟରେ । ସାମାଜିକ ମାନବର ପରସ୍ପର ସମ୍ବନ୍ଧରେ କର୍ମ ନିୟମିତ ହୁଏ । ବିଶ୍ୱଧର୍ମରେ ସମସ୍ତେ ବ୍ୟକ୍ତିମାନେ ନିଜ ନିଜର କର୍ମ କରିଯାନ୍ତି । ଏଇ କର୍ମ କରିଯିବାରେ ତାଙ୍କର ଆତ୍ମବିକାଶ ହୁଏ । ପ୍ରତ୍ୟେକର ବିଶ୍ୱପ୍ରକାଶର ନିୟତିରେ କେତେଗୁଡ଼ିଏ ନିୟତ କର୍ମ ଅଛି । ପୂର୍ବେ ପଦାର୍ଥର ଉଦାହରଣରେ ଏହା କୁହାଯାଇଛି । ସେମାନେ ଏଇ ନିୟତ କର୍ମରେ ଆତ୍ମପ୍ରକାଶ କରନ୍ତି । କାହାରଠାରୁ କିଛି ଦାବୀ କରି ଆତ୍ମାର ଶ୍ରୀବୃଦ୍ଧି କରନ୍ତି ନାହିଁ । ମାତ୍ର ତାଙ୍କର ଯାହା ଇଷ୍ଟ ତା ଅନ୍ୟର ଆତ୍ମପ୍ରକାଶଜନିତ ନିୟତ କର୍ମରେ ମିଳିକୁ ଲାଭ ହୁଏ । ସୂର୍ଯ୍ୟ ଓ ବାୟୁ ନିଜ ଆତ୍ମକର୍ମ କରିଯିବାରେ ପତ୍ରର ଜୀବନନିର୍ବାହରେ ଯାହା ଦରକାର ତା ମିଳିକୁ ହୋଇଯାଏ ଓ ପତ୍ର ନିଜର ବୃକ୍ଷକୁ ଯା ଦବାର ତା କରି ନିଜର ଆତ୍ମପ୍ରକାଶ ଧର୍ମ ପାଳନ କରେ । ଏ ଉଦାହରଣ ଦିଆଯାଇଛି । ତାହା ହିଁ ବିଶ୍ୱଯଜ୍ଞର ନିୟମ । ମାତ୍ର ମାନବର ସବୁ କର୍ମ ସମାଜରେ । ତେଣୁ ସମାଜରେ ମାନବ ସେଇପରି କର୍ମ କରିବା ହିଁ ଯଜ୍ଞ କର୍ମ । ତାହାଇ ମାନବ ଦେବତାର ଯଜ୍ଞ କର୍ମ ବୋଲି ଉପରେ କୁହାଗଲା । ଏଠାରେ ଦେବତା କହିଲେ ଅନ୍ୟ ପୁରୁଷ—ଆରାଧ୍ୟ ପୁରୁଷ । ଏଇ

ସଂଙ୍କଟରୁ ବୁଝିବାକୁ ହେବ, ସମାଜରେ ଯାହା ପ୍ରତି ଆମର କିଛି କରିବାର ଅଛି ସେ ଆମର ଆରାଧ୍ୟ ପୁରୁଷ । ସେଇ କର୍ମ ହିଁ ନିଯୁକ୍ତ କର୍ମ । 'ମାନବର ଶ୍ରୀବୃଦ୍ଧିର କ୍ଷେତ୍ର ସମାଜ । ଏଇ ନିଯୁକ୍ତ କର୍ମ ହିଁ କର୍ତ୍ତବ୍ୟ ବା 'ସ୍ୱଧର୍ମ । ସମାଜର ବିକାଶରେ ଏଇ ସ୍ୱଧର୍ମର ଆଚରଣ ହିଁ ଶ୍ରେୟଃର ପନ୍ଥା ।

## କର୍ମଚେତନାରେ ଦୁଇଟି ଦୃଷ୍ଟି—

### (୧) ଅଧିକାର—

ସମାଜରେ କର୍ମ କରିବାର ଦୁଇଟି ଦୃଷ୍ଟି—ଗୋଟିଏ କର୍ତ୍ତବ୍ୟ ଓ ଗୋଟିଏ ଦାବୀ । ପ୍ରତ୍ୟେକେ ନିଜ ନିଜର ଯାହା ପାଇବାର ଅଛି, ତାହା ଦାବୀ କରି ଆଦାୟ କଲେ, ସମାଜ ଚାଲିବ । ଜଣେ ଅନ୍ୟଠାରୁ ଦାବୀ ଆଦାୟ କରିବ । ଅନ୍ୟ ଜଣକ ମଧ୍ୟ ସେଇପରି ପ୍ରଥମ ଲୋକଠାରୁ ତାର ଦାବୀ ଆଦାୟ କରିବ । ଏଇପରି ପରସ୍ପର ପରସ୍ପରଠାରୁ ଦାବୀ ଆଦାୟ କରିବାରେ ସମସ୍ତେ ନିଜ ନିଜର ପ୍ରାପ୍ୟ ପାଇବେ ଓ ଯାହାର ଯାହା ଦେବାର ଅଛି, ବାଧ୍ୟ ହୋଇ ଦେବେ । ଧର, ରାଜା ପ୍ରଜାର ସମ୍ବନ୍ଧ; ବା ଆଜିକାଲି କଥାରେ ରାଜ୍ୟ ଓ ରାଜ୍ୟ ଲୋକଙ୍କ ସମ୍ବନ୍ଧ । ରାଜା ପ୍ରଜା ବୋଲି କହିବା ସୁବିଧାଜନକ । ରାଜା କର ନେଲେ ରାଜକାର୍ଯ୍ୟ କରିବେ—କର୍ମଚାରୀ-ଦରମା ଦେବେ । ସେ ପ୍ରଜାଙ୍କଠାରୁ ଯେ କୌଣସି ପ୍ରକାରେ ତାହା ଆଦାୟ କରିନେବେ—ଜୋରରେ ହେଉ, ବୁଝାଇ କରି ହେଉ ବା ଅନ୍ୟ ପ୍ରକାରରେ ହେଉ । ସାଧାରଣତଃ ଏପରି ଆଦାୟ କରିବାରେ ଜୋର ହିଁ କାମ ଦିଏ । ପୁଣି ପ୍ରଜା କର ଦେଇ ନିଜ ନିଜର ସ୍ୱୈର ହେଲେ, କି ନିଜ ନିଜ ମଧ୍ୟରେ କଳି ଲାଗିଲେ ସେସବୁର ପ୍ରତିକାର ନିଜର ପ୍ରାପ୍ୟ ବୋଲି ରାଜାଙ୍କଠାରୁ ଆଦାୟ କରୁଥିବେ—ଦେଲ ପଡ଼ିଲେ ରାଜାଙ୍କୁ ପଦଚ୍ୟୁତ ବା ମୃତ୍ୟୁର ଭୟ ଦେଖାଇ ତାହା ଆଦାୟ କରିବେ । ଏଇ ରୀତି ସୁନ୍ଦର ସୁଶୃଙ୍ଖଳଭାବରେ ଚାଲିଲେ ସମାଜ ଠିକ୍ ଚାଲିବ—ସମାଜର ଶ୍ରୀବୃଦ୍ଧି ମଧ୍ୟ ହେବ । ସମସ୍ତେ ନିଜ ନିଜର ଦାବୀ ଆଦାୟ କରିବାରେ ଅନ୍ୟର ନିଜ ପ୍ରତି କର୍ତ୍ତବ୍ୟମାନ କରାଇନେବେ । ସମସ୍ତେ ନିଜ ନିଜ କର୍ତ୍ତବ୍ୟ ମଧ୍ୟ ବାଧ୍ୟ ହୋଇ କରିବେ ଓ ସମସ୍ତଙ୍କର ଦାବୀ ଆଦାୟ କରିବାରେ ଇଷ୍ଟ ପୂରଣ ହେବ ।

### (୨) କର୍ତ୍ତବ୍ୟ—

ଅନ୍ୟଥା, ଅନ୍ୟଆଡ଼ୁ ଦେଖିଲେ, ସମସ୍ତେ ଯେବେ ଦାବୀକୁ ନ ଚାହିଁ କେବଳ ନିଜର ଅନ୍ୟ ପ୍ରତି କଣ କର୍ତ୍ତବ୍ୟ ଅଛି ତାହା ହିଁ ଦେଖିବେ ଓ ନିଜର କର୍ତ୍ତବ୍ୟ ନିଯୁକ୍ତଭାବରେ କରିବେ, ତେବେ ମଧ୍ୟ ଏକର କର୍ତ୍ତବ୍ୟରେ ମନକୁ ଅନ୍ୟର ଇଷ୍ଟ ପୂରଣ ହେବ । କେହି କାହାକୁ ଜୋର କରିବା ଦରକାର ନାହିଁ । ଧର, ସେଇ ରାଜା-ପ୍ରଜାର ସମ୍ବନ୍ଧ । ରାଜା ଯଦି ବିଚାରିବେ, ମୋର କର୍ତ୍ତବ୍ୟ ହେଉଛି, ପ୍ରଜା

ପାଳନ କରିବା—ପ୍ରଜାର ଗ୍ରେଗ ହେଲେ, ବା ପ୍ରଜାଙ୍କ ଭିତରେ କଳି ହେଲେ, ତାର ପ୍ରତିକାର ଓ ସମାଧାନ କରିବା । ମୁଁ ତାହାସବୁ କରିଯିବି । କର ଦେବା ନ ଦେବା ପ୍ରଜାର ଦେଖିବାର କଥା ତା କର୍ତ୍ତବ୍ୟ ସେ କରିବ । ମୋର ସେ କଥା ବୁଝିବାର ଦରକାର ନାହିଁ । ପ୍ରଜା ପୁଣି ଭାବିବ, ମୋର କର ଦେବାର କର୍ତ୍ତବ୍ୟ । ମୁଁ ତା ଦେଇଦେବି । ରାଜା ତା କାମ କଲା କି ନାହିଁ, ସେ କଥା ରାଜା ବୁଝିବ । ତା କର୍ତ୍ତବ୍ୟ ସେ କରିବ । ମୋର ସେ କଥାରେ ମୁଣ୍ଡ ବୁଲାଇବାର କଣ ଅଛି ? ଏଇପରି ଦୁହେଁ ଦୁହିଙ୍କର କର୍ତ୍ତବ୍ୟ ବାଣ୍ଟ ଧରି କର୍ମ କରିବାରେ ମଧ୍ୟ ଏକର କର୍ତ୍ତବ୍ୟରେ ଅନ୍ୟର ଇଷ୍ଟ ପୂରଣ ହେବ ।

## ଅଧିକାର ଓ କାମନା—

ଏଇ ଦୁଇଟି ଦୃଷ୍ଟିରେ କର୍ମ କରି ମାନବ-ସମାଜ ଚଲେ । ପ୍ରଥମଟି ବା ଦାବି ଆଦାୟ କରିବା ପଛାଟିରେ ପ୍ରେରଣା କଣ ? ଏହା ହିଁ କାମ ବା କାମନା—ମୁଁ କଣ ପାଇବ, କଣ ଭୋଗ କରିବ, ଏଇ ଆଭିମୁଖ୍ୟ ଦୃଢ଼ବଦ୍ଧ । ଏଇଥିରେ ବୁଦ୍ଧି ରଖି ନିଜର କଅଣ ଦରକାର ଏହା ଦେଖି କର୍ମ ଚଲାଇବାକୁ ହୁଏ । ମାତ୍ର ଏଇ ଦାବି ବା କାମନାର ସୀମା କେଉଁଠାରେ ? ଏଇ କାମନାଇ କ୍ରୋଧ ( ୩. ୩୭ ) । କାମନା କେବେ ପୂର୍ଣ୍ଣ ହୁଏ ନାହିଁ । ଏ ଦୁଷ୍ପୂର (୧. ୩୯) । ବାଧାର ଶଙ୍କା ହେଲେ କ୍ରୋଧ ଓ ବ୍ୟାକୁଳତା ହୁଏ । ସେଥିରେ ସମାଜର ଶାନ୍ତି ଶୃଙ୍ଖଳା ଭ୍ରଷ୍ଟ ହୁଏ । ସମାଜ ଭାଙ୍ଗୁଥାଏ, ପୁଣି ଗଢ଼ା ହେଉଥାଏ, ପୁଣି ଭାଙ୍ଗୁଥାଏ । ଲୋକର ମହାବ୍ୟାକୁଳତା ଓ ଅଶାନ୍ତି ଭିତରେ ସମାଜ ଚାଲେ । ଯାହାର ବଳ ବୁଦ୍ଧି ବା ପ୍ରଭାବ ବେଶି ହୁଏ, ସେ ବେଶି ଅଧିକାର ଓ ଭୋଗ ମାଡ଼ିବସେ । ଯାହାର ଥାଏ, ସେ ତାହା ସହଜରେ ଛାଡ଼େ ନାହିଁ । ଜୋର କରି ତାହା କାଢ଼ି ନେବାର ଉଦ୍ୟମ ହୁଏ । ସେଥିରେ ଘୋର ବିପ୍ଳବ, ଧ୍ୱଂସ—ଏହା ହିଁ ଫଳ ହୁଏ । ଏଥିରେ ପୁଣି ସମସ୍ତଙ୍କୁ ଧରି କର୍ତ୍ତବ୍ୟ କରାଇବାକୁ ହୁଏ । ସେଥିରେ ଆତ୍ମବିକାଶ ବା ଆତ୍ମାର ସ୍ଫୂର୍ତ୍ତି ହେବ କାହୁଁ ? ସ୍ୱତଃ କର୍ମଧାରା ବାହାରକୁ ନ ଫିଟିଲେ ଆତ୍ମା ନିଜେ ନିର୍ମଳଙ୍କ ଭାବରେ ବିକାଶ ପାଏ ନାହିଁ । ମନୁଷ୍ୟ ଶାନ୍ତ ଭାବରେ ବିଶ୍ୱର ମଙ୍ଗଳ ଦେଖିପାରେ ନାହିଁ । ଏଇ ମଙ୍ଗଳ ତ ସତ୍ୟ ଓ ସୁନ୍ଦର । ଏହା ହିଁ ତ ସମାଜର ଆଦର୍ଶ । ଯେଉଁ ଆତ୍ମାର ଅଭାବର ସୀମା ନାହିଁ—ଦୁଷ୍ପୂର କାମର ଯେଉଁ ଆତ୍ମାରେ ଘର, ସେ ପୁଣି ସୁନ୍ଦର ହେବ କାହୁଁ ? ସେ ସର୍ବଦା ଅଭାବର ଅନ୍ଧକାରରେ ଆଚ୍ଛନ୍ନ । ଅଜ୍ଞାନ ହେଉଚି, ଏଇ ନିତ୍ୟ ଅଭାବବୋଧର ଅନ୍ଧକାର । ଏହା ହିଁ ମାନବାତ୍ମାରେ ମାୟାର ଜାଲ । କାମନାର ବିକ୍ଷୋଭ ଏଇ ଜାଲର ସଙ୍କେତ । ସବୁବେଳେ ଚିନ୍ତା କଣ ପାଇବ ? କଣ ପାଇବ ? ସେଥିରେ ଅନ୍ୟର ସର୍ବନାଶ କରିବାରେ ମଧ୍ୟ କୁଣ୍ଠା ନାହିଁ !

## କାମନା ଗତିରେ ସମାଧାନ—ତ୍ୟାଗ—

ଏପରି ସମାଜ ପୃଥିବୀରେ ସର୍ବତ୍ର ଉଦାହରଣରେ ଦେଖାଇ ଦିଆଯାଇ-ପାରେ । ଏଠାରେ ଦେଖିବାର ଅଛି, ଏହି କାମନାରେ ସଙ୍ଘର୍ଷ ଓ ଅନ୍ୟ ଉପରେ ଅତ୍ୟାଚାର ବରାବର ବଢ଼ିଯାଏ । ଅତ୍ୟାଚାରଗ୍ରସ୍ତମାନେ ବ୍ୟାକୁଳ ହୁଅନ୍ତି । ବିପ୍ଳବ ହୁଏ । ପୁଣି କିଛି କାଳ ପାଇଁ ସମାଧାନ ଆସେ । ଏ ସମାଧାନର ଲକ୍ଷଣ ପୁଣି କଣ ? ଏହି ସମାଧାନର ଲକ୍ଷଣ ପୁଣି ମହାପୁରୁଷର ଆତ୍ମତ୍ୟାଗ ଓ ସମ୍ପୂର୍ଣ୍ଣ ଆତ୍ମ-ବଳି ଦେଇ ପର ପାଇଁ ଦୁର୍ଗତ ପାଇଁ କର୍ମ କରିବା । ନିଜେ ସର୍ବଦା ଦୁର୍ଗତିରେ ରହି ମଧ୍ୟ ସମାଜର ମଙ୍ଗଳରେ ଆତ୍ମଦାନ କରିବା । ପୁଣି ଏହି ଆତ୍ମଦାନରେ ଲୋକଙ୍କୁ କାମନାରେ ସଂଯମ ଶିଖାଇବା । ଯାହାର ଯେତିକି ଦରକାର ସେତିକି ରଖି ଅନ୍ୟର ଯାହା ତାକୁ ଅନ୍ୟକୁ ଦେଇଦିଅ ବୋଲି ଶିଖାଇବା । ଯୀଶୁଖ୍ରୀଷ୍ଟ ସ୍ପଷ୍ଟ କହିଥିଲେ, 'ଟଙ୍କା ସିଜରଙ୍କର, ତାଙ୍କୁ ଦେଇଦିଅ ।' "ଲୋକେ, ତୁମେ କଳି କର ନାହିଁ । ଯେ ତୁମର ଦ୍ରବ୍ୟ ନେଇ ଭୋଗ କରୁଛନ୍ତି, ସେ ସ୍ୱର୍ଗକୁ ଗଲାବେଳେ ଓଟକୁ ଛୁଞ୍ଚି କଣାରେ ଓଟାରିଲା ପରି ଓଟାରି ହେବେ । ତୁମେ ବ୍ୟାକୁଳ ହୁଅ ନାହିଁ, ସଂଯମରେ ରହ, କାମନା ଶାନ୍ତ କର, ତୁମେ ସ୍ୱର୍ଗକୁ ଯିବ । ତୁମେ କାମନାରେ ପଡ଼ି ମନୁଷ୍ୟ ମାର ନାହିଁ, ଚୋରି କର ନାହିଁ, ପରଦାରକୁ ଚାହଁ ନାହିଁ—ଇତ୍ୟାଦି ।" ଏହି 'କର ନାହିଁ' ରେ କଣ ଅଛି ? କାମନା ଓ ଭୋଗର ଆଦାୟରେ ମାତିବାରେ ଲୋକଙ୍କୁ ମନା କରାଯାଇଛି । ଭୋଗ ରୋକି ସଂଯମ ଶିଖାଇବାର ଉଦ୍ୟମ ହୋଇଛି । ସ୍ପଷ୍ଟ ଜଣାଯାଉଛି, ସମାଜରେ ଭୋଗ ଓ କାମନାର ତାଣ୍ଡବ-ନୃତ୍ୟ ଚାଲିଥିଲା । ସର୍ବତ୍ୟାଗୀ ଯୀଶୁଖ୍ରୀଷ୍ଟ ଲୋକଙ୍କୁ ତ୍ୟାଗ ଶିଖାଇ ସେଥିରୁ ବନ୍ଦ କରୁଥିଲେ । ସେଥିପାଇଁ ଈଶ୍ୱରଙ୍କୁ ଦଣ୍ଡଧର ରୂପେ ଲୋକଙ୍କୁ ଆଗେ ଠିଆ କରିଥିଲେ । ଏହା ହିଁ ସେକାଳର ଖ୍ରୀଷ୍ଟିୟାନ ଧର୍ମ । କିନ୍ତୁ ଯେ ଯାହା ହେଉ, କାମନାରେ ଲଗାମ ଦେବା ହିଁ ପନ୍ଥା, ଏହା ଜଣାଯାଉଛି । କିନ୍ତୁ ଏ ଲଗାମ ସ୍ଥାୟୀ ନୁହେ । ତାହା ମଧ୍ୟ ଇତିହାସରେ ହୋଇ ନାହିଁ । ଯାହା ହେବାର ନୁହେ, ତାହା ହେବ କାହୁଁ ? ଏ ସାମୟିକ ତାଡ଼ନାରେ କିଛି ହୋଇପାରେ । ମାତ୍ର ତାଡନାରେ ଆତ୍ମାର ସ୍ଫୂର୍ତ୍ତି ନାହିଁ । ଆତ୍ମାର ପ୍ରକୃତି ଏକାନ୍ତ ସ୍ୱାଧୀନ । ଏଣୁ ନିଜ ଭିତରେ ଏହି ସଂଯମର ବୀଜ ନ ଥିଲେ, ସେହି ସ୍ୱାଧୀନତା ସ୍ୱେଚ୍ଛାଚାରିତା ହୁଏ । ବାହାରୁ ବାଡ଼ ଦେଲେ, ସେ ବାଡ଼ର ବନ୍ଧନ ସ୍ଥାୟୀ ନୁହେ ।

## କର୍ତ୍ତବ୍ୟର ପ୍ରକୃତି—ଆତ୍ମବିକାଶ—

ପୁଣି ଦ୍ୱିତୀୟ ଦୃଷ୍ଟି ହେଉଛି, ସର୍ବଦା କର୍ତ୍ତବ୍ୟରେ ଦୃଷ୍ଟି ଦେବା । ମୋର କାହା ପ୍ରତି କଣ କରିବାର ଅଛି, କାହାକୁ କଣ ଦବାର ଅଛି, ଏହା ହିଁ ସର୍ବଦା

ଆଗରେ ରଖି କର୍ମ କରିଯିବା । ଜଗତରେ ଯେଉଁ କର୍ତ୍ତବ୍ୟ ସେ କରିବେ । ଅନ୍ୟଠାରୁ ମୁଁ କଣ ପାଇବି, ସେ କଥା ଅନ୍ୟର ଭାବିବାର କଥା, ମୋର ନୁହେଁ । ମୋର ଭାବିବାର କଥା, ମୋର ଏ ଜଗତରେ କାହା ପ୍ରତି କଣ କରିବାର ଅଛି ? ଏହା ହିଁ ଜଗତରେ ବ୍ୟକ୍ତିମାନଙ୍କର ଆତ୍ମବିକାଶର ଧର୍ମ । ଦେବତା ବା ସ୍ପଷ୍ଟ ଆକର୍ଷଣ କରୁଥିବା ସୂର୍ଯ୍ୟ, ମେଘ, ଅଗ୍ନି ପ୍ରଭୃତି ବିଶ୍ୱର ଶ୍ରେଷ୍ଠ ବ୍ୟକ୍ତିମାନେ ଏଇ ଭାବରେ ଆତ୍ମବିକାଶ କରନ୍ତି । ଭୂତପତି ଓ ପ୍ରଜାପତି ଏଇ ନୀତିରେ ବିଶ୍ୱପାଳନ କରନ୍ତି । ଏହା ହିଁ ବିକାଶ ଧର୍ମ । ଆତ୍ମବିକାଶ ବା ନିଜ ଭିତରୁ ବାହାରି ପ୍ରକାଶ ପାଇବା ହିଁ ବିଶ୍ୱଧର୍ମ । ପୁରୁଷୋତ୍ତମ ଏଇ ନିୟମ ବା ଋତରେ ସତ୍ୟର ପ୍ରକାଶ କରନ୍ତି । ମାନବ-ଆତ୍ମା ବା ପୁରୁଷର ସେଇ ଧର୍ମ । ଲୁଚିବାରେ ନାହିଁ, ଦେବା ହିଁ ବିକାଶର ଧର୍ମ । ସମସ୍ତ ପ୍ରଯତ୍ନର ଲକ୍ଷଣ ଏଇ ଋତ ଓ ସତ୍ୟ—ଏଇ ନିୟମ ଓ ପ୍ରକାଶ । ସେଥିପାଇଁ ବେଦ କହନ୍ତି, "ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ତପସୋଽଧ୍ୟଜାୟତ ।" (ବିଶ୍ୱପୁରୁଷଙ୍କ ଇଚ୍ଛା ବା ପ୍ରଦୀପ୍ତ ତପସ୍ୟା ବା ପ୍ରଯତ୍ନରୁ ଋତ ଓ ସତ୍ୟ ପହିଲେ ସବୁ ଆଡ଼େ ପ୍ରକାଶ ପାଇଲେ)—(ଋଗ୍ ବେଦ ୧୦.୧୯୦.୧) ଆତ୍ମପ୍ରକାଶର ଏଇ ନିୟମରେ କର୍ମର ଧାରା ଚାରିଆଡ଼େ ସୂର୍ଯ୍ୟରୁ କିରଣଜାଲ ବାହାରିଲା ପରି ଛୁଟିଚି । ସେଥିରେ ହିଁ ଏକର କର୍ମରେ ଅପରର ଇଷ୍ଟପୂର୍ତ୍ତି । ଏଇ ଧର୍ମରେ ମାନବ, ସମାଜରେ ଆତ୍ମପ୍ରକାଶ କରିବ । ସ୍ୱେଚ୍ଛାବୃତ୍ତି ହୋଇ ଦାବୀରେ ଅଧିକାର ଆଦାୟ କରିବାର ମନ ଦେବ ନାହିଁ । ତାହା ଉଚିତ ନୁହେଁ—ତାହା ସ୍ୱାଧୀନ ଆତ୍ମବିକାଶର ଆଚାର ନୁହେଁ । 'ଆଚାରପରମୋ ଧର୍ମଃ' ସେଥିରେ ନାହିଁ ।

## ସମାଜରେ କାମନା ଓ କର୍ତ୍ତବ୍ୟ ସାଧନା—ଦୁଇଟିର ସ୍ଥିତି ଓ ସ୍ୱଧର୍ମ—

ଅବଶ୍ୟ ଏଥିରୁ ବୁଝିବା ଠିକ୍ ନୁହେଁ ଯେ, କେବଳ କର୍ତ୍ତବ୍ୟମାତ୍ର ସାଧନାରେ ବା କେବଳ ଅଧିକାର ଆଦାୟରେ କୌଣସି ମାନବ ସମାଜ କେବେ ସ୍ଥିର ରହିପାରେ । ଦୁଇଟିର ବ୍ୟାପ୍ତି ସବଂସ ସବୁ ସମାଜରେ ଅଛି । ଏହାକୁଇ ଭଗବାନ ଗୀତାର ୧୬ଶ ଅଧ୍ୟାୟରେ ଦୈବୀ ଓ ଆସୁରୀ ସମ୍ପଦ୍ ବୋଲି ବିସ୍ତରଭାବରେ ବୁଝାଇଚନ୍ତି । ଦୈବୀ କର୍ତ୍ତବ୍ୟମୁଖୀ ଓ ଆସୁରୀ ଅଧିକାରମୁଖୀ । ଦୁଇଟିର ବ୍ୟାପ୍ତି ସମାଜରେ ଚିରନ୍ତନୀ । ମାତ୍ର ଅଧିକାର ଦୃଷ୍ଟିବଦ୍ଧ ସମାଜରେ ତ୍ୟାଗ ଧର୍ମ ବା କର୍ତ୍ତବ୍ୟ ଚେତନା ବିନା ଧ୍ୱଂସ ଅନିବାର୍ଯ୍ୟ । ତାହା ଏକପ୍ରକାର କୁହାଯାଇଚି । ପୁଣି କେବଳ କର୍ତ୍ତବ୍ୟମାତ୍ରର ଚେତନା ପ୍ରତିଷ୍ଠିତ ହେଲେ ସମାଜ ଜଡ଼ବସ୍ତୁର ସଂହତିମାନଙ୍କରେ ପରିଣତ ହେବାର କଥା । ଏହା ମାନବସମାଜର ପ୍ରକୃତି ନୁହେଁ । ବରଂ ଅଧିକାର ଦାବୀରେ ସ୍ୱେଚ୍ଛା ଅବଲଂବନ କରିବା ମାନବର ପ୍ରକୃତି ଓ ତ୍ୟାଗ ବା କର୍ତ୍ତବ୍ୟ ସେଥିରେ ସଂଯମ । ଏହା ହିଁ ମାନବ ସମାଜ କହିଲେ ଚଳେ । ତେବେ ଅଧିକାର ଦୃଷ୍ଟିବଦ୍ଧ ସମାଜରେ ଏଇ ତ୍ୟାଗର ବନ୍ଧନ ଫୁଟିବାକୁ ବାଧ୍ୟ ହୁଏ । ତେଣୁ ଏ ବନ୍ଧନ କୃତ୍ରିମ ଓ ସାମୟିକ । ମନୁଷ୍ୟ ଭିତରୁ ଏହା ବାହାରୁ ନ ଥିବାରୁ ଏଇ ସଂଯମ ମଧ୍ୟ ଗୋଟିଏ ବନ୍ଧନ ହୁଏ । ତାହା

ଛୁଣ୍ଡାଇ ମୁକ୍ତ ହେବାକୁ ଆତ୍ମା ଯେପରି ଲୋଡ଼ୁଥାଏ, ପୁଣି ଦଣ୍ଡଧାରୀ ବିଶ୍ୱନିୟନ୍ତାଙ୍କ ଭୟ ବିନା ଏ ବନ୍ଧନ ନିୟତ କରି ରଖି ହୁଏ ନାହିଁ । ବିଶ୍ୱପିତା ଯେପରି କି କେବଳ ଦୁଷ୍କୃତର ଦଣ୍ଡ ଧରି ବସିଥାନ୍ତି । ଅନ୍ୟ ଦୃଷ୍ଟିରେ ଏଇ ତ୍ୟାଗ ହିଁ ନିଜର ଧର୍ମ ହେବାରୁ ସଂଯମ ସ୍ୱାଭାବିକ ହୋଇପଡ଼େ । ଦୁଷ୍କୃତ ପ୍ରକାଶ ପାଇଲେ ହେଁ ସଂକୋଚରେ ପ୍ରକାଶ ପାଏ । ବିଶ୍ୱପିତା ପୁରୁଷୋତ୍ତମ ଆଦର୍ଶରୂପେ ହିଁ ପ୍ରଭାବିତ କରନ୍ତି । ଚୋରି କରିବ ନାହିଁ । ଏଥିରେ ଚୋରିଟା ଯେପରି କି ନିତ୍ୟ ଓ ସାଧାରଣ କ୍ରିୟା, ନ କରିବାଟା ଚେଷ୍ଟା କରିବାକୁ ହେବ । ଅନ୍ୟଥା କର୍ତ୍ତବ୍ୟଦୃଷ୍ଟିବଦ୍ଧ ସମାଜରେ—ଯେ ଆତ୍ମାର ଯଥାର୍ଥ ପ୍ରକାଶ "ପ୍ରକୃତରେ ମନ ଦେଇ ସେଥିରେ ହିଁ ତୃପ୍ତ ରହେ, ଆପଣା ଭିତରେ ହିଁ ସନ୍ତୋଷ ଥାଏ, ତାର ନିଜର ଆହରଣ କାର୍ଯ୍ୟ ନାହିଁ" (୩.୧୭) । ପୁଣି ଯଜ୍ଞକୁ ସମାଜରେ ବ୍ୟକ୍ତିର ତ୍ୟାଗ ବା କର୍ତ୍ତବ୍ୟବଦ୍ଧ ସଂଯମ ରୂପେ କର୍ମଜ୍ଞାନ ସଂପର୍କରେ ବୁଝାଇ ସ୍ପଷ୍ଟ କରି କହିଛନ୍ତି—

"(ଅନ୍ୟର କର୍ତ୍ତବ୍ୟ ପ୍ରବୃତ୍ତିର ଫଳରେ) ଯାହା ଭାଗ୍ୟରେ ପଡ଼ିଲା, ସେଇଥିରେ ସନ୍ତୋଷ ରହି; ସୁଖ ଦୁଃଖାଦିରେ ଛଟପଟ ନ ହୋଇ, ଆଉ କାହାର ଭୋଗସାମଗ୍ରୀ ବେଶି ଅଛି ମୋର ନାହିଁ ବୋଲି ବ୍ୟାକୁଳ ନ ହୋଇ, ମୋର କର୍ତ୍ତବ୍ୟରେ ମୋତେ ପ୍ରତିଦାନ ମିଳିଲା କି ନାଇଁ, ସେଥିରେ ମନ ନ ଦେଇ, ଯେ କାର୍ଯ୍ୟ କରେ, ସେ କର୍ମରେ ବାନ୍ଧି ହୁଏ ନାହିଁ ।" (୪.୨୨) । ବସ୍ତୁତଃ ସବୁ ସମାଜରେ କର୍ତ୍ତବ୍ୟ ଅଛି, ଅଧିକାର ଅଛି । ମାତ୍ର କେଉଁ ଦୃଷ୍ଟିରେ କର୍ମର ଆଚରଣ ଓ ଚେତନା ନିୟମିତ କରିବ, କେଉଁ ଚେତନାର ପ୍ରଭାବ ସମାଜର ଆଦର୍ଶ ହେବ, ତାହା ହିଁ କହିବାର ଅଭିପ୍ରାୟ । ଏକ ଦିଗରେ ଅଧିକାର ଦୃଷ୍ଟିରେ କର୍ମର ସାଧନା ବିଦୃପ୍ତ, କର୍ତ୍ତବ୍ୟ ବରଂ ସଙ୍କୁଚିତ । ଅନ୍ୟ ଦିଗରେ କର୍ତ୍ତବ୍ୟରେ କର୍ମର ସାଧନା ଶାନ୍ତ, ଅଧିକାର ମୁଣ୍ଡ ଟେକିଲେ ମଧ୍ୟ ତାହା ସଙ୍କୁଚିତ । ମାତ୍ର ବୁଝିବା ଉଚିତ ନୁହେଁ, କୌଣସି ସମାଜରେ କର୍ତ୍ତବ୍ୟ କିଂବା ଅଧିକାର କାହାରି ବ୍ୟାପ୍ତି କେବେ ଏକାନ୍ତ ଲୁପ୍ତ ନୁହେଁ । ମାନବସମାଜରେ ତାହା ସମ୍ଭବ ନୁହେଁ । ବିକାଶ ଏକ ଦ୍ୱନ୍ଦ୍ୱର ନିତ୍ୟସାଧନାର ଧାରା । ଏଇ ଦ୍ୱନ୍ଦ୍ୱ ଲୁପ୍ତ ହେଲେ ବିକାଶ ଶାନ୍ତ ଓ ସ୍ଥିର । ଏଇ ଶାନ୍ତ ଓ ଏଇ ସ୍ଥିରତା ଆଦର୍ଶ—ଆଚରଣ ନୁହେଁ । ସମସ୍ତ ବିକାଶ ଆଦର୍ଶର ପ୍ରଭାବରେ ଆଚରଣର ନିୟମିତ ଗତି । ଏଇ ଗତିର ନିୟମରେ ସମାଜ ବିକାଶର ପ୍ରତିଷ୍ଠା, ସମାଜ କେବେ ସ୍ଥିର ଅଚଂଚଳ ବସ୍ତୁ ନୁହେଁ—ବିଶ୍ୱ ମଧ୍ୟ ନୁହେଁ । ଭଙ୍ଗା ଗଢ଼ା, ଧ୍ୱଂସ ପ୍ରକାଶ, ବୃଦ୍ଧି କ୍ଷୟ—ଏଇ ନିତ୍ୟ ପରିବର୍ତ୍ତନର ଧାରା ହିଁ ବିକାଶ । ଏହା ହିଁ ସୃଷ୍ଟି । ଭଗବାନ୍ ବିଭୂତି ଦେଖାଇସାରି ଯେତେବେଳେ ବିଶ୍ୱରୂପ ଦେଖାଇଛନ୍ତି—ସେତେବେଳେ ଅନନ୍ତ ବିକାଶମୟ ସୃଷ୍ଟି ଦେଖାଇବାରେ କେବଳ ଧ୍ୱଂସ, ନାଶ ଓ କ୍ଷୟର ମହାଲୀଳା ଦେଖାଇ କହିଛନ୍ତି—

"କାଳୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ
ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ ।" (୧୧.୩୨)

ଲୋକକ୍ଷୟକୃତ୍ ପ୍ରବୃଦ୍ଧ (ଅନାଦି) କାଳ ମୁଁ । ଲୋକ ନାଶ କରି ମୁଁ ଏ ବିଶ୍ୱ ବିକାଶ ରକ୍ଷା କରିଚି । ନାଶ ବିନା ବିକାଶ ନାହିଁ । ବିକାଶ-ନିୟମରେ ଉଦ୍‌ବର୍ତ୍ତିନର ସ୍ଥାନ ନାହିଁ । ବିଶ୍ୱରେ ମଧ୍ୟ ସେଇ କଥା । ଦେଖ ଜଙ୍ଗଲରେ ବୃକ୍ଷ, ଲତା, ଫୁଲ ଫଳର କି ଶୋଭା । ଏହାହିଁ ସୁନ୍ଦର, ଏହାହିଁ ଶ୍ରେଷ୍ଠ ବିଶ୍ୱମଙ୍ଗଳର ପ୍ରତୀକ । କିନ୍ତୁ ବିଶ୍ୱର ଏଇ ଆତ୍ମବିକାଶରେ ଦେଖ, ଏକ ଦେବଦାରୁ କେତେ ଫଳ ଧରେ । ସେଥିରୁ କେତେ ହଜାରରେ ବା ଗୋଟାଏ ଗଛ ହୁଏ ? ସବୁ ବୀଜ ଗଛ ହେଲେ, ଜଗତରେ ଦଶ ବର୍ଷରେ ଗୋଟିଏ ମାତ୍ର ଜାତିର ଗଛ ପାଇଁ ସ୍ଥାନ ନାହିଁ । ବିଶ୍ୱର ସୌନ୍ଦର୍ଯ୍ୟ ସେଥିରେ କାହିଁ ? ମଙ୍ଗଳ ବା ସେଥିରେ କାହିଁ ? ବିକାଶର ଏହାହିଁ ଧର୍ମ । ସମାଜରେ କାମନାର ପ୍ରକାଶ ସେଇପରି । ଅନନ୍ତ କାମନା ବାହାରୁଚି । ମାତ୍ର ବିକାଶର ଆଦର୍ଶରେ ସେ ସବୁର ସମାନ ପ୍ରଶ୍ରୟ ପାଇଁ ବାଟ ଛାଡ଼ିଦେଲେ ସମାଜରେ ମଙ୍ଗଳ ନାହିଁ କି ସୁନ୍ଦର ନାହିଁ—ଏଣୁ ସତ୍ୟ ନାହିଁ । ଏପରି ଆଦର୍ଶରେ କର୍ମ ନିୟମିତ କରିବାକୁ ହେବ, ଯେପରି କି ମାନବର ଇଷ୍ଟମାତ୍ର ସାଧନରେ କାମନା ପର୍ଯ୍ୟବସିତ ହେବ । ଇଷ୍ଟଲାଭରେ କାମନା ଅଛି । ତାର ପ୍ରକୃତ ଲୋପ ପାଉନାହିଁ । କର୍ମହୀନତାରେ ହିଁ ତାହା ଲୋପ ପାଇବ । ଭଗବାନ୍ କହୁଚନ୍ତି—

ଶରୀରଯାତ୍ରାଽପି ଚ ତେ
ନ ପ୍ରସିଦ୍ଧ୍ୟେଦକର୍ମଣଃ । ( ୩. ୮ )

କର୍ମ ଛାଡ଼ିଦେଲେ ଶରୀରକ୍ରିୟା ବି ଚଳିବ ନାହିଁ । ଶରୀର ହିଁ ଧର୍ମ ସାଧନାର ମୂଳ । କର୍ମ ବିନା ଶରୀରଇ ରହିବ ନାହିଁ । ମୁକ୍ତି ଆଡ଼କୁ ଯିବ କପରି ? ବିକାଶରେ ଆଦର୍ଶ ଅନୁବର୍ତ୍ତନ କରିବ କିପରି ? ମାତ୍ର ଏଇ କର୍ମରେ ଅକର୍ମ ଦେଖିବାହିଁ ଯଥାର୍ଥ ସାଧନା (୪. ୧୮) । କାମନାର ଅନନ୍ତ ପ୍ରସାର ଭିତରେ ଯଦୃଚ୍ଛା-ଲାଭ-ସନ୍ତୋଷ ବା ଯଜ୍ଞରେ ଇଷ୍ଟଲାଭ ହିଁ ଏଇ କର୍ମରେ ଅକର୍ମ । ସବୁ କାମନା ଫଳିଲେ ସମାଜରେ 'ସତ୍ୟ ଶିବ ସୁନ୍ଦର' ନାହିଁ । ମାତ୍ର କାମନାରେ ଯେ ନିତ୍ୟ ବିକାଶ ବା ଆତ୍ମପ୍ରସାର-ଧର୍ମ ପ୍ରକାଶ ପାଏ, ସେ ଧର୍ମର ମଧ୍ୟ ସତ୍ୟ ବୁଝିବାର ଅଛି । କର୍ମସାଧନାପୀଠ ଶରୀରର ଇଷ୍ଟ ଅଛି । ସେତିକି ମାତ୍ର ଫଳିଲେ ମଙ୍ଗଳ ଲାଭ । ସେଇ ମଞ୍ଜିଟି ମାତ୍ର ଗଛ ହେବ । କିପରି ବିଶ୍ୱଧର୍ମରେ ଖରା ବର୍ଷା ପାଗ ପାଇ ସେଇ ମଞ୍ଜିଟି ମାତ୍ର ଉଠୁଚି । ସମସ୍ତେ ବ୍ୟାକୁଳ ହୋଇ ଖରାବର୍ଷା ଖୋଜି ସଂଗ୍ରହ କରି ପ୍ରକାଶକ୍ରିୟାର ସୌନ୍ଦର୍ଯ୍ୟ ନଷ୍ଟ କରୁ ନାହାନ୍ତି । ସେଇପରି ସମାଜଧର୍ମରେ ସେଇ ଇଷ୍ଟ ତକ ହିଁ 'ଯଦୃଚ୍ଛାଲାଭ' ବା ଯାହା ଭାଗ୍ୟକୁ ମିଳିଲା । ଏହାହିଁ ସମାଜରେ ବ୍ୟକ୍ତିର ଧର୍ମ । ଏହାହିଁ ସ୍ୱଧର୍ମ । କର୍ତ୍ତବ୍ୟ କରିଯିବା ଓ ଯାହା ଭାଗ୍ୟକୁ ମିଳିଲା, ସେଥିରେ ସନ୍ତୁଷ୍ଟ ରହିବା ହିଁ ସ୍ୱଧର୍ମ ।

**ବ୍ୟକ୍ତିତ୍ୱର ଆଦର୍ଶରେ ସ୍ୱଧର୍ମ ହିଁ ସାଧନା—ସର୍ବଭୂତରେ ଆତ୍ମଭାବ—**

ନିଜ କାମନାକୁ ଦୃଷ୍ଟି ନ ଦେଇ ସ୍ୱଧର୍ମ ବା ନିଜର କର୍ତ୍ତବ୍ୟ ବା ମୋର କାହା ପାଇଁ କଣ କରିବାକୁ ଅଛି, ସେଇଥିରେ ଦୃଷ୍ଟି ଦେବ । ଏହାହିଁ ହେଲା ସମାଜର ବା ସାମାଜିକ ବ୍ୟକ୍ତିର ଆଦର୍ଶ । ଏଥିରେ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ତଥା ସମଷ୍ଟିର ପ୍ରଭାବ ଦୁଇଟି ସ୍ପଷ୍ଟ । ବ୍ୟକ୍ତି ସମଷ୍ଟିରେ ଲୀନ ନୁହେ, କି ସମଷ୍ଟିରୁ ଏକାବେଳକେ ସ୍ୱତନ୍ତ୍ର ନୁହେଁ । ବ୍ୟକ୍ତି ଭିତରକୁ ଗୃହିଁ କର୍ମ କରିବ । କାହିଁକି ନା ସମାଜର ମଙ୍ଗଳ ପାଇଁ । ଏଥିରେ ନିଜ କାମନାକୁ ସଂଯତ କରିବ ସତ, ମାତ୍ର ଏଇ କାମବୀଜ ହିଁ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ମୂଳ ସଂକେତ । ତାହାର ବ୍ୟବହାର ପଦେ ପଦେ ବିକାଶଧର୍ମର ଅଙ୍ଗୀଭୂତ । କର୍ତ୍ତବ୍ୟ କଣ ? ମୋର ଅନ୍ୟ ପାଇଁ କଣ କରିବାର ଅଛି ? ସେଥିରେ ନିଜର କାମନାଜ୍ୱାଳାର କଥା ନ ଥିଲେହେଁ ଅନ୍ୟର ଯାହା ଇଷ୍ଟ ବା କାମ୍ୟ, ସେଥିପ୍ରତି ଦୃଷ୍ଟି ଏକାବେଳକେ ଦୃଢ଼ ଓ ନିତ୍ୟ । କର୍ତ୍ତବ୍ୟର ଆଦର୍ଶ ପ୍ରତିଷ୍ଠିତ ହେଲେ, ମନୁଷ୍ୟର ଦୃଷ୍ଟି ଯେପରି କି ସବୁବେଳେ ଅନ୍ୟର ଅଭାବ ପ୍ରତି ଉନ୍ମୁକ୍ତ । ଏହା ସବୁବେଳେ ଅନ୍ୟର ଅଭାବ ଖୋଜିବୁଲେ । କାହା ପ୍ରତି ମୋର କଣ କରିବାର ଅଛି ? କାହାକୁ କଣ ଦବାର ଅଛି ?—ଏହାହିଁ ଯେପରି କି ମନୁଷ୍ୟର ସବୁବେଳେ ଚିନ୍ତା । 'ସ୍ୱଧର୍ମ' ସାଧନାର ଏହାହିଁ ପ୍ରକୃତି । ଅନ୍ୟକୁ ଦେବାରେ, ଅନ୍ୟ ପାଇଁ ଭୋଗର ବ୍ୟବସ୍ଥା କରିବାରେ, ଯେପରିକି ବିଶ୍ୱ ସଙ୍ଗେ ବ୍ୟକ୍ତିର ସଂବନ୍ଧ । ଏଇ ସଂବନ୍ଧରେ ହିଁ ଆତ୍ମବିକାଶର ପନ୍ଥା ସ୍ପଷ୍ଟ ଓ ସୁଗମ । ଏଇ ନୀତିରେ ମନୁଷ୍ୟ ଜୀବନର କର୍ତ୍ତବ୍ୟ ବା 'ଅନ୍ୟକୁ ଦାନ' ଖୋଜିବାରେ ସର୍ବଦା ତପୋନିଷ୍ଠ ବା ପ୍ରଯତ୍ନପର ହେବାର କଥା । ଏହାର ଆଦର୍ଶ ହିଁ ମୁକ୍ତି । ଏଇ ମୁକ୍ତି ହଉଚି, ବିଶ୍ୱ-ସତ୍ତ୍ୱାରେ ନିଜ ସତ୍ତ୍ୱାର ସାମଞ୍ଜସ୍ୟ ବା ଏକତା । ଭଗବାନ୍ କହିଛନ୍ତି—

ସଂନିୟମ୍ୟେନ୍ଦ୍ରିୟଗ୍ରାମଂ
ସର୍ବତ୍ର ସମବୁଦ୍ଧୟଃ
ତେ ପ୍ରାପ୍ନୁବନ୍ତି ମାମେବ
ସର୍ବଭୂତହିତେ ରତାଃ । (୧୨. ୪)

ଅର୍ଥାତ୍, ନିଜର କାମନାରାଶିର ବାଗ ଗୁଡ଼ି ନ ଦେଇ, ବା ନିଜ ଇନ୍ଦ୍ରିୟ-ମାନଙ୍କୁ ଭୋଗରୁ ସଂଯତ କରି, ସବୁଠାରେ ସମାନଭାବ ରଖି, ବା ନିଜର କାମନା ପୂର୍ଣ୍ଣ ହେବା ନିଜର ଯେପରି ଦରକାର ଅନ୍ୟର ସେଇପରି ହୁଏ ବୋଲି ବିଗୃରି ସର୍ବଭୂତ ବା ସବୁ ପ୍ରାଣୀଙ୍କ ହିତରେ ରହିଲେ, ଅର୍ଥାତ୍ ସବୁ ପ୍ରାଣୀଙ୍କ ପ୍ରତି କଣ କର୍ତ୍ତବ୍ୟ ଅଛି, ତା ଠିକ୍ କରି ସେଇ କାମରେ ନିଜକୁ ନିଯୁକ୍ତ କଲେ, ଈଶ୍ୱରପ୍ରାପ୍ତି ହୁଏ, ବା ବିଶ୍ୱସତ୍ତ୍ୱାରେ ନିଜ ସତ୍ତ୍ୱାର ସାମ୍ୟ ବା ସାମଞ୍ଜସ୍ୟ ସାଧିତ ହୁଏ ।

ଏହି ସର୍ବତ୍ର ସମବୁଦ୍ଧି ହେବା କଥାକୁ ପୁଣି ସ୍ପଷ୍ଟ କରି କହୁଛନ୍ତି—

ଆତ୍ମୌପମ୍ୟେନ ସର୍ବତ୍ର
ସମଂ ପଶ୍ୟତି ଯୋଽର୍ଜୁନ ।
ସୁଖଂ ବା ଯଦି ବା ଦୁଃଖଂ
ସ ଯୋଗୀ ପରମୋ ମତଃ । (୬. ୩୨)

ଅର୍ଥାତ୍ ନିଜର ଯେପରି ଭୋଗ ଓ ଅଭାବରେ ସୁଖ ଦୁଃଖ ହୁଏ, ସେହିପରି ଅନ୍ୟ ସବୁରି ହୁଏ ବୋଲି ଯେ ବୁଝିବ, ସେହି ଏକା ପରମ ଯୋଗୀ । ଯୋଗୀ କହିଲେ, ବୁଦ୍ଧିକୁ ବ୍ରହ୍ମରେ ରଖି କର୍ମନିରତ ରହିବା ଲୋକ । ବିଶ୍ୱବିକାଶରେ କର୍ମର ପରଂପରା ନିହିତ । ସେଥିରେ ସୁଖ ଯେପରି, ଦୁଃଖ ମଧ୍ୟ ସେହିପରି । ସୁଖଦୁଃଖାଦି ଦ୍ୱନ୍ଦ୍ୱ ହିଁ ବିଶ୍ୱକର୍ମ ବା ବିଶ୍ୱବିକାଶର ଲକ୍ଷଣ ମାତ୍ର । ଏହି ତୁଳନା ହେତୁ ବିକାଶ ସମ୍ଭବ । ଅତଏବ ବିଶ୍ୱକର୍ମର ପୀଠ ବିଶ୍ୱର ଅଧ୍ୟାତ୍ମ-ଧାରଣାରେ ଏ ଦୁଇଟି ସମାନ । ମନୁଷ୍ୟ ଏହି ବିଶ୍ୱବିକାଶର ଏକ ଲୀଳା । ଏଥିରେ ମନୁଷ୍ୟ କର୍ମର ମଧ୍ୟ ସୁଖ ଦୁଃଖ ଭେଦ ଗୋଟିଏ ପ୍ରକାଶର ଲକ୍ଷଣ ମାତ୍ର । ବସ୍ତୁତଃ ତାହା କିଛି ନୁହେଁ । ଏହି ଦୃଢ଼ ଧାରଣାରେ ଯେ ନିଜର କର୍ମ କରିଯାଏ, ସେହି ଯୋଗୀ । ମାତ୍ର ଯୋଗୀର ଏହି ସୁଖ ଦୁଃଖରେ ସମତ୍ୱ କେବଳ ନିଜର ସାଧନା ପାଇଁ । ଭଗବାନ୍ କହନ୍ତି—'ସମତ୍ୱଂ ଯୋଗ ଉଚ୍ୟତେ' (୨. ୪୮) ଅର୍ଥାତ୍ ଏହିପରି ସୁଖ ଦୁଃଖାଦି ଦ୍ୱନ୍ଦ୍ୱରେ ଏକାପରି ରହିବା ହିଁ ଯୋଗ । ଏହି ଯୋଗ ହେଉଛି କର୍ମର ଯଥାର୍ଥ କୌଶଳ ବା କରି ଜାଣିବା (୨.୫୦) କିନ୍ତୁ ଏହି ଯୋଗରେ ନିଜର ଯାହା କର୍ମ ବା ଅନ୍ୟ ପ୍ରତି—ସମାଜ ପ୍ରତି ବା ବିଶ୍ୱ ପ୍ରତି—କର୍ତ୍ତବ୍ୟ ତାହା ହିଁ ନିର୍ବିକଳ୍ପଭାବରେ କରିଯିବାର କଥା । ସମାଜରେ ଏହି ଆଦର୍ଶ ପ୍ରତିଷ୍ଠିତ ହେଲେ, ସମସ୍ତେ ସମସ୍ତଙ୍କର ପ୍ରତି ନିଜର କର୍ତ୍ତବ୍ୟ କରିବାରେ ଏହିପରି ନିଜର ସୁଖଦୁଃଖାଦି ବିଚାର ପଛକୁ ପକାଇ ଲାଗିଲେ, ସମାଜର ପରମ ମଙ୍ଗଳ, ଏଥିରେ ସନ୍ଦେହ ନାହିଁ ।

## ଏ ଆତ୍ମଭାବ ବା ସମତାର ଅନର୍ଥ ଓ କର୍ମନୀତିର ଗତି—

ମାତ୍ର ଏ ଆଦର୍ଶର ଅନୁସରଣ ପାଇଁ ପ୍ରତ୍ୟେକ ବ୍ୟକ୍ତି ହିଁ ନିଜ ପାଖେ ଦାୟୀ । ଅନ୍ୟ ଉପରେ ଜୁଲମ କରି ଏ ଆଦର୍ଶଗତ କ୍ରିୟା ଭର୍ତ୍ତି କରିବାର ନାହିଁ । ଯଦି କେହି ବିଚାରେ, ଜଗତରେ ସୁଖ ଦୁଃଖାଦି କାହାରି ବିଚାର କରିବା ଠିକ୍ ନୁହେଁ, ତେବେ ମୁଁ ଅନ୍ୟ ପ୍ରତି କର୍ତ୍ତବ୍ୟ କଲେ ନ କଲେ କଣ ଅଛି ? ସମସ୍ତେ ତ ସୁଖ-ଦୁଃଖ-ସାମ୍ୟ ବୁଦ୍ଧି ଧରିଲେ ସମାଜର ପରମ ମଙ୍ଗଳ, ତେବେ ଅନ୍ୟର ସୁଖ ହେଉଛି କି ଦୁଃଖ ହେଉଛି, ସେ କଥାକୁ ଲକ୍ଷ୍ୟ ରଖିବା ଦରକାର କଣ ? ଏ ଶୁଷ୍କ ତାର୍କିକତାରୁ ମନୁଷ୍ୟକୁ

ନିବର୍ତ୍ତାଇ ଭଗବାନ୍ ଉପରର ଉପଦେଶ ଦେଇଚନ୍ତି । ଯଥାର୍ଥରେ ଏ ଶୁଷ୍କ ତର୍କର ଅର୍ଥ କିଛି ନାହିଁ । ଅନ୍ୟକୁ ଭଲ ମନୁଷ୍ୟ କରାଇବା ଆଡ଼ୁ ଧର୍ମର ସାଧନା ଆରମ୍ଭ କରିବାର ବିଧି ଆର୍ଯ୍ୟଧର୍ମରେ ନାହିଁ । 'ତୁ କାହିଁକି ଚୋରି କଲୁ ?" ନା, 'ସେ କାହିଁକି ଚୋରି କରୁଛନ୍ତି ?'—ସେହିପରି 'ତୁ କାହିଁକି ସୁଖ ଦୁଃଖ ବୁଦ୍ଧି ସମାନ କରୁନାହୁଁ' ? ନା, 'ସେ କାହିଁକି କରୁ ନାହାନ୍ତି ।' ଏସବୁ କୌଣସି ଯୁକ୍ତି ବା ଧର୍ମ ନୁହେ । ଆତ୍ମ-ବିକାଶ ସାଧନାରେ ଆଜିକାଲି ଇଉରୋପୀୟ ଗୀତରେ ଯାହାକୁ ନୀତି-ବିଜ୍ଞାନ (Ethich) କହନ୍ତି, ସେ ଭାଗଟି ଆର୍ଯ୍ୟଧର୍ମରେ ନାହିଁ ବୋଲି କେତେକ ମତ ଦେବାର ଶୁଣାଯାଏ । ମାତ୍ର ସେମାନଙ୍କର ବୁଝିବାର ଭ୍ରମ । ଯାହାର ଜୀବନର କର୍ମଚ୍ଛେଦନା ଓ ପରମ୍ପରା ଆତ୍ମିକ ବା ଆଧ୍ୟାତ୍ମିକ ଭିତ୍ତିରେ କର୍ତ୍ତବ୍ୟ ଚ୍ଛେଦନାରେ ନିବଦ୍ଧ, ତାର ସମସ୍ତ କ୍ରିୟାରାଶି ଏକ ମହାନୈତିକ ପ୍ରବାହ । ନୀତିର ସ୍ୱତନ୍ତ୍ର ଆଲୋଚନା ଏଠାରେ ଦରକାର ନାହିଁ । ଇଉରୋପର ନୀତିବିଜ୍ଞାନସନ୍ଧିତ୍ସୁମାନେ ଭିତରକୁ ଚାହିଁ ଏପରି ଆତ୍ମବିକାଶ-ବୃତ୍ତିରେ କ୍ୱଚିତ୍ ନୀତି ବା ମାନବ-କ୍ରିୟାର ପୀଠ ଆଲୋଚନା କରିଚନ୍ତି । ତେଣୁ ତାଙ୍କର ଭାରତଧର୍ମର ଏ ଅଙ୍ଗଟି ଦୃଷ୍ଟିରେ ସହଜରେ ପଡ଼େ ନାହିଁ । ଏଇ ନୀତି ଧର୍ମର ଆଲୋଚନା କରିବାକୁ ଯାଇ ସେମାନେ ମନୁଷ୍ୟର କର୍ତ୍ତବ୍ୟ-ଚ୍ଛେଦନାର ସ୍ଥିତି ଧରିବାରେ କୌଣସି ଅଳକୂଳ ମଧ୍ୟ ପାଆନ୍ତି ନାହିଁ । ସେମାନଙ୍କ ମତରେ ଏଇ କର୍ତ୍ତବ୍ୟଚ୍ଛେଦନାର ଆଦର୍ଶ ବା ପୀଠ ହେଉଚି ମାନବର ସ୍ଥିରଚରିତ୍ର ବା ବ୍ୟକ୍ତିତ୍ୱ । ଏଥିରେ କର୍ମ-ଚ୍ଛେଦନାରେ ଅନବସ୍ଥା ଦୋଷ କଥା ପୂର୍ବେ କୁହାଯାଇଚି ( ପୂର୍ବେ ୭୯ ପୃଷ୍ଠାରେ ଦେଖ ) । କର୍ମ ଦେଖି ବୁଝି ଠିକ୍ କରିବାରେ ଯେଉଁ ବ୍ୟକ୍ତିତ୍ୱ ବା ଚରିତ୍ରର ପ୍ରତିଷ୍ଠା କରିବାକୁ ହେବ, ସେଇ ବ୍ୟକ୍ତିତ୍ୱର ଚ୍ଛେଦନାରେ କର୍ମ କରିବାକୁ ହେବ । କିଏ କାହାକୁ ନିୟମିତ କରିବ ? ଏଇ ବ୍ୟକ୍ତିତ୍ୱ ବା ଚରିତ୍ର କଣ ପଚାରିଲେ ସେମାନେ କହନ୍ତି—ମନର ଯେ ସଂକଳ୍ପାତ୍ମକ ବୃତ୍ତି, ସେଇ ବୃତ୍ତି ସପୂର୍ଣ୍ଣ ନିୟମିତ ହେଲେ, ହୁଏ ଏଇ ବ୍ୟକ୍ତିତ୍ୱ ବା ଚରିତ୍ର; ମାତ୍ର ଏ ବୃତ୍ତି ନିୟମିତ ହେବ କାହିଁରେ ? ସେଇଠାରେ ଗୋଳମାଳ । ଯଜ୍ଞ-ଭାବରେ ନିଜକୁ ବିଶ୍ୱବିକାଶରେ ମିଶାଇଦେଇ ନିତ୍ୟ ବା ନିର୍ଦ୍ଦିଷ୍ଟ କର୍ମାନୁଷ୍ଠାନର ବୁଦ୍ଧିକୁ ବିଶ୍ୱ ଧର୍ମରେ ସ୍ଥିର ରଖି ସ୍ଥିତପ୍ରଜ୍ଞ ହେଲେ ଏ ବୃତ୍ତି ସ୍ୱତଃ ସେଇ ଅଦର୍ଶରେ ନିୟମିତ ହେଲା । ଏଥିରେ ଅଉ କ୍ଷୁଦ୍ର ନୈତିକତାର ପ୍ରଶ୍ନ ଉଠାଇବାର ପ୍ରୟୋଜନ ନାହିଁ । ମାତ୍ର ତାହା ନ ଥିଲେ ଏ ବୃତ୍ତିକୁ ନିୟମିତ କରିବ କିଏ ? ଏହା ପୂର୍ବେ ସୂଚିତ ହୋଇଚି । ମାତ୍ର ଏଠାରେ କହିବାର କଥା, ଏଇ ଆଦର୍ଶର ପ୍ରକାଶରେ କର୍ତ୍ତବ୍ୟ ବା ସ୍ୱଧର୍ମ-ଧାରଣାହିଁ ମାନବର ଏକମାତ୍ର ଅବଲମ୍ବନ । ଏଇ ସ୍ୱଧର୍ମରେ ସର୍ବଭୂତରେ ଆଦର, ଦୁର୍ଗତ ପ୍ରତି ଦୟା, ସମସ୍ତଙ୍କ ସୁଖ ଦୁଃଖରେ ସହାନୁଭୂତି ଓ ସଙ୍ଗେ ସଙ୍ଗେ ସେଇ ସାଧନାରେ ନିଜର ନିଷ୍କାମ କର୍ମ ଏକାନ୍ତ ସ୍ୱାଭାବିକ । ଏହା ବୁଝାଗଲା ।

## ସ୍ୱଧର୍ମ ସାଧନାରେ ଶୃଙ୍ଖଳା—

ଏବେ ବୁଝିବାକୁ ହେବ, ସମାଜରେ ଏହି ସ୍ୱଧର୍ମର ଶୃଙ୍ଖଳା କଣ ?—ଏହି କର୍ତ୍ତବ୍ୟ କିପରି ସୁଶୃଙ୍ଖଳରେ ସାଧନ କରିବାକୁ ହେବ ? ସମସ୍ତେ ଖାଲି କର୍ତ୍ତବ୍ୟ କରିବେ ବା ସ୍ୱଧର୍ମ, ନିଜ କର୍ତ୍ତବ୍ୟ କରିବେ ବୋଲି କହି ଛାଡ଼ିଦେଲେ କୌଣସି ସମାଧାନ ହେଲା ନାହିଁ । ଏ ଯେଉଁ କର୍ତ୍ତବ୍ୟ କଥାଟି କୁହାଗଲା, ତାର ସୀମା କେଉଁଠାରେ ? ସମସ୍ତେ ଖାଲି କର୍ତ୍ତବ୍ୟ କରିବି କରିବି ବୋଲି ମାଡ଼ି ବସିଲେ, କର୍ତ୍ତବ୍ୟ କରିବାର ସୁବିଧା ହିଁ ମିଳିବ ନାହିଁ । ବିଶ୍ୱବ୍ୟକ୍ତିରେ ମଧ୍ୟ ଏହି ସ୍ୱଧର୍ମର ସୀମା ସ୍ପଷ୍ଟ । ସୂର୍ଯ୍ୟ ଯେଉଁ କର୍ମ କରେ ତା ତାହାର ସ୍ୱଧର୍ମ । ସେଥିରୁ ବୃକ୍ଷ ଓ ବର୍ଷାର ସ୍ୱଧର୍ମ ଭିନ୍ନ । ଯେଉଁଠା ବିକାଶ ସ୍ୱଭାବରେ ତାର ଧର୍ମ ବା କର୍ତ୍ତବ୍ୟ ନିୟତ ବା ନିୟମିତ । ସେଥିପାଇଁ ସ୍ୱଧର୍ମ କଥା ବୁଝାଇଲାବେଳେ ଭଗବାନ୍ ଏହାକୁ 'ସ୍ୱଭାବନିୟତ କର୍ମ' (୧୮.୪୭) ବୋଲି କହୁଛନ୍ତି । ବିଶ୍ୱ-ବ୍ୟକ୍ତିର ଏ ସ୍ୱଧର୍ମ ସ୍ଥିରଥିବାର ଦେଖାଯାଉଛି । ତାକୁ ବଦଳାଇବା ମାନବର ଶକ୍ତିରେ ନାହିଁ । ମାତ୍ର ମାନବର ଅନନ୍ତ ସ୍ୱାତନ୍ତ୍ର୍ୟ-ଲୀଳାରେ ଯେ ସ୍ୱଭାବର ମାପକାଠି, ପୁଣି ସେହି ସ୍ୱଭାବନିୟତ କର୍ମ କଣ ?

## କର୍ମ-ବିଭାଗ ଓ ଚାତୁର୍ବର୍ଣ୍ଣ୍ୟ—

ଧର, ସମସ୍ତେ କିପରି ସୁଖରେ ଖାଇବେ ରହିବେ, ସେଥିପାଇଁ ଖାଦ୍ୟ ଓ ଧନ ତିଆରି କରିବା ଗୋଟିଏ କର୍ତ୍ତବ୍ୟ । ସମସ୍ତେ ଯେବେ ସେଇଥି କରିବାକୁ ଆରମ୍ଭ କରିବେ, ତେବେ କୌଣସିଠାରେ 'ଆସୁରି' ପ୍ରକୃତି ଯେବେ ଯେତେ ପାରିବ ସେତେ ନିଜ ପାଇଁ ଜୋର କରି ବା ଚୋରି କରି ସଂଚୟ କରି ବସିବ, ତେବେ କଣ ହବ ? ସେଥିପାଇଁ ସେ ସବୁରେ ସର୍ବଦା ସମତା ବା ଯେଉଁଠା କର୍ତ୍ତବ୍ୟ ଓ ଅଧିକାରରେ ସମସ୍ତଙ୍କୁ ଠିକ୍ ରଖିବା କର୍ମ କାହାର ହେବା ଉଚିତ ? ପୁଣି ଖାଲି ଖୁଆଇ ପିଆଇ ଲୋକଙ୍କୁ ଠିକ୍ ରଖିବାକୁ ଗଲେ, ଲୋକେ ଆଦର୍ଶ ଧରିବେ କିପରି ? ଆସୁରି ପ୍ରକୃତି ତ ସବୁବେଳେ ସମାଜରେ ଜାଗ୍ରତ । ସେଥିର ସଂଯମ ତ ଭିତରୁ ହେବା ଆବଶ୍ୟକ । ସେ ଆଦର୍ଶ ସ୍ଥିର ରଖି ଆଗ୍ରହର ଆତ୍ମିକ ଆଦର୍ଶ ପ୍ରତିଷ୍ଠା କରିବା ମଧ୍ୟ କାହାର କର୍ମ ହେବା ଉଚିତ । ପୁଣି ଯେଉଁମାନେ ସମାଜକୁ ପ୍ରଭୁତ୍ୱରେ ଚଳାଇବେ, ଯେଉଁମାନେ ଆତ୍ମିକ ଆଦର୍ଶ ଠିକ୍ ରଖିବାରେ ନିଜକୁ ନିୟୋଜିତ କରିବେ, ଯେଉଁମାନେ ବା ଖାଦ୍ୟ ଓ ଧନ ସଂଗ୍ରହ କରିବେ ସେମାନଙ୍କର—ବିଶେଷରେ ପ୍ରଥମ ଓ ଦ୍ୱିତୀୟପନ୍ଥୀଙ୍କର ଚିନ୍ତାର ସୁଯୋଗ ଦରକାର । ସେଥିପାଇଁ ତାଙ୍କର ଶରୀର-ଯାତ୍ରାରେ ସାହାଯ୍ୟ କରିବାକୁ ଲୋକ ଦରକାର । କଲେଜର ବଡ଼ ବଡ଼ ଅଧ୍ୟକ୍ଷ ଓ ଅଧ୍ୟାପକମାନେ ଯେବେ ବଜାରରେ ବୁଲି, ଡ଼ାଲି ଖୋଜି ଦାମ୍ କରି କିଣି ବୁଲିବେ, ଗାଧୋଇବା ପାଇଁ ପାଣି କାଢ଼ିବେ, ଲୁଗା କାଚିବେ, ପାଇଖାନା ସଫା

କରିବେ, ତେବେ ସମାଜର ବିକାଶ ହ୍ରସ୍ୱ ହେବ, ସନ୍ଦେହ ନାହିଁ । ସେମାନଙ୍କ ପାଇଁ ପରିଚର୍ଯ୍ୟା କରିବାର ଲୋକ ଦରକାର । ପୁଣି ଯେଉଁମାନେ ଧନ ଓ ଖାଦ୍ୟ ସଂଗ୍ରହ କରିବେ, ସେମାନଙ୍କୁ ଶିଳ୍ପାଦରେ ସାହାଯ୍ୟ କରିବାକୁ ଲୋକ ଦରକାର । ଚାଷୀ ପାଇଁ ଲଙ୍ଗଳ ତିଆରି କରିବା, ପୁଣି ଗୃହାଳ ପାଇଁ ଘର ତିଆରି କରିବା, ବଣରୁ କାଳ କାଠ ଆଣିବା, ଏସବୁ ପାଇଁ ମଧ୍ୟ ଶ୍ରମିକ ଦରକାର । ଏଇ ଶ୍ରମିକ ଓ ପରିଚର୍ଯ୍ୟାଶୀଳ ମଧ୍ୟ ଗୋଟିଏ ଶ୍ରେଣୀର ଲୋକ । ସମାଜରେ ତାଙ୍କ ସ୍ଥାନ ଅନିବାର୍ଯ୍ୟ । ପୃଥିବୀରେ ଯେଉଁଠାରେ ବିକାଶପର ମାନବ-ସମାଜ ଅଛି, ସେଠାରେ ସାଧାରଣତଃ ଏଇ ବିଭାଗ ମୋଟାମୋଟି ଦେଖାଯାଏ । ଯେ ଆଦର୍ଶ ବା ସାଧନାରେ ସମାଜ ଚାଲୁ ନା କାହିଁକି, ଏ ବିଭାଗରେ ସମାଜର କର୍ମ ନିୟମିତ ହୋଇଯାଏ । ଏହା ଦେଖି ବୁଝି ଠିକ୍ କରି ରଖି ସମାଜର ଆଦର୍ଶ ନିୟମିତ କରିବା ସବଙ୍ଗ ନ ହୋଇପାରେ, ମାତ୍ର ଏ କର୍ମବିଭାଗ ଶୃଙ୍ଖଳାଟି ମାନବ ସମାଜର ସ୍ୱଭାବ ବା ସ୍ୱଭାବନିୟତ ଧର୍ମ— ସମାଜର ଏହା ହିଁ ସ୍ୱଧର୍ମ ବୋଲିବାକୁ ହେବ । ସେଥିପାଇଁ ଭଗବାନ୍ ଯଜ୍ଞତତ୍ତ୍ୱ ବୁଝାଇବାର ମୁଖବନ୍ଧ ସ୍ୱରୂପ କହୁଚନ୍ତି—

ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ
ଗୁଣକର୍ମବିଭାଗଶଃ ।" (୪. ୧୩)

ଅର୍ଥାତ, ସମାଜର ଚାରି ବର୍ଣ୍ଣ, ଗୁଣ କର୍ମ ବିଭାଗ ଅନୁସାରେ ମୁଁ ସୃଷ୍ଟି (ପ୍ରକାଶ) କରିଚି । ସଙ୍ଗେ ସଙ୍ଗେ ପୁଣି କହୁଚନ୍ତି—ଅବ୍ୟୟ ଅର୍ଥାତ୍ ବିକାର ଓ ପରିବର୍ତ୍ତନହୀନ ମୁଁ ଏକା ତାର କର୍ତ୍ତା ହୋଇ ମଧ୍ୟ ଅକର୍ତ୍ତା । ଏହା ହିଁ ଜଗତର ବିକାଶ ଧର୍ମ—ମୋର ବିକାଶ ହେଲେ ମଧ୍ୟ ମୁଁ ସେ ବିକାଶରେ ଲିପ୍ତ ନୁହେ । ସମସ୍ତ ସୃଷ୍ଟିରେ ଯେ ନିୟମ, ସେଇ ନିୟମରେ ଏ ଚାତୁର୍ବର୍ଣ୍ଣ୍ୟ ଶୃଙ୍ଖଳାକୁ ବୁଝିବାକୁ ହେବ । ସେଥିପାଇଁ—

"ସ୍ୱଧର୍ମେ ନିଧନଂ ଶ୍ରେୟଃ
ପରଧର୍ମୋ ଭୟାବହଃ ।" (୩. ୩୫)

ସୃଷ୍ଟିଯାକ ସମସ୍ତେ ସ୍ୱଧର୍ମରେ କର୍ମନିରତ । ସୂର୍ଯ୍ୟର ଧର୍ମ ଯେବେ ଶୁଷ୍କିଲ ଓ ଉଜ୍ଜ୍ୱଳ ବୋଲି ବର୍ଷା ନିଅନ୍ତା, ବର୍ଷାର ଧର୍ମ ଯଦି ଶୀତଳ ଓ ସୁଖକର ବୋଲି ଦୀପ ବା ଘରର ଚାଳ ନିଅନ୍ତା, ଏଇପରି ସମସ୍ତେ ସ୍ୱଧର୍ମ ଛାଡ଼ି ଯେବେ ସୁଖକର ବାଛି ବାଛି ପରଧର୍ମ ନିଅନ୍ତେ, ତେବେ ବିଚାର କର, ସୃଷ୍ଟିରେ କି 'ଭୟାବହ' ବିଶୃଙ୍ଖଳା ହୁଅନ୍ତା ? ବିକାଶର ବା କି ପରିଣାମ ହୁଅନ୍ତା ? ତାହା ଚିନ୍ତା କଲେ ଅସହ୍ୟ ହୁଏ । ବିଶ୍ୱ ନିୟମରେ ଏଇ ସ୍ୱଧର୍ମ ହିଁ ଧାରଣା ଓ ପ୍ରତିଷ୍ଠା । ସେଇପରି ସମାଜରେ ସ୍ୱଧର୍ମର ଧାରଣା ଓ ସାଧନା । କାରଣ, ଭଗବାନ୍ କହୁଚନ୍ତି, "ପ୍ରକୃତି କାମନାର ପ୍ରଚଣ୍ଡ

ପ୍ରେରଣାରେ ଘରୁଟବେଳେ ଛୁଟୁଚ । ସେଥିରେ 'ସ୍ତ୍ରୀ କରବ ନାହିଁ, ତା କରବ ନାହିଁ' ବୋଲ ନଟରୋଧରେ ବନ୍ଧ ରହବ ନାହିଁ (୩.୩୩) । ଇନ୍ଦ୍ରିୟର ଭୋଗରେ ସଉକ୍ ବରକ୍ତ ଲଗି ରହଚ । କେଉଁ କର୍ମ ସୁଖ ଲଗୁଚ, କେଉଁ କର୍ମ ପୁଣି ଦୁଃଖ ଲଗୁଚ । ସେ ସୁଖ ଦୁଃଖରେ ପଡ଼ବ ନାହିଁ (୩.୩୪) । ଦୁଃଖ ଲଗୁ ପଛକେ ସ୍ୱଧର୍ମ କରବ । ସୁଖ ଲଗୁଚ ବୋଲ ଧର୍ମ ଖୋଜ ବୁଲବ ନାହିଁ । (୩.୩୫; ୧୮.୪୭)

## ନିୟତ କର୍ମ ବା ସ୍ୱଧର୍ମରେ ସିଦ୍ଧି—

ମୋଟାମୋଟି ଆତ୍ମତତ୍ତ୍ୱ କଥା ଠିକେ ଠିକେ କହସାର ଭଗବାନ୍ ଏଇ ସ୍ୱଧର୍ମ କଥାଟିରେ ଅର୍ଜୁନଙ୍କୁ ସମାଜ କର୍ତ୍ତବ୍ୟ ବୁଝାଇବାର ଆରମ୍ଭ କର (୨.୩୧), ଶେଷରେ ଏଇ ଚାତୁର୍ବର୍ଣ୍ୟର ସ୍ୱଧର୍ମ କଣ ତାହା ବଶଦଭାବରେ କହ (୧୮.୪୨-୪୩) ସ୍ପଷ୍ଟ କହ ଦେଇଛନ୍ତି—"ନଜ ନଜର ନିୟତ କର୍ମରେ ରହ ଲୋକ ସିଦ୍ଧି ପାଏ । ଯେଉଁ ତତ୍ତ୍ୱରୁ ଏ ସମସ୍ତ ବିଶ୍ୱକର୍ମନିୟମର ପ୍ରକାଶ, ଯାହାର ନିତ୍ୟ ନିୟମରେ ଏ ବିଶ୍ୱ ବ୍ୟାପ୍ତ, ସ୍ୱକର୍ମରେ ସେଇ 'ପୁରୁଷୋତ୍ତମ'ଙ୍କୁ ଭଜିଲେ ଲୋକ ସିଦ୍ଧି ପାଏ ।" (୧୮.୪୫, ୪୬) । ପୁଣି ଚେତାଇ ଦେଇଚନ୍ତି "ଅସୁଖ ଲଗିଲେ ବି ସ୍ୱଧର୍ମ ମଙ୍ଗଳ ପାଇଁ, ମାତ୍ର ସୁଖ ଲାଗୁଚ ବୋଲ ପରଧର୍ମ ଠିକ୍ ନୁହେଁ, କାହିଁକି ନା, ସ୍ୱଭାବନିୟତ କର୍ମରେ ହିଁ ସେଇ ମଙ୍ଗଳମୟଙ୍କ ଉପାସନା କଲେ କାମଜନତ ବିକ୍ଷୋଭ ନାହିଁ, କି ପାପ ନାହିଁ ।" (୧୮. ୪୭) । ଏଇଥିରେହିଁ 'ସତ୍ୟ ଶିବ ସୁନ୍ଦର'ର ଯଥାର୍ଥ ଉପାସନା । ସମାଜର ମଙ୍ଗଳ ହିଁ ସତ୍ୟ, ତାହା ହିଁ ସୁନ୍ଦର । ସେଥିପାଇଁ 'ବିଗୁଣ ସ୍ୱଧର୍ମ ଶ୍ରେୟାନ୍' ବା ମଙ୍ଗଳକର ଓ ଏଇ ମଙ୍ଗଳରେ ଆତ୍ମଲାଭ ହିଁ 'ସିଦ୍ଧି'—ଏହା ଏଠାରେ ସ୍ପଷ୍ଟ ।

## ଚାତୁର୍ବର୍ଣ୍ୟର ଶୃଙ୍ଖଳା, ସ୍ୱଧର୍ମ ସାଧନାର ସଂକେତମାତ୍ର—ସବୁ ନୁହେଁ—

ଚାତୁର୍ବର୍ଣ୍ୟ କଥାଟିରେ କେହି ବୁଝିବା ଉଚିତ ନୁହେଁ, ଏହା ହିଁ ସମାଜରେ ଗୁଣକର୍ମର ଶେଷ ଓ ଏକମାତ୍ର ବିଭାଗ । ସୃଷ୍ଟିରେ ବ୍ୟକ୍ତି ଓ ସମଷ୍ଟିତତ୍ତ୍ୱ କଥା ପୂର୍ବେ କୁହାଯାଇଚ । ଜଗତରେ ପ୍ରତ୍ୟେକ ବ୍ୟକ୍ତିରେ ସମଷ୍ଟି ଓ ପ୍ରତ୍ୟେକ ସମଷ୍ଟିରେ ବ୍ୟକ୍ତି—ଏଇ ଦୁଇଟି ବିଭାଗ ଛଡ଼ା କୌଣସି କଳ୍ପନା ନାହିଁ । ସୂର୍ଯ୍ୟ, ବର୍ଷା, ପୃଥିବୀ, ଅଗ୍ନି ପ୍ରଭୃତି ପର ସ୍ପଷ୍ଟ ଓ ବିସ୍ତୀର୍ଣ୍ଣ ବ୍ୟକ୍ତିରେ ବିଶ୍ୱର ଭାଗ କରାଗଲା । ଦେଖ, ସୂର୍ଯ୍ୟ ଗୋଟିଏ ବ୍ୟକ୍ତି । ସେଥିରେ ପୁଣି କିରଣ, ତାପ ପ୍ରଭୃତି ଏକ ଏକ ସ୍ପଷ୍ଟ ବ୍ୟକ୍ତି । କିରଣରେ ପୁଣି ତେଜ ଓ ବ୍ୟାପ୍ତି । ତେଜରେ ପୁଣି କମ୍ପନ ଓ ଗତି—ଏଇପରି ଅନନ୍ତ । ଗିଲାସ ଗୋଟିଏ ବ୍ୟକ୍ତି । ସେ ପୃଥିବୀରେ । ଗିଲାସର ଓଜନ । ଓଜନର ମାଧ୍ୟାକର୍ଷଣ, ଏଇପରି କଳ୍ପନାରେ ବ୍ୟକ୍ତି ଅନନ୍ତ । ସମାଜରେ ସେଇପରି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ରରେ ବିଭାଗ ଅତି ସ୍ପଷ୍ଟ ଓ ବିସ୍ତୀର୍ଣ୍ଣ । ତା

ଭିତରେ ପରିବାର, ପରିବାରରେ ନେତା, ପିତା, ପୁତ୍ର—ପ୍ରଭୃତି ବ୍ୟକ୍ତିର ସୀମା ନାହିଁ । ପୁଣି ସେହିପରି ବ୍ରାହ୍ମଣ ଭିତରେ ଯାଜ୍ଞିକ, ତତ୍ତ୍ୱଜ୍ଞ ପ୍ରଭୃତି ଭେଦ ଅସୀମ । ସମସ୍ତଙ୍କର ସ୍ୱଧର୍ମ ଅଛି ।

ପରିବାରରେ ପିତାର ଧର୍ମ ଓ ପୁତ୍ରର ଧର୍ମ, ମାତାର ଧର୍ମ ଓ ଦୁହିତାର ଧର୍ମ—ଏସବୁ ସ୍ଥିର କରି ବସିଲେ ଗ୍ରନ୍ଥ ସରିବ ନାହିଁ । ସେଥିପାଇଁ ବୁଝିବାକୁ ହେବ, ଚାତୁର୍ବର୍ଣ୍ଣ୍ୟ ଗୋଟିଏ ପ୍ରଶସ୍ତ ସଙ୍କେତ ମାତ୍ର । ଏହିପରି ସବୁ ସ୍ୱଧର୍ମ ବୁଝିବାକୁ ହେବ । ସ୍ୱଧର୍ମର ଆଦର୍ଶ ଓ ରୀତି ବୁଝିଗଲେ, ସେସବୁ ବୁଝିବାରେ ଅସୁବିଧା ହେବ ନାହିଁ । ପୁଣି ଏହି ସ୍ୱଧର୍ମ ସଙ୍କେତ ଧରି ଭାରତର ଧର୍ମଶାସ୍ତ୍ରମାନଙ୍କରେ ଅଶେଷ ବିଭାଗରେ ବ୍ୟକ୍ତିଧର୍ମର ଆଲୋଚନା, ପ୍ରବୃତ୍ତି ଓ କର୍ମର ନିର୍ଦ୍ଦେଶ ପର୍ଯ୍ୟନ୍ତ ବହୁତ କରାଯାଇଛି । ତାହା ମଧ୍ୟ ଦେଖାଯାଇପାରେ । ମାତ୍ର ଜଗତରେ କୌଣସି କର୍ତ୍ତବ୍ୟ ଏପରି ସ୍ଥିର କରିବାର ବସ୍ତୁ ନୁହେଁ । ସମାଜ ନିତ୍ୟବର୍ଦ୍ଧିଷ୍ଣୁ, ଏହା ସନାତନ । ପରିସ୍ଥିତିରେ ସ୍ୱଧର୍ମ ଦେଖିବା ହିଁ ଠିକ୍ ।

## ଚାତୁର୍ବର୍ଣ୍ଣ୍ୟ କଳ୍ପନାରେ ରକ୍ତଗତ ଜାତି ନାହିଁ—

ଧର, ଏହି ଚାତୁର୍ବର୍ଣ୍ଣ୍ୟର ସ୍ୱଧର୍ମ । ଏଥିରେ ଗୁଣ-କର୍ମ-ବିଭାଗରେ କର୍ମର ବିଭାଗ ହିଁ ଉଦ୍ଦେଶ୍ୟ । ପୁରୁଷ ସୂକ୍ତରେ (ଋଗ୍‌ବେଦ, ୧୦.୯୦) ବିରାଟ ବିଶ୍ୱପୁରୁଷଙ୍କ ଯଜ୍ଞରେ ଯେପରି କୁହାଯାଇଛି—ଏହି ବିରାଟ ପୁରୁଷଙ୍କ ମନରୁ ଚନ୍ଦ୍ରମା, ଚକ୍ଷୁରୁ ସୂର୍ଯ୍ୟ, ମୁଖରୁ ଇନ୍ଦ୍ର ଓ ଅଗ୍ନି, ପ୍ରାଣରୁ ବାୟୁ ପ୍ରଭୃତି ପ୍ରକାଶ ପାଇଲେ, ସେହିପରି ସମାଜକୁ ମଧ୍ୟ ଏହି ପୁରୁଷର ପ୍ରତୀକ ବୋଲି ଧରି କୁହାଯାଇଛି—ଏହାକୁ ଯଜ୍ଞରେ ବର୍ଣ୍ଣିବାରେ ମୁଖ ବ୍ରାହ୍ମଣ, ବାହୁ କ୍ଷତ୍ରିୟ ହେଲେ, ଜଙ୍ଘ ବୈଶ୍ୟ ହେଲେ ଓ ପାଦରୁ ଶୂଦ୍ର ବାହାରିଲେ । ଏସବୁ ବିଶ୍ୱପୁରୁଷର ରୂପକ-ବିଭାଗ ମାତ୍ର । କିନ୍ତୁ ପରିସ୍ଥିତିରେ ପଡ଼ି ଏସବୁ ବର୍ଣ୍ଣ ରକ୍ତ ବା ଜନ୍ମଗତ ହେଲା । ସେଥିରେ ସମାଜ ଧାରଣାଟି ଦୁରନ୍ତ ବହୁଗ୍ରନ୍ଥମଣ ଭିତରେ ପ୍ରାଣହୀନ ହୋଇ ପିଣ୍ଡ ଧରି ପଡ଼ିରହିଲା ମାତ୍ର । ଏହି ପିଣ୍ଡରେ ପୁଣି ଜୀବନ ଫୁଙ୍କି ପ୍ରାଣ ଦେଲେ ଏହା ସ୍ୱାଧୀନ ପରିସ୍ଥିତିରେ ଅନ୍ୟ ପ୍ରକାର ଧରିବ । ସେ ଯାହା ହେଉ, ଏ ସ୍ୱଧର୍ମ-ଧାରଣାରେ ଜନ୍ମଗତ ଜାତିର ଧାରଣା ନାହିଁ । ସାତ୍ତ୍ୱିକ ଶ୍ରଦ୍ଧାରେ ଲୋକ ଶାସ୍ତ୍ରବିଗର୍ହିତ କାର୍ଯ୍ୟ କଲେ ମଧ୍ୟ, ସେ ତାର ସ୍ୱଧର୍ମ ବୋଲି ବୁଝିବାକୁ ହେବ । ବ୍ୟକ୍ତିତ୍ୱ ଶ୍ରଦ୍ଧାରେ ସ୍ଥିର । ଯାହାର ଯାହା ଶ୍ରଦ୍ଧା ସେ ସେହିପରି, ସେଥିରେ ତାର ସ୍ୱଧର୍ମ; କିନ୍ତୁ ସେ ଶ୍ରଦ୍ଧା ସାତ୍ତ୍ୱିକ ହେବା ଦରକାର ବା ନିଜ ଶକ୍ତି ଅନୁରୂପ ହେବା ଉଚିତ । (୧୭.୩—୧୭.୧ ଟୀକା) । ପୁଣି ଦେଖ, ନିଜେ କୃଷ୍ଣ ବା ଅର୍ଜ୍ଜୁନ କେହି ହୁଏତ ରକ୍ତ ବା ବର୍ଣ୍ଣରେ ଆର୍ଯ୍ୟ ନ ଥିଲେ, ଦୁହେଁ କୃଷ୍ଣ (କଳା) । କୃଷ୍ଣଙ୍କୁ ବେଦରେ ଦସ୍ୟୁ ବୋଲି କୁହାଯାଇଛି । ସେ ଦସ୍ୟୁର ଅର୍ଥ କଣ, ତା ଠିକ୍ କରିବାରେ ପଣ୍ଡିତମାନେ ଏକମତ ନୁହନ୍ତି । ମାତ୍ର ସେ

ଇନ୍ଦ୍ରପୂଜକଙ୍କର ଘୃଣିତ, ପୁଣି ଉଗ୍ର ସଂସ୍କାରକ ଥିଲେ । ଅର୍ଜ୍ଜୁନ ପୁଣି ଚନ୍ଦ୍ରବଂଶୀ ପୌରବ ବା ପୁରୁବଂଶୀୟ । କୃଷ୍ଣ ଯଦୁବଂଶୀୟ । ଏଇ ଦୁଇ ବଂଶର ସଂପର୍କ ଥିଲା ଓ ଏ ଦୁହେଁ ଅନାର୍ଯ୍ୟ (ଅସୁର) ଥିବାର ପ୍ରମାଣ ବେଦରୁ ପଣ୍ଡିତମାନେ ପାଉଚନ୍ତି । * ଏସବୁର ପ୍ରମାଣ ଏଠାରେ ଦରକାର ନାହିଁ । ମାତ୍ର ଆର୍ଯ୍ୟଧର୍ମରେ ଜନ୍ମଗତ ଜାତିର କୌଣସି କଟକଣା ଯେ ମୂଳରୁ ନାହିଁ, ଏହାହିଁ କହିବାର ଅଭିପ୍ରାୟ । ତେବେ ଏ ଚାତୁର୍ବର୍ଣ୍ଣ୍ୟଗତ ସ୍ୱଧର୍ମ କର୍ମ ? ଏ ଗୁଣ-କର୍ମ-ବିଭାଗର ମାପକାଠି କେଉଁଠାରେ ।

## ସ୍ୱଧର୍ମର ନିୟନ୍ତା ସ୍ୱଭାବ କଣ—

ସ୍ୱଭାବରେ ଏଇ ସ୍ୱଧର୍ମ ପ୍ରକାଶ ପାଏ । ସ୍ୱଭାବ କହିଲେ ବ୍ୟକ୍ତିର ଅଧ୍ୟାତ୍ମ ବା ବିକାଶ ପୀଠ । ଏହା କୁହାଯାଇଛି । ତେବେ ବ୍ୟକ୍ତିର ବ୍ୟକ୍ତିତ୍ୱ-ବିକାଶର ବୀଜ ହେଉଛି ସ୍ୱଭାବ, ଇନ୍ଦ୍ରିୟ ସ୍ୱଧର୍ମ ବା କାମନାଗ୍ରେରିତ କର୍ମରେ ଏଇ ସ୍ୱଭାବ ମଧ୍ୟ ପ୍ରକାଶ ପାଏ । ସ୍ୱଧର୍ମରେ ଏଇ ସ୍ୱଭାବର ବିକାଶ କରିବା ହେଉଛି ଆର୍ଯ୍ୟଧର୍ମ । ଏଇ ସ୍ୱଧର୍ମ ହେଉଛି ନିଜର ଧର୍ମ ବା ସମାଜରେ ବା ପରିସ୍ଥିତିରେ କର୍ତ୍ତବ୍ୟ ଧାରଣା । ଏହା ଆତ୍ମ-ବିକାଶର ଶ୍ରେଷ୍ଠ ସାଧନ । ଏହା କୁହାଯାଇଛି । ସମାଜ ତଥା ପରିସ୍ଥିତିର କର୍ମ ବିଭାଗ ଧାରଣାରେ ଏଇ ସ୍ୱଧର୍ମର ସ୍ଥିତି ଓ ଗତି ଦେଖିବାକୁ ହେବ । ଅନ୍ୟ ପରିସ୍ଥିତି କଥା ଏବେ ଛାଡ଼ିଦିଅ । ଏଇ ବିସ୍ତୀର୍ଣ୍ଣ ପରିସ୍ଥିତି ବା ଚାତୁର୍ବର୍ଣ୍ଣ୍ୟ ବିଭାଗର ସଂକେତରେ ତାହା ଧରାଯାଉ । ସେଥିରୁ ସବୁ ଜଣାପଡ଼ିବ । ଏ ପ୍ରସଙ୍ଗରେ ଚାତୁର୍ବର୍ଣ୍ଣ୍ୟରେ ଯାହା କୁହାଯିବ, ତାକୁ ସଂକେତ ବା ଦୃଷ୍ଟାନ୍ତ ବୋଲି ସର୍ବତ୍ର ବୁଝିବାକୁ ହେବ । କିମ୍ବା ସ୍ୱଧର୍ମ ବୋଲି ଯାହା ଉଦାହରଣରେ କୁହାଯିବ, ତାକୁ ଚାତୁର୍ବର୍ଣ୍ଣ୍ୟରେ ଲଗାଇ ନେବାକୁ ହେବ ।

## ସ୍ୱଭାବ ବ୍ୟକ୍ତିତ୍ୱର ପୀଠ—

ସମାଜରେ ମନୁଷ୍ୟ ଶିଶୁକାଳରୁ ବଢ଼େ । ସେଥିରେ ତାର ଜନ୍ମଗତ ପ୍ରେରଣା ଥାଉ ବା ନ ଥାଉ, ସେ ବିବାଦରେ ପଶିବାର ପ୍ରୟୋଜନ ନାହିଁ । ମାତ୍ର ଶିକ୍ଷା, ଦୀକ୍ଷା, ସଂସ୍କାର, ବେଷ୍ଟନୀ ପ୍ରଭୃତିର ପ୍ରଭାବରେ ସେ କ୍ରମେ ବଡ଼ ହୁଏ ଓ ଏଇପରି ତାର ବ୍ୟକ୍ତିତ୍ୱ କ୍ରମେ ପୁଷ୍ଟ ହୁଏ । କ୍ରମେ ଏଇ ବ୍ୟକ୍ତିତ୍ୱ ତାର ପ୍ରତିଷ୍ଠିତ ହୋଇଯାଏ । ସେଥିରେ କେତେଗୁଡ଼ିଏ ଉପାଦାନର ବିକାଶ ହୁଏ । ତହିଁରେ ପ୍ରଧାନ ହେଉଛି ଜୀବନର ଉଦ୍ଦେଶ୍ୟ, ସେଇ ଉଦ୍ଦେଶ୍ୟରେ ଜୀବନ ଚଳାଇବାର ପନ୍ଥା । ଏଇ ଉଦ୍ଦେଶ୍ୟ ମୁଖରେ ଏଇ ପନ୍ଥାରେ ସେ ନିଜ ଜୀବନ ଚଳାଇବାରେ ବ୍ରତୀ ହୁଏ—ଏହା ହିଁ ତାର ବ୍ୟକ୍ତିତ୍ୱ ବିକାଶ ବା ଆତ୍ମବିକାଶର ପ୍ରସଙ୍ଗ ବା ତପ । "ଏକୋଽହଂ ବହୁ ସ୍ୟାଂ" (ମୁଁ

---

* See "Asura India" by Anantaprasad Banerji (Sastri Patna 1926) pp. 82, 83.

ଏକ ଅଛି, ବହୁତ ହୁଏ) ବୋଲି ବ୍ରହ୍ମପୁରୁଷ ସୃଷ୍ଟିବିକାଶ ନିମନ୍ତେ ପହିଲେ ଏଇ ତପ କରିଥିବାର ରୂପକରେ ବେଦ କହନ୍ତି । ଏଥିରେ ହିଁ ବିଶ୍ୱବିକାଶ ବା ବ୍ରହ୍ମ-ପୁରୁଷର ଆତ୍ମବିକାଶ ହେଲା । ସେଇ ଆତ୍ମବିକାଶ ହେଉଛି ଏ ଜଗତ୍ । ପ୍ରତ୍ୟେକ ମନୁଷ୍ୟର ଏହା ହିଁ ହୁଏ । ଯାହାର ଜୀବନରେ ଉଦ୍ଦେଶ୍ୟ ନାହିଁ, ସେ ବ୍ୟକ୍ତିତ୍ୱହୀନ ବା ଅମନୁଷ୍ୟ ଏହା ସମ୍ବନ୍ଧ ସବୁ ସମାଜର ମତ । ଏଇ ଉଦ୍ଦେଶ୍ୟରେ ଯେଉଁ ବ୍ୟକ୍ତିତ୍ୱର ବିସ୍ତାର ବା ପ୍ରକାଶ, ସେଥିରେ ସମାଜର କର୍ତ୍ତବ୍ୟ ଠିକ୍ ହୋଇଯାଏ । ପୁଣି ଏଇ କର୍ତ୍ତବ୍ୟ ହେତୁରୁ ସେ ଚତୁର୍ବର୍ଣ୍ଣ୍ୟରୁ ଗୋଟିଏ ବର୍ଣ୍ଣରେ ମୋଟାମୋଟି ଭାବରେ ପଡ଼ିଯାଏ । ଏଇ କର୍ତ୍ତବ୍ୟ ହିଁ ତାର ସ୍ୱଧର୍ମ । ମନୁଷ୍ୟର ଯୌବନରେ ବ୍ୟକ୍ତିତ୍ୱ ସ୍ପଷ୍ଟ ପ୍ରତିଷ୍ଠିତ ହେଲେ, ବିଚାର କରି ନିଜର କର୍ମ କରିବାର କ୍ଷମତା ଆସିଗଲେ, ଏଇ ସ୍ୱଧର୍ମ ସ୍ୱତଃ ଫୁଟେ । ଏହାକୁ ଏବେ ଆଇନ ଭାଷାରେ 'ସାବାଳକ ହେବା' କହନ୍ତି । ବୟସରେ ସାବାଳକ ହେଲେ, ସମସ୍ତେ କିଛି କାର୍ଯ୍ୟରେ ସାବାଳକ ହୁଅନ୍ତି ନାହିଁ, କିଏ ଆଗ ହୁଏ । କିଏ ପଛ ହୁଏ । କିଏ ବା ଜୀବନଯାକ ନାବାଳକ ଥାଇ ଅମନୁଷ୍ୟ ହୋଇ ରହେ । ସେ ତ ସ୍ୱତନ୍ତ୍ର କଥା । ମାତ୍ର ସାଧାରଣତଃ ମନୁଷ୍ୟ ଯୌବନର ପୂର୍ଣ୍ଣବିକାଶ ସଙ୍ଗେ ସଙ୍ଗେ ଏଇ ବ୍ୟକ୍ତିତ୍ୱରେ ପହଞ୍ଚେ ଓ ଜୀବନର ଉଦ୍ଦେଶ୍ୟ ଘେନି କର୍ମରେ ପ୍ରବେଶ କରେ । ଏହିଠାରେ ମୋଟାମୋଟ ତାର ବ୍ୟକ୍ତିତ୍ୱ ରଙ୍ଗ ବା ବର୍ଣ୍ଣ ଓ ସ୍ୱଭାବଜନିତ ଧର୍ମ ବା ସ୍ୱଧର୍ମ ଠିକ୍ ହୋଇଯାଏ । ତେଣିକି ଆର୍ଯ୍ୟ ଧର୍ମ କହେ, କର୍ତ୍ତବ୍ୟଦୃଷ୍ଟିରେ ଏଇ ସ୍ୱଧର୍ମ ପାଳନ କରିବ । ନିଷ୍କାମ ହୋଇ ବ୍ୟକ୍ତିତ୍ୱର ବିକାଶରେ ଲାଗିଯିବ । କାମନାରେ ଏ କାମ ଭଲ, ସେଥିରେ ମଉଜ ଅଛି, ଏଇପରି ବିଚିତ୍ର ବିଚିତ୍ର କର୍ମର ଧାରା ଥରକୁ ଥର ବଦଳାଇ ଉଦ୍ଦେଶ୍ୟରୁ ବିଚଳିତ ହେବ ନାହିଁ । ସେଥିରେ ବ୍ୟକ୍ତିତ୍ୱର ବିକାଶ-ଭ୍ରଷ୍ଟ ହୁଏ ଓ ଏହା ହିଁ ସମାଜର ବ୍ୟକ୍ତିମାନଙ୍କର ଆଦର୍ଶ ହେଲେ ସମାଜର ମଙ୍ଗଳରେ ଘୋର ବାଧା ପଡ଼େ । ଏହା ହିଁ ଭୟାବହ (୩.୩୫) । ଏଥିରେ ନିଜର ସୁଖ ସୁବିଧା ଖୋଜି ଖୋଜି ଲୋକର ବ୍ୟକ୍ତିତ୍ୱ ଫୁଟେ ନାହିଁ । ସମାଜ ମଙ୍ଗଳ ପ୍ରତି ଆଉ ଆଭିମୁଖ୍ୟ କୁଆଡ଼ୁ ଆସିବ ? 'ସତ୍ୟ ଶିବ ସୁନ୍ଦର'ଙ୍କର ସେବା ଏ ନୁହେ ।

## ଆଦର୍ଶ ବା ଜୀବନର ଉଦ୍ଦେଶ୍ୟ ଭେଦରେ ସ୍ୱଭାବର ଗତି— ଭାରତ ସଭ୍ୟତାରେ ବଂଶ ପରଂପରାର ସ୍ଥାନ—

ଏଇଠାରେ କହିରଖିବା ଉଚିତ, ସମାଜର ପରିସ୍ଥିତି ଅନୁସାରେ ଏଇ ବ୍ୟକ୍ତିତ୍ୱ ଓ ସ୍ୱଧର୍ମ ବିକାଶରେ ଭେଦ ଦେଖାଯାଏ । ଏବେ ଜଗତରେ ସାଧାରଣତଃ ସମାଜ ବୋଇଲେ ଜାତି ବା ଜାତୀୟତା (Nationalism) ସେଥିରେ ସେଇ ଦୃଷ୍ଟିରେ ନିଜର ସାଧନା ମାନବକୁ ନିୟମିତ କରିବାକୁ ହେଉଚି ବା ତାକୁ ନିୟମିତ କରିବାକୁ ବାଧ୍ୟ କରାଯାଉଚି । ଏବର ସଭ୍ୟ ଜଗତ ବୋଲି ଯାହାକୁ କୁହାଯାଇଚି, ସେଥିରେ ମାନବର ବ୍ୟକ୍ତିତ୍ୱ ବା ସାଧନା କେହି ସ୍ୱାଧୀନ ନୁହେ । ଅଧିକାରମୁଖ

ଅନାର୍ଯ୍ୟ ଧର୍ମର ବିକାଶରେ ଏ ପରିସ୍ଥିତି ବିଶ୍ଳେଷଣରେ ବୁଝାଇବାର ସ୍ଥାନ ଏ ନୁହେ । ମାତ୍ର ଏଥିରେ ଯେ ମାନବ ସାଧନା ବିଶ୍ୱଧର୍ମର ଅଭିମୁଖୀ ନୁହେଁ, ଏହା ବୁଝିବାରେ ଅସୁବିଧା ନାହିଁ । ରାଜ୍ୟର କାର୍ଯ୍ୟତାରେ ଯାହା ଦରକାର, ତାହା ରାଜ୍ୟ ଧରି କରାଉଛି । ସେଥିରେ ହିଁ ମାନବ ପରାଧୀନତାର ଅଭ୍ୟାସରେ କର୍ମ କରି ଯାଉଛି । ରାଜ୍ୟର ସେନା ଦରକାର, ପରଧନ ଲୁଣ୍ଠନ ପାଇଁ । ସେଥିପାଇଁ ସମସ୍ତେ ସେନା ହେବେ । ଯେ ପାଦ୍ରୀ ହୋଇ ଧର୍ମ ଶିଖାଉଛନ୍ତି, ତାଙ୍କ ବ୍ୟବହାର ସେଇଥିପାଇଁ । ସାନ୍ତାଲ ପ୍ରଗଣାରେ ତଥା ନିଗ୍ରୋଙ୍କ ମଧ୍ୟରେ ଯୀଶୁ ପଣି ସାଂତାଳ ଓ ନିଗ୍ରୋଙ୍କ ପାପର ଯେ ପ୍ରାୟଶ୍ଚିତ୍ତ କରୁଚନ୍ତି, ତାର ଫଳ କୌଣସି ଜାତିର ଲୁଣ୍ଠନରେ ସାହାଯ୍ୟ କରୁଛି ମାତ୍ର । ବୈଶ୍ୟମାନେ କାହା ବଜାର ଲୁଟି କରିବେ, ସେଇ ଚିନ୍ତାରେ କ୍ଷତ୍ରିୟ (ସେନା) ଓ ବ୍ରାହ୍ମଣ (ପାଦ୍ରୀ)ଙ୍କ ଆଶ୍ରୟକୁ ଗ୍ରହିଁଚନ୍ତି । ଶୂଦ୍ରମାନେ କଳକାରଖାନାରେ ଘୋର ଦୁର୍ଗତି ପାଇ ମଧ୍ୟ ସେଇ 'କାର୍ଯ୍ୟତା' ମୋହରେ ସବୁ ସହି ନୀରବ । ଆଇନ, ଇଚ୍ଛୁକ ଅନିଚ୍ଛୁକ 'ଭେଦରେ ସମସ୍ତଙ୍କୁ ଧରି କାମରେ ଲଗାଉଛି ।' ସେଥିରେ ସ୍ୱାଧୀନ କର୍ତ୍ତବ୍ୟପର ସ୍ୱଧର୍ମ ବୁଝିବାର ସ୍ଥାନ ବଡ଼ ସୀମାବଦ୍ଧ ଓ ସଙ୍କୁଚିତ । ମାତ୍ର ଭାରତର ସମାଜ-ଶୃଙ୍ଖଳା ଥିଲା ଭିନ୍ନ । ସେଥିରେ ଆଶ୍ରମରେ କିଂବା ପରିବାର-ଧର୍ମର ପ୍ରେରଣାରେ ବ୍ୟକ୍ତିତ୍ୱ ସ୍ୱାଧୀନ ଭାବରେ ମାନବର ନିତ୍ୟପ୍ରୟୋଜନ କ୍ରିୟାରାଶିର ସୁଲଭ ସାଧନାଭିତରେ ଅନାୟାସରେ ଫୁଟୁଥିଲା । ତାହା ବେଶି ଏଠାରେ ବୁଝାଇବା ଦରକାର ନାହିଁ । ମାତ୍ର ଏତିକି କହିବାର ଅଛି ଯେ ପରିବାର ଓ ପିତୃ ପରଂପରାର ପ୍ରଭାବ ବହୁ ପରିମାଣରେ ବ୍ୟକ୍ତିତ୍ୱର ଉପାଦାନ ରୂପେ ସେଇ ବ୍ୟକ୍ତିତ୍ୱ ନିର୍ମାଣରେ ସାହାଯ୍ୟ କରୁଥିଲା । ପୁତ୍ରଧର୍ମ ସେଥିରେ ବଡ଼ ସ୍ପଷ୍ଟ ଥିଲା । ବେଦ କହନ୍ତି, ବେଦାନ୍ତର ଗୂଢ଼ତତ୍ତ୍ୱ ପ୍ରଶାନ୍ତ ଶିଷ୍ୟ ଓ ପୁତ୍ର ଛଡ଼ା ଆଉ କାହାକୁ ଦେବ ନାହିଁ । ପୁତ୍ର ବରାବର ଶିଷ୍ୟ ଥିଲା; ଅର୍ଥାତ୍ ପିତାଙ୍କ ଜ୍ଞାନରେ ବିଶ୍ୱାସ (ଶ୍ରଦ୍ଧା) ରଖି ତାହା ଗ୍ରହଣ କରିବାରେ ଜାଗରୂକ ଥିଲା । "ବିଶ୍ୟ ପୁତ୍ର" ଗୋଟିଏ ସାଧାରଣ ସଂସ୍କୃତ କଥା । ଏବେ ବି ଗ୍ରାମଶିଳ୍ପ ଯେ ଏତେ ଧ୍ୱଂସକ୍ରିୟାର ତାଡ଼ନା ସହି ଏ ଦେଶରେ ଜାଗ୍ରତ ଅଛି, ତାହା ଏଇ ପରଂପରାର ସାକ୍ଷୀ ଜୀବନ୍ତ ସାକ୍ଷୀ । ସେଥିରେ ବ୍ୟକ୍ତିତ୍ୱବିକାଶରେ ପିତୃ ପରଂପରା ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା ସନ୍ଦେହ ନାହିଁ । ବେଦରେ ବଶିଷ୍ଠ, ବିଶ୍ୱାମିତ୍ର ପ୍ରଭୃତି ଗୋଟିଏ ଗୋଟିଏ ବଂଶ । ତଥାପି ବର୍ଣ୍ଣଧର୍ମ ଏଇ ପିତୃପରଂପରାରେ ଆବଦ୍ଧ ନ ଥିଲା । ଅସୁରମାନେ ପ୍ରଥମେ ଦେବତା ଥିବାର କହନ୍ତି । ପରେ ସେମାନେ ଦେବବିରୋଧୀ ଓ ଅପାଂକ୍ତେୟ ହେଲେ । କେତେ ଅସୁର ଏ ଦେଶରେ ଆର୍ଯ୍ୟଧର୍ମ ଆଦରି ଆର୍ଯ୍ୟ ହୋଇଥିଲେ । କୁହାଯାଇଛି ଦସ୍ୟୁ କୃଷ୍ଣ ଆର୍ଯ୍ୟଧର୍ମୀର ଆଜି ଭଗବାନ୍ ଶ୍ରୀକୃଷ୍ଣ ହୋଇ ଥିବାର ଅନୁମାନ ହୁଏ । ପୁଣି କ୍ଷତ୍ରିୟ ବିଶ୍ୱାମିତ୍ର ବ୍ରାହ୍ମଣ ହେବା—ଏପରିକି ଦାସୀ ଜାବାଲି ପୁତ୍ର କାମନ୍ଦକ ବ୍ରହ୍ମତ୍ୱ ପାଇବା

ବୈଦିକ । ଇତିହାସ କାଳରେ ମଧ୍ୟ ମୌର୍ଯ୍ୟ ଗ୍ରୀକ୍ସ (ଶକ) ଯବନ ପ୍ରଭୃତି କର୍ମ ହେତୁରୁ ବ୍ରାହ୍ମଣ କ୍ଷତ୍ରିୟାଦି ହୋଇ ଏ ଦେଶ ଆଦରିଚନ୍ତି । ଏଇପରି ଦୃଷ୍ଟାନ୍ତ ଅସୀମ, ତଥାପି ସଂସ୍କୃତିର ପରିସ୍ଥିତିରେ ପିତୃପରଂପରାର ପ୍ରତିଷ୍ଠା ଯଥେଷ୍ଟ ଥିଲା । କାଳକ୍ରମେ ତାହାହିଁ ମାନବର ସ୍ୱାଧୀନତା ସଂକୁଚିତ ହେଲାବେଳେ, ଆତ୍ମରକ୍ଷା ପ୍ରଚେଷ୍ଟା ଫଳରେ ଚାତୁର୍ବର୍ଣ୍ଣ୍ୟକୁ ଏ ଦେଶରେ ଜନ୍ମ ତଥା ରକ୍ତଗତ ଜାତିରେ ପରିଣତ କରିଥିଲା । ସେଥିରେ ଭୁଲ୍ ଆର୍ଯ୍ୟଧର୍ମର ସ୍ୱଧର୍ମ ଧାରଣା ବୁଝିବା ଠିକ୍ ନୁହେ ।

## ସ୍ୱଧର୍ମ ସାଧନାରେ କ୍ଷତ୍ରିୟ—

ଏ ପ୍ରସଙ୍ଗରେ କିଂତୁ ଗୋଟିଏ କଥା ଲକ୍ଷ୍ୟ କରିବାର ଅଛି । ତାହା କ୍ଷତ୍ରିୟ, ଓ କ୍ଷତ୍ରିୟର ପରଂପରା । ଆଜି ଏ ଦେଶରେ କ୍ଷତ୍ରିୟ ନାହିଁ । କିଂତୁ ପରଂପରା ଅଛି । ସେଇ ଶୁଷ୍କ ପରଂପରା ଭିତରେ ଯେ ସତ୍ୟର ଶସ୍ୟର ପଡ଼ିରହିଚି, ତାହା ପ୍ରଣିଧାନ-ଯୋଗ୍ୟ । ଆଜି ସବୁ କ୍ଷତ୍ରିୟ କହନ୍ତି, ସେମାନେ ସୂର୍ଯ୍ୟ ବା ଚନ୍ଦ୍ରବଂଶୀ । ପ୍ରାୟ ସମସ୍ତେ ପରିଚୟ ଦିଅନ୍ତି 'ରାଜପୁତ୍ର' । କିନ୍ତୁ ସୂର୍ଯ୍ୟ ଚନ୍ଦ୍ରବଂଶ ଯଦି ଯଥାର୍ଥରେ କେହି ଥିଲେ ସେ ଲୋପ ପାଇଚନ୍ତି । ପୁରାଣ କହନ୍ତି—"ନନ୍ଦାନ୍ତାଃ କ୍ଷତ୍ରିୟା ଗତାଃ" (ନନ୍ଦମାନଙ୍କଠାରୁ କ୍ଷତ୍ରିୟ ସରିଚନ୍ତି ) ନନ୍ଦ ସମସ୍ତ କ୍ଷତ୍ରିୟଙ୍କୁ ନାଶ କରିଥିଲେ ବୋଲି କଥା ଅଛି; କାରଣ ସେ ନିଜେ କ୍ଷତ୍ରିୟ ନ ଥିଲେ । ଏହିପରି ପୁରାଣରେ କେତେ ଥର କ୍ଷତ୍ରିୟଙ୍କର ସମୂଳେ ନାଶ ହୋଇଚି । ପୁଣି ଅଷ୍ଟମ ଶତାବ୍ଦୀ ପୂର୍ବରୁ ରାଜପୁତ୍ର ନ ଥିଲେ । ବିଦେଶୀ ଯବନ ଶକ ପ୍ରଭୃତି ଓ ଏଇ ଦେଶର ଶୂଦ୍ରମାନେ ରାଜତ୍ୱରେ ପ୍ରତିଷ୍ଠିତ ହୋଇ ସୂର୍ଯ୍ୟଚନ୍ଦ୍ର ବଂଶର ନାମ ଦେଇ ରାଜପୁତ୍ର ହୋଇଥିବା କଥା ଇତିହାସ କହନ୍ତି । ଏବେ ମଧ୍ୟ ରାଜାମାନଙ୍କ ଭିତରେ ତତ୍ତ୍ୱ ନେଲେ, କାହା ପୂର୍ବପୁରୁଷ କିଏ, କାହାର ଭଣ୍ଡାରି, କାହାର ଧୋବା—ଏପରି କିଂବଦନ୍ତୀମାନ ଅଛି । ସେ କିଂବଦନ୍ତୀ ସେଇ ସେଇ ବ୍ୟକ୍ତି ବା ବଂଶରେ ସଂପୂର୍ଣ୍ଣ ସତ୍ୟ ହେଉ ବା ନ ହେଉ, କିଂବଦନ୍ତୀର ଅନ୍ତରାଳରେ ଯେ ସତ୍ୟର ସୂତ୍ର ପଡ଼ିଥାଏ, ଏହା କେହି ଅସ୍ୱୀକାର କରିବେ ନାହିଁ । ତେବେ ମୋଟ କଥା, ସବୁ ଜାତି ନିଜର ଗୁଣକର୍ମ ଛାଡ଼ି ଜନ୍ମ ଓ ରକ୍ତରେ ପରିଣତ ହୋଇଥିଲେ ମଧ୍ୟ କ୍ଷତ୍ରିୟ ସଂପୂର୍ଣ୍ଣରୂପେ ତାହା ହୋଇ ନାହାନ୍ତି । ଯାହାର ଗୁଣ କର୍ମରେ ପ୍ରଭୁତ୍ୱ, ଶାସନ ଓ ପାଳନ ସ୍ପଷ୍ଟ ପ୍ରକାଶ ପାଇଚି, ସେ କ୍ଷତ୍ରିୟ ହୋଇଚି । ଏବେ ମଧ୍ୟ ଏ ଦେଶରେ କେବଳ କ୍ଷତ୍ରିୟମାନେ ପ୍ରଦେଶାନ୍ତରେ ବୈବାହିକ ସଂବଂଧ କରନ୍ତି । ଅନ୍ୟ ଜାତି କରନ୍ତି ନାହିଁ । ଏହା ମଧ୍ୟ କ୍ଷତ୍ରିୟ ଜାତିର ସ୍ୱଧର୍ମଧାରଣାର ଶୁଦ୍ଧିରେ ଗୋଟିଏ ଅଧିକା ପ୍ରମାଣର ଉଦାହରଣ ।

## ଚାତୁର୍ବର୍ଣ୍ଣ୍ୟରେ କ୍ଷତ୍ରିୟ—

ଏଇ କ୍ଷତ୍ରିୟ ଆର୍ଯ୍ୟଧର୍ମର ସ୍ୱଧର୍ମନିୟତ ସମାଜଶୃଙ୍ଖଳାରେ କ'ଣ ଥିଲା, ଦେଖାଯାଉ । କର୍ମର ବିକାଶରେ ଯେତେବେଳେ କର୍ମ ବାଣ୍ଟି ହୋଇଗଲା, ସ୍ୱଧର୍ମ

ଯେତେବେଳେ ପ୍ରତିଷ୍ଠିତ ହେଲ, ସେତେବେଳେ ସମାଜର ସମସ୍ତେ ନିଜ ନିଜର ସ୍ୱଧର୍ମ ଆଦର୍ଶରେ ବ୍ୟକ୍ତିତ୍ୱର ବିକାଶରେ ଲାଗିଗଲେ । ଏ ସ୍ୱଧର୍ମ ଧାରଣା—ଏ କର୍ତ୍ତବ୍ୟପରାୟଣତା—ରକ୍ଷା କରି ସମାଜମଙ୍ଗଳକୁ ସବୁବେଳେ ଜଗି ସ୍ଥିର ରଖିବା କର୍ମ ହେଲା କ୍ଷତ୍ରିୟର । ଯେ ଏଇ କର୍ମକୁ ଭଜନ ହେଲା, ଏହାକୁହି ଯେ ସ୍ୱଧର୍ମ କଲା, ସେ ହେଲା କ୍ଷତ୍ରିୟ । କାମନାର ବିକ୍ଷୋଭରେ ସମାଜରେ ଯେ 'ଭୟ'ବାଧା' ବିଭ୍ରାଟ ଉଠିଥିଲା, ତାକୁ ସମ୍ଭାଳି ସମାଜର ନିୟତ ଠିକ୍ ରଖିବା ହେଲା କ୍ଷତ୍ରିୟର କାମ । ଧର୍ମର ଗ୍ଲାନିବେଳେ ଭଗବାନ୍ ଅବତାର ହୁଅନ୍ତି ବୋଲି କହନ୍ତି । ଏ ଅବତାର କେବଳ କ୍ଷତ୍ରିୟଠାରେ ସମ୍ଭବ । ଆଉ ସମସ୍ତେ ଶାସ୍ତ୍ରରେ ନିଜ ନିଜର ସ୍ୱଧର୍ମରେ ଲାଗିବେ ବା ନ ଲାଗିବେ । ମାତ୍ର ନ ଲାଗିଲେ, ତା ଦେଖିବେ କ୍ଷତ୍ରିୟ । ଅଶ୍ରମରେ ପଢ଼ାଶୁଣାଦି ଠିକ୍ ଚାଲୁଚି ନା ବିଘ୍ନ ହେଉଚି, ତା ବୁଝିବେ କ୍ଷତ୍ରିୟ । 'ବିଶ୍' ବା ପ୍ରଜାଙ୍କୁ ସବୁ ବିଘ୍ନରୁ ରକ୍ଷା କରି ପାଳିବେ ବିଶାଂପତି କ୍ଷତ୍ରିୟ । ଅନ୍ୟମାନେ ଆଳସ୍ୟରେ ସ୍ୱଧର୍ମରେ ହେଳା କରି ପାରନ୍ତି, ମାତ୍ର ସର୍ବଦା ସ୍ୱଧର୍ମରେ ଜାଗ୍ରତ ଓ କର୍ମତତ୍ପର ରହିବେ କ୍ଷତ୍ରିୟ । ଆଉ କେହି ଜ୍ଞାନର ଯୁକ୍ତିରେ କର୍ମ ତ୍ୟାଗ ସନ୍ୟାସ କରି ନିଶ୍ଚିନ୍ତ ରହିପାରନ୍ତି; ମାତ୍ର ନିରତ କର୍ମନିରତ ରହି ନିଷ୍କାମ ହେବେ କ୍ଷତ୍ରିୟ । କାରଣ ପ୍ରଭୁତା ଅଛି ବୋଲି କାମନାକୁ ପ୍ରଶ୍ରୟ ଦେଲେ ସମାଜର ନାଶରେ ସାକ୍ଷାତ୍ କାରଣ ହେବେ ସେଇ କ୍ଷତ୍ରିୟ । ଏପରି କାମନାସେବୀ କ୍ଷତ୍ରିୟଙ୍କୁ ସଙ୍ଗେ ସଙ୍ଗେ ପ୍ରାଣପଣେ ଶାସନ କରି ସମାଜର ଧର୍ମ ରଖିବେ ସେଇ କ୍ଷତ୍ରିୟ ।

ଏଇ କ୍ଷତ୍ରିୟ ହିଁ ସମାଜଧର୍ମ, ସମାଜମଙ୍ଗଳ, ସମାଜସତ୍ତା ଓ ସମାଜ ଶୌର୍ଯ୍ୟ ବା ଶୃଙ୍ଖଳା—ଏକ କଥାରେ ଆର୍ଯ୍ୟଧର୍ମର ପ୍ରତୀକ କହିଲେ ଚଳେ । ଅବିଶ୍ରାନ୍ତ ତତ୍ପରତା ଓ କର୍ମ, ପୁଣି ଏଇ କର୍ମରେ ଏକାନ୍ତ ନିଷ୍କାମତା—କାମନା-ଗୁଳନାର ସମଧିକ ସୁବିଧା ଆଉ ମଧ୍ୟ ସମସ୍ତ କର୍ମରେ ନିଷ୍କାମତା—ହୋ ହିଁ କ୍ଷତ୍ରିୟ । ତେଣୁ ଏକପ୍ରକାର କହିବାକୁ ଗଲେ ଏଇ କ୍ଷତ୍ରିୟର ସମ୍ୟକ୍ ଧାରଣାରେ ଆର୍ଯ୍ୟଧର୍ମର ଧାରଣା ସ୍ପଷ୍ଟ ଓ ପୂର୍ଣ୍ଣ । ପୁଣି ସ୍ଥୂଳତଃ ଏଇ ଅର୍ଯ୍ୟଧର୍ମ କ୍ଷତ୍ରିୟଧର୍ମ କହିଲେ ମଧ୍ୟ ଅତ୍ୟୁକ୍ତି କିଛି ନାହିଁ ।

## ବିଶ୍ୱରେ ସୂର୍ଯ୍ୟ ଓ ସମାଜରେ କ୍ଷତ୍ରିୟ—କ୍ଷତ୍ରିୟ ଧର୍ମ ହିଁ ଆର୍ଯ୍ୟଧର୍ମ—

ଦୃଶ୍ୟମାନ ବିଶ୍ୱରେ ସେଇପରି ସୂର୍ଯ୍ୟ ମୁଖ୍ୟତଃ ସମସ୍ତ ଉପଲଭ୍ୟମାନ ଜଗତର ଜୀବନ । ବର୍ଷାରେ ସୂର୍ଯ୍ୟ, ଶସ୍ୟରେ ସୂର୍ଯ୍ୟ, ଗୋଧନରେ ସୂର୍ଯ୍ୟ, ମାନବର ସମସ୍ତ ଭୋଗରେ ସୂର୍ଯ୍ୟ—ସର୍ବତ୍ର ସୂର୍ଯ୍ୟର ପ୍ରଭାବ । ସମାଜରେ କ୍ଷତ୍ରିୟର ସେଇ ତୁଳନା ସେଥିପାଇଁ ମାନବସମାଜରେ ମହାବିଶ୍ୱଧର୍ମର ପ୍ରତିକାଶ ଏଇ ସ୍ୱଧର୍ମମୂଳକ ଆର୍ଯ୍ୟ-ଧର୍ମ ପ୍ରଥମେ ସୂର୍ଯ୍ୟଙ୍କଠାରୁ ଲୋକପାଳକ ସୂର୍ଯ୍ୟବଂଶର ପ୍ରଥମ କ୍ଷତ୍ରିୟ ମନୁଙ୍କଠାକୁ ଆସିଲା ବୋଲି ଆର୍ଯ୍ୟଧର୍ମର ଯେ ପରଂପରାଟି ଅଛି, ତାହା ଯଥାର୍ଥ । ଏଇ ମନୁଙ୍କ

ସନ୍ତାନ ପୁଣି ମନୁଷ୍ୟ ବା ମାନବ, ଏହା ମଧ୍ୟ ମନେ ରଖିବାର ଅଛି । ସେ ଯାହା ହେଉ, ଭଗବାନ୍ ଅର୍ଜୁନଙ୍କୁ ଏଇ ପରଂପରାଟି ଶୁଣାଇଛନ୍ତି—

"ଏଇ ସ୍ୱଧର୍ମ 'ଯୋଗ' ମୁଁ ପ୍ରଥମେ ସୂର୍ଯ୍ୟଙ୍କୁ କହିଲି, ସୂର୍ଯ୍ୟ ନିଜ ପୁତ୍ର ମନୁଙ୍କୁ, ମନୁ ନିଜ ପୁତ୍ର ଇକ୍ଷ୍ୱାକୁଙ୍କୁ ଓ ପରେ ସେଇ ପରଂପରାରେ ଜନି ଜନକାଦି ରାଜର୍ଷିମାନେ ଏଇ ଯୋଗ ବା ଆର୍ଯ୍ୟଧର୍ମ ପାଳନ ଓ ପ୍ରଚାର କଲେ । କିନ୍ତୁ କାଳବଶରେ ଆଜି କାମନାର ମହାଭୟାବହ ଚକ୍ରରେ ପଡ଼ି ( ପୁଣି ଅନ୍ୟତଃ କର୍ମ ତ୍ୟାଗ ସନ୍ନ୍ୟାସରେ କାମକାମୀଙ୍କ ସୁଯୋଗ ସମ୍ପାଦନ ଫଳରେ) ଏଇ ଯୋଗ ନଷ୍ଟ ହୋଇଚି । ତୁ ମୋର ଭକ୍ତ ଓ ସଖା, ତୁ ମାନବ ବୋଲି ଆଜି ତତେ ମୁଁ ଏହା କହୁଛି । ତୁ କ୍ଷତ୍ରିୟ ଧର୍ମ କର । ଏ ସମାଜ—ଏ ଆର୍ଯ୍ୟଧର୍ମ ରଖ୍ ।" (୪. ୧-୩)

ଭଗବାନ୍ ଶ୍ରୀକୃଷ୍ଣ ପରମ କ୍ଷତ୍ରିୟ । ସ୍ୱଧର୍ମଧାରଣାରେ ସେ କୁରୁକ୍ଷେତ୍ରରେ ଭୟାବହ ଧର୍ମଗ୍ଲାନିର ତାଡ଼ନା ଓ ମଙ୍ଗଳମୟଙ୍କ ମହାପ୍ରେରଣାର ପ୍ରତୀକ ରୂପେ ଆଜି 'ଯୋଗସ୍ଥ' । ସେ ନିଜେ ମଙ୍ଗଳମୟଙ୍କ ଅବତାର—ସେଇ ସ୍ୱଦେହରେ ସତ୍ୟ ଶିବ ସୁନ୍ଦର ରୂପେ ପ୍ରତିଭାତ । ଅର୍ଜୁନ ଭାରତର କ୍ଷତ୍ରିୟଶିରୋମଣି । ସେଇ ଏକା ଏ ଧର୍ମ ଗ୍ରହଣରେ ଯଥାର୍ଥ ପାତ୍ର । କୌରବ ଓ କୌରବସାଥୀଙ୍କ କରାଳ କାମବନ୍ୟାର ଆବର୍ତ୍ତରେ ଆର୍ଯ୍ୟ-ଧର୍ମ ଓ ସ୍ୱଧର୍ମ ଧାରଣା ଆଜି ନିମଜ୍ଜମାନ । ଏଇ ଏକା ଏ ଧର୍ମପ୍ରତିଷ୍ଠାର ବେଳ । ଏଇ ବେଳରେ ଯୋଗସ୍ଥ କୃଷ୍ଣ ଅର୍ଜୁନଙ୍କୁ ଧର୍ମର ମହାବେଦନାରେ ଦୀକ୍ଷିତ କରି ଘୋର ସଂହାର ଲୀଳାମୟ ବିଶ୍ୱରୂପ ଦେଖାଇ ଆର୍ଯ୍ୟଧର୍ମ ରଖିଥିଲେ । ଏହା ହିଁ ଗୀତା ଓ ଗୀତାଧର୍ମ । ଏହା ହିଁ କୃଷ୍ଣାର୍ଜୁନ ସଂବାଦର ଗୀତା ଉପନିଷଦ୍ ବା ଯୋଗଶାସ୍ତ୍ର । ଏହା ସଂବାଦ ବା କଥୋପକଥନ । ଏଥିରେ ଯୁକ୍ତିର ତାର୍କିକତା ନାହିଁ । ଏହା ସିଦ୍ଧିର ଅନୁଭୂତିରେ 'ପ୍ରପନ୍ନ' ସାଧକ ପ୍ରତି ପ୍ରେରଣା । ଏଥିରେ ସଂହାର ଅଛି, ସ୍ୱଧର୍ମରେ ଆନନ୍ଦ ଅଛି, ମାତ୍ର ହିଂସା ନାହିଁ, କି କାହାରି ପ୍ରତି ଦ୍ୱେଷ ନାହିଁ । ଏହା ହିଁ ସତ୍ୟ, ଏହା ହିଁ ମଙ୍ଗଳ, ଏହା ହିଁ ସୁନ୍ଦର ।



# ୮ । ଗୀତାର ଆର୍ଯ୍ୟଧର୍ମ ହିଁ ବେଦଧର୍ମ

ଏହା ପୂର୍ବରୁ ଗୀତାଧର୍ମର ବିଶ୍ଳେଷଣ କରିଲା ବେଳେ ବେଦ ପ୍ରତି ବିଶେଷ ଲକ୍ଷ୍ୟ କରାଯାଇଛି । ସେଥିରୁ ସ୍ପଷ୍ଟ ସୂଚନା ମିଳିବ, ଗୀତାର ଆର୍ଯ୍ୟଧର୍ମ ବେଦଧର୍ମ । ମାତ୍ର ବେଦଧର୍ମର ପୁଣି ନାନା ବ୍ୟାଖ୍ୟା ଓ ପ୍ରୟୋଗ ଖାଲି ଏକାଳର ପଣ୍ଡିତ ପୁଣି ପାଷଣ୍ଡମାନେ କରନ୍ତି ତା ନୁହେ, ବେଦକାଳରୁ ମଧ୍ୟ ତାହା ହୋଇ ଆସୁଥିଲା । ସୂଚନାରେ କୁହାଯାଇଛି, କର୍ମ ଛାଡ଼ି କେବଳ ଜ୍ଞାନସାଧନ କରିବା ବେଦଧର୍ମ ବୋଲି ବୁଝୁଥିଲେ । ପୁଣି ଯାଗାଦିର କ୍ରିୟା-କାଣ୍ଡକୁ ମଧ୍ୟ ବେଦଧର୍ମ ବୋଲି ବୁଝୁଥିଲେ । ସମାଧାନ ଦୃଷ୍ଟିରେ ଏ ଦୁଇଟିର ପ୍ରତିବାଦ ଗୀତାରେ ଅଛି । ତଥାପି ଭଗବାନ୍ ବିଶେଷ ଏଇ ଧର୍ମକୁ ବେଦ-ଧର୍ମ ବୋଲି ପ୍ରଚାର କରିଛନ୍ତି । ଯେଉଁମାନେ ଏଇ ଧର୍ମର ମର୍ମ ଜାଣନ୍ତି, ସେଇମାନେ 'ବେଦବିତ୍' ଏହା ଭଗବାନ୍ ବିଶେଷ ଚେତାଇ କହିଛନ୍ତି । ଗୀତା ୮.୧୧ ଓ ୧୫. ୧ରେ ଥିବା 'ବେଦବିତ୍' ଶବ୍ଦଟି ଏଇ ସମ୍ପର୍କରେ ବିଶେଷରେ ପ୍ରଣିଧାନ-ଯୋଗ୍ୟ । ପୁଣି ଉପନିଷଦର ଭାବ ତଥା ଭାଷା ପର୍ଯ୍ୟନ୍ତ ଗୀତାରେ ସର୍ବତ୍ର ପ୍ରତିଫଳିତ ହେବାର ଦେଖାଯାଏ । ସେସବୁର ଉଦାହରଣ ଓ ବ୍ୟାଖ୍ୟା ଦେଇ ଗୀତା କିପରି ଯଥାର୍ଥ ବେଦଧର୍ମ, ଏହା ବିଚାର କରିବା ପୂର୍ବରୁ 'ବେଦ' ବୋଇଲେ କଅଣ ବୁଝାଯାଏ, ତାହା କିଛି ଦେଖିବା ଉଚିତ ।

## ବେଦ ଓ ଉପନିଷଦ—

ଉପନିଷଦ ବେଦର ଅଂଶ । ବେଦର ଅଧ୍ୟାତ୍ମତତ୍ତ୍ୱବିଷୟକ ଭାଗକୁ ଉପନିଷଦ୍ କହନ୍ତି । ବେଦ ଦୁଇ ଭାଗ । ପ୍ରଥମ ଭାଗର ନାମ 'ସଂହିତା' । ଏଥିରେ ବିଶ୍ୱର ଅଧ୍ୟାତ୍ମତତ୍ତ୍ୱ ପ୍ରଚ୍ଛନ୍ନ । ବିଶ୍ୱପ୍ରକାଶ ସେଇ ତତ୍ତ୍ୱର ଯଜ୍ଞ । କୁହାଯାଇଛି, ଦେବତାମାନେ ବିଶ୍ୱପୁରୁଷର ଯଜ୍ଞ କରିବାରୁ ଏଇ ସୃଷ୍ଟି ପ୍ରତିଷ୍ଠିତ ଅଛି । ଏଇଭଳି ତତ୍ତ୍ୱସୂଚନାମାନ 'ସଂହିତା'ରେ ଥିଲେ ହେଁ ଏହି ସଂହିତା ଆରାଧନାର ସରଳ ମନ୍ତ୍ରମାନଙ୍କରେ ପୂର୍ଣ୍ଣ । ଏହା ଅତି ପ୍ରାଚୀନ । ତା ପରେ 'ବ୍ରାହ୍ମଣ' ଭାଗ । ଏଥିରେ ଯଜ୍ଞବିଧିମାନ ବର୍ଣ୍ଣିତ ହୋଇଛି । 'ସଂହିତା'ର ମନ୍ତ୍ରମାନ ଯଜ୍ଞରେ କେଉଁଠାରେ କିପରି ପ୍ରୟୋଗ କରି କି ପ୍ରଣାଳୀରେ ଆରାଧନା କରିବାକୁ ହେବ, ତାହା ଏଥିରେ କୁହାଯାଇଛି । ମାତ୍ର ସମସ୍ତ 'ବ୍ରାହ୍ମଣ' ଏଇ ଯାଗଯଜ୍ଞାଦିର ଆଡ଼ମ୍ବର କ୍ରିୟାକାଣ୍ଡ ପଦ୍ଧତିରେ ପୂର୍ଣ୍ଣ ନୁହେ । ଏଇ 'ବ୍ରାହ୍ମଣ'ର ଶେଷ ଭାଗକୁ 'ଆରଣ୍ୟକ' କହନ୍ତି । ଏଇ 'ଆରଣ୍ୟକ' ଭାଗରେ ଅରଣ୍ୟବାସୀ

ଋଷିମାନଙ୍କର ତତ୍ତ୍ୱଚନ୍ତାର ବଧି ଓ କଥାମାନ ଅଛି । ଏଇ 'ଆରଣ୍ୟକ'ର ଶେଷଭାଗ-ମାନଙ୍କରେ ବଶ୍ୱତତ୍ତ୍ୱ ତଥା ଅଧ୍ୟାତ୍ମର ପ୍ରଶ୍ନ ଉତ୍ତର ଉପପତ୍ତି ଓ ବ୍ୟାଖ୍ୟାମାନ ରହିଛ । ଶିଷ୍ୟ ଓ ପୁତ୍ରମାନେ ଏଇ ଅରଣ୍ୟବାସୀ ବା ଆରଣ୍ୟକ ଋଷିମାନଙ୍କୁ ତତ୍ତ୍ୱକଥା ବୁଝିବାକୁ ପଚ୍ଚରିବାରେ ଏ ସବୁ ଉପପତ୍ତି ଓ ବ୍ୟାଖ୍ୟାମାନ ପ୍ରକାଶ ପାଇଛ । ଯେଉଁସବୁ ପ୍ରକରଣରେ ଏଇ ତତ୍ତ୍ୱବଚ୍ଚରମାନ ଅଛି, ତାକୁ 'ଉପନଷଦ୍' କହନ୍ତି । ଉପନଷଦର ସାଧାରଣ ଆକ୍ଷରକ ଅର୍ଥ ଉପ ( ପାଖରେ ) ନ (ନଷ୍ଠା ବା ଦୃଢ଼ ସହିତ ) ସଦ୍ ( ବସିବା ବା ବସି ଶୁଣିବାର ବଷୟ ); ଅର୍ଥାତ୍, ଗୁରୁ ପାଖେ ଶିଷ୍ୟ ନଷ୍ଠା ବା ବଶ୍ୱାସରେ ବସି ଯେଉଁ ତତ୍ତ୍ୱକଥା ଶୁଣିଥିଲେ, ତାହା ହିଁ 'ଉପନଷଦ୍' । ଏଣୁ 'ଉପନଷଦ୍' ହେଉଛ, ବେଦରେ ତତ୍ତ୍ୱଭାଗ । ଉପନଷଦ୍ କହିଲେ ବେଦହିଁ ବୁଝିବାକୁ ହେବ । ଗୀତାର ଯଜ୍ଞତତ୍ତ୍ୱ ବୁଝିବାରେ ବ୍ରାହ୍ମଣ ଓ ସଂହିତା ସଙ୍ଗେ ଗୀତାର ସମ୍ପର୍କ ସୂଚନାରେ କୁହାଯାଇଛ । ଏବେ ସେଇପରି ସୂଚନାରେ ଗୀତାର 'ବେଦବାଦ' ଶବ୍ଦ ତଥା ଉପନଷଦ୍ ଓ ଗୀତାର ସମ୍ପର୍କ ଟିକଏ ଭଲ କରି ବୁଝାଯାଉ ।

## ଗୀତାର 'ବେଦବାଦ୍'—

କୁହାଯାଇଛ, ଗୀତା ୮.୧୧ ଓ ୧୫.୧ ରେ 'ବେଦବତ୍' କଥାଟି ଅଛି । ମନେ ରଖିବାର ଅଛି, ୮ମ ଅଧ୍ୟାୟରେ ଅକ୍ଷର ବ୍ରହ୍ମ ଓ ୧୫ଶରେ ପୁରୁଷୋତ୍ତମ ତତ୍ତ୍ୱର ନରୂପଣ ଅଛି । ଏହି ଦୁଇଟି ତତ୍ତ୍ୱ ବଚ୍ଚର ହିସାବରେ ଗୀତାର ସାର ଗୀତାର ୮.୧୧ରେ ଅଛି—

> "ଯଦକ୍ଷରଂ ବେଦବଦୋ ବଦନ୍ତି
> ବଶନ୍ତି ଯଦ୍ ଯତୟୋ ବୀତରାଗା ।
> ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି
> ତତ୍ ତେ ପଦଂ ସଂଗ୍ରହେଣ ପ୍ରବକ୍ଷ୍ୟେ ।"

ଏଇଠାରେ ବଶେଷରେ ଲକ୍ଷ୍ୟ କରବାର ଅଛି, ଭଗବାନ୍ ଶ୍ରୀକୃଷ୍ଣ ଗୀତାରେ ଯେଉଁ ଭକ୍ତିଶ୍ରେଷ୍ଠିତ ଜ୍ଞାନମୂଳକ ସ୍ୱଧର୍ମନିଷ୍ଠିତର ଯୋଗକୁ ବେଦଧର୍ମ ବୋଲି ଅର୍ଜୁନଙ୍କୁ ବୁଝାଇଚନ୍ତି, ତାହାର ସ୍ପଷ୍ଟ ଓ ସର୍ବାଙ୍ଗ ସୂଚନା ଏଇଠାରେ ବେଦରୁ ଉଦ୍ଧାର କରି ଦେଇଚନ୍ତି । ବେଦବତ୍ମାନେ ଯାହାକୁ ଅକ୍ଷର ବୋଲି କହନ୍ତି, ଅର୍ଥାତ୍ ଜ୍ଞାନବଳରେ ଯାହାକୁ ଏଇ କ୍ଷର ଜଗତରୁ ଅତୀତ ଅଧ୍ୟାତ୍ମତତ୍ତ୍ୱ ବୋଲି ବୁଝନ୍ତି (ଜ୍ଞାନ) ଯତି ଅର୍ଥାତ୍, ଯତବାନ୍ ବା କର୍ମନରତ ବୀତରାଗ (ନଷ୍କାମ) ପୁରୁଷମାନେ ଯହିଁରେ ପଶନ୍ତି ବା ଯେଉଁ ତତ୍ତ୍ୱକୁ ଆଦର ଆଆନ୍ତି (କର୍ମ) ଯାହାକୁ ପାଇବା ଇଚ୍ଛାରେ ଭକ୍ତିପର ଲୋକେ ବ୍ରହ୍ମଚର୍ଯ୍ୟ ବା ବ୍ରହ୍ମଉପାସନାର ବଧିସବୁ ପାଳନ କରନ୍ତି (ଭକ୍ତି); ସେଇ ପଦ ବା ସ୍ଥାନକୁ ମୁଁ ତୋତେ ଅଳ୍ପକେ

କହିଦେଇ । ଏହି ପଦ ବା ସ୍ଥାନଟି କଣ, ତାହା ଗୋଟିଏ ଶ୍ଲୋକ ପରେ (ଗୀତା ୮.୧୩) ଭଗବାନ୍ "ଓମିତ୍ୟେକାକ୍ଷରଂ ବ୍ରହ୍ମ" ବୋଲି କହି ଦେଇଚନ୍ତି । ଏହି ଶ୍ଲୋକଟିର ପୂର୍ବାର୍ଦ୍ଧ ଅର୍ଥାତ୍ ଓ ଉତ୍ତରାର୍ଦ୍ଧ ଶବ୍ଦତଃ କଠୋପନିଷଦରୁ ନିଆଯାଇଚ (କଠୋପନିଷଦ୍, ୨. ୧୫) । କଠୋପନିଷଦ୍‌ରେ ପୁଣି ଏହି ମନ୍ତ୍ରର ଶେଷ ଚରଣ ହେଉଚ, "ତତ୍ତେ ପଦଂ ସଂଗ୍ରହେଣ ବ୍ରବୀମି—ଓମିତ୍ୟେତତ୍" । ଏଠାରେ ପୁଣି ମନେ ରଖିବାକୁ ହେବ, ଉପନିଷଦରେ 'ଯତି' ଶବ୍ଦର ପ୍ରୟୋଗ କର୍ମଯୋଗୀ ଅର୍ଥରେ ସ୍ପଷ୍ଟ ନୁହେ । ଯତି କହିଲେ, କର୍ମ ଛାଡ଼ି ବ୍ରହ୍ମସମାଧି ଲେଡ଼ୁଥିବା ଲୋକ । ମାତ୍ର ଯତିର ଆକ୍ଷରିକ ଅର୍ଥ ହେଉଚ, ଯେ ଯତ୍ନ କରେ । ଏହି ଯତ୍ନରେ ଉଦ୍ୟମର ଉଷ୍ଣତା (ଉତ୍ସାହ, ଉଚ୍ଛ୍ୱାସ) ବା ତାପ ଥିବାରୁ ଏହାକୁ ବେଦରେ ତପ କୁହାଯାଏ, ଯତି ବା କର୍ମତ୍ୟାଗପର ସନ୍ୟାସୀମାନଙ୍କର ଏହି ତପ ବା ତପସ୍ୟାବିଧିମାନ ବେଦ ଶାସ୍ତ୍ରାଦିରେ ବହୁତ ଅଛି । ତଥାପି ଭଗବାନ୍ ଗୀତାରେ ସେସବୁ ତପସ୍ୟାବିଧିର ପ୍ରାଧାନ୍ୟ ସ୍ୱୀକାର କରି ନାହାନ୍ତି; କାରଣ, ତାହା ଯଥାର୍ଥ ବୈଦିକ ନୁହେ । ତୃଷ୍ଣାଯୁକ୍ତ ବ୍ରତ ଉପବାସ ବୀର୍ଯ୍ୟଧାରଣାଦି ବ୍ରହ୍ମଚର୍ଯ୍ୟ ବା ଉପାସନାର ପନ୍ଥା ଧରି ଲୋକେ ବ୍ରହ୍ମଧ୍ୟାନ କରନ୍ତି । ଏହି ଧ୍ୟାନଯୋଗ ହିଁ ଭକ୍ତିର ମୂଳ । ଯାହାକୁ ନିରନ୍ତର ଧ୍ୟାନ କରାଯାଏ ସେହି ଏକା ଭକ୍ତର ଦେବତା । ତାଙ୍କଠାରେ କର୍ମର ଫଳାଫଳ ଅର୍ପଣ କରି ଯୋଗୀ ନିଷ୍କାମ ହୁଏ । ସେଥିପାଇଁ ଭଗବାନ୍ କହିଚନ୍ତି, 'ଜ୍ଞାନ'ରୁ 'ଧ୍ୟାନ' ବଡ଼, 'ଧ୍ୟାନ'ରୁ 'କର୍ମଫଳତ୍ୟାଗ' ଆସେ ଓ 'ଶାନ୍ତି' ମିଳେ ( ଗୀତା ୧୨.୧୨ ) । ଏହି 'ଧ୍ୟାନ' କଥା ଏଠାରେ ଭକ୍ତିର ଭକ୍ତିରୂପେ ନିର୍ଦ୍ଦେଶ କରାଯାଇଚ । ମାତ୍ର ଗୀତାରେ ଯେଉଁ ବ୍ୟକ୍ତ ବା ଅବତାର-ଭକ୍ତିର କଥା କୁହାଯାଇଚ, ବେଦରେ ତା ନଥିଲା । ଉପନିଷଦ୍‌ରେ ବ୍ରହ୍ମଧ୍ୟାନ କଥା କହିଲା ବେଳେ ପ୍ରାଣ ମନ ପ୍ରଭୃତି ସଗୁଣ ଅବ୍ୟକ୍ତ ବା ସୂକ୍ଷ୍ମ ବସ୍ତୁର ଧ୍ୟାନରେ ମନ ଦେଇ ବ୍ରହ୍ମ ଆଡ଼କୁ ଯିବା କଥା ଅଛି ସତ, ମାତ୍ର ଏସବୁ ପ୍ରତୀକ ବା ଚିହ୍ନ ମାତ୍ର, ବ୍ରହ୍ମ ପଦାର୍ଥ ନୁହେଁ କି ଈଶ୍ୱର ନୁହେ । ପ୍ରତୀକ ହେଉଚି ଉପାସନା ନିମନ୍ତେ ଉପାସ୍ୟର ଚିହ୍ନ ବା ପରିଚୟ । ଅଂଶ ଓ ଅବତାର ମଧ୍ୟ ପ୍ରତୀକ ହୋଇପାରେ । ପ୍ରତୀକର ଆକ୍ଷରିକ ଅର୍ଥ ହଉଚ, (ପ୍ରତି= ଆଡ଼କୁ; ଇକ=ଚଳିବା, ହେବା) ଉପାସ୍ୟର ଯେଉଁ ଆକୃତି ଅଗ ଉପାସକ ଆଡ଼କୁ ହୁଏ ବା ଉପାସକ ଗୋଚରରେ ଆସେ । ଗୀତାର ବ୍ୟକ୍ତ ଭକ୍ତି (୧୦ମ ଅଧ୍ୟାୟର ବିଭୂତି ଯୋଗ ଦେଖ), ତଥା ନରଦେହଧାରୀ ଭଗବାନ୍ ବା ଅବତାର ଭକ୍ତି ଏହାର ସରଳ ଲୋକବୋଧ ବ୍ୟାଖ୍ୟା, ପ୍ରଗୃତ ଓ ବ୍ୟାପକ ପ୍ରୟୋଗ । ବେଦରେ ଏହି ଭକ୍ତିମୂଳ ବା ବୀଜ ରୂପ କୁହାଯାଇଚ । ତନ୍ମଧ୍ୟରେ 'ଓଁକାର' ବ୍ରହ୍ମର ପ୍ରତୀକ । ସେଥିପାଇଁ ଏହି ଧ୍ୟାନାଦିର ଗମ୍ୟସ୍ଥାନ 'ବ୍ରହ୍ମ' ବୋଲି ନ କହି 'ଓମିତ୍ୟେତତ୍' (ଏହା ହେଉଚ, ଓଁ) ବୋଲି ଚେତାଇ କହିଚନ୍ତି । *

---

* 'ଓଁ' ଶବ୍ଦଟି ଋଗ୍‌ବେଦରେ ନାହିଁ । ଏହା ଉପନିଷଦ୍‌ରେ ବ୍ରହ୍ମର ସ୍ୱରୂପରୂପେ ଗ୍ରହଣ କରାହୋଇଚ । ଏହା ଆଦିମ ବୈଦିକ ଧାରଣା ନୁହେ । ଭାରତର

ଗୀତା ୧୫.୧ରେ ସେଇପରି ପୁଣି 'ବେଦବିତ୍' ଶବ୍ଦ ଲଗାଇ ଭଗବାନ୍ କହିଚନ୍ତି :—

"ଊର୍ଦ୍ଧ୍ୱମୂଳମଧଃଶାଖ—
ମଶ୍ୱତ୍ଥଂ ପ୍ରାହୁରବ୍ୟୟଂ
ଛନ୍ଦାଂସି ଯସ୍ୟ ପର୍ଣାନି
ଯସ୍ତଂ ବେଦ ସ ବେଦବିତ୍ ।"

ଏଇ ଶ୍ଳୋକର ଶବ୍ଦ ଓ ଭାବପରଂପରା ସମ୍ପୂର୍ଣ ବୈଦିକ । କଠୋପନିଷଦ ୬.୧ ରେ ଅଛି—

"ଊର୍ଦ୍ଧ୍ୱମୂଳମବାକ୍ ଶାଖ
ଏଷୋଽଶ୍ୱତ୍ଥଃ ସନାତନଃ
ତଦେବ ଶୁକ୍ରଂ ତଦ୍ ବ୍ରହ୍ମ
ତଦେବାମୃତମୁଚ୍ୟତେ ।"

ଅର୍ଥାତ୍, ଉପରେ ମୂଳ ଓ ତଳକୁ ଶାଖା ଥିବାର ଏଇ ସନାତନ ଅଶ୍ୱତ୍ଥ ବୃକ୍ଷ । ଏଇ ଶୁକ୍ର (ଶୁକ୍ରଦେବତା) ଏଇ ବ୍ରହ୍ମ ଓ ଏହାକୁଇ ଅମୃତ ବୋଲି କୁହାଯାଏ । ସ୍ପଷ୍ଟତଃ 'ଉପନିଷଦ୍'ର ଏଇ ମନ୍ତ୍ରଟିରୁ ଗୀତାର ଏଇ ଶ୍ଳୋକଟିର ବର୍ଣ୍ଣନା ନିଆହୋଇଚି । ମାତ୍ର ଛନ୍ଦ ବା ବେଦମନ୍ତ୍ର ତଥା ବୈଦିକ କ୍ରିୟାକାଣ୍ଡମାନ ଏହାର ବୃନ୍ତମାନ ପତ୍ରରୂପେ ପ୍ରକାଶ ପାଏ । ଏହା ଏଠାରେ ନାହିଁ । ପୁଣି ଏଇପରି ଏ ବ୍ରହ୍ମ ବୃକ୍ଷକୁ ଯେ ଜାଣେ, ସେଇ ଏକା 'ବେଦବିତ୍' ଅର୍ଥାତ୍ ବେଦର ଯଥାର୍ଥ ତତ୍ତ୍ୱ ଜାଣେ, ଏତକ ଗୀତାରେ ହିଁ ଭଗବାନ୍ କହିଚନ୍ତି । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଚି, ଏଇ ବୃକ୍ଷରୂପକ ବ୍ରହ୍ମର ଧାରଣା ଅତି ପ୍ରାଚୀନ କାଳରୁ ବେଦରେ ପ୍ରକାଶ ପାଇଥିଲେ ହେଁ, ଲୋକେ ତାର ନିତାନ୍ତ ଲୌକିକ ବ୍ୟାଖ୍ୟା କରି, ତାର ଯଥାର୍ଥ ତତ୍ତ୍ୱ ଭୁଲିବାକୁ ବସିଥିଲେ ।

---

ପ୍ରାଚୀନଧର୍ମ ବା 'ବୌଦ୍ଧ' ଧର୍ମରେ ଶୂନ୍ୟରୁ ବ୍ୟକ୍ତ ବିକାଶର କ୍ରମରେ ବିନ୍ଦୁ ନାଦ (ତେଜ ବା କାମ) ନାମ କ୍ରମେ ପ୍ରକାଶ ପାଇବାର ଧାରଣା ପ୍ରତିଷ୍ଠିତ ଥିଲା । ଏଇ ନାମ ହେଉଚି ସେଥିରେ ବ୍ୟକ୍ତ । ନାମ ଛଡ଼ା ବ୍ୟକ୍ତ ବୋଲି ଆଉ କିଛି ନାହିଁ । ଏଇ ବିନ୍ଦୁ ହେଉଚି, ପୁରୁଷର ବୀଜବିନ୍ଦୁ; ନାଦ ହେଉଚି ସ୍ପନ୍ଦନ ବା ପ୍ରଥମେ ବୀଜରୁ ଶିଶୁର ଆବିର୍ଭାବ; ପୁଣି ନାମରେ ବ୍ୟକ୍ତର ବିକାଶ । ଏଇ ନାଦକୁ ତେଜ ଓ କାମ ମଧ୍ୟ କହୁଥିଲେ । ସେଇ ଅନୁକ୍ରମେ ବିନ୍ଦୁ ହେଲା, ବ୍ରହ୍ମ; ନାଦ ହେଲା, ଶବ୍ଦ ବ୍ରହ୍ମ ବା ବେଦ; ପୁଣି ନାମ ହେଲା 'ଓଁ' । ଏଇପରି ବ୍ରହ୍ମରୁ 'ଓଁ' ରୂପେ ପ୍ରକାଶ କଳ୍ପିତ ହେଲା । ଏ ବିଷୟଟି ୧୧ଶ ପ୍ରକରଣରେ ସବିଶେଷ ଆଲୋଚିତ ହୋଇଚି ।

ଯଜ୍ଞାଦିର କ୍ରିୟାକାଣ୍ଡକୁ ହୁଏତ ଏଇ ବ୍ରହ୍ମ-ବୃକ୍ଷର ସର୍ବସ୍ୱ ମନେ କରି ସେଥିରେ ହିଁ ଲାଗିଥିଲେ । ସେଥିପାଇଁ, ୧୫ଶ ଅଧ୍ୟାୟରେ 'କ୍ଷର ଓ ଅକ୍ଷର' ପୁରୁଷ (ବ୍ୟକ୍ତ ଓ ଅବ୍ୟକ୍ତ ବିଶ୍ୱ) ଦିଓଟିକୁ ଏକ 'ପୁରୁଷୋତ୍ତମ' ବା ପରଂବ୍ରହ୍ମର ଦୁଇଟି ମାତ୍ର ବିଭବ ଅର୍ଥାତ୍ ଦୁଇ ଆଡ଼ୁ ଦେଖି ଠିକ୍ କରିବାର ପ୍ରଣାଳୀ ବୋଲି (ଗୀତା ୧୫, ୧୬, ୧୭ ଦେଖ) ବୁଝାଇବାର ପ୍ରାରଂଭରେ ଏଇ ବୃକ୍ଷରୂପକଟି ବ୍ୟବହାର କରିଚନ୍ତି, ପୁଣି ସ୍ପଷ୍ଟ କହିଚନ୍ତି, ଇନ୍ଦ୍ରିୟଲବ୍ଧ ଜଗତରୂପ ଏହାର ଶାଖାରେ ଥିବା ପତ୍ର ପରି ହେଉଚି, ସମସ୍ତ ବୈଦିକ କ୍ରିୟା-କାଣ୍ଡ । ଛଦ୍ ଧାତୁର ଘୋଡ଼ାଇବା ବା ଆଚ୍ଛାଦନ ଅର୍ଥ ଧରି ଏଇ ଛନ୍ଦ ବା ବେଦକୁ ଛାନ୍ଦୋଗ୍ୟ ଉପନିଷଦ୍‌ରେ ଗଛର ପତ୍ର ସଙ୍ଗେ ତୁଳନାରେ କୁହାଯାଇଚି । ( ଛାନ୍ଦୋଗ୍ୟ ୧. ୪. ୨ ) । ଏଇ ସଙ୍କେତରୁ ଭଗବାନ୍ ଏ କଳ୍ପନାଟି ଏଠାରେ ହୁଏତ ଦେଇଚନ୍ତି । ମାତ୍ର କ୍ରିୟାକାଣ୍ଡର ଅପକୃଷ୍ଟତା ଛାନ୍ଦୋଗ୍ୟର ପତ୍ର ତୁଳନାରେ ସେତେ ସ୍ପଷ୍ଟ ନୁହେ । ପୁଣି ଏଇ ବୈଦିକ କ୍ରିୟାକାଣ୍ଡ ବା ଛନ୍ଦକୁ ଅବିବେକୀ ବେଦବାଦୀମାନଙ୍କର ପୁଷ୍ପିତା ବାକ୍ ବା ଲୋକଭୁଲାଣିଆ ବାହ୍ୟାପିଆ କଥା ବୋଲି କହି ବୈଦିକ କ୍ରିୟାକାଣ୍ଡରେ ଯଥାର୍ଥ ବୈଦିକ ଧର୍ମ ନାହିଁ ବୋଲି ଭଗବାନ୍ ମଧ୍ୟ ଅନ୍ୟତ୍ର ସ୍ପଷ୍ଟ କହିଚନ୍ତି (ଗୀତା ୨. ୪୨ ) । ଏଇ ବର୍ଣ୍ଣନାର ଭିତ୍ତି ମଧ୍ୟ ଉପନିଷଦ୍‌ରେ ଅଛି । ଉଦାହରଣ ସ୍ୱରୂପ ମୁଣ୍ଡକୋପନିଷଦ୍‌ରେ ଅଛି—

"ଇଷ୍ଟାପୂର୍ତ୍ତଂ ମନ୍ୟମାନା ବରିଷ୍ଠଂ
ନାନ୍ୟଚ୍ଛ୍ରେୟୋ ବେଦୟନ୍ତେ ପ୍ରମୂଢ଼ାଃ ।
ନାକସ୍ୟ ପୃଷ୍ଠେ ତେ ସୁକୃତେଽନୁଭୂତ୍ୱେ—
ମଂ ଲୋକଂ ହୀନତରଂ ବା ବିଶନ୍ତି ।"

ଅର୍ଥାତ୍, ଇଷ୍ଟାପୂର୍ତ୍ତ ( ଯଜ୍ଞାଦି କର୍ମକାଣ୍ଡ ଓ ବାମ୍ପୀ, ତଡ଼ାଗ ଖନନାଦି ଲୋକ-ହିତକର କାର୍ଯ୍ୟ) ହିଁ ସବୁଠାରୁ ଶ୍ରେଷ୍ଠ, ଏଇ କଥା ଯେଉଁ ମୂଢ଼ ଲୋକେ ମାନନ୍ତି, ସେମାନେ ସ୍ୱର୍ଗରେ ପୁଣ୍ୟ ଭୋଗ କରିବା ପରେ ପୁଣି ତଳେ ଏଇ ମନୁଷ୍ୟଲୋକକୁ ଆସନ୍ତି । ( ମୁଣ୍ଡକ ୧. ୨. ୧୦ ) ।

ସେଇ ସମ୍ପର୍କରେ ମଧ୍ୟ ଏଇ ଇନ୍ଦ୍ରିୟଲବ୍ଧ ଜଗତ୍ ବା ତ୍ରୈଗୁଣ୍ୟ ସେଠି ସବୁ ବେଦର ବିଷୟ ( ଗୀତା ୨. ୪୫ ) ଓ ବ୍ରାହ୍ମଣ (ବ୍ରହ୍ମଜ୍ଞ ବା ଯଥାର୍ଥ ବେଦଜ୍ଞ—ବେଦବିତ୍ )ର ଯେ ସେସବୁ ବେଦ ବା ବେଦବାଦୀଙ୍କ ଧର୍ମରେ କିଛୁ ପ୍ରୟୋଜନ ନାହିଁ ( ଗୀତା ୨. ୪୬ ). ଏହା ମଧ୍ୟ କହିଚନ୍ତି । ପୁଣି କ୍ଷର ଓ ଅକ୍ଷର ଦୁଇ ଦିଗରୁ ଏ ଦୁଇର ଅତୀତ, ଅର୍ଥାତ୍ ଏ ଦୁଇଟିରୁ କୌଣସି ଗୋଟିକରେ ସୀମାବଦ୍ଧ ନଥାଇ ଦୁଇଟିର ସମୂହ ଧାରଣାରେ ଥିବା ବ୍ରହ୍ମ ବା ପୁରୁଷୋତ୍ତମ କଥା ବା ଏକ କଥାରେ ଯଥାର୍ଥ ବେଦତତ୍ତ୍ୱ କହିଦେବାର ଠିକ୍ ପୂର୍ବରୁ କହିଚନ୍ତି, (ବେଦରେ କ୍ରିୟାକାଣ୍ଡାଦିର

ଯେଉଁ କଥା ଅଛି, ସେସବୁ ବେଦ ନୁହେଁ) ମୁଁହିଁ ସମସ୍ତଙ୍କ ହୃଦୟରେ ଅଧିଷ୍ଠିତ ବସ୍ତୁ. ମୋଠାରୁଁ ବ୍ୟକ୍ତିଙ୍କ (ସ୍ମୃତି ) ଜ୍ଞାନ ଓ ଜଡ଼ତ୍ୱ, ସବୁ ବେଦରେ ଜାଣିବାର ବସ୍ତୁ ମୁଁହିଁ, ମୁଁହିଁ ବେଦାନ୍ତ କରିଚ (ବେଦର ତତ୍ତ୍ୱ ପ୍ରକାଶକ), ପୁଣି 'ବେଦବିତ୍' ଏକା ମୁଁହିଁ (୧୫. ୧୫) । ଏଇ ଶ୍ଳୋକଟିର ଶେଷାର୍ଦ୍ଧ କୈବଲ୍ୟ ଉପନିଷଦ୍‌ରେ ଅଛି (କୈବଲ୍ୟ ଉପନିଷଦ୍ ୨. ୩) । କେବଳ ସେଠାରେ 'ବେଦୈଶ୍ଚ ସର୍ବୈଃ' ( ସବୁ ବେଦରେ) ସ୍ଥଳରେ 'ବେଦୈରନେକୈଃ' ( ନାନା ବେଦବାଦ ଭିତରେ ) କଥାଟିର ବ୍ୟବହାର ଦେଖାଯାଏ । ଅତଏବ କଣ ବୁଝିଲେ ପ୍ରକୃତ ବେଦତତ୍ତ୍ୱ ଓ ବେଦଧର୍ମ ଜାଣିବାକୁ ହୁଏ, ତାହା ଗୀତାରେ ଭଗବାନ୍ ବୁଝାଇଚନ୍ତି ଓ ଯେଥିପାଇଁ ବାରଂବାର 'ବେଦବିତ୍' ଶବ୍ଦ ଯଥାସ୍ଥାନରେ ବ୍ୟବହାର କରିଚନ୍ତି । ପୁଣି ଏଇ ବ୍ରହ୍ମବୃକ୍ଷ ଧାରଣାରେ ଭଗବାନ୍ ଏଇ 'ବେଦବିତ୍' କଥାଟି ନିଜେ ଏଇ ସମ୍ପର୍କରେ ନୂଆ କରି ବ୍ୟବହାର କରିବାର ବିଶେଷ କାରଣ ମଧ୍ୟ ଅଛି ।

## ବେଦାଦିରେ ବୃକ୍ଷରୂପକ ଜଗତ୍—

ନିତାନ୍ତ କ୍ଷୁଦ୍ର ବୀଜରୁ ଯେପରି ବିରାଟ ବୃକ୍ଷ ହୁଏ, ସେହିପରି ଅବ୍ୟକ୍ତ ବ୍ରହ୍ମରୁ ଦୃଶ୍ୟ ସୃଷ୍ଟିରୂପ ବୃକ୍ଷର ରୂପକଳ୍ପନା ବେଦରେ ବହୁସ୍ଥଳରେ ନାନା ଭାବରେ ଦେଖିବାକୁ ମିଳେ । ଛାନ୍ଦୋଗ୍ୟ ଉପନିଷଦ୍‌ରେ (ଛା. ୬. ୧୨.୧) ଶ୍ୱେତକେତୁଙ୍କ ପିତା ପୁତ୍ରକୁ ବରଫଳ ଭାଙ୍ଗି ଦେଖି, କଣ ଦେଖୁଚୁ ବୋଲି ପଚାରି ବ୍ରହ୍ମରୁ ବିଶ୍ୱବିକାଶ ବୁଝାଇ ଥିବା କଥା କୁହାଯାଇଚ ( ଭକ୍ତି ପ୍ରକରଣ ଦେଖ ) ।

ବ୍ରହ୍ମ ପ୍ରକୃତି ବା ମାୟାର ବିସ୍ତାର (ବିସର୍ଗଃ—ଗୀତା ୮. ୩) ରୂପ ଜଗତକୁ ପିପ୍‌ପଳ (ଅଶ୍ୱତ୍ଥ), ବର, ଉଦୁମ୍ବର ଏଇ ବୃକ୍ଷମାନଙ୍କ ରୂପ ବର୍ଣ୍ଣନ କରିବାଟି ବେଦ ଓ ବୈଦିକ ସାହିତ୍ୟ ତଥା ପରଂପରାରେ ଓତପ୍ରୋତ ଭାବରେ ଜଡ଼ିତ ରହିଅଛି । ଋଗ୍‌ବେଦରେ ଅଛି, "ବରୁଣ ଲୋକରେ ଏପରି ଏକ ବୃକ୍ଷ ଅଛି, ଯାହାର କିରଣର ମୂଳ ଉପରେ ଓ ତାହାର କିରଣ ଉପରୁ ତଳକୁ ବିସ୍ତୃତ ।" (ଋଗ୍‌ବେଦ ୧. ୨୪.୭) ପୁଣି ଅନ୍ୟତ୍ର, ଏଇ ବୃକ୍ଷର "ଅଗରେ ସ୍ୱାଦିଷ୍ଟ ପିପ୍‌ପଳ (ଫଳ) ଅଛି, ଓ ତା ଉପରେ ଦୁଇ ସୁପର୍ଣ୍ଣ (ପକ୍ଷୀ) ଅଛନ୍ତି ।" (ଋଗ୍ ବେଦ ୧. ୧୬୪. ୨୨) । ମୁଣ୍ଡକ ଉପନିଷଦ୍‌ରେ ଋଗ୍‌ବେଦର ଏଇ ବର୍ଣ୍ଣନା ଗୃହୀତ ହୋଇଚ । ସେଥିରେ ଅଛି, "ବୃକ୍ଷ ଉପରେ ଦୁଇ ପକ୍ଷୀ ( ପରମାତ୍ମା ଓ ଜୀବାତ୍ମା ) ବସିଚନ୍ତି । ତହିଁରୁ ଗୋଟିଏ ଏଇ ପିପ୍‌ପଳର ଫଳ ଖାଏ, ଆରଟି ଚାହିଁଥାଏ ।" (ମୁଣ୍ଡକ ୩. ୧) । ପୁଣି ଋଗ୍‌ବେଦରେ ଅଛି, "ଏଇ ପିପ୍‌ପଳକୁ ମରୁଦ୍‌ଗଣ (ବାୟୁ ଦେବତା) କଂପିତ କରନ୍ତି ।" ( ଋଗ୍‌ବେଦ ୫.୫୪. ୧୨ ) । "ଯମ ଓ ପିତୃଗଣ 'ସୁପଲାଶ ବୃକ୍ଷ' ତଳେ ବସି ସହପାନ କରନ୍ତି ।" (ଋଗ୍‌ବେଦ ୧୦. ୧୩୫. ୧) । ଅଥର୍ବ ବେଦରେ ଅଛି, "ଦେବସଦନ ଅଶ୍ୱତ୍ଥ ବୃକ୍ଷ

ତୃତୀୟ ସ୍ୱର୍ଗଲୋକ ( ବରୁଣ ଲୋକ ) ରେ ଅଛି ।" ତୈତ୍ତିରୀୟ ବ୍ରାହ୍ମଣରେ ଅଛି, "ପିତୃଯାନ କାଳରେ ଅଗ୍ନି ଅଥବା ଯଜ୍ଞ-ପ୍ରଜାପତି ଦେବଲୋକରୁ ନଷ୍ଟ ହୋଇ, ଏଇ ବୃକ୍ଷରେ ଅଶ୍ୱ ବା ଘୋଡ଼ା ରୂପେ ବର୍ଷେ କାଳ ଲୁଚିଥିଲେ । ସେଥିପାଇଁ ଏହାର ନାମ ହେଲା, ଅଶ୍ୱତ୍ଥ ( ଘୋଡ଼ାର ଥାନ ) ।" ( ତୈତ୍ତିରୀୟ ବ୍ରାହ୍ମଣ ୩.୮୧୨.୨) । ଶ୍ୱେତାଶ୍ୱତର ଉପନିଷଦ୍‌ରେ ବିଶ୍ୱବୃକ୍ଷର ବର୍ଣ୍ଣନା ଅଛି । (ଶ୍ୱେତାଶ୍ୱତର ୬.୬) ।

କେବଳ ବେଦରେ ନୁହେଁ, ସମସ୍ତ ବୈଦିକ ସାହିତ୍ୟ ଓ ପରଂପରାରେ ଏଇ ବୃକ୍ଷ ରୂପକଟି ସାଧାରଣ କହିଲେ ଚଳେ । ପୂର୍ବେ ପ୍ରସଙ୍ଗାନ୍ତରରେ କୁହାଯାଇଛି, (ଭକ୍ତିପ୍ରକରଣ ଦେଖ) ମହାଭାରତ ଅଶ୍ୱମେଧ ପର୍ବରେ ଅର୍ଜୁନ ପୁଣି ଥରେ ଗୀତା ଶୁଣିବେ ବୋଲି କହିବାରୁ ଭଗବାନ୍ ଶ୍ରୀକୃଷ୍ଣ ଚେଷ୍ଟା କରି ଆଉ ଥରେ ଏଇ ତତ୍ତ୍ୱ କଥା କହିଥିଲେ । ସେଇ ଭାଗକୁ ଅନୁଗୀତା କହନ୍ତି । ସେଥିରେ ମଧ୍ୟ ଦୁଇ ବାର ଏଇ ସଂସାରକୁ ବ୍ରହ୍ମବୃକ୍ଷ ରୂପେ ବର୍ଣ୍ଣନ କରାହୋଇଛି । ଦୁଇଟିଯାକ ବର୍ଣ୍ଣନା ପ୍ରାୟ ସମାନ । ତାହା ଏଇ :—

"ଅବ୍ୟକ୍ତବୀଜପ୍ରଭବୋ ବୁଦ୍ଧି ସ୍କନ୍ଧମୟୋ ମହାନ୍
ମହାହଂକାରବିଟପ ଇନ୍ଦ୍ରିୟାଙ୍କୁରକୋଟରଃ ।
ମହାଭୂତୋ ବିଶାଖଶ୍ଚ ବିଶେଷପ୍ରତିଶାଖବାନ୍
ସଦାପର୍ଣଃ ସଦା-ପୁଷ୍ପଃ ଶୁଭାଶୁଭଫଳୋଦୟଃ ।
ଆଜୀବ୍ୟଃ ସର୍ବଭୂତାନାଂ ବ୍ରହ୍ମବୃକ୍ଷଃ ସନାତନଃ
ଏବଂ ଛିତ୍ତ୍ୱା ଚ ଭିତ୍ତ୍ୱା ଚ ତତ୍ତ୍ୱଜ୍ଞାନାସିନା ବୁଧଃ ।
ହିତ୍ୱା ସଙ୍ଗମୟାନ୍ ପାଶାନ୍ ମୃତ୍ୟୁଜନ୍ମଜରୋଦୟାନ୍
ନିର୍ମମୋ ନିରହଂକାରୋ ମୁଚ୍ୟତେ ନାତ୍ର ସଂଶୟଃ ।"

(ଅଶ୍ୱମେଧ ପର୍ବ ୩୫ ଓ ୪୭ ଅଧ୍ୟାୟ—ମହାଭାରତ 'ବଙ୍ଗବାସୀ' ସଂସ୍କରଣ, କଲିକତା) ଅର୍ଥାତ୍, ଅବ୍ୟକ୍ତ (ପ୍ରକୃତି) ଯାହାର ବୀଜ, ବୁଦ୍ଧି ( ମହାନ୍ ) ଯାହାର ସ୍କନ୍ଧ (କାଣ୍ଡ ବା ଶାଖାମୂଳ), ଅହଂକାର ଯାହାର ମୁଖ୍ୟ ଶାଖା, ଇନ୍ଦ୍ରିୟ ଯାହାର ଡ଼ାଳପତ୍ର ବାହାରିବାର କୋରଡ଼ ଓ ଶାଖାଙ୍କୁର, ସୂକ୍ଷ୍ମ ମହାଭୂତ (ତନ୍ମାତ୍ର) ଯାହାର ମୁଖ୍ୟ ଶାଖାର ବଡ଼ ବଡ଼ ଡ଼ାଳମାନ, ସ୍ଥୂଳ ପଞ୍ଚମହାଭୂତ (ବିଶେଷ) ଯାହାର ଗ୍ରେଟ ଗ୍ରେଟ ଡ଼ାଳ, ଶୁଭାଶୁଭ ଫଳର ଉଦୟ ଯାହାର ସଦା ପୁଷ୍ପ ଓ ପତ୍ର, ସକଳ ବ୍ୟକ୍ତି ବିଶ୍ୱର ଆଧାର ସ୍ୱରୂପ ସେଇ ଏ ସନାତନ ବ୍ରହ୍ମବୃକ୍ଷ । ଏହାକୁ ତତ୍ତ୍ୱଜ୍ଞାନ ରୂପ ଖଣ୍ଡାରେ ଛେଦନ କରି ଟିକି ଟିକି କରି, ଜ୍ଞାନୀ ପୁରୁଷ ଜନ୍ମମୃତ୍ୟୁ ଜରାର କାରଣ ଆସକ୍ତିମୟ ଫାଶମାନ ଛିଣ୍ଡାଇ, ମମତା ଓ ଅହଂକାର ଛାଡ଼ି, ମୁକ୍ତ ହୁଏ; ଏଥିରେ ସନ୍ଦେହ ନାହିଁ ।

ତା ଛଡ଼ା ମହାଭାରତ ଅନୁଶାସନ ପର୍ବରେ ଥିବା ବିଷ୍ଣୁସହସ୍ରନାମରେ ବିଷ୍ଣୁଙ୍କର ଗୋଟିଏ ନାମ 'ବାରୁଣୋ ବୃକ୍ଷଃ' (ବରୁଣଙ୍କ ଗଛ) ଓ ପୁଣି 'ନ୍ୟଗ୍ରୋଧୋଦୁମ୍ବରୋଽଶ୍ୱତ୍ଥଃ' (ବର, ଡିମ୍ବିରି ଓ ଅଶ୍ୱତ୍ଥ)—(ମହାଭାରତ ଅନୁଶାସନ ପର୍ବ ୧୪୯.୧୦୧) ବେଦସଂହିତା, ଉପନିଷଦ୍ ତଥା ମହାଭାରତ ପୁରାଣାଦି ବୈଦିକ ସାହିତ୍ୟରେ ବର, ଡିମ୍ବିରି ଓ ଅଶ୍ୱତ୍ଥ, ଏହିପରି ନାନା ବୃକ୍ଷ-ରୂପକର କଳ୍ପନା ଦେଖାଯାଏ । ଆର୍ଯ୍ୟଧର୍ମ ପରଂପରାରେ ସେଇଥିପାଇଁ ଏବେ ମଧ୍ୟ ଏଇ ତିନୋଟି ପବିତ୍ର ବୃକ୍ଷ ବୋଲି ଧରାଯାଏ; ଲୋକେ ବର, ଅଶ୍ୱତ୍ଥର ପୂଜା ମଧ୍ୟ କରନ୍ତି । ଅଶ୍ୱତ୍ଥ ବୃକ୍ଷକୁ ବିଷ୍ଣୁଙ୍କର ବ୍ୟକ୍ତ ରୂପ ବୋଲି ମଧ୍ୟ ବର୍ଣ୍ଣନା ମହାଭାରତରେ ଅଛି । ଲୋକେ ମଧ୍ୟ ଏବେ ସେଇ ବିଶ୍ୱାସ କରନ୍ତି ।

ଲୋକସାଧାରଣରେ ମଧ୍ୟ ଏଇ ଓଲଟ ବୃକ୍ଷ ରୂପକରେ ସଂସାରର ଧାରଣା ଓ ତହିଁରେ ପକ୍ଷୀ ରୂପରେ ଆତ୍ମାର କଳ୍ପନା ଏ ଦେଶର ପରଂପରାରେ ବଡ଼ ବିସ୍ତୃତ ଓ ଦୃଢ଼ । ଓଡ଼ିଶାର ସେକାଳ ଯୋଗ ପରଂପରାରେ ମଧ୍ୟ ଅନ୍ୟାନ୍ୟ ବୈଦିକ ଓ ପୌରାଣିକ କଳ୍ପନା ପରି ଏହା ପରିଚିତ । କେବଳ ପରି ନାହିଁ ଏହା ବଡ ବ୍ୟାପକ । ଉଦାହରଣ ସ୍ୱରୂପ ଗୋଟିଏ ପ୍ରାଚୀନ ଭଜନ ତଳେ ଦିଆଗଲା—

"ଓଲଟ ବୃକ୍ଷେ ଖେଳୁଚି ଲୋଟଣି ପାରା
ଅଠା କାଠି ପଞ୍ଜୁରୀରେ ନ ପଡ଼େ ଧରା । ଧ୍ରୁବ ।
ସେ ପାରାଟି ପଞ୍ଚବର୍ଣ୍ଣୀ
ନାହିଁ ଇନ୍ଦ୍ରି, ନାହିଁ ଯୋନି
ପାଞ୍ଚ ଗୋଟି ପୁତ୍ର ଘେନି ଖେଳୁଚି ପାରା । ୧ ।
ସେ ପାରାର ଡେଣା ନାଇ
ଲକ୍ଷେ ଯୋଜନ ଉଡ଼ଇ ।
ଜଳ ଫଳ ନ ଭୁଞ୍ଜଇ ଅଟଇ ଅମରା । ୨ ।
(ଏ) ପାରା ଅଛି ଯେଉଁଠାରେ
କେହି ତା ଦେଖି ନ ପାରେ
ଶୀତଳ ଫୋଟ ଗୁମ୍ଫାରେ ନ ପଡ଼େ ଧରା । ୩ ।
ପାରା ଯେବେ ଯିବ ଉଡ଼ି
ବୃକ୍ଷ ପଡ଼ିବ ଉପୁଡ଼ି
ଦାସ ସାଧୁ ବୋଲେ ଭଜ ଦୁଃଖପାସୋରା । ୪ ।

ତିଲକ୍ ମହାଶୟ ନିଜ ଗୀତାର ୧୫.୧ ଟୀକାରେ କହନ୍ତି, "ଏଇ ବୃକ୍ଷ ରୂପକ ଏକା ବୈଦିକ ଧର୍ମର ନୁହେଁ, ଅନ୍ୟ ପ୍ରାଚୀନ ଧର୍ମ ପରଂପରାରେ ମଧ୍ୟ

ଦେଖାଯାଏ । ଇଉରୋପର ପ୍ରାଚୀନ ଭାଷାରେ ମଧ୍ୟ 'ବିଶ୍ୱବୃକ୍ଷ' ବା 'ଜଗଦ୍‌ବୃକ୍ଷ' ବୋଲି ନାମ ଅଛି ।" ଏଇଠାରେ ମନେ ରଖିବାର ଅଛି, ଓଡ଼ିଶାର ସେକାଳ ଯୋଗ ପରଂପରା ମଧ୍ୟ ବୈଦିକ ନୁହେ । ତାହା ପରେ ବିଶେଷ କରି ବୁଝାଯିବ । ମାତ୍ର ଏଇ ପ୍ରାଚୀନ ଯୋଗପରଂପରା ଓ ବୈଦିକ ଧର୍ମର ପରଂପରା ଯେ ପରସ୍ପର ଦ୍ୱାରା ବିଶେଷ ଭାବେ ପ୍ରଭାବିତ, ତହିଁରେ ଆପତ୍ତି କରିବାର ବିଶେଷ କିଛି ନାହିଁ । ଇଉରୋପର ପ୍ରାଚୀନ ପରମ୍ପରା ସମ୍ବନ୍ଧରେ ହୁଏତ ସେଇ କଥା ।

## ଗୀତାରେ ଉପନିଷଦର ତତ୍ତ୍ୱ ବ୍ୟାଖ୍ୟା ଓ ଭାଷା—

ସେକଥା ଥାଉ । ଏବେ ବୁଝାଯାଉଥିଲା, ଭଗବାନ୍ ଗୀତାରେ ବୈଦିକ ପରଂପରା ତଥା ଉପନିଷଦ୍‌ରେ ପ୍ରଚାରିତ ଧର୍ମର ଶୁଦ୍ଧ ବୈଦିକ ତତ୍ତ୍ୱ ଗୀତାରେ ଅର୍ଜ୍ଜୁନଙ୍କୁ ବୁଝାଇଛନ୍ତି । ଏଇ ବୃକ୍ଷରୂପକର ପରମ୍ପରା ଉପନିଷଦ୍ ଭାଷାରେ ପ୍ରକାଶ କରିବା ଦ୍ୱାରା ଗୀତାର ବେଦତତ୍ତ୍ୱ ବ୍ୟାଖ୍ୟା ବିଶେଷ କିଛି ଅଗ୍ରସର ନହେଲେ ବି ଭଗବାନ୍ ନିଜର ତତ୍ତ୍ୱ-ବ୍ୟାଖ୍ୟାକୁ ବେଦର ଯଥାର୍ଥ ମର୍ମ ବୋଲି ବୁଝାଇବା ପାଇଁ ଏଇ ରୂପକ ବ୍ୟବହାର କରିଚନ୍ତି । ସେତିକି ନୁହେଁ, ଭାବ ଓ ଭାଷାରେ ଉପନିଷଦ୍ ସଙ୍ଗେ ଗୀତାର ସମ୍ବନ୍ଧ ଅଚ୍ଛେଦ୍ୟ । ଗୀତା ସ୍ତୁତିରେ ବଚନ ଅଛି !

> "ସର୍ବୋପନିଷଦୋ ଗାବୋ ଦୋଗ୍‌ଧା ଗୋପାଳନନ୍ଦନଃ
> ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍‌ଧଂ ଗୀତାମୃତଂ ମହତ୍ ।"

ଅର୍ଥାତ୍, ସବୁ ଉପନିଷଦ୍ (ବେଦତତ୍ତ୍ୱ ବା ବେଦାନ୍ତ) ହେଲେ ଗାଈମାନଙ୍କ ପରି । ଗୋପାଳପୁତ୍ର କୃଷ୍ଣ ହେଲେ ଦୋହିଁବାବାଲା । ପାର୍ଥ (ଅର୍ଜୁନ) ହେଲେ ବାଛୁରି । ଦୁଧ ହେଲା ମହତ୍ ଗୀତାମୃତ । ସୁଧୀ ବା ସଜ୍ଜନମାନେ ସେଇ ଦୁଗ୍‌ଧ ପାନ କରିବା ଲୋକ ।

ସମସ୍ତ ଗୀତାଟି ଉପନିଷଦ୍‌ର ବା ବେଦତତ୍ତ୍ୱର ସାରସଂଗ୍ରହ । ଗୀତା ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ଆତ୍ମାର ଅଶୋଚ୍ୟତ୍ୱ; ୮ମ ଅଧ୍ୟାୟର ଅକ୍ଷର ବ୍ରହ୍ମ ସ୍ୱରୂପ ଓ ତ୍ରୟୋଦଶ ଅଧ୍ୟାୟର କ୍ଷେତ୍ର କ୍ଷେତ୍ରଜ୍ଞ ବିଚାର ପ୍ରଭୃତି ଉପନିଷଦମାନଙ୍କରେ ଯେପରି ବୁଝାଯାଇଚି, ଗୀତାରେ ଠିକ୍ ସେଇପରି ଅଛି । ଛାନ୍ଦୋଗ୍ୟ ପ୍ରଭୃତି ଉପନିଷଦ ଗଦ୍ୟରେ ଥିବାରୁ ଗୀତା ଶ୍ଳୋକରେ ସେସବୁ ଉଦ୍ଧାର କରାଯାଇ ପାରି ନାହିଁ ।

ତଥାପି—"ନାସତୋ ବିଦ୍ୟତେ ଭାବଃ ନାଽଭାବୋ ବିଦ୍ୟତେ ସତଃ" (ଗୀତା ୨. ୧୬) "ଯଂ ଯଂ ବାଽପି ସ୍ମରନ୍ ଭାବ" (ଗୀତା ୮.୬), ଇତ୍ୟାଦି ଛାନ୍ଦୋଗ୍ୟରୁ; ପୁଣି "କ୍ଷୀଣେ ପୁଣ୍ୟେ" (ଗୀତା ୯. ୨୧), "ଜ୍ୟୋତିଷାଂ ଜ୍ୟୋତିଃ" (ଗୀତା ୧୩. ୧୭), "ମାତ୍ରାସ୍ପର୍ଶାଃ" (ଗୀତା ୨.୧୪) ପ୍ରଭୃତି, ବିଚାର ଓ ବାକ୍ୟ

ବୃହଦାରଣ୍ୟକ ଉପନିଷଦରୁ ନିଆହୋଇଛି । ମାତ୍ର ଯେଉଁ ଉପନିଷଦ୍ ସବୁ ପଦ୍ୟ ବା ଶ୍ଳୋକରେ ଅଛି, ସେଥିରୁ କେବଳ ଭାବ ବା ଶବ୍ଦ ନୁହେଁ, ଅନେକ ଶ୍ଳୋକ କେଉଁଠାରେ ପୂର୍ଣ୍ଣରୂପେ, କେଉଁଠାରେ ବା ଅଳ୍ପ ଭେଦରେ ବରାବର ଗୀତାରେ ସ୍ଥାନ ପାଇଛି । 'ବେଦବିତ୍' କଥା ବୁଝାଇବା ସମ୍ପର୍କରେ ଏଇପରି କେତେ ଉଦାହରଣ ଦିଆଯାଇଚି । ଏବେ ନିମ୍ନରେ ଆଉ କେତେକ ସ୍ପଷ୍ଟ ଉଦାହରଣ ଦିଆଗଲା :—

ଆଶ୍ଚର୍ଯ୍ୟବତ୍ ପଶ୍ୟତି (ଗୀତା ୨.୨୯)
ଆଶ୍ଚର୍ଯ୍ୟୋ ବକ୍ତା
( କଠୋପନିଷଦ୍ ୨.୭ )
ଯଏନଂ ବେତ୍ତି ହନ୍ତାରଂ
ପ୍ରଭୃତି (ଗୀତା ୨.୨୯)
,, (କଠୋପନିଷଦ୍ ୨.୧୮)
ନ ଜାୟତେ ମ୍ରିୟତେ ବା
କଦାଚିତ୍ ପ୍ରଭୃତି (ଗୀତା ୨.୨୦)

ନ ଜାୟତେ ମ୍ରିୟତେ ବା ବିପଶ୍ଚିତ୍
ପ୍ରଭୃତି (କଠୋପନିଷଦ ୨.୧୯)
ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି
(ଗୀତା ୮.୧୧)
,, (କଠୋପନିଷଦ୍ ୨.୧୫)
ଇନ୍ଦ୍ରିୟାଣି ପରାଣ୍ୟାହୁଃ (ଗୀତା ୩.୪୨)
,, (କଠୋପନିଷଦ୍ ୩.୧୦)
ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ (ଗୀତା ୬.୧୧)
ସମଂ କାୟଶିରୋଗ୍ରୀବଂ (ଗୀତା ୬.୧୩)

ସମେ ଶୁଚୌ (ଶ୍ୱେତାଶ୍ୱତର, ୨.୧୦)
ତ୍ରିରୁନ୍ନତଂ ସ୍ଥାପ୍ୟ ସମଂଶରୀର (" ୨.୮)
ସର୍ବତଃ ପାଣି ପାଦଂ
ପ୍ରଭୃତି (ଗୀତା ୧୩.୧୩)
,, (ଶ୍ୱେତାଶ୍ୱତରୋପନିଷଦ୍ ୩.୧)

ସର୍ବଭୂତସ୍ଥମାତ୍ମାନଂ
(ଗୀତା ୬.୨୯)
ବେଦୈଶ୍ଚ ସର୍ବୈରହମେବ
ବେଦ୍ୟଃ (ଗୀତା ୧୫.୧୫)

ଅଣୋରଣୀୟାଂସଂ
ଆଦିତ୍ୟବର୍ଣ୍ଣଂ ତମସଃ
ପରସ୍ତାତ୍
(ଗୀତା ୮.୯)
" (ଶ୍ୱେତାଶ୍ୱତରୋପନିଷଦ୍ ୩. ୯, ୨୦)

,, ,, କୈବଲ୍ୟୋପନିଷଦ୍
ନ ତଦ୍ଭାସୟତେ ସୂର୍ଯ୍ୟୋ
(ଗୀତା ୧.୫୬)

କଠ ଓ ଶ୍ୱେତାଶ୍ୱତର ଉପନିଷଦରୁ ଅଳ୍ପ ଶବ୍ଦଭେଦରେ ନିଆହୋଇଚି । ଶ୍ୱେତାଶ୍ୱତର ଉପନିଷଦର 'ମାୟା' ଶବ୍ଦ ଗୀତାରେ ଗୃହୀତ ହୋଇଅଛି । ଗୀତା ଓ ଉପନିଷଦ୍‌ର ପ୍ରତିପାଦ୍ୟ ଅଧ୍ୟାତ୍ମ ବିଷୟ ପ୍ରାୟ ଏକାପରି ।

## ମାତ୍ର ଗୀତା ଠିକ୍ ଉପନିଷଦ୍ ନୁହେ—

ମାତ୍ର ଏତେ ସୌସାଦୃଶ୍ୟ ଥିଲେହେଁ ଗୀତା ଓ ଉପନିଷଦର ଅଧ୍ୟାତ୍ମାଦି ତତ୍ତ୍ୱର ପ୍ରତିପାଦନ ଠିକ୍ ଏକାପରି ନୁହେ । ତତ୍ତ୍ୱ ଦୁଇଥିରେ ସର୍ବଦା ଏକ ଭାବ ଓ ଏକ

ଯାଇରେ ପ୍ରତିପାଦିତ ହୋଇ ନାହିଁ । କୁହାଯାଇଚି, ଉପନିଷଦ୍ ବେଦର ତତ୍ତ୍ୱଭାଗ । ଏଇ ତତ୍ତ୍ୱ ସାଧନାର କଥା ମଧ୍ୟ ଏଥିରେ ଅଛି । ପରବର୍ତ୍ତୀ କାଳରେ ଯେଉଁସବୁ ବୈଦିକ ଓ ବୌଦ୍ଧ ଦର୍ଶନ ବିଧିବଦ୍ଧଭାବରେ ପ୍ରସ୍ଫୁଟିତ ହୋଇଥିବାର ଦେଖାଯାଏ, ସେସବୁର ମୂଳ ଉପନିଷଦରେ ଅଛି । ମାତ୍ର ବୁଝି ରଖିବାର ଅଛି, ପରବର୍ତ୍ତୀ ବେଦ ସଂହିତା ତଥା ଉପନିଷଦରେ ତତ୍ତ୍ୱବିଚାରର ମୂଳ ଏକ ନୁହେ । ବିଶ୍ୱ ଏକ ସତ୍ୟ ନିତ୍ୟ ତତ୍ତ୍ୱବସ୍ତୁର ବିକାଶ—ଏହା ହିଁ ଆଦିମ ବୈଦିକ ଧାରଣା । ତା ସଙ୍ଗେ ସଙ୍ଗେ ଶୂନ୍ୟରୁ ଏଇ ବିଶ୍ୱବିକାଶ ହୋଇଥିବାର ଏକ ତତ୍ତ୍ୱ ଧାରଣା ବେଦକାଳରୁ ଚାଲି ଆସିଥିବାର ସ୍ପଷ୍ଟ ପ୍ରମାଣ ବେଦରେ ଅଛି । (୪.୧ ବ୍ୟା: ସୂ: ରେ ନାସଦୀୟ ସୂକ୍ତ ଦେଖ) ଏଇ 'ନାସଦୀୟ ସୂକ୍ତ'ରେ ବିଶ୍ୱର ସତ୍ୟମୂଳକ ବେଦଧାରଣାରେ ପ୍ରଥମେ ସ୍ପଷ୍ଟ ଧକ୍କା ଲାଗିଛି । ଇନ୍ଦ୍ର, ଅଗ୍ନି ପ୍ରଭୃତି ବିଶ୍ୱଶକ୍ତିରେ ପୁରୁଷ ଦେଖି ବୈଦିକ ଋଷି ଯେପରି କି ତାହାର ପୂଜାରେ ଆତ୍ମବିସ୍ମୃତ ଥିଲେ । 'ଏଇ ସମସ୍ତେ ଏକ ସଦ୍‌ବସ୍ତୁର ବିକାଶ'; ସେଇ ଏକକୁ ବିପ୍ରମାନେ ଇନ୍ଦ୍ରାଦି ବହୁ ନାମରେ କହନ୍ତି (ଋଗ୍‌ବେଦ ୧.୧୬୪.୪୬; ୧୦. ୧୧୪.୫) ବୋଲି ବୈଦିକ ଋଷି ବିଶ୍ୱର ତତ୍ତ୍ୱ ଉପଲବ୍ଧିରେ ଉଦ୍‌ଭ୍ରାନ୍ତ ଓ ବିହ୍ୱଳ । ଏପରି କି ଏଇ ବାହାର ବିକାଶରେ ଆତ୍ମହରା ହୋଇ, ତାଙ୍କର ଭିତରକୁ ଚାହିଁବାର ଯେପରି କି ଅବକାଶ ନାହିଁ । ହଠାତ୍ ଯେପରି କି କାହୁଁ ଏକ ଧକ୍କା ଲାଗିଲା । ଋଷି ଚମକି ଭିତରକୁ ଚାହିଁଲେ; କହି ଉଠିଲେ, ମୂଳରୁ ସତ୍ ନା ଅସତ୍ ? ଶୂନ୍ୟ ଥିଲା ? ଶୂନ୍ୟରେ କିଏ ଥିଲା ? କାହୁଁ ତେବେ ଏସବୁ ହେଲା ? ଏହାଇ ନାସଦୀୟ ସୂକ୍ତରୁ ସ୍ପଷ୍ଟ । ଏହା ହିଁ ବୌଦ୍ଧଭାବର ଭିତ୍ତି । ଏଇ ଭାବ ଉପନିଷଦ୍‌ମାନଙ୍କରେ ମଧ୍ୟ ନାନାଭାବରେ, ନାନା ସ୍ଥାନରେ ବେଦର ସତ୍ୟ ଧାରଣା ସଙ୍ଗେ ସଙ୍ଗେ ପ୍ରକାଶ ପାଇଚି । * ସେଥି ସଙ୍ଗେ ସଙ୍ଗେ ମଧ୍ୟ ସାଧନାରେ ଦୁଇଟି ପନ୍ଥା ଫିଟିଥିବାର ଦେଖାଯାଏ । ଗୋଟିଏ ଶୂନ୍ୟସାଧନା । ସେଥିରେ କର୍ମ ତ୍ୟାଗ କରି ସନ୍ୟାସରେ ନିର୍ବାଣ ବା ଶୂନ୍ୟତା ଲୋଡ଼ିବାକୁ ହୁଏ । ଏହା ହିଁ ପରେ ପୁରୁଷର ଆତ୍ମସାଧନା ରୂପେ ସାଂଖ୍ୟଦର୍ଶନର ସୃଷ୍ଟି କରିଥିଲା । ଶୂନ୍ୟରୁ ସତ୍ୟକୁ ଆସି ଋଷିମାନେ ନିଷ୍କ୍ରିୟ ପୁରୁଷ ଓ ବ୍ୟକ୍ତ ସୃଷ୍ଟିର ମୂଳ ପ୍ରକୃତି—ଏଇପରି ଦୁଇଟି ତତ୍ତ୍ୱର ପ୍ରଚାର କଲେ । କପିଳ ପରେ ଏହାକୁ ସାଂଖ୍ୟଦର୍ଶନରେ ସବିଧିରେ ପ୍ରକାଶ କରିଥିଲେ । ଏହାର ସାଧନା କିନ୍ତୁ ସେଇ ନିର୍ବାଣ ସାଧନାର ପନ୍ଥାରେ—କର୍ମତ୍ୟାଗ ସନ୍ୟାସରେ—ଗତି କରେ । ଦ୍ୱିତୀୟଟି ନିଷ୍କାମ କର୍ମର ନିତ୍ୟସାଧନାରେ ସତ୍ୟ ଆତ୍ମାର ବ୍ରହ୍ମତ୍ୱପ୍ରାପ୍ତି । ଏଇ ସାଧନାର ଧାରାଟି ମଧ୍ୟ ଆଦି ବେଦକାଳରୁ ବରାବର ଚାଲିଆସିଚି । ଈଶାବାସ୍ୟ ପ୍ରମୁଖ ଉପନିଷଦରେ ଏହା ସ୍ପଷ୍ଟ ।

---

* ଏଥିର ବିଶେଷ ବିବରଣ ଜାଣିବା ପାଇଁ ଏଇ ଗ୍ରନ୍ଥକାରଙ୍କ 'ଭାରତର ପ୍ରାଚୀନ ଧର୍ମ ଓ ଓଡ଼ିଶା' ଗ୍ରନ୍ଥ ଦେଖ ।

ଈଶାବାସ୍ୟ ଉପନିଷଦକୁ ବରଂ ଗୀତାଧର୍ମର ବୀଜ କହିଲେ ଚଳେ । ତାହାର ମୂଳମନ୍ତ୍ର ହେଉଛି—

"ଈଶାବାସ୍ୟମିଦଂ ସର୍ବଂ
ଯତ୍ କିଂ ଚ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥାଃ
ମାଗୃଧଃ କସ୍ୟସ୍ୱିଦ୍ ଧନଂ ॥"

ଅର୍ଥାତ୍, ବିକାଶମୟ ଜଗତରେ ଯାହା କିଛି ବିକାଶ-କର୍ମ ଅଛି, ସେସବୁ ଈଶ୍ୱରାଧିଷ୍ଠିତ ବା ନିୟନ୍ତାଙ୍କର ନିତ୍ୟବିକାଶ ନିୟମରେ ଗ୍ରଥିତ । ସେଇ ଯାହା ଛାଡ଼ିବେ (ଦେବେ) ବା ସେଇ କର୍ମ-ନିୟମରେ ତୋ ଭାଗ୍ୟରେ ଯାହା ପଡ଼ିବ, ତାହିଁ ଭୋଗ କର । କାହାର ( ଅନ୍ୟର ) ଧନ ( ପ୍ର.ପ୍ୟ ) ରେ ଲୋଭ କର ନା । ଏହା କହି ପୁଣି ତା ପରେ କହିଚନ୍ତି—"( ଏଇପରି ସର୍ବଦା ନିଷ୍କାମ ) କର୍ମର ଆଚରଣ ଅଭ୍ୟାସ ଭିତରେ ଜୀବନ ଯାକ କରି ଶହେ ବର୍ଷ ବଞ୍ଚିବାକୁ ହେବ ।" ଅର୍ଥାତ୍ ନିଷ୍କାମରେ କର୍ମ କରିବାକୁ ହେବ ବୋଲି ଜୀବନରେ ବିତୃଷ୍ଣା ଯେପରି ନ ହୁଏ । ପରେ ଏଇ ଈଶୋପନିଷଦରେ ପୁଣି 'ପୁରୁଷୋତ୍ତମ' ଭାବର ସ୍ପଷ୍ଟ ସୂଚନା ଅଛି—

"ଅନ୍ଧଂତମଃ ପ୍ରବିଶନ୍ତି ଯେଽବିଦ୍ୟା ଉପାସତେ
ତତୋଭୂୟ ଏବ ତେ ତମଃ ଯ ଉ ବିଦ୍ୟାୟାଂ ରତାଃ । (ଈଶ, ୧୧) ।

ଅର୍ଥାତ୍, ଯେ ଅବିଦ୍ୟା ବା ପ୍ରକାଶ (କର୍ମ)କୁ ଏକା ଧରନ୍ତି, ସେ ଅନ୍ଧ ଅନ୍ଧାରରେ ପଡ଼ନ୍ତି । ପୁଣି ଯେ ଖାଲି ବିଦ୍ୟା ବା ତତ୍ତ୍ୱ (ଜ୍ଞାନ)ରେ ମାତନ୍ତି, ସେ ତାଠାରୁ ବେଶୀ ଅନ୍ଧାରରେ ପଡ଼ନ୍ତି । ମାତ୍ର—

ବିଦ୍ୟାଂ ଚାବିଦ୍ୟାଂ ଚ ଯସ୍ତଦ୍ ବେଦୋଭୟଂ ସହ
ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ୱା ବିଦ୍ୟୟାମୃତମଶ୍ନୁତେ । ( ଈଶ, ୧୨ )

ଅର୍ଥାତ୍ ବିଦ୍ୟା ଓ ଅବିଦ୍ୟା ଦୁହିଁଙ୍କ ଯେ ଏକତ୍ର ପରସ୍ପରର ସାପେକ୍ଷ ବା ଏକର ଦୁଇପାଖ ବୋଲି ଜାଣେ, ସେ ଅବିଦ୍ୟା (ପ୍ରକାଶ, କର୍ମ) ରେ ମୃତ୍ୟୁ ପାରି ହୋଇ, ବିଦ୍ୟା ( ତତ୍ତ୍ୱ, ଜ୍ଞାନ ) ରେ ଅମୃତ ପାଏ । ଏଇ କଥାକୁ ପୁଣି ସମ୍ଭୂତି (ଜଗତର ମୂଳତତ୍ତ୍ୱ) ଅସମ୍ଭୂତି ବା ବିନାଶ (କ୍ଷର ଭୂତ. ଜଗତ୍ ) ନାମରେ ଠିକ୍ ପରବର୍ତ୍ତୀ ମନ୍ତ୍ରମାନଙ୍କରେ ଆବୃତ୍ତି କରାଯାଇଚି ।

ଏଥିରେ ପୁରୁଷ-ପ୍ରକୃତିର ଦ୍ୱୈତ ଧାରଣା ନାହିଁ । ବ୍ୟକ୍ତ ଓ ଅବ୍ୟକ୍ତ ଦୁଇଟି ପରଂବ୍ରହ୍ମର ଦୁଇ ଭାଗ—ବା ପରଂବ୍ରହ୍ମଙ୍କୁ ଧାରଣା କରିବାରେ ଦୁଇଟି ପ୍ରଣାଳୀ ।

ପରଂବ୍ରହ୍ମ ଏ ଦୁଇଟିରୁ ଅତୀତ ବା ଦୁଇଟିର ସଂଶ୍ଳେଷଣ ଓ ସମବାୟ; ଗୋଟିକରେ ପରଂବ୍ରହ୍ମ-ଧାରଣା ପୂର୍ଣ୍ଣ ନୁହେଁ । ଏହା ହିଁ ବେଦାନ୍ତ ବା ବେଦର ଯଥାର୍ଥ ସିଦ୍ଧାନ୍ତ । ଗୀତାରେ ଭଗବାନ୍ ଏଇ ତତ୍ତ୍ୱ ଓ ଏଇ ସାଧନା ପ୍ରଚାର କରିଚନ୍ତି । ଏହାକୁ ହିଁ ଭଗବାନ୍ 'ଯୋଗ' ବୋଲି କହିଚନ୍ତି । ଏଇ ତତ୍ତ୍ୱଜ୍ଞାନରେ ସ୍ଥିର ରହି କର୍ମର ନିଷ୍କାମସାଧନା କରିବା ହିଁ ଗୀତାର ଯୋଗ । ପୁଣି ଏଇ ତତ୍ତ୍ୱରେ ସ୍ଥିର ରହିବା ନିମନ୍ତେ ଧ୍ୟାନ-ଯୋଗ ଦରକାର ହେଲେହେଁ, ସାଂଖ୍ୟମାନଙ୍କ ପରି ଏଇ ଯୋଗର ସାଧନାକୁ ମୁଖ୍ୟ ଏକ ପନ୍ଥା ବୋଲି ନ ଧରି ଭଗବାନ୍ ଏଇଠାରେ ବ୍ୟକ୍ତ ଭକ୍ତିର ଉପଯୋଗ କରିଅଛନ୍ତି । ପରମେଶ୍ୱରଙ୍କ ବ୍ୟକ୍ତ ସ୍ୱରୂପ ତଥା ଅବତାରରେ ଆତ୍ମ-ସମର୍ପଣ କଲେ ଏଇ ଭକ୍ତି ସୁଗମ ହୁଏ । ଏହା ହିଁ ବିଶ୍ୱତତ୍ତ୍ୱରେ ସ୍ଥିର ରହି କର୍ମରେ ନିଷ୍କାମ ହେବାର ସୁଲଭ ପନ୍ଥା । ଏଥିରେ କର୍ମ ପରମେଶ୍ୱରଙ୍କର ବୋଲି ଧାରଣା ସହଜ ହୁଏ ଓ ନିଷ୍କାମତା ପାଇଁ ଅଧିକ ଶ୍ରମ କରିବାକୁ ପଡ଼େନାହିଁ । ଈଶ୍ୱରରେ ଆତ୍ମସମର୍ପଣ କଲେ ମଧ୍ୟ ତତ୍ତ୍ୱଜ୍ଞାନରେ ବୁଦ୍ଧି ସ୍ଥିର ହେବା ସ୍ୱତଃସିଦ୍ଧ । ଏଇ ଭକ୍ତିର ଉପଯୋଗ ପୁଣି ଗୀତାର ବିଶେଷତ୍ୱ । କୁହାଯାଇଚି, ଉପନିଷଦ୍‌ରେ 'ପ୍ରତୀକ'ର ଧ୍ୟାନ ଥିଲେ ମଧ୍ୟ ଏପରି ବ୍ୟକ୍ତ ଭକ୍ତିର କଳ୍ପନା ନାହିଁ ।

ଏଇପରି ଭଗବାନ୍ ଗୀତାରେ ମୌଳିକ ବେଦର ସତ୍ୟମୂଳକ ବିଶ୍ୱତତ୍ତ୍ୱ ଉପରେ ପ୍ରତିଷ୍ଠିତ ନିଷ୍କାମ କର୍ମସାଧନା ପ୍ରଚାର କରିଚନ୍ତି; ସେଥିରେ ଭକ୍ତିର ପୂର୍ଣ୍ଣ ଉପଯୋଗ ମଧ୍ୟ କରିବାରେ ବିଶ୍ୱତତ୍ତ୍ୱଧାରଣାକୁ ସୁଗମ କରିଦେଇଚନ୍ତି । କିନ୍ତୁ ଏହା କରିବାରେ ବେଦ ଉପରେ ଯେତେ ପ୍ରକାର ଚିନ୍ତା ଓ ସାଧନାର ପ୍ରଭାବ ପଡ଼ିଥିଲା, ଭଗବାନ୍ ସେ ସବୁର ବୈଦିକ ଧର୍ମରେ ପୂର୍ଣ୍ଣ ଉପଯୋଗିତା ଦେଖାଇ, ମାନବଚିନ୍ତାର ମହାସଂଶ୍ଳେଷଣ ଓ ସମନ୍ୱୟରେ ଗୀତାର ବିଶ୍ୱଧର୍ମ ପୂର୍ଣ୍ଣାଙ୍ଗ କରି ପ୍ରତିପାଦନ ଓ ପ୍ରଚାର କରିଚନ୍ତି । ଶୂନ୍ୟମୂଳ ସାଧନାର ପ୍ରଭାବରେ 'ମାୟା' ବା 'ଅଜ୍ଞାନ' ଶବ୍ଦ ପାଇଁ 'ଅବିଦ୍ୟା'ର ପ୍ରୟୋଗ ଥିଲେ ମଧ୍ୟ, ଭଗବାନ୍ ଗୀତାରେ ତାହା କୁଆପି ପ୍ରୟୋଗ କରି ନାହାନ୍ତି । ଗୀତାରେ ପୁଣି ଶୂନ୍ୟସାଧନାରୁ ଉଦ୍‌ଗତ ସାଂଖ୍ୟର ପରିଭାଷା ଯେତେ ଯେପରି ପ୍ରୟୋଗ କରାହୋଇଚି, ଉପନିଷଦ୍‌ରେ ତା ସେପରି ନୁହେ । ବୃହଦାରଣ୍ୟକ ଓ ଛାନ୍ଦୋଗ୍ୟ ଦୁଇଟି ଯାକ ଉପନିଷଦ, ଜ୍ଞାନପ୍ରଧାନ । ଶୂନ୍ୟସାଧନା ତଥା ତଦୁଦ୍‌ଗତ 'ସାଂଖ୍ୟ'ର ପ୍ରଭାବ ସେ ଦୁଇଟିରେ ସ୍ପଷ୍ଟ ହେଲେହେଁ, ସେ ଦୁଇଟିରେ ସାଂଖ୍ୟ ପରି-ଭାଷାର ନାମ ମିଳେ ନାହିଁ । ମାତ୍ର ଗୀତାରେ 'ସାଂଖ୍ୟ'କୁ 'ଯୋଗ'ରେ ମିଳାଇ ଦେଖାଇଚନ୍ତି । ତେଣୁ ଗୀତାରେ ସାଂଖ୍ୟ ପରିଭାଷାର ବ୍ୟବହାର ଯଥେଷ୍ଟ । କଠୋପ-ନିଷଦ୍‌ରେ ଅବ୍ୟକ୍ତ ମହାନ୍ ପ୍ରଭୃତି ଶବ୍ଦ ମିଳେ ସତ, ମାତ୍ର ତାହା ସାଂଖ୍ୟ ପରିଭାଷା ହେଲେ ହେଁ, ସାଂଖ୍ୟଦର୍ଶନର ପ୍ରୟୋଗ ପରି ପୁରୁଷପ୍ରକୃତିର ଦ୍ୱୈତମୂଳକ ପ୍ରୟୋଗ ନୁହେ । ଗୀତାରେ କିନ୍ତୁ ସେସବୁ ଦ୍ୱୈତମୂଳକ ପ୍ରୟୋଗ । ତଥାପି ସେଇ ଦ୍ୱୈତ

ମଧ୍ୟରେ ବେଦାନ୍ତର ଅଦ୍ୱୈତ 'ପୁରୁଷୋତ୍ତମ' ଧାରଣା ଯେପରି ସ୍ପଷ୍ଟ କରାଯାଇଛି ତାହା କେବଳ ଗୀତାରେ ପ୍ରସ୍ତୃତ ବୈଦିକ ଧର୍ମରେ ହିଁ ସଂଭବ ହୋଇଛି ।

ପୂର୍ବ ପ୍ରକରଣମାନଙ୍କରେ ଏ ସବୁର ଉପଯୋଗିତା ଓ ଉପପତ୍ତିର ଅବବୋଧ ନିମନ୍ତେ ବହୁତ ସୂଚନା ଦିଆଯାଇଛି । ଏବେ ଜଗତ୍ରେ ପରିସ୍ଥିତି ତଥା ଅନୁସନ୍ଧାନର ଦୃଗ୍ଦର୍ଶନ ଭେଦରେ ବିଶ୍ୱତତ୍ତ୍ୱର ଧାରଣା ଓ ତଜ୍ଜନିତ ସାଧନା କିପରି ପ୍ରକାଶ ପାଏ ଓ ସେଇ ସବୁ ପ୍ରକାରର ଧାରା ଭାରତରେ କି ଜାତି ଓ ବ୍ୟକ୍ତିରେ ପ୍ରଭାବ ବିସ୍ତାର କରି କି ପରିମାଣରେ କିପରି ଆତ୍ମପ୍ରକାଶ ବା ଆତ୍ମଗୋପନ କରିଛି ସେସବୁ ମୋଟାମୋଟି ବିଗ୍ଭର କରିବା ଦରକାର । ପରବର୍ତ୍ତୀ ପ୍ରକରଣମାନଙ୍କରେ ତାହା କ୍ରମେ କରାଯାଉଛି ।



## ୪ । ବିଶ୍ୱତତ୍ତ୍ୱ ଧାରଣାର ଭିତ୍ତି ଓ ପ୍ରଣାଳୀ—ବେଦତତ୍ତ୍ୱ ଓ ଗୀତାତତ୍ତ୍ୱ ।

### ତତ୍ତ୍ୱ-ଚିନ୍ତାର ଭୂମି—

ସମସ୍ତ ତତ୍ତ୍ୱ ଚିନ୍ତାପ୍ରସୂତ । ଏଇ ଚିନ୍ତା ଚେତନ ବ୍ୟକ୍ତି ବା ପୁରୁଷର ଚୈତନ୍ୟ-ବୃତ୍ତିର ପ୍ରକାଶ । ପୁଣି ଏଇ ଚିନ୍ତାରେ ଇନ୍ଦ୍ରିୟଲବ୍ଧ ଜ୍ଞାନ ହିଁ ସାଧନ । ଏଇ ଚେତନ ବସ୍ତୁ ବା ପୁରୁଷର ଅନୁଭୂତି ସର୍ବଦା ସମସ୍ତଙ୍କର ଅଛି । ମାତ୍ର ଚିନ୍ତାରେ ତାର କଳନା ନାହିଁ, ଏହା ବୁଝାଇ ଦିଆଯାଇଛି । ସେଇ ପୁରୁଷ ହେଉଛି ବ୍ୟକ୍ତିର 'ମୁଁ' । ଏତେ ନିକଟରେ ପୁଣି ଏତେ ସ୍ପଷ୍ଟପ୍ରାପ୍ତ ହେଲେ ହେଁ, 'ନେତିନେତି', 'ଏଇପରି' ସାଧନାରେ ଚିନ୍ତା ଗତି କଲେ, ସେଇ ଜ୍ଞାନ ବା 'ଏତିକି' ବୋଲି ତାକୁ କେହି ନିର୍ଦ୍ଦେଶ କରିପାରିବେ ନାହିଁ । ପୁଣି ଯେଉଁ ଜ୍ଞାନ ସାଧନାରେ ଚିନ୍ତା ଗତି କରେ ସେଇ ଜ୍ଞାନ ଏକା ଇନ୍ଦ୍ରିୟର କର୍ମ ବୋଲି ଧଇଲେ ଚଳୁ ନାହିଁ । ଏକା ଇନ୍ଦ୍ରିୟରେ ଏହା ସାଧିତ ହେଲା ପରି ଲାଗୁ ନାହିଁ । ବାହାରର ବିଶ୍ୱଜଗତ୍ ବା ଭୂତ-ଶକ୍ତି ଏଥିରେ ଲାଗିବାରୁ ଇନ୍ଦ୍ରିୟର ଜ୍ଞାନ ସମ୍ଭବ ହେଉଛି । ଏଇ ବାହାର ଜଗତ ପୁଣି ନିତ୍ୟ ବା ସ୍ଥିର ନୁହେ । ଏହା ପ୍ରତି ମୁହୂର୍ତ୍ତ ଓ ପରିସ୍ଥିତିରେ ଭିନ୍ନ ଭିନ୍ନ । ଏହା ନିତ୍ୟ ପରିଣାମରେ ଚାଲିଛି । ଏଇପରି, ଏଇ ଚେତନା ବା 'ପୁରୁଷ', ଜ୍ଞାନ ଓ ବିଶ୍ୱଜଗତ୍—ଏଇ ତିନୋଟି ତତ୍ତ୍ୱ ଚିନ୍ତାର ନିତ୍ୟ ଭୂମି । ଗୀତା ଏହାକୁ ଭିନ୍ନ ଭିନ୍ନ ଭାବରେ ଯଥାକ୍ରମେ 'ଜ୍ଞାତା', 'ଜ୍ଞାନ' ଓ 'ଜ୍ଞେୟ' ବା 'କର୍ତ୍ତା', 'କରଣ' (ସାଧନ) ଓ 'କର୍ମ', ଅଥବା, 'କର୍ତ୍ତା', 'ଜ୍ଞାନ' ଓ 'କର୍ମ'—ବୋଲି କହିଛନ୍ତି । (୧୮. ୧୮. ୧୯) ।

### ବ୍ୟକ୍ତିର ଚେତନ ବୃତ୍ତି—

ଏହି ତିନୋଟିର ପୁଣି ମୂଳ ଗୋଟିଏ । ତାହା ପୁରୁଷର ଚେତନ-ବୃତ୍ତି ବା ଜ୍ଞାତା । ଜ୍ଞାତା ନ ଥିଲେ ବାକି ଦୁଇଟି ଅଛନ୍ତି ବୋଲି କହିବାର କିଛି କାରଣ ନାହିଁ । ତେଣୁ ଏଇ ଚେତନ-ବୃତ୍ତିରୁ ସବୁଚିନ୍ତାର ଆରମ୍ଭ । ଏହାକୁ ଗୀତାରେ 'କ୍ଷେତ୍ରଜ୍ଞ' କହନ୍ତି । ପୁଣି ଏଇ କ୍ଷେତ୍ରଜ୍ଞଙ୍କର ସମସ୍ତ ଜ୍ଞାନ ଏଇ ଦେହରେ । ତେଣୁ ତାହା 'କ୍ଷେତ୍ର' (୧୩.୧) । ଏହା ଛଡ଼ା 'ଜ୍ଞେୟ' ହେଉଛି, ବିଶ୍ୱଜଗତରେ ଯାହା ନାନା ଭାବ, ନାନା ରୂପ, ନାନା ନାମରେ ପ୍ରକାଶ ପାଏ । ଗୀତାରେ ଏହାର ବର୍ଣ୍ଣନା ଦିଆଯାଇଛି, ଏହା ଅଛି ନୁହେ, ଏହା ନାହିଁ ନୁହେ, ଏହା ସର୍ବତ୍ର ଇନ୍ଦ୍ରିୟମାନ ଧରି କାମ କଲା ପରି ଜଣାଯାଏ—ଯେପରି କି, ସୂର୍ଯ୍ୟ, ଅଗ୍ନି ପ୍ରଭୃତି ମନୁଷ୍ୟ ପରି କର୍ମେନ୍ଦ୍ରିୟ ଶକ୍ତି ପ୍ରକାଶ କରନ୍ତି—ଶୀତରେ ଆତପ ଦିଅନ୍ତି, ଘର ପୋଡ଼ି ଦିଅନ୍ତି,

ଇତ୍ୟାଦ । ତେଣୁ ଏହାର ସବୁ ଇନ୍ଦ୍ରିୟ ଥିଲ ପରି ଜଣାପଡ଼େ କିନ୍ତୁ ଯଥାର୍ଥରେ ଇନ୍ଦ୍ରିୟ ନାହିଁ । ଏହା ସବୁ ପାଳନାଦି କରେ; ମାତ୍ର କାହିଁରେ ଲଗା ନୁହେ— କାହାକୁ ପାଳନ ବା ସଂହାର କରିବା ପାଇଁ କରେ ନାହିଁ । ଏଇପରି ଏଠି 'ଜ୍ଞେୟ'ର ଅନ୍ୟାନ୍ୟ ଉପାଧିମାନ ମଧ୍ୟ ନିର୍ଦ୍ଦେଶ କରାଯାଇଛି (୧୩.୧୬-୧୭) । ତର୍କ କରି ବୁଝିଲେ, ଏଇ ଜ୍ଞେୟ ପ୍ରତୀତିମାତ୍ର । ଏହାକୁ ଯେପରି ବୁଝିବ, ଏ ସେଇପରି । କ୍ଷେତ୍ରକୁ ପୁଣି ଜାଣେ ସେଇ କ୍ଷେତ୍ରଜ୍ଞ । ଏଇ କ୍ଷେତ୍ର ବା ଶରୀର ମଧ୍ୟ ଜ୍ଞେୟର ଅନ୍ତର୍ଗତ । ଜ୍ଞାନମାନଙ୍କରେ କ୍ଷେତ୍ର ତଥା ଜ୍ଞେୟର ପ୍ରକାଶ । ଦେହ ସଂପର୍କରେ ପ୍ରତୀତିଗମ୍ୟ ଚେତନା ଦେହକୁ ଜାଣୁଛି ଓ ଏଇ ଦେହକୁ ଜାଣିବାରେ ହିଁ ଇନ୍ଦ୍ରିୟ-ଲବ୍ଧ ବିଶ୍ୱ-ଜଗତକୁ ଜାଣୁଛି । ତେଣୁ ଏଇ ପ୍ରତୀତିଗମ୍ୟ ଚେତନା ହିଁ ମୂଳ । ଏହା ଛଡ଼ା ଏ ବିଶ୍ୱ ଅଛି ବୋଲି ବୁଝିବାର ବା ବୁଝାଇବାର ଅନ୍ୟ ସାଧନା ନାହିଁ ।

## ଜ୍ଞାନ ଓ ଜ୍ଞେୟ—

ବାହାର ଜଗତ ସଙ୍ଗେ ସଂଗ୍ରାମ ସ୍ପଷ୍ଟଭାବରେ ବ୍ୟକ୍ତିର ଚେତନା ଓ ବ୍ୟକ୍ତି-ନିଷ୍ଠାର ସୂଚକ ନ ହେଲେ, ଲୋକର ଚିନ୍ତା ସୂଚନା ଏଇ ପ୍ରତୀତିକୁ ଖାତିର କରିବାର କଣ ଅଛି ? ପୁଣି ଖାଲି ବସି ନିଜୁତା ଚିନ୍ତା ଲଗାଇ ପ୍ରତୀତିର ବିଶ୍ଳେଷଣ କଲେ, ପ୍ରତୀତିରେ କି ସ୍ଥିରତା ବା ଅଛି ? ପରିସ୍ଥିତିରେ ପ୍ରତୀତି ଭିନ୍ନ । ପୁଣି ଏକ ବ୍ୟକ୍ତିର ପ୍ରତୀତି ମଧ୍ୟ ସର୍ବଦା ବିଷୟର ନିର୍ଦ୍ଦେଶ ବା ବର୍ଣ୍ଣନାଦିରେ ସର୍ବଦା ପ୍ରମାଣ ନୁହେ । ଶୀତରେ ଅରୁଥିଲେ ଯେଉଁ ଖରା ସୁଖକର, ଘୋଡ଼ି ହୋଇଥିଲେ ସେଇ ଖରା ଦୁଃସହ । ଦୂରରୁ ଯେଉଁ ପାହାଡ଼ ସୁନ୍ଦର, ନିକଟରେ ସେଇ ପୁଣି ବିସଦୃଶ, କୁତ୍ସିତ ଓ ଭୟଙ୍କର । ଏକ ବସ୍ତୁକୁ ପୁଣି ଦୁଇଜଣ ଦୁଇ ପ୍ରକାର ଦେଖି ପାରନ୍ତି । ହଠାତ୍ ଯାହା ଦୁର୍ଗନ୍ଧମୟ, ଅଭ୍ୟାସରେ ପୁଣି ତାହା ଦୁଃସହ ନୁହେ । ଦୂରରୁ ସେବନୀୟ ଗନ୍ଧ ବାରି ପାଖକୁ ଗଲେ, ତାହା ପୁଣି ଉତ୍କଟ । ଏଇପରି ପ୍ରତୀତିର ମାତ୍ରାରେ କି ମାନଦଣ୍ଡ ଅଛି ? ଏଇ ଭାବରେ ଦେଖିଲେ ପ୍ରତୀତି ନିଜର ଏକ ଜ୍ଞାନ । ନିଜର ଚେତନା ହିଁ ତାର ମାପକାଠି । ଏଥିରେ ବାହ୍ୟ ଜଗତ୍‌ର ଅସ୍ତିତ୍ୱ ନାହିଁ 'କ୍ଷେତ୍ରଜ୍ଞ' ନ ଥିଲେ କ୍ଷେତ୍ର ବା ଅନ୍ୟ ଜ୍ଞାନ କିଛି ନାହିଁ । ଜ୍ଞାନର ବସ୍ତୁତା ସ୍ୱୀକାର ନ କଲେ 'ଜ୍ଞେୟ'ର ଅସ୍ତିତ୍ୱ ନାହିଁ । ତେବେ ଜଗତ୍ ତଥା କ୍ଷେତ୍ର କଣ ? କ୍ଷେତ୍ରଜ୍ଞ ଥିବା ଯାଏ, ଏହା ତାହାର ଜ୍ଞାନମାତ୍ର । ବାହ୍ୟ ଜଗତ୍ ବୋଲି କିଛି ଅଛି କି ନାହିଁ ସେ ସ୍ୱତନ୍ତ୍ର କଥା । ହୁଏତ ବାହ୍ୟ ଜଗତ୍ ନାହିଁ । ଅଛି କିନ୍ତୁ, ଜ୍ଞାନ । ଏଇ ଜ୍ଞାନହିଁ ସର୍ବ ଜଗତ୍ । ଯାହା ଯାହାର ଜ୍ଞାନ, ତାହାହିଁ ପୁଣି ତାହାର ଜଗତ୍ । 'ଜ୍ଞାନ'ହିଁ ଜ୍ଞେୟ । ଏଇଠାରୁ ଚିନ୍ତାର ସ୍ପଷ୍ଟ ଦୁଇଟି ଧାରା ।

## ବିଜ୍ଞାନବାଦ—

ଗୋଟିଏ ହେଉଛି, ସବୁ ଯେବେ କ୍ଷଣିକ ବା ନିତ୍ୟ ପରିବର୍ତ୍ତନଶୀଳ ପ୍ରତୀତି ବା ଜ୍ଞାନ, ତେବେ ଜ୍ଞାତା ମଧ୍ୟ ଏକ ପ୍ରତୀତ—ଏହା ଏକ ଜ୍ଞାନ । ଜ୍ଞାନ-ରାଜ୍ୟରେ

ଏଇ ପ୍ରତୀତ ହୁଏ । ଏହା ଜ୍ଞାନର ଅନ୍ତର୍ଗତ । ଅତଏବ ଜ୍ଞାନ ଛଡ଼ା ଆଉ କିଛି ନାହିଁ । 'ମୁଁ' ବୋଲି ଯେଉଁ ପ୍ରତୀତ ହେଉଚି, ତାହା ଏକ ପ୍ରକାର ଜ୍ଞାନ । ସେ ଜ୍ଞାନର କଳନା ନାହିଁ ସତ, ମାତ୍ର ଦେଶକାଳର କି କଳନା ଅଛି ? ସବୁ ଜ୍ଞାନରେ ମୁଁ ଯେପରି ଅଛି, ଦେଶ କାଳ ମଧ୍ୟ ସେଇପରି ମିଶିରହିଚି । ସେଇ ଦେଶକାଳ କେଉଁଠାରେ ? କେଉଁ ? କିପରି ? କି ସମ୍ବନ୍ଧରେ ବା ଜ୍ଞାନରେ ଜଡ଼ିତ ? ତେବେ ଚେତନ ପୁରୁଷ ବା ମୁଁ ମଧ୍ୟ ସେଇପରି ଏକ ଜ୍ଞାନ । ସବୁ ଜ୍ଞାନ ପରି ଏ ମଧ୍ୟ କ୍ଷଣିକ ଓ ପରିବର୍ତ୍ତନଶୀଳ । ଜ୍ଞାନ ଛଡ଼ା ଆଉ କିଛି ନାହିଁ । ଶେଷରେ ପୁଣି ଏଇ ଜ୍ଞାନ ପଛରେ ବସ୍ତୁତତ୍ତ୍ୱ ବା କଅଣ ଅଛି ? ଜ୍ଞାନ ନ ଥିଲେ ସବୁ ଶୂନ୍ୟ । ଏଇ ଶୂନ୍ୟତା ହିଁ ଜଗତର ମୂଳ ଓ ବ୍ୟକ୍ତିତ୍ୱର ଶେଷ ବା 'ନିର୍ବାଣ' । ଏଇ ପ୍ରତୀତଲଭ୍ୟ ଜ୍ଞାନକୁ 'ବିଜ୍ଞାନ' ମଧ୍ୟ କହନ୍ତି । ଗୀତା ସପ୍ତମ ଅଧ୍ୟାୟରେ ଏଇ ବିଜ୍ଞାନର ବସ୍ତୁତତ୍ତ୍ୱ ଭଗବାନ୍ ବୁଝାଇଛନ୍ତି । ମାତ୍ର ଯେଉଁମାନେ ସର୍ବ ପ୍ରତୀତର ମୂଳ ଶୂନ୍ୟ ବୋଲି କହନ୍ତି ଓ ସେଇ ଶୂନ୍ୟରେ ବ୍ୟକ୍ତିର 'ନିର୍ବାଣ' ସାଧନା ବା କାମନା କରନ୍ତି, ତାଙ୍କୁ ବିଜ୍ଞାନବାଦୀ ବା ଜ୍ଞାନବାଦୀ କହନ୍ତି । ଏହା ଏ ଦେଶର ପ୍ରାଚୀନ ବୌଦ୍ଧବାଦ । ପରବର୍ତ୍ତୀ କାଳରେ ଯୋଗାଚାର ବୌଦ୍ଧମାନେ ଏଇ ବିଜ୍ଞାନ-ବାଦକୁ ପ୍ରମାଣ ବୋଲି ମାନନ୍ତି । ଅନ୍ୟ ବୌଦ୍ଧମାନେ ଏଇ ମତକୁ ଟିକିଏ ଭିନ୍ନ କରି କହନ୍ତି । ସେମାନେ ଶୂନ୍ୟବାଦୀ, କ୍ଷଣିକବାଦୀ ଓ ଦୁଃଖବାଦୀ । ଏମାନେ ସମସ୍ତେ ଅନାତ୍ମବାଦୀ ଓ ନିରୀଶ୍ୱର । ଏମାନଙ୍କ ମତରେ ଏଇ ଜ୍ଞାନହିଁ କର୍ମ ପରଂପରା ଓ ସମସ୍ତ ଜ୍ଞାନ କର୍ମଜନିତ । ଏଇ କର୍ମରେହିଁ ସବୁ କାମନା, ଦୋଷ ଓ ଦୁଃଖ । ସାଧନାରେ କର୍ମର ଅତ୍ୟନ୍ତ ନିବୃତ୍ତି ହେଲେ ଜ୍ଞାନ ଶୂନ୍ୟ ହେବ ଓ ଆଉ ଦେହଧାରଣ ହେବ ନାହିଁ । କାମନା ଓ କର୍ମ ଲାଗି ଥିବାଯାଏ, ଏଇ କର୍ମର ପ୍ରବାହରେ ଦେହଧାରଣ ବା ଜନ୍ମଜନ୍ମାନ୍ତର ପରଂପରା ଅଥବା ସଂସାର ଚାଲିଥିବ । କର୍ମ ଚାଲିଗଲେ, ଜ୍ଞାନର ଅବସାନ ଓ ବ୍ୟକ୍ତିର ନିର୍ବାଣ ।

### ମାୟାବାଦ—

ଅନ୍ୟ ପ୍ରକାରେ ଏଇ ତତ୍ତ୍ୱର ଉପପତ୍ତି ହେଉଚି, ଜ୍ଞାନମାନେ ଜ୍ଞାତା ବା ଆତ୍ମାର ଏକ ପ୍ରକାର ଇନ୍ଦ୍ରିୟମୂଳକ ବିକାଶ । ଆତ୍ମା ଏ ସବୁରେ ଥିଲା ପରି ଲାଗିଲେହେଁ, ସେ କାହିଁରେ ଲାଗି ନୁହେ । ସେ କେଉଁଠାରେ କେତେ କିପରି ଅଛି, ତାହା ଜାଣିହେବ ନାହିଁ କି କହିହେବ ନାହିଁ । ମୁଁ ବୋଲି ଭିତରେ ଆତ୍ମାର ଅନୁଭବ ଥିଲା ପରି ଲାଗୁଚି, ସେଇଥିରୁ ସମସ୍ତ ଜ୍ଞାନ ଇନ୍ଦ୍ରିୟମାନଙ୍କର ପ୍ରେରଣା ଓ କର୍ମ-ପରଂପରା । ତଥାପି ଆତ୍ମା ଇନ୍ଦ୍ରିୟର ପ୍ରତୀତରେ ନାହିଁ । ଏହା ଇନ୍ଦ୍ରିୟପ୍ରତୀତ ବା ଜ୍ଞାନ (ଜ୍ଞେୟ)ରୁ 'ପ୍ରକାଶ' ବା ଆଲୋକରୁ 'ତମ' ବା ଅନ୍ଧକାର ପରି ଭିନ୍ନ । ଆତ୍ମା କି କାହିଁ ବା କେଉଁ ଓ କିପରି ପ୍ରେରଣା ଦିଏ, କିପରି ବା ଜ୍ଞେୟର ସଂପର୍କରେ ଆସେ, ଏହା କେହି କହିପାରିବେ ନାହିଁ । ଆତ୍ମାର ଉତ୍ପତ୍ତି ଇତ୍ୟାଦି ବା ଦେଶକାଳାଦିରେ ପରିମାଣ ନାହିଁ । ଅତଏବ ସେଇ ସ୍ରଷ୍ଟା ଓ

ନିତ୍ୟର ପ୍ରତୀତିଗମ୍ୟ ଆତ୍ମାହିଁ ସତ୍ୟ । ଅନ୍ୟ ସବୁ ବହିର୍ଜଗତର ପ୍ରତୀତ ତାର ଅଳ୍ପପରି ଜଣା ପଡ଼ିଲେ ହେଁ, ଆତ୍ମା ସେଥିରେ ଲଗା ନୁହେଁ, କିଂବା ସେ ପ୍ରତୀତ ପରି ଅାତ୍ମାର ପ୍ରତୀତ ନୁହେ । ବରଂ ସେ ପ୍ରତୀତ ଆତ୍ମପ୍ରତୀତିର ସମ୍ପୂର୍ଣ୍ଣ ବିରୋଧୀ । ସେ ସବୁଥିରେ ପୁଣି ଆତ୍ମାର ବସ୍ତୁତତ୍ତ୍ୱ ଅନ୍ତର୍ନିହିତ ଥିଲା ପରି ଜଣା ପଡ଼ିଲେ ହେଁ, ଯଥାର୍ଥ ଆତ୍ମାର ବସ୍ତୁତତ୍ତ୍ୱ ସେ ସବୁଥିରେ କାହିଁରେ ନାହିଁ । ଆତ୍ମା ସେ ସବୁଥିରୁ ଅଲଗା—ସେ ଅଲିପ୍ତ । ଏ ସମସ୍ତ ଜ୍ଞାନ ଆତ୍ମାର ଏକ ପ୍ରହେଳିକାମୟ ବିକାଶ । ଏ ସବୁ ଆତ୍ମା ପରି ଲାଗୁଚି, ମାତ୍ର ଏ ସବୁ ଆତ୍ମା ନୁହେ । ପୁଣି ଆତ୍ମା ବିନା ଏ ସବୁ କିଛି ନୁହେଁ; ଏ ସବୁ ନାହିଁ । ଏ ସବୁ ଜ୍ଞାନ ହିଁ ଅଜ୍ଞାନ; ଏ ସବୁ ମାୟା । ପରବର୍ତ୍ତୀ କାଳରେ ଶଂକରାଚାର୍ଯ୍ୟ ବୌଦ୍ଧର ଶୂନ୍ୟବାଦ ଓ ପରେ ଲୁହାଯାଉଥିବା ସାଂଖ୍ୟର ପୁରୁଷ (ଆତ୍ମା) ଓ ପ୍ରକୃତି ( ଜ୍ଞେୟ )ର ଦ୍ୱୈତବାଦ ଦୁଇଟିର ସମାଧାନରେ ଏଇପରି ତତ୍ତ୍ୱର ପ୍ରଚାର କରିଥିଲେ । ସେ କେବଳ ଜ୍ଞାନ ପଛରେ ଏକ ଜ୍ଞେୟର ଆତ୍ମା ପରି ଏକ ସ୍ୱତନ୍ତ୍ର ସତ୍ତ୍ୱକୁ ଉଠି ତାକୁ ବିଶ୍ୱାତ୍ମା ବା ପରମାତ୍ମା କହି, ବ୍ୟକ୍ତିର ଆତ୍ମା ଯାହା ସେଉଟି ଠିକ୍ ସେଇଆ ବୋଲି ବେଦରେ ପ୍ରଚାରିତ ବାହ୍ୟ ଜଗତର ଜ୍ଞେୟତତ୍ତ୍ୱ ସଙ୍ଗେ ସମାଧାନ କରିବାର ପ୍ରୟାସ କରିଥିଲେ ମାତ୍ର । ଫଳ କଥା, ସେ କହିଲେ, ଜ୍ଞାତହିଁ ହେଉଚି ଜ୍ଞେୟର ତତ୍ତ୍ୱ ବା ମୂଳପୀଠ । ଚେତନ ବ୍ୟକ୍ତି ହିଁ ଏକା ବିଶ୍ୱର ପୀଠ । ପ୍ରକାଶ ମାତ୍ରେ ମାୟା ଓ ଅଜ୍ଞାନ । ଜ୍ଞାନ ମାତ୍ରେ ଶୂନ୍ୟର ଏକ ବସ୍ତ୍ୱାଭାସ ମାତ୍ର । ସେ ମଧ୍ୟ ଯେଉଁ କର୍ମତ୍ୟାଗ ଯୋଗର ସାଧନା ପ୍ରଚାର କଲେ, ତା ମଧ୍ୟ ବୌଦ୍ଧ ସାଧନାରୁ ଭିନ୍ନ ନୁହେ; ଏଣୁ ନିରାଟ ବସ୍ତୁତତ୍ତ୍ୱବାଦୀମାନେ ଶଙ୍କରାଚାର୍ଯ୍ୟଙ୍କୁ 'ପ୍ରଚ୍ଛନ୍ନ ବୌଦ୍ଧ' ବୋଲି କହନ୍ତି । ବାସ୍ତବିକ ଏଇ ପ୍ରକାର 'ମାୟାବାଦ'ରେ ଚିନ୍ତା କରି ଆଉ ଟିକିଏ ଦୂରକୁ ଗଲେ, ସେଇ ଯୁକ୍ତିଧାରାର ପରିଣାମରେ ଦେଖାଯିବ, ଆତ୍ମାକୁ ଯେତେ ବସ୍ତୁତ୍ୱ ଦିଆଯାଉ ନା କାହିଁକି, ଏହା ଅଜ୍ଞେୟ—ପ୍ରତୀତିର ଜ୍ଞାନରେ ଏହା ଅଛି; କିଂତୁ, ଏହା ଜ୍ଞେୟ ବା ଜ୍ଞାନଗମ୍ୟ ନୁହେ । ଏହା ଏକ ଉପଲବ୍ଧି ବା ପ୍ରତୀତିମାତ୍ର ହେବାରୁ, ଏହା ମଧ୍ୟ ଏକ ଜ୍ଞାନ । ବରଂ ଅନ୍ୟ ଜ୍ଞାନଠାରୁ ଏହା ଅସ୍ପଷ୍ଟତର । ଏହା ମଧ୍ୟ ଏକ ଅଜ୍ଞାନ—ବରଂ ଜ୍ଞାନର ଭ୍ରାନ୍ତି । ଅନ୍ୟ ସବୁ ଅଜ୍ଞାନ ପରି ଏ ଅଜ୍ଞାନ ମଧ୍ୟ ତୁଟିଗଲେ—ଏ ଭ୍ରାନ୍ତି ବା ପ୍ରହେଳିକା ଘୁଞ୍ଚିଗଲେ—ଆଉ ବସ୍ତୁ ବୋଲି କିଛି ନାହିଁ, ସବୁ ଶୂନ୍ୟ । ତେଣୁ ସବୁ ସାଧନାର ଚରମ ଲକ୍ଷ୍ୟ 'ନିର୍ବାଣ' ।

## 'ଜ୍ଞେୟ'ର ପ୍ରାଧାନ୍ୟ ଓ ଶଂକର—

ମାତ୍ର ଏଠାରେ ଶଙ୍କର ପ୍ରଚାରିତ ତତ୍ତ୍ୱକୁ ଶୂନ୍ୟ-ବାଦର ବିକାଶ ବୋଲି ବୁଝାଇ ଦେବାରେ କେହି ଯେପରି ନ ବୁଝନ୍ତି, ଶଂକର ଟିକିଏ ହେଲେ ଶୂନ୍ୟବାଦୀ ଥିଲେ । ଶ୍ରୁତି ବା ବେଦର ଭିତ୍ତିରେ ଶଂକର ନିଜର ତତ୍ତ୍ୱ ପ୍ରକାଶ କରିଥିଲେ । ବେଦରେ ଶୂନ୍ୟବାଦର ଧକ୍କା ଲାଗିଥିଲା ସତ, ମାତ୍ର ବେଦର ଯଥାର୍ଥ ବିଶେଷତ୍ୱ ଓ ସ୍ୱାତନ୍ତ୍ର୍ୟ

ହେଉଛି, ଏଇ ଶୂନ୍ୟବାଦର ସର୍ବଦା ପ୍ରତିବାଦ । ଶୂନ୍ୟର ବଳିଷ୍ଠ ଯୁକ୍ତିର ଆଘାତ ସହି ନାନାଭାବରେ ଏଇ ଶୂନ୍ୟକୁ ପୂର୍ଣ୍ଣ କରିବା ହିଁ ବେଦତତ୍ତ୍ୱ । କାରଣ ବହିର୍ଜଗତର ସଂଘର୍ଷଜନିତ ଦେବଭାବରେ ବେଦର ପ୍ରଥମ ଆରମ୍ଭ । ବୈଦିକ ମାନବ ପାଖେ ବହିର୍ଜଗତ୍ ପୂର୍ଣ୍ଣ—ଶୂନ୍ୟ ନୁହେଁ । ବରଂ ତା ଦୃଷ୍ଟି ନିଜ ଭିତରକୁ ଫେରିବାର ଅବକାଶ ପ୍ରଥମେ ସେତେ ସ୍ପଷ୍ଟ ନୁହେଁ । ସେଥିପାଇଁ ଶଙ୍କର ଶୂନ୍ୟର ପ୍ରତିବାଦ କରି ବରଂ 'ଜ୍ଞେୟ' ତତ୍ତ୍ୱକୁ ପ୍ରାଧାନ୍ୟ ଦେଇ 'ଜ୍ଞ' (କ୍ଷେତ୍ରଜ୍ଞ)-ତତ୍ତ୍ୱକୁ ତାରି ପ୍ରକାଶ ମାତ୍ର ବୋଲି ସ୍ପଷ୍ଟ ବହିର୍ଜଗତରୁ ଭିତର ଆଡ଼କୁ ଆସିଚନ୍ତି । ଏବେ ଏଇ ଜ୍ଞେୟ ଭିତ୍ତିରେ ତତ୍ତ୍ୱବସ୍ତୁର କଥା କୁହାଯାଉଛି ।

## ପ୍ରତୀତି ସତ୍ୟମୂଳକ—

ଏ ଗଲା 'ଜ୍ଞ' ଓ 'ଜ୍ଞାନ' (ଜ୍ଞେୟ)ର ଗୋଟିଏ ପ୍ରକାର ତତ୍ତ୍ୱବସ୍ତୁର । ଅନ୍ୟ ପ୍ରକାରଟି ହେଉଛି ଏହାର ଏକପ୍ରକାର ପ୍ରତିକ୍ରିୟା । ଏଥିରେ କୌଣସିଠାରେ ଶୂନ୍ୟ କିଛି ନାହିଁ, ସବୁ ସତ୍ୟ ଆତ୍ମା—ସତ୍ୟ ଜଗତ୍ ସତ୍ୟ । ଯାହା ନାହିଁ ସେଥିରୁ ସତ୍ୟ ଆସିବ କାହୁଁ ? ବୈଦିକ ଋଷି ଏହି ପ୍ରତିକ୍ରିୟାରେ ବ୍ୟାକୁଳ ହୋଇ କହିଛନ୍ତି—କଥମସତଃ ସଜ୍ଜାୟେତ (ଛାନ୍ଦୋଗ୍ୟ ଉପ: ୬.୨.୨) ଯାହା ନାହିଁ, ସେଥିରୁ 'ଅଛି' ଆସିବ କାହୁଁ ? ଗୀତା ମଧ୍ୟ ଏଇ ଚିନ୍ତାକୁ ସ୍ପଷ୍ଟ କରି କହିଚନ୍ତି—"ନାସତୋ ବିଦ୍ୟତେ ଭାବଃ (୨.୧୬) । ଏହାକୁ ହିଁ ଶାସ୍ତ୍ରରେ 'ସତ୍‌କାର୍ଯ୍ୟବାଦ' କହନ୍ତି । ଏହାର ଅର୍ଥ, ଏବେ ଆମେ ଯାହାର ଅସ୍ତିତ୍ୱ ଜାଣୁଚୁ, ତାହା କୌଣସି ରୂପ ବା ଅବସ୍ଥାର ନିଷ୍ପତ୍ତି ମୂଳରେ ଥିଲା । ଯେ କୌଣସି କାର୍ଯ୍ୟ ଧର, ତାହାର ବର୍ତ୍ତମାନ ଦ୍ରବ୍ୟାଂଶ ଓ ଗୁଣ କାରଣରେ କୌଣସି ନା କୌଣସି ଆକାରରେ ଥିବାର କଥା ଏହା ସାଂଖ୍ୟଦର୍ଶନର ସିଦ୍ଧାନ୍ତ । ମାତ୍ର ଚିନ୍ତାଗତିରେ ଏ ସିଦ୍ଧାନ୍ତର ହେତୁ କେଉଁଠାରେ ? ଆତ୍ମା ଶୂନ୍ୟ ହେବା ପ୍ରତୀତିର ଏକାନ୍ତ ବିରୋଧୀ । ଅତ୍ମା ହିଁ ସବୁ । ମାନବର ସବୁ ଅନୁଭବ ମାତ୍ରେ ଶୂନ୍ୟରୁ ବାହାରୁଚି । କିଛି ନାହିଁରୁ ସବୁ ହେଉଚି, ଏହିଭଳି ଯୁକ୍ତି ମାନବଚିନ୍ତାକୁ କଦାପି ଆପ୍ୟାୟିତ କରି ନ ପାରେ । କାହାର ଆଜ୍ଞାପରି ଏହା ମାନିଲେ ବି ଏଥିରେ କର୍ମର ପରିସ୍ଥିତି ଠିକ୍ ରହିବାର ନୁହେ । ଏହା ଜଣା-ପଡ଼ୁଚି । ମାତ୍ର ବାହାରର ଜ୍ଞାନ ଶୂନ୍ୟ ହେଲେ, ସେଇ ତୁଳନାରେ ଆତ୍ମପ୍ରତୀତି ଶୂନ୍ୟ ବୋଲି ଯୁକ୍ତି କରାଯାଇପାରେ । ମାତ୍ର ବାହାର ଜଗତ୍ କି ଶୂନ୍ୟ ? ଏସବୁ କଣ ଖାଲି 'କ୍ଷେତ୍ରଜ୍ଞ'ର ଇନ୍ଦ୍ରିୟରେ 'କିଛିନାହିଁ'ରୁ ତିଆରି ହେଉଚି ? ଯେଉଁ ବହିର୍ଜଗତ ପ୍ରତି ମୁହୂର୍ତ୍ତରେ ଆତ୍ମାରେ ଧକ୍‌କା ଦେବାରୁ ଜ୍ଞାନ ସମ୍ଭବ ହେଉଚି, ଯେଉଁ ବହିର୍ଜଗତ ସଙ୍ଗେ ନିତ୍ୟ ସଂଘର୍ଷ ଓ ସଂଗ୍ରାମ ହେତୁରୁ ଅବସ୍ଥିତ ରହିଚି, ତାହା ଯେ ଶୂନ୍ୟ, ଏହା ବିଚାରିବା ସହଜ ହୋଇପାରେ; ମାତ୍ର ବୁଝିବା ସହଜ ନୁହେ । ପୁଣି ଯଥାର୍ଥରେ ମାନବ ଯେତେବେଳେ ଆତ୍ମବସ୍ତୁ ଚିନ୍ତା କରିବାକୁ ହୁଏତ ଯାଇ ନଥିଲା, ଯେତେବେଳେ

ଶିଶୁରୂପରେ ଭୂମିଷ୍ଠ ହୋଇଥିଲି, ସେତେବେଳେ ଖର୍‌ବର୍ଷା ଭୂମି ସମସ୍ତେ କଣ ତା ଇନ୍ଦ୍ରିୟ ମାନର୍ କେବଳ ଜ୍ଞାନର ବିକାଶ ? ପୁଣି ପରିସ୍ଥିତି ଭେଦରେ ମାନବ ଜୀବନ ଚଳାଇବାର ପ୍ରତ୍ୟେକ କାର୍ଯ୍ୟରେ ବହିର୍ଜଗତ ସଙ୍ଗେ ଘୋର ସଂଘର୍ଷରେ ରହି, ମେଘ, ବଜ୍ର, ପର୍ବତ, ନଦୀ, ସମୁଦ୍ର, ଆକାଶ, ସୂର୍ଯ୍ୟ,ଚନ୍ଦ୍ର, ଅଗ୍ନି, ପୃଥିବୀ, ଉଷା, ତାରି ଅନ୍ଧକାର ପ୍ରଭୃତି ସର୍ବସ ଜୀବନୋପାୟରେ ବାଧା ଓ ଉପକାର ପାଇ, ସେ ସବୁଥିରେ ନିଜର ପରି ପ୍ରଚ୍ଛନ୍ନ ପୁରୁଷର ଶକ୍ତି ପର୍ଯ୍ୟନ୍ତ ପ୍ରତୀତିରେ ଅଣି, ସେଇ ସବୁର ପୂଜା କରୁଥିଲି, ଯେଉଁ ଙ୍କରେ ଅଭିଭୂତ ହୋଇ ସେ କହିଥିଲି—"ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" (ଋଗ୍, ୧. ୧୬୪. ୪୬) ପୁଣି ସେଇ ପ୍ରତୀତିରେ ବିରାଟ ବିଶ୍ୱପୁରୁଷ ଯଜ୍ଞର ସତ୍ୟ କଳ୍ପନା କରିଥିଲି (ଋଗ୍, ୧୦. ୧୨୧), ସେ ସବୁ କଣ ଆମ୍ଭର ଖାଲି ଭ୍ରାନ୍ତି ? ଏହାକୁ ଭ୍ରାନ୍ତି, ମାୟା, ଅଜ୍ଞାନ, ଅବିଦ୍ୟା ଯେ ନାମ ଦିଆଯାଉ ନା କାହିଁକି, ସେ ସତ୍ୟ କାରଣ, ସେଇ ସତ୍ୟର ବିକାଶ ଯେ ଜୀବନ—ସେଇଥିରୁ ଯେ ସମସ୍ତ ପ୍ରତୀତି ଓ ଅନୁଭୂତି। ଆଜି ତାକୁ ମିଥ୍ୟା ବୋଲି କହି ଆଖି ବୁଜି ବସିଗଲେ, କାଲି ବା ପର ମୁହୂର୍ତ୍ତିରେ ହିଁ ତାର ସଙ୍ଗେ ସଂଗ୍ରାମ ଓ ତାର ସଙ୍ଗେ ସାଧନା। ସେ ମିଥ୍ୟା ହେବ କିପରି ?

## ସାଂଖ୍ୟତତ୍ତ୍ୱ—

ଅତଏବ ମାନବ ଚିନ୍ତାର ଏଇ ଆଘାତ ପ୍ରତିଘାତ ଓ କ୍ରିୟା ପ୍ରତିକ୍ରିୟାରେ ନିଜର ସମସ୍ତ କ୍ରିୟାବଳି ମଧ୍ୟରେ ଆତ୍ମପୁରୁଷର ଐକାନ୍ତିକ ପ୍ରେରଣା ସ୍ପଷ୍ଟ ବିଗ୍ରହରେ ଅନୁଭବ କରିବା ସଙ୍ଗେ ସଙ୍ଗେ, ଏଇ ସବୁ ବିଶ୍ୱଶକ୍ତିରେ ସେଇପରି ଏକ ଦିବ୍ୟ ଥିବାର ବୁଝିଲି। ଏହାହିଁ ବେଦରେ ସାଂଖ୍ୟତତ୍ତ୍ୱ ( ୧.୩୯; ୫. ୪, ୫; ୧. ୧୩)। ସାଂଖ୍ୟ ବୋଇଲେ 'ଜ୍ଞାନ' (୨.୩୯ ଟୀକା ଦେଖ)। ସାଧାରଣ ଅର୍ଥରେ ବେଦାନ୍ତର ଜ୍ଞାନକୁ ସାଂଖ୍ୟ କହନ୍ତି। ମାତ୍ର ପ୍ରଥମେ ଏଇ ଜ୍ଞାନକୁ କପିଳ ବିଧିବଦ୍ଧ ଭାବରେ ଏକ ବିନିଶ୍ଚିତ ଓ ହେତୁମତ୍ ପ୍ରବନ୍ଧରେ ପ୍ରକାଶ କରିଥିଲେ। ତୁଏତ ଜ୍ଞାନର ସାଂଖ୍ୟ ନାମଟି ସେଇଠାରୁ ବିଶେଷରେ ପ୍ରଚଳିତ ହେଲା। କାରଣ, କପିଳ ଏହି ଜ୍ଞାନର ବ୍ୟାଖ୍ୟା କରିବାରେ ତତ୍ତ୍ୱଗୁଡ଼ିକର ୨୫ଟି ସଂଖ୍ୟା କରି ଗଣିଥିଲେ। କପିଳଙ୍କ ଜ୍ଞାନଶାସ୍ତ୍ର ପରେ ହେଲି, ସାଂଖ୍ୟ ଓ ତହୁଁ ଅନ୍ୟ ଭାବରେ ଜ୍ଞାନତତ୍ତ୍ୱର ଯେ ଆଲୋଚନା ହେଲା, ତାହାର ନାମ ହେଲା, ବେଦାନ୍ତ। ଏ ଦୁଇଟିରେ ଶୂନ୍ୟ ଗୁଡ଼ି ପୂର୍ଣ୍ଣରେ ଜଗତର ବ୍ୟାଖ୍ୟା ହେଲା।

## ପୁରୁଷ ଓ ପ୍ରକୃତିର ଦ୍ୱୈତ—

ମୂଳରୁ ଜ୍ଞାତା ଓ ଜ୍ଞାନ (ଜ୍ଞେୟ) ଏଇ ଦୁଇଟିକୁ ଧରି ଦ୍ୱୈତ ବସ୍ତୁମୂଳକ ଚିନ୍ତାର ବିକାଶ ହେଲା। ଏଥିରେ ଜ୍ଞାନ ଶୂନ୍ୟ ନୁହେ। ମାତ୍ର ପ୍ରତ୍ୟେକର ପ୍ରତୀତିରେ ତାହା ଭିନ୍ନ ଭିନ୍ନ। ଏକ ବସ୍ତୁର ବିଭିନ୍ନ ରୂପ ବା ପ୍ରକାଶ। ପୁଣି ପ୍ରତି ପୁରୁଷରେ

ପ୍ରତ୍ତାଡ ଭିନ୍ନ ହେବାର କାରଣ ଧରି ଯେତେ ଚେତନ ବ୍ୟକ୍ତି ତେତେ ପୁରୁଷ । ଏହାହିଁ ସାଂଖ୍ୟର ପ୍ରକୃତି ପୁରୁଷରେ ନିରୂପିତ ତତ୍ତ୍ୱବାଦ । ସମସ୍ତ ଜ୍ଞାନର ବସ୍ତୁ ହେଉଛି, ଏକ ଅଖଣ୍ଡ ପ୍ରକୃତିର ସ୍ଥୂଳ ବିକାଶ । ପୁଣି 'ଜ୍ଞ' ହେଉଛି ପୁରୁଷ । ପୁରୁଷ ଅସଂଖ୍ୟ ।

## ପୁରୁଷ ଚେତନ—ପ୍ରକୃତି ଜଡ଼—

ଏଇ ପୁରୁଷ ପୁଣି ଚେତନ । ଚେତନ ବୃତ୍ତି ଓ ତହିଁରେ ଯେଉଁ ଜ୍ଞାନ ହୁଏ— ଏ ଦୁଇଟି ପରସ୍ପରର ଏକପ୍ରକାର ବିରୋଧୀ । ଚେତନା ହେଉଛି 'ମୁଁ' ବା ଆତ୍ମା । ସେଇ ପୁରୁଷ । ଜ୍ଞାନରେ ସେ ଜାଣି ହୁଏ ନାହିଁ—ସେ ଜ୍ଞାନ ସଙ୍ଗେ କେବେ ସମାନ ହୋଇପାରେ ନା । ତା ଛଡ଼ା ପ୍ରତ୍ୟକ୍ଷଗମ୍ୟ ଜଡ଼ ଜଗତ୍ । ମୁଁ-ରେ ଜଡ଼ ଜଗତ୍ର ପ୍ରତିଭାତ । କିନ୍ତୁ 'ମୁଁ', କାହିଁ ? 'ମୁଁ' ଯେ କାହିଁରେ ନାହିଁ, ପୁଣି ସବୁଠି ଥିଲାପରି ଲାଗୁଛି । ତେଣୁ ଚେତନ ପୁରୁଷର କାହିଁରେ କିଛି ସମ୍ପର୍କ ନାହିଁ—ତାର କ୍ରିୟା ନାହିଁ । ଜ୍ଞାନ ମଧ୍ୟ ତାର କ୍ରିୟା ନୁହେ । ପ୍ରକୃତି ନ ଥିଲେ ପୁରୁଷର ଜ୍ଞାନ କ୍ରିୟା ସମ୍ଭବ ନୁହେ, ଏହା ସ୍ପଷ୍ଟ । ପୁଣି ଅନ୍ୟ ଦିଗରେ ପ୍ରକୃତି ଜଡ଼ । ସମସ୍ତ କ୍ରିୟା ତାହାର—ଜ୍ଞାନ ମଧ୍ୟ ତାହାର କ୍ରିୟା । ସେ ନିଜ କ୍ରିୟାରେ, ନାଶ୍ୱ ପୁରୁଷ ଆଗେ କ୍ରିୟାଜାଲ ବିସ୍ତାର କରି ପୁରୁଷକୁ ଭୁଲାଇଲା ପରି, ଭୁଲାଉଥାଏ ମାତ୍ର । ପୁରୁଷ ଆଗେ ନ ଥିଲେ ତାର କ୍ରିୟା ନାହିଁ । ପୁରୁଷ ଏଥିରୁ ଅଲଗା ହୋଇ କେବଳ ଏକ ହୋଇଗଲେ, ତାର କେବଳଭାବ ବା 'କୈବଲ୍ୟ' ହୁଏ । ଏହି କୈବଲ୍ୟହିଁ ମୁକ୍ତି । ପ୍ରକୃତିର ମୁକ୍ତି ବୋଲି କିଛି ନାହିଁ । କାରଣ, ସେ ଅଚେତନ । କେବଳ ପୁରୁଷର "ଭୂତ ପ୍ରକୃତି ମୋକ୍ଷ" ହୁଏ (୧୩. ୩୪) ।

## ଗୀତାର ସମାଧାନରେ ଅଦ୍ୱୈତ—

ସମସ୍ତ ତ୍ରୟୋଦଶ ଅଧ୍ୟାୟରେ ଗୀତାରେ ଭଗବାନ୍ କ୍ଷେତ୍ର କ୍ଷେତ୍ରଜ୍ଞ ବିଷୟରେ ଏଇ ପ୍ରକୃତି-ପୁରୁଷର ଦ୍ୱୈତତତ୍ତ୍ୱକୁ ଗୀତା ପ୍ରସିଦ୍ଧ ବେଦାନ୍ତର ସମାଧାନରେ ବୁଝାଇଛନ୍ତି । ଗୀତାରେ ଜଡ଼ ପ୍ରକୃତି ଓ ଜୀବ ଦୁହେଁ ତତ୍ତ୍ୱର ଦୁଇଟି ବିଭାବ ବା ଏକ ବସ୍ତୁକୁ ଦୁଇ ଆଡ଼ୁ ଦେଖିବା ମାତ୍ର । ସେଥିରେ ତେଣୁ ଚେତନ ପୁରୁଷର ଜଡ଼ ପ୍ରକୃତି ସଙ୍ଗେ ସମ୍ବନ୍ଧ ନିତ୍ୟ ଓ ଅଚ୍ଛେଦ୍ୟ । ପୁଣି ଏଇ ଗୁଣମୟୀ ପ୍ରକୃତିକୁ ଭଗବାନ୍ "ଦୈବୀ ମାୟା" ବୋଲି କହିଛନ୍ତି (୭.୧୪) ଚେତନ ବ୍ୟକ୍ତିରେ ଯାହା କ୍ଷେତ୍ର ଓ କ୍ଷେତ୍ରଜ୍ଞ, ବିଶ୍ୱରେ ତାହାହିଁ କ୍ଷର ଓ ଅକ୍ଷର । କ୍ଷର ବୋଇଲେ କ୍ଷୟଶୀଳ ବା ନିତ୍ୟ ପରିବର୍ତ୍ତନରେ କ୍ଷଣିକ । ସମସ୍ତ ପ୍ରତ୍ୟକ୍ଷଗମ୍ୟ ବିଶ୍ୱ ହିଁ କ୍ଷର । ଏଇ କ୍ଷରର ଅବ୍ୟକ୍ତ ବା ସୂକ୍ଷ୍ମତମ ଅବସ୍ଥା ବା ତତ୍ତ୍ୱ ହିଁ ପ୍ରକୃତି । ଏହା ହିଁ ଦୈବୀ ଶକ୍ତି ବା ମାୟାର ମୂଳ । ଏହାହିଁ ପ୍ରକାଶର ମୂଳ । ପୁଣି ଏ ଅବ୍ୟକ୍ତରୁ ଅବ୍ୟକ୍ତ (୮. ୨୦) ହେଉଛି, ସେଇ ପ୍ରକୃତି ବା ଶକ୍ତିର ପରମ ପୀଠ ଅକ୍ଷର ବା

ଚେତନ ତତ୍ତ୍ୱ । ଏଇ କ୍ଷର ଓ ଅକ୍ଷରକୁ ଦୁଇ ଆଡୁ ଏକ ବସ୍ତୁ ବୋଲି ଦେଖି 'ପୁରୁଷୋତ୍ତମ'ଙ୍କୁ ଧାରଣ କରିବାକୁ ହୁଏ (୧୫. ୧୬. ୧୭) ।

## କପିଳଙ୍କ ସାଂଖ୍ୟଶାସ୍ତ୍ର—

ମାତ୍ର ଏସବୁ ସମାଧାନ ଓ ସମୁଚ୍ଚୟ ବୁଝିବାକୁ ହେଲେ, ଜ୍ଞାନ ବା ସାଂଖ୍ୟର ସେଇ ଦ୍ୱୈତ ତତ୍ତ୍ୱଟି ଯେପରି ପ୍ରକାଶ ପାଏ, ତାହା ବୁଝି ରଖିବା କଥା । ଦ୍ୱୈତର ସମାଧାନ ନ ହେଲେ ଖଣ୍ଡିତ ଓ ଆଂଶିକ ବସ୍ତୁତତ୍ତ୍ୱରେ ଜଗତର ଧାରଣା ହେବାର ନୁହେ । ସେଇ ଦ୍ୱୈତର ବିକାଶ ପାଇଁ ଯେ ଚିନ୍ତା ଧାରା, ତା କୁହାଯାଇଛି । ଏବେ ସେଇ ତତ୍ତ୍ୱ ପୂର୍ଣ୍ଣ ଓ ପୁଷ୍କଳ ଭାବରେ କପିଳ ନିଜ ସାଂଖ୍ୟଶାସ୍ତ୍ରରେ ଯେପରି ଆନୁପୂର୍ବିକ ଓ ଯୁକ୍ତିଯୁକ୍ତ ଭାବରେ ପ୍ରକାଶ କରିଛନ୍ତି, ତା ଟିକିଏ ସ୍ଥୂଳ ଆଭାସରେ ଦେଖାଯାଉ । ତା ହେଲେ ସେଇ ସାଂଖ୍ୟର ବେଦାନ୍ତରେ ସମୁଚ୍ଚୟ ଓ ସମାଧାନ ବୁଝିବା—ତଥା ଗୀତାର ବେଦାନ୍ତରେ ସେଇ ଦ୍ୱୈତର ସଂଶ୍ଳେଷଣ ଦେଖିବା ସୁଗମ ହେବ ।

## ପ୍ରକୃତି ଓ ଗୁଣ—

ଏଇ ସମସ୍ତ ଅନନ୍ତ ବୈଷମ୍ୟମୟ ପ୍ରତୀତ ବିଶ୍ୱ ଗୋଟାଏ ତତ୍ତ୍ୱ କିପରି ହେବ ? ଏହା ଏକ ତତ୍ତ୍ୱରୁ ପରିଣାମରେ ବିକାଶ । ତତ୍ତ୍ୱଟି ସୂକ୍ଷ୍ମ । ପ୍ରତୀତ ବିଶ୍ୱ ସ୍ଥୂଳ । ବାୟୁ ଓ ଆକାଶ ସୂକ୍ଷ୍ମ । ମାଟି ଓ ପାଣି ପରି ଏସବୁ ସ୍ଥୂଳ ନୁହେ । ମାତ୍ର ବାୟୁ ଓ ଆକାଶ ମଧ୍ୟ ପ୍ରତୀତିଗମ୍ୟ । ତେଣୁ ସେମାନେ ସୂକ୍ଷ୍ମ ହେଲେ ହେଁ ତାଙ୍କଠାରୁ ଅତି ସୂକ୍ଷ୍ମତର ଇନ୍ଦ୍ରିୟରେ ଅଲଭ୍ୟ ହେଉଛି ପ୍ରକୃତି ବା 'ଅବ୍ୟକ୍ତ' । ଅବ୍ୟକ୍ତ ବୋଇଲେ ଇନ୍ଦ୍ରିୟଜ୍ଞାନରେ ଯାହାର ପ୍ରକାଶ ନାହିଁ । ଏ ମାଟି ପଥର, ଜଳ ବାୟୁ, ଆକାଶ, ଶବ୍ଦ, ଚିନ୍ତା, ବୁଦ୍ଧି ସବୁ—ଭୂତଭାବ—ର ବିକାଶ । ସେଇ ପ୍ରକୃତିର ପରିଣାମ । 'ସତ୍‌କାର୍ଯ୍ୟବାଦ'ର କଥା କୁହାଯାଇଛି । ଯାହା ନାହିଁ, ସେଥିରୁ ଅଛି ହେବ ନାହିଁ, ତେଣୁ ଏଇ ମୂଳ ପ୍ରକୃତିରେ ଏଇସବୁ ପ୍ରତୀତ ବିଶ୍ୱର ଭେଦ ବୈଷମ୍ୟର ମୂଳ ଅଛି । କିପରି ? ତେବେ ମୂଳପ୍ରକୃତି ଗୋଟିଏ ବସ୍ତୁ—ଏକ ଗୁଣବିଶିଷ୍ଟ ବସ୍ତୁ; ତେବେ ସେଥିରୁ ଏ ବୈଷମ୍ୟର ବିକାଶ ହୋଇ ନ ପାରେ । ତେଣୁ ଏହି ପ୍ରକୃତିରେ ଭିନ୍ନ ଭିନ୍ନ ଗୁଣ ମୂଳରୁ ଅଛି ବୋଲି ଧରି ନେବାକୁ ହେବ । ଏଇ ଗୁଣ ତିନୋଟି—ସତ୍ତ୍ୱ, ରଜ, ତମ । ବରଂ କୁହାଯାଇପାରେ, ଏଇ ତିନି ଗୁଣ ମାତ୍ରଇ ପ୍ରକୃତି ।

## ଗୁଣର କ୍ରିୟା—

ଏଇ ଗୁଣର କଳ୍ପନାଟି କଣ ? ଜଗତରେ ଆକାଶ, ଜଳ, ଭୂମି, ଗଛ, ପଶୁ, ପକ୍ଷୀ, ସୁନା, ଲୁହା ପ୍ରଭୃତି ଯେ କୌଣସି ପ୍ରତୀତ ବସ୍ତୁ ଧରନା କାହିଁକି, ତାର

କେତେଗୁଡ଼ିଏ ଗୁଣ ଅଛି; ଯଥା—ଉଷ୍ଣ, ଶୀତଳ, କର୍କଶ, ମସୃଣ, ତରଳ, କଠିନ, ଗରୁ, ଲଘୁ ଇତ୍ୟାଦି । ଏହି ସବୁ ଗୁଣର ମୂଳ ଅନୁସନ୍ଧାନ କରି ସାଂଖ୍ୟମାନେ ସମସ୍ତ ଗୁଣକୁ ତିନୋଟି ଶ୍ରେଣୀରେ ବିଭକ୍ତ କରନ୍ତି । ଯେ କୌଣସି ବସ୍ତୁରେ ଗୋଟିଏ ପୂର୍ଣ୍ଣ ସ୍ପଷ୍ଟ ଓ ନିର୍ମଳ ଅବସ୍ଥା ଓ ସଙ୍ଗେ ସଙ୍ଗେ ତାର ଠିକ୍ ବିପରୀତ ନିକୃଷ୍ଟ ଅବସ୍ଥା, ପୁଣି ଏହି ନିକୃଷ୍ଟ ଅବସ୍ଥାରୁ ପୂର୍ଣ୍ଣ ଆଡ଼କୁ ଯିବାର ପ୍ରବୃତ୍ତି—ଏହି ତିନି ଅବସ୍ଥା ଦେଖାଯାଏ । ଅନ୍ଧାର, ଆଲୁଅ ଓ ଅନ୍ଧାର ଆଲୁଅ ମଝିରେ କମସ୍ପଷ୍ଟ ଜ୍ୟୋତି; ପୂର୍ଣ୍ଣ ଚେତନା ସୁଷୁପ୍ତି ଓ ସ୍ୱପ୍ନାଦି କମଜାଗରଣ—ଏଇପରି ଅବସ୍ଥା ବା ଗୁଣର ଶ୍ରେଣୀ ସର୍ବତ୍ର ଅଛି । ଏଥିମଧ୍ୟରୁ ଶୁଦ୍ଧ ବା ପୂର୍ଣ୍ଣ ଅବସ୍ଥାକୁ ସାତ୍ତ୍ୱିକ, ମଧ୍ୟାବସ୍ଥାକୁ ରାଜସିକ ଓ ନିକୃଷ୍ଟାବସ୍ଥାକୁ ତାମସିକ କହନ୍ତି । ଏହି ତିନି ଗୁଣ ସମସ୍ତ ପଦାର୍ଥର ମୂଳବସ୍ତୁ । ଏହି ତିନି ଗୁଣକୁ ହିଁ ପ୍ରକୃତି ବୋଲି କୁହାଯାଇପାରେ—ଏହା କୁହାଯାଇଛି । ପ୍ରଥମେ ଏହି ତିନିଗୁଣର ବଳ ଏକାପରି ଥାଏ । ଏହା ଗୁଣର ସାମ୍ୟାବସ୍ଥା । ଜଗତ ଆରମ୍ଭରେ ଏହି ସାମ୍ୟାବସ୍ଥା ଓ ଜଗତର ଲୟ ହେଲେ, ପୁଣି ସାମ୍ୟାବସ୍ଥା । ଏହି ସାମ୍ୟାବସ୍ଥାରେ କିଛି ହଲଚଲ ନାହିଁ, ଚେଷ୍ଟା ପ୍ରକାଶ ନାହିଁ, ସବୁ ସ୍ତବ୍ଧ । ଏହି ତିନି ଗୁଣ ଯେତେବେଳେ କମ୍ ବେଶି ହେବାର ଆରମ୍ଭ ହୁଏ, ସେତେବେଳେ ରଜୋଗୁଣ ପ୍ରଭାବରେ ପ୍ରବୃତ୍ତି ଜାଗ୍ରତ ହୋଇ କ୍ରମେ ସୂକ୍ଷ୍ମରୁ ସ୍ଥୂଳ ଓ ସ୍ଥୂଳତର ବିକୃତିରେ ପ୍ରକୃତି ଜଗତ୍ ପ୍ରକାଶ କରେ—ନାନାବିଧ ପ୍ରତୀତ ବସ୍ତୁ ଉତ୍ପନ୍ନ ହୁଏ ।

## ଗୁଣର ସାମ୍ୟାବସ୍ଥାରେ ଭେଦ ଓ ମାୟା—

ଏଇଠାରେ କିନ୍ତୁ ଯୁକ୍ତି ଏକାବେଳକେ ଶୃଙ୍ଖଳାହୀନ । ସୃଷ୍ଟି ପୂର୍ବରୁ ଗୁଣମାନଙ୍କର ଯେ ସାମ୍ୟାବସ୍ଥା ଥିଲା, ତାହା ପ୍ରଥମେ ଭାଙ୍ଗି ଗୁଣର ଅସମତା ହେଲା କାହିଁକି ? ସାଂଖ୍ୟମାନେ ଏଠାରେ କହନ୍ତି, ଏହା ପ୍ରକୃତିର ମୂଳ ଧର୍ମ ( ସାଂଖ୍ୟ-କାରିକା—୬୧ ) । ପ୍ରକୃତି ଜଡ଼ ହେଲେହେଁ ସେ ନିଜେ ନିଜେ ସବୁ ବ୍ୟାପାରରେ ଲାଗେ । ଏପରି କହିଦେବାରେ ଅବଶ୍ୟ ଯୁକ୍ତି ନାହିଁ; ତଥାପି ଏହାହିଁ ସାଂଖ୍ୟମାନେ କହନ୍ତି । ପୁଣି କହନ୍ତି, ପୁରୁଷ ଆଗେ ପ୍ରକୃତି ଏଇ ସବୁ ଖେଳ ଦେଖାଏ । ଏଥିରେ କବିତା ଥାଇପାରେ । ମାତ୍ର ଜଡ଼ ପ୍ରକୃତିର ଏ ଖେଳା ଦେଖାଇବା ମଧ୍ୟ ଦାର୍ଶନିକ ଯୁକ୍ତି ନୁହେ । ପୁରୁଷ ଆଗେ ପ୍ରକୃତିର ଏ ବ୍ୟାପାର ମନକୁ ହୁଏ । ଏହା କହିବା ଯାହା, ସବୁ ଜ୍ଞାନମାନେ ପୁରୁଷର ପ୍ରତୀତିମାତ୍ର; ଏହା କହିବା ମଧ୍ୟ ଏକ ପ୍ରକାର ତାହାହିଁ । ଖାଲି ଶୂନ୍ୟ ଜ୍ଞାନକୁ ବସ୍ତୁ ବୋଲି କହିଦେବାରେ କିଛି ଆକାଂକ୍ଷା ନିବୃତ୍ତି ହେଉ ନାହିଁ । ପୁଣି ଶଂକର ବେଦରୁ ଯେଉଁ ମାୟାବାଦ କାଢ଼ି ସୃଷ୍ଟିର ବ୍ୟାଖ୍ୟା ଦେଇଛନ୍ତି, ସେଥିରେ ମଧ୍ୟ ମାୟାଟି କଣ, କାହିଁକି ବା କାହୁଁ ଆସେ, ତା କହି ନାହାନ୍ତି । ଶଂକର ବରଂ ମାୟାକୁ 'ଅନିର୍ବଚନୀୟ' ବୋଲି କହିଛନ୍ତି । ଶୂନ୍ୟ ବୋଲି କହିଥିଲେ ମଧ୍ୟ ଚଳିଥାନ୍ତା । ସେ ଯା ହେଉ, କାପିଳ ବା ଶାଂକର କେହି ଶୂନ୍ୟବାଦୀ ନୁହନ୍ତି ।

ଶୂନ୍ୟ ନ କହି ଯମସ୍ତେ ବସ୍ତୁ ବୋଲି ପ୍ରତୀତିଲଭ୍ୟ ଜଗତକୁ ସ୍ୱୀକାର କରିଚନ୍ତି । ମାୟା ଭ୍ରମ ହେଲେ ହେଁ ବସ୍ତୁରେ ଭ୍ରମ ।

## ଗୁଣଭେଦରେ ବିଶ୍ୱର ବିଚିତ୍ରତା—

ସାଂଖ୍ୟ ପୁଣି ବିକାଶକ୍ରମେ ବୁଝାଇ କହନ୍ତି, ଏଇ ତିନି ଗୁଣ ମଧ୍ୟରେ ସତ୍ତ୍ୱ-ଗୁଣର ଲକ୍ଷଣ ଜ୍ଞାନ, ରଜୋଗୁଣରେ ଭଲ ମନ୍ଦ କର୍ମର ପ୍ରବୃତ୍ତି ହୁଏ ଓ ତମୋଗୁଣର ଲକ୍ଷଣ ଅଜ୍ଞାନ (୧୪.୬—୮, ୧୭) । ଏଇ ତିନି ଗୁଣ କିନ୍ତୁ ପୃଥକ୍ ପୃଥକ୍ ହୋଇ କେବେ ନ ଥାଏ । ସବୁ ପଦାର୍ଥରେ ଏଇ ତିନିଗୁଣ ମିଶିକରି ଥାଏ । ମାତ୍ର କେଉଁଠାରେ ରଜ ତମକୁ ବୁଡ଼ାଇ ସତ୍ତ୍ୱ ବେଶି, ପୁଣି କେଉଁଠାରେ ସତ୍ତ୍ୱ ତମକୁ ଉଡ଼ାଇ ରଜ ବେଶି, ପୁଣି ବା କେଉଁଠାରେ ରଜ ସତ୍ତ୍ୱକୁ ବୁଡ଼ାଇ ତମ ବେଶି ଥାଏ । (୧୪. ୧୦) । ଏଇ ଗୁଣଭେଦ ହେତୁରୁ ସୁନା, ଲୁହା, ମାଟି, ଜଳ, ଆକାଶ ପ୍ରଭୃତି ବିଭିନ୍ନ ପଦାର୍ଥମାନଙ୍କର ପ୍ରକାଶ ହୁଏ । ମାତ୍ର କୌଣସି ଗୁଣଟି କୌଣସି ପଦାର୍ଥରେ ଏକା ବେଳକେ ନ ଥାଏ, ନୁହେ । ସାତ୍ତ୍ୱିକ ପଦାର୍ଥରେ ମଧ୍ୟ ରଜ ଓ ତମଗୁଣ ଥାଏ । ମାତ୍ର ସେଥିରେ ଶେଷ ଦୁଇ ଗୁଣର ବଳ ବଡ଼ ଅଳ୍ପ ଥାଏ । ନିରୁତା ସତ୍ତ୍ୱ, ନିରୁତା ରଜ ବା ନିରୁତା ତମଗୁଣୀ ପଦାର୍ଥ ନାହିଁ । (ସାଂଖ୍ୟକାରିକା-୧୨; ମହାଭାରତ ଶାନ୍ତିପର୍ବ—୩୦୫; ଅଶ୍ୱମେଧ ପର୍ବ-ଅନୁଗୀତା ୩୬) । ଏଇପରି ମନୁଷ୍ୟର ସତ୍ତ୍ୱଗୁଣ ପ୍ରବଳ ହେଲେ, ତାର ଜ୍ଞାନ ହୁଏ ଓ ସେ ଶାନ୍ତିର ଆନନ୍ଦରେ ରହେ; ରଜୋଗୁଣ ପ୍ରବଳ ହେଲେ, ତାର ଲୋଭ ହୁଏ, ତମେ ଗୁଣ ପ୍ରବଳ ହେଲେ ଅଜ୍ଞାନ, ନିଦ୍ରା ଓ ଆଳସ୍ୟ, ମୃତିଭ୍ରଂଶାଦି ଲୋକକୁ ଗ୍ରାସକରେ । (୧୪.୯) । ଏଇପରି ଗୁଣର ଭେଦ ଅନୁସାରେ ଏକ ମୂଳ ପ୍ରକୃତିରୁ ଭିନ୍ନ ଭିନ୍ନ ପଦାର୍ଥମାନ ହୋଇ ଜଗତ୍ ପ୍ରକାଶ କରେ ।

## ସତ୍‌କାର୍ଯ୍ୟବାଦ—

ସାମ୍ୟାବସ୍ଥାରେ ଏଇ ପ୍ରକୃତି 'ଅବ୍ୟକ୍ତ' । ଏହା ବ୍ୟକ୍ତ ବା ପ୍ରତୀତିଗମ୍ୟ ନୁହେ । ଏହା ଅତି ସୂକ୍ଷ୍ମ । ତା ପରେ କ୍ରମବିକାଶରେ ସୂକ୍ଷ୍ମ କ୍ରମେ ସ୍ଥୂଳ ପଦାର୍ଥ ବାହାରେ । ପ୍ରକୃତି ଯେବେ ଅବ୍ୟକ୍ତ ବା ପ୍ରତୀତିରେ ମନରେ ମଧ୍ୟ ଗମ୍ୟ ନୁହେ, ତେବେ ଶୂନ୍ୟ ନୁହେ ତ କଣ ? ମାତ୍ର ସାଂଖ୍ୟ କହନ୍ତି, ଶୂନ୍ୟ ନୁହେ । କାରଣ, ଶୂନ୍ୟରୁ ବସ୍ତୁର ଉତ୍ପତ୍ତି ହୋଇପାରେ ନା । ପୁରୁଷ ମଧ୍ୟ ନିର୍ଗୁଣ ନିଷ୍କ୍ରିୟ ଚେତନା ମାତ୍ର । ହେଲେହେଁ ସେ ମଧ୍ୟ ଶୂନ୍ୟ ନୁହେ । ଶଂକର ସମେତ ବେଦାନ୍ତୀମାନେ ମଧ୍ୟ ଏଇ 'ସତ୍‌କାର୍ଯ୍ୟବାଦ' ଧରି ବ୍ରହ୍ମର ଅସ୍ତିତ୍ୱ ମାନନ୍ତି । ଅତଏବ ଏସବୁ ଶୂନ୍ୟରେ ବସ୍ତୁ ଦେଖିବାର ପୀଠ ହେଉଚି ସେଇ 'ସତ୍‌କାର୍ଯ୍ୟବାଦ'—'କଥମସତଃ ସଜ୍ଜାୟେତ ।' ଏଇ ପ୍ରକୃତିକୁ ମଧ୍ୟ ସାଂଖ୍ୟମାନେ 'ଅକ୍ଷର' ବା 'ଅକ୍ଷର ବ୍ରହ୍ମ' ବା 'ମହତ୍ ବ୍ରହ୍ମ'

ଅଥବା 'ମହତ୍' (୧୪.୩) ବୋଲି କହନ୍ତି । ଗୀତାର ବେଦାନ୍ତରେ କିନ୍ତୁ ଏ ଦ୍ୱୈତ ବା ମାୟାରୂପ ଅଜ୍ଞାନହେତୁକ ଅଦ୍ୱୈତ କୁତ୍ରାପି ନାହିଁ । ଏହା ମନେ ରଖିବାକୁ ହେବ । ଗୀତାର ପୁରୁଷୋତ୍ତମ ପୁରୁଷ ଓ ପ୍ରକୃତିରୁ ଅତୀତ ବା ପୁରୁଷ ଓ ପ୍ରକୃତି ଦୁଇଟିଯାକ ପୁରୁଷୋତ୍ତମଙ୍କୁ ଦେଖିବାର ଦୁଇଟି ଦୃଷ୍ଟି ବା ବିଭାବ ମାତ୍ର । ଏଥିରେ କୌଣସିଠାରେ ଶୂନ୍ୟତାର ଶଂକା ବା ଯୁକ୍ତିର ବିଶୃଙ୍ଖଳା ନାହିଁ ।

## ପ୍ରକୃତିର କ୍ରମ-ପରିଣାମ—ଗୁଣ ବିସ୍ତାର—

ସେ ଯା ହେଉ, ସାଂଖ୍ୟମାନଙ୍କ ମତରେ ଏଇ ପ୍ରକୃତି ବା ଗୁଣ ସାମ୍ୟରେ ବୈଷମ୍ୟ ଆସିଲେ ପ୍ରଥମେ ହୁଏ ବୁଦ୍ଧି ବା ପ୍ରକାଶରେ ନିଶ୍ଚିତ ପ୍ରବୃତ୍ତି । ବେଦ ମଧ୍ୟ କହନ୍ତି ଏଇଠାରେ ବ୍ରହ୍ମ ବା ଶୂନ୍ୟରେ ପ୍ରଥମେ କାମ ବା ସୃଷ୍ଟିକାମନା ଜାଗ୍ରତ ହୁଏ; (୧. ୧୨୯. ୩) । ଉପନିଷଦ୍ କହନ୍ତି, ପୁରୁଷର ଏହା ପ୍ରଥମେ 'ଏକୋଽହଂ-ବହୁ ସ୍ୟାଂ' (ମୁଁ ଏକ ଅଛୁ, ବହୁ ହେବି) ବୋଲି 'ତପ' । ମାତ୍ର ସାଂଖ୍ୟରେ ପୁରୁଷ ନିଷ୍କ୍ରିୟ ଓ ନିର୍ଗୁଣ । ତେଣୁ ସାଂଖ୍ୟର ପ୍ରକୃତି ହିଁ ବ୍ରହ୍ମ । ଏଇ ବୁଦ୍ଧିର ପୁଣି ବିକାଶ ବା କ୍ରମପରିଣାମ ପଦ୍ଧତିରେ ହୁଏ—'ଅହଂକାର' ବା ବ୍ୟକ୍ତିଭାବ । ଏଇଠାରେ ବସ୍ତୁ ଭିନ୍ନ ଭିନ୍ନ ହୁଏ । ତାହା କିପରି ପ୍ରକାଶ ପାଏ ? କ୍ରମେ ଏହି 'ଅହଂକାର' ଏକ ଦିଗରେ ତାମସ ଓ ନିରିନ୍ଦ୍ରିୟ ଜଗତ୍ ଓ ଅନ୍ୟ ଦିଗରେ ସାତ୍ତ୍ୱିକ ଓ ସୂକ୍ଷ୍ମ ଇନ୍ଦ୍ରିୟ ଜଗତ୍ ରୂପେ ଫୁଟିପଡ଼େ । ଏଇ ଇନ୍ଦ୍ରିୟ ଏଗାରଟି । ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା ଓ ତ୍ୱକ୍—ଏ ପାଞ୍ଚ ବୁଦ୍ଧିନ୍ଦ୍ରିୟ; ବାକ୍, ପାଣି, ପାଦ, ପାୟୁ, ଉପସ୍ଥ—ଏଇ ପାଞ୍ଚ କର୍ମେନ୍ଦ୍ରିୟ ଓ ମନ—ଏଇ ଏଗାରଟି ଇନ୍ଦ୍ରିୟ । ଏସବୁ ସୂକ୍ଷ୍ମ । ଏହା ବାହାରର ନାକ ଅଖି ବା ହାତ ପାଦ ନୁହେ । ଶରୀରରେ ସେମାନଙ୍କର ସୂକ୍ଷ୍ମ ରୂପ । ନାକ ବୋଇଲେ ଘ୍ରାଣ ଶକ୍ତି, ପାଦ ବୋଇଲେ ଚଳନ ଶକ୍ତି—ଏଇପରି ସବୁ ବୁଝିବାକୁ ହେବ । ଅନ୍ୟ ଦିଗରେ ନିରିନ୍ଦ୍ରିୟ ଜଡ଼ ଜଗତରେ ସୂକ୍ଷ୍ମ ପଞ୍ଚତନ୍ମାତ୍ର—ରୂପ, ରସ, ଗନ୍ଧ, ସ୍ୱାଦ, ସ୍ପର୍ଶ । ଏଗୁଡ଼ିକ ଇନ୍ଦ୍ରିୟର ମୁଖ୍ୟ ବିଷୟ । ଜିହ୍ୱାରେ ମଧୁର ଆସ୍ୱାଦନ ହୁଏ ବୋଲି କହନ୍ତି । ମାତ୍ର ଜିହ୍ୱାର ସ୍ୱାଦନ ଶକ୍ତି ହେଲା ଇନ୍ଦ୍ରିୟ, ପୁଣି ମଧୁର ସ୍ୱାଦ ମାତ୍ର ହେଲା ସେଇ ଇନ୍ଦ୍ରିୟର ବିଷୟ—ଏଇପରି ବୁଝିବାକୁ ହେବ । ଏଇ ତନ୍ମାତ୍ରରୁ କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ—ଏଇ ପଞ୍ଚ ମହାଭୂତର ବିକାଶ ହୁଏ । ବ୍ୟୋମଠାରୁ କ୍ଷିତି ପର୍ଯ୍ୟନ୍ତ ଏମାନେ ପୁଣି କ୍ରମସ୍ଥୂଳ । ଉପନିଷଦ୍ ମଧ୍ୟ କହିଚନ୍ତି,—"ଆତ୍ମନଃ ଆକାଶଃ ସମ୍ଭୂତଃ । ଆକାଶାଦ୍ ବାୟୁଃ । ବାୟୋରଗ୍ନିଃ । ଆଗ୍ନେରାପଃ । ଅଦ୍ଭ୍ୟଃ ପୃଥିବୀ । ପୃଥିବ୍ୟା ଓଷଧୟଃ । ଓଷଧିଭ୍ୟୋଽନ୍ନଂ । ଅନ୍ନାତ୍ ପୁରୁଷଃ ।" (ତୈତ୍ତିରୀୟ ଉପ: ୨.୧୬) । ବ୍ୟୋମରେ କେବଳ ଶବ୍ଦତନ୍ମାତ୍ରର ଗୁଣ ବା ଶବ୍ଦ ଗୁଣ; ମରୁତ୍ ବା ବାୟୁରେ ଶବ୍ଦ ଓ ସ୍ପର୍ଶ ଗୁଣ. ତେଜରେ ଶବ୍ଦ, ସ୍ପର୍ଶ ଓ ରୂପ; ଅପ୍ ବା ଜଳରେ ଶବ୍ଦ, ସ୍ପର୍ଶ, ରୂପ ଓ ରସ; ପୁଣି କ୍ଷିତି ବା ପୃଥିବୀରେ ଶବ୍ଦ, ସ୍ପର୍ଶ,

ରୂପ, ରସ ଓ ଗନ୍ଧ—ଏଇପରି ସମଷ୍ଟି ଲତା ବୁଝିବାକୁ ହେବ । ହାତ, ଗୋଡ଼, ଆଖି, କାନ ପ୍ରଭୃତି ଅନ୍ୟାନ୍ୟ ସ୍ଥୂଳ ଦ୍ରବ୍ୟ ପରି ଏଇ ମହାଭୂତରେ ନିର୍ମିତ ବୋଲି ବୁଝିବାକୁ ହେବ । ଏଥିରେ ପ୍ରକୃତି ଅବ୍ୟକ୍ତ ଓ ସୂକ୍ଷ୍ମ । ବୁଦ୍ଧି, ଅହଂକାର ଓ ପଞ୍ଚତନ୍ମାତ୍ର—ଏଇ ସାତୋଟି ପ୍ରକୃତି-ବିକୃତି ଓ ସୂକ୍ଷ୍ମ । ଏମାନେ ଏକର ବିକୃତି ହେଲେ ହେଁ ଅପରର ପ୍ରକୃତି । ତେଣୁ ଏମାନେ ପ୍ରକୃତି-ବିକୃତି । ବାକି ୧୬ଟି ବିକୃତି । ମାତ୍ର ଏଇ ୧୬ଟିରୁ କେବଳ ପଞ୍ଚମହାଭୂତ ସ୍ଥୂଳ । ବାକି ୧୧ଟି ଇନ୍ଦ୍ରିୟ ସୂକ୍ଷ୍ମ । ସ୍ଥୂଳ ମହାଭୂତମାନଙ୍କୁ 'ବିଶେଷ' ବୋଲି ମଧ କହନ୍ତି । ଏଇପରି ପ୍ରକୃତିକୁ ଘେନି ପ୍ରକୃତିର ୨୪ଟି ତତ୍ତ୍ୱ । ବାକି ତତ୍ତ୍ୱଟି ପୁରୁଷ ।

## ବେଦାନ୍ତ ଓ ସାଂଖ୍ୟ ମତର ପରିଭାଷା—

ବାଦରାୟଣ ପ୍ରଭୃତି ବେଦାନ୍ତବାଦୀମାନେ ପୁରୁଷକୁ ପରଂବ୍ରହ୍ମ ବା ଜୀବ କହନ୍ତି । ଏଇ ବେଦାନ୍ତର ଅଦ୍ୱୈତ ବିଶିଷ୍ଟାଦ୍ୱୈତ ଓ ଦ୍ୱୈତ ମତରେ ଯଥାକ୍ରମେ ଏଇ ପରଂବ୍ରହ୍ମ ଓ ଜୀବକୁ ଏକ ବସ୍ତୁ ଏକ ରକମର ବସ୍ତୁ ବା ଭିନ୍ନ ଭିନ୍ନ ବସ୍ତୁ ବୋଲି ବ୍ୟାଖ୍ୟା କରିଥାନ୍ତି । ସେ ସ୍ୱତନ୍ତ୍ର କଥା । ମାତ୍ର ସେମାନେ ପରଂବ୍ରହ୍ମର ଶ୍ରେଷ୍ଠ ସ୍ୱରୂପ ରୂପେ ଜୀବ ବା ଜୀବାତ୍ମା ପୁଣି କନିଷ୍ଠ ସ୍ୱରୂପ ରୂପେ ପ୍ରକୃତି ବୁଦ୍ଧି ଅହଂକାର ଓ ପଞ୍ଚତନ୍ମାତ୍ର—ଏଇ ଆଠୋଟି ମାନନ୍ତି । ବାକି ୧୬ଟି ବିକାର ବୋଲି ଗ୍ରହଣ କରନ୍ତି । ଗୀତା କହେ ଜୀବକୁ ପୁରୁଷୋତ୍ତମଙ୍କର ପରା ପ୍ରକୃତି ଓ ପ୍ରକୃତିକୁ ଅପରା ପ୍ରକୃତି କହି, ପୁଣି ଏଇ ଅପରା ପ୍ରକୃତିକୁ ବୁଦ୍ଧି, ଅହଂକାର, ପଞ୍ଚତନ୍ମାତ୍ର ଓ ମନ ଏଇ ଆଠ ପ୍ରକାରର ବୋଲି କହନ୍ତି (୭.୪, ୫) । ଏହା ଏଠାରେ ମନେ ରଖିବାକୁ ହେବ ।

## ସାଂଖ୍ୟବାଦରେ ପ୍ରକୃତି ପୁରୁଷର ସଂବଂଧ ଓ ସାଧନା—

ସାଂଖ୍ୟମାନଙ୍କ ମତରେ ପୁରୁଷ ନିର୍ଗୁଣ, ଅକର୍ତ୍ତା ଓ ଉଦାସୀନ ସତ, ମାତ୍ର ସେମାନେ କହନ୍ତି ପ୍ରକୃତି ବା ସନ୍ନିଧାନରେ ରହିଲେ, ଚୁମ୍ବକ ପାଖେ ଲୁହାର ଆକର୍ଷଣ ଶକ୍ତି ହେଲା ପରି, ବାଛୁରୀ ପାଖରେ ଥିଲେ ଗାଈ ପହ୍ନାରେ ଯେପରି ଦୁଧ ହୁଏ, ସେଇପରି, ଜଡ଼ ପ୍ରକୃତିରେ ସୃଷ୍ଟି କ୍ରିୟା ଆରଂଭ ହୁଏ । ପ୍ରଥମେ ପୁରୁଷ ଓ ଅବ୍ୟକ୍ତ ପ୍ରକୃତି ଏଇ ଦୁଇଟି ମାତ୍ର ତତ୍ତ୍ୱ ଥାଏ କ୍ରମେ ପ୍ରକୃତି ଅବ୍ୟକ୍ତରୁ ନିଜ ବ୍ୟକ୍ତ (ସୂକ୍ଷ୍ମ ଓ ସ୍ଥୂଳ) ଗୁଣ ସମୂହର ବିସ୍ତାର ପୁରୁଷ ଆଗେ ଲମ୍ବାଇ ଦିଏ । ପୁରୁଷ ଚେତନ ଓ ଜ୍ଞାତା ମାତ୍ର ହେଲେହେଁ ଏହା କର୍ମ କରିପାରେ ନା । ତା ପାଖେ କର୍ମର କୌଣସି ସାଧନ ନାହିଁ । ପ୍ରକୃତି କର୍ମକର୍ତ୍ତ୍ରୀ ହେଲେହେଁ ନିଜେ ଜଡ଼ ବା ଅଚେତନ ହେବାରୁ, କେଉଁ କର୍ମ କରିବ ତା ସେ ଜାଣେ ନାହିଁ । ସାଂଖ୍ୟ କାରିକାରେ ଉପମା ଦେଲାପରି କହନ୍ତି, ପ୍ରକୃତି ଓ ପୁରୁଷ ଅନ୍ଧ ଓ ପଙ୍ଗୁ ପରି ।

ଅନ୍ଧ କାନ୍ଧରେ ପଙ୍ଗୁ ବସି ଯେପରି ବାଟ ଚାଲନ୍ତି ବା କାମ କରନ୍ତି, ସେହିପରି ପୁରୁଷ ସଂଯୋଗରେ ଆସିଲେ ପ୍ରକୃତିର ସୃଷ୍ଟି କ୍ରିୟା ଆରମ୍ଭ ହୁଏ (ସାଂଖ୍ୟକାରିକା-୨୧)। ନାଚି ନୃତ୍ୟ କରି ପୁରୁଷର ମନ ଭୁଲାଇଲା ପରି ପ୍ରକୃତି ପୁରୁଷକୁ ନିଜ ବେଶମାନ ଧରି ନାଚି ଯେପରିକି ଭୁଲାଇ ରଖେ (ସାଂଖ୍ୟକାରିକା-୫୯)। ପ୍ରକୃତିର ଏହି ନୃତ୍ୟରେ ଭୁଲି ମୋହ ହେତୁରୁ ପୁରୁଷ ପ୍ରକୃତିର ଏହି କର୍ତ୍ତୃତ୍ୱରେ ନିଜର କର୍ତ୍ତୃତ୍ୱ ସ୍ୱୀକାର କରି, ଯେ ପର୍ଯ୍ୟନ୍ତ ନିଜକୁ ସୁଖ ଦୁଃଖ ଭୋଗରେ ଆବଦ୍ଧ କରି ରଖେ (୧୩. ୨୦), ସେତେ ଦିନଯାଏ, ତାହାର ମୁକ୍ତି ହୁଏ ନାହିଁ (୩. ୨୭)। ମାତ୍ର ଯେତେବେଳେ ଚେତନ ଓ ଜ୍ଞାତା ପୁରୁଷର ଜ୍ଞାନ ହୁଏ ଯେ ଗୁଣରୁ ଗୁଣରେ ମାତ୍ର ସୃଷ୍ଟି କର୍ମ ଚାଲିଛି (ଗୁଣା ଗୁଣେଷୁ ବର୍ତ୍ତନ୍ତେ-୩. ୨୮), ପୁଣି ଏହି ଗୁଣାତ୍ମକ, ପ୍ରକୃତି ମୋଠାରୁ ଅଲଗା, ସେତିକିବେଳେ ସେ ମୁକ୍ତ ହୁଏ (୧୩. ୨୯, ୩୦; ୧୪. ୨୦)। ପୁରୁଷ ଯଥାର୍ଥରେ କର୍ତ୍ତା ନୁହେଁ, କି ବଦ୍ଧ ବା ଭୋକ୍ତା ନୁହେ। ସ୍ୱତନ୍ତ୍ର ବା କେବଳ ଏକ ହୋଇଗଲେ, ଏହି 'କୈବଲ୍ୟ' ଅବସ୍ଥାରେ ପୁରୁଷ ଅକର୍ତ୍ତା ଓ ଉଦାସୀନ। ଯାହା କିଛି ସୃଷ୍ଟିରେ ହୁଏ, ସେସବୁ ପ୍ରକୃତିର ଖେଳ। ଏପରି କି ମନ ଓ ବୁଦ୍ଧି ମଧ୍ୟ ପ୍ରକୃତିର ବିକାର। ବୁଦ୍ଧିର ଯେ ଜ୍ଞାନ ହୁଏ ତା ମଧ୍ୟ ପ୍ରକୃତି କାର୍ଯ୍ୟରୁ ହୁଏ ଜ୍ଞାନ ତିନି ପ୍ରକାର—ସାତ୍ତ୍ୱିକ, ରାଜସିକ ଓ ତାମସିକ (୧୮. ୨୦-୨୨)। ବୁଦ୍ଧିର ସାତ୍ତ୍ୱିକ ଜ୍ଞାନ ହେଲେ, ପୁରୁଷ ଜାଣେ ଯେ ମୁଁ ପ୍ରକୃତିରୁ ଅଲଗା। ଏଠାରେ ମଧ୍ୟ ପୁଣି ଉପମାରେ ବ୍ୟାଖ୍ୟା। ପ୍ରକୃତି ପୁରୁଷର ଦର୍ପଣ ପରି। ଦର୍ପଣ ସ୍ୱଚ୍ଛ ଥିଲେ, ଯେପରି ସେଥିରେ ସ୍ପଷ୍ଟ ମୁହଁ ଦେଖିଯାଏ, ସେହିପରି ସାତ୍ତ୍ୱିକ ପ୍ରକୃତିରେ ପୁରୁଷ ସ୍ପଷ୍ଟ ନିଜକୁ ଜାଣିପାରେ। ପୁଣି ଉପମା—ଘାସର ଗୁଲାରୁ ଭିତରର ରସ ଯେପରି ପୃଥକ୍, ଜଳରୁ ମାଛ ଯେପରି ପୃଥକ୍, ପ୍ରକୃତିରୁ ପୁରୁଷ ସେହିପରି। ପୁରୁଷ ଏହା ଜାଣିପାରିଲେ ପୁରୁଷ ପ୍ରକୃତି ଅଲଗା ଅଲଗା ହୋଇଯାଏ ଉପମାରେ କୁହାଯାଏ, ପ୍ରକୃତି ଲଜ୍ଜାଶୀଳା ନାରୀ ପରି ନିଜର ନାଚ ସଂକେତରେ ବନ୍ଦ କରିଦିଏ। ଏହି ବନ୍ଦ ହେବାଯାଏ ପୁରୁଷ ପ୍ରକୃତିର ନାଚ ଉପଭୋଗ କରୁଥାଏ। ଏହିପରି ଉପଭୋଗ କରୁ କରୁ ଯେବେ କୌଣସି ପୁରୁଷର ସମ୍ପର୍କରେ ଥିବା ପ୍ରକୃତି ଖେଳ ସାତ୍ତ୍ୱିକ ହୋଇଉଠେ, ତେବେ ପୁରୁଷର ଯଥାର୍ଥ ଜ୍ଞାନର ଉପକ୍ରମ ହୁଏ। କିନ୍ତୁ ପ୍ରକୃତିର ଏହି ପରିସ୍ଥିତି ସାତ୍ତ୍ୱିକ କରିବାର ପ୍ରଯତ୍ନର କାରଣ କିଣ ତା ସ୍ପଷ୍ଟ ନୁହେ। ଏ ପ୍ରଯତ୍ନ ପ୍ରକୃତିର କାହୁଁ ହେବ? ତଥାପି ଏହିଥିରେ କର୍ମ ତ୍ୟାଗ ସନ୍ନ୍ୟାସ ଓ କୃଚ୍ଛ୍ର ତପଶ୍ଚର୍ଯ୍ୟାଦିରେ ପୁରୁଷର ଉଦାସୀନତା ଧ୍ୟାନ କରିବାର ଯୋଗ୍ୟ ବ୍ୟବସ୍ଥା ସଙ୍କୁଚିଥିଲା। ଏହିଠାରେ ଯୁକ୍ତି ନ ଥିଲେ ହେଁ କୌଣସି ପ୍ରାଚୀନତର କ୍ରିୟାପ୍ରବାହର ପ୍ରଭାବ ସ୍ପଷ୍ଟ। ସେ କଥା ପରେ ପ୍ରସଙ୍ଗାନ୍ତରରେ କୁହାଯିବ।

## ଜନ୍ମାନ୍ତରବାଦ ଓ ଭାବ—

ଏଥିରେ ପୁଣି ଜନ୍ମାନ୍ତରବାଦ ଅଛି। ଏହି ଜନ୍ମାନ୍ତରବାଦ ସ୍ପଷ୍ଟଭାବରେ

ବେଦରେ ନାହିଁ । ବେଦରେ କିନ୍ତୁ ପରଲୋକ ସ୍ପଷ୍ଟ ଅଛି । ଉପନିଷଦ୍‌ରେ ସ୍ପଷ୍ଟ ଜନ୍ମାନ୍ତର କଥା ଅଛି । ବୃହଦାରଣ୍ୟକ—"ଜୋକ ଯେପରି ଗୋଟିଏ ଘାସରୁ ଆଉ ଗୋଟିଏ ଘାସକୁ ଦେହର ଆଗ ଅଧିକରେ ଧରି ପୁଣି ଦେହର ପଛ ଅଧିକ ଟାଣି ନେଇ ଘାସ ଉପରକୁ ଚାଲିଯାଏ, ଆତ୍ମା ସେହିପରି ଏକ ଶରୀର ଛାଡ଼ି ଅନ୍ୟ ଶରୀରରେ ପ୍ରବେଶ କରେ ।" (ବୃହଦାରଣ୍ୟକ ଉପ—୪.୪.୩) । ବୌଦ୍ଧାନଙ୍କ ଶୂନ୍ୟ ସାଧନରେ ମଧ୍ୟ ଜନ୍ମାନ୍ତରବାଦ ସ୍ପଷ୍ଟ । ସେଥିରେ କର୍ମର ହିଁ ଜନ୍ମାନ୍ତର ହୁଏ । କର୍ମ ସଂଘାତ ତୁଟିଗଲେ ନିର୍ବାଣ । ମାତ୍ର ସାଂଖ୍ୟମାନଙ୍କ ପୁରୁଷର କର୍ମ ନାହିଁ । କର୍ମ ହେଉଛି, ପ୍ରକୃତିର ଗୁଣର ବିକାର । ସତ୍ତ୍ୱ ରଜ ତମ ଏହି ତିନି ଗୁଣର ନ୍ୟୁନାଧିକ ପରିମାଣ ହେତୁରୁ ଉତ୍ପନ୍ନ ବୁଦ୍ଧିରେ ଯେ ଧର୍ମ ବା ବ୍ୟାପାର, ତାକୁ ସାଂଖ୍ୟମାନେ 'ଭାବ' କହନ୍ତି । ଏହି ଭାବ ଗୁଣର ଇତରବିଶେଷତା ହେତୁରୁ ନାନା ପ୍ରକାରର । ଫୁଲର ଗନ୍ଧ ଓ ଲୁଗାର ରଙ୍ଗ ପରି ଏହି ଭାବ ଲିଙ୍ଗ ଶରୀରରେ ଲାଗି ରହେ । ଏହାକୁହିଁ ବେଦାନ୍ତ ଜୀବନରେ ଲାଗିଥିବା କର୍ମସଂସ୍କାର କହନ୍ତି । ମନୁଷ୍ୟ ମଲାବେଳେ ଲିଙ୍ଗ ଶରୀରର ଏହି 'ଭାବ' ନେଇ ଅନ୍ୟ ଯୋନି ଧରେ । ପିତାମାତାର ଶରୀରରୁ ପୁଣି ଅନ୍ୟ ଦ୍ରବ୍ୟ ସେଥିରେ ଲାଗି ଭିନ୍ନ ଭିନ୍ନ ଜନ୍ମ ହୁଏ । ଦେବଯୋନି, ମନୁଷ୍ୟଯୋନି, ପଶୁଯୋନି, ବୃକ୍ଷଯୋନି ପ୍ରଭୃତି ଏହି ଭାବରେ ହିଁ ଏହି ପ୍ରକାର ପରିଣାମ । (ସାଂଖ୍ୟକାରିକା; ୪୦—୫୫ ) ଗୀତାରେ ଜୀବ ରୂପେ ଈଶ୍ୱର ଏହି କର୍ମସଂସ୍କାର ନେଇ ଦେହରୁ ଦେହାନ୍ତରରେ ବିଷୟ ଭୋଗ କରନ୍ତି । ବାୟୁ ଗନ୍ଧ ନେଇ ଅନ୍ୟତ୍ର ଗଲା ପରି ଜୀବାତ୍ମା ଏହି ସଂସ୍କାର ଲାଗିଥିବା ବୁଦ୍ଧି ଅହଂକାର ଇନ୍ଦ୍ରିୟ ମନକୁ ନେଇ ଅନ୍ୟ ଶରୀରକୁ ଯାଏ (୧୫.୭-୯) । ଏହି ବୁଦ୍ଧ୍ୟାଦି ଇନ୍ଦ୍ରିୟ ସମେତ ହେଉଛି ବେଦାନ୍ତର ସୂକ୍ଷ୍ମ ଶରୀର । ସାଂଖ୍ୟମାନେ ମଧ୍ୟ ଉପନିଷଦ୍ ଭିତ୍ତିରେ ପ୍ରକୃତିର ସୂକ୍ଷ୍ମ ବିକୃତିମାନ ଅର୍ଥାତ୍ ବୁଦ୍ଧିଠାରୁ ପଞ୍ଚତନ୍ମାତ୍ର ଯାଏ (କେବଳ ପଞ୍ଚମହାଭୂତକୁ ଛାଡ଼ି ବାକି) ୧୮ଟି ତତ୍ତ୍ୱରେ ଏହି ଲିଙ୍ଗ ଶରୀର ନିରୂପଣ କରନ୍ତି । ଏଥିରେ ହିଁ 'ଭାବ' ରୂପ ବୁଦ୍ଧିର ଧର୍ମ ବା ବ୍ୟାପାର ଲାଗି ରହିଥିବାରୁ ଜନ୍ମାନ୍ତର ହୁଏ । ଗୀତାର ୧୦ମ ଅଧ୍ୟାୟ ୪ର୍ଥ ଶ୍ଳୋକରେ ଯେଉଁ "ଭବୋ ଭାବଃ" କଥାଟି ଅଛି, ସେଠାରେ 'ଭାବ' ଶବ୍ଦ ଏହି ଅର୍ଥରେ ପ୍ରଯୁକ୍ତ ହୋଇଥିବା ମଧ୍ୟ ବିଚିତ୍ର ନୁହେଁ । କାରଣ, ଗୀତା ସାଂଖ୍ୟର ଏହି ପ୍ରତିଷ୍ଠିତ ଦ୍ୱୈତବୋଧକ ଦର୍ଶନର ପରିଭାଷା ବିଶେଷରେ ଧରି ନିଜର ମହାସମନ୍ୱୟ ଓ ସମୁଚ୍ଚୟଦ୍ୟୋତକ ଈଶ୍ୱର ନିତ୍ୟ ସତ୍ୟତାରେ କ୍ଷର ଅକ୍ଷର ସମନ୍ୱିତ ପୂର୍ଣ୍ଣ 'ପୁରୁଷୋତ୍ତମ' ତତ୍ତ୍ୱରେ ବେଦାନ୍ତ ପ୍ରଚାର କରିଛନ୍ତି ।

## ସଂନ୍ୟାସରେ ଯୋଗ ସାଧିବା ଓ ଜୀବନ୍ମୁକ୍ତତା—

ଏବେ ତତ୍ତ୍ୱ ବିଶ୍ୱରରେ ମାନବ ଚିନ୍ତାର ବିକାଶ ଓ ପ୍ରଗତିର ସୂଚନାରେ ବୁଝାଗଲା । ବେଦ ଓ ଗୀତାତତ୍ତ୍ୱରେ ତାହାର ପ୍ରକାଶ ଓ ଉପଯୋଗ ସମ୍ବନ୍ଧରେ

ସଙ୍କେତ ମଧ୍ୟ ଦିଆଗଲା । ମୋଟ କଥା, ଏହି ଶୂନ୍ୟରୁ ସତ୍ୟ ପ୍ରତିଷ୍ଠାରେ ଗୀତାର ସମାଧାନ ସମୀଚୀନ, ସୁନ୍ଦର ଓ ଶାନ୍ତ । ଏହା ବିଶ୍ୱର ପୂର୍ଣ୍ଣ ଧାରଣା । ପୁଣି ଏଇ ଧାରଣାରେ ସାଧନାଦି ଯେ ପ୍ରକାର ବିଷୟ ଆଲୋଚନା କରାଯାଇଛି, ସେଥିରୁ ମଧ୍ୟ ବୁଝାଯିବ ଯେ ଗୀତାର 'ଯୋଗ' ବା ସାଧନ ପନ୍ଥାରେ ତତ୍ତ୍ୱ ତଥା ଉପଯୋଗର ପୂର୍ଣ୍ଣ ସମନ୍ୱୟ ଓ ସମୁଚ୍ଚୟରେ ସୁନ୍ଦର ସମାବେଶ । ମାତ୍ର ବେଦତତ୍ତ୍ୱ ଓ ସାଧନା ବିକାଶ ଦେଖିଲେ ସ୍ପଷ୍ଟ ଜଣାଯାଏ, ଶୂନ୍ୟରୁ ପୂର୍ଣ୍ଣକୁ ତତ୍ତ୍ୱ ଉଠିବାରେ ପରେ କପିଳ ପ୍ରବର୍ତ୍ତିତ ସାଂଖ୍ୟତତ୍ତ୍ୱ ଓ ତଦନୁସୃତ ଯୋଗସାଧନା ହିଁ ପ୍ରଥମ ଓ ପ୍ରତିଷ୍ଠିତ ଧାରଣା ଓ ପନ୍ଥା । ସେଇ ଧାରଣାର ପ୍ରଭାବରେ ସେଇ ପନ୍ଥାର ପ୍ରତିଷ୍ଠା ମଧ୍ୟ କାଳେ କାଳେ ବେଦଧର୍ମୀଙ୍କୁ ଅଭିଭୂତ କରି ରଖିଛି । ସଙ୍ଗେ ସଙ୍ଗେ ଭାରତରେ ବୌଦ୍ଧ-ଧର୍ମାଦିରେ ଶୂନ୍ୟତତ୍ତ୍ୱ ଓ ସାଧନପରଂପରା ଏ ଦେଶରେ ରହିଥିବାର ମଧ୍ୟ ଏହାର ଅନ୍ୟତମ ମୁଖ୍ୟ କାରଣ । ଏଥିପାଇଁ ବେଦାନ୍ତ ତତ୍ତ୍ୱର ନାମ ମଧ୍ୟ ସାଂଖ୍ୟ ବା ଜ୍ଞାନ । ଯେ କୌଣସି ଜ୍ଞାନତତ୍ତ୍ୱର ନାମ ମଧ୍ୟ ସାଂଖ୍ୟ । ଶଙ୍କରାଚାର୍ଯ୍ୟଙ୍କ ପରି ଅଦ୍ୱୈତ ବେଦାନ୍ତ-ବାଦୀ ମଧ୍ୟ ମାୟା ନାମରେ ଜଗତକୁ ଶୂନ୍ୟ କରି ନିଜର ଅଦ୍ୱୈତ ମତ ପ୍ରତିଷ୍ଠା କରିବାର ଉଦ୍ୟମ କରିଚନ୍ତି । ପୁଣି କର୍ମ ଛାଡ଼ି ସନ୍ନ୍ୟାସ କରି ଯୋଗ ସାଧିବା ମଧ୍ୟ ଏକପ୍ରକାର ଗୀତାଧର୍ମ ଛଡ଼ା ସର୍ବତ୍ର ବିଭିନ୍ନ ଭାବରେ ସ୍ୱୀକୃତ ହୋଇଅଛି । ଶୂନ୍ୟରେ କର୍ମହୀନତା ସ୍ପଷ୍ଟ । ପୁଣି ସାଂଖ୍ୟବାଦରେ କର୍ମ ପ୍ରକୃତିର ଗୁଣ ବ୍ୟାପାର । ତେଣୁ କର୍ମ ଛାଡ଼ିବାରେ ଶୂନ୍ୟତାର ନିର୍ବାଣ ବା ପ୍ରକୃତିରୁ କୈବଲ୍ୟ ଲୋଡ଼ିବା ଏକାନ୍ତ ସମୀଚୀନ ପନ୍ଥା । ମାତ୍ର ଶଙ୍କରାଚାର୍ଯ୍ୟଙ୍କ ପରି ଅଦ୍ୱୈତ ବେଦାନ୍ତବାଦୀ ଯେ କାହିଁକି ଯାଗଯଜ୍ଞାଦି ଗୌଣକର୍ମ ମାତ୍ରରେ ଦିନାକେତେ ଲାଗି ଚିତ୍ତକୁ ସେଥିରେ ଶୁଦ୍ଧ ବା ଆନୁଷ୍ଠାନିକତାରେ ନୀରସ ଓ କୃତ୍ରିମ ଭାବରେ ନିଷ୍କାମ କରି ପରେ କର୍ମ ଛାଡ଼ି ବ୍ରହ୍ମଧ୍ୟାନ କରିବାର ଉପଦେଶ ଦେଇଚନ୍ତି, ତାହା ବୁଝିବା ଦୁଷ୍କର । ସାଂଖ୍ୟବାଦୀ ପୁଣି କହନ୍ତି, କର୍ମାଦିର ତ୍ୟାଗ ହେତୁ ସାତ୍ତ୍ୱିକ ବୁଦ୍ଧି ଆସିଗଲେ ପୁରୁଷର ଏଇ ଦେହରେ କୈବଲ୍ୟ ଲାଭ ହୋଇଯାଏ । ପରେ ଉପମାରେ କହିଚନ୍ତି, ତା ଉତ୍ତାରୁ କୁମ୍ଭାର ଚକ ବୁଲାଇ ଛାଡ଼ିଦେଲେ ଯେପରି ଘଟ କାର୍ଯ୍ୟ ପରେ ମଧ୍ୟ ଚକଟି କିଛି ସମୟ ବୁଲୁଥାଏ, କେବଳ ପୁରୁଷ ସେଇପରି ଜୀବନ ଶେଷ ଯାଏ ଦେହ ବା ପ୍ରକୃତିର ସମ୍ପର୍କରେ ମାତ୍ର ଥାଏ । ଶଂକରାଦିଙ୍କ ଜୀବନ୍ମୁକ୍ତିର ଧାରଣା ଠିକ୍ ସେଇପରି ।

## ଗୀତାର ଯୋଗ ଓ ମୁକ୍ତି—

କିନ୍ତୁ ଗୀତାରେ କର୍ମ ତ୍ୟାଗ ନାହିଁ । ଯୋଗରେ ମୁକ୍ତ ଲୋକ ସର୍ବଦା ମୁକ୍ତ । ଜୀବନରେ ସେ 'ବ୍ରହ୍ମଭୂତ' । ମଲେ ତାର 'ବ୍ରହ୍ମନିର୍ବାଣ' । ଜୀବନରେ ତଥା ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଏଇପରି 'ପୁରୁଷୋତ୍ତମ' ଭାବରେ ଯୋଗ-ଯୁକ୍ତ ଥିବା ଲୋକ ବ୍ରହ୍ମ ଭାବ ପାଏ ବା ବ୍ରହ୍ମରେ ଲୀନ ହୁଏ । (୨.୭୨; ୭ ୩୦; ୮.୮, ୧୦; ୯. ୩୩) ।

## ସାଂଖ୍ୟର ପରିଭାଷା ଧରି ଗୀତାର ତତ୍ତ୍ୱ ସମାଧାନ—

ଗୀତା ମହାସତ୍ୟର ସମ୍ୟକ୍ ସମାଧାନର ପୀଠ; କିନ୍ତୁ ସେଇ ବେଦର ସାଂଖ୍ୟତତ୍ତ୍ୱ । ପରେ ସେଇ ତତ୍ତ୍ୱ କପିଳ ନିଜ ସାଂଖ୍ୟଶାସ୍ତ୍ରରେ ପ୍ରଚାର କରିଥିଲେ । ତେଣୁ ଗୀତାରେ ସାଂଖ୍ୟ ପରିଭାଷାରେ ହିଁ ତତ୍ତ୍ୱର ବ୍ୟାଖ୍ୟା ମୁଖ୍ୟତଃ ଦେଖାଯାଏ । ତ୍ରୟୋଦଶ ଅଧ୍ୟାୟରେ ସ୍ପଷ୍ଟତଃ ଏଇ ପରିଭାଷା ନିଜ ବିଶ୍ୱତତ୍ତ୍ୱ ବ୍ୟାଖ୍ୟାରେ ଗୀତା ବ୍ୟବହାର କରି କ୍ଷେତ୍ର କ୍ଷେତ୍ରଜ୍ଞରେ ବିପର୍ଯ୍ୟସ୍ତି ଆରମ୍ଭ କରିଛନ୍ତି । ମାତ୍ର ସଙ୍ଗେ ସଙ୍ଗେ ଦେଖାଇ ଦେଇଛନ୍ତି, କ୍ଷେତ୍ର କ୍ଷେତ୍ରଜ୍ଞ ଅଲଗା ଅଲଗା ନୁହନ୍ତି । "କ୍ଷେତ୍ରେ କ୍ଷେତ୍ରେ ମୁଁ କ୍ଷେତ୍ରଜ୍ଞ ରୂପେ ଥିଲେ ମଧ୍ୟ କ୍ଷେତ୍ର ଓ କ୍ଷେତ୍ରଜ୍ଞର ଯେ ସମୁଚ୍ଚୟ ଜ୍ଞାନ ସେଇ ଏକା ସେ ସମ୍ବନ୍ଧରେ ଯଥାର୍ଥ ଜ୍ଞାନ" ( ୧୩. ୨ ) ବୋଲି କହିଛନ୍ତି । ତା ପରେ କ୍ଷେତ୍ରକୁ ପ୍ରକୃତିତତ୍ତ୍ୱର ବିକୃତି ବା ଗୁଣ ବିକାର ରୂପେ ଚିହ୍ନାଇ ଦେଇ (୧୩. ୫, ୬), ଏଇ କ୍ଷେତ୍ରର ଜ୍ଞାନ ଜ୍ଞାନ ନୁହେଁ ଏହା ବୁଝାଇବା ପାଇଁ ଆତ୍ମଜ୍ଞାନର ସାଧନା ସବୁ ଯେ ଯଥାର୍ଥ ଜ୍ଞାନ ତା କହିଛନ୍ତି (୧୩. ୭-୧୧) । ଶୂନ୍ୟବାଦ ଓ ସାଂଖ୍ୟବାଦର ଜ୍ଞାନ ପରିଭାଷା ଗ୍ରହଣ କରି ସୂଚନାରେ କହି ଦେଇଛନ୍ତି, ଜଗତର ପ୍ରତୀତି ଜ୍ଞାନ ନୁହେଁ, କିମ୍ବା କ୍ଷେତ୍ରର ଗୁଣ ବ୍ୟାପାର ଜ୍ଞାନ ନୁହେଁ । ଏହା କ୍ଷେତ୍ରର ବା ପ୍ରକୃତିର ଧର୍ମ ନୁହେଁ । ପ୍ରକୃତି ଯୋଗ ହେତୁ ଜ୍ଞାନ ହୁଏ, ତାହା ମଧ୍ୟ ଠିକ୍ ନୁହେଁ । ଆତ୍ମଜ୍ଞାନର ଉଦ୍ୟମ ହିଁ ଜ୍ଞାନ । ପ୍ରକୃତିର ଧର୍ମ ଠିକ୍ ବୁଝି ସେଇ ଅନୁସାରେ କର୍ମ ବିଧାନ କରିବା ହିଁ ଜ୍ଞାନ । ଏହା ହିଁ ଏଠାରେ କହିବାର ଅଭିପ୍ରାୟ । ତା ପରେ 'ଜ୍ଞେୟ' ଅର୍ଥରେ ବୁଝାଇଛନ୍ତି, ଏହା ପ୍ରକୃତି ନୁହେଁ । ଏହା ଅନାଦି ହେଲେ ହେଁ ଅନାଦି ପ୍ରକାଶ ପରି ସତ୍ ବା ପ୍ରତୀତ ନୁହେଁ, କି ଅନାଦି ପ୍ରକୃତି ପରି ଅସତ୍ ବା' ଅବ୍ୟକ୍ତ ନୁହେଁ କିମ୍ବା ଏହା ପ୍ରକୃତି ପରି ସଦ୍‌ବସ୍ତୁ ନୁହେଁ କି ଶୂନ୍ୟ ପରି ଅସଦ୍ ବସ୍ତୁ ବା ବସ୍ତୁର ଅଭାବ ନୁହେଁ (୧୩. ୧୨) । ତହିଁ ଉତ୍ତାରୁ ସେଇ ଜ୍ଞେୟର ବର୍ଣ୍ଣନାରେ ଦେଖାଇଛନ୍ତି, ଏହା କ୍ଷର ଅକ୍ଷର ତଥା ଜ୍ଞାନ-ବିଜ୍ଞାନର ସମୁଚ୍ଚୟ ପରମେଶ୍ୱର । ଏହାରି ଇନ୍ଦ୍ରିୟମାନ ସର୍ବତ୍ର, ଏ ବିଶ୍ୱଦେହ ଓ ସର୍ବବ୍ୟାପୀ । ଏହାର ଇନ୍ଦ୍ରିୟଗୁଣ ସର୍ବତ୍ର ଥିଲା ପରି ଲାଗୁଛି; ମାତ୍ର ଏହାର ଇନ୍ଦ୍ରିୟ ନାହିଁ, ଏସବୁ ସତ୍ତ୍ୱା ମଧ୍ୟ ସବୁଥିରୁ ଅଲଗା, ଏ ନିର୍ଗୁଣ ବା ଗୁଣାତୀତ, ଅଥଚ ଗୁଣର ଭୋକ୍ତା । ଏଇ ଭିତରେ ଅଧ୍ୟାତ୍ମ ଏଇ ବାହାରେ ପ୍ରକାଶ—ଇତ୍ୟାଦି (୧୩. ୧୩-୧୭) ।

## ଗୀତାର ପ୍ରକୃତି ପୁରୁଷ—

ଏହା ପରି ଠିକ୍ ସାଂଖ୍ୟବାଦର ସ୍ପଷ୍ଟ ପରିଭାଷାରେ ବୁଝାଇ କୁହାଯାଇଛି, ପ୍ରକୃତି ପୁରୁଷ ଦୁହେଁ ଅନାଦି । ବିକାର ଓ ଗୁଣମାନେ ପ୍ରକୃତିରୁ ହୁଅନ୍ତି । କାର୍ଯ୍ୟ ବା କ୍ଷେତ୍ର, କରଣ ବା ତାର ସାଧନର କର୍ତ୍ତା, ପ୍ରକୃତି । ପୁରୁଷ କେବଳ ସୁଖ ଦୁଃଖର

ଭୋକ୍ତା । ପୁରୁଷ ପ୍ରକୃତିର ସଂଯୋଗରେ ରହିଲେ ପ୍ରକୃତିଗୁଣ ଭୋଗ କରେ । ସେହି ଗୁଣସଂଗ ବା ବୃଦ୍ଧିର 'ଭାବ'ରୁ ପୁରୁଷର ଜନ୍ମ ଜନ୍ମାନ୍ତର ହୁଏ (୧୩.୧୯-୨୧) ଏଇଠାରେ ସମାଧାନ କରି କହିଲେ, ଏହି ଦେହରେ ଯେ ସେ ପାଖରେ (ପ୍ରକୃତି ପାଖେ) ରହି ଦେଖୁଛି, ପ୍ରକୃତିକୁ ନିଜ କ୍ରିୟାରେ ମନା ନକରି ଅନୁମତି ଦେଉଛି ପ୍ରକୃତି ଧର୍ମ ପାଳନ କରୁଛି (ଭର୍ତ୍ତା) ଓ ପ୍ରକୃତି କ୍ରିୟାର ସୁଖ ଦୁଃଖ ଭୋଗ କରୁଛି ବୋଲି କୁହାଗଲେ ମଧ୍ୟ, ପୁଣି ଏହାକୁ ହିଁ ପରମାତ୍ମା ଓ ସର୍ବକର୍ମର ନିୟାମକ ପରମ ପୁରୁଷ ବୋଲି କୁହାଯାଏ ('ଚ ଅପି ଉକ୍ତଃ'—୧୩. ୨୨) । ଏଠାରେ ପୁରୁଷକୁ ପର (ଶ୍ରେଷ୍ଠ, ପରମ) ପୁରୁଷ ବୋଲି କହିବାର ତାତ୍ପର୍ଯ୍ୟ ସ୍ପଷ୍ଟ । ସେ କେବଳ ଉପଦ୍ରଷ୍ଟା, ପ୍ରକୃତିର ଭର୍ତ୍ତା ଓ ପ୍ରକୃତି କ୍ରୀଡ଼ାର ଭୋକ୍ତା ନୁହନ୍ତି, ସେ ମଧ୍ୟ ପ୍ରକୃତିର ନିୟାମକ ।

ଏଇପରି ପୁରୁଷଙ୍କୁ ପ୍ରକୃତି ଓ ଗୁଣ ସହିତ ଯେ ଜାଣେ, ସେ ସବୁ କର୍ମରେ ଲାଗି ରହି ମଧ୍ୟ ମୁକ୍ତ । ତାର ପୁନର୍ଜନ୍ମ ନାହିଁ (୧୩. ୨୩) । ଧ୍ୟାନ, ଜ୍ଞାନ ଓ କର୍ମରେ ଲାଗି ଲୋକେ ବିଭିନ୍ନ ସାଧନାରେ ଆତ୍ମାରେ ତାଙ୍କୁଇ ଆତ୍ମାରୂପେ ଦେଖନ୍ତି (୧୩.୨୪) । ଶୁଣିକରି ମଧ୍ୟ କେହି ତାଙ୍କୁ ଉପାସନା କରନ୍ତି (୧୩ ୨୫) । ଏଇ କ୍ଷେତ୍ର କ୍ଷେତ୍ରଜ୍ଞ ସଂଯୋଗରୁ ସବୁପ୍ରକାର ପ୍ରକାଶ ହୁଏ ସତ (୧୩ ୨୬), ମାତ୍ର ସବୁ ଭୂତରେ ସମାନ ପୂର୍ଣ୍ଣଭାବରେ, ସମସ୍ତ କ୍ଷରରେ ପୁଣି ଅକ୍ଷର ଭାବରେ ତାଙ୍କୁ ବୁଝିବାର କଥା (୧୩. ୨୭) । ଈଶ୍ୱର ସର୍ବତ୍ର ସମାନ । ପ୍ରକୃତିରେ ସବୁ ପ୍ରକାର କର୍ମ ହୁଏ, ଆତ୍ମା ଅକର୍ତ୍ତା (୧୩. ୨୯) । ଏହା ସ୍ପଷ୍ଟ ସାଂଖ୍ୟପରିଭାଷା ହେଲେ ହେଁ ସବୁ ଭୂତ ବା ପ୍ରକାଶ ଏକ ତତ୍ତ୍ୱର ବିସ୍ତାର—ପ୍ରକୃତି ବୋଲି ପୁରୁଷରୁ ଅଲଗା ଆଉ ଗୋଟିଏ ବସ୍ତୁର ବିସ୍ତାର, ଏ ବିଶ୍ୱ ନୁହେ । ଏହା ବୁଝିଲେ ହିଁ ବ୍ରହ୍ମ ଠିକ୍ ବୁଝାଯାଏ (୧୩.୩୦) । ସବୁ ପ୍ରକାଶ ଆତ୍ମାର ପ୍ରକୃତିରେ ହୁଏ । ପ୍ରକୃତି ତତ୍ତ୍ୱ ହିସାବରେ ଆତ୍ମାରୁ ଅଲଗା ନୁହେ । ଏଇ ଅଭିପ୍ରାୟ । ଅନାଦି ଓ ନିର୍ଗୁଣ ଓ ବିକାରହୀନ ହେବାର ଅର୍ଥ ହେଉଛି, ପରମାତ୍ମା ଶରୀର ବା ପ୍ରକାଶ ମଧ୍ୟରେ ସର୍ବତ୍ର ଥିଲେ ମଧ୍ୟ କିଛି କରେ ନାହିଁ; କାରଣ କାହିଁରେ ଲିପ୍ତ ନୁହେ (୧୩.୩୧) । କିପରି ? ସେ କଥା ଉଦାହରଣରେ ବୁଝାଇଛନ୍ତି । ସର୍ବତ୍ର ଆକାଶ ଅଛି; ମାତ୍ର ସେ କାହିଁରେ ଲିପ୍ତ ନୁହେ । ଜ୍ୟୋତି ସବୁ ପ୍ରକାଶ କରୁଛି, ମାତ୍ର ସେ କାହିଁରେ ଲିପ୍ତ ନୁହେ (୧୩.୩୨, ୩୩) ମୁଁ ମୋର ମତେ—ସବୁଥିରେ ମୁଁ ବା ଆତ୍ମା ସେଇଥିରେ ଅଛି । ସେଇ ଆତ୍ମା ସବୁ କର୍ମର ନିୟାମକ ଓ ପାଳକ, ସବୁ କର୍ମର ପୀଠ, ସବୁ କର୍ମର ବିସ୍ତାର ସେଇଠାରୁ; ମାତ୍ର ସେ କାହିଁରେ ଲିପ୍ତ ନୁହେ । ତେଣୁ କ୍ଷେତ୍ର କ୍ଷେତ୍ରଜ୍ଞଙ୍କର ଯେଉଁ ଅନ୍ତର ବା ଭେଦ କଥା କୁହାଯାଏ, ତାକୁ ଜ୍ଞାନ ଦୃଷ୍ଟିରେ ଏଇପରି ସମନ୍ୱୟ ଓ ସାମଞ୍ଜସ୍ୟରେ ବୁଝି, ଶାସ୍ତ୍ରରେ ଥିବା ଭୂତପ୍ରକୃତି ମୋକ୍ଷ ବା ପ୍ରକାଶ ପ୍ରକୃତିରୁ ଆତ୍ମାର ପାର୍ଥକ୍ୟ ବୁଝିବାକୁ ହୁଏ । ତେବେ ଯାଇ ପରମେଶ୍ୱର ଠିକ୍ ଧାରଣାରେ ଆସନ୍ତି (୧୩.୩୪) । କହିବାର ଅଭିପ୍ରାୟ, ପୁରୁଷ ଓ ପ୍ରକୃତିକୁ ଅଲଗା ଅଲଗା ଯୋଡ଼ିଏ ତତ୍ତ୍ୱ ବୋଲି ବୁଝି, ପ୍ରକୃତିରୁ ପୁରୁଷକୁ

ଖସାଇବାରେ ଯେଉଁମାନେ କୈବଲ୍ୟ-ମୁକ୍ତି ଦେଖନ୍ତି, ସେମାନେ ଠିକ୍ ବୁଝନ୍ତି ନାହିଁ । ସେମାନେ ପରମେଶ୍ୱର ପୁରୁଷୋତ୍ତମଙ୍କୁ ଧାରଣା କରନ୍ତି ନାହିଁ । ଯେଉଁମାନେ ପ୍ରକୃତିକୁ ଆତ୍ମାର ପ୍ରକୃତି ଓ ସମସ୍ତ ପ୍ରକାଶକୁ ସେଇ ଆତ୍ମାର ପ୍ରକାଶ ବୋଲି ବୁଝନ୍ତି, ଅଥଚ ଆତ୍ମା ପୁଣି ସେଥିରେ ନିର୍ଲିପ୍ତ ଥିବାର ଦେଖନ୍ତି, ସେଇମାନେ ଏକା ପରମେଶ୍ୱରଙ୍କୁ ଠିକ୍ ଧାରଣା କରନ୍ତି ।

## ଗୀତାରେ ପୁଣି ଜ୍ଞାନର ଶ୍ରେଷ୍ଠ ଜ୍ଞାନ—ତ୍ରିଗୁଣ—

ଏସବୁ କହି ମଧ୍ୟ ତଥାପି ସାଂଖ୍ୟବାଦର ଦ୍ୱୈତ ସମାଧାନରେ ତୁଟିଲା ନାହିଁ ବୋଲିପୁଣି ଶଂକା କରି ୧୪ଶ ଅଧ୍ୟାୟରେ ଭଗବାନ୍ ପୁଣି ଏଇ ଜ୍ଞାନର ଯେ ଉତ୍ତମ ଜ୍ଞାନ (୧୪.୧), ଅର୍ଥାତ୍, ଏଇ ଦ୍ୱୈତର ଯେ ଯଥାର୍ଥ ଜ୍ଞାନ, ଯେଉଁ ଜ୍ଞାନଚକ୍ଷୁରେ କ୍ଷେତ୍ର କ୍ଷେତ୍ରଜ୍ଞର ଅନ୍ତର ବା ଭେଦ ବୁଝିବାକୁ ହେବ (୧୩.୩୪), ଯେଉଁ ଜ୍ଞାନର ମୋକ୍ଷ-ପରାୟଣ ମୁନିମାନେ ସିଦ୍ଧି ପାଆନ୍ତି (୧୪.୧), ସେଇ ତତ୍ତ୍ୱଜ୍ଞାନ ସ୍ପଷ୍ଟ କରି ବୁଝାଇବାକୁ କହିଲେ । ମହତ୍ ବ୍ରହ୍ମ (ପ୍ରକୃତି) ମୋର ପ୍ରକାଶ ସ୍ଥାନ ବା ପ୍ରକାଶ ସ୍ୱରୂପର ଅଧିଷ୍ଠାନ (ଯୋନି), ମୁଁ ସେଇଥିରେ ଗର୍ଭଧାରଣ କରିବାରେ ବା ସେହି ସ୍ୱରୂପର ବିକାଶ କରିବାରେ ସର୍ବ ଜଗତର ପ୍ରକାଶ ହୁଏ । ଉପମାରେ ପୁଣି କହିଲେ, ଜଗତର ମୁଁ ବୀଜପ୍ରଦ ପିତା ଓ ବ୍ରହ୍ମ (ପ୍ରକୃତି) ତାର ମହାଯୋନି ବା ମାତା (୧୪.୩,୪) । ଏଇ ପ୍ରକୃତିରୁ ଗୁଣର ବିକାଶ । ଏଇ ଗୁଣ ବା ବିକାର ହିଁ ସବୁ ବୋଲି ବିଗ୍ରହ ସେଥିରେ ଲିପ୍ତ ହେବାରେ ଦେହରେ ଦେହୀ ଆତ୍ମା ବନ୍ଧା ହୋଇ ପଡ଼େ (୧୪.୫) । ଏହା ପରେ ସତ୍ତ୍ୱ ରଜ ତମ ତିନିଗୁଣର ବିଶେଷ ବର୍ଣ୍ଣନ କରି ସାରି ପୁଣି ଶେଷକୁ କହିଲେ, ଏଇ ଗୁଣ ହିଁ ବିକାରରେ ସବୁ କର୍ମର ସାକ୍ଷାତ୍ କର୍ତ୍ତା । ମୁଁ ଏ ଗୁଣର ଅତୀତ ବା ଅଲିପ୍ତଙ୍କୁ ଯେ ଜାଣେ, ସେଇ ଏକା ଠିକ୍ ଦେଖି ମତେ ବୁଝେ (୧୪.୧୯) ଏଇ ଗୁଣ ଦେହରୁ ହୁଏ । ସ୍ୱଭାବର ଏ ଗୁଣମାନେ ଏଇପରି ନିଜ ନିଜର ବିକାଶ ଧର୍ମରେ ଲାଗିଛନ୍ତି ବୋଲି ଆତ୍ମା ବୁଝିଗଲେ, ଗୁଣର ହେଉଥିବା ଜନ୍ମ ମୃତ୍ୟୁ ପ୍ରଭୃତିରୁ ସେ ମୁକ୍ତ ହୁଏ ବା ସେଥିରେ ଲିପ୍ତ ହୋଇ ପଡ଼େ ନାହିଁ (୧୪.୨୦) । ସେଠାରୁ ଅର୍ଜୁନ ଏଇପରି ତ୍ରିଗୁଣାତୀତ ଲୋକ କିପରି ଜଗତରେ ଆଗ୍ରହ ବ୍ୟବହାରରେ ଜଣାପଡ଼ନ୍ତି ବୋଲି ପଚାରିବାରୁ ଭଗବାନ କହିଚନ୍ତି, "ସେ ଲୋକ ପ୍ରକାଶରେ, କର୍ମରେ ବା ଜ୍ଞାନହୀନତା (ମୋହ)ରେ ଏ ପାଖ ସେ ପାଖ ହୁଏ ନାହିଁ । ସେ ସବୁ ସ୍ୱଭାବଜନିତ ବୋଲି ବୁଝି ନିର୍ଲିପ୍ତ ହୁଏ (୧୪.୨୨) । ଗୁଣର ବିକାର ଗୁଣରେ ଚାଲିଚି ('ଗୁଣ ବର୍ତ୍ତନ୍ତେ'— 'ଗୁଣା ଗୁଣେଷୁ ବର୍ତ୍ତନ୍ତେ') ବୋଲି ସେ ବିଚଳିତ ନ ହୋଇ ଠିକ ଥାଏ (୧୪.୨୩)" । ଏଇପରି ଯୋଗୀ ସମସ୍ତ ଲକ୍ଷଣରେ ତାକୁ ଚିହ୍ନାଇ, ଶେଷକୁ ସ୍ପଷ୍ଟ କହିଚନ୍ତି, "ବ୍ରହ୍ମ ବା ପ୍ରକୃତିର ପ୍ରତିଷ୍ଠା ବା ଅଧିଷ୍ଠାନ ମୁହିଁ, ଅମୃତ ଅବ୍ୟୟର ପ୍ରତିଷ୍ଠା ମୁହିଁ" ଶାଶ୍ୱତ ବିଶ୍ୱଧର୍ମର

ପ୍ରତିଷ୍ଠା ମୁଇ; ତେଣୁ ଏକାନ୍ତ ସୁଖ ବା 'ଦୁଃଖାନ୍ତ'ର ପ୍ରତିଷ୍ଠା ମୁହିଁ" (୧୪.୨୭) ✻, ଅର୍ଥାତ୍ ବ୍ୟକ୍ତ ବା ନିତ୍ୟ ପରିଣାମର କ୍ଷଣିକତାରେ ଯେଉଁ ବ୍ରହ୍ମ ବା ପ୍ରକୃତି ପ୍ରକାଶ ଧର୍ମରେ ସ୍ଫୁରିତ, ସେ ମୋର ସ୍ୱରୂପ; ପୁଣି ଅବ୍ୟକ୍ତ ଓ ଅମୃତ (ଅକ୍ଷର ବ୍ରହ୍ମ) ବି ମୋର ସ୍ୱରୂପ; ବିଶ୍ୱଧର୍ମ ଓ ନିତ୍ୟାନନ୍ଦ ମୋର ସ୍ୱରୂପ । ମୁଁ ଯେପରି କର୍ମର ପ୍ରବର୍ତ୍ତକ ସେଇପରି ମଧ୍ୟ କର୍ମରେ ନିର୍ଲିପ୍ତ ।

## ପ୍ରକୃତି-ପୁରୁଷ ଓ ଧର୍ମ—

ଏଇ ବ୍ରହ୍ମ, ଅମୃତ ଓ ଧର୍ମ—ଏଇ ତିନୋଟି ଗୀତାର 'ଜ୍ଞାନାନାଂ ଜ୍ଞାନମୁତ୍ତମଂ' (୧୪.୧) ବା ସବୁ ଜ୍ଞାନର ଶ୍ରେଷ୍ଠ ଜ୍ଞାନ ବୋଲି ବୁଝିବାକୁ ହେବ । ଏଇ ବ୍ରହ୍ମର ଗୁଣ କିସ୍ଥାକୁ ବିଶ୍ୱ ବୋଲି ନ ବୁଝି ତାର ଆର ପାଖ ଲେଉଟାଇ ଅମୃତ ବ୍ରହ୍ମ ଦେଖିବାକୁ ହେବ । ଏଇ କଥାକୁ ପୁଣି ସପ୍ତମ ଓ ଅଷ୍ଟମ ଅଧ୍ୟାୟରେ କ୍ଷର ବ୍ରହ୍ମ ବା ବିଜ୍ଞାନ ଓ ଅକ୍ଷର ବ୍ରହ୍ମ ବା ଜ୍ଞାନଦୃଷ୍ଟିରେ କହିଛନ୍ତି । ଦେହରେ ଯାହା 'କ୍ଷେତ୍ରଜ୍ଞ' ବିଶ୍ୱରେ ତାହା ଅକ୍ଷର ବ୍ରହ୍ମ । ବିଶ୍ୱହିଁ ବିଶ୍ୱପୁରୁଷର ଦେହ । ଏହା ହିଁ ବିଜ୍ଞାନ ବା ପ୍ରଗତିର ସ୍ପଷ୍ଟ ଜ୍ଞେୟ । ଏଇ ଦୁଇ ତତ୍ତ୍ୱର ପୁଣି ସମୁଚ୍ଚୟରେ 'ପୁରୁଷୋତ୍ତମ' ବୁଝାଇ ଯଥାର୍ଥ ବିଶ୍ୱର ସମ୍ପୂର୍ଣ୍ଣ ତତ୍ତ୍ୱ ଧାରଣା ବୋଲି ୧୫ଶ ଅଧ୍ୟାୟରେ ବୁଝାଇଛନ୍ତି (ବିଶେଷରେ ୧୫.୧୬-୧୯ ଦେଖ) । ଏହାକୁ ହିଁ ଭଗବାନ୍ 'ଗୁହ୍ୟତମ ଶାସ୍ତ୍ର' ବୋଲି କହିଛନ୍ତି (୧୫.୨୦) । ଏହା ଗୁହ୍ୟତମ କାହିଁକି ନା, ଏହା ରହସ୍ୟମୟ, ସହଜରେ ବୋଧଗମ୍ୟ ନୁହେଁ । ବୁଦ୍ଧିମାନ୍ ଏକା ଏହା ଜାଣିଲେ, କୃତକୃତ୍ୟ (ବୁଦ୍ଧ ବା ମୁକ୍ତ) ହୁଏ । ଏଇ କୃତକୃତ୍ୟ ଶବ୍ଦ ପୁଣି ସାଂଖ୍ୟବାଦର ପରିଭାଷା । ସାଂଖ୍ୟବାଦୀ କହନ୍ତି, ପ୍ରକୃତି ମୋକ୍ଷରେ ପୁରୁଷ 'କୃତକୃତ୍ୟ' ହୁଏ ।

## ଧର୍ମ—

ଏହା ଛଡ଼ା 'ଧର୍ମ' ବା 'ସ୍ୱଭାବନିୟତ କର୍ମ' କଥା ଭଗବାନ ସବିଶେଷ କହିଚନ୍ତି । ତୃତୀୟ ଅଧ୍ୟାୟରେ ଠିକ୍ ବୈଦିକ ଯଜ୍ଞର ପରେ ପ୍ରକାଶ ପାଇଥିବା ମୀମାଂସକ ପରିଭାଷାର 'ଯଥାର୍ଥ' କର୍ମ ରୂପ ଏହାର ବ୍ୟାଖ୍ୟା ଆରମ୍ଭ କରି (୩.୯ ଓ ତାର ବ୍ୟାଖ୍ୟା ସୂଚନା ଦେଖ ) ସେଠାରୁ ବୈଦିକ ପରମ୍ପରାର କର୍ମ-ଯଜ୍ଞ-ପର୍ଜନ୍ୟ-ଅନ୍ନର ଚକ୍ରରେ

---

✻ ଏ ଶ୍ଲୋକରେ ବ୍ରହ୍ମ ବୋଇଲେ ପ୍ରକୃତି—ଆତ୍ମା ବା ଦେହୀ ନୁହେଁ । ୧୪.୪ 'ବ୍ରହ୍ମ' ଦେଖ । ଗ୍ରନ୍ଥ ଭାଗର ଶ୍ଲୋକରେ ଦିଆଯାଇଥିବା ଟୀକା ଓ ଅର୍ଥରେ ପାଣ୍ଡୁଲିପିର ସଂହରଣ ହେତୁରୁ ପ୍ରମାଦ ଘଟିଚି ଓ ତାହାର ସଂଶୋଧନ ହୋଇ ପାରି ନାହିଁ । ସେଠାରେ ଟୀକାରେ, "ଅହଂ [ବ୍ୟକ୍ତଶୀଳସ୍ୟ] ବ୍ରାହ୍ମଣଃ ଅବ୍ୟୟସ୍ୟ ଅମୃତସ୍ୟ........"; ପୁଣି ଅର୍ଥରେ "ମୁହିଁ [ପରିଣାମମୟ] ପ୍ରକୃତିର ଓ ଅବିକାରୀ ଅମୃତ ବା ନିତ୍ୟ ବ୍ରହ୍ମର" ଏଇପରି ହେବ ।

ଉଦାହରଣରେ ବ୍ୟାଖ୍ୟା କରି ପରେ ପୁଣି ୪ର୍ଥ ଅଧ୍ୟାୟରେ ସେହି ସଙ୍କର ଯଥାର୍ଥ ତତ୍ତ୍ୱକୁ ଭଲ କରି ଫିଟାଇ କହିଚନ୍ତି । ଏସବୁ ପୂର୍ବେ ନାନା ପ୍ରସଙ୍ଗରେ କୁହାଯାଇଛୁ । ଏଇ ଧର୍ମ ହିଁ ଗୀତାର ଯଥାର୍ଥ ଉପଦେଶ ଗିତା କହିଲେ ଚଳେ । ଏଇଥିପାଇଁ ବରଂ ମନୁଷ୍ୟ ମାତ୍ରର ଶାସ୍ତ୍ର । ଏହା ସାର୍ବଜନୀନ ।

## ଭୌତିକ ଅଦ୍ୱୈତବାଦ—

ଏଇଠାରେ ପ୍ରକରଣ ଶେଷକୁ ଆଉ ଗୋଟିଏ ଦୃଷ୍ଟିରେ ତତ୍ତ୍ୱ ବସ୍ତୁର ପ୍ରତି ଟିକିଏ ଲକ୍ଷ୍ୟ କରିବା ଦରକାର । କୁହାଯାଇଚି, ଏଇ ବ୍ରହ୍ମ ବା ବିକାରମୟ ପ୍ରକୃତି ଓ ତାର ଗୁଣକ୍ରିୟାକୁ ସବୁ ବୋଲି ନ ବୁଝି ତାର ଆର ପାଖେ ଅକ୍ଷର ବ୍ରହ୍ମକୁ ଦେଖି—ଏ ଦୁଇଟିର ସମୁଚ୍ଚୟରେ ପୁରୁଷୋତ୍ତମଙ୍କୁ ଧାରଣା କରିବାକୁ ହେବ । ଏହାହିଁ ଗୀତାର ତତ୍ତ୍ୱ । ମାତ୍ର ଖାଲି ଭ୍ରାନ୍ତିରେ ମାନବ ମୋହଗ୍ରସ୍ତ ହୋଇ ଯେ ଏହା କରେ, ତାହା ନୁହେ । କେବଳ ଆତ୍ମିକ ଅଦ୍ୱୈତବାଦ ପରି ମଧ୍ୟ ଗୋଟିଏ କେବଳ ଭୌତିକ ଅଦ୍ୱୈତ ତତ୍ତ୍ୱବାଦରେ ମାନବର ଚିନ୍ତା ଚଳେ । ଗୀତା ବୁଝିବାରେ ତାର ସାକ୍ଷାତ୍ ଉପଯୋଗ ନ ଥାଇପାରେ; ମାତ୍ର ଚିନ୍ତାର ତୁଳନାର ସେ ଅଂଶ ବା ବିଭିବଟି ନ ବୁଝିଲେ ଗୀତାର ଅବବୋଧରେ ତାହା ହୁଏତ କେତେବେଳେ ଆଘାତ ଘଟାଇ ପାରେ । ଏବେ ଇଉରୋପରେ ଏଇ ଭୌତିକ ଅଦ୍ୱୈତବାଦୀ ଦଳର ଖୁବ୍ ପ୍ରସର । ସେମାନେ କେତେ ଦ୍ରବ୍ୟସବୁ ରସାୟନରେ ଫିଟାଇ, ସେଥିରୁ ମୂଳ ବସ୍ତୁ ବାହାର କରନ୍ତି । ଆଗେ ଏଇ ମୂଳ ପଦାର୍ଥ ୭୦ ରୁ ୮୦ଟି ଥିଲା । ଏମାନଙ୍କର ପରମାଣୁହିଁ ଯଥାର୍ଥ ମୂଳ ବୋଲି ଧରା ଯାଉଥିଲା । ଭିନ୍ନ ଭିନ୍ନ ମୂଳ ପଦାର୍ଥର ପରମାଣୁ ପୁଣି ଭିନ୍ନ ଭିନ୍ନ ଗୁଣ ଓ ଓଜନର ବୋଲି ସ୍ଥିର କରାହୋଇଥିଲା । ସୁନା ରୁପା ଲୁହା ପ୍ରଭୃତି ଘନ, ପାରା ପରି ତରଳ ଓ ଉଦ୍‌ଜାନ, ଅମ୍ଳଜାନ ପରି ବାୟବୀୟ ମୂଳ ପଦାର୍ଥମାନ ଏଇ ଶାସ୍ତ୍ରରେ ଆବିଷ୍କୃତ ହୋଇଥିଲା । ଏବେ ସେଇ ରସାୟନ ଶାସ୍ତ୍ରର ଅନୁସନ୍ଧାନରେ ପ୍ରକାଶ ପାଇଚି, ଏଇ ପରମାଣୁ ମୂଳ ନୁହେ, କିଂବା ମୂଳ ବସ୍ତୁରେ ଭେଦ ନାହିଁ । ଦୁଇଟି ବିଭିନ୍ନ ପ୍ରକୃତିକ ବୈଦ୍ୟୁତିକ କଂପନ କ୍ରିୟାର ବିଭିନ୍ନ ସମବାୟରେ ଏସବୁ ବିଭିନ୍ନ ପରମାଣୁ ତିଆରି ହୁଏ । ପୁଣି ଅନୁସନ୍ଧାନ କରାଯାଉଚି, ଏଇ ଦୁଇ ପ୍ରକାର କଂପନର ଅଦ୍ୱୈତ ମୂଳ ଅଛି କି ନା । ଏଇ ଅଦ୍ୱୈତ ମୂଳ ହିଁ ସୃଷ୍ଟିର ପ୍ରକୃତି ବା ମୂଳ ପଦାର୍ଥ ଅଥବା ତତ୍ତ୍ୱ ବୋଲି ଅନୁମାନ କରାଯାଉଚି ।

## ପରମାଣୁବାଦ—

ମାତ୍ର ଏସବୁର ବ୍ୟାଖ୍ୟା ଏଠାରେ ସୁବୋଧ କରିବା ଦୁଷ୍କର ହୋଇପାରେ, ପୁଣି ଦରକାର ମଧ୍ୟ ନାହିଁ । ସବୁ ପ୍ରକାଶ, ଏହାହିଁ ଭୌତିକ ଅଦ୍ୱୈତର ମତ । ସେମାନଙ୍କ ମତରେ ଏଇ ପରମାଣୁର ସମବାୟରେ ବା ସୃଷ୍ଟି ମୂଳପଦାର୍ଥର

କ୍ରମପରିଣାମରେ ଦ୍ରବ୍ୟ, ମନ, ବୁଦ୍ଧି ଓ ଆତ୍ମା ପର୍ଯ୍ୟନ୍ତ ଗୁଣର ବିକାରରେ ପ୍ରକାଶ ପାଏ । ସାଂଖ୍ୟବାଦର ପ୍ରକୃତିଠାରୁ ଏହାର ପ୍ରଭେଦ ଏଇଠାରେ । ସାଂଖ୍ୟବାଦର ପ୍ରକୃତିରୁ ବୁଦ୍ଧି ପର୍ଯ୍ୟନ୍ତ ହୁଏ ସତ, ମାତ୍ର ଆତ୍ମା ବା ପୁରୁଷ ସେଥିରେ ସ୍ୱତନ୍ତ୍ର । ତେଣୁ ଏହା ଦ୍ୱୈତ—ଅଦ୍ୱୈତ ନୁହେ । ମାତ୍ର ଭୌତିକ ଅଦ୍ୱୈତୀମାନେ ବିଜ୍ଞାନପରୀକ୍ଷା ମନ୍ଦିରରେ ମନ, ବୁଦ୍ଧି, ଆତ୍ମା, ଏପରି କି ଇନ୍ଦ୍ରିୟ ମଧ୍ୟ ତିଆରି କରି ନାହାନ୍ତି । ହେଲେ ହେଁ ସେମାନେ ଜଳ ଅଙ୍ଗାର ମିଶାଇ ଚିନି ତିଆରି କରୁଚନ୍ତି । ସେଇପରି ଗୁଣ ପରିଣାମର ଉଦାହରଣ ଓ ସଙ୍କେତରେ ସେମାନେ ଆତ୍ମା ପର୍ଯ୍ୟନ୍ତ ଦ୍ରବ୍ୟ ସମବାୟରୁ ପ୍ରକାଶ ପାଏ ବୋଲି ସିଦ୍ଧାନ୍ତ କରନ୍ତି । ଭାରତରେ ପୂର୍ବେ 'ଚାର୍ବାକ'-ମାନଙ୍କର ତତ୍ତ୍ୱ ବିଚାର ଏହି ହିଁ ଥିବାର ମଧ୍ୟ ଅନୁମାନ ହୁଏ । ଏବେ ଯେଉଁମାନେ ବା ଏ ଦେଶରେ ଏପରି ତତ୍ତ୍ୱରେ ବିଚାର ପ୍ରକାଶ କରନ୍ତି, ସେମାନଙ୍କର ତାହା ମୌଳିକ ନୁହେ । ତେଣୁ ଏଠାରେ ବିଚାର୍ଯ୍ୟ ନୁହେ ।

## ଭୌତିକବାଦ ଓ ସତ୍କାର୍ଯ୍ୟବାଦ—

ମାତ୍ର ଜଗତରେ ଏଇ ଭୌତିକ ବା ଆଧିଭୌତିକ ଅଦ୍ୱୈତବାଦୀ ହେବାର ଚିନ୍ତାଧିକାରୀଙ୍କର ଯଥେଷ୍ଟ ଅବକାଶ ଅଛି । ଯେଉଁମାନଙ୍କର ଜୀବନ-ସଂଗ୍ରାମ ବଡ଼ ଭୀଷଣ, କିଂବା ଯେଉଁମାନେ ସେଇ ସଂଗ୍ରାମ ପ୍ରତି ଦୃଷ୍ଟି ଦେବାର ବହିର୍ଜଗତର ସଂଘର୍ଷରେ ଏକାବେଳକେ ଆତ୍ମହରା, ଏଣୁ ଯାହାଙ୍କର ବହିର୍ଜଗତର ଶକ୍ତି ଛଡ଼ା ଆଉ କାହାରି ମୂଲ୍ୟ ବିଚାର କରିବାର ଅବକାଶ ବା ଆବଶ୍ୟକତା ନାହିଁ, ସେମାନେ ଏପରି ଆଧିଭୌତିକବାଦୀ ହୋଇପାରନ୍ତି । ସେମାନଙ୍କର ମତରେ 'ଶକ୍ତି' ହିଁ ସବୁ—ଏହାହିଁ ବସ୍ତୁ । ମାନବର ଇନ୍ଦ୍ରିୟ ମନ ଚୈତନ୍ୟାଦି ଏଇ 'ଶକ୍ତି'ର ଅଂଶ । ବହିର୍ଜଗତରେ ଭୂତବର୍ଗର ସଂଘର୍ଷ ଓ ସମ୍ମିଶ୍ରଣରେ ସବୁ ପ୍ରକାଶ ପାଏ, ମାନବର ଚୈତନ୍ୟାଦି ମଧ୍ୟ ସେଇପରି ଦେହରେ ପ୍ରକାଶ ପାଏ । କାଷ୍ଠରେ ଅଗ୍ନି, ମେଘରେ ବିଦ୍ୟୁତ୍, ବାଷ୍ପରେ ଶକ୍ତି ଯେପରି ଏକ ଏକ ବିକାଶ, ଦେହରେ ଚୈତନ୍ୟାଦି ସେଇପରି । ଏହା ହିଁ ସାଧାରଣ ଭୌତିକ ଅଦ୍ୱୈତବାଦ । ଏବେ ରସାୟନାଦି ଭୌତିକ ବିଜ୍ଞାନରେ ଏହାହିଁ ହେଉଅଛି । ଏଥିରେ ମଧ୍ୟ ଦୁଇଟି ଧାରାରେ ଚିନ୍ତାର ଗତି ହୁଏ । ଗୋଟିଏ ମୂଳ ଉପାଦାନରେ ଗୁଣର ସ୍ୱାଭାବିକ ପରିଣାମରେ ନୂତନ ଗୁଣ ପ୍ରକାଶ ପାଏ । ସାଂଖ୍ୟବାଦୀ ପ୍ରକୃତିଗୁଣପରିଣାମରେ ସେଇ କଥା ମାନନ୍ତି । ଇଉରୋପୀୟ ଭୌତିକବାଦୀ ଟିକିଏ ଭିନ୍ନ କରି କହିଲେ ମଧ୍ୟ, ବସ୍ତୁତଃ ତାହା ହିଁ କହନ୍ତି । ଚାର୍ବାକମାନେ ଖୁବ୍ ସମ୍ଭବ ତାହା ହିଁ କହୁଥିଲେ । ସେମାନେ ତେଣୁ 'ସତ୍କାର୍ଯ୍ୟବାଦୀ' ।

## କାଣାଦ ପରମାଣୁବାଦ—

ପ୍ରାଚୀନ ଭାରତରେ ଅନ୍ୟ ଏକପ୍ରକାର ଆଧିଭୌତିକ ଅଦ୍ୱୈତବାଦୀ ଥିଲେ । ଏମାନଙ୍କ ମତର ପ୍ରବର୍ତ୍ତକ କଣାଦ ବୋଲି କୁହାଯାଏ । ଏମାନଙ୍କ ମତରେ ପାରମାଣୁ ହିଁ

ଜଗତର ମୂଳ କାରଣ । ଇଉରୋପୀୟ ଆଧିଭୌତିକବାଦୀମାନେ ପ୍ରଧାନତଃ ଏଇପରି ପରମାଣୁବାଦୀ, ଫୋଟନ୍ କଣିକା ମଧ୍ୟ ଏକପ୍ରକାର ପରମାଣୁ । ଭାରତର କଣାଦପନ୍ଥୀ ପରମାଣୁବାଦୀମାନେ ମଧ୍ୟ ପରମାଣୁର ବ୍ୟାଖ୍ୟା ଯାହା ଦିଅନ୍ତି, ସେଥିରେ ଇଉରୋପୀୟ ପରମାଣୁବାଦୀଙ୍କ ସଙ୍ଗେ ବିଶେଷ ଭେଦ ନାହିଁ । କଣାଦପନ୍ଥୀ କହନ୍ତି, ଯେ କୌଣସି ପଦାର୍ଥକୁ ଭାଗ କରି ଶେଷରେ ଯେତେବେଳେ ଆଉ ଭାଗ କରି ହୁଏ ନାହିଁ ସେଇ ଅବିଭାଜ୍ୟ ପଦାର୍ଥକୁ ପରମାଣୁ କହନ୍ତି । ଏଇ ପରମାଣୁ ସବୁ ଯେପରି ଏକତ୍ର ହେଉଥାଏ, କ୍ରମେ ନୂତନ ନୂତନ ଗୁଣବିଶିଷ୍ଟ ପଦାର୍ଥମାନ ହୋଇଯାଏ । ମନ ଆଉ ଆତ୍ମାର ବି ପରମାଣୁ ଅଛି । ଏମାନେ ଏକତ୍ର ହେଲେ ଚୈତନ୍ୟ ହୁଏ । ପୃଥିବୀ, ଜଳ, ତେଜ, ବାୟୁ ଏସବୁର ପରମାଣୁ ଭିନ୍ନ ଭିନ୍ନ । ପୃଥିବୀ ପରମାଣୁରେ ଚାରି ପ୍ରକାର ଗୁଣ—ରୂପ, ରସ, ଗନ୍ଧ, ସ୍ପର୍ଶ; ଜଳ ପରମାଣୁରେ ତିନି ଗୁଣ—ରୂପ, ରସ, ସ୍ପର୍ଶ; ତେଜ ପରମାଣୁରେ ଦୁଇ ଗୁଣ—ରୂପ, ସ୍ପର୍ଶ; ବାୟୁ ପରମାଣୁରେ ଗୋଟିଏ ଗୁଣ—ସ୍ପର୍ଶ ଅଛି । ଏଇ ଜଗତ୍ ମୂଳରେ ସୂକ୍ଷ୍ମ ଓ ନିତ୍ୟ ପରମାଣୁରେ ପୂର୍ଣ୍ଣ ଥିଲା । ପରମାଣୁ ଛଡ଼ା ଜଗତର ଅନ୍ୟ ମୂଳ କାରଣ ନାହିଁ । ସୂକ୍ଷ୍ମ ଓ ନିତ୍ୟ ପରମାଣୁମାନଙ୍କର ପରସ୍ପରର ସଂଯୋଗ 'ଆରମ୍ଭ' ହେଲେ ସୃଷ୍ଟିର ଅନ୍ତର୍ଗତ ବ୍ୟକ୍ତ ପଦାର୍ଥସବୁ ରଚିତ ହୁଏ । ଏଥିପାଇଁ ଏଇ ମତକୁ 'ଆରଂଭବାଦ' କହନ୍ତି । ଏଇ ମତ କିଂତୁ ଗୁଣ ମାନିଲେ ମଧ୍ୟ ଠିକ୍ ଗୁଣପରିଣାମମାତ୍ରରେ ପଦାର୍ଥର ପ୍ରକାଶ ମାନନ୍ତି ନାହିଁ । ଏ ମତରେ ସୃଷ୍ଟିସାରା ନୂଆ ନୂଆ ପଦାର୍ଥର ଆରଂଭ ଚାଲିଥାଏ । ଏକ ପଦାର୍ଥର ନାଶ ଓ ଅପର ପଦାର୍ଥର ନିର୍ମାଣ ହୁଏ । ପରମାଣୁମାନଙ୍କର ସମବାୟରେ ନୂତନର ଆରଂଭ ସୃଷ୍ଟି ହୁଏ । ଏଇଥିରେ ଏମାନଙ୍କର ଅନ୍ୟାନ୍ୟ ଭୌତିକବାଦୀଙ୍କ ସଂଗେ ସ୍ୱାତନ୍ତ୍ର୍ୟ ।

## ଆରଂଭବାଦ ଓ ଈଶ୍ୱର—

ମାତ୍ର ପ୍ରଥମ କଥା ପରମାଣୁରେ ବିଶ୍ୱ ପୂର୍ଣ୍ଣ କହି ଦେବା ଯେପରି ସହଜ ବୁଝିବା ସେପରି ନୁହେଁ । ପରମାଣୁ ଓ ପରମାଣୁ ଭିତରେ ସମ୍ବନ୍ଧ କଣ ? ସେମାନଙ୍କ ବ୍ୟବଧାନ ସ୍ଥାନ କପରି ପୂର୍ଣ୍ଣ ? ଏସବୁର ଉତ୍ତର ଦେବା ଦୁଷ୍କର । କାଣାଦମାନେ ଏହା ଦେବାରେ ମଧ୍ୟ ଅକ୍ଷମ । ପୁଣି 'ଆରଂଭବାଦ' କଥା । ଏହା ଏକପ୍ରକାର ଶୂନ୍ୟବାଦ ପରି । ଶୂନ୍ୟରୁ ପୂର୍ଣ୍ଣ ବାହାରିବାରେ ଯେପରି ଯୁକ୍ତି ନାହିଁ, 'ଆରଂଭ' ମଧ୍ୟ ଠିକ୍ ସେଇପରି । ପୁଣି କପରି ଏଇ ଆରଂଭ ହୁଏ ତା ଠିକ୍ କରି ନ ପାରି ଯୁକ୍ତି ଖୋଜି ପରେ ଦଳେ କାଣାଦ ନୈୟାୟିକ କହିଲେ, ଈଶ୍ୱର୍ ଏହା କରନ୍ତି—ଈଶ୍ୱର ଏଇ ଆରଂଭର 'ନିମିତ୍ତ' କାରଣ । ମାତ୍ର ସବୁ ନୈୟାୟିକ ଏହା ମାନନ୍ତି ନାଇ । ଶୁଣାଅଛି, ଜଣେ ନୈୟାୟିକ ମଲାବେଳେ, ତାଙ୍କ କାନରେ ଭଗବାନଙ୍କ ନାମ କରିବାର ଜାଣିପାରି ସେ କଷ୍ଟରେ କହିଲେ—'ପୀଲବଃ' 'ପୀଲବଃ' ( ପରମାଣୁ ପରମାଣୁ ) । ବାସ୍ତବିକ ପରମାଣକୁ ମୂଳ ମାନି ପୁଣି କୁମ୍ଭକାର ପରି ଈଶ୍ୱରଟିଏ ଆଣି ଥୋଇବାରେ ନିଜର

ଖଣ୍ଡିତ ଚନ୍ତା ଓ ଈଶ୍ୱରଙ୍କର ଅପବାଦର ହିଁ ସଂକେତ ମିଳୁଚ । ଯେଉଁ ଈଶ୍ୱର ଏପରି ସୁବିଧା ପାଇ ସୃଷ୍ଟି ଗଢ଼ି ବସନ୍ତି, ତାଙ୍କୁ ପରମାଣୁ ନ ମିଳିଲେ ସେ କଣ କରନ୍ତେ ? ସେଥିପାଇଁ ଗୀତାରେ ବେଦାନ୍ତ ତତ୍ତ୍ୱଚନ୍ତାର ଚରମ ସୀମା । ଗୀତାର ପୁରୁଷୋତ୍ତମ ନିତ୍ୟ ଓ ଅବ୍ୟୟ—ସେଇ ପୁଣି କ୍ଷଣିକ ପରିଣାମମୟ—ସେଇ କର୍ମ—ସେଇ ନିୟନ୍ତା; ସେଇ ପ୍ରକାଶ ଧର୍ମରେ ଚଂଚଳ, ସେଇ ପ୍ରକାଶର ପୀଠରୂପେ ସ୍ଥିର; ସେଇ ଅବ୍ୟକ୍ତରୂପେ ଦୂରରେ, ସେଇ ପୁଣି ବ୍ୟକ୍ତରୂପେ ନିକଟରେ, ସେଇ ଅଧ୍ୟାତ୍ମରୂପେ ଭିତରେ, ସେଇ ପୁଣି କର୍ମର ବିସ୍ତାର ବା ପ୍ରଜ୍ଞାତ ସୃଷ୍ଟି ରୂପେ ଏ ସମସ୍ତର ବାହାରେ । ଏଇ ସଂକେତ ଯେନ ଉପନିଷଦରେ ଋଷି ଗାଇଚନ୍ତି—

"ତଦେଜତି, ତନ୍ନୈଜତି; ତଦ୍‌ଦୂରେ, ତଦନ୍ତିକେ; ତଦନ୍ତରସ୍ୟ ସର୍ବସ୍ୟ; ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ।" (କେନ-ଉପ: ୧.୨)



## ୧୦ । ବେଦତତ୍ତ୍ୱର ବିକାଶ

ଏଠାରେ ଏଇ ଦେଶର ବସ୍ତୁତତ୍ତ୍ୱ ବିଶ୍ୱର ଭିତ୍ତି ଓ ବିକାଶ ସମ୍ବନ୍ଧରେ କିଛି କହିବା ଦରକାର । ବେଦ ଏ ବିଷୟରେ ଆଦିମ ଓ ପ୍ରାମାଣ୍ୟ ସାହିତ୍ୟ । ଏହା ପୃଥିବୀରେ ଅତି ପ୍ରାଚୀନ । ଏଥିରେ ସୃଷ୍ଟି ତତ୍ତ୍ୱର ସ୍ୱତୋବିକାଶ ଦେଖାଯାଏ ବୋଲି ବିଶ୍ୱାସ ଅଛି । ଯେଉଁ କାଳରେ ଏହାର ବିକାଶ ହୋଇଥିଲା, ସେଇ କାଳରେ ଯେ ଛନ୍ଦ ପଦାବଳୀରେ ଯେପରି ଏହା ଋଷିକଣ୍ଠରୁ ବାହାରି ପଡ଼ିଥିଲା, ଏବେ ମଧ୍ୟ ତାହା ଠିକ୍ ସେଇପରି ଅକ୍ଷୁଣ୍ଣ ଓ ଅପରିବର୍ତ୍ତିତ ରହିଛି । ହୁଏତ ବେଦର ସବୁ ମନ୍ତ୍ର ମିଳି ନାହିଁ । ଯାହା ମିଳୁଛି, ତାଠାରୁ ବହୁତ ବେଶି ଲୋପ ପାଇଛି । ମାତ୍ର ଯାହା ମିଳୁଛି, ତାହା ଯେପରି ଥିଲା ସେଇପରି ମିଳୁଛି । ହେଲେ ହେଁ ବେଦରୁ ସବୁ ମନ୍ତ୍ର ଏକ କାଳରେ, ଏକ ସ୍ଥାନରେ ବା ଏକ ପରିସ୍ଥିତିରେ ବାହାରି ନାହିଁ । ବହୁ କାଳ ଧରି ବ୍ୟକ୍ତି, ସ୍ଥାନ ଓ ପରିସ୍ଥିତି ଭେଦରେ ଏହାର ବିକାଶ । ଉପନିଷଦ ଭାଗରେ ମଧ୍ୟ ଶିଷ୍ୟର ଆଶ୍ରୟ ଓ ଅଧିକାର ଭେଦରେ ବେଦର ତତ୍ତ୍ୱସବୁ ବିଭିନ୍ନ ସୀତ, ପଦ୍ଧତି, ସଙ୍କେତ ଓ ସୂଚନାରେ ବାହାରିଛି । ତେଣୁ ବେଦ ଅପୌରୁଷେୟ ଓ ପ୍ରାମାଣ୍ୟ ତତ୍ତ୍ୱ ବିଦ୍ୟା ହେଲେ ମଧ୍ୟ, ତାର ବ୍ୟକ୍ତି, କାଳ ଓ ପରିସ୍ଥିତି ଭେଦରେ ଆଲୋଚନା ସମ୍ପୂର୍ଣ୍ଣ ବିଶ୍ୱରସହ । ଯେଉଁମାନେ ବେଦକୁ ଅପୌରୁଷେୟ ଓ ସ୍ୱାଭାବିକ ଉଚ୍ଛ୍ୱାସମୂଳକ ତତ୍ତ୍ୱବିକାଶ ବୋଲି ବିଶ୍ୱାସରେ ନ ଦେଖନ୍ତି, ସେମାନଙ୍କ ପାଇଁ ପୁଣି ଏପରି ଆଲୋଚନା କେବଳ ଆପତ୍ତିବିରହିତ ନୁହେଁ, ବରଂ ଆବଶ୍ୟକୀୟ ।

### ଭାରତୀୟ ଆର୍ଯ୍ୟ—

ପ୍ରଥମ କଥା, ଆର୍ଯ୍ୟମାନଙ୍କର ଏ ଦେଶକୁ ଆସିବା ବିଷୟରେ ନାନା ମତ । କେତେକ ପ୍ରମାଣ ଦେଇ କହନ୍ତି, ଆର୍ଯ୍ୟମାନେ ପାରସ୍ୟ ଆଫଗାନିସ୍ଥାନ ବାଟେ ଏ ଦେଶକୁ ଆସିଥିଲେ । ପୁଣି ଅନ୍ୟମାନେ କହନ୍ତି, ଆର୍ଯ୍ୟମାନଙ୍କର ଆଦିମ ସ୍ଥାନ ଏଇ ଦେଶରେ ଉତ୍ତର-ପଶ୍ଚିମାଂଶ ହିମାଳୟର ଅଧିତ୍ୟକା ଓ ଉପକଣ୍ଠ ଭୂମିରେ । ସେ ଯାହା ହେଉ, ବେଦର ପ୍ରାଚୀନତମ ଅଂଶର ବିଶେଷ ପର୍ଯ୍ୟାଲୋଚନା କଲେ ଦେଖାଯାଏ, ବେଦର ଆଦିମ ସ୍ଥାନ ସିନ୍ଧୁନଦୀର ଉପତ୍ୟକାରୁ ଏଣିକି ନୁହେଁ । ସେଇଠାରୁ କ୍ରମେ ଆର୍ଯ୍ୟମାନେ ଗଂଗା ଯମୁନା କୂଳକୁ ଓ ତହୁଁ କ୍ରମେ ଗାଂଗେୟ ଉପତ୍ୟକାରେ ପୂର୍ବ ଆଡ଼କୁ ବ୍ୟାପିଥିଲେ । ଦକ୍ଷିଣ ଭାରତକୁ ଆସିବା ବେଦକାଳରେ ହୋଇ ନାହିଁ ।

## ଭାରତୀୟ ଅନାର୍ଯ୍ୟ ଓ 'ଅସୁର'—

ପୁଣି ଏଇ ଆଦିମ କାଳରେ ମଧ୍ୟ ଏଇ ବସତି ବା ଉପନିବେଶର ଘେନି ଆର୍ଯ୍ୟମାନେ ଜୀବନସଂଗ୍ରାମରେ ବ୍ୟତିବ୍ୟସ୍ତ ହେବା କଥା ସ୍ପଷ୍ଟ । ସେମାନେ ନିଜ ନିଜ ମଧ୍ୟରେ ଉପାସନାର ରୀତିରେ ପାର୍ଥକ୍ୟ ଓ ମତାନୈକ୍ୟ ତଥା ଅଧିକାର ଓ ଭୋଗର ଅସାମଂଜସ୍ୟ ଘେନି ଆପଣା ଆପଣା ଭିତରେ ଯେ ବିବାଦ ଓ ଯୁଦ୍ଧାଦିରେ ପ୍ରବୃତ୍ତ ହେଉ ନଥିଲେ, ତାହା କୁହାଯାଇ ନ ପାରେ । ତାହା ଖୁବ୍ ସମ୍ଭବ, ବେଳେ ବେଳେ ସେମାନେ କରୁଥିଲେ । ମାତ୍ର ଏହି ଦେଶର ପ୍ରତିଷ୍ଠିତ ଅଧିବାସୀ (ଅନାର୍ଯ୍ୟ)ଙ୍କ ସଙ୍ଗେ ବରାବର ଯୁଦ୍ଧରେ ଲାଗି ରହି କ୍ରମେ ଏ ଭୂମିରେ ନିଜର ବସତି ଓ ପ୍ରଭାବ ଦୃଢ଼ କରୁଥିବେ, ଏଥିରେ ସନ୍ଦେହ ନାହିଁ । ଏଇ ପ୍ରତିପକ୍ଷ ଅନାର୍ଯ୍ୟମାନଙ୍କ ସମ୍ବନ୍ଧରେ ବେଦରେ ଯେଉଁ ଉଲ୍ଲେଖମାନ ଅଛି, ସେଥିରୁ ସଙ୍କେତରେ ଜଣାପଡ଼ୁଛି ଏଇ ଅନାର୍ଯ୍ୟମାନେ ସମସ୍ତେ ସମାନ ସଭ୍ୟତାର ଅଧିକାରୀ ନ ଥିଲେ ମଧ୍ୟ, ଏମାନଙ୍କ ମଧ୍ୟରୁ ଏକ ବା କୌଣସି କୌଣସି ଶ୍ରେଣୀର ଅନାର୍ଯ୍ୟ ଖୁବ୍ ସଭ୍ୟ ଥିଲେ । ସେମାନେ ସୁଗଠିତ ଓ ଶୃଙ୍ଖଳାବଦ୍ଧ ପୁର (ନଗର)ରେ ବାସ କରୁଥିଲେ । ସେମାନେ ନିଜର ଦେବାଦି ପୂଜା ଓ ଉପାସନା କରୁଥିଲେ । ନାଗ ବା ସର୍ପ ଉପାସନା ଖୁବ୍ ସମ୍ଭବ ସେମାନଙ୍କ ମଧ୍ୟରୁ କାହାରି କାହାରି ଭିତରେ ପ୍ରତିଷ୍ଠିତ ଥିଲା । ଇନ୍ଦ୍ରବିରୋଧୀ ବୃତ୍ର ଅସୁର ଅହି ବା ନାଗରୂପେ ବେଦରେ ବରାବର ବର୍ଣ୍ଣିତ ହୋଇଛି । ସେଥିପାଇଁ ଇନ୍ଦ୍ରଙ୍କର ଏକ ନାମ 'ଅହିହନ୍' ବା ସର୍ପହନ୍ତା । ସେ କାଳ ଆର୍ଯ୍ୟମାନଙ୍କୁ ଏକ ସର୍ପ ଉପାସକ ପରାକ୍ରାନ୍ତ ଅନାର୍ଯ୍ୟ ଦଳ ସଙ୍ଗେ ଯୁଦ୍ଧ କରିବାକୁ ହେଉଥିଲା, ଏହି କଥାର ସଙ୍କେତ ଏଥିରେ ଅଛି । ସେହି ଅନାର୍ଯ୍ୟମାନଙ୍କ ମଧ୍ୟରୁ ଅନେକେ ପୁଣି ଲିଙ୍ଗ (ବା ଲିଙ୍ଗଯୋନି)କୁ ଦେବରୂପେ ପୂଜା କରିବାର ଆଭାସ ମିଳେ । ବେଦରେ ସେମାନଙ୍କୁ 'ଶିଶ୍ନଦେବ' ବା ଲିଙ୍ଗୋପାସକ କୁହାଅଛି । (ଋଗ୍‌ବେଦ; ୧୦. ୨୭. ୧୯ ରେ 'ଶିଶ୍ନ' ଓ ୧୦. ୯୯. ୩ରେ 'ଶିଶ୍ନଦେବ' ଦେଖ) । ଖୁବ୍ ସମ୍ଭବ ପ୍ରଥମେ ଏଇ ଅନାର୍ଯ୍ୟ 'ଅସୁର'ମାନଙ୍କ ସଭ୍ୟତାରେ ମୁଗ୍ଧ ହୋଇ ଆଗନ୍ତୁକ ଆର୍ଯ୍ୟମାନେ ସେମାନଙ୍କୁ ବହୁ ମାନ କରୁଥିଲେ । ହୁଏ ତ ସେହି ଆର୍ଯ୍ୟମାନେ ନିଜ ଦେବତାଙ୍କୁ ଅସୁର ବୋଲି କହୁଥିଲେ; ତେଣୁ ଆର୍ଯ୍ୟମାନେ ମଧ୍ୟ ତାହା ଅନୁକରଣ କରି ନିଜର ଦେବଙ୍କୁ 'ଅସୁର' ଆଖ୍ୟା ଦେଇଥିଲେ । କାରଣ ବେଦରେ ଅସୁରର ଆଦିମ ଓ ମୌଳିକ ଅର୍ଥ 'ଦେବ' । (ଋଗ୍‌ବେଦ ୧. ୩୫. ୭; ୧. ୨୪. ୧୪; ୧.୨୫. ୮ ଇତ୍ୟାଦି) । ପରେ ସମ୍ଭବତଃ ଭୂମିରେ ଅଧିକାର ଘେନି ବିରୋଧ ବଢ଼ିବାରୁ ଏ ଅସୁରମାନେ ଦେବବିରୋଧୀ ବା ଆର୍ଯ୍ୟଶତ୍ରୁ ବୋଲି ପରିଚିତ ହେଲେ । ତଥାପି ଏମାନଙ୍କ ସଭ୍ୟତା କୌଣସିମତେ ହୀନ ଥିବାର ଜଣା ପଡ଼ୁ ନାହିଁ । ବରଂ ସେକାଳ ଆର୍ଯ୍ୟସଭ୍ୟତାରୁ ଏହା ଶ୍ରେଷ୍ଠ ଥିବା ସମ୍ଭବ ହେଉଛି । 'ଅସୁର-ବରୁଣ' ପ୍ରଥମେ ଆର୍ଯ୍ୟ ଇନ୍ଦ୍ରଙ୍କ ସଙ୍ଗେ ପୂଜା ପାଉଥିଲେ । ପରେ ତାଙ୍କ ସ୍ଥାନ ବୈଦିକ ସାହିତ୍ୟରେ ତଳକୁ

ପଡ଼ିଗଲା । 'ଅସୁର-ବରୁଣ' ଶ୍ରେଷ୍ଠ କ୍ଷତ୍ରିୟ, ତାଙ୍କର ବିଶ୍ୱ ସାମ୍ରାଜ୍ୟ—ସେ ଜ୍ୟୋତିଷଜ୍ଞ; ମାସ, ଦିନ, ମଳମାସ ବିଷୟରେ ବିଶେଷଜ୍ଞ (ଋଗ୍‌ବେଦ, ୧. ୨୫. ୮); 'ମାୟା'ରେ ପାରଦର୍ଶୀ । ସେଇ ବରୁଣ, 'ପ୍ରଚେତା' ଓ ମାୟୀ (ଋଗ୍‌ବେଦରେ ୧. ୧୬୦ ) । ସେଇ ବରୁଣ ସମୁଦ୍ରରେ ନୌକାର ମାର୍ଗ ଜାଣନ୍ତି (ଋଗ୍-ବେଦ, ୧. ୨୫. ୭) ଇନ୍ଦ୍ର, (ଋଗ୍‌ବେଦ, ୧. ୫୪. ୩), ଅଗ୍ନି (ଋ—୪. ୨.୫ ଓ .୭. ୨ ୩) ଓ ସବିତା (ଋ—୧. ୩୫. ୭) ଅସୁର ସଦୃଶ ଶକ୍ତିମାନ୍ । ରୁଦ୍ରଙ୍କୁ 'ଶିବ' ବୋଲି ଉପାସନା କଲେ ତାଙ୍କ ଅସୁରତ୍ୱ ସନ୍ତୋଷ ହୁଏ, (ଋ—୧୦. ୩୪. ୨) । ପୁଣି ଐତରେୟ ବ୍ରାହ୍ମଣରେ ଅଛି, ଆର୍ଯ୍ୟଦେବ ପ୍ରଜାପତି ଯେତେବେଳେ ନିଜର କନ୍ୟା ହରଣ କଲେ, ସେତେବେଳେ ଏଇ ଅସୁର-ରୁଦ୍ର 'ଭୂତପତି' (ଲୋକ-ନିୟାମକ) ରୂପେ ତାଙ୍କୁ କାଟି ଖଣ୍ଡ ଖଣ୍ଡ କରିଦେଲେ । *

ପୁରାଣ ପରଂପରାରେ ପୁଣି ଶୁକ୍ର ଏଇ ଅସୁରଙ୍କ ଗୁରୁ । ବୃହସ୍ପତି-ପୁତ୍ର 'କଚ' ଏଇ ଶୁକ୍ରଙ୍କଠାରୁ ବିଦ୍ୟା ଶିଖିଥିଲେ । ପୁଣି ଏଇ ଶୁକ୍ରାଚାର୍ଯ୍ୟଙ୍କ କନ୍ୟାଙ୍କୁ ଅର୍ଯ୍ୟନୃପ ଯଯାତି ସମାଜର ଆପତ୍ତି ସତ୍ତ୍ୱେ, ଆଦର ଓ ଆଗ୍ରହରେ ବିଭା ହୋଇଥିଲେ । ଏଇ ପୁରାଣ ପରଂପରାରେ ଲିପିବଦ୍ଧ ଥିଲେ ହେଁ, ଏସବୁ ପୁରାଣ ପରଂପରା ଅତି ପ୍ରାଚୀନ ସ୍ମରଣୀୟ ଘଟଣାମାନଙ୍କ ଉପରେ ପ୍ରତିଷ୍ଠିତ, ସନ୍ଦେହ ନାହିଁ ।

## ଆର୍ଯ୍ୟର ଆଧ୍ୟାତ୍ମ ପୁରୁଷ ଓ ଯଜ୍ଞ—

ଏଇ ଯୁଦ୍ଧ କେବଳ ଜୀବନ ସଂଗ୍ରାମରେ ବ୍ୟତିବ୍ୟସ୍ତ ହେବାର ଏକମାତ୍ର କାରଣ ନଥିଲା । ପାର୍ବତ୍ୟ ଦେଶରେ କଷ୍ଟରେ ଜୀବିକାର୍ଜନ କରିବା ସବର୍ତ୍ର ଦେଖାଯାଏ । ବୃଷ୍ଟି, ବଜ୍ର, ଅଗ୍ନି ପ୍ରଭୃତିର ଅଭାବ ତଥା ତାଡ଼ନା ସେମାନଙ୍କୁ ଭୟଙ୍କର ଭାବରେ ସହିବାକୁ ପଡ଼ୁଥିଲା । ରାତିରେ ଶୀତ ତଥା ସୂର୍ଯ୍ୟ ତାଙ୍କର ଚିର ମନୋ-ନିବେଶର ବସ୍ତୁ ଥିଲା । ଉଷା, ସୂର୍ଯ୍ୟ, ଅଗ୍ନି, ମେଘ ତଥା ବଜ୍ର ତାଙ୍କଠାରୁ ବହୁ ଆଦର ପାଇବା ସ୍ୱାଭାବିକ । ତା ସେମାନେ ପାଉଥିଲେ, ଦରକାର ବେଳେ ସେମାନଙ୍କୁ ଆର୍ଯ୍ୟମାନେ ଉପାସନା କରୁଥିଲେ ଓ ଉପାସକ ଯେପରି ଉପାସ୍ୟ ଦେବତାଠାରୁ ଉପକାର ପାଏ, ତାହା ସେମାନେ ପାଉଥିଲେ । ସେଥିପାଇଁ ସେମାନେ ଏଇ ଆଧିଦୈବିକ ଧାରଣାରେ ସେଇ ଭୂତଶକ୍ତିମାନଙ୍କର ଅଂତରାଳରେ ପୁରୁଷ କଳ୍ପନା କରି ସେମାନଙ୍କ ପାଇଁ ଯଜ୍ଞ କରୁଥିଲେ । ଏଇ ଯଜ୍ଞ ହେତୁରୁ ଓ ଏଇ ଯଜ୍ଞରେ ସୃଷ୍ଟି ଆତଯାତ ହେଉଥିଲା ବୋଲି ବୁଝୁଥିଲେ । ଏଇ ଯଜ୍ଞ ଦେବତାଙ୍କ ପାଇଁ ହୁଏ ବା ଦେବତାଙ୍କର । ଏଇ ଯଜ୍ଞରେ ଯେଉଁ ସାମଗ୍ରୀ ଲାଗେ ତା ମଧ୍ୟ ନିଜର ନୁହେଁ, ଦେବତାଙ୍କର । ଏଇ ଯଜ୍ଞ ହେତୁରୁ ବା ଯଜ୍ଞରୂପରେ ହିଁ ଦେବତାମାନେ ବାଣ୍ଡନ୍ତିସ୍ତା

---

* Asura India by A. P. B. Sastri, pp. 14 & 15

ସମ୍ପାଦନା କରନ୍ତି । ଯଜ୍ଞ ମନୁଷ୍ୟ କରେ ସତ୍ୟ, କିନ୍ତୁ ସେଥିରେ ମନୁଷ୍ୟର ନିଜର କିଛି ନାହିଁ । ଏହା ଦେବତାଙ୍କର କାର୍ଯ୍ୟ—ଦେବତାଙ୍କ ଦ୍ରବ୍ୟରେ ସମ୍ପାଦିତ ହୁଏ, ତେଣୁ ମନୁଷ୍ୟ ଦେବପ୍ରୀତି ନିମନ୍ତେ ତାହା କରେ । ଯାହା ଦେବତା ଦିଅନ୍ତି, ତାହା ଦେବତାଙ୍କୁ ନ ଦେଇ ଭୋଗ କରିବା ଅନ୍ୟାୟ (ଗୀତା ୩. ୯—୧୬) । ଋଗ୍‌ବେଦ ସଂହିତାର ପୁରୁଷ-ସୂକ୍ତ (ଋଗ୍‌ବେଦ ୧୦. ୯୦)ର କଥା କୁହାଯାଇଛି । ସେଥିରେ ଅଛି, ଦେବତାମାନେ ବିରାଟରୂପୀ ଯଜ୍ଞ ପୁରୁଷର ଯଜ୍ଞ କରିଥିଲେ । ଗୀତାରେ ମଧ୍ୟ ସେଇ ଭାଷାର ଅନୁକରଣ ୪. ୨୫ରେ ଦେଖାଯାଏ । ଗୀତା କହନ୍ତି, "କେହି କେହି ବ୍ରହ୍ମାଗ୍ନିରେ ଯଜ୍ଞଦ୍ୱାରା ଯଜ୍ଞର ଯଜନ କରନ୍ତି ।" ଏହାର ମଧ୍ୟ ଅର୍ଥ ହୋଇପାରେ "ବ୍ରହ୍ମତତ୍ତ୍ୱରେ ବିଶ୍ୱବିକାଶ ଉତ୍ସର୍ଗ କରନ୍ତି ।" ଉପନିଷଦ୍‌ରେ ମଧ୍ୟ ସ୍ପଷ୍ଟ କୁହାଅଛି 'ଯଜ୍ଞୋ ବୈ ବିଷ୍ଣୁଃ' ଅର୍ଥାତ୍ ଯଜ୍ଞ ହେଉଛି ବିଷ୍ଣୁ ବା ସର୍ବବ୍ୟାପୀ ଦେବତା । ଏଇ ଦୃଶ୍ୟ ଜଗତକୁ ଯଜ୍ଞ ବୋଲି କଳ୍ପନା କରିବା କଥା ବେଦର ନାନା ସ୍ଥାନରେ ଅଛି । ଋଗ୍‌ବେଦ ସଂହିତା ୧୦. ୧୩୦ରେ ଅଛି—'ଏଇ ଯଜ୍ଞର ଘୃତ ସମିଧ ପ୍ରଭୃତି ସରଂଜାମ ପ୍ରଥମେ କେଉଁଠାରୁ ଆସିଲା ।' ଇତ୍ୟାଦି ।

## ବିରାଟ ବିଶ୍ୱ ପୁରୁଷ—

ଏଇପରି କର୍ମମୟ ଜଗତରେ ବୈଦିକ ଋଷିମାନେ ବିଶ୍ୱବସ୍ତୁର ସତ୍ତା ସର୍ବଦା ସର୍ବତ୍ର ଅନୁଭବ କରୁଥିଲେ । ସେମାନେ ଭୂତ-ଶକ୍ତିର ଅନ୍ତରାଳରେ ପୁରୁଷରୂପୀ ଦେବତା ଅନୁଭବ କରୁଥିଲେ । ତଥାପି ଏ ସମସ୍ତ ପୁରୁଷ ଯେ ଏକ ବିରାଟ ପୁରୁଷ, ଏହା ମଧ୍ୟ ବୁଝୁଥିଲେ । ଋଗ୍‌ବେଦ ୧୦. ୯୦ରେ କୁହାଯାଇଛି, ପ୍ରଥମେ ବିରାଟରୂପୀ ପୁରୁଷ ଥିଲେ । ଏଇ ବିରାଟ ପୁରୁଷରୁ ଯଜ୍ଞ (କର୍ମ) ଦ୍ୱାରା (କର୍ମମୟ) ସାରା ଜଗତ ବାହାରିଛି । ଋଗ୍‌ବେଦ ୧୦. ୧୨୧ରେ ଅଛି, ଏଇ ଜଗତର ଆରମ୍ଭରେ 'ହିରଣ୍ୟଗର୍ଭ' ଥିଲେ; ଅମୃତ ଓ ମୃତ୍ୟୁ ତାଙ୍କର ଛାୟା ଓ ସେଇ ପରେ ସମସ୍ତ ଜଗତ୍ ସୃଷ୍ଟି କଲେ ।

## ଏକ ବିଶ୍ୱ-ତତ୍ତ୍ୱ—

ଗୋଟିଏ ମୂଳ ତତ୍ତ୍ୱରୁ ଏକ କର୍ମମୟ ବିଶ୍ୱ ଜଗତ୍ ଯେ ପ୍ରକାଶ ପାଇଛି, ଏହା ଉପନିଷଦ୍‌ରେ ବରାବର ଦେଖାଯାଏ । ବରଂ ଏଇ ତତ୍ତ୍ୱର ଅନୁସନ୍ଧାନ ଉପନିଷଦ୍‌ର ପ୍ରଧାନ ବିଷୟ କହିଲେ ଚଳେ । ବେଦର ଅତି ପ୍ରାଚୀନ ସଂହିତାଦି ଭାଗରେ ମଧ୍ୟ କେବଳ ଯେ ବିଶ୍ୱରେ ପ୍ରଚ୍ଛନ୍ନ ପୁରୁଷ ଶକ୍ତିର ଉପଲବ୍ଧି ଦେଖିବାକୁ ମିଳେ ସେତିକି ନୁହେଁ, ଏଇ ପ୍ରଚ୍ଛନ୍ନ ଶକ୍ତି ଗୋଟିଏ ମୂଳ ତତ୍ତ୍ୱ, ଏ କଥାର ସୂଚନା ମଧ୍ୟ ବେଦରେ ସ୍ପଷ୍ଟ । ଋଗ୍‌ବେଦ ସଂହିତା ୧୦. ୧୧୪. ୫ରେ ଅଛି 'ଏକଂ ସନ୍ତଂ ବହୁଧା କଳ୍ପୟନ୍ତି', ଅର୍ଥାତ୍, ଏକ ସତ୍ ବା ନିତ୍ୟ ବସ୍ତୁକୁ ଲୋକେ ଭିନ୍ନ ଭିନ୍ନ ନାମ ଦେଇ କହନ୍ତି, କିମ୍ବା

ସେଇ ଏକକୁ ବହୁ ବୋଲି ବୁଝନ୍ତି । ପଣ୍ଡିତମାନେ ଭାଷାର ତାତ୍ତ୍ୱିକ ବିଚାରରେ ସ୍ଥିର କରିଚନ୍ତି, ଋଗ୍‌ବେଦର ଏଇ ୧୦ମ ମଣ୍ଡଳଠାରୁ ପ୍ରଥମ ମଣ୍ଡଳ ଆହୁରି ଆଦିମ ଓ ପ୍ରାଚୀନ । ସେ ପ୍ରଥମ ମଣ୍ଡଳରେ ମଧ୍ୟ ପ୍ରକାଶ ପାଇଚି, 'ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି' ଅର୍ଥାତ୍, ଏକ ନିତ୍ୟ ବସ୍ତୁକୁ ବେଦରେ ଲୋକେ ନାନା ନାମରେ କହନ୍ତି (ଋଗ୍‌ବେଦ ମଣ୍ଡଳ ୧. ସୂକ୍ତ ୧୬୪ ମନ୍ତ୍ର ୪୬) ଏଇପରି ସତ୍ୟ ବା ଏକମାତ୍ର ମୂଳ ବସ୍ତୁରୁ ସୃଷ୍ଟି ପ୍ରକାଶ ପାଇବା କଥାର ସଙ୍କେତ ବେଦରେ ବରାବର ସ୍ପଷ୍ଟ । ଋତ ଓ ସତ୍ୟ ପ୍ରଥମରେ ତପସ୍ୟାରୁ ବାହାରିଲେ, ପରେ ରାତି (ଅନ୍ଧାର), ପରେ ସମୁଦ୍ର (ଜଳ) ଇତ୍ୟାଦି (ଋଗ୍‌ବେଦ ୧୦. ୧୯୦. ୧ ଦେଖ); ପୁଣି ପ୍ରଥମରୁ ଜଳ ଏକା ଥିଲା, ତହିଁରେ ପ୍ରଜାପତି ଉତ୍ପନ୍ନ ହେଲେ (ଋଗ୍‌ବେଦ ୧୦. ୭୨ ଓ ୧୦. ୮୨. ୬ ଦେଖ) । ଆପୋ ବା ଇଦମଗ୍ର ଆସୀତ୍ (ତୈତ୍ତିରୀୟ ବ୍ରାହ୍ମଣ ୧. ୧. ୩) ଅର୍ଥାତ୍ ଏସବୁ ପ୍ରଥମେ ତରଳ ଜଳ ଥିଲା । ପରେ ଉପନିଷଦରେ ଏଇ ଧାରଣା ଓ ଚିନ୍ତା ସ୍ପଷ୍ଟଭାବରେ ବିସ୍ତୃତ କରିହୋଇଚି ।

## ବିଶ୍ୱର ସତ୍ୟ—'ସତ୍'—

ଏଇ ଯେଉଁ ସତ୍ (ସତ୍ୟ) ବା ଏକ ମୂଳ ନିତ୍ୟ ବସ୍ତୁର କଥା କୁହାଗଲା, ତାହା ହିଁ ବେଦର ମୌଳିକ ଧାରଣା । ସତ୍, ବୋଇଲେ ଯାହା ଅଛି ବା ଯାହା ସତ୍ତାବାନ୍, ଏହି ହିଁ ପୁଣି ବେଦର ମୌଳିକ ପରିଭାଷା । ଏଥିରେ ନିଜ ଭିତରକୁ ଚାହିଁବାର କିଛି ନାହିଁ । ପ୍ରାଚୀନ ଋକ୍ ମନ୍ତ୍ରମାନଙ୍କରେ କ୍ଷେତ୍ରଜ୍ଞ ତତ୍ତ୍ୱ ବା ଦେହ ଭିତରେ ଥିବା ଆତ୍ମାର କୌଣସି ଉଲ୍ଲେଖ ନାହିଁ । ସବୁବେଳେ ଆଖି ବିଶ୍ୱର ଅନ୍ୟ ବସ୍ତୁ ଓ ଶକ୍ତିମାନଙ୍କ ପ୍ରତି, ସେଇଥିରେ ଦେବତା, ତାର ଅନ୍ତରାଳରେ ସତ୍, ସତ୍ୟ ବା ନିତ୍ୟ ବସ୍ତୁ । ବିଶ୍ୱ ବସ୍ତୁର ନିତ୍ୟ ସଂଘର୍ଷରେ କର୍କଶ ଜୀବନକ୍ରିୟା ମଧ୍ୟରେ ଦୃଷ୍ଟି ସବୁବେଳେ ବାହାରକୁ । ସତ୍ୟର ବିଶ୍ୱପ୍ରକାଶ ହିଁ ଯଜ୍ଞ, ପୁଣି ସେଇ ଯଜ୍ଞର ଅନୁଷ୍ଠାନ ବିଶ୍ୱଦେବତାଙ୍କ ପାଇଁ । ନିଜର ସେଥିରେ ମଙ୍ଗଳ କାମନା ଥିଲେ ମଧ୍ୟ, ସେ ମଧ୍ୟରେ ନିଜର ଅତ୍ମପ୍ରତିଷ୍ଠାର କଳ୍ପନା ନାହିଁ । ନିଜେ ବରଂ ବିରାଟ ପୁରୁଷଙ୍କ ଅଙ୍ଗରୁ ଉଦ୍‌ଭୂତ—ନିଜେ ବିଶ୍ୱପ୍ରକାଶର ଏକ ଅଙ୍ଗ ମାତ୍ର ।

## ବ୍ୟକ୍ତିର 'ମୁଁ'—ଆତ୍ମତତ୍ତ୍ୱ—

ତେବେ ବୁଝିବା ଉଚିତ ନୁହେଁ ଯେ, ବ୍ୟକ୍ତିର ମୁଁ ଛଡ଼ା ବିଶ୍ୱର ଅନୁଭୂତି ଓ ଈଶ୍ୱର ଅନୁସନ୍ଧାନ କେବେ ହେଲେ ସମ୍ଭବ । ସବୁ ଅନୁଭୂତି ଓ ବିଚାର ବ୍ୟକ୍ତିର । ବ୍ୟକ୍ତିର 'ମୁଁ' ସେଥିରେ ପଦେ ପଦେ ସଂଶ୍ଳିଷ୍ଟ ରହିଚି । ବେଦରେ ଦେବତାମାନଙ୍କଠାରେ ଶକ୍ତିମୟ 'ପୁରୁଷ'ର କଳ୍ପନା, ପୁଣି ସମସ୍ତ ବିଶ୍ୱତତ୍ତ୍ୱରେ ବିରାଟ 'ପୁରୁଷ'ର କଳ୍ପନା ମଧ୍ୟରେ ଯେଉଁ ପୁରୁଷ ଶବ୍ଦର ପ୍ରୟୋଗ ଦେଖାଯାଏ, ସେଥିରେ ବ୍ୟକ୍ତିର 'ମୁଁ' ପ୍ରଚ୍ଛନ୍ନଭାବରେ ହେଲେ ମଧ୍ୟ, ପ୍ରକାଶ ପାଉଚି । 'ପୁରୁଷ'

ଶବ୍ଦର ବ୍ୟୁତ୍ପତ୍ତି କରାଯାଇଛି, 'ପୁରି ଶେତେ ଅସୌ' ଅର୍ଥାତ୍, ପୁର ବା ଦେହ ଭିତରେ ଯେ ଲୁଚି କରି ଶୋଇଛି, ସେ ପୁରୁଷ । ପୁରୁଷ ଶବ୍ଦ ସଂଗେ ବ୍ୟକ୍ତିର ଆତ୍ମବୋଧ ଜଡ଼ିତ ରହିଛି । ମୁଁ ଯେପରି ନିଜର କର୍ମେନ୍ଦ୍ରିୟମାନ ଚାଳନ କରି କାର୍ଯ୍ୟ କରୁଛି, ଅଗ୍ନି, ସୂର୍ଯ୍ୟ, ବଜ୍ରାଦିରେ ସେଇପରି କେହି କାର୍ଯ୍ୟ କରୁଛି ବୋଲି, ସେ ହିସ୍ବରେ ପୁରୁଷରୂପୀ ଦେବତାର କଳ୍ପନା । ସେଇପରି ସାରା ସୃଷ୍ଟିର କର୍ମ ପ୍ରବାହର ଅନ୍ତରାଳରେ ମହାଶକ୍ତିମୟ ବିରାଟ୍ ପୁରୁଷ ।

## ବିଶ୍ୱତତ୍ତ୍ୱ ଓ ବ୍ୟକ୍ତିତତ୍ତ୍ୱ ( କ୍ଷେତ୍ର ଓ କ୍ଷେତ୍ରଜ୍ଞ )—

ସମସ୍ତ ତତ୍ତ୍ୱ ବିଚାରରେ ବ୍ୟକ୍ତିର ଆତ୍ମବୋଧ ସଙ୍ଗେ ବିଶ୍ୱକ୍ରିୟା ଓ ଶକ୍ତିର ଭାବ ନିବିଷ୍ଟ ଜଡ଼ିତ ରହିବ । ମାତ୍ର ଘଟନା ଓ ପରିସ୍ଥିତି ଅନୁସାରେ ସେଇ ତତ୍ତ୍ୱବିଚାର ଗୋଟିଏ ଆଡ଼କୁ ବିଶେଷ ଢଳିବ । ଦୃଷ୍ଟି ବିନ୍ଦୁ ଗୋଟିଏ ଆଡ଼ୁ ଅନ୍ୟ ଆଡ଼କୁ ଆସିବ, ଏହାହିଁ କହିବାର ଅଭିପ୍ରାୟ । ବୈଦିକ ଋଷିଙ୍କର ଜୀବନ ମହା ସଂଘର୍ଷମୟ ଓ କର୍ମସଂଗ୍ରାମରେ ସର୍ବଦା ଉଜ୍ଜୀବିତ ଥିବାରୁ ସେମାନେ ବାହାରର ବିଶ୍ୱଶକ୍ତିରେ ଅଭିଭୂତ ଓ ପ୍ରଭାବିତ ଥିଲେ । ସେଇଥିପାଇଁ ନିଜରୁ ବାହାର ଯେଉଁ ବିଶ୍ୱଶକ୍ତି, ଯାହା ସଙ୍ଗେ ଦିନରାତି ଲଢ଼ି, ସେମାନେ ଜୀବନର ସ୍ଥିତି ସ୍ଥିର ରଖିଥିଲେ, ସେଇ ବାହାରର ଶକ୍ତି ଓ ସତ୍ତାକୁ ନେଇ ସେମାନେ ବିଶ୍ୱତତ୍ତ୍ୱର ବିଚାର ଆଡ଼କୁ ଉଠିଥିଲେ ।

## ଆର୍ଯ୍ୟତତ୍ତ୍ୱ ବିଚାରମୂଳକ ବିଶ୍ୱବସ୍ତୁ—ବ୍ୟକ୍ତି ନୁହେଁ—

ଏପରିକି ସେମାନେ ଏକରୁ ବହୁ କଥା ବୁଝିବାକୁ ଗଲାବେଳେ, ଏକ ଆତ୍ମା ବା 'ମୁଁ' ର ନାନା ଅନୁଭୂତିରେ ମୁଁ ବା ଆତ୍ମାକୁ ସତ୍ୟ ଓ ଇନ୍ଦ୍ରିୟର ଅନୁଭୂତିକୁ ଅସ୍ଥାୟୀ ବିଚାରି, ସେଇ ଆଡ଼ୁ ବିଶ୍ୱତତ୍ତ୍ୱ ଓ ତାର ଅସ୍ଥାୟୀ ବହୁରୂପ ବିଶ୍ୱବିକାଶ ଆଡ଼କୁ ଯାଇଥିବାର ପ୍ରମାଣ ପ୍ରାଚୀନ ବେଦ ସୂକ୍ତମାନଙ୍କରେ ମିଳୁ ନାହିଁ । 'ମାୟା' କଥାଟି ଗୀତାରେ ସେଇ ବିଶ୍ୱତତ୍ତ୍ୱର ବହୁରୂପ ବିକାଶ ଅର୍ଥରେ ବ୍ୟବହାର କରାଯାଇଛି । ମାନବର ଆତ୍ମା ଏଇ ମାୟାରେ ଗ୍ରସ୍ତ ହୋଇ ମୋହରେ ପଡ଼େ ବୋଲି ମଧ୍ୟ କୁହା ହୋଇଛି । ଉପନିଷଦରେ ଅବିଦ୍ୟା, ଅଜ୍ଞାନ ଓ ମାୟା ଶବ୍ଦମାନଙ୍କର ଏଇ ଅର୍ଥରେ ବହୁ ବ୍ୟବହାର ଦେଖାଯାଏ । ସେ ସବୁଠାରେ ମଧ୍ୟ ମାନବାତ୍ମାର ଅଜ୍ଞାନ ବା ଅବିଦ୍ୟା ପୁଣି ବିଶ୍ୱାତ୍ମାର, ମାୟାର ଓ ଅବିଦ୍ୟାର ଆବରଣ କଥା କୁହାଯାଇଛି । ଅବିଦ୍ୟା କଥାଟିରେ ମାନବର ବ୍ୟକ୍ତିଗତ ଆତ୍ମାରେ ପଡ଼ିଲେ ଦୃଷ୍ଟି ଥିବା କଥା ସ୍ପଷ୍ଟ । ଗୀତାରେ ଅବିଦ୍ୟା କଥା ନ ଥିଲେ ବି ଅଜ୍ଞାନ ସଙ୍ଗେ ମାୟାର ସମ୍ପର୍କ ପଦେ ପଦେ ସ୍ପଷ୍ଟ । ହୁଏତ ପ୍ରାଚୀନ ବୈଦିକ ଭାବ ସ୍ପଷ୍ଟ କରିବା ପାଇଁ 'ଅବିଦ୍ୟା' ଶବ୍ଦ ବ୍ୟବହାର ନ କରି 'ମାୟା' ଶବ୍ଦ ବ୍ୟବହାର କରା

ହୋଇଛ । କାରଣ, ଗୀତାରେ ବିଶେଷରେ ବୈଦିକ ଆଦିମ ଆର୍ଯ୍ୟଧର୍ମର ବ୍ୟାଖ୍ୟା କରାଯାଇଛ । ମାତ୍ର ପ୍ରାଚୀନ ବେଦ ସୂକ୍ତରେ ମାନବାତ୍ମାର ବହୁରୂପ ଅସ୍ଥାୟୀ ବିକାଶର କୌଣସି ଉଲ୍ଲେଖ ନାହିଁ; ମାତ୍ର ଦେବତାଙ୍କର ବହୁରୂପ ବିକାଶ ବୁଝାଇବାକୁ 'ମାୟା' ଶବ୍ଦ ବ୍ୟବହାର କରାଯାଇଛ । ଋଗ୍‌ବେଦ ୬.୪୭,୧୮ ରେ ସ୍ପଷ୍ଟ ଅଛୁ, "ଇନ୍ଦ୍ରୋମାୟାଭିଃ ପୁରୁରୂପଇୟତେ", ଅର୍ଥାତ୍, ଇନ୍ଦ୍ର, ମାୟାରେ ବହୁ ରୂପରେ ପ୍ରକାଶିତ ହୁଅନ୍ତି । ଅତି ପ୍ରାଚୀନ ଏଇ ସୂକ୍ତରେ 'ମାୟା' ଶବ୍ଦର ଏପରି ସ୍ପଷ୍ଟ ବ୍ୟବହାର ପ୍ରଣିଧାନଯୋଗ୍ୟ । ବରୁଣଙ୍କଠାରେ ଏଇ ମାୟାର ଆରୋପ କଥା ମଧ୍ୟ ପୂର୍ବେ କୁହାଯାଇଛ ।

## ବିଶ୍ୱ ପୂର୍ଣ୍ଣ—ଶୂନ୍ୟ ନୁହେଁ—

ସେ ଯାହାହେଉ, ମୋଟରେ ଦେଖିବାକୁ ଗଲେ ପ୍ରାଚୀନ ବୈଦିକ ଧାରଣାରେ ବିଶ୍ୱ ପୂର୍ଣ୍ଣ—ଶୂନ୍ୟ ନୁହେଁ; ବିଶ୍ୱର ସବୁ ପ୍ରଚ୍ଛନ୍ନ ପୁରୁଷର ଶକ୍ତି ଓ ସବୁ ସେ ପ୍ରଚ୍ଛନ୍ନ ବସ୍ତୁ ସତ୍ ବା ସତ୍ୟ, ତାହାହିଁ ଅଛୁ; ବିକାଶର ନାନାତ୍ୱ ବା ବହୁରୂପତା 'ମାୟା' ବା ସେଇ ପ୍ରଚ୍ଛନ୍ନ ପୁରୁଷର ଠକେଇ—ସେଥିରେହିଁ ସେହି ପ୍ରଚ୍ଛନ୍ନ ପୁରୁଷକୁ ମାପି, ବାଣ, ଜାଣିବାକୁ ହେବ । ଏଥିରେ ମପାଯାଏ ବୋଲି, ଏହା 'ମାୟା' । ମାନବ ଏଇ ବିଶ୍ୱ ବିକାଶର ଅଂଗ ବା ଅଂଶ । ଇତ୍ୟାଦି ।

## ଆଦି ବୈଦିକ ଭାବରେ ଶୂନ୍ୟତାର ଧକ୍କା—ସତ୍ ଓ ଅସତ୍—

ମାତ୍ର ପରବର୍ତ୍ତୀ କାଳରେ ବେଦର ସୂକ୍ତ ତଥା ଉପନିଷଦମାନଙ୍କରେ ଯାହା ଦେଖାଯାଏ ସେଥିରେ ଜଣାପଡ଼େ, ଏଇ ସରଳ ବିଶ୍ୱାନୁଭୂତିମୂଳକ ସିଦ୍ଧାନ୍ତ ଟିକିଏ ଭିନ୍ନ ରୂପ ଧାରଣ କଲା ଓ କ୍ରମେ ଜଗତ ପୂର୍ଣ୍ଣରୁ ଶୂନ୍ୟ ହୋଇ ଆସିଲା । 'ସତ୍' ବୋଲି ଯେ ବିଶ୍ୱ ବସ୍ତୁର ନାମ ଥିଲା ତାର ନାମ ହେଲା ଅସତ୍; ଅର୍ଥାତ୍ ଯାହା ନାହିଁ । ବିଶ୍ୱ ଶକ୍ତିରୁ ଦୃଷ୍ଟି ଫେରି ମାନବର ନିଜ ଭିତରେ ନିର୍ଦ୍ଦିଷ୍ଟ ହେଲା । କ୍ଷେତ୍ରଜ୍ଞଙ୍କର ମାପ-କଠିରେ କ୍ଷର ଜଗତ୍ ମପାହେଲା ଓ କ୍ଷର ଜଗତ୍ ବା ଭୂତମାନଙ୍କ ଅନ୍ତରାଳସ୍ଥ ବସ୍ତୁ ଖୋଜିବାରେ ମାନବ ନିଜ ଭିତରକୁ ଗ୍ରହି, ସେଇ ଅନୁସାରେ ବିଶ୍ୱର ବ୍ୟାଖ୍ୟା କଲା । ମୋଟରେ ବିଶ୍ୱତତ୍ତ୍ୱ ଆଲୋଚନା ଓ ସାଧନାର ଦୃଷ୍ଟି ବାହାରୁ ଭିତରକୁ ଫେରିଲା, ଅନ୍ତର ଆଡ଼ୁ ବାହାରର ବ୍ୟାଖ୍ୟା ସ୍ପଷ୍ଟ ଦେଖାଗଲା ।

## କ୍ଷେତ୍ର ଓ କ୍ଷେତ୍ରଜ୍ଞର ସମ୍ବନ୍ଧ ଧାରଣା ଓ ଗୀତା—

ଋଗ୍‌ବେଦର ୧୦ମ ମଣ୍ଡଳ ଏବେ ମିଳୁଥିବା ଋଗ୍‌ବେଦ ସଂହିତାରେ ସବୁଠାରୁ ଆଧୁନିକ ବା ପର ଯୁଗର ବୋଲି ପଣ୍ଡିତମାନେ ସ୍ଥିର କରନ୍ତି । ସେଇ ଦଶମ ମଣ୍ଡଳରେ ଏଇ ଅନ୍ତର୍ଦୃଷ୍ଟି ତଥା ଶୂନ୍ୟ ଭାବର ଧକ୍କା ଲାଗିବାର ସ୍ପଷ୍ଟ ଦେଖାଯାଏ ।

ଏଥିରେ ହିଁ ବେଦର ସ୍ପଷ୍ଟ ବହିର୍ଦ୍ଦୃଷ୍ଟି ଅନ୍ତର୍ଦ୍ଦୃଷ୍ଟିରେ ରୂପାନ୍ତରିତ ହୋଇ କ୍ରମେ ଦୁଇ ଦିଗରୁ ବିଶ୍ୱବସ୍ତୁର ଧାରଣା ସ୍ପଷ୍ଟ ପୂର୍ଣ୍ଣତା ଆଡ଼କୁ ଗଲା । ଗୀତାରେ ଏଇ ଦୁଇ ଦୃଷ୍ଟିର ସମୁଚ୍ଚୟ । ଗୀତାରେ ଏଇ ଦୁଇର ସମନ୍ୱୟର ପୂର୍ଣ୍ଣାଙ୍ଗ ଓ ସାବୟବ ତତ୍ତ୍ୱ ପ୍ରକାଶ ପାଇଛି; ତାହାହିଁ ବେଦର ଯଥାର୍ଥ ତତ୍ତ୍ୱ ବୋଲି ପ୍ରତିପାଦନ କରାଯାଇଛି । ହେଲେ ହେଁ ସେସବୁ ଭିତରେ ମୌଳିକ ବେଦର ବିଶ୍ୱ କର୍ମ ଧାରଣା ଓ ବ୍ୟାଖ୍ୟା ହିଁ ସର୍ବତ୍ର ସମାନ ଭାବରେ ପ୍ରକାଶ ପାଇଛି । ଅନ୍ତର୍ଦ୍ଦୃଷ୍ଟିଜନିତ ଶୂନ୍ୟବାଦ ତଥା କର୍ମ-ଶୂନ୍ୟତାର ସ୍ଥାନ ଗୀତାରେ ଆଦୌ ନାହିଁ । ବେଦରେ କେବଳ ବାହାର ଦିଗରୁ ବିଶ୍ୱ ବୁଝିବାର ଯେ ସ୍ପଷ୍ଟ ସଙ୍କେତ ଜଣାପଡୁଥିଲା, ଗୀତା ସମସ୍ତ ଉପନିଷଦର ଭିତରେ ଦୁଇ ଦିଗରୁ ସେଇ ତତ୍ତ୍ୱ ଧାରଣାର ସମ୍ୟକ୍ ବ୍ୟାଖ୍ୟା ଦେଇ, ବିଶ୍ଳେଷଣର ଆଲୋଚନା ପୂର୍ଣ୍ଣ କଲେ ମାତ୍ର । କିନ୍ତୁ ସେସବୁ କରିଗଲା, କେବଳ ମୂଳ ବୈଦିକ ତତ୍ତ୍ୱ ଓ ଯଜ୍ଞାଦି ସାଧନାର ପ୍ରତିପାଦନ ନିମନ୍ତେ—ପ୍ରତିକାର ନିମନ୍ତେ ନୁହେ । ଗୀତାରେ କୌଣସି ନୂତନ ତତ୍ତ୍ୱ ନାହିଁ, ମୌଳିକ ବେଦ ତତ୍ତ୍ୱର ପ୍ରଚୁର ଓ ସର୍ବାଙ୍ଗୀନ ବ୍ୟାଖ୍ୟା ଅଛି ମାତ୍ର । ବେଦର ତତ୍ତ୍ୱ ଅବବୋଧରେ ଯେଉଁ ଅଙ୍ଗ ସ୍ପଷ୍ଟ ପ୍ରକାଶ ପାଇ ନ ଥିଲା ଓ ପରବର୍ତ୍ତୀ କାଳର ଅନ୍ତର୍ଦ୍ଦୃଷ୍ଟି ମାତ୍ର ଜନିତ ତତ୍ତ୍ୱ ଅବବୋଧ ବ୍ୟାଖ୍ୟା ଓ ସାଧନାରେ ବେଦତତ୍ତ୍ୱର ହ୍ରାସ ତ ଯେଉଁ ପ୍ରତ୍ୟବାୟ ଓ ଅପଲାପ ଘଟିଥିଲା, ଗୀତାରେ ପୂର୍ଣ୍ଣ ବ୍ୟାଖ୍ୟାରେ ତାର ପ୍ରତିକାର ହୋଇଛି । ମାତ୍ର ଏଠାରେ କହିବାର କଥା, ବେଦରେ ନ ଥିବା ଯେଉଁ ଚିନ୍ତା ଓ ସାଧନା ଧାରାଟି ବେଦଭାବରେ ଧକ୍କା ଦେଲା; ତାର ଭିତ୍ତି ଓ ପରିଣାମ କିଣ, ପୁଣି ତାହା କେଉଁଠାରେ କିପରି ପ୍ରକାଶ ପାଇଥିଲା ।

## ତତ୍ତ୍ୱ ବିଚାର ତଥା ଧର୍ମମତରେ ଭାରତର ଚିରନ୍ତନ ଉଦାରତା—

ଭାରତରେ ପ୍ରାଚୀନ କାଳରୁ ଧର୍ମ ବୋଇଲେ ବିଶ୍ୱତତ୍ତ୍ୱର ବ୍ୟାଖ୍ୟା ସଙ୍ଗେ ଜଡ଼ିତ ଲୋକ-ବ୍ୟବହାର । ସେଥିପାଇଁ ବିଶ୍ୱତତ୍ତ୍ୱ ସମ୍ବନ୍ଧୀୟ ଜଟିଳ ସମସ୍ୟାର ସମାଧାନ ଏ ଦେଶରେ ଆଦିମ କାଳରୁ ବିକାଶ ପାଇଥିଲା । ଏଇ ବିଶ୍ୱସମସ୍ୟାମାନଙ୍କର ସମାଧାନରେ ଭାରତ ଲୋକେ ସର୍ବଦା ସବୁ ମତ, ସବୁ ଲୋକ-ବ୍ୟବହାର ପାଇଁ ଉନ୍ମୁକ୍ତ । ଏଥିରେ କେହି କେବେ ବିରୋଧ କରନ୍ତି ନାହିଁ । କୌଣସି ଭିନ୍ନ ମତ ବା ଭିନ୍ନ ସମାଧାନର ସଙ୍କେତ ପାଇଲେ ସେମାନେ ଅନ୍ଧ ପରି ବିରୋଧ ନ କରି, ନିଜ ମତଜନିତ ଦୃପ୍ତତାରେ ଅନ୍ୟକୁ ସ୍ୱୀକାର କରାଇ ନେବାର ତାଦୃଶ ଉଦ୍ୟମ ନ କରି, ଅନ୍ୟର ମତ ବିଚାର କରି ଦେଖନ୍ତି । ଏଇପରି ମତ ମତାନ୍ତରର ଆଦାନ ପ୍ରଦାନ ଏ ଦେଶର ଚିରନ୍ତନ ଭାବ । ଏହାହିଁ ଏ ଦେଶ ସଭ୍ୟତା ଓ ସଂସ୍କୃତିର ପରମ ବିଶେଷତ୍ୱ । ବୈଦିକ ଓ ଭେଦରୁ ଭିନ୍ନ ବିଶ୍ୱତତ୍ତ୍ୱ ଆଲୋଚନା ଓ ଜୀବନତତ୍ତ୍ୱର ସମାଧାନ ଓ ତଦନୁରୂପ 'ଆଚାର' ମାନ ଆଦିମ କାଳରୁ କିପରି ପରସ୍ପର ଆଦାନ

ପ୍ରଦାନରେ ଏ ଦେଶରେ ବିକାଶ ଓ ବୃଦ୍ଧି ଲଭିଥିଲା, ତାହାର ଯଥେଷ୍ଟ ବ୍ୟାଖ୍ୟା ଓ ଉଦାହରଣ ପୂର୍ବେ ଦିଆଯାଇଛି । ଏବେ ମୂଳରେ ଏଇ ସାଧନା କିପରି ବିକାଶ ପାଇଥିଲା, ତାହା ଦେଖାଯାଉ । ଆରମ୍ଭରୁ ଏତିକି ମନେ ରଖିବାକୁ ହେବ ଯେ, କର୍କଶ ଆର୍ଯ୍ୟଜୀବନ ତତ୍ତ୍ୱରେ ତଥା ବ୍ୟବହାରରେ ବହିର୍ମୁଖ—ସମ୍ଭବତଃ ଫଳଲୋଭୀ ଓ କାମନାପର ଅଧିକାରବାଦୀ ଥିଲା । ସେଥିରେ କି ପ୍ରଭାବ ପଡ଼ି ତାର ଦୃଷ୍ଟି ଭିତରକୁ ଫେରିଲା; ଅଥଚ ଫେରି ମଧ୍ୟ ବାହାର ସଙ୍ଗେ ତାର ସମାଧାନ କରି 'ବୈଦିକ ଆର୍ଯ୍ୟ ସଭ୍ୟତା'—ଉଦାର ପୁଷ୍କଳ ଓ ବିସ୍ତୀର୍ଣ୍ଣ ଗୀତାପ୍ରଚାରିତ ଧର୍ମର ବିକାଶ କଲା, ତାହାହିଁ ପରବର୍ତ୍ତୀ ସଙ୍କେତମାନଙ୍କରେ ଲକ୍ଷ୍ୟ କରିବାକୁ ହେବ ।

## ପ୍ରାଚୀନ ଭାରତର ଅନାର୍ଯ୍ୟ ସଭ୍ୟତା—

ବେଦ ଏ ଦେଶରେ ଆର୍ଯ୍ୟମାନଙ୍କ ସାହିତ୍ୟ । ମାତ୍ର ସମ୍ପୂର୍ଣ୍ଣରୂପେ ଏହା ଆଗନ୍ତୁକ ଆର୍ଯ୍ୟଙ୍କର ସାହିତ୍ୟ ନୁହେଁ । ସତ୍‌ରେ ଅସତ୍‌ର ଧକ୍‌କା ବାଜି ଏ ସାହିତ୍ୟର ଗତି ଓ ଆଭିମୁଖ୍ୟ ବଦଳି ଥିବାର ସୂଚନା ଦିଆଯାଇଛି । 'ନାସଦୀୟ ସୂକ୍ତ' (ଋ-୧. ୧୨୯) ଏଥିରେ ଉଦାହରଣ ମଧ୍ୟ ଦିଆଯାଇଛି । ଏଇ ଭାବ ଦ୍ୱନ୍ଦ୍ୱ ପରବର୍ତ୍ତୀ କାଳରେ ବେଦରେ ଖୁବ୍ ଦେଖାଯାଏ । ପ୍ରଥମେ ଜଳ ଥିଲା, ସେଇଥିରୁ ସବୁ ପରେ ହେଲା—(ଋ—୧୦. ୭୨. ୬; ୧୦.୮୨.୬) । ବିରାଟ ପୁରୁଷର ଯଜ୍ଞ (ଋ-୧. ୯୦); ଋତ ଓ ସତ୍ୟରୁ ଜଗତ୍ (ଋ-୧. ୧୨୧) କଥା ପୂର୍ବେ କୁହାଯାଇଛି । "ଆପୋ ବା ଇଦମଗ୍ରେ ସଲିଲମାସୀତ୍," ଏଇ ସବୁର ପ୍ରଥମେ ଜଳ ଥିଲା । (ତୈ-ବ୍ରା-୧. ୧. ୩. ୫) । ପୁଣି "ଦେବାନାଂ ପୂର୍ବ୍ୟେ ଯୁଗେ ଅସତଃ ସଦଜାୟତ ।" ଦେବତାଙ୍କ ପୂର୍ବରୁ 'ଅସତ୍' (ଶୂନ୍ୟ)ରୁ ସତ୍ (ପ୍ରକାଶ) ଜାତ ହେଲା । "ଅସଦ୍ ବା ଇଦମଗ୍ର ଆସୀତ୍," ସବୁ ପହିଲେ 'ଅସତ୍' (ଶୂନ୍ୟ) ଥିଲା—(ତୈ-ଉପ-୨. ୭) । "ତମୋ ବା ଇଦମଗ୍ର ଆସୀତ୍," ସବୁ ଆଗେ ତମ (ଅନ୍ଧାର) ଥିଲା—(ମୈ-ଉପ-୫. ୨) । "ନୈବେହ କିଂଚନାଗ୍ର ଆସୀନ୍ ମୃତ୍ୟୁନୈବେଦମାବୃତମାସୀତ୍", ପ୍ରଥମେ ଏହା ଶୂନ୍ୟ ଥିଲା, ସମସ୍ତ ମୃତ୍ୟୁରେ ଆଚ୍ଛାଦିତ ଥିଲା (ଅମୃତ ବା ମର୍ତ୍ତ୍ୟ ବୋଲି କିଛି ନ ଥିଲା)—(ବୃହ-ଉପ-୧. ୨. ୧) । ପୁଣି "ସଦେବ ସୌମ୍ୟେଦମଗ୍ର ଆସୀତ୍", ହେ ସୌମ୍ୟ, ପହିଲେ ସତ୍ ଥିଲା (ଛାନ୍ଦୋ-ଉପ-୬. ୨); "ଆକାଶଃ ପରାୟଣଂ" ଆକାଶ (ଶୂନ୍ୟ ?) ସମସ୍ତଙ୍କର ମୂଳ—(ଛାନ୍ଦୋ-ଉପ-୧. ୯) ଏ ସବୁର ଉଦାହରଣ ବହୁତ ମିଳିବ । ଖୁବ୍ ସମ୍ଭବ ଏହା ଏଇ ଦେଶରେ ଚିରନ୍ତନ 'ଅନାର୍ଯ୍ୟ' ସଭ୍ୟତାର ଧକ୍‌କାରେ ସମାଧାନର ଉଦ୍ୟମ—ଏ ସୂଚନା ପୂର୍ବେ ଦିଆଯାଇଛି ।

## ଗୀତାରେ 'ଅନାର୍ଯ୍ୟ ଜୁଷ୍ଟ'--

କେବଳ ଉତ୍ତର-ପଶ୍ଚିମ ସୀମାନ୍ତର ସୈନ୍ଧବ ଉପତ୍ୟକା ଛାଡ଼ିଦେଲେ ପ୍ରଥମେ ଏ ଦେଶରେ ଆର୍ଯ୍ୟ ନ ଥିଲେ । ମାତ୍ର ଆର୍ଯ୍ୟ ଭିତରକୁ ପଶିବା ସଙ୍ଗେ ଆର୍ଯ୍ୟ

ଅହଂକାର ପଶିଲା । ହେଲେ ହେଁ ଅନାର୍ଯ୍ୟ ସଭ୍ୟତାର ପ୍ରଚଣ୍ଡ ପ୍ରଭାବ ସଂଖାଳିବା ସହଜ ନ ଥିଲା । ଅନ୍ୟ କଥା ଛାଡ଼ିଦେଲେ ମଧ୍ୟ, କେବଳ ଗୀତ ୨.୨ରେ ଯେଉଁ 'ଅନାର୍ଯ୍ୟ ଜୁଷ୍ଟ' ପଦଟି ଅଛି, ସେଥିରୁହିଁ ଯଥେଷ୍ଟ ସୂଚନା ମିଳୁଚି, ଅନାର୍ଯ୍ୟର ଧର୍ମ ଓ ଆଚରଣ ଦେଶରେ ଘୋଟିଯାଉଥିଲା ଓ ଅର୍ଜୁନଙ୍କ ଭଳି ଲୋକ ସେଥିରେ ଘୋର ପ୍ରଭାବିତ ହେଉଥିଲେ: ପୁଣି କୃଷ୍ଣଙ୍କ ଭଳି ମନସ୍ୱୀ ତାହା ସମାଧାନରେ ସଂଖାଳୁଥିଲେ । ଅର୍ଜୁନ ସେଇ ଅନାର୍ଯ୍ୟ ପ୍ରଭାବରେ ପଡ଼ି 'କୁଳଧର୍ମ'ରେ ଭୁଲି, କର୍ମ-ତ୍ୟାଗ-ସଂନ୍ୟାସକୁ ପସନ୍ଦ କଲେ । କୃଷ୍ଣ 'ସ୍ୱଧର୍ମ'ରେ ଯଥାର୍ଥ 'କୁଳଧର୍ମ'ର ଓ 'ନୈଷ୍କାମ:କର୍ମସାଧନାର ସନ୍ୟାସ'ରେ 'କର୍ମତ୍ୟାଗ' ର ଧାରଣା ଛଡ଼ାଇବା ପାଇଁ ସମସ୍ତ ଗୀତାରେ ବେଦର ଯଥାର୍ଥ ତତ୍ତ୍ୱ ପ୍ରଚାର କରି ଧାରଣା ଦ୍ୱନ୍ଦ୍ୱର ସମାଧାନ କଲେ ।

## ଆଗେ ସ୍ପଷ୍ଟ ପ୍ରମାଣର ଅଭାବ—

ଏଇ ଅନାର୍ଯ୍ୟମାନେ ଯେ ସଭ୍ୟତା ତଥା ଚିନ୍ତାରେ ଖୁବ୍ ଉନ୍ନତ ଥିଲେ, ତାର ସ୍ୱତନ୍ତ୍ର ପ୍ରମାଣ ଆଗେ ମିଳୁ ନ ଥିଲା । ଆଗେ ପଣ୍ଡିତମାନେ ଭାରତ ସଭ୍ୟତା ବିଷୟ ଆଲୋଚନା କଲାବେଳେ ଗୋଟିଏ ପ୍ରତିଷ୍ଠିତ ଧାରଣାରୁ ବିଚାର କରୁଥିଲେ । ସେମାନଙ୍କର ଧାରଣା ଥିଲା, ଭାରତର ସବୁ ସଭ୍ୟତାର ମୂଳ 'ବୈଦିକ ଆର୍ଯ୍ୟ ସଭ୍ୟତା' । ଏହି ବୈଦିକ ଆର୍ଯ୍ୟ ସଭ୍ୟତା ଯେ କ ଆଘାତ ପ୍ରତିଘାତ, ଆଦାନ ପ୍ରଦାନ ଓ ସମାଧାନର ଫଳ, ତାହା ବିଚାର କରିବାର ବିଶେଷ କିଛି ସଙ୍କେତ ନ ଥିଲା । ସେମାନେ ଠିକ୍ କରି ନେଇଥିଲେ, ଅନାର୍ଯ୍ୟମାନଙ୍କର ତାତ୍ତ୍ୱିକ ବିଚାର ବୋଲି କିଛି ନ ଥିଲା । ଯଥାର୍ଥରେ ସମ୍ପୂର୍ଣ୍ଣରୂପେ ଆର୍ଯ୍ୟମାନଙ୍କଦ୍ୱାରା ସ୍ୱୀକୃତ ବେଦ ପରି ବିରାଟ ଗ୍ରନ୍ଥ ପାଖେ ରଖି ବିଶ୍ଳେଷଣ ବା ବିଚାର କରିବାର କିଛି ସରଂଜାମ ମଧ୍ୟ ନ ଥିଲା । ମୌଳିକ ବୌଦ୍ଧ ଓ ଶିବ ଶକ୍ତି ଧର୍ମରେ ଅନାର୍ଯ୍ୟ ପ୍ରଭାବ ପଡ଼ିଥିବାର କେହି କେହି ଶଂକା କରୁଥିଲେ ହେଁ, ସେ ସବୁକୁ ବୈଦିକ ଧର୍ମର ସ୍ୱାଭାବିକ ଶାଖା ଓ ସନ୍ତାନ ବୋଲି ଭାବିବାର ଝୁଙ୍କ ପଡ଼ି ଯାଇଥିଲା ।

## ପ୍ରାଚୀନ ସିନ୍ଧୁ ସଭ୍ୟତାର ଅବଶେଷ—

ମାତ୍ର ଏବେ ଗବେଷଣାର ଧାରା ବହୁତ ବଦଳିଚି । ବିଶେଷରେ ଏବେ ପ୍ରାୟ ୧୨।୧୪ ବର୍ଷ ହେଲା ସିନ୍ଧୁ ନଦୀର ଉପତ୍ୟକାରେ 'ମହେଞ୍ଜୋଦାରୋ' ପ୍ରଭୃତିରୁ ଖୋଳା ହୋଇ ପ୍ରାଚୀନ ଭାରତ ସଭ୍ୟତାର ଯେଉଁ ନିଦର୍ଶନ ନିଦର୍ଶନମାନ ବାହାରିଚି ଓ ସେଥି ସଙ୍ଗେ ପ୍ରାଚୀନ ସୁମେରୁ, ସିରିଆ, ବାବିଲନ (ମେସୋପୋଟାମିଆ), ସିରିଆ, ଆସିଆ ମାଇନର; ଇଜିପ୍ଟ ପ୍ରଭୃତି ଦେଶରେ ମିଳୁଥିବା ଅବଶେଷମାନଙ୍କର ଯେ ସାମ୍ୟ ଓ ସାମଞ୍ଜସ୍ୟ ସବୁ ମିଳୁଚି ସେଥିରୁ ସ୍ପଷ୍ଟ ସୂଚନା ମିଳୁଚି ଯେ ଏଇ ପ୍ରାଚୀନ ଭାରତ ସଭ୍ୟତା ଅତି ପୁଷ୍କଳ, ବିଶାଳ,

ମୌଳିକ ଓ ବହୁ ପ୍ରଭାବଶାଳୀ ଥିଲା । * ସେହି ଅନାର୍ଯ୍ୟଙ୍କ ଭିତରେ ଲିଙ୍ଗରୂପୀ ମହାଦେବଙ୍କ ପୂଜା ପ୍ରତିଷ୍ଠିତ ଥିଲା । ପଶୁବେଷ୍ଟିତ ବହୁ (ପଞ୍ଚ ? ) ମୁଖ ଏହି ମହାଦେବ ଭକ୍ତ ପୂଜିତ ଭାବରେ ଅଙ୍କିତ ରହିଥିବାର ମୁଦ୍ରାମାନ ମିଳିଛି । ବେଦରେ ମଧ୍ୟ ରୁଦ୍ରଦେବ, ଭୂତପତି । ସେ ଅସୁର, ତାଙ୍କୁ ଶିବ ବା ମଙ୍ଗଳମୟ ବୋଲି ପୂଜା କଲେ ସେ ତୁଷ୍ଟ ହୁଅନ୍ତି । ନଚେତ୍ ବେଦର ସବୁ ଦେବତାଙ୍କ ଭିତରେ ସେହି ଏକା ମହାଭୟଙ୍କର । ସେ ଅସୁରଦେବ ବରୁଣଙ୍କୁ ବଳି ବଡ ଭେଷଜଜ୍ଞ (ବୈଦ୍ୟ ବା ଚିକିତ୍ସକ) (ଋ- ୧. ୩୩. ୪) । ସେ ନିଜର ଆର୍ଯ୍ୟ ତଥା ଅନାର୍ଯ୍ୟ ଉପାସକଙ୍କୁ ରକ୍ଷା କରନ୍ତି ( ଋ-୧. ୩୫. ୧୫ ) । ଜଳ ସଙ୍ଗେ ତାଙ୍କ ଭିଷକ୍‌ବିଦ୍ୟାର ସମ୍ପର୍କ ( ଋ-୧. ୩୩. ୭ ) । ଶିବ ବୋଲି ତାଙ୍କୁ ଉପାସନା କଲେ ତାଙ୍କ ଅସୁରତ୍ୱ ଶାନ୍ତ ହୁଏ, ଏହା ପୂର୍ବେ କୁହାଯାଇଛି ।

## ଲିଙ୍ଗପୂଜା ଓ ମହାଦେବ—

ପୂର୍ବେ 'ଶିଶ୍ନଦେବ' ଅନାର୍ଯ୍ୟଙ୍କ ଉଲ୍ଲେଖ ବେଦରେ ଥିବାର କୁହାଯାଇଛି । ମହାଦେବ ଯେ ଅନାର୍ଯ୍ୟ ଦେବତା, ତାର ପ୍ରମାଣ ମଧ୍ୟ ପୁରାଣାଦି ବୈଦିକ ସାହିତ୍ୟରୁ ଯଥେଷ୍ଟ ସୂଚିତ ହୁଏ । ମହାଦେବ 'ଦକ୍ଷ-ପ୍ରଜାପତି'ଙ୍କ କନ୍ୟାଙ୍କୁ 'ସତୀ'ଙ୍କୁ ବିଭା ହୋଇଥିଲେ ମଧ୍ୟ ବୈଦିକ ଦେବତା ଓ ଋଷିଙ୍କ ପାଖେ ଅପାଂକ୍ତେୟ ଥିବା କଥା ଦକ୍ଷ-ଯଜ୍ଞର ବର୍ଣ୍ଣନାରେ ସ୍ପଷ୍ଟ । ଶ୍ୱଶୁର ଦକ୍ଷ-ପ୍ରଜାପତି ଦେବତା ଓ ଋଷିମାନଙ୍କୁ ନେଇ ବିରାଟ ଯଜ୍ଞ ଆରମ୍ଭ କଲେ । ମାତ୍ର ଯୁଆଁଇ ମହାଦେବ ତଥା ଝିଅ ସତୀଙ୍କୁ ସେ ଯଜ୍ଞକୁ ନିମନ୍ତ୍ରଣ କରିବାକୁ ସାହସ କରି ନ ଥିଲେ । ସେଥିପାଇଁ ଅପମାନରେ 'ସତୀ' ଅଜ୍ଞାତସାରରେ ପିତୃଗୃହକୁ ଯାଇ ଯଜ୍ଞକୁଣ୍ଡରେ ଆତ୍ମବିସର୍ଜନ କଲେ ଓ ମହାଦେବ ରାଗରେ ଅତି ଦୁରନ୍ତ ନିର୍ମମ ଭାବରେ ସମସ୍ତ ଯଜ୍ଞଟି ଭାଙ୍ଗି ଅସ୍ତବ୍ୟସ୍ତ କରିଦେଲେ । ଋଷି ଓ ଦେବତାମାନେ ଭୟରେ ଲୁଚି ପଳାଇଲେ । ଏଥିରେ ମହାଦେବଙ୍କୁ ଅତି ଦୁରନ୍ତ ବର୍ବର ପରି ବର୍ଣ୍ଣନା କଲେ ମଧ୍ୟ ତାଙ୍କର ମହତ୍ତ୍ୱ, ପ୍ରତିଷ୍ଠା ଓ ପ୍ରତିପତ୍ତି ଯେପରି ସ୍ୱୀକାର କରାଯାଇଛି, ସେଥିରୁ ସୂଚନା ମିଳେ, ସେହି ଅନାର୍ଯ୍ୟଦେବ ଶିଶ୍ନରୂପୀଙ୍କର ପ୍ରଭାବ ଏଡ଼ିବାର ଉପାୟ ନଥିଲା । ସେ ଅପାଂକ୍ତେୟ ହେଲେ ମଧ୍ୟ ଅବହେଳିତ ହେବାର ବସ୍ତୁ ନ ଥିଲେ । ଆର୍ଯ୍ୟଦେବତା ଓ ଋଷିମାନେ ତାଙ୍କ ପ୍ରଭାବରେ ଥରହର ହେଉଥିଲେ । ଶେଷରେ ସେ ଆର୍ଯ୍ୟ ଦେବତାଙ୍କ ଭିତରେ

---

* ପୃଥିବୀର ସଭ୍ୟତାରେ ଏହି ପ୍ରାଚୀନ ଭାରତ ସଭ୍ୟତାର ବିଶାଳ ପ୍ରଭାବ କଥା ପୂର୍ବେ ସୂଚିତ ହୋଇଛି—ଏ ସଂପର୍କରେ ବିଶେଷରେ ନୂତନ ପ୍ରକାଶିତ E. Mackey's 'Indus Civilisation' ଓ V. Gordon Chilbe's 'The Most Ancient East' ଦେଖ ।

ନିଜର ପ୍ରତିଷ୍ଠା ଯେ ଠିକ୍ କରି ନେଇଥିଲେ, ତାର ପ୍ରମାଣ ମଧ୍ୟ ସେହି ଉପାଖ୍ୟାନଟିରେ ସ୍ପଷ୍ଟ ଦେଖାଯାଉଛି । ଏହି ଦୁରନ୍ତକର୍ମା ରୁଦ୍ରରୂପୀ ମହାଧ୍ୱଂସଲୀଳାମୟ ମହାକାଳନାମା ଅପ୍ରତିହତପ୍ରଭାବ ଶିଶ୍ନ ପ୍ରତୀକ ମହାଦେବ, ବଜ୍ରଧାରୀ ବୈଦିକ ରୁଦ୍ରଦେବତାଙ୍କ ସ୍ଥାନ କିପରି କେବେ ଅଧିକାର କଲେ, ତାହା ଜାଣିବାର ଏବେ ଉପାୟ ନାହିଁ । କିନ୍ତୁ ଏହା ସତ୍ୟ ଯେ, ପ୍ରଥମେ 'ରୁଦ୍ର' ମହାଦେବ ନଥିଲେ । ପରେ ମଧ୍ୟ ଏହି 'ରୁଦ୍ର' 'ମହାକାଳ' କେବେ କିପରି 'ଶିବ' (ମଙ୍ଗଳ) ଓ 'ଶଙ୍କର' (ଶୁଭଙ୍କର) ନାମ ପାଇଲେ, ତା ମଧ୍ୟ ବହୁ ଚିନ୍ତା ଓ ଗବେଷଣାର ଅପେକ୍ଷା ରଖେ । ମାତ୍ର ରୁଦ୍ର ଯେ ଶିବ ହେଲେ ଏଥିରେ ସନ୍ଦେହ ନାହିଁ ଓ ଯେଉଁ ଅନାର୍ଯ୍ୟ-ଦେବ ଦୁରନ୍ତକର୍ମା ଓ ଶିଶ୍ନରୂପୀ ବୋଲି ପ୍ରଥମେ ଘୃଣା ଓ ତା ପରେ ଭୟର କାରଣ ଥିଲେ, ପରେ ସେ ମଙ୍ଗଳମୟ ଦେବତା ବୋଲି ସ୍ୱୀକୃତ ହେବାରେ ଆର୍ଯ୍ୟ ସଭ୍ୟତା ଉପରେ ଅନାର୍ଯ୍ୟ ପ୍ରଭାବ ଓ ଦୁହିଙ୍କର ମିଳନର ସାମଞ୍ଜସ୍ୟ ଫୁଟିଥିବା କଥା ସ୍ପଷ୍ଟ ।

## ବୈଦିକ ସାହିତ୍ୟରେ 'ଶିଶ୍ନ' ଦେବଙ୍କ ପ୍ରତି ଘୃଣା, ଭୟ, ଭକ୍ତି—

ଏହି ମହାଦେବ ପୁଣି ନିର୍ଲୋମ, ହସ୍ତୀଚର୍ମପରିହିତ (କୃତ୍ତିବାସ), ଲୋମଶବ୍ୟାଘ୍ର-ଚର୍ମାସନ, ଚନ୍ଦ୍ରଚୂଡ଼, ମସ୍ତକରେ ଗଙ୍ଗାପ୍ରବାହଧାରୀ, ମଧ୍ୟନେତ୍ରରୁ କାମଘାତରେ ଉଦ୍‌ଗତ ଅଗ୍ନିରେ କନ୍ଦର୍ପଧ୍ୱଂସକାରୀ । ଏସବୁରେ 'ଶିଶ୍ନ' (ପୁରୁଷର କାମେନ୍ଦ୍ରିୟ ବା ଲିଙ୍ଗ) ଦେବତାଙ୍କର ରୂପାଦି ଲକ୍ଷଣ ସ୍ପଷ୍ଟ ହେଲେ ହେଁ ଏସବୁରେ ପ୍ରାଥମିକ ଘୃଣାର ଲେଶ ସତ୍ତ୍ୱା ରହି ନାହିଁ । ପରେ ପୁଣି ଏହି ମହାଦେବ ହିମାଳୟ ବା ଶ୍ମଶାନବାସୀ, ନଗ୍ନ ( ଦିଗମ୍ବର ), ଅର୍ଦ୍ଧନାରୀଶ୍ୱର ଓ ସିଦ୍ଧଯୋଗୀ । ଏହାଙ୍କର ରୂପ କୁତ୍ସିତ (ବିରୂପାକ୍ଷ), ଜନ୍ମ ଜାତି ଅଜ୍ଞାତ (ଅନାର୍ଯ୍ୟଦେବତା), ତଥା ଦିଗମ୍ବରତ୍ୱ ହିଁ ସୁନ୍ଦରୀଲଲାମବରେଣ୍ୟ-ହିମାଳୟକନ୍ୟା 'ଉମା'ଙ୍କର ଏକାନ୍ତ ବରଣୀୟ । ଏହି ରୁଦ୍ରଦେବ ସିଦ୍ଧ ନଗ୍ନ ସଂସାରତ୍ୟାଗୀ ଯୋଗୀଙ୍କର ବୀର୍ଯ୍ୟହିଁ ତାରକାସୁର ନିଧନରେ ସର୍ବଦେବତାଙ୍କର କାମ୍ୟ । ଅସୁର ଶକ୍ତି ଓ ସଭ୍ୟତାର ପ୍ରଭାବ ଲୋପ କରିବାରେ ମହାଦେବଙ୍କ ଛଡ଼ା ଆଶ୍ରା ନାହିଁ । ସେଥିପାଇଁ ସର୍ବଦେବତା ଉମାଙ୍କ ତପସ୍ୟା, ବିବାହ ତଥା ମଧୁଶଯ୍ୟାରେ ପର୍ଯ୍ୟନ୍ତ ସହାୟ । ଶେଷରେ ଅସଭ୍ୟ ମହାଦେବ ଉମାଙ୍କ ସହିତ ରତିରେ ଅକୃତକାର୍ଯ୍ୟ ହୋଇ ଅଗ୍ନିଙ୍କ ମୁଖରେ କାମବିନ୍ଦୁ ଚରିତାର୍ଥ କଲେ ହେଁ (ହୁତବହମୁଖେ ସମ୍ଭୃତଂ ତଦ୍ଧିତେଜଃ—କାଳିଦାସ) ଦେବତାମାନେ ସେଥିରେ କୃତକୃତ୍ୟ ।

## ତ୍ୟାଗ ଓ ଯୋଗ, ତଥା ଶିବ ଓ ଶକ୍ତି—

ଏହି ଗୋଟିକ ମାତ୍ର ପୁରାଣରେ ସ୍ପଷ୍ଟ ପ୍ରକାଶ ପଡ଼ୁଛି, କିପରି ଅନାର୍ଯ୍ୟ ଦେବତା ଓ ଯୋଗ ସାଧନା ତଥା ସଂସାର ତ୍ୟାଗର ପ୍ରଭାବ ଆର୍ଯ୍ୟମାନଙ୍କ ଉପରେ

ପଡ଼ି, ଶେଷରେ ଆର୍ଯ୍ୟସଭ୍ୟତାର ଅଙ୍ଗୀଭୂତ ହୋଇଥିଲା । ଗୋଟିଏ କଥା ଏଠାରେ ଲକ୍ଷ୍ୟ କରିବାର ଅଛି । ମହାଦେବ, ବୈଦିକ ଇନ୍ଦ୍ରଙ୍କ ପରି ଭୋଗୀ ନୁହନ୍ତି; ତାଙ୍କର ଶଚୀ, ଜୟନ୍ତ, ନନ୍ଦନକାନନ ନାହିଁ; କିମ୍ବା ପରବର୍ତ୍ତୀ ପୁରାଣବର୍ଣ୍ଣିତ ବିଷ୍ଣୁଙ୍କ ପରି ପୀତାମ୍ବର ଓ ଲକ୍ଷ୍ମୀସରସ୍ୱତୀ-ସେବିତ ନୁହନ୍ତି ବା ବ୍ରହ୍ମାଙ୍କ ପରି ପଦ୍ମାସନରେ ବସି ଚାରି ମୁହଁରେ ବେଦ ପଢ଼ୁ ନାହାନ୍ତି । ସର୍ଜନ ବା ପାଳନ ତାଙ୍କର କାମ ନୁହେଁ । ସେ ମହାକାଳ, ସଂହାରର ଦେବତା; ପୁଣି ଶିବ । ସେ ଦିଗମ୍ବର, ଗୃହତ୍ୟାଗୀ ଓ ଶ୍ମଶାନବାସୀ, ପୁଣି ଅର୍ଦ୍ଧନାରୀଶ୍ୱର । ଶିବ ସଙ୍ଗେ ଶକ୍ତିର ନିତ୍ୟ ଯୋଗ । ମଙ୍ଗଳ ସଙ୍ଗେ ଶକ୍ତିମତ୍ତାର ଏ ଯୋଗ ଉପନିଷଦ୍‌ରେ ମଧ୍ୟ ପ୍ରକାଶ ପାଇଛି । ଉପନିଷଦ୍ କହିଛନ୍ତି, "ନାୟମାତ୍ମା ବଳହୀନେନ ଲଭ୍ୟଃ" ଅର୍ଥାତ୍ ବଳ ବା ଶକ୍ତି ନ ଥିଲେ ଆତ୍ମଲାଭ ଅସମ୍ଭବ ।

## ଅନାର୍ଯ୍ୟ ସଭ୍ୟତାର ଭିତ୍ତି ଓ ପ୍ରଭାବ—

ଏସବୁ କଥାର ସଙ୍କେତ ହୁଏତ ଅସ୍ପଷ୍ଟ । ମାତ୍ର ଅନାର୍ଯ୍ୟ ସଂସ୍କୃତିର କ ତାତ୍ତ୍ୱିକ ପ୍ରଭାବ କିପରି ଆର୍ଯ୍ୟସଭ୍ୟତା ଉପରେ ପଡ଼ିଥିଲା, ତାହା ଦେଖିଲେ, ଏଠାରେ ଏସବୁ ସଙ୍କେତ ବୋଧଗମ୍ୟ ହେବ ।

## କ୍ଷେତ୍ରଜ୍ଞରୁ ତତ୍ତ୍ୱ ବିଚାର—

ଜୀବନ ସଂଗ୍ରାମ ଓ ବାହାର ଶକ୍ତି ସଙ୍ଗେ ଆର୍ଯ୍ୟମାନଙ୍କର ଦୈନନ୍ଦିନ ନିଷ୍ଠାରେ ଯେ ନିତ୍ୟ ସଂଗ୍ରାମ ଓ ସଂଘର୍ଷର କଥା କୁହାଯାଇଛି, ଅନାର୍ଯ୍ୟମାନଙ୍କ ଜୀବନନିଷ୍ଠା ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଭାରତର ଚିର ଶ୍ୟାମଳ ସ୍ୱର୍ଣ୍ଣପ୍ରସୂ ଉପତ୍ୟକା ଓ ସମଭୂମିରେ ଅନାର୍ଯ୍ୟମାନଙ୍କ ବସତି ଥିଲା । ଆର୍ଯ୍ୟମାନେ ସେତେବେଳେ ଉତ୍ତର-ପଶ୍ଚିମ ଓ ପଞ୍ଜାବ ପ୍ରଦେଶର ପାର୍ବତ୍ୟ ଭୂମିରେ ଆବଦ୍ଧ ଥିଲେ—ସମଭୂମିକୁ ପଶି ନ ଥିଲେ । ଅନାର୍ଯ୍ୟମାନେ ସମସ୍ତ ଭାରତର ଉର୍ବର ସମଭୂମିରେ ରହି ଅପେକ୍ଷାକୃତ ନିଶ୍ଚିନ୍ତ ଜୀବନ ଯାପନ କରୁଥିଲେ ଓ ସେଇ ଶାନ୍ତି ଓ ସ୍ୱଚ୍ଛନ୍ଦତାରେ ରହିବାରୁ ବହୁ କାଳରୁ ଆତ୍ମତତ୍ତ୍ୱ ଓ ବିଶ୍ୱତତ୍ତ୍ୱର ଆଲୋଚନା ପ୍ରତି ତାଙ୍କ ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଏ ଦେଶ ଚିରକାଳ ତତ୍ତ୍ୱ ଗବେଷଣାର ଭୂମି । ମାତ୍ର ବାହାର ପ୍ରକୃତିର ଦାରୁଣ ସଂଘର୍ଷ ନ ଥିବାରୁ, ପ୍ରକୃତିର ଶାନ୍ତ କୋଳରେ ବଢ଼ି ଅନାର୍ଯ୍ୟ ମନୀଷୀଙ୍କ ଦୃଷ୍ଟି ବାହାରକୁ ନ ଯାଇ, ଗଲା ଭିତରକୁ । କ୍ଷେତ୍ରଜ୍ଞରୁ କ୍ଷେତ୍ରର ବିଚାର ଓ ସେଇ ବାଟେ ବିଶ୍ୱବିଚାରକୁ ସେମାନେ ଉଠିଥିଲେ । କେବଳ ଏଇ ଦୃଷ୍ଟିରେ ବିଶ୍ୱର ବିଚାର କଲେ, ଯାହା ପରିଣାମ ହେବାର କଥା, ତାହାହିଁ ସେମାନଙ୍କର ହୋଇଥିଲା । ପୂର୍ବେ କୁହାଯାଇଛି, ଏଇ ବିଚାରର ପରିଣାମ ହେଉଛି, ଜଗତ କେବଳ ବ୍ୟକ୍ତିର ଜ୍ଞାନ ଛଡ଼ା ଆଉ କିଛି ନୁହେଁ । ବ୍ୟକ୍ତିର 'ମୁଁ' ମଧ୍ୟ ସେଇପରି ବ୍ୟକ୍ତିର ଏକ

ଜ୍ଞାନ । ଅତଏବ ଜ୍ଞାନରେ ହିଁ ଈଶ୍ୱର ପ୍ରକାଶ । ଏଇ ଇନ୍ଦ୍ରିୟର ଜ୍ଞାନ ପ୍ରତି ମୁହୂର୍ତ୍ତରେ ବଦଳୁଚି, ଏଥିରେ ସ୍ଥିର ସତ୍ୟ ବସ୍ତୁ ବୋଲି କିଛି ନାହିଁ । କେବଳ ମନୁଷ୍ୟ ତୃଷ୍ଣା ବା କାମ ଯେଉଁ ସଂସାରରେ ଜ୍ଞାନର ପ୍ରବାହ ଓ ସେଥି ସଙ୍ଗେ କର୍ମର ପରଂପରା ଲଗାଇଚି । ତୃଷ୍ଣା ତଥା ତଜ୍ଜନିତ କର୍ମ ନ ଥିଲେ ଆଉ ଜ୍ଞାନ ନାହିଁ । ବାହାରର ଏଇ ଜ୍ଞାନ ବା ଇନ୍ଦ୍ରିୟଲବ୍ଧ ଜ୍ଞାନ ନ ଥିଲେ ଆଉ କିଛି ନାହିଁ । ସବୁ ଶୂନ୍ୟ । ତୃଷ୍ଣା ଓ କର୍ମର ଜଂଜାଳ ଲଗିଥିବାଯାଏ ସେଇ ତୃଷ୍ଣା ଓ କର୍ମର ପରଂପରା ଚାଲିଥାଏ । ଏଇ ପରଂପରା ହିଁ ବ୍ୟକ୍ତି ଓ ବ୍ୟକ୍ତିର ପୁନର୍ଜନ୍ମ ହେଉଚି, ଏଇ ତୃଷ୍ଣା ଓ କର୍ମ ପରଂପରାର ଅବିଚ୍ଛିନ୍ନ ପ୍ରବାହ ।

## ବୈଦିକ ପୁନର୍ଜନ୍ମ—

ଏଇ ପୁନର୍ଜନ୍ମର ସ୍ପଷ୍ଟ ଧାରଣା ବେଦରେ ମଧ୍ୟ ନାହିଁ । ମୃତ୍ୟୁ ପରେ ସ୍ୱର୍ଗାଦି ଭୋଗର ସ୍ପଷ୍ଟ ଧାରଣା ଥିଲେ ମଧ୍ୟ ପ୍ରାଚୀନ ସଂହିତାରେ ପୁଣି ମନୁଷ୍ୟ ହୋଇ ଜନ୍ମିବା କଥାଟି ନାହିଁ । ବୌଦ୍ଧ ମତର କିନ୍ତୁ ଏହା ହିଁ ଭିତ୍ତି । ଏଇ କର୍ମଜନିତ ପୁନର୍ଜନ୍ମରୁ ରକ୍ଷା ପାଇବା ହିଁ ନିର୍ବାଣ । ଉପନିଷଦାଦିରେ ଏଇ ପୁନର୍ଜନ୍ମ ସ୍ୱୀକୃତ । କିନ୍ତୁ ତାହା ଗୀତା ତଥା ପରବର୍ତ୍ତୀ ଦର୍ଶନଶାସ୍ତ୍ର ପରି 'ଯୁକ୍ତିମନ୍ତ ଓ ସୁନିଶ୍ଚିତ' ନୁହେ । ପଣ୍ଡିତମାନେ ଯଥାର୍ଥ ସ୍ଥିର କରନ୍ତି, ଏଇ ପୁନର୍ଜନ୍ମ ତତ୍ତ୍ୱଟି ଅନାର୍ଯ୍ୟ-ମତ । ଏହା ପରେ ବୈଦିକ ସାହିତ୍ୟରେ ପ୍ରବେଶ କରିଚି । ବାସ୍ତବରେ ଦେଖିବାକୁ ଗଲେ ଏଇ କର୍ମର ପରଂପରାରୁ ଯେ ଶରୀରରୁ ଶରୀର ହୁଏ, ଏଇ ବୌଦ୍ଧ ଭାବରୁ ଜନ୍ମାନ୍ତର-ବାଦର ବିକାଶ ସ୍ପଷ୍ଟ ଦେଖାଯିବ । ପ୍ରଥମେ ବିଶ୍ୱ ପୂର୍ଣ୍ଣ ଓ ପୂର୍ଣ୍ଣରୁ ପୂର୍ଣ୍ଣ, ଏଇ ଆଦିମ ବୈଦିକ ଭାବରେ, ପ୍ରାଚୀନ ଭାରତୀୟ ଆତ୍ମଦୃଷ୍ଟିମୂଳକ ଶୂନ୍ୟଭାବ ଲଗି ପ୍ରଥମେ କପିଳ ପ୍ରବର୍ତ୍ତିତ ସାଂଖ୍ୟ ଦର୍ଶନର ମୂଳ ସୃଷ୍ଟି କଲା । ଏଇ ସାଂଖ୍ୟ ବାହାରର ସତ୍ୟ ବସ୍ତୁକୁ ପ୍ରକୃତି ନାମ ଦେଇ, ତାହାର ଜଡ଼ତ୍ୱ ଓ 'ସତ୍ତ୍ୱ' 'ରଜ' 'ତମ'—ଏଇ ତିନି ଗୁଣର ଇତର ବିଶେଷରେ କ୍ରମ ପରିଣାମ ସ୍ୱୀକାର କଲେ । ଏହାର ମୂଳ ଓ ଶ୍ରେଷ୍ଠ ଗୁଣକୁ ସତ୍ତ୍ୱ ବା ସତ୍ୟ ଭାବ କହିଲେ ହେଁ ଏହା ଜଡ଼ ଈଶ୍ୱର ଦାର୍ଶନିକ ଭାଷାନ୍ତର ମାତ୍ର । ଯାହା ଅନୁଭୂତ ତାହା ଚେତନ ନୁହେଁ, ମାତ୍ର ସତ୍ୟ । ଏହାହିଁ ତାଙ୍କ ପ୍ରକୃତି । ପୁରୁଷ ଚେତନ ହେଲେହେଁ, ତାହା ବସ୍ତୁତଃ 'ଶୂନ୍ୟ'ର ଏକ ନାମାନ୍ତର ଓ ବସ୍ତୁତତ୍ତ୍ୱରେ ବେଦର ମୌଳିକ ଈଶ୍ୱର ସତ୍ୟତାର ଶୂନ୍ୟ ସଙ୍ଗେ ସମାଧାନ ମାତ୍ର । ସାଂଖ୍ୟର ପୁରୁଷ ଚେତନ ଓ ସତ୍ୟ ହେଲେ ହେଁ, ତାହା ନିଷ୍କ୍ରିୟ ଓ ଏକାବେଳକେ ନିରବଲଂବ । ତାର ହଲିବାର ନାହିଁ କି କରିବାର ନାହିଁ । ପ୍ରକୃତି ଜଡ଼ ହେଲେ ବି ପୁରୁଷ ପାଖେ ତାର ଗୁଣ ଦେଖାଇ ହେଉଥାଏ ମାତ୍ର । ପ୍ରକୃତି କାହିଁକି ମତେ ଦେଖାଉଚି ବୋଲି ପୁରୁଷ ବା ବ୍ୟକ୍ତିର 'ମୁଁ' ଜାଣିଗଲେ 'ମୁଁ'ର ମୁକ୍ତି । ଏଇ ଜାଣିଯିବା ପୁଣି କ୍ରିୟା ନୁହେ । ତାହା କେବଳ ଜାଣିବା, ବୁଦ୍ଧି ଧାରଣା କରିବାର

ଉପାଯ଼ ନାହିଁ । ଏଇ ପୁରୁଷ ପୁଣି ଯେତେ ବ୍ୟକ୍ତି ସେତୋଟି—ଏହା ଗୋଟିଏ ନୁହେ । ଯଥାର୍ଥରେ ଯେଉଁ ବ୍ୟକ୍ତିତ୍ୱ ବା 'ମୁଁ'କୁ ଶୂନ୍ୟ ବୋଲି ମୂଳ ବୌଦ୍ଧ ବା ଆଦିମ ଭାରତୀଯ଼ମାନେ କହୁଥିଲେ, ଏ ପୁରୁଷ ତାହାର ବୈଦିକ ସସ୍କରଣ ମାତ୍ର । ପୁଣି ପୁନର୍ଜନ୍ମରେ ପୁରୁଷର କିଛି ନାହିଁ । ପ୍ରକୃତିରେ ଯେଉଁ 'ବୃତ୍ତି' ବା କର୍ମସ୍ପେନ୍ଦନାର ପୀଠ ଥାଏ, ସେଇ କର୍ମଜନ୍ୟ କେତେଗୁଡ଼ିଏ ସାତ୍ତ୍ୱିକ, ରାଜସ ବା ତାମସ 'ଭାବ' ଧରେ । ସେଇ 'ଭାବ' ହେତୁରୁ ପୁନର୍ଜନ୍ମ ବା ପ୍ରକୃତିର ପୁଣି ଶରୀର ଧାରଣା ହୁଏ । ଏଇ 'ଭାବ' ଶବ୍ଦ ଗୀତା ମହା ସମାଧାନରେ ଆଭାସରେ ଗ୍ରହଣ କରାଯାଇଛି ( ୧୪.୪, ୫; ୭. ୧ ' ଦେଖ ) । ପୁଣି ବେଦାନ୍ତରେ ଏଇ ପ୍ରକୃତି, ମାଯ଼ା ଓ ଶରୀର 'ମାଯ଼ା'ଜନ୍ୟ । କର୍ମ ହେତୁରୁ ସ୍ଥୂଳ ଶରୀର ଗୁଡ଼ି, ଆତ୍ମା ଲିଙ୍ଗ ଶରୀର ଯେପରି ଅନ୍ୟ ଦେହକୁ ଚାଲିଯାଏ । ଗୀତାରେ ସ୍ପଷ୍ଟ ଏଇ 'ମାଯ଼ା' ବ୍ରହ୍ମ ବା ଆତ୍ମାର 'ଦୈବୀଶକ୍ତି' ଓ ଜୀବାତ୍ମା ବ୍ରହ୍ମର 'ପରାପ୍ରକୃତି' । ତେଣୁ 'ଲିଙ୍ଗଶରୀର' ମନ ଓ ଇନ୍ଦ୍ରିଯ଼ମାନଙ୍କୁ ଯେପରି କର୍ମଫଳ ଭୋଗ କରିବାକୁ ଅନ୍ୟ ଦେହକୁ ଯାଏ (୧୫.୭, ୮) । ଏଇଠାରେ ଶୂନ୍ୟ ଓ ସତ୍ୟ ଆତ୍ମାର କର୍ମ ସଙ୍ଗେ ପୂର୍ଣ୍ଣ ସମାଧାନ ହୋଇଛି । ଏହା ମଧ୍ୟ ଲକ୍ଷ୍ୟ କରିବାର ଅଛି ।

## ନିର୍ବାଣ—

ସେ ଯାହା ହେଉ, ଅନାର୍ଯ୍ୟ-ତତ୍ତ୍ୱର ଆଲୋଚନାରେ କର୍ମ ହିଁ ସବୁ । କର୍ମ ନ ଥିଲେ ତୃଷ୍ଣା ନାହିଁ । ତୃଷ୍ଣା ନ ଥିଲେ ଆଉ ବ୍ୟକ୍ତି ନାହିଁ । ବ୍ୟକ୍ତି ନ ଥିଲେ ଜଗତ୍ ନାହିଁ । ଏଇ ବ୍ୟକ୍ତି ନ ଥିବା ହିଁ ସର୍ବଶୂନ୍ୟତା । ଏହା ହିଁ ନିର୍ବାଣ—ଏହା ଦୀପ ଲିଭିଯିବା ପରି—ଏଇ ନିର୍ବାଣରେ ଆଉ କିଛି ରହେ ନାହିଁ—ଆଉ ପୁନର୍ଜନ୍ମର କଥାଇ ନ ଉଠେ । ଏଇ ନିର୍ବାଣ ବା ଶୂନ୍ୟତାହିଁ ବ୍ୟକ୍ତିର କାମ୍ୟ । ସମସ୍ତ ଜଗତର ମୂଳ ଶୂନ୍ୟ । କାମନା ଓ କର୍ମଜନିତ ଜନ୍ମାନ୍ତର ପରମ୍ପରା ହିଁ ଜ୍ଞାନର ଜଗତ ଦେଖାଉଛି । କର୍ମ ତୁଟିଗଲେ, କାମନାର ଶେଷ । କାମନା ନ ଥିଲେ ସବୁ ଶୂନ୍ୟ । ବିଶ୍ୱତତ୍ତ୍ୱ ବୋଲି ବସ୍ତୁ ବା ସତ୍ତା ନାହିଁ । ଶୂନ୍ୟରୁ ସବୁ ବାହାରୁଛି ଓ ଶୂନ୍ୟ ହୋଇଗଲେ ସବୁ ସରିଗଲା । ପୁଣି ପ୍ରତ୍ୟେକ ବ୍ୟକ୍ତି ପାଇଁ ତାର ଜଗତ୍ । ପ୍ରତ୍ୟେକ ବ୍ୟକ୍ତି ନିଜକୁ ଶୂନ୍ୟ କରିଦେବା ଛଡ଼ା ଆଉ କିଛି କଳ୍ପନା କରାଯାଇ ନ ପାରେ । କାହିଁକି ନା, ବ୍ୟକ୍ତି ଛଡ଼ା ଜଗତ୍ ବୋଲି ଆଉ କିଛି ନାହିଁ । କାରଣ, ଜଗତର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ମୁଁ ଯେଉଁ ଜଗତ୍ ଦେଖୁଛି, ତା ମୁଁ ଜାଣେ; ଅନ୍ୟ କି ଜଗତ୍ ଦେଖୁଛି, କଣ ବା ଜାଣୁଛି, ତାର ମାପକାଠି କିଛି ନାହିଁ; ନିଜର ଉପମାରେ ଅନ୍ୟର ଜଗତ୍, ତଥା ଅନ୍ୟର ସୁଖ ଦୁଃଖ ମାପିବାକୁ ହୁଏ ଓ ସେଇ ଅନୁସାରେ ଜଗତରେ ବ୍ୟବହାର କରିବାକୁ ହୁଏ ।

## ଲୋକବ୍ୟବହାରରେ ସାମ୍ୟ ଭାବ—

ଏଇ ତତ୍ତ୍ୱ ଉପରେ ଜଗତରେ ଯେଉଁ ବ୍ୟବହାର ଫୁଟିବାର କଥା, ସେକାଳେ ଅନାର୍ଯ୍ୟଙ୍କ ଭିତରେ ବ୍ୟକ୍ତିର ସେ ଶୀଳ ବା ଆଚରଣହିଁ ଫୁଟିଥିଲା । ଜଗତର ବ୍ୟବହାରରେ ବ୍ୟକ୍ତି ନିଜର ଜ୍ଞାନତୃଷ୍ଣା ସୁଖଦୁଃଖାଦିର ମାପରେ ଅନ୍ୟର ସୁଖ ଦୁଃଖାଦି ମାପି ବ୍ୟବହାର କରିବ । ସେଥିରେ ତୃଷ୍ଣାଦି ସଂଯତ ହେବ । ତା ନ ହେଲେ ତୃଷ୍ଣାଦି ବନ୍ଧନ ଓ କର୍ମଜାଲ ଅଯଥା ବଢ଼ିଯିବ । ଏଇ ସମବ୍ୟବହାରରେ ତୃଷ୍ଣା ସଂଯତ କରି ରହିବାଠାରୁ କର୍ମତ୍ୟାଗ କରି ଧ୍ୟାନରେ ଶୂନ୍ୟ ଚିନ୍ତା କରିବାରେ ତୃଷ୍ଣା ବରିବର ଲୁଚାଇ 'ନିର୍ବାଣ' ପାଇବା ହେଉଛି ମାନବର ଶ୍ରେୟଃ । ତାହାହିଁ ସର୍ବଥା ଆଚରଣୀୟ ।

## କର୍ମତ୍ୟାଗରେ ସଂନ୍ୟାସ ଓ ଧ୍ୟାନଯୋଗ—

ଫଳରେ ଏଥିରୁ କର୍ମତ୍ୟାଗରେ ସନ୍ୟାସ ଓ ଧ୍ୟାନଯୋଗରେ ଶୂନ୍ୟଧାରଣା ସ୍ଥିର ରଖିବା, ଏଇ ଦୁଇଟି ମୁଖ୍ୟ ସାଧନା ଫୁଟିଥିଲା । ମହେଞ୍ଜୋଦାରୋରୁ ଏବେ ଯେଉଁ ମୂର୍ତ୍ତିସବୁ ବାହାରିଛି, ସେଥିମଧ୍ୟରେ ଏହିପରି ନାସାଗ୍ରକୁ ଦୃଷ୍ଟି ନିଶ୍ଚଳ ହୋଇ ବସିଥିବା ଯୋଗୀର ପ୍ରତିକୃତି ମିଳୁଛି । ପଣ୍ଡିତମାନେ ଏଇ ମୂର୍ତ୍ତିରେ ପୁଣି ଆର୍ଯ୍ୟ ଆକୃତିର କୌଣସି ସାମଂଜସ୍ୟ ପାଉ ନାହାନ୍ତି । ଏହା ସମ୍ପୂର୍ଣ୍ଣ ଅନାର୍ଯ୍ୟ ଆକୃତି, ପୁଣି ବେଦଠାରୁ ଏହା କୌଣସି ପ୍ରକାରରେ ଅର୍ବାଚୀନ ନୁହେଁ ବୋଲି ମଧ୍ୟ ବିଶେଷଜ୍ଞ-ମାନଙ୍କ ମତ । ଏଇ ଯୋଗରେ ଅତି ପ୍ରାଚୀନକାଳରୁ ଅଷ୍ଟାଙ୍ଗ ନିରୋଧ, ଇନ୍ଦ୍ରିୟନିବୃତ୍ତି, ବାୟୁସାଧନ, ଶରୀରର ଶିରାନାଡ଼ୀ ପ୍ରଭୃତିର ସଂଯମନ ଆଦି ନାନା ଶରୀର ସାଧନାର ପନ୍ଥାମାନ ବାହାରିଲା । ଯୋଗୀମାନେ ଏଇ ସାଧନାରେ ବାୟୁକୁ ନାଡ଼ୀରେ ସଂଯତ କରି ତାଳୁବାଟେ ଗ୍ରନ୍ଥି ବ୍ୟକ୍ତିତ୍ୱର ଲୀଳା ଶେଷ କରି 'ନିର୍ବାଣ' ଭଜୁଥିଲେ । ବ୍ୟବହାରରେ ଏଇ ମୈତ୍ରୀ, ସାଧନାରେ ଏଇ ସନ୍ୟାସ ଓ ଏଇ ନିର୍ବାଣ ଲାଭ ହିଁ ବୌଦ୍ଧଧର୍ମର ଭିତ୍ତି । ଏହାହିଁ ଯେ ବିଶୁଦ୍ଧ ଅନାର୍ଯ୍ୟ ସଭ୍ୟତାର ଧାରା ଏ ଦେଶରେ ଜୀବିତ ରଖିଛି, ତାହାପରେ କୁହାଯାଉଛି ।

## କପିଳଙ୍କ ସାଂଖ୍ୟବାଦର ମୂଳ ଓ ବୌଦ୍ଧଧର୍ମ—

ଏଇ ତତ୍ତ୍ୱ ପରେ ପ୍ରକୃତି-ପୁରୁଷ-ଗତ ସାଂଖ୍ୟବାଦ ଓ ଏଇ ତତ୍ତ୍ୱ ପରେ ଧ୍ୟାନଯୋଗରୂପେ ବୈଦିକ ଧର୍ମରେ ସ୍ଥାନ ପାଇଲା । ଏଇ ତତ୍ତ୍ୱ ପରେ କପିଳ ନିଜ ଦର୍ଶନରେ ଓ ଏଇ ସାଧନା ପରେ ପତଞ୍ଜଳି ନିଜର ଯୋଗଦର୍ଶନରେ ଶୃଙ୍ଖଳିତ ଓ ବିଧିବଦ୍ଧ ଭାବରେ ପ୍ରଚାର କରିଥିଲେ ।



## ୧୧ । ବୌଦ୍ଧଧର୍ମ ଓ ଧର୍ମର ପରଂପରା

ମାତ୍ର ତାହା କହିବା ପୂର୍ବରୁ ଏଇ ପ୍ରାଚୀନ ତତ୍ତ୍ୱ ଓ ସାଧନାର ପରଂପରା ଯେ ବୈଦିକ ଧର୍ମ ଓ ଭାବ ସଙ୍ଗେ ସଙ୍ଗେ ଏ ଦେଶରେ ପାରଂପରିକ ଭାବରେ ରହି ଆସିଛି, ତାହା ଟିକିଏ ବିଗ୍ୱର କରିବା ଦରକାର । ପୂର୍ବେ ବୌଦ୍ଧ (ଯୋଗାଗ୍ୱର) ଧର୍ମର ଯେଉଁ ସୂଚନା ଦିଆଯାଇଛି, ତାହା ଏଇ ତତ୍ତ୍ୱ ଉପରେ ପ୍ରତିଷ୍ଠିତ; ପୁଣି ବୌଦ୍ଧଧର୍ମ ସଙ୍ଗେ ଯେଉଁ ତନ୍ତ୍ରର ଘନିଷ୍ଠ ସଂପର୍କ ସେଥିରେ ଏଇ ଶୂନ୍ୟସାଧନା ଯୋଗର ସ୍ପଷ୍ଟ ରୂପ ଦେଖିବାକୁ ମିଳେ ।

### ବୌଦ୍ଧ ଧର୍ମ—ବୈଦିକ ଧର୍ମର ସନ୍ତାନ ନୁହେଁ—

ବୌଦ୍ଧ ଧର୍ମକୁ ଅନେକ ବୈଦିକ ଧର୍ମର ଏକ ସନ୍ତାନ ଓ ତେଣୁ ବଡ଼ ଅର୍ବାଚୀନ ବୋଲି ମନେ କରନ୍ତି । ଅବଶ୍ୟ କପିଳବାସ୍ତୁର ଶୁଦ୍ଧୋଦନ-ପୁତ୍ର ଗୌତମ-ବୁଦ୍ଧ ଆଜକୁ ପ୍ରାୟ ୨୫୦୦ ବର୍ଷ ତଳ ଲୋକ । ତାଙ୍କଠାରୁ ବୌଦ୍ଧ ଧର୍ମ ବାହାରି ଥିବାରୁ ସମସ୍ତେ ଅନୁମାନ କରନ୍ତି । କିନ୍ତୁ ତା ନୁହେଁ—ବୌଦ୍ଧ ଧର୍ମର ଯେଉଁ ପ୍ରକାଶ ଓ ପ୍ରଗ୍ୱର ଗୌତମ ବୁଦ୍ଧଙ୍କଠାରୁ ହୋଇଛି, ତାହା ଗୋଟିଏ ଅତି ପ୍ରାଚୀନ ପରଂପରା ଉପରେ ପ୍ରତିଷ୍ଠିତ । ନିଜେ ବୌଦ୍ଧମାନେ ଶାସ୍ତ୍ର ପ୍ରମାଣ ଦେଇ କହନ୍ତି, ବୋଧିସତ୍ତ୍ୱ ବ୍ୟକ୍ତିମାନେ କାଳେ କାଳେ ଜ୍ଞାନ ଲାଭ କରି 'ବୁଦ୍ଧ' ହୁଅନ୍ତି । ଗୌତମଙ୍କ ନାମ କିଛି 'ବୁଦ୍ଧ' ନ ଥିଲା । ତାଙ୍କ ନାମ ଥିଲା 'ସିଦ୍ଧାର୍ଥ' । ସେ ଜ୍ଞାନ ପାଇଲା ପରେ ତାଙ୍କ ନାମ ହେଲା 'ବୁଦ୍ଧ' । ଏଇ ଜ୍ଞାନ ପାଇବା ପାଇଁ ସେ ବହୁ ଯତ୍ନ କରି ବେଦଧର୍ମୀ ବ୍ରାହ୍ମଣମାନଙ୍କଠାରୁ ବହୁ ଶିକ୍ଷା ଉପଦେଶ ସଂଗ୍ରହ କରି ବହୁ ସାଧନା ପରେ ଅକୃତକାର୍ଯ୍ୟ ହେଲେ । ପରେ ଦୀର୍ଘକାଳ ଏକାସନ ଏକ-ଧ୍ୟାନରେ ବୋଧିଦ୍ରୁମ ତଳେ ବସିରହି ଶେଷକୁ 'ବୁଦ୍ଧ' ହେଲେ । ସେତେବେଳେ ସେ ନିଜେ କହିଲେ, ମୁଁ 'ବୁଦ୍ଧ'; ନିର୍ବାଣ ମୋ ହାତରେ—ମୋର ଇଚ୍ଛାଧୀନ" ସେ ସ୍ପଷ୍ଟ କହୁଥିଲେ, ଦୃଶ୍ୟ ଜଗତ୍ ନଶ୍ୱର ଓ ଅନିତ୍ୟ । କର୍ମ ବିପାକ ହେତୁରୁ ତାର ବ୍ୟବହାର ପରଂପରା ଗ୍ୱଲିଛି । ହେଲେହେଁ ଏଇ ଦୃଶ୍ୟ ଜଗତ୍ର ମୂଳରେ ଏଇ ନାମ ରୂପରୁ ଅତୀତ ବା ଅତିରିକ୍ତ ଆତ୍ମା ବା ବ୍ରହ୍ମଭଳି କୌଣସି ନିତ୍ୟ ବସ୍ତୁ ନାହିଁ । ଆତ୍ମା ବା ବ୍ରହ୍ମ ବାସ୍ତବରେ କିଛି ନାହିଁ—କେବଳ ଭ୍ରମ; ତେଣୁ ଆତ୍ମାନାତ୍ମବିଗ୍ୱର ବା ବ୍ରହ୍ମ ଚିନ୍ତାର ଜଂଜାଳରେ ପଡ଼ି ବୃଥା ସମୟ ନଷ୍ଟ କରିବା ଠିକ୍ ନୁହେଁ । (ସଦାସବ ସୁତ୍ତ-୯·୧୩ ଦେଖ) ଆତ୍ମା ସଂବନ୍ଧୀୟ କୌଣସି ପ୍ରକାର କଳ୍ପନା ବୁଦ୍ଧ ମାନୁ ନ ଥିଲେ । ଏହା ଦୀର୍ଘନିକାୟ ଅନ୍ତର୍ଗତ ବ୍ରହ୍ମଜାଲ ସୁତ୍ତରୁ ସ୍ପଷ୍ଟ ଜଣାଯାଏ । (ତିଲକ ଗୀତାରହସ୍ୟ, ବଙ୍ଗ ସଂସ୍କରଣ, ୫୮୯ ପୃଷ୍ଠା ଦେଖ) ।

## ଧ୍ୟାନ ଓ ବୈରାଗ୍ୟ ଓ ସାଧନା—

ବୁଦ୍ଧ ପୁଣି କହୁଚନ୍ତି, ତୃଷ୍ଣା ବା ବାସନା ହିଁ ଏଇ ଜଗତର ସମସ୍ତ ଦୁଃଖର ମୂଳ; ଏକ ନାମରୂପାତ୍ମକ ଦେହର ନାଶ ହେଲେ, ଅବଶିଷ୍ଟ ଏଇ ବାସନାତ୍ମକ ବୀଜରୁ ଅନ୍ୟାନ୍ୟ ନାମରୂପାତ୍ମକ ଦେହ ପୁନଃ ପୁନଃ ଉତ୍ପନ୍ନ ହୁଏ । ଏଇ ପୁନର୍ଜନ୍ମଜନିତ ଦୁଃଖମୟ ସଂସାରରୁ ମୁକ୍ତି ଲାଭ କରିବା ନିମନ୍ତେ ଇନ୍ଦ୍ରିୟ-ନିଗ୍ରହ, ଧ୍ୟାନ ଓ ବୈରାଗ୍ୟରେ ତୃଷ୍ଣାକୁ ତୁଟାଇ ସନ୍ୟାସୀ ବା ଭିକ୍ଷୁ ହେବା ହିଁ ପ୍ରକୃତ ମାର୍ଗ । ଏଇ ବୈରାଗ୍ୟଯୁକ୍ତ ସନ୍ୟାସରେହିଁ ଚିରନ୍ତନ ଶାନ୍ତି ମିଳେ । କର୍ମତ୍ୟାଗ ସନ୍ୟାସ ହିଁ ଏଠାରେ ବୁଦ୍ଧଙ୍କର ଅଭିପ୍ରେତ ।

## କାଳେ କାଳେ 'ବୁଦ୍ଧ' ଅନେକ—

ପୁଣି ସିଦ୍ଧାର୍ଥ ବୁଦ୍ଧ, ଶେଷ ବୁଦ୍ଧ ହେଲେହେଁ ସେ ଏକ ବୃତ୍ତାନ୍ତ, ଏହା କେବଳ ବୌଦ୍ଧ ଶାସ୍ତ୍ର କହିଁକି, ବୈଦିକ ସାହିତ୍ୟରେ ମଧ୍ୟ ଦେଖିବାକୁ ମିଳେ । ବୈଦିକ ସାହିତ୍ୟରେ ଯେଉଁ ସବୁ ବୁଦ୍ଧର ବର୍ଣ୍ଣନା ଅଛି, ସେଥିରେ କପିଳବସ୍ତୁର ବୁଦ୍ଧଙ୍କୁ ସର୍ବଦା ଲକ୍ଷ୍ୟ ନୁହେଁ । 'ବୁଦ୍ଧ' ସେ ସବୁରେ ଏକ ଯୋଗରୂଢ଼ ଶବ୍ଦ । 'ବୁଦ୍ଧ' କହିଲେ, ବୁଝାଯାଏ ଜ୍ଞାନୀ । ଏଇ ଶୂନ୍ୟ ପନ୍ଥାରେ ନିର୍ବାଣର ଅଧିକାରୀମାନେ କାଳେ କାଳେ ବୁଦ୍ଧ ହୋଇଥିଲେ ବୋଲି ବୌଦ୍ଧ ପରଂପରା ସ୍ପଷ୍ଟ କହେ । ଜୈନଙ୍କ ତୀର୍ଥଙ୍କରମାନଙ୍କ ପରି କାଳେ କାଳେ ବୁଦ୍ଧ ଆବିର୍ଭୂତ ହୋଇଚନ୍ତି ।

## 'ବୁଦ୍ଧ'ର ଅର୍ଥ ଜ୍ଞାନୀ—

ସେଥିପାଇଁ ବୈଦିକ ସାହିତ୍ୟରେ ମଧ୍ୟ ଜ୍ଞାନୀ ଅର୍ଥରେ 'ବୁଦ୍ଧ' ଶବ୍ଦଟି ବ୍ୟବହୃତ ହୋଇଅଛି । ମହାଭାରତର ଶାନ୍ତି ପର୍ବରେ ବହୁ ଧର୍ମତତ୍ତ୍ୱର ବ୍ୟାଖ୍ୟା ଅଛି । ଶେଷକୁ 'ଭାଗବତ ଧର୍ମ'ର ଯେଉଁ କଥା କୁହାଯାଇଚି, ସେଥିରୁ ଜଣାଯାଏ ଗୀତାରେ ଭଗବାନ୍ ସେଇ ଭକ୍ତିମୂଳକ ଭାଗବତ ଧର୍ମର ପ୍ରଚାର କରିଛନ୍ତି । ସେ କଥା ପରେ କୁହାଯିବ । ମାତ୍ର ଦେଖିବାର କଥା, ସେଥିରେ ଅବତାରବାଦ ସ୍ପଷ୍ଟ ପ୍ରଚଳିତ ହୋଇଥିଲେ ହେଁ ସେଥିରେ ଅବତାର ମଧ୍ୟରେ 'ବୁଦ୍ଧ' ନାମ ନାହିଁ । (ଶାନ୍ତିପର୍ବ, ୩୪୯ ଅଧ୍ୟାୟ ଦେଖ ) । ମାତ୍ର ସେଇ ଶାନ୍ତିପର୍ବରେ ସାଂଖ୍ୟ ଓ ଯୋଗ କଥା କହୁଲାବେଳେ ପରମାତ୍ମାଙ୍କୁ 'ବୁଦ୍ଧ' ଓ ଜୀବାତ୍ମାକୁ ଅବୁଦ୍ଧ ବୋଲି ବଶିଷ୍ଠଙ୍କ ମୁଖରେ ଜନକଙ୍କ ପ୍ରତି କୁହାଯାଇଚି । ପୁଣି ଯେ ପଞ୍ଚବିଂଶ ସାଂଖ୍ୟ ନିର୍ଦ୍ଦିଷ୍ଟ ତତ୍ତ୍ୱର ଅତୀତ ବସ୍ତୁକୁ ଜାଣେ, ସେଇ ଏକା ବୁଦ୍ଧ ବୋଲି ମଧ୍ୟ କୁହାଯାଇଚି (ଶାନ୍ତିପର୍ବ, ୩୦୮ ଅଧ୍ୟାୟ) ।

## ବୈଦିକ ଓ ବୌଦ୍ଧଧର୍ମର ସମାନ୍ତର ଧାରା—

ଅତଏବ ଜ୍ଞାନୀ ଅର୍ଥରେ ଯୋଗରୂଢ଼ୀ 'ବୁଦ୍ଧ' ଶବ୍ଦ ବହୁ ପ୍ରାଚୀନ । ପୁଣି ସିଦ୍ଧାର୍ଥ-ବୁଦ୍ଧ ଯେ ବୈଦିକଧର୍ମର ବିରୋଧରେ ନିଜର ଶୂନ୍ୟବାଦ ପ୍ରଚାର କରିଥିଲେ,

ତାହା ମଧ୍ୟ ନୂତନ ନୁହେ । ବୌଦ୍ଧଧର୍ମର ପରଂପରା ବୈଦିକଧର୍ମ ଓ ସଂସ୍କୃତି ସଙ୍ଗେ ଏକ ସମାନ୍ତର ଧାରାରେ ବରାବର ଏ ଦେଶରେ ଚାଲୁଥିଲା । ଆର୍ଯ୍ୟମାନେ ଶ୍ୟାମଳ ଉର୍ବର ଗାଙ୍ଗେୟ ଉପତ୍ୟକାରେ ଆସି ଶାନ୍ତ ଜୀବନ ଭୋଗ କଲାବେଳେ ଏଇ ଆତ୍ମତତ୍ତ୍ୱରେ ସ୍ୱତଃ ପ୍ରଭାବିତ ହୋଇ ନିଜର ବେଦଧର୍ମକୁ ସେଇ ଅନାର୍ଯ୍ୟଭାବରେ ସମ୍ମିଶ୍ରିତ ଓ ରସାଣିତ କରି ପ୍ରତିଷ୍ଠା ଦେଇଥିଲେ । ଏହା କିପରି ପରବର୍ତ୍ତୀ ବେଦ-ସଂହିତାର ସୂକ୍ତ ଓ ଉପନିଷଦର ମନ୍ତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା, ତାହା କହିବା ପୂର୍ବରୁ "ବୁଦ୍ଧ" ପରଂପରାର ଯେ ଧାରାଟି ଚାଲି ଆସିଛି ଓ ଏବେ ମଧ୍ୟ ବେଦଧର୍ମର ଘୋର ପ୍ରଭାବରେ ଶତଧା ଆତ୍ମଗୋପନ କଲେ ମଧ୍ୟ ଫୁଟି ଦିଶୁଛି, ସେ କଥାର ଟିକିଏ ବିଚାର କଲେ ଅପ୍ରାସଂଗିକ ହେବ ନାହିଁ ।

## ପରଂପରାର ଗତି—

ଭାରତରେ, ଏକା ଭାରତରେ କାହିଁକି ସାଧାରଣତଃ ମାନବଜଗତରେ— କୌଣସି ପରଂପରା ସହଜରେ ଛିନ୍ନ ହୁଏ ନାହିଁ । ନାମ ରୂପରେ ତାହା ସର୍ବଦା ସ୍ପଷ୍ଟ ପ୍ରକାଶିତ ନକରି ହୋଇପାରେ; ମାତ୍ର ଲୋକବ୍ୟବହାରରେ ପରଂପରା ଏକ ପ୍ରକାର ଅମର । କେତେ ପୂଜା, ପର୍ବ, ଉପାସନା, ଦେବତା ଅନୁଷ୍ଠାନମାନ ଲୋକ ବ୍ୟବହାରରେ ପରଂପରାରେ ଚାଲୁଛି, ତାର ଇୟତ୍ତା ନାହିଁ । କେଉଁ ଦିନ କିପରି ପରିସ୍ଥିତିରେ ଏଇ ଓଡ଼ିଶା ଭୂମିର ପ୍ରାଚୀନ ପୁରୁଷମାନେ ଦେଶାନ୍ତରରେ ବୋଇତ ଛାଡ଼ି କାର୍ତ୍ତିକ ଉଆଁସ ଦିନ ଫେରୁଥିଲେ, କିମ୍ବା ହୁଏତ କାର୍ତ୍ତିକ ଉଆଁସ ଦିନ ସକାଳୁ ବିଦେଶକୁ ବୋଇତ ଛାଡ଼ୁଥିଲେ ଓ ସେଥିପାଇଁ ସାଧବ ବୋହୂ (ବଣିକ୍ ବଧୂ) ସେଇ ଉଆଁସ ସକାଳୁ ବୋଇତ ବନ୍ଦାଇବାକୁ ଯାଉଥିଲେ, ସେ କଥାର ଆଉ ଏବେ କୌଣସି ଲିଖିତ ପରଂପରାର ଚିହ୍ନ ନାହିଁ । ତଥାପି ଆଜିଯାଏ କୁଳବଧୂ ଘରେ ଘରେ କାର୍ତ୍ତିକ ଉଆଁସ ଦିନ ରାତିରେ ଅଗଣାରେ ମୁରୁଜରେ ବୋଇତ ଲେଖି ମଧ୍ୟ ତାଙ୍କୁ ସକାଳୁ ବନ୍ଦାଇ ବିସର୍ଜନ କରୁଛି । ଏଇପରି ପ୍ରତ୍ୟେକ ପୂଜା ଅନୁଷ୍ଠାନ ଉପାସନାଦି ଅନୁସନ୍ଧାନ କରି ତଥ୍ୟ ବାହାର କରାଯାଇ ପାରେ । ଏଠାରେ ସେଇପରି ଏକ ବିରାଟ ଧର୍ମ ଓ ସାଧନପନ୍ଥାର ଅନୁଷ୍ଠାନ ପ୍ରତି ଦୃଷ୍ଟି ଆକର୍ଷଣ କରାଯାଉଛି । ଓଡ଼ିଶାରେ ଏବେ ମହିମା ଧର୍ମ ନାମରେ ଏ ଅନୁଷ୍ଠାନର ଗୋଟିଏ ଶାଖା ଅଛି । ଅନ୍ୟାନ୍ୟ ଶାଖା ସବୁ ବୈଷ୍ଣବ, ଶୈବ ପ୍ରଭୃତି ନାନା ନାମରେ ଆତ୍ମଗୋପନ କରିବାର ଉଦ୍ୟମ କରି ମଧ୍ୟ କରିପାରି ନାହାନ୍ତି । ସେ ସବୁରେ ଏଇ ଦେଶର ସେଇ ଅନାର୍ଯ୍ୟ ବୌଦ୍ଧ ସଂସ୍କୃତିର ପରମ୍ପରା ସ୍ପଷ୍ଟ ଦେଖିବାକୁ ମିଳେ । ଓଡ଼ିଶା ଛଡ଼ା ଅନ୍ୟ କୌଣସି ପ୍ରଦେଶରେ ସେସବୁ କେତେ ବା ଅଛି, କିପରି ଭାବରେ ଅଛି, ତାହା କହିବାର କ୍ଷେତ୍ର ଏ ନୁହେ । ମାତ୍ର ଓଡ଼ିଶାରେ ତାହାର ରୂପ ସ୍ପଷ୍ଟ ଦେଖାପଡ଼ୁଛି । ତାହାର କାରଣ ମଧ୍ୟ ଅଛି । ପ୍ରାସଙ୍ଗିକ ଭାବରେ ସେଇ

କାରଣ ସହିତ ସେଇ ପରଂପରକୁ ଏଠାରେ ଆଲୋଚନା କଲେ ଉପନିଷଦମୂଳକ ଗୀତାରେ ବୈଦିକ ଧର୍ମ ପରଂପରା ବୁଝିବା ସୁଗମ ହେବ ।

## କଳିଙ୍ଗ ତଥା ପୂର୍ବ ଭାରତର ବିଶିଷ୍ଟ ପରିସ୍ଥିତି—

ପ୍ରାଚୀନ କଳିଙ୍ଗ ବା ବର୍ତ୍ତମାନ ଓଡ଼ିଶାର ଭାରତ ଭୂଗୋଳ ଓ ଇତିହାସରେ ଗୋଟିଏ ସ୍ୱାତନ୍ତ୍ୟ ଓ ବିଶେଷତ୍ୱ ଅଛି । ଏହା ଉତ୍ତର-ଭାରତ ଓ ଦକ୍ଷିଣ-ଭାରତର ମଧ୍ୟ ସ୍ଥଳରେ । ଉତ୍ତର ଭାରତରେ ବେଦଧର୍ମର ପ୍ରଭାବ ବଡ଼ ପ୍ରବଳ ଭାବରେ ପଡ଼ିଥିଲା । ଏହାକୁ ଆର୍ଯ୍ୟାବର୍ତ୍ତ କହୁଥିଲେ । ଏଇ ଭୂମିର ଆର୍ଯ୍ୟମାନଙ୍କ ଆଗ୍ରର ବ୍ୟବହାର ହିଁ ସମସ୍ତ ଭାରତରେ ଅନୁକୃତ ହେଉଥିଲା ବୋଲି ମନୁ କହନ୍ତି । ପରେ ଦକ୍ଷିଣ-ଭାରତରେ ଯେତେବେଳେ ଅନାର୍ଯ୍ୟ ସଭ୍ୟତା ପରାଭୂତ କରି ଆର୍ଯ୍ୟ ସଭ୍ୟତା ପଶିଲା, ସେତେବେଳକୁ ଆର୍ଯ୍ୟମାନଙ୍କର ନିଜ ସଭ୍ୟତାରେ ଅହଂକାର ହେତୁରୁ ଅନ୍ଧତା ହୁଏତ ଟିକିଏ ପଶିଥିବ । କିନ୍ତୁ ସେତିକି ନୁହେଁ, ଉତ୍ତର-ଭାରତରୁ ଅଳ୍ପ କେତେକ ଆର୍ଯ୍ୟ ଦକ୍ଷିଣକୁ ଯାଇ ଦ୍ରାବିଡ଼ ସଭ୍ୟତାର ମହାପ୍ଲାବନ ସ୍ରୋତ ଓ ପ୍ରକୃତରେ ନିଜକୁ ଠିକ୍ ରଖି ଆର୍ଯ୍ୟ ବୋଲି ଭାରତରେ ପରିଚିତ ହେବା କାମନାରେ ସମସ୍ତ ଅନାର୍ଯ୍ୟ ସମ୍ପର୍କ ତ୍ୟାଗ କରିଥିବେ, ସନ୍ଦେହ ନାହିଁ । ଏଇ ସୂତ୍ରରେ ସେମାନେ ରାଜ୍ୟାଦି ହସ୍ତଗତ କରି ଯଜ୍ଞ ହୋମ ଓ ଜାତିଭେଦ ପ୍ରଭାବରେ ଦ୍ରାବିଡ଼ ସଭ୍ୟତାକୁ ଏକାବେଳକେ ବୁଡ଼ାଇ ଦେଲେ । ଦ୍ରାବିଡ଼ ଜନସାଧାରଣ କ୍ରମେ ନେତା ହରାଇ ଉପେକ୍ଷିତ ଓ ନୀରବ ହୋଇଗଲେ । ଓଡ଼ିଶା ତଥା କେତେକ ପରିମାଣରେ ବଙ୍ଗ, ବିହାର, ଆସାମ ପ୍ରଭୃତି ରାଜ୍ୟରେ ଆର୍ଯ୍ୟବସତି ବେଶୀ ହୋଇ ନଥିଲା । ଏସବୁ ସ୍ଥଳରେ ଭାଷା ଆର୍ଯ୍ୟ ଭାଷା ହୋଇଗଲା ସତ, କିନ୍ତୁ ଏମାନେ ସଭ୍ୟତାର ପ୍ରାଚୀନ ପରଂପରା ଛାଡ଼ି ନ ଥିଲେ । ସେ କାଳରେ ମଧ୍ୟ ମଗଧର ଜରାସନ୍ଧ, ଅଙ୍ଗ ଦେଶର କର୍ଣ୍ଣ, ପୌଣ୍ଡ୍ରର ବାସୁଦେବ ପ୍ରଭୃତି ଅଜ୍ଞାତକୁଳଶୀଳ ରାଜାମାନେ କୃଷ୍ଣଙ୍କ ବିରୋଧ କରିଥିବା କଥାର ସଙ୍କେତ ଏଠାରେ ପ୍ରଣିଧାନଯୋଗ୍ୟ । ଉତ୍କଳର ତପୁସ ଓ ଭଲ୍ଲିକ ପ୍ରଥମେ ନିଜେ ବୁଦ୍ଧଙ୍କଠାରୁ ବୌଦ୍ଧ ଦୀକ୍ଷା ଗ୍ରହଣ କରିଥିଲେ । କଳିଙ୍ଗର ବ୍ରହ୍ମଦତ୍ତଙ୍କଠାରୁ ବୁଦ୍ଧଦେବଙ୍କ ଚିତାଗ୍ନିରୁ ଦନ୍ତ ସଂଗୃହୀତ ହୋଇ ପଠାଯାଇଥିଲା । ପୁଣି ନିଜେ ବେଦଧର୍ମର ମହାବିରୋଧୀ ସିଦ୍ଧାନ୍ତ ବୁଦ୍ଧ ପୂର୍ବ ଭାରତର ପାରଂପରିକ ସଭ୍ୟତାର ପ୍ରତୀକ ଥିଲେ । ମହାବୀର ମଧ୍ୟ ଏଇ ପୂର୍ବ ଭାରତରେ ନିଜର ବେଦବିରୋଧୀ ଜୈନ ଧର୍ମ ପ୍ରଚାର କରିଥିଲେ । ପାର୍ଶ୍ୱନାଥ ପ୍ରଭୃତି ପାରଂପରିକ ଜୈନତୀର୍ଥଙ୍କରମାନେ ଏଇ ପୂର୍ବ ଭାରତରେ ଜନ୍ମିଥିଲେ ଓ ଧର୍ମ ପ୍ରଚାର କରି ମରିଥିଲେ । ଏସବୁର ଉଦାହରଣ ଅଜସ୍ର ପୁରାଣ ଓ ପରଂପରାରେ ମିଳିବ । ମାତ୍ର ସେ ସବୁର ବିଶେଷ ଆଲୋଚନାର କ୍ଷେତ୍ର ଏ ନୁହେଁ ।

## ନୌବିଦ୍ୟା ଓ ସମୁଦ୍ରପାରରେ ବିଦେଶୀ ସମ୍ପର୍କ—

ସେତକ କୁହେ, ଉତ୍ତର-ଭାରତରେ ଆର୍ଯ୍ୟସଭ୍ୟତା ତାହାର ସମୁଦ୍ର ସମ୍ପର୍କରେ ଆସି ନ ଥିଲା । ଅସୁର ଗୁରୁ ଶୁକ୍ରାଚାର୍ଯ୍ୟ ସମୁଦ୍ର ବିଦ୍ୟାରେ ବିଶାରଦ ଥିବାର ପୁରାଣ କହନ୍ତି । ଯଥାର୍ଥରେ ଭାରତର ଆଦିମ ସୁସଭ୍ୟ ଅନାର୍ଯ୍ୟମାନେ ବିଶେଷରେ ସମୁଦ୍ରପାରରେ ବାଣିଜ୍ୟାଦି ସମ୍ପର୍କରେ ପ୍ରସିଦ୍ଧ ଥିବାର ମଧ୍ୟ ପଣ୍ଡିତ-ମାନଙ୍କ ମତରେ ସନ୍ଦେହ କରିବାର କିଛି ନାହିଁ । ପୁରାଣ ପରମ୍ପରାରେ ଏହାର ମଧ୍ୟ ଭୂରି ଭୂରି ପ୍ରମାଣ ଅଛି । ଏଇ ନୌବିଦ୍ୟା ତଥା ସମୁଦ୍ରପାରର ବାଣିଜ୍ୟାଦି ସମ୍ପର୍କ ଭାରତର ଅନ୍ୟାନ୍ୟ ପ୍ରାନ୍ତ ଲୋପ ପାଇଲେ ହେଁ, କଳିଙ୍ଗର ସେ କୀର୍ତ୍ତି ଇତିହାସରେ ଚିରପ୍ରସିଦ୍ଧ । ଟଲେମିଙ୍କ ଭୂଗୋଳର ଟୀକାକାର ଅଧ୍ୟାପକ ଯେରିନି ପ୍ରମାଣ କରିଚନ୍ତି, ଖ୍ରୀଷ୍ଟପୂର୍ବ ୭ମ ଶତକ, ଅର୍ଥାତ୍ ଆଜକୁ ୨୬୦୦ ବର୍ଷରୁ ଅଧିକ କାଳ ତଳେ କଳିଙ୍ଗମାନେ ବ୍ରହ୍ମଦେଶରେ 'କଳିଙ୍ଗରାଟ' ବୋଲି ଉପନିବେଶ ସ୍ଥାପନ କରିଥିଲେ । ସେଇଠାରେ ସେଇ କଳିଙ୍ଗରାଟକୁ ଲାଗିକରି 'ଉତ୍କଳ' ବୋଲି ମଧ୍ୟ ବ୍ରହ୍ମଦେଶରେ ଗୋଟିଏ ରାଜ୍ୟ ସ୍ଥାପିତ ହୋଇଥିଲା । ପ୍ରାୟ ସେଇ ସମୟରେ ବା କିଛିଦିନ ପରେ କଳିଙ୍ଗର ବନ୍ଦର ସିଂହପୁରରୁ ବିଜୟ ସିଂହ ଜାହାଜରେ ଦଳବଳ ନେଇ ଯାଇ ସିଂହଳରେ ନବ ରାଜ୍ୟ ସ୍ଥାପନ କରିଥିଲେ । ସେଇ କାଳଠାରୁ କଳିଙ୍ଗ ଓ ସିଂହଳ ମଧ୍ୟରେ ପ୍ରାୟ ଦୁଇ ହଜାର ବର୍ଷକାଳ ଅଚ୍ଛେଦ୍ୟ ସମ୍ପର୍କ ଥିବା ସିଂହଳର ସୁରକ୍ଷିତ ପ୍ରାଚୀନ ଇତିହାସମାନଙ୍କରୁ ସୁସ୍ପଷ୍ଟ ପ୍ରମାଣ ମିଳେ । ଏପରି କି ସିଂହଳରାଜ ଅପୁତ୍ରିକ ହେଲେ ଓ ତାଙ୍କର ପୋଷ୍ୟ-ପୁତ୍ର ଗ୍ରହଣ କରିବା ଦରକାର ହେଲେ, ସେ କଳିଙ୍ଗ ଛଡ଼ା ଅନ୍ୟଠାରୁ ପୋଷ୍ୟପୁତ୍ର ଗ୍ରହଣ କରୁ ନଥିଲେ । ସୁମାତ୍ରା, ଜାଭା, ବାଲି, ଶ୍ୟାମ ଓ ପୂର୍ବ ଉପଦ୍ୱୀପର ଅନ୍ୟାନ୍ୟ ରାଜ୍ୟରେ କଳିଙ୍ଗ କଳା ଓ ଶିଳାଲେଖାସବୁ ସେ ଦେଶ ସଙ୍ଗେ କଳିଙ୍ଗ ସଭ୍ୟତାର ଅଚ୍ଛେଦ୍ୟ ସମ୍ପର୍କ ବିଷୟରେ ଏବେ ମଧ୍ୟ ନୀରବ ସାକ୍ଷ୍ୟ ପ୍ରଦାନ କରୁଅଛି । ଚୀନ ଓ ଜାପାନ ସଙ୍ଗେ କଳିଙ୍ଗ ତଥା ଉତ୍କଳର ପ୍ରାଚୀନକାଳରୁ ସମ୍ପର୍କ ଥିଲା । ସ୍ୱର୍ଗତ ଫରାସୀ ଅଧ୍ୟାପକ ସିଲ୍‌ଭାନ୍ ଲେଭି ଚୀନ ଦେଶର ପ୍ରାଚୀନ ଲିଖିତ ଗ୍ରନ୍ଥମାନଙ୍କରୁ ପ୍ରମାଣ କରିଚନ୍ତି ଯେ ଖ୍ରୀଷ୍ଟ ୮ମ ଶତକର ପ୍ରାରମ୍ଭ ଅର୍ଥାତ୍ ଆଜକୁ ୧୨୦୦ ବର୍ଷ ତଳେ ଉତ୍କଳର ଶାନ୍ତିକର ଦେବ ନିଜ ରାଜଧାନୀ ଯାଜପୁରରୁ ସ୍ୱହସ୍ତ ଲିଖିତ ବୌଦ୍ଧଗ୍ରନ୍ଥ ଦେଇ ଚୀନ ସମ୍ରାଟଙ୍କଠାକୁ ସଖ୍ୟଦୂତ ପଠାଇ ଥିଲେ । ବ୍ରହ୍ମଦେଶର ଐତିହାସିକ ହାରଭେ (Harvey) ପ୍ରମାଣ ପାଇଚନ୍ତି, ପ୍ରାୟ ସେଇ ସମୟରେ ବୌଦ୍ଧ ଧର୍ମଯାଜକ ୭ ଜଣ ଓଡ଼ିଶାରୁ ଯାଇ ବ୍ରହ୍ମଦେଶରେ 'ପେଗୁ' ପ୍ରଦେଶରେ ଉତ୍କଳର ସଭ୍ୟତା ପ୍ରତିଷ୍ଠା କରିଥିଲେ । ବ୍ରହ୍ମର ସେଇ ପ୍ରଦେଶରେ ସେମାନେ ଭୁବନେଶ୍ୱର ଉଦୟଗିରି ଛାଞ୍ଚରେ ମନ୍ଦିର ଓ ଗୁମ୍ଫାମାନ ତିଆରି କରାଇଥିଲେ । ତାହା ଏବେ ଅଛି । ସେଇମାନଙ୍କ ପ୍ରଭାବରେ ପେଗୁର ନାମ ହୋଇଥିଲା ଓସା ( ଓଡ଼ିଶା ) ।

ଏବେ ମଧ୍ୟ ସେଗୁଡ଼ିକରେ ଓଡ଼ିଆ ଭାଷା ଓ ପ୍ରାଚୀନ ସଂସ୍କୃତିର ବହୁତ ଅବଶେଷ ରହିଅଛି । ପ୍ରାୟ ୧୮୦୦ ବର୍ଷ ତଳେ କଳିଙ୍ଗମାନେ ପଶ୍ଚିମରେ ରୋମ ପର୍ଯ୍ୟନ୍ତ ବାଣିଜ୍ୟ ଚଳାଉଥିବାର ସ୍ପଷ୍ଟ ସଙ୍କେତ ଐତିହାସିକମାନେ ପାଇଛନ୍ତି ।

## ପ୍ରାଚୀନ 'ତାମିଲ' ବା ଦ୍ରାବିଡ଼ ସଭ୍ୟତାର ପ୍ରସାର—

ଭାରତର ଏହି ସୁସଭ୍ୟ ଆଦିମ ଅନାର୍ଯ୍ୟମାନଙ୍କର ନିଜ ନାମ ଥିଲା 'ତାମିଲ' । ସେମାନଙ୍କ ମଧ୍ୟରେ ସର୍ପ-ଉପାସନା ଚଳୁଥିବାରୁ କେତେକଙ୍କୁ ଆର୍ଯ୍ୟମାନେ 'ନାଗ' ବୋଲି ମଧ୍ୟ କହୁଥିଲେ । ଏହି 'ତାମିଲ' ଶବ୍ଦ ପରେ ଅର୍ଯ୍ୟଭାଷାରେ 'ଦ୍ରାବିଡ଼' ବୋଲି ଉଚ୍ଚାରିତ ହେଲା । ପଣ୍ଡିତମାନେ ଏବେ ସିନ୍ଧୁ ଉପତ୍ୟକା ତଥା ଦକ୍ଷିଣ ବେଲୁଚିସ୍ଥାନରେ ଖୋଦନ ଓ ଅନୁସନ୍ଧାନ କରି ସ୍ଥିର କରୁଚନ୍ତି, ଏହି ଦ୍ରାବିଡ଼ ସଭ୍ୟତା କ୍ରୀଟ୍ ଓ ମିଶରଠାରୁ ଭାରତ ପର୍ଯ୍ୟନ୍ତ ବ୍ୟାପିଥିଲା । ପାହାଡ଼ରେ ଗୁମ୍ଫା କାଟିବା ପଥରରେ ସେଇଭଳି ସ୍ଥାନ କରି, ସେଥିରେ ଶବର କବର ଦେବା; ଯେ ନିପଟଚିହ୍ନ 'ଲିଙ୍ଗ'ର ପୂଜା କରିବା; ଜଳସେଚନର ସୁବ୍ୟବସ୍ଥା କରି କୃଷି କରିବା; ବିରାଟ ପ୍ରସ୍ତର ରୂପ ଅଟ୍ଟାଳିକା ଦେବାଳୟମାନ କରିବା ଓ ସେ କାଳରେ ମଧ୍ୟ କାଚ ତିଆରି କରି ତାର ବ୍ୟବହାର କରିବା—ଏଇସବୁ ସଙ୍କେତରେ ଏବେ ସେମାନଙ୍କୁ ଚହ୍ନିବାକୁ ହେଉଛି । ଭାରତଠାରୁ ପୂର୍ବକୁ ଆମେରିକା ପର୍ଯ୍ୟନ୍ତ ଯେଉଁ ଦ୍ୱୀପମାଳା ଲମ୍ବିଛି, ସେଥିରେ ଏହି ସଭ୍ୟତାର ପ୍ରାଚୀନ ସଙ୍କେତମାନ ଭରି ରହିଛି । ସେସବୁଠାରେ ଏବେ ଯେଉଁ ଲୋକ ଅଛନ୍ତି, ସେମାନେ ଏସବୁ ପ୍ରାଚୀନ କୀର୍ତ୍ତି ରଖିଥିବା ଲୋକଙ୍କ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ ଓ ଏସବୁ ସେ କିପରି କିଏ କରିଥିଲା, ତାହା କହିପାରନ୍ତି ନାହିଁ । ଏବର ଅଧିବାସୀଙ୍କ ସଭ୍ୟତା ଓ ହତିଆର ସେସବୁ ତିଆରି କରିବାର ଆଖପାଖରେ ଥିଲା ପରି ମନେ ହୁଏ ନାହିଁ । ସେମାନେ ସେସବୁ କୀର୍ତ୍ତି ଦେଖି ଏବେ ବି ସ୍ତମ୍ଭିତ ହୋଇ କହନ୍ତି 'ପ୍ରାଚୀନ କାଳରେ ଆକାଶରୁ କେବେ ଓହ୍ଲାଇ ସେସବୁ କରିଥିଲେ ଓ ଦେଶକୁ ସଭ୍ୟ କରିବାରେ ଲାଗିଥିଲେ' ।

## ବିଶେଷଜ୍ଞଙ୍କ ମତ—

ଐତିହାସିକମାନେ ଏହି ସବୁର ନାନା ସଙ୍କେତରେ ପ୍ରମାଣ କରନ୍ତି, ଏସବୁ ଭାରତର ଅବୈଦିକ ଆଦିମ ଅନାର୍ଯ୍ୟ ସଭ୍ୟତାର ଚିହ୍ନ । ବେଦଠାରୁ ଏହା ଅର୍ବାଚୀନ ନୁହେଁ—ବରଂ ପ୍ରାଚୀନ ହୋଇପାରେ । ଏହି ପରଂପରା ବହୁ ଦିନରୁ ଭାରତର ଅନ୍ୟାନ୍ୟ ଅଂଶରୁ ଲୋପ ପାଇଲେ ମଧ୍ୟ କଳିଙ୍ଗ ତଥା ଅନ୍ୟାନ୍ୟ କେତେକ ଦ୍ରାବିଡ଼ ପ୍ରଧାନ ଦେଶରେ ପ୍ରାୟ ୯୦୦ । ୧୦୦୦ ବର୍ଷ ତଳ ପର୍ଯ୍ୟନ୍ତ ବହିର୍ବାଣିଜ୍ୟ ଓ ବିଦେଶ ଯାତ୍ରା ଫଳରେ ଜୀବିତ ଥିବା କଥା ଉପରେ ସଙ୍କେତରେ କୁହାଯାଇଛି ।

ମାତ୍ର ସେଇ ଅଧମ ଯୁଗର ଏଇ ବିଶାଳ ଭାରତସଭ୍ୟତା ତଥା ସଙ୍କେତ ଓ ପ୍ରମାଣ ହୃଦ୍ଗତ ଓଡ଼ିଶାର ଏକର ଶ୍ରେଷ୍ଠ ଐତିହାସିକ ସ୍ୱର୍ଗତ ରାଖାଲ ଦାସ ବନ୍ଦ୍ୟୋପାଧ୍ୟାୟ କହନ୍ତି—"ଏଇ ଅଧମ ଅନାର୍ଯ୍ୟ ଭାରତୀୟମାନଙ୍କ ସେଇ ତାମ୍ରପ୍ରସ୍ତର ଯୁଗର ସଭ୍ୟତା ଯେ ପୂର୍ବ ଭାରତୀୟ ଦ୍ୱୀପମାଳା ବାଟେ ଆମେରିକାରେ 'ଇଷ୍ଟର' ଦ୍ୱୀପ ଓ ପୀରୁ ପୁଣି ମେକ୍ସିକୋ ଦେଶ ପର୍ଯ୍ୟନ୍ତ ବ୍ୟାପିଥିଲା, ଏହା ସ୍ଥିର କରିବାରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ । ମୋ ମତରେ ଯେଉଁ କଳିଙ୍ଗ ଲୋକେ ଭାରତର ଆଦିମ ଓ ସାହସିକ ସିନ୍ଧୁପାର ବିଦେଶ ଉପନିବେଶ-କ୍ଷମ ବୋଲି ପ୍ରମାଣିତ ହୋଇଚନ୍ତି ଓ ଯେଉଁମାନଙ୍କ ଆଦିମ ସଭ୍ୟତାର ସଙ୍କେତ ଏବେ ମଧ୍ୟ ଇଣ୍ଡୋନେସିଆ ଓ ଓସିଆନିଆ ଦ୍ୱୀପପୁଞ୍ଜମାନଙ୍କରେ (ଭାରତଠାରୁ ଅଷ୍ଟ୍ରେଲିଆ ମହାଦେଶର ଉତ୍ତର-ପୂର୍ବ ପର୍ଯ୍ୟନ୍ତ ଦ୍ୱୀପମାଳା ମଧ୍ୟରେ ଏଇ ଦୁଇଟି ପୁଞ୍ଜ ଅଛି) ସ୍ପଷ୍ଟ ମିଳୁଚି, ସେଇ କଳିଙ୍ଗମାନେହିଁ ଭାରତ ଓ ପ୍ରଶାନ୍ତ ମହାସାଗରର ଦ୍ୱୀପମାନଙ୍କରେ ଏକର ଅଧିବାସୀଙ୍କ ଦ୍ୱାରା ଏବେ ଜୟ ଓ ତକ୍ତରେ ଆକାଶରୁ ଆସି ସେସବୁ ଦେଶ ସଭ୍ୟ କରି, ସେଠାରେ ବିଶାଳ କଳାର କୀର୍ତ୍ତି ରଖିଯାଇଚନ୍ତି ବୋଲି କଥିତ ହୁଅନ୍ତି ।"—R. D. Banerji's History of Orissa, Vol. P. 108.

## ପ୍ରାଚୀନ ଶବସଂସ୍କାର ରୀତିର ଅବଶେଷ—

ମନେ ରଖିବାର ଅଛି, ଏଇପରି ଶବଙ୍କୁ ଗିରିଗୁମ୍ଫା ବା ପ୍ରସ୍ତର ଗୃହରେ କବର ଦେବା ପ୍ରାଚୀନ ଦ୍ରାବିଡ଼ ବା ଭାରତୀୟ ରୀତି ହେଲେ ହେଁ ପରବର୍ତ୍ତୀ କାଳରେ ଏହାର କିଛିଏ ପରିବର୍ତ୍ତନ ହୋଇଥିଲା । ସେଥିରେ କେବେ କେବେ ଶବର ଦାହ କରି, ତାର ପାଉଁଶ ଗୋଟିଏ ମୂଳଗୋଳା ଘଡ଼ାରେ ରଖି ସେଇ ଘଡ଼ାଟିକୁ କବର ଦେଉଥିଲେ । ବୌଦ୍ଧ ସନ୍ନ୍ୟାସୀମାନଙ୍କ ମଧ୍ୟରେ ଏଇ ଦୁଇ ରୀତି ଚଳୁଥିଲା । ଏବେ ମଧ୍ୟ କୌଣସି କୌଣସି ସମ୍ପ୍ରଦାୟର ସନ୍ନ୍ୟାସୀ ଓ ମଠପତିଙ୍କ ଭିତରେ ଏଇ ରୀତି ଚଳେ ।

ସେକଥା ଥାଉ । ଏବେ ଭାରତର ଏଇ ବିଶାଳ ଦ୍ରାବିଡ଼ ବା ଅନାର୍ଯ୍ୟ ସଭ୍ୟତାର ଧାରା ଏ ଦେଶରେ ବିଶେଷତଃ ଓଡ଼ିଶାରେ କିପରି ପ୍ରଚ୍ଛନ୍ନ ଓ ପ୍ରକାଶ୍ୟ ଭାବରେ ଆତ୍ମବିକାଶରେ ପ୍ରତିଷ୍ଠିତ ରହି ଆସିଚି, ତାହା ଦେଖିଲେ ସେଇ ଧର୍ମ ଓ ସାଧନାଟି ଚିହ୍ନାଯିବ, ପୁଣି ସେଇ ଦୃଢ଼ ଧରି ବୈଦିକ ସଭ୍ୟତାରେ ତାର ସମ୍ବନ୍ଧ ଓ ସଂଘର୍ଷ ତଥା ସେଇ ସଂଘର୍ଷର କ୍ରମିକ ବିକାଶରେ ଦୁଇ ସଭ୍ୟତାର ସଂଶ୍ଳେଷଣ ତଥା ବୈଦିକ ସଭ୍ୟତାର ପୂର୍ଣ୍ଣାଙ୍ଗ ଅଭିବ୍ୟକ୍ତି ବୁଝିବା ସହଜ ହେବ । ମାତ୍ର ଏଇ ଅନାର୍ଯ୍ୟ ସଭ୍ୟତାର ଲୋକ ବ୍ୟବହାରରେ ଏଇ ଆଧୁନିକ ସଙ୍କେତ ଓ ସୂଚନା ବିସ୍ତାର କରିବା ପୂର୍ବରୁ ଏଇ ଅନାର୍ଯ୍ୟସଭ୍ୟତାର ବିରାଟ ଐତିହାସିକ ଭିତ୍ତି

ଓ ବିଶାଳ ପରିସର ସମ୍ବନ୍ଧରେ ଆଉ ଟିକିଏ ଭଲ କରି ଜାଣିଥିବା ସୁବିଧାଜନକ। କାରଣ, ବହୁକାଳରୁ ସିଦ୍ଧାନ୍ତ ପ୍ରଚଳିତ ହୋଇ ଆସିଛି, ଆର୍ଯ୍ୟସଭ୍ୟତା ହିଁ ଭାରତର ଯଥାର୍ଥ ସଭ୍ୟତା ଓ ଅନାର୍ଯ୍ୟସଭ୍ୟତା ଯେତେ ପ୍ରଚୁର ଓ ପୁଷ୍କଳ ହେଲେ ହେଁ ଆର୍ଯ୍ୟ ସଭ୍ୟତା ସଙ୍ଗେ ତୁଳନୀୟ ନୁହେଁ। ଆଧୁନିକ ଗବେଷଣା ଫଳରେ ଏ ସିଦ୍ଧାନ୍ତ ଏବେ ଭିନ୍ନ ରୂପ ଧାରଣା କରିବାର ଯଥେଷ୍ଟ କାରଣ ଅଛି।

## 'ଅସୁର' ନାମର ପ୍ରୟୋଗ—

ଦ୍ରାବିଡ଼ ସଭ୍ୟତା ନ କହି ଏହି ବିଶାଳକାୟ ଅନାର୍ଯ୍ୟସଭ୍ୟତାକୁ ବରଂ ଅସୁର ସଭ୍ୟତା କହିଲେ, କଥାଟିର ଦ୍ୟୋତନ ଅଧିକ ବିସ୍ତୃତିସହ ଓ ସୁଗମ ହେବ। ପୂର୍ବ ସଙ୍କେତରେ ଏ କଥା କୁହାଯାଇଛି। ସ୍ୱୟଂ ଶୁକ୍ରାଚାର୍ଯ୍ୟ ଅସୁରଗୁରୁ ଥିଲେ। ବେଦରେ ତାଙ୍କ ନାମ ତଥା ତାଙ୍କ ବଂଶୀୟଙ୍କ ନାମ 'ଉଶନା-କାବ୍ୟ' (କବି)। (ଗୀତା ୧୦. ୩୭ ରେ 'କବୀନାଂ ଉଶନା କବିଃ'-ଦେଖ)। କୁହାଯାଇଛି ଅତି ପ୍ରାଚୀନ ବେଦ ମନ୍ତ୍ରରେ ମଧ୍ୟ ଅସୁର ଶବ୍ଦ ଦେବତା ଅର୍ଥରେ ପ୍ରଯୁକ୍ତ ହୋଇଛି; ପୁଣି କୁହାଯାଇଛି, ଅସୁର ଓ ଦେବ ଦୁହେଁ ଏକା। ଋଗ୍‌ବେଦ—୩. ୫୫. ୧; ୧. ୩୫. ୭; ୧. ୨୪. ୧୪; ୧. ୨୫. ୮ ଦେଖ। ) ପରେ ସେମାନଙ୍କୁ ବେଦବିରୋଧୀ ବୋଲି କୁହାଗଲା। ପୁରାଣାଦିରେ ସେମାନେ 'ଦୈତ୍ୟ', 'ରାକ୍ଷସ' ପ୍ରଭୃତି ନାମରେ ନାମିତ ହୋଇଛନ୍ତି। ଓଡ଼ିଶାର ପରମ୍ପରାରେ ମଧ୍ୟ ଠିକ୍ ସେହି କଥା। ଓଡ଼ିଶାର ଜଗନ୍ନାଥ ଶବରଙ୍କ ଦେବତା। ହୁଏତ ସେହି ଶବର ପ୍ରକୃତ ଶବର ଥିଲେ କି ନା, ତାଙ୍କର ସଭ୍ୟତାର ପରିସ୍ଥିତି କଣ ଥିଲା, ସେ ବିଷୟରେ ବିଶେଷ ବିଚାର ନ କରି ସେମାନଙ୍କୁ ଦଇତା (ଦୈତ୍ୟ) ନାମ ଦିଆଯାଇଛି। ଏବେ ସେମାନଙ୍କର ବଂଶଧରମାନେ ଜଗନ୍ନାଥଙ୍କ ସେବାୟତଙ୍କ ମଧ୍ୟରେ ସେହି ନାମରେ ପରିଚିତ। ପୁଣି ବିଧର୍ମୀମାନଙ୍କୁ 'ମାଦଳାପାଞ୍ଜି' (ମନ୍ଦିରର ତାଳପତ୍ରଲିଖିତ ପାରମ୍ପରିକ ଇତିହାସ)ରେ ଦୈତ୍ୟ, ମ୍ଳେଚ୍ଛ, ଯବନ ପ୍ରଭୃତି ନାମ ଦିଆଯାଇଛି। ଅସୁର ସମ୍ବନ୍ଧରେ ମଧ୍ୟ ପ୍ରାଚୀନ ଭାରତ-ସାହିତ୍ୟରେ ସେହି କଥା। କେବଳ ଅସୁର ନୁହେ, ଭାରତର ଅପେକ୍ଷାକୃତ ଅର୍ବାଚୀନ ସାହିତ୍ୟରେ ଯବନ ଶବ୍ଦର ଅର୍ଥ ଏହିପରି ବଦଳି ଯିବାରେ ଇତିହାସ ସ୍ପଷ୍ଟ ସାକ୍ଷ୍ୟ ଦିଏ। ଭାସ୍କରାଚାର୍ଯ୍ୟ ପ୍ରଭୃତି ମନୀଷୀମାନେ ଯବନାର୍ଯ୍ୟମାନଙ୍କଠାରୁ ଜ୍ୟୋତିଷ ବିଦ୍ୟା ଶିକ୍ଷା କରି ସେମାନଙ୍କୁ ପୂଜାର୍ହ ଓ ସ୍ମରଣୀୟ ଭାବରେ ଶାସ୍ତ୍ରରେ ଉଲ୍ଲେଖ କରି ଯାଇଛନ୍ତି। ଯବନପୁର (ମିଶରର ଆଲେକ୍‌ଜାଣ୍ଡ୍ରିଆ) ଭାରତୀୟ ଆର୍ଯ୍ୟଙ୍କର ମଧ୍ୟ ଗୋଟିଏ ବିଦ୍ୟାଲୋଚନାର କେନ୍ଦ୍ରଥିଲା। ଯବନରାଜ ମିଳିନ୍ଦ (ମିନେଣ୍ଡର) ଜଣେ ବୌଦ୍ଧଧର୍ମର ବଡ଼ ନେତା ଥିଲେ। ତଥାପି ପରବର୍ତ୍ତୀ ଯୁଗରେ ସେହି ଯବନ ଅର୍ଥରେ ଲୋକେ ବୁଝିଲେ ବିଧର୍ମୀ ବର୍ବର ବା ଅସଭ୍ୟ। ଏଇଠାରେ ମନେ ରଖିବାର ଅଛି, ପ୍ରାଚୀନ ପାରସ୍ୟରେ

ଇଲମ୍ (Elam) ଓ ଅନ୍ୟାନ୍ୟ ଅନାର୍ଯ୍ୟ ସଭ୍ୟତାର ପ୍ରଭାବରେ ବୈଦିକ ମିତ୍ର ନଗଣ୍ୟ ଦେବତା ହେଲେ; ଇନ୍ଦ୍ର ଏ ଦେଶର ଦୈତ୍ୟ ପରି ଘୃଣିତ ଓ ଆସନଚ୍ୟୁତ ହେଲେ; ପୁଣି ଜଳ (ସମୁଦ୍ରଦେବତା) ବରୁଣ ହିଁ ଶ୍ରେଷ୍ଠ ସ୍ଥାନ ପାଇଲେ । ଅସୁରଙ୍କ ସମୁଦ୍ର ଓ ନୌବିଦ୍ୟାପାରଦର୍ଶିତା କଥା ପୂର୍ବେ ସୂଚିତ ହୋଇଛି । ସେ କଥାଟି ମଧ୍ୟ ଏଠାରେ ସ୍ୱତଃ ଦୃଷ୍ଟି ଆକର୍ଷଣ କରେ । ପୁଣି ଅନୁମାନ ହୁଏ, ଆର୍ଯ୍ୟସଭ୍ୟତା ପାରସ୍ୟରେ ଅସୁର ଓ ଅନ୍ୟାନ୍ୟ ଅନାର୍ଯ୍ୟ ସଭ୍ୟତାରେ ଯେପରି ପ୍ରଭାବିତ ହୋଇଥିଲା, ଭାରତରେ ତାହା ହୋଇପାରି ନାହିଁ । ପାରସ୍ୟରେ ହୁଏତ ସେକାଳରେ ଅଳ୍ପସଂଖ୍ୟକ ଆର୍ଯ୍ୟନେତା ପ୍ରବଳ ଅନାର୍ଯ୍ୟସଭ୍ୟତା ଭିତରେ ଭାରତର ଆର୍ଯ୍ୟ ପରି ସମ୍ପୂର୍ଣ୍ଣ ରୂପେ ଭାବ ଓ ସଭ୍ୟତାର ଯୁକ୍ତିଯୁକ୍ତ ତଥା ସ୍ୱାଭାବିକ ସଂଶ୍ଳେଷଣରେ ଆତ୍ମବିକାଶ କରିପାରି ନ ଥିଲେ । ପାରସ୍ୟ, ଏସିଆମାଇନର, ମେସୋପଟେମିଆ ପ୍ରଭୃତିର ପ୍ରାଚୀନ ସଭ୍ୟତାର ସଙ୍କେତ ଓ ଲିପିମାନ ଯାହା ମିଳୁଛି, ସେ ସବୁର ସମ୍ୟକ୍ ବିଚାରରେ ଏହି ଅନୁମାନ ହିଁ ଠିକ୍ ବୋଧହୁଏ । ଏସବୁ ଦେଶରେ ସେକାଳର ଅସୁର-ସଭ୍ୟତା ଓ ସାମ୍ରାଜ୍ୟର ଯେ ସବୁ ସ୍ପଷ୍ଟ ଐତିହାସିକ ପ୍ରମାଣ ମିଳୁଛି, ସେଥିରୁ ଜଣାଯାଏ, ଦିନେ ଅସୁର ସଭ୍ୟତା ପାରସ୍ୟ ଉପସାଗରଠାରୁ ପଶ୍ଚିମରେ ସିରିଆ ଓ ପାଲେଷ୍ଟାଇନ୍ ସହ ଭୂମଧ୍ୟସାଗରକୂଳ ଓ ମିଶର ପର୍ଯ୍ୟନ୍ତ, ପୁଣି ଉତ୍ତରରେ କକେସସ୍ ପର୍ଯ୍ୟନ୍ତ ବ୍ୟାପିଥିଲା । ଆର୍ଯ୍ୟମାନେ ଉତ୍ତରର ପାର୍ବତ୍ୟ ଭୂମିରୁ ସ୍ଥାନୀୟ ଅସଭ୍ୟମାନଙ୍କ ସାହଚର୍ଯ୍ୟରେ ବହୁ ପରେ ଏହି ଅସୁରସଭ୍ୟତାର ବିସ୍ତାରକୁ ସ୍ଥାନେ ସ୍ଥାନେ ଭେଦ କରିଥିଲେ ମଧ୍ୟ ସେ ଭୂମିରେ ଚିରନ୍ତନ ଆତ୍ମପ୍ରତିଷ୍ଠା କରି ପାରି ନ ଥିଲେ । ଏବେ ଏ ଅସୁର କିଏ ?

## ଅସୁର ଓ ଦ୍ରାବିଡ଼—

ଅନାର୍ଯ୍ୟମାନେ ନିଜ ଦେବତାଙ୍କୁ ଅସୁର ବୋଲି କହୁଥିଲେ ସତ, ମାତ୍ର ନିଜେ ଅନାର୍ଯ୍ୟମାନେ ଏହି ଅସୁର ନାମରେ ଓ ତାଙ୍କ ଦେଶ ଅସୁର ଦେଶ ବା ଅସୁର-ଭୂମି ନାମରେ ଅଭିହିତ ହେବାର ସ୍ପଷ୍ଟ । ସବୁ ଅନାର୍ଯ୍ୟମାନେ ଅସୁର ଥିବାର କୌଣସି ପ୍ରମାଣ ନାହିଁ । ଭାରତର ଦ୍ରାବିଡ଼ ଅନାର୍ଯ୍ୟମାନଙ୍କର ଏହି ନାମ ଥିଲା । ବୈଦିକ ସାହିତ୍ୟର ଦେବାସୁର ସଂଗ୍ରାମରେ ଏହି ଆର୍ଯ୍ୟ ଅନାର୍ଯ୍ୟଙ୍କ ଯୁଦ୍ଧର ସଙ୍କେତ ମାତ୍ର ପ୍ରକାଶ ପାଏ । ଭାରତରେ ଏ ଅସୁରସଭ୍ୟତାର ଆଖିରେ ଦେଖିବା ଭଳି ଚିହ୍ନ ଏବେ କିଛି ନାହିଁ । ସିନ୍ଧୁ ଉପତ୍ୟକାର 'ମହେଞ୍ଜୋଦରୋ', 'ହରପ୍ପା' (ପଶ୍ଚିମ ପଞ୍ଜାବର ଏକ ଗ୍ରାମ) ତଥା ଦକ୍ଷିଣ ବେଲୁଚିସ୍ଥାନର ଏକ ଚିର-ନିଦାଘ-ଦଗ୍ଧ ମରୁଭୂମିରୁ ଯେଉଁସବୁ ସଭ୍ୟତାର ଅବଶେଷ ମିଳିଛି, ସେଥିରେ ଅସୁର ନାମ ପାଇବା ସମ୍ଭବ ହୋଇ ନାହିଁ । ସେ ସବୁରେ ମଧ୍ୟ ଯେଉଁ ସବୁ ଲିପି ଓ ମୁଦ୍ରାଙ୍କ ମିଳିଛି, ଯେସବୁ ପଢ଼ାଯାଇ ନାହିଁ । କିମ୍ବା ଅର୍ଥ କରାଯାଇ ନାହିଁ । ମାତ୍ର ସ୍ପଷ୍ଟ ପ୍ରମାଣମାନ ଯେଉଁ

ବିଶେଷଜ୍ଞ ପଣ୍ଡିତମାନେ ସ୍ଥିର କରନ୍ତି, ଅତି ପ୍ରାଚୀନ କାଳରେ ଭାରତର ଦ୍ରାବିଡ ସଭ୍ୟତା କେବଳ ଯେ କଳିଙ୍ଗାଦି ଉପକୂଳରୁ ସମୁଦ୍ରବାଟେ ଦ୍ୱୀପଦ୍ୱୀପାନ୍ତରରେ ଆମେରିକା ଯାଏ ପ୍ରସ୍ତର ବିସ୍ତାର କରିଥିଲା, ସେତିକି ନୁହେ । ପଶ୍ଚିମକୁ ସମୁଦ୍ର ଉପକୂଳ ତଥା ଉପକୂଳବର୍ତ୍ତୀ ଭୂମିରେ ସେହିପରି ଦକ୍ଷିଣ ବେଲୁଚିସ୍ଥାନ ବା ଦକ୍ଷିଣ ପାରସ୍ୟ ବାଟେ ଏବଂ ମେସୋପଟାମିଆ (ଇରାକ୍) ପର୍ଯ୍ୟନ୍ତ ସ୍ଥାୟୀ ବସତି ଓ ସେହି ବାଟେ ଏବଂ ଏସିଆ ମାଇନର ଭେଦ କରି ସିରିଆ, ପାଲେଷ୍ଟାଇନ, ଇଜିପ୍ଟ ତଥା ଭୂମଧ୍ୟସାଗର ପର୍ଯ୍ୟନ୍ତ ନିଜର ସ୍ଥାୟୀ ବସତି ଓ ପ୍ରଭାବ ବିସ୍ତାର କରିଥିଲା । ସେହି ସମୟରେ—ବରଂ ପ୍ରମାଣ ଦେଖି ଠିକ୍ କହିବାକୁ ଗଲେ ତାର ଦଶ ପନ୍ଦର ଶତାବ୍ଦୀ ପରେ—ଉତ୍ତର-ଭାରତର ପର୍ବତମାଳାରୁ ଆର୍ଯ୍ୟମାନେ ହିନ୍ଦୁକୁଶଠାରୁ ଏବଂ ଏସିଆ ମାଇନରର ଟରସ୍ ଗିରିମାଳା ପର୍ଯ୍ୟନ୍ତ ବ୍ୟାପିଯାଇଥିଲେ । ଏଇ ମୂଳରେ ଅସୁର ଓ ଆର୍ଯ୍ୟ—ଦୁହିଙ୍କର ମିଶର ଦେଶ ସଙ୍ଗେ ସାକ୍ଷାତ୍ ସମ୍ପର୍କ ଥିଲା । ବୈଦିକ ଆର୍ଯ୍ୟମାନଙ୍କର ପ୍ରାଚୀନ ପହ୍ଲବ (ପାରସ୍ୟ)ର କାଶ୍ୟ (Kassite) ଓ ମିତ୍ତାନୀୟ (ମିଟାନୀୟ) ସବୁ ରାଜ୍ୟମାନ ଏ ଦେଶମାନଙ୍କରେ ମୁଣ୍ଡ ଟେକିଥିଲା । ସେମାନେ ସ୍ଥାନୀୟ ଅନାର୍ଯ୍ୟ ଦେବତାମାନଙ୍କ ମଧ୍ୟରେ ସୂରିଅ (ସୂର୍ଯ୍ୟ), ଇନ୍ଦର (ଇନ୍ଦ୍ର), ଉରୁବଣ ବା ଅରୁଣ (ବରୁଣ), ମରୁଉ (ମରୁତ୍), ମିତ୍ର ଓ ନାସତ୍ୟ (ନାସତ୍ୟ—ଅଶ୍ୱିନୀକୁମାର) ପ୍ରଭୃତି ବୈଦିକ ଦେବତାଙ୍କୁ ପୂଜା କରୁଥିଲେ ଏପରି କି ମିଶର ସଙ୍ଗେ ମିତ୍ତାନୀୟ ଦଶରଥଙ୍କ ଏକ ପତ୍ର ବ୍ୟବହାରରେ ଦଶରଥ ଅସୁର ଦେଶ ଜିଣି ଯେଉଁ ସବୁ ସନ୍ଧି ସର୍ତ୍ତମାନ କରିଥିଲେ, ତାହା ଲେଖି ପଠାଇ ଅଛନ୍ତି । ସେଥିରେ ଏହି ଦେବତାମାନେ ସନ୍ଧିସର୍ତ୍ତର ସାକ୍ଷୀ । ଏହି ଦଶରଥଙ୍କର ତିନିପୁରୁଷ ଧରି ମିଶର ରାଜାଙ୍କ ସଙ୍ଗେ ବୈବାହିକ ସମ୍ବନ୍ଧ ଥିଲା । ଏହି ଲେଖାସବୁ ଖ୍ରୀଷ୍ଟପୂର୍ବ ୧୫ ଶତକରେ (ଆଜକୁ ପ୍ରାୟ ୩୪ ଶହ ବର୍ଷ ପୂର୍ବେ) ଲିଖିତ । ମିଶରର ଟେଲ୍-ଏଲ୍-ଆମର୍ନାରୁ ଏଇ ସମ୍ପର୍କରେ ପ୍ରାଚୀନ ଲେଖାସବୁ ୧୮୮୭ରେ ମିଳିଥିଲା ଓ ପଢା-ଯାଇଥିଲା । ଏବେ ପୁଣି ସେସବୁର ସଭ୍ୟତା ପ୍ରମାଣ କରି ଏବଂ ସିରିଆ ଓ ପ୍ରାଚୀନ ଖତ୍ତି (ଖତି) ଦେଶର ବୋଘାଜକୋଇ ଗ୍ରାମରୁ ଏଇ ବିଷୟକ ଲେଖ-ସମନ୍ୱିତ ମୃତ୍ଫଳକମାନ ବାହାରିଛି । ସେଥିରୁ କେତେଗୁଡ଼ିଏ ପଢ଼ାଯାଇଚି । ଏଇ ଘଟଣାର ପ୍ରାୟ ହଜାରେ କି ୧୫ ଶହ ବର୍ଷ ପୂର୍ବେ କାଶ୍ୟ (Kassite) ନାମକ ଏକ ଆର୍ଯ୍ୟ ଜାତି ଉତ୍ତର ଆଡ଼ୁ ଟାଇଗ୍ରିସ୍ ନଦୀ ପାରହୋଇ ଅସୁର ଦେଶ ଜିଣିଥିଲେ । ଏହାର ପ୍ରମାଣ ମଧ୍ୟ ମିଳିଅଛି ।

କାଶ୍ୟ, ମିତ୍ତାନୀୟ, ଖତ୍ତି ପ୍ରଭୃତି ଜାତିମାନଙ୍କ ସମ୍ବନ୍ଧରେ ଯାହା ଜଣାପଡ଼େ ସେଥିରୁ ବୁଝାଯାଏ, ସେମାନେ ବୈଦିକ ଆର୍ଯ୍ୟସଭ୍ୟତା ନିଶ୍ଚୟ ବହନ କରୁଥିଲେ । ବେଦର ଭାଷା ବହୁକାଳ ଲୋକମୁଖରେ ଚଳୁଥିଲେ ମଧ୍ୟ, ସେଥିରେ କଦାପି ମାତ୍ରା ଓ ଉଚ୍ଚାରଣ ପର୍ଯ୍ୟନ୍ତର ଲେଶ ପରିବର୍ତ୍ତନ ହୋଇ ନାହିଁ । ଏହା କରିବା ଏକାନ୍ତ ବଧ-

ହେଉଛି । ଏବେ ମଧ୍ୟ କିଛି ଅର୍ଥ ନ ବୁଝି ଯେଉଁମାନେ ବେଦମନ୍ତ୍ର ମୁଖସ୍ଥ କରି ବୋଲନ୍ତି, ସେମାନେ ମାତ୍ରା-ସ୍ୱର ପର୍ଯ୍ୟନ୍ତ ଠିକ୍ ବୋଲିଯାନ୍ତି । ପୂର୍ବେ ମଧ୍ୟ ସେହିପରି କରି ଆସୁଥିଲେ । ସାଧାରଣ ପୁରୋହିତମାନେ ଅର୍ଥ ମଧ୍ୟ ବୁଝୁ ନ ଥିଲେ । ମାତ୍ର ଦେବଭାଷା ଭୁଲ୍ କରି ଶିଖିବା ବା ବୋଲିବାରେ ପାପ ହେଉଥିଲା ବୋଲି ଧାରଣା ଥିଲା । ହେଲେ ହେଁ ସେସବୁ ଦେଶରେ ଯେଉଁ ରାଜା ଓ ଦେବତାଙ୍କ ନାମ ମିଳେ; ସେସବୁ ଠିକ୍ ବେଦରେ ଥିଲା ପରି ଉଚ୍ଚାରିତ ହେଉ ନ ଥିବାର ଉପରେ ଦେଖାଇ ଦିଆହୋଇଛି । ଦଶରଥ ମଧ୍ୟ ଦଶରତ୍ତ ବା ଦଶରତ ବୋଲି ଉଚ୍ଚାରିତ ହେଉଥିଲା । ଏଥିରୁ ଅନୁମାନ ହୁଏ, ସେସବୁରେ ପ୍ରାକୃତର ପ୍ରଭାବ ପଡ଼ି ତାହା ବିକୃତ ହୋଇଥିଲା । ଏ ପରିବର୍ତ୍ତନ ହୁଏତ କାଳରେ ଲୋକମୁଖର ଉଚ୍ଚାରଣରେ ନାମସବୁରେ ମନକୁ ଘଟିଯାଇଥିଲା । ମନ୍ତ୍ର ଭିତରେ ଏପରି ପରିବର୍ତ୍ତନର ଉପାୟ ନ ଥିଲେ ମଧ୍ୟ ଦେବତା ଓ ମନୁଷ୍ୟ ନାମରେ ଏପରି ଏବେ ମଧ୍ୟ ହୋଇଥିବାର ଦେଖାଯାଏ । ସିତ୍ୟା, କକନ୍ଧା, କଉସୁଲ୍ୟା, ଭରଥ, ଭାରଥ, ରାବାସୁଣ, ଲଇଖଣ ( ଲଛମନ) ପ୍ରଭୃତିରେ ଏହା ସ୍ପଷ୍ଟ ଦେଖାଯାଏ । ପ୍ରାଚୀନ ଲେଖରେ ମଧ୍ୟ ମିଳେ ପୁରୁଷୋତ୍ତମଦେବ ।

## ଭାରତ ବାହାରେ ଦ୍ରାବିଡ଼—

ଏଥିରୁ ସ୍ପଷ୍ଟ ଅନୁମାନ ହୁଏ, ଅସୁରମାନଙ୍କ ବିରାଟ ବିଦେଶ ପ୍ରଭାବ ଓ ବିସ୍ତୃତିରେ ପ୍ରଭାବିତ ହୋଇ, ସେଇ ଅନୁକରଣରେ ସାହସିକ ଭାଗ୍ୟାନ୍ୱେଷୀ ଆର୍ଯ୍ୟବୀର-ମାନେ ନିଜର ସାମାନ୍ୟ ଦଳବଳ ଘେନି, ସମ୍ପୂର୍ଣ୍ଣରୂପେ ନିଜର ବୀରତ୍ୱ ଓ ବାହୁବଳ ତଥା ଉନ୍ନତତର ଶାସନ-ମନୀଷା ଉପରେ ନିର୍ଭର କରି ହିନ୍ଦୁକୁଶଠାରୁ ଏସିଆ-ମାଇନର ପର୍ଯ୍ୟନ୍ତ ଯାଇ କ୍ରମେ ସେ ସବୁଠାରେ ସ୍ଥାନୀୟ ଅସଭ୍ୟ ଅନାର୍ଯ୍ୟଙ୍କୁ ହାତ କରି ଅସୁର ଓ ଅନାର୍ଯ୍ୟ ରାଜ୍ୟମାନ ଜିଣି ସେଠାରେ ନିଜର ରାଜ୍ୟ କରି ନିଜ ସଭ୍ୟତା ତଥା ପରମ୍ପରାର କେତେକ ରୂପ ପକାଇ ଥିଲେ । ସେମାନେ ବେଦ-ସାହିତ୍ୟ ସମ୍ପୂର୍ଣ୍ଣ ସଙ୍ଗେ ଘେନିଯିବା ଅବସ୍ଥାରେ ନ ଥିଲେ । ମାତ୍ର ବେଦର ଦେବତା, ତଥା ଆର୍ଯ୍ୟଭାଷା ଓ ଅନ୍ୟ କେତେକ ପରମ୍ପରା ସେମାନଙ୍କ ସଙ୍ଗେ ରହିବା ସ୍ୱାଭାବିକ । ହେଲେ ହେଁ କେତେକ ଦେବତା ଓ ରାଜାଙ୍କର ଆର୍ଯ୍ୟନାମ ଛଡ଼ା ସେମାନେ ଆଉ କିଛି ସ୍ଥାୟୀ ପ୍ରଭାବ ରଖିପାରି ନ ଥିଲେ । ପରବର୍ତ୍ତୀ ଯୁଗରେ ସେମାନଙ୍କର କିଛି ମାତ୍ର ପ୍ରଭାବ ରହି ନ ଥିଲା । ଯେଉଁମାନଙ୍କ ସାହାଯ୍ୟରେ ସେମାନେ ରାଜ୍ୟ କଲେ, ତାଙ୍କ ଦେବତାଙ୍କୁ ନିଜ ଦେବତାଙ୍କ ସଙ୍ଗେ ସ୍ଥାନ ଦେଇଥିବା ପ୍ରାଚୀନ ଲେଖରୁ ସ୍ପଷ୍ଟ ହେଉଛି । ସେଇ ସ୍ଥାନୀୟ ଲୋକଙ୍କ ଆଚାର ବ୍ୟବହାର ପରମ୍ପରାରେ ନିଜକୁ ମିଶାଇ ଦେଇଥିବାରେ ଆଉ ସନ୍ଦେହ ମଧ୍ୟ କିଛି ନାହିଁ । କାଶ୍ୟ ଜାତିର ମୂଳ-ସ୍ଥାନ ଏ ପର୍ଯ୍ୟନ୍ତ ସ୍ଥିର କରାଯାଇ ନାହିଁ । ମିତାନୀୟ ସମ୍ବନ୍ଧରେ ସେଇ କଥା । ପୁଣି ଖତ୍ତି ଏକ ବିଶାଳ ସାମ୍ରାଜ୍ୟ ଥିଲେ ହେଁ 'ଖତ୍ତିଥାନ' ବୋଲି ସେଥିରେ ଏକ କ୍ଷୁଦ୍ର

ସାମନ୍ତ ଜନପଦ ଥିଲା । ଏହା ମଧ୍ୟ ଉକ୍ତ ଅନୁମାନକୁ ସର୍ବତୋଭାବେ ସମର୍ଥନ କରୁଅଛି ।

## ଆଦାନ ପ୍ରଦାନ—

କାଶ୍ୟମାନେ ବହୁ ପ୍ରାଚୀନ କାଳରେ ଓ ତାର ବହୁ ପରେ ମିଥ୍ୟାନ୍ନୁ ଦଶରଥ ନଦୀ ଡେଇଁ ଅସୁର ଦେଶ ଜିଣିଥିଲେ । ସେମାନଙ୍କ ଭିତରେ ଆର୍ଯ୍ୟ ବେଶି ନ ଥିଲେ । ସେମାନେ ସ୍ଥାନୀୟ ଅସଭ୍ୟଙ୍କ ସାହାଯ୍ୟ ଓ ସାହଚର୍ଯ୍ୟରେ ସେ ଦେଶ ଜିଣିଥିଲେ । ବିଶେଷଜ୍ଞ ହଲ୍ ସାହେବ ସମସ୍ତ ଆଲୋଚନା କରି ମତ ପ୍ରକାଶ କରି-ଚନ୍ତି, 'କାଶ୍ୟ ଓ ମିତ୍ତନୀୟମାନେ ଟାଇଗ୍ରୀସ୍, ଇଉଫ୍ରେଟିସ୍, ଦୋଆବ୍ (ଦ୍ୱୀପ)ରେ କୌଣସି ସ୍ଥାୟୀ ପ୍ରଭାବ ରଖି ପାରି ନ ଥିଲେ । ଅନୁମାନ ହୁଏ, ଏହି ଆର୍ଯ୍ୟମାନେ ସମ୍ପୂର୍ଣ୍ଣ ସଭ୍ୟତାହୀନ ଥିଲେ । ସେମାନେ ସେଇଠ (ଅସୁର)ମାନଙ୍କଠାରୁ ସଭ୍ୟତା ଶିଖିଥିଲେ । ପ୍ରାୟ ଦୁଇ ଶତାବ୍ଦୀ ମଧ୍ୟରେ କାଶ୍ୟମାନେ ଅସୁରଧର୍ମ ସମ୍ପୂର୍ଣ୍ଣରୂପେ ଗ୍ରହଣ କରିଥିଲେ ।" (୧)

## ପଶ୍ଚିମ ଦେଶରେ ଆର୍ଯ୍ୟ ଓ ଦ୍ରାବିଡ଼ ସଭ୍ୟତା—

କିନ୍ତୁ ଏହି ଦ୍ୱୀପରେ ସ୍ଥାୟୀ ବସତି କରିଥିବା ଅସୁରମାନଙ୍କ ସମ୍ବନ୍ଧରେ ତାହା ନୁହେଁ । ସେହି ହଲ୍ ସାହେବ କହନ୍ତି, ଏହି ଦ୍ୱୀପର ସଭ୍ୟତା ବିଦେଶଗତ ଅସୁର ସଭ୍ୟତାର ଭିତ୍ତିରେ ସମ୍ପୂର୍ଣ୍ଣ ରୂପେ ପ୍ରତିଷ୍ଠିତ ହୋଇ କ୍ରମେ ବିକାଶରେ ବଢ଼ିଥିଲା । (୨) ସେ କଥା ପରେ ଟିକିଏ ବିଶେଷ କରି କୁହାଯିବ । ମାତ୍ର ଖ୍ରୀଷ୍ଟ ଓ ମୁସଲମାନ ସଭ୍ୟତାର ଜନ୍ମଭୂମିରେ ଅର୍ଯ୍ୟସଭ୍ୟତାର ଅବାନ୍ତର ପ୍ରଭାବ ଯାହା ଥାଉ, ଏସବୁ ସାକ୍ଷାତ୍‌ଭାବରେ ଯେ ଦୃଢ଼ ପ୍ରତିଷ୍ଠିତ ବରିଷ୍ଠ ଓ ସୁମହତ୍ ଅସୁରସଭ୍ୟତାର ଉତ୍ତରା-ଧିକାରୀ, ଏଥିରେ ସନ୍ଦେହ ନାହିଁ । ଅସୁରସଭ୍ୟତାର ଦୃଢ଼ ଭିତ୍ତି ଉପରେ ସେ ଭୂମିର ସଭ୍ୟତା ଗଢ଼ା ହୋଇଥିଲା । ଆଜକୁ ପ୍ରାୟ ୩୦୦୦ ବର୍ଷ ପୂର୍ବେ ସେ ସମସ୍ତ ଭୂମି ଅସୁରମାନଙ୍କ ଶୃଙ୍ଖଳିତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବା କଥା ମଧ୍ୟ ପୂର୍ବେ କୁହା ଯାଇଛି । ତା ଛଡ଼ା ପ୍ରତିଷ୍ଠିତ ଅସୁରସଭ୍ୟତା ସଙ୍ଗେ ମିଶର ସମେତ ସେସବୁ ଦେଶର ଚିରକାଳ ଆଦାନ ପ୍ରଦାନ ଚାଲୁଥିବାର ପ୍ରମାଣ ସ୍ପଷ୍ଟ । ଅସୁରମାନେ ସେ ଦେଶକୁ ଲିପି ଘେନି ଯାଇଥିଲେ; ପୁଣି ଅସୁର କିମ୍ବଦନ୍ତୀ ହିଁ ସେସବୁ ଦେଶର ଲୋକସାହିତ୍ୟ ତଥା ଧର୍ମସାହିତ୍ୟର ପରମ-ପୀଠ । ଏହି ଅସୁର ସଭ୍ୟତା ସମ୍ବନ୍ଧରେ ଆର୍ଯ୍ୟସଂସ୍କୃତ ଗବେଷଣା ପରେ ଗ୍ୱାଇଲ୍ଡ୍ ସାହେବ କହନ୍ତି, "ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ

---

(୧) H. R. Hall's 'The Ancient History of the Near East' P. 202

Ibid. P 171

ଇତିହାସରେ ଆର୍ଯ୍ୟମାନେ ପ୍ରଥମେ ଉତ୍ତର ଇରାକ ଓ ଏସିଆମାଇନରର ଉତ୍ତର ଭାଗରେ ଦେଖାଯାନ୍ତି । ପ୍ରାଚୀନ ବାବିଲନ୍ (ଅସୁର ଦେଶ), ମିଶର ଓ ଖଣ୍ଡିଂରେ କେତେ ପ୍ରାଚୀନ କୋଣଚୂଳ ଲିପିରେ ଏମାନଙ୍କ ପ୍ରଥମ ଐତିହାସିକ ପରିଚୟ । ମାତ୍ର ଏମାନେ ଏଇ ସୁସଭ୍ୟ ଭୂମିରେ ଆଗନ୍ତୁକ ପର । କାରଣ ଆଜକୁ ପ୍ରାୟ ୬୦୦୦ ବର୍ଷ ପୂର୍ବରୁ—ଏଇ ଆଗନ୍ତୁକ ଐତିହାସିକ ଅର୍ଯ୍ୟଙ୍କ ଆଗମନ ବହୁ ପୂର୍ବରୁ—ଏଇ ଭୂମିରେ ଲିପି ଓ ଲେଖପଦ୍ଧତିର ବ୍ୟବହାର ଥିଲା । ଟାଇଗ୍ରୀସ୍ ଓ ଇଉଫ୍ରେଟିସ୍ ମଧ୍ୟବର୍ତ୍ତୀ ଦ୍ୱୀପ (ମେସୋପୋଟାମିଆ) ଓ ତାହା ପାର୍ଶ୍ୱଭୂମିରେ ଏମାନଙ୍କ ଆକ୍ରମଣ ପୂର୍ବରୁ ଏଇ ଦ୍ୱୀପରେ ଭିନ୍ନଭାଷୀ ଲୋକେ ସ୍ଥାୟୀ ବସତି କରି ସାରିଥିଲେ ।

"ଇତିହାସର ଆଦିମ କାଳରୁ ସୁମେରୀୟ (ଅସୁର) ଓ ସେମାଇଟ୍ ବୋଲି ଯୋଡ଼ିଏ ଅନାର୍ଯ୍ୟ ଜାତି ସେଇ ନଦୀ ଦ୍ୱୟର ଉପତ୍ୟକାମାନଙ୍କରେ ବାସ କରି ଆସୁଥିଲେ । ସୁମେରୀୟମାନେ ପ୍ରଥମେ ଏଇ ଦ୍ୱୀପର ଦକ୍ଷିଣକୁ ଥିଲେ ହେଁ, କାଳକ୍ରମେ ଦ୍ୱୀପର ଉତ୍ତର ଭାଗରେ ଟାଇଗ୍ରୀସ୍ କୂଳରେ ଥିବା ଅସୁର ନଗରୀ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲେ । ପୁଣି ଏଇ ସୁମେରୀୟମାନେ ବେଶି ସଂଖ୍ୟାରେ ନ ଗଲେ ହେଁ, ତାଙ୍କ ସଭ୍ୟତା ଉତ୍ତରରେ କାସ୍ପିଅନ ହ୍ରଦକୂଳର ଅସ୍ତାବାଦ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥିଲା । ପୁଣି ସେମାଇଟ୍‌ମାନେ ବାବିଲନ୍ ରାଜ୍ୟରେ ସଂପୂର୍ଣ୍ଣରୂପେ ସୁମେରୀୟମାନଙ୍କ ସଙ୍ଗେ ମିଶି ଯାଇଥିଲେ ଓ ଏଇ ବାବିଲନୀୟମାନେ ପଶ୍ଚିମରେ ସିରିଆ ଓ ସେନାଇ ପର୍ଯ୍ୟନ୍ତ ସମସ୍ତ ସମଭୂମି ଅଧିକାର କରିଥିଲେ । ଏଇ ଦୁଇ ଜାତି ମିଶି ମେସୋପୋଟାମିଆର ସେଇ ଅତି ପ୍ରାଚୀନ ସଭ୍ୟତାର ବିଧାତା ହୋଇଥିଲେ । ଏବେ ଆଜକୁ ୫୫୦୦ବର୍ଷ ତଳରୁ ଏଇ ସଭ୍ୟତାର କୀର୍ତ୍ତିସବୁ ମିଳୁଅଛି । ଏଇ ଭୂମିରେ ସେମାନେ ବିରାଟ ସାମ୍ରାଜ୍ୟ ସ୍ଥାପନ କରି, ସେଇ ସୂତ୍ରରେ ପାର୍ଶ୍ୱବର୍ତ୍ତୀ ଦେଶମାନଙ୍କରେ ସଭ୍ୟତା ଓ ସଂସ୍କୃତିର ଜ୍ୟୋତି ବିକୀର୍ଣ୍ଣ କରିଥିଲେ ।" †

ଏମାନଙ୍କ ରାଜନୀତି ଓ ବାଣିଜ୍ୟନୀତି ତଥା ଏ ସବୁର ପ୍ରଭାବ କଥା ମଧ୍ୟ ସେ ବହୁ ପ୍ରଶଂସିତ ଭାବରେ ଲେଖିଛନ୍ତି ।

## ପଶ୍ଚିମ ଦେଶରେ ଆର୍ଯ୍ୟଙ୍କ ଅସୁରଦେଶ ବିଜୟ—

ଏଇ ବିଶାଳ ଅସୁର ସଭ୍ୟତାର ନିରବଚ୍ଛିନ୍ନ କ୍ରମବିକାଶ ମଧ୍ୟରେ ବହୁ ଆଦିମ ସମୟରେ କାଶ୍ୟ ଆର୍ଯ୍ୟ ବୀରମାନେ ଓ ପରେ ଦଶରଥବଂଶୀୟ ମିତ୍ତାନୀୟ ଆର୍ଯ୍ୟ ବୀରମାନେ, ନଦୀ ଆର ପାରରେ ଥିବା ସ୍ଥାନୀୟ ଅସଭ୍ୟ ଲୋକଙ୍କ ମଧ୍ୟରେ ସେନା ସଂଗ୍ରହ କରି ଆଗନ୍ତୁକ ପରି ଏଇ ଅସୁରଦ୍ୱୀପ ଜିଣିଥିଲେ ମାତ୍ର । ଫଳରେ ଏମାନଙ୍କ ସଭ୍ୟତାରେ ସେମାନେ ନିଜର ଯେଉଁ ଉପାଦାନ ଦୁଏ ତ ଦେଇଥିଲେ, ତାହାର

† V. G. 'Childe's 'The Aryans' P. 16

ସ୍ପଷ୍ଟ ଚିହ୍ନ କିଛି ଦେଖାଯାଉ ନାହିଁ । ଫଳତଃ, ଲିପି ପ୍ରଭୃତିରେ ସଂସ୍କୃତିର ଆଭ୍ୟନ୍ତରୀଣ ଦାର୍ଶନିକ ପ୍ରଗତିର ଚିହ୍ନ ମିଳିବା ଅବଶ୍ୟ ସହଜ ନୁହେ । ଅସୁରଙ୍କର ତତ୍ତ୍ୱବାଦ କଅଣ ଥିଲା, ଆର୍ଯ୍ୟମାନେ ତାହା କେତେ ଦୂର କପରି ଗ୍ରହଣ ବା ପ୍ରଭାବିତ କରିଥିଲେ, ତାହା ପ୍ରାଚୀନ ଦେଶରେ ରାଜ୍ୟ ବିଜୟ ବାର୍ତ୍ତା ମଧ୍ୟରେ ସ୍ଥାନ ପାଇ ନ ଥିଲେ ହେଁ, ପରବର୍ତ୍ତୀ ସଂସ୍କୃତିବିକାଶରେ ନିଜ ଆତ୍ମଗୋପନ କଲେ ହେଁ ବିଦ୍ୟମାନ ଥିବ । ମାତ୍ର ଏସବୁର ବିଶେଷ ଅନୁସନ୍ଧାନକ୍ଷେତ୍ର ଭାରତର ବୈଦିକ ସାହିତ୍ୟ । ତଥାପି ପ୍ରାସଙ୍ଗିକ ନ ହେଲେ ହେଁ କୌତୂହଳ ଚରିତାର୍ଥ କରିବା ପାଇଁ ଏଠାରେ ଗୋଟିଏ ବିଷୟର ଉଲ୍ଲେଖ କରାଯାଇପାରେ । ଦାଶରଥବଂଶୀୟ ଓ କାଶ୍ୟ ଆର୍ଯ୍ୟମାନେ ଅସଭ୍ୟଙ୍କ ସାହାଯ୍ୟରେ ନଦୀ ପାର ହୋଇ ଏଇ ଅସୁରଦ୍ୱୀପ ଜିଣିଥିଲେ । ଏଠାରେ ଜାଣିବାର ଅଛି ସଂସ୍କୃତରେ ଦୁଇ ନଦୀ ମଧ୍ୟସ୍ଥିତ ଭୂମିକୁ 'ଦ୍ୱୀପ' କହନ୍ତି । ଦ୍ରାବିଡ଼ ଭାଷାରେ ଏଇଭଳି ଦ୍ୱୀପକୁ 'ଲଙ୍କା' କହନ୍ତି । ଏଇ ସବୁ ଘଟଣା ଦୃଷ୍ଟିରେ, ଭାରତର ଆଦିକାବ୍ୟ ରାମାୟଣର କଥାବସ୍ତୁ ସଙ୍ଗେ ଏଇ ସବୁ ଐତିହାସିକ ସତ୍ୟର ସାମଂଜସ୍ୟ ସ୍ୱତଃ ଆମର ଦୃଷ୍ଟି ଆକର୍ଷଣ କରେ ।

## ସୁମେରୁ ଓ ଅସୁର—

ଯେ ଯାହାହେଉ, ଭାରତରୁ ଦୂର ବିଦେଶରେ ଏଇ ଯେଉଁ ଅସୁରମାନଙ୍କର ସ୍ପଷ୍ଟ ଐତିହାସିକ ତଥ୍ୟ ମିଳୁଛି, ସେଇ ଅସୁରମାନଙ୍କ ଆଦି ସ୍ଥାନ ଓ ମୌଳିକ ସଭ୍ୟତାଦି ବିଷୟରେ ଏଠାରେ ଟିକିଏ ସ୍ପଷ୍ଟ କରି ରଖିବା ଉଚିତ । କୁହାଯାଇଛି, ଏବର ପାରସ୍ୟ ଉପସାଗର କୂଳରେ ଏଇ ଅସୁର ଦେଶ ଥିଲା । ଏହାର ଆଦି ନାମ ଥିଲା ସୁମେର ( ସୁମେର ? ଶବର ? ) ଦେଶ । ସୁମେରର ଉତ୍ତର ପୂର୍ବରେ ସୁମେରକୁ ଲାଗି, ଆଉ ଏକ ଅସୁର ଦେଶର ନାମ ଥିଲା ଇଲାଂ ( ଆର୍ଯ୍ୟ ? ଐଳ ? ଇଳାବୃତ ବର୍ଷ ? ) । ଏମାନଙ୍କ ଦେବତା ଥିଲେ ଅସୁର ଓ ପରେ ଏମାନେ ଏକ ଦେଶ ବସାଇ ତାର ରାଜଧାନୀର ନାମ ନିଜର ଇଷ୍ଟଦେବତାଙ୍କ ନାମାନୁସାରେ ଦେଲେ 'ଅସୁର' । ପରେ ସେହି ଦେଶର ନାମ ହେଲା 'ଅସୁର-ଭୂମି' ( Assyria ) । ଏଇ ଦେଶର ଅନେକ ରାଜାଙ୍କ ନାମରେ ଅସୁର ଉପାଧିଟି ଯୋଡ଼ା ହୋଇଥିବାର ଦେଖାଯାଏ ।

## ସୁମେରୀୟ ଓ ଭାରତୀୟ—

ଏଇ ଭୂମିରେ ଏଇ ସମସ୍ତ 'ଅସୁର'ମାନଙ୍କର ଆଦି ସ୍ଥାନ 'ସୁମେର' । ବର୍ତ୍ତମାନର ପାରସ୍ୟ ଉପସାଗରର ଠିକ୍ କୂଳରେ ଏଇ 'ସୁମେର' ଭୂମି ଥିଲା । ଏଠା ଅସୁରଙ୍କ ଆଦି ପୁରୁଷମାନେ ଏଠାରେ ପ୍ରଥମେ ରହିଲା ବେଳେ ଏଇ ଭୂମିକୁ କହିଲେ ସୁମେର ଓ ତେଣୁ ନିଜେ ନାମିତ ହେଲେ 'ସୁମେରୀୟ' । ଏଇମାନେ ଏ ଭୂମିର ଆଦିମ ଅଧିବାସୀମାନଙ୍କୁ ସଭ୍ୟ କରିଥିଲେ । ଏଇମାନେ ପ୍ରଥମେ କୋଣାକ-ଅକ୍ଷର

ପ୍ରସ୍ତୁତ କରିଥିଲେ । ସେଇ ଅକ୍ଷର ପରେ ବିକାଶ ପାଇ, ସେଥିରେ ସେଇ ଦେଶର ଫଳକ ସବୁ ପ୍ରାପ୍ତ ହୁଇ ସହସ୍ର ବର୍ଷ ଲକ୍ଷିତ ହୋଇଥିଲା ।†

ଦିଗମ୍ବର ଜୈନ ସନ୍ନ୍ୟାସୀଙ୍କ ପରି ଏଇ ସୁମେରୀୟମାନଙ୍କ ପୁରୋହିତମାନେ ପୂର୍ଣ୍ଣ ମୁଣ୍ଡିତ ମୁଣ୍ଡ ଓ ନଗ୍ନ ଥିଲେ । ପରବର୍ତ୍ତୀ କାଳରେ ଏମାନେ ବସ୍ତ୍ର ପରିଧାନ କଲେ ମଧ୍ୟ, ବାଳ ରଖିବାର ବିଧି ସେମାନଙ୍କ ଭିତରେ ନ ଥିଲା । ଫଳତଃ ସେମାନେ ବୌଦ୍ଧ ସନ୍ନ୍ୟାସୀଙ୍କ ପରି ବେଶ ଧାରଣ କରୁଥିଲେ ।

ସେଇ ହଲ୍ ସାହେବ ପୁଣି କହନ୍ତି, "ସେଇ ସୁମେରୀୟମାନଙ୍କ ସଭ୍ୟତା ସୁମେର ଭୂମିରେ ବିକାଶ ପାଇ ନ ଥିଲା । ସେମାନେ କୌଣସି ଦୂର ଦେଶରୁ ସେଇ ସଭ୍ୟତା ଘେନି ଆସି ଏକାବେଳକେ ପହଁଚିଥିବାର ସ୍ପଷ୍ଟ । ଏଇ ସୁମେରୀୟମାନେ କେବେ ଅସଭ୍ୟ ଥିଲେ, ତାହା କହିବାର ଉପାୟ ନାହିଁ । ଖ୍ରୀଷ୍ଟପୂର୍ବ ୩୦୦୦ ଠାରୁ ୪୦୦୦ ବର୍ଷ ମଧ୍ୟରେ ଆମେ ତାଙ୍କୁ ଏଇ ସୁମେର ଭୂମିରେ ପୂର୍ଣ୍ଣ ବିକଶିତ ସଭ୍ୟତା ଘେନି ଆସି ପହଞ୍ଚିବାରେ ଦେଖୁଁ । ସେତେବେଳକୁ ସେମାନେ ସଭ୍ୟ ହୋଇଥିଲେ; ଧାତୁନିର୍ମିତ ଦ୍ରବ୍ୟ ଓ ଶସ୍ତ୍ରାଦି ବ୍ୟବହାର କରୁଥିଲେ; ବୃହତ୍ ଜନାକୀର୍ଣ୍ଣ ନଗରମାନଙ୍କରେ ରହୁଥିଲେ । ସେମାନଙ୍କର ବହୁ ଜଟିଳ ଓ ଶୃଙ୍ଖଳାବଦ୍ଧ ଲେଖିବାର ରୀତି ଓ ପ୍ରଣାଳୀ ଥିଲା ଓ ସେମାନେ ଧର୍ମାନୁମୋଦିତ ନୀତିବଦ୍ଧ ରାଜବଂଶମାନଙ୍କ ଅଧୀନରେ କର୍ମଚାରୀମାନଙ୍କଦ୍ୱାରା ସୁନିୟନ୍ତ୍ରିତ ଓ ଉତ୍ତମ ଶୃଙ୍ଖଳିତ ଶାସନପଦ୍ଧତିରେ ରାଜ୍ୟକୁ ସୁଦୃଢ଼ ଓ ପ୍ରତିଷ୍ଠିତ କରି ସେଥିରେ ବାସ କରୁଥିଲେ । ଦେଶର ଆଦିମ ଅଧିବାସୀଙ୍କୁ ସେମାନେ ନିଜର ଉନ୍ନତତର ସଭ୍ୟତାରେ ପ୍ରଭାବିତ କରିଥିଲେ ଓ ଯଥାସମ୍ଭବ ବିଜିତମାନଙ୍କ ସଭ୍ୟତାରୁ ସାର ଗ୍ରହଣ କରି ତାହା ନିଜର କରିଥିଲେ । ସମ୍ଭବତଃ ସେମାନଙ୍କ ସଭ୍ୟତାର ଆଦିସ୍ଥାନ କଦାପି ଏଇ ଅସୁର ଭୂମିରେ ନ ଥିଲା; ସେମାନଙ୍କ ଆଦିସ୍ଥାନ ପାରସ୍ୟ ପାରରେ ପୂର୍ବ ଦେଶରେ ଥିଲା । ଯେଉଁ ଇଲାଂ ରାଜ୍ୟ ବରାବର ସ୍ୱାଧୀନ ରହି ଯୁଗେ ଯୁଗେ ଅସୁର ସଭ୍ୟତା ଅକ୍ଷୁଣ୍ଣ ରଖିଥିଲା, ସେ ହୁଏତ ଏଇ ସୁମେରୀୟମାନଙ୍କ ଆସିବା ବାଟରେ ଏକ ବିଶ୍ରାମର ସ୍ଥାନ ଥିଲା । × ×
ସେ କାଳରେ ମୂର୍ତ୍ତିମାନଙ୍କରେ ଏଇ ସୁମେରୀୟମାନଙ୍କ ଆକୃତି ଓ ମୁଖର ଗଠନ ସୁସ୍ପଷ୍ଟ ଜଣାପଡ଼ୁଛି । ସେମାନଙ୍କ ଚାରିପାଖର ଲୋକଙ୍କଠାରୁ ଏହା ଯେପରି ଭିନ୍ନ, ଆର୍ଯ୍ୟ ଓ ଅନ୍ୟାନ୍ୟ ଅନାର୍ଯ୍ୟଙ୍କଠାରୁ ଏହା ମଧ୍ୟ ସେଇପରି ଭିନ୍ନ । ନିଶ୍ଚିତ ଭାବରେ କୁହାଯାଇ ପାରେ ଯେ, ଯେସବୁ ଆକୃତି ଓ ଗଠନ ସମ୍ପୂର୍ଣ୍ଣ ଭାରତୀୟ ( ଦ୍ରାବିଡ଼ ) । ଆଜିର ଭାରତୀୟ-ମୁଖର ଗଢ଼ଣ, ହଜାର ହଜାର ବର୍ଷ ପୂର୍ବର ଦ୍ରାବିଡ଼ ପିତାମହଙ୍କ

† H. R. Hall's Ancient History of the Near East, 7th Edition P. 71.

ମୁଖର ଗଢ଼ଣ ସଙ୍ଗେ ସମାନ କହିଲେ ଚଳେ । କି ଭାରତ, କି ଗ୍ରୀସ୍, କି ଇଟାଲି—ସର୍ବତ୍ର ପୂର୍ବର ଅନାର୍ଯ୍ୟ ଆକୃତି ହିଁ ଏବେ ପ୍ରକାଶ ପାଏ: ଆର୍ଯ୍ୟ ବିଜେତାମାନଙ୍କ ଆକୃତି ବହୁ ବିଦନରୁ ଲୋପ ପାଇଛି (ଭୂମିର ଆଦିମ ଅଧିବାସୀ ମାନବଠାରେ ପ୍ରକାଶ ପାଇବା ହିଁ ସର୍ବତ୍ର ଦେଖାଯାଏ । ଏହା ହିଁ ବିଧି) । ଏବେ ଭାରତର ଏଇ ଦ୍ରାବିଡ଼ ଆକୃତି ସଂଗେ ସୁମେରୀୟ ମୂର୍ତ୍ତିର ଆକୃତି ମିଳିଯାଉଛି । ଏଇ ମୂର୍ତ୍ତି-ଗଠିତ ସୁମେରୀୟ ଏବର ଦକ୍ଷିଣ ଭାରତର ହିନ୍ଦୁ ସଙ୍ଗେ ଆକୃତିରେ ଏକା ପରି । ଏଣୁ ଅନୁମାନ ହୁଏ, ଏଇ ସୁମେରୀୟମାନେ ଭାରତୀୟ ଥିଲେ ଓ କିଷ୍ଟୀୟ ଭୂମିବାଟେ, ପୁଣି ସଂଭବତଃ ସମୁଦ୍ର ବାଟେ ପାରସ୍ୟ ହୋଇ ନଦୀ-ଦ୍ୱୟ (ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍) ର ଉପତ୍ୟକାକୁ ଆସିଥିଲେ । ସେଇ ଆଦିମ ସ୍ଥାନ ଭାରତ ଭୂମିରେ (ସଂଭବତଃ ସିନ୍ଧୁ ଉପତ୍ୟକାରେ)—(ମହେଂଜୋଦାରୋ ଖୋଳା ହେବା ପରେ ଗ୍ରନ୍ଥକାର ଏଇ ସିଂଧୁ ଉପତ୍ୟକା କଥାଟି ଏବେ ୭ମ ସଂସ୍କରଣରେ ଯୋଡ଼ିଚନ୍ତି) ସେମାନଙ୍କ ସଭ୍ୟତା ବିକାଶ ପାଇ ବଢ଼ିଥିଲା । ସେଇଠାରେ ସଂଭବତଃ ତାଙ୍କ ଲିପି ଉଦ୍ଭାବିତ ହୋଇଥିଲା । (ମହେଂଜୋଦାରୋ ଓ ହରପ୍ପାରୁ ମିଳିଥିବା ମୁଦ୍ରାଦିର ଲିପି ସଂଗେ ଏଇ ସୁମେରୀୟ ଲିପିର କି ସଂବଂଧ ତାହା ଏବେ ଜଣାଯାଇ ନାହିଁ ।) ବାଟରେ ଇଲାମ୍ ଦେଶରେ ସେମାନେ ନିଜ ସଭ୍ୟତାର ବୀଜ ବୁଣି ଦେଇ ଆସିଥିଲେ । ଏହା ହିଁ ଏ କ୍ଷେତ୍ରରେ ଯୁକ୍ତିଯୁକ୍ତ ସମାଧାନ ବୋଲି ମନେ ହୁଏ । ✳”

## ଭାରତୀୟଙ୍କ ସମୁଦ୍ରବାଟେ ସୁମେରୁ ଉପନିବେଶର ସଂକେତ—

ଏଇଠାରେ ପାଦଟୀକାରେ ହଲ ସାହେବ ଲେଖିଚନ୍ତି—ସୁମେରୀୟମାନଙ୍କ ଭିତରେ ଥିବା ଉଆନସ୍ (ମୀନ ?) ବା 'ନରମୀନ' କିଂବଦନ୍ତୀରୁ ଜଣାପଡ଼େ, ଏଇ ସୁମେରୀୟମାନେ ସମୁଦ୍ରପାରରୁ କୌଣସି ସଭ୍ୟ ଦେଶରୁ ଆସିଥିଲେ । କିଂବଦନ୍ତୀ କହେ, ଉଆନସ୍ ଷୋଳକଳା ସଭ୍ୟତା ସଙ୍ଗେ ଘେନି ପାରସ୍ୟ ଉପସାଗରରୁ ଆଦିମ ସୁମେରୀୟ ସହରମାନଙ୍କୁ ଉଠି ଆସିଥିଲା । ପୁଣି ଅନ୍ୟ ଏକ ପାଦଟୀକାରେ ସେଇଠାରେ ଲେଖିଛନ୍ତି, ଏଇ ସମ୍ପର୍କରେ ଏବେ ଭାରତର ମହେଞ୍ଜୋଦାରୋ, ହରପ୍ପା ତଥା ବାବିଲନର କିଶ୍‌ରେ ବାହାରିଥିବା ବସ୍ତୁସକଳ ଆବିଷ୍କ୍ରିୟାମାନଙ୍କରୁ ସ୍ପଷ୍ଟ ଜଣାପଡୁଛି, ସେକାଳ ଭାରତ ଓ ମେସୋପୋଟାମିଆ ଭିତରେ ସଭ୍ୟତା ଓ ସଂସ୍କୃତିର ଘନିଷ୍ଠ ସଂବଂଧ ଥିଲା । ଦୁଇଠାରେ ସମାନ ମୁଦ୍ରାଲେଖ ବାହାରିଚି ଓ ମୁଦ୍ରାରେ ମୁଦ୍ରିତ ବୃଷଭାଦି ଅଭ୍ରାନ୍ତ ସୁମେରୀୟ ଶିଳ୍ପରେ ପ୍ରତିକୃତି ପରି ଦେଖାଯାଉଚି, ଇତ୍ୟାଦି ।

---

✳ Ibid, pp. 173-74

## ଶବର ଓ ସୁମେର ଏକା କଥା ?—

ଏ ଦେଶର ଯେଉଁ ଅସୁର ସଭ୍ୟତା ସେ ପାଖେ ସିଂଧୁ ତଥା ଏ ପାଖେ କଳିଙ୍ଗରେ ଅର୍ଥାତ୍ ପଶ୍ଚିମ ଓ ପୂର୍ବ-ଉପକୂଳର ବାଣିଜ୍ୟ ଓ ନୌଯାନ ସୁବିଧା ଥିବା ସ୍ଥାନମାନଙ୍କରେ ସମୃଦ୍ଧ ହୋଇଥିଲା, ତାହା ହୁଏତ ଭାରତର ସମସ୍ତ ଆଦିମ ନିବାସୀଙ୍କ ଭିତରେ ବ୍ୟାପି ନ ଥିଲା । ସମସ୍ତ ଦ୍ରାବିଡ଼ ଜାତିମାନେ ମଧ୍ୟ ଏଇ ସଭ୍ୟତାରେ ସମାନ ଅଧିକାରୀ ନ ଥିଲେ । ଏମାନଙ୍କ ମଧ୍ୟରୁ ଅନେକେ ପରେ ଆର୍ଯ୍ୟମାନଙ୍କ ଭିତରେ ମିଶି ଯାଇଥିଲେ ଓ ଅନ୍ୟାନ୍ୟମାନେ ଅସଭ୍ୟ ଜାତିଙ୍କ ଭିତରେ ରହି ନିଜର ସତ୍ତା ହରାଇଥିଲେ । ଏଇମାନ ମଧ୍ୟ ଆଉ ଗୋଟିଏ ଜାତି ଶବର । ଏମାନେ ସମ୍ଭବତଃ ଏଇ ଦ୍ରାବିଡ଼ ବା ଅସୁର ବଂଶଜାତ । ଆଜକୁ ୨୦୦୦ ବର୍ଷ ତଳେ ବିଦେଶୀୟ ଯବନ ( ଗ୍ରୀକ୍ ) ମାନେ ଏମାନଙ୍କୁ ସଭ୍ୟଜାତି ଭିତରେ ଗଣିଛନ୍ତି । ପୁଣି ଓଡ଼ିଶାର ଜଗନ୍ନାଥ ଶବର ଦେବତା । ଜଗନ୍ନାଥ ବିଷ୍ଣୁଙ୍କ ବୌଦ୍ଧାବତାର, ପୁଣି ଜଗନ୍ନାଥର ମହାସାମ୍ୟବାଦର ଲୋକବ୍ୟବହାରରେ ପ୍ରଚାର, କେବଳ ଗୀତା ବା ଉପନିଷଦର ଦାର୍ଶନିକ ସାମ୍ୟନୀତି ନୁହେ । ଏଥିରେ ବୌଦ୍ଧ ସଂସ୍କୃତିର ଭିତ୍ତି ସ୍ପଷ୍ଟ । ହୁଏତ ପୂର୍ବ ଭାରତର ଅସୁରମାନଙ୍କର ନାମ ଥିଲା ଶବର । କିନ୍ତୁ ସେଇ କଳିଙ୍ଗ ଭୂମିରେ ମଧ୍ୟ ସେଇ ଶବରମାନେ ଆଜି ଜଙ୍ଗଲି ଓ ଅସଭ୍ୟ । ଯେଉଁ ସଭ୍ୟ ଶବରମାନେ ଆର୍ଯ୍ୟସଭ୍ୟତାରେ ନିଜକୁ କୌଣସି ପ୍ରକାରେ ମିଶାଇ ଦେଇ ପାରିଥିଲେ, ସେମାନଙ୍କର ଆଜି ଶବର ବୋଲି ଚିହ୍ନ ନାହିଁ ।

## ବେଷ୍ଟନୀରେ ଆଗନ୍ତୁକ ସଭ୍ୟତାର ଗତି—

ଏଇପରି ଓଡ଼ିଶାର ଜୟପୁରରେ ମଧ୍ୟ ଏବେ ଦେଖାଯାଏ, ବ୍ରାହ୍ମଣ ପ୍ରଭୃତି ଉଚ୍ଚ ଜାତିମାନେ ଜଙ୍ଗଲି ଜାତିଙ୍କ ଭିତରେ ରହି, ସେଇମାନଙ୍କ ରୀତିକୁ ସମ୍ପୂର୍ଣ୍ଣ ଆଦରି ଗଲେଣି । ଏପରି କି ନିଜର ବିବାହ ଦିନ ବୁଝିବାରେ ଜ୍ୟୋତିଷଙ୍କୁ ନ ଖୋଜି ସେମାନେ ସେଇ ଅସଭ୍ୟ ଜାତିଙ୍କ 'ଦିସାରି' ( ଜଙ୍ଗଲି 'ପରଜା', 'ଗାଦବା' ଓ 'କନ୍ଧ' ପ୍ରଭୃତି ଜାତିର ଦିନ ବାର ଯୋଗ ବୁଝିବା ଲୋକ )ଙ୍କୁ ଡାକି ଦିନ ଯୋଗ ବୁଝାଇ ବିବାହାଦି କରନ୍ତି; ପୁଣି ବୈଦ୍ୟ ନ ଡାକି ସେଇ ଜାତିର 'ଗୁଣିଆ' ଡାକି ରୋଗ ଚିକିତ୍ସା କରନ୍ତି । ଏଇପରି ସଭ୍ୟ ଜାତିମାନେ ମଧ୍ୟ ଅନ୍ୟ ଅସଭ୍ୟ ଜାତିରେ ନିଜକୁ ମିଶାଇଦେବାର ପ୍ରମାଣ ପୃଥିବୀରେ ବହୁତ ମିଳେ । ଦ୍ରାବିଡ଼ ଭାଷା ଓ ସାହିତ୍ୟତତ୍ତ୍ୱବିତ୍ କଲ୍‌ଡ୍‌ୱେଲ, ତଥା ଐତିହାସିକ ଭିନ୍‌ସେଣ୍ଟ ସ୍ମିଥ୍ ସ୍ଥିର କରନ୍ତି, ଦକ୍ଷିଣ ଭାରତର ଏବର ଅତି ଅସଭ୍ୟ 'ବେଦ୍ଦା' ଜାତି ପୂର୍ବେ ବୈଦିକ ଆର୍ଯ୍ୟ ଥିଲେ । ଅଳ୍ପସଂଖ୍ୟକ ଆଗନ୍ତୁକ ଥିବାରୁ ସେମାନେ ବେଷ୍ଟନୀର ରୀତି ନୀତିରେ ସ୍ୱାଭାବିକ ଆତ୍ମଦାନ କରି ଏବେ ଏପରି ହୋଇଛନ୍ତି ।

## ପଶ୍ଚିମ ଦେଶରେ ଅସୁର ଓ ଶବରଙ୍କ ପରିଣାମ—

ସେହିପରି ନାନାପ୍ରକାର ସଭ୍ୟତାର ଉତ୍‌ଥାନ ପତନ ଭିତରେ ଇରାକ୍ ଓ ଏସିଆଁମାଇନରର ଆର୍ଯ୍ୟ ତଥା ଅସୁରମାନେ ଏବେ ସେ ଭୂମିରେ ହୁଏତ ଆଉ ସଭ୍ୟତାର ସ୍ୱାତନ୍ତ୍ର୍ୟରେ ଚିହ୍ନା ଯାଉ ନାହାନ୍ତି । କାଳକ୍ରମେ ଇହୁଦୀ, ଖ୍ରୀଷ୍ଟ ଓ ମୁସଲମାନ ଧର୍ମ ପୁଣି ସଭ୍ୟତାମାନ ସେ ଦେଶରେ ବାହାରି ଆଜି ପୃଥିବୀରେ ପରିଚିତ ହୋଇଅଛି । ମାତ୍ର ଆଦିମ ଖ୍ରୀଷ୍ଟଧର୍ମରେ ଯେ ବୈରାଗ୍ୟ, କର୍ମତ୍ୟାଗ ଓ ଧ୍ୟାନ ତଥା ଭକ୍ତି ଦେଖାଯାଏ, ସେଥିରେ ଅସୁରସଭ୍ୟତାର ସ୍ପଷ୍ଟ ରୂପ ଓ ବୈଦିକ ସଭ୍ୟତାର ପ୍ରଭାବ ଖୋଜି ଦେଖିବାରେ ପଣ୍ଡିତମାନଙ୍କର ବିଶେଷ ଆଗ୍ରହ ହେବାର ମନେହୁଏ ନାହିଁ । ପୁଣି ପରବର୍ତ୍ତୀ ମୁସଲମାନ ଧର୍ମ ଖ୍ରୀଷ୍ଟଧର୍ମର ସନ୍ତାନ । ଏଥିରେ ତ୍ୟାଗ ଓ ବୈରାଗ୍ୟ ପରିବର୍ତ୍ତିରେ ଭୋଗ ଓ କର୍ମଫଳର ଯେଉଁ ପ୍ରାବଲ୍ୟ ଦେଖାଯାଏ, ତାହା ମଧ୍ୟ ଯେ ପ୍ରାଚୀନ ବୈଦିକ ସଭ୍ୟତାର ସେ ବେଷ୍ଟନୀରେ ଭୂୟୋବିକାଶର ଏକ ସୁଦୂର ପରିଣାମ ନୁହେଁ, ତାହା କିଏ କହିବ ? ପ୍ରାଚୀନ ବ୍ୟାବହାରିକ ବୈଦିକ ଧର୍ମରେ ସବୁ କର୍ମ ସ୍ୱର୍ଗ ବା ସେହିଭଳି ଲୋକର ଲାଭ ନିମନ୍ତେ । ମୁସଲମାନ ଧର୍ମରେ ଏହି ବିକାଶ ତଥା ସ୍ୱର୍ଗର ତୃଷ୍ଣାନୁକୂଳ କଳ୍ପନା ଦେଖିଲେ ପ୍ରାଚୀନ ବେଦଧର୍ମର ବହିର୍ବିବରଣ ହିଁ ସ୍ୱତଃ ମନେପଡ଼େ । ମାତ୍ର ପୃଥିବୀରେ ପଣ୍ଡିତମାନେ ଏ ଦିଗରେ ନିରପେକ୍ଷ ଆଲୋଚନା ଆରମ୍ଭ କରି ନାହାନ୍ତି, ପୁଣି ନାନା ପରିସ୍ଥିତି କାରଣରୁ ଅନେକ ହୁଏତ ଇଚ୍ଛା ବା ସାହସ କରି ନାହାନ୍ତି ।

## ଅସୁର ଓ ବେଦସଭ୍ୟତା—

ସେ କଥା ଥାଉ । ମାତ୍ର ଭାରତରେ ଏହି ଅସୁର ତଥା ଶବର (ସୁମେର) ସଭ୍ୟତା ଯେ ବୈଦିକ ସଭ୍ୟତାକୁ ବିଶେଷ ଅଙ୍କୁର ଦାନ କରି ପୂର୍ଣ୍ଣାଙ୍ଗ କରିଛି, ତାହା ଦେଖିଲେ ଗୀତାର ଧର୍ମ ବୁଝାଯିବ । ମନେ ରଖିବାକୁ ହେବ, ମହେଞ୍ଜୋଦାରୋ ପ୍ରଭୃତିରେ ଯେଉଁ ପ୍ରାଚୀନ ସଭ୍ୟତାର ଅବଶେଷ ବାହାରିଛି, ବିଶେଷଜ୍ଞମାନଙ୍କ ମତରେ ତାହା ୫୦୦୦ ବା ୬୦୦୦ ବର୍ଷରୁ ଆଧୁନିକ ନୁହେଁ । ପୁଣି ଏହି ୫।୬ ହଜାର ବର୍ଷ ତଳର ଯେଉଁ ସଭ୍ୟତାର ଚିହ୍ନ ସେସବୁ ସ୍ଥାନରେ ବାହାରିଛି, ସେଥିରୁ ଜଣାଯାଉଛି, ସେହି ସଭ୍ୟତା ସେହି ଭୂମିରେ ଅନ୍ତତଃ ହୁଏତ ସେତିକି ବା ତହିଁରୁ ଅଧିକ ସମୟ ଧରି ବଢ଼ି ଆସିଥିଲା । ଇଟା ଅଟ୍ଟାଳିକା, ସ୍ନାନାଗାର, ସଜ୍ଜିତ ସାଧାରଣ ସ୍ନାନବେଦୀ ଓ ଜଳାଶୟ, ପ୍ରକାଣ୍ଡ ଓ ସୁଗଠିତ ନଳା, ନର୍ଦ୍ଦମା, ପୁଣି ଶୃଙ୍ଖଳାବଦ୍ଧ ସହର ବସତି ଓ ପରିଷ୍କାର ପରିଚ୍ଛନ୍ନତା ପ୍ରଭୃତିର ଯେଉଁ ସବୁ ଅବଶେଷ ପ୍ରକାଶ ପାଇଛି, ସେସବୁର ପୂର୍ବବିକାଶ ଯେ କେତେ କାଳ ଧରି ଚାଲିଥିଲା, ତାହା ଅନୁମାନରେ ଗଣନା ପରିସ୍ତ କରେ । ମାତ୍ର ଏସବୁରେ ବିଶ୍ୱତତ୍ତ୍ୱ ବିଗ୍ରହ ଓ ମୁକ୍ତ ସାଧନାର ନିଶ୍ଚଳ ଧ୍ୟାନନିରତ ଯୋଗୀର ମୂର୍ତ୍ତିକୃତି ଓ ଅଉ ଗୋଟିଏ ପୂଜାର ଶିବଲିଙ୍ଗ

ଏଥିରୁ ଜଣାଯାଏ, ନିବିଡ଼ ଧ୍ୟାନଯୋଗ ଓ ଶିଶ୍ନଦେବ-ପୂଜା ସେମାନଙ୍କ ଭିତରେ ପ୍ରଚଳିତ ଥିଲା । ବେଦରେ ଅନାର୍ଯ୍ୟମାନଙ୍କୁ ଶିଶ୍ନଦେବ (ଶିଶ୍ନ ବା ଲିଙ୍ଗ ଦେବତା ଯାହାର ) କୁହାଯାଇଥିବା କଥା ଏଠାରେ ସ୍ମରଣ କରିବାର ଅଛି ।

## ଯୋଗ—

ପୁଣି ଯୋଗ କଥା । ବୈଦିକ ସାହିତ୍ୟରେ ପତଞ୍ଜଳି ସାଂଖ୍ୟ ଦର୍ଶନର ସାଧନମାର୍ଗ ସ୍ୱରୂପ ଯେଉଁ ଯୋଗସୂତ୍ର ପ୍ରଣୟନ କରିଥିଲେ, ତାହାର କେତେକ ମାତ୍ର ଲଘୁ ସୂଚନା ଉପନିଷଦରେ ମିଳେ । ଏହା ଯେ ଅସୁର ସାଧନାର ପ୍ରଭାବରେ ଆକୃତିମନ୍ତ ହୋଇଥିଲା ତାହା ମଧ୍ୟ ପରେ ବୁଝାଇ ଦିଆଯିବ । ମାତ୍ର ଯେ ସବୁ ବୁଝିବା ପୂର୍ବରୁ ଦେଶରେ ଅସୁରଦର୍ଶନ ଓ ଅସୁରସାଧନାର ଯେଉଁ ପାରଂପରିକ ଅବଶେଷ ଏବେ ଏ ଦେଶରେ ଅଛି, ତାହାର ଠିକଏ ସୂଚନା ଦେଲେ ଆଲୋଚନାଟି ବେଶି ପ୍ରମାଣଯୁକ୍ତ ହେବ, ସନ୍ଦେହ ନାହିଁ ।

## ଶୂନ୍ୟରୁ ଉତ୍ପତ୍ତିର ବ୍ୟାଖ୍ୟା —

ବିଶ୍ୱର ବସ୍ତୁତତ୍ତ୍ୱରେ ଶୂନ୍ୟବାଦ, ସଂସାର ଓ କର୍ମତ୍ୟାଗ ଓ ନିବିଡ଼ ଧ୍ୟାନ ସହିତ ସେଇ ଶୂନ୍ୟସାଧନା, ଲିଙ୍ଗ ଯୋନି ବା ରଜୋବୀର୍ଯ୍ୟର ସମାଗମରୁ ହିଁ ବ୍ୟକ୍ତି ତଥା ବିଶ୍ୱର ଉତ୍ପତ୍ତି, ଓ ବ୍ୟକ୍ତି ଛଡ଼ା ଆଉ କିଛି ଭାବିବାର ବସ୍ତୁ ନାହିଁ—ଏଇସବୁ ଅସୁରସଭ୍ୟତାର ସଙ୍କେତ । ବେଦଧର୍ମରେ ଏସବୁର ସ୍ଥାନ ଓ ଯଥାସ୍ଥାନରେ ବ୍ୟବହାର ହୋଇଛି ସତ, ମାତ୍ର ଦେଶର ବେଦବିରୋଧିପରଂପରା, ତଥା ବେଦଜ୍ଞାନହୀନ ଜନସାଧାରଣଙ୍କ ମଧ୍ୟରେ କାଳେ କାଳେ ଏସବୁ ଚାଲିଆସିଛି । ବୌଦ୍ଧଧର୍ମ ବେଦର ସନ୍ତାନ ନୁହେ । ଏହା ଅସୁରସାଧନାର ପରଂପରା । ବେଦର ସ୍ୱତୋବିକାଶରେ ବୌଦ୍ଧର ଶୂନ୍ୟବାଦ ସନ୍ନ୍ୟାସ, ତଥା ସକଳ ନିର୍ବାଣ-ସାଧନାରେ ବ୍ୟକ୍ତିକେନ୍ଦ୍ରତ୍ୱ ପ୍ରଭୃତି ଫୁଟି ନାହିଁ । ପୁଣି ବୌଦ୍ଧ ଧର୍ମ ସଙ୍ଗେ ଯେଉଁ ତନ୍ତ୍ର ଧର୍ମ ବା ସାଧନାର ନିତ୍ୟବିକାଶ ସ୍ପଷ୍ଟତଃ ପୂର୍ବ ଭାରତରେ ଦେଖାଯାଏ, ତାହାର ସ୍ୱାତନ୍ତ୍ର୍ୟ ଶବର ସଭ୍ୟତା ବୋଲି ଜଣାପଡ଼େ । ସୁମେରମାନଙ୍କର ମଧ୍ୟ ଏଇ ତନ୍ତ୍ରସାଧନାର ବହିରାବରଣ, ସଭ୍ୟତାର ଅବଶେଷ ଓ ଲେଖମାନଙ୍କରୁ ସ୍ପଷ୍ଟ ଜଣାପଡେ । ଧର୍ମରେ ନାରୀ ପୁରୁଷର ଯଥେଚ୍ଛ ବିହାର ଏଇ ତନ୍ତ୍ର ଧର୍ମର ଗୋଟିଏ ଲୌକିକ ବହିରାବରଣ, ଏହା ରଖିବାକୁ ହେବ, କାରଣ, ଏଥିରେ ଶୂନ୍ୟ ମୂଳରୁ କେବଳ ରଜବୀଜ (ଯୋନିଲିଙ୍ଗ) ସମାଗମରେ ଜଗତ ହୋଇଥିବାର ମତ । ଶୂନ୍ୟସାଧନାର ତତ୍ତ୍ୱପୀଠ ତେଣୁ ଏଇ ଲିଙ୍ଗଯୋନି ବା ବୀଜ-ରଜ ('ଶୁକ୍ର-ଶୋଣିତ') । ଏହା ହିଁ 'ତନ୍ତ୍ର' । କାରଣ, ଏଥିରେ ହିଁ ବିଶ୍ୱର ତନ୍ତ ବା ବିସ୍ତାର । ଏସବୁ ସାଧନାରେ ପୁଣି କୌଣସି ବୈଦିକ ପରଂପରାର ସମ୍ପର୍କ ନାହିଁ । ଏସବୁ କେବଳ 'ଦୀକ୍ଷିତ' ଶିଷ୍ୟକୁ

ବୀଜମନ୍ତ୍ର ମାଧ୍ୟରେ କୁହାଯାଏ ଓ ଦୀକ୍ଷିତମାନେ ହିଁ ଗୋପନରେ ଏଇ ସାଧନା କରନ୍ତି । ବେଦତନ୍ତ୍ର ଓ ଭକ୍ତି ଏଇପରି ବିଶ୍ୱାସୀକୁ ଗୋପନରେ କୁହାଯାଉଥିବାର ଉଲ୍ଲେଖ ଅଛି । ତାହା ପୂର୍ବେ ସୂଚିତ ହୋଇଛି । ମାତ୍ର ତାହାର ବ୍ୟାପ୍ତି ଏ ଦୀକ୍ଷା ପରି ନୁହେଁ । ଏହା ବୁଝିବାର ଅଛି । ଏଇ ଦୀକ୍ଷା ଲୋକବ୍ୟବହାରରେ ପରେ ବୌଦ୍ଧର 'ସହଜ ଯାନ' ମାର୍ଗ ରୂପେ ବଙ୍ଗ ଦେଶରେ ଅତି ବୀଭତ୍ସ ନରନାରୀ-ସମାଗମର ଯଥେଚ୍ଛ ବ୍ୟବହାର ସୃଷ୍ଟି କରିଥିବା କଥା ଅନେକ ଜାଣିଥିବେ । ବଙ୍ଗୀୟ ବୈଷ୍ଣବ ସାହିତ୍ୟ ଓ ଧର୍ମବିକାଶର ଆଲୋଚନାରେ ଏସବୁ ବହୁ ପୁସ୍ତକରେ ମଧ୍ୟ ମିଳେ । ତାହା ସବୁ ଏଠାରେ କହିବା ନିଷ୍ପ୍ରୟୋଜନ । ମାତ୍ର ଏଇ ଶବର-ଧର୍ମ ତଥା ଅସୁର ସଭ୍ୟତାର ଯେ ସ୍ପଷ୍ଟ ତନ୍ତ୍ରସାଧନା ଓଡ଼ିଶାରେ ଏବେ ଅତି ଉନ୍ନତ ମାର୍ଗ ରୂପେ ବୈଦିକ ଧର୍ମ ଶାଖାମାନଙ୍କରେ ଆତ୍ମା ରୂପେ ରହିଛି ତାହା ପର ପ୍ରକରଣରେ କିଂଚିତ୍ ସଂକେତରେ ମାତ୍ର କହିଲେ ଭାରତର ଧର୍ମ ପରଂପରା ବୁଝିବା ସୁଗମ ହେବ । ତାହା କୁହାଯାଉଛି ।



## ୧୭ । ପ୍ରାଚୀନ ଭାରତ ସଭ୍ୟତା ଓ ଓଡ଼ିଶାରେ ସେହି ସଭ୍ୟତାର ଧାରା

### ପୂର୍ବ-ଭାରତରେ ଅସୁର—

ଓଡ଼ିଶା କହିଲେ ଏଠାରେ ମୋଟାମୋଟି ପୂର୍ବ-ଭାରତ ବୁଝାଯାଇପାରେ । ଅଙ୍ଗର କର୍ଣ୍ଣ, ମଗଧର ଜରାସନ୍ଧଙ୍କୁ ଆର୍ଯ୍ୟ ବୋଲି ବୁଝିବାର କୌଣସି କାରଣ ନାହିଁ । ପୁରାଣ ସେମାନଙ୍କ ଜନ୍ମ ସମ୍ବନ୍ଧରେ ଯେ ବ୍ୟାଖ୍ୟା ଦଅନ୍ତୁ ନା କାହିଁକି, ସେମାନେ ଯେ ଅଜ୍ଞାତକୁଳଶୀଳ ଶିଶୁରୁ ମନୁଷ୍ୟ ହୋଇ ନିଜ ପ୍ରଭାବରେ ପ୍ରତିଷ୍ଠିତ ହୋଇଥିଲେ ଏଥିରେ ସନ୍ଦେହ ନାହିଁ । ଯେଉଁ 'ଜରା' ଜରାସନ୍ଧକୁ ଗୋଟାଇ ନେଇ ପାଳିଥିଲା, ସେ ପୁଣି ଶବରୀ ବା ଅସୁରୀ ବୋଲି ବୁଝାଯାଇଛି । କର୍ଣ୍ଣର ପାଳକପିତା ଅଧିରଥ ମଧ୍ୟ ଶୂଦ୍ରଜାତି—ଦାସ । ପୁଣି 'ପୁଣ୍ଡ୍ର'ର 'ବାସୁଦେବ' ଓ 'ପ୍ରାଗ୍‌ଜ୍ୟୋତିଷ' (ଆସାମ)ର ଭଗଦତ୍ତ ଅନାର୍ଯ୍ୟ ବା ଅସୁରବଂଶୀୟ ଥିବାର ପୁରାଣରୁ ସଙ୍କେତ ମିଳେ । ସୂତ୍ର ସମୟରେ ( ଅର୍ଥାତ୍ ଠିକ୍ ବେଦର ପରବର୍ତ୍ତୀ ସମୟରେ ) ମଧ୍ୟ ଏହିସବୁ ଦେଶ ତଥା ସିନ୍ଧୁ ଓ ସୌରାଷ୍ଟ୍ର ପ୍ରଭୃତି ଉପାନ୍ତ ଦେଶ ମଧ୍ୟ ଅନାର୍ଯ୍ୟ ଦେଶ ବୋଲି ପରିଚିତ ଥିଲା । କଳିଙ୍ଗ ଏହିମାନଙ୍କ ସଙ୍ଗେ ଗୁନ୍ଥା ହୋଇଥିଲେ ହେଁ, କଳିଙ୍ଗର ଏମାନଙ୍କ-ଠାରୁ ନିଶ୍ଚିତ ଆଧିକ୍ୟ ଥିବାର ସ୍ପଷ୍ଟ ପ୍ରମାଣ ମିଳେ ✻ । କଳିଙ୍ଗକୁ ଲାଗି 'ଓଡ୍ର' ( ଉଡ୍ର ) ଓ ଉତ୍କଳ (ଉକ୍‌କଳ) ଦେଶ । 'ଓଡ୍ର' ଜଣାଶୁଣା ଶବର ଦେଶ । ଏଥିରେ 'ଓଡ୍ର' ଓ କଳିଙ୍ଗର କୌଣସି ଭେଦ ନାହିଁ । ଏହା ବିଶେଷରେ ନୀଳାଚଳର ଜଗନ୍ନାଥ ଓ ବୁଦ୍ଧଙ୍କ ଦନ୍ତ ଇତିହାସରୁ ପ୍ରମାଣିତ ହୁଏ, ସେ କଥା ବୁଝାଯାଇଛି । ପୁଣି ଉକ୍‌କଳମାନେ କଳିଙ୍ଗ ପ୍ରତିବେଶୀ ଥାଇ ବହୁକାଳରୁ କଳିଙ୍ଗ ସଙ୍ଗେ ସଙ୍ଗେ ସଭ୍ୟତାଦିରେ ଏକ ପ୍ରକାର ଥିଲେ । ଅଧ୍ୟାପକ ଜେରିନି ସାହେବ ଗ୍ରୀକ୍ ଭୌଗୋଳିକ ଟଲେମିଙ୍କ ଭୂଗୋଳ ଟୀକାରେ ନିଜର ସିଦ୍ଧାନ୍ତ ଲେଖିଛନ୍ତି,—ଖ୍ରୀଷ୍ଟପୂର୍ବ ୭ମ ଶତକ ( ଅର୍ଥାତ୍, ଆଜକୁ ୨୭୦୦ ବର୍ଷରୁ ଅଧିକ କାଳ ତଳେ ) କଳିଙ୍ଗମାନେ ବ୍ରହ୍ମଦେଶରେ 'କଳିଙ୍ଗରାଷ୍ଟ୍ର' ବୋଲି ଯେଉଁ ଉପନିବେଶ କରିଥିଲେ, ତାହା ପାଖରେ ଉକ୍‌କଳ ବୋଲି ମଧ୍ୟ ଏକ ରାଜ୍ୟର ନାମ ଥିଲା । †

---

✻ R. D. Banerji's History of Orissa, Vol. I, pp. 57 & 58.

† Gereni's Ptolemy's Geography ଓ B. C. Majumdar's Orissa in the Making ଦେଖ ।

## ଶବର ଓ ଅସୁର—

ଏହି ଶବରମାନେ ଭାରତର ପ୍ରାଗ୍‌ବୈଦିକ ଅସୁରଙ୍କର ଏକ ଶାଖା କିମ୍ବା ଏଇ ଶବରମାନେ ହିଁ ଅସୁର ଥିବାର ଅନୁମାନ କରାଯାଇପାରେ । ମାତ୍ର ସେ କଥାର ପ୍ରମାଣାଦି ଉଲ୍ଲେଖ କରିବା ପୂର୍ବରୁ ଅସୁର ଓ ଶବର କିମ୍ବା ଅସୁର ବା ଶବର ସଭ୍ୟତାର ବେଦରେ କି ଆଭାସ ମିଳୁଚି, ତାହା ଏଠାରେ ସଂକ୍ଷେପରେ ଆବୃତ୍ତି କରିନେବା ସୁବିଧାଜନକ ।

## ବେଦର ଅସୁର—ବରୁଣ—

ପୂର୍ବେ ନାନା ପ୍ରସଙ୍ଗରେ ବୁଝାଇ ଦିଆଯାଇଚି, ବେଦର ପ୍ରାଚୀନ ସଭ୍ୟତାରେ ବିଶ୍ୱପୂର୍ତ୍ତି ଏକ ଶକ୍ତି ବା ଶକ୍ତିମନ୍ତ ପୁରୁଷର ବିକାଶ ଥିଲା । ସେଇ ବେଦର ଆଦିମ-କାଳରେ ଦେବତାମାନେ ଅସୁର ବା ଅସୁର ପରି ଥିଲେ । ଆଗନ୍ତୁକ ଆର୍ଯ୍ୟମାନେ କହୁଥିଲେ—ଯେ ଦେବ ସେ ଅସୁର । ସେମାନଙ୍କର ମହିମାରେ କିଛି ଭେଦ ନାହିଁ । "ମହଦ୍ ଦେବାନାମସୁରତ୍ୱମେକ" (ଋ-୩୫୫.୧) ବରୁଣ ଅସୁର ଥିଲେହେଁ ଇନ୍ଦ୍ର ଓ ବରୁଣ ପୁଣି, ସୂର୍ଯ୍ୟ ଓ ବରୁଣ ( ମିତ୍ରାବରୁଣୌ ) ଏକାସନ ପାଇଥିଲେ । ଅସୁର ବା ଅନାର୍ଯ୍ୟ ଦେବତା 'ପଶୁପତି' 'ରୁଦ୍ର' 'ଶିବ' ହୋଇ ଆସୁଥିଲେ । ପୁଣି ଶେଷ ଧାରଣା ପୂର୍ଣ୍ଣରୁ ଶୂନ୍ୟକୁ ଆସି ବଡ଼ ବିକ୍ଷୋଭ ଜନ୍ମାଉଥିଲା । ଋଗ୍‌ବେଦର ଶେଷଭାଗ ୧୦ମ ମଣ୍ଡଳ ପୂର୍ବରୁ ଏଇ ଶୂନ୍ୟର କୌଣସି ସ୍ପଷ୍ଟ ଧାରାର ଚିହ୍ନ ଋଗ୍‌ବେଦରେ ନାହିଁ । ମାତ୍ର ଅସୁରମାନେ ଦେବତାଙ୍କଠାରୁ ବେଶି ସଭ୍ୟ ଓ ଶକ୍ତିମାନ୍, ଏହାର ପ୍ରମାଣ ଯଥେଷ୍ଟ ଅଛି । ଅସୁର ବରୁଣ ନୌବିଦ୍ୟାରେ ପାରଦର୍ଶୀ ଥିଲେ; ସେ ସର୍ବଜ୍ଞ ଓ ସମୁଦ୍ରରେ ପୋତର ମାର୍ଗ ଜାଣିବାରେ ବିଶେଷଜ୍ଞ ଥିଲେ ( ଋ-୧.୨୫ ) । ପାପ ପୁଣ୍ୟର ଧାରଣା ତଥା ପାପର ଦଣ୍ଡ ଦେବାରେ ବରୁଣ ସର୍ବଶ୍ରେଷ୍ଠ ( ଋ-୭.୮୬ ) । ପାପୀଙ୍କୁ ବାନ୍ଧିବା ପାଇଁ 'ପାଶ' ତାଙ୍କର ନିତ୍ୟ ଅସ୍ତ୍ର ( ଋ-୧.୨୪, ୨୫; ୬୭୪ ) । ସେ ନ୍ୟାୟ ଓ ନ୍ୟାୟର ପ୍ରତୀକ; ମିଥ୍ୟା ତାଙ୍କ ପାଖେ ଅସହ୍ୟ ( ଋ-୧.୧୫୨, ୭.୬୦, ୬୬ ); ସେ ପୁଣି ସେଇ ନ୍ୟାୟରେ କ୍ଷମାର ମଧ୍ୟ ଭଣ୍ଡାର । ସେ ଲୋକଙ୍କୁ ପାପ ଜାଲରୁ ଛଡ଼ାଇ ମୁକ୍ତ କରନ୍ତି ( ଋ-୨. ୨୮; ୫.୮୫ ) । କେବଳ ନିଜ ପାପରୁ ନୁହେଁ, ପିତୃପିତାମହଙ୍କ ଦୁଷ୍କୃତରୁ ମଧ୍ୟ ମୁକ୍ତ କରନ୍ତି (ଋ-୭.୮୬) । ସେ ଦୈନନ୍ଦିନ ଦୁଷ୍କୃତରୁ ଲୋକଙ୍କୁ ଉଦ୍ଧାର କରନ୍ତି (ଋ-୧.୨୫); ପୁଣି ଲୋକେ ଅଜାଣତରେ ଯେ ପାପ କରନ୍ତି ସେଥିରୁ ଲୋକଙ୍କୁ ଉଦ୍ଧାର କରନ୍ତି ( ଋ-୭.୮୯ ) । ବରୁଣଙ୍କ ପ୍ରତି ଏପରି ସ୍ତବ ମନ୍ତ୍ର ନାହିଁ ଯହିଁରେ ଦୋଷ କ୍ଷମା ମଗାଯାଇ ନାହିଁ । ଅନ୍ୟ ଦେବତାଙ୍କୁ ଯେପରି ଧନଧାନ୍ୟାଦି ମଗାଯାଇଚି, ବରୁଣଙ୍କୁ ସେଇ ପରି ଦୁଷ୍କୃତରୁ ଉଦ୍ଧାର କରିବାକୁ ମଗାଯାଇଚି । ବରୁଣ ମଧ୍ୟ ଶତ ଶତ, ସହସ୍ର ସହସ୍ର ପ୍ରତିକାରର ଅଧିକାରୀ; ସେ ମୃତ୍ୟୁରୁ ବଞ୍ଚାଇ ପାରନ୍ତି

( ଋ-୧.୨୪ ) । ସେ ଜୀବନ ନେଇ ପାରନ୍ତି, ଦେଇ ପାରନ୍ତି ( ଋ- ୧,୨୪,୨୫; ୭.୮୮,୮୯ ) । ସେ ଅମୃତର ଦ୍ରଷ୍ଟା ଓ ଗୋପ୍ତା (ଋ-୮,୪୨) ବରୁଣ ଉପାସକର ବନ୍ଧୁ (ଋ-୭,୮୮) । ଉପାସକ ତାଙ୍କ ସଙ୍ଗେ ତାଙ୍କ ସ୍ୱର୍ଗ ରାଜ୍ୟରେ ଆଳାପ କରେ ଓ ଏଇ ମର୍ତ୍ତ୍ୟରେ ମଧ ତାଙ୍କୁ ଦେଖେ ( ଋ-୧.୨୫;୭,୮୮ )

## ଜଳଦେବତା ବରୁଣ—

ଏଇଠାରେ ଉପାସକର ଆତ୍ମଦର୍ଶନ ତଥା ଧ୍ୟାନଯୋଗର ସୂଚନା ସ୍ପଷ୍ଟ । ପରେ ଯେତେବେଳେ ଯୁଦ୍ଧାଦରେ ରାଜ୍ୟ ଧନ ଯେନ କଳହ ହେତୁରୁ ଅସୁରମାନେ ଘୃଣିତ ହେଲେ, ସେତେବେଳେ ଏଇ ଅସୁର ବରୁଣ କ୍ରମେ ଜଳକୁ ପଳେଇଲେ ହେଁ ତାଙ୍କ ନୌବିଦ୍ୟା ଓ ଜଳପଥାଦିର ଜ୍ଞାନ ତଥା ନୌବାଣିଜ୍ୟରେ ଧନାଦିର ପନ୍ଥା ଲୋକଙ୍କର ଗ୍ରହଣିବାର ଉପାୟ ନ ଥିଲା । ସେଥିପାଇଁ ଏବେ ମଧ ବରୁଣ ଜଳର 'ପାଶ' ଯେନ ଜଳଦେବତା ରୂପରେ ଭାରତୀୟମାନଙ୍କ ପାଖେ ପରିଚିତ ।

## ଅସୁର ଧର୍ମ ଓ ତହିଁରେ ସାମାଜିକ କ୍ରିୟା—

ଏଇ ବିବାଦ ଓ ଜଳରେ ବାଣିଜ୍ୟାଦିର କଥା ଆଉ ବିଶେଷ କରି କହିବା ପୂର୍ବରୁ କହି ରଖିବାର ଅଛି, ଋଗ୍‌ବେଦର ଶେଷକାଳକୁ, ଅର୍ଥାତ୍ ଦଶମ ମଣ୍ଡଳରେ ପ୍ରଥମେ ଆତ୍ମଦର୍ଶନର ଭାବ ଜାଗ୍ରତ ହେଲା ଓ ପରବର୍ତ୍ତୀକାଳରେ ବୌଦ୍ଧ ଭାବରେ ଯେଉଁ ଶୂନ୍ୟରୁ ସୃଷ୍ଟିର ଧାରଣାଟି ସ୍ପଷ୍ଟ ଦେଖାଯାଏ, ସେଇ ଭାବରେ ବୈଦିକ ଋଷିମାନେ ପ୍ରଥମେ ଆହତ ହୋଇଥିଲେ । ଏହାର ଉଦାହରଣ ନାସଦୀୟ ସୂକ୍ତ ( ଋ-୧୦.୧୧୯ ), ଏକଥା କୁହାଯାଇଛି । ଏଇ ଆଘାତର କ୍ରିୟା ପ୍ରତିକ୍ରିୟା ଓ ସମାଧାନରେ ଉପନିଷଦ୍ ପୂର୍ଣ୍ଣ । ଏହା ମଧ 'ଗୀତା ଓ ବେଦ' ପ୍ରକରଣରେ କୁହା-ଯାଇଛି । ଉପନିଷଦରେ ଋଷି ଏଇ ଚିନ୍ତାର ଆଘାତ ସ୍ପଷ୍ଟ ପ୍ରକାଶ କରି କହିଛନ୍ତି —"କଥମସତଃ ସଜ୍ଜାୟେତ" (ଛାନ୍ଦୋଗ୍ୟ ୬.୨,୨) ଅର୍ଥାତ୍, 'ଯାହା ନାହିଁ' ସେଥିରୁ 'ଯାହା ଅଛି' ତା କପରି ଜନ୍ମିବ ?—ଶୂନ୍ୟରୁ ପୂର୍ଣ୍ଣ କପରି ପ୍ରକାଶ ପାଇବ ? ମାତ୍ର ଏଇ ଶୂନ୍ୟବାଦ ହିଁ ଅସୁରଧର୍ମ । ମାତ୍ର ଏଥିରେ ଶୂନ୍ୟସାଧକ ଯୋଗୀର କଥା ସ୍ୱତନ୍ତ୍ର ହୋଇପାରେ । ତାର 'ନିର୍ବାଣ' ଲାଭରେ କର୍ମବନ୍ଧନ ତୁଟି ଯାଇପାରେ । ମାତ୍ର ସାମାଜିକ ମାନବର ଏ ତତ୍ତ୍ୱରେ କ୍ରିୟାର ଗତି ନିମନ୍ତେ ପ୍ରତିଷ୍ଠା କେଉଁଠାରେ ? କାମ ଛଡ଼ା ତାର ଆଉ ପ୍ରେରଣା କାହିଁ ? ସେଥିପାଇଁ ଏହା ପୂର୍ଣ୍ଣ ବିଶ୍ୱଧର୍ମ ସାଧନାର ସ୍ଥିତି ଦେଇ ନ ପାରେ । ପୁଣି ଏଥିରେ ଶୂନ୍ୟରୁ ସୃଷ୍ଟି ହେବ ବା କପରି ? ସୃଷ୍ଟି କ୍ରମର ମୂଳ ବା ଡ଼ାଳ ଏଥିରେ କିଛି ମିଳୁ ନାହିଁ । ଏଥିରେ ପୁଣି ବ୍ୟକ୍ତିର ଜ୍ଞାନ ହିଁ ସୃଷ୍ଟି ଓ କାମହେତୁକ ସ୍ତ୍ରୀ-ପୁରୁଷର ମିଳନ ହିଁ ଏଇ ବ୍ୟକ୍ତିସୃଷ୍ଟିର କାରଣ; ତେଣୁ ଏମାନଙ୍କ ମତରେ ଶୂନ୍ୟରୁ 'କାମ' ହିଁ ପ୍ରଥମେ ବାହାରିଲା । ଋଷି ସେଥିପାଇଁ ଏଇ ଶୂନ୍ୟରେ ତତ୍ତ୍ୱ କଳ୍ପନାଟିଏ ଗୋଳିଆଗୋଳି କରି ଦେଇ କହିଛନ୍ତି—

"କାମସ୍ତଦଗ୍ରେ ସମବର୍ତ୍ତତାଧି
ମନସୋ ରେତଃ ପ୍ରଥମଂ ଯଦାସୀତ୍ ।
ସତୋ ବନ୍ଧୁମସତି ନିରବିନ୍ଦନ୍
ହୃଦି ପ୍ରତୀଷ୍ୟା କବୟୋ ମନୀଷା" । (ଋ-୧୦.୧୨୯.୪)

ଅର୍ଥାତ୍, ଏଇ ମୂଳ ଶୂନ୍ୟରୁ ତପ ଓ ତପରେ ମନରୁ ଯେଉଁ ରେତ, ଅର୍ଥାତ୍, 'ବୀଜ (ପୁରୁଷର ଶୁକ୍ର) ନିଃସୃତ ହେଲା, ସେଇ ପ୍ରଥମେ କାମ ହେଲା । ଜ୍ଞାନୀମାନେ ହୃଦୟରେ ବିଚାର କରି ବୁଦ୍ଧିରେ ଠିକ୍ କରିଚନ୍ତି ଯେ ଅସତ୍ (ଶୂନ୍ୟ) ସଙ୍ଗେ ସତ୍ ( ପୂର୍ଣ୍ଣ )ର ଏହା ପ୍ରଥମ ସମ୍ବନ୍ଧ ।

## ଗୀତାର ଦେବାସୁର ସଂପଦ—

ଏଇ ତତ୍ତ୍ୱଧାରଣାରେ ସମାଜରେ ଆଗୃହ ଯାହା ହେବ, ତାକୁଇ ଲକ୍ଷ୍ୟ କରି ଗୀତା ୧୬ଶ ଅଧ୍ୟାୟରେ ଭଗବାନ୍ ଆସୁରୀ-ସମ୍ପଦର ବର୍ଣ୍ଣନାଟି ଦେଇଚନ୍ତି । ଏହାହିଁ ଅସୁର-ଧର୍ମ ବୋଲି ଭଗବାନ୍ ସ୍ପଷ୍ଟ କହିବା କଥାଟି ଏଠାରେ ମନେ ରଖିବାର ଅଛି । ଭଗବାନ୍ ମଧ୍ୟ ମୂଳରୁ ସ୍ପଷ୍ଟ କହିଚନ୍ତି—

"ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରଂ
ଅପରସ୍ପରସମ୍ଭୂତଂ କିମନ୍ୟତ୍ କାମହୈତୁକଂ" । (୧୬. ୮)

ଅର୍ଥାତ୍, ଏଇ ଅସୁରଧର୍ମୀମାନେ କହନ୍ତି, ଏ ଜଗତ୍ ଅସତ୍ୟ, ଶୂନ୍ୟ, ଅପ୍ରତିଷ୍ଠ ଏହିର ମୂଳରେ କୌଣସି ସତ୍ୟ ନାହିଁ; ଏହା ଅନୀଶ୍ୱର; ଏଥିରେ କୌଣସି ପ୍ରକାରର ନିୟମ (ଋତ) ନାଇ; ଏହା 'କାମ' ହେତୁ ପରସ୍ପର ସଂଯୋଗରେ ଉତ୍ପନ୍ନ ନୁହେ ତ ଆଉ କ'ଣ ? ଏଠାରେ ଅସୁର ସଭ୍ୟତା ଶୂନ୍ୟବାଦ ଓ କାମରୁ ଜଗତ ବିକାଶ ରୂପ ଅତି ପ୍ରାଚୀନ ଓ ସୁପ୍ରତିଷ୍ଠିତ ମହାଦାର୍ଶନିକ ତତ୍ତ୍ୱକୁ ଲକ୍ଷ୍ୟ କରି କୁହାଯାଇଚି, ବୁଝିବାକୁ ହେବ । ବେଦ ଓ ଶୂନ୍ୟବାଦ କୌଣସିଟି ଭଗବାନ୍ ସ୍ୱୀକାର କରି ନାହାନ୍ତି । ପୁଣି ଶୂନ୍ୟବାଦର ବିକାଶରେ ସାଂଖ୍ୟ ବା ପ୍ରକୃତି-ପୁରୁଷ ସମ୍ପର୍କରେ ସୃଷ୍ଟିବାଦଜନିତ କର୍ମତ୍ୟାଗକୁ ମଧ୍ୟ ଠିକ୍ ପନ୍ଥା ନୁହେ ବୋଲି ବୁଝାଇଚନ୍ତି । ଗୀତାର 'ଯୋଗ' ଏସବୁରୁ ଅତୀତ—ଏ ସମସ୍ତର ସମାଧାନ, ଏହା କୁହାଯାଇଚି ।

## ଓଡ଼ିଶାରେ ଆଦିମ ଅସୁର ସାଧନାର ଧାରା—

ଏବେ ଓଡ଼ିଶାରେ ଏଇ ଶୂନ୍ୟସାଧନାଟି ଅକ୍ଷୁଣ୍ଣ ରହିଚି । ସେଥିରେ ନରନାରୀର ସଂଯୋଗ ତଥା ବୀଜ (ବିନ୍ଦୁ) ଓ ରଜର ମିଳନରେ ଯେ ସୃଷ୍ଟି, ଏ ଧାରଣା ସ୍ପଷ୍ଟ । ଏହା ହିଁ ଯଥାର୍ଥ ବୁଦ୍ଧର ସାଧନମାର୍ଗ, ଏହା ମଧ୍ୟ ଓଡ଼ିଶାରେ ସମସ୍ତେ ଜାଣନ୍ତି ।

ବୈଷ୍ଣବବାଦ ଧର୍ମର ଢାଞ୍ଚାରେ ଏହା କେତେକ ଗୁପ୍ତ ଥିଲେହେଁ ଏହା ଯେ ତନ୍ତ୍ର ସାଧନ ସବୁ ପ୍ରକାରରେ ଏବେ ମଧ୍ୟ ସେଇ ପାରଂପରିକ ଧାରାରେ ସ୍ପଷ୍ଟ ପ୍ରକାଶ ପାଇଛି, ତାହା ଉଦାହରଣରେ ଦେଖିବା ପୂର୍ବରୁ ଏଇ ଭାବ ବେଦର ଦେବଧର୍ମ ସଂପର୍କରେ କପରି ଦୈବୀ ସଂପର୍କରେ କପରି ଦୈବୀ ସଂପଦ୍‌ର ପୋଷକରୂପେ ସାଂଖ୍ୟର ଦ୍ୱୈତ ତତ୍ତ୍ୱ ସୃଷ୍ଟି କରିଥିଲା ଓ ପରେ କପରି ତାହା ଗୀତା ପ୍ରଭୃତିର ବେଦାନ୍ତତତ୍ତ୍ୱରେ ପରିଣତ ହେଲା, ତାହାର ଟିକିଏ ସୂଚନା ଏଠାରେ ନିତାନ୍ତ ଅପ୍ରାସଂଗିକ ହେବ ନାହିଁ ।

## ଆଦିମ ବୈଦିକ ଧର୍ମରେ ଲୋକଚରିତ୍ର—

ପ୍ରାଗ୍‌ବୈଦିକ ବା ଆଦିବୈଦିକ ଆର୍ଯ୍ୟମାନେ ଏ ଦେଶକୁ ଆସିଲାବେଳେ ଘୋଡ଼ା ଗାଈ ଧେନୁ ଦେଶ ଜିଣି ସୁଖରେ ରହିବା କାମନାରେ ମନ୍ତ୍ର ଗଠନ କରୁଥିଲେ । ପୃଥିବୀରେ ଏଇଭଳି ବିଜେତାମାନେ କାଳେ କାଳେ ଯେପରି ଭୋଗକାଂକ୍ଷୀ, ଏମାନେ ସେଇପରି ଥିଲେ । ସମସ୍ତ ବିଶ୍ୱଶକ୍ତିକୁ ସେଥିପାଇଁ ଏମାନେ ଘୋଡ଼ା ପର୍ଯ୍ୟନ୍ତ ବଳିଦେଇ ଭୋଗ ମାଗୁଥିଲେ । ସାଧାରଣତଃ ଭାରତରେ ତଥା ବାବିଲନ୍ ପ୍ରଭୃତି ପ୍ରାଚୀନ ସଭ୍ୟ ଦେଶମାନଙ୍କରେ ଯେପରି ଘଟିଛି, ସେଇପରି ଏଇ ଆଗନ୍ତୁକମାନେ ସଭ୍ୟତାରେ ସେତେ ହୁଏତ ଉନ୍ନତ ନ ଥିଲେ; କିନ୍ତୁ ନିଜର ଘୋଡ଼ା ଓ ବାହୁବଳରେ ରାଜ୍ୟ ଜିଣିବା ଏମାନଙ୍କର ସୁଗମ ଥିଲା । ଏମାନେ ଯୁଦ୍ଧରେ କୌଣସି ସର୍ତ୍ତ ବା ନୀତି ମାନୁ ନ ଥିଲେ । କୌଶଳରେ ଯେଉଁଥି ସିଦ୍ଧି ଜିଣିଲେ ହେଲା, ଏହା ହିଁ ଏମାନଙ୍କର ଏକାନ୍ତ ନୀତି ଥିଲା । ଯୁଦ୍ଧରେ ଭାରି ବଳଶାଳୀ ଥିଲେ ମଧ୍ୟ ଏମାନେ ବେଳ ପଡ଼ିଲେ ଠକ କରି ଜିଣୁଥିଲେ । ଉଦାହରଣ ସ୍ୱରୂପ ମହାଭାରତ ଓ ପୁରାଣରେ ବିଷ୍ଣୁ ବାମନ ରୂପରେ ମହାଦାନଶୀଳ ଅସୁର ବଳିକୁ ଠକି ତିନି ପାଦ ଭୂମି ମାଗି ତାକୁ ପାତାଳକୁ ଚାପିଦେବା କଥା ସ୍ମରଣୀୟ । ଏଇ ଗଳ୍ପର ମୂଳ ବେଦରେ ମଧ୍ୟ ଅଛି । ସେଠାରେ ଅଛି ବିଷ୍ଣୁ ବାମନରୂପରେ ଅସୁରଙ୍କୁ ଠକି ତିନି ପାଦ ପକାଇ ଦେବମାନଙ୍କ ପାଇଁ ପୃଥିବୀ ଅଧିକାର କରିଥିଲେ (ଶତପଥ ବ୍ରାହ୍ମଣ, ୧, ୨, ୫, ତୈତ୍ତିରୀୟ ସଂହିତା, ୨, ୧, ୩, ତୈତ୍ତିରୀୟ ବ୍ରାହ୍ମଣ, ୧, ୬, ୧ ) ।

## ଅସୁରଙ୍କ ସଙ୍ଗେ ତୁଳନା—

ଏଇ ସଂପର୍କରେ ଅସୁର ବରୁଣଙ୍କ ନୈତିକତା ଓ କ୍ଷମାଶୀଳତା ସଂଗେ ଦୁରନ୍ତ ବଳିପ୍ରିୟ ଘୋର ମଦ୍ୟପ ଇନ୍ଦ୍ରଙ୍କ ତୁଳନା ମଧ୍ୟ ବିଚାର କରାଯାଇପାରେ । ଇନ୍ଦ୍ର ଅତି ସୋମ (ମଦ)-ପ୍ରିୟ, ତାଙ୍କ ପେଟ ସେଇ ସୁରାରେ ପୂର୍ଣ୍ଣ ( ଋ ୮. ୭୮ ) । ସେ ମଦ ଖାଇ ନିଶାରେ ଭୋଳ ହୋଇ ନିଜର ବିଜୟ ଓ ବଡ଼ପଣିଆ କହିହୁଅନ୍ତି ।

( ଋ-୧୦. ୧୧୯ ) । ଇନ୍ଦ୍ର, ଅସୁର ନମୁଚିଙ୍କୁ ଯୁଦ୍ଧରେ ପରାସ୍ତ କରିଥିବା କଥା ପ୍ରସିଦ୍ଧ । ସେଇ ନମୁଚି ସଙ୍ଗେ ମଦ ଖାଇ ଇନ୍ଦ୍ର ଥରେ ବେହୋସ ହୋଇ ପଡ଼ିଥିଲେ । ଅଶ୍ୱିନୀକୁମାର ତାଙ୍କୁ ଚିକିତ୍ସା କଲେ ଓ ସରସ୍ୱତୀ ନଦୀରେ ବୁଡ଼ାଇ ତାଙ୍କୁ ଆରୋଗ୍ୟ କରିଥିଲେ ( ଋ-୧୦. ୧୩୧ ) । ପରେ ପୁରାଣରେ ଏଇ ଇନ୍ଦ୍ରଙ୍କର ନିଜ ଗୁରୁପତ୍ନୀ ଅହଲ୍ୟାଗମନର ମଧ୍ୟ ମୂଳ କୌଣସି ପ୍ରାଚୀନ ପରଂପରାରେ ଥିବା ସ୍ୱାଭାବିକ । ମାତ୍ର ଏସବୁ ସତ୍ତ୍ୱେ ବିଜେତା, ବିଜେତା । ତାଙ୍କ ନାମରେ ତାଙ୍କୁ ବିଜିତ ମଧ୍ୟ ଆଦରିଥାଏ । ତାହାର ଦୃଷ୍ଟାନ୍ତ ଭାରତରେ ଦେବାର ପ୍ରୟୋଜନ ନାହିଁ । କ୍ଲାଇବ ହେନେ କୁଣ୍ଠିସ୍ କରି ଶାହ୍-ଆଲମ୍ ତଥା ବଙ୍ଗ ନବାବଙ୍କ ପାଖକୁ ଗଲାପରି, ଆଗନ୍ତୁକ ଆର୍ଯ୍ୟମାନେ ବରୁଣଙ୍କୁ ଭକ୍ତି କରି କୌଶଳରେ ରାଜ୍ୟଟି ନିଜର କରିବାରେ ଲାଗିଥିଲେ ବୋଲି ମନେହୁଏ । ପରେ ଏଇ ଦେଶର ସୁସଭ୍ୟ ଅସୁରମାନେ ହେଲେ ଦସ୍ୟୁ ଓ ଦାସ । କିନ୍ତୁ ପ୍ରକୃତ ଦସ୍ୟୁ କିଏ, ତା ଏଠାରେ ବୁଝାଇବା ଦରକାର ନାହିଁ ।

## ବିଜେତା ଉଚ୍ଚ ସଭ୍ୟତାରେ ପ୍ରଭାବିତ ହୁଏ—

ସେ ଯାହାହେଉ, ସଭ୍ୟତାର ପ୍ରଭାବ ଏଡ଼ିବା ଆଗନ୍ତୁକ ଆର୍ଯ୍ୟଙ୍କର ସାଧ୍ୟ ନ ଥିଲା । ପୁଣି ସେ କାଳ ବଙ୍ଗଦେଶର ଲାଲବିହାରୀ ଦେ ଇଂରେଜୀରେ ବଙ୍ଗଳାର ଲୋକୋପାଖ୍ୟାନ ( Folk Tales of Bengal ) ଓ ମଧୁସୂଦନ ଦତ୍ତ 'ମାଇକେଲ୍' ହୋଇ ( Captive Lady ) ଓ Visions of the Past ପ୍ରଭୃତି ଇଂରେଜୀ କାବ୍ୟ ଲେଖି ବଡ଼ ସଭ୍ୟ ପଣ୍ଡିତ ବୋଲି ପରିଚିତ ହେବାର ଉଦ୍ୟମ କଲା ପରି, ପୁଣି ସେକାଳେ ବଡ ବଡ଼ ଲୋକେ ନିଜର ଗର୍ଭବତୀ ପତ୍ନୀଙ୍କୁ ଜନ୍ମ କରିବା ନିମନ୍ତେ ସ୍ୱାଧୀନ ଇଂଲଣ୍ଡକୁ ପଠାଇ ନିଜର ଜାତି ଲୁଚାଇ ଇଂରେଜ ବୋଲି ପରିଚୟ ଦେବାର କାମନା କଲାପରି କେତେ ଅସୁର ମନୀଷୀ ସେ ନିଜ ନିଜର ଅସୁର ନାମ ଗୋପନ କରି ବିଜେତା ଆର୍ଯ୍ୟଙ୍କ ଭିତରେ ଆର୍ଯ୍ୟ ବୋଲି ପରିଚୟ ଦେଇ ବେଦ ମନ୍ତ୍ରର ଉପାସକ ହୋଇଥିବେ ତାର କଳନା କରିବାର ଏବେ କୌଣସି ସାଧନ ନାହିଁ । ପୁଣି ଭାରତ ଚିରକାଳ ସଂସ୍କୃତିର ସମାଧାନ ଓ ସାମ୍ୟବାଦ ଭୂମି । ଅସୁରମାନେ ପରାସ୍ତ ହୋଇ ମଧ୍ୟ ଆର୍ଯ୍ୟ ନାମ ଆଦରି ନିଜ ସଭ୍ୟତାକୁ କ୍ରମେ ଆଗନ୍ତୁକ ସଭ୍ୟତାର ସମାଧାନରେ ଗଢ଼ି ସୁବିସ୍ତୀର୍ଣ୍ଣ ବିଶାଳ ବିଶ୍ୱଧର୍ମ ପ୍ରକାଶ କରିଥିଲେ । ବିଜେତାଙ୍କ ନାମରେ ସମସ୍ତେ ଆର୍ଯ୍ୟ ହେଲେ ଓ ସଭ୍ୟତାର ନାମ ହେଲା ଆର୍ଯ୍ୟ ସଭ୍ୟତା । ଏଇ ଅନାର୍ଯ୍ୟ ବୀରମାନେ ନିଜ ଦଳ ବଳ ସହିତ ପରାସ୍ତ ହୋଇ ଆର୍ଯ୍ୟପନ୍ଥା ଓ ଖାଦ୍ୟାଖାଦ୍ୟ ଆଦରି ନିଜକୁ ଆର୍ଯ୍ୟ ବୋଲି ପରିଚୟ ଦେଇ ପରେ ଶ୍ରେଷ୍ଠ ଆର୍ଯ୍ୟ ରୂପେ ଦାସ (ଦସ୍ୟୁ) ଅସୁରମାନଙ୍କୁ ପରାସ୍ତ କରିବାରେ ମଧ୍ୟ ଲାଗିଯାଇଥିଲେ । ଉଦାହରଣ ସ୍ୱରୂପ ଯଦୁ ଓ ପୁରୁ ବଂଶୀୟ କ୍ଷତ୍ରିୟମାନେ ପ୍ରଥମେ ଅନାର୍ଯ୍ୟ-ଅସୁର

ଥିବା କଥା ବୈଦିକ ପ୍ରମାଣରେ ସିଦ୍ଧ କରାହୋଇଛି * । ଋଗ୍‌ବେଦରେ ଯଦୁବଂଶୀୟ କ୍ଷତ୍ରିୟମାନଙ୍କୁ ଦାସ (ଅନାର୍ଯ୍ୟ) ବୋଲି ସ୍ପଷ୍ଟ କୁହାଯାଇଛି—(ଋ-୧୦. ୬୨. ୧୦) । ଶତପଥ ବ୍ରାହ୍ମଣ ୬.୮.୧. ୧୪ ରେ ପୁରୁବଂଶୀୟ କ୍ଷତ୍ରିୟଙ୍କୁ ସଙ୍ଗ ଅସୁର ବୋଲି କୁହାଯାଇଛି । ଏଇ ଅନାର୍ଯ୍ୟ ଆର୍ଯ୍ୟ ହେବା ପ୍ରଣାଳୀ ଏବେ ମଧ୍ୟ ଦେଶରେ ବନ୍ଦ ହୋଇନାହିଁ । ପାଣ୍ଡିତ୍ୟର ଅନୁସନ୍ଧାନରେ ମଧ୍ୟ ଆଜି କୌଣସି ଜାତିକୁ ଏଇ ଓଡ଼ିଶାରେ ଅନାର୍ଯ୍ୟମୂଳ କହିଲେ ସେମାନଙ୍କୁ ଅସହ୍ୟ ହୁଏ । ଭାରତରେ ସର୍ବତ୍ର ଆଜି ମଧ୍ୟ ଏଇ ଅବସ୍ଥା । ଏଇ ଓଡ଼ିଶାରେ ମଧ୍ୟ ବ୍ରାହ୍ମଣ. ତ ବହୁ କାଳରୁ ଆର୍ଯ୍ୟ ବୋଲାଉଛନ୍ତି, କରଣ ମଧ୍ୟ ହୁଏତ ଆର୍ଯ୍ୟ ହୋଇ ସାରିଥିଲେ । ଏବେ କଲିକତାରେ ଝଣ୍ଡାଏତମାନେ ନିଜକୁ ଆର୍ଯ୍ୟ ବୋଲି ପରିଚୟ ଦେଉଛନ୍ତି । ସେମାନେ ଗୁଣ କର୍ମ ସ୍ୱଭାବରେ କ୍ଷତ୍ରିୟ ବଂଶୀୟ ହୋଇପାରନ୍ତି, ଧର୍ମରେ ସେମାନେ ଆର୍ଯ୍ୟ ଖୁବ୍ ହୋଇ-ପାରନ୍ତି, ମାତ୍ର ରକ୍ତରେ ଆର୍ଯ୍ୟ ଥିବାର ପ୍ରମାଣ ତାଙ୍କର ନାହିଁ କି ଦେଶରେ ଆଉ କୌଣସି ଜାତିର ଥିବାର ମନେ ହୁଏ ନାହିଁ । ଏସବୁ ଉଦାହରଣ ବଢ଼ାଇବା ନିଷ୍ପ୍ରୟୋଜନ । ଏ ଦେଶରେ ସମସ୍ତେ ଧର୍ମରେ ଓ ସଂସ୍କୃତିରେ ଆର୍ଯ୍ୟ ହୋଇ-ପାରନ୍ତି, ମାତ୍ର ରକ୍ତର ମାତ୍ରା କୌଣସିଠାରେ ଆଜି ସ୍ପଷ୍ଟ ନୁହେଁ, ଏହା ଏକ-ପ୍ରକାର ସର୍ବବାଦିସମ୍ମତ ।

## ଆଗନ୍ତୁକ ଆର୍ଯ୍ୟମାନେ ସଭ୍ୟତାରେ ଆଦିମ ନ ଥିଲେ—

ଅସୁରମାନେ ସଭ୍ୟତାରେ ଚିରପ୍ରତିଷ୍ଠିତ ଥିବା ସତ୍ୟ ହେଲେହେଁ ଆର୍ଯ୍ୟମାନେ ସଭ୍ୟତାରେ ନିତାନ୍ତ ଆଦିମ ନ ଥିଲେ । ଆଜକୁ ୩୬୦୦ ବର୍ଷ ତଳେ ଏବର ଟାଇଗ୍ରିସ୍ ଇଉଫ୍ରେଟିସ ମଝିରେ ଥିବା ସୁମେରର ଅସୁରମାନଙ୍କ ଦେଶ ଯେଉଁ ଆର୍ଯ୍ୟ କାଶ୍ୟମାନେ ଜିଣିଥିଲେ, କିମ୍ବା ତାର ପ୍ରାୟ ୨୦୦ ବର୍ଷ ପରେ ଯେଉଁ ଯେଉଁ ମିତ୍ତାନୀୟମାନେ ଉତ୍ତରରୁ ସେଇ ଅସୁର ଦେଶ ଜିଣିଥିଲେ, ସେମାନଙ୍କ କଥା ଏଠାରେ ସ୍ମରଣୀୟ । ହଲ୍ ସାହେବ କାଶ୍ୟମାନଙ୍କୁ ଅସଭ୍ୟ ବୋଲି କହିଛନ୍ତି † । ଅନ୍ୟାନ୍ୟ ପ୍ରତ୍ନତତ୍ତ୍ୱ-ମାନଙ୍କର ମଧ୍ୟ ସେଇ ମତ । ମିତ୍ତାନୀୟମାନଙ୍କୁ ମଧ୍ୟ ସେଇ ପଣ୍ଡିତମାନେ ଏଇ କାଶ୍ୟବଂଶୀୟ ବୋଲି ଅନୁମାନ କରନ୍ତି ଓ ତାଙ୍କୁ ମଧ୍ୟ ଅସଂସ୍କୃତ (ଅସଭ୍ୟ) ବୋଲି କହନ୍ତି † । ମାତ୍ର ପରେ ଦେଖାଯିବ ସେମାନେ କାଶ୍ୟଙ୍କ ପରି ଅସଭ୍ୟ ନ ଥିଲେ । ଭାରତ ଆଡ଼କୁ ସେମାନଙ୍କ ସଂସ୍କାରଧାରା ପଶ୍ଚିମକୁ ବହୁଥିବାର ସ୍ପଷ୍ଟ ପ୍ରମାଣ ମିଳିବ । ମାତ୍ର

---

* A. P. Banerji Sastri's 'Asura India', p. 41.

† H. R. Hall's 'The Ancient History of The Near East', 7th Edition, p. 200.

† Ibid, pp. 202 & 203.

ପୁଣି ପଣ୍ଡିତମାନଙ୍କ ମତରେ ଏଇ ପ୍ରବାହ ପାରସ୍ୟ ବାଟେ ନ ହେବାର କାରଣ ଅଛି । ଅସୁରମାନଙ୍କ ସଙ୍ଗେ ଏମାନଙ୍କର ହୁଏତ ବେଲୁଚସ୍ଥାନ ଉପକୂଳବାଟେ କମ୍ବା ସମୁଦ୍ରରେ ବହୁଣଗୃଳିତ ନୌଯାନରେ ଏମାନଙ୍କର ଭାରତ ସଙ୍ଗେ ସଂବନ୍ଧ ଥିଲା । ପୁଣି କାଶ୍ୟ ଓ ମିଉନାସ୍‌ମାନେ ପୂର୍ବ ଓ ପରେ ହୁଏତ ଦୁଇ କସ୍ତିରେ ଭାରତ ଗ୍ରୁଡ଼ି ବିଦେଶର ଅସୁର ଭୂମିରେ ଯାଇ ସେଠାରେ ରାଜ୍ୟ ପର୍ଯ୍ୟନ୍ତ କରିଥିଲେ ।

## ଅସୁର ଧର୍ମ—ଆର୍ଯସଂସ୍କୃତି-ସୂର୍ଯ୍ୟଆତ୍ମା—

ସେ ଯା ହେଉ, ଭାରତରେ ଆର୍ଯ୍ୟମାନେ ନିତାନ୍ତ 'ବର୍ବର' ନ ଥିଲେ । ବହୁ ଆଦିମ କାଳରୁ ସେମାନେ ସମସ୍ତ ଦେବତାଙ୍କ ଭିତରେ ଏକ ବିଶ୍ୱଶକ୍ତିର କଳ୍ପନାକୁ ମଧ୍ୟ ଉଠିଥିଲେ (ଋ-୧. ୧୬୪. ୪୬) । ହୁଏତ ଅନାର୍ଯ୍ୟ-ଅସୁରଙ୍କ ଶୂନ୍ୟମୂଳ ଜ୍ଞାନମାତ୍ର ବ୍ୟକ୍ତିତ୍ୱରୁ ଅନାର୍ଯ୍ୟମାନଙ୍କର ଏଇ ବିଶ୍ୱଶକ୍ତିର ଧାରଣା ଫୁଟିଥିଲା । କାହିଁକି ନା, ପରେ ଏଇ ଧାରଣାରେ ଶୂନ୍ୟ (ଅସତ୍)ର ଧକ୍କା ଲଗିବା ସ୍ପଷ୍ଟ ଓ ସମସ୍ତ ଆର୍ଯ୍ୟଦର୍ଶନ ପରେ ଏଇ ଶୂନ୍ୟରୁ ପୂର୍ଣ୍ଣ ଧାରଣାର ସ୍ୱତଃ ପରିଣାମ ମାତ୍ର । ଏଇ ପରିଣାମରେ ପୂର୍ଣ୍ଣ-ବିଶ୍ୱମୂଳର ଉପାଦାନ ମଧ୍ୟ ସମାନ ସ୍ପଷ୍ଟତାରେ ବିଦ୍ୟମାନ । ଯାହାର ବହିର୍ବିଶ୍ୱ ହିଁ ସବୁ, ଭିତରକୁ ଚାହିଁବାର ଅବସର ନାହିଁ, ସେ ଯେତେ ଭିତରକୁ ଚାହିଁବାକୁ ଶିଖିଲେ ମଧ୍ୟ ବିଶ୍ୱର ଅସତ୍ୟତା ବରାବର ସ୍ୱୀକାର କରି ନ ପାରେ । ଯା ହେଉ, ବହୁ ଆଦିକାଳରୁ ଆର୍ଯ୍ୟମାନେ ସୂର୍ଯ୍ୟଙ୍କୁ ଜଗତର ଆତ୍ମା ବୋଲି କଳ୍ପନା କରିଥିଲେ । "ସୂର୍ଯ୍ୟ-ଆତ୍ମା ଜଗତସ୍ତସ୍ଥୁଷଶ୍ଚ" (ଋ-୧. ୧୧୫. ୧) ଅର୍ଥାତ୍, ଯାହା ଚଳୁଚି ଓ ଯାହା ସ୍ଥିର ଅଛି—ସେ ସମସ୍ତର ଆତ୍ମା ସୂର୍ଯ୍ୟ । ଋଗ୍‌ବେଦରେ ଏଇ ପ୍ରଥମ ଆତ୍ମାର ସୂର୍ଯ୍ୟରୂପରେ କଳ୍ପନା ଦେଖାଯାଏ । ଏଠାରେ କହିରଖିବା ଉଚିତ ମିଉନାସ୍ ରାଜା ଦଶରଥଙ୍କ ଭଗିନୀପୁତ୍ର ମିଶର ସମ୍ରାଟ୍ ତୃତୀୟ ଆମେନ୍ ହୋଟେପ୍‌ଙ୍କ ପୁତ୍ର ଚତୁର୍ଥ ଆମେନ୍ ହୋଟେପ୍ ମାତାମହଙ୍କ ପ୍ରଭାବରେ ଠିକ୍ ଏଇ 'ସୂର୍ଯ୍ୟ-ଆତ୍ମା' ଧର୍ମଟି ମିଶରରେ ପ୍ରଚାର କରିଥିଲେ । ଆତ୍ମାକୁ ସେମାନେ କହୁଥିଲେ 'ଆଟେନ୍' ଓ ଏଇ ଧର୍ମ ମିଶରରେ ସେକାଳେ ଏକ ବିପ୍ଳବ ସୃଷ୍ଟି କରିଥିଲା । ଏଇ ଧର୍ମ ଯେହି ସମ୍ରାଟ୍‌ଙ୍କ ରାଜତ୍ୱ କାଳରେ ମିଶରର ଦକ୍ଷିଣ ନଉବିଆ ଓ ପୂର୍ବ ପାଲେଷ୍ଟାଇନରେ ବ୍ୟାପ୍ତ ହୋଇଥିଲା ※ । ସେଇସବୁ ଅଞ୍ଚଳ ତଥା ଦକ୍ଷିଣର ସୁମେର୍‌ମୂଳକ ବାବିଲନ୍ ପ୍ରଭୃତି ଦେଶରେ ମଧ୍ୟ ନାନା ସ୍ଥାନରେ—ବିଶେଷରେ ମିଶର ଓ ନଉବିଆରେ ବରୁଣ ଅସୁରଙ୍କ ପରି 'ଋତ' ଓ 'ସତ୍ୟ'ର ଦେବତା ମଧ୍ୟ ନାନା ନାମରେ ପୂଜିତ ହେଉଥିଲେ † । ଏ ସବୁ ସମ୍ପର୍କର ବିଶେଷ ବ୍ୟାଖ୍ୟା ଦେବା ଦରକାର ନାହିଁ । ଅସୁର ସଭ୍ୟତାର ଆଦିସ୍ଥାନ ଏଇ ଦେଶ । ଏହା ପୂର୍ବେ ସୂଚିତ ହୋଇଚି ।

---

† Ibid p. 298, p. 274, p. 319

※ Ibid p. 274 for 'Maat' of Nubia

ଏବେ ପ୍ରାତ୍ନିକମାନେ ଏହାର ସ୍ପଷ୍ଟ ପ୍ରମାଣ ମଧ୍ୟ ପାଉଥିବା କଥା କୁହାଯାଉଛି । ପୁଣି ଆଦିମ ବୈଦିକ କାଳରେ ଏଇ ଅସୁରଙ୍କ ସଙ୍ଗେ ଅର୍ଯ୍ୟମାନେ ଏ ଦେଶରୁ ପଶ୍ଚିମକୁ ନିଜ ଭାଗ୍ୟ ଅର୍ଜନ କରିବାକୁ ଯେ ହୁଏତ ଯାଉଥିଲେ, ତାହାର ଆଭାସ ଦିଆଗଲା ।

## ହିରଣ୍ୟଗର୍ଭ—

ଏଇ ସୂର୍ଯ୍ୟ-ଆତ୍ମା ମଧ୍ୟ କ୍ରମେ ଏ ଦେଶରେ ପରବର୍ତ୍ତୀ କାଳରେ 'ହିରଣ୍ୟଗର୍ଭ' ହେଲେ । ପରବର୍ତ୍ତୀ କାଳରେ ଯାହାଙ୍କୁ ବିଧାତା ବା ବ୍ରହ୍ମା କହନ୍ତି, ଏଇ ହିରଣ୍ୟଗର୍ଭ ସେଇପରି । ଋଷି ଗାଇଛନ୍ତି—

"ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ
ଭୂତସ୍ୟ ଜାତଃ ପତିରେକ ଆସୀତ୍ ।" (ଋ-୧୦. ୧୨୧. ୧)

ଅର୍ଥାତ୍, ପ୍ରଥମେ ହିରଣ୍ୟଗର୍ଭ ଥିଲେ । ସେଇ ଏକ ଭୂତର ପତିରୂପେ ଜନ୍ମ ହୋଇଥିଲେ । ପରେ ଅଛି—ସେଇଥିରୁ ସବୁ ବିଶ୍ୱ ବାହାରିଲା । ହିରଣ୍ୟ ବୋଇଲେ ସୁନା । ସୂର୍ଯ୍ୟର ଜନ୍ମ ( ଉଦୟ ) ବେଳେ ତାର ବର୍ଣ୍ଣ ସୁନା ପରି । କ୍ରମେ ସୂର୍ଯ୍ୟ ପ୍ରକାଶିତ ହୋଇପଡ଼ିଲେ ଏଇ ସୁନା ଫୁଟି ବିଶ୍ୱପ୍ରକାଶମୟ ସୂର୍ଯ୍ୟ ବାହାରେ । ଏଣୁ "ସୂର୍ଯ୍ୟ-ଆତ୍ମା" ହିରଣ୍ୟଗର୍ଭ ବା ସ୍ୱର୍ଣ୍ଣ-ଗର୍ଭ, ଏଇ ଧାରଣା ପ୍ରଥମେ ହୋଇଥିଲା ।

ଋଗ୍‌ବେଦରେ ଅନ୍ୟତ୍ର ଏଇ କଥା ସ୍ପଷ୍ଟ କରି ମଧ୍ୟ କୁହାଯାଇଛି । ଅଶ୍ୱିନୀ-କୁମାର 'ଉଷା'ଙ୍କୁ 'ହିରଣ୍ୟପାଣି' ନାମକ ପୁତ୍ର ଦେଇଥିଲେ ( ଋ-୬. ୫୦.୮ ) । 'ଉଷା'ର ପୁତ୍ର 'ବାଳସୂର୍ଯ୍ୟ' । ଏହା ବୁଝାଇବା ଦରକାର ନାହିଁ । ପରେ ଏଇ ହିରଣ୍ୟଗର୍ଭ ପଛରେ ଅବ୍ୟକ୍ତ ସତ୍ୟର ଅନୁସନ୍ଧାନ କରି ଋଷି ଉପନିଷଦ୍‌ରେ କହିଛନ୍ତି, ହେ ପୂଷନ୍ (ଲୋକପୋଷଣକାରୀ ସୂର୍ଯ୍ୟ),

"ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟ ପିହିତଂ ମୁଖମ୍" (ହିରଣ୍ମୟ ପାତ୍ରରେ ସତ୍ୟର ମୁଖ ଆବୃତ ଅଛି ) ତୁମେ ସେ ପାତ୍ର କାଢ଼ି ଦିଅ, ମୁଁ ସତ୍ୟ ଦେଖେ । ଏଇ ସୂର୍ଯ୍ୟ-ଆତ୍ମା ସୁନାପରି ଦେଖାଯାଉଥିବାରୁ ସୁନା ଜଗତର ଜୀବନ ବୋଲି ପ୍ରାଚୀନ ଭାରତ ତଥା ସୁମେର ମିଶର ପ୍ରଭୃତିରେ ଧାରଣା ପଡ଼ି ଯାଇଥିଲା । ଏପରି କି ପ୍ରାଚୀନ ଆମେରିକାରେ ମଧ୍ୟ ସେଇ ଧାରଣା ଥିବାର ପ୍ରମାଣ ମିଳେ * । ଏବେ ମଧ୍ୟ ଏଇ ଧାରଣାର ଅବଶେଷ ଫଳରେ ଜୀବନୀଶକ୍ତି ବଢ଼ିବ ବୋଲି ଏ ଦେଶରେ ମଧ୍ୟ ମାଇପେ ପିଲାଙ୍କୁ ସୁନା ଘୋରି ପିଆନ୍ତି । ପୁଣି ଜୀବନପାତ ବେଳେ ମୁମୂର୍ଷୁ ରୋଗୀକୁ ମଧ୍ୟ

* See 'Myths & Legends of The World' Series, Vol IX, America

ଙଚଢବା ପାଇଁ ସୁନା ଘୋଡ଼ ପିଆଇ ଦିଆଯାଏ । ଏ ଦେଶର ଅତି ପ୍ରାଚୀନ କବିରାଜି ଶାସ୍ତ୍ରରେ ମଧ୍ୟ ଏଇ ବିଧି ଅଛି ।

## 'ତପ'ର ଅର୍ଥ—

ଏଇ ଦୃଶ୍ୟ ବିଶ୍ୱପ୍ରକାଶକ ସୂର୍ଯ୍ୟରେ ଜଗତର ଆତ୍ମା କଳ୍ପନା କରି ଜଗତକୁ ଲୋକ ବା ପ୍ରକାଶିତ ବୋଲି କହୁଥିଲେ । ପରେ ଏଇଥିରୁ ଭୂଃ ଭୁବଃ ସ୍ୱଃ ମହଃ ଜନଃ ତପଃ ସତ୍ୟଂ * ଏଇପରି ସପ୍ତଲୋକର କଳ୍ପନା ହୋଇଥିଲା । ଏଇ ଛଅ ଲୋକକୁ ଧରିଥିବା ଏକ କିଏ ? ( ଋ-୧. ୧୬୪.୬ ) ବୋଲି ଋଷି ପଚ୍ଚରିଚନ୍ତି । ଏଇ ଯେଉଁ ସୂର୍ଯ୍ୟ ପୃଥିବୀଠାରୁ ତପ ପର୍ଯ୍ୟନ୍ତ ଧରିଛି, ତାର ମୂଳ ସତ୍ୟ କଅଣ ? ପୁଣି ଋତ ଓ ସତ୍ୟ ଅତି ପ୍ରଦୀପ୍ତ ତପରୁ ବାହାରିଲା ( ଋ-୧. ୧୯୦. ୧ ) । ଏଠାରେ ମଧ୍ୟ ସେଇ ସୂର୍ଯ୍ୟ-ଆତ୍ମାର ଧାରଣା ରହିଛି । ଆର୍ଯ୍ୟ ସାହିତ୍ୟରେ ଏଇ 'ତପ' ଶବ୍ଦ ପ୍ରଯତ୍ନରେ ପ୍ରଯୁକ୍ତ ହୁଏ । ମାତ୍ର ଏହାର ମୂଳ ଏଇ ସୂର୍ଯ୍ୟର ପ୍ରକାଶମୂଳ 'ତାପ'ରେ । ଏଇ ତପରୁ 'ଜନ' ହେଉଛି 'ଜନନ-ପ୍ରବୃତ୍ତି' ବା 'କାମ' । (ନାସଦୀୟ ସୂକ୍ତର ୩ୟ ଓ ୪ର୍ଥ ମନ୍ତ୍ର ଦେଖ—ଋ-୧୦.୧୨୯, ୩, ୪) ।

## ଚତୁର୍ମୁଖ ବ୍ରହ୍ମାଙ୍କ ବିକାଶ ଆଦିତ୍ୟ—

ଏଇ ସୂର୍ଯ୍ୟ-ଆତ୍ମାହିଁ ଅଦିତ୍ୟ (ଋ-୧. ୫୦. ୧୧୧; ୮, ୯୦, ୧୦; ୮୮ ) । ଏଇ ବିଶ୍ୱକର୍ମା ( ଋ-୧୦.୧୭୦. ୩) । ଏଇ ସବିତା ପ୍ରଜାପତି (ଋ-୪. ୫୩) । ଏଇ ବିଶ୍ୱକର୍ମା ଓ ପ୍ରଜାପତି ପରେ ପୁରାଣର ବ୍ରହ୍ମା ହେଲେ । ଋଗ୍‌ବେଦରେ ମଧ୍ୟ ବିଶ୍ୱକର୍ମାଙ୍କୁ ଧାତା, ବିଧାତା ପୁଣି "ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋ ମୁଖଃ, ବିଶ୍ୱତୋ ବ ହୁରୁତ ବିଶ୍ୱତସ୍ପାତ୍ । ସବାହୁଭ୍ୟାଂ ଧମତି ସପତତ୍ରୈ ଦ୍ୟାବାଭୂମୀ ଜନୟନ୍ ଦେବ ଏକଃ" ( ଋ-୧୦.୮୧, ୩ ) । ଏଇ ଯେ ସବୁ ଆଡ଼କୁ ମୁହଁ ଥିବାର ବର୍ଣ୍ଣନା ଅଛି, ସେଥିରୁ ହିଁ ପରେ ଚାରି ଦିଗକୁ ଚାରି ମୁହଁ ଥାଇ "ବାଚସ୍ପତିଃ" (ଋ-୧୦.୮୧,୭) ବେଦପାଠୀ ବ୍ରହ୍ମାଙ୍କ କଳ୍ପନା । ଏଇପରି ଋଗ୍‌ବେଦରେ ସୂର୍ଯ୍ୟହିଁ ସବୁର ଆତ୍ମା । ଦେବ ( ଦୀପ୍ତିମନ୍ତ ) ନାମଟି ମଧ୍ୟ ଏଇ ସୂର୍ଯ୍ୟଦୀପ୍ତିରେ ବିକାଶିତ ହୋଇଛି । ଏହା ପୃଥିବୀରେ ସବୁଠୁ ଆଦିମ ଆର୍ଯ୍ୟଙ୍କର ବ୍ୟବହୃତ ନାମ † । ଦେବତାମାନେ ସମସ୍ତେ

---

* ପ୍ରଥମେ ସୂର୍ଯ୍ୟର ଆତ୍ମବସ୍ତୁ ସତ୍ୟ; ତହୁଁ ସୃଷ୍ଟି ଆଡ଼କୁ ପ୍ରଥମେ 'ତପ' ( ସୂର୍ଯ୍ୟତାପ ରୂପ ପ୍ରଯତ୍ନ); ତହୁଁ ଜନ ( ସୃଷ୍ଟିର ଆରମ୍ଭ ); ତହୁଁ ମହ ( ସୃଷ୍ଟିର ବିସ୍ତାର ); ତା ଉତ୍ତାରୁ ସ୍ୱଃ ( ସ୍ୱର୍ଗ ବା ସର୍ବୋପରି ସୂର୍ଯ୍ୟାଦି ଦେବ-ଲୋକ ); ଭୁବ ( ଆକାଶ, ବ୍ୟୋମ—ବା ପବନର ସ୍ଥାନ ); ଭୂ (ପୃଥିବୀ) । ସୃଷ୍ଟି କ୍ରମରେ ଏଇସବୁ ଲୋକମାନଙ୍କର କ୍ରମବିକାଶ ।

† V. G. Childs' 'The Aryans' (1926 Edition) pp. 80, 81.

ଆଦିତ୍ୟ । ବୈଦିକ ଓ ପୁରାଣ ସାହିତ୍ୟରେ ଆଦିତ୍ୟ କହିଲେ ସୂର୍ଯ୍ୟହିଁ ବୁଝିବାକୁ ହୁଏ । ସେ କଥା ବିଶେଷ କହିବା ଦରକାର ନାହିଁ । ସମସ୍ତ ଦେବତା ବିବସ୍ୱାନ୍ ଆଦିତ୍ୟଙ୍କ ପୁତ୍ର ( ଋ-୧୦. ୬୩, ୨ ) । ବିଶ୍ୱମାନବ ପିତା ମନୁ ଏଇ ବୈବସ୍ୱତ ଆଦିତ୍ୟଙ୍କ ପୁତ୍ର । ଏଇ ମନୁ ସୂର୍ଯ୍ୟବଂଶୀ କ୍ଷତ୍ରିୟର ପୁଣି ଆଦିପୁରୁଷ । ପୁଣି ସମସ୍ତ ମାନବ ଏଇ ବିବସ୍ୱାନ ଆଦିତ୍ୟଙ୍କ ସନ୍ତାନ ( ତୈତ୍ତିରୀୟ ସଂହିତା—୬. ୫, ୬; ଶତପଥ ବ୍ରାହ୍ମଣ—୩, ୧, ୩) ।

## ସୂର୍ଯ୍ୟ-ଆତ୍ମାର ଭିତ୍ତି—

ଏଇ ସୂର୍ଯ୍ୟ-ଆତ୍ମାଭାବ ବେଦରେ ବଡ଼ ଆଦିମ । ଏହା ସେ କାଳ ଆଗନ୍ତୁକ ଆର୍ଯ୍ୟମାନଙ୍କର ସଂସ୍କୃତିବିକାଶକ୍ଷମତାର ପରିଚୟ ଦେଉଛି । ବିଶ୍ୱମୟ ନାନା ଦେବତାଧ୍ୟାନ ଭିତରେ ଏଇ ବିଶ୍ୱତତ୍ତ୍ୱର ଭାବ ଫୁଟିବା ସ୍ୱାଭାବିକ । ମାତ୍ର ପୃଥିବୀର ଅନ୍ୟତ୍ର ଏଇ ବଂଶୀୟ ଆର୍ଯ୍ୟମାନଙ୍କ ଭିତରେ ଏ ଭାବ ସ୍ପଷ୍ଟ ଫୁଟିଥିବାର କୌଣସି ପ୍ରମାଣ ନାହିଁ । କେବଳ ମିଉନୀୟ ଆର୍ଯ୍ୟପ୍ରଭାବରେ ସେ କାଳର ମିଶର ସମ୍ରାଟ୍ ଆମେନ୍ ହୋଟେପ୍ ତୃତୀୟ ଓ ଚତୁର୍ଥ ଆଜକୁ ପ୍ରାୟ ୩୪୦୦ ବର୍ଷ ତଳେ ଏଇ ମତର ଘୋର ପ୍ରଚାରରେ ମାତିଥିବା କଥା କୁହାଯାଇଛି । ମାତ୍ର ଅନ୍ୟାନ୍ୟ ପ୍ରମାଣରୁ ଜଣାଯାଏ, ମିଉନୀୟମାନେ ସମ୍ପୂର୍ଣ୍ଣ ଭାରତୀୟ ବୈଦିକ ଆର୍ଯ୍ୟ ଥିଲେ । ଇଉରୋପୀୟ ଆର୍ଯ୍ୟମାନଙ୍କ ପୂର୍ବପୁରୁଷଙ୍କ ଭିତରେ ଦ୍ୟୌ-ପିତର୍ ( Grk. Zeus, Lat; Jupiter ) ବା ଆକାଶ-ପିତା କଥାଟି ଥିବାର ଜଣାପଡ଼େ; ତା ଠିକ୍ ସୂର୍ଯ୍ୟ-ଆତ୍ମା ଓ 'ହିରଣ୍ୟଗର୍ଭ' ଭାବକୁ ଉଠିଥିଲା ବୋଲି ଜଣାଯାଇ ନାହିଁ । ହୁଏତ ଭାରତରେ ଏଇ 'ଦିବସ୍ ପିତା' ସୂର୍ଯ୍ୟ-ଆତ୍ମାଭାବକୁ ଉଠିଥିବାର କାରଣ ଏଇ ଦେଶର ଅସୁର ସଭ୍ୟତା । ଋଗ୍‌ବେଦରେ ସୂର୍ଯ୍ୟଙ୍କୁ ବାରମ୍ବାର ଅସୁର କୁହାଯାଇଛି । ମିତ୍ରାବରୁଣୌ ବା ସୂର୍ଯ୍ୟ ବରୁଣ ଏକତ୍ର ମଧ୍ୟ ଅସୁର ବୋଲି ବର୍ଣ୍ଣିତ ହୋଇଚନ୍ତି । ପୁଣି ସୂର୍ଯ୍ୟଙ୍କୁ ମଧ୍ୟ 'ଅସୁର-ପୁରୋହିତ' କୁହାଯାଇଛି ( ଋ-୮.୯୦ ) । ଏ ଅସୁରମାନଙ୍କର ଭେଷଜ, ଗୁଣି, ଜଡ଼ି ଓ ତନ୍ତ୍ରବିଦ୍ୟା ପରେ ଅଥର୍ବବେଦରେ ସଂଗୃହୀତ ହୋଇ କ୍ରମେ ଆର୍ଯ୍ୟ ସାହିତ୍ୟରେ ସ୍ଥାନ ପାଇଥିଲା । ଏଣୁ ଏଇ ଅର୍ଥର୍ବବେଦର କେତେକ ପରଂପରାବିଦ ଋଗ୍‌ବେଦଠାରୁ ମଧ୍ୟ ପ୍ରାଚୀନ । ବହୁ ପରେ ବହୁ କଷ୍ଟରେ ଏଇ ବେଦ ଆର୍ଯ୍ୟ-ସାହିତ୍ୟ ବୋଲି ସମ୍ମାନିତ; ଆର୍ଯ୍ୟଧର୍ମୀ ଅଥଚ ଅନାର୍ଯ୍ୟ ରକ୍ତାଧିକାଂଶ ଦ୍ୱୈପାୟନ-ମତ୍ସ୍ୟଗନ୍ଧା ପୁତ୍ର 'କୃଷ୍ଣଙ୍କ' ଦ୍ୱାରା ପ୍ରଥମେ ଗୃହୀତ ହୋଇଥିଲା । ଏଇ 'କୃଷ୍ଣ' ହିଁ 'ବେଦବ୍ୟାସ' । ସେଇ ଅଥର୍ବବେଦରେ ସୂର୍ଯ୍ୟ ( 'ଦିବାକର' ) ବୃତ୍ର ବା ବୃତ୍ରାସୁରଠାରୁ ପ୍ରକାଶ ପାଇଥିବାର ଲେଖା ଅଛି ( ଅଥର୍ବବେଦ, ୪. ୧୦ ) । ବୃତ୍ର କହିଲେ ବୁଝାଯାଏ ବୃତ୍ରନାମକ ଅସୁର ବା କେବଳ ଅସୁର । ବେଦରେ ମଧ୍ୟ ଅସୁରମାନେ ଅର୍ଥରେ 'ବୃତ୍ରାଣି' ବା ବୃତ୍ରମାନେ

ବୋଲି ପ୍ରୟୋଗ ଦେଖାଯାଏ । ( 'ତ୍ୱଂ ବୃତ୍ରାଣି ହଂସି'—ଋ-୮. ୯୦. ୫ ) । ସେଇ ଅସୁରମାନଙ୍କ ବସ୍ତୁତନ୍ତ୍ର ଅବବୋଧର ପ୍ରତିକ୍ରିୟା ବା ଭାବାନୁକୃତ ଫଳରେ ସୂର୍ଯ୍ୟ-ଆତ୍ମା କଳ୍ପନା କରାଯାଇଥିବାର ସଙ୍କେତ ଏଠାରେ ଥାଇପାରେ । ପୁଣି ଯେତେବେଳେ ଆର୍ଯ୍ୟଭାବ ପ୍ରବଳ ହେଲା ଓ ଅସୁରମନୀଷୀମାନେ ଆର୍ଯ୍ୟ ବୋଲି ନିଜକୁ ପରିଚୟ ଦେଲେ, ପୁଣି ସମାଜରେ ସ୍ୱତଃ ଅସୁରମାନେ ପରିତ୍ୟକ୍ତ ହେଲେ, ସେତେବେଳେ ଋଷି ଗାଇଲେ—

> ଅସୂର୍ଯ୍ୟା ନାମ ତେ ଲୋକା
> ଅନ୍ଧେନ ତମସାବୃତା ।
> ତାଁସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି
> ଯେ କେ ଚାତ୍ମହନୋ ଜନାଃ ।।
>
> ( ଶୁକ୍ଳ ଯଜୁର୍ବେଦ-୪୦. ୩ )

ଯେଉଁମାନେ ଆତ୍ମା ନ ମାନନ୍ତି, ସେମାନେ ଅନ୍ଧ ଅନ୍ଧକାରମୟ ସୂର୍ଯ୍ୟହୀନ ଲୋକକୁ ଯାଇ ପୁଣି ଜନ୍ମ ପାଆନ୍ତି । ସ୍ୱର୍ଗ ସେମାନଙ୍କର ନାହିଁ । ସୂର୍ଯ୍ୟରେ ହିଁ ଆତ୍ମା ଦେଖିବାର କଥା । ଆତ୍ମା ନ ଦେଖିଲେ ତାଙ୍କର ସୂର୍ଯ୍ୟର ଜ୍ଞାନରେ କିଛି ଲାଭ ନାହିଁ । ସୂର୍ଯ୍ୟର ଆଲୋକ ନ ପାଇ ସେମାନେ ଅନ୍ଧକାର ପାଆନ୍ତି । ପୁଣି "ବାଜସନେୟୀ ସଂହିତୋପନିଷଦ୍"ରେ ଏଇ 'ଅସୂର୍ଯ୍ୟା' ପରିବର୍ତ୍ତରେ 'ଅସୂର୍ଯ୍ୟା', ସୂର୍ଯ୍ୟରହିତା' ବୋଲି ସ୍ପଷ୍ଟ କୁହାଗଲା । ମାତ୍ର ସୁର ଓ ସୂର୍ଯ୍ୟ, ଏକା କଥା ହେଲା । ପରେ ଉପନିଷଦ୍ ତଥା ଅନ୍ୟାନ୍ୟ ଆର୍ଯ୍ୟ ସାହିତ୍ୟରେ ଏ ସମ୍ପର୍କରେ 'ଅସୁର୍ଯ୍ୟା' ଓ ଅସୂର୍ଯ୍ୟା ଦୁଇ ପଦର ପ୍ରୟୋଗ ହୁଏ । ଏଠାରେ ଦେଖିବାକୁ ହେବ 'ଅସୁର୍ଯ୍ୟା' କହିଲେ ଅସୁରମାନଙ୍କର, ଏଇ ଅର୍ଥ ମଧ୍ୟ ଅଛି । ଅସୁରମାନେ ସୂର୍ଯ୍ୟ-ଆତ୍ମା ନ ମାନି, ଶୂନ୍ୟରୁ ସବୁ ବୋଲି ମାନନ୍ତି; ତେଣୁ ତାଙ୍କର ସ୍ଥଳ ନ ହେଉଛି 'ଅନ୍ଧ-ତମ୍' ବା ଅନ୍ଧ ଅନ୍ଧାର ।

## ସୂର୍ଯ୍ୟ-ଆତ୍ମାରେ ସାଧନାର ଅଭାବ—

ଏଇଠାରେ ଦେଖିବାର ଅଛି, ନିଜର ବିଜୟଦର୍ପରେ ଯେତେ ତାତ୍ତ୍ୱିକ କଲେ ମଧ୍ୟ, ହିରଣ୍ୟଗର୍ଭର ତପୋମୟ ସତ୍ୟ, ସୂର୍ଯ୍ୟ-ଆତ୍ମାର ପ୍ରତିଷ୍ଠାରେ ପ୍ରଜାସ୍ୱମାନ ବହିର୍ବିଶ୍ୱର ଏକ-ମୂଳକୁ ଉଠିଲେ ମଧ୍ୟ, ଜଗତର ତାତ୍ତ୍ୱିକ ବ୍ୟାଖ୍ୟାରେ ମାନବ ସାଧନା ଫୁଟିଲା ନାହିଁ । ଅସୁରର ବ୍ୟକ୍ତିବୋଧରେ ଯେଉଁ ଶୂନ୍ୟର ଧାରଣା, ସେଥିରେ କର୍ମକୁ ଶୂନ୍ୟକରି ଦେବାର ଯେ ଶରୀରସାଧନା ଓ ଯୋଗ ଥିଲା, ସେଥିରେ ମଜ୍ଜି ରହି ମନୀଷୀ ଯୋଗୀମାନେ ଯେପରି ସୁଖ ଦୁଃଖରେ ସମାନ ରହି, ସଂସାର ପ୍ରତି ଭ୍ରୂକ୍ଷେପ ନ କରି ସୁଖୀ ଓ ଆନନ୍ଦମୟ ରହୁଥିଲେ, ବାହାରକୁ ଚାହିଁ ସୂର୍ଯ୍ୟ-ଆତ୍ମାର ପୂଜାରେ ସେ ଅନ୍ତର୍ମାନବତା ସମ୍ଭବ ହେଲା ନାହିଁ ।

## ବିଶ୍ୱବ୍ୟାଖ୍ୟା ଅସଂପୂର୍ଣ୍ଣି—

ପୁଣି ପୂର୍ଣ୍ଣ-ଆତ୍ମା ହିରଣ୍ୟଗର୍ଭ ବା ବିଶ୍ୱକର୍ମା, ପ୍ରଜାପତି (ବ୍ରହ୍ମା)ର ଧାରଣାରେ ବିଶ୍ୱର ବ୍ୟାଖ୍ୟା ମଧ୍ୟ ହେଲା ନାହିଁ । ସେହି ପୂର୍ଣ୍ଣ ପଛରେ କଣ ଅଛି । ଅଥର୍ବବେଦରେ ଅଛି କିଛି ନାହିଁ (ଶୂନ୍ୟ)ରୁ ସବୁ ଦେବାଦି ପ୍ରକାଶ ପାଇଲେ (ଅଥର୍ବବେଦ-୧୦. ୭) । ଛାନ୍ଦୋଗ୍ୟ ବ୍ରାହ୍ମଣ ୫.୧୯ରେ ଅଛି ଅସତ୍ (କିଛି ନାହିଁ) ସତ୍ ହେଲା । ସେଇ ସତ୍ ଡ଼ିଂବ ହେଲା । ବରଷକେ ସେଇ ଡ଼ିଂବ ଦି ଫାଳ ହୋଇ ଆକାଶ ଓ ପୃଥିବୀ ହେଲା । ସେଥିରୁ ଯାହା ହେଲା ସବୁ ପୂର୍ଣ୍ଣ । ସେଇ ପୂର୍ଣ୍ଣ ହିଁ ବ୍ରହ୍ମା (ଛାନ୍ଦୋଗ୍ୟ ଉପନିଷଦ୍ ୩.୧୯) । ପୁଣି ଅନ୍ୟତ୍ର—ମୂଳରେ ସବୁ ଜଳ ଥିଲା; ସେଇଥିରୁ ସତ୍ୟ; ସତ୍ୟରୁ ବ୍ରହ୍ମା; ବ୍ରହ୍ମାରୁ ପ୍ରଜାପତି ଓ ପ୍ରଜାପତିରୁ ଦେବମାନେ (ଛା-ଉପ-୫.୭) ।

## ଶୂନ୍ୟ ଓ ପୂର୍ଣ୍ଣର ଦ୍ୱନ୍ଦ୍ୱ—

ଏଇସବୁ ବିଗ୍ରହରେ ଦେଖାଯାଏ ଶୂନ୍ୟ ପୂର୍ଣ୍ଣର ଦ୍ୱନ୍ଦ୍ୱରେ ମୀମାଂସା ହେଉ ନାହିଁ । ସେଇ ମୀମାଂସା ବା ସମାଧାନ ଆଡ଼କୁ ଉଦ୍ୟମ ସ୍ପଷ୍ଟ । ଶୂନ୍ୟ ଓ ପୂର୍ଣ୍ଣ ଆତ୍ମା ବା ଆତ୍ମା କିପରି ଏକ ହେବେ ? ବାସ୍ତବ ବିଶ୍ୱ ଶୂନ୍ୟ ଏ ଧାରଣା ଜୀବନର ବାସ୍ତବ ଅନୁଭବରେ ଖାପୁ ନାହିଁ । କିଂବା ଶୂନ୍ୟରୁ ପୂର୍ଣ୍ଣର ବିକାଶ ବୁଝି ହେଉ ନାହିଁ । ପୁଣି ଶୂନ୍ୟବାଦୀର ନାରୀ-ପୁରୁଷ ସଂଯୋଗରେ ବ୍ୟକ୍ତ ବ୍ୟକ୍ତ ବିକାଶ ଓ ସେଇ ଧାରଣାରେ ଯୋଗସାଧନାର ଅତିମାନବତା ଆସୁର ହେଲେ ହେଁ ଫିଙ୍ଗିଦେବାର ବସ୍ତୁ ନୁହେ । ଏଇ ଶୂନ୍ୟ ତେଣୁ,ଜଳ ହେଉ ହେଉ ପରେ ଆଉର ସୂକ୍ଷ୍ମ ହୋଇ 'ତମ' ହେଲା । ଅପୂର୍ଣ୍ଣ ବା ଅପୂର୍ଣ୍ଣରୁ ପୂର୍ଣ୍ଣ-ବିକାଶର ଏଇ ନୂତନ ସମାଧାନ ଚେଷ୍ଟା କ୍ରମେ ଆର୍ଯ୍ୟ ବେଦାନ୍ତକୁ କିପରି ଆସିଲା, ତାହା ଟିକିଏ ଅଳ୍ପକେ ବୁଝିହେବ ।

## ଶୂନ୍ୟର 'ତମ'—

ମନୁ ସଂହିତାରେ ଏଇ ବିକାଶର ଆଦିମ ଲୌକିକ ଧାରଣି ଅଳ୍ପକେ ଦେଖିବାକୁ ମିଳେ । ମନୁ କହିଚନ୍ତି—

"ଆସୀଦିଦଂ ତମୋଭୂତଂ
ଅପ୍ରଜ୍ଞାତମଲକ୍ଷଣମ୍ ।
ଅପ୍ରତର୍କ୍ୟମବିଜ୍ଞେୟଂ
ପ୍ରସୁପ୍ତମିବ ସର୍ବତଃ ॥" (ମନୁ ୧. ୫)

ଅର୍ଥାତ୍, ଏସବୁ ପ୍ରଥମେ 'ତମ' (ଅନ୍ଧକାର) ଥିଲା । କୌଣସି ଭେଦାଭେଦ ଲକ୍ଷଣରେ ଜାଣିବାର କିଛି ନ ଥିଲା । ସବୁ ଅଗମ୍ୟ ଓ ନିଦ୍ରିତ ପରି ଥିଲା । 'ତମ' ବୋଲି ଶୂନ୍ୟକୁ ବସ୍ତୁତ୍ୱର ଆଭାସ ଦେଇ, ପୁଣି ବ୍ୟାଖ୍ୟା କରିଚନ୍ତି, 'ପ୍ରସୁପ୍ତ' ପରି

ଥିଲା । ଗାଢ଼ ନିଦ୍ରାରେ ଶୋଇଥିଲେ ଯେପରି ଚେତନା ପୂର୍ଣ୍ଣ ଓ ଅବ୍ୟକ୍ତ ଥାଏ, ମାତ୍ର ତାହା ଅଛି ବୋଲି ଜାଣିବାର କିଛି ନ ଥାଏ, ଏ 'ତମୋଭୂତ' ମୂଳ-ତତ୍ତ୍ୱକୁ ସେହିପରି କଳ୍ପନା କରିବାକୁ ହେବ । ଏହା ମନୁ ସ୍ପଷ୍ଟ କରି ବୁଝାଇ ଦେଇଚନ୍ତି । ପରେ ପୁଣି ବୌଦ୍ଧତନ୍ତ୍ରମାନଙ୍କରେ ଏ 'ଶୂନ୍ୟ'କୁ 'ତମ' ବୋଲି କୁହାଯାଇଥିବାର ଏଠାରେ ଉଲ୍ଲେଖଯୋଗ୍ୟ । କାଳୀତନ୍ତ୍ର କହନ୍ତି—ପ୍ରଥମେ ସବୁ 'ଅନ୍ଧତମ' (କାଳୀ) ମାତ୍ର ଥିଲା । ସେ ଯା ହେଉ, ମନୁ ଏଇ ପ୍ରସୁପ୍ତ ତମଠାରେ ରହି ନାହାନ୍ତି । ଶୂନ୍ୟକୁ 'ତମୋଭୂତ' ବୋଲି ବାସ୍ତବ୍ୟତାର ସ୍ପୃହା ଦେଇ ତେଣିକି କହିଚନ୍ତି, ସେଇ ତମ ମଧ୍ୟରେ ପ୍ରଥମେ ଅବ୍ୟକ୍ତ ପରମାତ୍ମା ପ୍ରବେଶ କରି ଜଳ ଉତ୍ପନ୍ନ କଲେ । ଏଇ ଜଳରେ ଅଣ୍ଡ ହେଲା । ଏଇ ଅଣ୍ଡରୁ ବ୍ରହ୍ମା ହେଲେ । ସେଇ ବ୍ରହ୍ମାଙ୍କଠାରୁ କିଂବା ସେଇ ମୂଳ-ଅଣ୍ଡରୁ ଏଇ ସମସ୍ତ ପ୍ରକାଶ ବିଶ୍ୱ ବା 'ବ୍ରହ୍ମାଣ୍ଡ' ହେଲା । ମନୁଙ୍କର ଏଇ ଉକ୍ତି ସମ୍ପୂର୍ଣ୍ଣ ବୈଦିକ । ମନୁ ଯେ ବୈଦିକ ପରଂପରାର ମୂର୍ତ୍ତ ପ୍ରକାଶ କରିଚନ୍ତି, ଏହା ପୁଣି ସର୍ବବାଦିସମ୍ମତ ।

## 'ବ୍ରହ୍ମାଣ୍ଡ'ରେ ସମାଧାନର ଉଦ୍ୟମ—

ବାସ୍ତବିକ, ବ୍ୟକ୍ତିବୋଧମାତ୍ରରେ ମୂଳକୁ ଶୂନ୍ୟ ବୋଲି କଳ୍ପନା କରି 'ନିର୍ବାଣ' କାମନା କରାଯାଇ ପାରେ । ମାତ୍ର ଇନ୍ଦ୍ର, ଅଗ୍ନି ପ୍ରଭୃତି ଦେବତାର ସମାଧାନ ସେଥିରେ ନାହିଁ । ତେଣୁ ବିଶ୍ୱମୂଳ ଶକ୍ତିମୟ ଓ ତାହା ସତ୍ୟ । ଶୂନ୍ୟ ହିଁ ତମ ହେଲା ଓ ସେଥିରେ ପରମାତ୍ମା ଅଧିଷ୍ଠିତ ହେବା ଛଡ଼ା ଉପାୟ ନାହିଁ । ଅର୍ଯ୍ୟମାନଙ୍କ ଯଜ୍ଞ ସିଦ୍ଧାନ୍ତରୁ ବସ୍ତୁ ବାହାରିବାର ନାହିଁ । ପୁରୁଷ ଓ ସ୍ତ୍ରୀ ସଂଯୋଗରେ ବ୍ୟକ୍ତିସୃଷ୍ଟିର କଳ୍ପନାକୁ ବିସ୍ତୀର୍ଣ୍ଣ କରି, ବ୍ୟକ୍ତିମୟ ବିଶ୍ୱ ଫୁଟାଇବା ପାଇଁ ଜଳରେ ଗୋଟାଏ ବଡ଼ ଡିମ୍ବ ହେବା ହିଁ ସ୍ୱାଭାବିକ । ନାଗର ପଦ୍ମ ଜଳରେ ଭାସୁଥାଏ, ସେଥିରେ ପୁରୁଷର ବୀଜ ବିନ୍ଦୁ ପଡ଼ି କିପରି ଅଣ୍ଡ ଓ ତହିଁରୁ ଶିଶୁ ହୁଏ, ତାହା ଓଡ଼ିଶାରେ ଧର୍ମତତ୍ତ୍ୱ କଥା ବୁଝାଇଲା ବେଳେ କୁହାଯିବ । ପ୍ରାଚୀନ ଭାରତର ଏଇ ଅନାର୍ଯ୍ୟ-ପରଂପରା ଏବେ ମଧ୍ୟ ଓଡ଼ିଶାରେ ଅକ୍ଷୁଣ୍ଣ ଧାରାରେ ଜୀବନ୍ତ ଅଛି । ମାତ୍ର ମନୁଙ୍କ ପରଂପରା ତାହାର ବୈଦିକ ସଂସ୍କରଣ ଓ ସମାଧାନର ଉଦ୍ୟମ । ବ୍ୟକ୍ତିର ଅଣ୍ଡକୁ ବିଶ୍ୱର ବ୍ରହ୍ମାଣ୍ଡ କରିବାରେ ସେ ଉଦ୍ୟମ ସ୍ପଷ୍ଟ । ଋଷି ବ୍ୟସ୍ତ ହୋଇ ଶେଷକୁ କହିଥିଲେ—

"ଦେବାନାଂ ପୂର୍ବ୍ୟେ ଯୁଗେ
ଅସତଃ ସଦଜାୟତ ।" (ଋ-୧୦.୯୨.୨)

ଅର୍ଥାତ୍ ଦେବଙ୍କ ବହୁ ପୂର୍ବରୁ ଶୂନ୍ୟରୁ ବସ୍ତୁ ହୋଇ ସାରିଥିଲା । ସେଇଥିରୁ କ୍ରମେ ସବୁ ହେଲା । ପୁଣି, ପ୍ରଥମେ ଜଳ ଉତ୍ପନ୍ନ ହେଲା (ଋ-୧୦.୮୨.୬; ତୈତ୍ତିରୀୟ

ବ୍ରାହ୍ମଣ, ୧.୧.୩.୭; ଐତରେୟ ଉପନିଷଦ୍, ୧,୧.୬ ) । କୁହାଯାଇଚି , ଏଇ ଜଳରେ ବ୍ରହ୍ମା ହେଲେ । ପୁଣି ସେଇ ବ୍ରହ୍ମା ଅଧେକ ସ୍ତ୍ରୀ ଓ ଅଧେକ ପୁରୁଷ ଥିଲେ ( ବୃହଦାରଣ୍ୟକ ଉପନିଷଦ୍-୧.୪.୩; ମନୁ-୧.୩୨ ) । ସ୍ତ୍ରୀପୁରୁଷର ସଂଯୋଗରେ ଯେ ସୃଷ୍ଟି, ସେ ଧାରଣାର ପ୍ରତିକାଶ ଏଠାରେ ପରିସ୍ଫୁଟ ।

## କାପିଳ ସାଂଖ୍ୟର ବିକାଶ—

ଶୂନ୍ୟ ଅବ୍ୟକ୍ତ ବିଶ୍ୱତତ୍ତ୍ୱ ହେଲା । ମାତ୍ର ଏଇ ସ୍ତ୍ରୀପୁରୁଷ ଭାବ ରହିଲା । ଏଇ ବ୍ରହ୍ମା ରୂପ ସ୍ତ୍ରୀ-ପୁରୁଷ ମିଶି ବ୍ରହ୍ମାଣ୍ଡ ତିଆରି କଲେ, ବୋଲି ରୂପକରେ କବିତା କୁହାଯାଇପାରେ । ମାତ୍ର ମନୀଷୀ ଦାର୍ଶନିକ ତା ବୁଝିବେ ନାହିଁ । ସେଥିପାଇଁ ଏଇ ଶୂନ୍ୟରେ ଜୀବନୀଶକ୍ତି ( ହିରଣ୍ୟଗର୍ଭ ) କଳ୍ପନା କରିବାରେ ସେ ହେଲା ଚେତନ ଶୂନ୍ୟ ବା ପରେ ସାଂଖ୍ୟର 'ପୁରୁଷ' । ଏଇ ସାଂଖ୍ୟର ପୁରୁଷ ପୁଣି ଗୋଟିଏ ନୁହେଁ । ଯେତେ ବ୍ୟକ୍ତି ସେତେ ପୁରୁଷ । ପୁଣି କେବଳ ଏହା ଚେତନ ବା ଦ୍ରଷ୍ଟା । ଶୂନ୍ୟ ବ୍ୟକ୍ତି-ମୂଳ ତଥା ବ୍ୟକ୍ତିର ଜ୍ଞାନମାତ୍ର ଏ ବିଶ୍ୱ—ଏଇ ତତ୍ତ୍ୱର ଠିକ୍ ମାତ୍ର ବସ୍ତୁତତ୍ତ୍ୱ ଆଡ଼କୁ ବିକାଶରେ ଏହା ହିଁ ହେବାର କଥା । ବସ୍ତୁତଃ ସାଂଖ୍ୟର ପୁରୁଷକୁ ବୁଝିବା ମୁସ୍କିଲ୍ । ଏହା ଚେତନ, ମାତ୍ର ଏକାବେଳକେ ନିଷ୍କ୍ରିୟ । ଜ୍ଞାନ ମଧ୍ୟ ଏହାର କ୍ରିୟା ନୁହେଁ । ଏହା ଏକ ପ୍ରକାର ଚେତନଶୂନ୍ୟ ବା ଶୂନ୍ୟମୂଳକ ଜ୍ଞାନ ରୂପ । ପ୍ରକୃତି, ନାରୀ । ତାହାଉପରେ ଚେତନାରୁ ଟିକିଏ କପଟ ପଡ଼ିଗଲେ ସୃଷ୍ଟି ହୁଏ । ଏଇ ଚେତନ ପୁରୁଷ ପ୍ରକୃତି ପାଖରେ ରହିଲେ, ପ୍ରକୃତିରେ ସୃଷ୍ଟିର କ୍ରିୟା ଚାଲେ । ବ୍ୟକ୍ତି ଜ୍ଞାନମାତ୍ରରେ ଜଗତ୍ ଅଛି, ତା ନ ହେଲେ ସବୁ ଶୂନ୍ୟ ବୋଲି ଯେଉଁ ପ୍ରାଚୀନ ଧାରଣା ଥିଲା, ଏହା ପ୍ରାୟ ତାହା ହିଁ କହିଲେ ଚାଲେ । ସାଂଖ୍ୟ ପୁଣି କହନ୍ତି, ସତ୍ତ୍ୱ ରଜ ଓ ତମ ଏଇ ତିନି ଗୁଣରେ ପ୍ରକୃତି, ପୁରୁଷକୁ ନିଜର ନାନାରୂପ ଭଙ୍ଗୀ ଦେଖାଇ ଭୁଲାଇ ପୃଷ୍ଠରେ ମାତିଥାଏ । ଏଇପରି ପ୍ରକୃତି ଭୁଲାଇ ମତେ ଏପରି ବିଶ୍ୱଲୀଳା ଦେଖାଉଚି ବୋଲି ପୁରୁଷ ଜାଣିଗଲେ, ପ୍ରକୃତି 'ଲଜ୍ଜିତ ହୋଇ' ପୁରୁଷ ଆଗେ ଏ ନୃତ୍ୟ, ଖେଳ ଓ ଜାଲ ବିସ୍ତାର ବନ୍ଦ କରିଦିଏ । ପୁରୁଷ ପ୍ରକୃତିରୁ ଅଲଗା ହୋଇଯାଏ । ଏହାକୁ କୈବଲ୍ୟ ବା କେବଳତା, ଅର୍ଥାତ୍ ପ୍ରକୃତିହୀନତା କହନ୍ତି । ଏହାହିଁ ପୁରୁଷର ମୁକ୍ତି । ବୌଦ୍ଧ କହନ୍ତି, ଏସବୁ କେବଳ ଜ୍ଞାନ, ଆଉ କିଛି ନାହିଁ ଜାଣିଗଲେ, ବ୍ୟକ୍ତିର 'ନିର୍ବାଣ' ହୁଏ । ଏ ଦୁଇଟିରେ ବିଶେଷ ପ୍ରଭେଦ କଣ ? କେବଳ ଶୂନ୍ୟତାରେ ଟିକିଏ ବସ୍ତୁତ୍ୱର ଆଭାସ ଦେବା ହିଁ ଯାହା ପ୍ରଭେଦ । ମାତ୍ର ଠିକ୍ ବୁଝି ବସିଲେ, ଏ ପ୍ରଭେଦ ଶାବ୍ଦିକ, ବାସ୍ତବ ନୁହେଁ । ପୁଣି ଏଇ ପ୍ରସଙ୍ଗରେ ମହାଭାରତରେ ଅଛି, ପ୍ରକୃତି ଗୁଣରେ ମୁଗ୍ଧ ହୋଇ ସାଧାରଣତଃ ଲୋକ ନିଜର ଏହି ପ୍ରକୃତିଠାରୁ ଭିନ୍ନତା ବୁଝିପାରେ ନାହିଁ । ତେଣୁ କର୍ମଭୋଗ କରି ଜନ୍ମ ମୃତ୍ୟୁ ଚକ୍ରରେ ପଡ଼ିଥାଏ । ମାତ୍ର ଏଇ ଭିନ୍ନତା ଜାଣିଲେ ପୁରୁଷ ମୁକ୍ତ ହୋଇ ମଧ୍ୟ ଜୀବନଶେଷ ଯାଏ ଥାଏ । ଏଇପରି

ମୁକ୍ତ ପୁରୁଷଙ୍କୁ କୃତକୃତ୍ୟ, ଜ୍ଞାନୀ ବା 'ବୁଦ୍ଧ' କହନ୍ତି । 'ବୁଦ୍ଧ' କଥାଟି ଏଠାରେ ପ୍ରଣିଧାନଯୋଗ୍ୟ । ଗୀତା ଏଇ 'ବୁଦ୍ଧ' କଥାକୁ 'ବୁଦ୍ଧିମାନ୍' ବୋଲି କହିଚନ୍ତି (୧୫,୨୦) ।

## ବେଦାନ୍ତ ଓ ଗୀତାର ସମାଧାନ—

ଗୀତାର ମୁକ୍ତି ବା କୃତକୃତ୍ୟତା କାଂଖ୍ୟର କୈବଲ୍ୟ ନୁହେଁ । ଏଠାରେ ବ୍ୟକ୍ତି ଯେପରି ସ୍ୱାତନ୍ତ୍ର୍ୟର କଥା ନାହିଁ । ପ୍ରକୃତି ଗୀତାର ବେଦାନ୍ତରେ 'ମାୟା' । ଏହା ପୁରୁଷୋତ୍ତମଙ୍କର ଏକ ବିଭାବ ବା କ୍ଷର ପୁରୁଷ । ଅନ୍ୟ ବିଭାବଟି ଅକ୍ଷର ବ୍ରହ୍ମ ବା ଅକ୍ଷର ପୁରୁଷ । ଏଇ-ବିଶ୍ୱତତ୍ତ୍ୱ ଅକ୍ଷର ଓ କ୍ଷର—ଏ ଦୁଇଟି ଏକ ବସ୍ତୁକୁ ଦୁଇ ପ୍ରକାର ଦେଖିବା ମାତ୍ର । କ୍ଷର ବୁଝିବାରେ ଅକ୍ଷର ଏକ ସୂକ୍ଷ୍ମ ଧାରଣା, ପୁଣି ଅକ୍ଷର ବୁଝିବାରେ କ୍ଷର ହିଁ ଅବଲମ୍ବନ । ଦୁଇଟି ଏକା ବସ୍ତୁ । କେହି କାହାଠାରୁ ଅଲଗା ନୁହେଁ । ମାନବ ଶକ୍ତିର ଆପେକ୍ଷିକତାରେ ବିଶ୍ୱବସ୍ତୁ ବୁଝିବାର ଅନ୍ୟ ସାଧନା ନାହିଁ । ଏଇ ଆପେକ୍ଷିକତାରୁ ଅତୀତ ତତ୍ତ୍ୱଟି ପୁରୁଷୋତ୍ତମ । ତାହା ଭକ୍ତିରେ ଲଭ୍ୟ ଓ ଜ୍ଞାନର ଅନୁଭୂତିରେ ଗମ୍ୟ । ମାତ୍ର ତାହା 'ଅବାଙ୍ମନସ ଗୋଚର'—ବାକ୍ୟ ଶକ୍ତିରେ ବୁଝାଇବାର ବସ୍ତୁ ନୁହେଁ । ଏହାହିଁ ଗୀତାର ଯଥାର୍ଥ ବେଦ ମର୍ମ ଓ ଏହା ହିଁ ସମାଧାନ ।

## କଳିଙ୍ଗର ଧର୍ମରେ ଆଦିମ ଅନାର୍ଯ୍ୟଧର୍ମର ସଂକେତ—

ଭାରତର ଧର୍ମ ଆଜି ଆର୍ଯ୍ୟଧର୍ମ । ଏହା ଆଗନ୍ତୁକ ଆର୍ଯ୍ୟ ଓ ଦେଶସ୍ଥ ଅନାର୍ଯ୍ୟ ଉଭୟ ସଂସ୍କୃତିର ସମାଧାନ । ଏ କଥାଟି ଏକ ପ୍ରକାର ବୁଝାଇ ଦିଆଗଲା । ମାତ୍ର ଯେତେ ବୁଝାଇଲେହେଁ, ଏବେ ଗୋଟିଏ ସଭ୍ୟତାର ଉପାଦାନରୁ ଆଉ ଗୋଟିକୁ ସଂପୂର୍ଣ୍ଣ ଛଡ଼ାଇ ଦେଖାଇ ଦେବାର ଉପାୟ ନାହିଁ । ଯେ କୌଣସି ଉପାଦାନରେ ହୁଏତ ଉଭୟର ଅଂଶ ଅଛି । ତଥାପି କୁହାଯାଇଚି ଉତ୍ତର ଭାରତରେ ଅନାର୍ଯ୍ୟ ସଭ୍ୟତାର ଧାରା ଏକପ୍ରକାର ଆର୍ଯ୍ୟପ୍ରବାହରେ ଆତ୍ମବିସ୍ମୃତ ହୋଇଚି । ମାତ୍ର କଳିଙ୍ଗ ପ୍ରଭୃତି ପୂର୍ବ ଭାରତରେ ସେଇ ପ୍ରାଚୀନ କାଳରେ ଅନାର୍ଯ୍ୟ ଧର୍ମର ଧାରା ଦୃଢ଼ମୂଳ ଥିଲା । ତାହା ନାମତଃ ଆର୍ଯ୍ୟ ହେଲେହେଁ, ବସ୍ତୁତଃ ବହୁପରିମାଣରେ ଅନାର୍ଯ୍ୟ ।

## ବରୁଣ ପୂଜା—

ପ୍ରଥମତଃ ଏଇ ପୂର୍ବଭୂମି, ବିଶେଷତଃ ଓଡ଼ିଶାରେ, ଯେ କୌଣସି ନୈମିତ୍ତିକ କର୍ମ ବା ସାଡ଼ମ୍ବର ନିତ୍ୟ ବୈଦିକ କର୍ମରେ 'ବରୁଣ'ଙ୍କ ଆବାହନ ଓ ପୂଜା ପ୍ରଥମେ କରିବାକୁ ହୁଏ । ଗୋଟିଏ ନଡ଼ିଆ ବା ଗୁଆ ରୂପରେ ବରୁଣ-ଦେବଙ୍କୁ ଆବାହନ କରି ନ ଥୋଇଲେ କୌଣସି ବୈଦିକ କର୍ମକାଣ୍ଡ ହୁଏ ନାହିଁ । ଓଡ଼ିଶାରେ ପୂର୍ଣ୍ଣ

କର୍ମରେ ମଧ୍ୟ କେହି ଜଳାଶୟଟିଏ କରି ତା'ର ପ୍ରତିଷ୍ଠା କଲେ, ଜଳାଶୟ (ପୋଖରୀ) ମଝିରେ ଗୋଟିଏ ମନ୍ଦିର କରି ସେଥିରେ ପଶ୍ଚିମଦିଗପାଳ ବରୁଣ ଦେବଙ୍କୁ ସ୍ଥାପନ କରି ପ୍ରତିଷ୍ଠା କରନ୍ତି । ତା' ନ କଲେ ପୋଖରୀ ପ୍ରତିଷ୍ଠିତ ବା ଧର୍ମତଃ ବ୍ୟବହାରୋପଯୋଗୀ ନୁହେଁ ବୋଲି ଧାରଣା । ସେପରି ନ କଲେ ପୋଖରୀ ଖୋଳାଇବା ରୂପ ପୂର୍ତ୍ତ କର୍ମରେ ପୁଣ୍ୟଲାଭ ହୁଏ ନାହିଁ । ବର୍ଷା ନ ହେଲେ ଲୋକେ ଏବେ ଶିବଙ୍କ-ବାହନ ବୃଷଭକୁ ଜଳରେ ପକାଇ ଦିଅନ୍ତି ଓ ବ୍ରାହ୍ମଣମାନେ ଜଳରେ ଠିଆ ହୋଇ 'ଜଳ-ଜପ' ବା ବୈଦିକ ମନ୍ତ୍ରରେ ବରୁଣଙ୍କର ଉପାସନା କରନ୍ତି । ବୃଷଭକୁ ଜଳରେ ପକାଇବାର ଅର୍ଥ, ମହାଦେବଙ୍କୁ ବୃଷଭରେ ଚଢ଼ାଇ ବରୁଣ ଦେବଙ୍କ ପାଖକୁ ପଠାଇ ଦିଅନ୍ତି । ବର୍ଷା ପାଇଁ ଇନ୍ଦ୍ରଙ୍କୁ ନ ପଚାରି ବରୁଣଙ୍କର ଏପରି ଏକା ଉପାସନା କରିବା, ପୁଣି ମହାଦେବଙ୍କୁ ବରୁଣଙ୍କ ପାଖକୁ ପଠାଇବା, ଅନାର୍ଯ୍ୟ ବା ଅସୁର ଉପାସନାର ଅବଶେଷ ବୋଲି ସ୍ପଷ୍ଟ ମନେ ହୁଏ । ଭାରତରେ ବରୁଣ ବହୁକାଳରୁ ସ୍ଥାନଭ୍ରଷ୍ଟ ହୋଇଥିଲେ ହେଁ, ଓଡ଼ିଶାରେ ଏବେ ମଧ୍ୟ ନୁହନ୍ତି ।

## ଲୋକକଥା—

ବୁଢ଼ୀମାମାନେ ପିଲାଙ୍କୁ ଯେଉଁ 'କଥା' କହନ୍ତି, ଯାହାକୁ ବଙ୍ଗଳାରେ 'ରୂପକଥା' କହନ୍ତି । ସେଥିରେ ଅସୁର ଅସୁରୁଣୀଙ୍କର ସ୍ମୃତି ବହୁପରିମାଣରେ ଜାଗ୍ରତ ଥିବାର ଅନୁମାନ ହୁଏ । ବଙ୍ଗଳାପ୍ରଭୃତିରେ ସେସବୁର କେତେକ ସଂଗ୍ରହ ହୋଇଛି; ମାତ୍ର ଓଡ଼ିଶାରେ ପ୍ରାୟ ହୋଇ ନାହିଁ । ସେସବୁ ଶୀଘ୍ର ଯଥାସମ୍ଭବ ସଂଗୃହୀତ ହେବା ଉଚିତ । ତାଳପତ୍ର ପୋଥି ପରି ସେସବୁ କ୍ରମେ ଲୋପ ପାଉଛି । ତଥାପି ଅନେକଙ୍କର ବୁଢ଼ୀମାମାନଙ୍କଠାରୁ 'କଥା' ଶୁଣିବାର ମନେ ଥିବ । ଏବେ ମଧ୍ୟ କେତେ ବୁଢ଼ୀ 'କଥା' କହୁଥିବେ । ଅନେକ 'କଥା'ରେ ଗୋଟିଏ ବୁଢ଼ୀ ଅସୁରୁଣୀ ବଣରେ ଥାଏ । ତାର ଗୋଟିଏ ସୁନ୍ଦର ଝିଅ ଥାଏ । କୌଣସି ରଜା ପୁଅ, ମନ୍ତ୍ରୀ ପୁଅ, କୋଟୁଆଳ ପୁଅ, ସାଧବ ପୁଅ ପ୍ରଭୃତି ମିତମାନଙ୍କ ସଙ୍ଗେ ଯାଉଁ ଯାଉଁ ବାଟ ଭୁଲି ଏକାରେ ସେ ଅସୁରୁଣୀର ସୁନ୍ଦର ଝିଅଟିକି ଦେଖେ । ଝିଅଟି ମଧ୍ୟ ରଜାପୁଅକୁ ଦେଖି ଭୁଲିଯାଏ । ବୁଢ଼ୀକୁ ସେ କଥା ଲୁଚାଇ ସେମାନେ କେତେକାଳ ରହନ୍ତି । ରଜାପୁଅ ବୁଢ଼ୀକୁ ଦେଖାଦିଏ ନାହିଁ । ପରେ ରଜାପୁଅ ଝିଅଟିକି ଘେନି ପଳାଏ । ବୁଢ଼ୀ ଗୁଣିବଳରେ ଧୂଳିପକାଇ ପିଛା ଧରେ । ଗୁଣିରେ ଦଣ୍ଡକେ ଶହେ କୋଶ ଯାଏ । ମାତ୍ର ଝିଅଟି ସେ ଗୁଣି ନିଜ ଗୁଣିବିଦ୍ୟାରେ ନଷ୍ଟ କରିଦିଏ । କେଉଁଠାରେ ବା ଅସୁରମାନେ ଏଇପରି ଗୁଣିରେ କେତେ ହରଣ କରନ୍ତି । ଅସୁର ଅସୁରୁଣୀମାନେ ଘୋଡା, ସାପ, ମାଛ, ଚଢ଼େଇ, ମାଛି ପ୍ରଭୃତି ରୂପ ମଧ୍ୟ କେବେ କେବେ ଧରନ୍ତି । ପୁଣି ବେଳେ ବେଳେ ଝିଅଟି କୌଶଳରେ ମା'କୁ ପଚାରି ବାହାର କରିନିଏ—ମା'ର ଜୀବନଟି କାହିଁରେ ଥାଏ । କେତେବେଳେ କୌଣସି ପଞ୍ଜୁରୀରେ ଗୋଟିଏ ଶୁଆ ବା

ସଂସାରେ ଜୀବନଟି ଥାଏ, କେତେବେଳେ ପୋଖରୀ ମାଛ ପେଟରେ ବା ପେଟରେ ଗିଳଥିବା ବସ୍ତୁ ଭିତରେ; ପୁଣି କେତେବେଳେ ବହୁ ଦୂରୁହ ଥାନରେ ଥିବା ଗୋଟିଏ ଫରୁଆରେ ଗୋଟିଏ ବାଳ ଭିତରେ ବା ସ୍ତମ୍ଭ ଭିତରେ ଥାଏ । ରଜାପୁଅ ତା ଜାଣି ଶୁଆ ବା ମାଛଟି ମାରିଦିଏ ବା ବାଳଟି କୌଣସିମତେ ଆଣି ଛିଣ୍ଡାଇ ଦିଏ—ଇତ୍ୟାଦି ବୁଢ଼ୀଟି ମରିଯାଏ । ରଜାପୁଅ ଝିଅଟିକି ଆଣି ରାଣୀ କରେ ।

## ଲୋକକଥାରୁ ସୂଚନା—

ଏସବୁ ରକମ କଥାରେ ଦେଖିବାର ଅଛି, ଅସୁରଙ୍କ ସଙ୍ଗେ ଆର୍ଯ୍ୟଙ୍କର ବିଭା ହେଉଥିଲା । ମାତ୍ର ଅସୁର ତା ପସନ୍ଦ କରୁ ନ ଥିଲେ । ତଥାପି ଜାତି ମିଶି ଯାଉଥିଲା । ଆର୍ଯ୍ୟମାନଙ୍କର ଅସୁରଙ୍କ ସଙ୍ଗେ ବିଭା କରିବାରେ ଆପତ୍ତି ନ ଥିଲା । ବରଂ ପାଇଲେ ବେଳେବେଳେ ସେମାନେ ସେପରି ବିବାହ କରି ଯାଉଥିଲେ । ଅସୁରମାନେ ଗୁଣିରେ ଅସାଧ ସାଧନା କରି ପାରୁଥିଲେ । ମହାଭାରତ ପୁରାଣାଦିରେ ମଧ୍ୟ ଘଟୋତ୍କଚ ପ୍ରଭୃତିଙ୍କ ସମ୍ବନ୍ଧରେ ସେଇକଥା । ଅସୁରମାନେ ମାୟାବୀ ବୋଲି ସର୍ବତ୍ର କଥିତ । ଅସୁର ଦେବତା ବରୁଣ ମଧ୍ୟ ବେଦରେ ମାୟାବୀ ଓ ଜଡ଼ିବୁଟି ଔଷଧାଦିର ଅଧିକାରୀ । ସମସ୍ତ ଅଥର୍ବବେଦ ଏଇ ଜଡ଼ି ଗୁଣି ବିଦ୍ୟାରେ ପୂର୍ଣ୍ଣ । ଏଇ ବେଦ ପ୍ରଥମେ ଆର୍ଯ୍ୟମାନେ ସ୍ୱୀକାର କରୁ ନ ଥିଲେ । ପରେ ଦ୍ୱୈପାୟନ କୃଷ୍ଣ ଏହାକୁ ବେଦ ଭିତରେ ଭର୍ତ୍ତି କରିଥିବା କଥା ପୂର୍ବେ କୁହାଯାଇଛି । ଏହା ଅସୁର ବେଦ ବୋଲି ମଧ୍ୟ କୁହାଯାଇଛି । ତୃତୀୟ କଥା ଅସୁରମାନେ ଜୀବନ ତଥା ଆତ୍ମାକୁ ଦେହରୁ ଅଲଗା ବୋଲି ମାନୁଥିଲେ । ଏଇ ଆତ୍ମା ହିଁ ସବୁ । ଦେହ କିଛି ନୁହେଁ । ପୁଣି ଆତ୍ମା ନଷ୍ଟ ହେଲେ (ଶୂନ୍ୟ ହୋଇଗଲେ) ଦେହ ଆଉ ରହେ ନାହିଁ । ଏହି ଅସୁର ବିଶ୍ୱାସ ମଧ୍ୟ ଏଇ 'କଥା'ମାନଙ୍କରୁ ସଙ୍କେତରେ ମିଳୁଛି । ପରେ ଦେଖାଯିବ, ତନ୍ତ୍ରରେ ଏଇ ଘଟ ପରିବର୍ତ୍ତିନାଦି ଅସାଧ ସାଧନାର କଥା ଅଛି । ତନ୍ତ୍ର ମଧ୍ୟ ଅସୁରବିଦ୍ୟା ।

## ନାଗ—

ଏଇ କଥାମାନଙ୍କରେ ପୁଣି ଅସୁର ଅସୁରୁଣୀ ପରିବର୍ତ୍ତିରେ ଗୋଟିଏ ନାଗର କଥା ମଧ୍ୟ ଥାଏ । ନାଗଟିର ଘର ପ୍ରାୟ ଜଳ ମଧ୍ୟରେ ସୁନ୍ଦର ଅଟ୍ଟାଳିକାରେ ଥାଏ । ନାଗର ଗୋଟିଏ ମଣି ଥାଏ । ସେଇ ମଣି ମୁଣ୍ଡରେ ଦେଇ ନାଗ ବାହାରିଲାବେଳେ ଜଳ ଆଡ଼େଇ ହୋଇ ରାସ୍ତା କରିଦିଏ । ବରୁଣ ଦେବମଣି ଦେଖି ନାଗକୁ ଚିହ୍ନି ଜଳରେ ରାସ୍ତା କରିଦିଅନ୍ତି । ନାଗ ପାଣିରୁ ବାହାରକୁ ଆସେ । ପୁଣି ଚରି ବୁଲି ପାଣି ବାଟେ ଘରକୁ ଚାଲିଯାଏ । କୌଣସି ରଜାପୁଅ ନିଜ ସାଂଗ ମନ୍ତ୍ରୀପୁଅର ବୁଦ୍ଧି ବଳରେ କୌଣସି ପ୍ରକାରେ ସେଇ ଜଳ ଭିତର ଘରକୁ ଯାଇ, ନାଗର ଝିଅ ନାଗକନ୍ୟାକୁ ଭେଟେ । ଦୁହେଁ ପରସ୍ପର ସଙ୍ଗେ ବିବାହ ପାଇଁ ଉତ୍ସୁକ ହୁଅନ୍ତି ।

ରଜାପୁଅ କୌଣସି କୌଶଳରେ ମଣିଟି ହାତକରି ହୁଏତ ନାଗଟିକୁ ଅନ୍ତର୍ମଣୀ କରେ ବା ତାକୁ ହତ୍ୟା କରେ; ତା ପରେ ନାଗକନ୍ୟାକୁ ନେଇ ସେଇ ଘର ଓ ରାଜ୍ୟ ଭୋଗ କରେ; ହୁଏତ କେତେକାଳ ପରେ ପୁଣି ଘରକୁ ଫେରେ ।

## ନାଗ ଓ ବରୁଣ—

ଏଠାରେ ନାଗଙ୍କର ସଭ୍ୟତା ପରଂପରା ପ୍ରତି ସଙ୍କେତ ସ୍ପଷ୍ଟ । ସେମାନଙ୍କର ଜଳ ଭେଦ କରି ଯିବା ଆସିବା ଓ ବରୁଣଙ୍କ ସଙ୍ଗେ ସଖ୍ୟ ପ୍ରଭୃତି ମଧ୍ୟ ଏଠାରେ ମନେ ରଖିବାର ଅଛି । ହୁଏତ ନାଗକୁ ମଣିରୁ ଚିହ୍ନି ବରୁଣ ବାହି ଗ୍ରହନ୍ତି ଓ ସେଇ ମଣି ଆତ୍ମସାତ୍ କରି ମୁଣ୍ଡରେ ଭରି ରଜାପୁଅ ନାଗ ବୋଲି ପରିଚୟ ଦିଅନ୍ତି ଓ ନାଗ ସଙ୍ଗେ ମିଶିଯାଇ ବରୁଣ ବା ଜଳ ଦେବତାଙ୍କର ବିଶ୍ୱାସଭାଜନ ହୁଅନ୍ତି । ଏ ସୂଚନା ମଧ୍ୟ ଏଠାରେ ଅଛି । ନାଗ ମଧ୍ୟ ଶବରଙ୍କ ପରି ଅନାର୍ଯ୍ୟ । ଏମାନଙ୍କ ସଭ୍ୟତା ମଧ୍ୟ ଉନ୍ନତ ଥିଲା । ଶବରଙ୍କ ପ୍ରତିପତ୍ତି କଥା କୁହାଯିବ । ମାତ୍ର ଏଇ ନାଗମାନେ ମଧ୍ୟ ଇତିହାସକାଳରେ ପ୍ରତାପୀ ରାଜବଂଶମାନଙ୍କରେ ବିଶାଳ ଦେଶ ଓ ସାମ୍ରାଜ୍ୟମାନ କରିଥିବାର ପ୍ରାଚୀନ ଲେଖାମାନଙ୍କରୁ ମିଳେ । ନାଗ, ଶବର ପ୍ରଭୃତି ସମସ୍ତେ ଅସୁର ଥିବାର ସୂଚନା ଦିଆଯାଇଛି ।

## ଅସୁରର ଶବ୍ଦାର୍ଥ—

ଅନାର୍ଯ୍ୟ ସଭ୍ୟତାକୁ ଆମେ ବରାବର ଅସୁର ସଭ୍ୟତା ବୋଲି କହୁଛୁ । ମାତ୍ର ଖୁବ୍ ସମ୍ଭବ ଅନାର୍ଯ୍ୟଙ୍କ ଉପାସ୍ୟଙ୍କ ନାମ ଅସୁର ଥିଲା । ଏଇ ଅସୁର ଶବ୍ଦର ନାନା-ପ୍ରକାର ବୈଦିକ ବ୍ୟାକରଣ ଅନୁସାରେ ବ୍ୟୁତ୍ପତ୍ତ୍ୟର୍ଥ କରାଯାଇଛି । ପ୍ରଥମେ ଅର୍ଥ କରୁଥିଲେ 'ଅସୁ' ଅର୍ଥାତ୍ ପ୍ରାଣକୁ 'ରାତି', ଆରାଧନା କରେ ଯେ, ସେ ଅସୁର; ଅର୍ଥାତ୍ ତେଜସ୍ୱୀ, ଶକ୍ତିମନ୍ତ କିଂବା ହୋଇପାରେ—'ଆତ୍ମଯୋଗଯୁକ୍ତ' । ପରେ ଏଇ ବ୍ୟୁତ୍ପତ୍ତିରେ ଅର୍ଥ କରାହେଲା—କେବଳ ଖାଇପିଇ ପ୍ରାଣ ଧାରଣ କରିବା ମାତ୍ରରେ ଯେଉଁମାନେ ଲାଗିଥାନ୍ତି, ସେମାନେ ଅସୁର । ଏବେ କୁହାଯାଏ ସୁର ଅର୍ଥାତ୍ ଦେବ (ଶକ୍ତିମାନ୍) । ଯେ ଦେବ ନୁହନ୍ତି ବା ଦେବବିରୋଧୀ (ଅନ୍ଧକାରମୟ) ସେ ଅସୁର । ଏପରି ସବୁ କଥାକୁ ଧାତୁପ୍ରତ୍ୟୟ ଲଗାଇ ଅର୍ଥ କରିବା ପରଂପରା ଏ ଦେଶରେ ବହୁ ପ୍ରାଚୀନ—ଏବେ ମଧ୍ୟ ଜୀବନ୍ତ । ପାଣିନି ମଧ୍ୟ ସେଥିପାଇଁ ଉଣାଦିପ୍ରକ୍ରିୟା ସୃଷ୍ଟି କରିଛନ୍ତି ଏ ଦେଶରେ କଣ୍ଡରା (ଚଣ୍ଡାଳ)ଙ୍କ କୁଳସଂଜ୍ଞା 'ମଳିକ' । ଜଣେ ପଚାରିଥିଲେ 'ମଳିକ'ର ଅର୍ଥ କଣ ? ପଣ୍ଡିତେ ହଠାତ୍ ପାଣିନିସଙ୍ଗତ ଉତ୍ତର ଦେଲେ, 'ମା' ଧାତୁରୁ 'ଉଣାଦି'ରେ 'ଡ଼ଳିକ' ପ୍ରତ୍ୟୟ କରି ସିଦ୍ଧ ହେଲା 'ମଳିକ' । ଏଣୁ ଏହାର ଅର୍ଥ, ଯେ ସବୁ ପରିମାଣ କରେ ବା ଯେ ମାପିକରି ଲୋକଙ୍କ ଘର ଜଗେ—ଯାହା ଘର ଯେପରି ଭାବରେ ଜଗିବ, ତା ସବୁ ଜାଣି ବୁଝି ଯେ ଚଳିକ ଦିଏ । ଖୁରୁଡ, ଖୋଳ, ଗ୍ଲେପା,

ଖୋଡପା—ଏସବୁ ଶବ୍ଦ ଦ୍ରାବିଡ଼ (ମଲବାର) କୋପଡ଼ା (ଖୁରୁକ୍ର ନଡ଼ିଆ) ଶବ୍ଦରୁ ବାହାରିଚି । ମାତ୍ର ପଣ୍ଡିତେ କହୁଥିଲେ, ଖଡ଼ ଇତି ଶବ୍ଦାନୁକୃତଧାତୁତଃ ଊର-ପ୍ରତ୍ୟୟାତ୍-ଖର୍ଜୁର ଓ ପରେ 'ଖୁରୁଡ଼' । ଅର୍ଥାତ୍ ଯେ ଖଡ ବାଜେ । ସେଇପରି ବହୁତ ଅଶ୍ୱଖୁର ଧାରଣ କରେ ବୋଲି, ଖୁରଧା ଓ କୁଆ ଉଡ଼ି ଯାଉ ଯାଉ ନ ପାରି ମଝିରେ ପଡ଼ିଯାଏ, ଅତଏବ କୁଆକୁ ଖାଇଯାଏ ବୋଲି ନଦୀର ନାମ କୁଆଖାଇ । ଏପରି ପ୍ରମାଣ ବହୁତ ମିଳିବ । ଲୋକେ ଏହା ସର୍ବଦା ଏ ଦେଶରେ କରନ୍ତି । ଏପରି କି, ଯେଉଁ ଯେଉଁ ଓଡ଼ିଆ ବୀରମାନଙ୍କ ବାହୁଚ୍ଛାୟାରେ ୪୫୦ ବର୍ଷ ପଶ୍ଚିମବଙ୍ଗ ରହି ନିଜର ଧର୍ମ ପରଂପରା ରକ୍ଷିପାରିଥିଲା, ସେଇ ଓଡ଼ିଆ ଅଜି ଦୁରବସ୍ଥ ହୋଇ କଲିକତାରେ ଭାର ବହିବାର ଦେଖି, ବଙ୍ଗ ଦେଶର ପଣ୍ଡିତ ଉତ୍କଳ ଶବ୍ଦର ବ୍ୟୁତ୍ପତ୍ତି ନିଜ ଅଭିଧାନରେ ଲେଖିଦେଲେ, ଉତ୍କଲ୍ୟତେ, ଅର୍ଥାତ, କାନ୍ଧରେ ଭାର ରଖି ଉପରକୁ ଟେକି ଓଜନ କଲନା କରେ ବୋଲି ନାମ ହେଲା 'ଉତ୍କଳ' ସେଇପରି ଭୁଟିଆ ଭାଷାରେ 'ଦାରକ୍ ଲିଂ' (ଦାରଜ୍, ବଜ୍ର, ଘଡ଼ଘଡ଼ି; ଲିଂ, ସ୍ଥାନ ) ଶବ୍ଦକୁ ଅର୍ଥ କରନ୍ତି 'ଦୁର୍ଜ୍ଜୟ ଲିଂଗ' ( ମହାଶକ୍ତିମାନ୍ ମହାଦେବ); ପୁଣି ଖାସି ଭାଷାର ଶିଲଂ ବା ଇଉ ଶିଲଂ (ଉଚ୍ଚ ସ୍ଥାନ ବା ଶ୍ରୀ ଉଚ୍ଚ ସ୍ଥାନ, ସ୍ୱର୍ଗ) ଶବ୍ଦକୁ ଅର୍ଥ କରନ୍ତି; ଶୈଳାଙ୍ଗ (ଗିରି ଦେହ) ଏସବୁର ଉଦାହରଣ ଆଉ ଦରକାର ନାହିଁ । ଉତ୍କଳ, ଓଡ଼୍, କଳିଙ୍ଗ, ବଙ୍ଗ, ମଗଧ—ଏ ସବୁର ଅର୍ଥ ଥିଲେ ମଧ୍ୟ ଏସବୁ ଶବ୍ଦ ସଂସ୍କୃତ ନୁହେଁ । ଏସବୁ ନାମର ଏବେ ଅର୍ଥ ନାହିଁ । ସେଇପରି ଅସୁର ଶବ୍ଦ । ସୁମେରମାନେ ନିଜର ଦେବତାଙ୍କୁ ମଧ୍ୟ 'ଅସୁର' କହୁଥିଲେ । ସେଇ ଅନୁସାରେ ନଗରର ନାମ ଓ ରାଜାମାନଙ୍କର ଉପାଧି ଥିଲା ଅସୁର । ହୁଏତ ଅସୁର ଅର୍ଥ ଥିଲା, ଦେବତା । ସେଥିପାଇଁ ଇନ୍ଦ୍ର ସୂର୍ଯ୍ୟ ସମସ୍ତେ ମଧ୍ୟ ଅସୁର ନାମ ପାଇଥିଲେ ।

## ସମୁଦ୍ର ମନ୍ଥନ—ଅସୁର—ନାଗ—

ମାତ୍ର ଯେଉଁମାନଙ୍କ ଦେବତା ବା ପ୍ରଧାନ ପୁରୁଷମାନଙ୍କ ନାମ ଅସୁର ଥିଲା ଓ ସେଇ ହେତୁରୁ ହୁଏତ ଯେଉଁମାନଙ୍କୁ ଅସୁର କୁହାଯାଉଥିଲା, ସେମାନେ କିଏ ? ସେମାନେ ଅନାର୍ଯ୍ୟ ବା ଆର୍ଯ୍ୟେତର । ମାତ୍ର ଆର୍ଯ୍ୟେତର କହିଲେ, ସେଥିରେ କେତେ ଜାତି ହୁଏତ ଥିବେ । ସେମାନଙ୍କ ମଧ୍ୟରେ ଏକ ଜାତି ନାଗ । ହୁଏତ ଏମାନେ ସର୍ପ ଦେବତାର ଉପାସନା କରୁଥିଲେ । କାରଣ ସର୍ପ ଭୟ ଏ ଦେଶର ଉଷ୍ଣ ଭୂମିରେ ଚିରନ୍ତନ । ବୃତ୍ରକୁ ବେଦରେ ଅହି କୁହାଯାଇଛି । ବୃତ୍ର ମଧ୍ୟରେ ଅସୁର । ମହାଭାରତ ଓ ରାମାୟଣରେ ଯେଉଁ ସମୁଦ୍ରମନ୍ଥନ ପରଂପରାଗତିର ଉଲ୍ଲେଖ ଅଛି, ସେଥିରେ ସମୁଦ୍ରରୁ ଅମୃତ ତଥା ଧନରତ୍ନସଂଗ୍ରହ କରିବା ପାଇଁ ଦେବତା (ଆର୍ଯ୍ୟ) ମାନେ ଅସୁରଙ୍କୁ ସାଥୀ କରିଥିଲେ । ସେଥିରେ ନାଗ (ସର୍ପାସୁର) ସମୁଦ୍ର ମନ୍ଥନରେ ଦଣ୍ଡ-ରଜ୍ଜୁ ହୋଇଥିଲେ । ତାଙ୍କ ନା ବାସୁକି । ଦେବତାମାନେ ସେଥିରେ ଯେପରି

ଅସୁରମାନଙ୍କୁ ଠକ ଧନ ରତ୍ନ, ଅମୃତ ସବୁ ଆତ୍ମସାତ୍ କରିଥିଲେ, ପୁଣି ମହାଦେବ ଗୋଡ଼ାଇ ଗୋଡ଼ାଇ ଅମୃତଗ୍ରେର କଷ୍ଟକୁ ଧରି ନ ପାରି ଶେଷରେ ନିଜେ ବିଷ ପାନ କରି ନିଜର ଉପାସକ ଅସୁରଙ୍କୁ ଜ୍ୱାଳାରୁ ମୁକ୍ତ କରିଥିଲେ, ସେ କଥା ଏଠାରେ କହିବା ଦରକାର ନାହିଁ ✳ । ସେ ସବୁ ବିଷୟରେ ବହୁତ ଉଦାହରଣ ପୂର୍ବେ ଦିଆ-ଯାଇଛି । ମାତ୍ର ନାଗମାନେ ଏକ ଅନାର୍ଯ୍ୟ ଜାତି ବା ଅସୁର ଥିଲେ, ଏହା ସ୍ପଷ୍ଟ ।

## ଶବର ଓ ଅସୁର—

ପୁଣି ଏକ ଅସୁର 'ଶବର' । ଏଇ ଶବର ଶବ୍ଦହିଁ ପଶ୍ଚିମ ଏସିଆରେ 'ସୁମେର' ହୋଇଥିବାର ଅନୁମାନ କରାଯାଇଛି । ଏଇ ଶବରମାନେ ପ୍ରାଚୀନ ଭାରତରେ ବଡ ଉନ୍ନତ ଜାତି ଥିଲେ । ଏହାର ସୂଚନା ମଧ୍ୟ ଦିଆଯାଇଛି । ଋଗ୍‌ବେଦ ୫. ୨.୭ ରେ ଶୁନଃଶେଫଙ୍କୁ ବନ୍ଧନମୁକ୍ତ କରିଥିବାର ସୂଚନା ଅଛି । ଐତରେୟ ବ୍ରାହ୍ମଣରେ କଥିତ ଶୁନଃଶେଫ ଉପାଖ୍ୟାନରେ ଅଛି, ବିଶ୍ୱାମିତ୍ର ଶୁନଃଶେଫଙ୍କୁ ନିଜର ପୁତ୍ରରୂପେ ଗ୍ରହଣ କରିବାକୁ ଚାହିଁଲେ । ସେଥିରେ ତାଙ୍କ ନିଜର ୫୦ଟି ପୁତ୍ର ନା-ମଂଗ ହେବାରୁ ବିଶ୍ୱାମିତ୍ର ସେଇ ପଶ୍ଚାତ ପୁତ୍ରଙ୍କୁ ଅଭିଶାପ ଦେଲେ, 'ତୁମେ ଆର୍ଯ୍ୟଭୂମି ବାହାରେ ଯାଇ ଅନାର୍ଯ୍ୟ ହୋଇ ରହ ।' ସେଇମାନେ ଆନ୍ଧ୍ର, ପୁଣ୍ଡ୍ର, ଶବର, ପୁଳିନ୍ଦ, ମୁତିଭ ହୋଇ ଅନାର୍ଯ୍ୟଭୂମିରେ ରହିଲେ । (ଐତରେୟ ବ୍ରାହ୍ମଣ ୭.୧୮) । ଅସୁର ପୁରୁ, ଯଦୁ ଓ ତୁର୍ବସୁମାନଙ୍କ ନେତା ବିଶ୍ୱାମିତ୍ରବଂଶ ନିଜେ ଅସୁର ଥିବାର ପ୍ରମାଣ ବେଦରେ ଅଛି ।

ସେ ପୁଣି ଆର୍ଯ୍ୟ ସୁଦାସଙ୍କ ପକ୍ଷ ହୋଇ ଆର୍ଯ୍ୟ ବୋଲି ଆତ୍ମପରିଚୟ ଦେଇଥିଲେ † ପୁଣି ଆର୍ଯ୍ୟ ସୁଦାସଙ୍କ ନେତା ବଶିଷ୍ଠ (ଐତରେୟ ବ୍ରାହ୍ମଣ ୭. ୩୪. ୯; ୮ ୨୧. ୧୧; ସାଂଖ୍ୟାୟନ ଶ୍ରୌତ ସୂତ୍ର-୧୬.୧୧. ୧୪) ସେଇ ବିଶ୍ୱାମିତ୍ରଙ୍କୁ ଆର୍ଯ୍ୟ (ବ୍ରହ୍ମର୍ଷି) ବୋଲି ନ ମାନିବାରୁ ବିଶ୍ୱାମିତ୍ର କପରି ରାଗରେ ତାଙ୍କ ପୁତ୍ରମାନଙ୍କୁ ନାଶ କରିଥିଲେ, ତାହା ମହାଭାରତ ଓ ପୁରାଣ ପାଠକ ମାନେ ଜାଣନ୍ତି । ବିଶ୍ୱାମିତ୍ରଙ୍କ ପୁଅମାନେ ଏଇପରି ଆର୍ଯ୍ୟ ବୋଲାଇ ହେବା ଗାତକ ପସନ୍ଦ ନ କରି ଥିବାର ସୂଚନା ଶୁନଃଶେଫ ଉପାଖ୍ୟାନରୁ ସୂଚିତ ହୁଏ । ଯା ହେଉ, ଶବରମାନେ ଆନ୍ଧ୍ର, ପୌଣ୍ଡ୍ର ପ୍ରଭୃତିଙ୍କ ପରି ବିଶ୍ୱାମିତ୍ରଙ୍କ ଜାତି ବା ଅସୁର, ଏଥିରେ ସନ୍ଦେହ ନାହିଁ ।

---

✳ ମହା-ଆଦି-୧୭-୧୯ ଅଧ୍ୟାୟ; ରାମାୟଣ ବାଲକାଣ୍ଡ ୪୫ଶ ଅଧ୍ୟାୟ ।

† A. P. Banerji Sastri's 'Asura India' p. 39

## ଶଂବରାସୁର—

ଋଗ୍‌ବେଦରେ ଦାସ ଶଂବରର ନାମ ପ୍ରସିଦ୍ଧ । ଅସୁର ଓ ସର୍ପ (ନାଗ) ମାନଙ୍କୁ ବରାବର ଦାସ କୁହାଯାଇଛି । ଶଂବରକୁ ସର୍ପ ମଧ୍ୟ କୁହାଯାଇଛି (ଋ-୩,୪୭) ଶଂବର ସଙ୍ଗେ ଶୁଷ୍ଣ ଓ ପିପ୍ରୁ ପ୍ରଭୃତି ଦାସମାନଙ୍କୁ ଅସୁର କୁହାଯାଇଛି । ଏଇପରି ନମୁଚି ଓ ବର୍ଚି ପ୍ରଭୃତି ଦାସମାନଙ୍କୁ ମଧ୍ୟ ଅସୁର କୁହାଯାଇଛି (ଋ-୧୦,୧୩୧,୭,୯୯) । 'ଶଂବରାସୁର' କଥାଟି ପୁରାଣରେ ପ୍ରସିଦ୍ଧ । ଅନୁମାନ ହୁଏ ଏଇ ବୈଦିକ 'ଶଂବର' ହିଁ ପରବର୍ତ୍ତୀ କାଳର ଶବର ଓ ପଶ୍ଚିମ ଆସିଆର 'ସୁମେର୍' । ଶଂବର ନିଜକୁ ଦେବତା ପରି ବରାବୁଥିଲା (ଋ-୭, ୧୮) । ଏଇ ଶଂବରର ଶତ ସଂଖ୍ୟାରେ ଦୁର୍ଗମାନ ଥିଲା (ଋ-୧, ୧୩୦; ୨, ୧୪, ୧୯) । ଏଇ ଦୁର୍ଗମାନ ଭାଙ୍ଗି ବୃହସ୍ପତି ଶଂବରର ଧନରତ୍ନପୂର୍ଣ୍ଣ ପର୍ବତଦେଶରେ ପ୍ରବେଶ କରିଥିଲେ (ଋ-୨, ୨୪) । ଇନ୍ଦ୍ର ମଧ୍ୟ ଆସି ଦେବଦାସ ଓ ଅତିଥିଗ୍ୱଙ୍କ ସ୍ୱାର୍ଥରେ ଏଇ ଶଂବରକୁ ପରାସ୍ତ କରିଥିଲେ (ଋ-୧,୫୧; ୨, ୧୯; ୧, ୧୩୦; ୪, ୨୬) । ଏଭଳି ପ୍ରବଳପରାକ୍ରାନ୍ତ ସମୃଦ୍ଧିଶାଳୀ ପର୍ବତଦେଶବାସୀ ଶଂବର, ଶବର ଜାତିର ନେତା ଥିବାରୁ ଅନୁମାନ ହୁଏ ।

## ଇତିହାସରେ ଶବର—

ଇତିହାସରେ ମଧ୍ୟ ଏଇ ଶବରମାନେ ବଡ଼ ପ୍ରସିଦ୍ଧ ଥିଲେ । ଐତରେୟ ବ୍ରାହ୍ମଣରୁ ଶବରମାନେ ବିଶ୍ୱାମିତ୍ର ବଂଶ ଥିବା କଥା କୁହାଯାଇଛି । ରାମାୟଣ କହନ୍ତି ରାମ ସେମାନଙ୍କୁ ମଧ୍ୟଭାରତରେ ଭେଟିଥିଲେ । ଗୋଟିଏ ବୃଦ୍ଧ କୂଳେ ଶବରୀ ବହୁକାଳ ଅପେକ୍ଷା କରି ଶେଷରେ ରାମଙ୍କୁ ଭେଟିଥିଲା । ମହାଭାରତ ଶାନ୍ତିପର୍ବରେ ଅଛି, ଶବର-ମାନେ ଦସ୍ୟୁମାନଙ୍କ ସଙ୍ଗେ ନାନା କ୍ରୂରକର୍ମରତ ଥିଲେ । (ଅସୁର, ଦସ୍ୟୁ, ଦାସ, ସର୍ପ—ଏ ସବୁ ବେଦରେ ଏକ ଲୋକ ବା ଜାତି ପ୍ରତି ପ୍ରୟୋଗ କରା ହୋଇଛି । ଦାନବ ରାକ୍ଷସ ଦୈତ୍ୟ ପ୍ରଭୃତି ମଧ୍ୟ ସେଇ ଅର୍ଥରେ ପରେ ବେଦ ତଥା ପୁରାଣାଦିରେ ବ୍ୟବହୃତ । ଏହା ଏଠାରେ ଉଲ୍ଲେଖଯୋଗ୍ୟ ) । ପୁରାଣରେ ଶବରମାନଙ୍କୁ 'ବିନ୍ଧ୍ୟ—ମୌଳିକ' କୁହାଯାଇଛି । ଗ୍ରୀକ୍ ଐତିହାସିକ ପ୍ଲିନି ତାଙ୍କୁ 'ସୁଆରି', ଓ ଟଲେମି ତାଙ୍କୁ 'ସବରାଇ' ବୋଲି ଉଲ୍ଲେଖ କରିଚନ୍ତି । ଅନେକ ଐତିହାସିକ ଲେଖାରେ ଶବର-ରାଜ କଥାଟି ଦେଖିବାକୁ ମିଳେ । ଉଦୟେନ୍ଦ୍ରିରାମ ତାମ୍ରଲେଖ ପଲ୍ଲବରାଜ ନନ୍ଦିବର୍ମନ୍ ପଲ୍ଲବମଲ୍ଲଙ୍କ ରାଜତ୍ୱର ୨୧ଶ ବର୍ଷରେ ପ୍ରସ୍ତୁତ ହୋଇଥିଲା । ସେ ଶବର-ରାଜ ଉଦୟନଙ୍କୁ ପରାସ୍ତ କରିଥିବାର ସେଥିରେ ଲେଖା ଅଛି । ପଶ୍ଚିମ ଗଙ୍ଗରାଜ ୨ୟ ମହାସିଂହଙ୍କ ତାମିଲ୍ ପ୍ରଶସ୍ତିରେ ଅଛି ଯେ ୨ୟ ନରସିଂହ ( ୯୬୩-୯୭୪ ଖ୍ରୀ ) ଶବରରାଜ ନରଂଗଙ୍କୁ ପରାସ୍ତ କରିଥିଲେ । ବାଣଭଟ୍ଟଙ୍କ ହର୍ଷଚରିତ ଓ ବାକ୍‌ପତିରାଜଙ୍କ ଗୌଡ଼ବାହରେ ଶବରରାଜମାନଙ୍କର ଉଲ୍ଲେଖ ଅଛି । ଏବର ଶବରମାନଙ୍କର ପାହାଡ଼

ଉପରେ ଧାନ କଆଶ ଉଆର କରିବାରେ ବଡ଼ ସୁନ୍ଦର କୌଶଳ ଦେଖାଯାଏ । ସେମାନେ ଏବେ ବଶୋଇମାନଙ୍କ ଦ୍ୱାରା ଶାସିତ ହୁଅନ୍ତି । ଏଇ ବଶୋଇମାନେ ପୂର୍ବେ ରାଜପୁରୁଷ ଥିଲେ । ଏମାନେ ଅନେକେ ଏବେ ଓଡ଼ିଆଙ୍କୁ ନିଜର ଭାଷା କରିନେଇ ପୂରା ହିନ୍ଦୁ ପାଲଟି ଯାଇଚନ୍ତି । ଶବରମାନେ ଓଡ଼ିଆଙ୍କ ଭଳି ଗୌରବର୍ଣ୍ଣ ଓ ସୁନ୍ଦର; ତେଣୁ ସମଭୂମିର କଳା ତେଲେଙ୍ଗାଙ୍କଠୁ ଢେର ଗୋରା । ଏଇ ଶବରମାନେ ଏବେ ଓଡ଼ିଶାରେ ଖୁବ ଜଣାଶୁଣା ଓ ସଂଖ୍ୟାରେ ବହୁତ । ସେମାନେ ଗୁଣି ଜଡ଼ି ହିଟମିଟ ବିଦ୍ୟାରେ ନିପୁଣ । ଏଇ ବିଦ୍ୟାକୁ ଓଡ଼ିଶାରେ 'ଶାବରୀ-ବିଦ୍ୟା' କହନ୍ତି । ପରଂପରା କହେ ପୁରୀର ଜଗନ୍ନାଥ ଶବର-ଦେବତା ଥିଲେ । ଏବେ ଜଗନ୍ନାଥଙ୍କ ଏକଶ୍ରେଣୀର ସେବାଏତ ସେଇ ଶବର ବଂଶ । ଭରତଙ୍କ ନାଟ୍ୟଶାସ୍ତ୍ରରେ ଓଡ୍ରଙ୍କ ସଙ୍ଗେ ଶବରଙ୍କ ଉଲ୍ଲେଖ ଅଛି । ସେଥିରେ ସେମାନେ କାଠ କୋଇଲା ବ୍ୟବହାର କରୁଥିବାର ଲେଖାଅଛି । ରମେଶଚନ୍ଦ୍ର ମଜୁମଦାରଂକ ମତରେ ସମ୍ବଲପୁରର ଚଂହାଲମାନେ ଶବର ବଂଶୀୟ * ।

## ପୂର୍ବଭାରତ ତଥା ଓଡ଼ିଶା ଶବରଦେଶ—

ଏଥିରୁ ସ୍ପଷ୍ଟ ବୁଝାଯାଉଚି, ଓଡ଼ିଶା ବହୁକାଳରୁ ଶବରଦେଶ । ଓଡ୍ର, କଳିଙ୍ଗ, ଉତ୍କଳ ସମସ୍ତେ ମୂଳତଃ ଶବରସଭ୍ୟତାର ଉତ୍ତରାଧିକାରୀ । ବୌଦ୍ଧର ଶୂନ୍ୟବାଦ ଆଦିମ ଅସୁରସଭ୍ୟତା ଥିବା କଥା ପୂର୍ବେ ସୂଚିତ ହୋଇଚି । ସେଇ ସମ୍ପର୍କରେ ବୁଦ୍ଧଦନ୍ତ ଓ ଜଗନ୍ନାଥଙ୍କର ସଂକେତ ଦିଆଯାଇଚି । ଏଠାରେ ସେଇକଥା ବିଶେଷ କରି ବୁଝାଇ ଦେଲେ ଓଡ଼ିଶା ପରଂପରାର ଧାରାଟି ବୁଝିବା ସୁଗମ ହେବ ।

## ଶବରଭୂମିରେ ଶାକ୍ୟମୁନି—ବୁଦ୍ଧ—

ପ୍ରଥମ କଥା ଶବରାଦି ବିଶ୍ୱାମିତ୍ର ବଂଶୀୟମାନଙ୍କ ଭୂମିରେ ସିଦ୍ଧାର୍ଥ ବୁଦ୍ଧତ୍ୱ ପାଇଥିଲେ । ସଂକେତରେ କୁହାଯାଇଚି ଏଇ ବୁଦ୍ଧ ଜଣେ ନୁହନ୍ତି । ଏଇ ସିଦ୍ଧାର୍ଥ ବୁଦ୍ଧଙ୍କୁ 'ଶାକ୍ୟମୁନି' କହନ୍ତି । ତାଙ୍କର ବହୁପୂର୍ବରୁ ଜ୍ଞାନୀ ଅର୍ଥରେ ପାରିଭାଷିକ ରୂପେ ବୁଦ୍ଧ ଶବ୍ଦ ଏ ଦେଶରେ ଚଳୁଥିଲା । ମହାଭାରତରେ 'ବୁଦ୍ଧ' ଓ 'ପ୍ରତିବୁଦ୍ଧ' ଶବ୍ଦ ଅନେକ ସ୍ଥାନରେ ବ୍ୟବହୃତ ହୋଇଚି (ମହା-ଶାନ୍ତିପର୍ବ-୧୯୪.୫୮, ୩୦୭, ४୭; ୩४୩. ୫୨) । ସେ ସବୁଠାରେ ଏହାର ଅର୍ଥ ଜ୍ଞାନୀ, ଜ୍ଞାନବାନ୍ ଅଥବା ସ୍ଥିତପ୍ରଜ୍ଞ ବ୍ୟକ୍ତି । ବୌଦ୍ଧଧର୍ମରୁ ଏ ଶବ୍ଦ ନିଆଯାଇଚି ବୋଲି ମନେ ହୁଏ ନାହିଁ † ।

---

* R. D. Banerji History of Orissa, p.p 20-22.

† ତିଲକ୍ 'ଗୀତାରହସ୍ୟ' ବଙ୍ଗସଂସ୍କରଣ ୫୬୧ ପୃଷ୍ଠା—'ବର୍ତ୍ତମାନ ଗୀତାର କାଳ' ପ୍ରସଙ୍ଗ ଦେଖ ।

ପୁଣି 'ଟିଳକ୍' ନିଜର 'ଗୀତାରହସ୍ୟ'ର ଗୀତା ଓ ବୌଦ୍ଧଧର୍ମ ପ୍ରସଙ୍ଗରେ ପ୍ରମାଣ କରି ଦେଖାଇଛନ୍ତି, 'ଗୀତା' ଶାକ୍ୟମୁନି-ବୁଦ୍ଧଙ୍କ କାଳରୁ ବହୁ ପ୍ରାଚୀନ । 'ନିର୍ବାଣ' ଶବ୍ଦ ତଥା କର୍ମତ୍ୟାଗ-ସନ୍ନ୍ୟାସ, କର୍ମବିପାକ (କର୍ମର ପରିଣାମରେ ଜନ୍ମ) ଆଦି ବୌଦ୍ଧ ସାଧନା ଓ ବିଶ୍ୱାସ ଏ ଦେଶରେ ଥିଲା । ଗୀତାର 'ବ୍ରହ୍ମନିର୍ବାଣ' କଥାଟି (୨. ୭୨, ୫. ୨୪-୨୬) ଛାନ୍ଦୋଗ୍ୟ ଉପନିଷଦରେ ମିଳେ (ଛାନ୍ଦୋଗ୍ୟ ଉପ ୨. ୨୩୧) ଗୀତାରେ ମଧ୍ୟ ବିଶୁଦ୍ଧ 'ନିର୍ବାଣ' କଥାଟିର ପ୍ରୟୋଗ ଅଛି । (୬. ୧୫ ଓ ବ୍ୟା: ସୂ: ଦେଖ) । ଅତଏବ ବୌଦ୍ଧଧର୍ମ 'ଶାକ୍ୟମୁନି'ଙ୍କ ଠାରୁ ହୋଇ ନାହିଁ । ବହୁପୂର୍ବରୁ ସେ ଧାରଣା, ବିଶ୍ୱାସ ଓ ସାଧନା ଏ ଦେଶରେ ଚାଲୁଥିଲା । ୫୫୦ ଟି ବୁଦ୍ଧ ଜାତକର ଉପାଖ୍ୟାନ ଅଛି । ସେଥିରେ 'ବୋଧି-ସତ୍ତ୍ୱ'ଙ୍କର ୫୫୦ ଜନ୍ମ ହୋଇଥିବାର କଥାଟିମାନ ଅଛି । 'ବୋଧିସତ୍ତ୍ୱ' ବୋଇଲେ, 'ବୁଦ୍ଧ' ହେବା ପାଇଁ ସାଧନାରେ ଯେ ଅଧିକାରୀ । ଏହା ଛଡ଼ା ଶାକ୍ୟମୁନି ବା ଶାକ୍ୟସିଂହଙ୍କ ପୂର୍ବରୁ ଏଇ କଳ୍ପ (ମହାଭଦ୍ର କଳ୍ପ) ରେ ଶାକ୍ୟସିଂହଙ୍କ ଛଡ଼ା ଆଉ ତିନୋଟି ବୁଦ୍ଧ ହୋଇ ଥିବାର ପରଂପରା ବୌଦ୍ଧ ସାହିତ୍ୟରେ ଅଛି । ଏମାନେ ସମସ୍ତେ ପୁରାଣକଥିତ କଳିଯୁଗରେ ଆବିର୍ଭୂତ ହୋଇଛନ୍ତି । ଏମାନେ—ଏକକ୍ରୁନ୍ଦ-ବୁଦ୍ଧ (୩୧୦୧ ଖ୍ରୀ: ପୂ:); କନକମୁନି (୨୦୯୯ ଖ୍ରୀ: ପୂ); କାଶ୍ୟପ ବୁଦ୍ଧ; (୧୦୧୪ ଖ୍ରୀ: ପୂ: ); ଶାକ୍ୟସିଂହ-ବୁଦ୍ଧ (୫୬୩ ଖ୍ରୀ: ପୂ: ) ଏହା ପୂର୍ବେ ଅନ୍ୟାନ୍ୟ ୬ କଳ୍ପରେ ଅନ୍ୟ ବୁଦ୍ଧମାନଙ୍କର ଆବିର୍ଭାବ ହୋଇଥିଲା । ଏଇ କଳ୍ପ ଧାରଣାରୁ ପରେ ପୁରାଣର କଳ୍ପଧାରଣା ବାହାରିଥିବା ସମ୍ଭବ । ( ୮. ୧୬ ଓ ବ୍ୟା: ସୂ: ଦେଖ ) ।

## ବୌଦ୍ଧଧର୍ମ ଲୋକଧର୍ମ—

ପୁଣି ଏଇ ବୌଦ୍ଧଧର୍ମ ଏ ଦେଶରେ ଲୋକଧର୍ମ । ସଂସ୍କୃତ ଏ ଦେଶର ଧର୍ମ ଓ ସଭ୍ୟତାର ଭାଷା ଥିଲେହେଁ, ବୁଦ୍ଧ ଲୋକଭାଷା ବା ପ୍ରାକୃତରେ ନିଜର ଧର୍ମ ପ୍ରଚାରିତ କରିଥିବା କଥା ଏଠାରେ ସ୍ମରଣୀୟ । ଆଉର ମଧ୍ୟ ଏଇ ବୌଦ୍ଧଧର୍ମ ସଙ୍ଗେ ଶିବ-ଶକ୍ତି ଧର୍ମର ନିତ୍ୟ ସମ୍ବନ୍ଧ । ଶିବ, 'ବୁଦ୍ଧ' ସେ ସଂସାରର ତ୍ୟାଗୀ, ଶ୍ମଶାନବାସୀ ସିଦ୍ଧଯୋଗୀ । ବୁଦ୍ଧ ଜଗତର ଦୁଃଖ ବନ୍ଧନ କରିବାରେ ରାଜ୍ୟ ଐଶ୍ୱର୍ଯ୍ୟ ଛାଡ଼ି ବନବାସୀ ଓ ଅପାଂକ୍ତେୟ । ଶିବ ମଧ୍ୟ ଲୋକର ବ୍ୟଥା ନାଶରେ ବିଷପାୟୀ 'ନୀଳକଣ୍ଠ' । ଶିବ ମହାଭିକ୍ଷୁ, ରତ୍ନକାଂଚନତ୍ୟାଗୀ ମହାଯୋଗୀ । ସେ ମହାନର୍ଘ୍ୟ ଶ୍ରେଷ୍ଠ । ସେ ପୁଣି ଆଭିଜାତ୍ୟ ଓ ଦେବ ଗୌରବବହିର୍ଜ୍ଜନକାଙ୍କ୍ଷୀ—ଅପାଂକ୍ତେୟ । ସେ ଦିଗମ୍ବର—ମହାଭୟ ଭିତରେ ଚିର ଅଭୟ ମୃତ୍ୟୁ ମଧ୍ୟରେ ଅମୃତ । ସେଇ ରୁଦ୍ର, ସେଇ ଶିବ । ସୃଷ୍ଟିଧର୍ମର ପ୍ରତୀକ ରୂପେ ସେଇ ପୁଣି ଅର୍ଦ୍ଧନାରୀଶ୍ୱର ✳ ।

✳ ବୌଦ୍ଧଧର୍ମ ଏ ଦେଶରେ ଶୈବଧର୍ମରେ ପରିଣତ ହୋଇଥିବା ବିଷୟରେ ବିଶେଷରେ—E. V. Havell's 'The Indo Aryans' ଦେଖ ।

## ଜନସାଧନାର ପ୍ରତୀକ-ଶିବଲିଙ୍ଗ—

ବୌଦ୍ଧ ଭାବ ଭାବନଧର୍ମର ତତ୍ତ୍ୱ । ପୁଣି 'ଶିବ' ଜନ-ସାଧନାର ପ୍ରତୀକ । ଏଇ ଧର୍ମ ସଙ୍ଗେ ଏ ଦେଶରେ ତନ୍ତ୍ରର ନିତ୍ୟ ସମ୍ବନ୍ଧ । ନର ନାରୀର ସମାଗମ ଓ ସଙ୍ଗମରେ ନିର୍ବାଣ ବା ଶୂନ୍ୟ ସାଧନା ଏଇ ତନ୍ତ୍ରର ମୂଳ, ସେ ବିଷୟରେ ବେଶି କହିବା ଦରକାର ନାହିଁ । ଭଗବାନ୍ ୧୬ଶ ଅଧ୍ୟାୟରେ ଯେଉଁ ଆସୁରୀ ସମ୍ପଦର କଥା କହିଛନ୍ତି, ତାହା'ର ଲୌକିକ ବିକାଶ ତନ୍ତ୍ରସାଧନା । ଜ୍ଞାନୀ ବା ବୁଦ୍ଧର ତତ୍ତ୍ୱମୂଳକ ଯୋଗସାଧନା ଲୋକର କର୍ମଚେତନା ନୁହେଁ । ତେଣୁ ଲୋକରେ କାମନା ଓ ତୃଷ୍ଣା ଏବଂ ତନ୍ତ୍ରର ସ୍ୱାଭାବିକତା । ପରେ ବୈଷ୍ଣବ ଭକ୍ତିଧର୍ମର ବ୍ରଜଲୀଳାର 'କିଶୋରୀପୂଜା', ରାସକ୍ରୀଡ଼ା ଓ ଗୋପୀଙ୍କ ବସ୍ତ୍ରହରଣାଦି ଏଇ ତନ୍ତ୍ରସାଧନାର ପରିଣାମ, ଏହା ସର୍ବବାଦି-ସମ୍ମତ । ପଶ୍ଚିମ ଏସିଆ ତଥା ମିଶରରେ ଏଇ ଲିଙ୍ଗଯୋନି ପୂଜା ଓ ତନ୍ତ୍ରସାଧନା ବହୁବ୍ୟାପ୍ତ ଥିବାର ପ୍ରମାଣ ମଧ୍ୟ ମିଳେ । ଦ୍ରାବିଡ଼ମାନଙ୍କ ଭିତରେ ତଥା କେତେକ ପରିମାଣରେ ଓଡ଼ିଶାରେ ଦେବଦାସୀ ପ୍ରଥା ଅଛି । ପ୍ରାଚୀନ ସୁମେର ସଭ୍ୟତାରୁ ଉଦ୍‌ଗତ ବାବିଲନରେ ଏଇ ରୀତିଟି ଅତି ସ୍ୱାଭାବିକଭାବରେ ପରମ୍ପରାରେ ପ୍ରତିଷ୍ଠିତ ଥିଲା । ଏଇ ରୀତିରେ 'କିଶୋରୀପୂଜା' ଅତି ସ୍ୱାଭାବିକଭାବରେ ସମାଜର ବିଧିରୂପେ ଚଳୁଥିଲା । କୌଣସି ନାରୀ ଦେବମନ୍ଦିରରେ ରହି ପ୍ରଥମେ ଧାର୍ମିକଭୋଗ୍ୟା ନ ହୋଇ ବିଭା ହୋଇ ପାରୁ ନ ଥିଲେ । ବଡ ବଡ଼ ଘର ଝିଅମାନେ ଏଥିପାଇଁ ଆସି ମନ୍ଦିରରେ ଅପେକ୍ଷା କରି ରହୁଥିଲେ । ଅସୁନ୍ଦରୀମାନେ ଏଇପରି ଧାର୍ମିକଟିଏ ପାଇବା ଅପେକ୍ଷାରେ ୩।୪ ବର୍ଷ ମନ୍ଦିରରେ ଅପେକ୍ଷା ମଧ୍ୟ କରୁଥିଲେ । ବଡ଼ ସାନ ଯେ କୌଣସି ଶ୍ରେଣୀର କନ୍ୟା ଏଇପରି ଅପରିଚିତଙ୍କୁ ଜୀବନରେ ଆତ୍ମଦାନ ନ କରି ସଂସାରରେ ପ୍ରବେଶାଧିକାର ପାଉ ନ ଥିଲେ । ଏହା ଛଡ଼ା ଧର୍ମ ନାମରେ ନାରୀପୁରୁଷର ସେ ଦେଶମାନଙ୍କରେ ଯେଉଁ ଯଥେଚ୍ଛାଚାର ହେଉଥିଲା, ତାହା ଏଠାରେ ବର୍ଣ୍ଣନା କରି ହେବ ନାହିଁ * । ଏହାହିଁ ଏ ଦେଶର ବୌଦ୍ଧ ବଜ୍ର ଓ ସହଜଯାନର ତନ୍ତ୍ରଲୀଳା । ଏହା ଏ ଦେଶରେ ପ୍ରାଚୀନ ସଂସ୍କୃତିର ଅପସ୍ମୃତିର ଅବଶେଷ ।

## ମିଶର ବାବିଲନ୍‌ରେ ଭାରତ ଧର୍ମ—

'ଜୀବେ ଦୟା' ବୌଦ୍ଧ ଧର୍ମର ଗୋଟିଏ ବିଶେଷ ସାଧନା । ଜୈନମାନେ ଏଇ ସାଧନାଟି ଏକାବେଳକେ ଜୀବନର ଏକମାତ୍ର ଧର୍ମ ସାଧନାରେ ପରିଣତ କରିଥିଲେ ହେଁ, ବୌଦ୍ଧମାନେ 'ଜୀବେ ଦୟା' ମନ୍ତ୍ରରେ ପୂର୍ଣ୍ଣ ଦୀକ୍ଷିତ ଥାଇ ମଧ୍ୟ ମାଂସଭୋଜନ କରୁଥିଲେ । ପ୍ରାଚୀନ ଭାରତର ଏଇ ସଂସ୍କୃତି ଆଗନ୍ତୁକ ବେଦଧର୍ମୀଙ୍କ ଆଶ୍ରୟରେ ସେକାଳେ ଲୋପ ପାଇଥିଲା । ମାତ୍ର ଆଜକୁ ଦୁଇ ହଜାର ବର୍ଷ ତଳେ ଗ୍ରୀକ୍ ଡିଓଡ଼ରସ୍ (Deodorus) ଲେଖିଛନ୍ତି—"ମିଶରୀୟମାନେ ଜନ୍ତୁମାନଙ୍କର ପୂଜା କରୁଥିଲେ ।

---

* Historian's 'History of the world' vol. I p. 478

ମଲେ ମଧ୍ଧ କେତେ ଜୀବଙ୍କୁ ସମ ସ୍ରେହରେ କବର ଦେଉଥିଲେ । ବିରାଟ ଜନ୍ତୁଶାଳା-ମାନ ନିର୍ମାଣ କରି, ସେମାନେ ଏଇ ଜନ୍ତୁମାନଙ୍କର ଖାଦ୍ୟପେୟ ଓ ତତ୍ତ୍ୱାବଧାନରେ ବହୁତ ମନଯୋଗୀ ଥିଲେ ।" ଓସିରସ୍ (ଈଶ୍ୱର; ଅସୁର ?) ଏଇ ମିଶରୀୟମାନଙ୍କର ପ୍ରଧାନ ଦେବତା ଥିଲେ । ବୃଷଭ ଏଇ ଓସିରସ୍‌ଙ୍କର ବାହାନ ଥିଲା । ପୁଣି ଏଇ ଓସିରସ୍‌ଙ୍କ ପତ୍ନୀ ଥିଲେ, ଇସିସ୍ (ଉଷା ?) । ହେଲେହେଁ ଏଇ ମିଶରୀୟମାନେ ପୂଟଙ୍କ ପଶୁ ବଳି ଦେଇ ସେଇ ମାଂସ ମଧ୍ଧ ଖାଉଥିଲେ ।

ବାବିଲନ୍ ମିଶର ପ୍ରଭୃତି ଦେଶରେ ପ୍ରାଚୀନ କାଳରେ ଲିଙ୍ଗ-ଯୋନିର ପୂଜା ପ୍ରଚଳିତ ଥିଲା । ତିଆମତ୍ (ତମସ୍) ବାବିଲନ୍‌ର ବଡ଼ ଦେବତା ଥିଲେ । ଏଇ ତିଆମତ୍ ହିଁ ସେମାନଙ୍କର ମତରେ ସୃଷ୍ଟିର ମୂଳ * ।

## ବୌଦ୍ଧର ଧ୍ୟାନସାଧନା ଓ 'ଭକ୍ତି-ଧର୍ମ'— ଜୀବେ ଦୟା— ନାମରୂପ—

ଆଉ ଗୋଟିଏ କଥା ଏଠାରେ କହି ରଖିବା ଦରକାର । ଧ୍ୟାନ ଯୋଗର ମୂଳ ପ୍ରାଚୀନ ବୌଦ୍ଧସାଧନାରେ ଦେଖାଯାଇଛି । ସେଇଥିରୁ ଭକ୍ତିଧର୍ମ । ଏହି ଭକ୍ତିଧର୍ମ ଏବେ ବୈଷ୍ଣବଧର୍ମ ରୂପେ ଏ ଦେଶରେ ପରିଚିତ । ବସ୍ତୁତଃ ବୌଦ୍ଧର ଜ୍ଞାନ ଓ ତ୍ୟାଗ ଶୈବଧର୍ମ ଓ ଧ୍ୟାନ ବୈଷ୍ଣବଧର୍ମରେ ପରିଣତ ହୋଇଥିବା କଥା ସ୍ୱାଭାବିକ † । ଏଇ ଭକ୍ତିଧର୍ମରେ ଏବେ 'ଜୀବେ ଦୟା' ଓ 'ନାମେ ଭକ୍ତି' ଦୁଇଟି ସାଧନ । ଯେ କୌଣସି ତତ୍ତ୍ୱ ସାଧନା ବିଶ୍ୱଧର୍ମର ସାଧନା । ବିଶେଷରେ ଶୂନ୍ୟ ମୂଳ ସାଧନାରେ ବ୍ୟକ୍ତିର କାମନାର ନିରୋଧ ସହଜ ନୁହେଁ । ସେଥିପାଇ ସେଥିରେ 'ଜୀବେ ଦୟା'ର ଉପଯୋଗିତା ସ୍ୱାଭାବିକ ହେଉ ବା ନ ହେଉ ଅବଶ୍ୟ ଧେୟ । 'ଜୀବେ ଦୟା' ବିନା ସେ ଧର୍ମରେ କାମନାର ଦୁରନ୍ତ କ୍ରିୟାରେ ସମାଜର ସ୍ଥିତି ବିଶୃଂଖଳ ହେବ । ମାତ୍ର ବିଶାଳବପୁ ଅସୁର ସଭ୍ୟତାରେ ସମାଜ ବିଶୃଂଖଳ ନ ଥିଲା । 'ଜୀବେ ଦୟା'ର ସାଧନା ଏ ସଭ୍ୟତାର ସ୍ଥାୟୀ ପୀଠ ଥିଲା । ମିଶରଠାରୁ ଭାରତର ବୌଦ୍ଧ ଓ ଜୈନ ଧର୍ମର ଏଇ ପରଂପରା ସ୍ପଷ୍ଟ । ଗୀତାର ଆର୍ଯ ତଥା ବେଦଧର୍ମରେ ଏହାର ଏକାନ୍ତ ସ୍ୱାଭାବିକ ପରିଷ୍କାର କଥା କୁହାଯାଉଛି । ମାତ୍ର 'ନାମେ ଭକ୍ତି'ଟି କ'ଣ ? ଓଡ଼ିଶାର ଧର୍ମରେ ଏଇ 'ନାମେ ଭକ୍ତି' କଥାଟିର ବ୍ୟବହାର ସାର୍ବଜନୀନ । ପରେ କୁହାଯିବ କିପରି ସେମାନଙ୍କ ତତ୍ତ୍ୱ ଧାରଣା ଓ ବିକାଶ ବ୍ୟାଖ୍ୟାରେ ପ୍ରଥମେ ବିନ୍ଦୁ, ତହୁଁ ନାଦ ଓ ନାଦରୁ ନାମର ପ୍ରକାଶ ହିଁ ଯୋଗୀମାନେ ଆରାଧନା କରନ୍ତି । ପିଣ୍ଡାର ଶୁନ୍ୟ ବିନ୍ଦୁରୁ ଶବ୍ଦର ଉତ୍ପତ୍ତି ଓ ତହିଁରୁ ଶିଶୁ । ଏଇ ଶିଶୁ ନାମ ଛଡ଼ା ଆଉ କିଛି ନୁହେଁ । କାରଣ ମୂଳରେ ଯେ ଶୂନ୍ୟ । ଶୂନ୍ୟରୁ ପ୍ରକାଶ ସମ୍ଭବ ନୁହେଁ । ତେଣୁ ପ୍ରକାଶ କେତେଗୁଡ଼ିଏ

* A. C. Das's 'Rigvedic India', pp. 234; p. 278.
† Sir E. V. Havell's 'The Indo-Aryans'.

ନାମ ଛଡ଼ା ଆଉ କିଛି ନୁହେ । ଏଇ ନାମ କିପରି ପ୍ରକାଶ ପାଏ ? ଶବ୍ଦ ବା କଥାରେ ଗ୍ରାମ, ବା ସିଂହ, କହିଲେ ଗୋଟିଏ ଗୋଟିଏ ନାମ ଛଡ଼ା ଆଉ କିଛି ନାହିଁ । ବ୍ୟକ୍ତିର ଏଇ ଗ୍ରାମ, ସିଂହ ପ୍ରଭୃତି ଜ୍ଞାନ ରୂପେ ଯେ ଭ୍ରମ ହୁଏ ତା ଏକା ନାମରେ ଶବ୍ଦ ମାଧ୍ୟମରେ ପ୍ରକାଶିତ ହୁଏ । ତା ଛଡ଼ା ଏଥିରେ ଆଉ କିଛି ପଦାର୍ଥ ନାହିଁ । ଏଇ ନାମ ସଙ୍ଗେ 'ରୂପ' ଯୋଡ଼ି ଦେଇ ପରେ ବୈଦିକ ଦର୍ଶନ ବିକାଶର ବିଭିନ୍ନ ବ୍ୟକ୍ତିତ୍ୱ ପ୍ରକାଶ କଲେ । ସେମାନେ କହିଲେ ଏଇ ଜଗତ ଏଇ ନାମରୂପମୟ ବିକାଶ । ମାତ୍ର ଯଥାର୍ଥରେ ବ୍ରହ୍ମବସ୍ତୁର ବ୍ୟକ୍ତିରେ ପ୍ରକାଶକୁ ରୂପମୟ ବୋଲି କୁହାଯାଇ ପାରେ । ମାତ୍ର ନାମଟି କଣ ? ବ୍ୟକ୍ତିକୁ ଆମେ ଗୋଟିଏ ନାମରେ କହୁ ମାତ୍ର । ନାମଟି ବସ୍ତୁ ନୁହେ । ମାନବ ପରସ୍ପରକୁ କହିବା ପାଇଁ ଏହା ଏକ ସଙ୍କେତ ମାତ୍ର । ବସ୍ତୁତତ୍ତ୍ୱ-ବାଦୀଙ୍କ ପରୀକ୍ଷାରେ ଯଥାର୍ଥରେ ଏ ନାମଟି ଆଗନ୍ତୁକ ପରି ଜଣାପଡୁଛି । ନାମ—ସଙ୍କେତ ବସ୍ତୁ ନୁହେ । ମାତ୍ର ପରଂପରାର ଅନୁସରଣରେ ବିଶ୍ୱକୁ 'ନାମ ରୂପ' କୁହାଯାଏ ।

## ଶବ୍ଦ-ଓଁ —

ସେଇ ଅନୁକରଣରେ ବ୍ୟାପ୍ତି ମୂଳ ତତ୍ତ୍ୱକୁ ମଧ୍ୟ ଉଠିଛି । ମୀମାଂସକମାନେ ତେଣୁ ଶବ୍ଦକୁ ସବୁ ବୋଲି କହନ୍ତି । ବ୍ରହ୍ମର ଆଦି ପ୍ରକାଶ ବେଦର ଶବ୍ଦ ମାତ୍ର । ଏଇ ଶବ୍ଦ ବ୍ରହ୍ମ ଅତିକ୍ରମ କଲେ ବ୍ରହ୍ମ ମିଳନ୍ତି । ଏଇ ଶବ୍ଦ ତେବେ କଣ ? (୬.୪୪) । ଏଇ ଶବ୍ଦହିଁ ସଗୁଣ ବ୍ରହ୍ମ ବା ବ୍ରହ୍ମା ଅଥବା ପ୍ରକୃତି । ଏହି ଶବ୍ଦ ହିଁ ତେଣୁ ନାମରୂପର ମୂଳ । ଏଥିରେ ନାମ ପ୍ରଥମେ ରୂପରେ ପ୍ରକାଶ ପାଉଛି । ବ୍ରହ୍ମର ଏଇ ନାମ ହେଉଛି 'ଓଁ' । (୩. ୧୫;୮, ୧୩) । ଦର୍ଶନ ଧାରଣାରେ 'ଓଁ' ପ୍ରତୀକ ବା ସଙ୍କେତ ବୋଲି କୁହାଗଲେ ମଧ୍ୟ, ଏଇ 'ଓଁ' ରୁ ସବୁ ବିକାଶ ପାଇଛି । ଏହାହିଁ ଯଥାର୍ଥ ବିଶ୍ୱବସ୍ତୁର ନାମ ଓ ବେଦ ଏହାର ରୂପ ବୋଲି ମୀମାଂସକଙ୍କର ଧାରଣା । କୁହାଯାଇଛି ସବୁ ମତ, ଧର୍ମ ଓ ଆସ୍ଥାରର ସମାଧାନ ହିଁ ଭାରତ ସଭ୍ୟତାର ପ୍ରକୃତି । ଏଠାରେ ମଧ୍ୟ ସେ ଜୀବନ୍ତ ସମାଧାନ ଦେଖାଯାଏ ।

## ଓଡ଼ିଶାରେ ଶବର ଧର୍ମର ଧାରା ଜଗନ୍ନାଥ—

ସେ ଯା ହଉ, ଏବ ଶୈବ ତନ୍ତ୍ର ପ୍ରଭୃତି ସବୁ ଧର୍ମର ମୂଳକୁ ବୌଦ୍ଧ ଧର୍ମ କୁହାଯାଇପାରେ । ଏହା ଅନାର୍ଯ ଓ ଅସୁର ଧର୍ମ । ଭାରତର ଯେଉଁ ଅସୁରସଭ୍ୟତା ପୃଥିବୀର ସେକାଳରେ ସମସ୍ତ ସଭ୍ୟଦେଶରେ ବ୍ୟାପୀଥିଲା, ଏଇ ବୌଦ୍ଧଧର୍ମ ତାହାର ମୂଳ । ଏହାହିଁ ଶବର ଧର୍ମ । ଶବର ଓ ଅସୁର ଏକ । ଏହାର ମଧ୍ୟ ସଙ୍କେତ ଦିଆ-ଗଲା । ଏବେ ଏଇ ଅସୁର ବା ଶବର ଧର୍ମର ଧାରା ଓଡ଼ିଶାରେ ଦେଖିବାକୁ ହେବ । ବହୁକାଳରୁ ଏଇ ଓଡ଼ିଶା ଶବର ଭୂମି । ବିରାଟ ଦ୍ରାବିଡ଼-ଶବର ସଭ୍ୟତା ବନ୍ଧ୍ୟ ହେଇଁ, ବହୁ ପ୍ରାଚୀନ କାଳରୁ ଏଇ ଓଡ଼ିଶା ଭୂମିରେ ଆଶ୍ରୟ ନେଇ; କାଳେ କାଳେ

ଆର୍ଯ୍ୟର ଆକ୍ରମଣରେ ବାଧା ଦେଇ ଶେଷକୁ ନାନା ଭାବରେ ଆର୍ଯ୍ୟ ନାମ ଗ୍ରହଣ କରି ମଧ୍ୟ ନିଜର ପ୍ରାଣପ୍ରବାହ ଜୀବନ୍ତ ରଖିଛି । ନୀଳାଚଳ ବା ପୁରୀର ଜଗନ୍ନାଥ ଆଜି ମଧ୍ୟ ଏହି ପ୍ରାଣପ୍ରବାହର ପ୍ରତୀକ । ଏହି ଜଗନ୍ନାଥ ଶବରଦେବତା ବୋଲି ସ୍ପଷ୍ଟ କଥିତ ହେଲେହେଁ, ଆଜି ଶ୍ରେଷ୍ଠ ଆର୍ଯ୍ୟଧର୍ମୀର ମହୋପାସ୍ୟ । ତଥାପି ପରିଣତ ଆର୍ଯ୍ୟଧର୍ମର ମୁଖ୍ୟ ଲକ୍ଷଣ ଜାତିଭେଦ ଏଠାରେ ନୀତି ତଥା କାର୍ଯ୍ୟରେ ମଧ୍ୟ ନାହିଁ । ଏହି ଜଗନ୍ନାଥ ବିଷ୍ଣୁଙ୍କ ବୌଦ୍ଧାବତାର । ଭକ୍ତ ଏଇ ବୁଦ୍ଧ—ବିଷ୍ଣୁରୂପ ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି—

"ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ
ସଦୟ-ହୃଦୟ-ଦର୍ଶିତ-ପଶୁଘାତଂ
କେଶବ ଧୃତବୁଦ୍ଧ-ଶରୀର-ଜୟ ଜଗଦୀଶ ହରେ ।" (ଜୟଦେବ)



# ୧୩-ଜଗନ୍ନାଥ

## ଜଗନ୍ନାଥର ଇତିହାସ—

ଜଗନ୍ନାଥର ମୂଳ ଅନୁସନ୍ଧାନ କରିବାରେ ଏଠାରେ ଗୋଟିଏ ଭୁଲ ହୋଇ ଯାଇଛି । ତାହା ହେଉଛି, ସିଂହଳ ଓ ଜଗନ୍ନାଥ ଭିତରେ ସମ୍ପର୍କ । ଏ ଜଗନ୍ନାଥର ସମ୍ପର୍କ ଯେଉଁ କଳିଙ୍ଗ ସଙ୍ଗେ ତାହା ଦକ୍ଷିଣର 'ମୁଖଲିଙ୍ଗ'ରେ ଥିବା କଳିଙ୍ଗ । ଏହି କଳିଙ୍ଗ ଯେପରି ଜଣାଯାଏ, ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀ ପୂର୍ବରୁ ନ ଥିଲା । ଜଗନ୍ନାଥ-ଭୂମିରୁ ଏହା 'ମୁଖଲିଙ୍ଗ'କୁ ଉଠିଯାଇଥିଲା । ଯଥାର୍ଥରେ ପୁରୀକୁ ବୌଦ୍ଧଦନ୍ତ ଆସିଥିବାର କୌଣସି ପ୍ରମାଣ ନାହିଁ । ସିଂହଳର ଏ ଉପାଖ୍ୟାନଟି ମନେ ହେଉଚି, ସେକାଳ ଥେରବାଦୀ ବୌଦ୍ଧଙ୍କ ଉକ୍ତିକ ମିଥ୍ୟା ।

ଏ ସମ୍ପର୍କରେ ବୁଝିବାକୁ ହେବ, ଯେଉଁ ତନ୍ତ୍ରଭୂମିର କଥା କୁହାଯାଇଚି, ତାହା ବିଶେଷରେ ବଙ୍ଗଳାରେ ଥିଲେ ମଧ୍ୟ, ଯଥାର୍ଥରେ ତନ୍ତ୍ର ବାହାରିଥିଲା 'ଉଡ୍‌ଡ଼ିୟାନ'ରୁ । ସେ 'ଉଡ୍‌ଡ଼ିୟାନ' ଭୂମିଟି ହେଉଚି, ଓଡ଼ିଶାର ବୌଦଠାରୁ କୋଶଳର ବଲାଙ୍ଗୀର ପର୍ଯ୍ୟନ୍ତ । ଜଗନ୍ନାଥଙ୍କୁ ଏଇ ବଲାଙ୍ଗୀରର 'ଶଉରିନାରାୟଣ' ଗ୍ରାମରୁ ଓଡ଼ିଶାର ସମ୍ରାଟ ଚୋଡ଼ଗଙ୍ଗଦେବ ପୁରୀର ପୀଠ (ଜନାସନ ପୀଠ)କୁ ନେଇ ଆସି ସେଠାରେ ପ୍ରତିଷ୍ଠିତ କରିଥିଲେ । ଏହା ସବୁ ଯଥାସ୍ଥାନରେ ଦିଆଯାଇଚି ।

ଏ ସବୁ ଯେଉଁ ତନ୍ତ୍ରସାଧନାର କଥା ଏହି ପ୍ରସଙ୍ଗରେ କୁହାଯାଇଚି, ସେଥିରୁ ଅଧିକାଂଶ ଅର୍ବାଚୀନ । ବିଶେଷରେ 'ଉଡ୍‌ଡ଼ିୟାନ'ର ତନ୍ତ୍ର ବଙ୍ଗ ଉତ୍କଳରେ ଖୁବ୍ ବିସ୍ତୀର୍ଣ୍ଣ ଭାବରେ ପ୍ରକାଶିତ ହୋଇଥିଲା । ପ୍ରକୃତ ଓଡ଼ିଶା ଅତି ପ୍ରାଚୀନକାଳରୁ ୩ ଖଣ୍ଡ ଭୂମିରେ ବାଣ୍ଟି ହୋଇ ରହିଥିଲା । ସେଥିରୁ ୧ ହେଉଛି କଳିଙ୍ଗ ତାହା ଯାଜପୁର-ଠାରୁ ଦକ୍ଷିଣରେ ଗୋଦାବରୀ ଯାଏ । ୨ ହେଉଛି, ଉତ୍କଳ—ତାହା ଯାଜପୁରଠାରୁ ଉତ୍ତରକୁ ଗଙ୍ଗା ଯାଏ । ସେଥିରେ ଖୁବ୍ ସମ୍ଭବ ଅତି ପ୍ରାଚୀନ କାଳରେ ଥିଲା ଗୟା । ୩ ହେଉଚି, ଉଡ୍‌ଡ଼ିୟାନ—ଏହା ଉତ୍କଳ ଓ କୋଶଳରୁ ଖଣ୍ଡେ । ପ୍ରାଚୀନ କାଳରେ ଏହା କୋଶଳରୁ କଳିଙ୍ଗ ଆଡ଼କୁ ତଥା ଉତ୍କଳ ଆଡ଼କୁ ମାଡ଼ି ଯାଇଥିଲା । ତେଣୁ ଜଗନ୍ନାଥର ତନ୍ତ୍ର କଥା ବିଚାର କଲାବେଳେ ବଡ଼ ଭୁଲ ହେବ । ଏଇ ତନ୍ତ୍ର ହେଉଛି 'ଉଡ୍‌ଡ଼ିୟାନ'ରୁ ଉତ୍କଳ, ବଙ୍ଗ, ଆସାମ ଓ ତିବ୍ବତ ଆଡ଼କୁ ବ୍ୟାପିଥିଲା ।

(ବହୁକାଳଯାଏ ଉତ୍କଳର ଅଧିକାର କଳିଙ୍ଗରେ ବ୍ୟାପିଥିଲା । ତେଣୁ ବୋଧହୁଏ, ଉତ୍କଳର ଅନ୍ତର ପୁରୀ ଓ ଗଞ୍ଜାମ ଆଡ଼େ ପ୍ରଚ୍ଛୋ-ବେଙ୍ଗଲ

( proto Bengali ) ବୋଲି ପଣ୍ଡିତମାନଙ୍କର ଧାରଣା ବଢ଼ିଯାଇଛି । ବିଶେଷରେ ଅକ୍ଷର 'ଛ' ଦେଖ । ବଙ୍ଗଳାରେ ଏହା 'ଚ' ଓ 'ହ' ବର୍ଣ୍ଣ ମିଶି ଗଢ଼ିହୋଇଯାଇଚ । କିନ୍ତୁ ଓଡ଼ିଆରେ 'ଚ' ତଳେ ଗୋଟିଏ 'ଛନ୍ଦ' ଲେଖା ହୁଏ । ପଣ୍ଡିତମାନେ କହନ୍ତି, ଏହାର କୌଣସି ଭିତ୍ତି ନାହିଁ, ଏହା ବଙ୍ଗଳାରୁ ଅନୁକରଣ କରୁ କରୁ ହୋଇଯାଇଚ ।

ତେଣୁ ଏଠାରେ ଯେଉଁ ତନ୍ତ୍ର କଥା କୁହାଯାଇଛି ତାହା ଉଡ୍ଡିୟାନ ଗତ ଓ ଜଗନ୍ନାଥର ମୌଳିକ ଧାରଣାରୁ କ୍ରମେ ଉତ୍କଳ, ବଙ୍ଗ ଓ ଆସାମ ପ୍ରଭୃତିର ତନ୍ତ୍ରଙ୍ଗେ ମିଶି ବଡ ବିଶାଳ ଭାବରେ ପୂର୍ବରେ ପ୍ରକାଶ ପାଇଚ ।

## ଜଗନ୍ନାଥର ଇତିହାସ—

ଅତଏବ ଏହି ଜଗନ୍ନାଥ ବା ବୈଦିକ ତଥା ପୌରାଣିକ ବିଷ୍ଣୁଙ୍କ ବୁଦ୍ଧ ରୂପ ସ୍ଥିତିର ଟିକିଏ ଐତିହାସିକ ପରସ୍ଥିତିର ଆଲୋଚନା କଲେ ଓଡ଼ିଶାର ସଭ୍ୟତା ଧାରାଟି ବିଶଦ ହେବ ।

## କଳିଙ୍ଗରେ ବୁଦ୍ଧଦନ୍ତ—

ପ୍ରସଙ୍ଗାନ୍ତରେ କୁହାଯାଇଛି, ବୁଦ୍ଧଙ୍କ ଚିତାରୁ ସ୍ମୃତି ରକ୍ଷା ନିମନ୍ତେ ଗୋଟିଏ ଦନ୍ତ କାଢ଼ିନେଇ, ବୁଦ୍ଧଶିଷ୍ୟମାନେ ବିଶ୍ବର କରି କଳିଙ୍ଗରାଜ ବ୍ରହ୍ମଦତ୍ତଙ୍କଠାକୁ ପଠାଇ ଦେଇଥିଲେ । (ମହାପରିନିର୍ବାଣସୂତ୍ର) । ବୁଦ୍ଧଶିଷ୍ୟ କ୍ଷେମ କାଶୀ ନଗରର ବୁଦ୍ଧ ଚିତାରୁ ଏଇ ବାମପାଖ ଛଣିଦାନ୍ତଟି ଆଣି କଳିଙ୍ଗରାଜ ବ୍ରହ୍ମଦତ୍ତଙ୍କୁ ଦେଇଥିଲେ । (ସିଂହଳର 'ଧାତୁବଂଶ') । ଏହିଠାରେ ମନେ କରାଇଦେବା ଉଚିତ ଯେ ସ୍କନ୍ଦପୁରାଣର କାଶୀଖଣ୍ଡ ଓ ଗଣେଶ ଉପପୁରାଣରେ ଅଛି, "ଦୈତ୍ୟ ଦାନବ ଓ ଅନ୍ୟାନ୍ୟ ଅନାର୍ଯ୍ୟ (ବିଧର୍ମୀ) ମାନଙ୍କ ଉଦ୍ଧାର ନିମନ୍ତେ ବ୍ରହ୍ମା ଏଇ ବୁଦ୍ଧରୂପ ଅବତାର ହୋଇଥିଲେ ।" ଗୀତାର ଅବତାରବାଦର ମୂଳ ହୁଏତ ଏଇ ପ୍ରାଚୀନ ବୌଦ୍ଧଗ୍ରନ୍ଥରେ ଥିବାର ଅନୁମାନ ହୁଏ । ସେ କଥା ଗୁଡ଼ । ଏବେ ଏଇ ଦନ୍ତଟିର କଥା ବିଚାର କରାଯାଉ ।

## ଶାକ୍ୟ ବୁଦ୍ଧ ପୂର୍ବରୁ କଳିଙ୍ଗରେ ବୌଦ୍ଧ ଭାବ—

ବୁଦ୍ଧଦେବଙ୍କ ଜୀବନ କାଳରେ କଳିଙ୍ଗର କୌଣସି ଲୋକ ବା ରାଜାଙ୍କର କଥା ଶୁଣା ନାହିଁ । କଳିଙ୍ଗର କେହି ବୁଦ୍ଧଙ୍କ ସଙ୍ଗେ ସଙ୍ଗେ ସାକ୍ଷାତ୍ କରିବା ବା ଅନ୍ୟ କୌଣସି ସମ୍ପର୍କରେ ଆସିଥିବା କଥା ଶୁଣା ନାହିଁ । ହଠାତ୍ ଦନ୍ତଟିକୁ କଳିଙ୍ଗରାଜାଙ୍କୁ ପଠାଇ ଦେବାର ବୁଦ୍ଧି କ୍ଷେମଙ୍କର କାହିଁକି ହେଲା ? କଳିଙ୍ଗ ଭୂମିରେ ଏପରି କିଛି ଥିଲା, ଯେଉଁଥିପାଇଁ କଳିଙ୍ଗ ବୁଦ୍ଧଶିଷ୍ୟଙ୍କର ଏତେ ଆଦର ଓ ସମ୍ମାନର ପାତ୍ର

ହୋଇଥିଲା । କଳିଙ୍ଗରେ ଏଇ ବୌଦ୍ଧ ଭାବ ଜାଗରୂକ ଥିବା ହିଁ ଏହାର କାରଣ ବୋଲି ଅନୁମାନ ହୁଏ ।

## ସିଂହଳର ଦନ୍ତବଂଶ—

ଏଇ ଦନ୍ତ ପୁଣି କଳିଂଗରେ କିପରି ଆଦର ଯତ୍ନରେ କି ସମ୍ମାନରେ ସୁରକ୍ଷିତ ଓ ପରଂପରାରେ ଆରାଧିତ ଓ ବହୁବାର ବିପଦରୁ ସଂରକ୍ଷିତ ହୋଇଥିଲା, ତାହା ଏଠାରେ କହି ଦେବା ଉଚିତ । ଏଇ ଦନ୍ତ ଖ୍ରୀ: ୩୧୨ରେ (ଆଜକୁ ୧୬୨୬ ବର୍ଷ ତଳେ) କଳିଂଗର ଦନ୍ତପୁରରୁ ସିଂହଳକୁ ଯାଇଥିଲା । ସେଇ ବର୍ଷ ଏଇ ଦନ୍ତର ଗୋଟିଏ ଇତିହାସ ସେକାଳେ ସିଂହଳରେ ଚଳୁଥିବା 'ଇଳୁ' ଭାଷାରେ ଲେଖା ହୋଇଥିଲା । ଏଇ ଗ୍ରନ୍ଥର ନାମ 'ଦାଳଦବଂଶ' 'ଦାଠଧାତୁ ବଂଶ' ବା ସଂକ୍ଷେପରେ 'ଧାତୁବଂଶ' ।

ଏଇ ଘଟଣାର ପ୍ରାୟ ୧୦୦୦ ବର୍ଷ ପରେ ଏଇ ଗ୍ରନ୍ଥ ସିଂହଳ "ରାଜଗୁରୁ" ଧର୍ମରକ୍ଷିତ ବା ଧର୍ମକୀର୍ତ୍ତି ଥେରଙ୍କ ଦ୍ୱାରା "ମାଗଧୀ" ('ପାଳି') ଭାଷାରେ ଅନୁବାଦ କରା ହୋଇଥିଲା । ତା'ପରେ ୧୭୫୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନାନା ପଣ୍ଡିତ ଏଥିରେ ପରବର୍ତ୍ତୀ ଅଧ୍ୟାୟମାନ ଯୋଡ଼ି, ଦନ୍ତର ଇତିହାସ ସମ୍ପୂର୍ଣ୍ଣ କରିଛନ୍ତି । ଏଇ ଗ୍ରନ୍ଥ ଓ ଅନ୍ୟାନ୍ୟ ପ୍ରମାଣିତ ଗ୍ରନ୍ଥମାନଙ୍କରୁ ସଂଗୃହୀତ ହୋଇ ଦନ୍ତର ଯେଉଁ ଇତିହାସଟି ସଂକଳିତ ହୋଇଚି ତା ନିମ୍ନରେ ଦିଆଗଲା † ।

---

† *See*—1. Turnour's accounts of the Tooth-Relic of Ceylon in Journal of Asiatic Society of Bengal, Calcutta, 1837. Vol. VI pp. 858 et seq. 2. 'Memoir on the History of the Tooth-Relic of Ceylon; with a preliminary Essay on the "Life and system of Gautama Buddha" by J. Gerson Da Cunha—Thacker. Spink and Co. Calcutta,—1875 pp. 30 et seq. 3. Bimla Charan Law's History of Pali Literature—Pali Chronicle pp. 581 et seq—ଏ ପରେ ଏ ପ୍ରସଙ୍ଗରେ 1 (୧), 2 (୨), 3 (୩) ସଙ୍କେତରେ ଏଇ ପୁସ୍ତକ ଓ ପ୍ରବନ୍ଧମାନ ବୁଝିବାକୁ ହେବ ।

## କଳିଙ୍ଗରେ ଦନ୍ତର ପ୍ରତିଷ୍ଠା ଓ ପରେ ବ୍ରାହ୍ମଣ ବିରୋଧ—

ଖ୍ରୀ: ପୂ: ୫୪୩ ରେ ବୁଦ୍ଧଦେବଙ୍କର ମୃତ୍ୟୁ । ଏହା ବୁଦ୍ଧଙ୍କ ପରବର୍ତ୍ତୀ ରାଜଗଣ ଓ ଆଚାର୍ଯ୍ୟପରଂପରା ଗଣନାରୁ ସ୍ଥିର କରାଯାଏ । ଏହା ସିଂହଳର 'ପାଲି' ଇତିହାସ 'ଦୀପବଂସ' ଓ 'ମହାବଂସ' ପ୍ରଭୃତି ଗ୍ରନ୍ଥରୁ ଗୃହୀତ ଗଣନା । ଏଥିରେ ନାନା ମତଭେଦ । ଅଶୋକ ଶିଳାଲିପି ଗଣନା ଧରି ଖ୍ରୀ: ପୂ: ୪୭୩ ବୋଲି ମାକ୍ସମୁଲର ସ୍ଥିର କରନ୍ତି । ଅନ୍ୟମାନେ ଆହୁରି ଶହେ ଖଣ୍ଡେ ବର୍ଷ ଆଧୁନିକ ବୋଲି ମଧ୍ୟ କହନ୍ତି । ଗୀଗର ( Dr. Geiger ) ଖ୍ରୀ: ପୂ: ୪୮୩ ବୋଲି ସିଦ୍ଧାନ୍ତ କରନ୍ତି । ତାହାହିଁ ଅନେକେ ଏବେ ମାନନ୍ତି । ସେ ଯାହା ହେଉ, ସିଂହଳ ବୃତ୍ତାନ୍ତ ଅନୁସାରେ ଏଠାରେ ଖ୍ରୀ: ପୂ: ୫୪୩ ଧରାଯାଇଛି । ବୁଦ୍ଧଙ୍କ ଦେହତ୍ୟାଗ ସଙ୍ଗେ ସଙ୍ଗେ ଏଇ ବାଁ ଦନ୍ତ ନେବା ପାଇଁ ବହୁରାଜା ବ୍ୟଗ୍ର ଥିଲେହେଁ, 'କ୍ଷେମ-ଥେର' କିନ୍ତୁ ନେଇ ମାନି ବ୍ରହ୍ମଦତ୍ତଙ୍କଠାରୁ ପଠାଇ ଦେଲେ । ଏଇ ବ୍ରହ୍ମଦତ୍ତ କଳିଂଗର ରାଜା ଥିଲେ । ତାଙ୍କ ରାଜଧାନୀ ଥିଲା— ଦନ୍ତପୁର । ବ୍ରହ୍ମଦତ୍ତ ମହାସମାରୋହରେ ଦନ୍ତପୁରରେ ଏଇ ଦନ୍ତର ପ୍ରତିଷ୍ଠା କଲେ ✻ । ବ୍ରହ୍ମଦତ୍ତଙ୍କ ପୁତ୍ର 'କାଶୀରାଜ' (ଵା 'କାଶୀ') ଓ କାଶୀରାଜଙ୍କ ପୁତ୍ର 'ସୁନନ୍ଦ' ଏଇ ଦନ୍ତର ସେହିପରି ସମ୍ମାନ ଓ ପୂଜା କରୁଥିଲେ । ଏହା ପରେ କଳିଙ୍ଗରେ ବ୍ରାହ୍ମଣ-ଧର୍ମ ପ୍ରବଳ ହେଲା । ସେ ଯା ହେଉ, ସିଂହଳରାଜ ମହାସେନଙ୍କ ସମସାମୟିକ କଳିଙ୍ଗର ଗୁହଶିବ ( ଵା. ଗୁହସିଂହ ) ବ୍ରାହ୍ମଣଧର୍ମୀ ଥିଲେ । ସେ ଖ୍ରୀଷ୍ଟ ତୃତୀୟ ଶତକ ଶେଷକୁ କଳିଙ୍ଗର ରାଜା ଥିଲେ । ସେତେବେଳକୁ ଦନ୍ତ ଅନ୍ତତଃ ୮୦୦ ବର୍ଷ ଦନ୍ତପୁରରେ ଥିଲା । ଏଇ ସମୟରେ କଳିଙ୍ଗ ଲୋକେ ଦନ୍ତର ଉତ୍ସବ କଲାବେଳେ ବୌଦ୍ଧମାନଙ୍କ ସଙ୍ଗେ ଏକ ତର୍କ ବିବାଦ ହେଲା । ଫଳରେ ଗୁହଶିବ ଦନ୍ତର ଉପାସକ ବୌଦ୍ଧ ହେଲେ । ମନ୍ତ୍ରୀ ବୌଦ୍ଧ ଥିବାରୁ ରାଜାଙ୍କର ଏ ଧର୍ମାନ୍ତର ଗ୍ରହଣ ସହଜ ହୋଇଥିଲା । ସେ ସେଇ ମନ୍ତ୍ରିଙ୍କ ପ୍ରଭାବରେ ଅବିଶ୍ୱାସ ଛାଡ଼ି ନବଦୀକ୍ଷିତର ଉତ୍ସାହରେ ଏଇ ଦନ୍ତ ପୂଜାରେ ମାତିଲେ । ଏଇ ଉତ୍ସାହରେ ସେ ପୂର୍ବେ ଯେଉଁ ବ୍ରାହ୍ମଣ (ଵା. ଶୈବ) ମାନଙ୍କୁ ଆଦର କରୁଥିଲେ ତାଙ୍କୁ ଅନାସ୍ଥା ଦେଖାଇ ନିଜ ରାଜ୍ୟରୁ ବାହାର କରିଦେଲେ । ଏଇ ବ୍ରାହ୍ମଣମାନଙ୍କୁ 'ଧାତୁବଂଶ', 'ନିଗ୍ରନ୍ଥ' ବୋଲି କହନ୍ତି । (2) ଅନ୍ୟତ୍ର ଏମାନଙ୍କୁ 'ଆଜୀବକ' କୁହାଯାଇଛି; ଏମାନେ ଶୈବ ସନ୍ନ୍ୟାସୀ ଓ ନଗ୍ନ ତାନ୍ତ୍ରିକ ଯୋଗୀ ।

---

✻ ରାଜଧାନୀର ନାମ ଆଗରୁ ଦନ୍ତପୁର ନ ଥିଲା । ଏଇ ଦନ୍ତ ପ୍ରତିଷ୍ଠିତ ହେବାରୁ ଏହାର ନାମ ଦନ୍ତପୁର ହେଲା । କଳିଙ୍ଗ ରାଜଧାନୀର ନାମ ଆଗେ ସିଂହପୁର ଓ ତା ପରେ 'ରାଜପୁର' ଥିବାର ଅନ୍ୟତ୍ର ସଙ୍କେତ ମିଳେ ।

## ପାଟଳୀପୁତ୍ରର ପାଣ୍ଡୁରାଜାଙ୍କ ଆଦେଶ ଓ ଦନ୍ତର ପରୀକ୍ଷା—

ଏହି 'ନିର୍ଗ୍ରନ୍ଥ' ମାନେ ପ୍ରତିଶୋଧ ନେବା ମାନସରେ ପାଟଳୀପୁତ୍ରକୁ ଯାଇ ସେଠା ସମ୍ରାଟଙ୍କ ଆଶ୍ରା ନେଲେ । ଏହି ସମ୍ରାଟଙ୍କ ନାମ 'ପାଣ୍ଡୁ' ବୋଲି କୁହାଯାଇଛି । (2.) ମାତ୍ର ସମ୍ଭବତଃ ଏ ସାତକର୍ଣ୍ଣୀ ବଂଶର 'ଗୌତମୀ ପୁତ୍ର' । ତାଙ୍କୁହିଁ ଭାରତର ସମ୍ରାଟ ବୋଲି କୁହାଯାଇଛି । ଏହି ସମ୍ରାଟ୍ ପାଣ୍ଡୁ ସେଠାରୁ ଚୈତାସ୍ୱନ ନାମକ ସାମନ୍ତ ରାଜାଙ୍କୁ ବହୁ ସୈନ୍ୟ ଦେଇ, ଦନ୍ତ ସହିତ ଗୁହସିଂହଙ୍କୁ ପାଟଳୀପୁତ୍ରକୁ ଘେନି ଆସିବାକୁ କଳିଙ୍ଗକୁ ପଠାଇଲେ । ଗୁହସିଂହଙ୍କ ପାଖକୁ ଆଦେଶ ଥିଲା—'ପାଣ୍ଡୁ ନିଜେ ବ୍ରହ୍ମା ବିଷ୍ଣୁ ଶିବଙ୍କ ଉପାସନା କରୁଥିବା ସ୍ଥଳେ, ତାଙ୍କ ଅଧୀନସ୍ଥ ଗୁହସିଂହ ଦିନ ରାତି ମଲ ମଣିଷ -ହାଡ଼ ପୂଜା କରିବା ଠିକ୍ ନୁହେ । ଅତଏବ ଗୁହସିଂହ ସେହି ଦନ୍ତ ଘେନି ପାଣ୍ଡୁ ସମ୍ରାଟଙ୍କ ପାଖକୁ ଆସନ୍ତୁ ।' ଗୁହସିଂହ, ଚୈତାସ୍ୱନ ଓ ତାଙ୍କ କର୍ମଚାରୀମାନଙ୍କୁ ବନ୍ଧୁଭାବରେ ଓ ଆଦରରେ ସ୍ୱାଗତ କରି ରଖି, ପରେ ସେମାନଙ୍କ ଦନ୍ତର ଇତିହାସ ଏ ଅଦ୍ଭୁତ କାର୍ଯ୍ୟ ସବୁ କହିଲେ । ଚୈତାସ୍ୱନ ଦନ୍ତ ଦେଖିବାକୁ ଲୋଡ଼ିବାରୁ ଗୁହସିଂହ ଆଗ୍ରହରେ ସବୁଆ ପିଟାଇ ତାଙ୍କୁ ଓ ତାଙ୍କ ଲୋକଙ୍କୁ ଦନ୍ତ ଦେଖାଇଲେ ଓ ପୁଣି ପୂର୍ବପରି ଅଦ୍ଭୁତ କ୍ରିୟାମାନ ଦେଖାଇବାକୁ ଦନ୍ତକୁ ପ୍ରାର୍ଥନା କଲେ । ତହୁଁ ଦନ୍ତ ପୂର୍ବପରି ଅଦ୍ଭୁତ କ୍ରିୟା ଦେଖାଇଲେ । ଫଳରେ ଚୈତାସ୍ୱନ ଓ ତାଙ୍କ ସୈନ୍ୟ କର୍ମଚାରୀ ସମସ୍ତେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ମାତ୍ର ସମଗ୍ର ଜମ୍ବୁଦ୍ୱୀପର ସମ୍ରାଟ୍ଙ୍କ ଆଦେଶ ମାନିବାକୁ ହେବ । ତେଣୁ ଗୁହସିଂହ ଅତି ସମାରୋହରେ ଦନ୍ତ ଘେନି ଚୈତାସ୍ୱନଙ୍କ ସଙ୍ଗେ ଦେଶରୁ ବାହାରିଲେ । ଦନ୍ତପୁରର ଲୋକେ ଶୋକରେ ବ୍ୟାକୁଳ ହେଲେ, ପୁଣି ଦନ୍ତ ସଙ୍ଗେ ବହୁଲୋକ ଆସିଲେ । ରାସ୍ତାରେ ଦନ୍ତ ସଙ୍ଗେ ନିଜ ରାଜ୍ୟର ଅରଣ୍ୟ ଦେବତାମାନଙ୍କର ପୂଜା ଚାଲିଥାଏ । ଏହିପରି ସମସ୍ତେ ଦନ୍ତ ଘେନି ପାଟଳୀପୁତ୍ରରେ ପହଞ୍ଚିଲେ । ଏବେ ଯାହାକୁ ଦନ୍ତର ପରୀକ୍ଷା କୁହାଯାଇଛି, ତାହା ଆରମ୍ଭ ହେଲା । ପାଣ୍ଡୁ ଗୁହଶିବଙ୍କର ନିର୍ଭୀକତା ଓ ନିଜ ସେନାର ଏ ଗତି ଦେଖି ବିଶେଷ କ୍ରୁଦ୍ଧ ହୋଇ, ନିଜ ଅଗଣାରେ ବଡ଼ ଗାତରେ ରଡ଼ ନିଆଁ ତିଆରି କରି ସେଥିରେ ଦନ୍ତଟିକୁ ପକାଇ ଭସ୍ମ କରି ଦେବାକୁ ଆଦେଶ ଦେଲେ । (ଧାତୁବଂଶ-୩.୫.୧୦) ଆଦେଶରେ ସଙ୍ଗେ ସଙ୍ଗେ କାର୍ଯ୍ୟ ହେଲା । ମାତ୍ର ଦନ୍ତର ଅଦ୍ଭୁତ କ୍ରିୟା ! ଦନ୍ତଟି ଗୋଟିଏ ରଥ ଚକଡ଼ା ପରି ବିସ୍ତୀର୍ଣ୍ଣ ଅତି-ଦୀପ୍ତିମନ୍ତ ପଦ୍ମଫୁଲ ହୋଇ ଅଗ୍ନିଶିଖା ଉପରେ ଡାଉ ଡାଉ ହୋଇ ଭାସିଲା । ସେଥିରେ ଜଗତ୍ ଆଲୋକିତ ହୋଇ ଉଠିଲା । (2.) 'ଓଁ' ମଣି ପଦ୍ମେ ହୁଁ, ବୋଲି ଯେଉଁ ବୌଦ୍ଧ ମନ୍ତ୍ର ଅଛି, ଏହି ଅଦ୍ଭୁତ କ୍ରିୟା ତାରି ପ୍ରକାଶ ବୋଲି ଜଣେ ଲେଖକ କହନ୍ତି । ଏଥିରେ ଅନେକ ଦେଖଣାହାରୀଙ୍କ ମନ ବଦଳିଗଲା । ସେମାନେ ସବୁ ଭୁଲି ଦନ୍ତର ପୂଜା କଲେ । ତହୁଁ ପାଣ୍ଡୁ ଆହୁ କେତେ ପରୀକ୍ଷା ଓ ଅପମାନ ଆରମ୍ଭ କଲେ । ଏହାକୁ ଏକ ଗଭୀର

ଦୁର୍ଗନ୍ଧମୟ ନର୍ଦ୍ଦମାରେ ପକାଇବାରେ, ଦେଖାଗଲା ନର୍ଦ୍ଦମା ନିର୍ମଳ ପୋଖରୀ ହୋଇଗଲା । ସେଥିରୁ ପଦ୍ମ ଫୁଟିଲା ଓ ସେଇ ପଦ୍ମରୁ ଗୋଟିକରେ ଦନ୍ତଟି ଥିବାର ଦେଖାଗଲା । ତହୁଁ ଏହାକୁ ପାଣ୍ଡୁ ଗାତ ଖୋଳି ପୋତିଲେ ଓ ହାତୀ ମଡ଼ାଇ ଦେଲେ । ମାତ୍ର ଏହା ପୁଣି ବାହାରି ଏକ ପଦ୍ମ ଉପରେ ଥିବାର ଦେଖାଗଲା । ଏଇପରି ଏସବୁ ପରୀକ୍ଷାରୁ ଦନ୍ତ ଉତ୍ତୀର୍ଣ୍ଣ ହେଲା । ଶେଷକୁ ପାଣ୍ଡୁ କହିଲେ, "ଏ ଦନ୍ତକୁ ଏକ ଲୁହାରେ ଥୋଇ, ଖୁବ ବଡ଼ ହାତୁଡ଼ିରେ ଛେଚ ଛତୁ କରିଦିଅ ।" ମାତ୍ର ହାତୁଡ଼ିରେ ଛେଚ ଦେଲାକ୍ଷଣି ଦନ୍ତଟି ଅଧେ ଲୁହାରେ ଦବିଯାଇ ବାକୀ ଅଧେ ଉପରକୁ ସୂର୍ଯ୍ୟ ପରି ଅତି ଦୀପ୍ତିମନ୍ତ ହୋଇ ଝଟକିଲା । ପାଣ୍ଡୁ ଏହା ଦେଖି ନିଜେ ଆଚମ୍ବିତ ହୋଇଗଲେ ।

## ଦନ୍ତ ଓ ଜଗନ୍ନାଥ ବିଗ୍ରହ ଭିତରେ ଥିବା ପଦାର୍ଥ—

ଏହା ଦେଖି 'ନିଗ୍ରନ୍ଥ' କହି ଉଠିଲେ, "ଦେବ ରାମ (କୃଷ୍ଣ) ପ୍ରଭୃତି ରୂପରେ ବିଷ୍ଣୁଙ୍କର ଅବତାର ହୋଇଯାଇଚି । ଏଇ ମାନବାସ୍ଥି ସେଇ ଅବତାରଙ୍କ ଶରୀରର ଏକ ଅଂଶ ନ ହୋଇଥିଲେ, ଏ ଅଦ୍ଭୁତ କ୍ରିୟା ସମ୍ଭବ ହୁଅନ୍ତା ନାହିଁ । ନିଶ୍ଚୟ, ନିଶ୍ଚୟ ଏଇ ଅସ୍ଥି ସେଇ ବିଷ୍ଣୁଙ୍କର ମାନବଦେହର ଏକ ଅଂଶ । ସେଇ ବିଷ୍ଣୁ ମାନବ ଦେହରେ ଅବତାର ହୋଇ ନିଜେ ସ୍ୱର୍ଗକୁ ଚାଲି ଯାଇଚନ୍ତି ସତ, ମାତ୍ର ଆଧ୍ୟାତ୍ମିକ ଶକ୍ତିର ସଙ୍କେତ ରୂପେ ଶରୀରର ଏଇ ଅଂଶଟି ପୃଥିବୀରେ ଲୋକଙ୍କ ପାଇଁ ରଖି ଯାଇଚନ୍ତି । ଏହା ଅସ୍ୱୀକାର କରିବାର ଉପାୟ ନାହିଁ" * । [ଏଇଠାରେ ଗୋଟିଏ କଥା ସ୍ମରଣ ରଖିବାର ଅଛି । ପୁରୀ ଜଗନ୍ନାଥଙ୍କ ବିଗ୍ରହ ଭିତରେ କଣ ଗୋଟିଏ କ୍ଷୁଦ୍ର ଜିନିଷ ଅଛି । ତା କେହି ଛୁଅନ୍ତି ନାହିଁ, କି ଦେଖନ୍ତି ନାହିଁ । ନବକଳେବର ବେଳେ 'ବିଶ୍ୱକର୍ମା' (ବଢ଼େଇ) ଆଖିରେ ସାତ ପୁରୁ ପାଟଲୁଗା ଓ ହାତରେ ସାତ ପୁରୁ ପାଟଲୁଗା ଗୁଡ଼ାଇ ଏହାକୁ ଦାରୁବ୍ରହ୍ମ ପୁରୁଣା ବିଗ୍ରହ ପେଟରୁ ଖୋଲି କାଢି, ନୂଆ ବିଗ୍ରହ ପେଟ ବାକ୍ସରେ ଭର୍ତ୍ତି କରି ବନ୍ଦ କରିଦିଏ । ବ୍ରାହ୍ମଣମାନେ ଏବେ ମଧ୍ୟ କହନ୍ତି, ଶ୍ରୀକୃଷ୍ଣ ଦେହତ୍ୟାଗ କଲା ପରେ ତାଙ୍କ ଦେହ ଯେତେବେଳେ ଚିତାରେ ପୋଡ଼ା ହେଲା, ସେତେବେଳେ ଶ୍ରୀଅଙ୍ଗର ଖଣ୍ଡେ ହାଡ଼ ଜମା ପୋଡ଼ି ହେଲା ନାହିଁ । ସେଠାରୁ ସେଇ ହାଡ଼ ଖଣ୍ଡ ବିଷ୍ଣୁବୃକ୍ଷ (ବର) ଡାଳରେ ବାନ୍ଧି ପୋଡ଼ିବା ଲୋକେ ତାକୁ ଦ୍ୱାରକାରେ ସମୁଦ୍ରକୁ ଫିଙ୍ଗି ଦେଲେ । ସେଇ ଡାଳ ଓ ହାଡ଼ଖଣ୍ଡ ସମୁଦ୍ରରେ ଭାସି ଆସି ପୁରୀଠାରେ ନୀଳାଚଳ କୂଳରେ ଲାଗିଲା । ଜଗନ୍ନାଥଙ୍କ ଦାରୁ ବିଗ୍ରହ ମଧ୍ୟରେ ସେଇ ହାଡ଼ ଅଛି । ତାହାହିଁ ଯଥାର୍ଥ 'ଦାରୁ ବ୍ରହ୍ମ' । ପୁଣି ସେଇ ବର ଡାଳରୁ ପୁରୀ ମନ୍ଦିରର କଳ୍ପବଟ ବୃକ୍ଷଟି ହୋଇଚି । ଏଉ ଉପାଖ୍ୟାନଟି କୌଣସି ପୁରାଣ ବା ଉପପୁରାଣରେ ଅଛି କି ନା, ତାହା ଅନୁସନ୍ଧେୟ ।

* ଧାତୁବଂଶ—୩, ୫, ୧୯

ମାତ୍ର ଏବେ ମଧ୍ୟ ଲୋକରେ ଏହି ପରଂପରା ବହୁ ପ୍ରଚଳିତ । ପୁଣି ବୁଦ୍ଧଦନ୍ତ ସଙ୍ଗେ ବୋଧିଦ୍ରୁମର ଡାଳ ଅଣା ହୋଇ ଲାଗିଥିବା ଖୁବ୍ ସମ୍ଭବ । ବ୍ରହ୍ମଦତ୍ତଙ୍କ ପରେ ଅଶୋକଙ୍କ ସମୟରେ ଏହା ହୋଇ ପାରିଥାଏ, ବା ପରେ ହୋଇଥିବ । କାରଣ ଅଶୋକ ନିଜ ପୁତ୍ର ( ଭାଇ ? ) ମହେନ୍ଦ୍ର ଓ କନ୍ୟା (ଭଗିନୀ ?) ସଂଘମିତ୍ରାଙ୍କୁ ଏ ଡାଳରୁ ଗୋଟିଏ ଦେଇ ସିଂହଳ ପଠାଇଥିଲେ । 'ଉରୁବେଳ'ର ସେଇ ବୋଧିଦ୍ରୁମ ଡାଳରୁ ଯେଉଁ ବିରାଟ ବଟବୃକ୍ଷ ହୋଇଛି, ତାହା ଏବେ ସିଂହଳର ଅନୁରାଧାପୁରରେ ଅଛି । ପ୍ରଥମେ ଏଇ ଦନ୍ତ ସିଂହଳକୁ ଗଲାବେଳେ ସେଠା ରାଜା ମଧ୍ୟ ସେଇ ବୋଧି-ଦ୍ରୁମମୂଳରେ ଏହାର ପ୍ରତିଷ୍ଠା କରିଥିଲେ । ଏଇଠାରେ ତାହା ବହୁକାଳ ଥିଲା । ପରେ ଘଟଣାଚକ୍ରରେ ଏହା ସ୍ଥାନାନ୍ତରିତ ହେଲା । ଏଇ ବୃକ୍ଷ ମଧ୍ୟ ଏବେ ସମସ୍ତ ବୌଦ୍ଧ ଜଗତର ପରମ ପୂଜାର୍ହ ବୃକ୍ଷ ।

## ପାଣ୍ଡୁରାଜଙ୍କ ଦନ୍ତପୂଜା ଓ ବୌଦ୍ଧଧର୍ମ ଗ୍ରହଣ—

ସେ ଯାହା ହଉ, ପାଣ୍ଡୁରାଜ ଏହା ଶୁଣି ସେଇ ନିଗ୍ରନ୍ଥଙ୍କୁ କହିଲେ, "ଭଲ କଥା, ତୁମେ ତେବେ ବିଷ୍ଣୁଙ୍କୁ ସ୍ତବ କରି ଏଇ ଦନ୍ତକୁ ଲୋହରୁ ବାହାର କରିଦିଅ । ଲୋକେ ଦେଖନ୍ତୁ, ସେମାନଙ୍କ ଭ୍ରମ ଦୂର ହେବ । ନଚେତ୍ ଖାଲି ଏପରି ବାହାଦୂରୀ କଥା କହିଲେ କିଏ ଶୁଣିବ ? ବ୍ରାହ୍ମଣ (1. ଏଇ ବ୍ରାହ୍ମଣଙ୍କୁ 'ତୀର୍ଥିୟ' ବୋଲି ଲେଖିଚନ୍ତି) ସେଠାରୁ ବିଷ୍ଣୁଙ୍କୁ ସବୁ ପ୍ରକାର ସ୍ତବ କରି ମନ୍ତ୍ର ପାଣି ସିଂଚିଲେ । ମାତ୍ର ଦାଂତ ଯେପରି ସେଇପରି ରହିଲା । ସେଠାରୁ ପାଣ୍ଡୁ ନିଗ୍ରନ୍ଥଙ୍କୁ ଗାଳି ଦେଇ ଢେଙ୍ଗୁରା ଦେଲେ—"ଯେ ଏଇ ଦାଂତକୁ ଲୋହରୁ କାଢ଼ିଦେବ, ସେ ବହୁ ପୁରସ୍କୃତ ହୋଇ ସୁଖୀ ହେବ ।" ସେଠାରୁ ସୁଭଦ୍ର ନାମକ ଜଣେ ବୁଦ୍ଧଭକ୍ତ ବୋଧିସତ୍ତ୍ୱଙ୍କ ଭିନ୍ନ ଭିନ୍ନ ଅବତାର ବା 'ଜାତକ' କଥା କହି ସ୍ତୁତି କଲେ । ସଙ୍ଗେ ସଙ୍ଗେ ଦାଂତ ଲୋହରୁ ବାହାରି ଦୀପ୍ତି ବିସ୍ତାର କରି ଉପରକୁ ଉଠି, ପୁଣି ଋଷି ସୁଭଦ୍ରଙ୍କ ମସ୍ତକରେ ରହିଲା ଓ ସେଠାରେ ତହିଁରୁ ପବିତ୍ର ଜଳ ବୃଷ୍ଟି ହେଲା । ବ୍ରାହ୍ମଣମାନେ କହିଲେ ସେଟି ସୁଭଦ୍ର ଗୁଣି ଜାଣେ । ସେଠାରୁ ରାଜାଙ୍କ ଆଦେଶରେ ସେଟି ହାତରେ ପାଣି ଗିନା ଧରି ସ୍ତୁତି କଲେ । ଦାଂତଟି ଆସି ପାଣି ଗିନାରେ ହଂସପରି ବୁଡ଼ି ଭାସି ପହଁରିଲା । ସେଠାରୁ ମହାଜନତା ବିସ୍ମିତ ଓ ଅଭିଭୂତ ହୋଇ ରାଜଙ୍କୁ ବହୁ ଉତ୍ସାହ ଦେଇ ବୁଦ୍ଧଭକ୍ତିରେ ବିଶ୍ୱାସ ରଖି, ବିଧର୍ମ ଛାଡ଼ି, ବୁଦ୍ଧଧର୍ମ ଓ ସଂଘର ଆଶ୍ରୟ ନେବାକୁ କହିଲେ । ସେ ମନ୍ତ୍ରୀମାନଙ୍କ ସହିତ ବୌଦ୍ଧଧର୍ମ ଗ୍ରହଣ କଲେ ଓ ବଡ ମନ୍ଦିରଟିଏ କରି ପାଟଳୀପୁତ୍ରରେ ଦାଂତକୁ ଓ ତହିଁ ସଙ୍ଗେ ଅତ୍ୟଂତ ବହୁମାନ ସହିତ ଗୁହଶିବଂକୁ ମଧ୍ୟ ରଖିଲେ । ପୁଣି ସୁନା ପୋଡ଼ା ହେଲେ ଯେପରି ଶୁଦ୍ଧ ଓ ଉଜ୍ଜ୍ୱଳ ହୁଏ, ସେହିପରି ପରୀକ୍ଷାରେ ଦାଂତର କାନ୍ତି ବଢ଼ିଚି ବୋଲି ନିଜକୁ ସାଂତ୍ୱନା ଦେଇ ଦାଂତଠାରେ କ୍ଷମା ମାଗିଲେ ।

## ଖିରଧରଙ୍କର ପାଟଳୀପୁତ୍ରରେ ଦନ୍ତ ଆକ୍ରମଣ ଓ ପରାଜୟ—

ଏହାପରେ ଖିରଧର ବୋଲି ଜଣେ ବୌଦ୍ଧ ରଜା ଦନ୍ତ ନେବା ପାଇଁ ପାଟଳୀପୁତ୍ର ଆକ୍ରମଣ କଲେ । ( 1. ) କୋଶଳ ( ଅଯୋଧ୍ୟା )ର ଶ୍ରାବସ୍ତିପୁର ଏହାଙ୍କର ରାଜଧାନୀ ଥିଲା । (ଅନ୍ୟତ୍ର ପ୍ରମାଣରୁ କହନ୍ତି ଏ Saewat Nuwera ସୈବତ ନଗରର ରଜା) । ପାଣ୍ଡୁ ସେନା ଘେନି ତାଙ୍କୁ ଭେଟିଲେ ଓ ଖିରଧର ପରାସ୍ତ ଓ ନିହତ ହେଲେ । କିଛିଦିନ ପରେ ପାଣ୍ଡୁ ନିଜ ପୁତ୍ରକୁ ରାଜ୍ୟ ଦେଇ ନିଜେ ରାଜ୍ୟ ତ୍ୟାଗ କରି ସନ୍ୟାସୀ ହେଲେ । ମାତ୍ର ସନ୍ୟାସୀ ହେବା ପୂର୍ବରୁ ଗୁହଶିବଙ୍କୁ ବହୁସମ୍ମାନ ଓ ସମାରୋହରେ ଦନ୍ତ ସହିତ କଳିଙ୍ଗର ଦନ୍ତପୁରକୁ ପଠାଇଦେଲେ ।

## ଦନ୍ତର ପୁଣି କଳିଙ୍ଗର ଦନ୍ତପୁରକୁ ଆଗମନ—ଦନ୍ତକୁମାର—

ଦନ୍ତ ପୁଣି ଦନ୍ତପୁରରେ ପ୍ରତିଷ୍ଠିତ ହେଲା । କିଛି ଦିନ ପରେ ଉଜ୍ଜୟିନୀ ବା 2. ଅବନ୍ତି ( ମାଳବ ) ର ଜଣେ ଯୁବକ ରାଜକୁମାର ଦନ୍ତକୁ ଉପାସନା କରିବା ପାଇଁ ଖୋଜି ଦନ୍ତପୁରକୁ ଆସିଲେ । ସେ ଆସି କଳିଙ୍ଗରେ 'ଦନ୍ତକୁମାର' ନାମ ଗ୍ରହଣ କଲେ ଓ ଗୁହଶିବ ତାଙ୍କ ସଙ୍ଗେ ନିଜ କନ୍ୟା ହେମମାଳାଙ୍କୁ ବିଭା କରାଇଦେଇ ତାଙ୍କୁଇ ଦନ୍ତରକ୍ଷକ ନିଯୁକ୍ତ କଲେ । 2. ଏଇ ହେମମାଳାଙ୍କ ଆଗ ନାମ ଥିଲା, 'ବାନବଳୀ' ( ବନବଲ୍ଲୀ ? ) ।

## ଖିରଧରଙ୍କ ପୁତୁରାଙ୍କ ଦନ୍ତପୁରରେ ରାଜା ଗୁହଶିବଙ୍କୁ ଆକ୍ରମଣ—

ଏ ମଧ୍ୟରେ ଖିରଧରଙ୍କ ପୁତୁରା (ଭଣଜା ? Nephew) ଦାନ୍ତ ନେବାପାଇଁ ଦନ୍ତପୁର ଅବରୋଧ କଲେ । (2.) ଅନ୍ୟ ରାଜାମାନେ ସେଥିରେ ତାଙ୍କ ସଙ୍ଗେ ଯୋଗଦେଲେ । ସେ ଗୁହଶିବଙ୍କୁ କହିଲେ—'ଦନ୍ତ ଦିଅ, ନଚେତ୍ ଯୁଦ୍ଧ କରି ପ୍ରାଣ ଦିଅ ।' ଗୁହଶିବ 2. ସୈନ୍ୟବଳ ଦେଖି ଭୀତ ହୋଇ, ବିଜୟରେ ନିରାଶ ହୋଇ, ଏବେ ଦନ୍ତକୁମାରଙ୍କୁ ଖବର ଦେଇ ପଠାଇଲେ, ✳ ସେ ମଲେବେ ପଛକେ ଦନ୍ତ ଦେବେ ନାହିଁ । ମାତ୍ର ସେ ଯଦି ଯୁଦ୍ଧରୁ ନ ଫେରନ୍ତି, ତେବେ ବ୍ରାହ୍ମଣ ବେଶରେ ଏଇ ଦନ୍ତଟି ନେଇ ସିଂହଳକୁ ମହାସେନଙ୍କୁ ଦେବାକୁ ହେବ । ମହାସେନ ମହା ବୁଦ୍ଧଭକ୍ତ—ଏପରିକି, ସେ ଏଇ ଦନ୍ତଧୂଆ ପାଣି ( ପାଦୁକ ?) ଟିକିଏ ନେବା ପାଇଁ ଅନୁନୟ କରି ପଠାଇଥିଲେ । ଗୁହଶିବ ଯୁଦ୍ଧକୁ ବାହାରି ନିହତ ହେଲେ ।

---

✳ ଏଥିରୁ ବୋଧ ହେଉଛି ଦନ୍ତଟି ଗୁପ୍ତ ସ୍ଥାନରେ କିଛି ଦୂରରେ ଥିଲା ।

## ଦନ୍ତ ଆଗ ବାଲିରେ ପୋତା ହୋଇ ପରେ ସିଂହଳକୁ ଯିବା—

ଦନ୍ତକୁମାର ସେଠାରୁ ପୂର୍ବ ବ୍ୟବସ୍ଥାମତେ ବ୍ରାହ୍ମଣବେଶରେ ଦନ୍ତକୁ ଘେନି ସହରରୁ ଦକ୍ଷିଣକୁ ପଳାଇ ଗୋଟିଏ ବଡ଼ ନଈ ପାର ହୋଇ, ଦନ୍ତକୁ ସେଇ ନଈ ଆରପାଖେ ବାଲିରେ ପୋତିଦେଲେ । (1.) ଏଇପରି ଜଗନ୍ନାଥ ମୂର୍ତ୍ତିକୁ ପୋତିବା କଥା ବ୍ରାହ୍ମଣଙ୍କ ଇତିହାସ ( ମାଦଳା ପାଂଜି ) ରେ ମଧ୍ୟ ଅଛି । ସେଥିରୁ ସହରକୁ ଫେରି ନିଜ ପତ୍ନୀ ହେମମାଳାଙ୍କୁ ବ୍ରାହ୍ମଣ ବେଶରେ ସଙ୍ଗେ ଘେନିଯାଇ, ନିର୍ଜନ ଜଂଗଲ ଭିତରୁ ଦନ୍ତଟି ଖୋଳି କାଢ଼ି, ରାସ୍ତାରେ ବହୁକଷ୍ଟ ପାଇ ଶେଷରେ ତମଲିତ ( 2. ତାମ୍ରଲିପ୍ତି—ତମଲୁକ ) ବନ୍ଦରରେ ପହଂଚ, ସେଠାରେ ସିଂହଳ ଯିବାକୁ ବୋଇତରେ ଚଢ଼ିଲେ । ଏ ମଧ୍ୟରେ ଦନ୍ତଟି ବରାବର ହେମମାଳାଙ୍କ ବାଳ ଭିତରେ ଲୁଚାଇ ରଖା ହୋଇଥାଏ । ବୋଇତରେ ପ୍ରଥମ ରାତିରେ ଝଡ଼ ହେଲା । ବାଟରେ ରାଜାମାନେ ( ବୋଇତର ଯାତ୍ରୀ ? ) ଦନ୍ତକୁ ପୂଜାକଲେ । ଗୋଟିଏ ଉତ୍ସବ ଦଶ ଦିନ ଲଗିଲା ( ରଥଯାତ୍ରା ? ) ( 2. ) ଏଇପରି ହେମମାଳା ଓ ଦନ୍ତକୁମାର ପଥରେ ଘୋର ଦୁଃଖ ଓ ମହାବିଘ୍ନମାନ ଅତିକ୍ରମ କରି ଶେଷକୁ ନିର୍ବିଘ୍ନରେ ସିଂହଳରେ ପହଂଚଲେ । ଏଇସବୁ ବିଘ୍ନମାନଙ୍କର ଗୋଟି ଗୋଟି କରି ବର୍ଣ୍ଣନା ଦେଇ ବସିଲେ ହୁଏତ ସୁଖ ଲଗିବ ନାହିଁ । ତଥାପି ଗୋଟିଏ ଦୁଇଟି ଘଟଣା ଏଠାରେ ବର୍ଣ୍ଣନାଯୋଗ୍ୟ ।

## ବାଟରେ ଦନ୍ତ ଉପରେ ବିପ୍ଲବ—

(2) ସିଂହଳକୁ ଯିବାର ଅଧାବାଟରେ ହୀରକ ବାଲୁକା ( ହୀରାବାଲି ) ନାମକ ସ୍ଥାନରେ (ଫର୍ଗୁସନ ସାହେବ ଏଇ ସ୍ଥାନକୁ କୃଷ୍ଣାନଦୀ କୂଳ ବୋଲି ଅନୁମାନ କରନ୍ତି ) ଜାହାଜ ବାଜି ଭାଜି ଯିବାରୁ ସେ ଦୁହେଁ ସେଠାରେ ପଡ଼ିଲେ । ରାଜକନ୍ୟା ହେମମାଳା ଶୋଇଥିଲାବେଳେ ନାଗରାଜ ଏଇ ସ୍ମାରକ ଦନ୍ତଟି ଗ୍ରହିଲେ ନେଲେ । ସେଇ ନାଗରାଜଙ୍କ ପାଇଁ ଅନ୍ୟ ସ୍ମାରକମାନ ଗିଳିଥିଲେ । ( ଏଇ ସ୍ମାରକ ଛଡ଼ା, ବୁଦ୍ଧଙ୍କର ଅଉ ଦୁଇ ଦ୍ରୋଣ ସ୍ମାରକ ସେଇ ନାଗରାଜଙ୍କ ରାଜ୍ୟରେ ଥିଲା ) ନାଗରାଜଙ୍କ ଭାଇ ଏଇ ଦନ୍ତକୁ ଗିଳି ମେରୁକୁ ଉଡ଼ିଗଲେ । ହିମାଳୟର ଜଣେ 'ଥେର' ବା ସାଧୁଙ୍କ ପ୍ରଭାବ ଓ ମାଧ୍ୟସ୍ଥ୍ୟରେ ପୁଣି ସେ ଦନ୍ତ ମିଳିଲା ଓ ସିଂହଳକୁ ନିଆହେଲା । ଅଉ ସବୁ ସ୍ମାରକ ଗୋଟିଏ ସ୍ୱର୍ଣ୍ଣପାତ୍ରରେ ରଖାହେଲା; ଏଇ ପାତ୍ର ଏକ ସିନ୍ଦୁକରେ ରଖାହେଲା; ପାତ୍ର ଓ ସ୍ମାରକ ସମେତ ସିନ୍ଦୁକଟି ଏକ ସୁନା ଜାହାଜରେ ରଖାହେଲା । ତା ପରେ "ସାତ ହାତ ଦୀର୍ଘଧାରଣା" ଓଜାରରେ ଗୋଟିଏ କାଠ ଜାହାଜ ତିଆରି ହେଲା ଓ ସେଥିରେ ବସି ହେମମାଳା ଓ ଦନ୍ତକୁମାର ନିଜ ଦେଶକୁ ଫେରିଲେ । 'ହୀରାବାଲି'ରେ ସ୍ମାରକମାନଙ୍କ ଉଦ୍ଦେଶ୍ୟରେ ଏକ 'ଚୈତ୍ୟ' ନିର୍ମିତ ହେଲା । 'ଅମରାବତୀ ଷ୍ଟୋପ୍' ଏଇ ଚୈତ୍ୟ ବୋଲି ବିଶ୍ୱାସ । ଏହା ଖ୍ରୀଷ୍ଟାବ୍ଦ

୩୨୨ରୁ ୩୮୦ ମଧ୍ୟରେ ନିର୍ମିତ ବୋଲି ଅନୁମାନ ହୁଏ । ଏଇ ଚୈତ୍ୟରେ ବୁଦ୍ଧଙ୍କ ଦନ୍ତ ନେଇ ଯାଉଥିବା ଜାହାଜ ଖୋଦିତ ଥିବାର ଦେଖାଯାଏ; ପୁଣି ସେହି ଦନ୍ତ ଅନ୍ୟ ଦୃଶ୍ୟମାନଙ୍କରେ ନାଗରାଜ, ଏକ ରାଜପୁତ୍ର ଓ ତା ସଙ୍ଗେ ଏକ ନାରୀ— ଏମାନଙ୍କ ମଧ୍ୟରେ କଥୋପକଥନର ଚିତ୍ରମାନ ଦେଖାଯାଏ । ପୁଣି ଏସବୁର ଦାଠାବଂଶ କଥା ସଙ୍ଗେ ଏତେ ସାମ୍ୟ ଯେ, ସେଥିରେ ଏସବୁ ସାମ୍ୟକୁ ଆକସ୍ମିକ ବା ଯଥାର୍ଥ ଘଟଣା ଭିତ୍ତିହୀନ ବୋଲିହୋଇ ନ ପାରେ । ଅନ୍ୟତ୍ର ପ୍ରମାଣରୁ ସମ୍ଭବ ହୁଏ, ବୁଦ୍ଧଙ୍କର ଗୋଟିଏ ଦନ୍ତ କେତେକ ସମୟ ସାଲସେଟି ଦ୍ୱୀପର କାହ୍ନେରି ଗୁହାରେ ରଖା ହୋଇଥିଲା । ସେଠାରେ ଖ୍ରୀଷ୍ଟାବ୍ଦ ୩୨୦ରେ ଖୋଦିତ ଏକ ତାମ୍ରଲିପିରେ ଏଇ ଘଟଣାର ଉଲ୍ଲେଖ ଥିବାର ଆବିଷ୍କୃତ ହୋଇଅଛି । ପୁଣି ସେଥିରେ ଯାହା ଲେଖା ହୋଇଛି, ସେଥିରେ ଖୁବ୍ ସମ୍ଭବ ହେଉଛି ଏଇ କାହ୍ନେରି ଦନ୍ତ ଓ ପାଟଳୀପୁତ୍ରରେ ଅଭିଷିକ୍ତ ଦେଖାଉଥିବା ଦନ୍ତ, ଏକ ବସ୍ତୁ । ପୁଣି ଭାରତର ପ୍ରାଚୀନ ଶିଳ୍ପ ଓ ଅଜନ୍ତାର ପ୍ରାଚୀନ ଚିତ୍ରମାନଙ୍କରେ ସ୍ମାରକମାନ ହସ୍ତୀ ହାଉଦାଣ୍ଡ ସହ ଉତ୍ସବସ୍ଥାନରେ ନିଆଯାଉଥିବାର ଚିତ୍ରମାନ ଅଛି । ଏଇ ଉତ୍ସବ ବୈଭବ ବୁଦ୍ଧଦନ୍ତ ନେଇ ହେଉଥିବା ଉତ୍ସବ ପରି ଦେଖାଯାଏ ।

## ସିଂହଳରେ ଦନ୍ତର ପ୍ରତିଷ୍ଠା—

ଦନ୍ତକୁମାର ଓ ହେମମାଳା ସିଂହଳରେ ପହଞ୍ଚି ଶୁଣିଲେ, ମହାସେନଙ୍କର କାଳ ହୋଇଯାଇଥିଲା । ସେଠାରେ ଦନ୍ତକୁ ପୁଣି ଲୁଚାଇଲେ । ପରେ ଜାଣିଲେ ମହାସେନ ପୁତ୍ର ଶ୍ରୀ ମେଘବର୍ଣ୍ଣ ( ୩୦୨-୩୩୦ ଖ୍ରୀଷ୍ଟାବ୍ଦ ) ମହାବୁଦ୍ଧଭକ୍ତ । ଏଇ ଶ୍ରୀ ମେଘବର୍ଣ୍ଣଙ୍କ ରାଜତ୍ୱର ନବମ ବର୍ଷରେ ଦନ୍ତ ସିଂହଳର ଅନୁରାଧାପୁର ମନ୍ଦିରରେ

* Journal of the Royal Asiatic Society, London, 1868, Vol. III, p. 132; Journal of the Bombay Branch of the Royal Asiatic Society, Vol. V, pp. 10-12; Indian Antiquary Vol. III, p. 25; Mr. Fergusson's Serpent and Tree Worship London, 1873; Cunningham's Ancient Geography of India, London, 1871, pp. 530 et sef, Stiling's History of Orissa—Specially for the war that took place in 318 A.D. among Rakta Bahu and Sirbhum—a very near approximation to the capture and fall of Dantapur.

ପ୍ରତିଷ୍ଠିତ ହୋଇଥିଲା । ଏଇ ଦନ୍ତ ସିଂହଳର ମହାସମ୍ପଦ ଓ ବୌଦ୍ଧଜଗତର ପରମାରାଧ୍ୟ ।

## ଦନ୍ତର ପରବର୍ତ୍ତୀ ଇତିହାସ ଓ ଉତ୍ସବ ଯାତ୍ରାର ସୂଚନା—

୧୫୬୦ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜମାନେ ସିଂହଳ ଜିଣି ଏହି ଦନ୍ତକୁ ନେଇ ଗୋଆଠାରେ ଭର୍ଜି ଚୂର୍ଣ୍ଣ କରି ନଦୀରେ ପକାଇ ଦେଇଥିଲେ । ମାତ୍ର ସିଂହଳର ବୌଦ୍ଧମାନେ କହନ୍ତି, ଏହା ଲୁଗୃତ ଦିଆ ହୋଇଥିଲା । ଅସଲ ଦାନ୍ତ ପର୍ତ୍ତୁଗୀଜମାନେ ପାଇ ନାହାନ୍ତି । ଏହା ଏବେ କାଣ୍ଡିନଗରରେ ଯେପରି ଥିଲା, ସେଇପରି ଅଛି । ଏହି ପର୍ତ୍ତୁଗୀଜବିଜୟ ପରେ ବ୍ରହ୍ମଦେଶ ପେଗୁର ରାଜା 'ବ୍ରହ୍ମା' ପୁଣି ଥରେ ବହୁ ଧନ ଦେଇ ଦାନ୍ତଟି ସିଂହଳରୁ କିଣି ନେଇ ପେଗୁରେ ମନ୍ଦିର କରି ରେଖିଥିଲେ । ତାହା ଏବେ ସେଠାରେ ଅଛି ଓ ପୂଜା ପାଉଛି । ମାତ୍ର ସିଂହଳୀମାନେ କହନ୍ତି, ଅସଲ ଦାନ୍ତ ଦିଆ ଯାଇଁ ନାହିଁ । ଏବେ 'କାଣ୍ଡିର' 'ମଲିଗାବ' ମନ୍ଦିରରେ ଯାହା ଅଛି, ସେଇଟି ଅସଲ । ଡ୍ରେଭି ସାହେବ ନିଜ ସିହଂଳ ଇତିହାସରେ ଏଇ ସିଂହଳ ଦାନ୍ତର ଏକ ଚିତ୍ର ଦେଇଚନ୍ତି । ତାହା କାଁରୁ ମନୁଷ୍ୟଦନ୍ତ ପରି ନୁହେ । ସେ ଯାହା ହେଉ, ଏଇ ଦାନ୍ତ ଯେଉଁଠାରୁ ଯାଉଚି, ସେଠାରେ ପୁଣି ଅସଲ ରହୁଚି । ଏହାହିଁ ମନେ ରଖିବାର କଥା । ପୁରୀର ଜଗନ୍ନାଥଙ୍କ ପେଟରେ ସେଇପରି ଅସଲ ମଧ୍ୟ ଥିବାର ସମ୍ଭବ । ଜଗନ୍ନାଥଙ୍କ ପୌରାଣିକ ଇତିହାସରୁ ତାହା ସ୍ପଷ୍ଟ ହେବ । ମନେ ରଖିବାର ଅଛି, ପୁରୀ ଜଗନ୍ନାଥଙ୍କ ରଥଯାତ୍ରାପରି ଏଇ ଦାନ୍ତ ବର୍ଷକେ ଥରେ ମହାସମାରୋହରେ ବାହାରକୁ ବାହାରେ । (2) ସେ ଯାତ୍ରା ବୈଶାଖପୂର୍ଣ୍ଣିମା ପୂର୍ବ ତ୍ରୟୋଦଶୀରେ ଆରମ୍ଭ ହୁଏ । ୧୮୨୮ ଖ୍ରୀଷ୍ଟାବ୍ଦରେ ଏହା ୨୭ ମେ'ରେ ଆରମ୍ଭ ହୋଇଥିଲା । ସେଦିନ ଉପର ଫରୁଆ ( କରଣ୍ଡୁଆ ) ଖୋଲି କଢ଼ା ହୋଇ ରଖାହେଲା । ୨୯ ମେ ପୂର୍ଣ୍ଣିମାରେ ବାହାରକୁ ବାହାରିବା ଯାତ୍ରା ଆରମ୍ଭ ହେଲା । ଖୁବ୍ ଶୋଭାଯାତ୍ରାରେ ହାତୀ ଉପରେ ଏଇ ଦାନ୍ତ ଫରୁଆ ସହରର ମଝି ରାସ୍ତା ବାଟେ ବାହାରେ ଦୂରରେ ତିଆରି ହୋଇଥିବା ଏକ ମଣ୍ଡପକୁ ନିଆଗଲା । ବାଟରେ ଓ ମଣ୍ଡପରେ ଫରୁଆ ଫିଟାଇ ସମସ୍ତଙ୍କୁ ଏହା ଦେଖାଇ ଦିଆଯାଉଥାଏ । ୩ ତାରିଖ ଜୁନ୍ ଯାଏ ଛଅ ଦିନ ଏଇ ମଣ୍ଡପରେ ରଖା ହୋଇ, ପୁଣି ସେଇପରି ଶୋଭାଯାତ୍ରାରେ ସେଇ ଦିନ ଦାନ୍ତ ମନ୍ଦିରକୁ ଫେରିଲା ।

## ଜଗନ୍ନାଥର ଇତିହାସ —'ଜଗନ୍ନାଥ' ନାମ—

ଏବେ ଏଇ ଦନ୍ତ ଇତିହାସ ସଙ୍ଗେ ସ୍କନ୍ଦପୁରାଣ ତଥା ସ୍ଥାନୀୟ କିଂବଦନ୍ତୀ ମୂଳକ 'ଦେଉଳ ତୋଳା' ପୁସ୍ତକରେ ଲୁଚିଥିବା ପୁରୀ ଜଗନ୍ନାଥଙ୍କ ଇତିହାସଟି ତୁଳନା କରାଯାଉ । ଏଠାରେ ମନେ ରଖିବାକୁ ହେବ 'ଜଗନ୍ନାଥ' କଥାଟି ବୁଦ୍ଧଙ୍କ

ନିଜ ଉକ୍ତି । ବୁଦ୍ଧ ହେଲାବେଳେ ଓ ଦେହତ୍ୟାଗ କଲାବେଳେ ବୁଦ୍ଧ କହି ପକାଇ-ଥିଲେ—'ମୁଁ ଜଗତର ନାଥ'—'ଜଗତର ଦୁଃଖନାଶର ଉପାୟ ମୁଁ ପାଇଛି' । ✻

## ଇନ୍ଦ୍ରଦ୍ୟୁମ୍ନ ଓ ବିଦ୍ୟାପତି—ନୀଳମାଧବ-ଦାରୁବ୍ରହ୍ମ ବିଗ୍ରହ—

ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ନାରଦ କହିଲେ; ପୂର୍ବ ସମୁଦ୍ରକୂଳେ ନୀଳମାଧବ ଅଛନ୍ତି । ତାଙ୍କୁ ପୂଜା କରିବା ମାନସରେ ବ୍ୟାକୁଳ ହୋଇ ସେ ନିଜର ଯୁବକ ମନ୍ତ୍ରୀ ବ୍ରାହ୍ମଣ ବିଦ୍ୟାପତିଙ୍କୁ ନୀଳମାଧବ ଠାବ କରିବା ପାଇଁ ପଠାଇଲେ । ( ଏଠାରେ ଖିରଧର ଓ ତାଙ୍କ ପୁତ୍ରୁର ବୁଦ୍ଧଦନ୍ତକୁ ନିଜର କରିବା ଉଦ୍ୟମ ସ୍ମରଣୀୟ । ପୁଣି ସେଉଁ ଯୁବକ ମାଳବରୁ ଆସି ଦନ୍ତକୁମାର ହୋଇଥିଲେ ତାଙ୍କ ସଙ୍ଗେ ବିଦ୍ୟାପତିଙ୍କ ସାମଂଜସ୍ୟ ତୁଳନୀୟ ।) ବିଦ୍ୟାପତି ବହୁ କଷ୍ଟରେ ଆସି ନୀଳମାଧବ କ୍ଷେତ୍ର ( ନୀଳାଚଳ )ରେ ପହଞ୍ଚି ଦେଖିଲେ, ବିଶ୍ୱାବସୁ ଶବର ନୀଳମାଧବଙ୍କୁ ଜଙ୍ଗଲ ଭିତରେ ଲୁଚାଇ ରଖି ପୂଜା କରୁଛନ୍ତି, ଅନ୍ୟ କାହାକୁ ନୀଳମାଧବ ଦେଖାଉନାହାନ୍ତି । ସେଠାରୁ ବିଦ୍ୟାପତି ବିଶ୍ୱାବସୁଙ୍କ ଅତିଥିରୂପେ ରହି, କ୍ରମେ ବିଶ୍ୱାବସୁ କନ୍ୟାଙ୍କ ସଙ୍ଗେ ନିଜର ବିବାହ ବ୍ୟବସ୍ଥା କରିନେଲେ ଓ ସେଇ କନ୍ୟାଙ୍କ ସାହାଯ୍ୟରେ ନୀଳମାଧବଙ୍କୁ ଥରେ ଦେଖିଲେ, ପୁଣି ସେଇ କନ୍ୟାଙ୍କ ହେତୁରୁ ସେ ଗୁପ୍ତ ସ୍ଥାନକୁ ବାଟ ଜାଣିଲେ । କାରଣ, ବିଶ୍ୱାବସୁ ବିଦ୍ୟାପତିଙ୍କ ମୁହଁରେ କନା ବାନ୍ଧି ନୀଳମାଧବଙ୍କ ପାଖକୁ ନେଇ-ଥିଲେ ଓ ଦେଖାଇ ସାରି କନା ବାନ୍ଧି ଘରକୁ ଅଣିଥିଲେ । 'ଦେଉଳ-ତୋଳା'ରେ ଅଛି କନ୍ୟାଙ୍କ ପରାମର୍ଶରେ ବିଦ୍ୟାପତି ହାତରେ ମୁଠାଏ ସୋରିଷ ଧରି ଯାଇଥିଲେ ଓ ଗୋପନରେ ସେଇ ସୋରିଷ ବାଟରେ ବୁଣି ବୁଣି ଗଲେ । ପରେ ସୋରିଷ ଗଛ ଦେଖି ବାଟ ଜାଣିଲେ । ସେଠାରୁ ବିଦ୍ୟାପତି ଅସି ଇନ୍ଦ୍ରଦ୍ୟୁମ୍ନଙ୍କୁ ଖବର ଦେଲେ । ଇନ୍ଦ୍ରଦ୍ୟୁମ୍ନ ସୈନ୍ୟ ସଙ୍ଗେ ଘେନି ବିଦ୍ୟାପତି ଦେଖାଇବା ବାଟରେ ଉତ୍କଳ ଆଡକୁ ଆସିଲେ । ବାଟରେ ସେ ଚର୍ଚ୍ଚିକାଠାରେ ଉତ୍କଳରାଜାଙ୍କୁ ଦେଖି ସଖ୍ୟ କଲେ । (ଖିରଧରଙ୍କ ପୁତ୍ରୁର ସଙ୍ଗେ ଅନ୍ୟ ରାଜା ଯୋଗ ଦେବା କଥା ଏଠାରେ ଲକ୍ଷ୍ୟ କରିବାର ଅଛି) । ପରେ ବିଶ୍ୱାବସୁ ଇନ୍ଦ୍ରଦ୍ୟୁମ୍ନଙ୍କ ସେନାରେ ଭୀତ ହୋଇ ଆତ୍ମସମର୍ପଣ କଲେ, ମାତ୍ର ନୀଳମାଧବ ଅନ୍ତର୍ଧାନ ହେଲେ । ସେଠାରୁ ଇନ୍ଦ୍ରଦ୍ୟୁମ୍ନ ନ ଖାଇ ନ ପିଇ ୨୧ ଦିନ ଅଧା ପଡ଼ିଲେ ଓ ପରେ ସ୍ୱପ୍ନାଦେଶରେ ଜାଣିଲେ, ନୀଳମାଧବ ଖଣ୍ଡେ କାଠ ହୋଇ ସମୁଦ୍ରରେ ଭାସୁଛନ୍ତି । (ବେଦରେ ଏଇ କାଠ ରୂପ ହୋଇ ବ୍ରହ୍ମା ସୃଷ୍ଟି ବିକାଶ କରିଥିବା କଥା ଏଠାରେ ମଧ୍ୟ ସ୍ମରଣୀୟ ।) ଏଇ କାଠକୁ

---

✻ (2) p. 6 Foot-note—Jagannath is an appelation which Gautama himself assumed, for when he became Buddha and also when he was about to expire, he exclaimed, "O universe, I am thy Lord"

ମୂର୍ତ୍ତି ତିଆରି କରିବାକୁ ହେବ, ସେଇ କାଠ ଭିତରେ ବ୍ରହ୍ମରୂପରେ ନୀଳମାଧବ ରହିବେ ⁕ । ଲୋକେ ସେଇ କାଠକୁ ଦାରୁବ୍ରହ୍ମ ବୋଲି ପୂଜା କରିବେ । ସେଠାରୁ ଇନ୍ଦ୍ରଦ୍ୟୁମ୍ନ ସେଇ କାଠରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଗୃହେଷ୍ଟି (ଚତୁର୍ଧା) ମୂର୍ତ୍ତି କରାଇ ପ୍ରତିଷ୍ଠା କରିବାକୁ ଗଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ଯଥାର୍ଥ ନୀଳମାଧବଙ୍କୁ ସ୍ୱରୂପରେ ନ ଦେଖି ବ୍ୟସ୍ତ ହେଲେ । ସେଇଠାରେ 'ବଟବୃକ୍ଷ'ରେ ଏକ କାକ ଥିଲା, ସେ ନିଜେ ନୀଳମାଧବଙ୍କୁ ଦେଖି ଥିବାର କହିଲା ଓ କଥିତ ହୁଏ ସେଇ କାକର ପ୍ରସ୍ତରମୟ ରୂପ ଏବେ ଜଗନ୍ନାଥଙ୍କ ବଡ଼ ଦେଉଳରେ ପୂଜା ପାଏ । ପୁଣି ଗୃହେଷ୍ଟି ମୂର୍ତ୍ତିର ତତ୍ତ୍ୱ ମଧ୍ୟ ଜଣା ପଡ଼େ ନାହିଁ । ସୁଦର୍ଶନ ଇନ୍ଦ୍ରଧ୍ୱଜର ଦୀର୍ଘ ସରଳ ଖମ୍ବାକୃତି ହେଲେହେଁ, ସମସ୍ତ ଯାତ୍ରା ଉତ୍ସବ ପୂଜାଦିରେ ନେତା ସେଇ । ସମସ୍ତ ଦେବ ମାନବ ବିଶ୍ୱର ପ୍ରତିଷ୍ଠାର ପ୍ରତୀକ ଏକା ସେଇ । ଏଇ ଦ୍ୟାବା ପୃଥିବୀ ଖମ୍ବରେ ପ୍ରତିଷ୍ଠିତ ବୋଲି ମଧ୍ୟ ବେଦ କହନ୍ତି (ଉପରର ପାଦ ଟୀକା ଦେଖ) । ତେଣୁ ଏଇ ସୁଦର୍ଶନଙ୍କୁ ବିଶ୍ୱ ପ୍ରତିଷ୍ଠାତା—ବୁଦ୍ଧଙ୍କ ପ୍ରତୀକ ଓ ଅନ୍ୟ ତିନମୂର୍ତ୍ତିଙ୍କୁ ଅଶୋକ, ମହେନ୍ଦ୍ର, ସଂଘମିତ୍ରା ବୋଲି କଳ୍ପନା କରାଯାଇପାରେ । କାରଣ ଜଗନ୍ନାଥଙ୍କ ମନ୍ଦିର ମାଦଳା ପାଞ୍ଜିରେ ସଶୋକ (ଅଶୋକ) ନାମଟି ସ୍ପଷ୍ଟ ଅଛି । ପୂର୍ବେ ଓଡ଼ିଶା ଓ ପୂର୍ବ ଭାରତରେ 'ଅ' କିମ୍ବା 'ଦୁ'ରେ ନାମ ଆରମ୍ଭ କରୁ ନ ଥିଲେ, ସେଥିପାଇଁ ଓଡ଼ିଆ ଓ ବଙ୍ଗଳାର ସେକାଳେ ମହାଭାରତକାରମାନେ ଧର୍ମପୁତ୍ର ଯୁଧିଷ୍ଠିରଙ୍କ ମୁହଁରେ ଦୁର୍ଯ୍ୟୋଧନ ପରିବର୍ତ୍ତିରେ ସୁଯୋଧନ ଦେଇଚନ୍ତି । ଏଇ ସଶୋକ ଦେବ ସମ୍ରାଟ ଥାଇ ଜଗନ୍ନାଥଙ୍କ ଭକ୍ତ ଓ ସେବକ ଥିଲେ ବୋଲି ମାଦଳା ପାଞ୍ଜି କହନ୍ତି † । ପୁଣି ଅଶୋକଙ୍କ ମାତାଙ୍କ ନାମ ଥିଲା 'ସୁଭଦ୍ରାଙ୍ଗୀ' ସଂଘମିତ୍ରାଙ୍କ ନାମ ସୁଭଦ୍ରା ଥିବା ସମ୍ଭବ । ମହେନ୍ଦ୍ର ତ 'ଇନ୍ଦ୍ରାବଜ' କଷ୍ଟୁଙ୍କ ବଡଭାଇ । ଯେବେ ଦେବାନାଂ ପ୍ରିୟ 'ପ୍ରିୟଦର୍ଶୀ' ଅଶୋକ ଧର୍ମର ନେତା ରୂପେ 'ସୁଦର୍ଶନ' (ପ୍ରିୟଦର୍ଶନ) ପୁଣି ଜଗନ୍ନାଥ ମଧ୍ୟ ବୁଦ୍ଧ ପ୍ରତୀକ ହୋଇପାରନ୍ତି । ଏସବୁ ଏକା ଅନୁସନ୍ଧେୟ ।

---

⁕ ଋଗ୍‌ବେଦରେ ଋଷି ପଚାରିଚନ୍ତି, "କି ବଣ (କାଠ) କି ଗଛରେ ଦେବମାନେ ବା ବିଶ୍ୱକର୍ମା ଏ ବିଶ୍ୱ ତିଆରି କଲେ" (ଋ-୧୦. ୩୧. ୭; ୧୦. ୮୧.୨ ତୈତ୍ତିରୀୟ ବ୍ରାହ୍ମଣରେ ଏହାର ଉତ୍ତର ଦିଆହୋଇଚି, "ବ୍ରହ୍ମହିଁ ହେଉଚନ୍ତି ସେଇ କାଠ, ସେଇ ଗଛ ।" (ତୈତ୍ତିବ୍ରାହ୍ମ ୨.୮.୯) । ଦ୍ୟାବା ପୃଥିବୀ ଖମ୍ବ ( ସ୍କମ୍ଭ, ସ୍କମ୍ଭନ)ରେ ପ୍ରତିଷ୍ଠିତ ବୋଲି କୁହା ହୋଇଚି (ଋ-୨.୧୫. ୨; ୧୦. ୧୪୯. ୧, ୨) ସବୁ ଦେବମାନେ ( ବିଶ୍ୱେଦେବା) ଖମ୍ବ (ସ୍କମ୍ଭ) ରୂପରେ ବିଶ୍ୱ ବିଧାତା (ବିଶ୍ୱକର୍ମା) ବୋଲି ପୁଣି ଅଥର୍ବ ବେଦ କହନ୍ତି । ଏଇ ଖମ୍ବ ସଙ୍ଗେ ପୁଣି ପୁରୀ ମନ୍ଦିରର 'ସୁଦର୍ଶନ'ଙ୍କୁ ତୁଳନା କରାଯାଇପାରେ—ପରେ ଦେଖ ।

† ସ୍ୱର୍ଗତ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ରଙ୍କ ପୁରୀ 'ଜଗନ୍ନାଥ ମନ୍ଦିର'ର ଇତିହାସ ଦେଖ ।

ମାତ୍ର ଜଗନ୍ନାଥ ଯେ ବୁଦ୍ଧାବତାର ଏଥିରେ ସନ୍ଦେହ ନାହିଁ । ପୁଣି ବିଶ୍ୱାବସୁ 'ଶବର' ହେଲେହେଁ ରାଜା ଥିଲେ ଓ ନୀଳମାଧବ ଯେ କୌଣସି ବୌଦ୍ଧ ଧର୍ମର ସ୍ତୂପର ପୂଜା ଥିଲା ତାହା ମଧ୍ୟ ଅନୁମାନ ହୁଏ । ତାହାର ଅନ୍ୟ ଆନୁଷଙ୍ଗିକ କାରଣ ଦିଆଯାଉଛି ।

## ଦନ୍ତ ଓ ଜଗନ୍ନାଥ ଇତିହାସର ତୁଳନା—

ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କୁ ପୂଜା କରିବାକୁ ଆଗ ଚର ପଠାଇ ପରେ ସୈନ୍ୟ ସାମନ୍ତ ଘେନି ଆସିଲେ । ପାଟଳୀପୁତ୍ରରେ କୋଶଳ (ଏହା ମଧ୍ୟ ଦକ୍ଷିଣ କୋଶଳ ତଥା ମାଳବର ଅନ୍ତର୍ଗତ ଥାଇପାରେ । ସେସବୁ ଲଗାଲଗି ରାଜ୍ୟ)ର ରାଜା ଖିରଧର ପରାଜିତ ଓ ନିହତ ହେଲେ । ସେ ବୁଦ୍ଧଭକ୍ତ ଥାଇ ମଧ୍ୟ ଦନ୍ତକୁ ନଜର କରିବାକୁ ଯାଇଥିଲେ । ଏଠାରେ (1.) ଟର୍ନର୍ ସ ହେବ କହନ୍ତି, ନିଜେ ବୁଦ୍ଧଭକ୍ତ ହୋଇ କାହିଁକି ଦନ୍ତ ଉପରେ ବଳାତ୍କାର କରିବାକୁ ଗଲେ, ତାହା ସେ ବୁଝି ପାରି ନାହାନ୍ତି । ମାତ୍ର ଖିରଧର ଖୁବ୍ ସମ୍ଭବ ମହାଯାନ ବୌଦ୍ଧ ବା ଭକ୍ତିବାଦବିଶ୍ୱାସୀ ବୌଦ୍ଧ ଥିଲେ ବୋଲି ସିଂହଳ ଐତିହାସିକ କହନ୍ତି । କଳିଙ୍ଗର ଦନ୍ତ-ବୌଦ୍ଧଧର୍ମ ଥିଲା ହୀନଯାନ ବା ଜ୍ଞାନମୂଳକ । ଏହି ମହାଯାନମାନେ ଅତିଶୀଘ୍ର ବୁଦ୍ଧଙ୍କୁ ବିଷ୍ଣୁ କରି ପକାଇ ବୈଷ୍ଣବ ହୋଇ ଯାଇଥିଲେ । ଏହା ସର୍ବବାଦୀସମ୍ମତ । ପୁଣି ସିଂହଳର ଧର୍ମ ଏବେ ମଧ୍ୟ ହୀନଯାନ ବୌଦ୍ଧ ଧର୍ମ । କଳିଙ୍ଗ ସିଂହଳର ଧର୍ମ ଏକା ଥିଲା । ଖିରଧର ବୌଦ୍ଧ ବୈଷ୍ଣବ ଥାଇ, ଦନ୍ତକୁ ସେଇ ଧର୍ମର ପୀଠ ଓ ପୂଜାସ୍ଥାନରେ ପରିଣତ କରିବାକୁ ଇଚ୍ଛା କରି ଆସିଥିଲେ । ଏଇ ସୂତ୍ରରେ ସେକାଳେ ବୌଦ୍ଧଧର୍ମର ବୈଷ୍ଣବଧର୍ମରେ ପରିଣତି ଗ୍ରହିଥିବା କଥା ଇତିହାସ କହନ୍ତି ।

## ଦନ୍ତ ଓ ଦାରୁବ୍ରହ୍ମ—

ଖିରଧର ପରାସ୍ତ ହେଲେ । ତା ପରେ ଦନ୍ତ ପାଟଳୀପୁତ୍ର ଗୁଡ଼ି କଳିଙ୍ଗର ଦନ୍ତପୁରକୁ ଆସିଲା । ଏଇ ଦନ୍ତ ହୀନଯାନ ବୌଦ୍ଧର ଏକ ମହାପୀଠ ଥିଲା । ଏହାକୁ ବୈଷ୍ଣବ କରିନେବାକୁ ହେବ । ତେଣୁ କଳିଙ୍ଗରାଜ ମଧ୍ୟ ଉତ୍ତର ଭାରତର ଏଇ ଉଦ୍ୟମ ବୁଝିପାରି ଦନ୍ତକୁ ସହର ଭିତରେ ବା ସହର ପାଖ କୌଣସି ଜଂଗଲରେ ଲୁଚାଇଲେ । ଖିରଧରଙ୍କ ପୁତ୍ରର (ଇନ୍ଦ୍ରଦ୍ୟୁମ୍ନ) ଖବର ପାଇଲେ, ଦନ୍ତ ସମୁଦ୍ର କୂଳେ ଦନ୍ତପୁରକୁ ଗଲା । ମାତ୍ର ଠିକ୍ କେଉଁଠାରେ ତାହା ମିଳିବ ଜାଣିପାରିଲେ ନାହିଁ । ସେଥିପାଇଁ ବିଦ୍ୟାପତିଙ୍କୁ ପଠାଇଲେ । ବିଦ୍ୟାପତି ଦନ୍ତପୂଜା କରି ହୀନଯାନ ପନ୍ଥା ଆଦରି, ଦନ୍ତକୁମାର ନାମ ଧରି ବିଶ୍ୱାବସୁ (ଗୁହଶିବ କନ୍ୟା) ହେମମାଳାଙ୍କୁ ବିଭା ହେବାର ଠିକ୍ କଲେ । ମାତ୍ର ମନ ନ ଥିଲେ ମଧ୍ୟ କର୍ତ୍ତବ୍ୟ ଅନୁରୋଧରେ ପୁଣି ଇନ୍ଦ୍ରଦ୍ୟୁମ୍ନଙ୍କୁ ଖବର ଦେବାକୁ

ଗଲେ । ଇନ୍ଦ୍ରଦ୍ୟୁମ୍ନ ଏବେ ସୈନ୍ୟ ସାମନ୍ତ ଧରି ଆସିଲେ । ବାଟରେ ଚର୍ଚ୍ଚିକାଠାରେ ଉତ୍କଳରାଜଙ୍କ ସଙ୍ଗେ ମିତ୍ରତା କରି ଆସି ଦନ୍ତପୁର ଆକ୍ରମଣ କଲେ । ତା ପରେ ନୀଳମାଧବ (ଦନ୍ତ) ଅନ୍ତର୍ଦ୍ଧାନ ହେଲେ । ଦନ୍ତକୁମାର ତାଙ୍କୁ ନେଇ ନଦୀ ପାର ହୋଇ ଚିଲିକା କୂଳ ବାଲିରେ ପୋତିଲେ । ପୁଣି ୨୧ ଦିନ ପରେ ସେ ଦନ୍ତ ସମୁଦ୍ରରେ କାଠ ଭିତରେ ରହି ଭାସିଲା । ଏସବୁର ସାମଂଜସ୍ୟ ଯୁକ୍ତିରେ ଉଡ଼ାଇ ଦେବାର ବସ୍ତୁ ନୁହେ ।

## ଦନ୍ତକୁମାର ଓ ବିଦ୍ୟାପତି—ଦନ୍ତର ବିଷ୍ଣୁତ୍ୱ ପ୍ରାପ୍ତି—

ପୁଣି ଖାଲି ୨୧ ଦିନ ଅଧ୍ୟାପକ ଦାରୁବ୍ରହ୍ମ ପାଇଲେ ନାହିଁ । ବିଦ୍ୟାପତିଙ୍କର ବିଶ୍ୱାବସୁ ( ଶବର ) କନ୍ୟାଙ୍କ ସଙ୍ଗେ ବିବାହକୁ ସାଧୁ ବୋଲି ସ୍ୱୀକାର କରି, ବଂଶାନୁକ୍ରମେ ସେଇ ବିଦ୍ୟାପତିଙ୍କୁ ଜଗନ୍ନାଥଙ୍କ ଶ୍ରେଷ୍ଠ ସେବକ ରୂପେ ସ୍ୱୀକାର କଲେ । ବିଶ୍ୱାବସୁ ବଂଶ ସେଇ ଦାରୁବ୍ରହ୍ମ ବିଗ୍ରହର ଅଧିକାରୀ—ଏପରି କି, ଲକ୍ଷିତ ହୋଇ ରହିଲେ । ବୁଦ୍ଧଙ୍କୁ ବିଷ୍ଣୁ କରିବାରେ ଓଡ଼ିଶାର ସାମ୍ୟ ଧର୍ମର ଆଗ୍ରହ ସବୁ ସମ୍ପୂର୍ଣ୍ଣ ସ୍ୱୀକାର କରିହେଲା । ଶ୍ରେଷ୍ଠ ବ୍ରାହ୍ମଣ ମଧ୍ୟ ଘୃଣିତ ଶବର ଓ ଚଣ୍ଡାଳ ସଙ୍ଗେ ଆଗ୍ରହରେ ସମାନ ହେଲେ । ତେବେ ବୁଦ୍ଧ ଦନ୍ତ ବଡ଼ କାଠଟି ଆତ୍ମାରୂପେ ସମୁଦ୍ରରୁ କୂଳକୁ ଆସିଲେ । ସବୁଠାରୁ ଯେପରି ଦାଂତଟି ଯାଉଚି, ପୁଣି ଅସଲଟି ରହୁଚି, ଏଇ ଦାରୁବ୍ରହ୍ମ ହୁଏତ ହେଇ ଘଟଣାର ପ୍ରାଚୀନତମ ଅଭିନୟ । ଇନ୍ଦ୍ରଦ୍ୟୁମ୍ନ ଦେଖିଲେ, ଦାଂତ ଅଂତର୍ହିତ । ତେଣୁ ଦାରୁବ୍ରହ୍ମ ରୂପେ ତାଂକୁ ସମୁଦ୍ରରୁ ଆଣି ସେ ସ୍ଥାନଯାକ ବୌଦ୍ଧପୀଠକୁ ବୈଷ୍ଣବ କରିବାରେ ବ୍ରତୀ ହେଲେ । ଏଇ ପ୍ରତିଷ୍ଠା ବେଳକୁ ପୁଣି ବିଶ୍ୱାବସୁ ନ ଥିଲେ ଓ 'ଗାଳମାଧବ' (ସ୍ଥାନୀୟ ରଜା) ମଧ୍ୟରିଦ ଇନ୍ଦ୍ରଦ୍ୟୁମ୍ନଂକୁ ଗୁଣ୍ଡିଚାଦେବାରେ ଆପତ୍ତି କଲେ । ସ୍ୱର୍ଗରୁ ଦେବତାମାନେ ଓ ମର୍ତ୍ତ୍ୟରୁ ଋଷିମାନେ ସମସ୍ତେ ଆସି ଜମା ହୋଇ ନ୍ୟାୟ କରି କଥାଟି ତୁଟାଇଲେ, ସମସ୍ତ ସ୍ଥାନୀୟ ବୌଦ୍ଧ ଆଗ୍ରହ ମାନି ଯାଇ, ସେଇସବୁ ଆଗ୍ରହକୁ ବୈଷ୍ଣବ ନାମ ଦେଇ ବିଷ୍ଣୁଙ୍କ ବୌଦ୍ଧାବତାର ପ୍ରତିଷ୍ଠା ସାଂଗ କଲେ ।

## ମହାଭାରତର ଇନ୍ଦ୍ରଦ୍ୟୁମ୍ନ—

ମହାଭାରତ ବନ ପର୍ବରେ ଇନ୍ଦ୍ରଦ୍ୟୁମ୍ନଙ୍କ ସଂବଧରେ ଏକ ଉପାଖ୍ୟାନ ଅଛି । ତାହା ଏଇ ଇନ୍ଦ୍ରଦ୍ୟୁମ୍ନ ବୋଲି ମନେ ହୁଏ । ସେଠାରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ବହୁ ପ୍ରାଚୀନ ବୋଲି ଦେଖାଇବାର ଉଦ୍ୟମ କରାଯାଇଚି । ହାଭେଲ ସାହେବ * ଓ ଅନ୍ୟାନ୍ୟ ପଣ୍ଡିତମାନେ କହନ୍ତି, ମହାଭାରତର ବର୍ତ୍ତମାନ ସଂସ୍କରଣ ଖ୍ରୀ: ୪ର୍ଥ ଶତାବ୍ଦୀ ବା ୫ମ ଶତାବ୍ଦୀରେ ଗୁପ୍ତ ରାଜତ୍ୱର ବେଦ ଧର୍ମ ଅଭ୍ୟୁଦୟ ବେଳେ ପୂର୍ଣ୍ଣ ହୋଇଥିଲା । ତେବେ ଖ୍ରୀ: ୩୧୦ରେ ଇନ୍ଦ୍ରଦ୍ୟୁମ୍ନ ପୁରୀ ଆସିଥିବା ଓ ଦାଂତକୁମାର ତଥା ହେମମାଳା

* See H. E. Havel's 'The Indo-Aryans'.

ସମୁଦ୍ରବାଟେ ସିଂହଳକୁ ଦନ୍ତ ନେଇଥିବା କଥାରେ ମଧ୍ୟ ଶେଷ ସ ଆସିବାରେ ଏହା ଅନ୍ୟତର ପ୍ରମାଣ ।

## ଯଥାର୍ଥରେ ଜଗନ୍ନାଥରେ ବୈଷ୍ଣବ ଧର୍ମ ବୌଦ୍ଧ ହେଲା—

ସେ ଯା ହଉ, ପୁରୀର ବୌଦ୍ଧପୀଠରେ ବୈଷ୍ଣବ ଧର୍ମ ବରଂ ବୌଦ୍ଧଧର୍ମରେ ପରିଣତ ହୋଇ ସାଲ୍ୟ କରିଛି । ନାମଟି ଏଡା ବଷ୍ଟୁ ହେଲେହେଁ, ଆସ୍ତୃରେ ଏଠାରେ ଏବେ ମଧ୍ୟ ବୁଦ୍ଧ ବଦ୍ୟମାନ । ଭାରତରୁ ବୌଦ୍ଧ ଧର୍ମ ବିତାଡ଼ିତ ହୋଇଛି, ମାତ୍ର, କଳିଙ୍ଗରେ ଏହାର ପ୍ରତିଷ୍ଠା ଏବେ ବି ଜନ୍ମସୂଚକ । ଓଡ଼ିଶାର ଧର୍ମରେ ବ୍ରାହ୍ମଣ ଚଣ୍ଡାଳର ଭେଦ ନାହିଁ । ଏ କାଳ ବେଦଧର୍ମର ମେରୁଦଣ୍ଡ ଜାତିଭେଦ ଏଇ ଓଡ଼ିଶାରେ ନିଜର ଲୁପ୍ତ ଗୌରବ ବଳିଦେଇ ଧର୍ମ ଓ ଆସ୍ତୃରର ସମାଧାନ ଶିଖିଛି ।

## ଗୀତା ଧର୍ମର ପ୍ରତୀକ—ଜଗନ୍ନାଥ—

ଆସ୍ତୃର ହିସାବରେ 'ଜଗନ୍ନାଥ' ହିଁ ଗୀତା ଧର୍ମର ପ୍ରତୀକ କହିଲେ ଚଳେ । ଜଗନ୍ନାଥ ହିଁ ଭଗବାନଙ୍କର ଯଥାର୍ଥ ଅବତାର । ତେଣୁ ଏହା ସେଇ କାଳରୁ ଆସୀମାନ୍ତ ହିମାଳୟ ସମଗ୍ର ଭାରତର ମହାତୀର୍ଥ । ଏହାଙ୍କର ନାମ, ସ୍ଥାନର ନାମ ଧରି ଦ୍ୱାରକାନାଥ, ବଦ୍ରିନାଥ କିଂବା ବ୍ୟକ୍ତିର ନାମ ଧରି ରାମନାଥ ପରି ନୁହେଁ । ଭାରତର ଚାରି ଧାମରେ ଶ୍ରେଷ୍ଠ ଧାମ ଏ ଜଗନ୍ନାଥ । ସମସ୍ତ ଜଗତ୍ତ୍ୱ ବା କ୍ଷର ପୁରୁଷ ଭିତରେ ଅଧ୍ୟାତ୍ମ—ପୁଣି କ୍ଷର ଓ ଅକ୍ଷରରୁ ଅତୀତ ଭକ୍ତର ଭଗବାନ୍, ଏଇ ଏକା ସଙ୍କେତରେ ତଥା ସାକ୍ଷାତରେ 'ପୁରୁଷୋତ୍ତମ' ( ୧୫. ୧୬-୧୮ ) । ସଙ୍କେତରେ ତଥା ସ୍ୱରୂପରେ ଭକ୍ତର ଏଇ ପୁରୁଷୋତ୍ତମ ଏକା ଆଜି ଜଗତକୁ ଜୀବନ୍ତ ଭାଷାରେ କହୁଚନ୍ତି—

"ପିତାମହସ୍ୟ ଜଗତୋ
    ମାତା ଧାତା ପିତାମହଃ ।
ବେଦ୍ୟଂ ପବିତ୍ର ମୋଂକାରଃ
    ଋକ୍ ସାମ ଯଜୁରେବଚ ॥
ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ
    ନିବାସଃ ଶରଣଂ ସୁହୃତ୍ ।
ପ୍ରଭବଃ ପ୍ରଳୟଃ ସ୍ଥାନଂ
    ନିଧାନଂ ବୀଜମବ୍ୟୟମ୍ । ( ୯.୧୭, ୧୮ )

ପୃଥିବୀରେ ଏପରି ଧର୍ମପୀଠ ନାହିଁ । ପ୍ରତୀକରେ ହିଁ ମାନବ ବିଶ୍ୱ ଧାରଣା କରି ତାହା ଜୀବନ ରଖେ, ସେଇ ବିଶ୍ୱ ପ୍ରତୀକ ଆଜି ଏଠାରେ ଜ୍ଞାନର ମୈତ୍ରୀ

ଓ କର୍ମର ସାମ୍ୟ ଧର୍ମ ଏକାଧାରରେ ଯେଉଁ ଜ୍ଞାନ-କର୍ମ-ଭକ୍ତିର ମହାସମନ୍ୱୟ ଓ ସମାଧାନ 'ଯୋଗ'ର ଯଥାର୍ଥ ବିଗ୍ରହ ଧରି ଭକ୍ତଙ୍କୁ ସଙ୍କେତ କରୁଛନ୍ତି—

"ସର୍ବଭୂତସ୍ଥମାତ୍ମାନଂ
ସର୍ବଭୂତାନିଚାତ୍ମନି ।
ଈକ୍ଷତେ ଯୋଗଯୁକ୍ତାତ୍ମା
ସର୍ବତ୍ର ସମଦର୍ଶନଃ ॥" ( ୬, ୨୯ )

ମାନବ ମାନବରେ ଭେଦ ନାହିଁ । ଅଧିକାର ଭେଦରେ ବ୍ୟକ୍ତିର କର୍ତ୍ତବ୍ୟ ଭିନ୍ନ ହେଲେହେଁ, ବିକାଶରେ ବ୍ୟକ୍ତି ମାନେ ଅଧ୍ୟାତ୍ମର ପ୍ରକାଶ । ଏଇ ବ୍ୟକ୍ତି ମାନଙ୍କର ଅନ୍ୟ ପ୍ରତି କର୍ତ୍ତବ୍ୟର ଧାରା ହିଁ ବିକାଶର ଧର୍ମ । ଏଇ କର୍ତ୍ତବ୍ୟ ବା କର୍ମଧାରଣାର ସୁଗମ ପନ୍ଥା ହେଉଛି, ସର୍ବତ୍ର ମତେ ଦେଖିବା ଓ ମୋଠି ସବୁ ଦେଖିବା । ସବୁ ବ୍ୟକ୍ତି—କାଷ୍ଠ, ପାଷାଣ, ତରୁ, ତୃଣ, ସ୍ୱେଦଜ, ଅଣ୍ଡଜ, ଜରାୟୁଜଠାରୁ ମାନବ ଓ ଦେବ ପର୍ଯ୍ୟନ୍ତ ସବୁ ବ୍ୟକ୍ତି ବିଶ୍ୱ ପୁରୁଷର ବିକାଶ—ସବୁଠାରେ ସେଇ ବିଶ୍ୱ ପୁରୁଷ, ପୁରୁଷୋତ୍ତମ ମୁହିଁ ପୂର୍ଣ୍ଣମାତ୍ରାରେ ବିରାଜିତ, ପୁଣି ସେ ସମସ୍ତେ ମୋଠି, ମୁହିଁ ତାଙ୍କର ଆଧାର, ମୋର ହେତୁରୁ ସେ ଅନ୍ୟଥା ସେ ନାହାନ୍ତି । ତାଙ୍କୁ ଦେଖି ବୁଝିଲେ ମତେ ଦେଖିବ, ମତେ ବୁଝିଲେ ତାଙ୍କୁ ମନକୁ ଜାଣିପିବ । ତେବେ ବ୍ୟବହାରରେ ଆଉ ବ୍ରାହ୍ମଣ କାହିଁ ବା ଚଣ୍ଡାଳ କାହିଁ ? ଭକ୍ତ ! ମତେ ଦେଖି ବିଶ୍ୱ ଦେଖ—

ଯୋ ମାଂ ପଶ୍ୟତି ସର୍ବତ୍ର
ସର୍ବଂ ଚ ମୟି ପଶ୍ୟତି ।
ତସ୍ୟାହଂ ନ ପ୍ରଣଶ୍ୟାମି
ସ ଚ ମେ ନଂ ପ୍ରଣଶ୍ୟତି ॥ (୬. ୩୦)

ଏହା ହିଁ ଜ୍ଞାନ ଓ କର୍ମର ସମାଧାନର ପ୍ରତୀକ । ଏହା ହିଁ ଜ୍ଞାନରେ କର୍ମ, ଏହା ହିଁ ବୁଦ୍ଧରେ ବିଷ୍ଣୁ ଓ ବିଷ୍ଣୁଙ୍କର ବୁଦ୍ଧାବତାର । ଏଇଠାରେ ପୁଣି ଜ୍ଞାନ କର୍ମର ପ୍ରବାହ 'ଆପୂର୍ଯମାଣ' ଓ 'ଅଚଳପ୍ରତିଷ୍ଠ' ( ୨.୭୦ ) ଭକ୍ତିସିନ୍ଧୁରେ ସମାନ ଓ ଏକାକାର । ଏଇ 'ସମାନ ଓ ଏକାକାର' ଧର୍ମର ବିଶ୍ୱପ୍ରତୀକ **'ଜଗନ୍ନାଥ'** ।

## ଜଗନ୍ନାଥ ତତ୍ତ୍ୱ ଓ ଭକ୍ତିରେ ଜ୍ଞାନ-କର୍ମ-ସମୁଚ୍ଚୟ—

ପୁଣି ତତ୍ତ୍ୱଦୃଷ୍ଟିରେ ଏଇ ଜଗନ୍ନାଥ ଯୁଗ ଯୁଗାନ୍ତ ପରୀକ୍ଷିତ ମାନବର ଜ୍ଞାନ ସାଧନା ଓ କର୍ମ ଶୃଙ୍ଖଳାର ବିଗ୍ରହ ମାତ୍ର । ବୁଦ୍ଧର ଦନ୍ତ ତଥା ଦେବର ଦାରୁବ୍ରହ୍ମ ବା ଦାରୁରୂପ ବ୍ରହ୍ମା । (ତୈତ୍ତିରୀୟ ବ୍ରାହ୍ମଣ-୨.୮.୯) ବୃହସ୍ପତିଙ୍କର ଏହା ମହାସମନ୍ୱୟ । ଦାରୁବ୍ରହ୍ମ, ବିଶ୍ୱବିକାଶର ମୂଳ ସାଧନ ଓ ସାମଗ୍ରୀ । ଏହା ହିଁ ଅନନ୍ତ ବିଶ୍ୱକର୍ମଲୀଳାର

ସ୍ୱେଦନା ପୀଠ । ଏହା ହିଁ ଗୀତାର 'ଯୋଗ' । ଦାନ୍ତ ସଙ୍କେତମାନଙ୍କରେ ବୌଦ୍ଧର ଶୂନ୍ୟସାଧନାରେ କର୍ମତ୍ୟାଗ—କର୍ମତ୍ୟାଗରେ ନିଷ୍କ୍ରିୟ ସାଂଖ୍ୟ ପୁରୁଷ ନିତ୍ୟ ଧାରଣା ବା ଗୀତାର 'ଭୂତ ପ୍ରକୃତି ମୋକ୍ଷ' (୧୩.୩୪) । କ୍ଷେତ୍ର ହିଁ ସମସ୍ତ କ୍ଷେତ୍ର ପ୍ରକାଶ କରେ । ବ୍ୟକ୍ତିର ଜ୍ଞାନମାନ ହିଁ ଜଗତ୍ । ଏଥିରେ ଯେତେବେଳେ ଧାରଣା ହୁଏ—

"ଯଥା ପ୍ରକାଶୟତ୍ୟେକଃ
କୃତ୍ସ୍ନଂ ଲୋକମିମଂ ରବିଃ ।
କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ
ପ୍ରକାଶୟତି ଭାରତ ॥" ( ୧୩.୩୩ )

—ଏହି ଜ୍ଞାନରେ ଯେତେବେଳେ ବିଶ୍ୱ ପୁରୁଷଙ୍କ ପ୍ରକାଶର ସମାଧାନ ହୁଏ—ସେତିକିବେଳେ ଜ୍ଞାନ ଓ କର୍ମ, ସାଂଖ୍ୟ ଓ ଯୋଗ ଏକ । ଏହା ହିଁ ଯେ ଦେଖେ, ସେ ଦେଖେ (୫.୫) । ଏହା ହିଁ ବୁଦ୍ଧ ପ୍ରତୀକରେ ଦାରୁବ୍ରହ୍ମ । ଏହା ହିଁ ନିତ୍ୟ ପରମାଣରେ ବିନଶ୍ୟନ୍ତ ଭୂତ ମାନଙ୍କରେ ଅବିନଶ୍ୱର ପରମେଶ୍ୱର (୧୩.୨୭) । ଏହା ହିଁ ଜ୍ଞାନରାଜ୍ୟର ପ୍ରକୃତି କ୍ରିୟା ବା ବିଶ୍ୱମୟ କର୍ମ ମଧ୍ୟରେ ଅକର୍ତ୍ତା ଆତ୍ମା ସମବସ୍ଥିତ । (୧୩. ୨୮, ୨୯) । ଏହା ହିଁ କର୍ମରେ ସାମ୍ୟବୁଦ୍ଧି ଓ ଜ୍ଞାନରେ ନିତ୍ୟସ୍ଥିତି । ଏହାହିଁ କାମନାତ୍ୟାଗରେ କର୍ମତ୍ୟାଗ ତଥା ଶୂନ୍ୟରେ 'ପୁରୁଷୋତ୍ତମ'—ଏହା ହିଁ ଯଥାର୍ଥ ମାନବ । ସୁଲଭ, ଭକ୍ତିଗମ୍ୟ ପ୍ରତୀକ ବା ଦେବତା ଜଗନ୍ନାଥ । ଏହା ହିଁ କେବା ଯେ ଦେଖେ ସେ ଦେଖେ ।



## ୧୪—ଜଗନ୍ନାଥ କଳିଙ୍ଗ ଧର୍ମ ଓ ଶବର ସଂସ୍କୃତିର ନିତ୍ୟ ସଂକେତ—

## ଜଗନ୍ନାଥ କଳିଙ୍ଗ ଧର୍ମ ଓ ଶବର ସଂସ୍କୃତିର ନିତ୍ୟ ସଂକେତ—

କଳିଂଗର ଧର୍ମ ଓ ସଂସ୍କୃତିକୁ ଏକ କଥାରେ କହିଲେ ବୁଝାଯିବ—ଏହା ଜଗନ୍ନାଥ । ଏଠାରେ କର୍ମରେ ଭେଦ ଜ୍ଞାନ ନାହିଁ—ଧର୍ମରେ ଅନ୍ଧତା ନାହିଁ । ଏହା ହିଁ ବିଶ୍ୱଧର୍ମରେ ମହାସମନ୍ୱୟର ବିଗ୍ରହ । କଳିଂଗର ବୃଦ୍ଧ ଶବର, ଦୃପ୍ତ ମାଳବରାଜଙ୍କୁ ଏହା ଶିଖାଇ ଚିରକାଳ ପାଇଁ ଭାରତର ଧର୍ମର ଏଇ ନିତ୍ୟ ପ୍ରତିଷ୍ଠାନରେ ପ୍ରାଣ ପ୍ରତିଷ୍ଠା କରି ଯାଇଚନ୍ତି । ଏହା କଳିଂଗ ତଥା ଶବରସଂସ୍କୃତିର ନିତ୍ୟ ସଙ୍କେତ ରୂପେ ଭେଦ ଧର୍ମ ଜର୍ଜରିତ ଭାରତ ତଥା ପୃଥିବୀରେ ସନାତନ ସତ୍ୟର ମହାବାଣୀ ସିଂଧୁସମୀର-ଦୋଳିତ ସମୁନ୍ନତ ଚକ୍ରାଳ ସଂକେତରେ ପ୍ରଚାର କରୁଅଛି ।

## ଶାବରୀ ତନ୍ତ୍ର ସାଧନା ଓ ବୈଦିକ ଯୋଗ—

ହେଲେହେଁ, କଳିଂଗର ଶବର ସଭ୍ୟତାର ଅନ୍ୟନ୍ୟ ମଧ୍ୟ ଆତ୍ମୁଶ ବିଶୁଦ୍ଧି ଅବଶେଷ ଯେ ନାହିଁ ତା ନୁହେଁ । ବୌଦ୍ଧଧର୍ମର ତନ୍ତ୍ରଲୀଳା କଥା ସମସ୍ତେ ଜାଣନ୍ତି । ନାନାଭାବରେ ଏହାର ଆଘାତ ଚିହ୍ନ ସବୁ ପରେ ଶୈବ ଓ ବୈଷ୍ଣବ ଧର୍ମକୁ କଳଙ୍କିତ କରି ରଖିଚି । ପୂର୍ବଭାରତରେ ଏଇ ଆଘାତ ଲାଞ୍ଛନ ଆଜି ମଧ୍ୟ ସ୍ପଷ୍ଟ । ଭାରତ ଧର୍ମ ଅର୍ଥାତ୍ ବୌଦ୍ଧଧର୍ମର ଶୂନ୍ୟସାଧନା ଏକ ଚିରଂତନ ଶରୀରସାଧନାର ଯୋଗ । ଏହା ବୁଝାଯାଇଚି । ଏଥିରେ ନରନାରୀ ସମାଗମରେ ସୃଷ୍ଟିର କଳ୍ପନା ଓ ଶରୀର ମାତ୍ର ହିଁ ସାଧନାର କ୍ଷେତ୍ର । ଶୂନ୍ୟମୂଳ ଜଗତରେ କର୍ମତ୍ୟାଗ ତଥା ସନ୍ୟାସୀର ସ୍ଥିତି ସୁଗମ ହୋଇପାରେ । ତାହା ହୋଇଥିଲା । ସେଇ ସାଧନାରେ ଯୋଗୀ ଓ ସିଦ୍ଧମାନେ ଶରୀରକୁ ବାସ୍ତବରେ ଶୂନ୍ୟ ବୋଲି ଦେଖାଇ ଯାଉଥିଲେ । ଅବଲୀଳାକ୍ରମେ ଚିତାରୋହଣ କରି ଶରୀର ତଥା ଜ୍ଞାନକୁ ଯଥାର୍ଥ ଶୂନ୍ୟ କରି ଦେଇ 'ନିର୍ବାଣ' ଲାଭ ମଧ୍ୟ କରି ପାରୁଥିଲେ । ଏହାର ଉଦାହରଣ ପୂର୍ବେ ଆଲେକଜାଣ୍ଡର ସଂଗେ ଯୋଗ ଯାଇଥିବା ଯୋଗୀଙ୍କ କଥାରେ ବୁଝାଯାଇଚି । ଏଇ ସ୍ଥିତିକୁ କର୍ମର ସାଧନାରେ ଉଠିବା ହିଁ ଗୀତାର ଯୋଗ ବୋଲି ମଧ୍ୟ ବୁଝାଯାଇଚି । ସେଇ ସାଧକର ସ୍ଥିତିକୁ ଲକ୍ଷ୍ୟ କରି ଭଗବାନ୍ କହିଚନ୍ତି—

> ନିରାଶୀର୍ଯତଚିତ୍ତାତ୍ମା
> ତ୍ୟକ୍ତସର୍ବପରିଗ୍ରହଃ
> ଶାରୀରଂ କେବଳଂ କର୍ମ
> କୁର୍ବନ୍ନାପ୍ନୋତି କିଲ୍ବିଷଂ ॥ (୪.୨୧)

ଅର୍ଥାତ୍, ତୃଷ୍ଣା ଓ ତୃଷ୍ଣାରେ (ବେଗ) ଗୋଟାଇବା ଗୁଡ଼ି, ଇନ୍ଦ୍ରିୟକୁ ଠିକ୍ କରି ଯେ କର୍ମ ସବୁ ଖାଲି ଶରୀରମାତ୍ରରେ କରୁଥାଏ, ସେଇ ଏକା କର୍ମ ଦୋଷ ଛୁଡ଼ିପାରେ । କର୍ମ ଛୁଡ଼ି ହେବ ନାହିଁ । ପୁଣି କର୍ମ ଛୁଡ଼ିଲେ ଆଳସ୍ୟରୁ କାମ ଆସି ଆତ୍ମାକୁ ନାରଖାର କରିଦେବା ସମ୍ଭବ । ତେଣୁ ନିଷ୍କର୍ମା ଯୋଗୀମାନେ ଯେଉଁ ସ୍ଥିତିକୁ ପାଆନ୍ତି, ତାକୁ ନିଷ୍କାମକର୍ମୀ ଯୋଗୀ ହୋଇ ଲାଭ କରିବାକୁ ହେବ । ମାତ୍ର ସବୁ ହେଲେହେଁ, ସାଂଖ୍ୟ ବା କେବଳ ନିଷ୍କର୍ମା ସାଧକଙ୍କ ଗନ୍ତବ୍ୟ ଯାହା, ନିଷ୍କାମକର୍ମୀଙ୍କ ଗନ୍ତବ୍ୟ ଠିକ୍ ତାହା । ଏହା ନିଶ୍ଚୟ (୫.୫) । ସେଇ ସ୍ଥିତିକୁ ସାଧାରଣ ଲୋକେ ବୁଝିବା ଭଳି ସ୍ପଷ୍ଟ କରି ବୁଝାଇ କହୁଚନ୍ତି—

ଶକ୍ନୋତୀହୈବ ଯଃ ସୋଢୁଂ
ପ୍ରାକ୍ ଶରୀରବିମୋକ୍ଷଣାତ୍
କାମକ୍ରୋଧୋଦ୍ଭବଂ ବେଗଂ
ସ ଯୁକ୍ତଃ ସ ସୁଖୀ ନରଃ ॥ (୫. ୨୩)

ଅର୍ଥାତ୍, ମରି ପଡ଼ିଥିଲା ବେଳେ ଯେପରି ରମଣୀର ଆଲିଙ୍ଗନରେ 'କାମ' ହୁଏ ନାହିଁ, କିମ୍ବା କେହି ନିଜର ପୂର୍ବଦାଗ୍ରଧନାଦି ହରଣ କଲେ କ୍ରୋଧ ହୁଏ ନାହିଁ, ମରିବା ପୂର୍ବରୁ କାମ କ୍ରୋଧାଦିରେ ଯାହାର ସେଇ ପରିସ୍ଥିତି ହୁଏ, ସେଇ ଏକା 'ଯୋଗୀ', ସେଇ ସୁଖୀ । କର୍ମର ମଣିହାରରେ ଯୋଗ ନାହିଁ, କି ଦୁଃଖର ତୁଳନାରେ ସୁଖ ନାହିଁ । ଏଇ ପରିସ୍ଥିତିରେ ରହି କର୍ମ କଲେହେଁ, କର୍ମ 'ଶାରୀର' ହୁଏ । ଅର୍ଥାତ୍, ଶରୀର କର୍ମ କରେ ମନ ବା ଆତ୍ମା ସେଥିରେ କଳୁଷିତ ହୁଏ ନାହିଁ ।

## ଶୂନ୍ୟ ସାଧନା-ଜ୍ଞାନ-ବିନ୍ଦୁ-ନାଦ-ନାମ—

କିନ୍ତୁ ପ୍ରାଚୀନ ଭାରତର ବୌଦ୍ଧଧର୍ମରେ ଠିକ୍ ତାହା ନ ଥିଲା । ସେଥିରେ ଜଗତ୍ ବା କର୍ମ ନାହିଁ । ସବୁ ଶୂନ୍ୟ-ଜ୍ଞାନମାତ୍ର । ଏଇ ଜ୍ଞାନ ହିଁ କର୍ମ । କର୍ମରେ କାମନା ରହିଚି, ତେଣୁ କାମନା ହେତୁରୁ ଜନ୍ମଜନ୍ମାନ୍ତରରେ ଜ୍ଞାନର ଯେଉଁ ପରମ୍ପରା ଗଢ଼ିଲି, ତାହାହିଁ ବ୍ୟକ୍ତି । କର୍ମ ଛୁଡ଼ିଦେଲେ କାମନାର ଧ୍ୱଂସ ହେବ । ଜ୍ଞାନ କ୍ରମେ ଶୂନ୍ୟ ହେବ—ବ୍ୟକ୍ତିତ୍ୱର ନିର୍ବାଣ ହେବ । ଏଇ ଜ୍ଞାନର ସାଧନା ପାଇଁ ବହୁ କାଳରୁ 'ଯୋଗ'ର ସୃଷ୍ଟି ହୋଇଥିବା କଥା ବୁଝାଯାଇଚି । ଏଇ ଯୋଗରେ ବ୍ୟକ୍ତି ବା ଜ୍ଞାନମାତ୍ରମୟ ଅସ୍ତିତ୍ୱକୁ ଶୂନ୍ୟ ବୋଲି ଚିନ୍ତା କରି ସେଥିରେ ବୁଦ୍ଧି ସ୍ଥିର ରଖିଲେ, ଶେଷରେ ବ୍ୟକ୍ତିତ୍ୱ ବା ଅହଂକାର ତୁଟିଯାଇ ନିର୍ବାଣ ହେବ । ମାତ୍ର ଯେଉଁ ବ୍ୟକ୍ତିତ୍ୱକୁ ଶୂନ୍ୟ କରିବ, ତାର ଉଦ୍ଭବ ଓ ବିକାଶ ଚିନ୍ତା ସେଥିରେ ରହିବା ସ୍ୱାଭାବିକ । ଏଇ ବିକାଶ ନାରୀ ପୁରୁଷର ସମାଗମ ଛଡ଼ା ଆଉ ଦୂରକୁ ଯାଇ ନ ପାରେ । ସେଥିରୁ ହିଁ ଲୌକିକ ଲିଙ୍ଗ-ଯୋନିର ପୂଜା । ସେଇଥିରେ ବିଶ୍ୱତତ୍ତ୍ୱ ମଧ୍ୟ

କାଳୀ ଓ କାଳ । ସେ ଯାହା ହଉ, ବ୍ୟକ୍ତର ନିକାଟରେ ଚନ୍ତାର ବିଶ୍ଳେଷଣ କରି ସ୍ଥିର ହେଲ—ସୃଷ୍ଟିର ବୀଜ ବିନ୍ଦୁ, ତାହାର ଜଳ-ପଦ୍ମରେ ପଡ଼ି, ପ୍ରଥମେ ସେଥିରେ ଜୀବନର କମ୍ପନ ବା ନାଦ ଉତ୍ପନ୍ନ ହେଲା । ସେଇ ନାଦରୁ ହେଲା ନାମ ବା ବ୍ୟକ୍ତ । ଏଇପରି ବିନ୍ଦୁ, ନାଦ ଓ ନାମରେ ସମସ୍ତ ବିକାଶର କଳ୍ପନା କରାଗଲା ।

## ବେଦରେ 'ଓଁ'—

କୁହାଯାଇଛି ଭାରତରେ ତତ୍ତ୍ୱର ବିରୋଧ ନାହିଁ । ମାନବର ଚନ୍ତାର ସ୍ୱାଧୀନତା ଏ ଭୂମିରେ କେବେ ଦୃପ୍ତ ଦଳନ ବା ବିତାଡ଼ନରେ ଶାନ୍ତ କରାଯାଇ ନାହିଁ । 'ଏକରେ ବହୁ' ହିଁ ବିକାଶ, ପୁଣି ବହୁ ଭିତରେ ଏକ ଦେଖି ବୈଷମ୍ୟର ସମାଧାନ କରିବା ହିଁ ତତ୍ତ୍ୱ । ସେଥିପାଇଁ ବେଦରେ ମଧ୍ୟ ପରେ ଏଇ ନିଷ୍ପତ୍ତି ଧରି ବିଶ୍ୱ ବିକାଶ ବ୍ୟାଖ୍ୟାରେ କୁହାଗଲା—ବ୍ରହ୍ମର ଶବ୍ଦ ଓ ସେଇ ନାମ ହେଉଛି ଓଁ । ଋଗ୍‌ବେଦ ସଂହିତାରେ ଏଇ ଓଁ ର ତତ୍ତ୍ୱ ନାହିଁ । ଏହା ପ୍ରଥମେ 'କଠୋପନିଷଦ୍'ରେ ମିଳେ (କଠ-୨. ୧୫) । ଭଗବାନ୍ ଏଇ ଚିତ୍ତ ସ୍ଥିର କରି ଧ୍ୟାନ କରି ବସିବା 'ଯୋଗ'ରେ ଜୀବାତ୍ମାକୁ ପରମାତ୍ମାରେ ମିଳାଇବା ପ୍ରସଙ୍ଗ କହୁଥିଲାବେଳେ, କହୁଛନ୍ତି ସେ 'ପଦ' ତତେ ମୁଁ କହିବି । ସେ ପଦ ହେଉଛି ଓଁ ଏଇ ଅକ୍ଷର ବା ଉଚ୍ଚାରିତ ଶବ୍ଦ ବ୍ରହ୍ମ ବା ଶବ୍ଦ ବ୍ରହ୍ମ (୮. ୧୧, ୧୩) । ଅବଶ୍ୟ ଭଗବାନ୍ ଠିକ୍ ଏ ଅର୍ଥରେ କହି ନାହାନ୍ତି । ଓଁ ଅକ୍ଷର ବୋଲିଲେ ଯେଉଁ ବ୍ରହ୍ମ ବୁଝାଯାଏ, କିମ୍ବା ଓଁ ନାମକ ଯେ ଅକ୍ଷର ବ୍ରହ୍ମ ବା ପରମାତ୍ମା, ତାଙ୍କୁଇ 'ବ୍ୟାହରନ୍' ବା କହି କହି ଅର୍ଥାତ୍, ଓଁ ପ୍ରତୀକରେ ବ୍ରହ୍ମ ଚନ୍ତା କରି କରି ଦେହ ଛାଡ଼ିବା କଥା ଭଗବାନ୍ କହୁଛନ୍ତି । ଏଇପରି ଦେହ ଛାଡ଼ିଲେ ସେ 'ପଦ' ବା ବ୍ରହ୍ମ ସ୍ଥାନ ପାଆନ୍ତି । ଏହା ଭଗବାନଙ୍କ ଅଭିପ୍ରାୟ । ଏହା ନାଦ ଓ ନାମର ଗୀତାଧର୍ମରେ ଯଥା ସ୍ଥାନସମାଧାନ । ମାତ୍ର କଠୋପନିଷଦ୍‌ରେ ଏଇ 'ପଦ' ଅର୍ଥାତ୍ ଶବ୍ଦରେ ଉଚ୍ଚାର୍ଯ୍ୟମାଣ ନାମ ହେଉଛି ଓଁ—ଏ ଅର୍ଥ ସ୍ପଷ୍ଟ କଠୋପନିଷଦ୍ କହନ୍ତି—

ତତ୍ ତେ ପଦଂ ସଂଗ୍ରହେଣ ପ୍ରବକ୍ଷ୍ୟେ ଓମିତ୍ୟେତତ୍ ।

ଅର୍ଥାତ୍, ସେଇ ପଦଟି ତତେ ଅଳ୍ପରେ କହିବି । ସେଇଟି ହେଉଛି, ଓଁ । ଅବଶ୍ୟ ଉପନିଷଦରେ ନାମକୁ କୌଣସିଠାରେ ତତ୍ତ୍ୱ ବୋଲି ଧାରି ଯାଇ ନାହିଁ । ନାମ ପ୍ରତୀକ ବା ତତ୍ତ୍ୱବସ୍ତୁର ସଙ୍କେତ । ମାତ୍ର ସେଇ ସଙ୍କେତକୁ ଉପନିଷଦ ଏଠାରେ ଯେଉଁ ଭାବରେ ପ୍ରକାଶ କରିଛନ୍ତି, ସେଥିରୁ ସ୍ପଷ୍ଟ ବୁଝାଯାଏ, ଏହା ବେଦରେ ପ୍ରତିଷ୍ଠିତ ନ ଥିଲା—ଏହା ଏକାବେଳକେ ଆଗନ୍ତୁକ । ଏହା ପ୍ରାଚୀନ ଭାରତର ନାମମାତ୍ର ବ୍ୟକ୍ତିତ୍ୱର ବେଦ ସାହିତ୍ୟରେ ସମାଧାନର ପ୍ରୟତ୍ନ ।

## ତେଜ ଓ ବାମ—ବେଦର ତ୍ରିବୃତ୍‌କରଣ ଓ ପଞ୍ଚୀକରଣ—

ଏଇ ବିନ୍ଦୁ, ନାଦ ଓ ନାମ ଶୃଙ୍ଖଳାର ବିକାଶ ସଙ୍ଗେ ପୁଣି 'ତେଜ' ବୋଲି କଥାଟି ଶୁଣାଯାଏ । ଏହାର ସ୍ଥାନ କେତେବେଳେ ଶବ୍ଦ ପୂର୍ବରୁ କେତେବେଳେ ବା ଠିକ୍ ଶବ୍ଦ ପରେ । ପୁଣି କେବେ କେବେ ଶବ୍ଦ ହିଁ ତେଜ । ସମ୍ଭବତଃ ନାମ ସଙ୍ଗେ ଯେ 'ରୂପ'ଟି ଜଡ଼ିତ ଅଛି, ତାକୁ ହିଁ ତେଜ ରୂପରେ କଳ୍ପନା କରାଯାଇଥିଲା । ଏଇ ରୂପ ପ୍ରଥମେ 'ନାଦ' ସଙ୍ଗେ ଫୁଟେ ଓ ତହୁଁ 'ନାମ' ହୁଏ । ପୁଣି କୁହାପି କୁହାଅଛି 'ତେଜ' 'ବାମ-ରୂପ' । 'ବାମ' ବା ତେଜ ବୀଜରେ ପ୍ରକାଶ ପାଏ । ତହୁଁ ବୀଜ ଜଳରେ ପଡ଼େ । ସେଇ ଜଳରୁ ନାମ ପ୍ରକାଶ ପାଏ । ଏଇ କଥାକୁ ପରେ ବସ୍ତୁତତ୍ତ୍ୱ-ବାଦୀ ବୈଦିକ ଋଷି ଏଇ ନାମକୁ ସ୍ଥୂଳ ବସ୍ତୁ ବା ପୃଥିବୀ ବା ଅନ୍ନ ବୋଲି କହି, ତେଜ, ଜଳ, ଅନ୍ନ—ଏଇ ତିନୋଟିରେ ବ୍ରହ୍ମରୂପ ବୀଜର ବିକାଶ କଳ୍ପନା କରିଥିଲେ । ଉତ୍ତର ବେଦାନ୍ତ ଗ୍ରନ୍ଥମାନଙ୍କରେ, କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ —ଏଇ ପାଞ୍ଚୋଟିର ବିକାଶରେ ବିଶ୍ୱବିକାଶ ହୋଇଥିବା କଥାଟି ପ୍ରାଚୀନ ନୁହେଁ । ପ୍ରାଚୀନ ଉପନିଷଦମାନଙ୍କରେ ଏଇ 'ପଞ୍ଚୀକରଣ' ପରିବର୍ତ୍ତିରେ 'ତ୍ରିବୃତ୍‌କରଣ'ରେ ସୃଷ୍ଟି ବ୍ୟାଖ୍ୟା କରାଯାଇଛି * । ପରେ ଏଇ 'ପଞ୍ଚୀକରଣ'ରେ ଶୂନ୍ୟ ହେଲା ଆକାଶ, ତହିଁରୁ ସ୍ଥୂଳତର ବାୟୁ ଓ କ୍ରମେ ସ୍ଥୂଳତର ତେଜ, ଜଳ ଓ କ୍ଷିତି (ପୃଥିବୀ ଓ ଅନ୍ନ) କ୍ରମେ ବିକାଶ ପାଇବାର କଳ୍ପନା ହେଲା ।

## ବେଦରେ 'ପିଣ୍ଡବ୍ରହ୍ମାଣ୍ଡ' ତତ୍ତ୍ୱର ସମାଧାନ—

ପ୍ରାଚୀନ ଭାରତରେ ତତ୍ତ୍ୱ ଥିଲା, ଏଇ ପିଣ୍ଡ ହିଁ ବ୍ରହ୍ମାଣ୍ଡ—ଜ୍ଞାନ ଛଡ଼ା ଆଉ ବ୍ରହ୍ମାଣ୍ଡ ବୋଲି କିଛି ନାହିଁ । ସେଥିରେ ସେମାନେ କେବଳ ବ୍ୟକ୍ତିଗତ ବିକାଶ ମାତ୍ର ଧରି ଶରୀର ସାଧନାରେ ମାତିଥିଲେ । ପ୍ରାଚୀନ ବୈଦିକ ତତ୍ତ୍ୱର 'ତ୍ରିବୃତ୍‌କରଣ'ରେ ମଧ୍ୟ ସେଇକଥା । ତେଜ ତତ୍ତ୍ୱରୁ ମନୁଷ୍ୟର ଅସ୍ଥି ମଜ୍ଜା ଓ ବାଣୀ, ଜଳ ତତ୍ତ୍ୱରୁ ମୂତ୍ର ରକ୍ତ ଓ ପ୍ରାଣ, ପୁଣି ଅନ୍ନ (ପୃଥିବୀ) ତତ୍ତ୍ୱରୁ ପୁରୀଷ ମାଂସ ଓ ମନ କ୍ରମେ କ୍ରମସୂକ୍ଷ୍ମ ପରିଣାମର ଉତ୍ପନ୍ନ ହୁଏ । ଏଇପରି ପରେ 'ପଞ୍ଚୀକରଣ'ରେ ମଧ୍ୟ ଶରୀର-ବିକାଶ କଳ୍ପନା କରାଯାଇଥିଲା । ସେ ସବୁ ଏଠାରେ ବୁଝାଇବା ଦରକାର ନାହିଁ । ବୈଦିକ ତତ୍ତ୍ୱସାଧନାରେ ଏ ସବୁର ବିଶେଷ ପ୍ରୟୋଗ ମଧ୍ୟ ନାହିଁ । ଏତିକି ଏଠାରେ ଦେଖିବାର କଥା ଯେ, ସାଧନାରେ କୌଣସି ପ୍ରୟୋଗ ନ ଥିଲେ ମଧ୍ୟ ଏଇ ସବୁ ବିଜ୍ଞାନ କେଉଁ ମୂଳରୁ ପ୍ରକାଶ ପାଇଥିଲା, ତାହା ବିଚାର କଲେ, ପ୍ରାଚୀନ ଭାରତର ଶରୀରସାଧନାରେ ଏହାର ମୂଳ ସ୍ପଷ୍ଟ ମିଳୁଛି । ପୁଣି 'ଓଁ' ରୂପ ନାମ ବାହାର କରି, ପୁଣି ତାକୁ ଶବ୍ଦ (ନାଦ) ସଙ୍ଗେ ଯୋଡ଼ି, ତାକୁ ବ୍ରହ୍ମର ପ୍ରତୀକ କରିବା କଥା ମଧ୍ୟ କୁହାଯାଇଛି । ଏଇପରି ବୈଦିକ ଧର୍ମ-ତତ୍ତ୍ୱ ସବୁ ପ୍ରକାର ମାନବଚିନ୍ତା ଓ ସାଧନା

* ତିଳକ 'ଗୀତାର ରହସ୍ୟ' ବଙ୍ଗଳା ସଂସ୍କରଣ ୧୮୮ ପୃଷ୍ଠା ଦେଖ ।

ତଥା ସେଇ ସବୁ ସାଧନାର ପରିଭାଷା ପର୍ଯ୍ୟନ୍ତ ନିଜର ଅଙ୍ଗୀଭୂତ କରି ବିଶ୍ୱମାନବର ଧର୍ମରେ ପରିଣତ ହୋଇଛି, ଏହା ପୂର୍ବ ସୂଚିତ ହୋଇଛି ।

## ବେଦଧର୍ମ ଓ ଭାରତ ଧର୍ମ—

ପ୍ରାଚୀନ ଭାରତର ଏଇ ତନ୍ତ୍ରପୀଠ ଲୋକସାଧାରଣ ସାଧନାରେ ଜଗନ୍ନାଥ ଧର୍ମର ବିକାଶ କରିଥିବା କଥା ମଧ୍ୟ କୁହାଯାଇଛି । ଜଗନ୍ନାଥଧର୍ମ ହିଁ ଏଇପରି ଲୋକ ଚଳନା ମାର୍ଗରେ ବୈଦିକ ତନ୍ତ୍ରଧର୍ମର ବହୁବିକାଶ । ହେଲେହେଁ ତନ୍ତ୍ରସାଧନାରେ ସେତେବେଳେ ଲୋକ ବ୍ୟବହାର ନିମନ୍ତେ—ବା ସମାଜ ଚଳାଇବା ବା ସମାଜର ଆଦର୍ଶ ଠିକ୍ କରି ସେଇ ଦୃଷ୍ଟିରେ ସମାଜର ଶୃଙ୍ଖଳା ଠିକ୍ ରଖିବା ପାଇଁ ସ୍ପଷ୍ଟ ପ୍ରୟତ୍ନ ଯୋଗୀମାନଙ୍କର ସାଧାରଣତଃ ନ ଥିଲା । ବ୍ୟକ୍ତିଧର୍ମରେ ବିଶ୍ୱ ଫୁଟିବାର ଅବକାଶ ସେଇ ଶୂନ୍ୟ ସାଧକମାନଙ୍କର ନ ଥିବାର କଥା । ତଥାପି ଲୋକସାଧାରଣ ସମାଜ-ଧର୍ମରେ ନିଷ୍ଠପ୍ତ ବ୍ରାତ୍ୟ ଥାଇ ବ୍ୟକ୍ତି ସଂଗେ ସହିତର ସମାଧାନ କରି ଏକ ପ୍ରକାର ବେଦଧର୍ମ ଓ ଭକ୍ତିର ବିକାଶ କରିଥିଲେ, ସନ୍ଦେହ ନାହିଁ । ତା ନ ହେଲେ ସମାଜର ସ୍ଥିତି ଓ ବିକାଶ ହୋଇ ନ ଥାନ୍ତା, ମାତ୍ର ଏ କଥା ମଧ୍ୟ କହିବାର ଅଛି, ସେଇ ଅନୁପଯୋଗିତା ଫଳରେ ବେଦଧର୍ମ ଭାରତର ଧର୍ମ (ବୌଦ୍ଧଧର୍ମ) କୁ ସମାଧାନରେ ଅଙ୍ଗୀଭୂତ କରି ଆତ୍ମପ୍ରତିଷ୍ଠା କରିବାରେ ବହୁ ସୁଯୋଗ ପାଇଥିଲା, ପୁଣି ଭାରତର ଅନାର୍ଯ୍ୟ ଓ ଶବର ମନୀଷୀମାନେ ନିଜର ସଂସ୍କୃତିକୁ ବେଦଧର୍ମ ନାମରେ ପ୍ରଚାର କରିଥିଲେ ଓ ସେ ସମାଧାନ ଭାରତର ସର୍ବାଙ୍ଗୀନ ଧର୍ମରୂପେ ପ୍ରକାଶିତ ହୋଇଥିଲା । ବୈଦିକ ଋଷିଙ୍କ ଭିତରେ ଅନାର୍ଯ୍ୟ ବିଶ୍ୱାମିତ୍ର ଓ ରାଜନ୍ୟଙ୍କ ଭିତରେ ପୁରୁ ଓ ଯଦୁ ତଥା ତଦ୍‌ବଂଶୀୟ ଅର୍ଜ୍ଜୁନ ଓ କୃଷ୍ଣ ବହୁକାଳର କଥା । ମାତ୍ର ସେ ଦିନର ଜଗନ୍ନାଥ ଲୋକଧର୍ମରେ ସେଇ ସମାଧାନର ପ୍ରତୀକ ।

## ସମାଧାନ ଅନାର୍ଯ୍ୟଙ୍କର କର୍ମ—

ହେଲେହେଁ ଏ ସମାଧାନ ଧର୍ମ ଖୁବ୍ ସମ୍ଭବ ଆଗନ୍ତୁକ ବିଜେତା ଅସୁରଦ୍ୱେଷୀ ଆର୍ଯ୍ୟଙ୍କର ନୁହେଁ । ପରବର୍ତ୍ତିକାଳରେ ଦେବଗୁରୁ ବୃହସ୍ପତି ନିଜ ପୁତ୍ର 'କଚ'ଙ୍କୁ ଅସୁର ଗୁରୁ ଶୁକ୍ରଙ୍କ ପାଖକୁ ଶିଖିବାକୁ ପଠାଇଥିବାର ଉପାଖ୍ୟାନଟି ପୁରାଣରେ ଅଛି । ସେ କଚଙ୍କୁ କଣ ଶିଖାଇବାକୁ ପଠାଇଥିଲେ ? ସେ ପଠାଇଥିଲେ—'ସଞ୍ଜୀବନୀ' ମନ୍ତ୍ର ଶିଖିବାକୁ, ଯେଉଁମନ୍ତ୍ର ଶିଖିଲେ ମର୍ତ୍ତ୍ୟ ମାନବ ଅମର ହେବ, ସେଇ ମନ୍ତ୍ର ଅସୁରଙ୍କର, ଏହା ଏଠାରେ ସ୍ପଷ୍ଟ । ଏଇ ଅମୃତ ମନ୍ତ୍ରର ଅଧିକାରୀ ଅନାର୍ଯ୍ୟମାନେ ହିଁ ଏ ଦେଶ ସଭ୍ୟତାର ପୀଠ । ସମାଧାନ ତାଙ୍କରି ପ୍ରକୃତି । ଆଗନ୍ତୁକ ବିଜେତାମାନେ ତାହା ଗ୍ରହଣ କରିଥିଲେ ମାତ୍ର । ବରଂ କୁହାଯାଇପାରେ ଅନାର୍ଯ୍ୟମାନେ ଆର୍ଯ୍ୟ ନାମରେ ଏଇ ଭାରତ ସଭ୍ୟତାର ବିକାଶ କରିଥିଲେ । ଜଗନ୍ନାଥରେ ସେ ଦିନ ସେଇ ନାଟକର ସ୍ପଷ୍ଟ

ଅନ୍ତନିହିତ ହୋଇଯାଇଛି । ବିଷ୍ଣୁ ନାମରେ ଯେଉଁଠାରେ ମହାଯାନୀୟଧର୍ମ ଘେନି ବିଶ୍ୱ ମାନବଧର୍ମର ପ୍ରତୀକ ବୃକ୍ଷ—ଜଗନ୍ନାଥ ବିଦ୍ୟମାନ ।

## ଅନାର୍ଯ୍ୟ ସାଧନା ଓ 'ଜୀବେ ଦୟା'—

'ନାମେ ଭକ୍ତି', 'ଜୀବେ ଦୟା' କଥା ଦିଓଟି ପୂର୍ବଭାରତର ବୈଷ୍ଣବ ଧର୍ମରେ ସୁପରିଚିତ । ନାମେ ଭକ୍ତିର କଥା କୁହାଯାଇଛି । 'ଜୀବେ ଦୟା' କେଉଁଠାରୁ ଆସିଲା ? ଶୂନ୍ୟସାଧକ ଯୋଗୀ ଓ ତପସ୍ୱୀମାନେ କର୍ମ ଗୁଡ଼ିବାକୁ ସାଧନାର ପନ୍ଥା କରିଥିଲେ । ଏଇ କର୍ମ ଗୁଡ଼ିବାର ମୂଳମନ୍ତ୍ର କେଉଁଠାରେ ? କାମନା ଥିଲେ କର୍ମ ଗୁଡ଼ି ହେବ ନାହିଁ ଖାଲି କର୍ମକୁ ଗୁଡ଼ି ବସି ଭଣ୍ଡତପସ୍ୱୀ ହେବା ସାଧନା ନୁହେ । ଅତଏବ କର୍ମ ସଙ୍ଗେ କାମନା ତ୍ୟାଜ୍ୟ । ଏହା ବହୁକାଳରୁ ସ୍ୱୀକୃତ ହୋଇଥିଲା । ଏଇ କାମନା ତ୍ୟାଗ ମାନବର ଚରମ ଆଦର୍ଶ ହେଲେ, ଅନ୍ୟର କେଉଁଠାରେ କି ଅଭାବ ଓ କଷ୍ଟ ହେଉଛି ସେଆଡ଼କୁ ଦୃଷ୍ଟି ଦିବା ସ୍ୱାଭାବିକ । କାମନା ତ୍ୟାଗ ସଙ୍ଗେ ସଙ୍ଗେ ସେ ସାଧନାଟି ମନକୁ ଫିଟିବ । ତା ନ ହେଲେ କର୍ମତ୍ୟାଗ ସମ୍ଭବ ନୁହେ । ଅନ୍ୟର ଅଭାବରେ ମନ ଠିକ୍ ରଖି ନିଜର କର୍ମ ସଂଯତ କରିବାକୁ ହେବ । ଅନ୍ୟର ଅଭାବ ଓ ଦୁଃଖ କଥା ନିଜ ତୁଳନାରେ ସବୁବେଳେ ଭାବିବାକୁ ହେବ । ସେଥିପାଇଁ ବୌଦ୍ଧମାନେ ଦୁଃଖବାଦୀ । ଏ ଦୁଃଖବାଦ ହିଁ ସାମ୍ୟବାଦ ଓ 'ଜୀବେ ଦୟା' । ମୁଁ ଯେପରି, ସବୁ ଜୀବ ବା ମନୁଷ୍ୟ ସେଇପରି ନିଜ ଦୁଃଖ ଘୁଞ୍ଚାଇବାକୁ ଲୋଡ଼ନ୍ତି—ଏହାହିଁ ଗୀତାର—

ଆତ୍ମୌପମ୍ୟେନ ସର୍ବତ୍ର
ସମଂ ପଶ୍ୟତି ଯୋଽର୍ଜୁନ ।
ସୁଖଂ ବା ଯଦି ବା ଦୁଃଖଂ
ସ ଯୋଗୀ ପରମୋ ମତଃ ॥ ( ୬.୩୨ )

ସମାଜଧର୍ମରେ ଏହାର ପରିଣତି 'ଜଗନ୍ନାଥ' ହେଲେହେଁ, ବ୍ୟକ୍ତିର ମୁକ୍ତି ସାଧନାରେ ଏଇ ସାମ୍ୟଧର୍ମ ବିକୃତ ହୋଇ ଜଗତରେ ବହୁ ବୀଭତ୍ସ ମାନବକୀର୍ତ୍ତିର ସୃଷ୍ଟି କରିଥିଲା । ଏଇପରି ପ୍ରାଚୀନ ଭାରତଧର୍ମ ବା ବୌଦ୍ଧଧର୍ମକୁ ଦୁଇ ଆଡ଼ୁ ଦୁଇ ଭାବରେ ଦେଖିବାକୁ ହେବ । ଜଗନ୍ନାଥଧର୍ମର କଥା କୁହାଯାଇଛି । ଅପରଟି ତନ୍ତ୍ର-ସାଧନା ।

## ତନ୍ତ୍ର-ଯୋଗ—

ଏଇ ତନ୍ତ୍ର ହିଁ ପ୍ରାଚୀନ ଭାରତର ଯୋଗସାଧନା । ବୌଦ୍ଧଧର୍ମର ସମାଜ ଧର୍ମର ସାମ୍ୟ ସାଧନା ଓ ଜୀବେ ଦୟା ବା ଲୋକସେବା ସଙ୍ଗେ ଏଇ ବ୍ୟକ୍ତି ସାଧନା ବା ଆତ୍ମସେବା ବରାବର ଚାଲି ଆସିଛି । ବହୁ ପ୍ରାଚୀନ କାଳରୁ ଏଇ ତନ୍ତ୍ର ଏକ ଶରୀର

ସାଧନା । ତ୍ରିକାଳଦର୍ଶୀ ବୁଦ୍ଧମାନେ ଏପରି କେବଳ ମନ୍ତ୍ର ଆତ୍ମସାଧନାର ସେବାକୁ କେବେ ହୁଏତ ପ୍ରଶ୍ରୟ ଦେଇ ନାହାନ୍ତି । ମାନବର ଅପରିହାର୍ଯ୍ୟ ଲୋକ ସମାଜ ତଥା ବିଶ୍ୱର ସମସ୍ତ ଜନ୍ତୁ ବସ୍ତୁର ସମ୍ପର୍କଜନିତ ଅନନ୍ତ କ୍ରିୟା ପ୍ରତିକ୍ରିୟା ମଧ୍ୟରେ କି ପ୍ରଣାଳୀ ଧରି ଆତ୍ମାକୁ ଶୂନ୍ୟ କରି ନିର୍ବାଣ ପାଇବାକୁ ହେବ ତାହା ସେମାନେ ଉପଦେଶ ଦେଇ ଯାଇଛନ୍ତି । ସେଥିପାଇଁ 'ଶୀଳ' ବା ଚରିତ୍ର ଓ ଆଚରଣରେ ସେମାନେ ପନ୍ଥା ଦେଖାଇଛନ୍ତି । କର୍ମତ୍ୟାଗ ପାଇଁ ତଥା କର୍ମତ୍ୟାଗର ସାଧନାରେ ସେଥିପାଇଁ 'ବୁଦ୍ଧଦେବ' ସଂଘ ଓ ଧମ୍ମ (ଧର୍ମ)ର କଳ୍ପନା କରିଥିଲେ । ସନ୍ୟାସୀର ମଧ୍ୟ ସଂଘରେ ରହି ଧର୍ମ ବା ବିହିତ କର୍ମ କରିବାର ଥିଲା । ଯେସବୁ ଏଠାରେ ତନ୍ନ ତନ୍ନ କରି ବୁଝାଇବାର ଅବକାଶ ନାହିଁ । ମାତ୍ର ସଙ୍ଗେ ସଙ୍ଗେ ଏକ ଶରୀରସାଧନା ବା ବ୍ୟକ୍ତିସର୍ବସ୍ୱ ନିର୍ବାଣ ସାଧନର ମାର୍ଗ ବରାବର ଫିଟି ରହିଥିଲା । କୁହାଯାଇଛି ଏଥିରେ ବ୍ୟକ୍ତି ଶୂନ୍ୟରୁ ପୁରୁଷ-ନାରୀ ବା ଲିଂଗ-ଯୋନି ସମ୍ପର୍କରେ ବିକାଶ ପାଏ ବୋଲି ଧାରଣା ଠିକ୍ ଥିଲା । ପିଣ୍ଡରେ ହିଁ ବ୍ରହ୍ମାଣ୍ଡ ଅଛି । ଅତଏବ ଏହି ବ୍ରହ୍ମାଣ୍ଡ ମଧ୍ୟ ଏକ ମହାଲିଙ୍ଗ ଓ ମହାଯୋନିର ସମ୍ପର୍କରୁ ଉଦ୍‌ଭୂତ । ତତ୍ତ୍ୱବିଚାର ଉପରେ ପ୍ରତିଷ୍ଠିତ ନ ଥାଇ ମଧ୍ୟ ବିଶ୍ୱମୂଳ ରୂପେ ଏହି ଲିଙ୍ଗଯୋନିର ପୂଜା ପୃଥିବୀରେ ଆଦିମ ମାନବସମାଜର ସ୍ୱାଭାବିକ କଳ୍ପନା ବୋଲି କେହି କେହି ପଣ୍ଡିତ ସ୍ଥିର କରନ୍ତି । ତାହା ହୋଇପାରେ । ମାତ୍ର ଭାରତର ତତ୍ତ୍ୱବିଚାର ଶୀଘ୍ର ଏ ପୂଜାର ପରିସ୍ଥିତି ବଦଳାଇ ଏହି ତନ୍ତ୍ରର ମନ୍ତ୍ର ସେକାଳର ସଭ୍ୟ ଜଗତରେ ପ୍ରଚାର କରିଥିଲା; ତାହାର ଆଭାସ ପୂର୍ବେ ଦିଆଯାଇଛି ।

## ତନ୍ତ୍ରସାଧନାର ଭୂମି—

ଅନାର୍ଯ୍ୟସଭ୍ୟତାର ଅବଶେଷ ଭୂମି ପୂର୍ବ-ଭାରତରେ ଏହି ତନ୍ତ୍ର-ସାଧନା ସମସ୍ତ ବୈଦିକ ଶୈବ ବୈଷ୍ଣବ ଧର୍ମ ମଧ୍ୟରେ ସ୍ପଷ୍ଟ ଆତ୍ମପ୍ରକାଶ କରି ରହିଛି । ଦାକ୍ଷିଣାତ୍ୟରେ ସେ ସଭ୍ୟତା ସଙ୍କୁଚିତ ହୋଇ ଏବେ ବିଲୁପ୍ତ । ସେଠାରେ ଉତ୍ତରରୁ ଯାଇଥିବା ଆର୍ଯ୍ୟମାନେ ନିଜର ଆର୍ଯ୍ୟବର୍ତ୍ତୀୟତ୍ୱ ଓ ପରିଚୟ ଦୃଢ଼ ରଖିବାକୁ ଯାଇ, ବିଜିତମାନଙ୍କୁ ସର୍ବଥା ବିବେଚିତ ବ୍ୟବହାରରେ ସଂକୁଚିତ ଓ ସଭ୍ୟତା ହିସାବରେ ବିଧ୍ୱସ୍ତ କରିଛନ୍ତି । ସେମାନଙ୍କ ସର୍ପପୂଜା ଅନନ୍ତସର୍ପଶାୟୀ ବିଷ୍ଣୁପୂଜାରେ ପରିଣତ ହୋଇଅଛି । ଖୁବ୍ ସମ୍ଭବ ସେଇମାନେ 'ନାଗ' ବା ବେଦର ସର୍ପ । ଏବେ ମଧ୍ୟ ଓଡ଼ିଶାର ଅନେକ ଅବ୍ରାହ୍ମଣ ନାଗସଗୋତ୍ରୀୟ ବୋଲି ପରିଚୟ ଦିଅନ୍ତି । ସେ ଯାହା ହେଉ, ଦକ୍ଷିଣଭାରତୀୟ ଗ୍ରନ୍ଥମାନ ସବୁରୁ ସ୍ପଷ୍ଟ ଅନାର୍ଯ୍ୟସଭ୍ୟତା ବାଛିବାରେ କେତେଗୁଡ଼ିଏ ପୂଜା ପର୍ବର ସଙ୍କେତ ଛଡ଼ା ଆଉ କିଛି ମିଳିବ ନାହିଁ । ଦେବଦାସୀ ଅନୁଷ୍ଠାନଟି ସେଇଠାରେ ଏକା ଅଛି । ମାତ୍ର ତାହା ଜୀବନ୍ତ ନୁହେଁ । କୌଣସି

ତନ୍ତ୍ରରେ ଏବେ ତାର ମୂଳ ନାହିଁ । ଓଡ଼ିଶା, ବଂଗ, ଆସାମ ଓ ବିହାର ତଥା ନେପାଳହିଁ ପୂର୍ବଭାରତ । ତିବ୍ବତ, ଚୀନ ପ୍ରଭୃତି ସଂଗେ ଏଇ ପୂର୍ବଭାରତର ସମୁଦ୍ର ଓ ହିମାଳୟ ବାଟେ ଚିରସଂପର୍କ । ଏଇ ଭୂମିରେ ଶବର ତଥା ଅନାର୍ଯ୍ୟସଭ୍ୟତାର ପ୍ରାଣ ଏବେ ପ୍ରକାଶ ପାଏ । ଶବରଭୂମି କଳିଂଗର ଜଗନ୍ନାଥ କଥା କୁହାଯାଇଛି । ଏଥିରେ ବ୍ୟକ୍ତିସାଧନା ସମାଜ ସମ୍ପର୍କରେ ସଂକୁଚିତ । ମାତ୍ର ଅପର ପୀଠଟି ହେଉଛି, ଆସାମର 'କାମାଖ୍ୟା' । ଏହା ସ୍ପଷ୍ଟ 'ଯୋନି-ପୀଠ' । ପୁରାଣ କହନ୍ତି, ସତୀଙ୍କ ମୃତ୍ୟୁପରେ ବିଷ୍ଣୁ ଚକ୍ରରେ ସେଇ ମୃତ ଦେହ ଏକାବନ ଖଣ୍ଡ ହୋଇ ଭିନ୍ନ ଭିନ୍ନ ସ୍ଥାନରେ ପଡ଼ିଥିଲା । ଯୋନିଟି ପଡ଼ିଥିଲା କାମାଖ୍ୟାରେ । ବିରଜା କ୍ଷେତ୍ରରେ ପଡ଼ିଥିଲା ନାଭି । ପୁରାଣ ମିଳାଇ ଏଇ କ୍ଷେତ୍ରମାନଙ୍କ ସ୍ଥାନ ଯାହା ଠିକ୍ କରାଯାଇଛି, ସେଥିରେ ପ୍ରାୟ ଅର୍ଦ୍ଧ ସଂଖ୍ୟକ ସ୍ଥାନ ବଂଗ ଦେଶରେ, ଗୋଟିଏ ନେପାଳରେ, ଗୋଟିଏ ମିଥିଳାରେ, ଗୋଟିଏ ତମଲୁକ ଓ ବାଲାସପୁରରେ ମିଶାଇ ତିନୋଟି ଓଡ଼ିଶାରେ, ଗୋଟିଏ ବେଲୁଚିସ୍ଥାନ କୂଳରେ, ଯୋଡ଼ିଏ ସିନ୍ଧୁ ପ୍ରଦେଶରେ, ଯୋଡ଼ିଏ ଗୁଜରାଟରେ, ଗୋଟିଏ ମାଲବାର ଓ ଯୋଡ଼ିଏ କରମଣ୍ଡଳ ଉପକୂଳରେ, ଗୋଟିଏ ମାଳବରେ, ସାତୋଟି କାଶ୍ମୀର ପଞ୍ଜାବର ହିମାଳୟ ଭୂମିରେ; ବାକି ସାତୋଟି ମାତ୍ର ଯାହାକୁ ଆର୍ଯ୍ୟାବର୍ତ୍ତ କୁହାଯାଏ ସେଇ ଭୂମିରେ ※ ।

---

※ ବଂଗଳା:ଗୁପ୍ତ ପ୍ରେସ ପାଞ୍ଜିରେ ନିର୍ଦ୍ଦେଶ କରା ହୋଇଥିବା ସ୍ଥାନ ନାମ ଅନୁସାରେ ଦେବୀଙ୍କ ଶରୀରାଂଶ ପଡ଼ିଥିବାହେତୁ ଜାତ ପୀଠମାନଙ୍କର ନାମ ତୁଳନା ପାଇଁ ଦିଆଗଲା —

୧ । ହିଂଗୁଳା (ସତୀର ବ୍ରହ୍ମରନ୍ଧ୍ର—ବେଲୁଚିସ୍ଥାନ ଉପକୂଳରେ ) ୨ । ସର୍କାର (ତିନଚକ୍ଷୁ—ସିନ୍ଧୁ ପ୍ରଦେଶରେ) ୩ । ଜ୍ୱାଳାମୁଖୀ (ଜିହ୍ୱା—ଉତ୍ତର-ପଞ୍ଜାବ ହିମାଳୟ ଭୂମି) । ୪ । ସୁଗନ୍ଧା (ନାସିକା—ବଂଗଦେଶରେ) । ୫। ଭୈରବପର୍ବତ (ଊର୍ଦ୍ଧ୍ୱ ଓଷ୍ଠ—ମାଳବର ଅବନ୍ତୀ ଉଜ୍ଜୟିନୀ) ୬ । ଅଟ୍ଟହାସ ( ଅଧରୋଷ୍ଠ—ବଂଗ ଦେଶରେ ) । ୭ । ପ୍ରଭାସ (ଉଦର—ମଥୁରା—କିନ୍ତୁ ଆମ ମତରେ ସଂଭବତଃ ପ୍ରଥମେ ଗୁଜରାଟ ) । ୮ । ଜନସ୍ଥାନ ( ଚିବୁକ—ଖାନ୍ଦେଶ, ଆରବ ସାଗର କୂଳପଟ ଜଙ୍ଗଲ ) । ୯ । ଗୋଦାବରୀତୀର (ବାମଗଣ୍ଡ—ଆନ୍ଧ୍ର ଦେଶରେ) । ୧୦ । ଗଣ୍ଡକୀନଦୀ (ଦକ୍ଷିଣଗଣ୍ଡ—ହିମାଳୟଭୂମିରେ ଗଣ୍ଡକୀର ଆଦିସ୍ଥାନ) । ୧୧ । ଶୁଚିଦେଶ (ଉପର ଦାନ୍ତପାଟି—ବଂଗ ଦେଶରେ) ୧୨ । ପଂଚସାଗର (ତଳ ଦାନ୍ତପାଟି—ସ୍ଥାନ ଜଣା ନାହିଁ) । ୧୩ । କରତୋୟା ତୀର (ବାମ ତଳ୍ପ ବା କଡ଼—ବଂଗ ଦେଶରେ ) । ୧୪ । ଶ୍ରୀପର୍ବତ (ଦକ୍ଷିଣ ତଳ୍ପ—ହିମାଳୟ ସେପାଖ ପାମିର ପାଖେ ) । ୧୫ । କର୍ଣ୍ଣାଟ (କର୍ଣ୍ଣଦ୍ୱୟ—କର୍ଣ୍ଣାଟରେ) । ୧୬ । ବୃନ୍ଦାବନ (କେଶ—ବୃନ୍ଦାବନରେ) । ୧୭ । କାଳୀଘାଟ (ମୁଣ୍ଡ—ବଂଗରେ) । ୧୮ । କିରୀଟ (କିରୀଟ—ବଂଗରେ) । ୧୯ । ଶ୍ରୀହଟ୍ଟ (ଗ୍ରୀବା—

**ତନ୍ତ୍ରସାଧନାରେ ଯୌନ ପ୍ରତିକ୍ରିୟା—ବଂଗର ସହଜିଆଁ ପ୍ରଭୃତି—**

ଏଇ ପୀଠସବୁ ତନ୍ତ୍ରସାଧନାର ସ୍ଥାନ ବୋଲି କଳ୍ପିତ । ହୁଏତ ଏଇ ତନ୍ତ୍ର-ସାଧନାର ଯେତେବେଳେ ବୈଦିକ ଧର୍ମର ପ୍ରଭାବରେ ଛିନ୍ନ ଭିନ୍ନ ହେଲା, ସେତେବେଳେ

---

ବଂଗରେ) । ୨° । ନଳହାଟୀ ( ନଳା ବା କଣ୍ଠନାଳ—ବଂଗରେ ) । ୨୧ । କାଶ୍ମୀର (କଣ୍ଠ—ଅମରନାଥ—କାଶ୍ମୀର ହିମାଳୟଭୂମିରେ) । ୨୨ । ରତ୍ନାବଳୀ (ଦକ୍ଷିଣ ସ୍କନ୍ଧ—ମାନ୍ଦ୍ରାଜ ପ୍ରଦେଶରେ) । ୨୩ । ମିଥିଳା ( ବାମସ୍କନ୍ଧ—ବଂଗରେ ) ୨୪ । ଚଟ୍ଟଗ୍ରାମ (ଦକ୍ଷିଣ ହସ୍ତାର୍ଧ—ବଂଗରେ) ୨୫ । ମାନବ କ୍ଷେତ୍ର (ବାମହସ୍ତାର୍ଧ—ଥାନ ଅଜଣା) । ୨୬ । ଉଜାନ (କହୁଣି—ବଂଗରେ) । ୨୭ । ମଣିବନ୍ଧ (ମଣିବନ୍ଧ—କରଗ୍ରନ୍ଥି—ଅଜମୀରର ପୁଷ୍କର) । ୨୮ । ପ୍ରୟାଗ (ଦୁଇହସ୍ତର ଅଙ୍ଗୁଳି—ପ୍ରୟାଗରେ) । ୨୯ । ବାହୁଲା (ବାମ ବାହୁ—ବଂଗରେ) । ୩° । ଜଳନ୍ଧର ( ବାମ ସ୍ତନ—ଜ୍ୱାଳାମୁଖୀ ପାଖେ ) ୩୧ । ରାମଗିରି ( ଦକ୍ଷିଣସ୍ତନ—ଚିଳାସପୁରରେ ) । ୩୨ । ବୈଦ୍ୟନାଥ (ହୃଦୟ—ବୈଦ୍ୟନାଥରେ ) । ୩୩ । ଉତ୍କଳ ବିରଜାକ୍ଷେତ୍ର (ନାଭି—ଏଠାରେ ଦେବୀ ବିମଳା ଓ ଭୈରବ ଜଗନ୍ନାଥ ବୋଲି ଲେଖାଅଛି । ଏହା ସମ୍ଭବତଃ ଜଗନ୍ନାଥ ମନ୍ଦିର ଭିତର ବିମଳା ପୀଠ । ବିରଜା ଓ ବିମଳା ଏକାର୍ଥକ । ବୋଧହୁଏ ଯାଜପୁରର ବିରଜା କେବେ ଆସି ବିମଳା ରୂପରେ ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠିତ ହୋଇଚନ୍ତି । ଏହାର ତଥ୍ୟ ଅନୁସନ୍ଧେୟ) । ୩୪ । କାଞ୍ଚିଦେଶ ( କଂକାଳ—ଦକ୍ଷିଣ ମାନ୍ଦ୍ରାଜ ପ୍ରଦେଶ ) । ୩୫ । କାଳମାଧବ (ବାମ ନିତମ୍ବ—ଥାନ ଜଣା ନାହିଁ) । ୩୬ । ଶୋଣନଦୀ (ଦକ୍ଷିଣ ନିତମ୍ବ—ବଂଗ ଦେଶରେ) । ୩୭ । କାମରୂପ (ମହାମୁଦ୍ରା ଯୋନିପୀଠ—ଆସାମରେ) ୩୮ । ନେପାଳ (ଜାନୁଦ୍ୱୟ—ବଂଗ ପାଖ ନେପାଳରେ) ୩୯ । ମଗଧ (ଦକ୍ଷିଣ ଜଂଘା—ଦକ୍ଷିଣ-ପୂର୍ବ ବିହାରରେ) । ୪° । ଜୟନ୍ତୀ (ବାମ ଜଂଘା—ବଂଗରେ) । ୪୧ । ତ୍ରିପୁରା (ଦକ୍ଷିଣ ଚରଣ—ବଂଗରେ) ୪୨ । କ୍ଷୀର ଗ୍ରାମ (ଦକ୍ଷିଣ ଚରଣ ଅଙ୍ଗୁଷ୍ଠ—ବଂଗରେ ।) ୪୩ । କାଳୀଘାଟ (ଦକ୍ଷିଣ ଚରଣର ବାକି ଚାରି ଅଙ୍ଗୁଳି—କଲିକତା, ବଂଗରେ) । ୪୪ । କୁରୁକ୍ଷେତ୍ର (ଦକ୍ଷିଣ ଗୋଇଠି—କୁରୁକ୍ଷେତ୍ରରେ) । ୪୫ । ବକ୍ରେଶ୍ୱର (ମନଃ ବା ଭ୍ରୂମଧ୍ୟ—ବଂଗରେ) । ୪୬ । ଯଶୋର ( ପାଣିପଦ୍ମ—ବଂଗରେ ) । ୪୭ । ନନ୍ଦୀପୁର (ହାର—ବଂଗରେ) । ୪୮ । ବାରାଣସୀ (କୁଣ୍ଡଳ—କାଶୀରେ) । ୪୯ । କନ୍ୟାଶ୍ରମ (ପୃଷ୍ଠ—ଥାନ ଜଣା ନାହିଁ) । ୫° । ଲଂକା (ନୂପୁର—ସିଂହଳରେ) ୫୧ । କଣ୍ଟକ (ବାମ ପଦାଂଗୁଳି—ଥାନ ଜଣା ନାହିଁ) । ୫୨ । ବିଭାସକ (ବାମଗୁଳ୍ଫ ବା ଗୋଇଠି—ଏହା ଉପପୀଠ, ପୀଠ ନୁହେ—ମେଦିନୀପୁର ତମଲୁକରେ ) । ୫୩ । ତ୍ରିସ୍ରୋତା (ବାମପାଦ—ଏହା ମଧ୍ୟ ଏକ ଉପପୀଠ—ବଂଗରେ) । ଏଥିରୁ ଶେଷ ଉପପୀଠ ଦୁଇଟି, କିମ୍ବା ହାର ଓ ନୂପୁର ପଡ଼ିଥିବା ସ୍ଥାନ ଦୁଇଟି କାଟିଦେଲେ ୫୧ଟି ପୀଠ ହେଉଛି ।

ଏସବୁ ସ୍ଥାନରେ ତାର ଅବଶେଷ ଥିଲା । ଏଥିରୁ ଦେଖ ଯାଏ, ବେଲୁଚିସ୍ଥାନ, ସିଂଧୁ ମୁଲ୍ତାଣ, ଗୁଜରାଟ ଓ ଦ୍ରାବିଡ଼ର ସାମାନ୍ୟ କେତେକ ସ୍ଥାନଛଡ଼ା, ଏସବୁ ପୀଠ ହିମାଳୟର ବନଭୂମି ପୁଣି ବିଶେଷରେ ବଂଗ, ଓଡ଼ିଶା ଓ ଆସାମ । ଜଗନ୍ନାଥରେ ଏହାର ନାଭି ବା ଦେହ କେନ୍ଦ୍ର, ପୁଣି ଆସାମରେ ଦେବୀଙ୍କ ଜନନେନ୍ଦ୍ରିୟ-ଯୋନି—ତାହା ହିଁ ମହାପୀଠ । ଏ ମଧ୍ୟରେ ସମସ୍ତ ବଂଗ ଦେଶରେ ଏଇ ତନ୍ତ୍ରସାଧନା ବ୍ୟାପ୍ତ । ହେଲେହେଁ ବଂଗ ଦେଶରେ ଦେବୀଙ୍କର କୌଣସି ବିଶେଷ ସ୍ମରଣୀୟ ଅଙ୍ଗ ନାହିଁ । ଏଇ ବଂଗ ଦେଶରେ ତନ୍ତ୍ରସାଧନାର ନାମରେ ଯେ ବୀଭତ୍ସତାର ସୃଷ୍ଟି ହୋଇ ସମାଜର ନୈତିକତା ଏକାବେଳକେ ନାରୀ ପୁରୁଷର ସ୍ୱୈରାଚାର ଓ ପରକୀୟା ପ୍ରେମର ଉନ୍ମୁକ୍ତ ତାଣ୍ଡବରେ ନାରଖାର ହୋଇଥିଲା, ତାହା ଐତିହାସିକ ମାତ୍ରେ ଜାଣନ୍ତି † । ଏବେ ମଧ୍ୟ ଘୋଷପଡ଼ା ପ୍ରଭୃତି ସ୍ଥାନର ସତ୍ରଜାଆ ମେଳାରେ ତାହାର ଜୀବନ୍ତ ଅବଶେଷ ବିଦ୍ୟମାନ । ଏକ କୁଳୀନ ବ୍ରାହ୍ମଣ ଶତ ଶତ ନାରୀର ବିବାହ କରି ଦେଶ ସାରା ଗାର୍ହସ୍ଥ୍ୟଧର୍ମ ନାମରେ ଯେ ବ୍ୟଭିଚାରର ବନ୍ୟା ଛୁଟାଇ ଦେଇଥିଲେ, ତାହା ୭୫ ବର୍ଷ ପୂର୍ବ ପର୍ଯ୍ୟନ୍ତ ଦେଶରେ ବିଦ୍ୟମାନ ଥିଲା । ଲେଖକଙ୍କର ଜଣେ ବନ୍ଧୁଙ୍କ ପିତାଙ୍କର ୧୪୦ ପତ୍ନୀ ମେଦିନୀପୁରଠାରୁ ସିଲେଟ ଯାଏ ସର୍ବତ୍ର ଥିଲେ । ବନ୍ଧୁଟି ବି. ଏ. ପଢୁଥିଲେ । ସେତେବେଳଯାଏ ସେ ଜୀବିତପିତାଙ୍କୁ କେବେହେଲେ ଦେଖି ନ ଥିଲେ । ରାୟ ଦୀନବନ୍ଧୁ ମିତ୍ରଙ୍କ 'ଜାମାଇ ବାରିକ' ପଢ଼ିଲେ ଏଇ ବୀଭତ୍ସ ସାମାଜିକ ଲୀଳା ପାଠକମାନେ ହୃଦୟଂଗମ କରିପାରିବେ । ସେ ଯା ହେଉ, ଏହା ମଧ୍ୟ ସେଇ ସାମାଜିକ ତାନ୍ତ୍ରିକ ଯୌନ ଯଥେଚ୍ଛାଚାରର ଏକ ପ୍ରଚଣ୍ଡ ପ୍ରତିକ୍ରିୟାର ଜ୍ୱଳନ୍ତ ସଙ୍କେତ ।

## ଓଡ଼ିଶାରେ ପ୍ରତିକ୍ରିୟାର ଅଭାବ—

ମାତ୍ର ଯଥାର୍ଥ ସାଧନାର ପୀଠଭୂମି ଓଡ଼ିଶା ବା ଆସାମରେ ଏ ବୀଭତ୍ସତା ସମାଜକୁ ଏପରି ସମ୍ପୂର୍ଣ୍ଣଭାବରେ କେବେ କଳୁଷିତ କରି ନାହିଁ । ଏହା ଦେଖିବାର କଥା । ଶବର ସଭ୍ୟତାର କେନ୍ଦ୍ର ଓଡ଼ିଶା, ପୁଣି ଅନାର୍ଯ୍ୟସଭ୍ୟତା ଦୂରରେ ନିରାପଦ ଆଶ୍ରୟ ନେବାର ଆଉ ଏକ ସ୍ଥାନ ଅସାମ ଓ ପୁଣ୍ଡ୍ର (ଉତ୍ତର ବଂଗ) । ସୁହ୍ମ ଓଡ଼ିଶାର ଅନ୍ତର୍ଗତ । ବାକୀ ଏବର ବଂଗ ଥିଲା ଦବାକ ଓ ସମତଟ (ଢ଼ାକା ଓ ନୂଆଖାଲି ଚଟଗାଁ ପ୍ରଭୃତି ତଟର ସମଭୂମି ) । ଏସବୁ ସ୍ଥାନରେ ପ୍ରାଚୀନ ଭାରତ ଅନାର୍ଯ୍ୟମାନେ ବ୍ରହ୍ମାଦି ପୂର୍ବଦେଶମାନଙ୍କର ଅନୁନ୍ନତ ଲୋକଙ୍କର ସଂଗେ ବହୁ ପରିମାଣରେ ମିଶି ସଭ୍ୟତାକୁ କ୍ଷୁଣ୍ଣିତ କରିଥିଲେ ବୋଲି ଅନୁମାନ ହୁଏ ।

---

† ଦୀନେଶଚନ୍ଦ୍ର ସେନଙ୍କ 'ବୃହତ୍ ବଂଗ'—୩୨୨ ଓ ପରପୃଷ୍ଠାମାନ ୭୭୧ ଓ ପରପୃଷ୍ଠାମାନ ୮୧୨ ଓ ପରପୃଷ୍ଠାମାନ ଦେଖ ।

## ଶୈବ ବୈଷ୍ଣବ ଧର୍ମରେ ତନ୍ତ୍ରର ପ୍ରବେଶ—

ତେବେ ଏଇ ତନ୍ତ୍ର କଣ ? ଏଇ ତନ୍ତ୍ର ବୌଦ୍ଧଙ୍କର ଆତ୍ମସାଧନା ବା ଶରୀର ସାଧନାର ଧର୍ମ ବା ଶାସ୍ତ୍ର । ଏହାଦ୍ୱାରା ପ୍ରଥମେ ଅନ୍ୟ କୌଣସି ଅବଲମ୍ବନ ବିନା କେବଳ ଶରୀରସାଧନା ଯୋଗରେ ଆତ୍ମାକୁ ଶୂନ୍ୟ ବୋଲି ଅନୁଭବ କରି ସେଇ ବୃଦ୍ଧିରେ ଠିକ୍ ରହି ଦେହ ତ୍ୟାଗ କରାଯାଉଥିଲା । କ୍ରମେ ଏଥିରେ ଦେବୀ ଆରାଧ୍ୟା ହେଲେ । ବେଦଧର୍ମରେ ଯେତେବେଳେ ସମାଜ ଅଭିଭୂତ ହେଲା, ସେତେବେଳେ ଶିବ ପତ୍ନୀ ସତୀ କାଳୀ ତାରା ପ୍ରଭୃତିଙ୍କ ଉପାସନାରେ ଏହାର ଉପଯୋଗ ହେଲା । ଏହି ଶିବଶକ୍ତିଧର୍ମ ପରେ ବୈଷ୍ଣବଧର୍ମରେ ପଶି ରାଧାକୃଷ୍ଣଲୀଳା, ରାସଲୀଳା, କଣେ଼ାରୀପୂଜା, ପରକୀୟାପ୍ରେମ ପ୍ରଭୃତିର ସୃଷ୍ଟି କରିଥିଲା ।

## ଦେବୀଙ୍କ ଆବିର୍ଭାବ—କାଳ, କାଳୀ—

ଦେବୀ (ଭୈରବୀ) ସଂଗେ ଏହାର ସଂପର୍କ କିପରି ହେଲା ? ଏଇ ଭୈରବୀହିଁ କାଳୀ । ଶୂନ୍ୟର ରୂପ ନାହିଁ । ଶୂନ୍ୟରୁ ସବୁ ଉଦ୍ଭବ । କାଳୀତନ୍ତ୍ର କହନ୍ତି, ପ୍ରଥମେ ସବୁ ଅନ୍ଧତମ ଥିଲା । ଶୂନ୍ୟର ଧାରଣାରେ ଏଇ ଘୋର ତମସା ବା ଅନ୍ଧକାର ହିଁ ସ୍ୱାଭାବିକ କଳ୍ପନା । ତା ଛଡା ମାନବ ଶୂନ୍ୟର ଧାରଣା କରି ନ ପାରେ । ଏଇ ଅନ୍ଧକାର ଦେଖିବାକୁ କଳା । ଏହାର ଗର୍ଭରୁ ବିଶ୍ୱ ବାହାରିଲା । ଏ ହେଲା ଯୋନି—ନାରୀ । ଏହାର ନାମ ହେଲା କାଳୀ । ଏ ଯୋନିରେ ବିନ୍ଦୁ ଦେବ କିଏ ? ସେ ହେଲା କାଳ । ପରେ ଏହାର ଅର୍ଥ ହେଲା ସମୟ । ଏଇ କାଳ (ସମୟ) ଓ କାଳୀ (ଦେଶ)ର ସମାଗମରେ ସୃଷ୍ଟି । ମାନବଜ୍ଞାନ ଛଡ଼ା ସୃଷ୍ଟି ନାହିଁ । କାଳ ଓ ଦେଶ ହିଁ ସମସ୍ତ ଜ୍ଞାନର ନିତ୍ୟ ଆଧାର । ଏଇ କାଳ ବା ବିନ୍ଦୁର ସ୍ଥାନ ହେଲା ତେଣୁ ସୃଷ୍ଟିର ମୂଳବସ୍ତୁ । ଏଇ ଅସଂଯତ ଯୌନ ଧାରଣାରେ ଶୂନ୍ୟରୁ ସୃଷ୍ଟିର ବ୍ୟାଖ୍ୟାକୁ ଯେପରି କି ପ୍ରତିବାଦ କରି ଉପନିଷଦରେ ଋଷି କହିଚନ୍ତି—

> "ସ୍ୱଭାବମେକେ କବୟୋ ବଦନ୍ତି
> କାଳଂ ତଥାନ୍ୟେ ପରିମୁହ୍ୟମାନାଃ ।
> ଦେବସ୍ୟୈଷ ମହିମା ତୁ ଲୋକେ
> ଯେନେଦଂ ଭ୍ରାମ୍ୟତେ ବ୍ରହ୍ମଚକ୍ରମ୍ ॥"
> (ଶ୍ୱେତାଶ୍ୱତର ଉପନିଷଦ୍—୬.୧)

ଅର୍ଥାତ୍, କେହି ମନୀଷୀ ସ୍ୱଭାବକୁ ସୃଷ୍ଟିର ମୂଳ ବୋଲି କହନ୍ତି, ପୁଣି କେହି କେହି ଅତି ଅଜ୍ଞାନରେ ପଡ଼ି କାଳକୁ ମୂଳ ବୋଲି କହନ୍ତି । ମାତ୍ର ଦେବଙ୍କ ମହିମା ବା ଦୈବୀ ଶକ୍ତି (ମାୟାରେ) ଏ ବ୍ରହ୍ମଚକ୍ର (ଜଗତ୍) ବିକାଶ ବିଳସୁରେ

ଘୁରୁଚ । ଅତଏବ କାଳ କାଳୀ ନୁହେ, ବ୍ରହ୍ମ ଓ ମାୟା ହିଁ ଏଇ ଜଗତ୍ର ବିକାଶର ହେତୁ । ଏହା ହିଁ ଋଷିଙ୍କର କହିବାର ଅଭିପ୍ରାୟ ।

## ଯୌନସାଧନାର ଅବକାଶ—

ସେ ଯା ହଉ, ଏଇ କାଳୀ କାଳ ବା ଭୈରବୀ ଭୈରବ ଧରି ତନ୍ତ୍ରସାଧନା ଲୋକରେ ପ୍ରଚଳିତ ହେଲା । ଜାଣିବା ଲୋକେ ଯୌନସଂଯମ ଧରି ଏଇ ସାଧନା କରୁଥିଲେ । ମାତ୍ର ସ୍ୱଭାବଗତିରେ ଲୋକେ ନାରୀକୁ ଆଲିଙ୍ଗନରେ ଧରି କାମ-ବିକାର ବନ୍ଦ ଅଭ୍ୟାସ କରିବସିଲେ । ଏଥିରେ ଯାହା ହେବାର ତା' ହେଲା । ଏବେ ମଧ୍ୟ ବୈଷ୍ଣବ ବଂଗ ସମାଜରେ ତାର ଗ୍ରୁପ ଲିଭି ନାହିଁ । ସେ କଥାର ସୂଚନା ଦିଆ ହୋଇଛି । ଏଠାରେ ତା' ଆଉ ବେଶି କହିବାର ଅବକାଶ ନାହିଁ ।

## ମନ୍ତ୍ରଘିନା ବିଧି—

ଏ ସାଧନାରେ ପୁଣି ଶରୀର ସର୍ବସ୍ୱ । ବିନ୍ଦୁ ଓ ଯୋନି ସର୍ବଦା ଚିନ୍ତାର ବିଷୟ । ସେଥିପାଇଁ ମୂଳରୁ ଏହା କେବଳ ଦୀକ୍ଷିତଙ୍କୁ ବଡ ସାବଧାନରେ କହି ସାଧନାରେ ଭର୍ତ୍ତି କରିବାର ବିଧି ଥିଲା । ଏଇ ବିଧି କ୍ରମେ ବୀଭତ୍ସତାର ସୃଷ୍ଟି ମଧ୍ୟ କରିଥିଲା । ପୁଣି ଏବେ ସମାଜରେ ମନ୍ତ୍ର ଦେବା ଓ ମନ୍ତ୍ର ଘେନିବାର ଯେଉଁ ତାନ୍ତ୍ରିକ ବିଧିର ଗ୍ରୁପ୍ତା ପଡ଼ିରହିଛି, ତାହାର ମୂଳ ମଧ୍ୟ ଏଇଠାରେ । ପ୍ରତ୍ୟେକ ଲୋକ ଏପରି ମନ୍ତ୍ର ଘେନିବାର କୌଣସି ବିଧି ହୋଇ ନ ପାରେ । ମାତ୍ର ସମାଜରେ ଏଇ ଧର୍ମର ବୀଭତ୍ସତାରେ ଯେତେବେଳେ ଏଇ ନରନାରୀ ମାନଙ୍କେ ସ୍ୱଚ୍ଛନ୍ଦ ବିହାରର ଘୋର ଅପଗ୍ରହରେ ମାତିଲେ, ସେତେବେଳେ ଏଇ ମନ୍ତ୍ରଦେବା ଓ ଘେନିବା ପ୍ରତ୍ୟେକର ଯେପରି କି ଏକ କର୍ତ୍ତବ୍ୟ ହୋଇ ପଡ଼ିଥିଲା । ଏବେ ଯେଉଁ ମନ୍ତ୍ରଦିଆର ଅଭିନୟ ହୁଏ, ସେଥିରେ ଯେ କୌଣସି ଲୋକ ଦକ୍ଷିଣ କାନରେ କଣ ଗୋଟିଏ 'ହ୍ରୀଂ' ବା 'କ୍ଲୀଂ' କହିଦେଇ ଯାଏ । ସେତିକରେ ଦୀକ୍ଷିତ ମନ୍ତ୍ରଗୁରୁଠାରେ ସମ୍ପୂର୍ଣ୍ଣ ଆତ୍ମବିକ୍ରୟ କଲାପରି ରହେ । ଏହାର କୌଣସି ଯୁକ୍ତି ନାହିଁ, କି କାରଣ ନାହିଁ । ମାତ୍ର ଏହାର ଯୁକ୍ତି ଓ ହେତୁ ଯାହା ଏ ଘୃଣିତ ପରଂପରା ମୂଳରେ ଥିଲା, ତାହା ଅନୁମାନ କରିବାରେ ଆୟାସ କରୁ ନାହିଁ । ଗୀତାରେ ଭକ୍ତ ମନ୍ତ୍ର ଦେଲା ଭଳି ଭଗବାନ ଅର୍ଜ୍ଜୁନଙ୍କୁ କହିଚନ୍ତି—

"ଇଦଂ ତୁ ତେ ଗୁହ୍ୟତମଂ
ପ୍ରବକ୍ଷ୍ୟାମ୍ୟନସୂୟବେ ।" (୯. ୧)

ଏଠାରେ ସେଇ ତାନ୍ତ୍ରିକ ମନ୍ତ୍ରଦୀକ୍ଷାର ସମାଧାନ କରାହୋଇଛି ମାତ୍ର । ବିଶ୍ୱାସୀ ଶିଷ୍ୟ ଅର୍ଜ୍ଜୁନଙ୍କୁ ଭକ୍ତିତତ୍ତ୍ୱ ବୁଝାଇବା କଥାଟି କିଂତୁ ଠିକ୍ ଭିନ୍ନ ରକମର । ଭଗବାନ୍ ପୁଣି ଜ୍ଞାନ କଥା କହିଲା ବେଳେ କହିଛନ୍ତି—

"ତଦ୍‌ବିଦ୍ଧି ପ୍ରଣିପାତେନ
ପରିପ୍ରଶ୍ନେନ ସେବୟା
ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ
ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ ।" (୪. ୩୪)

ଏଠାରେ ସ୍ପଷ୍ଟ ଗୁରୁଙ୍କଠାରେ ଏକ ପ୍ରକାର ଆତ୍ମସମର୍ପଣ କରିବା କଥା କିଛି ଅଛି, ମାତ୍ର ଏହା ମନ୍ତ୍ରଗୁରୁଠାରେ କରିବା ତାନ୍ତ୍ରିକ ଆତ୍ମସମର୍ପଣରୁ ଯେ ସମ୍ପୂର୍ଣ୍ଣ ପୃଥକ୍, ତାହା ସ୍ପଷ୍ଟ ।

ମାତ୍ର ତନ୍ତ୍ରବିଧି କଠୋର ପନ୍ଥା । ବିଶ୍ୱାସ ନ କଲେ ଶୂନ୍ୟସାଧନା କରିବା ସହଜ ନୁହେ । ପୁଣି ଅତି ସଂଯତ ନ ହେଲେ, ସେ ସାଧନାପଥରେ ପଥିକ ହେବା ଦୁର୍ଘଟ । ସେଥିପାଇଁ ଏଇ ତନ୍ତ୍ରବିଧିରେ ମୂଳରୁ ବିଶେଷ ଭାବରେ ଅଧିକାରୀ ବାଛି ଏଇ ସାଧନାର ପନ୍ଥା କୁହାଯାଉଥିଲା ।

## ଓଡ଼ିଶାରେ ବିଶୁଦ୍ଧ ତନ୍ତ୍ରସାଧନା—

ଏଇ ଜଗନ୍ନାଥଭୂମି ଓଡ଼ିଶାର ଶବର ସଭ୍ୟତାରେ ଆତ୍ମସାଧନା ଯୋଗର ପ୍ରତିପତ୍ତି ବରାବର ଅକ୍ଷୁଣ୍ଣ ଓ ବିଶୁଦ୍ଧ ଥିଲା; ଏବେ ମଧ୍ୟ ଅଛି । ଓଡ଼ିଶାରେ ଜନସମାଜର ଆଦର୍ଶରୁ ତାହା ଲୋପ ପାଇ ନାହିଁ । ମାତ୍ର ଓଡ଼ିଶାର ଜନସମାଜ ସମୂହଭାବରେ ଏଥିରେ ବୁଡ଼ି ସମାଜକୁ ଯୌନ ସ୍ୱେଚ୍ଛାଚାରରେ କଳଂକିତ କରିଥିବାର ପ୍ରମାଣ ନାହିଁ । ହେଲେହେଁ, ବଂଗଳାର ଅନୁକରଣରେ ଚୈତନ୍ୟ ଯୁଗ ପରେ କେତେକ ଉଚ୍ଚ ଜାତିର ଲୋକେ ଏଇ ମନ୍ତ୍ରଦୀକ୍ଷାକୁ ସାଧାରଣ କରିଥିବାର ଦେଖାଯାଏ । ତାହା କିନ୍ତୁ ଏକ ଭ୍ରାନ୍ତିର ଅନୁକରଣ ମାତ୍ର । ପରାଧୀନର ଏ ଅନୁକରଣ-ବୃତ୍ତି ସ୍ୱାଭାବିକ । ମାତ୍ର ଓଡ଼ିଶାରେ ସହଜିଆ ତାନ୍ତ୍ରିକଙ୍କର ସମୂହ ଯୌନସ୍ୱେଚ୍ଛାଚାର, ଭୈରବୀଚକ୍ର ବା କଣୋରୀପୂଜା ପ୍ରଭୃତି ମାନବର ସାମ୍ୟ ଓ ସଂଯମସାଧନା ନାମରେ କେବେ ସମାଜରେ ପ୍ରକାଶ ପାଇଥିବାର ପ୍ରମାଣ ନାହିଁ; କେବେ କଦାଚିତ୍ ପ୍ରକାଶ ପାଇଥିଲେ ତାର ପରିସର ଏତେ ଊଣା ଯେ, ତାହାର କୌଣସି ଆଖିରେ ପଡ଼ିବା ଭଳି ରୂପ ସମାଜରେ ନାହିଁ । ମାତ୍ର ବୌଦ୍ଧ ବା ଶବରସଭ୍ୟତାରେ ବିଶୁଦ୍ଧ ଶରୀର-ସାଧନା ଏ ଦେଶରେ ପ୍ରତିଷ୍ଠିତ ଥିଲା । ସେଥିପାଇଁ ପୁଷ୍ପଗିରି (ଏବର ନଲତିଗିରି, ରତ୍ନଗିରି ଓ ଉଦୟଗିରି ପ୍ରଭୃତି ସ୍ଥାନରେ ଏହା ଥିଲା । ଏବେ ତାର ଭଗ୍ନାବଶେଷ ପୋତି ହୋଇ ପଡ଼ିଚି)ରେ ଏକ ବିରାଟ ବିହାର ଥିଲା । ଭାରତର ବିଭିନ୍ନ ଅଂଚଳର ସାଧକମାନେ ଏଠାକୁ ଯୋଗଦୀକ୍ଷା ଓ ସାଧନା ପାଇଁ ଆସୁଥିଲେ । କାବୁଲ୍ ଅଂଚଳର 'ପ୍ରାଜ୍ଞ' ଅଜକୁ ପ୍ରାୟ ବାରଶହ ବର୍ଷ ତଳେ ନାଳନ୍ଦାରେ ୧୮ ବର୍ଷ ଅଧ୍ୟୟନ ସାରି ଏଇଠାରେ ଯୋଗଶିକ୍ଷା କରି ପରେ ଓଡ଼ିଶା ରାଜା ଶାନ୍ତିକର କେଶରୀଙ୍କଦ୍ୱାରା

ଚୀନସମ୍ରାଟଙ୍କ ପାଖକୁ ଧର୍ମ-ସଖ୍ୟରେ ଦୂତରୂପେ ପଠା ହୋଇଥିଲେ । ଏହା ସ୍ୱର୍ଗତ ଫରାସୀ ପଣ୍ଡିତ ସିଲ୍‌ଭନ୍ ଲେଭି ଚୀନ ଦେଶ ପ୍ରାଚୀନ ଲେଖାରୁ ବାହାର କରିଚନ୍ତି * । ତାହାର କିଛିଦିନ ପରେ ଓଡ଼ିଶାର ରାଜା ଇନ୍ଦ୍ରଭୂତି, ପୁଣି ରାଜକନ୍ୟା ଲକ୍ଷ୍ମୀଂକରା ପ୍ରଭୃତି ସନ୍ୟାସ କରି ଏହି ସାଧନାରେ ଗ୍ରନ୍ଥ ପ୍ରଣୟନ କରିଥିବାର ପ୍ରମାଣ ମଧ୍ୟ ମିଳୁଚି । ଏସବୁ ଗ୍ରନ୍ଥରେ ନାରୀ ସଙ୍ଗେ ରହି ଯୌନ ସଂଯମ ସାଧନାର ସୂଚନା ଥିବାର ଅନୁମାନ ହେଉଚି; ମାତ୍ର ସ୍ୱାଭାବିକତାର ମାତ୍ର ନାହିଁ । ଏ ବଳିଷ୍ଠ ସଭ୍ୟତାର ପ୍ରତିଷ୍ଠିତ ସାଧନା ବୈଷ୍ଣବଧର୍ମ ଭିତରେ ଚୈତନ୍ୟଙ୍କ ସଖାମାନଙ୍କ ଲେଖାରେ ଯେପରି ପ୍ରକାଶ ପାଇଚି ତାହାର କିଂଚିତ୍ ଆଭାସ ଦିଆଯାଇଚି ।

## ଚୈତନ୍ୟଙ୍କ ପଞ୍ଚସଖା—ବ୍ରଜଲୀଳା—

ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତ ଦାସ, ଅନନ୍ତ ଦାସ, ଯଶୋବନ୍ତ ଦାସ ଏ ଥିଲେ ଓଡ଼ିଶାରେ ଚୈତନ୍ୟଙ୍କର ପଞ୍ଚ ସଖା । ଏ ପାଞ୍ଚଜଣ ଓଡ଼ିଆ ସାହିତ୍ୟରେ ପଞ୍ଚରତ୍ନ । ଜଗନ୍ନାଥଙ୍କ ଭାଗବତ, ବଳରାମଙ୍କ ରାମାୟଣ ଓ ଗୀତା, ପୁଣି ଅଚ୍ୟୁତଙ୍କ ଶୂନ୍ୟସଂହିତା ଓ ମାଳିକା ଓଡ଼ିଶାରେ ଘରେ ଘରେ ପରିଚିତ । ଜଗନ୍ନାଥଙ୍କ ଛଡ଼ା ଏମାନଙ୍କ ମଧ୍ୟରୁ ଆଉ କେହି ବ୍ରାହ୍ମଣକୁଳଜାତ ନ ଥିଲେ । ଅଚ୍ୟୁତ ଥିଲେ ଗୋପାଳ । ଏମାନେ ଏ ଦେଶରେ ପରମ ବୈଷ୍ଣବ ବୋଲି ପରିଚିତ । ମାତ୍ର ବଂଗଳାର ସାଧାରଣ ଭକ୍ତିଲୀଳାରେ ରାଧାକୃଷ୍ଣଙ୍କ ପ୍ରୀତି, ରାସଲୀଳା, ପରକୀୟା ପ୍ରଭୃତି ସଂବଳିତ ଯେଉଁ ବ୍ରଜବୈଷ୍ଣବଧର୍ମ ନାରୀପୁରୁଷର ସ୍ୱେଚ୍ଛାବିହାର ମାଧ୍ୟରେ ବଞ୍ଚୁପ୍ରେମର ସ୍ୱାଦୁ ଅନୁଭବ କରେ, ଏହି ସଖାମାନଙ୍କ ଧର୍ମ ତା'ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ବଂଗ ଦେଶରେ ଚୈତନ୍ୟ ଶିଷ୍ୟ ଓ ସଖା ନିତ୍ୟାନନ୍ଦ ଓ ତାଙ୍କ ପୁତ୍ର ବୀରଭଦ୍ର ପ୍ରଭୃତିଙ୍କୁ ସହସ୍ର ସହସ୍ର ବିବାହସଂବନ୍ଧହୀନ ସ୍ୱେଚ୍ଛାବିହାରୀ 'ସହଜିଆ' 'ନେଡା ନେଡ଼ି'ଙ୍କୁ ବୈଷ୍ଣବ କରି କ୍ରମେ ବିବାହିତ ଜୀବନକୁ ଆଣିବାକୁ ପଡ଼ିଥିଲା † । ସେ ପରିସ୍ଥିତିରେ ବ୍ରଜଲୀଳାରେ ପ୍ରେମ କଥା ନ କହିଲେ ବଂଗଳାକୁ ଚୁଚନ୍ତା ନାହିଁ । ଚୈତନ୍ୟଙ୍କ ନିଜ ମତ କ'ଣ ଥିଲା, ତାହା ଏଠାରେ କୁହା ଯାଉ ନାହିଁ । ଚୈତନ୍ୟ ଦୁଇ ପୁରୁଷ ପୂର୍ବରୁ ବଂଗ ଦେଶରେ ଥିଲେହେଁ ତାଙ୍କର ପରିବାର ପରଂପରା

---

* R. D. Banerji's History of Orissa, Vol. p.p 147 and 148 Pandit Binayak Mishra's Dynasties of Medeaval Orissa, p. 21.

† ଶ୍ରୀଯୁକ୍ତ ଦୀନେଶଚନ୍ଦ୍ର ସେନଙ୍କ 'ବୃହତ୍ ବଂଗ', Vol I. p. 328, Vol II 1-36, 771. (Calcutta University Publication—1-1932).

ଯାଜପୁରରୁ ଛୁଣ୍ଡି ନ ଥିଲା । ତାଙ୍କର ବୈବାହ୍ମକାଦ କୃଚ୍ଛ୍ରମୁଣ୍ଡିତା ବଂଗଳା ସମାଜରେ ହୋଇ ନ ଥିଲା । ଚୈତନ୍ୟ ବୈଷ୍ଣବର ନାରୀ ସମାଗମ ବା କୌଣସି ପ୍ରକାର ନାରୀ ସମ୍ପର୍କକୁ ଏକାବେଳକେ ମନା କରିଥିଲେ । ଜଗନ୍ନାଥଚରିତାମୃତରୁ ଜଣାଯାଏ, ତାଙ୍କ ମତ ଏପରି ଏତେ ବ୍ରଜଲୀଳାକୁ ଢ଼ଳି ନ ଥିଲା । ମାତ୍ର ବଂଗୀୟମାନେ ତାଙ୍କ ଜୀବନ-ଚରିତ ଓ ଧର୍ମକୁ ନିଜ ଦୃଷ୍ଟିରେ ଦେଖି ଲେଖିଚନ୍ତି ଓ ପ୍ରଚାର କରିଚନ୍ତି । ତାହାହିଁ ସ୍ୱାଭାବିକ ।

## ଲେଖାରୁ ଉଦାହରଣ—

ଏବେ ଓଡ଼ିଶାର ଚୈତନ୍ୟ ସଖାମାନେ କି ଧର୍ମ ପ୍ରଚାର କରିଚନ୍ତି, ତା ଟିକିଏ ସୂଚନାରେ ଦେଖାଯାଉ—

## ବଳରାମ ଦାସ—

ବଳରାମ ଦାସ ବ୍ରହ୍ମାଣ୍ଡ ଭୂଗୋଳ ବୋଲି ଏକ ବୈଷ୍ଣବ ଗ୍ରନ୍ଥ ଲେଖିଚନ୍ତି । ଏଠାରେ ବ୍ରହ୍ମାଣ୍ଡ ଭୂଗୋଳ ବୋଇଲେ ଶରୀର ବର୍ଣ୍ଣନା ବା ଶରୀରତତ୍ତ୍ୱ ସହିତ ସୃଷ୍ଟି ବ୍ୟାଖ୍ୟା । ସେ ସେଥିରେ ଶୂନ୍ୟବାଦ ଓ ଶରୀରସାଧନାକୁ ବୈଷ୍ଣବଧର୍ମରେ ପ୍ରଚାର କରିଚନ୍ତି । ସେ ଏଇ ଗ୍ରନ୍ଥକୁ ଶ୍ରୀକୃଷ୍ଣ ଅର୍ଜୁନଙ୍କ କଥୋପକଥନ ବୋଲି ଲେଖିଛନ୍ତି । ଭାଗବତର ଅର୍ଥ କଣ, ଇତ୍ୟାଦିର ଉତ୍ତରରେ ଶ୍ରୀ ଭଗବାନ ଉବାଚ—

—ପ୍ରଥମ ଅଧ୍ୟାୟ—

ମନକୁ କର ତୁ ନିଶ୍ଚଳ । କହିବା ବ୍ରହ୍ମାଣ୍ଡ ଭୂଗୋଳ । ୧୮ ।
ଶୁଣ ହେ ପାର୍ଥ ମନ ଦେଇ । କହିବା ଭାଗବତ ଫେଇ । ୧୯ ।
ଯେକାଳେ ନ ଥିଲା ସଂସାର । ନ ଥିଲେ ଚନ୍ଦ୍ର ଦିବାକର । ୨୦ ।
ନ ଥିଲା ଦିବସ ରଜନୀ । ନ ଥିଲା ଭୁବନ ମେଦିନୀ । ୨୧ ।
ଆଦ୍ୟରୁ ନ ଥିଲା ପବନ । ନ ଥିଲା ଶୂନ୍ୟେ ତାରାଗଣ । ୨୨ ।
ନ ଥିଲେ ଦେବାସୁର ନର । ନ ଥିଲା ସଂସାର ପ୍ରଚାର । ୨୩ ।
ନ ଥିଲା ଜଳସ୍ଥଳାନିଳ । ନ ଥିଲା ଗଗନମଣ୍ଡଳ । ୨୪ ।
ନ ଥିଲେ ବରୁଣ କୁବେର । ନ ଥିଲା ତେଜ ଅଉ ନୀର । ୨୫ ।
ନ ଥିଲେ ବ୍ରହ୍ମା ବିଷ୍ଣୁ ଶିବ । ନ ଥିଲା ବେଦର ସ୍ୱଭାବ । ୨୬ ।
ସେକାଳେ ଶୂନ୍ୟ ମୋର ରୂପ । ଏମନ୍ତେ ଗଲା କୋଟି କଳ୍ପ । ୨୭ ।
ବ୍ରହ୍ମାଣ୍ଡ ମୋର ଗର୍ଭେ ନେଇ । ରହିଲି ବ୍ରହ୍ମରୂପ ହୋଇ । ୨୮ ।
କେହି ନ ଥିଲେ ହେ ଅର୍ଜୁନ । ବ୍ରହ୍ମାଣ୍ଡ ହୋଇଥିଲା ଶୂନ୍ୟ । ୨୯ ।
ଏମନ୍ତେ କୋଟି କଳ୍ପ ଅନ୍ତେ । ଦୟା ଉପୁଜିଲା ମୋ ଚିତ୍ତେ । ୩୦ ।

| | | | | |
|---|---|---|---|---|
| ସୃଷ୍ଟି କରଣେ ବାଞ୍ଛା ହେଲା | । | ମୋ ଅଂଗୁ ବିନ୍ଦୁ ଉଛୁଳିଲା | । ୩୧ । |
| ସେ ବିନ୍ଦୁ ଜଳସ୍ୱରୂପ ହେଲା | । | ନିର୍ବୀଜ ରସ ବୋଲାଇଲା | । ୩୨ । |
| ସେ ବିନ୍ଦୁ ହସ୍ତରେ ଧଇଲି | । | ଜଳୁଁ ଅଙ୍କୁରେ ଗଳାଇଲି | । ୩୩ । |
| ଜଳ ବୀଜରୁ ଜଳ ଦେବ | । | ହୋଇଲେ ବ୍ରହ୍ମା ବିଷ୍ଣୁ ଶିବ | । ୩୪ । |
| ଏ ତିନି ମୂର୍ତ୍ତିଠାରୁ ପୁଣ | । | ଉତ୍ପତ୍ତି -ହେଲା ରାମ ନାମ | । ୩୫ । |
| ନାମରୁ ଭାଗବତ ହେଲା | । | ଏଣୁ ଦ୍ୱିଗୁଣ ବୋଲାଇଲା | । ୩୬ । |

—ଦ୍ୱିତୀୟ ଅଧ୍ୟାୟ—

| | | | |
|---|---|---|---|
| ମାତା ପିତାଙ୍କ ରଜ ବୀଜ | । | ତେଣୁ ହୋଇଲା ମହାତେଜ | । ୬ । |
| ରଜୋବୀଜଙ୍କୁ ଭାଗ କଲା | । | ଏମନ୍ତେ ଭାଗବତ ହେଲା | । ୭ । |
| ଏକାଦଶ ଇନ୍ଦ୍ରିୟଗଣ | । | ରଜୋବୀଜରୁ ଜାତ ପୁଣ | । ୮ । |
| ବେଦରୁ ବ୍ରହ୍ମ ଏକ ହୋଇ | । | ଏକାଦଶ ଏହୁ ବୋଲାଇ | । ୯ । |

—ତୃତୀୟ ଅଧ୍ୟାୟ—

| | | | |
|---|---|---|---|
| ଏମନ୍ତେ ମହାଶୂନ୍ୟ ହେଲା | । | ସେ ଶୂନ୍ୟ ପ୍ରଣବ ହୋଇଲା | । ୭ । |
| ପ୍ରଣବ ଓଁକାରକୁ କହି | । | ଏକ ଅକ୍ଷରଟି ସେ ଅଟଇ | । ୮ । |
| ଓଁକାର ନାମ ହେଲା ଜାତ | । | ନାମରୁ ବେଦଟି ସମ୍ଭୂତ | । ୯ । |
| ଓଁକାରୁ ନାମ ଜାତ ହେଲା | । | ନାମଟି ଶାସ୍ତ୍ର ବୋଲାଇଲା | । ୧୦ । |
| ବେଦକୁ ଶାସ୍ତ୍ର ବୋଲି କହି | । | ନାମଟି ଶରୀରେ ବସଇ | । ୧୧ । |
| ଜୀବ ଦିବସ ଭଜୁଥାଇ | । | ତନ୍ଦ୍ରାରେ ନାମ ନ ଛାଡ଼ଇ | । ୧୨ । |
| ଏମନ୍ତେ ଶାସ୍ତ୍ର ହେଲା ଜାତ | । | ଶୁଣ ଅର୍ଜୁନ ଭାଗବତ | । ୧୩ । |

—ପଞ୍ଚମ ଅଧ୍ୟାୟ—

ଅର୍ଜୁନ ପଚ୍ଚାରନ୍ତି—

"ପୂର୍ବେ ଯେ ଏକାକ୍ଷର ହେଲା । କେମନ୍ତେ ମୁଖରୁ ଝରିଲା" । ୨ ।

ଏଠାରେ 'ପୂର୍ବେ' କେବେ ? ଏକାକ୍ଷର କଣ ? ମୁଖରୁ କିପରି ଝରିଲା ? ବାସୁକି ହାତେ କେବେ ଦେଲା ? ଅନନ୍ତ କେବେ ? ବାସୁକି କେବେ ? ବ୍ରହ୍ମା କେବେ ? ନାରଦ କେବେ ? ବ୍ୟାସ କେବେ ? ଶୁକ କେବେ ? ପରୀକ୍ଷିତ କେବେ ? ସୂତ କେବେ ? ସନକ କେବେ ? ମୈତ୍ରେୟ କେବେ ? ବିଦୁର କେବେ ?

ଏଠାରେ ପ୍ରଥମ ପଦଟି ଗୋଟିଏ ପ୍ରାଚୀନ ତତ୍ତ୍ୱବଚନ । ତାର ଅର୍ଥ ପଚ୍ଚାରନ୍ତି । ପୁଣି ବାସୁକି ତା ପାଇଥିଲେ, ଅନନ୍ତଙ୍କଠାରୁ । ଏ ପରଂପରା ସ୍ପଷ୍ଟ ଅସୁର । ସର୍ପ ବା ନାଗମାନଙ୍କ ଶ୍ରେଷ୍ଠ ପୁରୁଷ ଅନନ୍ତ ଓ ତାଙ୍କ ପୁଅ ( କୌଣସି କୌଣସି ପୁରାଣମତେ ଭାଇ) ବାସୁକି ଏହା ପୁରାଣରେ ଅଛି । ମାତ୍ର ଏଠାରେ ସେଇମାନେ ଏକାକ୍ଷର ବା 'ଶୂନ୍ୟ'-ତତ୍ତ୍ୱ ପାଇଥିଲେ ବୋଲି ବୁଝାଇବାରେ ପରଂପରାର

ସଙ୍କେତ ଆସୁର ବା ସାର୍ପ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ତା ସଙ୍ଗେ ମଧ୍ୟ ସ୍ପଷ୍ଟ ବୈଦିକ ପରଂପରା—ଅର୍ଥାତ୍, ବ୍ରହ୍ମା ନାରଦାଦିଙ୍କ ନାମ ଏଠାରେ ଅଛି ।

ହେଲେହେଁ ଏ ସବୁ ପରଂପରାର ବ୍ୟାଖ୍ୟା କରାଯାଇଛି ଏଇ ଶବରର ସାଧନାରେ । ପରଂପରା ଏଠାରେ ଆଉ ନାହିଁ । ପରଂପରାର ସୂତ୍ର ମଧ୍ୟ କେତେଗୁଡ଼ିଏ ନାମ । ସେ ନାମର ପ୍ରକାଶ ଏଇ ବ୍ୟକ୍ତିର ଜ୍ଞାନରେ । ତେଣୁ ସେଇ ଜ୍ଞାନସୂତ୍ର ଧରି ଶବରସାଧନାରେ ସେଇ ସୂତ୍ର ଓ ସେଇ ପରଂପରାର ଉପଯୋଗିତା । ଭଗବାନ୍ ଉତ୍ତରରେ କହିଲେ—

| | | | |
|---|---|---|---|
| "ଶୁଣ ଅର୍ଜୁନ ଦେଇ ମନ | । | କହିବା ତୋତେ ବ୍ରହ୍ମଜ୍ଞାନ | । ୧୧ । |
| 'ପୂର୍ବେ'ଟି ମହାଶୂନ୍ୟ ଜାଣ | । | ଅନନ୍ତ ଜ୍ୟୋତିଟି ପ୍ରମାଣ | । ୧୨ । |
| ଓଁକାର ଏକାକ୍ଷର କହି | । | ଜ୍ୟୋତିରୁ 'ର'-କାର ଜନ୍ମଇ | । ୧୩ । |
| ବାୟୁକ ପବନକୁ କହି | । | 'ର'-କାର ପବନ କ୍ଷରଇ | । ୧୪ । |
| ନାମଟି ବ୍ରହ୍ମ ବୋଲାଇଲା | । | 'ଓଁ'-କାର ତହୁଁ ଜାତ ହେଲା | । ୧୫ । |
| ନାରଦ ହିଁଗୁଣଙ୍କୁ କହି | । | 'ର'-କାର ସେହି ଜନ୍ମ ହୋଇ | । ୧୬ । |
| ବ୍ୟାସଟି ଚୈତନ୍ୟ ପୁରୁଷ | । | 'ଓଁ'-କାର ତହୁଁ ଯେ ପ୍ରକାଶ | । ୧୭ । |
| ଶୁକ ଯେ ସୁଷୁମ୍ନା ଦ୍ୱାର | । | 'ର'-କାର ଠାରୁ ସେ ବାହାର | । ୧୮ । |
| ନାମଟି ପରୀକ୍ଷା ହୋଇଲେ | । | 'ଓଁ'-କାରୁ ଶବଦ ହୋଇଲା | । ୧୯ । |
| ସୂତ ଯେ ସୂତ ଋଷି ଜାଣ | । | ସନକ ଶକ୍ତିଟି ପ୍ରମାଣ | । ୨୦ । |
| ବିନ୍ଦୁଟି ମଇତ୍ରେୟ ହୋଇ | । | ବିଦୁର ଜ୍ଞାନଟି ବୋଲାଇ | । ୨୧ । |
| ଶୂନ୍ୟରୁ ବିନ୍ଦୁ ଯେ ଖସିଲା | । | ଷଡ଼ ପ୍ରକାରେ ସେ ହୋଇଲା | । ୨୨ । |
| ଷଡ଼ ସଂବାଦ ହୁଏ ଆସି | । | ମାତା ରଜରେ ଯାଇ ମିଶି | । ୨୩ । |
| ଖ୍ୟବରୁ ଯାହା ସେ ସଂଭୂତ | । | ଏହିଟି ନାମ ଭାଗବତ | । ୨୪ । |
| ଷଡ଼ ପ୍ରକାରେ ସେ ଖସିଲା | । | ଷଡ଼ ସମ୍ବାଦ ବୋଲାଇଲା | । ୨୫ ।" |

( ବ୍ରହ୍ମାଣ୍ଡ ଭୂଗୋଳ—୫ମ ଅଧ୍ୟାୟ )

ଏଠାରେ ଶବର ବା ଅସୁରତତ୍ତ୍ୱ ପୁଣି ପରବର୍ତ୍ତୀ ବୈଦିକ ପରଂପରାର ସମାଧାନ ଓ ସମନ୍ୱୟ ସୁନ୍ଦର ଲକ୍ଷ୍ୟ କରାଯାଇପାରେ । 'ପୂର୍ବେ', ଅର୍ଥାତ୍ ସବୁ ପ୍ରକାର ପୂର୍ବରୁ ଥିଲା ମହାଶୂନ୍ୟ । ବେଦରେ ଅଛି—"ଦେବାନାଂ ପୂର୍ବ୍ୟେ ଯୁଗେଽସତଃ ସଦଜାୟତ" (ଋ-୧୦. ୭୨. ୭) । ସେଠାରୁ ଅନନ୍ତ, ଜ୍ୟୋତି, କଂପନ ବା କାମ । ଏଇ ଅନନ୍ତ ପୁଣି ସର୍ପମାନଙ୍କର ଶ୍ରେଷ୍ଠ ପୁରୁଷ । ବେଦରେ ଅଛି—

କାମସ୍ତଦଗ୍ରେ ସମବର୍ତ୍ତତାଧି
ମନସୋ ରେତଃ ପ୍ରଥମଂ ଯଦାସୀତ୍ ।
ସତୋ ବନ୍ଧୁମସତି ନିର ବିନ୍ଦନ୍
ହୃଦି ପ୍ରତୀଷ୍ୟା କବୟୋ ମନୀଷା ॥ (ଋ. ୧୦,୧୨୯.୪)

ଅର୍ଥାତ୍ ଏଇ ତମରେ କାମ ବା କଂପନ ପ୍ରକାଶ ପାଇଲା । ଏହା ହିଁ ଏହି ମନର ପ୍ରଥମ ରେତ । ଅସତ୍ ବା ଶୂନ୍ୟ ସଂଗେ ସତ୍‌ର ଏହା ପ୍ରଥମ ସମ୍ବନ୍ଧ ବୋଲି ଜ୍ଞାନୀମାନେ ସ୍ଥିର କରିଚନ୍ତି ।

ଏଇ ଜ୍ୟୋତି, ସ୍ପନ୍ଦନ ବା ରୂପରୁ ନାମ ହେଲା ଓଁକାର । ଏଇ ସ୍ପନ୍ଦନ ମଧ୍ୟ ନାଦ ବା ଶବ୍ଦ । ବେଦରେ ଓଁକାର ବ୍ରହ୍ମର ପ୍ରତୀକ; ଏହା ଶବ୍ଦ ବା ବେଦରେ ପ୍ରକାଶ ପାଏ ।

ଏଇ ନାମହିଁ ବ୍ରହ୍ମ । ଏଥିରୁ ଓଁକାର ଜାତ ହେଲା । ଗୀତା ଓ ବେଦରେ ଏଇ ତତ୍ତ୍ୱର ପ୍ରତିକାଶ କଥା କୁହାଯାଇଚି । ର କାର ଏଠାରେ ଓଡ଼ିଶାର ଯୋଗ ଭାଷାରେ ଜୀବନର ପ୍ରତୀକ । ଏହା ପଞ୍ଚପ୍ରାଣ ବାୟୁର ମୂଳ ସ୍ଥାନ । ତ୍ରିଗୁଣ ଏଠାରେ ସାଂଖ୍ୟଦର୍ଶନର ସତ୍ତ୍ୱ,ରଜ,ତମ । ଏଥିରେ ହିଁ ସୃଷ୍ଟିଧାରା ଚାଲିଚି । ମାନବ ଶରୀରରେ ଏଇ ତ୍ରିଗୁଣରେ ନାମ ବା ପ୍ରତୀକ ହେଉଚି, ଇଡ଼ା, ପିଂଗଳା, ସୁଷୁମ୍ନା—ଏଇ ତିନି ବାୟୁ ସଂଚାଳନର ନାଡ଼ୀ । ବାମ ନାସା, ପିଂଗଳା ଦକ୍ଷିଣ ନାସାରେ ଚାଲେ । ସୁଷୁମ୍ନାର ସ୍ଥାନ ଏ ଦୁଇଙ୍କ ମଝିରେ । ଏ ତ୍ରିଗୁଣର ମୂଳ ସ୍ଥାନକୁ 'ଅନାହତ' ବୋଲି ତନ୍ତ୍ରରେ କହନ୍ତି । ଏଇ 'ଅନାହତ' ଏଠାରେ ର-କାର । ଏହା ମଧ୍ୟ ନାଡ଼ୀ ସୁଷୁମ୍ନାର ଦ୍ୱାର ବୋଲି କୁହାଯାଇଚି । ପୁଣି ଏଣିକି ଭାଗବତର ପୌରାଣିକ ବା ବୈଦିକ ପରଂପରା ନାମର ସଙ୍କେତରେ ଶରୀର ସାଧନା ସଙ୍ଗେ ଏକ ବା ଶରୀର ସାଧନା ହିଁ ସର୍ବତୋଭାବରେ ଭାଗବତ, ଅର୍ଥାତ୍ ଭାଗବତ ବୋଲି କିଛି ନାହିଁ ସବୁ ନାମ ମାତ୍ର ଓ ଏଇ ନାମ ବା ନାମମାନଙ୍କର ଉପଯୋଗିତା ଏଇ ଶରୀରରେ ବୋଲି ବୁଝାଇ ଦିଆଯାଇଚି । ସେଇପରି ବଳରାମ ପ୍ରଭୃତି ସମସ୍ତ ଭାଗବତ ଭକ୍ତର ବାକ୍ୟ ଦେବାଦି ପରଂପରାମାନ କେବଳ ଶରୀର ସାଧନା ବା ନାମ ବୋଲି ଅର୍ଥ କରିଚନ୍ତି । ପୁଣି ସେସବୁର ଉପାସନା ଯେ ନାମ ଧରି ଶରୀରସାଧନା ମାତ୍ର କରିବା ଏହା ବୁଝାଇଚନ୍ତି । ତାହାର ଉଦାହରଣ ଦିଆଗଲା ।

ଅର୍ଜୁନ 'ଦ୍ୱାଦଶସ୍କନ୍ଧ'ର ଅର୍ଥ ପଚାରିବାରେ ଭଗବାନ୍ ସେଇ ବ୍ରହ୍ମାଣ୍ଡ ଭୂଗୋଳ ୬ଷ୍ଠ ଅଧ୍ୟାୟରେ କହିଚନ୍ତି—

"ପ୍ରଥମ ସ୍କନ୍ଧ ତାଳୁ କହି । ଦ୍ୱିତୀୟ ସ୍କନ୍ଧ ଲଲାଟ ହିଁ । ୫ ।
ତୃତୀୟ ସ୍କନ୍ଧ ଚକ୍ଷୁ କଲା । ଚତୁର୍ଥ ସ୍କନ୍ଧ ଚକ୍ଷୁ ହେଲା । ୬ ।"

ସେହିପରି ୫ମ, ନାସା; ୬ଷ୍ଠ, ମୁଖ; ସପ୍ତମ, କଣ୍ଠ; ୮ମ, ହୃଦ; ୯ମ, ନାଭି; ୧୦ମ, ପଞ୍ଚପ୍ରାଣ; ୧୧ଶ, ଇନ୍ଦ୍ରିୟ; ୧୨ଶ, ବାୟୁଯନ୍ତ୍ର । ଏହିମାନଙ୍କ ସାଧନା ହିଁ ଭାଗବତର ସାଂଗ ପାଠ । ଅନ୍ୟଥା ଭାଗବତ ବୋଲି କିଛି ନାହିଁ । ଯାହା ଅଛି, ତା ଖାଲି ନାମ ମାତ୍ର । ଏହା ହିଁ କହିବାର ଅଭିପ୍ରାୟ ।

୨ମ ଅଧ୍ୟାୟରେ ଅର୍ଜ୍ଜୁନ ପଚାରିଲେ, 'ନିଗମ କଳ୍ପତରୁ' ବୋଲି ଯେ ଭଗବାନ୍, ତୁମକୁ ସ୍ତୁତି କରନ୍ତି, ସେ କଥା କଣ ? ଭଗବାନ୍ କହିଲେ—

“ନିଗମ ବୋଲି ଯାହା କହି । ମହାଶୂନ୍ୟଟି ସେ ଅଟଇ । ୫ ।
ବେଦ ତହିଁକି ନ ଗମିଲି । ତହୁଁ ନିଗମ ନାମ ହେଲି । ୬ ।
କଳ୍ପତରୁଟି ଯାହା କହି । ନିରାକାରଟି ରୂପ ହୋଇ । ୭ ।
ସେଠାରୁ ବିନ୍ଦୁ ରସ ଗଳି । ସେ ବୀଜ ରସୁ ଫଳ ଫଳି । ୮ ।
ଶୁକ ବୋଲିଣ ଯାହା କହି । ଶିଶୁଧାରଟି ସେ ଅଟଇ । ୯ ।
ବିନ୍ଦୁଟି ସେହି ବାଟେ କ୍ଷରି । ଏଣୁ ଏ ଶୁକମୁଖୁଁ ଝରି । ୧୦ ।
ବୀଜ ସଂଯୁକ୍ତ ହୋଇ ଖସି । ମାତା ଜଠରେ ଯାଇ ମିଶି । ୧୧ ।
ଏ ରଜ ବୀଜକୁ ପିଅଇ । ତେଣୁଟି ଭାଗବତ ହୋଇ । ୧୨ ।
ଉଦରେ ଭାବ ଯହୁଁ କଲି । ତେଣୁଟି ଏ ଦେହ ପାଇଲି । ୧୩ ।
ସୁଜନମାନେ ହେତୁ କର । ଭବକୁ ଗୁପ୍ତ ଭାବ ଧର । ୧୪ ।
ଭାବଟି ନାମ ରସ ଜାଣ । ପିଅ ହେ ସାଧୁସୁଜ୍ଞଜନ । ୧୫ ।”

'ହେ ସୁଧୀମାନେ, ଶୁକମୁଖରୁ ଗଳୁଥିବା ନିଗମକଳ୍ପତରୁ ରସକୁ ପାନ କର' ବୋଲି ଯେଉଁ ଭାଗବତ ବଚନଟି ଅଛି, ତାର ଅର୍ଥ ବଳରାମ ଦାସ ଉପରେ ଦେଇଚନ୍ତି । 'ଶିଶୁ ଧାର' ବୋଇଲେ, ଏଠାରେ ଶିଶ୍ନ-ଧାର ବା ଶିଶ୍ନ ନାଳ । ଏ ବ୍ୟାଖ୍ୟାର ଅର୍ଥ ସ୍ପଷ୍ଟ ।

ସେହିପରି ଭାଗବତ ବଚନ—

“ଲୀଳା ବିଧୃତ କଳେବର
ଦେବ ମାନବେ ଅଗୋଚର ।” ର ଅର୍ଥ କହୁଚନ୍ତି—

(ଏକାଦଶ ଅଧ୍ୟାୟ)

“ସକଳ ଘଟେ ଲୀଳା ମୋର । ମୁଁ ଥାଇ ସକଳ ଶରୀର । ୫ ।
ଘଟରେ ଲୀଳା କରୁଥାଇ । ଘଟ ଛାଡ଼ିଲେ ଶୂନ୍ୟେ ଯାଇ । ୬ ।
ଘଟରୁ ପ୍ରାଣ ଛାଡ଼ି ଯାଇ । ତାହାକୁ କେହି ନ ଦେଖଇ । ୭ ।
ଜୀବ ଯେ ଶୂନ୍ୟେ ଚଳିଗଲା । ଦେବ ମନୁଷ୍ୟ ନ ଜାଣିଲା । ୮ ।

ସେହିପରି ୧୬ଶ ଅଧ୍ୟାୟରେ—

"ଦେବଙ୍କ ବ୍ୟାକୁଳେ ମୁରାରି । ମଞ୍ଚେ ମନୁଷ୍ୟ ଦେହ ଧରି ।
ଦୁର୍ଜନଗଣ ନାଶ କଲେ । ଅବନୀ ଭାର ଉଶ୍ୱାସିଲେ ।"

ଏହି ଭାଗବତ ବଚନର ଅର୍ଥ କହୁଛନ୍ତି—

ଅବନୀ ଦେହକୁ ଯେ କହି । ପ୍ରକୃତି ସହି ବଶ ହୋଇ । ୬ ।
ଦୁଷ୍ଟଗଣଙ୍କୁ ନାଶ କରି । ଏ ଆତ୍ମା ଯାଉ ନିଜ ପୁରୀ । ୭ ।
ଜୀବ ପରମ ଶୂନ୍ୟେ ଚଳେ । ଅବନୀ ଭାର ଉଶ୍ୱାସିଲେ । ୮ ।

୧୭ଶ ଅଧ୍ୟାୟରେ—

ଭୀମକୁ ବିଷ ଲଡୁ ଦେଇ । ଜତୁର ଘରେ ଅଗ୍ନି ଦାହି । ୨ ।
ଏ ଆଦି ଯେତେ କର୍ମମାନ । ପାଣ୍ଡବେ କଲେ ଦୁର୍ଯ୍ୟୋଧନ । ୩ ।
ସଗତେ ପାଞ୍ଚ ଭାଇ ଘେନି । ନାଶିଲେ ସେ କୁରୁ ସଇନ । ୪ ।

ଏହାର ଅର୍ଥରେ ଭଗବାନ କହୁଛନ୍ତି—

ପବନ ଭୀମ ବୋଲାଇଲା । ଦେହକୁ ଜତୁ ଘର କଲା । ୮ ।
ବିଷ ଲଡୁଟି ତ୍ରିଗୁଣ ଜାଣ । ଏକଥା ଅଟଇ ପ୍ରମାଣ । ୯ ।
ମନଟି ଦୁର୍ଯ୍ୟୋଧନ ହେଲା । କାମ ଅଗ୍ନିରେ ଜାଳି ଦେଲା । ୧୦ ।
ପଞ୍ଚ ପାଣ୍ଡବ ପଞ୍ଚଭୂତ । ସଗତେ ଘେନି ଜଗନ୍ନାଥ । ୧୧ ।
କୁରୁ ବଳକୁ ନାଶ କରି । ପାଣ୍ଡବ ବଳ ଯାନ୍ତି ତରି । ୧୨ ।
ଦୁର୍ଯ୍ୟୋଧନର ଯେତେ ସୈନ୍ୟ । ପାଣ୍ଡବ ବଳ ଶତେ ଗୁଣ । ୧୩ ।
ପ୍ରଳୟେ ପାପକୁ ନାଶନ୍ତି । ସତ୍ତ୍ୱ ଗୁଣରେ ତରିଯାନ୍ତି । ୧୪ ।

ଏଇଠାରେ ଏଇ ଯୋଗରେ ସ୍ତ୍ରୀ ସଂଗ ପ୍ରତି ଯେଉଁ ଭାବ ପ୍ରକାଶିତ ହୋଇଚି, ତାହା ଲକ୍ଷ୍ୟ କରିବାର କଥା । ଓଡ଼ିଶାର ତନ୍ତ୍ରସାଧନାର ଏଇ ବିଶେଷତ୍ୱ ହେତୁ ତାହା ଏପରି ଦୃଢ଼ତାରେ ସମାଜର ଜୀବନ୍ତ ନୀତିରୂପେ ତିଷ୍ଠିଥିଲା, ଏବେ ମଧ୍ୟ ଅଛି । ପ୍ରଳୟ ବର୍ଣ୍ଣନାରେ ଭାଗବତ ବଚନ ଅଛି—

"ଦ୍ୱାଦଶ ସୂର୍ଯ୍ୟ ଶୂନ୍ୟେ ରହେ । ତିନି ଭୁବନ ତେଜେ ଦହେ ।

ତା ପରେ ଅଣଚାଶ ପବନ ଗଗନରେ ବହେ ଓ ସମ୍ବର୍ତ୍ତି ମେଘ ବରଷି ପ୍ରଳୟ କରେ, ଇତ୍ୟାଦି ମଧ୍ୟ ଅଛି ।

୧୯ଶ ଅଧ୍ୟାୟରେ ଭଗବାନ୍ ଏହାର ଅର୍ଥ ବୁଝାଇଛନ୍ତି—

ଦ୍ୱାଦଶ ଆଙ୍ଗୁଳ ପବନ । ଦ୍ୱାଦଶ ସୂର୍ଯ୍ୟ ବୋଲି ଜାଣ । ୮ ।
ନାସାର ଅଗ୍ରେ ସେ ବସଇ । ତା ମୁଖୁଁ ଅଗ୍ନି ଜାତ ହୋଇ । ୯ ।
ପାଦ ହୃଦସ୍ଥ ଶିର କହି । ଏ ତିନି ଭୁବନେ ଦହଇ । ୧୦ ।
ପବନ ମେଘମାଳ ହେଲା । ଗଗନ କପାଳକୁ କଲା । ୧୧ ।
ଶରୀରୁ ପବନ ଛୁଟଇ । ସେଠାରେ ପ୍ରବେଶ ହୁଅଇ । ୧୨ ।
ଅନନ୍ତ ଜ୍ୟୋତି ରୂପ ଜାଣ । ସେଠାରୁ ଅଗ୍ନି ଜାତ ପୁଣ । ୧୩ ।
ଅଗ୍ନି କଣିକା ଯେ ସମ୍ଭୂତ । ଶରୀର ପାତାଳ ପୋଡ଼ନ୍ତି । ୧୪ ।
ସମ୍ବର୍ତ୍ତି ମେଘ ସନ୍ନିପାତ । ଜଳ ବରଷେ ନିରଘାତ । ୧୫ ।
କାଳ ବିକାଳ ବେନି ଧାରି । ଛୁଟନ୍ତି ଯେସନେ ଜଳଧାରି । ୧୬ ।
ଉଲଟ ପବନ ପ୍ରଖର । ସ୍ୱସ୍ତୀ ଶୁଣି ଯେ ନାମ ତାର । ୧୭ ।

( ୨୨ଶ ଅଧ୍ୟାୟ )

ପୁଣି ପର ଅଧ୍ୟାୟରେ ଅର୍ଜ୍ଜୁନ ତନ୍ନ ତନ୍ନ କରି ପଚାରିବାରୁ ସେହି ପ୍ରଳୟ ତତ୍ତ୍ୱକୁ 'ଯୋଗ' ସାଧନାରେ ବୁଝାଇ ଯାଇଛନ୍ତି—

ଜଳ ଯେ ସନ୍ନିପାତ କହି । ବହୁଳ ଅଗ୍ନିରୁ ବହଇ । ୧୦ ।
ଡାହାଣ ବାୟୁ ଅଗ୍ନି ଜାଣ । ବାମ ନାସିକା ଜଳ ପୁଣ । ୧୧ ।
ଡାହାଣ ନାସା ଅଗ୍ନି ବାହି । ବାମରେ ଏକ ବହୁଥାଇ । ୧୨ ।
ଅନଳ ଜଳ ଏକ ହେଲା । ଏମନ୍ତେ ବ୍ରହ୍ମାଣ୍ଡ ଦହିଲା । ୧୩ ।
ପରମ ବୈରାଟ ଯେ ହୋଇ । ତିନି ଭୁବନ ସେ ଦହଇ । ୧୪ ।
ତକ୍ଷଣେ ପାଦରୁ ଛୁଟଇ । ନାଭିରେ ପ୍ରବେଶ ହୁଅଇ । ୧୫ ।
ସେଠାରୁ ବିରାଟ ଯେ ହେଲା । ହୃଦସ୍ଥ କଣ୍ଠ ଯାଏ ଗଲା । ୧୬ ।
ଚକ୍ଷୁରେ ନିରଞ୍ଜନ ବାସ । ପରମ ଆତ୍ମାର ପ୍ରବେଶ । ୧୭ ।
ପ୍ରଳୟ ସହି ନ ପାରିଲା । ମହତ୍ତ୍ୱ ଦେହେ ବିଶ୍ରାମିଲା । ୧୮ ।

ଏଠାରେ ବିରାଟ ଓ ମହତ୍ତ୍ୱ ପାରିଭାଷିକ ଶବ୍ଦ । ମନୁଷ୍ୟର ଏ ମୃତ୍ୟୁ ବର୍ଣ୍ଣନାରେ ଇଡ଼ା ଓ ପିଂଗଳା ଏକ ହେଲେ କ୍ରମେ ପାଦରୁ ପ୍ରାଣ ଛୁଟି ମୃତ୍ୟୁ ହୁଏ ବୋଲି କହିଛନ୍ତି । ଏଇ ଇଡ଼ା, ପିଂଗଳା ଓ ସୁଷୁମ୍ନାକୁ ବ୍ରହ୍ମରନ୍ଧ୍ର ମୂଳରେ ଏକ କରି ଯୋଗସାଧନାରେ ରଖିବାକୁ ହୁଏ । ଏଇ ବ୍ରହ୍ମରନ୍ଧ୍ର ମୂଳ ବା ଭ୍ରୂମଧ୍ୟର ଭିତର ସ୍ଥାନକୁ 'ତ୍ରିକୂଟ' କହନ୍ତି । ଏଇ ତ୍ରିକୂଟରେ ବାୟୁ ସାଧନା ବଳରେ ତିନି ବାୟୁ ନାଡ଼ୀର ଗତିକୁ ରଖି ବ୍ରହ୍ମରନ୍ଧ୍ରରେ ଥିବା ପରମ ବା ପରମାତ୍ମାରେ ମିଶାଇ ଛୁଟି ଶୂନ୍ୟ କରିଦେବାକୁ ହୁଏ । ସେଇ କଥାକୁ ୩୫ଶ ଅଧ୍ୟାୟରେ ଗଜ କୁମ୍ଭୀର ଉପାଖ୍ୟାନ ବୁଝାଇବାରେ କହିଛନ୍ତି—

ସଂସାରେ ଜୀବ ଖେଳୁଥାଇ । ମାୟା ମୋହରେ ସୁଖ ପାଇ । ୯ ।
ପ୍ରଳୟ କାଳ ଯହୁଁ ହେଲା । ଜୀବକୁ କାଳ ଆଶ୍ରେ କଲା । ୧୦ ।
ଜୀବରୁ କାଳ ଜାତ ହୋଇ । କୁମ୍ଭୀର ତାହାକୁଟି କହି । ୧୧ ।
ପରମ ଗଜ ବୋଲି ଜାଣ । ତ୍ରିକୂଟେ ଭେଟ ହୋନ୍ତି ପୁଣ । ୧୨ ।
ତ୍ରିକୂଟ ତ୍ରିବେଣୀ ଅଟଇ । କାଳିନ୍ଦୀ ହ୍ରଦ ସେ ବୋଲାଇ । ୧୩ ।
ହ୍ରଦରୁ ହଂସ ଯିବା କାଳେ । କୁମ୍ଭୀର ଗ୍ରାସେ ଯେତେବେଳେ । ୧୪ ।
ଜୀବ ଚରଣକୁ ଧଇଲା । ଆତଂକେ ଗଜ ଡାକ ଦେଲା । ୧୫ ।
ଶୂନ୍ୟ ଶବଦ ଚକ୍ର ଜାଣ । ଆତ୍ମେ ପେଷିଲୁ ତତକ୍ଷଣ । ୧୬ ।
କାଳ ଗ୍ରାହକୁ ନାଶ କରି । ପରମ ଗଜକୁ ଉଦ୍ଧାରି । ୧୭ ।

ଏଇ ଶେଷ ପଦର କଥାକୁ ପୂର୍ବେ କହିଚନ୍ତି, ପ୍ରଳୟ ସହି ନ ପାରି ମହାତ୍ମା ଦେହରେ ପରମ ଦେଶ୍ରମିଲା, ଅର୍ଥାତ୍ ଜୀବ ପରମ ମିଶି ଶୂନ୍ୟ ହୋଇପାରିଲେ ନାହିଁ । ମୃତ୍ୟୁରେ ତାହା ହୁଏ ନାହିଁ; ଯୋଗରେ ହୁଏ ।

## ଅଚ୍ୟୁତ ଦାସ—

ଏଇ ବ୍ରହ୍ମାଣ୍ଡ ଭୂଗୋଳରେ ସମସ୍ତ ଖ୍ରୀବତ ଏଇପରି ସଙ୍କେତରେ ଅଲ୍ପରେ କୁହାଯାଇଚି । ବେଶି ଜାଣିବା ପାଇଁ ସେ ଗ୍ରନ୍ଥ ଦେଖିବାକୁ ହେବ । ଅଚ୍ୟୁତ ଦାସଙ୍କ 'ଶୂନ୍ୟ ସଂହିତା'ରେ ଏଇସବୁର ବ୍ୟୁତ୍ପତ୍ତି ଓ ଅତି ସାଂଗୋପାଂଗ ସାବୟବ ସୂଚନାମାନ ଏଇପରି ସୁନ୍ଦର କବିତାରେ କୁହାଯାଇଚି । ଗ୍ରନ୍ଥମୂଳରୁ ଅଚ୍ୟୁତ ଆରଂଭ କରିଚନ୍ତି—

"ଏମନ୍ତେ କେତେକ ଯୁଗ ଅନ୍ତରରେ ବିଚାର କଲେ ଈଶ୍ୱର,
ବ୍ରହ୍ମାଣ୍ଡ ଉତ୍ପତ୍ତି ହୋଇଣ ଯେ ସୃଷ୍ଟି ପୂର୍ବେ ଯେମନ୍ତ ପ୍ରକାର ।
ଇଚ୍ଛା କଲାମାତ୍ରେ ଜନ୍ମ ଅଦଭୁତେ ଶୂନ୍ୟରୁ ହୋଇଲା ଶୂନ୍ୟ,
ତହିଁରୁ ଶବଦ ଅନାହତ ନାଦ ଶୂନ୍ୟେ ପ୍ରକାଶିତ ଜ୍ଞାନ ।
ରଜ ଗୁଣ ସତ୍ତ୍ୱ ହୁଅନ୍ତେ ଏକତ୍ର ଜାତ ହୋଇଲା ଆକାର,
ପଞ୍ଚମାତ୍ରା ସଙ୍ଗେ ଘେନି କାୟାଯୋଗେ ବୋଲାଇଲା ଏକାକ୍ଷର ।
ଆକାର ସଙ୍ଗତେ ବୀଜ ଯେ ମିଶନ୍ତେ ବୋଲାଇଲା ପଞ୍ଚମାତ୍ରା,
ରଜ ବୀର୍ଯ୍ୟେ ଶୂନ୍ୟ ଶବଦ ମିଶନ୍ତେ ଦେହ ହୋଇଲା ନିମନ୍ତା ।

× × ×

ଶୂନ୍ୟରୁ ଖସିଲା ପବନେ ମିଶିଲା ନିରାକାରେ ହେଲା ଠୁଳ,
ଠୁଳରୁ ଯେ ଶୂନ୍ୟ ଶୂନ୍ୟରୁ ପରମ ଅଣାକାର ହେଲା ମୂଳ ।

ଏମନ୍ତେ ଯେ କାୟା ଗୋଟି ପ୍ରକାଶିଲା ନାମ ସେ ହୋଇଲା ଜାତ,
ମୂଳ ଭାଙ୍ଗି ଗଲେ ଅମୂଳ ମିଶିବ ରହିଯିବ ଅନାହତ ।

ଏହାର ଜନ୍ମବୃତ୍ତାନ୍ତ ଆରମ୍ଭ କରିବାକୁ ଯାଇ ସେ ଏଇପରି ଭୂମିକା କରିଛନ୍ତି । ଚୈତନ୍ୟଙ୍କର ସେ ପରମଭକ୍ତ । ଚୈତନ୍ୟଙ୍କୁ କହିଛନ୍ତି—

"ଶୂନ୍ୟରୁ ଶୂନ୍ୟ ଯେ ପ୍ରକାଶିଲେ ବ୍ରହ୍ମ ମଞ୍ଚେ କରିବାକୁ ଲୀଳା ।" (ଗ୍ରନ୍ଥମୂଳ) ଜଗନ୍ନାଥଙ୍କ ସଂବଧରେ କହିଛନ୍ତି—

"ଅବତାର ଦଶ ଏହି ଦାରୁ ରୂପ ଏହି ଦାରୁରେ ସେ ଲୀନ ।"

ପ୍ରଥମ ଅଧ୍ୟାୟରେ ଶିଷ୍ୟଙ୍କ ପ୍ରତି ଉପଦେଶ ଆରମ୍ଭ କରି କହିଛନ୍ତି ।—

ନାମକୁ ଭଜିଲେ ସିନା ଗତି ମୁକ୍ତି ପାଇ । ପିଣ୍ଡକୁ କାରଣ ନାମ ବିନୁ ଅନ୍ୟ ନାହିଁ ॥
ସଂସାର ଯେ ମହାଘୋର ଯାତନା ଜଞ୍ଜାଳ । ସଦଗୁରୁ ସେବା କଲେ ନାଶ ହୁଏ କାଳ ॥
ନାମକୁ ଚହ୍ନିଲେ ଜୀବ ପରମେ ମିଶଇ । ଷୋଳଭେଳା ପ୍ରାୟେ ଭବସିଂଧୁରେ ଭାସଇ ॥
ନାମ ଗୋଟି ଥିଲାକୁ ଯେ କାୟା ହୁଏ ମୂଳ । ସଂସାର ରଚନା କରି ସଂପତ୍ତିରେ ଭୋଳ ॥
ନାମ ଗଲେ ରୂପ କେହି ନ ଛୁଇଁବେ ଆଉ । ନାମକୁ ନ ଚହ୍ନି ଏଣେ ତେଣେ କପାଁ ଧାଉ

ନାମର ଏ ତତ୍ତ୍ୱ କରୁଛି ଶୂନ୍ୟବାଦ ଦର୍ଶନର ଭକ୍ତି ମନ୍ତ୍ର । ଏହା ବ୍ରଜଲୀଳା ପରି ବୈଷ୍ଣବଙ୍କ 'ନାମ ଭକ୍ତି' ନୁହେ । ନାମ ଏଠାରେ ସଂକେତ ବା ପ୍ରତୀକ ନୁହେଁ । ନାମ ଛଡ଼ା ଆଉ କିଛି ନାଇ, ଏଇ ଧାରଣା ଏଠାରେ ସ୍ପଷ୍ଟ ।

ଓଁକାରକୁ ବେଦାର୍ଥୀମାନେ ଅ-ଉ-ମ, ଏଇ ତିନି ମାତ୍ରାରେ ଅର୍ଥ କରନ୍ତି । ମାତ୍ର ଅଚ୍ୟୁତ ତାକୁ ପଞ୍ଚବୀଜ, ପଞ୍ଚଭୂତ, ପଞ୍ଚଆତ୍ମା—ଏସବୁର ମୂଳ ସମବାୟ କରି ବୁଝାଇଅଛନ୍ତି । ସେ ଓଁରେ ପାଞ୍ଚୋଟି ମାତ୍ରା ବା ଅଂଶ ଏକତ୍ର ଦେଖି ତାହାରି ମୂଳ ବା ଏକତ୍ୱରେ ଓଁ ନାମ ହୋଇଚି ବୋଲି କହିଛନ୍ତି । ଏଇ ପଞ୍ଚ ମାତ୍ରା ନାଗରାକ୍ଷର ଓଁ ରେ ସେ କଳ୍ପନା କରି ପଞ୍ଚଭୂତର ବ୍ୟାଖ୍ୟାରେ କହିଛନ୍ତି—

"ପୃଥିବୀ ଉକାର ମାତ୍ରା—
ଆପ ଦଣ୍ଡ ଲେଖା—
ତେଜ ଗୁଣ ଘେନି ରୁଦ୍ର ତଥି ପରେ ଚନ୍ଦ୍ର ।—
ବାୟୁ ଯେ ଆକାଶ ଅର୍ଦ୍ଧ ମାତ୍ରା—
ବିନ୍ଦୁ ଜ୍ୟୋତି ।—"

(ବାୟୁ, ଅର୍ଦ୍ଧମାତ୍ରା; ଆକାଶ, ବିନ୍ଦୁ ଜ୍ୟୋତି ବା ବିନ୍ଦୁର ଟିକା ।)

ତେଣିକ ଗ୍ରନ୍ଥ ଭିତରେ ତନ୍ତ୍ରଯୋଗ ତତ୍ତ୍ୱସବୁ ନାନା ସାଧନା ସଙ୍କେତରେ ବୁଝାଇଛନ୍ତି । ମାତ୍ର ତନ୍ତ୍ରଯୋଗ ଦୀକ୍ଷାରେ ଗ୍ରହଣ ନ କଲେ ତାକୁ ବୁଝି ଅଭ୍ୟାସ କରିବାର ଉପାୟ ନାହିଁ । ସେସବୁ ସଙ୍କେତରେ କେବଳ ଦୀକ୍ଷିତ ପାଇଁ କୁହା-ଯାଇଛି ମାତ୍ର । ଉଦାହରଣ ସ୍ୱରୂପ ସମସ୍ତ ଗାୟତ୍ରୀ ମନ୍ତ୍ରକୁ ଶରୀରରେ ଥିବା ଏକ ଗାଈ ରୂପେ ବର୍ଣ୍ଣନ କରି ତୃତୀୟ ଅଧ୍ୟାୟରେ ଅଷ୍ଟାଙ୍ଗ ସାଧନା ଶିକ୍ଷା ଦେଇଛନ୍ତି—

ଅଷ୍ଟାଙ୍ଗ ବିଗ୍ରହ ଏବେ କହିଦେବା ଶୁଣ । ଅଷ୍ଟ ଗୋଟି ସ୍ଥାନ ଏହି ଦେହରେ ପ୍ରମାଣ ॥
ମୂଖ କର୍ଣ୍ଣ ନାସା ଚକ୍ଷୁ ଏ ଗୃହ ଦୁଆର । ବେନି ବେନି ହୋଇ ଦେଖ ଏ ଗୃହ ସ୍ଥାନର

( ମୁଖ ଦୁଇପାଟି ଥିବାରୁ ଯୋଡ଼ିଏ )

ଏହି ସ୍ଥାନମାନ ଯେ ଅଷ୍ଟାଙ୍ଗ ଯୋଗ କହି । ସିଦ୍ଧିରସ୍ତୁ ଗୃହକ୍ଷର ଏହି ସ୍ଥାନେ ଥାଇ ॥
ଗୃହବେଦ ବେଦମାତା ଗାୟତ୍ରୀ ଯେ ଧେନ । ସାର ତେଜ ଶରୀରବଦ-ଅଷ୍ଟାକ୍ଷର ପୁଣି ※ ॥
ଜପ ତପ ରହି ଏହି ଅଟେ ଯେ ଅକ୍ଷର । ଅବନା ଅଜପା ମିଶି ଏହି ଅଷ୍ଟାକ୍ଷର ॥
ତତ୍ସବିତୁର୍ବରେଣ୍ୟଂ ଭର୍ଗୋଦେବ କହି । ଧୀମହି ବୋଲି ପୁଣି ତଥିପାଶେ ରହି ॥
ଧୀୟୋୟୋନଃ ପ୍ରଚୋଦୟାତ୍ ବୋଲି ପୁଣ ଭରେ ।
ଚୌବିଂଶ ଅକ୍ଷର ଷଡ଼ପାଦେ ଗାଈ ଚରେ ॥
ସାର ତେଜ ଶରୀରବଦ ଧେନ ଯେ ବର୍ଣ୍ଣିଶ ।
ଗୃହପାଦ ଧରି ଗାଈ ଅଷ୍ଟାଙ୍ଗରେ ବାସ ॥

ତା ପରେ ଗୃହ ବେଦ ଓ ଉପରର ଆଠ ଅବନା ଅକ୍ଷର ଓ ଗାୟତ୍ରୀ ମନ୍ତ୍ର ରୂପରେ ଅଷ୍ଟାଙ୍ଗରେ ଅଛନ୍ତି, ତାହା ବର୍ଣ୍ଣନ କରି କହିଛନ୍ତି—

"ପୁଚ୍ଛବାଟେ ଗାଈ ପୁଣି ଆହାର ଯେ ଖାଇ । ମୁଖବାଟେ ନେଇ ପୁଣି ଆହାର ବଳାଇ
ଏ ଗାବ ଗୋଟିକ ଯେବେ ଚେତା ରଖିଥାଇ । ଏହି ମନ ଗୋଟି ସିନା ଗାବ ବୋଲି କହି ॥
ରଖୁଆଳ ଚେତନା ଯେ ରଖେ ନିରନ୍ତରେ । ଆହାର ଭକ୍ଷଇ ଗାଈ ଷଡ଼ ଯେ ମୁଖରେ ॥
ଷଡ଼ ଚକ୍ର ଷଡ଼ ମୁଖ ବୋଲିଣ ଯେ ଜାଣ । ପବନ ରୂପରେ ଗାଈ ଯାଏ ଆସେ ପୁଣ ॥
ଆଗମ ନିଗମ ଗାଈ ଝସାଇଣ ପଶେ । ବେଦମାତା ଗାଇତଶ୍ରୀ ନିଗମେ ଯେ ଖସେ ॥
ଦ୍ୱାର ଯେ ଆଙ୍ଗୁଳ ବାରଜଣ ବୋଲି ଜାଣ । ଭିତରେ ଫେରିଣ ପଶେ ଏହି ବାର ଜଣ ॥
ବାର ଜଣ ଫେରିଗଲେ ପଳାଇବ ଗାଈ । ଖର୍ଜି ଯିବ ଗୁହାଳ ଯେ ଲୋଡ଼ିଲେ ନପାଇ ॥

---

※—ଏସବୁ ଦୁର୍ବୋଧ୍ୟ ଅକ୍ଷରନ୍ୟାସର ସାଧନ ବହୁ ଗ୍ରନ୍ଥରେ କୁହାଅଛି । ମାତ୍ର ଯେତେ କହିଲେ ମଧ୍ୟ ସାଧନାର ମାର୍ଗ ସେଥିରୁ ବୁଝିବା ଦୁରୂହ । ତଥାପି ଜଗନ୍ନାଥ ଦାସଙ୍କ "ଅମର ଜୁମର ବା ଜୁମର ସଂହିତା" ୨୧ ଅଧ୍ୟାୟ ଦେଖ ।

ଏଥିରୁ ମୋଟାମୋଟି ଜଣାଯାଉଛି—ଜୀବନ ଏ ଗାଈ । ଚେତନା ଏହାର ଗଉଡ଼ । ଦେହ ଏହାର ଗୁହାଳ । ହୃଦୟରୁ ନାସା ଯାଏ ବାୟୁର ଗତି ଦ୍ୱାଦଶାଙ୍ଗୁଳି ଇତ୍ୟାଦି । ପୁଣି ଷଡ଼ ଚକ୍ର ହେଉଛି ଗୁହ୍ୟଚକ୍ର, ଲିଂଗଚକ୍ର ନାଭିଚକ୍ର, ହୃଦୟଚକ୍ର କଣ୍ଠଚକ୍ର ଓ ତାଳୁ ବା ବ୍ରହ୍ମରନ୍ଧ୍ର ଚକ୍ର । ଏଇ ଚକ୍ରମାନଙ୍କୁ ପଦ୍ମ ମଧ୍ୟ କହନ୍ତି । ( ବଳରାମ ଦାସଙ୍କ ବ୍ରହ୍ମାଣ୍ଡ ଭୂଗୋଳ ୫୭ଶ ଅଧ୍ୟାୟ ଦେଖ ) । କିନ୍ତୁ ଏଣିକିରେ କିଛି ଜଣାହେଲା ନାହିଁ । ଏହା କବିତାର ରୂପକ ନୁହେଁ । ଏହା ସାଧନାର ସଙ୍କେତ । ସେ ସାଧନା ବୈଦିକ ନୁହେଁ ବରଂ ପ୍ରାଗ୍ ବୈଦିକ । ଏହା ବହୁକାଳରୁ ପୂର୍ବ ଭାରତରେ ଅଛି । ଓଡ଼ିଶାରେ ତାହା ବିଶୁଦ୍ଧ ଭାବରେ ଅଛି । ବୈଷ୍ଣବ ଧର୍ମର ଭକ୍ତିତତ୍ତ୍ୱରେ ଏଇ ସାଧନା ଅଛି ବୋଲି ଅଚ୍ୟୁତ ବଳରାମ ପ୍ରଭୃତି ବୁଝାଇ ବୈଷ୍ଣବ ଧର୍ମର ମହାପ୍ଳାବନ ମଧ୍ୟରେ ନିଜର ଚିରନ୍ତନ ସଂସ୍କୃତିର ସାଧନାକୁ ସମାଧାନରେ ଠିକ୍ ରଖିଛନ୍ତି । ଏଇ ସମାଧାନ ତତ୍ତ୍ୱ ଓ ବଳିଷ୍ଠ ଶବର ସଂସ୍କୃତିର ଶକ୍ତି ଏଠାରେ ଦେଖିବାର କଥା । ଗୀତାର ବେଦ ଧର୍ମ ବୁଝିବାରେ ଏହି ସାହାଯ୍ୟ କରିବ ।

## ଉଦାହରଣ ସଂକେତର ବିଚାର—

ଶରୀରରେ ନାନାପ୍ରକାର ଅକ୍ଷର ଓ ହ୍ଲୀଂ, ଶ୍ଲୀଂ, ଗ୍ଲୀଂ, ଧ୍ଲୀଂ, ପ୍ଲୀଂ ପ୍ରଭୃତି ବୀଜମନ୍ତ୍ର ନ୍ୟାସରେ ଏଇ ସାଧନା ପୁଣି କରାଯାଏ । ପ୍ରାଚୀନ ତନ୍ତ୍ରଶାସ୍ତ୍ରରେ ଏହାର ଯଥେଷ୍ଟ ବିବରଣ ଅଛି । ବ୍ରାହ୍ମଣମାନେ ଦେବ-ଦେବୀ ପୂଜାରେ ପ୍ରାଣ ପ୍ରତିଷ୍ଠାଦି କଲାବେଳେ ଏବେ ମଧ୍ୟ ଏଇ ବୀଜାକ୍ଷରମାନଙ୍କର ନୀରସ ଆବୃତ୍ତି କରନ୍ତି । ବୈଦିକ ସାହିତ୍ୟରେ ଏହାର ସ୍ଥାନ ନ ଥିଲେ ମଧ୍ୟ ଏହା ଏ ଭୂମିରେ ଲୋକ ସାଧନାରେ ବିସ୍ତୀର୍ଣ୍ଣ ସ୍ଥାନ ଅଧିକାର କରିଥିଲା, ସନ୍ଦେହ ନାହିଁ । ବଂଗରେ ଆଜକୁ ପ୍ରାୟ ୫୦୦ ବର୍ଷ ତଳର ଗୋରକ୍ଷ ବିଜୟରେ ଏଇ 'ଅଜପା' ପ୍ରଭୃତିର ସଙ୍କେତରେ କେତେଗୁଡ଼ିଏ ଠାର ବଚନ ମିଳେ । ତାହା ଏବେ କଲିକତା ବିଶ୍ୱବିଦ୍ୟାଳୟ ଛପାଇଛନ୍ତି ଓ ଉଚ୍ଚ ଶ୍ରେଣୀରେ ପାଠ୍ୟ ହୋଇଛି । ମାତ୍ର ତାର ଅର୍ଥ ସେଠାରେ ବୁଝାଯାଉ ନାହିଁ । କୁହାଯାଇଛି ଶବର ସଭ୍ୟତାର ଏଇ ଯେ ଅମୂଲ୍ୟ ବିନ୍ଦୁ ଚିରକାଳ ବେଦଧର୍ମକୁ ପ୍ରଭାବିତ କରି ମାନବ ସାଧନାର ସମାଧାନରେ ପ୍ରତିଷ୍ଠିତ ରହିଛି, ବଂଗଦେଶର ଅକର୍ଷିତ ଭୂମିରେ ସେଇ ବୀଜରୁ ବିଛୁଆତି ଉଠି ଚୀନ, ତିବ୍ବତ ପର୍ଯ୍ୟନ୍ତ ସମସ୍ତ ଭୂଭାଗକୁ ମାନବର ଉଚ୍ଛୃଙ୍ଖଳ ଯୌନ ବ୍ୟଭିଚାର ଓ ସାମାଜିକ ଅନାଚାର ଅପଚାର ଶିଖାଇ ଶେଷରେ ବୈଷ୍ଣବର ବ୍ରଜଲୀଳା ସୃଷ୍ଟି କରି ବସିଛି । ରାଧାକୃଷ୍ଣ ପ୍ରୀତି ଓ ପରକୀୟା ରତିକୁ ବୁଦ୍ଧିରେ ଯେତେ ଆଧ୍ୟାତ୍ମିକ ବ୍ୟାଖ୍ୟା ଦେଲେ ମଧ୍ୟ ମାନବ ସାଧନାରେ ତାର ଯେ ପରିଣତି ଅନିବାର୍ଯ୍ୟ, ତାହା କହିବା ଦରକାର ନାହିଁ । ମାତ୍ର ଓଡ଼ିଶାର ପୁରାଣପବିତ୍ର ଭୂମିରେ ତାହା ହୋଇ ନାହିଁ । ତନ୍ତ୍ର ଏଇ ଓଡ଼ିଶାରୁ

ପ୍ରଚଳିତ ହୋଇଥିବାର ଖୁବ୍ ସମ୍ଭବ । ମାତ୍ର ଏ ଯୁଗରେ ସ୍ପଷ୍ଟ ପ୍ରମାଣ ବିନା ତା କହିବା ଠିକ୍ ନୁହେ ବୋଲି ଏବେ କେବଳ ଅନୁମାନ କରାଯାଉଛି । ମାତ୍ର ଓଡ଼ିଶାରେ ଏହି ପୂର୍ଣ୍ଣ ପୁରାଣ ସାଧନାର ଯେ ପରଂପରା ଚାଲି ଆସିଛି ଓ ତାହା ଯେପରି ସାର୍ଦ୍ଧ ତିନିଶତ ବର୍ଷର ପ୍ରାଦେଶିକ ପରାଧୀନତା ଓ ପ୍ରତିବେଶୀଙ୍କ ତାଚ୍ଛଲ୍ୟ, ଦଳନ ଓ ଅପଚାର ସତ୍ତ୍ୱେ ବିଶୁଦ୍ଧ ଭାବରେ ଜୀବିତ ରହିଛି, ତାହା ଏ ଦେଶ ସଂସ୍କୃତିର ଅନନ୍ୟ ସାଧାରଣତ୍ୱ ହିଁ ପ୍ରକାଶ କରୁଛି । "ମହିମା ଧର୍ମ ପ୍ରତିପାଦକ" ଗ୍ରନ୍ଥର ଭୂମିକାରେ ଅଧ୍ୟାପକ ଶ୍ରୀ ଘନଶ୍ୟାମ ଦାସ ଲେଖିଛନ୍ତି—"ଅଚ୍ୟୁତାନନ୍ଦାଦି ପଞ୍ଚସଖାମାନେ ସାକାର ଓ ନିରାକାର ଉଭୟର ଉପାସକ ଥିଲେ । ସେମାନେ ମଧ୍ୟ ମହିମା ଓ ଶୂନ୍ୟବାଦୀ ଥିଲେ । ସେମାନଙ୍କ ଶୂନ୍ୟ, ବେଦାନ୍ତାନ୍ତର୍ଗତ ଶଂକରଙ୍କ ଶୂନ୍ୟଠାରୁ ସମ୍ପୂର୍ଣ୍ଣ ପୃଥକ୍ । ପରବର୍ତ୍ତୀ କାଳରେ ମହିମା ଗୋସାଇଁଙ୍କ ପୂର୍ବବର୍ତ୍ତୀ ଅରକ୍ଷିତ ଦାସ ମଧ୍ୟ ଶୂନ୍ୟ ଧର୍ମ ପ୍ରଚାର କରି ଯାଇଅଛନ୍ତି । × × × ପରେ ମହିମା ଗୋସାଇଁ ପୂର୍ଣ୍ଣଭାବରେ ବ୍ରାହ୍ମଣ୍ୟ ଧର୍ମର ପ୍ରତିଦ୍ୱନ୍ଦ୍ୱିତାରେ ଏ ମହିମା ଧର୍ମ ପ୍ରଚାର କରିଅଛନ୍ତି ।" ଅଧ୍ୟାପକ ମହାଶୟ ଠିକ୍ ଅନୁସନ୍ଧାନ କରିଛନ୍ତି, ମାତ୍ର ବୈଦିକ ଶଂକରାନୁୟାୟୀଙ୍କ ମୋହ ଛାଡ଼ି ନ ପାରି ବୋଧହୁଏ ସାହସ କରି ସ୍ପଷ୍ଟ କଥାଟା କହିବାରେ ଟିକିଏ ଭାଷାର ନିପୁଣତାର ଆଶ୍ରୟ ନେଇଛନ୍ତି । ଅଚ୍ୟୁତାନନ୍ଦାଦି ସାକାରରେ ଶୂନ୍ୟ ଦେଖୁଥିଲେ—ନାମ ତତ୍ତ୍ୱର ସାଧନାରେ 'ନିର୍ବାଣ' ଲୋଡ଼ୁଥିଲେ । ସେମାନେ ଶୂନ୍ୟ-ତତ୍ତ୍ୱବାଦୀ ଥିଲେ । ଶଂକର ନିଜର କର୍ମ ସନ୍ୟାସ ସାଧନାରେ ଶୂନ୍ୟକୁ ରୂପ ଦେବାକୁ ଯାଇ ଶୂନ୍ୟର ଯେଉଁ ପ୍ରତିବାଦ କରିଥିଲେ, ତାହା କୃତ୍ରିମ ଓ ପ୍ରଚଣ୍ଡ ଧୀମତ୍ତା ଓ ଯୁକ୍ତିର ବିଶାଳ ବୈଚକ୍ଷଣତା ଛଡ଼ା ସେଥିରେ ଆଉ କିଛି ନାହିଁ । ଶଂକର ବ୍ରହ୍ମ ନାମରେ ଅଦ୍ୱୈତ ତତ୍ତ୍ୱର ସ୍ଥିତିରେ ବୌଦ୍ଧ ସାଧନାର ପ୍ରଚାର ମାତ୍ର କରିଥିଲେ । ସାଧନାର ପୂର୍ଣ୍ଣ ସମାଧାନ ତାଙ୍କ ଭାଗ୍ୟରେ ଘଟି ନ ଥିଲା—ପରିସ୍ଥିତି ସେଥିପାଇଁ ଅନୁକୂଳ ନ ଥିଲା । ସେ ଯାହା ହେଉ, ଅରକ୍ଷିତ ମହିମା ଗୋସାଇଁ ଭୀମ୍ ଭୋଇ ସମସ୍ତେ ଓଡ଼ିଶାର ଯଥାର୍ଥ କୁଳଧର୍ମର ଉତ୍ତରାଧିକାରୀ ଓ ପ୍ରଚାରକ । ବ୍ରାହ୍ମଣ୍ୟ ଧର୍ମର ବିରୋଧ ଏ ଭୂମିରେ କେହି କେବେ ସାମ୍ପ୍ରଦାୟିକ ଭାବରେ କରି ନାହାନ୍ତି । ସମସ୍ତେ ଗୁହଶିବ ( ବିଶ୍ୱାବସୁ )ଙ୍କର ଯଥାର୍ଥ ଦାୟାଦ ରୂପେ ବେଦ ଧର୍ମ ଭିତରେ ନିଜର ବଳିଷ୍ଠ ସଂସ୍କୃତିର ସମାଧାନ ଲୋଡ଼ିଛନ୍ତି । ଜଗନ୍ନାଥ ଏ ଭୂମିର ଚିରନ୍ତନ ଧର୍ମର ପ୍ରତୀକ । ସେ ଏବେ ମଧ୍ୟ ଜୀବନ୍ତ । ଏ ଭୂମିର ଧର୍ମ ଧର୍ମର ବିରୋଧ ନୁହେ, ସମାଧାନରେ ଆତ୍ମପ୍ରତିଷ୍ଠା ଓ ଆତ୍ମଦାନରେ ଆତ୍ମପ୍ରକାଶ ।

## ଏ ଭୂମିରେ ଧର୍ମରେ ବିରୋଧ ନାହିଁ —

ଜଗନ୍ନାଥ ପଣ୍ଡିତ ବ୍ରାହ୍ମଣ ଥାଇ, ଶୂଦ୍ର ବଳରାମଙ୍କଠାରୁ ମନ୍ତ୍ର ଗ୍ରହଣ କରିଥିଲେ । ବଳରାମ ମଧ୍ୟ ଶ୍ରୀମଦ୍‌ଭଗବତ୍ ଗୀତାର ଯେ ଅନୁବାଦ କରି ଯାଇଛନ୍ତି,

ତାହା ବିଶ୍ୱତତ୍ତ୍ୱକୁ ଲୋକପ୍ରିୟ କରି ରଖିଛି । ଅଚ୍ୟୁତ ଗଢ଼ିତ ଥାଇ ସମସ୍ତ ତନ୍ତ୍ର ସାଧନାକୁ ବେଦ ନାମରେ ପ୍ରଚାର କରି ଜଗନ୍ନାଥ ଧର୍ମରେ ଆତ୍ମଦାନ କରି ଚୈତନ୍ୟଙ୍କର ସଖା ହୋଇଥିଲେ । ଏ ଯୁଗର ଦୃଷ୍ଟି ଧର୍ମରେ ସାମ୍ପ୍ରଦାୟିକ ବିରୋଧ ଦେଖିବାରେ ଅଭ୍ୟସ୍ତ । ମାତ୍ର ଜଗନ୍ନାଥ ଧର୍ମର ପ୍ରକୃତ ଓ ପ୍ରଭାବ ସ୍ୱତନ୍ତ୍ର । ଏହାହିଁ ଗୀତା ଧର୍ମର ମୌଳିକ ପ୍ରକାଶ; ଏ କଥା କୁହାଯାଇଛି । ଏଥିରେ ବିରୋଧ ନାହିଁ । ହୁଏତ ବିରୋଧାଭାସରେ ସମାଧାନ ପ୍ରୟତ୍ନ ପ୍ରକାଶ ପାଇଛି । ଏ ଦେଶର ଜଗନ୍ନାଥ, ବଳରାମ, ଅଚ୍ୟୁତଙ୍କ କଥା ଦୂରେ ଥାଉ, ଅରକ୍ଷିତ, ମହିମା ଗୋସାଇଁ, ତଥା ଭୀମଭୋଇ ମଧ୍ୟ କୌଣସି ବ୍ରାହ୍ମଣ ବିରୋଧ କରନ୍ତି ନାହିଁ । ଏ ଭୂମିର ସାମ୍ୟ ଧର୍ମରେ ସମାଜର ଅନାଗ୍ରହ ଫୁଟି ନାହିଁ । ପୋପ ଓ ସୁଲତାନମାନଙ୍କ ଇତିହାସ ପଢ଼ି ଆଜି ଆମେ ହୁଏତ ଏ ସମାଧାନରେ ବିରୋଧ ବିଭବଟି ଦେଖୁଥିବୁ ଓ ବିରୋଧର ବିପ୍ଳବରେ ଧର୍ମ ସଂସ୍କାର ତଥା ସମାଜର ଗତି ଲୋଡୁଥିବୁ; କିନ୍ତୁ ତାହା ଆମ ନିଜର ଦୃଷ୍ଟି ଦୋଷ ଓ ଭ୍ରଷ୍ଟାଗ୍ରହ । ଏହା ମନେରଖି ଇତିହାସ ଓ ସଂସ୍କୃତିର ଗତି ଦେଖିଲେ ହିଁ ଆମର ପନ୍ଥା ଫିଟିବ ।

## ମହିମା ଗୋସାଇଁ, ଭୀମଭୋଇ, ବିଶ୍ୱନାଥ ବାବା— ସମନ୍ୱୟ ଓ ସମାଧାନ—

ଏବେ ମହିମା ଗୋସାଇଁଙ୍କ ପଞ୍ଚଶିଷ୍ୟ ପଣ୍ଡିତବର ବିଶ୍ୱନାଥ ବାବା 'ମହିମା ଧର୍ମ ପ୍ରତିପାଦକ' ଗ୍ରନ୍ଥରେ ଯେ ଶୈଳୀ ଅବଲମ୍ବନ କରିଚନ୍ତି, ତାହା ହିଁ ଏ ଦେଶର ଧର୍ମ ଓ ଅଭ୍ୟାସ । ଅଜପା ମନ୍ତ୍ର ଓ 'ହଂସ' (ପ୍ରାଣ) ବୁଝାଇବା ପାଇଁ ସେ 'ହଂସୋପନିଷଦ' ତଥା 'ଶିବ ସ୍ୱରୋଦୟ'ର ଓ 'କେବଳ କୁମ୍ଭକ' ବୁଝାଇବା ପାଇଁ 'ଘେରଣ୍ଡ ସଂହିତା'ର ଆଶ୍ରୟ ନେଇଚନ୍ତି * । ଏ ସବୁ ଗ୍ରନ୍ଥ ବୈଦିକ ସାହିତ୍ୟ ହିସାବରେ ଯଥାର୍ଥରେ ପ୍ରାମାଣ୍ୟ ନ ହେଲେ ମଧ୍ୟ ବୈଦିକ ସାହିତ୍ୟର ବିଶିଷ୍ଟ ବିସ୍ତାରରେ ଏଇ ସବୁ ହିଁ ସମାଧାନର ବିଗ୍ରହ । ଶ୍ୱାସ ବାହାରିଲା ବେଳେ 'ହଂ' ଓ ଶ୍ୱାସ ପଶିଲା ବେଳେ 'ସଃ' ଉଚ୍ଚାରିତ ହୁଏ । 'ହଂ' ଶିବ ଓ 'ସଃ' ଶକ୍ତି ବୋଲି ତନ୍ତ୍ର କହନ୍ତି । ପ୍ରତିଦିନ ପ୍ରାଣ ୨୧୬୦୦ ଥର ଏଇ ହଂସ ମନ୍ତ୍ର ଜପ କରେ । ଏଇ 'ହଂସ' ମନ୍ତ୍ର ଜପାରମ୍ଭରେ ଉତ୍ପତ୍ତି ଓ ଏଇ ଜପନିବୃତ୍ତିରେ ମରଣ ହୁଏ । ଏଇ ହଂସକୁ ଜାଣି ଜପ ନ କଲେ ମଧ୍ୟ ଏହାର ଜପ ହେଉଥାଏ । ଏଣୁ ଏହାର ନାମ ଅଜପା ମନ୍ତ୍ର । ଏଇ ମନ୍ତ୍ରର ଯୋଗକୁ କେବଳ କୁମ୍ଭକ କହନ୍ତି । ଏଇ ହଂସ ହିଁ 'ଅହଂସଃ' ବା 'ସୋଽହଂ' । ତେବେ ସୋଽହଂ ତତ୍ତ୍ୱଟି ଯେ ଶୂନ୍ୟସାଧନା ତତ୍ତ୍ୱମୂଳକ

---

* ବିଶ୍ୱନାଥ ବାବାଙ୍କ 'ମହିମା ଧର୍ମ ପ୍ରତିପାଦକ' (ପ୍ରାଚୀ ସମିତି, କଟକ,) ୧୯୩୧)ର ୧୧୨ ଓ ପର୍ ପୃଷ୍ଠାମାନ ଦେଖ ।

ଏଇ ହଂସରୁ ବାହାର ନାହିଁ ତା ବା କଏ କହିବ ? ମାତ୍ର ସବୁବେଳେ ବେଦରୁ ବା ବୈଦିକ ସାହିତ୍ୟରୁ ସବୁ ତତ୍ତ୍ୱ ବାହାରିଚ ବୋଲି ଠିକ୍ କରିବା ହିଁ ଏ ଦେଶର ସମାଧାନ ଧର୍ମର ରୀତି । ସେଥିପାଇଁ ବିଶ୍ୱନାଥ ବାବା ଏଇ ଅଜପାମନ୍ତ୍ର ବିଷୟରେ ଭୀମା ଭୋଇଙ୍କର 'ଭଜନମାଳା' ଓ 'ବ୍ରହ୍ମନିରୂପଣ ଗୀତା'ରୁ ଉଦ୍ଧାର କରି ସଂଗେ ସଂଗେ ଶଂକରାଚାର୍ଯ୍ୟଙ୍କ ପ୍ରାତଃସ୍ମରଣ ସ୍ତୋତ୍ରରୁ ଉଦାହରଣ ଦେଇ ସମାଧାନ ଲୋଡ଼ିଅଛନ୍ତି । ତଥାପି ଅନୁସନ୍ଧାନର ଦୃଷ୍ଟିରେ ସେ ଦୁଇଟିରେ ହୁଏତ ଦୂରସମ୍ପର୍କ ମଧ୍ୟ ନାହିଁ ।

## ବ୍ରହ୍ମ ନିରୂପଣ ଗୀତାରେ—

ହ ଅକ୍ଷର ମନ୍ଦରଟି ଅଗ୍ନିମୟ ତେଜ । ଅରୁଣ ପରାଏ ତହୁଁ ପେଲୁଅଛୁ ଝାଂକ ॥
ସ ଅକ୍ଷର ମଣ୍ଡଳ ଅତ୍ୟନ୍ତ ଶୀତଳ । ହସ୍ତ ଦୃଷ୍ଟି ନ ଗମଇ ପାଣିରୁ ପାତଳ ॥

## ପୁଣି ବଳରାମ ଦାସ ଛତିଶ ଗୁପ୍ତଗୀତାରେ—

ଆସଇ କଏ ତା ନାମ ପୁଚ୍ଛିବୁ । ଯାଉଛୁ କଏ ତା ଭେଳ କହିବୁ ॥
ଆସଇ ପରମ ଯାଉଚ ଜୀବ । ଗଲା ଅଇଲା ଦୁଇ କର ଠାବ ॥

## ଭୀମାଭୋଇଙ୍କ ଭଜନମାଳାରେ—

ଭଜ ଅଜପା ଜପକୁ
ଈଶ୍ୱରେ ଯା ଧ୍ୟାୟିଛନ୍ତି ।
ଯେଉଁ ନାମ ଅଜପାକୁ
ପବନ ପରାଏ ସର୍ବାଂଗ ଶରୀରେ
ଫେଲୁଛି ଶବଦ ନାଦ ।
କରୁଛି ଭ୍ରମଣ କ୍ଷର ଏକ ପାଦ
ଚଳୁଛି ନାସା ପୁଡ଼ାରେ ହୋଇ ଭିତର ବାହାରେ
ସୃଷ୍ଟି ଉତ୍ପତ୍ତି ପ୍ରଳୟ ହବା ଜଣି ନାହିଁ ଯାକୁ ।

ଏସବୁ ଅଜପାମନ୍ତ୍ରର ହଂସ ସଂଗେ ଶଂକରାଚାର୍ଯ୍ୟଙ୍କ ପ୍ରାତଃ ସ୍ମରଣର—

"ପ୍ରାତଃ ସ୍ମରାମି ହୃଦି ସଂସ୍ଫୁରଦାତ୍ମତତ୍ତ୍ୱଂ
ସଚ୍ଚିତ୍ ସୁଖଂ ପରମହଂସ ଗତିଂ ତୁରୀୟମ୍" ।

ଅର୍ଥାତ୍, ହୃଦୟରେ ପ୍ରକାଶିତ ଆତ୍ମତତ୍ତ୍ୱ, ସଚ୍ଚିଦାନନ୍ଦ, ତୁରୀୟ ( ସୁଷୁପ୍ତିରୁ ପର), ପରମହଂସ ଗତି (ପରମହଂସ ବା ନିତ୍ୟସ୍ଥାନକୁ ଯାନ୍ତି ଯେଉଁମାନେ ତାଙ୍କ ଗନ୍ତବ୍ୟପଦ)ଙ୍କୁ ସକାଳୁ ସ୍ମରଣ କରୁଚ । ଏଠାରେ 'ହଂସ' ଶବ୍ଦଟି ହୁଏତ ପ୍ରାଚୀନ

ଭାରତ ଧର୍ମର ଏଇ ଅଜପା ମନ୍ତ୍ରରୁ ଚ୍ୟୁତ ହୋଇଥିବ, ମାତ୍ର ଏବେ ତା ସଙ୍ଗେ ଏହାର ସମ୍ପର୍କ ଆଦୌ ନାହିଁ ।

## ଉପନିଷଦ୍‌ରେ ଅଛି—

'ହଂସଃ ଶୁଚିଷଦ୍', ଅର୍ଥାତ୍, ଆକାଶରେ ଥିବା ସୂର୍ଯ୍ୟ ( ଯେ ଆକାଶରେ—ହନ୍ତି ଗଚ୍ଛତି—ଯାଏ ବା ଉଦୟ ଅସ୍ତରେ ଚଳେ), ଏଠାରେ ଅବଶ୍ୟ ଅଜପାରେ ବାୟୁ ଚଳିବା ନୁହେ । ମାତ୍ର ମୂଳରେ ଯେ ଏଇଥିରୁ ଯାଇନାହିଁ ତା' କୁହାଯାଇ ନ ପାରେ । ତଥାପି ଏସବୁ ଅନୁସନ୍ଧାନର ଅହଂକାର ଲେଶ ନ ରଖି, ଏ ଭୂମିରେ ଚିରକାଳ ସମାଧାନର ଉପାଦାନ ଆହରଣ କରି ଯୁଗେ ଯୁଗେ ମନୀଷୀ ମହାପୁରୁଷମାନେ ସମାଧାନରେ ସଂସ୍କାର କରିଅଛନ୍ତି । ସେଥିରେ ଆପାତତଃ ପ୍ରତିଷ୍ଠିତ ପରଂପରାର ଘୋର ବିରୋଧରେ କାର୍ଯ୍ୟ ଆରଂଭ କରାଯାଇଛି । ମାତ୍ର ସମନ୍ୱୟ ଓ ସମାଧାନରେ ସେ ବିରୋଧର ନିତ୍ୟ ପରିଣତି ହିଁ ଏ ଭୂମିର ପ୍ରକୃତି । ଏହାହିଁ ଭାରତର ବେଦଧର୍ମ । କାରଣ ଭାରତଧର୍ମ ଯାହା ତାହାହିଁ ବେଦଧର୍ମ । କୃଷ୍ଣ ଇନ୍ଦ୍ର-ପୂଜାର ବିରୋଧରେ କର୍ମାରଂଭ କରି ମହାଭାରତର ମହାବିରୋଧ ମଧ୍ୟରେ 'ଯୋଗ'ର ମହା ସମନ୍ୱୟ ଓ ସନାତନ ସମାଧାନ ପ୍ରଚାର କରିଥିଲେ । ଇନ୍ଦ୍ରଦ୍ୟୁମ୍ନଙ୍କ ସୈନ୍ୟସାମନ୍ତ ଆଗେ ବିଶ୍ୱାବସୁ ବିଦ୍ୟାପତିଙ୍କୁ କନ୍ୟାଦାନ କରି ଜଗନ୍ନାଥ ପ୍ରତିଷ୍ଠା କରିଥିଲେ । ଜଗନ୍ନାଥ ଶୂଦ୍ରଠାରୁ ମନ୍ତ୍ର ଗ୍ରହଣ କରି ବିରୋଧରେ ଯଥାର୍ଥ ବୈଦିକ ଅଦ୍ୱୈତ ବୈଷ୍ଣବ ଧର୍ମକୁ ଚୈତନ୍ୟଙ୍କ ଧର୍ମର ସମାନ ବୋଲି ମଧ୍ୟ ପ୍ରଚାର କରି ଚୈତନ୍ୟଙ୍କର 'ଅତି ବଡ' 'ଅତି ବଡ଼' ହୋଇଥିଲେ । ଆଜି ମଧ୍ୟ ସେଥିପାଇଁ ବୃନ୍ଦାବନର ପ୍ଲାବନ ମଧ୍ୟ ସେଇ ଅତିବଡ଼ମାନେ ଓଡ଼ିଶାର ଯଥାର୍ଥ ଅଦ୍ୱୈତ ବୈଷ୍ଣବ ଧର୍ମର ସତ୍ତା ରଖିବାରେ ସମର୍ଥ ହୋଇଚନ୍ତି । ପୁଣି ମହିମାଗୋସାଇଁ ବ୍ରାହ୍ମଣ୍ୟ ଧର୍ମର ବିରୋଧ କରିଥିଲେ ମଧ୍ୟ ବିଶ୍ୱନାଥ ବାବା ସେ ବିରୋଧରେ ସମାଧାନର ଦୀପ ଦେଖାଇ ଧରିଚନ୍ତି । ଏହାହିଁ ଭାରତର ପରଂପରା । ଏହାହିଁ ଓଡ଼ିଶାର ଧର୍ମ । ଏହାହିଁ ଗୀତା ଧର୍ମ ।



## ୧୪ । ଉପସଂହାର

( ୧ ) ଭୂମିକା—ତନ୍ତ୍ରଯୋଗରେ ଅତିମାନୁଷ, ଅମାନୁଷ ଓ ଅଭୁତ କ୍ରିୟାର ସମାବେଶ ଓ ଗୀତାଧର୍ମରେ ତାହାର ନିନ୍ଦା—

### ପ୍ରାଚୀନ ଭାରତର ସାଧନା—

ପ୍ରାଚୀନ ଭାରତର ସାଧନା **ନିର୍ମଳ** ନୈତିକ ସାଧନା । ଏହା ବହୁ ପ୍ରାଚୀନ କାଳରୁ ବେଦଧର୍ମ ବିକାଶର ଯଥାର୍ଥ ପୀଠ । ପୁଣି ପରବର୍ତ୍ତୀକାଳରେ ଏହା ମଧ୍ୟ ବିଶୁଦ୍ଧ ଭାବରେ ବୌଦ୍ଧ ସାଧନାରେ ପ୍ରକାଶ ପାଇଥିଲା । ପରେ ବୌଦ୍ଧର ତନ୍ତ୍ର ଓ ମୁକ୍ତିସାଧନା ପୁଣି ପୂର୍ବପର ସର୍ବଗ୍ରାସୀ ଅନନ୍ତ ଗର୍ଭ ଭାରତର ବେଦ ଧର୍ମରେ ମିଶିଗଲା । ସେକାଳରେ ଏଇ ପ୍ରାଚୀନ ସାଧନାକୁ ବେଦର କରିବାପାଇଁ ପରେ କପିଳଙ୍କ ପ୍ରବର୍ତ୍ତିତ ସାଂଖ୍ୟ ବା ଜ୍ଞାନତତ୍ତ୍ୱରେ ପ୍ରକୃତି ପୁରୁଷ ପ୍ରକାଶ ପାଇଥିଲା । ଏକାଳରେ ମଧ୍ୟ ଶଙ୍କର ସେଇ ପରଂପରାର ଏକପ୍ରକାର ପୁନରୁଦ୍ଧାର କରି ଜ୍ଞାନ ମାର୍ଗରେ କର୍ମତ୍ୟାଗ ସନ୍ୟାସର ବନ୍ୟା ଛୁଟାଇଦେଇ ବୌଦ୍ଧ ସାଧନାକୁ ଗର୍ଭସ୍ଥ କଲେ । ତେଣେ ବୌଦ୍ଧ ପଣ୍ଡିତ ନାଗାର୍ଜୁନ ବହୁପୂର୍ବରୁ ବୌଦ୍ଧ ଧର୍ମରେ ବୈଷ୍ଣବର ଭକ୍ତିମାର୍ଗ ଫୁଟାଇଥିଲେ ଓ କାଳକ୍ରମେ ସେଥିରୁ ନବବୈଷ୍ଣବ ସାଧନାର ନାନାଭାବରେ ବିକାଶ ହେଲା । ରାମାନୁଜ ମାଧ୍ୱ ଚୈତନ୍ୟ ବ୍ରଜ ବୈଦିକ ସମସ୍ତ ମତ ଓ ଲୀଳା ଏଇ ମହାଯାନ ବୌଦ୍ଧ ଧର୍ମର ବିକାଶ ।

### ତନ୍ତ୍ରଯୋଗ—

ମାତ୍ର ଏ ସମସ୍ତର ଅନ୍ତରାଳରେ ଏକ ଯୋଗ ସାଧନା ବହୁକାଳରୁ ଭାରତ ଧର୍ମରେ ଫୁଟିଥିଲା । ତନ୍ତ୍ର ତାହାର ଦାୟାଦ । ଯୋଗ ସାଧନାରେ ବ୍ୟକ୍ତି ନିର୍ବାଣ ବା ମୁକ୍ତି ଲୋଡ଼ୁଥିଲେ । ବେଦରେ ତାହା ପାତଞ୍ଜଳ ଦର୍ଶନ ଓ ଯୋଗର ପନ୍ଥା ମଧ୍ୟ ଫିଟାଇଥିଲା । ଏଇ ବ୍ୟକ୍ତି ଧର୍ମରେ ବ୍ୟକ୍ତିର ଅହଂକାର ପଶି ବହୁ ପ୍ରାଚୀନ କାଳରୁ ଅଭୁତ କ୍ରିୟା ଗୁଣି, ଜାରଣମାରଣ ପ୍ରଭୃତି ପ୍ରକାଶ ପାଇବା ସ୍ୱାଭାବିକ । ନିର୍ବାଣ କାମ୍ୟ ହେଲେହେଁ ତାହା ସମସ୍ତଙ୍କର ଏକାନ୍ତ କାମ୍ୟ ହୋଇ ନ ପାରେ । ସ୍ପୃହାର ଜଂଜାଳ ଗୁଡ଼ିବ ବୋଲି କହିଲେ ଗୁଡ଼ି ହୁଏ ନାହିଁ । ମନୁଷ୍ୟ ଅତି-ମାନୁଷତାର ସ୍ପୃହା ଚରିତାର୍ଥ କରିବାରେ ଲାଗିଯାଏ । ଅସୁର ବା ଅନାର୍ଯ୍ୟ ବେଦ ଅର୍ଥାତ୍, ଅଥର୍ବ-ବେଦରେ ତାହାର ପ୍ରମାଣ ସୁସ୍ପଷ୍ଟ । ପୁଣି ସେକାଳେ ଏହା ସୁମେରୁ, ବାବିଲନ, ସିରିଆ, ଇଜିପ୍ଟ, ଗ୍ରୀସ ଓ ଦୂର ଇଂଲଣ୍ଡରେ ମଧ୍ୟ ବ୍ୟାପ୍ତ

ହୋଇଥିଲା । ଅନେକ ଦୁଇ ହଜାର ବର୍ଷର ଇଂଲଣ୍ଡର ଡୁଇଡ୍ ସନ୍ୟାସୀମାନେ ଏହର ତାନ୍ତ୍ରିକ ଯୋଗୀଙ୍କ ପରି ଅଦ୍ଭୁତ କର୍ମରେ ବ୍ୟାପୃତ ଥିବାର ପ୍ରମାଣ ମିଳେ । ସେମାନେ ମଧ୍ୟ ବୈଦିକ ଋଷିଙ୍କ ପରି ଅଭିଶାପରେ ଲୋକଙ୍କୁ ଭସ୍ମ କରି ଦେଉଥିଲେ ବୋଲି ପରମ୍ପରା କହେ । ଏଇ ରୀତି ମଧ୍ୟ ଆମ ପୁରାଣାଦିରେ ବହୁତ ଦେଖିବାକୁ ମିଳେ । ଲୋକକଥାର ଉଦାହରଣ ପୂର୍ବପ୍ରସଂଗରେ ଦିଆଯାଇଛି ।

## ଯୋଗରେ ଅଦ୍‌ଭୁତ କ୍ରିୟା—ହଠଯୋଗ—

ଏପରି ଅଦ୍ଭୁତ କ୍ରିୟା ସାଧନ କରିବା କେତେ ଦୂର ସମ୍ଭବ, କିପରି ବା ସମ୍ଭବ, ତାହା ଆଲୋଚନା କରିବାର କ୍ଷମତା ଅଙ୍ଗୀକାର କରିବା ଏଠାରେ ଅସମ୍ଭବ । ମାତ୍ର ପାତଞ୍ଜଳ ଯୋଗରେ ମଧ୍ୟ ଏହା ନାହିଁ । ଏହାକୁ ହଠଯୋଗ କହନ୍ତି । ଏହା ଏକ ପ୍ରକାର କୋଲାର କୁହୁକ ସାଧନା । କୋଲାମାନେ ମଧ୍ୟ ସେଇ ଅଥର୍ବ ବେଦ ଯୁଗର ସେଇ କୁହୁକୀମାନଙ୍କର ବଂଶଧର ବୋଲି ଅନୁମାନ ହୁଏ । କାରଣ କୋଲାର କୁହୁକ, ଜଡ଼ିବୁଟି ପ୍ରଭୃତି 'ଶାବରୀ' ବିଦ୍ୟାର ଅନ୍ତର୍ଗତ । ଇଉରୋପ ଆମେରିକାରେ ମଧ୍ୟ ଏଇ ବିଦ୍ୟାର ଏକ ଅଂଶ ଏବେ ଚର୍ଚ୍ଚା କରାହୁଏ । ଏହାକୁ ହିପ୍‌ନଟିଜ୍‌ମ୍ (Hypnotism) କହନ୍ତି । ସେଦିନ ଖବର କାଗଜରେ ଶୁଣା ଯାଉଥିଲା, କେହି ଏଇ ହଠ ଯୋଗ ସାଧନା ବଳରେ କାଚ ଓ ଉତ୍କଟ ଦ୍ରାବକ ବିଷ ପ୍ରଭୃତି ଖାଇ ପାରୁଥିଲେ ।

## ଅତିମାନୁଷକ୍ରିୟା ଓ ତାର ପ୍ରଭାବ—

ଏ ସବୁରେ କେତେ ଦୂର ସତ୍ୟ ଅଛି ବା ନ ଅଛି, ସେ କଥାର ବିଗ୍ଭର କରା-ଯାଉ ନାହିଁ, ମାତ୍ର ଅଦ୍ଭୁତ କ୍ରିୟା ଦେଖାଇ ଲୋକଙ୍କୁ ଭୁଲାଇ ଶିଷ୍ୟ କରି ଯୋଗୀ ସଜିବାର ଏବେ ଏ ଦେଶରେ ବହୁତ ଦେଖାଯାଏ । ବଡ଼ ବଡ଼ ପାଠୁଆ ଲୋକେ ମଧ୍ୟ ଏଥିରେ ଭୁଲନ୍ତି । ମନୁଷ୍ୟ ସାଧାରଣତଃ ଯାହା କରି ନ ପାରେ, ସେପରି କିଛି ଦେଖିଲେ, ସେ ବିସ୍ମିତ ଓ ସ୍ତମ୍ଭିତ ହୋଇ ଭକ୍ତ ହୁଏ । ସେ ସେଇଠାରେ ଈଶ୍ୱର ବା ଦେବତା ଦେଖେ । ଏବେ ଅନେକ ମୌନୀ, ନଗ୍ନ, ଫଳାହାରୀ, ନିରମ୍ବୁାହାରୀ, ପବନାହାରୀ, ସାଧୁ ସାଜି ଏପରି ଲୋକଙ୍କୁ ଭୁଲାନ୍ତି । ଶିଷ୍ୟମାନେ ତାଙ୍କ ଅତିମାନୁଷ ମହିମା ଗାନ କରନ୍ତି । କିଏ ହଜାରେ ବର୍ଷ ବଞ୍ଚିଲାଣି, ଅଥଚ ବାଳଟିଏ ବି ପାଚି ନାହିଁ, କିଏ ପୁରୀରେ ବସିଥାଇ ମଧ୍ୟ ସମ୍ବଲପୁର କଥା ଜାଣୁଛି, କିଏ ରାତିରେ ଉଠି ସମୁଦ୍ର ଆର ପାଖକୁ ଯାଇ ସ୍ନାନ କରି ଆସୁଛି—ଇତ୍ୟାଦି ବହୁତ ଶୁଣାଯାଏ । ଏପରି କି ସ୍ୱର୍ଗତ ବିଜୟ କୃଷ୍ଣ ଗୋସ୍ୱାମୀଙ୍କର ଯେଉଁ ସମାଧି ଅଛି ସେଠାରେ ତାଙ୍କର ଜଣେ ସୁଶିକ୍ଷିତ, ବିଶ୍ୱବିଦ୍ୟାଳୟର ଉପାଧିଧାରୀ ଶିଷ୍ୟ କହୁଥିଲେ, ଗୋସ୍ୱାମୀଙ୍କ ଜୀବନ କାଳରେ ସେ ସେଇଠାରେ ମଧ୍ୟ ଘର ଭିତରେ ବସି ଜଗନ୍ନାଥଙ୍କ ଆଳତି ଦେଖୁଥିଲେ

ଓ ମହାପ୍ରସାଦ ଆସି ମନକୁ ତାଙ୍କ ଆଗରେ ପହଁଚି ଯାଉଥିଲା । ଯେତେବେଳେ ଯେଉଁ ଶିଷ୍ୟ ତାଙ୍କ ପାଖେ ଥିଲେ, ସେ ମଧ୍ୟ ତାଙ୍କ କୃପାରୁ ସେଇପରି ଆନନ୍ଦ ଦେଖୁଥିଲେ ଓ ସେଇ ମହାପ୍ରସାଦ ଖାଉଥିଲେ । ରାମକୃଷ୍ଣ ପରମହଂସ ହନୁମାନ ଉପାସନା କଲାବେଳେ ତାଙ୍କ ପଛଆଡ଼େ ଗୋଟାଏ ଦୀର୍ଘ ଲାଙ୍ଗୁଡ଼ ବାହାରି ପଡ଼ୁଥିବା କଥା ଓ ଜଗନ୍ନାଥ ଦାସଙ୍କର ସ୍ତ୍ରୀ ଲକ୍ଷ୍ମୀ ଚନ୍ଦ୍ର ପ୍ରତାପରୁ ଦ୍ର ଦେଖିଥିବା କଥା, ଯୁଗି ଚୈତନ୍ୟ ପୁଷ୍ପ ସମୁଦ୍ର କୂଳରେ ଥାଇ ଗଂଗାରେ ଝାସଦେଇ ମଲାବେଳେ ଶ୍ରେଷ୍ଠ ହରିଦାସଙ୍କ ଆତ୍ମାର କ୍ଷମା ପ୍ରାର୍ଥନା ଶୁଣିଥିବା କଥା ଅନେକେ ଶୁଣିଥିବେ ଓ ପଢ଼ିଥିବେ । ଏ ସବୁରୁ କେତେ ଗୁରୁଙ୍କ କରଣି କେତେ ବା ଶିଷ୍ୟଙ୍କ କୀର୍ତ୍ତି ସେ କଥା ବୁଝାଯାଇ ନ ପାରେ । କିନ୍ତୁ ଅଦ୍ଭୁତ କ୍ରିୟାରେ ଲୋକ ବଡ଼ ଶୀଘ୍ର ଶିଷ୍ୟ ହୁଏ ଓ ଲୋକେ ନିଜ ପ୍ରଭାବ ବିସ୍ତାର ଲୋଡ଼ନ୍ତି, ସନ୍ଦେହ ନାହିଁ । ଅନେକେ ମଧ୍ୟ ଅଦ୍ଭୁତ କ୍ରିୟାର ଆରୋପ ନ କଲେ କାହାରିଠାରେ ମହାପୁରୁଷତ୍ୱ କଳ୍ପନା କରିପାରନ୍ତି ନାହିଁ ।

## ତପସ୍ୟା ଓ ଯୋଗ—

ଏହାର ମୂଳ କିନ୍ତୁ ଦେଶରେ ସତ୍ୟରେ ଅଛି—ସମ୍ପୂର୍ଣ୍ଣ ଭଣ୍ଡାମିରେ ନୁହେଁ । ପୂର୍ବେ କର୍ମ ଛାଡ଼ି ଲୋକେ ସନ୍ନ୍ୟାସରେ ଶୂନ୍ୟ ସାଧନାର ଯୋଗରେ ନିର୍ବାଣ କାମନା କରୁଥିଲେ । ସେଥିପାଇଁ କଠୋର ବ୍ରତ ଉପବାସ ଓ ପଞ୍ଚାଗ୍ନି ସ୍ଥାପନ, ଊର୍ଦ୍ଧ୍ୱବାହୁତ୍ୱ ପ୍ରଭୃତି କୃଚ୍ଛ୍ର ସାଧନାମାନ ବିକାଶ ପାଇଥିଲା । ମନକୁ ଭୋଗବିଳାସରୁ କାଢ଼ି ନେଇ ଏକମୁଖ କରିବାରେ ଏଇ ସବୁର ଉପଯୋଗ ଲୋକ କରୁଥିଲେ । କର୍ମ ଛାଡ଼ିଲେ କାମ ଯାଏ ନାହିଁ, ସେଥିପାଇଁ କୃଚ୍ଛ୍ର ସାଧନରେ ମନକୁ ଟାଣି ଭକ୍ତିକରି ଅନ୍ୟ ଆଡ଼ୁ ଛଡ଼ାଇ ଦେବାରେ ଏ ପନ୍ଥା ଧରାଯାଇଥିଲା । ଫଳରେ ମଧ୍ୟ ଏଇ ସାଧକମାନେ ସୁଖଦୁଃଖାଦି ଦ୍ୱନ୍ଦ୍ୱ ଛାଡ଼ି ଅଗ୍ନିରେ ଆରୋହଣ କରି ମଧ୍ୟ ନିର୍ବିକଳ୍ପ ଭାବରେ ଦେହ ଛାଡ଼ି ପାରୁଥିଲେ । ଏଇଠାରେ ଏ ସବୁ ଅଦ୍ଭୁତ କ୍ରିୟା ଓ ସେଥିରେ ଅଲୌକିକତା କଳ୍ପନାର ମୂଳ । ଏହା ସେକାଳ ସଭ୍ୟଦେଶରେ ମଧ୍ୟ ବ୍ୟାପ୍ତ ଥିଲା । ଗ୍ରୀସରେ ଏଇପରି ଦଳେ କୃଚ୍ଛ୍ରସାଧକ ଦାର୍ଶନିକ ବହୁ ପ୍ରତିପତ୍ତି ମଧ୍ୟ ଲାଭ କରିଥିଲେ । ଗ୍ରୀସ୍‌ରେ ଏହାଙ୍କ ନାମ ଥିଲା ଷ୍ଟୋଇକ୍‌ସ୍ ( Stoics ) । ଡାଇଓଜିନିସ୍ ବୋଲି ଜଣେ ଷ୍ଟୋଇକ୍ ଚିରଜୀବନ ଲଙ୍ଗଳା ହୋଇ ବଣରେ ଗୋଟିଏ କୁଣ୍ଡ ଭିତରେ ବସିଥିଲେ । ମନୁଷ୍ୟ ସମାଗମରେ ସାଧନା ନଷ୍ଟ ହେବା ଭୟରେ ସେ ଏହା କରିଥିଲେ । ଏମାନେ ନିଜ ପନ୍ଥାର ଆତ୍ମସାଧନାରେ ଏତେ ବିଶ୍ୱାସ କରୁଥିଲେ ଯେ ଜଗତକୁ ଖାତିରରେ ଆଣୁ ନ ଥିଲେ । ଖ୍ରୀଷ୍ଟ ମଧ୍ୟ ୪୦ ଦିନ ଉପବାସ କରିଥିଲେ—ଏଇପରି ଖୋଜିଲେ ବହୁତ ମିଳିବ ।

## ଭଣ୍ଡାମି ଓ ମିଥ୍ୟାଚାର—

ମାତ୍ର ଯାହା ମୂଳରେ ସତ୍ୟ ଥାଏ, ତାହା କ୍ରମେ ଭଣ୍ଡାମିରେ ପରିଣତ ହେବା ବିଚିତ୍ର ନୁହେଁ । ଏପରି ଅଙ୍କୁରରେ ତାହା ହିଁ ହେବା ସମ୍ଭବ । ସାଧନାରେ ମୁକ୍ତି ବା

ଶୂନ୍ୟତା ଲାଭ ବହୁଦୂର । ଏଇ ଲୋକରେ ହାତେ ହାତେ ସାଧନାର ନାମରେ କିଛି ମାନବର ସହଜକାମ୍ୟ । ସେଥିରେ ହିଁ ଭଣ୍ଡାମିର ଓ ମିଥ୍ୟାମିର ବ୍ୟାପି ଯିବାର କଥା । ଏଇ ମିଥ୍ୟାମିର ଭିତରେ ମଧ୍ୟ ସତ୍ୟ ଖୋଜିବା ସହଜ ନୁହେ । ଏହା ଗଡ଼ିଆରେ ମୁହଁ ହଜାଇ ପାଣି ବୁଡ଼ାଇ ପଙ୍କ ଚକଟିବାଠାରୁ ଆହୁରି କଷ୍ଟକର ।

## କାମସାଧନାରେ ଶକ୍ତି ପରୀକ୍ଷା—

ପୁଣି ଏଇ ସାଧନା ସଙ୍ଗେ କାମର ସଂଯମ ହିଁ ଏକାନ୍ତ ଗୋଡ଼ଦନା ଥିଲା । ସେଥିରେ ମଧ୍ୟ ଆପାତ ଯୁକ୍ତିର ଛଟା ଧରି ଅପସୃଷ୍ଟି ବହୁକାଳରୁ ପଶିଥିଲା । ଦିନେ ସାଧକ କହିଲେ, କାମନାରୁ ଦୂରରେ ରହି ତପସ୍ୟା କଲେ ଶକ୍ତି ଓ ସିଦ୍ଧିର ପରୀକ୍ଷା ହୁଏ ନାହିଁ । ସଙ୍ଗେ ସଙ୍ଗେ ମହାଦେବ ଅର୍ଦ୍ଧନାରୀଶ୍ୱର ହେଲେ । କାଳୀ ଓ କାଳର ଦର୍ଶନତତ୍ତ୍ୱ ବାହାରି ପ୍ରସିଦ୍ଧି ପାଇଲା । ପଞ୍ଚମକାର ସାଧନା ଏହାରି ପରିଣାମ । ପଞ୍ଚମକାର ହେଉଛି—

> "ମଦ୍ୟ ମାଂସଂ ଚ ମୀନଂ ଚ ମୁଦ୍ରାମୈଥୁନ ମେବ ଚ
> ଏତେ, ପଞ୍ଚ ମକାରସ୍ୟୁଃ ମୋକ୍ଷଦାହିଁ ଯୁଗେ ଯୁଗେ ।" (କାଳୀତନ୍ତ୍ର)

ମଦ୍ୟ, ମାଂସ, ମାଛ, ମୁଦ୍ରା ( ସ୍ୱାଦୁଖାଦ୍ୟ ), ମୈଥୁନ ( ଯଥେଚ୍ଛା ନାରୀ ସଙ୍ଗ ) ଏଇ ସବୁର ସାଧନା କାଳେ କାଳେ ମୋକ୍ଷ ଦିଏ । ତନ୍ତ୍ର ବଚନ ଅଛି 'ସ୍ୱଦାର ପରଦାରେଷୁ ସ୍ୱଚ୍ଛନ୍ଦଂ ବିହରେତ୍ ସଦା—" ସ୍ୱଦାର ଓ ପରଦାରରେ ଇଚ୍ଛାମତେ ବିହାର କରିବା ଉଚିତ । ଏସବୁ ବୀଭତ୍ସତାର ବର୍ଣ୍ଣନା ଏଠାରେ ଦରକାର ନାହିଁ । ଏହା ଅତି ଜଘନ୍ୟ ।

## ସାଧନା ଅପସୃଷ୍ଟିର ଅନ୍ୟାନ୍ୟ ଉପସର୍ଗ—

ପୁଣି ପୂର୍ବେ ଶୂନ୍ୟସାଧନାର ଯୋଗରେ ଯେଉଁସବୁ ଶରୀର ସାଧନାର ମାର୍ଗ ଆବିଷ୍କୃତ ହୋଇଥିଲା, ଓଡ଼ିଶାର ଧର୍ମ କହିଲାବେଳେ ସେ ସବୁ କେତେକ କୁହାଯାଇଛି । ପୁଷ୍ପଗିରି ବିହାରରେ ସେ ସବୁର ଚର୍ଚ୍ଚା ହେଉଥିବା କଥା ସୂଚିତ ହୋଇଛି । ସେ ସବୁର ଉପଯୋଗ ଏଥିରେ କରାଗଲା । ସେଇ ରୂପ ଭିତରେ ଏ ବୀଭତ୍ସତାର ତନ୍ତ୍ର ( ସ୍ତୋତ୍ର ) ଲୁଚିଲୁଚି ଲୋକଙ୍କୁ ଆକର୍ଷଣ କରି ହେଲା । ଶିବ ସାଧନା, ବେତାଳ ସାଧନା ପ୍ରଭୃତି ଏଥିରେ କେତେ ବିଭାଗ ଅଛି । ତାହା କହିବାର ଏଠାରେ ଅବକାଶ ନାହିଁ । କୁଳାର୍ଣ୍ଣବ ତନ୍ତ୍ର ସହିତାରେ ଶିବ ଯେଉଁ ସବୁ ଘୃଣ୍ୟପଣ ବୀଭତ୍ସ କାର୍ଯ୍ୟର ଉପଦେଶ ଦେଇଛନ୍ତି, ଉଦାହରଣ ପାଇଁ ଏଠାରେ ତହିଁରୁ ଗୋଟିଏ ସୂଚିତ ହେଲା । ଶିବ ଏହା ପାର୍ବତୀଙ୍କୁ କହୁଛନ୍ତି, 'ଏସବୁ ଅତି ଗୋପନୀୟ'—

"ଗୋପନୀୟଂ ଗୋପନୀୟଂ
ଗୋପନୀୟଂ ପ୍ରଯତ୍ନତଃ ।
ଗୋପନୀୟଂ ଗୋପନୀୟଂ
ସ୍ୱଯୋନିରିବ ପାର୍ବତି ॥"

ବାଂଜୁଲି ଓ ଚୁଚୁନ୍ଦରୀର ମାଂସ, ଚଣ୍ଡାଳରମଣୀର ବ୍ୟଭିଚାରଦୁଷ୍ଟ ଲୁଗା, ଶବର ଇତ୍ୟାଦି ପ୍ରଭୃତିରେ ଏହି ସାଧନକ୍ରିୟା କରିବାକୁ ହୁଏ । ବେଶି କହି ଆଉ ବୀଭତ୍ସତା ବଢ଼ାଇବା ଅନୁଚିତ । ଶିବଙ୍କ କଥା ମାନି ଏହା ଗୋପନୀୟ ରଖିବା ହିଁ ଉଚିତ ।

## ବୌଦ୍ଧଧର୍ମର ଏକ କ୍ରିୟାର ଫଳ—

ଆଧୁନିକ ସିଦ୍ଧାର୍ଥ-ବୁଦ୍ଧଙ୍କ ପ୍ରଚାରିତ ଧର୍ମର ଗୋଟିଏ କାର୍ଯ୍ୟ ଏଥିରେ ସାହାଯ୍ୟ ମଧ୍ୟ କରିଥିଲା । ତେଣୁ କଶୁଦ୍ଧ ବୌଦ୍ଧଧର୍ମ ବଂଗଦେଶ ଓ ଉତ୍ତରରେ ଏଇ ତନ୍ତ୍ରର ଘୋର ଜଘନ୍ୟତାରେ ପର୍ଯ୍ୟବସିତ ହୋଇଥିବା କଥା ପୂର୍ବରୁ ସୂଚିତ ହୋଇଛି । ଓଡ଼ିଶାର ବୌଦ୍ଧ ପ୍ରଣବର ଧାରା ସ୍ୱତନ୍ତ୍ର ଥିବାରୁ, ପୁଣି ଓଡ଼ିଶାର ଶବର ସଭ୍ୟତା ବିଶୁଦ୍ଧ ଥିବାରୁ, ପୁଷ୍ପଗିରି ବିହାରର ଆଦର୍ଶରେ ତାହା ପରିଚାଳିତ ଥିବାରୁ ଓଡ଼ିଶାର ସମାଜକୁ ତାହା କଳଂକିତ କରି ନ ଥିଲା । ପରେ ବୈଷ୍ଣବବାଦ ଧର୍ମରେ ସେ ସବୁ ପଶି ପରାଧୀନ ଓ ଅନୁକରଣକାମୀ ଓଡ଼ିଶାରେ ତାହା ପଶିଲେ ମଧ୍ୟ ସମାଜରେ ସ୍ଥାନ ପାଇ ନାହିଁ । ସହଜିଆର ବୀଭତ୍ସଲୀଳାର କଥା ଓ ନେଡ଼ାନେଡ଼ିଙ୍କ ଉଚ୍ଛୃଙ୍ଖଳ ଉନ୍ମୁକ୍ତ କାମଲୀଳାର ବିବରଣ ସୂଚିତ ହୋଇଛି ।

## ସଂଘରେ ନାରୀ ପ୍ରବେଶ କ୍ରିୟା ଓ ତାର ପରିଣାମ—

କାମନା ତ୍ୟାଗରେ ନାରୀ ସଙ୍ଗ ତ୍ୟାଗ ସାଧନାର କେନ୍ଦ୍ର ଥିଲା । ଚୈତନ୍ୟ ଏହାହିଁ କରିଥିଲେ । ବୁଦ୍ଧ ନିଜର ସନ୍ନ୍ୟାସୀଙ୍କ ପାଇଁ ସଂଘ କରି ଏଇ ନିୟମ ମଧ୍ୟ ସ୍ଥିର କରିଥିଲେ । ମାତ୍ର ବୁଦ୍ଧଙ୍କ ମାଉସୀ ଓ ପାଳକ୍ଷିତ୍ରୀ ବୃଦ୍ଧା ମହାପ୍ରଜାବତୀ ସଂଘରେ ପ୍ରବେଶ କୋଡ଼ିଲେ । ବୁଦ୍ଧ ମନା କଲେ । ବୃଦ୍ଧା ଅତି ଦୁଃଖିତା ହେଲେ । ସେଠାରୁ ବୁଦ୍ଧ ଶିଷ୍ୟ ଆନନ୍ଦ ବାରଂବାର ନାନା ଅନୁନୟରେ ଅନୁରୋଧ କଲେ । ବୁଦ୍ଧ ଶେଷକୁ ଅନୁରୋଧ ରକ୍ଷା କଲେ, ମାତ୍ର କହିଲେ—

"ଯଦି ଆମ ସଦ୍ଧର୍ମ ୧୦୦୦ ବର୍ଷ ରହନ୍ତା, ତେବେ ଆଜି ଏଇ ସ୍ତ୍ରୀଲୋକ ପଶିବାର ଅନୁମତି ଦେବା ଫଳରେ ତାହା ୫୦୦ ବର୍ଷ ମାତ୍ର ରହିବ । କ୍ଷେତରେ ଶ୍ୱେତାସ୍ଥିକା (ଏକପ୍ରକାର ଧାନ ପୋକ) ପଶିଲେ ଯେପରି ଶସ୍ୟ ନଷ୍ଟ ହୁଏ, ସଂଘରେ

ସ୍ତ୍ରୀଲୋକ ପ୍ରବେଶ ହେବାରେ ସଦ୍‌ଧର୍ମର ସେଇପରି ଅନିଷ୍ଟ ହେବ।" ହୁଏତ ସଂଘରେ ପ୍ରଥମେ ଆଦର୍ଶ ଚରିତ୍ରା, ପୂଜନୀୟା ଭିକ୍ଷୁଣୀମାନେ ପଶିଥିଲେ, ମାତ୍ର କାଳକ୍ରମେ ଗୁପ୍ତ ବ୍ୟଭିଚାର ପଶି ବିହାରଠାରୁ ଗୃହଗାଁ ପର୍ଯ୍ୟନ୍ତ ସର୍ବତ୍ର 'ନେଡ଼ାନେଡ଼ୀ' ସୃଷ୍ଟି କଲା । 'ନେଡ଼ା' ବଂଗଳା ଶବ୍ଦ । ଓଡ଼ିଆରେ ଏହା 'ଲଣ୍ଡା' । ଭିକ୍ଷୁ ଭିକ୍ଷୁଣୀମାନେ ଲଣ୍ଡା ହୁଅନ୍ତି ବୋଲି ଏଇ ନାମ । ଏମାନେ ଅବାବାହିତ ହୋଇ ଚିରକାଳ ରହନ୍ତି । ଏଇମାନଙ୍କୁ ପରେ ଚୈତନ୍ୟ ଶିଷ୍ୟମାନେ ବୈଷ୍ଣବ କରି 'ବାବାଜୀ ମାତା'ର ସୃଷ୍ଟି କରିଚନ୍ତି । ବଂଗଦେଶର 'ସହଜିଆ' ଧର୍ମ ମଧ୍ୟ ଏଇ ବାଧ୍ଯ ଓ ଆଗ୍ରହ ସଙ୍ଗେ ଜଡ଼ିତ ଥିଲା । ଅତି ଅଳ୍ପକାଳ ତଳେ ମଧ୍ୟ ନବଦ୍ୱୀପର ବାବାଜୀ (ନେଡ଼ା) ମାତା (ନେଡ଼ୀ)ଙ୍କ ମୁହଁ ଓ ମୁଣ୍ଡରେ ଲୁଗା ପକାଇ ଖାଲି ହାତଟି ଦେଖାଇ ପାଞ୍ଚସୁଉକାରେ ବିକ୍ରି କରୁଥିଲେ । ମାତ୍ର ଏସବୁ ସାଭାସ୍ତି ସାମାଜିକ ସ୍ୱଭାବ ବର୍ଣ୍ଣନ କରିବାର ସ୍ଥାନ ଏ ନୁହେ ।

## ଓଡ଼ିଶାରେ ଏଇ ତନ୍ତ୍ର ଓ ଗୌଡ଼ୀୟ ବୈଷ୍ଣବ—

ପରାଧିନ ଓଡ଼ିଶାରେ ବିଶେଷରେ ବ୍ରାହ୍ମଣମାନଙ୍କ ଭିତରେ ମଧ୍ୟ ଦେବୀ ପୂଜା ପଞ୍ଚମକାର ପ୍ରଭୃତି ସଙ୍ଗେ ତନ୍ତ୍ର ସାଧନା ବଂଗର ଅନୁକରଣରେ କେତେକ ପଶିଥିଲା । ଏବେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରତିପତ୍ତି ଫଳରେ ମଠ ପ୍ରଭୃତିର ସୃଷ୍ଟି ଧରି ଲୋକରେ ଏଇ ମତର କେତେକ ପ୍ରଭାବ ଦେଖାଯାଏ ।

## ଗୀତାରେ କୃଚ୍ଛ୍ର ସାଧନା ଓ ମନା—

ସେ ଯା ହେଉ, ଏଠାରେ କହିବାର କଥା, ଗୀତାରେ ଭଗବାନ୍ ପରେ ପତଞ୍ଜଳିଙ୍କ ପ୍ରଚାରିତ ଯୋଗର ସୂଚନାରେ ଯଥାର୍ଥ ଧ୍ୟାନରେ ତାହାର ଉପଯୋଗିତା ଦେଖାଇ ଥିଲେହେଁ ଏପରି ଅଦ୍ଭୁତ କ୍ରିୟା ଧରି ଯୋଗ ସାଧିବାକୁ ମନା କରିଚନ୍ତି । ଉପବାସାଦି କୃଚ୍ଛ୍ର ସାଧନା ଯୋଗୀର କର୍ତ୍ତବ୍ୟ ନୁହେ ବୋଲି ସଫା କହି ଦେଇଚନ୍ତି । ଠିକ୍ ଏଇ ଧ୍ୟାନ ଯୋଗ ପ୍ରସଙ୍ଗରେ ଚେତାଇ ଦେଲାପରି ଭଗବାନ କହିଚନ୍ତି—

"ଏଇପରି ଧ୍ୟାନ ଯୋଗରେ ସର୍ବଦା ଆତ୍ମାକୁ ଏକାଗ୍ରଭାବରେ ଠିକ୍ ରଖି ଯୋଗୀ ନିର୍ବାଣର ଶାନ୍ତି ପାଏ ।" (୬. ୧୫) । ମାତ୍ର ଏଥିରେ କୃଚ୍ଛ୍ର ସାଧନା, ବ୍ରତ ଉପବାସ ପ୍ରଭୃତି ଠିକ୍ ନୁହେ ।

"ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି ନ ଚୈକାନ୍ତ ମନଶ୍ନତଃ
ନ ଚାତି ସ୍ୱପ୍ନଶୀଳସ୍ୟ ଜାଗ୍ରତୋ ନୈବଚାର୍ଜୁନ ।" ( ୬.୧୬ )

ନୈଭରେ ଖାଲି ପେଟଟି ରହିଁ ପେଟ ହେଲେ ଅବଶ୍ୟ ଯୋଗ ହୁଏ ନାହିଁ ସତ, ମାତ୍ର ଉପବାସ କ୍ଳେଶରେ ମଧ୍ୟ ଯୋଗ ହୁଏ ନାହିଁ । ଅଳସୁଆ ହୋଇ ଗୁଡ଼ାଏ ଶୋଇଲେ ଅବଶ୍ୟ ଯୋଗ ହୁଏ ନାହିଁ, ମାତ୍ର ରାତିଯାକ ଏକଗୋଡ଼ିଆ ହୋଇ ଠିଆ ହୋଇ ଜାଗର ଜାଳି ମହାଦେବଙ୍କ ସ୍ତୁତି ବୋଲିଲେ ମଧ୍ୟ ଯୋଗ ହୁଏ ନାହିଁ । ଏସବୁ ବରଂ ଧାର୍ମିକ ବୋଲି ସମାଜରେ ବାହାବା ପାଇବାର ପନ୍ଥା । ଡେଣୁ ଏଥିରେ ଲୋକ ଭ୍ରଷ୍ଟ, ମତଭ୍ରାନ୍ତ ଓ କୁସଂସ୍କାରଗ୍ରସ୍ତ ହୁଏ । ତେବେ ଯୋଗ କାହାର ହୁଏ—

"ଯୁକ୍ତାହାର ବିହାରସ୍ୟ ଯୁକ୍ତଚେଷ୍ଟସ୍ୟକର୍ମସୁ
ଯୁକ୍ତ ସ୍ୱପ୍ନାବବୋଧସ୍ୟ ଯୋଗୋଭବତି ଦୁଃଖହା ।" (୬.୧୭)

ମନୁଷ୍ୟର ଯେପରି ଯେତିକି ଦରକାର, ସାଧାରଣ ସାମାଜିକ ମାନବ ପରି ସେଇପରି ସେତିକି ଆହାର ବିହାର କରିବା, ଯେପରି ସାଧାରଣତଃ ଲୋକେ ଶୁଅନ୍ତି, ଉଠନ୍ତି ଓ କାମ କରନ୍ତି, ସେଇପରି କରିବା ଲୋକର ଯୋଗରେ ଦୁଃଖ ତୁଟେ । ଦୁଃଖ ଗୁଡ଼ାଏ ସହିବାର ଅଭ୍ୟାସ କରି ଶାନ୍ତି ଲୋଡ଼ିଲେ, ଯଥାର୍ଥରେ ସୁଖ ଶାନ୍ତି ମିଳେ ନାହିଁ, ଏହାହିଁ କହିବାର ଅଭିପ୍ରାୟ । ଆତ୍ମାର ଯଥାର୍ଥ ଧାରଣାରେ ସମସ୍ତ କର୍ମ ଶ୍ରେୟ ଦେଖିବାର ପୀଠ ରହି ମନକୁ ସେଇ ଆଦର୍ଶରେ ନିଯୁକ୍ତ କରି କର୍ମ କଲେ, କାମନା ତୁଟିଯାଏ । ସେଇପରି ଅବସ୍ଥାରେ ଲୋକର ମନକୁ ଯୋଗ ହୋଇଯାଏ । (୬. ୧୮) ।

## ଗୀତାରେ ସାଧାରଣ ମାନବ ପାଇଁ ପନ୍ଥା—

ଗୀତାଧର୍ମ ଏଇପରି ଯଥାର୍ଥରେ ମାନବ ଧର୍ମ । ଏଥିରେ ଅମନୁଷ୍ୟତା ପାଇଁ ଯେପରି ସ୍ଥାନ ନାହିଁ ଅମାନୁଷତା ବା ଅତିମାନୁଷତା ପାଇଁ ମଧ୍ୟ ସେଇପରି ସ୍ଥାନ ନାହିଁ । ଏଇ ମନୁଷ୍ୟ ଧର୍ମରେ ମନୁଷ୍ୟ ସ୍ୱଭାବରେ ମନୁଷ୍ୟତା ଲାଭ କରିବାହିଁ ମନୁଷ୍ୟ ଧର୍ମ ବା ଗୀତା ଧର୍ମ । ଏହାହିଁ ଯଥାର୍ଥ ବେଦ ଧର୍ମ । ଏହାହିଁ ପୁଣି ଆର୍ଯଧର୍ମ ଓ ଅନାର୍ଯଧର୍ମ ବା ଆର୍ଯ ନାମରେ ଭାରତର ପ୍ରାଚୀନ ପାରଂପରିକ ଧର୍ମର ପରିଣତ ଓ ବିକଶିତ କର୍ମଧାରା ।

## (୨) ଗୀତାଧର୍ମ ମାନବ ଧର୍ମ—

ଗୀତା ଧର୍ମ ମାନବ ଧର୍ମ । ଏଥିରେ ଅପମାନୁଷ, ଅମାନୁଷ ବା ଅତିମାନୁଷ କିଛୁ ନାହିଁ । ସରଳ ସାଧାରଣ ଜୀବନର କର୍ମରେ ସ୍ୱଧର୍ମନିରତ ହେବାହିଁ ଗୀତାଧର୍ମ । ଏ ଧର୍ମରେ କୌଣସି କୁହୁକ ବା ଚମତ୍କାର ନାହିଁ । ଏହାର ଆଦର୍ଶ ଶାନ୍ତି । ବିଶ୍ୱସଂଗ୍ରାମରେ ସମାଧାନରେ ଏଇ ଶାନ୍ତି । ଈଶ୍ୱର ଯଥାର୍ଥ ଅବବୋଧରେ ଏଇ ସମାଧାନ । ଏହାହିଁ ବେଦ ଧର୍ମର ଶ୍ରେଷ୍ଠ ଶିକ୍ଷା । ଏହାହିଁ ଭାରତର ଅନାର୍ଯ ଧର୍ମର ଶ୍ରେଷ୍ଠ ପରିଣତି ।

## ଅତିମାନୁଷତା ଗୀତାରେ ହେୟ—

ତନ୍ତ୍ର ବା ତନ୍ତ୍ରଯୋଗର ଅଦ୍ଭୁତ କ୍ରିୟା ଓ କୃଚ୍ଛ୍ର ସାଧନା ପାଇଁ ଗୀତା ଧର୍ମରେ ସ୍ଥାନ ନାହିଁ । ଏ ଅଦ୍ଭୁତ କ୍ରିୟାଦିର ସମାଧାନ ହୋଇଛି, ସେ ସବୁକୁ ଏକାବେଳକେ ହେୟ ବୋଲି ପରିତ୍ୟାଗ କରିପାରେ । ମହାସିଦ୍ଧ ଯୋଗୀର ଆଦର୍ଶ ଲୋକ ସଂଗ୍ରହ । ଅତିମାନୁଷ ସାଧନାରେ ଲୋକ ଭ୍ରଷ୍ଟ ଓ ପରିଣାମରେ ଉଚ୍ଛନ୍ନ ହୁଅନ୍ତି; ସବୁ ଅସ୍ତ ବ୍ୟସ୍ତ ହୋଇଯାଏ । ଭଗବାନ୍ କହନ୍ତି—

"ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଂଚନ
ନାନବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି ।" (୩. ୨୨ )

ଅର୍ଥାତ୍ ମୋର କିଛି ପାଇବାର ନାହିଁ, ନ ପାଇଥିବାର ନାହିଁ; କିଛି କର୍ତ୍ତବ୍ୟ ବି ନାହିଁ । ତଥାପି ମୁଁ କର୍ମରେ ଲାଗିଛି । ମୁଁ କର୍ମ ନ କଲେ, ଲୋକେ ମୋର ପନ୍ଥା ଧରିବେ । ଲୋକେ ଉଚ୍ଛନ୍ନ ହୋଇଯିବେ । ( ୩.୨୩.୨୪ ) । କାହିଁକି ନା,

ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ
କୁର୍ଯାଦ୍ ବିଦ୍ୱାଂସ୍ତଥାସକ୍ତଶ୍ଚିକୀର୍ଷୁର୍ଲୋକସଂଗ୍ରହମ୍ । (୩.୨୫)

ଯୋଗ କରୁଛି ଆତ୍ମା ସାଧୁଛି ବୋଲି ଲଙ୍ଗୁଳରେ ଠିଆ ହୋଇ ଅତିମାନୁଷ କ୍ରିୟାରେ ମାତିବା ଠିକ୍ ନୁହେ । ସେଥିରେ ନିଜର ଅହଂକାରଜନିତ ଭ୍ରଷ୍ଟାଚାର ବା ଭଣ୍ଡାଚାର ହେଉ ବା ନ ହେଉ, ଲୋକେ ଅନ୍ଧ ଓ କୁସଂସ୍କାରୀ ହୋଇ ମହାପୁରୁଷ ଦେଖୁ ଦେଖୁ ନିଜେ ସ୍ୱକର୍ମ-ହୀନ ଓ ଅମନୁଷ୍ୟ ହୁଅନ୍ତି । ଏ କଥା ବୁଝାଇବା ଦରକାର ନାହିଁ, ପର ଶ୍ଳୋକରେ ଏହାକୁ ଭଗବାନ୍ 'ବୁଦ୍ଧି ଭେଦ' କହନ୍ତି । ଏଇ ବୁଦ୍ଧି ଭେଦରେ ଲୋକକୁ ନଷ୍ଟ କରିଦିଏ । ତନ୍ତ୍ରର କୁତ୍ସିତ ସାଧନା ମାନବ ସମାଜରେ ବରଂ ଝପାତନ । ତନ୍ତ୍ରରେ ଲୋକେ ଯେ ଭ୍ରଷ୍ଟ ହୁଅନ୍ତି, ତା ବୁଝାଇବାରେ ଆୟାସ ଦରକାର ନାହିଁ । ସମାଜର ଲୋକେ ତାହାର ଅନୁପଯୋଗିତା ବୁଝି ମଧ୍ୟ ଶରୀର ଧର୍ମରେ କାମନା ଓ ସେବାରେ ମାତି ତାହାର ଅନୁବର୍ତ୍ତନ କରିଥାନ୍ତି । ମାତ୍ର ଯେଉଁ ଦାବାଜୀ ଲଙ୍ଗଳା ହୋଇ ମୁହଁ ବୁଜି ବସି ଦିନକେ ଦେଢ଼ସେରଟି ମାତ୍ର ସର ଲବଣୀରେ ଚିରକାଳ କଷ୍ଟ ଉପବାସ କରି ଦୃଷ୍ଟିକୁ ଗୃହି ରହି ସଂକେତରେ ଶିଷ୍ୟବର୍ଗଙ୍କଦ୍ୱାରା ନିଜର ସହସ୍ରାଧିକ ବର୍ଷ ଆୟୁର ପ୍ରଚାର କରନ୍ତି, ତାଙ୍କ କଥା କ'ଣ ? ସେ ମଧ୍ୟ ଲୋକର 'ବୁଦ୍ଧିଭେଦ' କମ୍ କରନ୍ତି ନାହିଁ । ସେଇମାନେ ସମାଜରେ ବେଶି ବିପଦ୍‌ଜନକ । ଲୋକଙ୍କୁ ଅନ୍ଧ ଓ କର୍ମହୀନ କରିବାରେ ସେଇ ଏକା ବେଶି ପଟୁ । ଲୋକେ ଅଦ୍ଭୁତ କ୍ରିୟାର ପ୍ରଭାବରେ ଶୀଘ୍ର ମୁକ୍ତି ଫୁକ୍ତି ବା ବିଭୂତି ଫିଭୂତି ଗୋଟାଏ ପାଇଯିବା ପାଇଁ ତାଙ୍କର ଏକାନ୍ତ ଅନୁଗତ ଓ ଶିଷ୍ୟ ହୋଇ ସ୍ୱଧର୍ମ ସାଧନା ଛାଡ଼ି

ଭ୍ରଷ୍ଟ ହେବାର ବରାବର ଦେଖାଯାଏ । ଶୁଣାଯାଏ ଶଙ୍କରାଚାର୍ଯ୍ୟ ଘଟ ପରିବର୍ତ୍ତନ କରି କାମିନୀ ସମ୍ଭୋଗ ପରୀକ୍ଷାରେ ଜାଣିଥିଲେ । ତୈଲଙ୍ଗ ସ୍ୱାମୀ ଲଙ୍ଗଳା ହୋଇ ସର୍ବଦା ଗଙ୍ଗାରେ ଭାସୁଥାନ୍ତି, ପୁଣି ଠିକ୍ ଭାସିଲାବେଳେ ମଧ୍ୟ ଆଶ୍ରମରେ ବସିଥାନ୍ତି । ଏ ସବୁରେ ଲୋକ ବିସ୍ମିତ ହୋଇ ଅନୁବର୍ତ୍ତୀ ହୋଇପାରେ । କିନ୍ତୁ ସେଥିରେ କର୍ମ ଫିଟେ ନାହିଁ । ଲୋକେ ସେଇପରି କର୍ମରେ ବ୍ରତୀ ହୋଇ ଗଙ୍ଗାରେ ଭାସନ୍ତି ନାହିଁ କିମ୍ବା ନିଜର କର୍ମସାଧନାରେ କୌଣସି ନୂତନ ପ୍ରେରଣା ପାଆନ୍ତି ନାହିଁ । ଭଗବାନ୍ ଗୀତାଧର୍ମରେ ଏ ବାଟକୁ ଜମା ଯାଇ ନାହାନ୍ତି, ବରଂ ଏ ବାଟ ଜମାରୁ ବା ନୁହେ ବୋଲି କହିଛନ୍ତି । ଜ୍ଞାନୀ ହୋଇ କର୍ମ ଛାଡ଼ିବାକୁ ମଧ୍ୟ କହିନାହାନ୍ତି । ବରଂ ସମାଜରେ ଯାହା ନିଯୁକ୍ତ କର୍ମ, ଅନ୍ୟମାନଙ୍କ ପରି ତାହା କରିବା ହିଁ ଠିକ୍ ବୋଲି କହିଚନ୍ତି ।

## ଶ୍ରୀକୃଷ୍ଣ ମାନବର ସାଧାରଣ ପରିସ୍ଥିତିରେ ଗୀତା ଧର୍ମ ରଖିଛନ୍ତି—

ଅର୍ଜ୍ଜୁନଙ୍କ ପରି ଶିଷ୍ୟଙ୍କୁ ପାଇ ମଧ୍ୟ ସେ ସାଧାରଣ ମାନବ କର୍ମର ବ୍ୟାଖ୍ୟା ଛଡ଼ା ଆଉ କହି ନାହାନ୍ତି । ଏକ ଦିଗରେ ସ୍ୱଜନ ମୋହରେ ଅର୍ଜ୍ଜୁନଙ୍କୁ ଅମନୁଷ୍ୟତା ଘୋଟିଚି । ପୁଣି ଅନ୍ୟ ଦିଗରେ କର୍ମ ଛାଡ଼ି ସନ୍ନ୍ୟାସ ସାଧନା କରିବାରେ ଅର୍ଜ୍ଜୁନ ଅତିମାନୁଷ ସାଧନାକୁ ଚାହୁଁଚନ୍ତି । ସେତେବେଳେ ମଧ୍ୟ ଭଗବାନ୍ ଶ୍ରୀକୃଷ୍ଣ କୌଣସି ଆଡ଼କୁ ନଜେ ନ ଚାହିଁ ଜୀବନର ନିତ୍ୟନିଯୁକ୍ତ କର୍ମରେ ସର୍ବପ୍ରକାର ଧର୍ମସଙ୍କଟ ମହାସମାଧାନ ପ୍ରଚାର କରି ଅର୍ଜ୍ଜୁନଙ୍କୁ ମାନବୀୟ ପରିସ୍ଥିତିକୁ ଆଣିବାକୁ ଚେଷ୍ଟା କରିଚନ୍ତି ।

## ଶ୍ରୀକୃଷ୍ଣ ଅମାନୁଷତା ବା ଅତିମାନୁଷତାର ଅବକାଶ ବା ଉପଯୋଗ ଲୋଡ଼ି ନାହାନ୍ତି—

ଅଦ୍ଭୁତ ଓ କୃଚ୍ଛ୍ର କ୍ରିୟାରେ ମନୁଷ୍ୟର ମନକୁ ଅଧୀନ କରି ମନୁଷ୍ୟକୁ ଭକ୍ତ କରିବା ପାଇଁ ଇଚ୍ଛା ଥିଲେ, ଭଗବାନ୍ ହୁଏତ ସେଠାରେ ଉପଦେଶ ଦେବା ପୂର୍ବରୁ ଘଡ଼ିଏ ଖଣ୍ଡେ ଗୋଟିଏ ଗୋଡ଼ର ଆଙ୍ଗୁଠି ଟିପରେ ସୂର୍ଯ୍ୟଙ୍କୁ ଚାହିଁ ଠିଆ ହୋଇ ଯାଇ- ଥାନ୍ତେ କିମ୍ବା ତନ୍ତ୍ରଯୋଗର 'ନଭଃ ସଂଗ୍ରହଣୀ' ବିଦ୍ୟାରେ ଅରେ କୁରୁକ୍ଷେତ୍ର ବୁଲି ଆସିଥାନ୍ତେ । ତୈଲଙ୍ଗ ସ୍ୱାମୀଙ୍କଠାରୁ ଆରମ୍ଭ କରି 'କଟିଆ ବାବାଜୀ' ଲଙ୍ଗୁଳି ବାବାଜୀ ପ୍ରଭୃତି ଯାହା କରି ଲୋକଙ୍କୁ 'କୁକୁର' ପରି ଅଜ୍ଞାବହ ଭକ୍ତ କରି ପାରୁଚନ୍ତି, କାଉଁରୀ ରମଣୀ ପର୍ଯ୍ୟନ୍ତ ଯେଉଁ ବିଦ୍ୟାବଳରେ ଯେ କୌଣସି ପୁରୁଷକୁ ମେଣ୍ଢା କରି ନେଇ ପାରୁଥିଲା ବୋଲି ଶୁଣା ଅଛି, ଶ୍ରୀକୃଷ୍ଣଙ୍କୁ ସେପରି ବିଦ୍ୟା ଅନ୍ତତଃ ଜଣାଥିବା ଉଚିତ ଥିଲା । ସେ ଟିକିଏ ସେ ବିଦ୍ୟା ବାହାର କରି ଦେଇଥିଲେ, ଅର୍ଜ୍ଜୁନଙ୍କୁ କିଛି କହିବା ପୂର୍ବରୁ ଅର୍ଜ୍ଜୁନ ତାଙ୍କ ମନ ଜାଣି କାର୍ଯ୍ୟ କରିଥାନ୍ତେ । ମାତ୍ର ତାହା ନକରି, ସେ ଅର୍ଜ୍ଜୁନଙ୍କୁ ଜ୍ଞାନ ( ସାଂଖ୍ୟ ), କର୍ମ, ଭକ୍ତି ସବୁ ବାଟରେ ମାନବର ସାମାଜିକ

କର୍ମରେ ଆତ୍ମଲାଭ କରିବା, ପୁଣି ସ୍ପଷ୍ଟ ସାଧାରଣ ମାନବ ପରି ରହି ସବୁ କାମ କରିବା କଥା ବୁଝାଇ ବୁଝାଇ ଯୋବରୀ ହୋଇ, ଶେଷକୁ ବୁଝି ନ ବୁଝିଲା ପରି ହୋଇ ଅର୍ଜୁନ ଅଙ୍ଗେଇ ହେଲାରୁ କହିଲେ, 'ତେବେ ମୋ ବିଶ୍ୱରୂପ ଦେଖ୍,—'ଏବେ ବିଶ୍ୱରେ ବ୍ୟକ୍ତିର ସମ୍ପର୍କ ବୁଝ ।' 'ବ୍ୟକ୍ତିର ବିଶ୍ୱରେ କର୍ମ ବୁଝ ।' 'ଆଉ ଭୁଲ କରନା ।' ସବୁ ମୋର କର୍ମ; ତୁ ଏଥିରେ ନିମିତ୍ତ ।'

## ବିଭୂତି ଯୋଗ ଓ ବିଶ୍ୱରୂପରେ ସାଧାରଣ ମାନବ ଧର୍ମ—

ଏଥିରେ ଭଗବାନ୍ ଅଦ୍ଭୁତ କିଛୁ ଦେଖାଇ ନାହାନ୍ତି । ଅବ୍ୟକ୍ତ ଅଧ୍ୟାତ୍ମ ପୀଠ ବା ଆଧାରରେ ପ୍ରକାଶ ସ୍ୱରୂପ ଏଇ ବିଶ୍ୱରେ ବ୍ୟକ୍ତି ହିଁ ପ୍ରକାଶର ନିମିତ୍ତ—ଏଇ ବ୍ୟକ୍ତି ରୂପରେ ବିଶ୍ୱର ପ୍ରକାଶ ବା କର୍ମ । ବ୍ୟକ୍ତି ଅଲଗା, ମାତ୍ର ଅଲଗା ନୁହେଁ । ବ୍ୟକ୍ତିର ଅର୍ଥ ବିଶ୍ୱରେ ଓ ବିଶ୍ୱର ପ୍ରକାଶ ବ୍ୟକ୍ତିରେ । ଏଇ ବ୍ୟକ୍ତି ନିମିତ୍ତରେ 'ପୁରୁଷୋତ୍ତମ'ଙ୍କୁ ବୁଝିବାକୁ ଓ ଦେଖିବାକୁ ହୁଏ । ଏହା କିଛି ଅଦ୍ଭୁତ ବା ଅତିବିଶ୍ୱ ନ ହେଲେ ମଧ୍ୟ—ଏହାହିଁ ଅଦ୍ଭୁତ ଓ ବିଚିତ୍ର । ପତ୍ରଠାରୁ ପର୍ବତ ପର୍ଯ୍ୟନ୍ତ କୀଟଠାରୁ ଜ୍ୟୋତିଷ୍କ ପର୍ଯ୍ୟନ୍ତ, ସମସ୍ତ ବିଶ୍ୱ କର୍ମର ବ୍ୟକ୍ତିରେ ଯେ ପୁରୁଷୋତ୍ତମଙ୍କୁ ଦେଖି ନାହିଁ, ସେ କୌଣସି ଊର୍ଦ୍ଧ୍ୱବାହୁ ଯୋଗୀର ଅତି କୃଚ୍ଛ୍ର କିମ୍ବା ମାୟାରେ ଭ୍ରାନ୍ତି ହୋଇ ଆତ୍ମଲାଭ ଆଡ଼କୁ ଯିବ ନାହିଁ । ଗୀତାର 'ବିଭୂତିଯୋଗ' ତଥା 'ବିଶ୍ୱରୂପ ଦର୍ଶନ ଯୋଗ'ର ଏଇ ଅର୍ଥ । ଏଥିରେ କିଛି ଅତିବିଶ୍ୱ କିମ୍ବା ବା ଅସାଧାରଣ ନାହିଁ । ପତ୍ର ବାହାରିବା, ସୂର୍ଯ୍ୟରେ ଫୁଲ ଫୁଟିବା, ମଞ୍ଜିରେ ଗଛ ଥାଇ ଗଛ ନ ହେବା', ଶରୀର ସ୍ଥିତି ଓ ଗତି, ଜଗତରେ ବୃଦ୍ଧି ନାମରେ ମହାକ୍ଷୟର ଲୀଳା ଯେ ଦେଖି ବୁଝି ନାହିଁ, ସେ ବିଶ୍ୱ ବୁଝି ନାଇ କି ଆତ୍ମା ବୁଝି ନାଇ । ଏହାହିଁ ବିଶ୍ୱରୂପ ଦର୍ଶନ—ଏହି ହିଁ ବିଭୂତିର ପ୍ରକାଶ । ପ୍ରତିଦିନ ନଖ ଓ ବାଳ ବଢ଼ିବାରେ ଯେ ବିଶ୍ୱର ବିଚିତ୍ରତା ସଙ୍ଗେ ନିତ୍ୟତା—ସାଧାରଣ ମାନବରେ ଅସାଧାରଣ ଦେଖିନାହିଁ । ସେ କିଛି ଦେଖି ନାଇ । ପ୍ରତି କର୍ମରେ ହିଁ ଈଶ୍ୱର—ପୁରୁଷୋତ୍ତମଙ୍କ ବିଶ୍ୱଲୀଳା ମାନବ କାମନାର ବିଶୃଙ୍ଖଳା ଭିତରେ ଏହାହିଁ ଶୃଙ୍ଖଳା । ସୁଖ ଦୁଃଖାଦି ଦ୍ୱନ୍ଦ୍ୱରେ ଏଇଠାରେ 'ସମତ୍ୱ'—ଏଇଠାରେ ଯୋଗ, ଏଇଠାରେ ସମାଧି, ଏଇଠାରେ ଜ୍ଞାନ, ଏଇଠାରେ ଭକ୍ତିରେ ଆତ୍ମସମର୍ପଣରେ ଯଥାର୍ଥ ଆତ୍ମଲାଭ । ଏହା ପାଖେ ଆଉ କୌଣସି କର୍ମ ସଂସ୍କାର ବା ଧର୍ମର ସ୍ଥାନ ନାହିଁ । ଭଗବାନ୍ ସେଇ ସଙ୍କେତ ସ୍ପଷ୍ଟ କରି ସର୍ବଶେଷରେ କହୁଚନ୍ତି—

ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ । (୧୮. ୬୬)

ସବୁ ଧର୍ମ ବା ଆଉ ସବୁ କର୍ମସଂସ୍କାର ଗ୍ରନ୍ଥ, ଈଶ୍ୱରଙ୍କ କର୍ମ ହିଁ କରାଯାଉଚି ବୋଲି ଆତ୍ମସମର୍ପଣ କରିବା ହିଁ ବିଧି । ଏଥିରେ ହିଁ ଆତ୍ମଜ୍ଞାନ ଓ ଆତ୍ମଲାଭ । ଏଥିରେ ଆଉ କର୍ମରେ ପାପ ବା ଦ୍ୱେଷ ନାହିଁ, ମାରିବାରେ ହିଂସା ନାହିଁ, ସଂହାରରେ ଅହଂକାର ନାହିଁ । ଏଇଥିରେ ହିଁ ମୁକ୍ତି । ଆଉ ସଂଶୟ ନାହିଁ, ଏଣୁ ଶୋକ ନାହିଁ ।

## ବିଶ୍ୱରୂପ ଦେଖି ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଦେବତା ବୋଲି ବିଚାରିଲେ—

ଏଥିରେ ଅତିମାନୁଷ ତଥା ଅତିବିଶ୍ୱ ଅସାଧାରଣ କିଛି ଦେଖି ଭୁଲିବାର ସଙ୍କେତ ଆଦୌ ନାହିଁ । ଭଗବାନ୍ ଏଇ ସନ୍ଦେହ ନିଜେ ସେଇ ବିଶ୍ୱରୂପ ଦର୍ଶନରେ ନିରସ କରିଚନ୍ତି । ଅର୍ଜୁନ ଯେତେବେଳେ ଏଇ ବିଶ୍ୱରୂପ ଦେଖି, ଶ୍ରୀକୃଷ୍ଣଙ୍କ ଅସାଧାରଣତ୍ୱରେ ଟିକିଏ ବିବ୍ରତ ହୋଇ କହି ପକାଇଲେ—

ସଖେତିମତ୍ୱା ପ୍ରସଭଂ ଯଦୁକ୍ତଂ
ହେ କୃଷ୍ଣ ହେ ଯାଦବ ହେ ସଖେତି
ଅଜାନତା ମହିମାନଂ ତବେଦଂ
ମୟା ପ୍ରମାଦାତ୍ ପ୍ରଣୟେନ ବାପି ।
ଯଚ୍ଚାବହାସାର୍ଥମସତ୍କୃତୋଽସି
ବିହାରଶୟ୍ୟାସନଭୋଜନେଷୁ
ଏକୋଽଥବାପ୍ୟଚ୍ୟୁତ ତତ୍ ସମକ୍ଷଂ
ତତ୍କ୍ଷାମୟେ ତ୍ୱାମହମପ୍ରମେୟମ୍ । (୧୧.୪୧, ୪୨)

ଅର୍ଥାତ୍, ତୁମକୁ ସାଙ୍ଗ ବୋଲି ବିଚାରି, କୃଷ୍ଣ ଯାଦବ ସଖା ବୋଲି ଡାକିଚି ସେ ସବୁ ଭୁଲ । ମୁଁ ତୁମକୁ ଏହା ବୋଲି ଜାଣି ନଥିଲି । ମୁଁ ତୁମକୁ ମନୁଷ୍ୟଟିଏ ବୋଲି ବିଚାରିଥିଲି । ବ୍ୟବହାରରେ ତୁମକୁ କେତେ ଥଟ୍ଟା କରିଚି, ଅବଜ୍ଞା କରିଚି, ଏବେ ସେ ସବୁ କ୍ଷମା କର । ତୁମେ ଜଗତର ପିତା, ତୁମେ ଗୁରୁ, ତୁମ ପ୍ରଭାବ ଆଉ କାହାର ଅଛି ? ତୁମକୁ ପ୍ରଣାମ, ତୁମେ ଭକ୍ତର ଭଗବାନ୍, ତୁମେ ତେଣୁ ମୋର ପିତା, ସଖା, ପ୍ରିୟ ସବୁ । ହେ ଦେବ ତୁମେ ମୋର ଦୋଷ କ୍ଷମା କର ( ୧୧.୪୩, ୪୪ ) । ଦେବତା ତୁମେ—ମନୁଷ୍ୟ ନୁହ । ଏ ସଂହାରରୂପ ଅଛି କାହିଁକି ? ମତେ ଶଂଖ ଚକ୍ର ଗଦା ପଦ୍ମ ଧରି ଚତୁର୍ଭୁଜ ରୂପ ଦେଖାଅ । (୧୧. ୪୫, ୪୬) ।

## ଶ୍ରୀକୃଷ୍ଣ ତା ନୁହେ ବୋଲି ବୁଝାଇ ଦେଲେ—

ବିଷ୍ଣୁଙ୍କର ଶଙ୍ଖ ଚକ୍ର ଗଦା ପଦ୍ମ ଧାରୀ ଚତୁର୍ଭୁଜ ରୂପର ପରଂପରା ଥିଲା । ଏଇ 'ଉରୁକ୍ରମ' ବିଷ୍ଣୁ ( ମହାଗତିଶୀଳ ବିଶ୍ୱବ୍ୟାପୀ ଦେବତା ) ବେଦରେ

ସୁପରିଚିତ । ଶ୍ରୀକୃଷ୍ଣ ଦେଖିଲେ ମୁଁ ଏ ରୂପରେ ଅର୍ଜୁନଙ୍କୁ ଈଶ୍ୱରିକର୍ମର ଧାରଣା କରାଇବାକୁ ଗଲି । ମାତ୍ର ଅର୍ଜୁନଙ୍କର ମୋଠାରୁ ମନୁଷ୍ୟ ଭାବ ଛୁଡ଼ିଯାଉଚି । ମତେ ଅତିମାନୁଷ ବୋଲି ବିଶ୍ୱାସ ଭୟମିଶ୍ରିତ ଭକ୍ତିରେ ହୁଏତ ଅର୍ଜୁନ ମୋ ଆଦେଶ କରିବ; ମାତ୍ର ସେଥିରେ ଅର୍ଜୁନର ସ୍ୱଧର୍ମରେ ସ୍ୱାଧୀନତା କାହିଁ ? ଏ ତ ମୁକ୍ତିର ପନ୍ଥା ନୁହେ । ଏ ତ ଧର୍ମର ଧାରଣା ନୁହେ । ଅର୍ଜୁନ ମଧ୍ୟ ସ୍ପଷ୍ଟ ସେଇକଥା କହି ସାରିଲେଣି—ସେ ମୋତେ 'ଅଦୃଷ୍ଟପୂର୍ବ' (ଅସାଧାରଣ) ଦେଖି ଭାରି ଖୁସି । ମୋ କଥା କରିବେ । ମାତ୍ର ଏଇ ଖୁସିରେ ଭୟ ହିଁ କାରଣ । ମୋର ଅତିମାନୁଷକ୍ରିୟା ଚମତ୍କାର ସେ ଅଭିଭୂତ । ଏ ଅବସ୍ଥା—ଏ ଧାରଣା ଠିକ୍ ନୁହେଁ । ଏଥିରେ ଅଭିଭୂତ କରାଇ ଅର୍ଜୁନଙ୍କୁ କର୍ମରେ ଭର୍ତ୍ତି କରିଦେଲେ ହେଲା ନାହିଁ । ସେଠାରୁ ଭଗବାନ୍ କହିଲେ,—ମୁଁ ପ୍ରସନ୍ନ ହୋଇ ଆତ୍ମଯୋଗରେ, ଅର୍ଥାତ୍ ମୋର ଆତ୍ମାକୁ ବିଶ୍ୱାତ୍ମାର ସମାଧିରେ ରଖି ଯୋଗସ୍ଥ ହୋଇ ଏ ଅନୁଭୂତି ତୋଠାରେ ଜୀବନ୍ତ ଭାବରେ ପ୍ରକାଶ କଲି । ତେଣୁ ଏହା ତତେ 'ଅଦୃଷ୍ଟପୂର୍ବ' । ତୋ ଛଡ଼ା ମୋର ଏ ରୂପ ଆଉ କେହି ଦେଖି ନଥିଲେ । (୧୧.୪୭) କିପରି ଦେଖିବେ ? ଲୋକେ ଆତ୍ମଲାଭ ଓ ଆତ୍ମଯୋଗ ପାଇବା ପାଇଁ ତୋ ପରି ପନ୍ଥା କେହି ଧରନ୍ତି ନାହିଁ । ଲୋକେ ଯେ ଅତିମାନୁଷ ଓ ଅତିବିଶ୍ୱ କ୍ରିୟାରେ ମାତି ଈଶ୍ୱର ଲୋଡ଼ନ୍ତି । ମାତ୍ର—

> ନବେଦଯଜ୍ଞାଧ୍ୟୟନୈର୍ନଦାନୈ-
> ର୍ନଚ କ୍ରିୟାଭିର୍ନତପୋଭିରୁଗ୍ରୈଃ
> ଏବଂରୂପଃ ଶକ୍ୟ ଅହଂ ନୃଲୋକେ
> ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁପ୍ରବୀର । (୧୧. ୪୮)

ଏଇ ସବୁ ବାହାଦୁର ଓ କୃଚ୍ଛ୍ର; ପୁଣି ଅତିମାନୁଷ ସାଧନାରେ ଲୋକେ ମତେ ପାଇବେ କାହିଁ । ସେଥିପାଇଁ ତୋ ଛଡ଼ା ଆଉ କେହି ଏ ରୂପ ଦେଖି ନ ଥିଲେ । ହେଲେହେଁ—

> ମା ତେ ବ୍ୟଥା ମା ଚ ବିମୂଢ଼ଭାବୋ
> ଦୃଷ୍ଟ୍ୱା ରୂପଂ ଘୋରମୀଦୃଙ୍ ମମେଦଂ ।
> ବ୍ୟପେତଭୀଃ ପ୍ରୀତମନାଃ ପୁନସ୍ତ୍ୱଂ
> ତଦେବ ମେ ରୂପମିଦଂ ପ୍ରପଶ୍ୟ । ( ୧୧.୪୯ )

ଏଥିରେ ଡରିଯିବାର କିଛି ନାହିଁ । ମତେ ଅଦ୍ଭୁତ କର୍ମ ଦେବତାଟାଏ ବୋଲି ବିଶ୍ୱାସ କେବେ ଇଚ୍ଛା କରିଥିଲୁ ବୋଲି ବ୍ୟଥିତ ହବାର କିଛି ନାହିଁ । ଏବେ ସେ ଭୟ ଛାଡ଼୍ । ମତେ ଅତିମାନୁଷ ବୋଲି ବିଶ୍ୱାସିବା ଛାଡ଼୍ । ମନ ଖୁସି କର୍ । ପୁଣି ସେଇ ତୋ ସାଂଗ କୃଷ୍ଣଟି ମୁଁ, ମୋର ସେଇ ରୂପ ଦେଖ । ସେଇ ଭାବରେ ମତେ ଦେଖ୍ ।

## ଅର୍ଜୁନ ବୁଝିଗଲେ ଓ ମାନିଲେ—

ଏବେ ଅର୍ଜୁନ କହିଲେ, ମୋର ଠିକ୍ ଚେତନା ଆସିଲା । ମୁଁ ତ ବାଉଳା ଭଳି ଯାଇଥିଲି । ଏବେ ପ୍ରକୃତିସ୍ଥ ହେଲି (୧୧.୫୧) । କୃଷ୍ଣ ପୁଣି କହିଲେ, 'ମୋର ଏ ରୂପ ଦେଖିବା ବଡ଼ କଷ୍ଟ । ଦେବତାମାନେ ଏଇ ରୂପ ଦେଖିବା ପାଇଁ ନିତି ଲାଗିଛନ୍ତି । ଏ ବିଶ୍ୱାତ୍ମଧାରଣା ତାଙ୍କର ବି ସହଜରେ ହୁଏ ନାହିଁ । ମନୁଷ୍ୟ ତ ଏହା ଦେଖିବାକୁ ଶାସ୍ତ୍ରପାଠ, ତପସ୍ୟା, ଦାନ, ଯଜ୍ଞ ପ୍ରଭୃତି ଖାଲି ବାହ୍ୟାଡ଼ମ୍ବରରେ ମାତିଥାନ୍ତି । ସେ ବା ଏ ରୂପ କାହୁଁ ଦେଖିବେ ? (୧୧.୫୨.୫୩) । ଭକ୍ତିରେ ଆତ୍ମସମର୍ପଣ କରି ବ୍ୟକ୍ତି ମାତ୍ରରେ ସ୍ୱପ୍ରକାଶଙ୍କ କର୍ମ ନ ଦେଖିଲେ ଏ ରୂପ କେହି ଜାଣନ୍ତି ନାହିଁ, କି ଦେଖନ୍ତି ନାହିଁ, କାହିଁକି ନା, ସେମାନେ ଏ ରୂପ ଭିତରେ ପଶିପାରନ୍ତି ନାହିଁ, ଏ ରୂପରେ ପଶିବାର ଉପାୟ ହେଉଛି,—ସବୁ କର୍ମ ମୋର କର୍ମ ବୋଲି ବୁଝି କରିବା; ଏଇ ଭାବରେ ମୋତେ ଭକ୍ତି କରି ବିଶୃଙ୍ଖଳ କାମନା ଗ୍ରୁଡ଼ି ନିଃସଙ୍ଗ ହେବା, ପୁଣି ସବୁ ଭୂତ ଭିନ୍ନ ଭିନ୍ନ ହେଲେହେଁ ସେଥିରେ ଭେଦ ବିଗ୍ରହ ନ କରିବା । 'ଏ ଖରାପ ସେ ଭଲ, ସେ ଶ୍ରେଷ୍ଠ୍ୟ ହୀନ, ଏ ହେୟ ଏପରି ଭେଦ ବୁଦ୍ଧି କରି ବସିଲେ ବିକାଶର ନିତ୍ୟ ନିୟମ ବୁଝିବାରେ ନିତ୍ୟ ପ୍ରମାଦ ଘଟେ । ଅତଏବ ଯାହା ସବୁବେଳେ ଦେଖୁଛୁ, ଶୁଣୁଛୁ, ଶୁଂଘୁଛୁ, ଚାଖୁଛୁ, ଛୁଉଁଛୁ, ବିଗ୍ଭୁଛୁ—ସବୁଥିରେ ସେଇ ଏକ 'ବିକାଶ ଧର୍ମ'—ସବୁ ବିଚିତ୍ରତା ଓ ଭେଦିନ୍ନତା—ସେଇ ଏକରେ ବହୁ ଓ ସେଇ ବହୁରେ ଏକ ।'

## (୩) ଗୀତା ଧର୍ମରେ ମାନବର ସାଧନା ଓ ସିଦ୍ଧି—

ଏଇ ଏକରେ ବହୁ ଓ ବହୁରେ ଏକ ଧାରଣାରେ କିପରି ବ୍ୟକ୍ତି ଓ ସମଷ୍ଟିର ସମ୍ବନ୍ଧ, ପିଣ୍ଡ ଓ ବ୍ରହ୍ମାଣ୍ଡର ସଂପର୍କ, ଏଇ ଭାରତ ଭୂମିରେ ପ୍ରକାଶ ପାଇଥିଲା, କିପରି ଲୋକେ ନିତ୍ୟ ସତ୍ୟର ଧାରଣା କରି ସେଇ ଧାରଣାରେ ମାନବର ବିକାଶ ଶୃଙ୍ଖଳା ବୁଝିଥିଲେ ଓ ସେଇ ବିକାଶ କରାଇବାରେ ଲାଗିଥିଲେ, ସେଇ ତତ୍ତ୍ୱ ଓ ସେଇ ସାଧନା କଥା କହି ଏବେ ଏ ଉପସଂହାର ଶେଷ କରିବାକୁ ହେବ ।

## କର୍ମସାଧନରେ ଭୌତିକତା ଓ ଆତ୍ମିକତାର ସମୁଚ୍ଚୟ୍ୟ ଧାରଣା—

କୁହାଯାଇଛି (ନବମ ପ୍ରକରଣ ଦେଖ) ଈଶୋପନିଷଦ୍ କହନ୍ତି, ଏଇ ସମସ୍ତ ବିଶ୍ୱ ଈଶ୍ୱରଙ୍କଦ୍ୱାରା ବ୍ୟାପ୍ତ (ଆଚ୍ଛାଦିତ) । ଏ ପ୍ରକାଶ ରୂପରେ ଯେଉଁ ବିଶ୍ୱପ୍ରଗତିରେ ଆସେ ସେ ଈଶ୍ୱର ରୂପ । ଏଠାରେ କର୍ମମାନ କରି ଶହେ ବର୍ଷ ବଞ୍ଚିବାପାଇଁ ଇଚ୍ଛା କରିବା ଉଚିତ (ଈଶ-ଉପ—୧.୨) । ମାତ୍ର କିପରି ଭାବରେ କର୍ମ କରି ବଞ୍ଚିବ ସେ ବିଷୟରେ କହୁଛନ୍ତି—

ଅନ୍ଧଂ ତମଃ ପ୍ରବିଶନ୍ତି ଯେଽବିଦ୍ୟାମୁପାସତେ ।
ତତୋ ଭୂୟ ଏବ ତେ ତମଃ ଯ ଉ ବିଦ୍ୟାୟାଂ ରତାଃ ॥
ବିଦ୍ୟାଂଚ ବିଦ୍ୟା ଚ ଯଃ ତଦ୍‌ବେଦୋଭୟଂ ସହ ।
ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ୱା ବିଦ୍ୟାୟାଽମୃତ ମଶ୍ନୁତେ ॥
ଅନ୍ଧଂ ତମଃ ପ୍ରବିଶନ୍ତି ଯେଽସଂଭୂତିମୁପାସତେ ।
ତତୋ ଭୂୟ ଏବ ତେ ତମୋ ଯ ଉ ସଂଭୂତ୍ୟାଂରତାଃ ॥
ସଂଭୂତିଂ ଚ ବିନାଶଂ ଚ ଯଃ ତଦ୍‌ବେଦୋଭୟଂସହ ।
ଅସଂଭୂତ୍ୟା ମୃତ୍ୟୁଂ ତୀର୍ତ୍ୱା ସଂଭୂତ୍ୟାମୃତମଶ୍ନୁତେ ॥

ଅର୍ଥାତ୍, ଅବିଦ୍ୟା ବା ଜଗତର ମୋହଜନକ ଭୋଗାଦି ଯେ ସବୁ ବୋଲି ଧରନ୍ତି, ସେ ଅନ୍ଧାରରେ ପଡନ୍ତି, ପୁଣି ଏସବୁ ଭୋଗ କିଛି ନୁହେଁ, କେବଳ ବ୍ରହ୍ମ ହିଁ ସବୁ ବୋଲି ଯେ ଧରି ବସନ୍ତି, ସେ ତାହିଁରୁ ଅଧିକ ଅନ୍ଧକାରରେ ପଡନ୍ତି । ବିଦ୍ୟା ଓ ଅବିଦ୍ୟା ( ତ୍ୟାଗ ଓ ଭୋଗ ) ଦୁହିଙ୍କୁ ଯେ ପରସ୍ପରର ସାପେକ୍ଷ ବୋଲି ବୁଝି ଦୁହିଙ୍କୁ ଏକାଠି ସମାଧାନରେ ଉପାସନା କରନ୍ତି, ସେ ଏକା ଅବିଦ୍ୟାରେ ମୃତ୍ୟୁ ବା ଦେହଧର୍ମକୁ ପାର ହୋଇ ବିଦ୍ୟାରେ ଅମୃତ ବା ନିତ୍ୟ ଶାନ୍ତି ପାଏ । ସଂଭୂତି ( ବିକାଶ ) ଅସଂଭୂତି (ବିନାଶ) ଅବ୍ୟକ୍ତ ଭାବ ପ୍ରଭୃତିରେ ପୁଣି ସେଇ କଥାର ଆବୃତ୍ତି ଅନ୍ୟ ଶ୍ଳୋକମାନଙ୍କରେ ହୋଇଛି—ଗୀତାର ଏଇ ମତ ।

## ଦୁଇଟିରୁ କୌଣସିଟି ହେୟ ବା ଉପାଦେୟ ନୁହେଁ—

ଆତ୍ମା ଓ ଭୂତ କେହି ଏକାନ୍ତ ଗ୍ରାହ୍ୟ ନୁହେ, କି ଏକାନ୍ତ ହେୟ ନୁହେ । ଆତ୍ମା ନ ଖୋଜି ଯେ ଭୂତରେ ମାତନ୍ତି ସେ ତ ଭୁଲ କରନ୍ତି, ମାତ୍ର ଭୂତ ଖୋଜି ମଧ୍ୟ ଯେ ଏକା ଆତ୍ମାରେ ମାତନ୍ତି ସେ ବି ତାଠାରୁ ବେଶି ଭୁଲ କରନ୍ତି । କେବଳ ଭୋଗ ଧର୍ମରେ ମାତିବା ଠିକ୍ ନୁହେ କି କେବଳ ଆତ୍ମଜ୍ଞାନରେ ମାତି ରହିବା ଠିକ୍ ନୁହେ । ଭୂତ ଆତ୍ମା ଦୁହିଙ୍କୁ ଏକ ବସ୍ତୁର ଦୁଇ ଆଡୁ ଦେଖିବା ବୋଲି ବୁଝି ବିଶ୍ୱର କର୍ମରେ ରହି ଈଶ୍ୱରଙ୍କୁ ସବୁଠାରେ ଦେଖିବାକୁ ହେବ । ଏଥିରେ ହିଁ ବିଶ୍ୱବସ୍ତୁର ଯଥାର୍ଥ ମୂଲ୍ୟ ନିରୂପଣ । ଅନ୍ୟଥା ଏହା ଖଣ୍ଡିତ ଓ ଅସମ୍ପୂର୍ଣ୍ଣ ।

## ସ୍ୱାଧୀନ ଆତ୍ମାରେ ବିଶ୍ୱର ସଂବନ୍ଧ—

ଶିଶୁ ଅବତୀର୍ଣ୍ଣ ହୁଏ । ସେ ପୂର୍ଣ୍ଣ ସ୍ୱାଧୀନ ଭାବରେ କେତେଗୁଡ଼ିଏ କ୍ରିୟାରେ ଆତ୍ମପ୍ରକାଶ କରେ । ବାଧା ସେ ସହିପାରେ ନାହିଁ । ଟିକିଏ ବାଧା ପାଇଲେ ସେ କାନ୍ଦି ଉଠେ । କ୍ରିୟାର ବିସ୍ତାରରେ ତାର ଆତ୍ମ ପ୍ରକାଶ ପାଏ । କର୍ମରେହିଁ ଆତ୍ମାର ପ୍ରକାଶ

ସେତକ ନୁହେ, ପ୍ରକୃତ ମଧ୍ୟ ନଜ କ୍ରିୟାରେ ଏଇ ଆତ୍ମପ୍ରକାଶର ସ୍ଥିତ ଠିକ୍ କରି-ହଏ । ମାତାର ସ୍ତନ ତା ପାଇଁ ପ୍ରସ୍ତୁତ ଥାଏ । ତାର କାମନା ପୂର୍ଣ୍ଣ ହୁଏ । ସେତକ ନୁ ହ । ସୂର୍ଯ୍ୟ କରଣ ହଏ । ଶିଶୁ ଆଖି ମେଲଏ । ଆଖି ଝଲସି ଯାଏ । ସେଥିରେ ଶିଶୁର କ୍ରିୟା ସଙ୍ଗତ ହୁଏ । ଗୋଡ଼ ଘୁଞ୍ଚେ । ଗୋଡ ଭୂମିରେ ବାଜେ । ଶିଶୁକୁ କାଟେ । କ୍ରମେ ଭୂମି ଉପରେ ଆଘାତର ପରିମାଣ ସଂଯତ ହୋଇଯାଏ । ଏହିପରି ନିଜ କର୍ମରେ ବିଶ୍ୱକର୍ମର ଯେଉଁ ସମ୍ଭବ ଓ ସଂସର୍ଶ ହୁଏ, ସେଥିରେ ସେ ସବୁ ବସ୍ତୁର ମୂଲ୍ୟ ନିରୂପଣ କରେ । ଏହି ମୂଲ୍ୟ ହେଉଛି—ପ୍ରତ୍ୟେକ ବିଶ୍ୱକର୍ମ ନିଜର ଆତ୍ମ ପ୍ରକାଶ ବା ବ୍ୟବହାରରେ କେତେ ଲାଗିବ । ଏଇ ଜ୍ଞାନ ଯେତେ ଠିକ୍ ହୁଏ—ମୂଲ୍ୟ ନିରୂପଣ ତେତେ ଅଭ୍ରାନ୍ତ ହୁଏ—ଆତ୍ମପ୍ରକାଶ ସେତେ ସୁନ୍ଦର ଭାବରେ ପ୍ରତିଷ୍ଠିତ ହୁଏ । ସେଥିରେ ହିଁ ସେ ଯେଉଁ ବିଶ୍ୱବସ୍ତୁର ସଂପର୍କରେ ଆସେ ତାର କ୍ରିୟା ଠିକ୍ ମାପିପାରେ, ଠିକ୍ ବୁଝିପାରେ । ସେ କ୍ରମେ ଦେଖେ ଏହାହିଁ ପ୍ରକାଶର ଧର୍ମ । ବୃକ୍ଷର ପତ୍ର ଓ ଭୂମିର କାଷ୍ଠଠାରୁ ଶ୍ରେଷ୍ଠମାନବ ପର୍ଯ୍ୟନ୍ତ, ବାଲୁକା କଣାଠାରୁ ସୂର୍ଯ୍ୟ ପର୍ଯ୍ୟନ୍ତ, ଏପରିକି ପ୍ରାଣର ପ୍ରୀତିଠାରୁ ଭୋଗର ତୃପ୍ତି ପର୍ଯ୍ୟନ୍ତ—ସମସ୍ତ ଭୂତ-ଭାବରେ ଏଇ ନିତ୍ୟ ଧର୍ମ । ଏହା ଏକ ବ୍ୟକ୍ତି ଓ ବିଶ୍ୱର ନିତ୍ୟ ସମ୍ବନ୍ଧର କ୍ରିୟା ପ୍ରତିକ୍ରିୟା—ବ୍ୟଷ୍ଟି ଓ ସମଷ୍ଟିର ବିଚିତ୍ର ସମ୍ବନ୍ଧ । ଏଥିରେ ସମସ୍ତେ ଅଲଗା ପୁଣି ସମସ୍ତେ ଲଗା—ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ, ମାତ୍ର ସମସ୍ତର ଅଙ୍ଗୀଭୂତ ହେବା ଛଡ଼ା ସେ ସ୍ୱାତନ୍ତ୍ର୍ୟର କୌଣସି ସ୍ଥାନ ବା ଅର୍ଥ ନାହିଁ । ପ୍ରତ୍ୟେକ ବ୍ୟକ୍ତିର ଧାରଣାରେ—ଏକଦିଗରୁ—ତାହା ବ୍ୟକ୍ତି—ଅନ୍ୟଦିଗରୁ ବିଶ୍ୱ; ଏକଦିଗରୁ ସ୍ୱାତନ୍ତ୍ର୍ୟ—ଅନ୍ୟ ଦିଗରୁ ବିଶ୍ୱନିର୍ଭର ମଧ୍ୟରେ ହିଁ ଏଇ ସ୍ୱାତନ୍ତ୍ର୍ୟର ଯଥାର୍ଥ ସ୍ଥାନ ଓ ଅର୍ଥ । ଏକଦିଗରୁ ଏହା ଭୋଗର ପ୍ରବାହ, ପୁଣି ଅନ୍ୟଦିଗରୁ ତ୍ୟାଗର ପରଂପରା ।

## ଭୂମା ଓ ସୀମାର ସଂପର୍କରେ ହିଁ କର୍ମର ମୂଲ୍ୟ ନିରୂପିତ ହୁଏ—

ପୁଣି ମୁଁ ଯେପରି ବ୍ୟକ୍ତି, ବିଶ୍ୱମଧ୍ୟ ସେଇପରି ବ୍ୟକ୍ତି । ପ୍ରତ୍ୟେକ ବ୍ୟକ୍ତି ମଧ୍ୟ ଶାନ୍ତ ତଥା ଅନନ୍ତ । ଏକ ଦିଗରୁ ତାହା ସୀମାବଦ୍ଧ, ଅନ୍ୟଦିଗରୁ ତାହା ଅସୀମ, ଭୂମା । ଏଇ ଭୂମା ସଙ୍ଗେ ସୀମାର ଯଥାର୍ଥ ସଂପର୍କହିଁ ମୂଲ୍ୟର ମାନ । ଏଇ ମୂଲ୍ୟ ନିରୂପଣରେ ହିଁ ଯଥାର୍ଥ ଅବବୋଧ ଜାଗ୍ରତ ହୁଏ । ଏହାହିଁ ବହୁରେ ଏକ ଓ ଏକରେ ବହୁ—ତ୍ୟାଗରେ ଭୋଗ ଓ ଭୋଗରେ ତ୍ୟାଗ—ଭୂତରେ ଅଧ୍ୟାତ୍ମ ଓ ଅଧ୍ୟାତ୍ମରେ ଭୂତ । ଏହାହିଁ ଯେ ଦେଖେ ସେ ଦେଖେ ।

## ବିନାଶ ମଧ୍ୟରେ ନିତ୍ୟତା—ମୃତ୍ୟୁରେ ଅମୃତ—

ଏଇ ନିତ୍ୟ ମୃତ୍ୟୁମୟ କ୍ଷଣିକ ବିଶ୍ୱ ମଧ୍ୟରେ ବ୍ୟକ୍ତି ଅମୃତ ଭୋଗକରେ । ଏଇ ଅବିଦ୍ୟା ବା ବିନାଶ ଧର୍ମରେ ସେ ନିଜର ନିତ୍ୟ ବ୍ୟକ୍ତିତ୍ୱର ପ୍ରକାଶ କରେ । ଏଇ କ୍ଷର ପ୍ରକାଶ ମଧ୍ୟରେ ସେ ନିତ୍ୟ ଅପ୍ରକାଶ ଦେଖି ଶାନ୍ତ ହୁଏ ବା ଅମୃତ ପାଏ ।

## ଭୋଗର ବିଲୋପରେ ତ୍ୟାଗର ମୂଲ୍ୟ ନାହିଁ—

ଭୋଗର ବିଲୋପ ତ୍ୟାଗ ନୁହେ । ଭୋଗର ନିତ୍ୟତ୍ୱ ହିଁ ତ୍ୟାଗର ପ୍ରାଣ । ତ୍ୟାଗର ମୂଲ୍ୟ ସେଇଠାରେ । ଏହା ଦେଖିବା ହିଁ ଭୋଗକୁ ବୁଝିବା । ଏହା ବୁଝି ଏଇ ନିତ୍ୟତ୍ୱରେ ଭୋଗର ପ୍ରକୃତ ଅନୁଭବ କରିବା ହିଁ ଶାନ୍ତି ବା ଅମୃତର ଯଥାର୍ଥ ସ୍ୱାଦନ । ଏହାହିଁ ଭୋଗ, ଏହାହିଁ ତ୍ୟାଗ—ଏହାହିଁ ପୂର୍ଣ୍ଣର ଯଥାର୍ଥ ଅବବୋଧ । ଏହାହିଁ ମୁକ୍ତି ଓ ଅମୃତ ।

## ସାମାନ୍ୟ ଉଦାହରଣ—ଦର୍ଶନ ଓ ଜ୍ଞାନ—

ଆଜି ଜଣେ ୧୦୦ ଘଣ୍ଟା ପହଁରୁଚି, ବାୟୁଯାନରେ ସାତ ଦିନରେ ପୃଥିବୀ ବୁଲୁଚି, ଚନ୍ଦ୍ରକୁ ଯିବାପାଇଁ ତୀବ୍ର ବିସ୍ଫୋରକ ଦେଇ ବାୟୁଯାନ ତିଆରି କରି ସେଥିରେ ହୁଏତ ମରୁଚି । କାହିଁକି ? ପୃଥିବୀର ଆଜି ଏ ଭୋଗ ତାଣ୍ଡବ ମଧ୍ୟରେ ଏ କି ବ୍ୟାକୁଳତା; କି ଜଞ୍ଜାଳ ? ଭୋଗ ଭିତରେ ଏ ମହା ତ୍ୟାଗର ସାଧନା କାହୁଁ ଆଇଲା ? ଏହାର ଅର୍ଥ କଣ ? ଏହାର ମୂଲ୍ୟ କାହିଁ ? ଏହାର ମୂଲ୍ୟ ନିରୂପଣ କେଉଁଥିରେ । କେବଳ ଭୋଗ ନୁହେଁ । ଭୋଗ ତ ଏଥିରେ ନାହିଁ । ଏ ଏକ ସ୍ଥାୟିତ୍ୱ ଓ ନିତ୍ୟତ୍ୱ ଆଡ଼କୁ ସ୍ପଷ୍ଟ ଗତି । ଏଇ ସବୁ କ୍ରିୟାରେହିଁ ଭୋଗର ଯଥାର୍ଥ ମୂଲ୍ୟ ଓ ଉପଯୋଗିତା ସ୍ଥିର ଅଛି । ମାନବର ଏଇ ବ୍ୟକ୍ତ କ୍ରିୟାକୁ ଠିକ୍ ମୂଲ୍ୟ ଦେଇ ବୁଝିଲେ ହିଁ ଯଥାର୍ଥରେ—

"ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ୱା ବିଦ୍ୟୟାଽମୃତମଶ୍ନୁତେ ।"

ଯେ ଏଇ ସବୁର ଯଥାର୍ଥ ମୂଲ୍ୟ ନିରୂପଣ କରି, 'ଏକରେ ବହୁ ଓ ବହୁରେ ଏକ'—ତଥା ଭୋଗରେ ତ୍ୟାଗ ଓ ତ୍ୟାଗରେ ଭୋଗ—ପୁଣି ଭୂତରେ ଆତ୍ମା ଓ ଆତ୍ମାରେ ଭୂତ—ପ୍ରକାଶରେ ଅବ୍ୟକ୍ତ ଓ ଅବ୍ୟକ୍ତରେ ପ୍ରକାଶ—ଦେଖେ, ସେଇ ହେଉଚି ଦ୍ରଷ୍ଟା—ସେଇ ଦାର୍ଶନିକ । ଦର୍ଶନ ତାରି ଅଛି—ଯେ ଏହା ନ ବୁଝି ବିଶ୍ୱକୁ ଚାହିଁ ରହିଚି ଦର୍ଶନ ତାର ନାହିଁ । ହେଥିପାଇଁ ତତ୍ତ୍ୱ ବସ୍ତୁକୁ 'ଦର୍ଶନ' କହନ୍ତି ।

ଅନେକ ସଂଶୟୋ ଚ୍ଛେଦ୍ୟ ପରୋକ୍ଷାର୍ଥସ୍ୟ ଦର୍ଶନଂ
ସର୍ବସ୍ୟ ଲୋଚନଂ ଜ୍ଞାନଂ ଯସ୍ୟ ନାସ୍ତ୍ୟନ୍ଧ ଏବ ସଃ ।"

ଅର୍ଥାତ୍ ଏଇ ମୂଲ୍ୟ ନିରୂପଣରେ ଅନେକ ପ୍ରକାର ସଂଦେହ ନାଶ କରି ପ୍ରତ୍ୟକ୍ଷର ଭୋଗରେ ମୀମାଂସା ହୋଇ ପାରୁ ନଥିବା ସଂଶୟମାନ ତୁଟାଇଦେଇ, ଯାହା ପ୍ରତ୍ୟକ୍ଷରେ ଅବ୍ୟକ୍ତର ପ୍ରୟୋଜନ ବା ଉପଯୋଗିତା ଦେଖାଇ ଦିଏ, ତାହାହିଁ ଜ୍ଞାନ —କେବଳ ପ୍ରତ୍ୟକ୍ଷ ବା କେବଳ ପରୋକ୍ଷ ଜ୍ଞାନ ନୁହେଁ । ଏ ଜ୍ଞାନ ଯାହାର ନାହିଁ, ସେଇ ଏକା ଅନ୍ଧ—ସେଇ ଏକା 'ଅନ୍ଧଂ ତମଃ ପ୍ରବିଶତି' ।

## ସତ୍ୟ ମାନରେ ମୂଲ୍ୟ ନିରୂପଣ—ଧର୍ମ ସତ୍ୟ ହିଁ ଅସତ୍ୟ—

ଆତ୍ମା ଓ ଦେହର ଏଇ ସଂବନ୍ଧ ସ୍ଥିର ଓ ନିତ୍ୟ । ଏଇ ଦର୍ଶନର ସତ୍ୟ ଦୃଷ୍ଟିରେ ସମାଜ ଓ ସଭ୍ୟତାର ସ୍ଥିତି ଓ ବିକାଶ ଲୋଡ଼ିବାକୁ ହେବ । ଶିକ୍ଷା କହ, ରାଜ୍ୟ କହ, ବାଣିଜ୍ୟ କହ, ନିର୍ମାଣ କହ, ବ୍ୟବହାର କହ—ସମସ୍ତ ସାମାଜିକ ଅନୁଷ୍ଠାନରେ ଏଇ ମୂଲ୍ୟ ନିରୂପଣ କରି ସବୁ କର୍ମର ଉପଯୋଗିତା ଦେଖିବାକୁ ହେବ । ଦେହ ଓ ଆତ୍ମା ଦୁଇଟିକୁ ସର୍ବଦା ସମାନ ଭାବରେ ବୁଝି ପ୍ରତି କର୍ମର—ପ୍ରତି ଚିନ୍ତାର ଅଙ୍ଗୀଭୂତ କରିବାକୁ ହେବ । ଅଲଗା ଅଲଗା କରି ବୁଝିବାର ଉପାୟ ନାହିଁ । ସେପରି ବୁଝି ବସିଲେ—ସେଥିରେ ସତ୍ୟ ନାହିଁ । ଅର୍ଦ୍ଧ ସତ୍ୟ ହୋଇ ବସ୍ତୁ ନୁହଁ । ଅର୍ଦ୍ଧ ସତ୍ୟ, ଅସତ୍ୟ । ଦେହ ଓ ଆତ୍ମାକୁ ବିଚ୍ଛିନ୍ନ କରି ଗୋଟିକୁ ବୁଝି ବସିଲେ—'ଇତୋଭ୍ରଷ୍ଟ, ତତୋଭ୍ରଷ୍ଟ' । ସେପରି ବୁଝିବା ଲୋକ ବା ସମାଜ ଦେହ ପାଏ ନାହିଁ କି ଆତ୍ମା ପାଏ ନାହିଁ; ଦେହରେ ନିବିଷ୍ଟ ରହି, ଆତ୍ମାର ନାଶ କରେ ବା ଆତ୍ମାରେ ନିବିଷ୍ଟ ରହି ଦେହର ନାଶ କରେ । ସେ ଅର୍ଦ୍ଧ ସତ୍ୟ ବା ଅସତ୍ୟକୁ ସତ୍ୟ ବୋଲି ଧରି ବସେ—ଚିନ୍ତା ଓ ସଂସ୍କାରରେ ନିଷ୍ଠୁର ହୁଏ ।

## ଭୂତ ଆତ୍ମାର ସମ୍ୟକ୍ ସମାଧାନ ହିଁ ଏଇ ସତ୍ୟ—ଏହାହିଁ ଦର୍ଶନ—ଏହାହିଁ ମାପ—

ଭୂତ ବା ଭୌତିକ ବସ୍ତୁ ନାମରୂପରେ ବଦଳିଲେ ମଧ୍ୟ ତାର ବିନାଶ ନାହିଁ । ପ୍ରକାଶର ଅନନ୍ତ ପରିଣାମରେ ସେଇପରି ଆତ୍ମା ମଧ୍ୟ ଅଖଣ୍ଡ ଓ ଅବିନାଶୀ । ଏ ଦୁଇଟି ପରସ୍ପର ସଂବନ୍ଧରେ ଅଚ୍ଛେଦ୍ୟ । ଏଇପରି ମୂଲ୍ୟମାନରୁ ବିଚ୍ୟୁତ ହେଲେ ସମସ୍ତ ବିଦ୍ୟା ଅବିଦ୍ୟା ହୁଏ, ପୁଣି ଏଇ ମୂଲ୍ୟମାନରେ ଦେଖିଲେ ସମସ୍ତ ଅବିଦ୍ୟା ବିଦ୍ୟା ହୁଏ । ବ୍ୟକ୍ତି ସମଷ୍ଟିର ଯଥାର୍ଥ ସଂପର୍କରେ ଏଇ ମୂଲ୍ୟମାନ ସତ୍ୟର ନିର୍ଣ୍ଣୟ କରିହୁଏ । ଏଇ ଜ୍ଞାନ ହିଁ ସତ୍ୟର ଜ୍ଞାନ । ରସାୟନ, ପଦାର୍ଥ ବିଦ୍ୟା, ମନୋବିଜ୍ଞାନ ପ୍ରଭୃତି ସବୁ ବିଦ୍ୟା ଭଲ ମାତ୍ର ସବୁ ବିଦ୍ୟାର ବିଦ୍ୟା, ବିଦ୍ୟାର ଦର୍ଶନ । ସେଇ ଦର୍ଶନରେ ଏସବୁର ଯଥାର୍ଥ ମୂଲ୍ୟ ଓ ଯଥାର୍ଥ ସମାଧାନ । ରସାୟନ ମଧ୍ୟ ପରମାଣୁ ଭାଗ କରି ବିଦ୍ୟୁତରେ ଏକ ଖୋଜୁଛି—ପଦାର୍ଥ ବିଦ୍ୟା, ମାଧ୍ୟାକର୍ଷଣରୁ ବିଶ୍ୱର ଆପେକ୍ଷିତାକୁ ଉଠି ଦ୍ରବ୍ୟ ବା ଦେଶର କଳ୍ପନାରେ ଦୀର୍ଘ ପ୍ରସ୍ଥ ବେଧ ସଂଗେ କାଳକୁ ଚତୁର୍ଥ କରି ଯୋଡ଼ି ସମାଧାନର ଉଦ୍ୟମ କରୁଛି । ମାତ୍ର ବିଶ୍ୱରେ ଜୀବନ ଓ ଚେତନାର ମୀମାଂସା ହେଉ ନାହିଁ—ବଂଧୁତା ବା ପ୍ରୀତି ମପା ଯାଉନାହିଁ—ଭୂତରେ ଅବ୍ୟକ୍ତର ମୂଲ୍ୟ ନିରୂପିତ ହେଉ ନାହିଁ । ପୁଣି ମନୋବିଜ୍ଞାନ ଚେତନା ଓ ପ୍ରୀତିକୁ ମାପିବାକୁ ଯାଉଛି, ମାତ୍ର ଦେଶକାଳକୁ ସେଥିରେ ମାପିପାରୁ ନାହିଁ, ଦେଶ କାଳର ମୂଲ୍ୟ ନିରୂପଣ କରିପାରୁ ନାହିଁ । ଏ ଦୁହେଁ ଅନ୍ଧତମରେ ପଡ଼ିଚନ୍ତି ।

ପୁଣି ଯେ କହୁଚ ଜଗତ୍ ଓ ବିକାଶ କିଛି ନୁହେଁ, ସେ ଆଉଗୋ ଅନ୍ଧ । କିଛି ନୁହେ କହିଲେ, ଜଗତ ଶୂନ୍ୟ ହୋଇଯିବ ନାହିଁ କିଂବା କର୍ମର ବିରାମ ହେବ ନାହିଁ । ଏ ଆତ୍ମହତ୍ୟାରେ ମଧ୍ୟ ସମାଧାନ ନାହିଁ । ଏ ମୂଲ୍ୟରେ ବିଶ୍ୱକୁ ମାପି ହେବ ନାହିଁ । ଏଇ ମୂଲ୍ୟରେ ବିଶ୍ୱ ମାପୁ ମାପୁ, ସମାଜରେ 'ସହଜିଆ' ଆଗ୍ରହଠାରୁ ଭୈରବୀଙ୍କ ଅଷ୍ଟ ମାନସିକ କ୍ରିୟା ଓ ହଠ ଯୋଗ ପର୍ଯ୍ୟନ୍ତ ବାହାର ଭୂତରାଜ୍ୟରେ ବିଶୃଙ୍ଖଳାର ତାଣ୍ଡବ ସୃଷ୍ଟି କରିଥିଲା । ଏ ସମସ୍ତ ଭିତରେ ସମାଧାନ, ସାମଂଜସ୍ୟ ଓ ସମନ୍ୱୟ ହିଁ ଯଥାର୍ଥ ଜ୍ଞାନ । ଏହା ଛଡ଼ା ବିଦ୍ୟା ଅବିଦ୍ୟା ହୁଏ, ଯେଥିରେ ବିକାଶର ବୃଦ୍ଧି ନ ହୋଇ ପରିଣାମରେ ହାନି ଓ ବିଶୃଙ୍ଖଳା ହୁଏ । ଆଜି ପୃଥିବୀରେ ବିଜ୍ଞାନର ଯେ ବିକାଶ ସେଥିରେ ଜଗତ ବା ମାନବ ସମାଜ ସୁଖରୁ ସୁଖରେ ଶାନ୍ତିକୁ ଗତି କରିବା ସମସ୍ତେ ଆଶା କରନ୍ତି । କିନ୍ତୁ ତାହା ହେଉ ନାହିଁ । ଅଶାନ୍ତି, ବିପଦ୍ ଓ ଧ୍ୱଂସର ମୋହ ବଢ଼ୁଚି । ଜାତିସଂଘ ବସି ମଧ୍ୟ ଶାନ୍ତି ନାମରେ ବିଶ୍ୱମେଧ ଯଜ୍ଞର ସମିଧ ସଂଗ୍ରହ କରୁଚନ୍ତି । କାହିଁକି ? କାରଣ ସେ ସବୁ ବିଦ୍ୟାରେ ଯଥାର୍ଥ ମୂଲ୍ୟ ନାହିଁ—ସେ ମୂଲ୍ୟ ନିରୂପିତ ହେଉ ନାଇ । ପରୋକ୍ଷ ପ୍ରତ୍ୟେକଜନରେ ତାହା ମାପ ହେଉ ନାହିଁ—ବିଦ୍ୟା ଅବିଦ୍ୟାର ସମାଧାନ ଓ ସମନ୍ୱୟ ହୋଇ ଥିବାର ଏସବୁରେ 'ଦର୍ଶନ' ଫୁଟୁ ନାହିଁ । ଏଇ 'ଦର୍ଶନ' ହିଁ ମୂଲ୍ୟ । ଏଇ 'ଦର୍ଶନ' ହିଁ ମାପ ।

## ମାନବର ଖାଲି ଭୌତିକତାରେ ଆତ୍ମନାଶ ହୁଏ—

ପୃଥିବୀରେ ଆଜି ଧନର ସଂଗ୍ରାମ । ଜନତାର ପେଟକୁ ଦାନା ନାହିଁ, ଧନର ସଂଚୟ ଓ ସଂଗ୍ରହରେ ସୁରକ୍ଷିତ ସ୍ୱାର୍ଥ ତୃପ୍ତ । ଏତେବେଳେ ଆତ୍ମା ଖୋଜୁଚ କିଏ । ଆତ୍ମା ଆଦର୍ଶବାଦୀର ଅନୁସନ୍ଧାନର ସାମଗ୍ରୀ । ସେପରି ଆଦର୍ଶବାଦୀ ମହାମାନବ ହୋଇପାରେ । ମାତ୍ର ସାଧାରଣ-ମାନବ ସେ ନୁହେ । ସାଧାରଣ ମାନବର ଭୌତିକ ଦେହ କ୍ରିୟାହିଁ ସର୍ବସ୍ୱ । ତାର ସମାଧାନ ସେ ଲୋଡ଼ିବ । ମାତ୍ର ସେଥିରେ ହିଁ ଅନ୍ଧ ହେଲେ ସେ ସମାଧାନ ମିଳିବ ନାହିଁ । ତା ମିଳି ନାହିଁ । ଏହାହିଁ 'ଦର୍ଶନ'ର ସିଦ୍ଧାନ୍ତ । ମୂଲ୍ୟ ଠିକ ନ କଲେ ବସ୍ତୁର ନିରୂପଣ ନାହିଁ । ପ୍ରୟୋଜନ ଅର୍ଥ ହିଁ ଏଇ ମୂଲ୍ୟର ମାନ, ତଥାପି ସେ ପ୍ରୟୋଜନ ସେ ଅର୍ଥ—ତଥା ସେ ମୂଲ୍ୟ ଆତ୍ମବିକାଶର ଧାରାରେ ଖୋଜିବାକୁ ହେବ । ଅନ୍ୟତ୍ର ଉପାୟ ନାହିଁ । ନିତାନ୍ତ ଭୌତିକ ଭାବରେ ବୁଝିଲେ ମଧ୍ୟ ଏହାହିଁ ବୁଝାଯିବ । ଆତ୍ମାକୁ ଛାଡ଼ି ଭୂତ ରହିବ ନାହିଁ । ଦୁହେଁ ଯେ ଏକା ବସ୍ତୁର ଦୁଇଟି ଦୃଷ୍ଟି । ତା ଛଡ଼ା ପ୍ରୟୋଜନ ବ୍ୟାପ୍ତି କିପରି ବୁଝାଯିବ ? ମାନବକୁ କ୍ଷୁଦ୍ର ବୋଲି କହିଲେ, ମହାମାନବଠାରୁ ଅଲଗା କଲେ, ସମାଜର କ୍ରିୟାରେ ସମାଧାନ ହେଲା ନାହିଁ । ମାନବ କ୍ଷୁଦ୍ର ହେଲେ, ତାର ମାନବତା ନାହିଁ । ସେ ଅମନୁଷ୍ୟ । ସେ 'ପ୍ରଣଶ୍ୟତି' ।

## ଖାଲି ଆତ୍ମିକତାରେ ଭ୍ରଷ୍ଟାଗ୍ରହ ହୁଏ—

ପୁଣି 'ଭାରତ' ଭଳି ଯେଉଁଠାରେ ଆତ୍ମିକ ମୋହ ଏକା ଘୋଟି ରହିଛି, ତାକୁ ମଧ୍ୟ କର୍ମ ଦେଖି ଭୌତିକତାର ଆଶ୍ରୟ ନେବାକୁ ହେବ । ଖାଲି ଆତ୍ମା ଆଡ଼କୁ ଦୃଷ୍ଟିଦେଲେ ମଧ୍ୟ ଆଗ୍ରହ କୁସଂସ୍କାର ମାଧ୍ୟରେ ପର୍ଯ୍ୟବସିତ ହୋଇ ମାନବକୁ ଭ୍ରଷ୍ଟକରିବ । ସେଥିପାଇଁ ଭୌତିକତାର ବିକାଶ ଏ ଦେଶରେ ଲୋଡ଼ା, ମାତ୍ର ଭୌତିକତାରେ ଆତ୍ମା ଭୁଲିବା ଠିକ୍ ନୁହେଁ । ଜଗତର ଆଜି ଏ ସନ୍ଧିବେଳେ ଭୌତିକତାର ମେଦ ଓ ମହାସାଗର ମସ୍ୟତାଣ୍ଡବ ତଥା ଆତ୍ମିକତାର କୁସଂସ୍କାର ଓ ଜଡ଼ତା ମଧ୍ୟରେ ସମୂହ ସମାଧାନ ଲୋଡ଼ା । 'ଦର୍ଶନ'ରେ ଏଇ ସମାଧାନ ପାଇଁ ଗୀତାର 'ପୁରୁଷୋତ୍ତମ' ହିଁ ଯଥାର୍ଥ ପଥ ପ୍ରଦର୍ଶକ । ସେ ପନ୍ଥା ଦେଖି କର୍ମର ନିଷ୍ଠା ଓ ଜ୍ଞାନର ପ୍ରୟୋଜନରେ ଜଗତରେ ମୂଲ୍ୟ ନିରୂପଣ ପନ୍ଥା ଯେ ଦେଖିବ ଓ ଦେଖାଇବ ସେଇ ଆଜି ଏ ଧର୍ମହାନିରେ ଯଥାର୍ଥ ବିଶ୍ୱାତ୍ମା ଓ ବିଶ୍ୱକର୍ମର ଅବତାର ବୋଲି ବୁଝିବାକୁ ହେବ ।

## 'ପୁରୁଷୋତ୍ତମ' ଭାବ ଏକା ଆତ୍ମିକତା ନୁହେଁ—

ଭାରତକୁ ଆଧ୍ୟାତ୍ମିକତାର କୁସଂସ୍କାର ଭୂମି ବୋଲି ଦେଖିବା ଠିକ୍ ନୁହେଁ । ଏଇ ଦେଶରେ ସଭ୍ୟତାର ଧାରା ସମାଧାନରେ ଫୁଟି ବିକାଶରେ 'ଦର୍ଶନ' ସୃଷ୍ଟି କରିଛି । ଭାରତ ବିଦେଶରେ ବିଜୟ କରିଛି, ବାଣିଜ୍ୟ କରିଛି, ଅଧିକାର କରି ନାହିଁ; ଲୁଟି କରି ନାହିଁ । ଭୌତିକ ସଭ୍ୟତାରେ ବିଶ୍ୱମାନବର ଶିକ୍ଷକ ହୋଇଛି, ସେ ଶିକ୍ଷାର ବାହାଦୁରି କରି ଲୋକଙ୍କୁ ମୁକ୍ତ ବାର୍ଣ୍ଣିବାର ଅହଂକାରରେ ଆତ୍ମନାଶ କରିନାହିଁ । ବିଜିତକୁ ଦାସ ନ କରି ସମାଜର ମଧ୍ୟ ଅଙ୍ଗ କରିଛି ଓ କର୍ମରେ ସ୍ୱାଧୀନ କରିଛି; ବିଜେତାକୁ ମଧ୍ୟ ଅତିଥି କରି ଆତ୍ମଦାନ କରିଛି । ଏଇ ଦେଶର ଦ୍ରଷ୍ଟାମାନେ ତତ୍ତ୍ୱରେ ବିଶ୍ୱ ଓ ବିଶ୍ୱରେ ତତ୍ତ୍ୱ ଦେଖିଚନ୍ତି—ବୁଝିଚନ୍ତି ଭୂତସଙ୍ଘ ଅବ୍ୟକ୍ତର ବିକାଶ ଓ ଅବ୍ୟକ୍ତ ଭୂତର ଅଧ୍ୟାତ୍ମ । ଭିତରୁ ବାହାରକୁ ଗୁହିଁଲେ ଯାହା ବ୍ୟକ୍ତ ଓ ଭୂତ, ଭାବ, ବାହାରୁ ଭିତରକୁ ଗୁହିଁଲେ ସେଇ ଏକା ଅବ୍ୟକ୍ତ ଓ ଆତ୍ମା—ଏହାହିଁ ଗୀତାର 'ପୁରୁଷୋତ୍ତମ' ।

## କର୍ମରେ ମୂଲ୍ୟ ନିରୂପଣର ମାନ-ଆତ୍ମାର ଆଦର୍ଶ—

ମାତ୍ର ମୂଲ୍ୟ ନିରୂପଣରେ ଭ୍ରାନ୍ତ ଘଟେ । ଏଥିରେ ଜଗତର ଭୁଲ୍ୟମାନ ନାହିଁ । ସମାଜର ବ୍ୟବହାରରେ ଦେଖ । କିଏ ଆଜି ପଇସାରେ ମୂଲ୍ୟ ନିରୂପଣ କରେ; କିଏ ଏହାକୁ ଭୋଗରେ ମାପେ, ଭୋଗର ସାମଗ୍ରୀରେ ଇତର ବିଶେଷ ତୁଳନା କରେ କିଏ ପୁଣି ଦେହ ରକ୍ଷାର ଆବଶ୍ୟକତା ମାଧ୍ୟରେ ଏଇ ମୂଲ୍ୟମାନ ନିରୂପଣ କରେ । ଏ ହିସାବରେ ସଚସ୍ତ ଭୋଗ ଓ ଶରୀର ଯାହା ପ୍ରଭୃତି ସମାଜର ଭିନ୍ନ ଭିନ୍ନ

ଆଦର୍ଶ ଫୁଟେ । ସେଇ ଆଦର୍ଶହିଁ ଏ ମୂଲ୍ୟମାନ ବା ମାପରେ ବିକଶି । ପୁଣି କିଏ ଏ ସବୁ ମୂଲ୍ୟରେ ବସ୍ତୁର ଅବ୍ୟକ୍ତ ମୂଲ୍ୟ ଖୋଜି ନିର୍ଧାରଣ କରିବାକୁ ଯାଏ; ଆତ୍ମା ଓ ଆତ୍ମପ୍ରକାଶର ବିକଶିରେ ଭୂତ ଓ ଭାବର ମୂଲ୍ୟ ମାପେ । ସମସ୍ତଙ୍କର ଅବଶ୍ୟ ଆତ୍ମପ୍ରକାଶହିଁ ଆଦର୍ଶ । ମୁଁ ରହିବ, ବଢ଼ିବ ଏଇ ଭାବ, ଏସବୁ ଭିତରେ ପ୍ରଚ୍ଛନ୍ନ । ସେଇ ଏକା ମୂଲ୍ୟର ମାନ । ମାତ୍ର ସେଇ ମୁଁଟି ଭିନ୍ନ ଭିନ୍ନ ଭାବରେ ବୁଝାଯାଏ ଓ ପ୍ରକାଶିତ ହୁଏ । କିଏ ସଞ୍ଚୟରେ ମୁଁକୁ ବଢ଼ାଇବାର ସାମଗ୍ରୀ ଆହରଣ କରେ, କିଏ ଭୋଗରେ ମୁଁକୁ ପୋଷେ ଓ ବଢ଼ାଏ, କିଏ ଶରୀର ମାତ୍ରରେ ମୁଁକୁ ବାନ୍ଧି ରଖେ, କିଏ ଏ ସବୁଥିରୁ ଅତୀତ ମୁଁକୁ ଏ ସମସ୍ତ ଭିତରେ ଏକ ଓ ପ୍ରଚ୍ଛନ୍ନ ସତ୍ତା ଓ ଶକ୍ତିରୂପେ ଦେଖି, ଏଇ ମୁଁର ଆତ୍ମପ୍ରକାଶରେହିଁ ସମସ୍ତ କର୍ମର ଶୃଙ୍ଖଳା ଓ ସମାଧାନ ଦେଖେ । ଯାହାର ମୁଁ ଯେ ପ୍ରକୃତିର, ସେଇଥିରେ ସେ ସମସ୍ତ କର୍ମ ବା ବିଶ୍ୱ ସମ୍ପର୍କ ମାପି, ସେ ସମସ୍ତର ମୂଲ୍ୟ ନିରୂପଣ କରେ ।

## ଆଦର୍ଶ ଓ ବେଦନା—ବୁଦ୍ଧି—

ଏଇ ମୁଁ ସାଧନାରେ ପ୍ରକାଶ ପାଏ, ବେଦନାରେ ଏହାର ପ୍ରତିଷ୍ଠା । ବେଦନା ଓ ସାଧନାର ଏଇ ନିତ୍ୟ ସମ୍ବନ୍ଧ ବରାବର ଲକ୍ଷ୍ୟ କରିବାର ଅଛି । ଆଦର୍ଶରେ ଏଇ ବେଦନା ନିୟମିତ ହୁଏ । ସ୍ୱଭାବତଃ ଏଇ ବେଦନା କାମରେ ପ୍ରତିଷ୍ଠିତ ରହି ଭୋଗରେ ପ୍ରକାଶ ପାଏ । ସମସ୍ତ ଜନ୍ତୁ ଜଗତରେ ଏହାହିଁ ଦେଖାଯାଏ । ମନୁଷ୍ୟର ଏହା ଅଛି; ମାତ୍ର ଏହା ଛଡ଼ା ଆଉ କିଛି ଅଛି । ତାକୁଇ ବୁଦ୍ଧି କହନ୍ତି । ଏଇ ବୁଦ୍ଧିରେ ଆଦର୍ଶର ପ୍ରଭାବ ପଡ଼ି ବେଦନା ନିୟମିତ ହୁଏ । ଏଇ ବୁଦ୍ଧି ବଳରେ ମନୁଷ୍ୟ ସର୍ବଦା ନିକଟ ଛାଡ଼ି ଦୂରକୁ ଚାହେଁ; ତ୍ୟାଗରେ ଭୋଗ ଲୋଡ଼େ—ଦୁଃଖରେ ସୁଖର କଳ୍ପନା କରି ଦୁଃଖ ବରଣ କରେ । ୧୦୦ ଘଣ୍ଟା ପହଁରିବା ଓ ୭ ଦିନରେ ପୃଥିବୀ ବୁଲିବା, ଚନ୍ଦ୍ରକୁ ଯିବାପାଇଁ ବାୟୁଯାନରେ ମରିବା, ଆଫ୍ରିକାର ଜଂଗଲରେ ସିଂହ, ସିପାଞ୍ଜୀର ଚଳଣି ଦେଖିବା ପାଇଁ ଏକାକୀ ନିର୍ଜନରେ ସର୍ବଦା ସହସ୍ର ବିପଦର ସମ୍ମୁଖୀନ ହେବା ପ୍ରଭୃତି କ୍ରିୟାର ବେଦନାରେ ଏବେ ମଧ୍ୟ ଏଇ ବୁଦ୍ଧି, ଭୋଗର ଦୁରନ୍ତ ବେଦନା ମଧ୍ୟରେ ସ୍ପଷ୍ଟ ଦେଖାଯାଇପାରେ । ସଂଚୟରେ ଭୋଗ ନାମରେ ଏହି ତ୍ୟାଗ ଦେଖାଯାଏ । ଏହାହିଁ ମନୁଷ୍ୟ । ଏଥିରେ ଯେଉଁ ଆତ୍ମା ବିକାଶ ପାଏ, ତାହା ନିକଟ ଭୋଗକୁ ଦୂରରେ ଦେଖି କି ଆତ୍ମଲାଭ କରେ, ବୁଝିବାର ଅଛି । ଏଇ ବୁଝିବାରେ କ୍ଷଣିକ ଆତ୍ମା ଆତ୍ମା ନୁହେଁ, ବୁଦ୍ଧି ଏହାହିଁ ଇଂଗିତ କରୁଛି—ଆତ୍ମାର ନିତ୍ୟତ୍ୱ ତଥା ବିଶାଳତ୍ୱ ଆଡ଼କୁ ସଙ୍କେତ ଏଥିରେ ସ୍ପଷ୍ଟ ଦେଖା ପଡ଼ୁଛି । ଆଫ୍ରିକା ଜଂଗଲର ଦୁଃଖ କାହାପାଇଁ ? ଚନ୍ଦ୍ରଗାମୀ ବାୟୁଯାନରେ ସହସା ମୃତ୍ୟୁ କେଉଁ ଆତ୍ମାର କି ସୁଖପାଇଁ ? ଏହାହିଁ ଆତ୍ମାର ନିତ୍ୟତ୍ୱର ସଂକେତ । ସ୍ୱଭାବର କର୍ମରାଶି ମଧ୍ୟରେ ସଂଯମ ହିଁ ଏଇଠାରେ ମୂଲ୍ୟର ମାନ ନିରୂପଣ କରେ । ଏଇ ସଂଯମର ସୂତ୍ର ଧରି

ଆତ୍ମାର ସ୍ୱଭାବ ବୃତ୍ତି ସମ୍ବେଦନାର ଭିତ୍ତି ଠିକ୍ କରି ଏଇ ସ୍ୱଭାବରେ ନିୟନ୍ତ୍ରିତ କର୍ମପନ୍ଥା ଧରି ସମାଜର ଶୃଙ୍ଖଳାରେ ତାହାର ପ୍ରୟୋଗ କରିବା ହିଁ ଆଗ୍ରହରେ ଦର୍ଶନ । ଭାରତର ଦ୍ରଷ୍ଟାମାନଙ୍କର ସେଇ ଦର୍ଶନ ପ୍ରକାଶ ପାଇଥିଲା । ଭାରତ କହିଲେ ଏବର ଆଗ୍ରହ ଓ କୁସଂସ୍କାର ନ ଦେଖି ଏଇ ଦର୍ଶନର ପ୍ରତି ଫିଟାଇ ଦେଖିବାର ଅଛି । ଐତିହାସିକ କିମ୍ବା ରାଜୀର ଆବରଣ ଫିଟାଇ ଏହା ଦେଖିବାର ଅଛି । ସ୍ୱାଧୀନ ଭାରତର ଏଇ କର୍ମମାନ ଓ ମୂଲ୍ୟ ନିରୂପଣ ପ୍ରତି ଲକ୍ଷ୍ୟ ରଖି ଗୀତା ଧର୍ମ ଓ ସ୍ୱଧର୍ମ ବଢ଼ିବାର ଅଛି ।

## 'ଶରୀରଯାତ୍ରା' କଥାଟିର ଅର୍ଥ—

ପଶୁର ସ୍ୱଭାବ ସମ୍ବେଦନା ମନୁଷ୍ୟର ବରାବର ନାହିଁ ନୁହେଁ, ମାତ୍ର ସେଥିପାଇଁ ମନୁଷ୍ୟ ମନୁଷ୍ୟ ନୁହେଁ । ସେ ସବୁ ଶରୀରରକ୍ଷାର ସ୍ୱଭାବ ସମ୍ବେଦନାକୁ ଆତ୍ମାର ସାଧନାରେ ମିଳାଇ ନେବାକୁ ହୁଏ । ସେଥିପାଇଁ ଶରୀର ରକ୍ଷାର କର୍ମକୁ 'ଶରୀରଯାତ୍ରା' (୩.୮) ବୋଲି ଗୀତା କହନ୍ତି । ଏଇ 'ଶରୀରଯାତ୍ରା' କଥାଟି ଏବେ ମଧ୍ୟ ଏ ଦେଶରେ ସାଧାରଣ କଥା । ଏହାର ଅର୍ଥ ଏଇ ଶରୀର ରକ୍ଷାର କ୍ରିୟାରେ ଆତ୍ମପ୍ରକାଶ ତଥା ଆତ୍ମଲାଭ ଅଭିମୁଖ ଯାତ୍ରା । ମାନବର ମାନଙ୍କ ଆତ୍ମପ୍ରକାଶକୁ ଆତ୍ମଲାଭ କହନ୍ତି । କାରଣ ପାଶବିକ ସାକ୍ଷାତ ଭୋଗର ସମ୍ବେଦନାରେ କର୍ମ କରି ସେଇଥିରେ ହିଁ ଭୋଗର ମୂଲ୍ୟ ନିରୂପଣ କଲେ, ମାନବିକ ଆତ୍ମାର ନାଶ ହୁଏ; ଆତ୍ମଲାଭ ହୁଏ ନାହିଁ ।

## 'ଆତ୍ମଜ୍ଞାନ'—

ତେଣୁ ଏଇ ମାନବିକ ସମ୍ବେଦନାପୀଠ ବା ବୃତ୍ତିହିଁ ମାନବ ଓ ପଶୁର ଭେଦରେ ସଙ୍କେତ । ଏଇ ବୃତ୍ତିରେ ସମ୍ବେଦନାକୁ ନିୟନ୍ତ୍ରିତ, ସଂଯତ ଓ ଶୃଙ୍ଖଳିତ କରିବାକୁ ହୁଏ । ତେଣୁ ସମାଜର ଶୃଙ୍ଖଳାରେ କେବଳ ମାନବର ମାନବ ସଙ୍ଗେ ନୁହେଁ, ମାନବର ଜନ୍ତୁ ସଙ୍ଗେ ସମ୍ବନ୍ଧ ମଧ୍ୟ ଠିକ୍ ହୋଇଯାଏ । ଏଇ ଜ୍ଞାନର ଯଥାର୍ଥ ବିକାଶ ଓ ପ୍ରୟୋଗରେ ସ୍ୱଧର୍ମରେ ହିଁ ବିଶ୍ୱଧର୍ମ ପ୍ରତିଷ୍ଠିତ ହୁଏ ଓ ସଙ୍ଗେ ସଙ୍ଗେ କ୍ଷଣିକ ଓ ନିତ୍ୟର ସମ୍ବନ୍ଧ ପ୍ରତିଭାତ ହୁଏ । ଏଇ ଜ୍ଞାନକୁ କହନ୍ତି ଆତ୍ମଜ୍ଞାନ । ଭଗବାନ ସେଇ ତତ୍ତ୍ୱର ପ୍ରକାଶ କରି କର୍ମ ନିୟମର ସଙ୍କେତରେ କହୁଛନ୍ତି—

ଯେନ ଭୂତାନ୍ୟଶେଷାଣି
ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋ ମୟି (୪.୩୫)

ଅର୍ଥାତ୍ ଏଇ ଜ୍ଞାନ ହେଲେ, ଅଶେଷ ଭୂତଙ୍କୁ ଆତ୍ମାରେ ଦେଖିବ ଓ ବିଶ୍ୱରେ ଦେଖିବ । ବାସ୍ତବରେ ମାନବ, ଜନ୍ତୁ ଏପରି କି ବସ୍ତୁର ସମସ୍ତ ସମ୍ବେଦନାର ସତ୍ତା ଓ ସଙ୍କେତ ମାନବର ନିଜ ଭିତରେ ଅଛି । ଜଗତର ସମସ୍ତ ଅନାଗ୍ରହ

କାମନା ନିଃସ୍ପୃହତାଦି ଏହି ଆତ୍ମାରେ କେତେବେଳେ ନା କେତେବେଳେ ପ୍ରକାଶ ପାଇଛି ଓ ପାଉଛି । ଦେଖ, କେହି ଯଦି କହିବେ, ରାଜ୍ୟର ଲୋକେ ବିଚାର କରି ଯେବେ ସମସ୍ତଙ୍କୁ ସମାନ ଭୋଗ ବା ଭୋଗପାଇଁ ସମାନ ସୁବିଧା ଦେଇଦେବେ ତେବେ ସମାଜରେ ଶାନ୍ତି ରହିବ, ଏ କଥାର ପ୍ରତିବାଦ କରିବାର ଅସ୍ତ୍ର ବା ସାଧନ ଆମ ପାଖେ କଣ ଅଛି ? ସମାଜ ମଧ୍ୟରେ ଏ କଳ୍ପିତ ପରିସ୍ଥିତିର ସମାଲୋଚନା କ'ଣ ଘେନି କରିବାକୁ ହେବ । ଏହି ସମାଲୋଚନାର ସାଧନ ଭିତରେ । ଏକର ଅପର ପ୍ରତି ଈର୍ଷାର ପ୍ରତିକାର ଏ ଅବସ୍ଥାରେ ନାହିଁ । ପୁଣି ରକ୍ଷିତ ଓ ସଞ୍ଚିତ ସ୍ୱାର୍ଥ ଏଥିରେ ଧ୍ୱଂସ ହେବ ନାହିଁ । କାରଣ 'ରାଜ୍ୟ' ବୋଲି ଯେ ସଂସ୍ଥାକୁ ଏହାର ବଣ୍ଟନ ଭାର ଦେବେ ତାଙ୍କ ଭିତରେ ବୁଦ୍ଧି ଓ ବିଚକ୍ଷଣତା ଭେଦରେ ନେତୃତ୍ୱ ଓ ଦଳ ଫୁଟିବ ଓ ଏହି ଦଳ ସଙ୍ଗେ ବୁଦ୍ଧି ବଳରୁ ଭୋଗ ଓ ଧନର ରକ୍ଷିତ ସ୍ୱାର୍ଥ ପୁଣି ଉଠିବ । ଆହୁରି ମଧ୍ୟ କାହାରିକୁ—'ତୁ ଏତିକି ପାଇବୁ'—ବୋଲି କହି ଅନ୍ୟ କେହି ସନ୍ତୋଷ ଦେଇ ପାରିବ ନାହିଁ—ଇତ୍ୟାଦି । ଏ ସବୁ ଯୁକ୍ତି କରି ଠିକ୍ କଲୁ, ଏ ଶୃଙ୍ଖଳାରେ ସମାଜ ତିଆରି କରିହେବ ନାହିଁ ମାତ୍ର । ଏ ସବୁ ଯୁକ୍ତିର ପ୍ରାମାଣିକତା କେଉଁଠାରେ ? ସବୁ ଏହି ଆତ୍ମାରେ । ଏଠାରେ ଈର୍ଷା ଅଛି, ସ୍ୱାଧୀନତାର ସନ୍ତୋଷ ଓ ପରାଧୀନ ଦାତବ୍ୟ ଭୋଗରେ ଅତୃପ୍ତି ଅଛି, ବୁଦ୍ଧିର ବ୍ୟବହାରରେ ଅନ୍ୟକୁ ପ୍ରଭାବିତ କରି ଆତ୍ମପ୍ରତିଷ୍ଠା କରିବାର ପ୍ରବୃତ୍ତି ଅଛି—ଏ ସବୁ ଅଛି । ଆମେ ଏ ସବୁ ବୃତ୍ତି ବା ପ୍ରବୃତ୍ତିର କି ବ୍ୟବହାର କରୁଛୁ ସେ ସ୍ୱତନ୍ତ୍ର କଥା । ମାତ୍ର ଏ ପିଣ୍ଡରେ ନ ଥିବା ଜିନିଷ ବ୍ରହ୍ମାଣ୍ଡରେ ନାହିଁ । ବିଶ୍ୱକର୍ମର ମୂଲ୍ୟ ନିରୂପଣ କରିବାର ସବୁ ବଟକରା ଏହି ଆତ୍ମାରେ ଅଛି । ଏହି ଅତି ସାଧାରଣ କଥାଟିରେ ଉଦାହରଣ ଦେଇ ବୁଝାଇ ଦିଆଗଲା ଯତ, "ମାତ୍ର ଆତ୍ମଜ୍ଞାନ ସର୍ବଜ୍ଞାନର ସତ୍ୟତାର ପରିମାପକ" ବୋଲି ଯେ ବଚନଟି ଅଛି ତାହା ସର୍ବତୋଭାବରେ ଦର୍ଶନର ବାକ୍ୟ, ଏଥିରେ ସନ୍ଦେହ ନାହିଁ । ଲୋକ ପାଠ ପଢ଼ି ବିଜ୍ଞାନ, ଗଣିତ, ଭୂତତ୍ତ୍ୱ, ପ୍ରାଣିତତ୍ତ୍ୱ, କାବ୍ୟ, ଏପରି କି ଦର୍ଶନ ଓ ବେଦାନ୍ତ ସବୁ ଜାଣିପାରେ, ସେ ସବୁରେ ଦୀର୍ଘ ଓ ଚମତ୍କାର ବକ୍ତୃତାମାନ ଦେଇପାରେ, ପ୍ରବନ୍ଧ ଲେଖିପାରେ, ମାତ୍ର ଏହି ଆତ୍ମଜ୍ଞାନର ତୁଳା ଦଣ୍ଡଟି ବିନା ସେ ସବୁ ନୀରସ ଓ ମୂଲ୍ୟହୀନ । ଋଷି କହନ୍ତି—

"ନାୟମାତ୍ମା ପ୍ରବଚନେନ ଲଭ୍ୟଃ
ନ ମେଧୟା ନ ବହୁନା ଶ୍ରୁତେନ ।"

ଅର୍ଥାତ୍, ଏ ଆତ୍ମା ଶାସ୍ତ୍ରବଚନ ପଢ଼ିଗଲେ ଜଣା ପଡ଼େ ନାହିଁ, ମେଧାବୀ ଲୋକର ଯୁକ୍ତିରେ ଏ ଗମ୍ୟ ନୁହେଁ, ବହୁତ ପଢ଼ିଲେ ମଧ୍ୟ ହୁଏନାହିଁ—କେବଳ ଏହି ସବୁ ପ୍ରଣାଳୀରେ ଏ ଜଣା ପଡ଼େନାହିଁ, ଜ୍ୟୋତିଷ ଗଣିତର ବିଦ୍ୟାରେ ଯେପରି ଗ୍ରହ ଜଗତର ଠିକ୍ ସ୍ଥିତି ଗତି ଜଣାପଡ଼େ, ଏ ସେପରି ପଢ଼ାପାଠର ଗଣନାରେ କଳ୍ପ

ହୁଏ ନାହିଁ । "ଯେ ଏଇ ଅତ୍ମାକୁ ଆଦରେ ବା ଆତ୍ମାର ଶ୍ରେଦନାଦ ଆଲୋଚନା କର ଦେଖେ, ତାର ପାଖେ ଏ ଆତ୍ମା ପ୍ରକାଶିତ ହୁଏ ।" ବାସ୍ତବକ ଉପଯୁକ୍ତରେ ଯେବେ ବୁଝାଯାଏ, ସମସ୍ତେ ତ ଶ୍ରେଗର ସମାନ ସୁବଧା ପାଇବେ, ଯାହାର ଯେତେ ଦରକାର ତାଙ୍କୁ ଦଆଯିବ, ଆଉ ଲୋକେ ଈର୍ଷା କରବେ କାହିଁ, ଲୋଭ ବା କରବେ କାହିଁ ? ପୁଣି ସମସ୍ତେ ତ ବଗ୍ଭର କର ସମାଜର ମଙ୍ଗଳପାଇଁ ରାଜ୍ୟ ଚଳାଇବେ, ସେଥିରେ ମତଭେଦ ହେବ କାହିଁ, ଦଳ ହେବ କାହିଁ ? ହୁଏତ ପ୍ରଥମରୁ ସଂସ୍କାରଜନତ ଦଳ କରବା ବା ବୈମତ୍ୟ ବଢ଼ାଇବା ଲୋକେ ହୁଏତ ତା ପୂର୍ବରୁ ହାଣ ଖାଇ ସାରଥିବେ । ଅଉ ବା ସେପର ଲୋକେ ଅସିବେ କାହୁଁ ? ଗଣିତ ଶାସ୍ତ୍ର ହସାବରେ ଏସବୁ ଠିକ୍ ହେଲା । ଦୁଇରେ ଗ୍ଭର ମିଶାଇଲେ ୬ ହେବ । ସମସ୍ତଙ୍କୁ ସମାନ ସୁବଧା ଦେଲେ ଈର୍ଷା ହେବ ନାହିଁ । ଏ ଦୁଇଟି ଏକାପର ଯୁକ୍ତି । ମାତ୍ର ଆତ୍ମା, ଗଣିତରେ ମପାହେବା ବସ୍ତୁ ନୁହେଁ । (ଏଇ ସଂପର୍କରେ ଗୀତା ୨. ୨୯ ଓ କଠୋପନଷଦ୍ ୨. ୭ ମଧ୍ୟ ଦେଖ ) ।

## ଏଇ ଆତ୍ମଜ୍ଞାନ ହିଁ କର୍ମ ନୟମରେ 'ସ୍ୱଭାବ'—

ସମାଜର ଶ୍ରେଦନାପୀଠ ତଥା କର୍ମ ନୟମିତ କରବାରେ ଆତ୍ମାର ନଜର ଜ୍ଞାନ ଛଡା ଆଉ ଉପାୟ ନାହିଁ । ଏହାହିଁ ପନ୍ଥା । ଯେଉଁ 'ସ୍ୱଭାବ'ରେ କର୍ମ ନୟମିତ ହୁଏ, ସେ ସ୍ୱଭାବ ଏଇ ( ୧୮. ୪୭ ) । ଏହାହିଁ ସ୍ୱଧର୍ମର 'ସ୍ୱ' । ଏହାହିଁ ସମସ୍ତ ବଦ୍ୟାର ବଦ୍ୟା । ବଦ୍ୟା ଶିକ୍ଷାରେ ଯାହା ଉପଯୋଗିତା ତାହା ଏଇଠାରେ । ଆଜ ବଜ୍ଞାନର ଆବିଷ୍କ୍ରିୟା ଲୋକନାଶରେ ଲଗୁଚ । ଗ୍ଭଷ୍ଟ୍ରସଂଘ ଗଣିତର ଫର୍ମୁଲା ବା ବୀଜସୂତ୍ର ପର ନୟମ ବାନ୍ଧି ପ୍ରତକାର ଲୋଡୁଚ । ମାତ୍ର ମାନବର ଶ୍ରେଦନା ଫଗେ ବଦ୍ୟାର ସମାଧାନ ନ ଥିବାରୁ କୌଣସି ଫଳ ହେଉ ନାହିଁ । ଆତ୍ମଜ୍ଞାନ ଏଇଠାରେ ଲୋଡା, ସବୁ ବଦ୍ୟାର ସମାଧାନ ଏଇଠାରେ; ଏହାହିଁ ବେଦ୍ୟାର ବଦ୍ୟା । ଏଇ ଜ୍ଞାନ ଉପରେ ଅନ୍ୟ ସମସ୍ତ ଜ୍ଞାନ ନର୍ଭର କରେ । ଏଇ ଜ୍ଞାନରେ ରହସ୍ୟମୟ ଜଗତର ଆବରଣ ଫିଟିଯାଏ । ବଶ୍ୱଗ୍ରନ୍ଥ ଫିଟି ଯେପର କ ଆଗରେ ପଡ଼ିଯାଏ; ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ସିନ୍ଧୁ, ସାଗର, ଗିର, କାନନ, ଦ୍ୟାବାଭୂମି ସମସ୍ତେ ଗଣିତ, ବଜ୍ଞାନ, କାବ୍ୟ, ଦର୍ଶନ ପ୍ରଭୃତ ସଂଗେ ଯେପର ନଜର ମୁକ୍ତ ମୋହନ ସତ୍ତା ପ୍ରକାଶ କରନ୍ତି । ପ୍ରତୀୟମାନ ଜଗତ୍, ପ୍ରତୀତର ଅତୀତଙ୍କୁ ଯେପର ବଶ୍ୱ ରହସ୍ୟକୁ ଏଇ ଆତ୍ମଜ୍ଞାନୀ ଆଗେ ମୁକୁଳା କର ପକାଇ ଦଅନ୍ତି ।

## ଏହାହିଁ ବୁଝି ଠିକ୍ କରବାର ବସ୍ତୁ—

ଅଷ୍ଟାଦଶ ବଦ୍ୟାରେ ସୁପଣ୍ଡିତ୍ ଶିଷ୍ୟଙ୍କୁ ମଧ୍ୟ ବୈଦକ ଋଷି ସେଇ ଆତ୍ମାର ଉପଦେଶ ହିଁ ଦେଇଛନ୍ତି । ଋଷି ପୁଣି ସ୍ପଷ୍ଟ କର କହିଛନ୍ତି—

"ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟଃ
ମନ୍ତବ୍ୟଃ ବୋଦ୍ଧବ୍ୟଃ ନିଦିଧ୍ୟାସିତବ୍ୟଃ ।"

ଅର୍ଥାତ୍, ଆରେ, ଆତ୍ମା ଏକା ଦେଖିବା, ଶୁଣିବା, ବିଚାରିବା, ବୁଝିବା, ଧ୍ୟାନ କରିବା ବସ୍ତୁ । ଆଉ ସବୁ ବିଦ୍ୟା ଏହାଛଡ଼ା କିଛିନୁହେ । ଏହାହିଁ ସବୁ ବିଦ୍ୟାର ବିଦ୍ୟା । ସମସ୍ତ ବିଦ୍ୟାର ଉପଯୋଗିତା ଏଇଠାରେ ଓ ଏହାର ସେସବୁ ଆପ ତତ୍ତ୍ୱବୋଧ ଓ ବିକ୍ଷୋଭ ଭିତରେ ସମାଧାନ । ଗୀତା ଏଇ ଆତ୍ମା ବା ଅଧ୍ୟାତ୍ମର ଜ୍ଞାନ ଦେବାପାଇଁ ଭକ୍ତି ଯୋଗର ଉପଯୋଗ ପର୍ଯ୍ୟନ୍ତ କରି ବିଶୃଙ୍ଖଳାରେ ସମାଜ ପ୍ରତିଷ୍ଠାକଲେ ଅର୍ଜ୍ଜୁନଙ୍କୁ ଏଇ ଆତ୍ମଧର୍ମର ଯୁଦ୍ଧରେ ପ୍ରବର୍ତ୍ତାଇଛନ୍ତି ।

## ଏଇ ଜ୍ଞାନଥିଲେ ମାନବ ସ୍ୱରାଟ୍ ବା ନିଜେ ନିଜର ରାଜା—

ଭାରତ ଧର୍ମରେ ତିନୋଟି ଭାବ ବା ବିଭାବରେ ଏଇ ଆତ୍ମତତ୍ତ୍ୱ ପ୍ରକାଶ ପାଏ । ଗୋଟିଏ ପରମାତ୍ମା, ଗୋଟିଏ ବିକାଶ ଶକ୍ତି—ମାୟା, ତୃତୀୟଟି ବିକାଶରେ ସ୍ପଷ୍ଟ ହୋଇ ମଧ୍ୟ ବିକାଶରୁ ଅତୀତ ବ୍ୟକ୍ତିତ୍ୱ ବା ଜୀବାତ୍ମା । ସେଇ କଳ୍ପନାରେ ପୁଣି ଏଇ ବିକାଶ ହିଁ ପରମାତ୍ମା । ଏକ ଦିଗରେ ସେ ଅଧ୍ୟାତ୍ମ ବ୍ୟକ୍ତିତ୍ୱ ବା ଜୀବାତ୍ମା; ଅନ୍ୟ ଦିଗରେ ତ୍ରିଗୁଣମୟୀ ମାୟା ବା ପ୍ରକୃତିର ଅନନ୍ତ ଭେଦରେ କର୍ମ ବିକାଶ ବା ବିଶ୍ୱମୟ ଭୂତ ଓ ଭାବ—ନାମ ଓ ରୂପ । ବସ୍ତୁ କର୍ମ ଭିତରେ ସଙ୍ଗତ ଏକ ବ୍ୟକ୍ତିତ୍ୱ । ପୁଣି ଏଇ ବ୍ୟକ୍ତିତ୍ୱର ସଂକେତ ମାନବର ଚେତନା । ଏଇଠାରେ ଚେତନ ଏକ ସଂଗେ ଅଚେତନ ବସ୍ତୁର ନିତ୍ୟ ରହସ୍ୟମୟ ସଂପର୍କ । ଏଇ ବସ୍ତୁ ନ ଥିଲେ ଏକର ଧାରଣା ନାହିଁ; ପୁଣି ଏକ ନ ଥିଲେ ମଧ୍ୟ ବସ୍ତୁର ପୀଠ ବା ସତ୍ତା ନାହିଁ । ପ୍ରକାଶର ନାମ ରୂପରେ ଏଇପରି ଏକ ସୂତ୍ର ଓ ଶୃଙ୍ଖଳା—ଏକ ସତ୍ୟ ଓ ଏକ ଋତ । ଜନ୍ମ ସୃଷ୍ଟି ଓ ନିତ୍ୟ । ଏଇ ନିତ୍ୟ ପ୍ରକାଶର ଅନ୍ତର ଧର୍ମରେ—ଏଇ "ଭୂତଭାବୋଦ୍ଭବକର ବିସର୍ଗ" (୮.୩) ମଧ୍ୟରେ, ପରମାତ୍ମା ପୁରୁଷୋତ୍ତମଙ୍କର ସୁଖଦୁଃଖାତୀତ ଆନନ୍ଦ ଓ ଏଇ ଆନନ୍ଦରେ ହିଁ କ୍ଷର ଜଗତର ଅନନ୍ତ ନାମ ରୂପମୟ ପରିମାଣ ମଧ୍ୟରେ, ଏଇ ନାମ ରୂପରୁ ଅତୀତ ବିଶ୍ୱାତ୍ମ-ପୁରୁଷ ସତ୍ୟ ଓ ଚେତନ । ସମସ୍ତ କ୍ଷର ଶୃଙ୍ଖଳାର ଆଧାର ସେଇ ବିଶ୍ୱରାଜ ଈଶ୍ୱର—ବିଶ୍ୱରାଜ ହେଲେହେଁ ସ୍ୱରାଟ୍ । ଆତ୍ମା ହିଁ ବିଶ୍ୱାତ୍ମାର ପ୍ରକାଶରେ ପ୍ରତିକାଶ—ଆତ୍ମା ସ୍ୱରାଟ୍ । ଉପନିଷଦରେ ଋଷି କହିଛନ୍ତି,—

"ଯସ୍ତ୍ୱାତ୍ମବାନ୍ ସ ଏବ ସ୍ୱରାଟ୍ ଭବତି"

ଅର୍ଥାତ୍, ଯେ ଆତ୍ମବାନ୍, ସେଇ ଏକା ସ୍ୱରାଟ୍ ।

## ଏଇ ସ୍ୱରାଜ୍ୟ ହିଁ ଚରମ ମାନବିକ ବିକାଶ—

କ୍ରମ ନିୟମ ବିନା ମାନବର ବିକାଶ ଧାରଣା ନାହିଁ । ଦେଶ କାଳରେ ହିଁ ମାନବ କ୍ରୋର ଗତି । ଭୌତିକ ବିଶ୍ୱ ବିକାଶ କ୍ରମରେ ଏ ସ୍ୱରାଜ୍ୟ ଲାଭ ଏକା ଚରମ

ବିକାଶର ସଙ୍କେତ । ଗୁଣ କ୍ରମରେ ତମ ଓ ରଜଗୁଣରୁ ଉଠି ସତ୍ତ୍ୱରେ ସ୍ଥିର ରହିଲେ, 'ନିତ୍ୟ ସତ୍ତ୍ୱସ୍ଥ' ହେଲେ; ଏଇ ସ୍ୱରାଜ୍ୟ ଆସେ । ଆତ୍ମଲାଭରେ ସମ୍ବେଦନାର ଆଦର୍ଶ ଯହାର ଯେତେ ଦୂର, ବିସ୍ତୀର୍ଣ୍ଣ ଓ ନିତ୍ୟ ସେ ସେତିକି ଗୁଣକ୍ରମରେ ବିକଶିତ ଓ ପରିଣାମରେ ଉନ୍ନତ ।

## ଆତ୍ମ ଜ୍ଞାନରେ ମାନବର କ୍ରମବିକାଶ--ଇନ୍ଦ୍ରିୟ, ମନ, ବୁଦ୍ଧି ଓ ବୁଦ୍ଧିର ପର—

ମନୁଷ୍ୟ ଆଜି କହୁଚି, ଏ ସବୁ ସ୍ୱରାଜ୍ୟ ଓ ଆତ୍ମଜ୍ଞାନର ଜଗତରେ କି ଉପଯୋଗିତା ? ଏଥିରେ ମାନବର ଦୈନନ୍ଦିନ ଅଭାବ ପୂରଣ ହେବ କି ? ଲୋକେ ଆଜି ଅନ୍ନବସ୍ତ୍ର ନ ପାଇ ବ୍ୟାକୁଳ, ତାର ରହିବାକୁ ଘର ନାହିଁ, ରୋଗରେ ପ୍ରତିକାର ନାହିଁ, ଶିକ୍ଷା ଦେବାର ବଳ ନାହିଁ, ଜୀବନରେ ଭୋଗ ବିଳାସ ତ ଦୂରର କଥା—'ସିନେମା', 'ଟକି' ପ୍ରଭୃତି ଦେଖିବା, ବେତାର ସଂଗୀତ ଶୁଣିବା ପ୍ରଭୃତି ତାକୁ ବା ଦଉଚି କିଏ ? ଦାର୍ଶନିକର କଥା ଶୁଣି ଦ୍ରଷ୍ଟାର ଅନୁଭୂତିର ସମ୍ବେଦନା ମାପି ତାର କି ଲାଭ ? ଏକଥା ଆଜି କିଛି ନୂଆହୋଇ କୁହାଯାଉନାହିଁ । ପୂର୍ବେ—ବହୁପୂର୍ବରୁ—ଏହା କୁହାଯାଇଚି । ଏବେ କୁହାଯାଉଚି, ପୁଣି ନିକଟ ତଥା ଦୂର ଭବିଷ୍ୟତରେ ମଧ୍ୟ କୁହା ଯାଉଥିବ । ଏମାନେ ଆତ୍ମା ତ ଆତ୍ମା, ମନର ବିସ୍ତାରେ ମଧ୍ୟ ଧ୍ୟାନ ଦେବେ ନାହିଁ । ତାଙ୍କର ସର୍ବସ୍ୱ, ତାଙ୍କ ଦେହ । ତାଙ୍କର ମତ, 'ଯାବଜ୍ଜୀବେତ୍ ସୁଖଂ ଜୀବେତ୍'—'ଆପେ ମଲେ ଯୁଗ ବୁଡ଼ ।" କେବଳ ଭୌତିକ ପ୍ରକାଶର ସଂପର୍କ ହିଁ ସେମାନଙ୍କର ମୂଲ୍ୟମାନ । ସେମାନେ ମନ ବୁଦ୍ଧିର ଧାର ଧାରନ୍ତି ନାହିଁ । ମନୁଷ୍ୟ କାହିଁକି ଗ୍ରହଣଟିଏ ଦେଖିବାକୁ ଇଂଲଣ୍ଡରୁ ଜାହାଜ ଚଢ଼ି ସୋଲୋଇଟି ଦ୍ୱୀପର ନିର୍ଜନ ବା ନରମାଂସ-ଲୋଲୁପ ହିଂସ୍ରଜନ୍ତୁ ଓ ହିଂସ୍ର ମାନବ-ସଙ୍କୁଳ ଜଂଗଲରେ ଝିଟିକା ପରି ମଶାଙ୍କ ଅବିଚ୍ଛିନ୍ନ ବିଚିତ୍ର ବଂଶୀ ସ୍ୱନ ମଧ୍ୟରେ ତମ୍ବୁ ପକାଇ ପଡେ; ତାହା ବୁଝି ସେଥିରେ କର୍ମର ମୂଲ୍ୟ ନିରୂପଣ ଚେଷ୍ଟା କରିବା ତାଙ୍କ କର୍ମ ନୁହେଁ । ଏମାନେ ଜନ୍ତୁରୁ ଟିକିଏ ଉପରେ ମାତ୍ର । ଚିନ୍ତା ଏହାଙ୍କର ଏକା ଶରୀର, ସେତିକିରେ ତାଙ୍କର ସନ୍ତୋଷ । ଅନ୍ୟତ୍ର ତାଙ୍କର ପ୍ରଶ୍ନ ନାହିଁ କି ସଂଶୟ ନାହିଁ । ଏପରି ଏକାନ୍ତଦେହସର୍ବସ୍ୱ ମାନବ କ୍ୱଚିତ୍ ସମାଜରେ ଦେଖାଯାନ୍ତି । ସାଧାରଣତଃ ସାମାଜିକ ମାନବର ସୁଖ-ଦୁଃଖର ଅବବୋଧ ହେତୁ ପ୍ରଥମତରେ ସଂଶୟ ଜାଗ୍ରତ ଥାଏ । ସେଇ ସଂଶୟରେ ସନ୍ତୋଷ ଲୋଡ଼ିବାରେ ତାଙ୍କ ସମ୍ବେଦନା ନିୟମିତ ହୁଏ । ପ୍ରଥମ ଶ୍ରେଣୀର ଲୋକେ କେବଳ ଇନ୍ଦ୍ରିୟ-ସର୍ବସ୍ୱ ଓ ଇନ୍ଦ୍ରିୟ ବିସ୍ତାରେ ସମ୍ବେଦନା ଦେଖନ୍ତି । ମାତ୍ର ଏଇ ଦ୍ୱିତୀୟ ଶ୍ରେଣୀର ପ୍ରକାଶ ପାଏ—"ଇନ୍ଦ୍ରିୟେଭ୍ୟଃ ପରଂ ମନଃ" (୩.୪୨), ଇନ୍ଦ୍ରିୟଠାରୁ ମନ ବଡ଼ । ସମ୍ବେଦନାର ଭିତ୍ତି ମନରେ । ଏଇ ଠାରେ କାମର ସମ୍ବେଦନା ମନରେ ନିୟମିତ ହୁଏ; ଲୋକ ଦୁଃଖ ତ୍ୟାଗରେ ସୁଖ

ଲୋଡ଼େ, ଏଥିରେ ମାତ୍ର ତାର କାମନାର ଭୌତିକ କ୍ରିୟା ପ୍ରକାଶ ପାଏ । ତ୍ୟାଗର ଆରମ୍ଭ କିନ୍ତୁ ଏଇଠାରେ । ହେଲେହେଁ ଏହା ଯଥାର୍ଥ ତ୍ୟାଗ ପରି ଦିଶେ ନାହିଁ । ତା ଉପରକୁ ଉଠି ମନୁଷ୍ୟ ଦୂର ଦୃଷ୍ଟିରେ ହେୟୋପାଦେୟ ନିର୍ଣ୍ଣୟ କରି ଜ୍ଞାନଲାଭର ପ୍ରୟାସୀ ହୁଏ; କର୍ମର ବିଶ୍ଳେଷଣ ଓ ଅନୁସନ୍ଧାନ କରେ । ତାର କର୍ମ ଜିଜ୍ଞାସା ସ୍ପଷ୍ଟ ଜାଗ୍ରତ ହୁଏ; ଉଚିତ ଅନୁଚିତ, ଭଲ ମନ୍ଦ, ନ୍ୟାୟ ଅନ୍ୟାୟ ଧରି ସେ ପ୍ରେରଣା ନିୟତ କରେ । ଏଇଠାରେ ବୁଦ୍ଧିର ବିକାଶ । ଗୀତା କହନ୍ତି, 'ମନସସ୍ତୁ ପରା ବୁଦ୍ଧିଃ ।' ମାତ୍ର ଏଠାରେ ସୁଖର ଆଦାନରେ ଦୁଃଖର ନିବୃତ୍ତି ହୁଏ ନାହିଁ । ଏଇ ଦୁଃଖର ନିବୃତ୍ତି ବା 'ଦୁଃଖାନ୍ତ' ହିଁ ମାନବର ଲୋଡ଼ା । ତାହାହିଁ ବୁଦ୍ଧିର ଉପରେ ଓ ବୁଦ୍ଧିର ପ୍ରେରଣାର ପରମ ପୀଠ । ତାହାହିଁ ଆତ୍ମାର 'ଆନନ୍ଦ' । 'ସଚ୍ଚିଦାନନ୍ଦ'ର ଅନୁଭୂତିରେ ବିଶ୍ୱକର୍ମର ସଂଶୟ ତୁଟିଗଲେ ଏହା ହୁଏ । ଏଇ ବୁଦ୍ଧିର ଉପରେ ଯେ, ସେଇ ହିଁ ପରମାତ୍ମା, ପୁରୁଷୋତ୍ତମ । ସେଇ ଜ୍ଞାନ ହିଁ ଯଥାର୍ଥ ଆତ୍ମ-ଜ୍ଞାନ । ସେଇଠାରେ ମନୁଷ୍ୟ ଜାଣେ—

ବୁଦ୍ଧେର୍ଯଃ ପରତସ୍ତୁ ସଃ ।

ପୁଣି ସ୍ପଷ୍ଟ କରି ଭଗବାନ୍ ଅର୍ଜୁନଙ୍କୁ କହୁଚନ୍ତି—

ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା
ସଂସ୍ତଭ୍ୟାତ୍ମାନମାତ୍ମନା
ଜହି ଶତ୍ରୁଂ ମହାବାହୋ
କାମରୂପଂ ଦୁରାସଦମ୍ ॥ (୩.୪୩) ।

## ତେବେ ଆତ୍ମବାନ୍ ଏକା ସ୍ୱରାଟ୍—

ଆତ୍ମାର ଏଇ ବ୍ୟାପକତାରେ ନିଜକୁ ସମାଧିସ୍ଥ କଲେ, ଲୋକ ଆତ୍ମବାନ୍ ହୁଏ । ସେହି ସ୍ୱରାଟ, ସ୍ୱାଧୀନ—ସେଇ ନିତ୍ୟାନନ୍ଦମୟ—ସେହି ମୁକ୍ତ । କ୍ଷରରେ ଅକ୍ଷର ଓ ଅକ୍ଷରରେ କ୍ଷରର ସ୍ୱରୂପ ତାଙ୍କରି ପ୍ରଜ୍ଞାଗମ୍ୟ । ତାଙ୍କରିଠାରେ କ୍ଷର ଓ ଅକ୍ଷର ଏକ । ଆତ୍ମାର ବିକାଶରେ କର୍ମର ପ୍ରେରଣା ତାଙ୍କରି ଏକା ସ୍ଥିର । ସେଇ ଯୋଗସ୍ଥ ସେଇ ଦ୍ରଷ୍ଟା ।

## ସମାଜ ଓ ସମବ୍ୟବହାର—

ଏଇ ଆଦର୍ଶର ପ୍ରେରଣାରେ ସମାଜ ନିୟମିତ । ଏଥିରେ ଜଗତର ସକଳ ପ୍ରକାର ମାନବପ୍ରେରଣା ଅଙ୍ଗୀଭୂତ । ଆତ୍ମାର ପ୍ରେରଣାରେ ବିଶ୍ୱ ବୁଝାଯାଏ ସତ, ମାତ୍ର ବୁଝିବାକୁ ହେବ, ତଳ ଅବସ୍ଥାରେ ଥିବା ଲୋକେ ଉପରର ପ୍ରେରଣା

ବୁଝନ୍ତି ନାହିଁ । ତାହା ତାଙ୍କ ଅନୁଭୂତି ରାଜ୍ୟରେ ସ୍ପଷ୍ଟ ନ ଥାଏ । ସେ ସବୁ ବୁଝିବାରେ ତାଙ୍କର ସାଧନା ଲୋଡ଼ା । ଗ୍ରାମୀଣ କୃଷକ ଉପରେ କୁହାଯାଇଥିବା ଜ୍ୟୋତିଷଙ୍କ ଗ୍ରହଣ ପରିଦର୍ଶନ ଦୁଃଖର ବେଦନା ବୁଝିବା ସହଜ ନୁହେ । ମାତ୍ର ସେ ଜ୍ୟୋତିଷଙ୍କର ଗ୍ରାମୀଣ କୃଷକଙ୍କ କରଭାର ଦୁଃଖ ଓ ତଜ୍ଜନିତ ପରିବାର ପୋଷଣ ଯାତନାର କୃତ ବେଦନାର ଅପକର୍ମ ପର୍ଯ୍ୟନ୍ତ ବୁଝିବାରେ କୌଣସି ଅସୁବିଧା ହୁଏନାହିଁ । ସେହିପରି ସେଇ 'ବ୍ରହ୍ମବିଦ୍‌ ପର' ବା 'ପରାବର'ଙ୍କୁ ବୁଝି ଯେ ବେଦନାରେ ବୁଦ୍ଧିର ପରିସ୍ଥିତି ଠିକ୍ କରି ଜୀବନ୍ମୁକ୍ତ ହୋଇଛନ୍ତି, ସେ ଦ୍ରଷ୍ଟା; ଜଗତରେ କାହାରି ବେଦନା ତଥା ସେଇ ବେଦନାଜନିତ ସାଧନା ବୁଝିବାରେ ତାଙ୍କର ଅସୁବିଧା ହୁଏ ନାହିଁ । ମନୁଷ୍ୟ ମନୁଷ୍ୟ ଭିତରେ ଭେଦ ନାହିଁ ସତ । ସମସ୍ତେ ବେଦନାର ଅଧୀନ । ସ୍ୱଭାବର ବିକାଶ ଅନୁସାରେ ସେଇ ବେଦନାର ବିକାଶ ସମସ୍ତଙ୍କର ଏକ ନିୟମରେ ଚାଲିତ ହୁଏ । ବେଦନା ଓ ସାଧନାରେ ସମ୍ପର୍କ ସମସ୍ତଙ୍କର ସମାନ । ମାତ୍ର ବେଦନା ଭେଦରେ ସାଧନା ଭେଦ, ତଥା ଜ୍ଞାନ ରାଜ୍ୟରେ ଅଧିକାର ଭେଦ ନ ଦେଖିଲେ ଏ ସାମ୍ୟ ବୁଝାଯାଏ ନାହିଁ । ଖାଲି ସବୁ ମନୁଷ୍ୟ ସମାନ ବୋଲି କହିଦେଲେ ଲୋକେ କିଛି ବୁଝିବେ ନାହିଁ; ପୁରାଣ ପରଂପରାରେ ମାନି ଯାଉଥିଲେ ମଧ ଲୋକେ ତାହା ବୁଝନ୍ତି ନାହିଁ । ଅଭ୍ୟାସରେ ବହୁତ ସଂସ୍କାର କୁସଂସ୍କାର ମଧ ଲୋକେ ଏଇପରି ମାନି ଯାଆନ୍ତି । ମାତ୍ର ଯେ ବୁଝନ୍ତି, ଜ୍ଞାନର ମାତ୍ରାରେ ବେଦନା ଓ ବେଦନାର ଆଧାରରେ ସାଧନା ଫୁଟି ମାନବର ବ୍ୟକ୍ତିତ୍ୱ ବିକାଶ କରେ; ସେ ଲୋକ ଜାଣନ୍ତି । ଏଇ ନିତ୍ୟ ନିୟମରେ ସବୁ ମାନବ ସମାନ—ସମସ୍ତେ ସମାନ ଭାବରେ ଏଇ ନିୟମର ଅଧୀନ । ସେ ଲୋକଙ୍କର ସମସ୍ତଙ୍କ ପ୍ରତି ସମଭାବ—ସବୁଠାରେ ଅନୁକମ୍ପା । ସେ ପୁଣି ଅଧିକାର ବୁଝି ବ୍ୟବହାର କରନ୍ତି—ସମସ୍ତଙ୍କ ପ୍ରତି ଏକା ବ୍ୟବହାର ଅବଶ୍ୟ କରନ୍ତି ନାହିଁ—ମାତ୍ର ସମାନ ଭାବରେ ବ୍ୟବହାର କରନ୍ତି । କ୍ଷୁଧିତକୁ ଭାତ ଡ଼ାଲି ଦେବା ଓ ବସୂଚିକା ରୋଗୀକୁ ଶଂଖୁଆ ବା ମହୁରି ଦେବା, ପୁଣି ବ୍ରଣରୋଗୀକୁ ଅସ୍ତ୍ରାଘାତ ଦେବା ପ୍ରଭୃତି କଦାପି ଏକା ବ୍ୟବହାର ନୁହେଁ, ମାତ୍ର ଏ ସବୁ ସମବ୍ୟବହାର । ସର୍ବୋଚ୍ଚ ଶ୍ରେଣୀର ମାନବ ସେଇପରି ସମବ୍ୟବହାର କରନ୍ତି ।

## ସ୍ୱଧର୍ମ ଓ ଅଧିକାର—

ପୁଣି ଏଇ ବେଦନା ବା ବୃତ୍ତି ଯେତେ ବା ସ୍ୱଭାବର ଗୁଣ ଯେତେ ମାନବର ଯେଉଁ କର୍ମ ପ୍ରକାଶ ପାଏ, ତାହାହିଁ 'ସ୍ୱଭାବ ନିୟତ କର୍ମ' (୧୮.୪୭) ବା ସ୍ୱଧର୍ମ । ଏଇ ସ୍ୱଭାବନିୟତ କର୍ମରେ ସମାଜର ଶୃଙ୍ଖଳା । ଅଧିକାରର ମଧ ଯଥାର୍ଥ ଉପଯୋଗିତା ଏଇଠାରେ । ଏଇ ସ୍ୱଭାବନିୟତ କର୍ମ ଛାଡ଼ି ଉପର ଅବସ୍ଥାର ଉପଲବ୍ଧି ବିନା ପ୍ରଶଂସାର୍ହ ବୋଲି କର୍ମ ଧରି ବସିବା ଠିକ୍ ନୁହେ । ଅନ୍ୟ କେହି

ଭଲ କଥା କହୁଚନ୍ତି, ଦହଜରେ ସେ କାମଟା ହୋଇଯିବ ବୋଲି ଭ୍ରଷ୍ଟ ହେବା ଠିକ୍ ନୁହେ । ଜଣେ ଗ୍ରାମବାସୀ ଥରେ ଗୋଟିଏ ଯୁବକଙ୍କୁ ଶ୍ଵନ୍ୟଗାଡ଼ି (bicycle) ରେ ସୁନ୍ଦର ଗ୍ଲସାଉ ଥିବାର ଦେଖି ବଡ଼ ଲାଳସୀ ହୋଇ ଗ୍ଵହିଁଥିଲେ । ଯୁବକଟି ଗାଡ଼ିଟି ବାହାରେ ଥୋଇ ଦେଇ ଜଣେ ବନ୍ଧୁଙ୍କ ଘର ଭିତରକୁ ଯିବାବେଳେ ଗ୍ରାମବାସୀଟି ଗାଡ଼ିଟି ଧରି ହଠାତ୍ ଚଢ଼ି ଯାଇ ଦୁଇ ଗଡ଼ଗଡ଼ା ଖାଇ ରକ୍ତସ୍ନାନ ହୋଇ ବଡ଼ କଷ୍ଟରେ ଉଠିଲାବେଳକୁ ଯୁବକଟି ଖବର ପାଇ ଆସି ଦେଖିଲେ ଗାଡ଼ି ମଧ୍ୟ ଅକ୍ଷମ ହୋଇ ପଡ଼ିଛି । ସ୍ୱଭାବନିୟତ କର୍ମଗୁଡ଼ି ସୁଖକର ସୁନ୍ଦର ବୋଲି ଅନ୍ୟ କର୍ମ ଧରିଲେ ଏଇ ଫଳ ସମାଜରେ ହୁଏ । (୧୮. ୪୭) । ପୁଣି ବର୍ଣ୍ଣର ବୈଷମ୍ୟରେ ପ୍ରତ୍ୟେକର କର୍ମ ନିର୍ଦ୍ଦିଷ୍ଟ ଅଛି, ଲୋକର ଚେତନାର ପ୍ରକୃତି ଅନୁସାରେ ସମାଜରେ ସେଇ କଥା । ସେଇଥିରେ ବର୍ଣ୍ଣ ବୈଷମ୍ୟରେ ଅଧ୍ୟାତ୍ମର ସମତା ଯୋଗସ୍ଥ ଦ୍ରଷ୍ଟାମାନେ ଦେଖି ସମାଜ ନିୟମ ସ୍ଥିର କରି କହିଛନ୍ତି । ଏଇ ସ୍ୱକର୍ମ ଶୃଙ୍ଖଳାରେ ଆତ୍ମଜ୍ଞାନ ଓ ପୁରୁଷୋତ୍ତମଙ୍କ ଅନୁଭୂତି ସ୍ପଷ୍ଟ କରି ପାରିଲେ କ୍ରମେ ଚେତନାର ପୀଠ ବିକାଶରେ ଇନ୍ଦ୍ରିୟରୁ ମନ ଓ ବୁଦ୍ଧିକୁ ଉଠିବାର ପନ୍ଥା ସୁଗମ । ସମାଜରେ ନିଜର ଅଧିକାର ମାନି କର୍ମ ଧରିବାରେ କି ତତ୍ତ୍ୱ ଅଛି, ଏହା ବୁଝି କର୍ମ କଲେ—

'ସ୍ୱକର୍ମଣା ତମଭ୍ୟର୍ଚ୍ୟ
ସିଦ୍ଧିଂ ବିନ୍ଦତି ମାନବଃ' [ ୧୮. ୪୬ ] ।

## ସାମାଜିକ ଜୀବନରେ 'ପୁରୁଷୋତ୍ତମ' ଧାରଣା—

ସମାଜ ଜୀବନରେ ଏହାହିଁ ସତ୍ୟ, ଏହାହିଁ ପୁରୁଷୋତ୍ତମ ଧାରଣା । ପୁଣି ଲୋକଶିକ୍ଷାରେ ମଧ୍ୟ ଏଇ ଚେତନାର ଭିତ୍ତି ଧରି ଅଧିକାର ଅନୁସାରେ ମାନବର ଆତ୍ମାକୁ ଦେଖାଇବା ଏଇ ସତ୍ୟର ବିକାଶ । ଭଗବାନ୍ ଗୀତାରେ ଏଇ କଥା ଧରି କହିଚନ୍ତି—

"ନ ବୁଦ୍ଧି ଭେଦଂ ଜନୟେତ
ଅଜ୍ଞାନାଂ କର୍ମସଙ୍ଗିନାଂ"

ଯଥାର୍ଥ ଆତ୍ମବାନ୍ ଲୋକ, ପାଦ୍ରୀଙ୍କ ପରି ନିଗ୍ରୋ ସାଂତାଳଙ୍କଠାରୁ ରବୀନ୍ଦ୍ରନାଥ ଠାକୁରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଏକଧର୍ମରେ ଦୀକ୍ଷିତ ଓ ଏକକର୍ମରେ ପ୍ରବର୍ତ୍ତିତ କରି ଏକ ଯୀଶୁଙ୍କ ପ୍ରାୟଶ୍ଚିତ୍ତରେ ମୁକ୍ତ ଦେବା ଭଳି ବାଳକସୁଲଭ ବା ବୁଦ୍ଧିରହିତ କଳ୍ପନାରେ ମାତିବ ନାହିଁ । ମାନବର ଚେତନା ଅନୁସାରେ ତା ପାଇଁ ବ୍ୟବସ୍ଥା କରିବା ହିଁ ଯଥାର୍ଥ ଶୃଙ୍ଖଳାର ମନ୍ତ୍ର । ତାହାହିଁ ଯଥାର୍ଥ ସମବ୍ୟବହାର । ସେଇ ଶୃଙ୍ଖଳା ଓ ସେଇ ବ୍ୟବହାରରେ ପୁଣି କୌଣସି ବନ୍ଧା ଗତର କଠୋରତା ନାହିଁ । ସମସ୍ତଙ୍କ

ପାଇଁ ସ୍ୱଭାବର ପୀଠ ଉଠ'ଇ ଆତ୍ମଜ୍ଞାନରେ ଉଠିବାର ପନ୍ଥା ମୁକ୍ତ ରହିଛି । ଗୀତା କହୁଚନ୍ତି, ସ୍ୱକର୍ମରେ ହିଁ 'ତାହାଙ୍କୁ' ଅଭ୍ୟର୍ଚନା କରିବାକୁ ହେବ [୧୮. ୪୬] ଏଇ ସ୍ୱକର୍ମ ସ୍ୱଭାବ, ଅର୍ଥାତ, ସ୍ୱଭାବରପୀଠ ଅନୁସାରେ ନିୟମିତ । ଏଇ ସ୍ୱଭାବ ବା ସ୍ୱଭାବର ପୀଠ ବଦଳିବା ପୂର୍ବରୁ କର୍ମ ବଦଳାଇ ଭ୍ରଷ୍ଟ ହେବାର ନୁହେଁ । ମାତ୍ର ଆତ୍ମବିକାଶରେ କ୍ରମେ ଉଠିବାକୁ ଏଇ ସ୍ୱଧର୍ମ ହିଁ ଲୋଡ଼ା । ସମସ୍ତେ ନିଜର ଅଧିକାରରେ ଠିକ୍ ରହି କର୍ମ କଲେ, ସମାଜ, ଶୃଙ୍ଖଳାରେ ବିକାଶ ପାଏ ଓ ଏଇ ସ୍ୱଧର୍ମ ଆତ୍ମଜ୍ଞାନଲାଭର ପ୍ରକାଶରେ କ୍ରମେ ବିକଶିତ ହୁଏ । ସ୍ୱଧର୍ମ ଛାଡ଼ିବା ଠିକ ନୁହେଁ, ସ୍ୱଧର୍ମରେ ଆତ୍ମତତ୍ତ୍ୱର ଏଇ ବିକାଶ ଶୃଙ୍ଖଳା ହୃଦୟଙ୍ଗମ କରି ସ୍ୱଭାବର ପୀଠ ଓ ପ୍ରକୃତି କ୍ରମେ ବଦଳାଇବାକୁ ହୁଏ । ଏହାହିଁ ସ୍ୱଧର୍ମରେ ପୁରୁଷୋତ୍ତମଙ୍କର ଅର୍ଚନା । ଭାରତରେ ଦ୍ରଷ୍ଟାମାନେ ଏହାହିଁ ଦେଖି ଉପଦେଶ ଦେଇ ଯାଇଚନ୍ତି । ଗୀତାରେ ଭଗବାନ୍ ସାମାଜିକ ମାନବକୁ ଏହାହିଁ କହୁଚନ୍ତି ।

## ଗୁଣରେ ବିଭାଗ ଓ ଗୁଣାତୀତ—

ଏଇ ଯେଉଁ ଅବସ୍ଥାମାନଙ୍କର କଥା ଉପରେ କୁହାଗଲା, ଗୁଣ ଅନୁସାରେ ମଧ୍ୟ ତାହାର ବିଭାଗ କରି କୁହାଯାଇଚି । ଦେହସର୍ବସ୍ୱ ତମୋଗୁଣୀ, ମନସର୍ବସ୍ୱ ରଜୋଗୁଣୀ, ବୁଦ୍ଧିସର୍ବସ୍ୱ ସତ୍ତ୍ୱଗୁଣୀ । 'ନିତ୍ୟସତ୍ତ୍ୱସ୍ଥ' ହେଲେ ମାନବ ତ୍ରିଗୁଣାତୀତର ଆନନ୍ଦ ଅନୁଭବ କରେ—ସେ 'ଦ୍ୱନ୍ଦ୍ୱାତୀତ' ପାଏ । ସେହି ଏକା ଗୁଣାତୀତ—ସେଇ ଭକ୍ତ—ସେଇ ଜ୍ଞାନୀ, ସେଇ ଯୋଗୀ, ସେଇ ସନ୍ନ୍ୟାସୀ । ସମସ୍ତ କର୍ମରେ ଲାଗିଥାଇ ମଧ୍ୟ ଭଗବାନ୍ କହୁଚନ୍ତି—'ସ ଯୋଗୀ ମୟି ବର୍ତ୍ତତେ' ।

ତା ପାଇଁ ବିଶ୍ୱ ଉନ୍ମୁକ୍ତ—ସେ ମୁକ୍ତ । ବିଚିତ୍ର କର୍ମମୟ ବିଶ୍ୱରେ ଅଧ୍ୟାତ୍ମ ଓ ଅଧ୍ୟାତ୍ମର ବିକାଶରେ ବିଶ୍ୱ ଏଇ ଦୁଇ ବିଭାବ ଏକାଧାରରେ ଦେଖି ସେ ବିଶ୍ୱରେ ଅନାତ୍ମ ସର୍ବବସ୍ତୁର କାର୍ଯ୍ୟକାରଣ ସମ୍ପର୍କ ଓ ନିଜ ନିୟମ ବୁଝିଯାଏ । ସେଥିରେ ହିଁ ସୁଖ ଦୁଃଖ, ପାପ ପୁଣ୍ୟ, ଭଲ ମନ୍ଦ, ନ୍ୟାୟ ଅନ୍ୟାୟ, ନିନ୍ଦା ସ୍ତୁତି, ମାନ ଅପମାନ, ଲାଭ କ୍ଷତି, ଜୟ ପରାଜୟ, ଶୀତ ଉଷ୍ଣ—ପ୍ରକୃତି ପ୍ରକାଶ ଧର୍ମରେ ଫୁଟି ଦିଶୁଥିବା ଆପାତଦ୍ୱନ୍ଦ୍ୱର ଆବରଣ ଖସି ଯାଏ; ସଂଶୟ ତୁଟି ଯାଏ । କ୍ଷରାକ୍ଷରର ମହାସମାଧାନ ସେ ନିଜର ଆତ୍ମାନନ୍ଦରେ ଅନୁଭବ କରି ବିଶ୍ୱ ଚେତନାର ନିତ୍ୟ ଅମୃତରେ ଅଭିଭୂତ ଓ ଉଦ୍‌ବୁଦ୍ଧ ରହେ । ଇନ୍ଦ୍ରିୟ ମନ ଓ ବୁଦ୍ଧିରୁ ଅତୀତ ଆତ୍ମାର ଦର୍ଶନରେ ତାର ସଂଶୟ ଛିନ୍ନ ହୁଏ । 'ପରାବର' ପୁରୁଷୋତ୍ତମଙ୍କର ସାକ୍ଷାତ୍କାରରେ ତାର ହୃଦୟର ମୋହ ତୁଟିଯାଏ । ସେ ନିଷ୍ପାପ ନିଷ୍କଳଙ୍କ ହୁଏ । ବେଦାନ୍ତ କହନ୍ତି—

"ଭିଦ୍ୟତେ ହୃଦୟଗ୍ରନ୍ଥିଃ
ଛିଦ୍ୟନ୍ତେ ସର୍ବସଂଶୟାଃ
କ୍ଷୀୟନ୍ତେ ଚାସ୍ୟ ପାପାନି
ତସ୍ମିନ୍ ଦୃଷ୍ଟେ ପରାବରେ ।"



ଓଁ

# ଶ୍ରୀମଦ୍‌ଭଗବଦ୍‌ଗୀତା



## ପ୍ରଥମ ଅଧ୍ୟାୟ

## ଅର୍ଜୁନବିଷାଦଯୋଗ

**ଅଧ୍ୟାୟ-ପ୍ରବେଶ—**

ମହାଭାରତ ଯୁଦ୍ଧ ଓ ମହାକାବ୍ୟ କଥା ସମସ୍ତେ ଜାଣିଥିବେ । ସେଇ ମହାଭାରତରେ ଭୀଷ୍ମପର୍ବର ୩ୟ ଅଧ୍ୟାୟରୁ ୪୨ଶ ଅଧ୍ୟାୟ ମୁଦ୍ଧା, ୪୦ ଅଧ୍ୟାୟକୁ 'ଭଗବଦ୍‌ଗୀତା ପର୍ବ' ବୋଲି କହନ୍ତି । ତହିଁରେ ୨୫ଶ ଅଧ୍ୟାୟରୁ ମିଶାଇ ୪୨ଶ ଅଧ୍ୟାୟ ପର୍ଯ୍ୟନ୍ତ—୧୮ଟି ଅଧ୍ୟାୟ, ଏଇ 'ଭଗବଦ୍‌ଗୀତା' ।

ଧୃତରାଷ୍ଟ୍ର, ଜନ୍ମରୁ ଅନ୍ଧ ଥିଲେ । ମହାଭାରତରେ ଅଛି, ମହାଭାରତ ଯୁଦ୍ଧ ଆରମ୍ଭ ପୂର୍ବରୁ ବ୍ୟାସଦେବ ଆସି ତାଙ୍କୁ କହିଲେ, "ମୁଁ ତୁମକୁ ଦିବ୍ୟଚକ୍ଷୁ ଦେବି, ତୁମେ ଏହି ହସ୍ତିନାରେ ଥାଇ ବି ନିଜ ଆଖିରେ ଦେଖିଲା ଭଳି ଯୁଦ୍ଧ ଦେଖି ପାରିବ ।" ଧୃତରାଷ୍ଟ୍ର ଆପଣା ଲୋକଙ୍କ ହଣାକଟା ନିଜ ଆଖିରେ ଦେଖିବାକୁ ନାରାଜ ହୋଇ କହିଲେ, "ମୁଁ ଯେପରି ସବୁ ଜାଣି ପାରିବି ତାହା କରନ୍ତୁ ।" ତହୁଁ ବୃଦ୍ଧ ସାରଥି, ସଞ୍ଜୟଙ୍କୁ ବ୍ୟାସଦେବ ଜ୍ଞାନଚକ୍ଷୁ ଦେଲେ । ସେ ପାଖରେ ରହି ଧୃତରାଷ୍ଟ୍ରଙ୍କୁ ସବୁ ଶୁଣାଇଲେ । ମହାଭାରତରେ ଯୁଦ୍ଧଟିଯାକର ବର୍ଣ୍ଣନା ଏଇପରି ସଞ୍ଜୟ ଧୃତରାଷ୍ଟ୍ରଙ୍କୁ କହିବା ଭଳି ଲେଖା ଯାଇଛି । ପହିଲରୁ ଦଶଦିନଯାଏ ଧୃତରାଷ୍ଟ୍ର ଠିକେ ଠିକେ ଖବର ଶୁଣୁଥିଲେ । ଏଇ ଦଶଦିନ କୌରବଙ୍କର ଭୀଷ୍ମ ସେନାପତି ଥିଲେ । ଭୀଷ୍ମ, ଶିଖଣ୍ଡୀକୁ ଆଗରେ ଦେଖିଲେ ଯୁଦ୍ଧ କରିବେ ନାଇ ବୋଲି ଜଣାଥିଲା । ଅର୍ଜୁନ ସେଇ ଶିଖଣ୍ଡୀକୁ ଭୀଷ୍ମଙ୍କ ଆଗରେ ରଖି ଭୀଷ୍ମଙ୍କୁ ନିଜେ ମାରିଲେ ବୋଲି ଧୃତରାଷ୍ଟ୍ର ଯେତେବେଳେ ଶୁଣିଲେ, ସେତେବେଳେ ଚମକିପଡ଼ି, ପୁଣି ଯୁଦ୍ଧକଥା ମୂଳରୁ ସବୁ ଭଲ କରି ଶୁଣିବା ପାଇଁ ସଞ୍ଜୟଙ୍କୁ ପଚାରୁ ପଚାରୁ କହିଲେ :—

## ଧୃତରାଷ୍ଟ୍ର ଉବାଚ

**ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ ।**
**ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଂଜୟ ।୧।**

**ଅନ୍ୱୟଃ**—ଧୃତରାଷ୍ଟ୍ର ଉବାଚ—ସଂଜୟ, ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତାଃ ଯୁଯୁତ୍ସବଃ ମାମକାଃ ପାଣ୍ଡବାଃ ଚ ଏବ କିଂ ଅକୁର୍ବତ ।୧।

**ଟୀକା**—ଧୃତରାଷ୍ଟ୍ର ଉବାଚ—ହେ ସଂଜୟ ! ଧର୍ମକ୍ଷେତ୍ରେ (ପୁଣ୍ୟଭୂମୌ) କୁରୁକ୍ଷେତ୍ରେ ସମବେତାଃ ( ମିଳିତାଃ ) ଯୁଯୁତ୍ସବଃ ( ଯୋଦ୍ଧୁମିଚ୍ଛବଃ, ପରସ୍ପରଂ ଯୁଦ୍ଧାଭିଳାଷିଣଃ ମାମକାଃ (ମଦୀୟାଃ, ମମ ପୁତ୍ରାଃ ତେଷାଂ ସହାୟାଃ ଚ) ପାଣ୍ଡବାଃ (ପାଣ୍ଡବପକ୍ଷାଃ) ଚ ଏବ କିଂ ଅକୁର୍ବତ (କୃତବନ୍ତଃ) ? । ୧ ।

**ଅର୍ଥ**—ଧୃତରାଷ୍ଟ୍ର ପଚାରିଲେ—ହେ ସଂଜୟ, ଆମ ଲୋକେ ଓ ପାଣ୍ଡବଙ୍କ ଲୋକେ କୁରୁକ୍ଷେତ୍ର ପରି ଧର୍ମକ୍ଷେତ୍ରରେ ଯୁଦ୍ଧ କରିବାକୁ ଏକାଠି ହୋଇ କ'ଣ କଲେ ? । ୧ ।

ବ୍ୟାଖ୍ୟା ସୂଚନା—ମହାଭାରତ ଯୁଦ୍ଧ କୁରୁକ୍ଷେତ୍ରରେ ହୋଇଥିଲା । ଏଇ କୁରୁକ୍ଷେତ୍ର ବର୍ତ୍ତମାନର 'ପାନିପଥ' ପାଖେ ଏବେ ମଧ୍ୟ ଗୋଟିଏ ତୀର୍ଥ । ଦୁର୍ଯୋଧନ ପ୍ରଭୃତିଙ୍କ ରାଜଧାନୀ ହସ୍ତିନାପୁର ଏଇ କୁରୁକ୍ଷେତ୍ର ପାଖେ ଥିଲା । ମହାଭାରତ ଓ ପୁରାଣମାନଙ୍କରେ ଅଛି, ଧୃତରାଷ୍ଟ୍ରଙ୍କ ପୂର୍ବପୁରୁଷ କୁରୁରାଜା ଏହିଠାରେ କଷ୍ଟରେ ହଳ ଚଳାଇ ଗୋଟିଏ ଖେତ (କ୍ଷେତ୍ର) କରି ବସିଥିଲେ । ଇନ୍ଦ୍ର ତାଙ୍କୁ ବର ଦେଇଥିଲେ କି, ହେଥି କୁରୁଙ୍କ ଖେତ ବା କୁରୁକ୍ଷେତ୍ରରେ ଯେ ତପସ୍ୟା କରିବ ବା ଯୁଦ୍ଧରେ ମରିବ ସେ ସ୍ୱର୍ଗକୁ ଯିବ । ସେହିଦିନଠାରୁ ଏହା ଗୋଟିଏ ଧର୍ମକ୍ଷେତ୍ର ବା ତୀର୍ଥ ହେଲା । ତେବେ ସମସ୍ତେ ତ ଏହାକୁ ଧର୍ମକ୍ଷେତ୍ର ବୋଲି ଜାଣନ୍ତି, ଧୃତରାଷ୍ଟ୍ର ପୁଣି କୁରୁକ୍ଷେତ୍ର ପରି ଧର୍ମକ୍ଷେତ୍ରରେ ବୋଲି ଫନ୍ଦାଇ କରି କହିଲେ; କାହିଁକି ନା ଶିଖଣ୍ଡୀକୁ ଆଗରେ ରଖି ଭୀଷ୍ମଙ୍କୁ ମାରିବା ଅର୍ଜ୍ଜୁନଙ୍କର ଅଧର୍ମ ଯୁଦ୍ଧ ବୋଲି ତାଙ୍କ ମନରେ ହୋଇଥିଲା । ସେଥିପାଇଁ କହୁଛନ୍ତି—ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ଦୁଇ ପକ୍ଷ କଣ କଲେ, ସବୁ ମତେ କହିଯାଅ । ୧ ।

## ସଂଜୟ ଉବାଚ

**ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ ବ୍ୟୂଢଂ ଦୁର୍ଯୋଧନସ୍ତଦା ।**
**ଆଚାର୍ଯ୍ୟମୁପସଂଗମ୍ୟ ରାଜା ବଚନମବ୍ରବୀତ୍ । ୨ ।**

**ଅନ୍ୱୟଃ**—ସଂଜୟ ଉବାଚ—ପାଣ୍ଡବାନୀକଂ ତୁ ବ୍ୟୂଢଂ ଦୃଷ୍ଟ୍ୱା ରାଜା ଦୁର୍ଯୋଧନଃ ତଦା ଆଚାର୍ଯ୍ୟଂ ଉପସଂଗମ୍ୟ ବଚନଂ ଅବ୍ରବୀତ୍ । ୨ ।

**ଟୀକା**—ସଞ୍ଜୟଃ ଉବାଚ—ପାଣ୍ଡବାନୀକଂ (ପାଣ୍ଡବସୈନ୍ୟଂ) ତୁ (ନିଶ୍ଚିତଂ) ବ୍ୟୂଢ଼ଂ (ବ୍ୟୂହରଚନୟା ସ୍ଥିତଂ) ଦୃଷ୍ଟ୍ୱା, ରାଜା ଦୁର୍ଯ୍ୟୋଧନଃ ତଦା (ତସ୍ୟାଂ ଯୁଦ୍ଧାରମ୍ଭାବସ୍ଥାୟାଂ) ଆଚାର୍ଯ୍ୟଂ (ଦ୍ରୋଣଂ) ଉପସଙ୍ଗମ୍ୟ (ତଦୀୟସମୀପଂ ଗତ୍ୱା ଇତ୍ୟର୍ଥଃ) ବଚନଂ (ବକ୍ଷ୍ୟମାଣଂ ବାକ୍ୟଂ) ଅବ୍ରବୀତ୍ (ଅକଥୟତ୍) । ୨ ।

**ଅର୍ଥ**—ସଞ୍ଜୟ କହିଲେ—ପାଣ୍ଡବସେନାଙ୍କୁ ବ୍ୟୂହରେ ସଜାଡ଼ି ହୋଇ ରହିଥିବାର ଦେଖିଲକ୍ଷଣି ସାଙ୍ଗେ ସାଙ୍ଗେ ଦୁର୍ଯ୍ୟୋଧନ, ଆଚାର୍ଯ୍ୟ ଦ୍ରୋଣଙ୍କ ପାଖେ ପହଞ୍ଚି ଯାଇ [ଏହି] କଥା କହିଲେ । ୨ ।

ବ୍ୟାଖ୍ୟା ସୂଚନା—ଦୁର୍ଯ୍ୟୋଧନ ଦ୍ରୋଣଙ୍କୁ ଯାହା କହିଲେ, ତା ପର ୯ ଶ୍ଲୋକରେ କୁହାଯାଇଛି । ୨ ।

**ପଶ୍ୟୈତାଂ ପାଣ୍ଡୁପୁତ୍ରାଣାମାଚାର୍ଯ୍ୟ ମହତୀଂ ଚମୂମ୍ ।**
**ବ୍ୟୂଢାଂ ଦ୍ରୁପଦପୁତ୍ରେଣ ତବ ଶିଷ୍ୟେଣ ଧୀମତା । ୩ ।**

**ଅନ୍ୱୟଃ**—ଆଚାର୍ଯ୍ୟ, ତବ ଶିଷ୍ୟେଣ ଧୀମତା ଦ୍ରୁପଦପୁତ୍ରେଣ ବ୍ୟୂଢ଼ାଂ ପାଣ୍ଡୁପୁତ୍ରାଣାଂ ଏତାଂ ମହତୀଂ ଚମୂଂ ପଶ୍ୟ । ୩ ।

**ଟୀକା**—ହେ ଆଚାର୍ଯ୍ୟ (ଗୁରୋ), ତବ ଶିଷ୍ୟେଣ (ଅତଏବ) ଧୀମତା ଦ୍ରୁପଦପୁତ୍ରେଣ [ତବ ଚରଣଯୋଃ ଦ୍ରୁପଦସ୍ୟ ପୁତ୍ରେଣ, ଧୃଷ୍ଟଦ୍ୟୁମ୍ନେନ] ବ୍ୟୂଢ଼ାଂ (ବ୍ୟୂହଂ ଆପାଦ୍ୟ ଅଧିଷ୍ଠିତାଂ) ପାଣ୍ଡୁପୁତ୍ରାଣାଂ (ପାଣ୍ଡବାନାଂ) ଏତାଂ (ସମ୍ମୁଖେ ସ୍ଥିତାଂ) ମହତୀଂ (ବିପୁଳାଂ) ଚମୂଂ (ସେନାଂ) ପଶ୍ୟ । ୩ ।

**ଅର୍ଥ**—ହେ ଆଚାର୍ଯ୍ୟ, ତୁମ ଶିଷ୍ୟ (ହୋଇଥିବା ରୁ) ସୁଦକ୍ଷ, (ତୁମ ଚରଣାଶ୍ରିତ) ଦ୍ରୁପଦଙ୍କ ପୁଅ (ଧୃଷ୍ଟଦ୍ୟୁମ୍ନ), ଯାହାଙ୍କୁ ବ୍ୟୂହରେ ସଜାଡ଼ି ରଖିଚନ୍ତି, ପାଣ୍ଡବଙ୍କର ସେଇ ଏହି ମହାସେନାଙ୍କୁ ଦେଖ । ୩ ।

ବ୍ୟାଖ୍ୟା ସୂଚନା—ତୁମ ଶିଷ୍ୟ ଓ ଦ୍ରୁପଦଙ୍କ ପୁଅ ବୋଲି ଧୃଷ୍ଟଦ୍ୟୁମ୍ନଙ୍କୁ ଚହ୍ଲାଇ ଦେବାର ଅଭିପ୍ରାୟ ଏଠାରେ ସ୍ପଷ୍ଟ । ଦ୍ରୁପଦ ଓ ଦ୍ରୋଣ ପିଲାଦିନେ ସତୀର୍ଥ ବା ସହପାଠୀ ଥିଲେ । ଦୁହିଁଙ୍କର ସେତେବେଳେ ଖୁବ୍ ମନ ମିଳୁଥିଲା । ପରେ, ଦ୍ରୁପଦ ରାଜା ହେବା ପରେ, ଦରିଦ୍ର ଦ୍ରୋଣ ତାଙ୍କ ଦ୍ୱାରସ୍ଥ ହୋଇ, ଅପମାନିତ ହୋଇ ପ୍ରତିଶୋଧ ନେବାପାଇଁ ସଂକଳ୍ପ କରି ଫେରିଥିଲେ । ତାପରେ ସେ କୁରୁମାନଙ୍କ ପାଖେ ରହି ଦୁର୍ଯ୍ୟୋଧନ, ଯୁଧିଷ୍ଠିରାଦିଙ୍କୁ ଧନୁର୍ବିଦ୍ୟା ଶିଖାଇଲେ । ଦ୍ରୁପଦଙ୍କ ପୁଅ ଧୃଷ୍ଟଦ୍ୟୁମ୍ନଙ୍କୁ ମଧ୍ୟ ସେ ଧନୁର୍ବିଦ୍ୟା ଶିଖାଇଥିଲେ ସେଥିପାଇଁ ଦୁର୍ଯ୍ୟୋଧନ ଛଳେଇ କରି ତାଙ୍କ କ୍ରୋଧ ଜାଗ୍ରତ କରାଇବା ପାଇଁ କହୁଚନ୍ତି—"ତମ ଦ୍ରୁପଦଙ୍କ ପୁଅ, ତମ ଗୁଣମନ୍ତ ଶିଷ୍ୟ, ଧୃଷ୍ଟଦ୍ୟୁମ୍ନ, ଏ ପାଣ୍ଡବସେନାଙ୍କୁ ଏବେ ଏଠାରେ ସଜାଡ଼ି ରଖିଚନ୍ତି—ଦେଖ ।" ୩ ।

**ଅତ୍ର ଶୂରା ମହେଷ୍ୱାସା ଭୀମାର୍ଜୁନସମା ଯୁଧି ।**
**ଯୁଯୁଧାନୋ ବିରାଟଶ୍ଚ ଦ୍ରୁପଦଶ୍ଚ ମହାରଥଃ ।୪।**

**ଧୃଷ୍ଟକେତୁଶ୍ଚେକିତାନଃ କାଶୀରାଜଶ୍ଚ ବୀର୍ଯ୍ୟବାନ୍ ।**
**ପୁରୁଜିତ୍ କୁନ୍ତିଭୋଜଶ୍ଚ ଶୈବ୍ୟଶ୍ଚ ନରପୁଙ୍ଗବଃ ।୫।**

**ଯୁଧାମନ୍ୟୁଶ୍ଚ ବିକ୍ରାନ୍ତ ଉତ୍ତମୌଜାଶ୍ଚ ବୀର୍ଯ୍ୟବାନ୍ ।**
**ସୌଭଦ୍ରୋ ଦ୍ରୌପଦେୟାଶ୍ଚ ସର୍ବ ଏବ ମହାରଥାଃ ।୬।**

**ଅନ୍ୱୟଃ**—ଅତ୍ର ଯୁଧି ଭୀମାର୍ଜୁନସମାଃ ମହେଷ୍ୱାସାଃ ଶୂରାଃ; ମହାରଥଃ ଯୁଯୁଧାନଃ, ବିରାଟଃ ଚ, ଦ୍ରୁପଦଃ ଚ, ବୀର୍ଯ୍ୟବାନ୍ ଧୃଷ୍ଟକେତୁଃ; ଚେକିତାନଃ, କାଶୀରାଜଃ ଚ, ନରପୁଙ୍ଗବଃ ପୁରୁଜିତ୍—କୁନ୍ତିଭୋଜଃ ଚ, ଶୈବ୍ୟଃ ଚ, ବିକ୍ରାନ୍ତଃ ଯୁଧାମନ୍ୟୁଃ, ବୀର୍ଯ୍ୟବାନ୍ ଉତ୍ତମୌଜାଃ ସୌଭଦ୍ରଃ, ଦ୍ରୌପଦେୟାଃ ଚ—ସର୍ବେ ମହାରଥାଃ ଏବ । ୪-୬ ।

**ଟୀକା**—ଅତ୍ର (ପାଣ୍ଡବ ସେନାୟାଂ) ଯୁଧି (ଯୁଦ୍ଧେ) ଭୀମାର୍ଜୁନସମାଃ ମହେଷ୍ୱାସାଃ (ମହାଧନୁର୍ଧରାଃ) ଶୂରାଃ (ବୀରାଃ) [ବର୍ତ୍ତନ୍ତେ] । [କେ ତେ ଇତ୍ୟାହ]—ମହାରଥଃ ଯୁଯୁଧାନଃ (ସାତ୍ୟକିଃ) ବିରାଟଃ ଚ, ଦ୍ରୁପଦଃ ଚ [ତଥା] ବୀର୍ଯ୍ୟବାନ୍ ଧୃଷ୍ଟକେତୁଃ, ଚେକିତାନଃ କାଶୀରାଜଃ ଚ [ପୁନଶ୍ଚ] ନରପୁଙ୍ଗବଃ (ବୀରଶ୍ରେଷ୍ଠଃ) ପୁରୁଜିତ୍—କୁନ୍ତିଭୋଜଃ [ପୁରୁଜିନ୍ନାମା କୁନ୍ତିଭୋଜଃ ଅର୍ଥାତ୍, କୁନ୍ତିଭୋଜପୁତ୍ରଃ ପୁରୁଜିତ୍], ଶୈବ୍ୟଃ ଚ ବିକ୍ରାନ୍ତଃ (ପରାକ୍ରମୀ), ଯୁଧାମନ୍ୟୁଃ ଚ, ବୀର୍ଯ୍ୟବାନ୍ ଉତ୍ତମୌଜାଃ ଚ, ସୌଭଦ୍ରଃ (ସୁଭଦ୍ରାପୁତ୍ରଃ ଅଭିମନ୍ୟୁଃ) [ପଞ୍ଚ] ଦ୍ରୌପଦେୟାଃ (ଦ୍ରୌପଦୀପୁତ୍ରାଃ) ଚ—[ଏତେ] ସର୍ବେ ମହାରଥାଃ ଏବ [ଭବନ୍ତି] । ୪-୬ ।

**ଅର୍ଥ**—ଏହି ପାଣ୍ଡବସେନା ମଧ୍ୟରେ ଯୁଦ୍ଧରେ ଭୀମ ଅର୍ଜୁନଙ୍କ ପରି ମହାଧନୁର୍ଦ୍ଧର ବୀରମାନେ ଅଛନ୍ତି [ସେଥି ମଧ୍ୟରେ ଦେଖ]—ମହାରଥ ଯୁଯୁଧାନ, ସାତ୍ୟକି ଓ ବିରାଟ ଆଉ ଦ୍ରୁପଦ, ବୀର୍ଯ୍ୟବାନ୍ ଧୃଷ୍ଟକେତୁ, ଚେକିତାନ ଓ କାଶୀରାଜ, ବୀରଶ୍ରେଷ୍ଠ ପୁରୁଜିତ୍ କୁନ୍ତିଭୋଜ, ଅର୍ଥାତ୍ କୁନ୍ତିଭୋଜପୁତ୍ର ପୁରୁଜିତ୍ ଓ ଶୈବ୍ୟ, ବିକ୍ରମୀ ଯୁଧାମନ୍ୟୁ ଓ ବୀର୍ଯ୍ୟବାନ୍ ଉତ୍ତମୌଜାଃ, ଆଉରି ସୁଭଦ୍ରାପୁତ୍ର ଅଭିମନ୍ୟୁ ଓ ଦ୍ରୌପଦୀଙ୍କ ପାଞ୍ଚ ପୁଅ, ସମସ୍ତେ ତ ମହାରଥୀ । ୪-୬ ।

ବ୍ୟାଖ୍ୟା ସୂଚନା—ଯେ, ରଥରେ ସାରଥି ଓ ଘୋଡ଼ାଙ୍କୁ ରକ୍ଷାକରି ଯୁଦ୍ଧ କରିପାରେ, କିମ୍ବା କାହାରି କାହାରି ମତରେ, ଯେ, ଏକାକୀ ଦଶ ସହସ୍ର ରଥୀଙ୍କ ସଙ୍ଗେ ଯୁଦ୍ଧ କରିପାରେ, ସେ ମହାରଥ । ଧୃଷ୍ଟକେତୁ ଶିଶୁପାଳର ପୁଅ । ପୁରୁଜିତ୍-

କୁଂତିଭୋଜ ଜଣେ; କୁଂତି ଯେଉଁ ଭୋଜରାଜଂକୁ ପାଳିଥିଲେ, ପୁରୁଜିତ୍ ସେଇ କୁଂତିଭୋଜଂକ ପୁଅ । କୁଂତିଭୋଜ ତାଂକ ବଂଶର ଉପାଧି । ସେହି କୁଂତିଭୋଜ ମଧ୍ୟ ଯୁଧିଷ୍ଠିରାଦିଂକ ମାମୁଁ ଥିଲେ । ଯୁଧାମନ୍ୟୁ ଓ ଉତ୍ତମୌଜା ଦୁହେଁ ପଞ୍ଚାଳ ରାଜବଂଶୀୟ । ଏ ଦୁହେଁ ଅର୍ଜ୍ଜୁନଂକ ଚକ୍ରରକ୍ଷକ ଥିଲେ । ଚେକିତାନ, ଯଦୁବଂଶୀୟ । ଶୈବ୍ୟ, ଶିବି ଦେଶର ରାଜା । ୪-୬ ।

## ଅସ୍ମାକଂ ତୁ ବିଶିଷ୍ଟା ଯେ ତାନ୍ନିବୋଧ ଦ୍ୱିଜୋତ୍ତମ ।
## ନାୟକା ମମ ସୈନ୍ୟସ୍ୟ ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ ।୭

**ଅନ୍ୱୟ**—ଦ୍ୱିଜୋତ୍ତମ, ଅସ୍ମାକଂ ତୁ ଯେ ବିଶିଷ୍ଟାଃ—ମମ ସୈନ୍ୟସ୍ୟ ନାୟକାଃ [ସନ୍ତି], ସଂଜ୍ଞାର୍ଥଂ ତାନ୍ ତେ ବ୍ରବୀମି; ତାନ୍ ନିବୋଧ । ୭ ।

**ଟୀକା**— [ତର୍ହି ସନ୍ଧିରେବ ବ୍ୟବସ୍ଥେୟଃ ନ ତୁ ବିଗ୍ରହଃ—ଇତି ଦ୍ରୋଣ-ବଚନଂ ଆଶଂକ୍ୟ ଆହ] [ଅପି] ତୁ ହେ ଦ୍ୱିଜୋତ୍ତମ (ଦ୍ରୋଣାଚାର୍ଯ୍ୟ), ଅସ୍ମାକଂ ଯେ ବିଶିଷ୍ଟାଃ (ପ୍ରଧାନାଃ) ମମ ସୈନ୍ୟସ୍ୟ ନାୟକାଃ (ନେତାରଃ) [ସନ୍ତି], ସଂଜ୍ଞାର୍ଥଂ (ବିଶେଷପରିଚୟାର୍ଥଂ) ତାନ୍ ତେ (ତୁଭ୍ୟଂ) ବ୍ରବୀମି (କଥୟାମି) ତାନ୍ ନିବୋଧ (ଅବଧାରୟ) । ୭ ।

**ଅର୍ଥ**—[ତେବେ ଯୁଦ୍ଧ କ'ଣ କି, ସନ୍ଧି କରାଯାଉ—କାଳେ ଦ୍ରୋଣ ଏପରି କହିବେ, ଏଇ ଆଶଂକାରେ କହୁଚଂତି]— କିଂତୁ ହେ ବ୍ରାହ୍ମଣଶ୍ରେଷ୍ଠ ଦ୍ରୋଣାଚାର୍ଯ୍ୟ, [ଆମର ଯେ ନାହାଂତି ଏପରି ନୁହେଁ]; ଆମର ଯେ ପ୍ରଧାନ, ପ୍ରଧାନ, ଆମ ସୈନ୍ୟର ନାୟକମାନେ, ତାଂକୁ ଠିକେ ଠିକେ ଚହ୍ନାଇବା ପାଇଁ ନାଁ ଧରି କହୁଚି । ତାଂକୁ ବି ଜାଣିରଖ । ୭ ।

## ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ କୃପଶ୍ଚ ସମିତିଂଜୟଃ ।
## ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ ସୌମଦତ୍ତିସ୍ତଥୈବ ଚ । ୮ ।

**ଅନ୍ୱୟ**—ଭବାନ୍ ଭୀଷ୍ମଃ ଚ କର୍ଣ୍ଣଃ ଚ ସମିତିଂଜୟଃ କୃପଃ ଚ ଅଶ୍ୱତ୍ଥାମା ବିକର୍ଣ୍ଣଃ ଚ ତଥା ସୌମଦତ୍ତିଃ ଏବ ଚ । ୮ ।

**ଟୀକା**—[କେତେ ? ଇତ୍ୟାହ]—ଭବାନ୍, ଭୀଷ୍ମଃ ଚ, କର୍ଣ୍ଣଃ ଚ, ସମିତିଂଜୟଃ (ସଂଗ୍ରାମବିଜୟୀ) କୃପଃ ଚ, ଅଶ୍ୱତ୍ଥାମା (ଭବତ୍ପୁତ୍ରଃ), ବିକର୍ଣ୍ଣଃ (ମଦ୍ଭ୍ରାତା) ଚ, ତଥା ସୌମଦତ୍ତିଃ (ସୋମଦତ୍ତପୁତ୍ରଃ ଭୂରିଶ୍ରବାଃ ) ଏବ ଚ । ୮ ।

**ଅର୍ଥ**—[ସେମାନେ ହେଉଛନ୍ତି]—ଆପଣ ପୁଣି ଭୀଷ୍ମ ଓ କର୍ଣ୍ଣ ଆଉ ସମର-ବିଜୟୀ କୃପ, [ଆପଣଙ୍କ ପୁଅ] ଅଶ୍ୱତ୍ଥାମା ଓ [ ମୋ ଭାଇ ] ବିକର୍ଣ୍ଣ, ଆଉର ପୁଣି ସୋମଦତ୍ତପୁତ୍ର (ଭୂରିଶ୍ରବା) । ୮ ।

**ଅନ୍ୟେ ଚ ବହବଃ ଶୂରା ମଦର୍ଥେ ତ୍ୟକ୍ତଜୀବିତାଃ ।**
**ନାନାଶସ୍ତ୍ରପ୍ରହରଣାଃ ସର୍ବେ ଯୁଦ୍ଧବିଶାରଦାଃ । ୯ ।**

**ଅନ୍ୱୟ**—ମଦର୍ଥେ ତ୍ୟକ୍ତଜୀବିତାଃ ନାନାଶସ୍ତ୍ରପ୍ରହରଣାଃ ଅନ୍ୟେ ଚ ବହବଃ ଶୂରାଃ ସନ୍ତି [ଏତେ] ସର୍ବେ ଯୁଦ୍ଧବିଶାରଦାଃ । ୯ ।

**ଟୀକା**—ମଦର୍ଥେ (ମମ ପ୍ରୟୋଜନେ) ତ୍ୟକ୍ତଜୀବିତାଃ (ଜୀବିତଂ ଜୀବନଂ ଅପି ତ୍ୟକ୍ତୁଂ ଉଦ୍ୟତାଃ) ନାନାଶସ୍ତ୍ରପ୍ରହରଣାଃ (ନାନାଶସ୍ତ୍ରାଣି ପ୍ରହରଣାନି ଆୟୁଧାନି ଯେଷାଂ ତେ, ବହୁବିଧଶସ୍ତ୍ରଶାଳିନଃ ) ଅନ୍ୟେ [ଅପି] ଚ ବହବଃ ଶୂରାଃ (ବୀରାଃ) [ସନ୍ତି], [ତେ] ସର୍ବେ ଯୁଦ୍ଧବିଶାରଦାଃ (ଯୁଦ୍ଧନିପୁଣାଃ) [ଭବନ୍ତି] । ୯ ।

**ଅର୍ଥ**—[ଏମାନଙ୍କ ଛଡ଼ା] ମୋ ପାଇଁ ପ୍ରାଣ ମୁରୁଛନ୍ତି ନାନା ଶସ୍ତ୍ର ଧରି, ଆଉ ବି ଅନେକ ବୀର ଅଛନ୍ତି; ଏ ସମସ୍ତେ ଯୁଦ୍ଧରେ ନିପୁଣ । ୯ ।

**ଅପର୍ଯ୍ୟାପ୍ତଂ ତଦସ୍ମାକଂ ବଲଂ ଭୀଷ୍ମାଭିରକ୍ଷିତଂ ।**
**ପର୍ଯ୍ୟାପ୍ତଂ ତ୍ୱିଦମେତେଷାଂ ବଲଂ ଭୀମାଭିରକ୍ଷିତଂ । ୧୦ ।**

**ଅନ୍ୱୟ**—ଭୀଷ୍ମାଭିରକ୍ଷିତଂ ଅସ୍ମାକଂ ତଦ୍ ବଲଂ ଅପର୍ଯ୍ୟାପ୍ତଂ । ଭୀମାଭିରକ୍ଷିତଂ ଏତେଷାଂ ଇଦଂ ବଲଂ ତୁ ପର୍ଯ୍ୟାପ୍ତଂ । ୧୦ ।

**ଟୀକା**—[ପୁନଶ୍ଚ] ଭୀଷ୍ମାଭିରକ୍ଷିତଂ (ଭୀଷ୍ମବତ୍) ବିଚକ୍ଷଣେନ ପାଳିତଂ ତତ୍ (ତାଦୃଶବୀରଯୁକ୍ତଂ) ଅସ୍ମାକଂ ବଲଂ (ସୈନ୍ୟଂ) ଅପର୍ଯ୍ୟାପ୍ତଂ [ଅଗଣିତଂ—ଏକାଦଶାକ୍ଷୌହିଣୀ-ସଂଖ୍ୟକତ୍ୱାତ୍ ବହୁତରଂ ଇତି ଭାବଃ] (କିଂ) ତୁ ଭୀମାଭିରକ୍ଷିତଂ (ଚପଲେନ ଭୀମେନ ପାଳିତଂ) ଏତେଷାଂ (ପାଣ୍ଡବାନାଂ) ଇଦଂ, ବଲଂ, ପର୍ଯ୍ୟାପ୍ତଂ (ପରିମିତଂ ସ୍ୱଳ୍ପତରଂ—ସପ୍ତାକ୍ଷୌହିଣୀପରିମିତତ୍ୱାତ୍ ଇତି ଭାବଃ)—[ଅତଃ ନାସ୍ମାକଂ ବିଜୟେ ସଂଶୟଃ ଇତ୍ୟଭିପ୍ରାୟଃ]—[ଯଦ୍ ବା] ପର୍ଯ୍ୟାପ୍ତଂ ଯଥେଷ୍ଟଂ ସମର୍ଥଂ ବା ପାଣ୍ଡବବଲଂ, ଅପର୍ଯ୍ୟାପ୍ତଂ, ନ ହି ବିପକ୍ଷଂ ପ୍ରତିଯୋଦ୍ଧୁଂ ଅଲଂ, ସ୍ୱଳ୍ପବଲଂ—ଇତି ଦୁର୍ଯ୍ୟୋଧନସ୍ୟ ଭୀତିକାରଣଂ—ଇତି କେଚିତ୍ । ତନ୍ନ ପ୍ରସଂଗସମଭଂଗାତ୍ ତଥା ମହାଭାରତେ ଅନ୍ୟତ୍ର ଦୁର୍ଯ୍ୟୋଧନସ୍ୟ ସ୍ୱମୁଖେନ ସେନାବର୍ଣ୍ଣନବିରୋଧାତ୍ ନ ସାଧୁ । ୧୦ ।

**ଅର୍ଥ**— [ଭୀଷ୍ମଙ୍କ ପରି ବିଚକ୍ଷଣ ଲୋକ] ଚଳାଉଥିବା, [ଏତେ ବୀର ଥିବା ସେହି] ଆମ ସେନା ପୁଣି ଅଗଣିତ । (ଅର୍ଥାତ୍, ଏଗାର ଅକ୍ଷୌହିଣୀ ଥିବାରୁ ବହୁତ ବେଶି) ମାତ୍ର ଭୀମ [ପରି ହୁଂଡା] ଚଳାଉଥିବା ଏହି ପାଣ୍ଡବଙ୍କ ସେନା ଗଣି ହେଲା ପରି (ଅର୍ଥାତ୍, ସାତ ଅକ୍ଷୌହିଣୀ) । ୧୦ ।

ବ୍ୟାଖ୍ୟା ସୂଚନା— ପର୍ଯ୍ୟାପ୍ତ = ଯାହା ଅଂଟେ, ପରିମିତ; ଅପର୍ଯ୍ୟାପ୍ତ = ପର୍ଯ୍ୟାପ୍ତରୁ ବେଶି, ଅପରିମିତ ଅତଏବ ଏଥିରେ ଆମର ବିଜୟ ହେବା ନିଶ୍ଚୟ— ଏହି ଅଭିପ୍ରାୟ । କିମ୍ବା, "ଭୀଷ୍ମଙ୍କ ପରି ବିଚକ୍ଷଣ ଚଳାଉଥିଲେ ହେଁ ଓ ସେପରି ବୀରମାନେ ଥାଇ ମଧ୍ୟ ଆମର ସେନା ଅପର୍ଯ୍ୟାପ୍ତ, କି ପର୍ଯ୍ୟାପ୍ତ ବା ଯଥେଷ୍ଟ ନୁହେଁ, ନିଅଣ୍ଟ । ପୁଣି ଭୀମପରି ହୁଂଡ଼ା ଚଳାଉଥିଲେ ହେଁ ତାଙ୍କ ସେନା ପର୍ଯ୍ୟାପ୍ତ, କି ଯଥେଷ୍ଟ । ଅତଏବ ଆମର ଭୟର କାରଣ" ଏପରି କେହି କେହି ଅର୍ଥ କରନ୍ତି । କିନ୍ତୁ ଏ ଅର୍ଥ ଠିକ୍ ନୁହେଁ । ସେପରି ଅର୍ଥ କଲେ, ଏଠାରେ ପ୍ରସଙ୍ଗ ଭଙ୍ଗ ଯାଉଛି । କାହିଁକି ନା ଦୁର୍ଯ୍ୟୋଧନ ନିଜ ସେନାଙ୍କୁ ଅଳ୍ପ ବୋଲି କହି ଦ୍ରୋଣଙ୍କୁ ହତୋତ୍ସାହ କରିବାର କାରଣ ନାହିଁ । ପୁଣି ମହାଭାରତରେ ଅନ୍ୟତ୍ର ଦୁର୍ଯ୍ୟୋଧନ ନିଜ ସେନାଙ୍କୁ ବୃହତ୍ ଓ ଗୁଣସମ୍ପନ୍ନ ବୋଲି କହି ନିଜର ଜୟ ନିଶ୍ଚିତ ବୋଲି ବଡ଼ାଇ କରିଚନ୍ତି (ଉଦ୍ୟୋଗପର୍ବ) । ପରେ ଏହି ଭୀଷ୍ମପର୍ବରେ ସେହି ଦ୍ରୋଣଙ୍କ ଆଗେ ପୁଣି ସେନାର ବର୍ଣ୍ଣନା କରି ଠିକ୍ ଏହି ଭାଷାରେ ନିଜର ବଡ଼ାଇ ମଧ୍ୟ କରିଚନ୍ତି । ଦୁର୍ଯ୍ୟୋଧନ ନିଜ ବଳକୁ ସାନ ମଣି, ଭୀତ ହୋଇ କୌଣସିଠାରେ କଥା କହି ନାହାଁନ୍ତି । ବରଂ ଏହି ଭୀଷ୍ମପର୍ବରେ ମାତ୍ର ୭ ଅଧ୍ୟାୟ ଆଗରୁ କୌରବଙ୍କର ଅପାର ସେନା ଦେଖି ଯୁଧିଷ୍ଠିରଙ୍କ ବଡ ଦୁଃଖ ହୋଇ ଥିବାର ଲେଖାଅଛି । ସେଥିପାଇଁ ପାଣ୍ଡବମାନେ ପ୍ରଥମ ଦିନ ବଜ୍ର-ବ୍ୟୂହ ରଚନା କରି, ଧୃଷ୍ଟଦ୍ୟୁମ୍ନ ସେନାପତି ଥିଲେ ମଧ୍ୟ, ଭୀମଙ୍କୁ ସେ ବ୍ୟୂହର ଆଗରେ ରଖିଥିଲେ । ତେଣୁ ଏ ଶ୍ଲୋକରେ 'ଭୀମାଭିରକ୍ଷିତ' କଥାଟିର ପ୍ରୟୋଗ କରାହୋଇଚି । ୧୦ ।

**ଅୟନେଷୁ ଚ ସର୍ବେଷୁ ଯଥାଭାଗମବସ୍ଥିତାଃ ।**
**ଭୀଷ୍ମମେବାଭିରକ୍ଷନ୍ତୁ ଭବନ୍ତଃ ସର୍ବ ଏବ ହି ।୧୧।**

**ଅନ୍ୱୟ**— ହି ସର୍ବେ ଏବ ଭବନ୍ତଃ ସର୍ବେଷୁ ଅୟନେଷୁ ଚ ଯଥାଭାଗଂ ଅବସ୍ଥିତାଃ [ସନ୍ତଃ] ଭୀଷ୍ମଂ ଅଭିରକ୍ଷନ୍ତୁ । ୧୧ ।

**ଟୀକା**— ହି (ଅତଃ) ସର୍ବେ ଏବ ଭବନ୍ତଃ ସର୍ବେଷୁ ଅୟନେଷୁ (ବ୍ୟୂହ-ପ୍ରବେଶମାର୍ଗେଷୁ) ଯଥାଭାଗଂ (ବ୍ୟୂହଶୃଙ୍ଖଳାୟାଂ ସ୍ୱ-ସ୍ୱ-ନିର୍ଦ୍ଦିଷ୍ଟସ୍ଥାନଂ ଆଶ୍ରିତ୍ୟ) ଅବସ୍ଥିତାଃ [ସନ୍ତଃ] ଭୀଷ୍ମଂ ଅଭି (ସର୍ବତଃ) ରକ୍ଷନ୍ତୁ । ୧୧ ।

**ଅର୍ଥ**—ତେବେ ଆପଣମାନେ ସମସ୍ତେ ସବୁ ବ୍ୟୂହ ବାଟରେ ଯେଉଁ। ସ୍ଥାନରେ ରହି ଭୀଷ୍ମଙ୍କୁ ସବୁଆଡ଼େ ଜଗଂରୁ । [ଯେପରି କି ଶିଖଣ୍ଡୀ ଭୀଷ୍ମଙ୍କ ଆଗକୁ ନ ଆସନ୍ତି । କାହିଁକି ନା, ଶିଖଣ୍ଡୀକୁ ଦେଖିଲେ ଭୀଷ୍ମ ଅସ୍ତ୍ରଶସ୍ତ୍ର ଛାଡ଼ିଦେଇ ବସିଯିବେ । 'ଅଧ୍ୟାୟ ପ୍ରବେଶ' ଦେଖ] । ୧୧ ।

**ତସ୍ୟ ସଂଜନୟନ୍ ହର୍ଷଂ କୁରୁବୃଦ୍ଧଃ ପିତାମହଃ ।**
**ସିଂହନାଦଂ ବିନଦ୍ୟୋଚ୍ଚୈଃ ଶଂଖଂ ଦଧ୍ମୌ ପ୍ରତାପବାନ ॥**

**ଅନ୍ୱୟ**—ପ୍ରତାପବାନ୍ କୁରୁବୃଦ୍ଧଃ ପିତାମହଃ ତସ୍ୟ ହର୍ଷଂ ସଜନୟନ୍ ଉଚ୍ଚୈଃ ସିଂହନାଦଂ ବିନଦ୍ୟ ଶଂଖଂ ଦଧ୍ମୌ । ୧୨ ।

**ଟୀକା**—[ ଏବଂ ଦୁର୍ଯ୍ୟୋଧନମନୋଗତଂ ପ୍ରତର୍କ୍ୟୈବ ] ପ୍ରତାପବାନ୍ କୁରୁବୃଦ୍ଧଃ (କୁରୁକୁଳେ ପ୍ରବୀଣତମଃ) ପିତାମହଃ (ଭୀଷ୍ମଃ) ତସ୍ୟ (ଦୁର୍ଯ୍ୟୋଧନସ୍ୟ) ହର୍ଷଂ ସଜନୟନ୍ (ସମୁତ୍ପାଦୟନ୍) ଉଚ୍ଚୈଃ ସିଂହନାଦଂ ବିନଦ୍ୟ (କୃତ୍ୱା) ଶଂଖଂ ଦଧ୍ମୌ (ବାଦିତବାନ୍) । ୧୨ ।

**ଅର୍ଥ**—[ଦୁର୍ଯ୍ୟୋଧନର ଏଇ ମନୋଭାବକୁ ସତେ ତର୍କଣା କରି ପରି] ପ୍ରତାପୀ କୁରୁକୁଳବୃଦ୍ଧ ଅତି ବିଚକ୍ଷଣ ପିତାମହ (ଭୀଷ୍ମ) ଦୁର୍ଯ୍ୟୋଧନଙ୍କୁ ଖୁସି କରାଇବା ପାଇଁ ହୁଂକାରରେ ଘୋର ସିଂହନାଦ କରି ଶଂଖ ବଜାଇଲେ । ୧୨ ।

ବ୍ୟାଖ୍ୟା ସୂଚନା—ସେକାଳେ ଆଗ ସିଂହପରି ହୁଂକାର ଦେଇ ତା ପରେ ଶଂଖ ବଜାଇ ଯୁଦ୍ଧକୁ ପ୍ରସ୍ତୁତ ଥିବାର ଜଣାଇ ଦେଉଥିଲେ । ୧୨ ।

**ତତଃ ଶଂଖାଶ୍ଚ ଭେର୍ଯ୍ୟଶ୍ଚ ପଣବାନକଗୋମୁଖାଃ ।**
**ସହସୈବାଭ୍ୟହନ୍ୟନ୍ତ ସ ଶବ୍ଦସ୍ତୁମୁଲୋଽଭବତ୍ । ୧୩ ।**

**ଅନ୍ୱୟ**—ତତଃ ଶଂଖାଃ ଚ ଭେର୍ଯ୍ୟଃ ଚ ପଣବାନକ-ଗୋମୁଖାଃ ସହସା ଏବ ଅଭ୍ୟହନ୍ୟଂତ । ସଃ ଶବ୍ଦଃ ତୁମୁଳଃ ଅଭବତ୍ । ୧୩ ।

**ଟୀକା**—[ ସେନାପତିଂ ଭୀଷ୍ମଂ ଅନୁସୃତ୍ୟ ] ତତଃ (ତଦନଂତରଂ) ଶଂଖାଃ ଚ ଭେର୍ଯ୍ୟଃ ଚ ପଣବାନକଗୋମୁଖାଃ (ଯୁଦ୍ଧବାଦ୍ୟବିଶେଷାଃ) [ଚ] ସହସା ଏବ ଅଭ୍ୟହନ୍ୟଂତ (ବାଦିତାଃ) । ସଃ ଶବ୍ଦଃ ତୁମୁଳଃ (ମହାନ୍) ଅଭବତ୍ । ୧୩ ।

**ଅର୍ଥ**—[ସେନାପତି ଭୀଷ୍ମ ବଜାଇବାରୁ] ତାଙ୍କ ପରେ ଶଂଖ, ଭେରୀ ଆଉ ପଣବ, ଆନକ, ଗୋମୁଖ ପ୍ରଭୃତି ଯୁଦ୍ଧବାଦ୍ୟ ସବୁ ହଠାତ୍ ବାଜି ଉଠିଲା । ସେ ଘୋର ଏକ ଶବ୍ଦ ହେଲା । ୧୩ ।

ବ୍ୟାଖ୍ୟା ସୂଚନା—ଭେରୀ=ଢକ୍କା ବା ବଡ଼ ଢୋଲ । ଓଡ଼ିଆରେ କେହି କେହି ବଂକା କାହାଳୀ ବା ତୁରୀକୁ ଭେରୀ କହନ୍ତି । ଏଠି ତା ନୁହେଁ । ପଣବ= ମାଦଳ । ଆନକ=ନାଗରାଢୋଲ । ଏହା ଘୋଡାର ପାଖରେ ବଜାଇବାକୁ ହୁଏ; କୌଣସି କୌଣସି ଅଂଚଳରେ ଓଡ଼ିଆରେ ଏହାକୁ 'ମେଘା' କହନ୍ତି । ଗୋମୁଖ= ଶୃଂଗ, ରଣଶିଂଗା । ଏହାର ଆକୃତି ଗୋରୁ ଶିଂଗ ପରି; ତୁରୀପରି ମୋଡ଼ା ମୋଡ଼ା ବଂକା ନୁହେଁ । ଏ ସବୁ ଯୁଦ୍ଧବାଦ୍ୟ ପୂର୍ବେ ଏ ଦେଶରେ ଚଳୁଥିଲା । ୧୩ ।

**ତତଃ ଶ୍ୱେତୈର୍ହୟୈର୍ଯୁକ୍ତେ ମହତି ସ୍ୟଂଦନେ ସ୍ଥିତୌ ।**
**ମାଧବଃ ପାଂଡ଼ବଶ୍ଚୈବ ଦିବ୍ୟୌ ଶଂଖୌ ପ୍ରଦଧ୍ମତୁଃ । ୧୪ ।**

**ଅନ୍ୱୟ**—ତତଃ ଶ୍ୱେତୈଃ ହୟୈଃ ଯୁକ୍ତେ ମହତି ସ୍ୟଂଦନେ ସ୍ଥିତୌ ମାଧବଃ ପାଂଡ଼ବଃ ଚ [ଉଭୌ] ଦିବ୍ୟୌ ଶଂଖୌ ପ୍ରଦଧ୍ମତୁଃ । ୧୪ ।

**ଟୀକା**—ତତଃ [ପ୍ରତ୍ୟୁତ୍ତରାର୍ଥଂ] ଶ୍ୱେତୈଃ (ଧବଳୈଃ) ହୟୈଃ (ଅଶ୍ୱୈଃ) ଯୁକ୍ତେ ମହତି ସ୍ୟନ୍ଦନେ (ରଥେ) ସ୍ଥିତୌ ମାଧବଃ (କୃଷ୍ଣଃ) ପାଂଡ଼ବଃ (ଅର୍ଜୁନଃ) ଚ [ଉଭୌ] ଏବ ଦିବ୍ୟୌ ଶଂଖୌ ପ୍ରଦଧ୍ମତୁଃ ବାଦିତବନ୍ତୌ । ୧୪ ।

**ଅର୍ଥ**—ତହୁଁ ଶ୍ୱେତହୟଯୁକ୍ତ ମହାସ୍ୟଂଦନରେ ବସିଥିବା ମାଧବ ଓ ପାଂଡ଼ବ [ଦୁହେଁ] ଯୋଡ଼ାଏ ଦିବ୍ୟ ଶଂଖ ବଜାଇଲେ । ୧୪ ।

ବ୍ୟାଖ୍ୟା ସୂଚନା—ତହୁଁ=ଶତ୍ରୁ ଶଂଖଧ୍ୱନିର ଉତ୍ତର ଦେବା ପାଇଁ । ମାଧବ=କୃଷ୍ଣ; ପାଂଡ଼ବ=ଅର୍ଜୁନ । ଶ୍ୱେତ ହୟ=ଧଳା ଘୋଡା । ସ୍ୟଂଦନ= ରଥ । ମହାସ୍ୟଂଦନ, ଏଠି ଅର୍ଜୁନଙ୍କ କପିଧ୍ୱଜ ରଥ । କପିଧ୍ୱଜ ରଥକୁ ଧଳା ଘୋଡା ଟାଣୁଥିଲେ । ୧୪ ।

**ପାଂଚଜନ୍ୟଂ ହୃଷୀକେଶୋ ଦେବଦତ୍ତଂ ଧନଂଜୟଃ**
**ପୌଂଡ୍ରଂ ଦଧ୍ମୌ ମହାଶଂଖଂ ଭୀମକର୍ମା ବୃକୋଦରଃ । ୧୫ ।**
**ଅନଂତବିଜୟଂ ରାଜା କୁଂତୀପୁତ୍ରୋ ଯୁଧିଷ୍ଠିରଃ ।**
**ନକୁଳଃ ସହଦେବଶ୍ଚ ସୁଘୋଷମଣିପୁଷ୍ପକୌ । ୧୬ ।**

**ଅନ୍ୱୟ**—ହୃଷୀକେଶଃ ପାଂଚଜନ୍ୟଂ [ଦଧ୍ମୌ] । ଧନଂଜୟଃ ଦେବଦତ୍ତଂ [ଦଧ୍ମୌ] । ଭୀମକର୍ମା ବୃକୋଦରଃ ମହାଶଂଖଂ ପୌଂଡ୍ରଂ ଦଧ୍ମୌ ।୧୫। କୁଂତୀପୁତ୍ରଃ ରାଜା ଯୁଧିଷ୍ଠିରଃ ଅନଂତବିଜୟଂ [ ଦଧ୍ମୌ ] । ନକୁଳଃ ସହଦେବଃ ଚ ସୁଘୋଷମଣିପୁଷ୍ପକୌ [ଦଧ୍ମତୁଃ] । ୧୬ ।

**ଟୀକା**—ହୃଷୀକେଶଃ (କୃଷ୍ଣଃ) ପାଂଚଜନ୍ୟଂ (ତନ୍ନାମକଂ ଶଂଖ), ଧନଂଜୟଃ (ଅର୍ଜୁନଃ) ଦେବଦତ୍ତଂ ( ତନ୍ନାମକଂ ଶଂଖଂ ), [ତଥା] ଭୀମକର୍ମା ବୃକୋଦରଃ

(ଭୀମଃ) ପୌଂଡ୍ରଂ [ନାମ] ମହାଶଂଖଂ ଦଧ୍ମୌ—ଇତି ସର୍ବତ୍ରାନ୍ୱୟଃ । କୁଂତୀପୁତ୍ରଃ ରାଜା ଯୁଧିଷ୍ଠିରଃ ଅନଂତବିଜୟଂ [ନାମ ଶଂଖ ଦଧ୍ମୌ] ନକୁଳଃ ସହଦେବଃ ଚ [ଉଭୌ ଯଥାକ୍ରମଂ] ସୁଘୋଷମଣିପୁଷ୍ପକୌ [ନାମ ଶଂଖୌ ଦଧ୍ମତୁଃ] । ୧୬ ।

**ଅର୍ଥ**—ହୃଷୀକେଶ (କୃଷ୍ଣ) 'ପାଂଚଜନ୍ୟ' ନାମକ ଶଂଖ, ଧନଂଜୟ (ଅର୍ଜୁନ) 'ଦେବଦତ୍ତ' ନାମକ ଶଂଖ ଓ ଭୀମକର୍ମା ବୃକୋଦର (ଭୀମ) 'ପୌଂଡ୍ର' ନାମକ ମହାଶଂଖ ବଜାଇଲେ । ୧୫ । କୁଂତୀପୁତ୍ର ରାଜା ଯୁଧିଷ୍ଠିର 'ଅନଂତବିଜୟ', ପୁଣି ନକୁଳ ଓ ସହଦେବ ଦୁହେଁ 'ସୁଘୋଷ' ଓ 'ମଣିପୁଷ୍ପକ' [ବୋଲି ଦୁଇଟି ଶଂଖ ବଜାଇଲେ] ଅର୍ଥାତ୍ (ନକୁଳ ସୁଘୋଷ ଶଂଖଟି ଓ ସହଦେବ ମଣିପୁଷ୍ପକ ଶଂଖଟି ବଜାଇଲେ) । ୧୬ ।

ବ୍ୟାଖ୍ୟା ସୂଚନା—ହୃଷୀକେଶ—ପରେ ୧.୨୪ ଟୀକା ଦେଖ । ଭୀମ, ଅର୍ଥାତ୍, ଅତି ଭୟଂକର କର୍ମ ବା କାମ ଯାହାର, ସେ ଭୀମକର୍ମା । ବୃକନାମକ ସର୍ବଗ୍ରାସୀ ବା ସବୁ ଜୀର୍ଣ୍ଣ କରିଦେବା ଭଳି ଅଗ୍ନି, ଉଦର ବା ପେଟରେ ଯାହାର, ସେ ବୃକୋଦର । ତେଣୁ ଭୀମର ନାମ ବୃକୋଦର । ଧନ, ଅର୍ଥାତ୍, କୁବେରଂକୁ ଜିଣିଥିବାରୁ ଅର୍ଜୁନଂକ ନାମ ଧନଂଜୟ । ପଂଚଜନ ନାମକ ଅସୁର ହାଡ଼ରେ ତିଆରି ହୋଇଥିବାରୁ କୃଷ୍ଣଙ୍କ ଶଂଖର ନାମ ପାଂଚଜନ୍ୟ । ୧୬ ।

**କାଶ୍ୟଶ୍ଚ ପରମେଷ୍ୱାସଃ ଶିଖଣ୍ଡୀ ଚ ମହାରଥଃ ।**
**ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍ଚ ସାତ୍ୟକିଶ୍ଚାପରାଜିତଃ । ୧୭ ।**
**ଦ୍ରୁପଦୋ ଦ୍ରୌପଦେୟାଶ୍ଚ ସର୍ବଶଃ ପୃଥିବୀପତେ ।**
**ସୌଭଦ୍ରଶ୍ଚ ମହାବାହୁଃ ଶଂଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍ ।୧୮**

**ଅନ୍ୱୟ**— ପୃଥିବୀପତେ, ପରମେଷ୍ୱାସଃ କାଶ୍ୟଃ ମହାରଥଃ ଶିଖଣ୍ଡୀ ଚ ଅପରାଜିତଃ ଧୃଷ୍ଟଦ୍ୟୁମ୍ନଃ ବିରାଟଃ ଚ ସାତ୍ୟକିଃ ଚ । ୧୭ । ଦ୍ରୁପଦଃ ଦ୍ରୌପଦେୟାଃ ଚ ମହାବାହୁଃ ସୌଭଦ୍ରଃ ଚ ସର୍ବଶଃ ପୃଥକ୍ ପୃଥକ୍ ଶଂଖାନ୍ ଦଧ୍ମୁଃ । ୧୮ ।

**ଟୀକା**—ହେ ପୃଥିବୀପତେ (ଧୃତରାଷ୍ଟ୍ର), ପରମେଷ୍ୱାସଃ (ମହାଧନୁର୍ଦ୍ଧରଃ) କାଶ୍ୟଃ (କାଶ୍ୟାଃ ଅୟଂ ଇତି କାଶୀରାଜଃ) ମହାରଥଃ ଶିଖଣ୍ଡୀ ଚ ଅପରାଜିତଃ ଧୃଷ୍ଟଦ୍ୟୁମ୍ନଃ, ବିରାଟଃ ଚ ସାତ୍ୟକିଃ ଚ ଦ୍ରୁପଦଃ ଚ, ଦ୍ରୌପଦେୟାଃ (ଦ୍ରୌପଦୀପୁତ୍ରାଃ) ଚ ମହାବାହୁଃ ସୌଭଦ୍ରଃ (ସୁଭଦ୍ରାପୁତ୍ରଃ) ଚ—ସର୍ବଶଃ (ସର୍ବେ) ପୃଥକ୍ ପୃଥକ୍ ଶଙ୍ଖାନ୍ ଦଧ୍ମୁଃ (ବାଦିତବନ୍ତଃ) । ୧୭—୧୮ ।

**ଅର୍ଥ**—ହେ ପୃଥିବୀପତି ଧୃତରାଷ୍ଟ୍ର, ମହାଧନୁର୍ଦ୍ଧର କାଶୀରାଜ ଓ ମହାରଥ ଶିଂଖଣ୍ଡୀ, ପୁଣି ଅପରାଜିତ ଧୃଷ୍ଟଦ୍ୟୁମ୍ନ, ବିରାଟ, ପୁଣି ସାତ୍ୟକି, ଦ୍ରୁପଦ

ଦ୍ରୌପଦୀଙ୍କ ପୁତ୍ରମାନେ, ଆହୁରି ମହାବାହୁ ସୁଭଦ୍ରାଙ୍କ ପୁତ୍ର (ଅଭିମନ୍ୟୁ)—ସମସ୍ତେ ଭିନ୍ନ ଭିନ୍ନ ଶଂଖମାନ ବଜାଇଲେ । ୧୭-୧୮ ।

ବ୍ୟାଖ୍ୟା ସୂଚନା—ପରମେଷ୍ୱାସ—ପରମ(ଶ୍ରେଷ୍ଠ) ଇଷ୍ୱାସ (ଧନୁ) ଯାହାର, ଇଷ୍ୱାସ=ଇଷୁ(ବାଣ, ଶର) ଆସ (କ୍ଷେପଣ କରାଯାଏ ଯହିଁରୁ) ବା ଇଷୁ ବା ଶରର ଆସ ବା ଆସନ । ପରମ=‘ପର’ ଉତ୍କୃଷ୍ଟ ବା ସବୁଠାରୁ ବେଶୀ, ‘ମା’ (ପରିମାଣ) ଯାହାର । ଉତ୍କର୍ଷରେ ଯାହାର ଶ୍ରେଷ୍ଠ ସୀମା । ୧୭-୧୮ ।

**ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍ ।**
**ନଭଶ୍ଚ ପୃଥିବୀଂ ଚୈବ ତୁମୁଲୋ ବ୍ୟନୁନାଦୟନ୍ ।୧୯।**

**ଅନ୍ୱୟ**—ସଃ ତୁମୁଳଃ ଘୋଷଃ ନଭଶ୍ଚ ପୃଥିବୀଂ ଚ ଏବ ବ୍ୟନୁନାଦୟନ୍ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍ ।୧୯।

**ଟୀକା**—[ପାଂଡ଼ବଶଂଖାନାଂ]ସଃ ତୁମୁଲଃ (ଘୋରଃ) ଘୋଷଃ (ଶବ୍ଦଃ)ନଭଃ (ଆକାଶଂ) ଚ ପୃଥିବୀଂ ଚ ଏବ ବ୍ୟନୁନାଦୟନ୍ (ପ୍ରତିଧ୍ୱନିଭିଃ ପୂରୟନ) ଧାର୍ତ୍ତରାଷ୍ଟ୍ରାଣାଂ (ଦୁର୍ଯୋଧନାଦୀନାଂ) ହୃଦୟାନି ବ୍ୟଦାରୟତ୍ (ବିଦାରିତବାନ୍) । ୧୯ ।

**ଅର୍ଥ**—[ପାଂଡ଼ବମାନଂକ ଶଂଖର] ସେ ମହାଶବ୍ଦ ଆକାଶ ଓ ପୃଥିବୀକୁ କଂପାଇ ଧାର୍ତ୍ତରାଷ୍ଟ୍ର (କୌରବ)ମାନଂକ ହୃଦୟ ବିଦାରିଦେଲା ୧୯ ।

ବ୍ୟାଖ୍ୟା ସୂଚନା—ଧାର୍ତ୍ତରାଷ୍ଟ୍ର=ଧୃତରାଷ୍ଟ୍ରଂକ ପୁତ୍ର । ଏଠାରେ ଧାର୍ତ୍ତରାଷ୍ଟ୍ର ବା ଧୃତରାଷ୍ଟ୍ରପୁତ୍ରପକ୍ଷୀୟମାନେ । ୧୯ ।

**ଅଥ ବ୍ୟବସ୍ଥିତାନ ଦୃଷ୍ଟ୍ୱା ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ ।**
**ପ୍ରବୃତ୍ତେ ଶସ୍ତ୍ରସଂପାତେ ଧନୁରୁଦ୍ୟମ୍ୟ ପାଂଡ଼ବଃ ।**
**ହୃଷୀକେଶଂ ତଦା ବାକ୍ୟମିଦମାହ ମହୀପତେ ।୨୦।**

**ଅନ୍ୱୟ**—ମହୀପତେ, ଅଥ କପିଧ୍ୱଜଃ ପାଂଡ଼ବଃ ଧାର୍ତ୍ତରାଷ୍ଟ୍ରାନ୍ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା । ଶସ୍ତ୍ରସଂପାତେ ପ୍ରବୃତ୍ତେ [ସତି] ଧନୁଃ ଉଦ୍ୟମ୍ୟ ତଦା ହୃଷୀକେଶଂ ଇଦଂ ବାକ୍ୟଂ ଆହ । ୨୦ ।

**ଟୀକା**—ହେ ମହୀପତେ ( ରାଜନ୍ ) ଅଥ (ଅନଂତରଂ) କପିଧ୍ୱଜଃ ( ବାନରଚିହ୍ନଚିହ୍ନିତଃ ରଥଧ୍ୱଜଃ ଯସ୍ୟ ସଃ ) ପାଂଡବଃ ( ଅର୍ଜୁନଃ ) ଧାର୍ତ୍ତରାଷ୍ଟ୍ରାନ୍ (କୌରବାନ୍) ବ୍ୟବସ୍ଥିତାନ୍ (ଯୁଦ୍ଧସଜ୍ଜିତାନ୍) ଦୃଷ୍ଟ୍ୱା, ଶସ୍ତ୍ରସଂପାତେ (ବାଣାଦିକ୍ଷେପଣେ) ପ୍ରବୃତ୍ତେ (ଆସନ୍ନେ) [ସତି] [ଆତ୍ମନଃ] ଧନୁଃ (ଗାଂଡ଼ୀବଂ] ଉଦ୍ୟମ୍ୟ (ଉତ୍ତୋଲ୍ୟ) ତଦା ହୃଷୀକେଶଂ (କୃଷ୍ଣଂ) ଇଦଂ (ବକ୍ଷ୍ୟମାଣଂ) ବାକ୍ୟଂ ଅହ (କଥୟତି, ଅକଥୟତ୍ ଇତ୍ୟର୍ଥଃ) । ୨୦ ।

**ଅର୍ଥ**—ହେ ମହୀପତି, ତହିଁ ଉତ୍ତାରୁ କପିଧ୍ୱଜ ଅର୍ଜ୍ଜୁନ, କୌରବଙ୍କୁ ଯୁଦ୍ଧକୁ ତିଆର ଥିବାର ଦେଖି, ଦୁଇ ପକ୍ଷରୁ ଠିକ୍ ଶସ୍ତ୍ର ପଡ଼ିଲାବେଳକୁ ନିଜ ଧନୁ ଟେକି ଧରି, ସେତିକିବେଳେ ଶ୍ରୀକୃଷ୍ଣଙ୍କୁ ଏଇ କଥା କହିଲେ । ୨୦ ।

ବ୍ୟାଖ୍ୟା ସୂଚନା—ଅର୍ଜ୍ଜୁନଙ୍କ ରଥପତାକାରେ କପି ବା ବାନରର ଚିହ୍ନଟିଏ ଥିଲା । ସେଥିପାଇଁ ତାଙ୍କ ରଥକୁ 'କପିଧ୍ୱଜ' କୁହାଯାଏ; ପୁଣି ନିଜେ ଅର୍ଜ୍ଜୁନଙ୍କୁ ବି 'କପିଧ୍ୱଜ' କୁହାଯାଏ । ମହାଭାରତରେ ମଧ୍ୟ ଅଛି ଯେ, ଖାଲି ବାନରଚିହ୍ନ ନୁହେଁ, ଅର୍ଜ୍ଜୁନଙ୍କ ରଥପତାକା ଧରି ନିଜେ ହନୁମାନ୍ ବସିଥାଆନ୍ତି । ୨୦ ।

## ଅର୍ଜ୍ଜୁନ ଉବାଚ

**ସେନୟୋରୁଭୟୋର୍ମଧ୍ୟେ ରଥଂ ସ୍ଥାପୟ ମେଽଚ୍ୟୁତ । ୨୧ ।**
**ଯାବଦେତାନ୍ନିରୀକ୍ଷେଽହଂ ଯୋଦ୍ଧୁକାମାନବସ୍ଥିତାନ ।**
**କୈର୍ମୟା ସହ ଯୋଦ୍ଧବ୍ୟମସ୍ମିନ୍ ରଣସମୁଦ୍ୟମେ । ୨୨ ।**
**ଯୋତ୍ସ୍ୟମାନାନବେକ୍ଷେଽହଂ ଯ ଏତେଽତ୍ର ସମାଗତାଃ ।**
**ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେର୍ଯୁଦ୍ଧେ ପ୍ରିୟଚିକୀର୍ଷବଃ । ୨୩ ।**

**ଅନ୍ୱୟ**—ଅର୍ଜ୍ଜୁନଃ ଉବାଚ—ଅଚ୍ୟୁତ, ଉଭୟୋଃ ସେନୟୋଃ ମଧ୍ୟେ ମେ ରଥଂ ସ୍ଥାପୟ । ଯୋଦ୍ଧୁକାମାନ୍ ଅବସ୍ଥିତାନ୍ ଏତାନ୍ ଅହଂ-ଯାବତ୍ ନିରୀକ୍ଷେ; ଅସ୍ମିନ୍ ରଣସମୁଦ୍ୟମେ ମୟା କୈଃ ସହ ଯୋଦ୍ଧବ୍ୟଂ, ଅତ୍ର ଯୁଦ୍ଧେ ଦୁର୍ବୁଦ୍ଧେଃ ଧାର୍ତ୍ତରାଷ୍ଟ୍ରସ୍ୟ ପ୍ରିୟଚିକୀର୍ଷବଃ ଏତେ ଯେ ସମାଗତାଃ [ତାନ୍] ଯୋତ୍ସ୍ୟମାନାନ୍ ଅହଂ ଅବେକ୍ଷେ । ୨୧-୨୩ ।

**ଟୀକା**—ଅର୍ଜ୍ଜୁନ ଉବାଚ—ହେ ଅଚ୍ୟୁତ, ଅହଂ ଯାବତ୍ (ସାକଲ୍ୟେନ) ଯୋଦ୍ଧୁକାମାନ୍ (ଯୁଦ୍ଧାଭିଳାଷିଣଃ) [ସ୍ଥିତଃ] ଅବସ୍ଥିତାନ୍ (ସଜ୍ଜିତାନ୍) ଏତାନ୍ ନିରୀକ୍ଷେ (ପଶ୍ୟାମି), [ଆବେଗେନ ପୁନଃ ପୁନଃ କଥୟତି] ଅସ୍ମିନ୍ ରଣସମୁଦ୍ୟମେ (ଯୁଦ୍ଧବ୍ୟାପାରେ) ମୟା କୈଃ ସହ ଯୋଦ୍ଧବ୍ୟଂ (ଯୁଦ୍ଧଂ କର୍ତ୍ତବ୍ୟଂ), ଅତ୍ର (ଅସ୍ମିନ୍) ଯୁଦ୍ଧେ ଦୁର୍ବୁଦ୍ଧେଃ (ଦୁଷ୍ଟବୁଦ୍ଧେଃ) ଧାର୍ତ୍ତରାଷ୍ଟ୍ରସ୍ୟ (ଦୁର୍ଯୋଧନସ୍ୟ) ପ୍ରିୟଚିକୀର୍ଷବଃ (ହିତୈଷିଣଃ) ଯେ ଏତେ [ରାଜାନଃ] ସମାଗତାଃ (ଉପସ୍ଥିତାଃ), ଯୋତ୍ସ୍ୟମାନାନ୍ (ଯୁଦ୍ଧଂ କରିଷ୍ୟତଃ) [ତାନ୍ ଯାବତ୍] ଅହଂ ଅବେକ୍ଷେ (ଅବଧାରୟାମି, ମମ ତୁଲ୍ୟା ଅପି ତ ଯୋଦ୍ଧବ୍ୟା ବା ନ ବା ଇତି) [ଅତଃ] ଉଭୟୋଃ ସେନୟୋଃ ମଧ୍ୟେ (ମମ) ରଥଂ ସ୍ଥାପୟ । ୨୧-୨୩ ।

**ଅର୍ଥ**—ଅର୍ଜ୍ଜୁନ କହିଲେ, ହେ ଅଚ୍ୟୁତ, ଯୁଦ୍ଧ କରିବାକୁ ଜମା ହୋଇଥିବା ଏମାନଙ୍କୁ ମୁଁ ଟିକିଏ ଦେଖି ନିଏଁ । [ଆବେଗରେ ପୁଣି କହୁଚନ୍ତି]. ଏ ଯୁଦ୍ଧ

ବ୍ୟାପାରରେ ମତେ କାହା ସଙ୍ଗେ ଯୁଝିବାକୁ ହେବ ? ଏ ଯୁଦ୍ଧରେ ଦୁର୍ବୁଦ୍ଧି ଦୁର୍ଯ୍ୟୋଧନର ହିତୈଷୀ ହୋଇ ଯେଉଁମାନେ ଆସିଛନ୍ତି, ସେହି ଯୁଦ୍ଧକାମୀମାନଙ୍କୁ [ଟିକିଏ ମୁଁ ଦେଖି ନିଏ ] । ଦୁଇ ସେନା ମଧ୍ୟରେ ମୋ ରଥ ରଖ । ୨୧-୨୩ ।

ବ୍ୟାଖ୍ୟା ସୂଚନା—ସେମାନେ ମୋ ସମାନ କି ନୁହନ୍ତି ? କିଂବା ତାଙ୍କ ସଙ୍ଗେ ମୋର ଯୁଦ୍ଧ ଉଚିତ କି ନୁହେଁ ? ଏହାହିଁ ଦେଖିନେବାର ଅଭିପ୍ରାୟ । ୨୧-୨୩ ।

## ସଂଜୟ ଉବାଚ

**ଏବମୁକ୍ତୋ ହୃଷୀକେଶୋ ଗୁଡ଼ାକେଶେନ ଭାରତ**
**ସେନୟୋରୁଭୟୋର୍ମଧ୍ୟେ ସ୍ଥାପୟିତ୍ୱା ରଥୋତ୍ତମଂ । ୨୪ ।**
**ଭୀଷ୍ମଦ୍ରୋଣପ୍ରମୁଖତଃ ସର୍ବେଷାଂ ଚ ମହୀକ୍ଷିତାଂ**
**ଉବାଚ ପାର୍ଥ ପଶ୍ୟୈତାନ ସମବେତାନ୍ କୁରୂନିତି । ୨୫ ।**

**ଅନ୍ୱୟ**—ସଞ୍ଜୟଃ ଉବାଚ—ଭାରତ, ହୃଷୀକେଶଃ ଗୁଡ଼ାକେଶେନ ଏବଂ ଉକ୍ତଃ [ ସନ୍ ] ଉଭୟୋଃ ସେନୟୋଃ ମଧ୍ୟେ ଭୀଷ୍ମଦ୍ରୋଣ-ପ୍ରମୁଖତଃ ସର୍ବେଷାଂ ଚ ମହୀକ୍ଷିତାଂ [ପ୍ରମୁଖତଃ] ରଥୋତ୍ତମଂ ସ୍ଥାପୟିତ୍ୱା, ପାର୍ଥ, ସମବେତାନ ଏତାନ୍ କୁରୂନ୍ ପଶ୍ୟ ଇତି ଉବାଚ । ୨୪-୨୫

**ଟୀକା**—ସଞ୍ଜୟଃ ଉବାଚ—ହେ ଭାରତ (ଧୃତରାଷ୍ଟ୍ର), ହୃଷୀକେଶଃ (ହୃଷୀକାନାଂ ଇନ୍ଦ୍ରିୟାଣାଂ ଈଶଃ ଜେତା, କୃଷ୍ଣଃ) ଗୁଡ଼ାକେଶେନ (ଗୁଡ଼ାକା ନିଦ୍ରା, ତସ୍ୟାଃ ଈଶଃ ତେନ, ଜିତ-ନିଦ୍ରେଣ, ଅନଳସେନ, ଅତନ୍ଦ୍ରିତକର୍ମଣା ଅର୍ଜୁନେନ) ଏବଂ (ଯଥା ଉକ୍ତଂ ତଥା) ଉକ୍ତଃ [ସନ୍] ଉଭୟୋଃ ସେନୟୋଃ ମଧ୍ୟେ, ଭୀଷ୍ମଦ୍ରୋଣ-ପ୍ରମୁଖତଃ (ଭୀଷ୍ମଦ୍ରୋଣୟୋଃ ଅଗ୍ରତଃ), ସର୍ବେଷାଂ ମହୀକ୍ଷିତାଂ (ରାଜ୍ଞାଂ) ଚ [ପ୍ରମୁଖତଃ] ରଥୋତ୍ତମଂ (ରଥଶ୍ରେଷ୍ଠଂ, କପିଧ୍ୱଜଂ) ସ୍ଥାପୟିତ୍ୱା ହେ ପାର୍ଥ—(ପୃଥା, କୁନ୍ତୀ, ତସ୍ୟାଃ ପୁତ୍ରଃ, ଅର୍ଜୁନଃ) [ଯୁଦ୍ଧାର୍ଥଂ] ସମବେତାନ୍ (ମିଳିତାନ୍) ଏତାନ୍ କୁରୂନ୍ (କୌରବ-ପକ୍ଷାନ୍) ପଶ୍ୟ ଇତି ଉବାଚ । ୨୪-୨୫ ।

**ଅର୍ଥ**—ସଞ୍ଜୟ କହିଲେ, ହେ ଭାରତ (ଧୃତରାଷ୍ଟ୍ର), ଶ୍ରୀକୃଷ୍ଣ ଅର୍ଜୁନଙ୍କଠାରୁ ଏହିପରି ଶୁଣି ଦୁଇ ସେନାଙ୍କ ଭିତରେ ଭୀଷ୍ମ, ଦ୍ରୋଣ ଓ ଅନ୍ୟ ସବୁ ରାଜାମାନଙ୍କ ଆଗରେ ରଥଶ୍ରେଷ୍ଠ (କପିଧ୍ୱଜ)କୁ ରଖି, ହେ ପାର୍ଥ ଯୁଦ୍ଧପାଇଁ ଏକାଠି ହୋଇଥିବା ଏହି କୁରୁପକ୍ଷମାନଙ୍କୁ ଦେଖ, ବୋଲି କହିଲେ । ୨୪-୨୫ ।

ବ୍ୟାଖ୍ୟାସୂଚନା—ହୃଷୀକେଶ = ହୃଷୀକ, ଇନ୍ଦ୍ରିୟ—ଯେଉଁମାନେ ଭୋଗରେ ହର୍ଷ ବା ଆନନ୍ଦ ଦିଅନ୍ତି ସେମାନଙ୍କର ଈଶ; ଜିତେନ୍ଦ୍ରିୟ । ଗୁଡ଼ାକେଶ = ଗୁଡ଼ାକା ନିଦ୍ରା ବା ଆଳସ୍ୟର ଈଶ ବା ପ୍ରଭୁ; ଅତନ୍ଦ୍ରିତକର୍ମା । ମାତ୍ର ତିଲକ କହନ୍ତି—ହୃଷୀ,

ଆନଂଦରେ ଲଂବଥାଏ କେଶ ଯାହାର ସେ ହୃଷୀକେଶ; ଓ ଗୁଡ଼ା, ଘନ ବା ଗୁଡ଼ାଏ କେଶ ଯାହାର ସେ ଗୁଡ଼ାକେଶ—ଏଇପରି ଅର୍ଥ ବେଶି ସଂଗତ। କାରଣ; ହୃଷୀକ, ଇଂଦ୍ରିୟ ଓ ଗୁଡ଼ାକା, ନିଦ୍ରା, ଏପରି ଅର୍ଥ ଅପ୍ରଚଳିତ। ୨୪-୨୫।

**ତତ୍ରାପଶ୍ୟତ୍ ସ୍ଥିତାନ ପାର୍ଥଃ ପିତୃନଥ ପିତାମହାନ୍ ।**
**ଆଚାର୍ଯ୍ୟାନ୍ମାତୁଲାନ ଭ୍ରାତୃନ୍ ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍ତଥା**
**ଶ୍ୱଶୁରାନ୍ ସୁହୃଦଶ୍ଚୈବ ସେନୟୋରୁଭୟୋରପ । ୨୬ ।**

**ଅନ୍ୱୟ**—ତତ୍ର ଉଭୟୋଃ ସେନୟୋଃ [ମଧ୍ୟେ] ଅପି ପାର୍ଥଃ ପିତୃନ୍ ଅଥ ପିତାମହାନ୍, ଆଚାର୍ଯ୍ୟାନ୍, ମାତୁଳାନ୍, ଭ୍ରାତୃନ୍, ପୁତ୍ରାନ୍, ପୌତ୍ରାନ୍ ତଥା ସଖୀନ୍, ଶ୍ୱଶୁରାନ୍, ସୁହୃଦଃ ଚ ଏବ ସ୍ଥିତାନ୍ ଅପଶ୍ୟତ୍ । ୨୬ ।

**ଟୀକା**—ପାର୍ଥଃ (ଅର୍ଜ୍ଜୁନଃ) ତତ୍ର (ଯୁଦ୍ଧବ୍ୟାପାରେ) ଉଭୟୋଃ ସେନୟୋଃ [ମଧ୍ୟେ] ଅପି(ନ ତୁ କେବଲଂ କୌରବସେନାୟାଂ) ପିତୃନ୍ (ପିତୃକଳ୍ପାନ୍ ମାନ୍ୟାନ୍) ଅଥ (ତଥା) ପିତାମହାନ୍, ଆଚାର୍ଯ୍ୟାନ୍, ମାତୁଳାନ୍, ଭ୍ରାତୃନ, ପୁତ୍ରାନ୍, ପୌତ୍ରାନ୍ ତଥା ସଖୀନ୍ (ମିତ୍ରାଣି), ଶ୍ୱଶୁରାନ୍, ସୁହୃଦଃ (ଅତ୍ୟାଗସହନୋ ବନ୍ଧୁଃ ସଦୈବାନୁମତଃ ସୁହୃତ୍; ଏକକ୍ରିୟଂ ଭବେନ୍ମିତ୍ରଂ, ସମପ୍ରାଣଃ ସଖା ମତଃ—ଇତି ସଖିସୁହୃଦୋର୍ଭେଦଃ ମନ୍ତବ୍ୟଃ) ଚ ଏବ ସ୍ଥିତାନ୍ ଅପଶ୍ୟତ୍ । ୨୬ ।

**ଅର୍ଥ**—[ଖାଲି କୁରୁସେନାରେ ନୁହେଁ] ସେହି ଦୁଇ ସେନା ଭିତରେ ବି ଅର୍ଜ୍ଜୁନ ଖାଲି ପିତୃ-[ତୁଲ୍ୟମାନ୍ୟ ଲୋକ], ପିତାମହ, ଆଚାର୍ଯ୍ୟ; ମାମୁଁ, ଭାଇ, ପୁଅ, ନାତି, ସାଂଗ, ଶ୍ୱଶୁର ଓ ସୁହୃତ୍ ସବୁ ଥିବାର ଦେଖିଲେ । ୨୬ ।

ବ୍ୟାଖ୍ୟା ସୂଚନା—ପିତୃ=ପିତୃତୁଲ୍ୟ ଲୋକ; ସୁହୃଦ୍—ହରହର ଆତ୍ମାପରି ଯାହା ସଂଗେ ମନ ମିଳେ, ସେ ସୁହୃତ୍, "ସର୍ବଦା ଯେ ଅନୁମତ, ସେ ସୁହୃତ୍" "ସମପ୍ରାଣ, ସଖା" । ୨୬ ।

**ତାନ୍ ସମୀକ୍ଷ୍ୟ ସ କୌଂତେୟଃ ସର୍ବାନ୍ ବଂଧୂନବସ୍ଥିତାନ୍ ।**
**କୃପୟା ପରୟାବିଷ୍ଟୋ ବିଷୀଦନ୍ନିଦମବ୍ରବୀତ୍ । ୨୭ ।**

**ଅନ୍ୱୟ**—ସଃ କୌଂତେୟଃ ତାନ୍ ସର୍ବାନ୍ ବଂଧୂନ୍ ଅବସ୍ଥିତାନ୍ ସମୀକ୍ଷ୍ୟ ପରୟା କୃପୟା ଆବିଷ୍ଟଃ [ସନ୍] ବିଷୀଦନ୍ ଇଦଂ ଅବ୍ରବୀତ୍ । ୨୭

**ଟୀକା**—ସଃ କୌଂତେୟଃ (ଅର୍ଜ୍ଜୁନଃ) ତାନ୍ ସର୍ବାନ ବଂଧୂନ୍ [ତତ୍ର] ଅବସ୍ଥିତାନ୍ (ଯୁଦ୍ଧାୟ ସନ୍ନିହିତାନ୍) ସମୀକ୍ଷ୍ୟ (ଦୃଷ୍ଟ୍ୱା) ପରୟା [ମହତ୍ୟା] କୃପାୟ

[ଏତେ ମମ ସ୍ୱଜନାଃ ଇତି ମୋହେନ, ମମତା-ମୋହଜନିତକରୁଣୟା, କୃପଣତୟା ବା] ଆବିଷ୍ଟଃ (ଗ୍ରସ୍ତଃ) [ସନ୍] ବିଷୀଦନ୍ ( ବିଷାଦ୍‌ଯୁକ୍ତଃ ସନ୍ ) ଇଦଂ [ବକ୍ଷ୍ୟମାଣଂ] ଅବ୍ରବୀତ୍ । ୨୭ ।

**ଅର୍ଥ**—[ଯେଉଁ ଅର୍ଜ୍ଜୁନ ଧନୁ ଉଠାଇ ଧରିଥିଲେ] ସେହି ଅର୍ଜ୍ଜୁନ ଏବେ ସେଇ ସବୁ ବନ୍ଧୁମାନଙ୍କୁ ଯୁଦ୍ଧକୁ ଠିଆହୋଇ ଥିବାର ଦେଖି ଘୋର କୃପାରେ ଘେରି ହୋଇ ଯାଇ ବ୍ୟାକୁଳ ହୋଇ ଏହା କହିଲେ । ୨୭ ।

ବ୍ୟାଖ୍ୟା ସୂଚନା—କୃପା = ମୋହଜନିତ ଅଂଧ ମମତା, କୃପଣତା; ମୋର ଆପଣା ଲୋକ ବୋଲି ଘାଂଟି ହେବାର ଯେଉଁ ମମତା । ଏହା ଠିକ୍ ଦୟା ନୁହେ । ୧-୭ ଟୀକା ଦେଖ ।

## ଅର୍ଜ୍ଜୁନ ଉବାଚ

**ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣ ଯୁଯୁତ୍ସୂନ୍ ସମବସ୍ଥିତାନ୍ ।**
**ସୀଦନ୍ତି ମମ ଗାତ୍ରାଣି ମୁଖଂ ଚ ପରିଶୁଷ୍ୟତି । ୨୮ ।**

**ଅନ୍ୱୟ**—କୃଷ୍ଣ ! ଇମାନ୍ ସ୍ୱଜନାନ୍ ଯୁଯୁତ୍ସୂନ୍ ସମବସ୍ଥିତାନ୍ ଦୃଷ୍ଟ୍ୱା ମମ ଗାତ୍ରାଣି ସୀଦଂତି ମୁଖଂ ଚ ପରିଶୁଷ୍ୟତି । ୨୮ ।

**ଟୀକା**—ଅର୍ଜ୍ଜୁନଃ ଉବାଚ—ହେ କୃଷ୍ଣ ! ଇମାନ୍ ସ୍ୱଜନାନ୍ (ଆତ୍ମୀୟାନ୍ ) ଯୁଯୁତ୍ସୂନ୍ (ଯୋଦ୍ଧୁକାମାନ୍ ) [ଅତ୍ର] ସମବସ୍ଥିତାନ୍ (ଏକତ୍ରାବସ୍ଥିତାନ୍) ଦୃଷ୍ଟ୍ୱା ମମ ଗାତ୍ରାଣି (ଅବୟବାଃ) ସୀଦଂତି (ଅବସନ୍ନାନି ଭବଂତି ), ମୁଖଂ ଚ ପରିଶୁଷ୍ୟତି-(ବିଶୁଷ୍କଂ ଭବତି) । ୨୮ ।

**ଅର୍ଥ**—ଅର୍ଜ୍ଜୁନ କହିଲେ—ହେ କୃଷ୍ଣ, ଏଇ ଆପଣା ଲୋକଙ୍କୁ ଏଠି ଯୁଝିବା ପାଇଁ ଏକାଠି ଠିଆ ହୋଇଥିବାର ଦେଖି ମୋ ହାତ ଗୋଡ ଚଳୁନାହିଁ ଓ ପାଟି ଶୁଖିଯାଉଛି ।

**ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ ।**
**ଗାଂଡ଼ୀବଂ ସ୍ରଂସତେ ହସ୍ତାତ୍ ତ୍ୱକ୍ ଚୈବ ପରିଦହ୍ୟତେ ୨୯।**

**ଅନ୍ୱୟ**—ଶରୀରେ ମେ ବେପଥୁଃ ଚ ରୋମହର୍ଷଃ ଚ ଜାୟତେ । ହସ୍ତାତ୍ ଗାଂଡ଼ୀବଂ ସ୍ରଂସତେ । ତ୍ୱକ୍ ଚ ଏବ ପରିଦହ୍ୟତେ । ୨୯ ।

**ଟୀକା**—ମେ (ମମ) ଶରୀରେ ବେପଥୁଃ (କଂପଃ) ଚ [ଭବତି] । ରୋମହର୍ଷଃ (ରୋମାଂଚଃ) ଚ ଜାୟତେ । ଗାଂଡ଼ୀବଂ (ନାମ ମମ ଧନୁଃ) ହସ୍ତାତ୍ ସ୍ରଂସତେ (ସ୍ଖଳତି) । ତ୍ୱକ୍ (ଚର୍ମ) ଚ ଏବ ପରିଦହ୍ୟତେ (ସର୍ବତଃ ସଂତପ୍ୟତେ) । ୨୯ ।

**ଅର୍ଥ**—ପୁଣି ମୋ ଦେହ ଥରୁଛି ଓ ରୋମ ଟାଂକୁରି ଉଠୁଛି । ଗାଂଡ଼ୀବ ଧନୁ ହାତରୁ ଖସି ପଡ଼ୁଛି । ଦେହସାକ ଜଳିପୋଡ଼ି ଗଲପରି ଲାଗୁଛି । ୨୯ ।

**ନ ଚ ଶକ୍ନୋମ୍ୟବସ୍ଥାତୁଂ ଭ୍ରମତୀବ ଚ ମେ ମନଃ ।**
**ନିମିତ୍ତାନି ଚ ପଶ୍ୟାମି ବିପରୀତାନି କେଶବ । ୩୦ ।**

**ଅନ୍ୱୟ**— କେଶବ ! ଅବସ୍ଥାତୁଂ ଚ ନ ଶକ୍ନୋମି । ମନଃ ଚ ଭ୍ରମତି ଇବ । ବିପରୀତାନି ନିମିତ୍ତାନି ଚ ପଶ୍ୟାମି । ୩୦ ।

**ଟୀକା**— ହେ କେଶବ (କୃଷ୍ଣ), (ଅବସ୍ଥାତୁଂ) (ସ୍ଥିରଃ ସ୍ଥାତୁଂ) ଚ [ଅହଂ] ନ ଶକ୍ନୋମି, ମେ (ମମ) ମନଃ ଚ ଭ୍ରମତି ଇବ । ବିପରୀତାନି (ଅହିତାନି) ନିମିତ୍ତାନି (ଲକ୍ଷଣାନି) ଚ ପଶ୍ୟାମି । ୩୦ ।

**ଅର୍ଥ**— ହେ କୃଷ୍ଣ ! ପୁଣି ମୁଁ ଠିଆ ହୋଇ ରହିପାରୁ ନାହିଁ ଓ ମୋ ମୁଣ୍ଡ ବୁଲଇ ହେଲପରି ହେଉଛି । ମୁଁ ଦେଖୁଛି [ଏ ସବୁ] ଅମଙ୍ଗଳ ଲକ୍ଷଣ । ୩୦ ।

**ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନମାହବେ ।**
**ନ କାଙ୍‌କ୍ଷେ ବିଜୟଂ କୃଷ୍ଣ ନ ଚ ରାଜ୍ୟଂ ସୁଖାନି ଚ । ୩୧।**
**କିଂ ନୋ ରାଜ୍ୟେନ ଗୋବିନ୍ଦ କିଂ ଭୋଗୈର୍ଜୀବିତେନ ବା ୩୨।**

**ଅନ୍ୱୟ**— ଆହବେ ସ୍ୱଜନଂ ହତ୍ୱା ଅନୁ ଶ୍ରେୟଃ ନ ପଶ୍ୟାମି । କୃଷ୍ଣ ! ବିଜୟଂ ନ କାଙ୍‌କ୍ଷେ । ନ ଚ ରାଜ୍ୟଂ ନ ସୁଖାନି ଚ । ଗୋବିନ୍ଦ ! ରାଜ୍ୟେନ ନଃ କିମ୍ ? ଭୋଗୈଃ କିମ୍ ? ଜୀବିତେନ ବା କିମ୍ ? ୩୧-୩୨ ।

**ଟୀକା**— ଆହବେ (ଯୁଦ୍ଧେ) ସ୍ୱଜନଂ ହତ୍ୱା ଅନୁ (ଅନନ୍ତରଂ) ଶ୍ରେୟଃ (ମଙ୍ଗଳଂ) ଚ ନ ପଶ୍ୟାମି । ହେ କୃଷ୍ଣ, ଅହଂ ବିଜୟଂ ନ କାଙ୍‌କ୍ଷେ (ପ୍ରାର୍ଥୟେ), ରାଜ୍ୟଂ ଚ ସୁଖାନି ଚ ନ [କାଙ୍‌କ୍ଷେ] । ହେ ଗୋବିନ୍ଦ, ନଃ (ଅସ୍ମାକଂ) ରାଜ୍ୟେନ କିମ୍ ? ଭୋଗୈଃ କିମ୍ ? ଜୀବିତେନ ବା କିମ୍ ? । ୩୧-୩୨ ।

**ଅର୍ଥ**—ପୁଣି ଯୁଦ୍ଧରେ ଆପଣା ଲୋକଙ୍କୁ ମାରି, ଫଳରେ ମୁଁ ଶ୍ରେୟ ବି ଦେଖୁନାଇ । ହେ କୃଷ୍ଣ, ବିଜୟ ମୋର ଲୋଡ଼ା ନାହିଁ, କି ରାଜ୍ୟ ଲୋଡ଼ା ନାହିଁ; ସୁଖ ଗୁଡ଼ାଏ ବି ଲୋଡ଼ା ନାଇ । ହେ ଗୋବିନ୍ଦ ! ଆମର ରାଜ୍ୟରେ କି କାର୍ଯ୍ୟ ? ଭୋଗ ଗୁଡ଼ାଏ କଣ ହେବ ? ବଂଚିବାରୁ ବା କ'ଣ ମିଳିବ ? ୩୧-୩୨ ।

**ଯେଷାମର୍ଥେ କାଙ୍‌କ୍ଷିତଂ ନୋ ରାଜ୍ୟଂ ଭୋଗାଃ ସୁଖାନି ଚ**
**ତ ଇମେଽବସ୍ଥିତା ଯୁଦ୍ଧେ ପ୍ରାଣାଂସ୍ତ୍ୟକ୍ତ୍ୱା ଧନାନି ଚ ।୩୩।**

**ଅନ୍ୱୟ**— ଯେଷାଂ ଅର୍ଥେ ନଃ ରାଜ୍ୟଂ କାଙ୍‌କ୍ଷିତଂ, ଭୋଗାଃ [କାଙ୍‌କ୍ଷିତାଃ] ସୁଖାନି [କାଂକ୍ଷିତାନି] ଚ ତେ ଇମେ ପ୍ରାଣାନ୍ ଧନାନି ଚ ତ୍ୟକ୍ତ୍ୱା ଯୁଦ୍ଧେ ଅବସ୍ଥିତାଃ । ୩୩ ।

**ଟୀକା**—[ଯତଃ] ଯେଷାଂ ଅର୍ଥେ (ପ୍ରୟୋଜନେ) ନଃ (ଅସ୍ମାକଂ) ରାଜ୍ୟଂ କାଙ୍କ୍ଷିତଂ (ଈପ୍ସିତଂ), ଭୋଗାଃ [କାଙ୍କ୍ଷିତାଃ] ସୁଖାନି ଚ [କାଙ୍କ୍ଷିତାନି], ତେ ଇମେ [ଜନସ୍ୟ] ପ୍ରାଣାନ୍ ଧନାନି ଚ ତ୍ୟକ୍ତ୍ୱା (ଉତ୍ସୃଜ୍ୟ) ଯୁଦ୍ଧେ ଅବସ୍ଥିତାଃ (ଯକ୍ତିତାଃ ସ୍ଥିତାଃ) । ୩୩ ।

**ଅର୍ଥ**—ଯାହାଙ୍କ ପାଇଁ ରାଜ୍ୟ, ଭୋଗ ଓ ସୁଖମାନ ଆମର ଲୋଡ଼ା, ଏ ତ ସେଇମାନେ ଜୀବନ, ଧନ ସବୁ ମୂଳ୍ଚ୍ଛ ଯୁଦ୍ଧକୁ ଠିଆ ହୋଇଛନ୍ତି । ୩୩ ।

**ଆଚାର୍ଯ୍ୟାଃ ପିତରଃ ପୁତ୍ରାସ୍ତଥୈବ ଚ ପିତାମହାଃ ।**
**ମାତୁଳାଃ ଶ୍ୱଶୁରାଃ ପୌତ୍ରାଃ ଶ୍ୟାଳାଃ ସମ୍ବନ୍ଧିନସ୍ତଥା ।୩୪।**

**ଅନ୍ୱୟ**—ସ୍ପଷ୍ଟ । ୩୪ ।

**ଟୀକା**—[ତେ ଇମେ କେ ଇତି ଦର୍ଶୟତି] ଆଚାର୍ଯ୍ୟାଃ, ପିତରଃ, ପୁତ୍ରାଃ, ତଥା ପିତାମହାଃ, ଚ ଏବ ମାତୁଳାଃ, ଶ୍ୱଶୁରାଃ, ପୌତ୍ରାଃ, ଶ୍ୟାଳାଃ, ତଥା ସମ୍ବନ୍ଧିନଃ ।୩୪।

**ଅର୍ଥ**—[ ସେଇ ଏମାନେ କିଏ ବୋଲି କହି ଯାଉଛନ୍ତି ] ଗୁରୁ, ପିତା, ପୁତ୍ର, ପୁଣି ପିତାମହ, ମାମୁଁ, ଶ୍ୱଶୁର, ନାତି, ଶଳା ଓ ସମ୍ବନ୍ଧୀ [ ଏଇମାନେ ତ ଏସବୁ ] । ୩୪ ।

**ଏତାନ୍ନ ହନ୍ତୁମିଚ୍ଛାମି ଘ୍ନତୋଽପି ମଧୁସୂଦନ**
**ଅପି ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ କିଂ ନୁ ମହୀକୃତେ ।୩୫।**

**ଅନ୍ୱୟ**—ମଧୁସୂଦନ ! ଘ୍ନତଃ ଅପି ଏତାନ୍ ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ ଅପି ହନ୍ତୁଂ ନ ଇଚ୍ଛାମି । ମହୀକୃତେ ନୁ କିମ୍ । ୩୫ ।

**ଟୀକା**—ହେ ମଧୁସୂଦନ ( କୃଷ୍ଣ ), [ଅସ୍ମାନ୍] ଘ୍ନତଃ (ମାରୟତଃ) ଅପି ଏତାନ୍ ହନ୍ତୁଂ ନ ଇଚ୍ଛାମି । ତ୍ରୈଲୋକ୍ୟରାଜ୍ୟସ୍ୟ (ସ୍ୱର୍ଗମର୍ତ୍ତ୍ୟପାତାଳାଧିପତ୍ୟସ୍ୟ) ହେତୋଃ ଅପି [ଏତାନ୍ ହନ୍ତୁଂ ନ ଇଚ୍ଛାମି] ନୁ (ପୁନଃ) ମହୀକୃତେ (ଭୂମିମାତ୍ରସ୍ୟ ହେତୋଃ) କିଂ [ବକ୍ତବ୍ୟମ୍] ? । ୩୫ ।

**ଅର୍ଥ**—ହେ ମଧୁସୂଦନ ( କୃଷ୍ଣ ), ମୋତେ ମାରିବାକୁ ବସିଥିଲେହେଁ ଏମାନଙ୍କୁ ମାରିବାକୁ ମୋର ମନ ହେଉ ନାହିଁ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିଲୋକର ରାଜ୍ୟ ପାଇବ ନୁହେଁ । ତେବେ ସାମାନ୍ୟ ଭୂମି ପାଇଁ ( ଭୂମିରେ ରାଜ୍ୟ ପାଇଁ ) କ'ଣ ବା କହୁଛ ? । ୩୫ ।

**ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ କା ପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ**
**ପାପମେବାଶ୍ରୟେଦସ୍ମାନ ହତ୍ୱୈତାନାତତାୟିନଃ ।୩୬।**

**ଅନ୍ୱୟ**—ଜନାର୍ଦ୍ଦନ ! ଧାର୍ତ୍ତରାଷ୍ଟ୍ରାନ୍ ନିହତ୍ୟ ନଃ କା ପ୍ରୀତିଃ ସ୍ୟାତ୍ ? ଆତତାୟିନଃ ଏତାନ୍ ହତ୍ୱା ଅସ୍ମାନ୍ ପାପଂ ଏବ ଆଶ୍ରୟେତ୍ ।୩୬।

**ଟୀକା**—ହେ ଜନାର୍ଦ୍ଦନ (ପାପିଜନପୀଡ଼ନକାରନ୍ କୃଷ୍ଣ), ଧାର୍ତ୍ତରାଷ୍ଟ୍ରାନ୍ (ଦୁର୍ଯ୍ୟୋଧନାଦୀନ୍ କୌରବାନ୍) ନିହତ୍ୟ (ମାରୟିତ୍ୱା) ନଃ (ଅସ୍ମାକଂ) କା ପ୍ରୀତିଃ (ସୁଖଂ) ସ୍ୟାତ୍ (ଭବେତ୍) ? [“ଗୁରୁଂ ବା ବାଲବୃଦ୍ଧୌ ବା ବ୍ରାହ୍ମଣଂ ବା ବହୁଶ୍ରୁତମ୍ । ଆତତାୟିନମାୟାନ୍ତଂ ହନ୍ୟାଦେବାବିଚାରୟନ୍” ଇତି ଶାସ୍ତ୍ରବିଧାନେ ସତ୍ୟପି] । ଆତତାୟିନଃ (ଅସ୍ମାନ୍ ନିହନ୍ତୁଂ ହନ୍ତୁଂ ଶସ୍ତ୍ରପାଣୀନ୍) [ଅପି] ଏତାନ୍ (ଆଗ୍ନୀଦାନ୍) ହତ୍ୱା ଅସ୍ମାନ୍ ପାପଂ ଏବ ଆଶ୍ରୟେତ୍ । (ଅଗ୍ନିଦୋ ଗରଦଶ୍ଚୈବ ଶସ୍ତ୍ରପାଣିର୍ଧନାପହଃ କ୍ଷେତ୍ରଦାରାପହାରୀ ଚ ଷଡ଼େତେ ଆତତାୟିନଃ”—ଇତି ବଶିଷ୍ଠଃ ।)

**ଅର୍ଥ**—ହେ ଜନାର୍ଦ୍ଦନ, (ଦୁର୍ଯ୍ୟୋଧନ ପ୍ରଭୃତି) ଧାର୍ତ୍ତରାଷ୍ଟ୍ରଙ୍କୁ ମାରି ଆମର କି ସୁଖ ହବ ? ଏମାନେ ଆତତାୟୀ ହେଲେହେଁ ସେମାନଙ୍କୁ ମାରିଲେ ଆମକୁ ନିଶ୍ଚେ ପାପ ଲାଗିବ । ୩୬ ।

ବ୍ୟାଖ୍ୟା ସୂଚନା—ଯେ ମାରିବାକୁ ହାତ ହତିଆର ଧରି ତିଆରି ଥାଏ, ସେ ଏକ ଆତତାୟୀ । ଆଉ ପାଞ୍ଚ ପ୍ରକାର ଆତତାୟୀ ଅଛନ୍ତି । ସେ ହେଉଛନ୍ତି—ଯେ ଘର ପୋଡ଼ିଦିଏ, ଯେ ବିଷ ଦିଏ, ଯେ ଧନ ମାରିନିଏ, ଯେ ଭୂମିହରଣ କରେ, ପୁଣି ଯେ ନିଜ ପତ୍ନୀ ବା ସ୍ତ୍ରୀଜନଙ୍କୁ ବଳାତ୍କାରେ ନିଏ । ଗୁରୁ ହେଉ, ପିଲା ବା ବୁଢ଼ା ହେଉ, କମ୍ବା ବିଦ୍ୱାନ୍ ବ୍ରାହ୍ମଣ ହେଉ, ଯେ ହେଉ—ଆତତାୟୀ ଦେଖିଲେ ବେଧଡ଼କ ମାରିବ ବୋଲି ମନୁସଂହିତାରେ ସ୍ପଷ୍ଟ କୁହାଯାଇଅଛି । ମାତ୍ର ଏମାନେ ଆତତାୟୀ ହେଲେହେଁ ସେମାନଙ୍କୁ ମାରିଲେ ପାପ ଲାଗିବ ବୋଲି ଅର୍ଜ୍ଜୁନ ଏଠାରେ କହୁଛନ୍ତି । ଏଠାରେ ଜନାର୍ଦ୍ଦନ ବୋଲି କୃଷ୍ଣଙ୍କୁ ଡାକିବାରେ ସୂଚିତ ହେଉଛି, ତୁମେ ଜନ ବା ପାପିଜନମାନଙ୍କୁ ମର୍ଦ୍ଦନ କର ସତ, ମାତ୍ର ଆତ୍ମୀୟମର୍ଦ୍ଦନରୂପ ଅପକର୍ମର ମଧ୍ୟ ତୁମେହିଁ ତ ଦଣ୍ଡବିଧାତା । ୩୬ ।

**ତସ୍ମାନ୍ନାର୍ହା ବୟଂ ହନ୍ତୁଂ ଧାର୍ତ୍ତରାଷ୍ଟ୍ରାନ୍ ସ୍ୱବାନ୍ଧବାନ୍ ।**
**ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବ । ୩୭ ।**

**ଅନ୍ୱୟ**—ତସ୍ମାତ୍ ସ୍ୱବାନ୍ଧବାନ୍ ଧାର୍ତ୍ତରାଷ୍ଟ୍ରାନ୍ ହନ୍ତୁଂ ବୟଂ ନ ଅର୍ହାଃ । ମାଧବ ! ସ୍ୱଜନଂ ହି ହତ୍ୱା କଥଂ ସୁଖିନଃ ସ୍ୟାମ । ୩୭ ।

**ଟୀକା**—ତସ୍ମାତ୍ ସ୍ୱବାନ୍ଧବାନ୍ ( ସ୍ୱଜନାନ୍ ) ଧାର୍ତ୍ତରାଷ୍ଟ୍ରାନ୍ ହନ୍ତୁଂ (ମାରୟିତୁଂ) ବୟଂ ନ ଅର୍ହାଃ (ଯୋଗ୍ୟାଃ, ବଧିନା କ୍ଷମାଃ) [ଭବାମଃ] । ହି (ଯତଃ) ହେ ମାଧବ, ସ୍ୱଜନଂ ହତ୍ୱା କଥଂ ବୟଂ ସୁଖିନଃ ସ୍ୟାମ (ଭବେମ) । ୩୭ ।

**ଅର୍ଥ**—ତେଣୁ ଆପଣା ବନ୍ଧୁ ଦୁର୍ଯୋଧନପକ୍ଷୀୟ ଧାର୍ତ୍ତରାଷ୍ଟ୍ରମାନଙ୍କୁ ମାରିବା ଆମର ଠିକ୍ ନୁହେଁ । କାହିଁକି ନା, ହେ ମାଧବ, ଆପଣା ଲୋକଙ୍କୁ ମାରି ଆମେ କିପରି ସୁଖୀ ହେବା ? । ୩୭ ।

**ଯଦ୍ୟପ୍ୟେତେ ନ ପଶ୍ୟନ୍ତି ଲୋଭୋପହତଚେତସଃ ।**
**କୁଳକ୍ଷୟକୃତଂ ଦୋଷଂ ମିତ୍ରଦ୍ରୋହେ ଚ ପାତକମ୍ । ୩୮ ।**
**କଥଂ ନ ଜ୍ଞେୟମସ୍ମାଭିଃ ପାପଦସ୍ମାନ୍ନିବର୍ତ୍ତିତୁମ୍ ।**
**କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିର୍ଜନାର୍ଦ୍ଦନ । ୩୯ ।**

**ଅନ୍ୱୟ**—ଲୋଭୋପହତଚେତସଃ ଏତେ ଯଦ୍ୟପି କୁଳକ୍ଷୟକୃତଂ ଦୋଷଂ ମିତ୍ରଦ୍ରୋହେ ଚ ପାତକଂ ନ ପଶ୍ୟନ୍ତି, ହେ ଜନାର୍ଦ୍ଦନ କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିଃ ଅସ୍ମାଭିଃ ଅସ୍ମାତ୍ ପାପାତ୍ ନିବର୍ତ୍ତିତୁଂ କଥଂ ନ ଜ୍ଞେୟମ୍ ? । ୩୮-୩୯ ।

**ଟୀକା**—ଯଦ ଅପି ଏତେ [କୌରବାଃ] ଲୋଭୋପହତଚେତସଃ (ଲୋଭାଭିଭୂତମନସଃ [ସନ୍ତଃ] କୁଳକ୍ଷୟକୃତଂ (ସ୍ୱବଂଶନାଶଜନିତଂ) ଦୋଷଂ (ଅହିତଂ) ମିତ୍ରଦ୍ରୋହେ (ମିତ୍ରଜିଘାଂସାୟାଂ) ପାତକଂ (ନରକପାତହେତୁଂ ପାପଂ) ଚ ନ ପଶ୍ୟନ୍ତି, [ତଥାପି] [ହେ] ଜନାର୍ଦ୍ଦନ, କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିଃ (ସମ୍ୟକ୍ ଜାନଦ୍ଭିଃ) ଅସ୍ମାଭିଃ ଅସ୍ମାତ୍ ପାପାତ୍ ନିବର୍ତ୍ତିତୁଂ କଥଂ ନ ଜ୍ଞେୟମ୍ ? । ୩୮-୩୯ ।

**ଅର୍ଥ**—[ନ୍ୟାୟରେ ଆମର ଯେଉଁ ରାଜ୍ୟ ପାଇବା ଉଚିତ ସେଇ ରାଜ୍ୟ] ଲୋଭରେ ମନ ବିକୃତ ଥିବାରୁ ଏହି କୌରବମାନେ [ଆପଣା ଜ୍ଞାତି ନାଶରେ ଯେ କୁଳକ୍ଷୟ ହେବ, ସେଇ] କୁଳକ୍ଷୟଜନିତ ଅହିତ ଓ ମିତ୍ରଦ୍ରୋହରେ ପାତକ ଦେଖୁ ନାହାନ୍ତି; ହେଲେ ହେଁ ଜନାର୍ଦ୍ଦନ, ଆମେ ତ କୁଳକ୍ଷୟଜନିତ ଅହିତ ଭଲ କରି ବୁଝିପାରୁଥାଉଁ, ଆମର ଏ ପାପରୁ ନିବର୍ତ୍ତିବାକୁ କାହିଁକି ବିଚାର ନ ହେବ ? । ୩୮-୩୯ ।

ବ୍ୟାଖ୍ୟା ସୂଚନା—ପାତକ = ଯାହା ତଳକୁ ପକାଇ ଦିଏ । ଏଠାରେ କୁହାଯାଉଚି ମିତ୍ରଙ୍କୁ ମାରିଲେ ଲୋକ ମଲା ପରେ ସ୍ୱର୍ଗକୁ ଯାଇ ନ ପାରି ତଳକୁ ପଡ଼ିଯାଏ । କୁଳ ନ ଥିବା ଲୋକ ମଧ୍ୟ ସେହିପରି ପିତୃଲୋକକୁ ତଳକୁ ପଡ଼ିଯାଏ ବୋଲି କୁହାଅଛି । ପରେ ୧. ୪୨ ଦେଖ । ଜନାର୍ଦ୍ଦନ ପଦରୁ ମଧ୍ୟ ସୂଚିତ ହେଉଚି, ତମେ ପାପୀର ମର୍ଦ୍ଦନକାରୀ; ତେଣୁ କୁଳକ୍ଷୟକର ଆତ୍ମୀୟମର୍ଦ୍ଦନରେ ଯେ ଦୋଷ, ତା ବୁଝୁଥିବ । ୧.୩୬ ଟୀକା ଦେଖ । ୩୮-୩୯ ।

**କୁଳକ୍ଷୟେ ପ୍ରଣଶ୍ୟନ୍ତି କୁଳଧର୍ମାଃ ସନାତନାଃ ।**
**ଧର୍ମେ ନଷ୍ଟେ କୁଳଂ କୃତ୍ସ୍ନମଧର୍ମୋଽଭିଭବତ୍ୟୁତ । ୪୦ ।**

**ଅନ୍ୱୟ**—କୁଳକ୍ଷୟେ ସନାତନାଃ କୁଳଧର୍ମାଃ ପ୍ରଣଶ୍ୟନ୍ତି । ଧର୍ମେ ନଷ୍ଟେ [ସତି] କୃତ୍ସ୍ନଂ କୁଳଂ ଉତ ଅଧର୍ମଃ ଅଭିଭବତି । ୪୦ ।

**ଟୀକା**—[କୁଳକ୍ଷୟକୃତଂ ଦୋଷଂ ବର୍ଣ୍ଣୟନ୍ ଆହ ପଞ୍ଚଭିଃ] । କୁଳକ୍ଷୟେ [ସତି] ସନାତନାଃ ( ପରଂପରାଗତାଃ ) କୁଳଧର୍ମାଃ ପ୍ରଣଶ୍ୟନ୍ତି । [ଏବଂଭୂତେ ପରଂପରାଗତେ] ଧର୍ମେ ନଷ୍ଟେ [ସତି] ଅଧର୍ମଃ (ଅନାଚାରଃ) କୃତ୍ସ୍ନଂ (ସମଗ୍ରଂ) [ଅବଶିଷ୍ଟଂ] କୁଳମ୍ ଉତ (ଅପି) ଅଭିଭବତି ବ୍ୟାପ୍ନୋତି । ୪୦ ।

**ଅର୍ଥ**—[ କୁଳକ୍ଷୟର ଅହିତ ପାଞ୍ଚ ଶ୍ଳୋକରେ ବିସ୍ତାର କହୁଚନ୍ତି । ] କୁଳକ୍ଷୟ ହେଲେ [ଚିରକାଳରୁ ପରଂପରାରେ ଗଢ଼ି ଆସୁଥିବା ] ସନାତନ କୁଳଧର୍ମ ନାଶ ହୁଏ । କୁଳଧର୍ମ ନାଶ ହେଲେ [ ବାକି ରହିଥିବା ] କୁଳଟି ଯାକକୁ ଅଧର୍ମ (ଅନାଚାର) ଘୋଟିଯାଏ । ୪୦ ।

ବ୍ୟାଖ୍ୟା ସୂଚନା—[ ସନାତନ = ସଦାକାଳ, ଚିରକାଳରୁ ସର୍ବଦା ହୋଇ ଆସୁଥିବା] । ୪୦ ।

**ଅଧର୍ମାଭିଭବାତ୍ କୃଷ୍ଣ ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ ।**
**ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟତେ ବର୍ଣ୍ଣସଂକରଃ । ୪୧ ।**

**ଅନ୍ୱୟ**—କୃଷ୍ଣ ! ଅଧର୍ମାଭିଭବାତ୍ କୁଳସ୍ତ୍ରିୟଃ ପ୍ରଦୁଷ୍ୟନ୍ତି । ବାର୍ଷ୍ଣେୟ ! ସ୍ତ୍ରୀଷୁ ଦୁଷ୍ଟାସୁ ବର୍ଣ୍ଣସଂକରଃ ଜାୟତେ । ୪୧ ।

**ଟୀକା**—ହେ କୃଷ୍ଣ ! [ ଏବଂ ] ଅଧର୍ମାଭିଭବାତ୍ କୁଳସ୍ତ୍ରିୟଃ ପ୍ରଦୁଷ୍ୟନ୍ତି ( ଭ୍ରଷ୍ଟାଃ ଭବନ୍ତି ) । ହେ ବାର୍ଷ୍ଣେୟ ( ବୃଷ୍ଣିବଂଶୋଦ୍ଭବ ଶ୍ରୀକୃଷ୍ଣ), ସ୍ତ୍ରୀଷୁ ଦୁଷ୍ଟାସୁ ( ସଦୋଷାସୁ, ଭ୍ରଷ୍ଟାସୁ ) [ସତୀଷୁ] ବର୍ଣ୍ଣସଂକରଃ (କ୍ଷେତ୍ରଭିନ୍ନ-ବର୍ଣ୍ଣୋତ୍ପନ୍ନଃ ସନ୍ତାନଃ) ଜାୟତେ । ୪୧ ।

**ଅର୍ଥ**—ହେ କୃଷ୍ଣ, ଅଧର୍ମ ଘୋଟିଲେ କୁଳସ୍ତ୍ରୀମାନେ ଭ୍ରଷ୍ଟା ହୁଅନ୍ତି । ହେ ବୃଷ୍ଣିକୁଳପୁତ୍ର (କୃଷ୍ଣ), ସ୍ତ୍ରୀମାନେ ଭ୍ରଷ୍ଟା ହେଲେ ବର୍ଣ୍ଣସଂକର ଜନ୍ମ ହୁଏ । ୪୧ ।

ବ୍ୟାଖ୍ୟା ସୂଚନା—ବାର୍ଷ୍ଣେୟ = ବୃଷ୍ଣିକୁଳପୁଅ । ଏଠାରେ କୃଷ୍ଣଙ୍କୁ ଜନକ ପ୍ରଥିତ ବୃଷ୍ଣିକୁଳନନ୍ଦନ ବୋଲି ସମ୍ବୋଧନ କରିବାର ସାର୍ଥକତା ସ୍ପଷ୍ଟ । ବର୍ଣ୍ଣସଂକର = ଅନ୍ୟ ବର୍ଣ୍ଣର ପୁରୁଷ ଆଡ଼େ ପିଲା । ଯାହାର ଜନ୍ମରେ ଜାତି ମିଶିଯାଏ । ୪୧ ।

**ସଂକରୋ ନରକାୟୈବ କୁଳଘ୍ନାନାଂ କୁଳସ୍ୟ ଚ ।**
**ପତନ୍ତି ପିତରୋ ହ୍ୟେଷାଂ ଲୁପ୍ତପିଣ୍ଡୋଦକକ୍ରିୟାଃ ।୪୨।**

**ଅନ୍ୱୟ**—ସଂକରଃ କୁଳଘ୍ନାନାଂ କୁଳସ୍ୟ ଚ ନରକାୟ ଏବ । ଏଷାଂ ହି ପିତରଃ ଲୁପ୍ତପିଣ୍ଡୋଦକକ୍ରିୟାଃ [ସନ୍ତଃ] ପତନ୍ତି । ୪୨ ।

**ଟୀକା**—[ଯ ଭୂ ବର୍ଣ୍ଣ] ସଙ୍କରଃ କୁଳଘ୍ନାନାଂ (ଆଦୌ କୁଳକ୍ଷୟକାରଣାଂ) [ତଥା ତେଷାଂ] କୁଳସ୍ୟ ଚ ନରକାୟ ଏବ ଭବତି । ହି (ଯତଃ) ଏଷାଂ [କୁଳଘ୍ନାନାଂ] ପିତରଃ (ପିତୃଲୋକାଃ) ଲୁପ୍ତପିଣ୍ଡୋଦକକ୍ରିୟାଃ (ଲୁପ୍ତାଃ ପିଣ୍ଡସ୍ୟ, ଉଦକସ୍ୟ ଚ କ୍ରିୟାଃ ତର୍ପଣାଦୟଃ ଯେଷାଂ ତେ, କବ୍ୟସ୍ୱାନ ଃ) [ସନ୍ତଃ] ପତନ୍ତି (ଅଧୋଗଚ୍ଛନ୍ତି) । ୪୨ ।

**ଅର୍ଥ**—ସେଇ ବର୍ଣ୍ଣସଙ୍କର, କୁଳକ୍ଷୟ କରିବା ଲୋକଙ୍କର ଓ ତାଙ୍କ କୁଳର କେବଳ ନରକ ପାଇଁ ହୁଅନ୍ତି । କାହିଁକି ନା, କୁଳକ୍ଷୟକାରୀ ଲୋକଙ୍କର ପିତୃଲୋକେ ପିଣ୍ଡପାଣି ନ ପାଇ ପିତୃଲୋକରୁ ତଳକୁ ପଡ଼ିଯାନ୍ତି । ୪୨ ।

ବ୍ୟାଖ୍ୟା ସୂଚନା—ପିତୃଲୋକେ, ଆଗ ପିତୃଲୋକରେ ରହି, ପରେ ବଂଶ ଲୋକଙ୍କ ଶ୍ରାଦ୍ଧାଦ ପୁଣ୍ୟ ଫଳରେ ସେଇଠାରୁ ଉପରକୁ (ସ୍ୱର୍ଗକୁ) ଯାନ୍ତି, କମ୍ବା ବଂଶ ଲୋକଙ୍କଠୁ ପିଣ୍ଡ ପାଣି ନ ପାଇଲେ ତଳକୁ (ନରକକୁ) ପଡ଼ନ୍ତି । ଏହା ପୁରାଣ ପରଂପରାର ବିଶ୍ୱାସ । ପିତୃଲୋକେ ଶ୍ରାଦ୍ଧରେ ପିଣ୍ଡ ଓ ତର୍ପଣରେ ପାଣି ପାଆନ୍ତି ।୪୨।

**ଦୋଷୈରେତୈଃ କୁଳଘ୍ନାନାଂ ବର୍ଣ୍ଣସଂକରକାରକୈଃ ।**
**ଉତ୍ସାଦ୍ୟନ୍ତେ ଜାତିଧର୍ମାଃ କୁଳଧର୍ମାଶ୍ଚ ଶାଶ୍ୱତାଃ ।୪୩।**

**ଅନ୍ୱୟ**—କୁଳଘ୍ନାନାଂ ଏତୈଃ ବର୍ଣ୍ଣସଙ୍କରକାରକୈଃ ଦୋଷୈଃ ଶାଶ୍ୱତାଃ (ଚିରନ୍ତନାଃ) ଜାତିଧର୍ମାଃ (ବର୍ଣ୍ଣଧର୍ମାଃ) କୁଳଧର୍ମାଃ (କୁଳାଚାରାଃ) ଚ ଉତ୍ସାଦ୍ୟନ୍ତେ (ଲୁପ୍ୟନ୍ତେ) ।୪୩।

**ଟୀକା**—କୁଳଘ୍ନାନାଂ ଏତୈଃ ବର୍ଣ୍ଣସଙ୍କରକାରକୈଃ ଦୋଷୈଃ ଶାଶ୍ୱତାଃ (ଚିରନ୍ତନାଃ) ଜାତିଧର୍ମାଃ (ବର୍ଣ୍ଣଧର୍ମାଃ) କୁଳଧର୍ମାଃ (କୁଳାଚାରାଃ) ଚ ଉତ୍ସାଦ୍ୟନ୍ତେ (ଲୁପ୍ୟନ୍ତେ) । ୪୩ ।

**ଅର୍ଥ**—କୁଳକ୍ଷୟକାରୀଙ୍କ ଏହିସବୁ ବର୍ଣ୍ଣସଙ୍କର କରାଇବା ଦୋଷରେ ଚିରକାଳରୁ ଚଳି ଆସୁଥିବା ସନାତନ ଜାତିଧର୍ମ ଓ କୁଳାଚାର ଉଚ୍ଛନ୍ନ ଯାଏ ।୪୩।

ବ୍ୟାଖ୍ୟା ସୂଚନା—ସଙ୍କର ବା ବର୍ଣ୍ଣସଙ୍କର କଥାଟିରେ ପୂର୍ବ ଶ୍ଳୋକ ଦୁଇଟିରେ ଏହାହିଁ ପ୍ରକାଶ ପାଉଛି ବୋଲି ମନେହୁଏ । ପ୍ରଥମେ ଥିଲା—ଦୁଇ ବର୍ଣ୍ଣ, ଆର୍ଯ୍ୟ (ଗୋରା) ଓ ଅନାର୍ଯ୍ୟ (କଳା) । ପରେ ବ୍ୟବସାୟ ଭେଦରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ରୂପରେ ଭାଗ ହେବାରୁ ଲୋକେ ଚାରିବର୍ଣ୍ଣ ବା "ଚାତୁର୍ବର୍ଣ୍ୟମ୍" ବୋଲି କହିଲେ । କାହିଁକି ନା, ବର୍ଣ୍ଣ କଥାଟିର ଅର୍ଥ ସେତେବେଳକୁ ହୋଇଥିଲା 'ଜାତି' । ସେଥିରୁ ବାହାରିଚ, ବର୍ଣ୍ଣାଶ୍ରମ ଧର୍ମ; ଅର୍ଥାତ, ବର୍ଣ୍ଣଧର୍ମ ବା ଜାତିର ବ୍ୟବସାୟ ଓ ଆଶ୍ରମଧର୍ମ ବା ବ୍ୟକ୍ତିର ସାଧନା । ପ୍ରତ୍ୟେକ ବ୍ୟକ୍ତିର ଆଶ୍ରମମାନଙ୍କରେ ନିଜର କୁଳଗତ ବ୍ୟକ୍ତିତ୍ୱବିକାଶର ସାଧନାକୁ ଆଶ୍ରମଧର୍ମ କହୁଥିଲେ । ବ୍ରାହ୍ମଣ ପାଇଁ ଆଶ୍ରମ ବିଧି ଥିଲା ଚାରୋଟି; ଯଥା—ବ୍ରହ୍ମଚର୍ଯ୍ୟ ବା ପାଠ ପଢ଼ିବା କାଳର ସାଧନା, ଗାର୍ହସ୍ଥ୍ୟ ବା ଘର କରିବା, ବାନପ୍ରସ୍ଥ ବା ଅତି ଲୋକସମାଗମ ଓ ଗୃହସ୍ଥଚାର ବିଷୟାଦି ଛାଡ଼ି

ବଣରେ ରହ୍ହି ଆତ୍ମଜ୍ଞାନର ଚର୍ଚ୍ଚା କରିବା, ସନ୍ନ୍ୟାସ ବା ସବୁ ପ୍ରକାର ବିଷୟାସକ୍ତ ରୁଡ଼ି ନିର୍ଦ୍ଦ୍ୱ ହେବା । ବ୍ରାହ୍ମଣ ପାଇଁ ଏ ଗୃହ ଆଶ୍ରମ, କ୍ଷତ୍ରିୟ ଓ ବୈଶ୍ୟ ପାଇଁ ସନ୍ନ୍ୟାସ ଗ୍ରହଣ ଛଡ଼ା ବା ସ୍ୱାବେଷିଯାକ ଆଶ୍ରମ, ଶୂଦ୍ରର କେବଳ ଗୃହସ୍ଥାଶ୍ରମ ପ୍ରଶସ୍ତ ଥିଲା । ଏଥିପାଇଁ କୁଳାଗ୍ନିର ବା କୁଳଧର୍ମ କଥାଟିର ପ୍ରୟୋଗ । ଯେଉଁ କୁଳ ବା ବଂଶରେ ଯାହା ଯାହା ପରଂପରା ପଡ଼ିଥିଲା, ସେ କୁଳ ଲୋକେ ତାକୁଇ ଟେକି ରଖିବାରେ ବ୍ୟଗ୍ର ଥିଲେ । ବେବେ ବାପ ବଡ଼ବାପଙ୍କ ନାମ ରଖିବା ପ୍ରଥାଟି ସନ୍ଦର୍ଭ ଚଳେ । ତାହାହିଁ କୁଳଧର୍ମ । ଯେଉଁ କୁଳରେ ଭଲ ଆଶ୍ରମପାଳନବିଧି ଚାଲି ଆସୁଥିଲା, ସେ କୁଳର କେହି ତା ଲୋପ କରିବା ଠିକ୍ ବିଚାରୁ ନ ଥିଲେ । ବରଂ ସମସ୍ତେ ତାହାକୁ ଭଲକରି ବଢ଼ାଇ କୁଳଧର୍ମର ଟେକ ରଖୁଥିଲେ । ବର୍ଣ୍ଣ ଭେଦରୁ କ୍ରମେ ଏହିପରି ଜାତିଧର୍ମ ଓ କୁଳଧର୍ମ ସଭ୍ୟତାର ସାଧନ ପ୍ରତିଷ୍ଠିତ ହୋଇ ଯାଇଥିଲା । ମାତ୍ର ଏହା ପ୍ରାକୃତ ଲୋକଙ୍କ ଧାରଣା । ମୌଳିକ ଆର୍ଯ୍ୟଧର୍ମର ଧାରଣା ଏହା ନୁହେଁ । ସେଥିରେ ଜନ୍ମଗତ ଜାତି, ଦେହ ରଙ୍ଗଗତ ବର୍ଣ୍ଣର ଭେଦ ନ ଥିଲା । ସାଧାରଣ ମାନବର ସ୍ୱାର୍ଥବୁଦ୍ଧିର କ୍ରମିକ ବିକାଶରେ ଏପରି ଜନ୍ମାଦିଗତ ଅହଂକାର ପଡ଼ି ଯାଇଥିଲା ସତ, ମାତ୍ର ସ୍ୱଭାବଗତ କର୍ମ ବା ସ୍ୱଧର୍ମ ଧାରଣାରେ ମାନବର ପରଂପରାଗତ ବିକଶିତ ବ୍ୟକ୍ତିତ୍ୱର ଅକାଟ୍ୟ ଭେଦହିଁ ଯଥାର୍ଥ ବର୍ଣ୍ଣଭେଦ । ଅର୍ଜୁନ ଏହି ତାତ୍ତ୍ୱିକ ବର୍ଣ୍ଣାଦି ଭେଦକଥା ନ ବୁଝି, ଜନ୍ମଗତ ଜାତି ଓ ବର୍ଣ୍ଣଭେଦ ଧରି ପ୍ରାକୃତ ଲୋକ ପରି ଏଠାରେ କହି ଯାଉଚନ୍ତି । ପର ଶ୍ଲୋକର ଟୀକା ଦେଖ । 'ସଙ୍କର' ଓ 'ଉତ୍ସନ୍ନ ଯିବା' କଥା ଦୁଇଟିର ଯଥାର୍ଥ ପ୍ରୟୋଗ ପାଇଁ ୩.୨୪ ଓ ତା ଟୀକା ଦେଖ । ୪୩ ।

**ଉତ୍ସନ୍ନକୁଳଧର୍ମାଣାଂ ମନୁଷ୍ୟାଣାଂ ଜନାର୍ଦ୍ଦନ ।**
**ନରକେ ନିୟତଂ ବାସୋ ଭବତୀତ୍ୟନୁଶୁଶ୍ରୁମ ।୪୪।**

**ଅନ୍ୱୟ**—[ହେ] ଜନାର୍ଦ୍ଦନ ! ଉତ୍ସନ୍ନକୁଳଧର୍ମାଣାଂ ମନୁଷ୍ୟାଣାଂ ନରକେ ନିୟତଂ ବାସଃ ଭବତି ଇତି ଅନୁଶୁଶ୍ରୁମ ।୪୪।

**ଟୀକା**—ହେ ଜନାର୍ଦ୍ଦନ, [ ଏବଂ ଭୂତାନାଂ ] ଉତ୍ସନ୍ନକୁଳଧର୍ମାଣାଂ ମନୁଷ୍ୟାଣାଂ ନରକେ ନିୟତଂ (ନିଶ୍ଚିତଂ) ବାସଃ (ସ୍ଥିତିଃ) ଭବତି ଇତି ଅନୁଶୁଶ୍ରୁମ (ବୟଂ ଶ୍ରୁତବନ୍ତଃ) ।୪୪।

**ଅର୍ଥ**—ହେ ଜନାର୍ଦ୍ଦନ, କୁଳଧର୍ମ ଉତ୍ସନ୍ନ ହୋଇ ଯାଇଥିବା ଲୋକଙ୍କର ନରକରେ ନିଶ୍ଚେ ସ୍ଥାନ ହୁଏ ବୋଲି ଶାସ୍ତ୍ରାଦିରେ ଶୁଣାଯାଏ ।୪୪।

ବ୍ୟାଖ୍ୟା ସୂଚନା—ପୂର୍ବେ ଆର୍ଯ୍ୟମାନେ ସାଧାରଣତଃ ଏଇ କୁଳାଗ୍ନିର ଜାତି ବର୍ଣ୍ଣସଙ୍କର କରାଇ ଦେଉ ନ ଥିଲେ । ପୂର୍ବ ଶ୍ଲୋକ ବ୍ୟାଃ ସୂଃ ରେ କୁହାଯାଇଥିବା ଏଇ ବର୍ଣ୍ଣଭେଦ ଓ ଜାତିଭେଦ ଜଗିବାହିଁ ସମାଜର ସାଧାରଣ ଲୋକଙ୍କର ଜାତିଧର୍ମ ଓ କୁଳଧର୍ମ ବୋଲି ଧାରଣା ଥିଲା । ଅର୍ଜୁନ ସେଇ କଥା ଧରି ଆର୍ଯ୍ୟତ୍ୱ ନଷ୍ଟ ହେବାର

ଭୟକଲେ । କିନ୍ତୁ କୃଷ୍ଣ ପରେ କହିଲେ, ଏସବୁ ପ୍ରାକୃତ ଲୋକଙ୍କ ଧାରଣା, ଆର୍ଯ୍ୟଧର୍ମ ନୁହେ । ସ୍ୱଧର୍ମ ପାଳନହିଁ ଯଥାର୍ଥ ଆର୍ଯ୍ୟଧର୍ମ । ଏଇସବୁ କୁଳକ୍ଷୟ ପ୍ରଭୃତି ଲୋକ ପ୍ରଚଳିତ ଭାବରେ ରହି ସ୍ୱଧର୍ମ କରିବାରେ ପଛଘୁଞ୍ଚା ଦେବାହିଁ "ଅନାର୍ଯ୍ୟଜୁଷ୍ଟ" ବା ଅନାର୍ଯ୍ୟ ଆଚରଣ । ୨.୨ ଦେଖ । ବର୍ଣ୍ଣ, ସ୍ୱଧର୍ମ, ସ୍ୱଧର୍ମରେ ମୃତ୍ୟୁ ବିଷୟରେ ୩.୯; ୩.୩୫; ୪.୧୩; ୧୮.୪୧-୪୭ ଦେଖ ।୪୪।

**ଅହୋ ବତ ମହତ୍ ପାପଂ କର୍ତ୍ତୁଂ ବ୍ୟବସିତା ବୟମ୍ ।**
**ଯଦ୍‌ରାଜ୍ୟସୁଖ-ଲୋଭେନ ହନ୍ତୁଂ ସ୍ୱଜନମୁଦ୍ୟତାଃ ।୪୫।**

**ଅନ୍ୱୟ**—ଅହୋ ବତ ବୟଂ ମହତ୍ ପାପଂ କର୍ତ୍ତୁଂ ବ୍ୟବସିତାଃ ଯତ୍ ରାଜ୍ୟସୁଖଲୋଭେନ ସ୍ୱଜନଂ ହନ୍ତୁଂ ଉଦ୍ୟତାଃ [ଭବାମଃ] ।୪୫।

**ଟୀକା**—ଅହୋ ବତ (ହା କଷ୍ଟମ୍) ବୟଂ ମହତ୍ ପାପଂ କର୍ତ୍ତୁଂ ବ୍ୟବସିତାଃ (କୃତନିଶ୍ଚୟାଃ) । ଯତ୍ (ଯସ୍ମାତ୍) ରାଜ୍ୟ-ସୁଖ-ଲୋଭେନ ସ୍ୱଜନଂ ହନ୍ତୁଂ ଉଦ୍ୟତାଃ [ଭବ ମଃ] । ୪୫ ।

**ଅର୍ଥ**—ଅହୋ ସତେ ଆମେ ମହାପାପ କରିବାକୁ ବସିଥାଉଁ କାହିଁକି ନା, ରାଜ୍ୟ ସୁଖ-ଲୋଭରେ ଆପଣା ଲୋକଙ୍କୁ ମାରିବାକୁ ଆମେ ତିଆରି ହୋଇଥାଉଁ ।୪୫।

**ଯଦି ମାମପ୍ରତୀକାରମଶସ୍ତ୍ରଂ ଶସ୍ତ୍ରପାଣୟଃ ।**
**ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍ତନ୍ମେ କ୍ଷେମତରଂ ଭବେତ୍ ।୪୬।**

**ଅନ୍ୱୟ**—ଅଶସ୍ତ୍ରଂ ଅପ୍ରତୀକାରଂ ମାଂ ଯଦି ଧାର୍ତ୍ତରାଷ୍ଟ୍ରାଃ ରଣେ ହନ୍ୟୁଃ, ତତ୍ ମେ କ୍ଷେମତରଂ ଭବେତ୍ ।୪୬।

**ଟୀକା**—ଯଦି ଶସ୍ତ୍ରପାଣୟଃ (ଧୃତାୟୁଧାଃ) ଧାର୍ତ୍ତରାଷ୍ଟ୍ରାଃ (କୌରବାଃ) ଅପ୍ରତୀକାରଂ (ପ୍ରତୀକାରବିମୁଖଂ, ନିରୁଦ୍ୟମଂ) ଅଶସ୍ତ୍ରଂ (ଶସ୍ତ୍ରହୀନଂ) ମାଂ ରଣେ ହନ୍ୟୁଃ (ମାରୟେୟୁଃ) ତତ୍ (ତର୍ହି) ମେ (ମମ) କ୍ଷେମତରଂ [ଅଧିକହିତଂ] ଭବେତ୍ । ୪୬ ।

**ଅର୍ଥ**—ଯେବେ ଶସ୍ତ୍ରଧାରୀ କୌରବମାନେ ଉଦ୍ୟମହୀନ ଓ ଶସ୍ତ୍ରଶୂନ୍ୟ ଅବସ୍ଥାରେ ମତେ ଯୁଦ୍ଧରେ ମାରନ୍ତି, ତେବେ ମୋର ବେଶି ମଙ୍ଗଳ ହେବ ।୪୬।

## ସଞ୍ଜୟ ଉବାଚ

**ଏବ ମୁକ୍ତ୍ୱାର୍ଜ୍ଜୁନଃ ସଂଖ୍ୟେ ରଥୋପସ୍ଥ ଉପାବିଶତ୍ ।**
**ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ ।୪୭।**

**ଅନ୍ୱୟ**—ସଂଖ୍ୟେ ରଥୋପସ୍ଥଃ ଶୋକସଂବିଗ୍ନମାନସଃ ଅର୍ଜ୍ଜୁନଃ ଏବଂ ଉକ୍ତ୍ୱା ସଶରଂ ଚାପଂ ବିସୃଜ୍ୟ ଉପାବିଶତ୍ ।୪୭।

**ଟୀକା**—ସଞ୍ଜୟଃ ଉବାଚ—ସଂଖ୍ୟେ (ଯୁଦ୍ଧେ) ରଥୋପସ୍ଥଃ (ରଥୋପରି ସ୍ଥିତଃ) ଅର୍ଜ୍ଜୁନଃ ଏବଂ (ଉକ୍ତ ରୂପଂ) ଉକ୍ତ୍ୱା, ଶୋକସଂବିଗ୍ନମାନସଃ (ଶୋକାକୁଳମନାଃ) [ସନ୍] ସଶରଂ (ଶରସହିତଂ) ଚାପଂ ଧନୁଃ (ଗାଣ୍ଡୀବଂ ନାମ) ବିସୃଜ୍ୟ ( ତ୍ୟକ୍ତ୍ୱା ) ଉପାବିଶତ୍ (ଉପବିଷ୍ଟଃ) । ୪୭ ।

**ଅର୍ଥ**—ସଞ୍ଜୟ କହିଲେ—ଯୁଦ୍ଧକୁ ରଥ ଉପରେ ଠିଆ ହୋଇଥିବା ଅର୍ଜ୍ଜୁନ ଏଇପରି କହି ଶୋକାକୁଳ ମନରେ ଶର ଯୋଡ଼ା ହୋଇଥିବା ଧନୁକୁ ଫିଙ୍ଗିଦେଇ ବସିପଡ଼ିଲେ । ୪୭ ।

ବ୍ୟାଖ୍ୟା ସୂଚନା—ରଥ ଉପରେ ଠିଆ ହୋଇ ଯୁଦ୍ଧ କରିବା ରୀତି ଥିଲା । ଅର୍ଜ୍ଜୁନ ଯୁଦ୍ଧକୁ ଠିଆ ହୋଇ ଧନୁ ଉଠାଇ ଶର ଯୋଡ଼ି ସାରିଥିଲେ । ପୂର୍ବ ୨୦ ଶ୍ଳୋକ ଦେଖ । ୪୭ ।



# ଦ୍ୱିତୀୟ ଅଧ୍ୟାୟ

## ସାଂଖ୍ୟ ଯୋଗ

### ଅଧ୍ୟାୟ-ପ୍ରବେଶ

ପ୍ରଥମ ଅଧ୍ୟାୟରେ କୁହାଯାଇଛି ଅର୍ଜୁନ ନିଜ ଲୋକଙ୍କୁ ମାରିବାକୁ ପଡ଼ିବ ଜାଣି, ଅତି ବ୍ୟସ୍ତ ହୋଇପଡ଼ିଲେ; କୁଳକ୍ଷୟ କରିବାର ପାପ କଥା କହିଗଲେ; କୁରୁକ୍ଷେତ୍ର ଯୁଦ୍ଧ ପରି ମହାସଙ୍କଟ କାଳରେ ମଧ୍ୟ ମାରିବାଟା ଧର୍ମ କି ନା, ଏହି ସନ୍ଦେହରେ ସେ ପଡ଼ିଗଲେ । ସେଥିପାଇଁ ଦ୍ୱିତୀୟ ଅଧ୍ୟାୟରେ ପ୍ରଥମେ "କଣ କଲେ ଭଲ ହେବ ମତେ ବତାଇ ଦିଅ" ବୋଲି କହିଲେ । ଶ୍ରୀକୃଷ୍ଣ କହୁଚନ୍ତି, "ଏଠାରେ କୁଳକ୍ଷୟକୁ ଡ଼ରିବା ଆର୍ଯ୍ୟ-ଭାବ ନୁହେଁ, ବରଂ ଯୁଦ୍ଧକୁ ଡ଼ରିବା ଅନାର୍ଯ୍ୟ ଆଚରଣ । ଏ ଦେହର ଭଲ ମନ୍ଦରେ ଭୁଲ ଯା ନା । ଦେହ ତ ହୋଇଛି, ଯିବା ପାଇଁ । ଏ ଦେହରେ ଯେଉଁ ଦେହୀ, ଅର୍ଥାତ୍, ଜୀବ ବା ଆତ୍ମା ଅଛି, ସେ ତ କାହିଁରେ ଲଗା ନୁହେଁ । ସେ ତ ମରୁ ନାହିଁ କି ମାରୁ ନାହିଁ । ଦେହରେ ଇନ୍ଦ୍ରିୟ କାର୍ଯ୍ୟ ଶୀତ ଉଷ୍ଣ, ସୁଖ ଦୁଃଖ ଆଦି 'ଦ୍ୱନ୍ଦ୍ୱ' ଦିଅନ୍ତି; ସେଥିରେ ଦେହୀର କିଛି ନାଇ । ଦେହୀ ଅଚିନ୍ତ୍ୟ, ଅବ୍ୟକ୍ତ, ଅବିକାର୍ଯ୍ୟ, ନିତ୍ୟ । ତେବେ ଯୁଦ୍ଧ ତ ତୋର ସ୍ୱଧର୍ମ । ଆଉ ଚିନ୍ତା କଣ ? ଏଇପରି ଦେହୀର ତତ୍ତ୍ୱ ବା ସାଂଖ୍ୟ ଜ୍ଞାନ ଓ ସ୍ୱଧର୍ମ ବା ଲୋକ-ବ୍ୟବହାର କଥା ଚେତାଇ ଦେଇସାରି, ସେ ଯୋଗ କଥା କହିଲେ । କର୍ମ କରିବାକୁ ମନୁଷ୍ୟ-ହାତ ଅଛି; କର୍ମର ଫଳ ହେବା ନ ହେବା ତା ହାତେ ନାହିଁ । ତେଣୁ 'ସମାଧିସ୍ଥ' ହୋଇ, ଅର୍ଥାତ୍, ମୁଁ 'ଦେହ' ନୁହେଁ—ମୁଁ 'ଦେହୀ' ବା ଆତ୍ମା—ଏଇ ଦୃଢ଼ ଧାରଣାରେ ଠିକ୍ ରହି, ସୁଖ ଦୁଃଖାଦି ଦ୍ୱନ୍ଦ୍ୱ ଓ କାମନାରୁ ବୁଦ୍ଧିକୁ ଅଲଗା କରି, ଲୋକ ସ୍ଥିରବୁଦ୍ଧି ବା ସ୍ଥିତପ୍ରଜ୍ଞ ହେବ ଓ ମମତାଦି ନ ରଖି କର୍ମ କରିଯିବ; ଏହାଇ ଯୋଗ । ଏଇ ଯୋଗ ପାଇଁ ଇନ୍ଦ୍ରିୟ ବଶ କରି ନିଜକୁ

ଠିକ୍ କରିବା ଦରକାର । ଇନ୍ଦ୍ରିୟର ଭୋଗ ରୋକିଦେଲେ, ଇନ୍ଦ୍ରିୟ ବଶ ହୁଏ ନାହିଁ । ଈଶ୍ୱର-ଭାବରେ ମନ ବସିଲେ, ଇନ୍ଦ୍ରିୟସଂଯମ ସୁଗମ ଓ ସ୍ଥିର ହୁଏ । ଖାଲି ଜ୍ଞାନର ପ୍ରଯତ୍ନରେ ହୁଏତ ସ୍ଥାୟୀ ଫଳ ହୋଇ ନ ପାରେ । ସେଥିପାଇଁ ଯୋଗୀ, ଈଶ୍ୱରପରାୟଣ ବା ଭକ୍ତ ହେବା ଦରକାର । ଏହିପରି ଜ୍ଞାନ କର୍ମ ଭକ୍ତିରେ ମୋକ୍ଷ ପ୍ରାପ୍ତ 'ସ୍ଥିତପ୍ରଜ୍ଞ' ଆତ୍ମା ଶାନ୍ତ ପାଏ । ଏହି ସ୍ଥିତପ୍ରଜ୍ଞାତ୍ମାର ସ୍ଥିତିକୁ ବ୍ରାହ୍ମୀ ସ୍ଥିତି ବା ବ୍ରହ୍ମରେ ରହିବା ବୋଲି କହନ୍ତି । ଏହାହିଁ ଦ୍ୱିତୀୟ ଅଧ୍ୟାୟର ସାର କଥା । [ ମୋହବଶ ମନୁଷ୍ୟ ଅଧର୍ମକୁ ଧର୍ମ ବୋଲି ବିଚାରେ । ମୋହ ହେତୁରୁ ଅର୍ଜୁନ ଆପଣା ପର ଅଲଗା କଲେ । ଏହି ମୋହ ମିଥ୍ୟା ବୋଲି ବୁଝାଇବା ପାଇଁ ଶ୍ରୀକୃଷ୍ଣ ଦେହ ଓ ଆତ୍ମାର ଭେଦ କହୁଚନ୍ତି । ଦେହ ଅନିତ୍ୟ ଓ ଭିନ୍ନ ଭିନ୍ନ, ଆଉ ଆତ୍ମା ନିତ୍ୟ ଓ ଏକ । ମନୁଷ୍ୟ କେବଳ ପୁରୁଷାର୍ଥର ଅଧିକାରୀ, ପରିଣାମର ନୁହେ । ଏଣୁ ଆପଣା କର୍ତ୍ତବ୍ୟ କର୍ମ ଠିକ୍ କରି, ନିଃସ୍ପୃହ ଭାବରେ ସେଥିରେ ଲାଗିରହିବା ତାର ଉଚିତ । ଈଶ୍ୱରପରାୟଣତାରେ ସେ ମୋକ୍ଷ ପାଇପାରେ—ମହାତ୍ମା ଗାନ୍ଧି । ]

## ସଞ୍ଜୟ ଉବାଚ

**ତଂ ତଥା କୃପୟାବିଷ୍ଟମଶ୍ରୁପୂର୍ଣ୍ଣାକୁଲେକ୍ଷଣମ୍ ।**
**ବିଷୀଦନ୍ତମିଦଂ ବାକ୍ୟମୁବାଚ ମଧୁସୂଦନଃ । ୧ ।**

**ଅନ୍ୱୟ**—ତଥା କୃପୟା ଆବିଷ୍ଟଂ ଅଶ୍ରୁପୂର୍ଣ୍ଣାକୁଲେକ୍ଷଣଂ ବିଷୀଦନ୍ତଂ ତଂ ମଧୁସୂଦନଃ ଇଦଂ ବାକ୍ୟଂ ଉବାଚ ।

**ଟୀକା**—ସଞ୍ଜୟଃ ଉବାଚ—ତଥା (ଉକ୍ତରୂପଂ) କୃପୟା (ଆତ୍ମୀୟମମତୟା) ଆବିଷ୍ଟଂ (ଗ୍ରସ୍ତଂ) ଅଶ୍ରୁପୂର୍ଣ୍ଣାକୁଲେକ୍ଷଣଂ (ଅଶ୍ରୁଭିଃ ପୂର୍ଣ୍ଣେ ଆକୁଳେ ବ୍ୟଥିତେ ଚ ଈକ୍ଷଣେ ଲୋଚନେ ଯସ୍ୟ ତଂ ବାଷ୍ପାବିଲବ୍ୟଥିତଚକ୍ଷୁଷଂ) ବିଷୀଦନ୍ତଂ (ଖେଦଯୁକ୍ତଂ) ତଂ (ଅର୍ଜୁନଂ) ମଧୁସୂଦନଃ (କୃଷ୍ଣଃ) ଇଦଂ (ବକ୍ଷ୍ୟମାଣଂ) ବାକ୍ୟଂ ଉବାଚ । ୧ ।

**ଅର୍ଥ**—ସଞ୍ଜୟ କହିଲେ—ଅର୍ଜୁନଙ୍କୁ ଏପରି କୃପାରେ ବୁଡ଼ି ଆଖି ଛଳ ଛଳ କରି ଶୋକ କରିବାର ଦେଖି ମଧୁସୂଦନ (କୃଷ୍ଣ) ଏହି କଥା କହିଲେ । ୧ ।

## ଶ୍ରୀ ଭଗବାନୁବାଚ

**କୁତସ୍ତ୍ୱା କଶ୍ମଲମିଦଂ ବିଷମେ ସମୁପସ୍ଥିତମ୍ ।**
**ଅନାର୍ଯ୍ୟଜୁଷ୍ଟମସ୍ୱର୍ଗ୍ୟମକୀର୍ତ୍ତିକରମର୍ଜୁନ । ୨ ।**

**ଅନ୍ୱୟ**—ଅର୍ଜ୍ଜୁନ ! ବିଷମେ କୁତଃ ତ୍ୱା ଇଦଂ ଅନାର୍ଯ୍ୟଜୁଷ୍ଟଂ ଅସ୍ୱର୍ଗ୍ୟଂ ଅକୀର୍ତ୍ତିକରଂ କଶ୍ମଳଂ ସମୁପସ୍ଥିତମ୍ । ୨ ।

**ଟୀକା**—ଶ୍ରୀ ଭଗବାନ ଉବାଚ—ହେ ଅର୍ଜ୍ଜୁନ, ବିଷମେ (ସଙ୍କଟେ—ଯତ୍ର କର୍ତ୍ତବ୍ୟ-ନିଶ୍ଚୟଃ ସ୍ପଷ୍ଟତଃ କାର୍ଯ୍ୟଂ ତତ୍ର ଇତି ଭାବଃ) ଇଦଂ ଅନାର୍ଯ୍ୟଜୁଷ୍ଟଂ (ଅନାର୍ଯ୍ୟୈଃ ଆର୍ଯ୍ୟେତରୈଃ ଜୁଷ୍ଟଂ ଆଚରିତଂ, ଯଦ୍ୱା ନ ଆର୍ଯ୍ୟୈଃ ଶ୍ରେଷ୍ଠପୁରୁଷୈଃ ଜୁଷ୍ଟଂ) ଅସ୍ୱର୍ଗ୍ୟ (ସ୍ୱର୍ଗବିରୋଧୀ) ଅକୀର୍ତ୍ତିକରଂ (ଅଯଶସ୍ୟଂ) କଶ୍ମଳଂ (ବୈକ୍ଳବ୍ୟଂ, ମୋହଃ) କୁତଃ (କସ୍ମାତ୍ ହେତୋଃ ) ତ୍ୱା (ତ୍ୱାଂ) ସମୁପସ୍ଥିତମ୍ (ଉପଗତମ୍) । ୨ ।

**ଅର୍ଥ**—ଶ୍ରୀ ଭଗବାନ କହିଲେ—ଅର୍ଜ୍ଜୁନ ରେ ! ସଙ୍କଟ ବେଳେ [ଯେଉଁ କର୍ତ୍ତବ୍ୟ ଠିକ୍ କରି କାମରେ ଲଗି ଥିବା ଉଚିତ] ଏ ଦୁର୍ଗତି ତତେ କାହୁ ଘୋଟିଲା ? ଏ ଯେ ଅନାର୍ଯ୍ୟର ଆଚରଣ । ସ୍ୱର୍ଗ ତ ଏଥିରେ ନାହିଁ, ପୁଣି ଅକୀର୍ତ୍ତି ମିଳିବ ଯେ । ୨ ।

ବ୍ୟାଖ୍ୟା ସୂଚନା—ଅର୍ଜ୍ଜୁନ ଏଥିପୂର୍ବରୁ ବର୍ଣ୍ଣଧର୍ମ, କୁଳକ୍ଷୟ ଓ ବର୍ଣ୍ଣସଙ୍କର ପ୍ରଭୃତି କଥା କହିଚନ୍ତି । ଏଠାରେ ଭଗବାନ୍ ସେଥିକରେ ପ୍ରତିବାଦ କରି ବୁଝାଇ ଦେଲେ ଯେ, ଏପରି ଜାତି ବର୍ଣ୍ଣଭେଦ ଓ କୁଳରକ୍ଷା ଭାବ ଅନାର୍ଯ୍ୟର ଧର୍ମ, ଆର୍ଯ୍ୟର ନୁହେ । ସଂସାରରେ ସୁଖ ଆଉ, ଦୁଃଖ ଆଉ, ବଂଶବୃଦ୍ଧି ଆଉ ବା କୁଳକ୍ଷୟ ଆଉ, ନିଜର ସ୍ୱଧର୍ମ କରିଯିବାହିଁ ଆର୍ଯ୍ୟଧର୍ମ, ଏହା ପରେ କହିବେ । 'ଏହା କରିବି କି ନା' ଏହି ଭାବରେ ମୂଢ଼ୀମାନ ହେବାକୁ ସଙ୍କଟ ବା ଧର୍ମସଙ୍କଟ କହନ୍ତି । ତାହାଇ ଏଠି 'ବିଷମ' । ୨ ।

## କ୍ଲୈବ୍ୟଂ ମାସ୍ମ ଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ ।
## କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ । ୩ ।

**ଅନ୍ୱୟ**—ପାର୍ଥ ! କ୍ଲୈବ୍ୟଂ ମାସ୍ମ ଗମଃ । ଏତତ୍ ତ୍ୱୟି ନ ଉପପଦ୍ୟତେ । ପରଂତପ ! କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱା ଉତ୍ତିଷ୍ଠ । ୩ ।

**ଟୀକା**—ହେ ପାର୍ଥ (ଅର୍ଜ୍ଜୁନ), କ୍ଲୈବ୍ୟଂ (ପୁରୁଷତ୍ୱଘ୍ନକ୍ଳୀବସ୍ୟ ଭାବଂ, କାତରତାଂ) ମାସ୍ମ (ନ) ଗମଃ (ଗଚ୍ଛ) । ଏତତ୍ ତ୍ୱୟି ନ ଉପପଦ୍ୟତେ (ଯୁଜ୍ୟତେ, ଯୁକ୍ତଂ ଭବତି) । ହେ ପରନ୍ତପ (ଶତ୍ରୁତାପନ), କ୍ଷୁଦ୍ରଂ (ନୀଚଜନୋଚିତଂ) ହୃଦୟ-ଦୌର୍ବଲ୍ୟଂ (ଚିତ୍ତଦୁର୍ବଲତାଂ) ତ୍ୟକ୍ତ୍ୱା [ଯୁଦ୍ଧାୟ] ଉତ୍ତିଷ୍ଠ । ୩

**ଅର୍ଥ**—ହେ ପାର୍ଥ, ଏ ନାମରଦ୍ପଣ ପାଖ ଯା ନା; ତତେ ଏ ସୁନ୍ଦର ନୁହେ । ହେ ପରଂତପ, ଏପରି ବେଦମ୍ଭ ହବାଟା ଯେ ଅଲ୍ପିକିଆ ଲୋକର କଥା । ସ୍ୱାକୁ ଛାଡ଼ ଉଠ୍ (ଯୁଦ୍ଧକୁ ଠିଆ ହୋ) । ୩ ।

ବ୍ୟାଖ୍ୟା ସୂଚନା—ପରଂତପ = ଯେ ପର ବା ଶତ୍ରୁକୁ ତାପ ଦିଏ । ଶତ୍ରୁକୁ ମାରିବା ତୋ କାମ, ଅତଏବ ତୁ ଉଠ୍, ଏହାହିଁ କହିବା ଅଭିପ୍ରାୟ । ଏଥିକରେ କନ୍ତୁ

ଅର୍ଜୁନଙ୍କ ମନ ମାନିଲା ନାହିଁ । ଅର୍ଜୁନ ପୁଣି ସ୍ୱଜନ ମାରିବାର ଶୋକ କଥା କହିଲେ । ୩ ।

## ଅର୍ଜୁନ ଉବାଚ

**କଥଂ ଭୀଷ୍ମମହଂ ସଂଖ୍ୟେ ଦ୍ରୋଣଂ ଚ ମଧୁସୂଦନ ।**
**ଇଷୁଭିଃ ପ୍ରତିଯୋତ୍ସ୍ୟାମି ପୂଜାର୍ହାବରିସୂଦନ । ୪ ।**

**ଅନ୍ୱୟ**—ମଧୁସୂଦନ ! ଅରିସୂଦନ ! ପୂଜାର୍ହୌ ଭୀଷ୍ମଂ ଦ୍ରୋଣଂ ଚ ଅହଂ ସଂଖ୍ୟେ କଥଂ ଇଷୁଭିଃ ପ୍ରତିଯୋତ୍ସ୍ୟାମି ? ୪ ।

**ଟୀକା**—ଅର୍ଜୁନଃ ଉବାଚ—[ନ କାଙ୍‌କ୍ଷେଽହଂ ଅପି ଚ] ହେ ମଧୁସୂଦନ, ଅହଂ ସଂଖ୍ୟେ (ଯୁଦ୍ଧେ) ଭୀଷ୍ମଂ ଦ୍ରୋଣଂ ଚ ଇଷୁଭିଃ (ବାଣୈଃ) କଥଂ ପ୍ରତିଯୋତ୍ସ୍ୟାମି (ହନିଷ୍ୟାମି) ଆଦୌ ବାଣୈଃ ମାଂ ମାରୟନ୍ତୌ ଅପି ତୌ କଥଂ ପ୍ରତିଶରୈଃ ବା ହନିଷ୍ୟାମି ଇତି ସ୍ପଷ୍ଟାର୍ଥଃ) ହେ ଅରିସୂଦନ ( ଶତ୍ରୂଣାଂ ନ ତୁ ପୂଜ୍ୟାନାଂ ନାଶକ), [ଇମୌ ମମ] ପୂଜାର୍ହୌ (ପୁଷ୍ପାଦିଭିଃ ଅର୍ଚନୀୟୌ—ନ ତୁ ବାଣୈଃ ହନ୍ତବ୍ୟୌ ଇତି ଆଶୟଃ) । ୪ ।

**ଅର୍ଥ**—ଅର୍ଜୁନ କହିଲେ—[ ମୁଁ ଜୟପାଉ ନାହିଁ, କିନ୍ତୁ] ହେ ମଧୁସୂଦନ, ଯୁଦ୍ଧରେ ମୁଁ ଭୀଷ୍ମଙ୍କୁ, ଦ୍ରୋଣଙ୍କୁ ପ୍ରତିଶରରେ ବା କିପରି ହାଣିବି ? ହେ ଅରିସୂଦନ, ଏ ଦୁହେଁ ଯେ ମୋର [ଫୁଲ ପ୍ରଭୃତିରେ ] ପୂଜା କରିବାର ଯୋଗ୍ୟ । [ଶରରେ ହାଣିବାର ଯୋଗ୍ୟ ନୁହନ୍ତି] । ୪ ।

ବ୍ୟାଖ୍ୟା ସୂଚନା—ପ୍ରତିଶର = ଶତ୍ରୁ ଆଗ ଶର ମାରିଲେ ତାକୁ କାଟି ଯେଉଁ ଶର ମାରନ୍ତି । ସେ ମତେ ଆଗ ମାରିଲେ ବି ମୁଁ ମାରିପାରିବି ନାହିଁ, ଏହି ଅଭିପ୍ରାୟ । ତୁମେ ସିନା 'ଅରିସୂଦନ' ଶତ୍ରୁଙ୍କର ନାଶକାରୀ, ପୂଜ୍ୟଙ୍କର ତ ନୁହ—ଏହି ଅଭିପ୍ରାୟ ମଧ୍ୟ ଅଛି । ୪ ।

**ଗୁରୂନହତ୍ୱା ହି ମହାନୁଭାବାନ୍**
**ଶ୍ରେୟୋ ଭୋକ୍ତୁଂ ଭୈକ୍ଷ୍ୟମପୀହ ଲୋକେ ।**
**ହତ୍ୱାର୍ଥକାମାଂସ୍ତୁ ଗୁରୂନିହୈବ**
**ଭୁଞ୍ଜୀୟ ଭୋଗାନ୍ ରୁଧିରପ୍ରଦିଗ୍ଧାନ୍ । ୫ ।**

**ଅନ୍ୱୟ**—ମହାନୁଭାବାନ୍ ଗୁରୂନ୍ ଅହତ୍ୱା ଇହ ଲୋକେ ଭୈକ୍ଷ୍ୟଂ ଅପି ହି ଭୋକ୍ତୁଂ ଶ୍ରେୟଃ ଅର୍ଥକାମାନ୍ ତୁ ଗୁରୂନ୍ ଏବ ହତ୍ୱା ଇହ ରୁଧିରପ୍ରଦିଗ୍ଧାନ୍ ଭୋଗାନ୍ ଭୁଞ୍ଜୀୟ । ୫ ।

**ଟୀକା**—[ଅଥ ଯୁଦ୍ଧେ ଏତାନ୍ ନ ହତ୍ୱା କା ତେ ଗତିଃ ? ଇତ୍ୟାଶଙ୍କ୍ୟ ଆହ] ହି (ଯତଃ) ମହାନୁଭବାନ୍ (ମାହାତ୍ମ୍ୟବତଃ) ଗୁରୂନ୍ ଅହତ୍ୱା ( ନ ହତ୍ୱା) ଇହଲୋକେ (ଜୀବଦଶାୟାଂ) ଭୈକ୍ଷ୍ୟଂ (ଭିକ୍ଷୟା ଲବ୍ଧମନ୍ନଂ) ଭୋକ୍ତୁଂ ଶ୍ରେୟଃ (କ୍ଷେମତରଂ ବରଂ) [ଯତଃ ଗୁରୁହତ୍ୟାପାପାତ୍ ଅତ୍ର ଧର୍ମସ୍ୟ, ପରଲୋକେ ଚ ମୋକ୍ଷସ୍ୟ ପ୍ରତିଷେଧଃ]--[କିଂ] ତୁ ଇହ [ଲୋକେ] ଅର୍ଥକାମାନ୍ (ଧନେଚ୍ଛୂନ୍, ବୃତ୍ତିଚ୍ଛେଦଭୟାତ୍ ଅତ୍ର ଯୁଦ୍ଧେ ସମାଗତାନ୍) [ନ ତୁ ସ୍ୱେଚ୍ଛୟା ମୟା ସହ ଯୋଦ୍ଧୁକାମାନ ଇତି ଭାବଃ] ଗୁରୂନ୍ ହତ୍ୱା (ବିନାଶ୍ୟ) ରୁଧିରପ୍ରଦିଗ୍ଧାନ୍ (ରକ୍ତଲିପ୍ତାନ୍) ଭୋଗାନ୍ [ଏବ] ଭୁଞ୍ଜୀୟ (ଅଶ୍ନୀୟାମ୍) । ୫ ।

**ଅର୍ଥ**—[ଯୁଦ୍ଧରେ ନ ମାରିଲେ କିପରି ଚଳିବ ? ଏହି ପ୍ରଶ୍ନ ଆଶଙ୍କା କରି କହୁଛନ୍ତି] କାହିଁକି ନା, ମହାତ୍ମା ଗୁରୁଙ୍କୁ ନ ମାରି ଏ ଜଗତରେ ଭିଖ ମାଗି ଖାଇବାହିଁ ବରଂ ଭଲ; [କାରଣ, ସେପରି ମାରିବାରେ ଇହଲୋକରେ ଧର୍ମ ଓ ପରଲୋକରେ ମୋକ୍ଷ ନାଶ ହେବ] ଏମାନେ ପୁଣି ଧନ ଇଚ୍ଛାଥିବା ଯୋଗୁଁ [ବୃତ୍ତିଚ୍ଛେଦ ଭୟରେ ବାଧ୍ୟ ହୋଇ] ଯୁଦ୍ଧକୁ ଆସିଛନ୍ତି । [ନିଜେ କିଛି ଇଚ୍ଛାକରି ମତେ ମାରିବାକୁ ଆସି ନାହାନ୍ତି । ଏପରି ଅବସ୍ଥାରେ] ଏଇ ଗୁରୁଙ୍କୁ ମାରି ଇହଲୋକରେ ଖାଲି ରକ୍ତ ଗୋଳିଆ ଭୋଗ ଗୁଡ଼ାଏ ଭୁଞ୍ଜିବି ସିନା । ୫ ।

ବ୍ୟାଖ୍ୟା ସୂଚନା—ମହାଭାରତରେ ଅଛି, ଯୁଦ୍ଧ ଆରମ୍ଭ ପୂର୍ବରୁ ଯୁଧିଷ୍ଠିର ଯୁଦ୍ଧଭୂମିରେ ଭୀଷ୍ମ, ଦ୍ରୋଣ ଓ ଶଲ୍ୟଙ୍କୁ ପ୍ରଣାମ କରି ଆଶୀର୍ବାଦ ଘେନିବାକୁ ଯାଇଥିଲେ । ସେତେବେଳେ ସେମାନେ ଆଶୀର୍ବାଦ କରି କହିଥିଲେ, "ଆମେ ଅର୍ଥର ଦାସ, ଦୁର୍ଯ୍ୟୋଧନର ତ ଖାଉଛୁ, କଣ କରିବୁଁ ?" ଏଥିପାଇଁ ଅର୍ଜୁନ ଏଠାରେ ଗୁରୁଙ୍କୁ ଅର୍ଥକାମୀ ବା ଧନ ପାଇଁ ଆସିଛନ୍ତି ବୋଲି କହୁଛନ୍ତି । ୫ ।

> ନ ଚୈତଦ୍‌ବିଦ୍ମଃ କତରନ୍ନୋ ଗରୀୟୋ-
> ଯଦ୍ୱା ଜୟେମ ଯଦି ବା ନୋ ଜୟେୟୁଃ ।
> ଯାନେବ ହତ୍ୱା ନ ଜିଜୀବିଷାମ-
> ସ୍ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ । ୬ ।

**ଅନ୍ୱୟ**—ଯଦ୍ ବା [ବୟଂ] ଜୟେମ, ଯଦି ବା ନଃ [ତେ] ଜୟେୟୁଃ କତରତ୍ ନଃ ଗରୀୟଃ, ଏତତ୍ ନ ବିଦ୍ମଃ । ଯାନ୍ ହତ୍ୱା ନ ଜିଜୀବିଷାମଃ ତେ ଧାର୍ତ୍ତରାଷ୍ଟ୍ରାଃ ଏବ ପ୍ରମୁଖେ ଅବସ୍ଥିତାଃ । ୬ ।

**ଟୀକା**—[ଏବଂ ସର୍ବଂ ନିଶ୍ଚିତଂ ତ୍ୟକ୍ତ୍ୱା କ୍ଷାତ୍ରଧର୍ମାତ୍ ଯୁଦ୍ଧମେବ ଅଙ୍ଗୀକରିଷ୍ୟାମଃ ଚେତ୍, ତଥାପି] ଯଦ୍ (ଯଦି) ବା [ବୟଂ କୌରବାନ୍] ଜୟେମ (ଜେଷ୍ୟାମଃ), ଯଦି ବା [କୌରବାଃ] ନଃ (ଅସ୍ମାନ୍) ଜୟେୟୁଃ (ଜେଷ୍ୟନ୍ତି), [ଏତୟୋଃ

ଦ୍ୱୟୋଃ ମଧ୍ୟେ] କତରତ୍ (କିଂ ନାମ) ନଃ (ଅସ୍ମାକଂ) ଗରୀୟଃ (ଶ୍ରେୟଃ), ଏତତ୍ ଚ [ବୟଂ] ନ ବିଦ୍ମଃ (ଜାନୀମଃ); [ଯତଃ] ଯାନ୍ ହତ୍ୱା ନ ଜିଜୀବିଷାମଃ (ଜୀବିତୁଂ ଇଚ୍ଛାମଃ) ତେ ଧାର୍ତ୍ତରାଷ୍ଟ୍ରାଃ (କୌରବାଃ) [ଏବ] ପ୍ରମୁଖେ (ସମ୍ମୁଖେ) ଅବସ୍ଥିତାଃ (ଦୃଶ୍ୟନ୍ତେ) । ୬ ।

**ଅର୍ଥ**—[ଏସବୁ ଛାଡ଼ି କ୍ଷାତ୍ରଧର୍ମ ବୋଲି ଯୁଦ୍ଧ କରିବା ଠିକ୍ କଲେ ବି] ଯଦି ଆମେ ଜିଣିବା [ତେବେ ଆମର ଭଲ], କି ଯଦି ଆମକୁ [ସେମାନେ] ଜିଣିବେ [ତେବେ ଆମର ଭଲ]—ଏ ଦୁଇଟିରେ କେଉଁଟି ଭଲ—ଆମ୍ଭେ ବି ବୁଝିପାରୁ ନାହିଁ । ଯାହାଙ୍କୁ ମାରିସାରି ଜୀଇ ରହିବାକୁ ମନ ହେବ ନାହିଁ, ସେଇ କୌରବମାନେ ଯେ [ଯୁଝିବାକୁ] ଆମ ଆଗରେ ଠିଆ ହୋଇଚନ୍ତି । ୬ ।

**କାର୍ପଣ୍ୟଦୋଷୋପହତସ୍ୱଭାବଃ**
**ପୃଚ୍ଛାମି ତ୍ୱାଂ ଧର୍ମସଂମୂଢଚେତାଃ ।**
**ଯଚ୍ଛ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ**
**ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍ । ୭ ।**

**ଅନ୍ୱୟ**—କାର୍ପଣ୍ୟଦୋଷୋପହତସ୍ୱଭାବଃ ଧର୍ମସଂମୂଢଚେତାଃ [ଅହଂ] ତ୍ୱାଂ ପୃଚ୍ଛାମି, ଯତ୍ ନିଶ୍ଚିତଂ ଶ୍ରେୟଃ ସ୍ୟାତ୍ ତତ୍ ମେ ବ୍ରୂହି । ଅହଂ ତେ ଶିଷ୍ୟଃ, ତ୍ୱାଂ ପ୍ରପନ୍ନଂ ମାଂ ଶାଧି । ୭ ।

**ଟୀକା**—[ତସ୍ମାତ୍] କାର୍ପଣ୍ୟଦୋଷୋପହତସ୍ୱଭାବଃ (କୃପଣଃ, ସ୍ୱଳ୍ପାମପି ସ୍ୱାର୍ଥକ୍ଷତିଂ ଅସହିଷ୍ଣୁଃ, ସ୍ୱାର୍ଥାନ୍ଧଃ, ତସ୍ୟ ଭାବଃ, କାର୍ପଣ୍ୟଂ, ତଦେବ ଦୋଷଃ, ତେନ ଉପହତଃ, ଦୂଷିତଃ, ସ୍ୱଭାବଃ, ଚିତ୍ତବୃତ୍ତିଃ ଯସ୍ୟ ସଃ, ଆତ୍ମୀୟ-ମମତା-ଦୋଷହତ-ଚିତ୍ତବୃତ୍ତିଃ) ଧର୍ମସଂମୂଢଚେତାଃ (ଧର୍ମେ ଯଥାକର୍ତ୍ତବ୍ୟେ ସଂମୂଢଂ ବିବେକହୀନଂ ଚେତଃ ମନଃ ଯସ୍ୟ ସଃ) [ଅହଂ] ତ୍ୱାଂ ପୃଚ୍ଛାମି, ଯତ୍ ନିଶ୍ଚିତଂ ଶ୍ରେୟଃ (ହିତଂ) ସ୍ୟାତ୍, ତତ୍ ମେ (ମହ୍ୟଂ) ବ୍ରୂହି (କଥୟ), [ନିଃଶ୍ରେୟସଂ ମେ ବ୍ରୂହି । ତତ୍ତୁ "ନାପ୍ରଶାନ୍ତାୟ ଦାତବ୍ୟଂ ନାଶିଷ୍ୟାୟାପୁତ୍ରାୟ ବା ପୁନଃ"—ଇତି ଶ୍ରୁତେଃ] ଅହଂ ତେ (ତବ) ଶିଷ୍ୟଃ (ଶିକ୍ଷଣୀୟଃ ଶାସନାର୍ହଃ) [ଭବାମି] । [ଅତଃ] ତ୍ୱାଂ (ତ୍ୱୟି) ପ୍ରପନ୍ନଂ (ଶରଣାଗତଂ) ମାଂ ଶାଧି (ଉପଦିଶ) । ୭ ।

**ଅର୍ଥ**—[ହୁଏତ] ମୋତେ କୃପଣ ପରି ସ୍ୱାର୍ଥମୋହ ଘୋଟିଛି । ଧର୍ମ କଣ, ସେ ବିଷୟରେ ମୁଁ ବିବେକ ହରାଇଛି । ତମକୁ ପଚାରୁଛି, ଯାହା ନିଶ୍ଚେ ଶ୍ରେୟ, ତା ମତେ କହ । [ବେଦରେ ଅଛି, ଶ୍ରଦ୍ଧାବାନ୍ ଶିଷ୍ୟ ବା ପୁତ୍ର ନହେଲେ ନିଃଶ୍ରେୟସ (ନିଶ୍ଚିତ ଶ୍ରେୟ ବା ମୋକ୍ଷ) ବିଷୟରେ ଶିକ୍ଷା ଦିଅନ୍ତୁ ନାହିଁ ସତ, ମାତ୍ର] ମୁଁ ତମର ଶିଷ୍ୟ ହୋଇ ବିଶ୍ୱାସରେ ତୁମ ପାଖେ ହାଜର ଅଛି । ମତେ ବତାଇ ଦିଅ ।୭।

ବ୍ୟାଖ୍ୟା ସୂଚନା—ଯେ ଜିକଏ ହେଲେ ସ୍ୱାର୍ଥ ଛାଡ଼ି ନ ପାରେ, ସେ 'କୃପଣ' ବା ସ୍ୱାର୍ଥାନ୍ଧ, 'କୃପାଯୁକ୍ତ' । ୧.୨୭ ଟୀକା ଦେଖ । ୭ ।

**ନହି ପ୍ରପଶ୍ୟାମି ମମାପନୁଦ୍ୟାତ୍**
**ଯଚ୍ଛୋକମୁଚ୍ଛୋଷଣମିନ୍ଦ୍ରିୟାଣାମ୍ ।**
**ଅବାପ୍ୟ ଭୂମାବସପତ୍ନମୃଦ୍ଧଂ**
**ରାଜ୍ୟଂ ସୁରାଣାମପି ଚାଧିପତ୍ୟମ୍ ।୮।**

**ଅନ୍ୱୟ**—ହି ଭୂମୌ ଅସପତ୍ନଂ ଋଦ୍ଧଂ ରାଜ୍ୟଂ ସୁରାଣାଂ ଅପି ଆଧିପତ୍ୟଂ ଅବାପ୍ୟ ମମ ଇନ୍ଦ୍ରିୟାଣାଂ ଉଚ୍ଛୋଷଣଂ ଶୋକଂ [ଯତ୍] ଅପନୁଦ୍ୟାତ୍ ତତ୍ ନ ପ୍ରପଶ୍ୟାମି । ୮ ।

**ଟୀକା**—[ତ୍ୱମେବ ବଚରୀ କୁରୁ ଇତି ଚେତ୍, ତତ୍ରାହ], ହି (ଯତଃ) [ସ୍ୱଜନାନ୍ଧନାତ୍] ଭୂମୌ (ପୃଥିବ୍ୟାଂ) ଅସପତ୍ନଂ (ନିଷ୍କଣ୍ଟକଂ) ଋଦ୍ଧଂ (ଐଶ୍ୱର୍ଯ୍ୟପୂର୍ଣ୍ଣଂ) ରାଜ୍ୟଂ, ସୁରାଣାଂ (ଦେବାନାଂ) ଅପି ଆଧିପତ୍ୟଂ ଚ (ବା) ଅବାପ୍ୟ (ପ୍ରାପ୍ୟ) ଯତ୍ ମମ ଇନ୍ଦ୍ରିୟାଣାଂ ଉଚ୍ଛୋଷଣଂ (ସନ୍ତାପନଂ, ଅତିଶୋଷକଂ) ଶୋକଂ ଅପନୁଦ୍ୟାତ୍ (ଅପସାରୟେତ୍) [ତତ୍] ନ ପ୍ରପଶ୍ୟାମି । ୮ ।

**ଅର୍ଥ**—[ଯଦି କୃଷ୍ଣ କହନ୍ତି, "ତୁଇ ଭଲ ମନ୍ଦ ବିଗ୍ର କର", ସେଥିକି କହୁଚନ୍ତି] କାହିଁକି ନା, [ସ୍ୱଜନ ମାରିବା ଫଳରେ] ପୃଥିବୀରେ ନିଷ୍କଣ୍ଟକ ଧନପୂର୍ଣ୍ଣ ରାଜ୍ୟ କିମ୍ବା ଦେବତାଙ୍କ ଉପରେ ବି ଆଧିପତ୍ୟ ପାଇଲେହେଁ, ଯାହା ମୋର ଇନ୍ଦ୍ରିୟତାପନ (ଅର୍ଥାତ୍, ଜ୍ଞାନ ଧ୍ୱଂସ କରିଦେବା ଭଳି) ଶୋକକୁ ଘୁଞ୍ଚାଇବ, ତା ତ ଦେଖୁ ନାହିଁ । ୮ ।

ବ୍ୟାଖ୍ୟା ସୂଚନା—ଉଚ୍ଛୋଷଣ = ଯାହା ଶୁଖାଇ ଦିଏ ବା ନିସ୍ତେଜ କରିଦିଏ । ଇନ୍ଦ୍ରିୟ ଜ୍ଞାନର ଦ୍ୱାର । ଇନ୍ଦ୍ରିୟ ଶୁଖିଗଲେ, ବା ଇନ୍ଦ୍ରିୟର କ୍ରିୟା ନିସ୍ତେଜ ହୋଇଗଲେ, ଲୋକର ଜ୍ଞାନ ଧ୍ୱଂସ ହୁଏ; ଲୋକ ହତଜ୍ଞାନ ହୁଏ । ତେଣୁ ଇନ୍ଦ୍ରିୟର ଉଚ୍ଛୋଷଣ = ଇନ୍ଦ୍ରିୟତାପନ; ଯାହା ଇନ୍ଦ୍ରିୟ ଶୁଖାଇ, ନିସ୍ତେଜ କରି ଜ୍ଞାନ ଧ୍ୱଂସ କରିଦେବ । ଅତି ଉତ୍କଟ ଶୋକରେ ଲୋକ ଏହିପରି ହତଜ୍ଞାନ ହୁଏ । ୮ ।

**ସଞ୍ଜୟ ଉବାଚ**

**ଏବମୁକ୍ତ୍ୱା ହୃଷୀକେଶଂ ଗୁଡ଼ାକେଶଃ ପରଂତପଃ**
**ନ ଯୋତ୍ସ୍ୟ ଇତି ଗୋବିନ୍ଦମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ ।୯।**

**ଅନ୍ୱୟ**—ପରଂତପଃ ଗୁଡ଼ାକେଶଃ ହୃଷୀକେଶମ୍ ଏବଂ ଉକ୍ତ୍ୱା ନ ଯୋତ୍ସ୍ୟେ ଇତି ଗୋବିନ୍ଦଂ ଉକ୍ତ୍ୱା ତୂଷ୍ଣୀଂ ବଭୂବ ହ । ୯ ।

**ଟୀକା**—ସଞ୍ଜୟଃ ଉବାଚ—ପରନ୍ତପଃ ( ଶତ୍ରୁତାପନଃ ) ଗୁଡ଼ାକେଶଃ (ଅର୍ଜୁନଃ) ଗୋବିନ୍ଦଂ (ମହୀପାଳକଂ) ହୃଷୀକେଶଂ (ଶ୍ରୀକୃଷ୍ଣଂ) ଏବଂ (ପୂର୍ବୋକ୍ତରୂପଂ) ଉକ୍ତ୍ୱା [ ଅହଂ ] ନ ଯୋତ୍ସ୍ୟେ ଇତି ତୂଷ୍ଣୀଂ (ମୌନୀ) ବଭୂବ ହ ( ହ ଇତି ଐତିହ୍ୟେ ) । ୯ ।

**ଅର୍ଥ**—ସଞ୍ଜୟ କହିଲେ—ପରନ୍ତପ ବା ଶତ୍ରୁତାପନ ଗୁଡ଼ାକେଶ (ଅର୍ଜୁନ) ଗୋବିନ୍ଦ ବା ମହୀପାଳକ ହୃଷୀକେଶଙ୍କୁ (କୃଷ୍ଣଙ୍କୁ) ଏହିପରି କହିସାରି ମୁଁ ଯୁଦ୍ଧିବି ନାହିଁ ବୋଲି କହି ତୂନି ହୋଇ ଯାଇଥିଲେ । ହୃଷୀକେଶ ଓ ଗୁଡ଼ାକେଶ ପାଇଁ [୧-୨୪ ଟୀକା ଦେଖ ] । ୯ ।

**ତମୁବାଚ ହୃଷୀକେଶଃ ପ୍ରହସନ୍ନିବ ଭାରତ**
**ସେନୟୋରୁଭୟୋର୍ମଧ୍ୟେ ବିଷୀଦନ୍ତମିଦଂ ବଚଃ । ୧୦ ।**

**ଅନ୍ୱୟ**—ଭାରତ ! ଉଭୟୋଃ ସେନୟୋଃ ମଧ୍ୟେ ବିଷୀଦନ୍ତଂ ତଂ ହୃଷୀକେଶଃ ପ୍ରହସନ୍ ଇବ ଇଦଂ ବଚଃ ଉବାଚ । ୧୦ ।

**ଟୀକା**—ହେ ଭାରତ (ଧୃତରାଷ୍ଟ୍ର), ଉଭୟୋଃ ସେନୟୋଃ ମଧ୍ୟେ ବିଷୀଦନ୍ତଂ (ବିଷାଦଂ ଗତଂ) ତଂ (ଅର୍ଜୁନଂ) ହୃଷୀକେଶଃ (କୃଷ୍ଣଃ) ପ୍ରହସନ୍ (ଅଳ୍ପଂ ଉପହସନ୍, ନ ହି ଏଷଃ ତବ ସଂଶୟଚ୍ଛେଦଃ ଗମ୍ଭୀରଃ ଇତି ପ୍ରଦର୍ଶୟନ୍) ଇବ ଇଦଂ (ବକ୍ଷ୍ୟମାଣଂ) ବଚଃ ଉବାଚ । ୧୦ ।

**ଅର୍ଥ**—ହେ ଭାରତ (ଧୃତରାଷ୍ଟ୍ର), ଦୁଇ ସେନା ମଝିରେ ଶୋକାକୁଳ ଅର୍ଜୁନଙ୍କୁ ହୃଷୀକେଶ (କୃଷ୍ଣ) ଟିକିଏ ହସିଲା ପରି ହୋଇ ଅର୍ଥାତ୍ କଥାଟା ଉଡ଼ାଇ ଦେଲାପରି, କଥାଟା ଖାତିର ନ କଲା ପରି) ଏଇ କଥା କହିଲେ । ୧୦ ।

ବ୍ୟାଖ୍ୟା ସୂଚନା—ଭଗବାନ୍ ଦେଖିଲେ, କୁଳକ୍ଷୟରେ ଧର୍ମହାନି, ଅର୍ଜୁନଙ୍କର ଯୁଦ୍ଧ ନ କରିବାର କେବଳ କାରଣ ନୁହେଁ । ଆପଣା ଲୋକଙ୍କୁ ମାରିଲେ ଅତି ଶୋକରେ ପଡ଼ିବେ ବୋଲି ଅର୍ଜୁନଙ୍କର ଭୟ । ଅର୍ଜୁନ ପଣ୍ଡିତ ଲୋକ । ସେ ଏପରି କଥାଟାଏ କହିବାର ଶୁଣି ଶ୍ରୀକୃଷ୍ଣଙ୍କୁ ଅପସନ୍ଦ ଲାଗିଲା । ତେଣୁ ସେ ଥଟ୍ଟା କଲାପରି କଥାଟାକୁ ଉଡ଼ାଇ ଦେବାକୁବସି, ଆତ୍ମା ଯେ ଅମର ଓ ସେ ବିଷୟରେ ପଣ୍ଡିତ-ମାନଙ୍କର ଯାହା ମତ ତାହା ମୋଟାମୋଟି ଭାବରେ ଚେତାଇ ଦେବାକୁ ବାହାରି କହିଲେ (୨-୧୧-୩୦)—କ୍ଷତ୍ରିୟର ସ୍ୱଧର୍ମ, ଯୁଦ୍ଧ ତା ମିଳୁଚି, କରିଯିବା ଉଚିତ । ସେଥିରେ କୀର୍ତ୍ତି ମିଳିବ, ମଲେ ସ୍ୱର୍ଗ ଓ ଜିଣିଲେ ରାଜ୍ୟ ମିଳିବ ( ୨.୩୧-୩୭ ) । ତେବେ ଜ୍ଞାନୀ ଲୋକର, ଆତ୍ମାକୁ ଅମର ବୋଲି ବୁଝି ସୁଖ, ଦୁଃଖ, ଲାଭ, କ୍ଷତି ଗ୍ରାହ୍ୟ ନ କରି କର୍ତ୍ତବ୍ୟ କରିଯିବାର କଥା । ଏଥିରେ ତ ପାପ ଲାଗିବ ନାହିଁ ( ୨.୩୮ ) । କିନ୍ତୁ ଜ୍ଞାନ ବା ଆତ୍ମାର ଧାରଣା ଯେବେ ସେତେ ପରିପକ୍ୱ ହୋଇ ନାହିଁ, ତେବେ ବୁଦ୍ଧିକୁ ସବୁବେଳେ ଆତ୍ମାରେ ଠିକ୍ ରଖି ନିଜର ସ୍ୱଧର୍ମ କରିଯିବାରହିଁ କଥା ।

ଏହାହିଁ ଯଥାର୍ଥ କର୍ମ । ବେଦର ଯାଗ ଯଜ୍ଞକୁ କର୍ମ କହନ୍ତି ସତ, ମାତ୍ର ସେସବୁ କିଛି ନୁହେ । ସେପରି କର୍ମ କରିବା ଲୋକଙ୍କର ସମାଧି ହୁଏ ନାହିଁ, ଅର୍ଥାତ୍ ଈଶ୍ୱର ଭାବରେ ବା ଆତ୍ମାର ବୁଦ୍ଧି ଠିକ୍ ରହେ ନାହିଁ । ଏହି ଭାବରେ ବୁଦ୍ଧି ଠିକ୍ ରଖି କର୍ମ କରି ଯିବା ହିଁ ଯୋଗ ବା ମୋକ୍ଷସାଧନା ( ୨.୩୯-୫୪) ।

ଏହିପରି ଜ୍ଞାନଯୋଗ ଓ କର୍ମଯୋଗ ଦୁଇ ଦିଗରୁ ସ୍ୱଧର୍ମ କରିବା ଉଚିତ ବୋଲି ମୋଟାମୋଟି କହିଦେଲେ, ଅର୍ଜୁନ ଅଳ୍ପକେ ବୁଝିଯିବେ ବୋଲି ଭଗବାନ୍ ବରଂ, ଜାଣିଥିବା ଲୋକଙ୍କୁ ଧର୍ମସଙ୍କଟ ବା ମନ ବିଗିଡ଼ି ଯିବାବେଳେ ଯେପରି ଚେତାଇ ଦିଅନ୍ତି, ସେଇପରି କହିବାକୁ ବସିଲେ; ମାତ୍ର ପରେ ୨.୫୪ରେ ଦେଖାଯିବ, ଅର୍ଜୁନ ଏଡ଼େ ସହଜରେ ବୁଝିଲେ ନାହିଁ । ସେଥିପାଇଁ କୃଷ୍ଣ, ୨.୭ରେ ଈଶ୍ୱରଭକ୍ତର ଅବତାରଣା କରିସାରି, ତହୁଁ କ୍ରମେ ଜ୍ଞାନ, କର୍ମ, ଭକ୍ତିମୂଳକ ସ୍ୱଧର୍ମ ଓ ଆତ୍ମତତ୍ତ୍ୱର ପ୍ରମାଣ ଓ ସାଧନମାନ ଗୋଟି ଗୋଟି କରି ଶିଷ୍ୟକୁ ବୁଝାଇଲା ପରି ପରବର୍ତ୍ତୀ ଅଧ୍ୟାୟ-ମାନଙ୍କରେ ବୁଝାଇଲେ । ୧୦ ।

**ଶ୍ରୀ ଭଗବାନୁବାଚ**

**ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ**
**ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ ।୧୧।**

**ଅନ୍ୱୟ**—ତ୍ୱଂ ଅଶୋଚ୍ୟାନ୍ ଅନ୍ୱଶୋଚଃ । ପ୍ରଜ୍ଞାବାଦାନ୍ ଚ ଭାଷସେ । ପଣ୍ଡିତାଃ ଗତାସୂନ୍ ଅଗତାସୂନ୍ ଚ ନ ଅନୁଶୋଚନ୍ତି ।୧୧।

**ଟୀକା**—[ ଦେହସ୍ୟ ମୃତ୍ୟୁଃ ନ ଦେହିନଃ ଇତି ସ୍ମାରୟନ୍ ] ଶ୍ରୀ ଭଗବାନ୍ ଉବାଚ—[ହେ ଅର୍ଜୁନ] ତ୍ୱଂ ଅଶୋଚ୍ୟାନ୍ (ଶୋଚିତୁଂ ଅନର୍ହାନ୍) ଅନ୍ୱଶୋଚଃ (ଅନୁଶୋଚିତବାନ୍); [ ଅଥ ] ଚ ପ୍ରଜ୍ଞାବାଦାନ୍ ( ପ୍ରଜ୍ଞାସ୍ୟାଃ ପଣ୍ଡିତସ୍ୟ ବାଦାନ୍— ପଣ୍ଡିତାନାଂ ଇବ ବଚନାନି, ପାଣ୍ଡିତ୍ୟ-ଭାଷଣାନି) ଭାଷସେ (ବଦସି); [ଅପି ନ ଜ୍ଞାତଂ ତ୍ୱୟା ଯତ୍] ପଣ୍ଡିତାଃ ( ବିବେକିନଃ ) ଗତାସୂନ୍ ( ମୃତାନ୍ )· ଅଗତାସୂନ୍ (ଜୀବିତାନ୍) ଚ (ବା) ନ ଅନୁଶୋଚନ୍ତି । ୧୧ ।

**ଅର୍ଥ**—[ଦେହର ସିନା ମୃତ୍ୟୁ ହୁଏ, ଏ ଦେହ ଯାହା ଧରିଛି ସେଇ ଦେହୀର ମୃତ୍ୟୁ ହୁଏ ନାହିଁ, ଏହା ଚେତାଇ] ଶ୍ରୀ ଭଗବାନ୍ କହିଲେ—ଆଚ୍ଛା ଅର୍ଜୁନ, ତୁ ଯାହାଙ୍କ ପାଇଁ ଶୋକ କରିବାର ନୁହେ ତାଙ୍କ ପାଇଁ ଶୋକ କଲୁ, ଏଣେ ଭାରି ଜାଣିବାର ଲୋକପରି କଥାମାନ କହୁଛୁ । ପଣ୍ଡିତମାନେ [ପରା] ମଲା ଜୀଇଲାରେ ଶୋଚନା କରନ୍ତି ନାହିଁ । ୧୧ ।

ବ୍ୟାଖ୍ୟା ସୂଚନା—ଏ ଦେହରେ ଦେହୀ ଯେ ଆତ୍ମା ତାର ମଲା ଜୀଇଲାରେ କିଛି ଯାଏ ଆସେ ନାହିଁ । ସେ ଏ ଘଟ ଛାଡ଼ି ଅନ୍ୟ ଘଟକୁ ପୁନର୍ଜନ୍ମରେ ଯାଏ ମାତ୍ର ।

ଆତ୍ମଜ୍ଞ ପଣ୍ଡିତମାନେ ଏହା ଜାଣନ୍ତି । ସେଇ କଥାକୁ ବର୍ଣ୍ଣନା କରି ପରେ କହୁଚନ୍ତି । ୧୧ ।

**ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ**
**ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟମତଃ ପରମ୍ ।୧୨।**

**ଅନ୍ୱୟ**—ନ ତୁ ଏବ ଅହଂ ଜାତୁ ନ ଆସଂ, ନ ତ୍ୱଂ, ଇମେ ଜନାଧିପାଃ ନ, ସର୍ବେ ବୟଂ ଚ ଏବ ଅତଃ ପରଂ ନ ଭବିଷ୍ୟାମଃ [ଇତି] ନ । ୧୨ ।

**ଟୀକା**—[ଅପି] ତୁ [କ୍ଷଣମେବ ତ୍ୱୟା ଯଂତ୍] ଅହମ୍ ଏବ ଜାତୁ (କଦାଚିତ୍) [ଇତଃ ପୂର୍ବଂ] ନ ଆସଂ (ଅଭବଂ) [ଇତି] ନ, ନ ତ୍ୱଂ [ଆସୀଃ] [ଇତ୍ୟପିନ], ନ ଇମେ (ଏତେ) ଜନାଧିପାଃ (ରାଜାନଃ) [ଆସନ୍] [ଇତ୍ୟପି ଚ ନ] । ବୟଂ, ସର୍ବେ ଅତଃ ପରଂ ନ ଭବିଷ୍ୟାମଃ [ଇତ୍ୟପି] ଚ ନ ଏବ ।୧୨।

**ଅର୍ଥ**—କିନ୍ତୁ [ବୁଝିଚୁ ତ] ମୁଁ ଯେ [ଏଇଜନ୍ମ ପୂର୍ବରୁ ପୂର୍ବେ] କେବେ ନଥିଲି, [ଏ କଥା] ନୁହେଁ, ତୁ ନଥିଲୁ [ଏହା ବି ନୁହେଁ], ଏସବୁ ରାଜା ନଥିଲେ [ଏହା ବି] ନୁହେଁ । ଆମେ ସମସ୍ତେ [ଏ ଜନ୍ମ ପରେ ପୁଣି ଯେ] ନ ହେବା, ଏହା ବି ନୁହେଁ । (ସମସ୍ତେ ଥିଲେ, ଥାଇଁ, ପୁଣି ହେବା—ଦେହ ହେଲେ, ରହିଲେ, ଗଲେ, ଦେହୀର କିଛି ଯାଏ ଆସେ ନାହିଁ—ଏଇ ଭାବ) ।୧୨।

**ଦେହିନୋଽସ୍ମିନ ଯଥାଦେହେ କୌମାରଂ ଯୌବନଂ ଜରା**
**ତଥା ଦେହାନ୍ତରପ୍ରାପ୍ତି ର୍ଧୀରସ୍ତତ୍ର ନ ମୁହ୍ୟତି ।୧୩।**

**ଅନ୍ୱୟ**—ଅସ୍ମିନ୍ ଦେହେ ଦେହିନଃ ଯଥା କୌମାରଂ, ଯୌବନଂ, ଜରା, ତଥା ଦେହାନ୍ତରପ୍ରାପ୍ତିଃ ଧୀରଃ ତତ୍ର ନ ମୁହ୍ୟତି ।୧୩।

**ଟୀକା**—[ଯତଃ] ଯଥା ଅସ୍ମିନ୍ ଦେହେ (ଶରୀରେ) [ ଜୀବଦ୍ଦଶାୟାଂ ଦେହସ୍ୟ ଇତି ଭାବଃ] ଦେହିନଃ ( ଜୀବସ୍ୟ ) କୌମାରଂ (ବାଲ୍ୟଂ) ଯୌବନଂ ଜରା (ବାର୍ଦ୍ଧକଂ) [ଚ ଇତି ଅବସ୍ଥାସ୍ୱାଃ ଅବସ୍ଥାନ୍ତରପ୍ରାପ୍ତିଃ ଭବତି], ତଥା [ଦେହିନଃ ଦେହାତ୍] ଦେହାନ୍ତର ପ୍ରାପ୍ତିଃ (ଅନ୍ୟଦେହେ ଗତିଃ) [ଭବତି] । ଧୀରଃ (ବିବେକୀ) ତତ୍ର (ଦେହାନ୍ତରପ୍ରାପ୍ତୌ) ଦେହୀ ବିନାଶଂ ଗତଃ ଇତି ନ ମୁହ୍ୟତି (ଶୋକେନ ହତଚେତନୋ ଭବତି) । ୧୩ ।

**ଅର୍ଥ**—[ଜାହିକ ନା, ଜାଣୁଚ] ଏଇ ଦେହରେ ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟ ପ୍ରଭୃତି [ଏକ ଅବସ୍ଥାରୁ ଅନ୍ୟ ଅବସ୍ଥା ହେବା] ଯେପରି, ଦେହୀ, ଅର୍ଥାତ୍, ଜୀବର

ଏକ ଦେହରୁ ଯାଇ ଆଉ ଏକ ଦେହ ପାଇବା ବି ସେପରି । ଧୀର (ଅର୍ଥାତ୍, ବିବେକୀ ବା ଠିକ୍ ବୁଝିବା ଲୋକ) ସେଥିରେ ['ଆତ୍ମା ମରିଗଲା' ବୋଲି] ହତଜ୍ଞାନ ହୁଏ ନାହିଁ । ୧୩ ।

**ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ ।**
**ଆଗମାପାୟିନୋଽନିତ୍ୟାଂସ୍ତାଂସ୍ତିତିକ୍ଷସ୍ୱ ଭାରତ । ୧୪ ।**

**ଅନ୍ୱୟ**—କୌନ୍ତେୟ ! ମାତ୍ରାସ୍ପର୍ଶାଃ ତୁ ଶୀତୋଷ୍ଣସୁଖଦୁଃଖଦାଃ, ଭାରତ ! ଆଗମାପାୟିନଃ ଅନିତ୍ୟାନ୍ ତାନ୍ ତିତିକ୍ଷସ୍ୱ । ୧୪ ।

**ଟୀକା**—[ ତଥାପି, ଆତ୍ମୀୟବିୟୋଗାଦିଦୁଃଖଂ ସ୍ୱାଭାବିକମ୍ ଇତି ଆଶଙ୍କ୍ୟ ଆହ ] [କିଂ] ତୁ ହେ କୌନ୍ତେୟ, ମାତ୍ରାସ୍ପର୍ଶାଃ (ମୀୟନ୍ତେ ଜ୍ଞାୟନ୍ତେ ଆଭିଃ ଇତି ମାତ୍ରାଃ ଇନ୍ଦ୍ରିୟାଣି, ତାସାଂ ବିଷୟୈଃ ସ୍ପର୍ଶାଃ ସଂଯୋଗାଃ ) ଶୀତୋଷ୍ଣସୁଖଦୁଃଖଦାଃ (ଶୀତୋଷ୍ଣ ଦ ଦୟିତାଦି ଶୀତୋଷ୍ଣାଦିପ୍ରଦାଃ [ଭବନ୍ତି] । ଅତଏବ ହେ ଭାରତ (ଅର୍ଜୁନ) ଆଗମାପାୟିନଃ (ଆଗମଃ ଉତ୍ପତ୍ତିଃ ଅପାୟଃ ବିନାଶଃ ଚ ବିଦ୍ୟେତେ ଯେଷାଂ ତାନ୍, ଉତ୍ପତ୍ତିବିନାଶଶାଲିନଃ ) ଅନିତ୍ୟାନ୍ ( ଅସ୍ଥାୟିନଃ ) ତାନ୍ [ମାତ୍ରାସ୍ପର୍ଶାନ୍, ଶୀତୋଷ୍ଣାଦୀନ୍ ବା] ତିତିକ୍ଷସ୍ୱ (ସହସ୍ୱ) । ୧୪ ।

**ଅର୍ଥ**—[ଜାଣିଲେ ବି ଆପଣା ଲୋକ ମଲେ ଦୁଃଖ ତ ସ୍ୱାଭାବିକ—ଏଥିକୁ କହୁଛନ୍ତି]—[ହେ କୌନ୍ତେୟ, ଭୋଗ ବିଷୟକୁ ଇନ୍ଦ୍ରିୟ ଛୁଇଁଲେହିଁ ଶୀତ, ଉଷ୍ଣ, ସୁଖ, ଦୁଃଖ ସବୁ ମିଳେ । ହେ ଭାରତ, ସେସବୁ ତ ଆସନ୍ତି ଯାଆନ୍ତି; [ବରାବର କିଛି ରହନ୍ତି ନାହିଁ] । ସେହି ଅନିତ୍ୟ [ବା କ୍ଷଣିକ ସୁଖ ଦୁଃଖ] ସବୁକୁ ସହିଯାଅ । (ଅର୍ଥାତ୍ 'ସହି ଯା' । ସେ ସବୁ ଧରି ବସ ନା) । ୧୪ ।

ବ୍ୟାଖ୍ୟା ସୂଚନା—ମାତ୍ରା = ଇନ୍ଦ୍ରିୟ—ଯହିଁରେ ମାପି ହୁଏ ବା ଜଣାଯାଏ । ସ୍ପର୍ଶ = ଛୁଇଁବା—ସଂପର୍କ । ବିଷୟ = ଇନ୍ଦ୍ରିୟର କାର୍ଯ୍ୟ କରିବା ସ୍ଥାନ—ଇନ୍ଦ୍ରିୟ ଯାହା ଭୋଗ କରେ । ଏହି ବିଷୟ ମୋଟରେ ପାଞ୍ଚ ଇନ୍ଦ୍ରିୟ ପାଇଁ ପାଞ୍ଚ ପ୍ରକାର । ଯଥା—ଚକ୍ଷୁର ରୂପ, ଜିହ୍ୱାର ରସ, ନାସିକାର ଗନ୍ଧ, ତ୍ୱକ୍ ବା ଚର୍ମର ସ୍ପର୍ଶ, କର୍ଣ୍ଣର ଶବ୍ଦ । ମାତ୍ରାସ୍ପର୍ଶ = ବିଷୟକୁ ଇନ୍ଦ୍ରିୟ ଛୁଇଁବା । ଆଗମ = ଆସିବା, ଉତ୍ପତ୍ତି । ଅପାୟ = ଚାଲିଯିବା, ବିନାଶ । ଶୀତୋଷ୍ଣ ସୁଖ ଦୁଃଖାଦିର ଇନ୍ଦ୍ରିୟ ସ୍ପର୍ଶରେ ଆଗମ ଓ ସେହି ସ୍ପର୍ଶର ପରିବର୍ତ୍ତନ ବା ବିଚ୍ଛେଦରେ ବିନାଶ, ବରାବର ରହୁଛି । ସେସବୁ କଦାପି ସ୍ଥିର ନୁହେଁ । ସୁଖ-ଦୁଃଖାଦି ଅନୁଭବ ସର୍ବଦା କ୍ଷଣିକ । କୌଣସି ଇନ୍ଦ୍ରିୟ ଅନୁଭୂତି ଚିର ବା ସ୍ଥାୟୀ ନୁହେଁ । ୧୪ ।

**ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ ।**
**ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ । ୧୫ ।**

**ଅନ୍ୱୟ**—ପୁରୁଷର୍ଷଭ ! ସମଦୁଃଖସୁଖଂ ଧୀରଂ ଯଂ ପୁରୁଷମ୍ ଏତେ ହି ନ ବ୍ୟଥୟନ୍ତି, ସଃ ଅମୃତତ୍ୱାୟ କଳ୍ପତେ । ୧୫ ।

**ଟୀକା**—ହି (ଯତଃ) ହେ ପୁରୁଷର୍ଷଭ, (ପୁରୁଷ ଋଷଭଃ ଇବ, ପୁରୁଷଶ୍ରେଷ୍ଠ) ସମଦୁଃଖସୁଖଂ (ସମେ ଏକରୂପେ ଦୁଃଖସୁଖେ ଯସ୍ୟ ତଂ) ଧୀରଂ (ଅବିଚଳିତଂ) ଯଂ ପୁରୁଷମ୍ ଏତେ (ମାତ୍ରାସ୍ପର୍ଶାଃ, ଶୀତୋଷ୍ଣାଦୟଃ ବା) ନ ବ୍ୟଥୟନ୍ତି (ପୀଡୟନ୍ତି), ସଃ ଅମୃତତ୍ୱାୟ (ମୋକ୍ଷାୟ) କଳ୍ପତେ (ସମର୍ଥୋ ଭବତି) । ୧୫ ।

**ଅର୍ଥ**—କାହିଁକି ନା, ହେ ପୁରୁଷଶ୍ରେଷ୍ଠ (ଅର୍ଜ୍ଜୁନ), ଏଇସବୁ [ଇନ୍ଦ୍ରିୟର ସ୍ପର୍ଶ ବା ଶୀତୋଷ୍ଣ ପ୍ରଭୃତି] ସୁଖ ଦୁଃଖରେ ଏପାଖ ସେପାଖ ନ ହୋଇ ସମାନ ବା ଏକ ପରି ଥିବା ଯେଉଁ ଧୀର ବା ଦୃଢ଼ ଲୋକକୁ ଏସବୁ ନ ବାଧେ, ସେଇ ଲୋକ [ଏକା] ଅମୃତତ୍ୱ ବା ମୋକ୍ଷକୁ ଯୋଗ୍ୟ । ୧୫ ।

ବ୍ୟାଖ୍ୟାସୂଚନା—ଧୀର ବୋଇଲେ, ଅବିଚଳିତ ଲୋକ । ଏଇ ଧୀର ଲୋକ ସୁଖରେ ଉଦ୍ଧତ ବା ଦୁଃଖରେ ଅଧୀର ହୁଏ ନାଇ । ସବୁଥିରେ ସେ ସମାନ—ଏକାପରି । ପୁରୁଷର୍ଷଭ=ପୁରୁଷଙ୍କ ଭିତରେ ଋଷଭ ବା ଷଣ୍ଢପରି । ପଦ ଶେଷରେ ସମାସରେ ବ୍ୟାଘ୍ର, କୁଞ୍ଜର, ପୁଙ୍ଗବ, ଋଷଭ, ସିଂହ, ଶାର୍ଦ୍ଦୂଳ ଓ ନାଗ ପ୍ରଭୃତି ପଦ ଥିଲେ ଶ୍ରେଷ୍ଠ ଅର୍ଥ ପ୍ରକାଶ କରନ୍ତି । ପୁରୁଷର୍ଷଭ=ପୁରୁଷଶ୍ରେଷ୍ଠ । ୧୫ ।

**ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।**
**ଉଭୟୋରପି ଦୃଷ୍ଟୋଽନ୍ତସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ ।୧୬।**

**ଅନ୍ୱୟ**—ଅସତଃ ଭାବଃ ନ ବିଦ୍ୟତେ । ସତଃ ଅଭାବଃ ନ ବିଦ୍ୟତେ । ତତ୍ତ୍ୱଦର୍ଶିଭିଃ ତୁ ଅନୟୋଃ ଉଭୟୋଃ ଅପି ଅନ୍ତଃ ଦୃଷ୍ଟଃ ।୧୬ ।

**ଟୀକା**—[ ତତ୍ତ୍ୱବିଚାରତଃ ସୁଗମା ସା ତିତିକ୍ଷା ଇତ୍ୟାହ ] ଅସତଃ (ନାସ୍ତି ଯତ୍ ତସ୍ୟ) ଭାବଃ (ସତ୍ତା, ସ୍ଥାୟିତ୍ୱଂ, ନିତ୍ୟତା ବା) ନ ବିଦ୍ୟତେ । (ମାତ୍ରାସ୍ପର୍ଶଜନିତ-ଦେହାଦି ସର୍ବଂ ବିକ୍ରମ୍ ଅନିତ୍ୟମ୍, ଅତଏବ ତତ ନାସ୍ତୀତି ମନ୍ତବ୍ୟଂ, ତତ୍ ସର୍ବମ୍ ଅସତ୍ ଇତି ଭାବଃ । ସତଃ (ଯତ୍ ଅସ୍ତି ତସ୍ୟ) ଅଭାବଃ (ବିନାଶଃ) ନ ବିଦ୍ୟତେ । ତତ୍ତ୍ୱଦର୍ଶିଭିଃ (ବସ୍ତୁନଃ ଯାଥାର୍ଥ୍ୟଜ୍ଞୈଃ) ତୁ ଅନୟୋଃ (ସଦସତୋଃ) ଅପି ଅନ୍ତଃ (ନିର୍ଣ୍ଣୟଃ) ଦୃଷ୍ଟଃ (ପ୍ରତ୍ୟକ୍ଷୀକୃତଃ) । ୧୬ ।

**ଅର୍ଥ** – ଯାହା ଅସତ୍ ବା ରହୁ ନାଇ ତାର ଅଛୁ ବୋଲି କିଛୁ ବା ରହିବାର ନାଇ [ମାତ୍ରାସ୍ପର୍ଶରେ ଜଣାପଡୁଥିବା ବ୍ୟକ୍ତ ଜଗତ୍ ସ୍ଥିର ରହୁ ନାଇ—ସେ ଅସତ୍] ସତ୍ ବା ଥିବା ବସ୍ତୁର ବିନାଶ ବା ନ ଥିବା ଅବସ୍ଥାରେ ନାଇ । ତତ୍ତ୍ୱ ବା ବସ୍ତୁର ତଥ୍ୟ ବୁଝିଥିବା ଲୋକେଇଁ ଏଇ [ ଅସତ୍ ଓ ସତ୍ ] ଦୁଇ କଥାର ସିଦ୍ଧାନ୍ତ ଜାଣନ୍ତି । ୧୬ ।

ବ୍ୟାଖ୍ୟା ସୂଚନା—ଯୁଦ୍ଧରେ ଲୋକଙ୍କୁ ମାରିବାକୁ ହବ । ସେଇଥିରେ ଅର୍ଜୁନଙ୍କ ଶୋକ । ସେଥିପାଇଁ ଦେହୀ ବୋଲି ଜୀବାତ୍ମା ବା ମନୁଷ୍ୟ ଆତ୍ମାକୁ ଲକ୍ଷ୍ୟକରି ଭଗବାନ୍ କହୁଥିଲେ । ଏଇଠାରେ ଜଗତର ନିତ୍ୟବସ୍ତୁ ଓ ଅନିତ୍ୟ ବସ୍ତୁର ଭେଦର ଚେତାଇ ଦେବାର ଆରମ୍ଭ କଲେ । ପର ଦୁଇ ଶ୍ଳୋକରେ ସୂଚାଇ ଦେବେ, ଏଇ ସତ୍ ବା ଜଗତର ନିତ୍ୟ ଅଧ୍ୟାତ୍ମବସ୍ତୁ ଯାହା, ଏ ମାନବ ଦେହରେ ଜୀବ ବା 'ପ୍ରତ୍ୟଗାତ୍ମା' ସେଇଆ । ପରମାତ୍ମା ଓ ଜୀବାତ୍ମା, ଏକ ନିତ୍ୟବସ୍ତୁ—ଦୁଇ ତତ୍ତ୍ୱରେ ପ୍ରଭେଦ କିଛୁ ନାଇ । ତେଣିକି ସେଇ ଦୃଷ୍ଟିରେ ଜୀବାତ୍ମାକୁ ଧରି ସବୁ କହିବେ । ମାତ୍ର ଏଇଠାରେ ବୁଝି ରଖିବା ଉଚିତ, ମାତ୍ରାସ୍ପର୍ଶରୁ ହେଉଥିବ । ଶୀତୋଷ୍ଣାଦିରେ ଜଗତର ଜ୍ଞାନ । ଏଇ ଇନ୍ଦ୍ରିୟ ଅନୁଭବ ଛଡ଼ା ଜଗତ୍ ବୋଲି ଆଉ କିଛୁ ନାଇ । ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶ ଛଡ଼ା ଜଗତରେ ଜାଣିବାର ଆଉ କିଛୁ ବସ୍ତୁ ନାଇ । ପୁଣି କୁହାଯାଇଛି, ଏଇ ଇନ୍ଦ୍ରିୟଲବ୍ଧ ଶୀତୋଷ୍ଣାଦି ବା ଇନ୍ଦ୍ରିୟର ସମସ୍ତ ଅନୁଭବ 'ଅଗମାପାୟୀ', ଉତ୍ପତ୍ତି-ବିନାଶଶୀଳ, ଆସନ୍ତି ଓ ଯାଆନ୍ତି, ସ୍ଥିର ରହନ୍ତି ନାଇ । ଏଣୁ ଏସବୁ ନାହାନ୍ତି । ଇନ୍ଦ୍ରିୟ-ସ୍ପର୍ଶ ଛଡ଼ା ଏମାନଙ୍କର ଅନ୍ୟ ସ୍ୱତନ୍ତ୍ର ସତ୍ତା ନାଇ । ଏସବୁ 'ଅସତ୍'ର, 'ଭାବ' ବା ସତ୍ତା ନାଇ । 'ସତ୍' ହେଉଛି, ଦେହୀ ବା ଆତ୍ମା । ତାକୁ ଏସବୁ ଇନ୍ଦ୍ରିୟ ଓ ଇନ୍ଦ୍ରିୟ ସ୍ପର୍ଶ । ତାର ଥିବା ହେତୁରୁ ସବୁ ଅନୁଭବ ତଥା ଜଗତ୍ ସମ୍ଭବ ହୋଇଛି । ସେଇ ଏକା ଅଛି, ସେଇ ସତ୍ ବା ନିତ୍ୟ ବସ୍ତୁ । ତାର ଅଭାବ ବା ନ ଥିବା ଅବସ୍ଥା କେବେ ହେଲେ ନାଇ । ୧୬ ।

**ଅବିନାଶି ତୁ ତଦ୍ବିଦ୍ଧି ଯେନ ସର୍ବମିଦଂ ତତମ୍ ।**
**ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍ କର୍ତ୍ତୁମର୍ହତି । ୧୭ ।**

**ଅନ୍ୱୟ**—ଯେନ ଇଦଂ ସର୍ବଂ ତତମ୍, ତତ୍ ତୁ ଅବିନାଶି ବିଦ୍ଧି । ଅସ୍ୟ ଅବ୍ୟୟସ୍ୟ ବିନାଶଂ କର୍ତ୍ତୁଂ ନ କଶ୍ଚିତ୍ ଅର୍ହତି । ୧୭ ।

**ଟୀକା**—[ତଦ୍ ଦୃଷ୍ଟମ୍ ଅନ୍ତଂ ସତଃ ଅସତଃ ଚ କ୍ରମାତ୍ ବର୍ଣୟତି ଦ୍ୱାଭ୍ୟାମ୍] ଯେନ ଇଦଂ [ଇନ୍ଦ୍ରିୟଗ୍ରାହ୍ୟଂ] ସର୍ବଂ [ଜଗତ୍] ତତଂ (ବ୍ୟାପ୍ତଂ) ତତ୍ ତୁ ଅବିନାଶି (ନିତ୍ୟଂ) ବିଦ୍ଧି (ଜାନୀହି) । ଅବ୍ୟୟସ୍ୟ (ଅକ୍ଷରସ୍ୟ, ବୃଦ୍ଧିକ୍ଷୟୋତ୍ପତ୍ତିନାଶାଦ୍ୟପରିବର୍ତ୍ତନ-ହୀନସ୍ୟ) ଅସ୍ୟ ବିନାଶଂ କର୍ତ୍ତୁଂ ନ କଶ୍ଚିତ୍ ଅର୍ହତି (ସମର୍ଥୋ ଭବତି) । ୧୭ ।

**ଅର୍ଥ**—[ସେଇ ସିଦ୍ଧାନ୍ତକୁ ସତ୍ ଓ ଅସତ୍ କ୍ରମରେ ଦୁଇ ଶ୍ଳୋକରେ ବୁଝାଇ କହୁଛନ୍ତି], ଯାହାଁରୁ ଏଇ ସବୁ ଜଗତ୍ ସୃଷ୍ଟିପତ୍ର ବ୍ୟକ୍ତ ବା ପ୍ରକାଶ ହୋଇଛି, ତାକୁ ଅବିନାଶୀ ବୋଲି ଜାଣ୍ । ଏହି ଅବ୍ୟୟର ବିନାଶ କେହି କରି ନ ପାରେ । ୧୭ ।

ବ୍ୟାଖ୍ୟା ସୂଚନା—ଅବିନାଶୀ = ଯାହାର ନାଶ ନାହିଁ; ଅମୃତ; ନିତ୍ୟ । ଅବ୍ୟୟ = ଯାହାର ବ୍ୟୟ ଅର୍ଥାତ୍ ବିକାର ନାହିଁ । ବଢ଼ିବା, ଛୁଇଁବା, ଜନ୍ମିବା, ମରିବା ପ୍ରଭୃତି ଯେ କୌଣସି ପ୍ରକାର ବଦଳିବାକୁ ବିକାର କହନ୍ତି । ଯାହାର ବିକାର ଅଛି ତାର ଏକ ଅବସ୍ଥା ଯାଇ ବା ନାଶ ହୋଇ ଅନ୍ୟ ଅବସ୍ଥା ହେଉଛି । ଯେପରି କି ଦୁଧର ବିକାର ଦହି—ଯେଉଁଥିରେ ଦୁଧ ଯାଏ, ଦହି ହୁଏ । ସେଇପରି ମାଟିରୁ ହାଣ୍ଡି, ସୁନାରୁ ମୁଦି ଇତ୍ୟାଦି । ଏଇପରି ବିକାର ସର୍ବଦା ଲାଗି ରହିଛି । ମନୁଷ୍ୟ ପୂର୍ବ ମୁହୂର୍ତ୍ତରେ ଯାହା ଥିଲା, ଏ ମୁହୂର୍ତ୍ତରେ ତା ନାହିଁ । ତା'ର ମନ ଦେହ ଇନ୍ଦ୍ରିୟ ସବୁ ବିକାର ପାଉଛି । ସେଇପରି ସୃଷ୍ଟିର ସବୁ ବସ୍ତୁ ଓ ଜନ୍ତୁ ବରାବର ବଦଳୁଛନ୍ତି । ଏହାହିଁ ସୃଷ୍ଟି ବା ସୃଷ୍ଟିକର୍ମ । ଏଇ ସୃଷ୍ଟି କର୍ମକୁ ଭୂତଗ୍ରାମ, ଭୂତାନି (ଭୂତମାନେ) ବୋଲି ଗୀତାରେ ବାରଂବାର କୁହାଯାଇଛି । ୧୭ ।

**ଅନ୍ତବନ୍ତ ଇମେ ଦେହା ନିତ୍ୟସ୍ୟୋକ୍ତାଃ ଶରୀରିଣଃ ।**
**ଅନାଶିନୋଽପ୍ରମେୟସ୍ୟ ତସ୍ମାଦ୍ ଯୁଧ୍ୟସ୍ୱ ଭାରତ । ୧୮ ।**

**ଅନ୍ୱୟ**—ନିତ୍ୟସ୍ୟ ଅନାଶିନଃ ଅପ୍ରମେୟସ୍ୟ ଶରୀରିଣଃ ଇମେ ଦେହାଃ ଅନ୍ତବନ୍ତଃ ଉକ୍ତାଃ । ତସ୍ମାତ୍ ଭାରତ ! ଯୁଧ୍ୟସ୍ୱ । ୧୮ ।

**ଟୀକା**—[ଦେହମାନଂ ଅସତ୍ ଇତ୍ୟାହ] ନିତ୍ୟସ୍ୟ (ସଦୈକରୂପସ୍ୟ) ଅନାଶିନଃ (ନାଶହୀନସ୍ୟ) ଅପ୍ରମେୟସ୍ୟ (ଇଦ୍ୟତ୍ତୟା, ଇଦ୍ମିଦନ୍ତୟା ଚ ଅନିର୍ଦ୍ଦେଶ୍ୟସ୍ୟ—ଅପରିଚ୍ଛିନ୍ନସ୍ୟ) ଶରୀରିଣଃ (ଦେହିନଃ) ଇମେ (ଇନ୍ଦ୍ରିୟୈଃ ପରିଲଭ୍ୟମାନାଃ) [ସୁଖଦୁଃଖାଦିଧର୍ମକାଃ ନାମରୂପାଦିଭିଃ ବ୍ୟକ୍ତାଃ, ଅହ ତୁ ଭ୍ରାନ୍ତ୍ୟା ଦରୂପେଣ ପ୍ରତୀୟମାନ ] ଦେହାଃ [ତୈଃ ତତ୍ତ୍ୱଦର୍ଶିଭିଃ] ଅନ୍ତବନ୍ତଃ (ବିନାଶଶୀଳାଃ, ଇଦ୍ୟତ୍ତୟା ଇଦ୍ମିଦନ୍ତୟା ଚ ପରିମିତା ବା) ଉକ୍ତାଃ (କଥିତାଃ) ତସ୍ମାତ୍ (ଅତଏବ) ହେ ଭାରତ (ଅର୍ଜ୍ଜୁନ), [ଭୀଷ୍ମାଦିନିଧନଶୋକଂ ପରିହାୟ] ଯୁଧ୍ୟସ୍ୱ (ଯୁଦ୍ଧଂ କୁରୁ) । ୧୮ ।

**ଅର୍ଥ**—[ଦେହ ମାନେ ଅସତ୍ ବୋଲି କହୁଛନ୍ତି]—ନିତ୍ୟ, ଅମୃତ, ଅପ୍ରମେୟ ଶରୀରର [ପୃଥିବୀ ସୂର୍ଯ୍ୟାଦିଠାରୁ ତୁ, ମୁଁ ଭୀଷ୍ମାଦି ପରି ଜଣାପଡୁଥିବା] ଏସବୁ ଯେ ଦେହ, ସେଇ ଦେହରେ ଅନ୍ତ ଅଛି ବୋଲି କୁହାଅଛି । ହେ ଭାରତ, ତେବେ ଯୁଦ୍ଧ କର୍ । (ଆଉ ଆପଣା ଲୋକ ଗୁରୁଜନ ମରିଯିବେ, ମୁଁ ମାରି ପକାଇବି—ଏ ସବୁ ଭୟ କାହିଁକି ? ଏଇ ଭାବ) । ୧୮ ।

ବ୍ୟାଖ୍ୟା ସୂଚନା—ଶରୀରୀ ବା ଦେହୀ ଏଠାରେ କେବଳ ଜୀବ ନୁହେଁ । ସବୁ ଜଣାପଡୁଥିବା ସୃଷ୍ଟି, ଯାହାର ଶରୀର, ସେଇ ଏଠାରେ ଶରୀରୀ ବୋଲି ସଙ୍କେତରେ ବୁଝାଗଲା । ଅପ୍ରମେୟ=ଯାହାକୁ ଏତିକି ବା ଏପରି ବୋଲି କହି ହେବ ନାଇ—ଅକଳନ । ଅନ୍ତବନ୍ତ=ଯାହାର ସୀମା, ଶେଷ ବା ଅନନ୍ତ ନାଶ ଅଛି, ନୁହେଁ; ଯାହା ଏପରି ଏତିକି ବୋଲି ଜାଣିହୁଏ ଓ ନଷ୍ଟ ହୁଏ ।

ଏଇ ଅଧ୍ୟାୟର ୧୬, ୧୭, ୧୮, ଏଇ ତିନି ଶ୍ଳୋକରେ ସମସ୍ତ ଭାଗବତ ତତ୍ତ୍ୱର ସାରକଥାଟିକି ପ୍ରକାଶ କରାଯାଇଚି । ପରେ ନାନା ଦିଗରୁ ଏହାର ପ୍ରଚୁର ବ୍ୟାଖ୍ୟା ଏଇ ଗ୍ରନ୍ଥରେ ପ୍ରଶ୍ନୋତ୍ତର ସଂବାଦ ଛଳରେ ଦିଆହୋଇଚି ମାତ୍ର । ହେଲେହେଁ ଏଇଠାରେ କଥାଟି ଟିକିଏ ଭଲ କରି ବୁଝି ରଖିବା ଉଚିତ । ସମସ୍ତ ଦର୍ଶନ ବା ତତ୍ତ୍ୱଶାସ୍ତ୍ରର ମୂଳ ହେଉଚି, ଏଇ ଜଗତରେ ଅଛି କଅଣ ? ମନୁଷ୍ୟ ଚିର ନୁହେଁ, ତାର କୌଣସି ଅବସ୍ଥା ବା ଅନୁଭୂତି ମୁହୂର୍ତ୍ତେ ହେଲେ ସ୍ଥିର ନୁହେଁ । ତଥାପି ସ୍ଥିରତା ବା ଚିରତ୍ୱର ଏକ ସ୍ଥିରଭାବ, ଏ ଅନୁଭୂତି ମଧ୍ୟରେ ସର୍ବଦା ପ୍ରଚ୍ଛନ୍ନ ରହିଛି । ଯେ କୌଣସି ବିଶିଷ୍ଟ ବସ୍ତୁକୁ ଦେଖ । ଧର, ଖଣ୍ଡେ ପୁସ୍ତକ; ପ୍ରତି ମୁହୂର୍ତ୍ତରେ କାଳର ପରିଣାମ ସଙ୍ଗେ ଏହା ଭିନ୍ନ ହେଉଚି । ପୂର୍ବ ମୁହୂର୍ତ୍ତରେ ପୁସ୍ତକଟି ଯାହା ଥିଲା, ଏବେ ତା ନାଇ । ତଥାପି ଆମେ କି ଅବ୍ୟକ୍ତ ଧାରଣା—କି ଅନୁଭୂତିରେ ଜାଣୁ, ଏହା ସେଇ ଏକ ପୁସ୍ତକ । ପୁଣି ସବୁ ପୁସ୍ତକରେ କି ସମାନ ବସ୍ତୁର କି ପ୍ରଚ୍ଛନ୍ନ ଅନୁଭୂତିକୁ ଆମେ ପୁସ୍ତକ ନାମରେ ପ୍ରକାଶ କରୁଁ ? ଦେଖ, ଏ ଜଗତରେ ଦୁଇଟି ବରପତ୍ର କୁଆପି ଗଠନର ଆକୃତି ଓ କାଳ ପରିଣାମ ଦିଗରେ ସମାନ ନୁହେଁ । ତଥାପି ଯହିଁ ଦେଖିଲେ ଆମେ ଚିହ୍ନି କହୁଁ, ବରପତ୍ର । ସେଇପରି ମନୁଷ୍ୟ, ଜନ୍ତୁ, ବସ୍ତୁ—ସର୍ବତ୍ର ଏଇ ଏକା କଥା । ଏ ସବୁର ସମଷ୍ଟିରେ ପୁଣି ହେଲା ଜଗତ୍ । ଜଗତ୍ ଶବ୍ଦର ଅର୍ଥ—ଯାହା ଯାଉଚି ବା ପରିଣାମରେ ଅବସ୍ଥାରୁ ଅବସ୍ଥାରେ ବରାବର ଗତି କରୁଚି । ତଥାପି ସେ ପ୍ରଚ୍ଛନ୍ନ 'ଜଗତ୍' ବୋଲି ଧାରଣାଟିର ଅର୍ଥ କଣ ? ଜଗତ୍ ବୋଇଲେ, କେତେଗୁଡ଼ାଏ ବିକାରର ଅନୁଭୂତି । ଆମର ଏହା ଏକ ଅନୁଭୂତି । ଅନ୍ୟଆଡ଼ୁ ଭାବିଲେ, ଏହା ଏକ ସର୍ବଦା ପରିଣାମଶୀଳ ବିକାରର ପ୍ରକାଶ । ପୁଣି ଏ ଦୁଇଟିର କି ବା ସମ୍ପର୍କ ? କେବଳ ଆମର ବ୍ୟକ୍ତିଗତ ଅନୁଭୂତି କଣ ଏ ସବୁ ? ନା, କୌଣସି ବହିସତ୍ତାର ଏ ଅନୁଭୂତି ? ଏ ପ୍ରଶ୍ନର କି ବା ସମାଧାନ ? ତଥାପି ଏ ସମସ୍ତ ବିକାର ଭିତରେ କୌଣସି ଏକ ପ୍ରଚ୍ଛନ୍ନ ନିତ୍ୟ ତତ୍ତ୍ୱକୁ ମନ ବରାବର ଧରିବାକୁ ଯାଉଚି । ସେଥିପାଇଁ ସବୁ ଜ୍ଞାନ ଓ ସବୁ କ୍ରିୟା ସମ୍ଭବ ହେଉଚି । ଏଇ ଭୂତଗ୍ରାମ ବା ବିକାର ପ୍ରବାହହିଁ ବିସର୍ଗ, ସୃଷ୍ଟି, କର୍ମ ବା ପ୍ରକାଶ । ଏ ସବୁ ବିକାର କାହାର ? ଏ ସବୁ ଶୃଙ୍ଖଳାର ପୀଠ କେଉଁଠାରେ ? କୌଣସି ନିତ୍ୟ ଅବିକାରୀ ସତ୍ତାର ଏସବୁ ବିକାର; ବ୍ୟକ୍ତିର ଇନ୍ଦ୍ରିୟରେ ପୁଣି ଏକା ଏସବୁର ପ୍ରକାଶ । ତେଣୁ ବ୍ୟକ୍ତିର ଏକ ନିତ୍ୟ ସତ୍ତା ବା 'ଆତ୍ମା' । ଏସବୁ ଅନୁଭବର ମୂଳ, ବ୍ୟକ୍ତିର ବାହାରେ ନ ଥିଲେ, ସବୁ ଶୂନ୍ୟ ଓ

ଏକପ୍ରକାର ଇନ୍ଦ୍ରଜାଲ ପ୍ରହେଳିକା । ତେବେ ଏ ପ୍ରହେଳିକାର ଅଧ୍ୟାତ୍ମ ବସ୍ତୁ କଣ ? ସେଇ ବସ୍ତୁଟି ପରମାତ୍ମା । 'ଜ୍ଞ' ବା ଜ୍ଞାତାର ମୂଳତତ୍ତ୍ୱ ଆତ୍ମା ଓ 'ଜ୍ଞେୟ' ବା ଯାହା ଜଣାଯାଏ, ତା ମୂଳ ତତ୍ତ୍ୱ, 'ପରମାତ୍ମା' । ଏହା ଦ୍ୱୈତବାଦ । ମାତ୍ର ଏ ଦ୍ୱୈତର ସମାଧାନ ବିନା ଜଗତର ମୂଳତତ୍ତ୍ୱରେ ଏ ଖଣ୍ଡବିଖଣ୍ଡାର ଧାରଣା ଅନର୍ଥକ । ଜ୍ଞ ଓ ଜ୍ଞେୟ ପରସ୍ପର ଦ୍ୱାରା ଅବଚ୍ଛିନ୍ନ ହେଲେ ପୁଣି, ଦୁହେଁ ପରିମିତ ଓ ଅନ୍ତବନ୍ତ; କୌଣସିଟି ଅନନ୍ତ ହୋଇ ନ ପାରେ । ତେବେ ଏ ଦୁହିଙ୍କର ବା କିପରି ସମ୍ପର୍କ ? ସମ୍ପର୍କ ବିନା ଯେ ପ୍ରକାଶ ଅସମ୍ଭବ । ଯେ ଜାଣେ, ଯାହା ଜାଣେ, ଏ ଦୁହେଁ ନିତ୍ୟ ଓ ଅଭିନ୍ନ ସମ୍ପର୍କରେ ନ ଆସିଲେ, ପ୍ରକାଶ ବା ସୃଷ୍ଟି ବୋଲି କିଛି ନାହିଁ । ତେଣୁ ଅଦ୍ୱୈତ ବାଦ । ସେଥିରେ ଜ୍ଞ ଓ ଜ୍ଞେୟର ଭେଦ ନାହିଁ । ଦୁହେଁ ଏକ । ଏ ଏକ ବସ୍ତୁର ପୁଣି ଜ୍ଞେୟ ରାଜ୍ୟରେ ଧାରଣା ଅସମ୍ଭବ । କାରଣ ସେ ଜ୍ଞେୟ ହେଲେ, ତା'ର ଜ୍ଞ ରହିଲା, ତେଣୁ ଦ୍ୱୈତ ରହିଲା । ଅତଏବ ଜ୍ଞାନରେ ନୁହେଁ, ଏକତ୍ୱର ସେଇ ଅନୁଭୂତିରେଇ ଦ୍ୱୈତ ନାଶ; ସେଇ ମୋକ୍ଷ । ସେଇଠାରେ ବିକାର ଓ ଅବିକାର ଏକ । ଦୁଇଟିଯାକ ଏକ ବସ୍ତୁ । କେବଳ ଦୁଇ ଦିଗରୁ ଦେଖିବାରେ ଭେଦ ପ୍ରକାଶ ପାଏ ମାତ୍ର । ପଞ୍ଚଦଶ ଅଧ୍ୟାୟର 'ପୁରୁଷୋତ୍ତମ' ସ୍ତବରେ ଏହା ସ୍ପଷ୍ଟ ହେବ ।

ମୋଟ କଥା, ଏକ ନିତ୍ୟ ଅବିକାରୀ ବସ୍ତୁର ଏସବୁ ବିକାଶ ବା ପ୍ରକାଶ । ସେଇ ବସ୍ତୁର ଧାରଣାରେ କୌଣସି ଅଶାନ୍ତି, ବା ସୁଖ ଦୁଃଖ, ଶୀତୋଷ୍ଣାଦି ନାହିଁ । ଏ ଜଗତର ବିକାରରୁ ତାହା ଅତୀତ । ଏବେ ବିଜ୍ଞାନ ମଧ୍ୟ ସେହିପରି ଅନନ୍ତ ପ୍ରକାଶର ପୀଠ ରୂପ ପରମାଣୁରେ ପହଞ୍ଚି, ସେଠାରୁ ପୁଣି ତାର ତତ୍ତ୍ୱ ଦେଖି, ମୂଳତଃ ଏକରୂପ ଥିବା ବିଦ୍ୟୁତ୍ କଣିକାର ବିଭିନ୍ନ ସମବାୟ, ଅନନ୍ତ ଆକର୍ଷଣ ଓ ଘୂର୍ଣ୍ଣନରେ ସୃଷ୍ଟିର ମୂଳ ତତ୍ତ୍ୱ ଦେଖିଥିଲା । ସେଠାରୁ ଏବେ ଶାନ୍ତ ଶକ୍ତିମୟ ସମପ୍ରକୃତିମନ୍ତ ସର୍ଗସତ୍ତ୍ୱ (Cosmic matter)ରେ ପହଞ୍ଚିଛି । ପ୍ରାଚୀନମାନେ ଏହି ସର୍ଗସତ୍ତ୍ୱକୁ ଚିତ୍ ସ୍ୱରୂପ, ଶାନ୍ତ ବା ସୁଖାଦୁଃଖାତୀତ ଆନନ୍ଦମୟ ବୋଲି ସ୍ଥିର କରିଥିଲେ । ଏବେ ବିଜ୍ଞାନର ଏଇ ବିଶ୍ୱସତ୍ତ୍ୱ ବା ସର୍ଗସତ୍ତ୍ୱର ପ୍ରକୃତି, ଏକରକମ ଓ ଶକ୍ତିର ସମତାରେ ଶାନ୍ତ । ଏଇ ନିତ୍ୟ ସମତା ଓ ଶାନ୍ତିରେଇ ଆନନ୍ଦ । ଏଣୁ ଆନନ୍ଦସ୍ୱରୂପ, ଜୀବ ବା ଚେତନାର ବିକାଶ ନିମନ୍ତେ ଏଇ ସତ୍ତ୍ୱର ପ୍ରକୃତି, ଚେତନାର ପରମ ପୀଠ ହେବାରଇ କଥା । ଏଇ ବିଶ୍ୱସତ୍ତ୍ୱ ସମସ୍ତ ପ୍ରକାଶର ମୂଳାଧାର । ଜୀବ ବା ଚେତନାର ପ୍ରକାଶ ମଧ୍ୟ ସେଇଥିରୁ । କାହିଁକି ନା, ଜଡ଼ ଚେତନ ସମସ୍ତ ବିକାର ବା ପ୍ରକାଶ, ସେଇ ନିତ୍ୟ ଅବିକାରୀ ସତ୍ତ୍ୱର ପ୍ରକାଶ ମାତ୍ର । ଏଇପରି ପ୍ରାଚୀନ ଅଧ୍ୟାତ୍ମବିଦ୍ୟା ଓ ନବୀନ ବିଜ୍ଞାନ ନିଜ ନିଜର ସ୍ୱତନ୍ତ୍ର ଅନୁସନ୍ଧାନରେ ଏକ ସ୍ଥାନରେ ପହଞ୍ଚୁଛନ୍ତି । ୧୮ ।

**ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍ ।**
**ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ ।୧୯।**

**ଅନ୍ୱୟ**—ଯ ଏନଂ ହନ୍ତାରଂ ବେତ୍ତି, ଯଃ ଚ ଏନଂ ହତଂ ମନ୍ୟତେ, ତୌ ଉଭୌ ନ ବିଜାନୀତଃ । ଅୟଂ ନ ହନ୍ତି ନ ହନ୍ୟତେ ।୧୯।

**ଟୀକା**—[ଦେହସ୍ୟ ବିନାଶେ ଧ୍ରୁବେ ସତି ଅପି କଥମହଂ ଏତାନ୍ ହନ୍ୟାମ୍-"ଏତାନ୍ ନ ହନ୍ତୁମିଚ୍ଛାମି" ଇତ୍ୟାଦି ଚ ସୂଚୟନ୍ ଆହ]—ଯଃ ଏନଂ (ଶରୀରିଣଂ) ହନ୍ତାରଂ (ବଧକାରିଣଂ) ବେତ୍ତି (ବିଚାରୟତି), ଯଃ ଚ ଏନଂ ହତଂ ମନ୍ୟତେ, ତୌ ଉଭୌ ନ ବିଜାନୀତଃ (ଯଥାର୍ଥମ୍ ଅବଗଚ୍ଛତଃ), ଅୟଂ [ଦେହୀ] ନ ହନ୍ତି (ମାରୟତି) ନ [ଚ କେନାପି] ହନ୍ୟତେ । ୧୯ ।

**ଅର୍ଥ**—[ଦେହ ଅନିତ୍ୟ ହେଉ, ମଲାବେଳେ ହୁଏତ ମରିବ, ଏବେ ମୁଁ କାହିଁକି ମାରିବ ?—ଏଥିକୁ କହୁଛନ୍ତି]—ଯେ ଏହି ଶରୀରୀକୁ ମାରୁଛି ବୋଲି ବିଚାରୁଛି, ପୁଣି ଯେ ଏହାକୁ ମରିଗଲା ବୋଲି ବି ମନେ କରୁଛି—ସେ ଦୁହେଁ କିଛି ଜାଣନ୍ତି ନାହିଁ । ଏ ମାରେ ନାଇ କି ମରି ହୁଏ ନାଇ । ୧୯ ।

**ନ ଜାୟତେ ମ୍ରିୟତେ ବା କଦାଚିତ୍**
**ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।**
**ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ**
**ନ ହନ୍ୟତେ ହନ୍ୟମାନେ ଶରୀରେ । ୨୦ ।**

**ଅନ୍ୱୟ**—ଅୟଂ କଦାଚିତ୍ ନ ଜାୟତେ ମ୍ରିୟତେ ବା, ଅୟଂ ନ ଭୂତ୍ୱା ଭୂୟଃ ଭବିତା, [ଭୂତ୍ୱା ଭୂୟଃ ନ ଭବିତା] ବା ନ, ଅୟଂ ଅଜଃ, ନିତ୍ୟ, ଶାଶ୍ୱତଃ, ପୁରାଣଃ । ଶରୀରେ ହନ୍ୟମାନେ ନ ହନ୍ୟତେ । ୨୦ ।

**ଟୀକା**—ଅୟଂ [ଦେହୀ] କଦାଚିତ୍ ନ ଜାୟତେ (ଜନ୍ମ ଲଭତେ) ମ୍ରିୟତେ (ମୃତ୍ୟୁଂ ପ୍ରାପ୍ନୋତି) ବା, [ଯସ୍ମାତ୍] ଅୟଂ ନ ଭୂତ୍ୱା ଭୂୟଃ (ପୁନଃ) ଭବିତା (ଭବିଷ୍ୟତି) [ଇତି] ନ, [ତସ୍ମାତ୍ ନ ଜାୟତେ], ବା [ଭୂତ୍ୱା ଭୂୟଃ ନ ଭବିତା ଇତି ନ—ତସ୍ମାତ୍ ନ ମ୍ରିୟତେ, ଇତି ବା ପଦେନ ଦ୍ୱିନକାରସ୍ୟାନ୍ୱୟଃ]; ଅୟଂ ଅଜଃ (ଜନ୍ମରହିତଃ) ନିତ୍ୟଃ (ମୃତ୍ୟୁହୀନଃ) ଶାଶ୍ୱତଃ (ସଦୈକରୂପଃ) ପୁରାଣଃ (ପୁରାପି ନବଃ, ବୃଦ୍ଧିରହିତଃ, ନିତ୍ୟସିଦ୍ଧଃ, ସର୍ବାଦଃ ବା—ସର୍ବପ୍ରକାର ବିକାରରହିତଃ ଇତି ଭାବଃ) । ଶରୀରେ ହନ୍ୟମାନେ (ବିପରିଣମ୍ୟମାନେ) [ସତି ଅୟଂ] ନ ହନ୍ୟତେ (ନ ବିପରିଣମ୍ୟତେ) । ୨୦ ।

ଅର୍ଥ—ଏ [ଦେହୀ] କେବେ ଜନ୍ମେ ନାଇ ବା ମରେ ନାହିଁ; କାହିଁକି ନା, ଏ ନ ଥାଇ ପୁଣି [ଶୂନ୍ୟରୁ] ହେବ, ଏହା ନୁହେଁ—ଅର୍ଥାତ୍ ଜନ୍ମେ ନାହିଁ; ବା ହୋଇ ପୁଣି ନ ରହେ [ଏହା ବି ନୁହେ]—ଅର୍ଥାତ୍ ମରେ ନାଇ । [ଏହାର ଜନ୍ମ ନାଇ]—ଏ ଅଜ, [ଏହାର ନାଶ ନାଇ] ଏ ନିତ୍ୟ, [ଏହାର କ୍ଷୟ ବୃଦ୍ଧି ନାଇ]—ଏ ଶାଶ୍ୱତ; ଏ [ଆଦ୍ୟ—ସବୁଠାରୁ ପ୍ରାଚୀନ ବା] ପୁରାଣ; ଶରୀର ନଷ୍ଟ ହେଉଥିଲେ ବି ଏ ନଷ୍ଟ ହୁଏ ନାଇ । ୨୦ ।

ବେଦାବିନାଶିନଂ ନିତ୍ୟଂ ଯ ଏନମଜମବ୍ୟୟମ୍ ।
କଥଂ ସ ପୁରୁଷଃ ପାର୍ଥ କଂ ଘାତୟତି ହନ୍ତି କମ୍ । ୨୧ ।

ଅନ୍ୱୟ—ସ୍ପଷ୍ଟ । ୨୧ ।

ଟୀକା—ହେ ପାର୍ଥ, ଯଃ ଏନଂ [ଦେହିନଂ] ଅଜଂ, ଅବ୍ୟୟଂ, ନିତ୍ୟଂ, ଅବିନାଶିନଂ ବେଦ (ବିଜାନାତି), ସଃ ପୁରୁଷଃ କଥଂ କଂ ଘାତୟତି (ହନନାୟ ପ୍ରେରୟତି) କଂ [ବା ସ୍ୱୟଂ] ହନ୍ତି ? ୨୧ ।

ଅର୍ଥ—ହେ ପାର୍ଥ, ଅଜ, ଅବ୍ୟୟ, ନିତ୍ୟ ଓ ଅବିନାଶୀ (ଅର୍ଥାତ୍, ଜନ୍ମେ ନାହିଁ, ବଦଳେ ନାହିଁ, ବଢ଼େ ବା ଛୁଟେ ନାହିଁ ଓ ନାଶ ହୁଏ ନାହିଁ) ବୋଲି ଏଇ ଦେହୀକୁ ଯେ ବୁଝିଛି, ସେ ଲୋକ କିପରି କାହାକୁ ମରାଏ, କାହାକୁ ବା ପୁଣି ମାରେ ? ୨୧ ।

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-
ନ୍ୟନ୍ୟାନି ସଂଯାତି ନବାନି ଦେହୀ । ୨୨ ।

ଅନ୍ୱୟ—ସ୍ପଷ୍ଟ । ୨୨ ।

ଟୀକା—[ଶରୀରସ୍ୟ ନାଶଃ ତୁ ନୈବ ଶୋଚ୍ୟଃ—ଇତ୍ୟାହ] ଯଥା ନରଃ ଜୀର୍ଣ୍ଣାନି ବାସାଂସି (ବସ୍ତ୍ରାଣି) ବିହାୟ (ତ୍ୟକ୍ତ୍ୱା) ଅପରାଣି (ଅନ୍ୟାନି) ନବାନି [ବାସାଂସି] ଗୃହ୍ଣାତି (ପରିଧତ୍ତେ), ତଥା ଦେହୀ ଜୀର୍ଣ୍ଣାନି (ବିଶୀର୍ଣ୍ଣାନି) ଶରୀରାଣି ବିହାୟ, ଅନ୍ୟାନି (ନୂତନାନି) ସଂଯାତି (ଉପଗଚ୍ଛତି, ଧାରୟତି) । ୨୨ ।

ଅର୍ଥ—[ଶରୀର ନାଶ ଦେଖି ତ ଶୋକ କରିବାର କଥା ନାହିଁ—କାହିଁକି ନା] ଯିମିତି ମଣିଷ ପୁରୁଣା ଲୁଗାଗୁଡ଼ାକ ଛାଡ଼ି ଆଉ ଆଉ ନୂଆ ଲୁଗା ସବୁ ପିନ୍ଧେ, ସିମିତି ଦେହୀ, ପୁରୁଣା ଦେହଗୁଡ଼ାକ ଛାଡ଼ି, ଆଉ ଆଉ ନୂଆ ଦେହସବୁ ଧରେ । ୨୨ ।

**ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ।**
**ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।୨୩।**

**ଅନ୍ୱୟ**—ସ୍ପଷ୍ଟ । ୨୩ ।

**ଟୀକା**—[ଦେହବିକାରେ ସତି ଦେହିନଃ ନ କାଚିତ୍ ବିକ୍ରିୟା—ଇତ୍ୟାହ] ଶସ୍ତ୍ରାଣି ଏନଂ (ଦେହିନଂ) ନ ଛିନ୍ଦନ୍ତି, ପାବକଃ (ଅଗ୍ନିଃ) [ଚ ଏନଂ] ନ ଦହତି; ଆପଃ (ଜଲାନି) ଚ ଏନଂ ନ କ୍ଲେଦୟନ୍ତି (ବିଶ୍ଳେଷୟନ୍ତି, ଭେଦୟନ୍ତି); ମାରୁତଃ (ବାୟୁଃ) [ଚ ଏନଂ] ନ ଶୋଷୟତି (ଶୁଷ୍କଂ କରୋତି) । ୨୩ ।

**ଅର୍ଥ**—[ଦେହ ବଦଳିବା ସଙ୍ଗେ ଦେହୀର ତ କିଛି ହୁଏ ନାହିଁ ବୋଲି କହୁଚନ୍ତି] ଏହି ଦେହୀଙ୍କୁ ଶସ୍ତ୍ରମାନେ ଛିଣ୍ଡାନ୍ତି ନାହିଁ, ନିଆଁ ପୋଡ଼େ ନାହିଁ କିମ୍ବା ପାଣି ଯାଙ୍କୁ ବତୁରାଏ ନାହିଁ, [ କି ] ପବନ ଶୁଖାଏ ନାହିଁ । (ଅର୍ଥାତ୍, ଏ କାହିଁରେ ବଦଳେ ନାହିଁ । ସବୁ ପ୍ରକାର ବଦଳିବା ଦେହର, ଦେହୀର ନୁହେଁ) । ୨୩ ।

**ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ।**
**ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ । ୨୪ ।**

**ଅନ୍ୱୟ**—ଅୟଂ ଅଚ୍ଛେଦ୍ୟଃ, ଅୟଂ ଅଦାହ୍ୟଃ, ଅକ୍ଲେଦ୍ୟଃ ଅଶୋଷ୍ୟଃ ଚ ଏବ । ଅୟଂ ନିତ୍ୟଃ, ସର୍ବଗତଃ, ସ୍ଥାଣୁଃ ଅଚଳଃ, ସନାତନଃ । ୨୪ ।

**ଟୀକା**—[ଅତ୍ର ହେତୁମାହ] [ଅମୂର୍ତ୍ତତ୍ୱାତ୍, ନିରବୟବତ୍ୱାତ୍, ଅନ୍ୟାନ୍ୟ ଦେହୋପାଦାନାଭାବାଚ୍ଚ] ଅୟଂ [ଦେହୀ] ଅଚ୍ଛେଦ୍ୟଃ, ଅୟଂ ଅଦାହ୍ୟଃ, ଅୟଂ ଅକ୍ଲେଦ୍ୟଃ, ଅୟଂ ଚ ଏବ ଅଶୋଷ୍ୟଃ; ଅୟଂ ନିତ୍ୟଃ (ଅପରିବର୍ତ୍ତମାନଃ), [ନିତ୍ୟତ୍ୱାତ୍] ସର୍ବଗତଃ (ଇୟତ୍ତୟା ଅନିର୍ଦ୍ଦେଶ୍ୟଃ, ସର୍ବବ୍ୟାପୀ), [ତଥାପି] ସ୍ଥାଣୁଃ (ନାନ୍ତଃ ସ୍ପନ୍ଦତେ), [ ଅପି ଚ ] ଅଚଳଃ ( ସ୍ଥିରଃ, ନ ଇତସ୍ତତଃ ବହିଶ୍ଚଳତି), [ ଅତଃ ଅୟଂ ] ସନାତନଃ (ଚିରନ୍ତନଃ, ଚିରନୂତନଃ, ନିତ୍ୟମଭିନବଃ, ସଦାଜାତଇବ) । ୨୪ ।

**ଅର୍ଥ**—[କାହିଁକି ନା, ଏହି ଦେହୀଙ୍କୁ ଯେନି ଦେହ ହେଲେ ହେଁ ଏହି ଦେହୀର ନିଜର ରୂପ, ଅବୟବ, ରକ୍ତମାଂସାଦି ଦେହ-ଉପାଦାନ କିଛି ନ ଥିବାରୁ] ଏ ଛିଣ୍ଡାଇ ହେବାର ନୁହେଁ, ପୋଡ଼ି ହେବାର ନୁହେଁ, ବତୁରେଇ ହେବାର ନୁହେଁ କିମ୍ବା ଶୁଖାଇ ହେବାର ନୁହେଁ । ଏ ନିତ୍ୟ, ସର୍ବବ୍ୟାପୀ, ସ୍ଥାଣୁ, ଅଚଳ, ସନାତନ । ୨୪ ।

ବ୍ୟାଖ୍ୟା ସୂଚନା—ସ୍ଥାଣୁ=ଯାହାର ଭିତରେ ମଧ୍ୟ ସ୍ପନ୍ଦନ ହୁଏ ନାହିଁ । ଅଚଳ=ଯାହା ବାହାରେ ହଲ୍‌ଚଲ୍‌ ହୁଏ ନାହିଁ । ସାଧାରଣ ଭାଷାରେ ଶୁଖିଲା ଗଛକୁ ସ୍ଥାଣୁ ଓ ପାହାଡଙ୍କୁ ଅଚଳ କହନ୍ତି । ଜୀଅନ୍ତା ଗଛ ଅଚଳ ସତ, ମାତ୍ର ସ୍ଥାଣୁ ନୁହେ । କାରଣ, ତାର ଭିତରେ ଜୀବନକ୍ରିୟାର ସ୍ପନ୍ଦନ ଚାଲୁଥାଏ । ସନାତନ=ସଦାଜାତ, ସର୍ବଦା ନୂଆ । ଏଠାରେ ବ୍ରହ୍ମ ବା ଆତ୍ମାଙ୍କୁ ଭିନ୍ନ ଭିନ୍ନ ବିଶେଷଣରେ କୁହାଯାଇଛି । ଜଗତର ସବୁ ପଦାର୍ଥର ସବୁ ପ୍ରକାର ଅବସ୍ଥାରେ ଏହି ବ୍ରହ୍ମଙ୍କୁ କଳ୍ପନା କରାଯାଇ-ପାରେ । କୌଣସି ଧାରଣା ଭୁଲ ନୁହେ, କୌଣସିଟି ପୂର୍ଣ୍ଣ ନୁହେ । ଏହା ନିତ୍ୟ (ସର୍ବଦା ଏକାପରି, କେବେ ବଦଳେ ନାହିଁ); ତଥାପି ଏହା ସର୍ବଗତ (ସବୁ ବଦଳୁଥିବା ଜାଗତିକ ବସ୍ତୁମାନଙ୍କରେ ପୂରି ରହିଛି); ହେଲେହେଁ ପୁଣି ଏହା ସ୍ଥାଣୁ (ଏହାର ଭିତରେ ବି ସ୍ପନ୍ଦନ ନାହିଁ) । ସେତିକି ନୁହେଁ; ଏ ମଧ୍ୟ ଅଚଳ (ଏହାର ଭିତରେ ସ୍ପନ୍ଦନ ନାହିଁ କି ବାହାରେ ସ୍ପନ୍ଦନ ନାହିଁ); ଏ ସବୁ ସତ୍ତ୍ୱେ, ଏହା ସନାତନ (ସଦାଜାତ, ନିତ୍ୟ ନୂତନ, ସର୍ବଦା ନବ ନବ ପ୍ରକାଶରେ ଦର୍ଶିଷ୍ଣୁ, ଚିର ନୂତନ) । ଏହିପରି ସମସ୍ତ ବିରୋଧ ପ୍ରକାଶକ ବିଶେଷଣ ବ୍ରହ୍ମଠାରେ ପ୍ରୟୋଗ କରାହୋଇଛି । କାରଣ, ଅଧ୍ୟାତ୍ମ ବସ୍ତୁର ମାନବ ଇନ୍ଦ୍ରିୟଗ୍ରାହ୍ୟ କଳନା ବା ବର୍ଣ୍ଣନା ନାହିଁ । ସବୁ ବିରୋଧରୁ ଏ ଅତୀତ; ତେଣୁ ସବୁ ବର୍ଣ୍ଣନାରେ ମଧ୍ୟ ବର୍ଣ୍ଣିତ ହୋଇପାରେ । ଏଇ ଇନ୍ଦ୍ରିୟାଦିର ଅଗମ୍ୟତା ବୁଝାଇ ପର ଶ୍ଳୋକରେ କହୁଛନ୍ତି । ୨୪ ।

**ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ**
**ତସ୍ମାଦେବଂ ବିଦିତ୍ୱୈନଂ ନାନୁଶୋଚିତୁମର୍ହସି । ୨୫ ।**

**ଅନ୍ୱୟ**—ସ୍ପଷ୍ଟ । ୨୫ ।

**ଟୀକା**—[ ଯତଃ ଯଥାର୍ଥତଃ ] ଅୟଂ [ ଦେହୀ ] ଅବ୍ୟକ୍ତଃ (ଇନ୍ଦ୍ରିୟାଣାମ୍‌ ଅଗୋଚରଃ) ଅୟଂ ଅଚିନ୍ତ୍ୟଃ (ମନସୋଽପି ଅବିଷୟଃ) ଅୟଂ ଅବିକାର୍ଯ୍ୟଃ (ହସ୍ତପାଦାଦି କର୍ମେନ୍ଦ୍ରିୟାଣାମ୍‌ ଅଲଭ୍ୟଃ) ଉଚ୍ୟତେ । ତସ୍ମାତ୍‌ (ଅତଏବ) [ହେ ପାର୍ଥ,] ଏନଂ [ଦେହିନଂ] ଏବଂ (ଉକ୍ତପ୍ରକାରେଣ) ବିଦିତ୍ୱା (ବିଜ୍ଞାୟ) ଅନୁଶୋଚିତୁଂ ନ ଅର୍ହସି (ଯୋଗ୍ୟୋ ଭବସି) । ୨୫ ।

**ଅର୍ଥ**—[ଏଥିପାଇଁ ଯଥାର୍ଥରେ] ଏ ଅବ୍ୟକ୍ତ (ଅର୍ଥାତ୍‌ ଜଣାପଡ଼ୁନାହିଁ,) ଏ ଅଚିନ୍ତ୍ୟ (ଅର୍ଥାତ୍‌, ବୁଝି ହୁଏ ନାହିଁ), ଏ ଅବିକାର୍ଯ୍ୟ (ଅର୍ଥାତ୍‌, ବଦଳାଇ ହୁଏ ନାହିଁ) ବୋଲି କୁହାଯାଏ । ତେଣୁ ଏ ଦେହୀଙ୍କୁ ଏଇପରି ବୋଲି ବୁଝି, ଏହା ଲାଗି ତୋର ଶୋକ କରିବା ଠିକ୍‌ ନୁହେ । ୨୫ ।

ବ୍ୟାଖ୍ୟା ସୂଚନା—ଅବ୍ୟକ୍ତ=ଚକ୍ଷୁକର୍ଣ୍ଣାଦି ଜ୍ଞାନେନ୍ଦ୍ରିୟର ଅଗମ୍ୟ । ଅଚିନ୍ତ୍ୟ=ମନର ଅଗୋଚର । ଅବିକାର୍ଯ୍ୟ=ହସ୍ତପଦାଦି କର୍ମେନ୍ଦ୍ରିୟର ଅପ୍ରାପ୍ୟ ।୨୫।

ଅଥ ଚୈନଂ ନିତ୍ୟଜାତଂ ନିତ୍ୟଂ ବା ମନ୍ୟସେ ମୃତମ୍
ତଥାପି ତ୍ୱଂ ମହାବାହୋ ନୈବଂ ଶୋଚିତୁମର୍ହସି । ୨୬ ।

ଅନ୍ୱୟ—ସ୍ପଷ୍ଟ । ୨୬ ।

ଟୀକା—ଅଥଚ ହେ ମହାବାହୋ, [ତର୍କମାଶ୍ରିତ୍ୟ ଦେହିନଃ ନିତ୍ୟତ୍ୱମସ୍ୱୀକୃତ୍ୟ ଯଥା ପ୍ରତୀୟତେ ତଥା ] ଏନଂ [ ଦେହିନଂ ଦେହେନ ସହ ] ନିତ୍ୟଜାତଂ ( ସର୍ବଦାଜାତଂ) [ତଥା] ନିତ୍ୟଂ ମୃତଂ ବା ମନ୍ୟସେ [ଚେତ୍] ତଥାପି ତ୍ୱମ୍ ଏବଂ [ଏନଂ ଇତି ପାଠେ ଦେହିନଂ ବା] ଶୋଚିତୁଂ ନ ଅର୍ହସି । ୨୬ ।

ଅର୍ଥ—କିନ୍ତୁ ହେ ମହାବାହୁ, [ତର୍କ କରି ବସି, ଦେହୀକୁ ନିତ୍ୟ ବୋଲି ନ ମାନି ଯେପରି ସାଧାରଣରେ ଜଣା ପଡ଼ୁଚି ସେଇପରି ଦେହ ସଙ୍ଗେ ସଙ୍ଗେ ] ବରାବର ଏ ଜନ୍ମ ହେଉଚି, ବରାବର ମରୁଚି ବୋଲି ଯଦି ବୁଝୁଚୁ, ତେବେ ବି ତୋର ଏପରି ଶୋକ କରିବା ଠିକ୍ ନୁହେ । ୨୬ ।

ବ୍ୟାଖ୍ୟା ସୂଚନା—ଏଇ ଶ୍ଳୋକାର୍ଥର ଦୁଇ ପ୍ରକାରେ ତାତ୍ପର୍ଯ୍ୟ ହୋଇପାରେ, ଯଥା—(୧) ଆତ୍ମାକୁ ସର୍ବଦା ଏକାପରି ଓ ଅବିନାଶୀ ବୋଲି ନ ମାନି ଜନ୍ତୁର ମରଣରେ ମରି ପୁଣି ପୁନର୍ଜନ୍ମରେ ଶିଶୁରୂପେ ଜନ୍ମ ହେଉଚି ବୋଲି ବିଚାର କରାଯାଇପାରେ । ବୌଦ୍ଧମାନଙ୍କ ମତରେ ଦଲେ ଆତ୍ମାର ନିତ୍ୟତ୍ୱ ନ ମାନି ମଧ୍ୟ, କର୍ମର ଭୋଗପାଇଁ ଏଇପରି ପୁନର୍ଜନ୍ମ ମାନନ୍ତି । (୨) ଦେହକୁ ସତ୍ୟ ବୋଲି ମାନି ଦେହଇ ଆତ୍ମା ଓ ଯଦି ଅନ୍ୟ କିଛି ଆତ୍ମା ବୋଲି ବା ଥାଏ, ତାହା ଦେହ ସଙ୍ଗେ ଜନ୍ମି ପୁଣି ଦେହ ସଙ୍ଗେ ଲୋପ ପାଉଚି ବୋଲି ବିଚାର କରାଯାଇ-ପାରେ । କ୍ଷଣିକବାଦୀ ବୌଦ୍ଧମାନେ ଏହାଇ ମାନନ୍ତି । ଏଇ ଦୁଇ ଅର୍ଥକୁ ସ୍ପଷ୍ଟ କରିବା ପାଇଁ ପର ଦୁଇଟି ଶ୍ଳୋକରେ କହୁଚନ୍ତି । ୨୬ ।

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି । ୨୭ ।

ଅନ୍ୱୟ— ସ୍ପଷ୍ଟ । ୨୭ ।

ଟୀକା—[ ପୂର୍ବୋକ୍ତସ୍ୟ ଶ୍ଳୋକସ୍ୟ ସ୍ପଷ୍ଟୀକରଣେତି ଦ୍ୱାଭ୍ୟାଂ ] ହି ( ଯତଃ ) ଜାତସ୍ୟ [ଜନ୍ତୋଃ]ମୃତ୍ୟୁଃ ଧ୍ରୁବଃ(ନିଶ୍ଚିତଃ), ମୃତସ୍ୟ ଚ ଜନ୍ମ (ପୁନର୍ଜନନଂ) ଧ୍ରୁବମ୍ । ତସ୍ମାତ୍ [ଜାତସ୍ୟ ମୃତ୍ୟୁରୂପେ] ଅପରିହାର୍ଯ୍ୟେ (ଅନିବାର୍ଯ୍ୟେ, ଅବଶ୍ୟଂ ଭାବିନି) ଅର୍ଥେ (ବିଷୟେ) ତ୍ୱଂ ଶୋଚିତୁଂ ନ ଅର୍ହସି (ଶୋଚନା ତେ ନ କାର୍ଯ୍ୟା ଇତ୍ୟର୍ଥଃ) । ୨୭ ।

**ଅର୍ଥ**—[ପୂର୍ବ ଶ୍ଳୋକର ଅର୍ଥକୁ ଦୁଇ ଶ୍ଳୋକରେ ସ୍ପଷ୍ଟ କରି କହୁଚନ୍ତି ]—ଯେବେ, ଯେ ଜନ୍ମିଚି, ଯାର ମରଣ ନିଶ୍ଚୟ ହେବ, ପୁଣି ଯେ ମରିବ, ନିଶ୍ଚୟ ପୁଣି ତା'ର ଜନ୍ମ ହେବ [ଏଇୟା ତୋ ମତ ହୁଏ ], ତେବେ ଏ ରୋକ ନ ହେବା କଥାରେ ଶୋକ କରିବା ତୋର ଠିକ୍ ନୁହେ । ୨୭ ।

ବ୍ୟାଖ୍ୟା ସୂଚନା—ଯେ ନିଶ୍ଚୟ ମରିବ, ତାକୁ ମାରିବା ଯଦି ତୋର କାମ ହୁଏ, ତେବେ ସେଥିରେ ଭାବନା କଣ ? ମୋଟ କଥା, କାହାକୁ ମାରିବା ବା କେହି ମରିବା କଥ ରେ କିଛୁ ବ୍ୟସ୍ତ ହେବାର ନାଇ । ମରିବାଟା ଯେ ନିଶ୍ଚିତ କଥା । ପୁଣି ମଧ୍ୟ ଯେ ମରିବ ସେ ଅନ୍ୟ ରୂପରେ ଜନ୍ମିବ, ତା ମଧ୍ୟ ରୋକ ହେବ ନାଇ । ତେବେ ମାରିବାରେ ଭାବନା ବା କିଆଁ ? ୨୭ ।

**ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।**
**ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିଦେବନା ? ୨୮**

**ଅନ୍ୱୟ**—ସ୍ପଷ୍ଟ । ୨୮ ।

**ଟୀକା**—[ଅଥବା] ହେ ଭରତ (ଅର୍ଜୁନ), ଭୂତାନି (ପ୍ରାଣିନଃ, ବିଶ୍ୱବସ୍ତୂନି ବା) ଅବ୍ୟକ୍ତାଦୀନି (ଅପ୍ରକାଶିତମୂଳାନି), ବ୍ୟକ୍ତମଧ୍ୟାନି (ଉପଲବ୍ଧବର୍ତ୍ତମାନଶ୍ୟାନି) ଏବଂ (ପୁନଃ) ଅବ୍ୟକ୍ତନିଧନାନି ( ମୃତ୍ୟୋଃ ପରସ୍ତାତ୍ ଅପ୍ରକାଶାନି) । ତତ୍ର ( ଏବଂ ପୂର୍ବାପରସମ୍ବନ୍ଧରହିତେଷୁ କ୍ଷଣିକେଷୁ ଭୂତେଷୁ) କା ପରିଦେବନା (ଶୋଚନା) ? ୨୮ ।

**ଅର୍ଥ**—[ଅଥବା] ହେ ଭାରତ, [ଯଦି ବୁଝୁ] ପ୍ରାଣୀମାନେ ବା ଜଗତର ବସ୍ତୁସବୁ ଅଜଣାରୁ ହୁଅନ୍ତି, ( ଅର୍ଥାତ୍, କାହୁଁ ଆସନ୍ତି ଜଣା ନାଇ), ମଝିରେ ଥିଲାବେଳେହିଁ ଅଛନ୍ତି ବୋଲି ଜଣା ପଡୁଥାନ୍ତି, ପୁଣି ମଲେ କୁଆଡ଼େ ଯାନ୍ତି ଜଣା ନାଇ, [ତେବେ ବା] ସେଥିରେ ଶୋଚନା କିଆଁ ? ୨୮ ।

ବ୍ୟାଖ୍ୟା ସୂଚନା—ଏଠାରେ କହିବାର ଅଭିପ୍ରାୟ, ସବୁ ଯେବେ ଶୂନ୍ୟରୁ ବାହାରି ପୁଣି କ୍ଷଣକ ପରେ ଶୂନ୍ୟରେ ମିଶି ଯାଉଚି, ତେବେ ଶୋଚନା କଣ ପାଇଁ ? ମାତ୍ର ଭଗବାନ୍ ଏଠାରେ ଶୂନ୍ୟ ଶବ୍ଦ ବ୍ୟବହାର ନ କରି ଅବ୍ୟକ୍ତରୁ ବାହାରି ଅବ୍ୟକ୍ତରେ ମିଶି ଯାଉଚି ବୋଲି କହିଚନ୍ତି । ଏଇ ଅବ୍ୟକ୍ତ ଶବ୍ଦଟି କପିଳଙ୍କ ସାଂଖ୍ୟ ପରିଭାଷାରୁ ଗୃହୀତ । କପିଳ-ସାଂଖ୍ୟରେ 'ପ୍ରକୃତି'କୁ 'ଅବ୍ୟକ୍ତ' କହନ୍ତି । ୭. ୪ ଟୀକା ଦେଖ । ୨୮ ।

**ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ-**
**ମାଶ୍ଚର୍ଯ୍ୟବଦ୍ ବଦତି ତଥୈବ ଚାନ୍ୟଃ ।**

**ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି**
**ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ । ୨୯ ।**

**ଅନ୍ୱୟ**—କଶ୍ଚିତ୍ ଏନମ୍ ଆଶ୍ଚର୍ଯ୍ୟବତ୍ ପଶ୍ୟତି । ତଥା ଏବ ଅନ୍ୟଃ ଚ ଆଶ୍ଚର୍ଯ୍ୟବତ୍ ବଦତି । ଅନ୍ୟଃ ଚ ଏନମ୍ ଆଶ୍ଚର୍ଯ୍ୟବତ୍ ଶୃଣୋତି । ଶ୍ରୁତ୍ୱା ଅପି ଏନଂ କଶ୍ଚିତ୍ ନ ଏବ ବେଦ । ୨୯ ।

**ଟୀକା**—[ନ ହ୍ୟେବଂ ତର୍କବାଦଃ ଏତଦ୍ ବିଷୟେ ଯୋଜ୍ୟାଃ, ଯତଃ ଏବଂ ତର୍କବାଦିନାଂ] କଶ୍ଚିତ୍ ଏନଂ [ଦେହିନଂ] ଆଶ୍ଚର୍ଯ୍ୟବତ୍ (ଅଦ୍ଭୁତମିବ) ପଶ୍ୟତି (ଜାନାତି), ତଥା ଏବ ଅନ୍ୟଃ ଚ [ଏନଂ] ଆଶ୍ଚର୍ଯ୍ୟବତ୍ ବଦତି (ବ୍ୟାଖ୍ୟାତି), ଅନ୍ୟଃ ଚ ଏନମ୍ ଆଶ୍ଚର୍ଯ୍ୟବତ୍ ଶୃଣୋତି । [ଏବଂ ଦୃଷ୍ଟ୍ୱା, ଉକ୍ତ୍ୱା ] ଶ୍ରୁତ୍ୱା ଅପି ଏନଂ କଶ୍ଚିତ୍ ନ ଚ ଏବ ବେଦ [ତତ୍ତ୍ୱତଃ ବେତ୍ତି] । ୨୯ ।

**ଅର୍ଥ**—[କିନ୍ତୁ ଏପରି ଯୁକ୍ତିତର୍କରେ ଜଣାଯିବା ବସ୍ତୁ ଏ ନୁହେ । ଯୁକ୍ତି କରି] ଏ ଦେହୀକୁ କିଏ ଆଶ୍ଚର୍ଯ୍ୟ ବୋଲି ବୁଝିଯାଏ; ସେହିପରି ଅଉ କିଏ ଆଶ୍ଚର୍ଯ୍ୟ ଜିନିଷ ପରି ଏହାକୁ ବ୍ୟାଖ୍ୟା କରେ, ପୁଣି ଆଉ କିଏ ଯାହାକୁ ଆଶ୍ଚର୍ଯ୍ୟ ହେଲା ପରି ଶୁଣିଯାଏ । (ମାତ୍ର ଏତେ ଯୁକ୍ତି କରି, ବୁଝି, ବୁଝାଇ ) ଶୁଣି ବି ଯାହାକୁ କେହି ଜାଣନ୍ତି ନାହିଁ । ୨୯ ।

**ଦେହୀ ନିତ୍ୟମବଧ୍ୟୋଽୟଂ ଦେହେ ସର୍ବସ୍ୟ ଭାରତ ।**
**ତସ୍ମାତ୍ ସର୍ବାଣି ଭୂତାନି ନ ତ୍ୱଂ ଶୋଚିତୁମର୍ହସି । ୩୦ ।**

**ଅନ୍ୱୟ**—ସ୍ପଷ୍ଟ ।

**ଟୀକା**—[ ତତ୍ତ୍ୱଜ୍ଞାନତଃ ] ହେ ଭାରତ, ସର୍ବସ୍ୟ [ଭୂତସ୍ୟ ] ଦେହେ [ସ୍ଥିତଃ] ଅୟଂ ଦେହୀ ନିତ୍ୟଂ (ସର୍ବଦା, ସର୍ବାସୁ ଅବସ୍ଥାସୁ ) ଅବଧ୍ୟଃ (ହନ୍ତୁମ୍ ଅଶକ୍ୟଃ) ତସ୍ମାତ୍ ତ୍ୱଂ ସର୍ବାଣି ଭୂତାନି ଶୋଚିତୁଂ ନ ଅର୍ହସି [ ଇତି ଯଦୁକ୍ତଂ ତଦେବ ତଥ୍ୟବଚନମ୍ ] । ୩୦ ।

**ଅର୍ଥ**—[ତତ୍ତ୍ୱରେ ଦେଖିଲେ, ଯାହା କହୁଚି ସେଇଯା—ପୂର୍ବ ୨.୨୫ ଦେଖ ]—ହେ ଭାରତ, ଦେହ ମାନଙ୍କ ସବୁଥିରେ [‘ଅଧ୍ୟାତ୍ମ’] ଏ ଦେହୀ ସର୍ବଦା ସବୁମତେ ଅବଧ୍ୟ, ( ଅର୍ଥାତ୍ କୌଣସିମତେ ମାରି ପକାଇବାର ଜିନିଷ ଏ ନୁହେ ) । ଏଣୁ କୌଣସି ପ୍ରାଣୀ ପାଇଁ ଶୋକ କରିବା ତୋ'ର ଠିକ୍ ନୁହେ । ୩୦ ।

ବ୍ୟାଖ୍ୟା ସୂଚନା—‘ଅଧ୍ୟାତ୍ମ’, ୮.୨ ଟୀକା ଦେଖ । “ଏ ଯାଏ ଶ୍ରୀକୃଷ୍ଣ ବୁଦ୍ଧି ଲଗାଇ ଆତ୍ମା ନିତ୍ୟ ଓ ଦେହ ଅନିତ୍ୟ ବୋଲି ବୁଝାଇ ସାରି, ଏବେ କହୁଚନ୍ତି କି,

ଯେବେ କୌଣସି ସ୍ଥିତିରେ ଦେହକୁ ନାଶ କରିବା ଠିକ୍ ବୋଲି ବୁଝାଯିବ, ତେବେ ଆପଣା ପର ବିଚାରିବା—କୌରବ ଆପଣା ଲୋକ, ତାଙ୍କୁ କପରି ମାରିବା, ଏ ବିଚାର ମୋହରୁ ହେଉଚି ବୋଲି ବୁଝିବାକୁ ହେବ । ସେଥିପାଇଁ କ୍ଷତ୍ରିୟ ଧର୍ମ କଣ, ତାହା ଏବେ ଅର୍ଜୁନଙ୍କୁ କହୁଚନ୍ତି"—ମହାତ୍ମା ଗାନ୍ଧୀ । ୩୦ ।

## ସ୍ୱଧର୍ମମପି ଚାବେକ୍ଷ୍ୟ ନ ବିକମ୍ପିତୁମର୍ହସି ।
## ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତେ ।୩୧।

**ଅନ୍ୱୟ**—ସ୍ୱଧର୍ମମ୍ ଅବେକ୍ଷ୍ୟ ଅପି ବିକମ୍ପିତୁଂ ନ ଅର୍ହସି । ଧର୍ମ୍ୟାତ୍ ଯୁଦ୍ଧାତ୍ ହି ଅନ୍ୟତ୍ ଶ୍ରେୟଃ କ୍ଷତ୍ରିୟସ୍ୟ ନ ବିଦ୍ୟତେ । ୩୧ ।

**ଟୀକା**—[ଅସ୍ତୁ ତାବତ୍, ନଷ୍ଟେ ଦେହେ ନ ଶୋଚିତବ୍ୟମ୍, ତତ୍ କଥମ୍ ଅହଂ ମାରୟାମି ? ଇତ୍ୟାଶଙ୍କ୍ୟ, ତତ୍ତୁ କ୍ଷତ୍ରିୟସ୍ୟ ତବ ସ୍ୱଧର୍ମାତ୍—ଇତି 'ଜିବପଥୁଷ୍ଟ ଶରୀରେ ମେ' (୧. ୨୯) ଇତ୍ୟାଦି ଅର୍ଜୁନୋକ୍ତିଂ ଚ ଲକ୍ଷ୍ୟୀକୃତ୍ୟ ଅହ—[ଦେହିନଃ ନିତ୍ୟତ୍ୱାତ୍ ମୃତ୍ୟୁଃ ନ ଶୋଚନୀୟଃ ] ଅପି ଚ ସ୍ୱଧର୍ମମ୍ ଅବେକ୍ଷ୍ୟ ( ପର୍ଯ୍ୟାଲୋଚ୍ୟ ) [ ଯୁଦ୍ଧେ ପ୍ରାପ୍ତେ ] ବିକମ୍ପିତୁଂ ନ ଅର୍ହସି । ହି (ଯତଃ) ଧର୍ମ୍ୟାତ୍ (ଧର୍ମାଦନପେତାତ୍, ଧର୍ମାନୁମୋଦିତାତ୍) ଯୁଦ୍ଧାତ୍ ଅନ୍ୟତ୍ ଶ୍ରେୟଃ (ହିତତରଂ) [କିଂଚିତ୍] କ୍ଷତ୍ରିୟସ୍ୟ ନ ବିଦ୍ୟତେ ।୩୧।

**ଅର୍ଥ**— [ହଉ ମାନିଲି ଦେହ ନାଶରେ ଶୋକ ଠିକ୍ ନୁହେଁ । ତେବେ ମୁଁ ବା କାହିଁକି ମାରିବି ? ଏଥିକୁ ତୋର କ୍ଷତ୍ରିୟ ଧର୍ମ ପାଳନ ପାଇଁ ମାରିବୁ ବୋଲି ବୁଝାଇବାକୁ ଓ 'ମୋ ଦେହ ଥରୁଚି' (୧.୨୯) ପ୍ରଭୃତି ଅର୍ଜୁନ କହିଥିବା କଥାକୁ ବି ଚେତାଇ କହୁଚନ୍ତି]—ପୁଣି ସ୍ୱଧର୍ମ ବିଚାର କଲେ, (ଯୁଦ୍ଧବେଳେ) ଏପରି କମ୍ପିବା ତୋର ଠିକ୍ ନୁହେ । କାହିଁକି ନା, ଧର୍ମଯୁଦ୍ଧରୁ ବଳି ଆଉ କିଛି ଶ୍ରେୟ କ୍ଷତ୍ରିୟର ନାହିଁ ।୩୧ ।

ବ୍ୟାଖ୍ୟା ସୂଚନା—ଧର୍ମ୍ୟଯୁଦ୍ଧ = ଧର୍ମ ଅନୁସାରେ ବିଚାର କଲେ ଠିକ୍ ଯେଉଁ ଯୁଦ୍ଧ; ଓଡ଼ିଆରେ 'ଧର୍ମଯୁଦ୍ଧ' କହିଲେ ସେହି ଅର୍ଥ ବୁଝାଯିବ । କ୍ଷତ୍ରିୟ ଧର୍ମରେ ଦେଖ, ଯୁଦ୍ଧେ ଚାପ୍ୟପଳାୟନମ୍ = ଯୁଦ୍ଧ ପଡ଼ିଲେ ବି ପଛଘୁଞ୍ଚା ନ ଦେବା—୧୮.୪୩ । ୩୧ ।

## ଯଦୃଚ୍ଛୟା ଚୋପପନ୍ନଂ ସ୍ୱର୍ଗଦ୍ୱାରମପାବୃତମ୍
## ସୁଖିନଃ କ୍ଷତ୍ରିୟାଃ ପାର୍ଥ ଲଭନ୍ତେ ଯୁଦ୍ଧମୀଦୃଶମ୍ । ୩୨ ।

**ଅନ୍ୱୟ**—ସ୍ପଷ୍ଟ । ୩୨ ।

**ଟୀକା**—[ତତ୍ କ୍ଷାତ୍ରଧର୍ମାଶ୍ରୟେଣ ଅସ୍ମିନ୍ ଯୁଦ୍ଧେ ଉତ୍ସାହସ୍ୱ ।] ହେ ପାର୍ଥ ଯଦୃଚ୍ଛୟା (ଅପ୍ରାର୍ଥିତମ୍ ଏବ) ଉପପନ୍ନଂ (ଆଗତଂ) ଅପାବୃତଂ (ମୁକ୍ତଂ) ସ୍ୱର୍ଗଦ୍ୱାରଂ

[ ଇବ ] ଈଦୃଶଂ ଯୁଦ୍ଧଂ ସୁଖିନଃ ( ଭାଗ୍ୟବନ୍ତଃ ) କ୍ଷତ୍ରିୟାଃ [ ଏବ ] ଲଭନ୍ତେ ( ପ୍ରାପ୍ନୁବନ୍ତି ) । ୩୨ ।

ଅର୍ଥ—[ ସେଇ କ୍ଷାତ୍ର ଧର୍ମ କଥା ଧରି, ଏଇ ଯୁଦ୍ଧରେ ମତାଇ କହୁଚନ୍ତି ।] ହେ ପାର୍ଥ, ସ୍ୱର୍ଗକୁ ମେଲା ଦୁଆର ପରି ମନକୁ ମିଳୁଥିବା ଏପରି ଯୁଦ୍ଧ ଭାଗ୍ୟବନ୍ତ କ୍ଷତ୍ରିୟମାନେ [ ଏକା ] ପାଆନ୍ତି । ୩୨ ।

**ଅଥ ଚେତ୍ତ୍ୱମିମଂ ଧର୍ମ୍ୟଂ ସଂଗ୍ରାମଂ ନ କରିଷ୍ୟସି ।**
**ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ ହିତ୍ୱା ପାପମବାପ୍ସ୍ୟସି ।୩୩।**

ଅନ୍ୱୟ— ସ୍ପଷ୍ଟ ।

ଟୀକା—[ପକ୍ଷାନ୍ତରେ ଦୋଷମାହ]—ଅଥ (ଏବଂ ସତି) ତ୍ୱଂ ଇମଂ ଧର୍ମ୍ୟଂ ସଂଗ୍ରାମଂ ( ଯୁଦ୍ଧଂ ) ନ କରିଷ୍ୟସି ଚେତ୍ ( ଯଦି ) ତତଃ (ତର୍ହି) ସ୍ୱଧର୍ମଂ କୀର୍ତ୍ତିଂ (ଖ୍ୟାତିଂ) ଚ ହିତ୍ୱା ( ତ୍ୟକ୍ତ୍ୱା ) [ ସ୍ୱଧର୍ମନାଶଜନିତଂ ] ପାପଂ ଅବାପ୍ସ୍ୟସି (ପ୍ରାପ୍ସ୍ୟସି) । ୩୩ ।

ଅର୍ଥ—[ନ କଲେ ଦୋଷ କହୁଚନ୍ତି]—ତେବେ ଏ ଧର୍ମଯୁଦ୍ଧ ତୁ ଯେବେ ନ କରିବୁ ତେବେ ସ୍ୱଧର୍ମ ଓ କୀର୍ତ୍ତି ହରାଇ ପାପ ଅର୍ଜିବୁ । ୩୩ ।

**ଅକୀର୍ତ୍ତିଂ ଚାପି ଭୂତାନି କଥୟିଷ୍ୟନ୍ତି ତେଽବ୍ୟୟାମ୍ ।**
**ସଂଭାବିତସ୍ୟ ଚାକୀର୍ତ୍ତିର୍ମରଣାଦତିରିଚ୍ୟତେ ।୩୪।**

ଅନ୍ୱୟ—ସ୍ପଷ୍ଟ ।

ଟୀକା—[ ନ କେବଲଂ କୀର୍ତ୍ତିଂ ହାସ୍ୟସି ] ଅପି ଚ ଭୂତାନି ( ଜନାଃ ) ତେ ( ତବ ) ଅବ୍ୟୟାଂ ( ଅଖଣ୍ଡିତାଂ ) ଅକୀର୍ତ୍ତିଂ ( ନିନ୍ଦାଂ ) କଥୟିଷ୍ୟନ୍ତି । ସମ୍ଭାବିତସ୍ୟ ( ବହୁମାନିତସ୍ୟ ) ଅକୀର୍ତ୍ତିଃ (ଅପଯଶଃ) ମରଣାତ୍ ଚ ଅତିରିଚ୍ୟତେ ( ଅଧିକତରା ଭବତି ) । ୩୪ ।

ଅର୍ଥ—[ ଖାଲି କୀର୍ତ୍ତି ଯେ ନ ମିଳିବ ସେତିକି ନୁହେ ] ଲୋକେ ପୁଣି ତୋର ଅଖଣ୍ଡ ନିନ୍ଦା ଗାଇବେ । ଯାହାଠାରେ ସମ୍ଭାବନା ଥାଏ, ସେ ଲୋକର ନିନ୍ଦାହିଁ ମରଣକୁ ବଳେ । ୩୪ ।

**ଭୟାଦ୍ରଣାଦୁପରତଂ ମଂସ୍ୟନ୍ତେ ତ୍ୱାଂ ମହାରଥାଃ ।**
**ଯେଷାଂ ଚ ତ୍ୱଂ ବହୁମତୋ ଭୂତ୍ୱା ଯାସ୍ୟସି ଲାଘବମ୍ ।୩୫।**

ଅନ୍ୱୟ—ସ୍ପଷ୍ଟ ।

**ଟୀକା**—[ ଦୁର୍ଯ୍ୟୋଧନାଦୟଃ ] ମହାରଥାଃ [ ଚ ] ତ୍ୱାଂ [ କର୍ଣ୍ଣାଦିଭ୍ୟଃ ] ଭୟାତ୍ ରଣାତ୍ ଉପରତଂ ( ନିବୃତ୍ତଂ) ମଂସ୍ୟନ୍ତେ ( ବକ୍ଷ୍ୟନ୍ତି ) । ଯେଷାଂ ଚ [ କୌରବାଣାଂ ] ତ୍ୱଂ ବହୁମତଃ ଭୂତ୍ୱା [ ସ୍ଥିତଃ, ତେଷାଂ ବକ୍ତ୍ରେ ] ଲାଘବଂ (ଅଲ୍ପତାଂ) ଯାସ୍ୟସି (ପ୍ରାପ୍ସ୍ୟସି) । ୩୫ ।

**ଅର୍ଥ**—[ଆହୁରି ଏ ଦୁର୍ଯ୍ୟୋଧନ ପ୍ରଭୃତି] ମହାରଥୀମାନେ ବକ୍ତୃବେ, ତୁ ଭୟରେ ଯୁଦ୍ଧରୁ ଖସିଗଲୁ । ପୁଣି ଯାହାଙ୍କ ବକ୍ତ୍ରରେ ତୁ ଏଡ଼େ ବଡ଼ ହୋଇଥିଲୁ, ତାଙ୍କ ପାଖେ ଅଲପ ଲୋକ ହୋଇଯିବୁ । ୩୫ ।

**ଅବାଚ୍ୟବାଦାଂଶ୍ଚ ବହୂନ୍ ବଦିଷ୍ୟନ୍ତି ତବାହିତାଃ ।**
**ନିନ୍ଦନ୍ତସ୍ତବ ସାମର୍ଥ୍ୟଂ ତତୋ ଦୁଃଖତରଂ ନୁ କିମ୍ ? ୩୬।**

**ଅନ୍ୱୟ**—ସ୍ପଷ୍ଟ । ୩୬ ।

**ଟୀକା**—[ଅପି] ଚ ତବ ଅହିତାଃ (ଶତ୍ରବଃ) ତବ ସାମର୍ଥ୍ୟଂ (ଶୌର୍ଯ୍ୟଂ) ନିନ୍ଦନ୍ତଃ [ସନ୍ତଃ] ବହୂନ୍ ଅବାଚ୍ୟବାଦାନ୍ ( ଅକଥ୍ୟବଚନାନି ) ବଦିଷ୍ୟନ୍ତି (କଥୟିଷ୍ୟନ୍ତି), ତତଃ ଦୁଃଖତରଂ (ଅଧିକତରଂ ଦୁଃଖପ୍ରଦଂ) କିଂ ନୁ ? ୩୬ ।

**ଅର୍ଥ**—[ଫେର୍] ତୋ ଅହିତରେ ଥିବା ଲୋକେ ତୋ ପରାକ୍ରମକୁ ନିନ୍ଦାକରି କେତେ ତୁଣ୍ଡେ ନ ଧରିବା କଥା କହିବେ । ତାଙ୍କୁ ବଳି ଦୁଃଖର କଥା ଆଉ କଣ ଅଛି କି ? ୩୬ ।

**ହତୋ ବା ପ୍ରାପସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍**
**ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟଃ । ୩୭ ।**

**ଅନ୍ୱୟ**—ସ୍ପଷ୍ଟ । ୩୭ ।

**ଟୀକା**—[ଅତଏବ ଏତସ୍ମିନ୍ ଧର୍ମ୍ୟେ ଯୁଦ୍ଧେ] ହତଃ [ସନ୍] ସ୍ୱର୍ଗଂ ବା ପ୍ରାପ୍ସ୍ୟସି, ଜିତ୍ୱା ମହୀଂ (ପୃଥିବୀଂ, ରାଜ୍ୟଂ) ବା ଭୋକ୍ଷ୍ୟସେ । ହେ କୌନ୍ତେୟ (ଅର୍ଜ୍ଜୁନ) ତସ୍ମାତ୍ ଯୁଦ୍ଧାୟ (ଯୁଦ୍ଧଂ କର୍ତ୍ତୁଂ) କୃତନିଶ୍ଚୟଃ ( ଦୃଢ଼ସଙ୍କଳ୍ପଃ ) [ସନ୍] ଉତ୍ତିଷ୍ଠ । ୩୭ ।

**ଅର୍ଥ**—[ଏହି ଧର୍ମ ଯୁଦ୍ଧରେ] ମଲେ ସ୍ୱର୍ଗ ପାଇବୁ, ନ ହେଲେ ଜିଣି ରାଜ୍ୟ ଭୋଗିବୁ । ତେବେ ହେ କୌନ୍ତେୟ, ଯୁଦ୍ଧ କରିବାକୁ ଠିକ୍ କରି ଠିଆ ହୋ ।୩୭।

ବ୍ୟାଖ୍ୟା ସୂଚନା—"ଏହିପରି ଭଗବାନ୍ ଆତ୍ମାର ନିତ୍ୟତ୍ୱ ଓ ଦେହର ଅନିତ୍ୟତ୍ୱ କହିଲେ; ପୁଣି ମିଳିଥିବା ଯୁଦ୍ଧ କରିବାରେ ଧର୍ମର ବାଧା ହୁଏ ନାହିଁ, ଏହା ବି କହିଲେ । ଏହିପରି ୩୮ଶ ଶ୍ଳୋକଠାରୁ ଭଗବାନ୍ ପରମାର୍ଥ ସଙ୍ଗେ ଉପଯୋଗର

( ଆତ୍ମତତ୍ତ୍ୱ ଜ୍ଞାନ ସଙ୍ଗେ ଲୌକିକ ବ୍ୟବହାରର ) ମେଳ କରାଇଲେ । ଏତକ କହି ସାରି ଭଗବାନ୍ ଗୀତାର ପ୍ରଧାନ ଉପଦେଶର ସୂଚନା ଦେଉଛନ୍ତି ।"

—ମହାତ୍ମା ଗାନ୍ଧୀ । ୩୭ ।

**ସୁଖଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ ।**
**ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପମବାପ୍ସ୍ୟସି ।୩୮।**

**ଅନ୍ୱୟ**—ତତଃ ସୁଖଦୁଃଖେ ସମେ ଲାଭାଲାଭୌ ଜୟାଜୟୌ [ଚ ସମୌ] କୃତ୍ୱା ଯୁଦ୍ଧାୟ ଯୁଜ୍ୟସ୍ୱ । ଏବଂ ପାପଂ ନ ଅବାପ୍ସ୍ୟସି ।୩୮।

**ଟୀକା**—["ପାପମେବାଶ୍ରୟେଦସ୍ମାନ୍" (୧.୩୬) ଇତି ଅର୍ଜୁନବଚନଲକ୍ଷ୍ୟେଣ ଆହ ]—ତତଃ (ଅତଏବ) [ ସ୍ୱଧର୍ମଂ କରୋମୀତି ବୁଦ୍ଧ୍ୟା ସୁଖଦୁଃଖେ (ସୁଖଂ ଦୁଃଖଂ ଚ ) ସମେ (ଏକବତ୍) କୃତ୍ୱା ( ବୁଦ୍ଧ୍ୱା ) [ତଥା ତଜ୍ଜନକୌ] ଲାଭାଲାଭୌ ତତ୍କାରଣଭୂତୌ] ଜୟାଜୟୌ [ଚ ସମୌ କୃତ୍ୱା] ଯୁଦ୍ଧାୟ ଯୁଜ୍ୟସ୍ୱ (ଘଟସ୍ୱ, ପ୍ରବୃତ୍ତୋଭବ), ଏବଂ [କୃତେ ସତି] ପାପଂ ନ ଅବାପ୍ସ୍ୟସି (ପ୍ରାପ୍ସ୍ୟସି) । ୩୮ ।

**ଅର୍ଥ**—["ଆମକୁ ପାପ ଲାଗିବ"—(୧.୩୬)—ଅର୍ଜୁନଙ୍କର ଏଇ କଥାକୁ ଚେତାଇ କହୁଚନ୍ତି]—ତେବେ [ସ୍ୱଧର୍ମ କରୁଚ, ବା ନ କରିବାକୁ ଘୃଣା ନାଇ ବୋଲି ବୁଝି] ସୁଖଦୁଃଖ, ଲାଭକ୍ଷତି, ଜିଣିବା ହାରିବା, ସବୁ ସମାନ ବୋଲି ବୁଝି ଯୁଦ୍ଧରେ ଲାଗି ଯା । ଏଇପରି କଲେ ତତେ ପାପ ଲାଗିବ ନାଇ । ୩୮ ।

ବ୍ୟାଖ୍ୟା ସୂଚନା—ଏଇପରି ସାଂଖ୍ୟ ବା ଜ୍ଞାନରେ ଆତ୍ମା ଓ ଦେହର ପ୍ରକୃତି ଠିକ୍ ବୁଝିଗଲେ; ଜନ୍ମ, ମୃତ୍ୟୁ ତଥା କର୍ମର ଫଳାଫଳରେ ମନୁଷ୍ୟର କିଛି ନାଇ—ମାଇଲେ ବି ପାପ ନାଇ, ମଲେ ବି ଦୁଃଖ ନାଇ—ଏହା ଠିକ୍ ବୁଝାଗଲା । ମାତ୍ର ସାଂଖ୍ୟଙ୍କ ପ୍ରଚଳିତ ମାର୍ଗରେ ଏପରି କର୍ମ କରିବାର ତ ନାଇ । ପ୍ରଥମରୁ ଯାଗଯଜ୍ଞାଦି ବୈଦିକ କର୍ମରେ ଚିତ୍ତଶୁଦ୍ଧି କରି, ପରେ ବ୍ରହ୍ମଜ୍ଞାନରେ ସବୁ କର୍ମ ଛାଡ଼ିଦେଇ, ସନ୍ନ୍ୟାସ କରି ଶେଷରେ ନିଷ୍କର୍ମୀ ଥାଇ ଦେହ ତ୍ୟାଗ କରିବା ଇ ସାଂଖ୍ୟମାନଙ୍କର ମତ ଓ ମୋକ୍ଷମାର୍ଗ ; ଯେଉଁ କର୍ମରେ ଆତ୍ମାର କିଛି ଯାଏ ଆସେ ନାଇ, ଜ୍ଞାନରେ ସ୍ଥିର ଥିବା ଲୋକ, ସେ କର୍ମ କରିବ ବା କାହିଁକି ? ସେଥିପାଇଁ ଭଗବାନ୍ ଖାଲି କହି-ଦେଲେ, "ସ୍ୱଧର୍ମ କରିବାକୁ ହେବ ।" ସ୍ୱଧର୍ମ କାହିଁକି ଯେ କରିବାକୁ ହେବ, ତା ଭଗବାନ ବୁଝାଇଲେ ନାଇ । ଅର୍ଜୁନଙ୍କର ଏ ସନ୍ଦେହ ଏଠି ରହିଗଲା—୩.୨ ଟୀକା ଦେଖ । ଏବେ ପର ଶ୍ଳୋକଠାରୁ ବୁଝାଇବେ, କର୍ମ କରି, କର୍ମ ଜଞ୍ଜାଳ ମଧ୍ୟରେ କିପରି ଜ୍ଞାନରେ ଠିକ୍ ରହିବାକୁ ହେବ । ୩୮ ।

**ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ**
**ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ କର୍ମବନ୍ଧଂ ପ୍ରହାସ୍ୟସି । ୩୯ ।**

**ଅନ୍ୱୟ**—ଏଷା ବୁଦ୍ଧିଃ ତେ ସାଂଖ୍ୟେ ଅଭିହିତା, ଯୋଗେ ତୁ ଇମାଂ ଶୃଣୁ, ପାର୍ଥ ! ଯୟା [ଯୋଗ] ବୁଦ୍ଧ୍ୟା ଯୁକ୍ତଃ [ତ୍ୱଂ] କର୍ମବନ୍ଧଂ ପ୍ରହାସ୍ୟସି । ୩୯ ।

**ଟୀକା**—[ଦେହସ୍ତ କର୍ମଭିଃ ବଧ୍ୟତେ; ସର୍ବଂ ସୁଖଦୁଃଖାଦି କର୍ମଜନ୍ୟଂ; ତତ୍ କଥଂ ସ୍ୱଧର୍ମଂ ଧର୍ମ୍ୟଂ ଯୁଦ୍ଧଂ ବା କରୋମି ?—ଇତ୍ୟାଶଙ୍କ୍ୟ ଆହ] (ତୁଭ୍ୟଂ) ସାଂଖ୍ୟେ (ସମ୍ୟକ୍ ଖ୍ୟାୟତେ ପ୍ରକାଶ୍ୟତେ ତତ୍ତ୍ୱଂ ଅସ୍ୟାଂ ଇତି ସଂଖ୍ୟା, ତତ୍ ଏବ ସାଂଖ୍ୟଂ—ତତ୍ତ୍ୱଜ୍ଞାନଂ ତସ୍ମିନ୍ ) ଏଷା ବୁଦ୍ଧିଃ (ଜ୍ଞାନଂ ବିବେଚନଂ ବା) ଅଭିହିତା (କଥିତା) । [କିଂ] ତୁ ଯୋଗେ (କର୍ମଣି ଆତ୍ମ ନିୟୋଗସମ୍ପର୍କେ ନ ତୁ ତ୍ୟାଗେ, ଯତଃ ସାଂଖ୍ୟୈଃ କର୍ମତ୍ୟାଗରୂପଃ ସନ୍ନ୍ୟାସଃ ଉପଦିଷ୍ଟଃ—ଇତ୍ୟାଶୟଃ), ଇମାଂ [ବୁଦ୍ଧିଂ] ଶୃଣୁ; ପାର୍ଥ, ଯୟା ବୁଦ୍ଧ୍ୟା ଯୁକ୍ତଃ (ଅନ୍ୱିତଃ) ତ୍ୱଂ କର୍ମବନ୍ଧଂ (କର୍ମଜନ୍ୟଂ ଦେହିନଃ ଜନ୍ମମରଣ-ଶୃଙ୍ଖଳାରୂପଂ—ବନ୍ଧନଂ—ସଂସାରଂ) ପ୍ରହାସ୍ୟସି (ବିମୋଚୟିଷ୍ୟସି, ତ୍ୟକ୍ଷ୍ୟସି—କର୍ମବନ୍ଧଂ ନତୁ କର୍ମ ପ୍ରହାସ୍ୟସି ଇତି ଅଭିପ୍ରାୟଃ) । ୩୯ ।

**ଅର୍ଥ**—[କର୍ମରେ ତ ଲୋକ ବାନ୍ଧି ହୁଏ । ସୁଖ ଦୁଃଖ ପ୍ରଭୃତି ସବୁ ତ କର୍ମ ସଙ୍ଗେ ଲାଗି ରହିଚ । ତେବେ ସ୍ୱଧର୍ମ ହେଉ, ଧର୍ମ ଯୁଦ୍ଧ ହେଉ, ତାକୁ କରିବି କିମିତି ? ବୋଲି ଅର୍ଜୁନ ଏହା ବିଗୁରୁଥିବେ ବୋଲି କହୁଚନ୍ତି ]—ସାଂଖ୍ୟ ଅନୁସାରେ ଏଇ ବୁଦ୍ଧି ବା ଜ୍ଞାନ ତତେ କୁହି ଗଲି । [ସାଂଖ୍ୟ ମାର୍ଗରେ କର୍ମକୁ ବନ୍ଧନର କାରଣ ବୋଲି ବିଗ୍ରର କର୍ମ ଛାଡ଼ି ଦେବାର ବିଧି ଥାଇପାରେ, ତେବେ ] ଯୋଗ ହିସାବରେ ଏଇ ଜ୍ଞାନ ଶୁଣ । ଯୋଗରେ ସେଇ ଜ୍ଞାନ ଧଇଲେ, ହେ ପାର୍ଥ, ତୁ କର୍ମବନ୍ଧ ତୁଟାଇବୁ (ଅର୍ଥାତ୍, କର୍ମ କରି ବି କର୍ମର ବନ୍ଧନରେ ପଡ଼ିବୁ ନାଇ ) ।୩୯।

ବ୍ୟାଖ୍ୟା ସୂଚନା—ସାଂଖ୍ୟ=ଯହିଁରେ ତତ୍ତ୍ୱ ସମ୍ପୂର୍ଣ୍ଣରୂପେ ପ୍ରକାଶିତ ହୋଇ ବୁଝି ପଡ଼େ, ତତ୍ତ୍ୱଜ୍ଞାନ । ଯୋଗ=ଯୁକ୍ତ ହେବା, ଲାଗି ରହିବା; ଜ୍ଞାନ, କର୍ମ, ଭକ୍ତି ତିନହିଁକୁ ଏକ କରି ମୋକ୍ଷ ସାଧନାରେ ଲାଗି ରହିବା । ମାତ୍ର ଏଠାରେ ବିଶେଷରେ କର୍ମରେ ଲାଗି ରହିବା କଥାଟି ଧରି ଏଇ 'ଯୋଗ'ର ବ୍ୟାଖ୍ୟା ଆରମ୍ଭ କରୁଚନ୍ତି । (ଯୋଗର ବିଶେଷ ବ୍ୟାଖ୍ୟା ପାଇଁ ୩.୩ ଟୀକା ଦେଖ) । କର୍ମବନ୍ଧ=କର୍ମର ବନ୍ଧନ । କର୍ମ ସଙ୍ଗେ ଫଳ ଅଛି; କର୍ମ କରିବା ଲୋକର ଫଳର ଅପେକ୍ଷା ରହିବାର କଥା ଶୁଣି ଫଳର ଅପେକ୍ଷାରୁ କର୍ମରେ ମୋର ବୋଲି ମମତା ପ୍ରଭୃତି ଦୋଷ ଆସେ । ଏଇ କର୍ମରୁ ଜନ୍ମମରଣ ବନ୍ଧ ହୁଏ । ବନ୍ଧ ଓ ମୋକ୍ଷ ଏ ଦୁଇଟି ବିପରୀତ କଥା । ବନ୍ଧ =ଜନ୍ମମରଣ ରୂପ ଶିକୁଳିରେ ବନ୍ଧନ । ଏହାକୁ ସଂସାର ବା ସଂସାରବନ୍ଧ ଓ ଜନ୍ମବନ୍ଧ ବୋଲି କୁହାଯାଏ । ଏହାର ହେତୁ କର୍ମର ଫଳାଫଳ ଭୋଗ—କର୍ମବନ୍ଧ ବା କର୍ମର ବନ୍ଧନ । ମୋକ୍ଷ=ମୁକ୍ତି ବା ଏଇସବୁ ବନ୍ଧନ ଛିଣ୍ଡାଇ ସ୍ୱାଧୀନ ହେବା । ସାଂଖ୍ୟ

ମାର୍ଗର ପ୍ରଚଳିତ ମତ ହେଉଛି, କର୍ମ ଛାଡ଼ି ସନ୍ନ୍ୟାସ କରିବା । କର୍ମବନ୍ଧ ତୁଟାଇଲେ ମୁକ୍ତି ହେବ । କର୍ମ ମାତ୍ରେ ବନ୍ଧନ । ଏଣୁ ସେମାନେ କହନ୍ତି, ଜ୍ଞାନ ହୋଇଗଲେ କର୍ମ ଛାଡ଼ିଦେବାହିଁ ବିଧି । ସେତିକି ନୁହେଁ, ଚିତ୍ତଶୁଦ୍ଧି ହୋଇଗଲେ, କର୍ମ ଛାଡ଼ି, ବ୍ରତ ଉପବାସାଦି ସହିତ ତପସ୍ୟାରେ ଜ୍ଞାନର ସେବା କରି ମୁକ୍ତିର ସାଧନା କରିବ—ଏପରି ମଧ୍ୟ ସେମାନେ କହନ୍ତି । ଭଗବାନ୍ ଏଠାରେ ଯୋଗ ବୁଦ୍ଧିରେ କର୍ମ କରିବାର ଉପଦେଶ ଦେବାକୁ ଯାଉଛନ୍ତି । ସେଥିପାଇଁ କହି ରଖୁଛନ୍ତି, ଏଇ ଯୋଗ ବୁଦ୍ଧିରେ କର୍ମ କଲେ ତୁ କର୍ମବନ୍ଧ ତୁଟାଇ ପାରିବୁ । କର୍ମବନ୍ଧକୁ ଭୟ କରି ଯେବେ ତୋର କର୍ମ ଛାଡ଼ିବା ମତ ହୋଇଥିବ, ତେବେ ସେ ଭୟ ଏଥିରେ କିଛି ନାଇ । ଏହା କହି, ଅର୍ଜ୍ଜୁନଙ୍କର ଶୁଣିବାର ଆଗ୍ରହ ଠିକ୍ କରି ରଖୁଛନ୍ତି । କାରଣ, ମୂଳରୁ କର୍ମ କଥା ଶୁଣି ଶୁଣି ଅର୍ଜ୍ଜୁନଙ୍କର କର୍ମବନ୍ଧରେ ପଡ଼ିବା ଭୟ ଅସି ଯାଇପାରେ ଓ ଫଳରେ ଶୁଣିବାରେ ବୈରାଗ ଜନ୍ମିପାରେ । ପୁଣି କର୍ମ ଛାଡ଼ିଦେବା ମାର୍ଗରେ ମଝିରେ ଅଳସ୍ୟ ହେତୁରୁ ଜ୍ଞାନର ନିଷ୍ଠା ଭାଙ୍ଗି ଯାଇପାରେ ଓ ଫଳରେ ଯାହା କରାଯାଇଛି, ତା ସବୁ ନଷ୍ଟ ହୋଇଯିବାରୁ ମନୁଷ୍ୟ ଜ୍ଞାନମାର୍ଗରୁ ଭ୍ରଷ୍ଟ ହୋଇ ଏକାବେଳକେ ବାମମାର୍ଗୀ ହୋଇ ଯାଇପାରେ । ଅନେକ ଜ୍ଞାନୀ, ବିଶେଷରେ ତାନ୍ତ୍ରିକ, ଏପରି ହୋଇଯିବାର ଏବେ ମଧ୍ୟ ଦେଖାଯାଏ । ସେ ସନ୍ଦେହ ଏ ଯୋଗରେ ନାଇ ବୋଲି ପର ଶ୍ଲୋକରେ କହିବେ ଓ ତା ପରେ କ୍ରମେ ଯୋଗର କର୍ମମାର୍ଗ ବୁଝାଇବେ ।

ମାତ୍ର ଯୋଗର ଏ କର୍ମମାର୍ଗର ସାଧନପ୍ରଣାଳୀ ବୁଝିବା ପୂର୍ବରୁ 'ସାଂଖ୍ୟବୁଦ୍ଧି' ଓ 'ଯୋଗବୁଦ୍ଧି' କଥା ଦୁଇଟିର ତାତ୍ପର୍ଯ୍ୟ ଭଲକରି ବୁଝି ରଖିବା ଦରକାର । ଭଗବାନ୍ ସୂଚନା ଦେଇଛନ୍ତି—ଆତ୍ମାର ଯଥାର୍ଥ ଜ୍ଞାନ ଥିଲେ, ସ୍ୱଧର୍ମରେ ରହି ଫଳା-ଫଳକୁ ଅପେକ୍ଷା ନ ରଖି କର୍ମ କରି ଯିବାର ବିଧି । କର୍ମ ଛାଡ଼ିବା କଦାପି ଭଗବାନଙ୍କର ମତ ନୁହେଁ । ତାଙ୍କ ମତରେ, ଜ୍ଞାନରେ ପ୍ରତିଷ୍ଠିତ ରହି କର୍ମ କରିଯିବାଇ ସାଂଖ୍ୟମାର୍ଗ (ଜ୍ଞାନମାର୍ଗ)ର ମୋକ୍ଷ ସାଧନା । ଏଇ ସାଧନପ୍ରଣାଳୀ ବା ଯୋଗକୁ ଜ୍ଞାନ ଅଡ଼ୁ ନ ବୁଝି, କର୍ମ ଅଡ଼ୁ ବୁଝିବାହିଁ ଏଠାରେ ଯୋଗ ବା ମୁଖ୍ୟତଃ କର୍ମଯୋଗ । ଏଇପରି ଦୁଇଟି ମାର୍ଗ—ସାଂଖ୍ୟ ଓ ଯୋଗ । ଏ ଦୁଇଟିର ଉଦ୍ଦେଶ୍ୟ ବା ଫଳରେ କିଛି ପ୍ରଭେଦ ନାଇ । (୫.୪, ୫ ଦେଖ) । ସାଂଖ୍ୟବୁଦ୍ଧିରେ ଯେପରି ଜ୍ଞାନରେ ଠିକ୍ ରହି କର୍ମ କରିବାର କଥା, ଯୋଗବୁଦ୍ଧିରେ ସେଇପରି କର୍ମମାର୍ଗ ଧରିବାରେ ବୁଦ୍ଧିକୁ ଜ୍ଞାନରେ ଠିକଣା କରି ରଖି କର୍ମରେ ଲାଗିବାର କଥା । ବସ୍ତୁତଃ ଏହା ଏକା କଥାକୁ ଦୁଇ ଅଡ଼ୁ ବିଗ୍ଭର କରି ଦେଖିବା ମାତ୍ର । ତେବେ ହୁଏତ ଭେଦ ଏତିକି ଥାଇପାରେ—ଜ୍ଞାନ ପରିପକ୍ୱ ଓ ସ୍ଥିର ନ ଥିବା ବେଳେ ବୁଦ୍ଧିକୁ ଆତ୍ମା ବା ବ୍ରହ୍ମର ଜ୍ଞାନରେ ସ୍ଥିର ରଖିବାର ପ୍ରୟତ୍ନ ଓ ଅଭ୍ୟାସ କରି କର୍ମ କରିଯିବ ଓ ସେଥିରେହିଁ ଜ୍ଞାନର ଧାରଣା ଦୃଢ଼ ହୋଇ, ଜ୍ଞାନ ପ୍ରତିଷ୍ଠିତ ହୋଇଯିବ ।

ଏଇ ଦୁଇଟି ମାର୍ଗ ବା ମୋକ୍ଷସାଧନାକୁ ଏଇପରି ଦୁଇ ଭାବରେ ବୁଝିବାକୁ ଭଗବାନ୍ ପରେ ଜ୍ଞାନଯୋଗ ଓ କର୍ମଯୋଗ ବୋଲି କହିଚନ୍ତି (୩. ୧, ୨ ଦେଖ) । ଜ୍ଞାନ କହିଲେ, ଆତ୍ମା ବା ବ୍ରହ୍ମର ଯଥାର୍ଥ ଜ୍ଞାନ । ସେଇ ବ୍ରହ୍ମତତ୍ତ୍ୱ ପରେ କ୍ରମେ ସ୍ପଷ୍ଟ ହେବ ଓ ସେଇ ତତ୍ତ୍ୱର ଧାରଣାହିଁ ପରମେଶ୍ୱର ବା 'ପୁରୁଷୋତ୍ତମ'ଙ୍କର ଯଥାର୍ଥ ଧାରଣା ବୋଲି ବୁଝାଯିବ । ତେଣୁ ଏଇ ଜ୍ଞାନ ଓ କର୍ମରେ ପରମେଶ୍ୱରଙ୍କର ଦୃଢ଼ ଧାରଣାହିଁ ରହିଚ । ସେଇ ଧାରଣାରେ ବୁଦ୍ଧି ସ୍ଥିର ରଖି କର୍ମ କରିବାହିଁ ଯୋଗ— ( ୨. ୬୧ରେ 'ମତ୍‌ପର' ଦେଖ ) । ପର ଅଧ୍ୟାୟମାନଙ୍କରେ ଏଇ କଥା ସ୍ପଷ୍ଟ କରି ଯାଇଚ । ଏଇ ହିସାବରେ ପୁଣି ସେଇ ଯୋଗକୁ ଦେଖିଲେ, ତାହା ଭକ୍ତିଯୋଗ । ଏଇପରି ଗୀତାର ଜ୍ଞାନଯୋଗ, କର୍ମଯୋଗ ଓ ଭକ୍ତିଯୋଗ—ତିନୋଟି ଯାକ ଏକା କଥା । ଏକା କଥାକୁ ଭିନ୍ନ ଭିନ୍ନ କରି ବୁଝିବାରେ ତିନୋଟି ପ୍ରକାର । ଏଠାରେ ଯୋଗରେ ଏଇ ବୁଦ୍ଧି ଶୁଣ ବା ଯୋଗ ଆଡ଼ୁ ଏଇ ସାଧନାର ଜ୍ଞାନକୁ ବୁଦ୍ଧି ବୋଲି କହି କର୍ମ କଥା ବୁଝାଉଚନ୍ତି । ଏହାର କାରଣ, ଏଇ ମୋକ୍ଷସାଧନ ପ୍ରଣାଳୀରେ ଜ୍ଞାନର ଦୃଢ଼ ଧାରଣାରେ ପୁଣି ଈଶ୍ୱରଭାବରେ ତତ୍ପର ଓ ତନ୍ମୟ ରହିବା ବିଷୟରେ, କାହାରି କିଛି ମତଭେଦ ନାଇ । ଅର୍ଜୁନଙ୍କର ମଧ୍ୟ ଜ୍ଞାନରେ ତତ୍ତ୍ୱ ଦୃଢ଼ କରି କର୍ମ ଛାଡ଼ି ଦେବାରହିଁ ମତ । ମାତ୍ର କର୍ମ ଆଡ଼ୁ ଏଇ ସାଧନ ପ୍ରଣାଳୀ ଭଲ କରି ବୁଝିବା ବିଶେଷ ଦରକାର । ଅର୍ଜୁନଙ୍କର ମଧ୍ୟ ସେଇ କର୍ମ କରିବାରେ ଆପତ୍ତି । ତେଣୁ ଏଇ କର୍ମର ଉପଯୋଗିତା ବୁଝାଇବାକୁ ଯାଇ ଭଗବାନ୍ ଏଠାରେ ଯୋଗ ଶବ୍ଦ ପ୍ରୟୋଗ କରିଚନ୍ତି ।

ହେଲେହେଁ, ଯୋଗ କହିଲେ କେବଳ କର୍ମରେ ଲଗି ରହିବା ନୁହେଁ । ପରମାତ୍ମତତ୍ତ୍ୱର ଜ୍ଞାନ ଓ ଦୃଢ଼ ଧାରଣାରେ ସ୍ଥିର ରହି ସେଇ ଜ୍ଞାନରେ ଈଶ୍ୱରଙ୍କୁ ବୁଝି ସେଇ ଈଶ୍ୱରଭାବରେ ଭକ୍ତିରେ ତନ୍ମୟ ହୋଇ କର୍ମରେ ମୋକ୍ଷସାଧନ କରିବାଇ ଯୋଗ । କେବଳ ଷଷ୍ଠ ଅଧ୍ୟାୟରେ କେତେକ ସ୍ଥଳରେ ଧ୍ୟାନ ସାଧନ ଅର୍ଥରେ 'ଯୋଗ' ଶବ୍ଦ ବ୍ୟବହାର କରାଯାଇଚ । ତାହା ଛାଡ଼ି ଦେଲେ, ଗୀତାରେ ସବୁଠି ଏଇ ଜ୍ଞାନ-ଭକ୍ତି-କର୍ମରେ ମୋକ୍ଷସାଧନା କରିବାକୁ ଯୋଗ କୁହା ଯାଇଚ । ଏଇ ଯୋଗରେ ଯେ ଥାଏ, ସେ ଯୁକ୍ତ ବା ଯୋଗୀ । ସେଇ ଯୋଗୀ ଏକା ତପସ୍ୱୀ, ଜ୍ଞାନୀ ଓ କର୍ମୀ ହେଲେହେଁ ଏ ତିନିଥିରୁ ଅଧିକ, ଅର୍ଥାତ୍, କୌଣସି ଗୋଟିକରେ ଏଇ ଯୋଗୀର ପୂର୍ଣ୍ଣ ବର୍ଣ୍ଣନ ହୁଏ ନାହିଁ (୬.୪୬ ଦେଖ) । ୩୯ ।

**ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ ।**
**ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ । ୪୦ ।**

**ଅନ୍ୱୟ**—ଇହ ଅଭିକ୍ରମନାଶଃ ନ ଅସ୍ତି । ପ୍ରତ୍ୟବାୟଃ ନ ବିଦ୍ୟତେ । ଅସ୍ୟ ଧର୍ମସ୍ୟ ସ୍ୱଳ୍ପଂ ଅପି ମହତଃ ଭୟାତ୍ ତ୍ରାୟତେ । ୪୦ ।

**ଟୀକା**—[ପ୍ରଚଳିତ ସାଂଖ୍ୟମାର୍ଗସ୍ୟାବରତ୍ୱଂ ସୂଚୟନ୍ ଯୋଗଂ ପ୍ରଶଂସତି] —ଇହ (ଏତସ୍ମିନ୍ ଯୋଗମାର୍ଗେ) ଅଭିକ୍ରମନାଶଃ (ଆରମ୍ଭସ୍ୟ, ପ୍ରଯତ୍ନସ୍ୟ ବା ନିଷ୍ଫଳତ୍ୱଂ) ନ ଅସ୍ତି । ପ୍ରତ୍ୟବାୟଃ (ବିଘ୍ନଃ, ଅନିଷ୍ଟଘଟନଂ) [ଚ] ନ ବିଦ୍ୟତେ । [କର୍ମତ୍ୟାଗେ ତୁ ଆଳସ୍ୟାତ୍ ଇନ୍ଦ୍ରିୟଶୈଥିଲ୍ୟାତ୍ ଚ ନିଷ୍ଫଳତ୍ୱଂ ବିଘ୍ନୋ ବା ସମ୍ଭବତୀତି ସୂଚ୍ୟତେ—ଅତଃ ଦେହାବସାନାତ୍ ପୂର୍ବଂ କୃତଂ ] ଅସ୍ୟ ଧର୍ମସ୍ୟ ସ୍ୱଳ୍ପଂ ଅପି [ ପରଜନ୍ମନି ପ୍ରାକ୍ତନସଂସ୍କାରଂ ଉତ୍ପାଦ୍ୟ ଯଥାକାଳଂ ବନ୍ଧନରୂପାତ୍ ] ମହତଃ ଭୟାତ୍ ତ୍ରାୟତେ ( ମୋଚୟତି) [ଯଦ୍ୱା ଅସ୍ୟ ଧର୍ମସ୍ୟ ସ୍ୱଳ୍ପମପି ଆସ୍ୱାଦନମେବ ଶୀଘ୍ରଂ ସୁଖେନ ବିଶ୍ୱକର୍ମଣୋ ବ୍ରହ୍ମଣୋ ବିଷୟେ ତତ୍ପରତ୍ୱଂ ଉତ୍ପାଦୟତି ] । ୪୦ ।

**ଅର୍ଥ**—[ପ୍ରଚଳିତ ସାଂଖ୍ୟମାର୍ଗରେ ରହି କର୍ମ ଛାଡ଼ି ଦେବାଟା ଭଲ ନୁହେ ବୋଲି ଇଙ୍ଗିତ ଦେଇ, ଯୋଗର ପ୍ରଶଂସା କରୁଛନ୍ତି ]—ଏଇ ଯୋଗରେ ଚେଷ୍ଟା ନିଷ୍ଫଳ ହୁଏ ନାହିଁ; ଏଥିରେ ବିଘ୍ନ ନାହିଁ; ଏଇ ଧର୍ମକୁ ଟିକିଏ ହେଲେ ବି [କର୍ମବନ୍ଧନରୂପ] ମହାଭୟରୁ ତ୍ରାଣ କରେ । ୪୦ ।

ବ୍ୟାଖ୍ୟା ସୂଚନା—କର୍ମରେ ଲାଗିରହି ବା ଯୋଗମାର୍ଗରେ ମୋକ୍ଷସାଧନା କଲେ ବିଘ୍ନାଦିର ସମ୍ଭାବନା ନାହିଁ । ଅନ୍ୟଥା କର୍ମ ତ୍ୟାଗରେ ଆଳସ୍ୟ ଓ ଫଳରେ ଇନ୍ଦ୍ରିୟସେବା ଓ ଭଣ୍ଡାମିର ସମ୍ଭାବନା ଅଛି (୫.୩ ଟୀକା ) । ଏଇ ଯୋଗର ସାମାନ୍ୟ ମାତ୍ର ଅଭ୍ୟାସ ପରଜନ୍ମରେ ପୂର୍ବ ସଂସ୍କାର ହେତୁରୁ ଲୋକର ମତି ସେଇ ଆଡ଼କୁ କରାଇ କ୍ରମେ ମୁକ୍ତି ପର୍ଯ୍ୟନ୍ତ ନିଏ (୬.୪୦-୪୬ ଦେଖ) କିମ୍ବା ଏପରି ଅର୍ଥ ମଧ୍ୟ ଏଠାରେ କରାଯାଇ ପାରେ—କର୍ମଯୋଗ କଲାମାତ୍ରେ ବିଶ୍ୱକର୍ମା ଈଶ୍ୱରଙ୍କୁ ସର୍ବତ୍ର ଅନୁଭବ କରି, ଲୋକର ସହଜରେ ପରମାତ୍ମଭାବ ଆସେ । ଅନ୍ୟଥା ଅଜ୍ଞେୟ, ବିଶ୍ୱକର୍ମରୁ ଅତୀତ ବୋଲି ନୀରସ ଭାବରେ ବ୍ରହ୍ମର ଧ୍ୟାନ କରି କର୍ମହୀନର ବ୍ରହ୍ମଭାବକୁ ଯିବା କଷ୍ଟ (୫.୬,୧୮-୬) । ଏସବୁ ପରେ ଭଲ କରି ନାନା ଭାବରେ ନାନା ସନ୍ଦର୍ଭରେ ବୁଝାଇବେ । ଏ ପର୍ଯ୍ୟନ୍ତ 'ଯୋଗ' କଥାଟି ଯେ 'କର୍ମଯୋଗ' ତା ଭଗବାନ କହି ନାହାନ୍ତି । ମାତ୍ର 'ଯୋଗ'· ଶବ୍ଦର ଅର୍ଥ ଯୁକ୍ତ ରହିବା ବା ଲାଗି ରହିବା । ହଠାତ୍ କର୍ମରେ ଲାଗି ରହିବା ଛଡ଼ା ଅନ୍ୟ କିଛି ବୁଝିବା ସମ୍ଭବ ନୁହେ । ପୁଣି ଆତ୍ମାର ଜ୍ଞାନ କଥା କହିଲା ବେଳେ ଭଗବାନ ସ୍ୱଧର୍ମରେ ଲାଗିବା ( ୨. ୩୧ ) ଓ ସୁଖ ଦୁଃଖାଦିର ସମାନ ବିଚାର ସେହି ସ୍ୱଧର୍ମ କରିଯିବା (୨.୩୮) କଥାର ସୂଚନା ଦେଇଛନ୍ତି । ଏଠାରେ ସେହି ଜ୍ଞାନତତ୍ତ୍ୱ ବା ଜ୍ଞାନ ସହିତ କର୍ମ କରିବା କଥାକୁ ଯୋଗ ଦୃଷ୍ଟିରେ କହିବାକୁ ଆରମ୍ଭ କରୁଛନ୍ତି ।

ଏଥିରୁ ଜଣାପଡ଼ୁଛି, ଏଇ ଯୋଗରେ କର୍ମ ଅଡ଼ୁ କଥାଟି ବୁଝାଇବେ । ପୁଣି ମଧ୍ୟ କହିଚନ୍ତି, ଏଇ ଯୋଗ ବୁଦ୍ଧି ଧଇଲେ କର୍ମବନ୍ଧ ତୁଟିଯିବ । ତେବେ କର୍ମରେ ଲାଗିବାକୁ ହେବ ଓ କର୍ମବନ୍ଧ ତୁଟାଇବାକୁ କର୍ମରେ ଲାଗିବାକୁ ହେବ, ଏତିକି ବୁଝାଗଲା । ଅର୍ଜୁନ ହଠାତ୍ ଏଥିରୁ କଣ ବୁଝିବେ ? ପ୍ରଚଳିତ ସାଂଖ୍ୟର ସନ୍ନ୍ୟାସ ମାର୍ଗରେ ତ କଥିତ ଅଛି, ଆଗ ଯାଗ ଯଜ୍ଞ ପ୍ରଭୃତି କର୍ମ କରିବାରେ ଚିତ୍ତଶୁଦ୍ଧି କରି ପରେ କର୍ମବନ୍ଧ ତୁଟାଇବା ପାଇଁ କର୍ମ ଛାଡ଼ିବାକୁ ହେବ । ତେବେ କଣ ଭଗବାନ୍ ଏଇ ବୈଦିକ ଯାଗ ଯଜ୍ଞାଦି କର୍ମରେ ଲାଗିବା କଥା କହୁଚନ୍ତି ? ଏଇପରି କାଳେ ସନ୍ଦେହ ହେବ, ତାହା ନିବାରଣ କରି ଯୋଗ କଥା ବୁଝାଇବାର ବାଟ ସଫା କରିବା ପାଇଁ ବ୍ୟବସାୟାତ୍ମିକା ବୁଦ୍ଧି କଥା ଆରମ୍ଭ କରୁଛନ୍ତି । ୪୦ ।

**ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ ।**
**ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାମ୍ ।୪୧ ।**

**ଅନ୍ୱୟ**—କୁରୁନନ୍ଦନ ! ଇହ ବ୍ୟବସାୟାତ୍ମିକା ବୁଦ୍ଧିଃ ଏକା । ଅବ୍ୟବସାୟିନାଂ ହି ବୁଦ୍ଧୟଃ ବହୁଶାଖା ଅନନ୍ତାଃ ଚ । ୪୧ ।

**ଟୀକା**—[ଅପି ତୁ ଅଟ ଫଳବତ୍ ବୈଦିକକର୍ମାଚରଣଂ, ଯେନ କେନ ପ୍ରକାରେଣ କର୍ମଲଗ୍ନଟେତିବ ବା, ନ ଯୋଗଃ ଇତି ଦର୍ଶୟନ୍ ଆହ ] ହେ କୁରୁନନ୍ଦନ, ଇହ (ଯୋଗବିଷୟେ, କର୍ମାଚରଣେ) ବ୍ୟବସାୟାତ୍ମିକା (କାର୍ଯ୍ୟାକାର୍ଯ୍ୟନିର୍ଣ୍ଣୟକା) ବୁଦ୍ଧିଃ (ବୁଦ୍ଧୀନ୍ଦ୍ରିୟଂ ବୃତ୍ତିର୍ବା) ଏକା (ଏକାଗ୍ରା, ମୋକ୍ଷପରା), [ପରନ୍ତୁ] ଅବ୍ୟବସାୟିନାଂ, (ନାନାଫଳାଶାଗ୍ରସ୍ତାନାଂ, ଅନିଶ୍ଚିତବିଷୟବତାଂ) [ବାସନାତ୍ମିକାଃ] ବୁଦ୍ଧୟଃ [କର୍ମ-ଫଳ ଭେଦେନ] ବହୁଶାଖାଃ (ବହୁମୁଖ୍ୟଃ) [ଯତାଃ ଇତସ୍ତତଃ ଗ୍ଲାନିତା, ଅତଏବ] ଅନନ୍ତାଃ (ଅଗଣିତାଃ) ଚ [ଭବନ୍ତି] । ୪୧ ।

**ଅର୍ଥ**—[ବୈଦିକ ଯାଗାଦି କର୍ମରେ ଲାଗିବା, ବା ଯେଚ୍ଛା ସିମିତ ଖାଲି କର୍ମରେ ଲାଗି ରହିବା ଯୋଗ ନୁହେ ବୋଲି ଦେଖାଇ କହୁଚନ୍ତି] ହେ କୁରୁନନ୍ଦନ, ଏଇ କର୍ମ ଯୋଗରେ ବ୍ୟବସାୟାତ୍ମିକା (ଅର୍ଥାତ୍ କାର୍ଯ୍ୟ ଅକାର୍ଯ୍ୟ ବୁଝି ଠିକ୍ କରିବା) ବୁଦ୍ଧି (ବା ବିବେଚନାର ଇନ୍ଦ୍ରିୟ) ଗୋଟିଏ, (ଅର୍ଥାତ୍ ସେଇ ବୁଦ୍ଧିଟି କେବଳ ମୋକ୍ଷସାଧନୀ ) । [କିନ୍ତୁ ଏପରି ଠିକ୍ ଗୋଟିଏ ଆଡ଼େ ବୁଦ୍ଧିକୁ ଦୃଢ଼ ନ କରିଥିବା ] ଚଂଚଳମତି ଲୋକଙ୍କର ବାସନା ବୁଦ୍ଧିସବୁ ପ୍ରକାରକୁ ପ୍ରକାର ହୋଇ ବହୁତ ଆଡ଼େ ଧାଏଁ । ସେସବୁର ଅନ୍ତ ନାହିଁ । (ଅର୍ଥାତ୍ ପ୍ରତି କର୍ମର ଭିନ୍ନ ଭିନ୍ନ ଫଳ ପଛେ ସେ ବୁଦ୍ଧି ଧାଇଁଥାଏ ) । ୪୧ ।

ବ୍ୟାଖ୍ୟା ସୂଚନା—ବ୍ୟବସାୟ=ନିଶ୍ଚିତରେ ଲାଗି ରହିବା । ମୁକ୍ତିକୁ ବା ଆତ୍ମଜ୍ଞାନକୁ ଅଥବା ପରମେଶ୍ୱରଙ୍କୁ ନିଷ୍ଠୟ କରି ଧରି କର୍ମ ବିବେଚନା କଲେ, ସବୁ କର୍ମରେ ଏକ ବିବେଚନା ଓ ଏକ ଲକ୍ଷ୍ୟ । ସେଥିରେ ବିବେଚନା ଗୋଟିଏ । ତାକୁହିଁ ବ୍ୟବସାୟାତ୍ମିକା ବା ଲାଗି ରହିବା ବୁଦ୍ଧି କହନ୍ତି । ଫଳ ଘେନି କର୍ମ କରି ବସିଲେ ପ୍ରତି କର୍ମରେ ଫଳ ଦୃଷ୍ଟିରେ ବିବେଚନା ଭିନ୍ନ ଭିନ୍ନ ହୁଏ । ଏଇ ବୁଦ୍ଧିକୁ ବାସନାତ୍ମିକା ବୁଦ୍ଧି ବା ବାସନା କହନ୍ତି । ବାସନା ଗୋଟିଏ ନୁହେଁ । ତେଣୁ କର୍ମର ବିବେଚନା ବାସନା ଘେନି ପ୍ରକାରକୁ ପ୍ରକାର ହୁଏ । —"ବୁଦ୍ଧି ଯେବେ ଗୋଟିକରୁ ଫିଟି ଅନେକ ହୁଏ, ତେବେ ସେ ଆଉ ବୁଦ୍ଧି ନ ରହି ବାସନା ରୂପ ଧରେ । ଏଣୁ ଏଠାରେ ବୁଦ୍ଧି ସବୁ (ବୁଦ୍ଧୟଃ) ବୋଇଲେ ବାସନା"—ମହାତ୍ମା ଗାନ୍ଧୀ । ଏଇ "ବ୍ୟବସାୟାତ୍ମିକା ବୁଦ୍ଧି" ଧରି କର୍ମ କରିବାର ଅଛି । ସବୁ କର୍ମ ମଧ୍ୟରେ ଆତ୍ମଜ୍ଞାନର ଧାରଣା ଠିକ୍ ଥିଲେ, ଅର୍ଥାତ୍ ବ୍ରହ୍ମ ସହିତ ଲୋକ (ଜୀବ) ସମାଧିରେ ଥିଲେ, ଏଇ ବୁଦ୍ଧି ଠିକ୍ ଥାଏ । ଯେଉଁ କର୍ମରେ ଫଳର ଅପେକ୍ଷା ଥାଏ, ସେପରି କର୍ମରେ ଲାଗିଲେ, ଏ ବୁଦ୍ଧି ହୁଏ ନାଇ । ସେପରି କର୍ମରେ ଲାଗିବାଟା 'ଯୋଗ' ନୁହେ । ବୈଦିକ ଯାଗ ଯଜ୍ଞାଦି କର୍ମ, ଫଳ ପାଇଁ କରାହୁଏ । ତେଣୁ ବୈଦିକ ଯାଗାଦି କର୍ମରେ ଲାଗିବା, ଏ 'ଯୋଗ'ର ଅଭିପ୍ରାୟ ହୋଇ ନ ପାରେ । ପର ଶ୍ଳୋକ ଦେଖ । ୪୧ ।

**ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟବିପଶ୍ଚିତଃ**
**ବେଦବାଦରତାଃ ପାର୍ଥ ନାନ୍ୟଦସ୍ତୀତି ବାଦିନଃ । ୪୨ ।**
**କାମାତ୍ମାନଃ ସ୍ୱର୍ଗପରା ଜନ୍ମକର୍ମଫଳପ୍ରଦାମ୍**
**କ୍ରିୟାବିଶେଷବହୁଳାଂ ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି । ୪୩ ।**
**ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ ତୟାପହୃତଚେତସାମ୍**
**ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ । ୪୪ ।**

**ଅନ୍ୱୟ**—ପାର୍ଥ ! ଅନ୍ୟତ୍ ନ ଅସ୍ତି ଇତି ବାଦିନଃ କାମାତ୍ମାନଃ ସ୍ୱର୍ଗପରାଃ ବେଦବାଦରତାଃ ଅବିପଶ୍ଚିତଃ ଜନ୍ମକର୍ମଫଳପ୍ରଦାଂ ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି କ୍ରିୟାବିଶେଷବହୁଳାଂ ଇମାଂ ଯାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତି, ତୟା ଅପହୃତଚେତସାଂ ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ [ତେଷାଂ] ସମାଧୌ ବ୍ୟବସାୟାତ୍ମିକା ବୁଦ୍ଧିଃ ନ ବିଧୀୟତେ । ୪୨-୪୪ ।

**ଟୀକା**—[ଯଜ୍ଞାଦି ବେଦକର୍ମସୁ ଯୋଗଃ, ଇହ ଯୋଗ ଇତି ନ ମନ୍ତବ୍ୟମ୍ । ଯତଃ କର୍ମକାଣ୍ଡରତାଃ ସ୍ୱର୍ଗାଦିଫଳପରାଃ କର୍ମିଣଃ ଅବ୍ୟବସାୟିନଃ । ନ ତେଷୁ ବେଦକର୍ମସୁ ସମାଧିକାରିକା ବୁଦ୍ଧିଃ ସମ୍ଭବତି ଇତ୍ୟାହ ]—ପାର୍ଥ, ବେଦବାଦରତାଃ

(ବେଦୋକ୍ତ ଯାଗାଦନାନାକ୍ରିୟାସ୍ୱାସକ୍ତାଃ—ବୈଦଶବ୍ଦେନାତ୍ର ବେଦସ୍ୟ କର୍ମକାଣ୍ଡ-ମାତ୍ରମେବ ଗୃହ୍ୟତେ, ନ ତୁ ଜ୍ଞାନକାଣ୍ଡଃ ବେଦାନ୍ତୋ ବା ) [ ଅସ୍ମାତ୍ ବେଦକର୍ମଣଃ ] ଅନ୍ୟତ୍ [କିଂଚତ୍ ଧର୍ମକର୍ତ୍ତୃବ୍ୟାଦକଂ] ନ ଅସ୍ତି—ଇତ ବାଦନଃ କାମାତ୍ମାନଃ (କାମନାବନ୍ତଃ) ସ୍ୱର୍ଗପରାଃ (ସ୍ୱର୍ଗଏବ ପରଃ ଶ୍ରେଷ୍ଠ ଗତଃ ଯେଷାମ୍ ଇତ ସ୍ୱର୍ଗଭୋଗ କାମିନଃ) ଅବପଶ୍ଚିତଃ (ଅସମ୍ୟଗ୍ ଦର୍ଶିନଃ, ମୂଢ଼ାଃ) ଜନ୍ମକର୍ମଫଳପ୍ରଦାଂ (କର୍ମାନୁରୂପ ଜନ୍ମନଃ, ତଥା ଇହୈବ କର୍ମଫଳସ୍ୟ ଦାୟିନୀଂ) ଭୋଗୈଶ୍ୱର୍ଯ୍ୟଗତଂ (ଭୋଗବୈଭବ-ଲକ୍ଷ୍ୟଂ) ପ୍ରତ (ସାଧୟିତୁଂ) କ୍ରିୟାବଶେଷବହୁଳାଂ (ତତ୍ତତ୍‌କ୍ରିୟାପୂର୍ଣ୍ଣାଂ) ଯାଂ [ବହୁ-ବୈଦକେଭ୍ୟଃ ସର୍ବଦା ଶ୍ରୁତାଂ] ଇମାଂ ପୁଷ୍ପିତାଂ (ସୁଦକ୍ଷିତାଂ, ମନୋହାରିଣୀଂ) ବାଚଂ ପ୍ରବଦନ୍ତି, ତୟା [ବାଚା] ଅପହୃତଚେତସାଂ ଅଭିଭୂତଚିତ୍ତାନାଂ) [ଅତଏବ] ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ (ଭୋଗୈଶ୍ୱର୍ଯ୍ୟେଷ୍ୱଭିନିବିଷ୍ଟାନାଂ ) [ତେଷାଂ ଅବପଶ୍ଚିତାଂ ], ସମାଧୌ (ଚତ୍ତୈକାଗ୍ରତାୟାଂ ମୋକ୍ଷେ ପରଂବ୍ରହ୍ମଣି ବା ଆତ୍ମୈକତ୍ୱଂ, ଫଳାଫଳ ସମତ୍ୱେ ସ୍ଥିତବା ସମାଧିଃ ତସ୍ମିନ୍ ) ବ୍ୟବସାୟାତ୍ମିକା (ନିଶ୍ଚିତା) ବୁଦ୍ଧିଃ ନ ବିଧୀୟତେ (ଉତ୍ପଦ୍ୟତେ, କ୍ରିୟତେ) ୪୨-୪୪ ।

**ଅର୍ଥ**— [ଯଜ୍ଞ ପ୍ରଭୃତ ବେଦ କର୍ମରେ ଲାଗିବା ଠାରୁ ଏ ଯୋଗ ବୋଲି ବୁଝିବାର ନୁହେ । ସ୍ୱର୍ଗାଦ ନାନାପ୍ରକାର ଫଳ ଲାଗି ବେଦରେ କର୍ମକାଣ୍ଡରେ ମାତବା ଲୋକଙ୍କର ମୁକ୍ତି ପାଇଁ ଏକାଗ୍ରତା ହୁଏ ନାଇ ବୋଲି କହୁଚନ୍ତି ]—ହେ ପାର୍ଥ, ବେଦର କର୍ମକାଣ୍ଡ ବଧିବଧାନରେ ମାତ, ଏଇ କର୍ମକାଣ୍ଡ ବଧି ଛଡ଼ା ଆଉ କିଛି ଧର୍ମ ନାଇ ବୋଲି ଘୋଷଣା କରି, ଫଳ କାମନାରେ ଭଲ ସ୍ୱର୍ଗ ହିଁ ସବୁ ବୋଲି ସେଇ ସ୍ୱର୍ଗଗତ ଲୋଡ଼ୁଥିବା ଅଜ୍ଞାନୀମାନେ, କର୍ମ ଅନୁସାରେ ମିଳିବା ଜନ୍ମମାନ ଓ ଇହ ଜନ୍ମରେ କର୍ମର ଫଳ ହେବା ଭଳି ଭୋଗବିଭବ ଲକ୍ଷ୍ୟ ସାଧିବାକୁ, ସେଇ ସେଇ ଭଳି କ୍ରିୟାକାଣ୍ଡଭରା, ଏଇ ଯେଉଁ ମନଭୁଲାଣିଆ କଥା କହନ୍ତି ସେଇ କଥାରେ ଭୁଲି, ସେଇ ଭୋଗବିଭବ ପାଇଁ ମାତିଥିବା ଲୋକଙ୍କର ସମାଧିରେ ବ୍ୟବସାୟାତ୍ମିକା ବୁଦ୍ଧି ହୁଏ ନାଇ । (କିମ୍ବା ତାଙ୍କ କର୍ମର ବ୍ୟବସାୟରେ ଲାଗିଥିବା ବୁଦ୍ଧି ସମାଧିର ବଶ ନାଇ) । ୪୨-୪୪

ବ୍ୟାଖ୍ୟା ସୂଚନା—ବେଦବାଦ=ବେଦର ଅର୍ଥବାଦ; ବେଦ ଏଠାରେ ବେଦର କର୍ମକାଣ୍ଡ ଭାଗ । ଏହାର ଅର୍ଥବାଦ, ଅର୍ଥାତ୍ ବିଧି ନିଷେଧାଦର ପ୍ରଶଂସା ମୂଳକ ବ୍ୟାଖ୍ୟା ଏହାକୁ ଏଇ ଶ୍ଳୋକରେ 'ପୁଷ୍ପିତଂ ବାଚଂ' ବୋଲି କହିଛନ୍ତି । ଜୈମିନିଙ୍କ ପୂର୍ବ ମୀମାଂସାଦର୍ଶନରେ ଏଇ ବିଧି ନିଷେଧାଦର ପ୍ରଶଂସାମୂଳକବ୍ୟାଖ୍ୟା ଏବେ ବିଶଦ୍ ଭାବରେ ଦେଖିବାକୁ ମିଳେ । ମୂଳବେଦର 'ବ୍ରାହ୍ମଣ' ଭାଗରେ ଏଇ ଯାଗାଦ କ୍ରିୟାକାଣ୍ଡର ଉପଦେଶ ଓ ବିଧିମାନ ଅଛି । ଏଇ ଭାଗକୁ କର୍ମକାଣ୍ଡ କହନ୍ତି । ଏଇ 'ବ୍ରାହ୍ମଣ'ର ଅଂଶ ସ୍ୱରୂପ ଶେଷକୁ ଆଉ ଏକ ଭାଗ ଜ୍ଞାନକାଣ୍ଡ । ତାକୁ 'ଉପନିଷଦ' କହନ୍ତି । ଏଇ ଉପ-ନିଷଦ୍ ହିଁ ବେଦାନ୍ତ ବା-ବେଦର ତତ୍ତ୍ୱ-ସମ୍ବନ୍ଧୀୟ ସିଦ୍ଧାନ୍ତ । ଯେଉଁ ମୂଳ ବେଦରୁ ଏ

ଦୁଇଟି ପ୍ରକାର ବ୍ୟାଖ୍ୟାର ଭାଗ ବାହାରିଛି, ତାକୁ ମନ୍ତ୍ରଭାଗ ବା 'ସଂହିତା' କହନ୍ତି। ସଂହିତାର ଅର୍ଥବାଦ ହିଁ 'ବ୍ରାହ୍ମଣ'; ଏହି ଅର୍ଥବାଦ ପରେ ତତ୍ତ୍ୱବାଦ, 'ଉପନିଷଦ୍' ବା ବେଦାନ୍ତ।

ସମାଧି = ସମ, ଏକରୂପ + ଆଧି, ସ୍ଥିତି; ମୋକ୍ଷ ବା ପରମାତ୍ମାରେ ଏକାଗ୍ର ହୋଇ ମିଶି ରହିବା; କିମ୍ବା ଫଳାଫଳରେ ଏକାପରି ରହିବା। ଐଶ୍ୱର୍ଯ୍ୟ = ବିଭବ, ଈଶ୍ୱରଭାବ ବା ବିଭୁଭାବ, ମାଲିକପଣିଆ, ଦାସ, ଦାସୀ ଓ ପ୍ରଜା ପ୍ରଭୃତିଙ୍କ ଉପରେ ପ୍ରଭୁ ହେବା। ଏଠାରେ ଭଗବାନ୍ ଯଜ୍ଞାଦି କ୍ରିୟାକାଣ୍ଡର ନିନ୍ଦା କରି କହୁଛନ୍ତି। ପରେ ତୃତୀୟ ଓ ଚତୁର୍ଥ ଅଧ୍ୟାୟରେ ଯଥାର୍ଥ ଯଜ୍ଞ ଓ ଯଜ୍ଞାର୍ଥ କର୍ମ କଣ, ତା ବୁଝାଇବେ (୩.୯ ଟୀକା; ୪.୨୩-୩୨ ଦେଖ)। ପୁଣି ୧୭ଶ ଓ ୧୮ଶ ଅଧ୍ୟାୟରେ ଯଜ୍ଞ, ଦାନ, ତପ, ନିତ୍ୟକର୍ମ ଓ ଚିତ୍ତଶୁଦ୍ଧିକର ବୋଲି ମଧ୍ୟ କହିବେ (୧୮.୫ ଓ ଟୀକା ଦେଖ)। ସେସବୁରେ ଯଜ୍ଞର ଯେଉଁ ଅର୍ଥ ଓ ବ୍ୟାଖ୍ୟା ଦିଆଯାଇଛି, ତାହାହିଁ ଯଥାର୍ଥ ଯଜ୍ଞ। ବିଜ୍ଞ ବ୍ରାହ୍ମଣ ବା ବେଦର ମର୍ମ ଜାଣିଥିବା ଲୋକ ସେହି ଅର୍ଥରେ ଯଜ୍ଞକୁ ବୁଝେ (୨. ୪୬ ଦେଖ)। କର୍ମକାଣ୍ଡର ଅର୍ଥବାଦରେ ମାତିବା, ଯଥାର୍ଥ ବେଦ ଜାଣିବା ନୁହେଁ (୧୫.୧ ରେ "ବେଦବିତ୍" ଦେଖ)। ୪୨-୪୪।

**ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜ୍ଜୁନ।**
**ନିର୍ଦ୍ୱନ୍ଦ୍ୱୋ ନିତ୍ୟସତ୍ତ୍ୱସ୍ଥୋ ନିର୍ଯୋଗକ୍ଷେମ ଆତ୍ମବାନ୍ ॥୪୫॥**

**ଅନ୍ୱୟ**—ଅର୍ଜ୍ଜୁନ ! ବେଦାଃ ତ୍ରୈଗୁଣ୍ୟବିଷୟାଃ, ନିସ୍ତ୍ରୈଗୁଣ୍ୟଃ, ନିର୍ଦ୍ୱନ୍ଦ୍ୱଃ, ନିତ୍ୟସତ୍ତ୍ୱସ୍ଥଃ, ନିର୍ଯୋଗକ୍ଷେମଃ, ଆତ୍ମବାନ୍ ଭବ। ୪୫।

**ଟୀକା**—[କର୍ମକାଣ୍ଡସ୍ୟ ପ୍ରକୃତିଂ ନିରୂପୟନ୍, ସର୍ବକର୍ମଣି ମୋକ୍ଷସାଧନାଂ ସ୍ଥିତିଂ ଉପଦିଶତି]—ହେ ଅର୍ଜ୍ଜୁନ, ବେଦାଃ (କର୍ମକାଣ୍ଡାନି) [ଫଳାୟ ନିଯୁଜ୍ୟନ୍ତେ, ଅତଏବ ତେ] ତ୍ରୈଗୁଣ୍ୟବିଷୟାଃ (ସତ୍ତ୍ୱରଜସ୍ତମାଂସି ତ୍ରିଗୁଣାଃ, ତ୍ରିଗୁଣା ଏବ ତ୍ରୈଗୁଣ୍ୟଂ—ତତ୍ତୁ ମାୟାୟାଃ ଅଜ୍ଞାନସ୍ୟ ଚ ହେତୁଃ ତଦଧୀନତ୍ୱାତ୍। ତସ୍ୟ ତ୍ରୈଗୁଣ୍ୟସ୍ୟ ବିଷୟାଃ ଅଧିକାରଭୂମୟଃ—ଯଜ୍ଞାଦିକର୍ମାଣି ମାୟାଧିକାରବର୍ତ୍ତୀନୀତି ଭାବଃ। ତ୍ରୈଗୁଣ୍ୟଂ, ସଂସାରଃ, ବିଷୟଃ, ପ୍ରକାଶୟିତବ୍ୟ, ଯେଷାଂ ତେ, ସଂସାରପ୍ରତିପାଦକା ଇତି ଶଙ୍କରଃ) [ଭବନ୍ତି]। [ତ୍ୱଂ] ନିସ୍ତ୍ରୈଗୁଣ୍ୟଃ (ତ୍ରିଗୁଣାତୀତଃ ମାୟାତୀତଃ, ନିଷ୍କାମଃ) ଭବ (ଭବିତୁଂ ଯତସ୍ୱ ଇତି ଅଭିପ୍ରାୟଃ)। [କୋଽସୌ ଉପାୟ ଇତି ସ୍ପଷ୍ଟଂ କଥୟତି]—ନିର୍ଦ୍ୱନ୍ଦ୍ୱଃ (ନାସ୍ତି ଦ୍ୱନ୍ଦ୍ୱଂ, ସୁଖଦୁଃଖୟୋର୍ହେତୁଭୂତଂ ଶୀତୋଷ୍ଣାଦିବତ୍ ପରସ୍ପରବିରୋଧାତ୍ମକଂ ଦ୍ୱୟଂ, ଯୁଗ୍ମଂ, ଯସ୍ୟ ସଃ—ସୁଖଦୁଃଖାଦିରହିତଃ) ନିତ୍ୟସତ୍ତ୍ୱସ୍ଥଃ (ନିତ୍ୟଂ, ନିଷ୍ଠାତଃ, ସତ୍ତ୍ୱଗୁଣେ ସ୍ଥିତଃ), ନିର୍ଯୋଗକ୍ଷେମଃ

(ଅପ୍ରାପ୍ତସ୍ୟ ଆଦାନଂ ଯୋଗଃ ପ୍ରାପ୍ତସ୍ୟ ପରିପାଳନଂ ରକ୍ଷଣଂ ବା କ୍ଷେମଃ—ତାଭ୍ୟାଂ ରହିତଃ) ଆତ୍ମବାନ୍ (ଅପ୍ରମତ୍ତଃ, ଭ୍ରାନ୍ତିଶୂନ୍ୟଃ—ବ୍ରହ୍ମନିଷ୍ଠୋ ବା) [ଭବ] । ୪୫ ।

**ଅର୍ଥ**—[କର୍ମକାଣ୍ଡ ଯଥାର୍ଥରେ କି ଜିନିଷ ତା ପୁଣି ଅଳ୍ପରେ କହିଦେଇ, କର୍ମରେ ପ୍ରକୃତ ମୋକ୍ଷସାଧନ କିପରି ହେବ ତା ବତାଉଛନ୍ତି]—ବେଦର କର୍ମକାଣ୍ଡଯାକ, ସତ୍ତ୍ୱ, ରଜ, ତମ ଏହି ତିନି ଗୁଣ ବା ମାୟାକୁ ଧରି ଆଆନ୍ତି । (ଅର୍ଥାତ୍ ସେ ସବୁ ମାୟା ବା ଅଜ୍ଞାନର ଲୀଳା; ସେଥିରେ ସଂସାର ବନ୍ଧନ ତୁଟି ନ ପାରେ) । ତୁ ମାୟା ତୁଟାଇ ଉପରକୁ ଉଠିବାରେ ଲଗ । [ମାୟା ତୁଟାଇ ଉଠି ତ୍ରିଗୁଣାତୀତ ହେବାର ପନ୍ଥା କଣ ତା ଦେଖାଇ କହୁଛନ୍ତି] —ସୁଖଦୁଃଖ ପ୍ରଭୃତି ଦ୍ୱନ୍ଦ୍ୱରେ ଏ ପାଖ ସେ ପାଖ ହେବା ଛାଡ଼ି ନିର୍ଦ୍ୱନ୍ଦ୍ୱ ହୋ । ସର୍ବଦା ସବୁ କର୍ମରେ ଶୁଦ୍ଧ ନିର୍ମଳ ଭାବ ଧରି ସତ୍ତ୍ୱଗୁଣରେ ରହ । ସ୍ୱାର୍ଥବୁଦ୍ଧି ଛାଡ଼ି, ପାଇବା ସମ୍ଭାଳିବା ପାଇଁ ବ୍ୟାକୁଳ ହେବା ତୁଟା । ନିଜକୁ ଠିକ୍ ରଖ୍ (ଅର୍ଥାତ୍, କାହିଁରେ ଭୋଳା ହୋ ନା, କି ବଢ଼ାଇ କର ନା— ଆତ୍ମା ବା ବ୍ରହ୍ମରେ ବୁଦ୍ଧି ଠିକ୍ ରଖ୍) । ୪୫ ।

ବ୍ୟାଖ୍ୟା ସୂଚନା—ତ୍ରୈଗୁଣ୍ୟ=ସତ୍ତ୍ୱ, ରଜ, ତମ ଏଇ ତିନି ଗୁଣମୟୀ ମାୟା—୭.୪· ୧୪.୫ । ମନୁଷ୍ୟର ଆତ୍ମଜ୍ଞାନ ଘୋଡ଼ାଇ ବା ମନୁଷ୍ୟକୁ ମୋହି କରି ଏଇ ମାୟାର କର୍ମ ଚାଲିଛି । ଏହାହିଁ ଜଗତର କର୍ମ; ଏହାହିଁ ନିତ୍ୟ ପରିବର୍ତ୍ତନମୟ ସୋର (୮.୩) । କର୍ମର ଫଳରୂପେ ଜଗତର ସବୁ ସୋଗ, ବ୍ୟବହାର ଏହି ତ୍ରୈଗୁଣ୍ୟର ଅନ୍ତର୍ଗତ । କର୍ମର ଫଳ ଲୋଡ଼ିବସିଲେ ଏହି ତ୍ରୈଗୁଣ୍ୟରେ ରହିବାକୁ ହୁଏ । ଏହି ତ୍ରୈଗୁଣ୍ୟହିଁ ସଂସାର ବା ଜନ୍ମ ଓ ବିକାର ବନ୍ଧ । ନିସ୍ତ୍ରୈଗୁଣ୍ୟ ବା ତ୍ରିଗୁଣାତୀତ ହେବା; ମୋକ୍ଷ ।—୧୪, ୨୦-୨୭; ୧୮.୭୧ ଦେଖ । ଦ୍ୱନ୍ଦ୍ୱ=ଯୁଗ୍ମ ବା ଯୋଡ଼ି; ସୁଖ ଦୁଃଖ ହେଉଛି ଦ୍ୱନ୍ଦ୍ୱ; ଶୀତ-ଉଷ୍ଣ, ଲାଭ-କ୍ଷତି, ଜୟ-ପରାଜୟ, ହର୍ଷ-ଶୋକ, ରାଗ ଦ୍ୱେଷ ପ୍ରଭୃତି ସୁଖ ଦୁଃଖ ପରି ଗୋଟିଏ ଗୋଟିଏ ଦ୍ୱନ୍ଦ୍ୱ । ଏମାନେ ସୁଖ ଦୁଃଖ ଦିଅନ୍ତି । କର୍ମୀ ବା କର୍ମଯୋଗୀ ଏଇ ଦ୍ୱନ୍ଦ୍ୱ ବା ଦ୍ୱନ୍ଦ୍ୱମାନ ଛାଡ଼ିଲେ, ଅର୍ଥାତ୍ ସୁଖ ଦୁଃଖ ପ୍ରଭୃତିରେ ସମାନ, ବା ଏ ପାଖ ସେ ପାଖ ନ ହୋଇ, ସୁଖାବରେ ଯେପରି ଦୁଃଖାବରେ ସେହିପରି ରହିଲେ, 'ନିର୍ଦ୍ୱନ୍ଦ୍ୱ' ହୁଏ । ଏହି ନିର୍ଦ୍ୱନ୍ଦ୍ୱ ହେବାହିଁ ସଂସାର ବନ୍ଧରୁ ମୁକ୍ତି ପାଇବାର ପନ୍ଥା (୫.୩) । ସର୍ବଦା ସତ୍ତ୍ୱରେ ରହ; କାହିଁକି ନା, ସତ୍ତ୍ୱରେ ସ୍ଥିର ନିଷ୍ଠା କଲେ ଲୋକ ସହଜରେ ଗୁଣାତୀତ ହୋଇ ମୁକ୍ତିକୁ ଉଠେ—୧୪.୧୮ । ଏଠାରେ ଯୋଗ=ନିଜର ନ ଥିବା ଜିନିଷ ପାଇବା; କ୍ଷେମ=ଜିନିଷ ପାଇ, ତାକୁ ସମ୍ଭାଳିବା । ଏହି ଯୋଗ, କ୍ଷେମ, ସ୍ୱାର୍ଥବୁଦ୍ଧିର ଶ୍ରେଷ୍ଠ ଲକ୍ଷଣ । ନିର୍ଦ୍ୱନ୍ଦ୍ୱ ହୋଇ ଈଶ୍ୱର-ସମାଧିରେ ରହିଲେ, ଏହି ଯୋଗ, କ୍ଷେମ ପାଇଁ ଚିନ୍ତା ରହେ ନାହିଁ— ୯.୨୨ । ଏହି ଶ୍ଳୋକରେ ଯାହା କୁହାଗଲା ତାହାହିଁ ବେଦର ଯଥାର୍ଥ ମର୍ମ—କର୍ମକାଣ୍ଡର ବିଧି ପରି କର୍ମ କରିବା ନୁହେଁ । ସେହି ଯଥାର୍ଥ ବେଦକର୍ମ ଜାଣିବା ଲୋକର କଥା ପର ଶ୍ଳୋକରେ କହୁଚନ୍ତି । ୪୫ ।

**ଯାବାନର୍ଥ ଉଦପାନେ ସର୍ବତଃ ସଂପ୍ଲୁତୋଦକେ ।**
**ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ । ୪୬ ।**

**ଅନ୍ୱୟ**—ସର୍ବତଃ ସମ୍ପ୍ଲୁତୋଦକେ [ସତି] ଉଦପାନେ ଯାବାନର୍ଥଃ, ବିଜାନତଃ ବ୍ରାହ୍ମଣସ୍ୟ ସର୍ବେଷୁ ବେଦେଷୁ ତାବାନର୍ଥଃ । ୪୬ ।

**ଟୀକା**—[ଯଥା]—ସର୍ବତଃ ସମ୍ପ୍ଲୁତୋଦକେ (ବନ୍ୟାଜଳେ) [ବ୍ୟାପ୍ତେ ସତି; ମାନବସ୍ୟ] ଉଦପାନେ (ଉଦକପାନାର୍ଥଂ ନିର୍ମିତେ କୂପତଡ଼ାଗାଦି କ୍ଷୁଦ୍ର ଜଳାଶୟେ) ଯାବାନ୍ (ଯତ୍ପରିମିତଃ) ଅର୍ଥଃ (ପ୍ରୟୋଜନଂ) [ବର୍ତ୍ତତେ], ବିଜାନତଃ (ବିବୋଧତଃ) ବ୍ରାହ୍ମଣସ୍ୟ (ବେଦଜ୍ଞସ୍ୟ—ତଥାପି ବେଦଜ୍ଞସ୍ୟ, ବ୍ୟବସାୟାତ୍ମିକୟା ବୁଦ୍ଧ୍ୟା ଯୁକ୍ତସ୍ୟ ବ୍ରହ୍ମନିଷ୍ଠସ୍ୟ ଇତି ଭାବଃ) ସର୍ବେଷୁ ବେଦେଷୁ (କର୍ମକାଣ୍ଡେଷୁ) ତାବାନ୍(ତତ୍ପରିମିତଃ) [ଏବ ଅର୍ଥଃ ବର୍ତ୍ତତେ] (ନ କୋଽପ୍ୟର୍ଥ ଇତି ଭାବଃ) । ୪୬ ।

**ଅର୍ଥ**—[କାହିଁକି ନା] ସବୁଆଡ଼େ ବଢ଼ିପାଣି ବ୍ୟାପିଗଲେ ଲୋକର ଗଡ଼ିଆରେ ଯେତିକି କାମ, ବେଦର ମର୍ମ ଠିକଣା କରି ଜାଣିଥିବା ଲୋକର (ଅତଏବ ବୁଦ୍ଧି ଠିକ୍ ରଖି, ବ୍ରହ୍ମରେ ନିଷ୍ଠା କରିଥିବା ଲୋକର) ବେଦର କର୍ମକାଣ୍ଡ ଯାକରେ ସେତିକି କାମ । (ଅର୍ଥାତ୍ ବଢ଼ିବେଳେ ଗଡ଼ିଆ ମୋଟେ ଲୋଡ଼ା ନ ହେଲା ପରି, ବେଦକୁ ଠିକ୍ ବୁଝିଥିବା ଲୋକର କର୍ମକାଣ୍ଡରେ କିଛି ମାତ୍ର ଲୋଡ଼ା ନାଇ) । ୪୬ ।

ବ୍ୟାଖ୍ୟା ସୂଚନା—ବେଦର କର୍ମସବୁ ଲୋଡ଼ା ନାଇ; କାହିଁକି ? ସେସବୁ ଫଳପାଇଁ କରାଯାଏ ବୋଲି । ସବୁ କର୍ମରେ ତ ଫଳର ଅପେକ୍ଷା ଥାଏ । ତେଣୁ ନିସ୍ତ୍ରୈଗୁଣ୍ୟ ଓ ନିର୍ଦ୍ୱନ୍ଦ୍ୱ ହୋଇ କର୍ମ କରିବା କଥା ପୁଣି ଏବେ ଭଲ କରି ବୁଝାଇ କହିବେ । ୪୬ ।

**କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।**
**ମା କର୍ମଫଳହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି । ୪୭ ।**

**ଅନ୍ୱୟ**—କର୍ମଣି ଏବ ତେ ଅଧିକାରଃ, ଫଳେଷୁ କଦାଚନ ମା । କର୍ମଫଳହେତୁଃ ମା ଭୂଃ । ଅକର୍ମଣି ତେ ସଙ୍ଗଃ ମା [ଅସ୍ତୁ] । ୪୭ ।

**ଟୀକା**—[କର୍ମ ନ ତ୍ୟାଜ୍ୟଂ ଫଳାଶା ତ୍ୟାଜ୍ୟାଏବ—ଇତ୍ୟାହ] କର୍ମଣି ଏବ ତେ (ତବ) ଅଧିକାରଃ [ବର୍ତ୍ତତେ] । [କର୍ମ-] ଫଳେଷୁ କଦାଚନ (କସ୍ୟାଂଚିଦବସ୍ଥାୟାଂ) ମା (ନ) [ତବ ଅଧିକାରଃ] । (କର୍ମୈବ ତ୍ୱଦଧୀନଂ, ନ ତୁ ତତ୍ଫଳମ୍ । ପୁରୁଷଃ ସ୍ୱେଚ୍ଛୟା କର୍ମ କର୍ତ୍ତୁଂ ଶକ୍ନୋତି, ନ ତୁ ତସ୍ୟ କର୍ମଣଃ

ଫଳମାଦାତୁମିଚ୍ଛ ଭବଃ ) । [ଅତଏବ ] କର୍ମଫଳହେତୁଃ ( କର୍ମଫଳଂ ପ୍ରବୃତ୍ତିହେତୁ ର୍ଯସ୍ୟ ସଃ, ତଥାଭୂତଃ, ଫଳାପ୍ତ କର୍ମଣି ପ୍ରେବଭଃ କର୍ମଣଃ ଫଳଂ ଆପ୍ସ୍ୟାମି ଇତି କର୍ମଣାଗ୍ଲାନତଃ ) ମା ଭୂଃ (ନ ଭବ )। [ଅପି ଚ ] ତେ (ତବ)ଅକର୍ମଣି (କର୍ମାକରଣେ ଆଲସ୍ୟେ ବା) ସଂଗଃ (ପ୍ରୀତିଃ) ମା (ନ) ଅସ୍ତୁ (ଭବତୁ) । ୪୭ ।

**ଅର୍ଥ**—[ହେଲେହେଁ ଫଳ ଆଶା ବା ଫଳ ସଙ୍ଗେ ସମ୍ପର୍କ ଛାଡ଼ିବାକୁ ହୁଏ; କର୍ମ ଛାଡ଼ିବାକୁ ହୁଏ ନାହିଁ—ଏହା କହୁଅଛନ୍ତି] କର୍ମରେ ଏକା ତୋର ବଳ ଅଛି, ଫଳରେ କଦାପି ନାହିଁ, (ଅର୍ଥାତ, କର୍ମ କରିବା ହିଁ ତୋର ହାତରେ ଅଛି, କର୍ମର ଫଳ ପାଇବାଟା ତୋ ହାତରେ ନାହିଁ) । କର୍ମର ଫଳ ପାଇଁ କର୍ମରେ ପ୍ରବର୍ତ୍ତନା, [କିମ୍ବା ସେଥିଲାଗି] କର୍ମ ନ କରିବାରେ (ଅର୍ଥାତ୍ କର୍ମରୁ ମୋତେ କ'ଣ ମିଳିବ ? ବୋଲି, ଅଳସୁଆ ହୋଇ କର୍ମ ନ କରି ବସି ରହିବାରେ) ତୋର ସଉକ୍ ନ ହେଉ । ୪୭ ।

ବ୍ୟାଖ୍ୟା ସୂଚନା—ସଂଗ=ସମ୍ପର୍କ, ଆସକ୍ତି, ଅନୁରାଗ, ସଉକ୍ (ପରଶ୍ଳୋକ ଟୀକା ଦେଖ) । ଏଇଠାରେ ଭଗବାନ୍ ଏଇ ଏକ ଶ୍ଳୋକରେ, ଗୀତାର ପ୍ରଚାରିତ ଯୋଗର ଯେ କର୍ମସାଧନା, ତାର ସାର ତତ୍ତ୍ୱ ବା ବୀଜ କହିଦେଲେ । ବେଦର ଯଥାର୍ଥ ମର୍ମ ବୁଝିଥିବା ଲୋକ ଏହିପରି କର୍ମ ସାଧନା କରେ । ଏହି ତତ୍ତ୍ୱଟି ପୁଣି ସ୍ପଷ୍ଟ କରିବା ପାଇଁ ବେଦର ଯଥାର୍ଥ ମର୍ମ ବୁଝିଥିବା ଲୋକ କର୍ମ ସମ୍ବନ୍ଧରେ କଣ ବୁଝେ, ତାହା ଏଇଠାରୁ ସାତ ଶ୍ଳୋକରେ ଅତି ସଂକ୍ଷେପରେ ବୁଝାଇବେ ।

ବେଦର କର୍ମକାଣ୍ଡ ବା ଅର୍ଥବାଦରେ ସ୍ୱର୍ଗାଦି ଫଳ ନିମନ୍ତେ କର୍ମ କରିବାକୁ ହୁଏ ବୋଲି ବୁଝି, ଲୋକେ ଯାଗଯଜ୍ଞାଦି କ୍ରିୟାରେ ମାତନ୍ତି । କିନ୍ତୁ ସେମାନେ ବେଦକୁ ଭୁଲ୍ ବୁଝନ୍ତି । ଫଳ ପାଇବା ସବୁ କର୍ମରେ ଲାଗିରହିଚି ସତ, ହେଲେହେଁ ଫଳରେ ଅପେକ୍ଷା ରଖିବା ଠିକ୍ ନୁହେଁ । କାହିଁକି ନା, କର୍ମ କରିବା ଆମ ହାତରେ ଅଛି, ଫଳ ହବା ନ ହବା, ଏପରି ବା ସେପରି ହବା, ଏସବୁ ଆମ ହାତରେ ନାହିଁ । ଫଳ ଅପେକ୍ଷାରେ ମନୁଷ୍ୟ କର୍ମ କରିପାରେ; କିନ୍ତୁ ଫଳ ଅଳ୍ପ ହୋଇପାରେ, ନ ହୋଇପାରେ, ବିପରୀତ ହୋଇପାରେ, ଅନ୍ୟ ପ୍ରକାର ହୋଇପାରେ । ସେଥିରୁ ନାନାପ୍ରକାର ବ୍ୟାକୁଳତା, ଅଶାନ୍ତି ଓ ଉପଦ୍ରବ ପ୍ରଭୃତି ଦୋଷ ବାହାରେ । ସେଥିପାଇଁ ଯାହାଙ୍କ ହାତରେ ଆମ କର୍ମର ଫଳ, ଭକ୍ତ ସେଇ ଈଶ୍ୱରଙ୍କ ଉପରେ ଫଳର ଭାର ପକାଇ ଦେଇ, ବୁଦ୍ଧି ସେଇ ଈଶ୍ୱରରେ ଠିକ୍ ରଖି, କର୍ମ କରିଯିବାର ଅଛି । ଜ୍ଞାନୀ ମଧ୍ୟ ବିଶ୍ୱବିକାଶରେ କର୍ମ ନିଯୁକ୍ତିର ତତ୍ତ୍ୱ ବୁଝି ଫଳରେ ଅନାସକ୍ତ ହୋଇ କର୍ମ କରିବାର କଥା । ମାତ୍ର ଜଗତରେ ଦେଖାଯାଏ, ସାଧାରଣତଃ କର୍ମ ସଙ୍ଗେ ଫଳର ଅପେକ୍ଷା ବରାବର ଥାଏ । କର୍ମରୁ ଫଳକୁ ଅଲଗା କରି ବୁଝିବା ଓ ଫଳ ଛାଡ଼ି କର୍ମ କରିଯିବା ବଡ଼ ଗହନ କଥା । ସେଥିପାଇଁ ଆହୁ କେତେ ବେଦ

ବୁଝିବା ଲୋକେ ବୁଝନ୍ତି, କର୍ମରେ ତ ନିତ୍ୟଭାବରେ ଫଳ ଲାଗିରହିଚି ଓ ଏଇ ଫଳ ଯେଣୁ ଫଳର ଅପେକ୍ଷା ରଖିବା ମନୁଷ୍ୟ ପକ୍ଷରେ ସ୍ୱାଭାବିକ; ପୁଣି ଏଇ ଫଳାପେକ୍ଷା ସଙ୍ଗେ କର୍ମରେ ମମତାଦି ଦୋଷ ମନକୁ ଆସିଯିବ । ତେବେ କର୍ମମାନେ ଛାଡ଼ିବାଇ ଠିକ୍ । ଏହା ପ୍ରଚଳିତ ସାଂଖ୍ୟ ବା ଜ୍ଞାନମାର୍ଗ । ଏହା ମଧ୍ୟ ବେଦର ମତ ବୋଲି ସାଂଖ୍ୟମାନଙ୍କର ମତ । ଏଇପରି ବେଦର ଅର୍ଥକୁ ଅନର୍ଥ କରି, କର୍ମକାଣ୍ଡର କର୍ମମାର୍ଗ ଓ ଜ୍ଞାନକାଣ୍ଡର ସାଂଖ୍ୟ-ସନ୍ନ୍ୟାସ-ମାର୍ଗ, ଏ ଦୁଇଟି ମାର୍ଗ ବାହାରିଚି । ଭଗବାନ ସେଥିପାଇଁ ସୂଚାଇ ଦେଉଚନ୍ତି, ପ୍ରକୃତ ବେଦର ମର୍ମ ହେଉଚି, ଫଳ ପାଇଁ କର୍ମ କରିବାର ନୁହେଁ, କି କର୍ମ ବରାବର ଛାଡ଼ିଦେବାର ନୁହେଁ । ଅର୍ଥାତ୍, କର୍ମକାଣ୍ଡର ମାର୍ଗ ବେଦର ମର୍ମ ନୁହେଁ, କି ଜ୍ଞାନକାଣ୍ଡର ମାର୍ଗ ବେଦର ମର୍ମ ନୁହେଁ । ଫଳ ଅପେକ୍ଷାକୁ ବା ଫଳ ସଙ୍ଗେ ସମ୍ପର୍କକୁ ଛାଡ଼ି କର୍ମ କରିବାହିଁ ବେଦର ଯଥାର୍ଥ ମର୍ମ ଓ ତାହାହିଁ ବିଧି । ବ୍ରହ୍ମଭାବରେ ବା ଈଶ୍ୱରରେ ବୁଦ୍ଧି ଠିକ୍ ରହିଲେ, ଫଳର ଅପେକ୍ଷା ତୁଟିଯିବ । କାହିଁକି ନା, ଭକ୍ତିରେ ଦେଖିଲେ, ଫଳ ଯେ ଈଶ୍ୱରଙ୍କ ହାତେ ଜ୍ଞାନରେ ଦେଖିଲେ କର୍ମର ଫଳ ଯେ ବ୍ରହ୍ମର ବିଶ୍ୱକ୍ରିୟା, ଯେଉଁଥିରେ ଆମର କଣ ଅଛି । ଆମ ହାତେ ସେ କଥା ନାଇ । କର୍ମ କରିବା ଆମ ହାତେ ଅଛି । ଆମେ ନିଜର ଯାହା କର୍ମ ତାହା କରିଯିବା । ଏଇପରି ବୁଦ୍ଧି ଠିକ୍ ହୋଇଗଲେ, ଫଳ ଛାଡ଼ି କର୍ମ କରିବା ସହଜ ହୁଏ । ଏଇପରି ବୁଦ୍ଧି ଠିକ୍ ରଖି କର୍ମ କରିବାହିଁ ଯଥାର୍ଥ କର୍ମକରି ଜାଣିବା ( ୨. ୫୦ ); ଏଇପରି ଫଳାଫଳରେ ସମାନ ହୋଇ କର୍ମ କରିବାହିଁ ଯୋଗ (୨.୪୮); ଏଇସବୁ କଥା ପରେ କ୍ରମେ ବୁଝାଉଚନ୍ତି । ୪୭ ।

**ଯୋଗସ୍ଥଃ କୁରୁ କର୍ମାଣି ସଂଗଂ ତ୍ୟକ୍ତ୍ୱା ଧନଂଜୟ**
**ସିଦ୍ଧ୍ୟସିଦ୍ଧ୍ୟୋଃ ସମୋଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ ।୪୮।**

**ଅନ୍ୱୟ**—ଧନଂଜୟ ! ସଙ୍ଗଂ ତ୍ୟକ୍ତ୍ୱା ସିଦ୍ଧ୍ୟସିଦ୍ଧ୍ୟୋଃ ସମଃ ଭୂତ୍ୱା ଯୋଗସ୍ଥଃ [ସନ୍] କର୍ମାଣି କୁରୁ । ସମତ୍ୱଂ ଯୋଗ ଉଚ୍ୟତେ । ୪୮ ।

**ଟୀକା**—[ତସ୍ୟ ସାଧନମାହ] ହେ ଧନଞ୍ଜୟ, ସଙ୍ଗଂ (ଫଳାଶାକର୍ତ୍ତୃତ୍ୱାଭିମାନାଦ୍ୟାସକ୍ତିଂ) ତ୍ୟକ୍ତ୍ୱା ସିଦ୍ଧ୍ୟସିଦ୍ଧ୍ୟୋଃ(ସଫଳତାବିଫଳତୟୋଃ) ସମଃ (ହର୍ଷବିଷାଦଶୂନ୍ୟଃ) ଭୂତ୍ୱା, ଯୋଗସ୍ଥଃ [ସନ୍] କର୍ମାଣି କୁରୁ । [ସିଦ୍ଧ୍ୟସିଦ୍ଧ୍ୟୋଃ] ସମତ୍ୱଂ (ଏକରୂପତ୍ୱଂ) [ଏବ] ଯୋଗଃ ଉଚ୍ୟତେ । ୪୮ ।

**ଅର୍ଥ**—[ ତାହା କିପରି କରିହେବ ? କହୁଚନ୍ତି ] ହେ ଧନଞ୍ଜୟ, [କର୍ମରେ ମମତା, ଲାଳସା ପ୍ରଭୃତି] ଆସକ୍ତି ଛାଡ଼ି ସିଦ୍ଧି ଅସିଦ୍ଧି (କର୍ମରେ ଫଳ ହେଲା ନ ହେଲା ) ରେ ସମାନ ବା ଏକାପରି ରହି [ ଅର୍ଥାତ୍ ] ଯୋଗସ୍ଥ ହୋଇ, କର୍ମସବୁ

କର । ଏଇ ସମତ୍ୱକୁ ଅର୍ଥାତ୍ ହେଲା ନ ହେଲାରେ ଏକାପରି ରହିବାକୁ ହିଁ ଯୋଗ କୁହାଯାଏ । ଅର୍ଥାତ୍ ଏହି ସମତ୍ୱ ଥିଲେ ନିଶ୍ଚୟ ବୁଝାଯାଏ ଯେ, ପରମାତ୍ମତତ୍ତ୍ୱରେ ବୁଦ୍ଧି ବସିଚ, ବୁଦ୍ଧି ଆତ୍ମତତ୍ତ୍ୱରେ ଯୋଗ ହୋଇଛି । ୪୮ ।

ବ୍ୟାଖ୍ୟା ସୂଚନା—ସଙ୍ଗ = ଆସକ୍ତି; ଫଳ ସଙ୍ଗେ ସମ୍ପର୍କ ରଖିଲେ କର୍ମରେ ଅନୁରାଗ, ବିରାଗ, ମମତା, କ୍ରୋଧ, ରାଗ ବା ଦ୍ୱେଷ ପ୍ରଭୃତି ହୁଏ । ସଙ୍ଗ କହିଲେ ଲୋକେ କେବଳ ଅନୁରାଗ ବା ଆସକ୍ତି ବୁଝନ୍ତି ସତ, ମାତ୍ର ବିରାଗ ବା ଦ୍ୱେଷ ମଧ୍ୟ ସଙ୍ଗ; କାରଣ, ତାହା ଏକ ସମ୍ପର୍କ । କର୍ମରେ ବିରାଗ ମଧ୍ୟ ଫଳ ଯୋଗୁଁ ହୁଏ । ବୁଝାରେ ଏ କର୍ମରେ ଲଗିଲେ ଫଳରେ କଷ୍ଟ ହେବ; ଏପରି ବିଚାରିବାରେ ଫଳରେ ସମ୍ପର୍କ ରହୁଚି; ଏହା ଏକ ସଙ୍ଗ । ୪୮ ।

**ଦୂରେଣ ହ୍ୟବରଂ କର୍ମ ବୁଦ୍ଧିଯୋଗାଦ୍ଧନଂଜୟ ।**
**ବୁଦ୍ଧୌ ଶରଣମନ୍ୱିଚ୍ଛ କୃପଣାଃ ଫଳହେତବଃ । ୪୯ ।**

**ଅନ୍ୱୟ**—ଧନଂଜୟ ! ବୁଦ୍ଧିଯୋଗାତ୍ କର୍ମ ହି ଦୂରେଣ ଅବରମ୍ । ବୁଦ୍ଧୌ ଶରଣଂ ଅନ୍ୱିଚ୍ଛ । ଫଳହେତବଃ କୃପଣାଃ । ୪୯ ।

**ଟୀକା**—ହେ ଧନଂଜୟ, ହି (ଯତଃ) ବୁଦ୍ଧିଯୋଗାତ୍ (ସିଦ୍ଧ୍ୟସିଦ୍ଧ୍ୟୋଃ ବୁଦ୍ଧିସମତ୍ୱାତ୍) [ବାହ୍ୟଂ] କର୍ମ ଦୂରେଣ (ଅତିଶୟେନ) ଅବରମ୍ (ଅପକୃଷ୍ଟମ୍) । [ତତଃ ତ୍ୱଂ] ବୁଦ୍ଧୌ (କର୍ମବିବେକବୁଦ୍ଧୌ, ନ ତୁ ବାହ୍ୟକର୍ମଣି ଇତି ଭାବଃ) ଶରଣଂ (ଆଶ୍ରୟଂ) ଅନ୍ୱିଚ୍ଛ (ଅନୁସନ୍ଧେହି, ଗଚ୍ଛ—ବୁଦ୍ଧ୍ୟା କାର୍ଯ୍ୟାକାର୍ଯ୍ୟବିଚାରଣସ୍ୟେନ କର୍ମ ସମ୍ପାଦନଂ କୁରୁ, ମୁକ୍ତିସାଧନସ୍ୟ ବିବେକଂ ଦୃଢ଼ଂ କୃତ୍ୱା କର୍ମ କୁରୁ, ନ ତୁ ତଦ୍‌ବାହ୍ୟକର୍ମଣ ଏବ ଫଳବତ୍ତ୍ୱାଦବିବେଚନସ୍ୟ ଇତି ଭାବଃ) । [ବାହ୍ୟଂକର୍ମବିଚାରକାଃ] ଫଳହେତବଃ (ଫଳଗୃଧ୍ନବଃ) କୃପଣା (ସ୍ୱଳ୍ପାମପି ସ୍ୱାର୍ଥକ୍ଷତିମସହିଷ୍ଣବ—ଇତି ଆନନ୍ଦଗିରିଃ; ସ୍ୱାର୍ଥାନ୍ଧାଃ) ଭବନ୍ତି । ୪୯ ।

**ଅର୍ଥ**—କାହିଁକି ନା, ଧନଞ୍ଜୟ, ଏଇ ବୁଦ୍ଧିଯୋଗ ( ବା ଫଳାଫଳରେ ବୁଦ୍ଧି ସମତ୍ୱ ପାଖେ, ବାହାରର କର୍ମ ଦେଖି ଭଲ ମନ୍ଦ ବିଚାର କରିବା ଅତି ଗ୍ରୌଣ କଥା । ତେଣୁ ବୁଦ୍ଧିକି ଧରଥା । (ଅର୍ଥାତ୍, କର୍ମଟି ଭଲ କି ମନ୍ଦ, ଏହା ବିଚାରିବାକୁ ନ ଯାଇ, ବୁଦ୍ଧି ବା ବିବେଚନାକୁ ମୁକ୍ତିମାର୍ଗରେ ଦୃଢ଼ କର, ହେଲା ନ ହେଲାରେ ସମାନଭାବ ଠିକ୍ ରଖିବାରେ ଲାଗ୍ ) । [ବୁଦ୍ଧିକି ନ ଦେଖି କର୍ମଟି ଭଲ କି ମନ୍ଦ ବୋଲି ବିଚାରି] ଫଳ ଲାଗି କର୍ମ କରିବାକୁ ଯିବା ଲୋକେ, ସ୍ୱାର୍ଥାନ୍ଧ ( ବା କୃପାର ପାତ୍ର) । [କୃପଣ—୧. '୭' ଟୀକା ଦେଖ ] । ୪୯ ।

**ବୁଦ୍ଧିଯୁକ୍ତୋ ଜହାତୀହ ଉଭେ ସୁକୃତଦୁଷ୍କୃତେ ।**
**ତସ୍ମାଦ୍ ଯୋଗାୟ ଯୁଜ୍ୟସ୍ୱ ଯୋଗଃ କର୍ମସୁ କୌଶଳମ୍ ।୫୦।**

**ଅନ୍ୱୟ**—ବୁଦ୍ଧିଯୁକ୍ତଃ ଇହ ଉଭେ ସୁକୃତଦୁଷ୍କୃତେ ଜହାତି । ତସ୍ମାତ୍ ଯୋଗାୟ ଯୁଜ୍ୟସ୍ୱ । ଯୋଗଃ କର୍ମସୁ କୌଶଳମ୍ । ୫୦ ।

**ଟୀକା**—ବୁଦ୍ଧିଯୁକ୍ତଃ (ବୁଦ୍ଧି-ଯୋଗୀ) [ଇହଲୋକେ] ଉଭେ ସୁକୃତଦୁଷ୍କୃତେ (ନିର୍ଦ୍ଦିଷ୍ଟକର୍ତ୍ତବ୍ୟେ ସାଧ୍ୱସାଧୁତ୍ୱେବୌ) ଜହାତି (ତ୍ୟଜତି) । ତସ୍ମାତ୍ [ତ୍ୱଂ ତସ୍ମୈ] ଯୋଗାୟ ( ବୁଦ୍ଧିଯମତ୍ୱାୟ) ଯୁଜ୍ୟସ୍ୱ (ଘଟସ୍ୱ) । [ଏଷ ଏବ] ଯୋଗଃ କର୍ମସୁ କୌଶଳଂ (ଯଥାର୍ଥଯୁକ୍ତିଃ) ଭବତି । ୫୦ ।

**ଅର୍ଥ**—ବୁଦ୍ଧି ଯୋଗରେ ଲଗିଲେହେଁ ଲୋକ ଏ ଜଗତରେ ସୁକୃତ, ଦୁଷ୍କୃତ ଦୁହିଁକି ଛାଡ଼େ । (ଅର୍ଥାତ୍ କର୍ତ୍ତବ୍ୟ କରିବାରେ ଏ କାମ ଭଲ କି ସେ କାମ ମନ୍ଦ କିଛି ବୁଝେ ନାହିଁ ।) ତେଣୁ ତୁ ସେଇ ଯୋଗରେ ଲଗି ଯା । ଯୋଗ ହିଁ [ ଏକା ] କର୍ମରେ କୌଶଳ (ଯଥାର୍ଥ ନିପୁଣତା—ଅର୍ଥାତ୍, ଏଇ ଯୋଗ ହିଁ ଯଥାର୍ଥ କର୍ମ କରି ଜାଣିବା ) । ୫୦ ।

ବ୍ୟାଖ୍ୟା ସୂଚନା—କର୍ମରେ କୌଶଳ=କର୍ମରେ ଯୁକ୍ତ ବା ଠିକ୍ କରି ଜାଣିବାର ପନ୍ଥା, ଶୈଳୀ, ପ୍ରକାର ବା ପ୍ରଣାଳୀ । ୫୦ ।

**କର୍ମଜଂ ବୁଦ୍ଧିଯୁକ୍ତା ହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ ।**
**ଜନ୍ମବନ୍ଧବିନିର୍ମୁକ୍ତାଃ ପଦଂ ଗଚ୍ଛନ୍ତ୍ୟନାମୟମ୍ । ୫୧ ।**

**ଅନ୍ୱୟ**—ହି ବୁଦ୍ଧିଯୁକ୍ତା ମନୀଷିଣଃ କର୍ମଜଂ ଫଳଂ ତ୍ୟକ୍ତ୍ୱା ଜନ୍ମବଂଧବିନିର୍ମୁକ୍ତାଃ [ସନ୍ତଃ] ଅନାମୟଂ ପଦଂ ଗଚ୍ଛଂତି । ୫୧ ।

**ଟୀକା**—[ବୁଦ୍ଧିଯୁକ୍ତାଃ କର୍ମଣଃ ମୁଚ୍ୟନ୍ତେ, ଇତ୍ୟାହ] ହି (ଯତଃ) ବୁଦ୍ଧିଯୁକ୍ତାଃ (ବୁଦ୍ଧିଯୋଗପରାଃ) ମନୀଷିଣଃ (ମନୋଯନ୍ତାରଃ, ବିବେକିନଃ) କର୍ମଜଂ (କର୍ମଣଃ ଉଦ୍ଭୂତଂ) ଫଳଂ ତ୍ୟକ୍ତ୍ୱା (ସଙ୍ଗଶୂନ୍ୟତ୍ୱାତ୍ କର୍ମଫଲଗ୍ରାହକାଃ ଅଭୂତ୍ୱା ଇତ୍ୟର୍ଥଃ, ଯଦ୍ୱା ବୈଦିକକାମ୍ୟକର୍ମଜନିତଂ ସ୍ୱର୍ଗାଦିଫଳମପିତ୍ୟ ଇତ୍ୟାଶୟଃ) ଜନ୍ମବନ୍ଧବିନି-ର୍ମୁକ୍ତାଃ (ଜନ୍ମବନ୍ଧଃ ସଂସାରଃ ସଃ ତୁ କର୍ମଫଲହେତୁକଃ ତସ୍ମାତ୍ ମୁକ୍ତାଃ) [ସନ୍ତଃ] ଅନାମୟଂ (ଦୁଃଖଶୋକଜରାବ୍ୟାଧିମୃତ୍ୟୁପ୍ରଭୃତିସର୍ବୋପଦ୍ରବରହିତଂ) ପଦଂ (ସ୍ଥାନଂ) ଗଚ୍ଛନ୍ତି (ମୋକ୍ଷଂ ଲଭନ୍ତେ ଇତି ଭାବଃ) । ୫୧ ।

**ଅର୍ଥ**—[ବୁଦ୍ଧିଯୋଗୀ ମୁକ୍ତି ପାଏ ବୋଲି କହୁଛନ୍ତି]—କାହିଁକି ନା, ବୁଦ୍ଧି ଯୋଗରେ ଥାଇ ମନକୁ ଆୟତ୍ତରେ ରଖିଥିବା ଲୋକେ କର୍ମଜ ଫଳ ଛାଡ଼ି (ଅର୍ଥାତ୍

କର୍ମର ଫଳାଫଳରେ ନ ପଡ଼ି ଜନ୍ମବନ୍ଧନରୁ ମୁକ୍ତ ହୋଇ [ଦୁଃଖ ଶୋକ ଭୟ ବ୍ୟାଧି ଜନ୍ମମୃତ୍ୟୁ ପ୍ରଭୃତି] ଉପଦ୍ରବ ନ ଥିବା ସ୍ଥାନକୁ ଯାଆନ୍ତି (ମୋକ୍ଷ ପାନ୍ତି) । ୫୧ ।

ବ୍ୟାଖ୍ୟା ସୂଚନା—ଜନ୍ମବନ୍ଧ=ସଂସାର— ୨. ୩୯ ଟୀକା ଦେଖ । କର୍ମଜ ଫଳ=କର୍ମଫଳ, ଫଳମାନେ କର୍ମଜ; ସବୁ କର୍ମର ଫଳହୁଏ ନାଇ ସତ— ଯେପରି କି, ନିଷ୍କାମ କର୍ମରୁ ଆକାଂକ୍ଷିତ ଅଂଶୁଫଳ ମିଳିବାର ନାଇ, ସତ, ମାତ୍ର ଫଳମାନେ କର୍ମରୁ ହୁଅନ୍ତି । ନିଷ୍କାମ କର୍ମର ଅଭ୍ୟାସରୁ ମୁକ୍ତ ହୋଇପାରେ; ମାତ୍ର ମୁକ୍ତିକୁ କର୍ମର ଫଳ ବୋଲି ଧରାଯାଏ ନାଇ । ଯାହାର ଭୋଗ ଅସ୍ଥାୟୀ, ସେଇ ଫଳକୁ ଫଳ ବା କର୍ମଫଳ କହନ୍ତି । ତାହା ସବୁ ସକାମ କର୍ମରୁ ହୁଏ । କିଂବା ହୋଇପାରେ, କର୍ମଜ ଫଳ ଛାଡ଼ି, ବୁଦ୍ଧି ଯୋଗରେ ଲାଗି ନିଷ୍କାମଭାବରେ କର୍ତ୍ତବ୍ୟ କର୍ମ କରିବାର ଉପଦେଶ ଦିଆଯାଇଛି । ତେବେ, ସ୍ୱର୍ଗାଦି ଫଳ ତ ମିଳିବ ନାଇ, ଆଉ ଏଥିରୁ କ'ଣ ମିଳିବ ? ସେଥିପାଇଁ କହୁଛନ୍ତି, କର୍ମଜ ଫଳକୁ ବଳକରି ସବା ଉପରେ ଅଛି ଯେ ନିତ୍ୟସ୍ଥାନ ବା ମୁକ୍ତି, ଏ ଯୋଗରେ ସେଇଟି ମିଳିବ । ୫୧ ।

**ଯଦା ତେ ମୋହକଲିଳଂ ବୁଦ୍ଧିର୍ବ୍ୟତିତରିଷ୍ୟତି ।**
**ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ । ୫୨**

**ଅନ୍ୱୟ**—ଯଦା ତେ ବୁଦ୍ଧିଃ ମୋହକଲିଳଂ ବ୍ୟତିତରିଷ୍ୟତି, ତଦା ଶ୍ରୁତସ୍ୟ ଶ୍ରୋତବ୍ୟସ୍ୟ ଚ ନିର୍ବେଦଂ ଗନ୍ତାସି । ୫୨ ।

**ଟୀକା**—[ବେଦଶାସ୍ତ୍ରାଦିଷୁ ବହୁଧା ଶ୍ରୁତଃ ତତ୍ସର୍ବଃ ପୁଣ୍ୟକର୍ମାଦ୍ୟୁପଦେଶଃ କଥମତ୍ର ସମାଧେୟଃ [ଇତ୍ୟାଶଙ୍କ୍ୟ ଆହ] ଯଦା ତେ (ତବ) ବୁଦ୍ଧିଃ ମୋହକଲିଳଂ (ଦେହାତ୍ମଭାବରୂପଦୁର୍ଗମଂ) ବ୍ୟତିତରିଷ୍ୟତି (ବ୍ୟତିକ୍ରମିଷ୍ୟତି) ତଦା [ତ୍ୱଂ ପୂର୍ବଂ] ଶ୍ରୁତସ୍ୟ [ଇତଃପରଂ] ଶ୍ରୋତବ୍ୟସ୍ୟ ଚ ନିର୍ବେଦଂ (ଔଦାସୀନ୍ୟଂ) ଗନ୍ତାସି (ଗମିଷ୍ୟସି) । ୫୨ ।

**ଅର୍ଥ**—[ବେଦ ଶାସ୍ତ୍ର ଆଦିରେ ପୁଣ୍ୟ କର୍ମାଦି ସମ୍ବନ୍ଧରେ ଏତେ ଯାହା ଶୁଣିଛୁ, ସେ ସବୁର କଣ ହେବ ? ଏଥକୁ କହୁଛନ୍ତି] ଯେତେବେଳେ ତୋର ବୁଦ୍ଧି [ଏଇ ଦେହର ସବୁ] ଏଇ ମୋହ ଦୁର୍ଗତିରୁ ପାରି ହେବ, ସେତେବେଳେ ଯାହା ଶୁଣିଛୁ ଓ ଯାହା ବା ଶୁଣିବାକୁ ବାକି ଅଛି, ସେ ସବୁଥିରେ ତୁ ଉଦାସୀନ ହେବୁ । (ଅର୍ଥାତ୍, ସେଥିପାଇଁ ଆଉ ବ୍ୟସ୍ତ ହେବୁ ନାଇ) । ୫୨ ।

ବ୍ୟାଖ୍ୟା ସୂଚନା—ଏଠାରେ ବେଦରୁ କର୍ମବିଷୟରେ ଶୁଣିବା କଥାକୁ ବିଶେଷ ଲକ୍ଷ୍ୟ ଅଛି । ସମସ୍ତ ଭୋଗ ଓ କର୍ମଫଳ ଦେହର ବା ଇନ୍ଦ୍ରିୟାଦିର ସୁଖପାଇଁ । ଏସବୁ ସୁଖ ଲୋଡ଼ିବା ମୋହ । ଏଇ ମୋହରେ ପଡ଼ି ଲୋକ ଏଇ ଦେହ ଇନ୍ଦ୍ରିୟ

ପ୍ରଭୃତିଙ୍କୁ ଆତ୍ମା ବୋଲି ବିଗୃହ ସେହି ଦେହାଦିର ସୁଖରେ ମାତେ । ସେଥିପାଇଁ ମୋକ୍ଷସାଧନ କରିବା ଲୋକ ପକ୍ଷରେ ଆଉ ସ୍ୱାଡ଼ୁସ୍ୟାଡ଼ୁ ଗୁଡ଼ାଏ ବେଦଶାସ୍ତ୍ର କଥା ଶୁଣି ଭୁଲିବା ଠିକ୍ ନୁହେ ବୋଲି ପରଶ୍ଳୋକରେ କହୁଚନ୍ତି । କଲିଲ—ଦୁର୍ଭେଦ୍ୟ ଜାଗା; ଯେଉଁଥିରେ ପଶିଲେ ସହଜରେ ବାହାରି ହୁଏ ନାହିଁ ।୫୨।

**ଶ୍ରୁତିବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା ।**
**ସମାଧାବଚଳା ବୁଦ୍ଧିସ୍ତଦା ଯୋଗମବାପ୍ସ୍ୟସି । ୫୩ ।**

**ଅନ୍ୱୟ**—ଯଦା ଶ୍ରୁତିବିପ୍ରତିପନ୍ନା ତେ ବୁଦ୍ଧିଃ ନିଶ୍ଚଳା [ସତ୍ତୀ] ସମାଧୌ ଅଚଳା ସ୍ଥାସ୍ୟତି ତଦା [ତ୍ୱଂ] ଯୋଗଂ ଅବାପ୍ସ୍ୟସି । ୫୩ ।

**ଟୀକା**—ଯଦା ଶ୍ରୁତିବିପ୍ରତିପନ୍ନା (ନାନା ସିଦ୍ଧାନ୍ତଶ୍ରବଣାତ୍ ବହୁଧା ଭିନ୍ନା) ତେ (ତବ) ବୁଦ୍ଧିଃ ନିଶ୍ଚଳା (ନିଶ୍ଚିତା) [ସତ୍ତୀ] ସମାଧୌ (ଏକାଗ୍ରତାୟାଂ) ଅଚଳା (ସ୍ଥିରା) ସ୍ଥାସ୍ୟତି, ତଦା [ତ୍ୱଂ] ଯୋଗଂ (ଫଳାଫଳୟୋଃ ସମତ୍ୱଂ) ଅବାପ୍ସ୍ୟସି (ପ୍ରାପ୍ସ୍ୟସି) । ୫୩ ।

**ଅର୍ଥ**—ବେଦ ମନ୍ତ୍ରଶାସ୍ତ୍ର ଯୁକ୍ତି ପ୍ରଭୃତିରେ ନାନା କଥା ଶୁଣିବାରେ ସ୍ୱାଡ଼ଙ୍କ ସ୍ୟାଡ଼ଙ୍କ ହେଉଥିବା ତୋ ବୁଦ୍ଧି ଯେତେବେଳେ ଦୃଢ଼ ହୋଇ ସମାଧି (ବା ଏକାଗ୍ରନିଷ୍ଠା)ରେ ରହିବ, ସେତେବେଳେ ଯୋଗ ପାଇବୁ (ଅର୍ଥାତ୍, ସିଦ୍ଧି-ଅସିଦ୍ଧିରେ ସମତ୍ୱ ପାଇବୁ) । [ସମାଧି ପାଇଁ ୨·୪୨-୪୪ ଟୀକା ଦେଖ] । ୫୩ ।

## ଅର୍ଜୁନ ଉବାଚ

**ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।**
**ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିମ୍ ।୫୪।**

**ଅନ୍ୱୟ**—କେଶବ ! ସମାଧିସ୍ଥସ୍ୟ ସ୍ଥିତପ୍ରଜ୍ଞସ୍ୟ ଭାଷା କା ? ସ୍ଥିତଧୀଃ କିଂ ପ୍ରଭାଷେତ ? କିଂ [ ବା ] ଆସୀତ ? କିଂ [ ବା ] ବ୍ରଜେତ ? । ୫୪ ।

**ଟୀକା**—[ପୂର୍ବଶ୍ଳୋକୋକ୍ତସ୍ୟ ନିଶ୍ଚଳବୁଦ୍ଧେଃ ସ୍ଥିତପ୍ରଜ୍ଞସ୍ୟ ଲକ୍ଷଣଂ ବୁଭୁତ୍ସୁଃ] ଅର୍ଜୁନଃ ଉବାଚ—ହେ କେଶବ, ସମାଧିସ୍ଥସ୍ୟ (ସମାଧୌ ସ୍ଥିତସ୍ୟ) ସ୍ଥିତପ୍ରଜ୍ଞସ୍ୟ (ନିଶ୍ଚଳବୁଦ୍ଧେଃ) ଭାଷା (ଲକ୍ଷଣଂ) କା ? (କଥମସୌ ଅନ୍ୟୈଃ ଭାଷ୍ୟତେ, ବର୍ଣ୍ଣ୍ୟତେ ଇତି ଭାବଃ) । ସ୍ଥିତଧୀଃ (ସ୍ଥିତପ୍ରଜ୍ଞଃ) [ସ୍ୱୟଂ ବା] କିଂ (କଥଂ) ପ୍ରଭାଷେତ (ଭାଷଣଂ କୁର୍ଯ୍ୟାତ୍) କିଂ (କଥଂ) [ବା] ଆସୀତ (ତିଷ୍ଠେତ୍) କିଂ (କଥଂ) [ବା] ବ୍ରଜେତ (ଚଲେତ୍—କିଂଭୂତୈଃ ଲକ୍ଷଣୈଃ ସଃ ଜ୍ଞାୟତେ ଇତି ଭାବଃ) । ୫୪ ।

**ଅର୍ଥ**—[ପୂର୍ବ ଶ୍ଳୋକରେ କୁହାଯିବା ସମାଧିରେ] ନିଶ୍ଚଳବୁଦ୍ଧ ସ୍ଥିତପ୍ରଜ୍ଞର ଲକ୍ଷଣ ବୁଝିବା ପାଇଁ] ଅର୍ଜୁନ କହିଲେ—ହେ କେଶବ, ସମାଧିରେ ଠିକ୍ ଥିବା ସ୍ଥିତପ୍ରଜ୍ଞ (ବା ଦୃଢ଼ବୁଦ୍ଧି) ଲୋକଙ୍କୁ ବୁଝିବାର ଭାଷା କଣ ? (ଅର୍ଥାତ୍, କପରି କଥାରେ ବୁଝାଇଲେ ସେ ଚହ୍ନାଯିବ) ? ସ୍ଥିତଧୀ (ସ୍ଥିତପ୍ରଜ୍ଞ) ନିଜେ ବା କପରି କହେ, କପରି ବସେ, କପରି ଚଳେ ? (ଅର୍ଥାତ୍, କଣ ସବୁ ଲକ୍ଷଣ ଦେଖି ତାଙ୍କୁ ଜାଣିବ) ? ୫୪ ।

ବ୍ୟାଖ୍ୟା ସୂଚନା—ଏତେ ଶୁଣି ମଧ, ଅର୍ଜୁନ ଯୋଗସ୍ଥିତ ବୁଝିପାରୁ ନାହାନ୍ତି । ସେ ବସ୍ତୁରୁଛନ୍ତି, ଜ୍ଞାନରେ ଶାନ୍ତ ହୋଇ ବୁଦ୍ଧି ଠିକ୍ କରି ନିରାଲମ୍ବ ହୋଇ ବସିବା ତ ବୁଝାଯାଉଚ । ସନ୍ନ୍ୟାସୀ ସାଧୁମାନେ ସବୁ ଛାଡ଼ି ଏଇପରି ଥା'ନ୍ତି । ତାଙ୍କୁ ଦେଖି ଜାଣିବାରେ କଛି କଷ୍ଟ ନାଇ । ତେବେ ସବୁ କର୍ମଜଞ୍ଜାଳ ଭିତରେ ବରାବର ରହି ପୁଣି ବୁଦ୍ଧିକି ସ୍ଥିରକରି ଯେ ସମାଧିରେ ସର୍ବଦା ଠିକ୍ ଥାଏ, ସେ କପରି ଥାଏ ? କ'ଣ ଦେଖି ତାଙ୍କୁ ଚହ୍ନାଯିବ ? ଏଇଠାରୁ ସତର ଶ୍ଳୋକରେ ଭଗବାନ୍ ଚହ୍ନାଇଦେବେ ଯେ, ଯାହାର କର୍ମ କରି ମଧ କାମନା ନାଇ, ଦ୍ୱନ୍ଦ୍ୱ ନାଇ, ଇନ୍ଦ୍ରିୟ ଭୋଗରେ ଲୁଚ ପର୍ଯ୍ୟନ୍ତ ନାଇ, ବ୍ରହ୍ମରେ ଯାହାର ବୁଦ୍ଧି ବସିଚ, ଈଶ୍ୱରଭାବ ଦୃଢ଼ ହୋଇଚି, ସେଇ ଲୋକ ଏକା ଜ୍ଞାନରେ ଶାନ୍ତ; ତାର ବୁଦ୍ଧି ସ୍ଥିର, ତାଙ୍କୁ ବାହାରେ ଦେଖି ଚହ୍ନିବାର କଛି ନାଇ । ଖାଲି କର୍ମ ଛାଡ଼ିଦେଇ, ଭୋଗରୁ ଆପଣାକୁ ରୋକି ଯେ ବସିଚ, ତାକୁ ବାହାରରୁ ଦେଖି ଲୋକେ ଜ୍ଞାନୀ ଓ ସ୍ଥିରବୁଦ୍ଧି ବୋଲି ବୁଝିଯାଇପାରନ୍ତି । ମାତ୍ର ଯଥାର୍ଥରେ ଭୋଗରୁ ତା'ର ଲୁଚ ଯାଇଚ କ ନାଇ, ପରୀକ୍ଷା ନ କଲେ ଜାଣି ହବ ନାଇ । କର୍ମରେ ଲଗି ରହିଥିଲେ, ସେ ପରୀକ୍ଷା ସବୁବେଳେ ରହିଚ ଓ କର୍ମରେ ଥିଲେଇ ବୁଦ୍ଧି ସ୍ଥିର ହୋଇଛି କ ନା, ତା ଜଣାପଡ଼େ । ୫୪ ।

ଶ୍ରୀ ଭଗବାନୁବାଚ

ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍ ।
ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ । ୫୫ ।

**ଅନ୍ୱୟ**—ପାର୍ଥ ! ଯଦା [ ଜନଃ ] ସର୍ବାନ୍ ମନୋଗତାନ୍ କାମାନ୍ ପ୍ରଜହାତି, ତଦା ଆତ୍ମନି ଏବ ଆତ୍ମନା ତୁଷ୍ଟଃ [ ସନ୍ ] ସ୍ଥିତପ୍ରଜ୍ଞଃ ଉଚ୍ୟତେ । ୫୫ ।

**ଟୀକା**—ଶ୍ରୀ ଭଗବାନ୍ ଉବାଚ—ହେ ପାର୍ଥ, ଯଦା [ଜନଃ] ସର୍ବାନ୍ ମନୋଗତାନ୍ (ମନସି ସ୍ଥିତାନ୍, ମନସି ଉତ୍ପନ୍ନାନ୍ ଚ) କାମାନ୍ (ବାସନାଃ) ପ୍ରଜହାତି (ତ୍ୟଜତି), ତଦା ଆତ୍ମନି (ସ୍ୱସ୍ମିନ୍ନେବ ପରମାନନ୍ଦସ୍ୱରୂପେ) ଏବ ଆତ୍ମନା (ସ୍ୱୟଂ) ତୁଷ୍ଟଃ [ସନ୍ ସଃ] ସ୍ଥିତପ୍ରଜ୍ଞଃ ଉଚ୍ୟତେ ।୫୫।

**ଅର୍ଥ**— ଶ୍ରୀ ଭଗବାନ କହିଲେ—ହେ ପାର୍ଥ, ଯେତେବେଳେ [ଲୋକ] ମନରେ ହେଉଥିବା [''ସ୍ୱା ପାଇବି ତା ପାଇବି'' ଇତ୍ୟାଦି] କାମନା ସବୁ ଛାଡ଼େ, ସେତେବେଳେ ଆପଣା ଭିତରେ ଆପେ ସନ୍ତୋଷ ରହି ସ୍ଥିତପ୍ରଜ୍ଞ ବୋଲାଏ । ୫୫ ।

ବ୍ୟାଖ୍ୟା ସୂଚନା—ଆତ୍ମାରେ ନିଜେ ସନ୍ତୋଷ ରହିବା, ଅର୍ଥାତ୍, ଭିତରୁଁ ଆତ୍ମାର ଆନନ୍ଦ ଖୋଜିବା, ସୁଖ ଦୁଃଖ ଦେଉଥିବା ବାହାର ଜିନିଷରେ ଆନନ୍ଦର ସ୍ଥାନ ନ ରଖିବା । ଆନନ୍ଦ ସୁଖରୁ ଭିନ୍ନ—ଏହା ମନେ ରଖିବାକୁ ହେବ । [ଧନ ମିଳିଲେ ମୋତେ ସୁଖ ଲାଗେ—ଏ ମୋହ । ମୁଁ ଉପାସୀ ହୁଏ, ଖାଇବାରେ ଦୁଃଖ ମିଳୁ, ଅଥଚ ମୁଁ ଶ୍ରେଷ୍ଠ କିଂବା ଆଉ କିଛି ପ୍ରଲୋଭନରେ ନ ପଡ଼େ । ଏଥିରେ ଯାହା ରହିଚ ସେ ମତେ ଆନନ୍ଦ ଦିଏ, ସେ ଆତ୍ମସନ୍ତୋଷ । ]—ମହାତ୍ମା ଗାନ୍ଧୀ ।୫୫।

**ଦୁଃଖେଷ୍ୱନୁଦ୍ୱିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ ।**
**ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ । ୫୬ ।**

**ଅନ୍ୱୟ**—ସ୍ପଷ୍ଟ । ୫୬ ।

**ଟୀକା**—[ଯଃ] ଦୁଃଖେଷୁ ଅନୁଦ୍ୱିଗ୍ନମନାଃ (ଅକ୍ଷୁଭିତଚିତ୍ତଃ) ସୁଖେଷୁ ବିଗତସ୍ପୃହଃ ( ତୃଷ୍ଣାଶୂନ୍ୟଃ ) ବୀତରାଗଭୟକ୍ରୋଧଃ (ବିଷୟପ୍ରୀତିଭୀତିକୋପବର୍ଜିତଃ) [ଭବତି ସଃ] ମୁନିଃ (ବ୍ରହ୍ମପରଃ) ସ୍ଥିତଧୀଃ ଉଚ୍ୟତେ । ୫୬ ।

**ଅର୍ଥ**—ଯେ ଦୁଃଖରେ ମନ ବ୍ୟସ୍ତ କରେ ନାହିଁ, ସୁଖରେ ତୃଷ୍ଣା ଛାଡ଼ିଥାଏ (ଅର୍ଥାତ୍ ବେଶି ବେଶି ପାଇବାକୁ ଲୋଡ଼େ ନାହିଁ ), [ ବିଷୟ ଭୋଗରେ ] ରାଗ, [ ଅପକାରକୁ ] ଭୟ ଓ [ହାନି ବା ଅପମାନରେ] କ୍ରୋଧ କରେ ନାହିଁ, ସେହି ମୁନିକୁ ସ୍ଥିତପ୍ରଜ୍ଞ କୁହାଯାଏ । ୫୬ ।

ବ୍ୟାଖ୍ୟା ସୂଚନା—ମୁନି=ଯେ ଆତ୍ମଧ୍ୟାନରେ ସ୍ଥିର ଥାଏ । ରାଗ, ଭୟ, କ୍ରୋଧ ଏ ତିନୋଟି କଥାର ବ୍ୟବହାର ଗୀତାରେ ବହୁବାର କରାହୋଇଚି । ସେଥିପାଇଁ ଏହାର ଅର୍ଥ ଭଲ କରି ବୁଝିବା ଉଚିତ । ରାଗ=ରୁଚି, କୌଣସି ବିଷୟରେ, "ହେଲେ ଭଲ ହୁଅନ୍ତା" ବୋଲି ଯେ ଆସକ୍ତିର ଆଭାସ ତାହାହିଁ ସେ ବିଷୟରେ ରାଗ ବା ରୁଚି । ଭୟ=ଶଙ୍କା, ଏପରି କରିବା ଠିକ୍ କି ନୁହେଁ ବୋଲି ଯେ ସନ୍ଦେହ । ଯଥା—ଲୋକ ଯଦି ବିଚାରେ, କିଛି ଫଳାଫଳ ନ ବିଚାରି ଖାଲି ଭୁତପରି ସବୁ ତ କରିଯାଉଚି; କେଜାଣି କ'ଣ ହେବ ? ଏହାହିଁ ଶଙ୍କା ବା ଭୟ । ବିଷୟରେ ରୁଚି ଥିଲେ ସେଥିରୁ ଏହି ଶଙ୍କା ହୁଏ । କ୍ରୋଧ=ବ୍ୟାକୁଳତା, ଛଟପଟ ହେବା, ଶଙ୍କା ବା ସନ୍ଦେହ ଆସିଲେ ଭୋଗ-ବାଟରେ ବାଧା ପଡ଼ିଲେ ଛଟପଟ ହେବା ସ୍ୱାଭାବିକ । ଯୋଗୀର ଏ ସବୁ କିଛି ରହିପାରେ ନାହିଁ । ୫୬ ।

**ଯଃ ସର୍ବତ୍ରାନଭିସ୍ନେହସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭମ୍ ।**
**ନାଭିନନ୍ଦତି ନ ଦ୍ୱେଷ୍ଟି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୭ ।**

**ଅନ୍ୱୟ**—ଯଃ ସର୍ବତ୍ର ଅନଭିସ୍ନେହଃ, ତତ୍ ତତ୍ ଶୁଭାଶୁଭଂ ପ୍ରାପ୍ୟ ନ ଅଭିନନ୍ଦତି, ନ ଦ୍ୱେଷ୍ଟି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା [ଭବତି] । ୫୭ ।

**ଟୀକା**—ଯଃ ସର୍ବତ୍ର ଅନଭିସ୍ନେହଃ (ଗତରାଗଃ) [ସନ୍] ତତ୍ ତତ୍ ଶୁଭାଶୁଭଂ (ହିତଂ ଅହିତଂ ବା) ପ୍ରାପ୍ୟ, [ଶୁଭପ୍ରାପ୍ତୌ] ନ ଅଭିନନ୍ଦତି (ତୁଷ୍ୟତି, ହୃଷ୍ୟତି), [ଅଶୁଭପ୍ରାପ୍ତୌ] ନ ଦ୍ୱେଷ୍ଟି (ବିମନାୟତେ), ତସ୍ୟ ପ୍ରଜ୍ଞା (ବୁଦ୍ଧିଃ) ପ୍ରତିଷ୍ଠିତା (ସ୍ଥିରା) [ଭବତି] । ୫୭ ।

**ଅର୍ଥ**—ଯେ [ଭୋଗ ଲାଭାଦି] ସବୁଥିରେ ସଉକ୍ ଛୁଡ଼ି, [କର୍ମରେ ଲଗି ରହିଥିବାରୁ] ସେଇ ସେଇ କର୍ମର ଫେଯ୍ୟମାନଙ୍କରୁ ଶୁଭ ଅଶୁଭ ପାଇ, ଶୁଭରେ ଖୁସି ହୁଏ ନାହିଁ କି ଅଶୁଭରେ ବିମନା ହୁଏ ନାହିଁ, ତାର ବୁଦ୍ଧି ଠିକ୍ । ୫୭ ।

**ଯଦା ସଂହରତେ ଚାୟଂ କୂର୍ମୋଽଙ୍ଗାନୀବ ସର୍ବଶଃ ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୮ ।**

**ଅନ୍ୱୟ**—ଯଦା ଚ ଅୟଂ କୂର୍ମଃ ଅଂଗାନି ଇବ ଇନ୍ଦ୍ରିୟାର୍ଥେଭ୍ୟଃ ଇନ୍ଦ୍ରିୟାଣି ସର୍ବଶଃ ସଂହରତେ [ତଦା] ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୮ ।

**ଟୀକା**—[ଅପି] ଚ ଯଦା ଅୟଂ (ଯୋଗୀ) କୂର୍ମଃ (କଚ୍ଛପଃ) ଅଙ୍ଗାନି (କୂର୍ମୋ ଯଥା ସ୍ୱଶରୀରେ ଏବ ଅଙ୍ଗାନି ଆକର୍ଷତି ତଦ୍‌ବତ୍) ଇନ୍ଦ୍ରିୟାର୍ଥେଭ୍ୟଃ (ଇନ୍ଦ୍ରିୟେଷୁ, ଇନ୍ଦ୍ରିୟଦ୍ୱାରେଷୁ, ଇନ୍ଦ୍ରିୟବ୍ୟବହାରେଷୁ ବା ଏତେ ଅର୍ଥାଃ ପ୍ରୟୋଜନାନି ଇତି = ଇନ୍ଦ୍ରିୟାର୍ଥାଃ, ତେଭ୍ୟଃ ଇନ୍ଦ୍ରିୟସେବାର୍ଥଂ ପ୍ରୟୋଜନୀୟେଭ୍ୟଃ, ଶବ୍ଦାଦିବିଷୟେଭ୍ୟଃ) ଇନ୍ଦ୍ରିୟାଣି (ଚକ୍ଷୁଃକର୍ଣାଦୀନି) ସର୍ବଶଃ (ସର୍ବତୋଭାବେନ) ସଂହରତେ (ପ୍ରତ୍ୟାହରତି), [ତଦା] ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୮ ।

**ଅର୍ଥ**—ପୁଣି କଇଁଛ ସବୁଆଡ଼ୁ ହାତ ଗୋଡ଼ ମୁହଁ ଟାଣି ଆଣିଲା ପରି ଏ ଲୋକ ଯେତେବେଳେ ଇନ୍ଦ୍ରିୟସେବା ପାଇଁ ଦରକାର ହେଉଥିବା ଦୃଶ୍ୟ, ଖାଦ୍ୟ ପ୍ରଭୃତି ଭୋଗ୍ୟ ବିଷୟରୁ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟମାନଙ୍କୁ ଟାଣି (ବା ଫେରାଇ) ଆଣେ, ସେତିକିବେଳେ ତାର ପ୍ରଜ୍ଞା ସ୍ଥିର ହେଲା [ବୋଲି ବୁଝିବ] । ୫୮ ।

ବ୍ୟାଖ୍ୟା ସୂଚନା—ଇନ୍ଦ୍ରିୟରେ ବା ଇନ୍ଦ୍ରିୟବ୍ୟବହାର କରିବାରେ ଲୋକର ଯାହା ଅର୍ଥ ବା ପ୍ରୟୋଜନ, ତାହା ଇନ୍ଦ୍ରିୟାର୍ଥ; ସାଧାରଣ ଇନ୍ଦ୍ରିୟଭୋଗ ବା ଇନ୍ଦ୍ରିୟ ସେବା । ସେଇ ଇନ୍ଦ୍ରିୟସେବା ପାଇଁ ଇନ୍ଦ୍ରିୟମାନେ ସବୁବେଳେ ତିଆର୍ । ସ୍ଥିରବୁଦ୍ଧି

ଲୋକ ଯେଉଁ ଇନ୍ଦ୍ରିୟମାନଙ୍କୁ ସେ ସବୁ ବିଳାସ, ବ୍ୟସନ, ଭୋଗ ପ୍ରଭୃତି କ୍ରିୟାରୁ ବନ୍ଦ କରେ । ନିଜର ଭୋଗବିଳାସ ପାଇଁ ସେ ଇନ୍ଦ୍ରିୟକୁ ଲଗାଏ ନାହିଁ ।

ଏହି ଶ୍ଳୋକର କଥା ଶୁଣି, ପୁଣି ସନ୍ନ୍ୟାସୀମାନଙ୍କ କ୍ରିୟା ଓ ବ୍ୟବହାରକୁ ମନ ଯାଇପାରେ । ପୂର୍ବେ କୁହାଯାଇଛି, ଆଗେ ବୈଦିକ ଯଜ୍ଞାଦି କରି ପରେ କର୍ମ ଛାଡ଼ି ସନ୍ନ୍ୟାସ କରିବାର ବିଧି ଥିଲା । ସେହି ବିଧି ପରେ ସ୍ମୃତିରେ ଆଶ୍ରମବିଧିରେ ପରିଣତ ହୋଇଥିବାର ଜଣାପଡ଼େ । ଏହି ଆଶ୍ରମ ଚାରୋଟି । ବ୍ରାହ୍ମଣ ଓ କ୍ଷତ୍ରିୟର ଏହି ଚାରି ଆଶ୍ରମରେ ଜୀବନ ଚଳାଇବାର ବିଧି । ଏଥିରେ ପ୍ରଥମ ଆଶ୍ରମରେ ଗୁରୁଙ୍କ ଘରେ ରହି ବେଦ ପଢ଼ିବାକୁ ହୁଏ । ଏହା 'ବ୍ରହ୍ମଚର୍ଯ୍ୟ' ବା ବେଦପାଠ ଆଶ୍ରମ । ଦ୍ୱିତୀୟରେ ବିବାହିତ 'ଗୃହସ୍ଥ'ର ଆଶ୍ରମ । ଏଥିରେ ଯଜ୍ଞାଦି କରିବାର ବିଧି । ଏହି ଯଜ୍ଞାଦି ବା ଯଜନ (ଯଜ୍ଞ କରିବା), ଯାଜନ (ଯଜ୍ଞ କରାଇବା), ଅଧ୍ୟୟନ (ପଢ଼ିବା), ଅଧ୍ୟାପନ (ପଢ଼ାଇବା), ଦାନ (ଦେବା), ପ୍ରତିଗ୍ରହ (ଦାନ ନେବା), ଗୃହସ୍ଥର ନିତ୍ୟକର୍ମ । ତାହା କରିବାକୁ ହେବ । ତୃତୀୟ 'ବାନପ୍ରସ୍ଥ' ଆଶ୍ରମରେ, ଗୃହ ଛାଡ଼ି, ବଣରେ ରହି, ନାନା ବ୍ରତ ଉପବାସ ପ୍ରଭୃତିରେ ଇନ୍ଦ୍ରିୟର ବ୍ୟବହାର ରୋକିବାର ଅଭ୍ୟାସ କରି, ବ୍ରହ୍ମଧ୍ୟାନାଦିର ଯୋଗରେ ମନ ଲଗାଇ, ଜ୍ଞାନନିଷ୍ଠା ପରିପକ୍ୱ କରିବାର ଚେଷ୍ଟା କରିବା । ଚତୁର୍ଥ, 'ସନ୍ନ୍ୟାସ' ଆଶ୍ରମ । ଏଥିରେ ସବୁ ଇନ୍ଦ୍ରିୟର ବ୍ୟବହାର ଏକପ୍ରକାର ବନ୍ଦ କରି, ଆଉ କିଛି କର୍ମ ନ କରି, ଜ୍ଞାନରେ ମନ ଠିକ୍ ରଖି, ଭିକ୍ଷାମାତ୍ରରେ ପେଟ ପୂରାଇ, କୌପୀନଧାରୀ ହୋଇ ବୁଲିବ । ଏହି ସନ୍ନ୍ୟାସୀମାନଙ୍କ ମଧ୍ୟରେ ଜ୍ଞାନରେ ଅତିନିଷ୍ଠା କରିଥିବା ଲୋକଙ୍କୁ 'ନିରାହାର' (୨.୫୯ ଦେଖ) ବୋଲି ମଧ୍ୟ କୁହାଯାଏ । ନିରାହାର ବୋଇଲେ, ଯାହାର ଆହାର ବା ଇନ୍ଦ୍ରିୟଭୋଗ ମୋଟେ ନାହିଁ—ଏମାନେ ଖାଇବା ପିଇବା ପର୍ଯ୍ୟନ୍ତ ରୋକି ବ୍ରହ୍ମଧ୍ୟାନରେ ଦେହ ଛାଡ଼ିବା ଲୋଡ଼ନ୍ତି ।

ଏବେ ଏହି ଶ୍ଳୋକରେ ଭଗବାନ୍ କହିଲେ, ଇନ୍ଦ୍ରିୟସ୍ୱାର୍ଥ ବା ଭୋଗରେ ଯେ ଇନ୍ଦ୍ରିୟକୁ ନ ଲଗାଏ, ତାର ବୁଦ୍ଧି ସ୍ଥିର । ତେବେ କଣ ବାନପ୍ରସ୍ଥର ବ୍ରତ, ଉପବାସ ଓ ସନ୍ନ୍ୟାସୀର ନିରାହାର ହିଁ ଏଠାରେ ଭଗବାନଙ୍କର ଉଦ୍ଦେଶ୍ୟ ? ଏହି ଶଙ୍କା ନିବାରଣ କରି ଭଗବାନ୍ ପର ଶ୍ଳୋକରେ ଆରମ୍ଭ କରୁଛନ୍ତି । ୫୮ ।

**ବିଷୟା ବିନିବର୍ତ୍ତନ୍ତେ ନିରାହାରସ୍ୟ ଦେହିନଃ**
**ରସବର୍ଜଂ ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ । ୫୯ ।**

**ଅନ୍ୱୟ**—ନିରାହାରସ୍ୟ ଦେହିନଃ ରସବର୍ଜଂ ବିଷୟାଃ ବିନିବର୍ତ୍ତନ୍ତେ । ପରଂ ଦୃଷ୍ଟ୍ୱା ଅପି ଅସ୍ୟ ରସଃ ନିବର୍ତ୍ତତେ । ୫୯ ।

**ଟୀକା**—[ନ ତୁ ଏବଂ ବାହ୍ୟବିଷୟତ୍ୟାଗଃ ଶ୍ରେଷ୍ଠିତଃ ଅତ ଇତ୍ୟାହ]—ନିରାହାରସ୍ୟ (ବିଷୟୋପଭୋଗରହିତସ୍ୟ—କଷ୍ଟେନ ତପସି ରତସ୍ୟ ଯଥା) ଦେହିନଃ (ଜନସ୍ୟ) ରସବର୍ଜଂ (ରସଂ ରୁଚିଂ ବର୍ଜୟିତ୍ୱା—ଣମୂଲ୍ ପ୍ରତ୍ୟୟଃ) ବିଷୟାଃ (ଭୋଗାଃ) ବିନିବର୍ତ୍ତନ୍ତେ (ନିବୃତ୍ତାଃ ଭବନ୍ତି)—(ନିରାହାରସ୍ୟ ଭୋଗାଃ ବିନିବର୍ତ୍ତନ୍ତେ—ନ ତୁ ରସାଃ, ଇତି ଭାବଃ), [ପରନ୍ତୁ] ପରଂ [ପରମାତ୍ମାନଂ] ଦୃଷ୍ଟ୍ୱା (ଉପଲଭ୍ୟ) ଅପି (ଏବ) ଅସ୍ୟ ରସଃ, (ବିଷୟାନୁରାଗଃ) ନିବର୍ତ୍ତତେ (ବିଲୁପ୍ୟତେ) । ୫୯ ।

**ଅର୍ଥ**—[ ଖାଲି ବାହାରେ ବିଷୟଭୋଗ ଛାଡ଼ିଦେବା କଥା ଏଠାରେ କୁହାଯାଉ ନାଇ ବୋଲି କହୁଛନ୍ତି । ] ଖାଲି ବିଷୟର ଭୋଗ ବନ୍ଦ କରିଦେବା ଲୋକର (ଯେପରିକି କଠୋର ବ୍ରତ ଉପବାସ କରୁଥିବା ଲୋକର ) ବିଷୟ ଭୋଗ ନ ଥାଏ ସତ, ମାତ୍ର ବିଷୟରୁ ରୁଚି ତୁଟେ ନାହିଁ । ପରଂବ୍ରହ୍ମଙ୍କୁ ଦେଖିଲେ ( ଅନୁଭବରେ ଜାଣିଲେ ) ଯାଇ ତାର ରୁଚି ତୁଟେ । ୫୯ ।

ବ୍ୟାଖ୍ୟା ସୂଚନା—ଉପବାସାଦିରେ କାୟାକୁ ବୃଥା କଷ୍ଟ ଦେଇ ଯୋଗ ସାଧିବା କଥା ଗୀତାରେ ନାହିଁ । ବରଂ ପରିମିତ ଆହାରାଦିରେ ଯୋଗ ସୁଗମ ହୁଏ ବୋଲି ପରେ କୁହାଅଛି । ୬।୧୬.୧୭ ୫.୬ ଦେଖ । ଏଠାରେ ଯୋଗର ପ୍ରଧାନ ସାଧନ ଇନ୍ଦ୍ରିୟସଂଯମ ନିମନ୍ତେ ଈଶ୍ୱରଭାବ ବା ଭକ୍ତି ଯେ ମୁଖ୍ୟ ପନ୍ଥା, ତାହାର ସୂଚନା ଦିଆହେଲା । ପର ଦୁଇ ଶ୍ଳୋକରେ ତାହା ପୁଣି ଭଲକରି କହୁଛନ୍ତି । ୫୯ ।

**ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ ।**
**ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ । ୬୦ ।**

**ଅନ୍ୱୟ**—କୌନ୍ତେୟ ! ହି ପ୍ରମାଥୀନି ଇନ୍ଦ୍ରିୟାଣି ଯତତଃ ବିପଶ୍ଚିତଃ ପୁରୁଷସ୍ୟ ମନଃ ଅପି ପ୍ରସଭଂ ହରନ୍ତି । ୬୦ ।

**ଟୀକା**—[କଥଂ ରସବର୍ଜଂ ଇତ୍ୟାହ ] ହେ କୌନ୍ତେୟ, ହି (ଯତଃ) ପ୍ରମାଥୀନି ମନ୍ଥନକରାଣି, (କ୍ଷୋଭକରାଣି), ଇନ୍ଦ୍ରିୟାଣି, ଯତତଃ (ତପସ୍ୟତଃ, ଉଦ୍ୟୋଗଶୀଳସ୍ୟ) ବିପଶ୍ଚିତଃ (କୁଶଳସ୍ୟ) ପୁରୁଷସ୍ୟ (ଜନସ୍ୟ) ମନଃ ଅପି ପ୍ରସଭଂ (ବଳାତ୍) [ବିଷୟଂ ପ୍ରତି] ହରନ୍ତି (ବିଚାଳୟନ୍ତି) । ୬୦ ।

**ଅର୍ଥ**—[ସେଥିରେ ରୁଚି କାହିଁକି ତୁଟି ଯାଏ ନାହିଁ ? କହୁଛନ୍ତି ] ହେ କୌନ୍ତେୟ, କାହିଁକି ନା, ମନକୁ ମନ୍ଥି ପକାନ୍ତି ଯେଉଁ ଇନ୍ଦ୍ରିୟମାନେ, ସେମାନେ ତପସ୍ୟା (ସମାଧି ବା ଯୋଗର ଉଦ୍ୟମ)ରେ ଲାଗିଥିବା ଚତୁର ଲୋକର ମନକୁ ବି ଜୋର୍ କରି [ ବିଷୟ ଭୋଗ ଆଡ଼କୁ ] ଟାଣି ନିଅନ୍ତି । ୬୦ ।

**ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପରଃ ।**
**ବଶେ ହି ଯସ୍ୟେନ୍ଦ୍ରିୟାଣି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୧ ।**

**ଅନ୍ୱୟ**—ଯୁକ୍ତଃ ତାନି ସର୍ବାଣି ସଂଯମ୍ୟ ମତ୍ପରଃ [ ସନ୍ ] ଆସୀତ । ହି ଇନ୍ଦ୍ରିୟାଣି ଯସ୍ୟ ବଶେ [ ତିଷ୍ଠନ୍ତି ] ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୧ ।

**ଟୀକା**—[ ଅତଏବ ] ଯୁକ୍ତଃ ( ଯୋଗୀ ) ତାନି (ଏବଂଭୂତାନି) ସର୍ବାଣି [ ଇନ୍ଦ୍ରିୟାଣି ] ସଂଯମ୍ୟ ( ସ୍ୱବଶୀକୃତ୍ୟ ) ମତ୍ପରଃ (ମୟି ପରମାତ୍ମନି ଈଶ୍ୱରେ ବା ତନ୍ମୟଃ ) [ ସନ୍ ] ଆସୀତ ( ତିଷ୍ଠେତ୍ ) । ହି ( ଯତଃ ) ଇନ୍ଦ୍ରିୟାଣି ଯସ୍ୟ ବଶେ [ ତିଷ୍ଠନ୍ତି ] ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା—ନ ତୁ ବାହ୍ୟବିଷୟଭୋଗରହିତସ୍ୟ ତପସ୍ୟତଃ ଇତି ଭାବଃ । ୬୧ ।

**ଅର୍ଥ**—[ଅତଏବ] ଯୋଗୀ ସେହି ସବୁ ଇନ୍ଦ୍ରିୟମାନଙ୍କୁ ବିଷୟ-ଭୂମିରୁ ଟାଣି ଆଣି ଆପଣାର ଅଧୀନ କରି, ମୋଠାରେ (ଅର୍ଥାତ୍, ପରମାତ୍ମା ଈଶ୍ୱରରେ ) ତନ୍ମୟ ହୋଇ ରହିବ । କାହିଁକି ନା, ଇନ୍ଦ୍ରିୟ ସବୁ ଯାହାର ଅଧୀନରେ ଥାଆନ୍ତି, ତାର ଏକା ପ୍ରଜ୍ଞା ପ୍ରତିଷ୍ଠିତ (ବା ବୁଦ୍ଧି ଠିକ୍) । ୬୧ ।

ବ୍ୟାଖ୍ୟା ସୂଚନା—ଇନ୍ଦ୍ରିୟକୁ ଆପଣାର ଅଧୀନ ନ କରି, ଖାଲି ଜୋର କରି ଭୋଗ ବନ୍ଦ କରିବା ଲୋକର ବୁଦ୍ଧି ସ୍ଥିର ନୁହେଁ । ପୁଣି ଇନ୍ଦ୍ରିୟକୁ ବଶ କରିବାର ଏକମାତ୍ର ଉପାୟ; ଈଶ୍ୱରରେ ଭକ୍ତି ।

ଏହି ଅଧ୍ୟାୟର ୧୧ଶ ଠାରୁ ୩୮ଶ ଶ୍ଳୋକ ପର୍ଯ୍ୟନ୍ତ ଦେଖି ବା ଜୀବ ଯେ ଜଗତର କର୍ତ୍ତା ଅଧ୍ୟାତ୍ମତତ୍ତ୍ୱ (୨.୧୭), ସେ କଥା ଚେତାଇ ଦେଇ, ଜ୍ଞାନରେ ସେହି ଅଧ୍ୟାତ୍ମ ତତ୍ତ୍ୱକୁ ଧାରଣା କରିଥିବା ଲୋକର ସୁଖଦୁଃଖ, ଲାଭାଲାଭ ପ୍ରଭୃତିକୁ ସମାନ ବିଚାରି କର୍ମ କରିଯିବା କଥା ବୁଝାଗଲା । ପରେ ୩୯ଶ ଶ୍ଳୋକଠାରୁ କର୍ମ କରିବାରେ ଯୋଗର ବ୍ୟାଖ୍ୟା ଦେଇ ସେହି କଥା ବୁଝାଉଛନ୍ତି । ଏହି କର୍ମଆଡ଼ୁ ଦେଖିଲେ ଯୋଗ =ଦ୍ୱନ୍ଦ୍ୱରେ ସମତ୍ୱ (୨.୪୮), ଅର୍ଥାତ୍ ସୁଖଦୁଃଖ, ଲାଭାଲାଭ ପ୍ରଭୃତିରେ ସମାନ ରହିବା । ଏହି ଯୋଗହିଁ କର୍ମରେ କୌଶଳ (୨.୫୦) । ଏହି କର୍ମର ଯୋଗପାଇଁ ବୁଦ୍ଧି ଆତ୍ମଜ୍ଞାନରେ ସ୍ଥିର ହେବା ଉଚିତ । ପୁଣି ୫୪ଶ ଶ୍ଳୋକଠାରୁ ସେହି ସ୍ଥିରବୁଦ୍ଧି ଯୋଗୀକୁ ଚିହ୍ନାଇ କହୁଛନ୍ତି । ଇନ୍ଦ୍ରିୟ-ସଂଯମହିଁ ବୁଦ୍ଧି ସ୍ଥିର ହେବାର ଲକ୍ଷଣ । ମାତ୍ର ପରମାତ୍ମା ପରମେଶ୍ୱରଙ୍କୁ ସାକ୍ଷାତରେ ଜାଣି (୨.୫୯) ସେହି ପରମେଶ୍ୱରରେ ଭକ୍ତିରେ ତତ୍ପର ହୋଇ ନିଜକୁ ଢ଼ାଳି ଦେବାହିଁ ଇନ୍ଦ୍ରିୟ-ସଂଯମର ଶ୍ରେଷ୍ଠ ପନ୍ଥା ବୋଲି ଏଠାରେ କହିଲେ । ଏଇପରି ଜ୍ଞାନ, କର୍ମ ଓ ଭକ୍ତିର ସମନ୍ୱୟରେ

ଏଇ ଯୋଗର ଧାରଣା କଥା, ଏଠାରେ ସୂଚନାରେ ପୂର୍ବପୂର୍ବ କୁହା ହେଲା । ୨. ୩୯ ଟୀକା ଦେଖ ।

ଏଇ ଯୋଗହିଁ ଯଥାର୍ଥ ମୋକ୍ଷ-ସାଧନା । ମୋକ୍ଷରେ ମନ ନ ଥିଲେ, ଏ ଯୋଗ ହୁଏ ନାଇ । ଏ ଯୋଗ ଯାହାର ଠିକ୍ ଅଛି, ତାର ମୋକ୍ଷରେ ମନ ଅଛି ବା ମୋକ୍ଷ ଆଡ଼କୁ ମନ ଦୌଡ଼ୁଛି । ଏହିପରି ମୋକ୍ଷକୁ ମନ ଯାହାର, ତାଙ୍କୁ ଭଗବାନ୍ 'ବିଧେୟାତ୍ମା' କହୁଛନ୍ତି (୨.୬୪ ଦେଖ) । ଅତଏବ ଏହିପରି ବିଧେୟାତ୍ମା ହେଲେ ଜ୍ଞାନତଃ ପରମାତ୍ମତତ୍ତ୍ୱ ବା ଈଶ୍ୱରରେ ମନ ବସିବ, ଇନ୍ଦ୍ରିୟ ଅଣ୍ଡା ହୋଇଯିବ ଓ କର୍ମରେ ସୁଖ ଦୁଃଖାଦି ଦ୍ୱନ୍ଦ୍ୱ ତୁଟିଯିବ । ସ୍ଥୂଳ କଥା, ସେ ଯୋଗ ପାଇଯିବ । ମାତ୍ର ଯେ ଏପରି ବିଧେୟାତ୍ମା ନୁହେ ବା ଯାହାର ଈଶ୍ୱରରେ ମନଧ୍ୟାନ ନାଇ, ସେ ଯେବେ ସନ୍ନ୍ୟାସ କରି ମଧ୍ୟ ଖାଲି ଇନ୍ଦ୍ରିୟକୁ ରୋକି ଅଣ୍ଡା କରିବାକୁ ଯାଏ, ସେ କଣ ଧ୍ୟାନ କରିବ ? ତାର ମନ ଇନ୍ଦ୍ରିୟର ବିଷୟକୁହିଁ ଧ୍ୟାନ କରିବାର ବିଶେଷ ସମ୍ଭାବନା । ସେହିପରି ଲୋକର କଥା କହିବାକୁ ପର ଶ୍ଳୋକରେ ଆରମ୍ଭ କରୁଚନ୍ତି । [ଭକ୍ତି ଛଡ଼ା, ଈଶ୍ୱରଙ୍କ ସାହାଯ୍ୟ ଛଡ଼ା, ମନୁଷ୍ୟର ଯତ୍ନ ମିଥ୍ୟା—ମହାତ୍ମା ଗାନ୍ଧୀ ] । ୬୧ ।

**ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ ।**
**ସଙ୍ଗାତ୍ ସଞ୍ଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ।୬୨।**

**ଅନ୍ୱୟ**—ବିଷୟାନ୍ ଧ୍ୟାୟତଃ ପୁଂସଃ ତେଷୁ ସଙ୍ଗଃ ଉପଜାୟତେ । ସଙ୍ଗାତ୍ କାମଃ ସଞ୍ଜାୟତେ । କାମାତ୍ କ୍ରୋଧଃ ଅଭିଜାୟତେ । ୬୨ ।

**ଟୀକା**—[ ଅବଶେନ୍ଦ୍ରିୟଃ ନିବୃତ୍ତାହାରୋଽପି ବିଷୟଭୋଗ-ସଙ୍କଳ୍ପାଦେବ ବିନଶ୍ୟତି, ଇତ୍ୟାହ ଦ୍ୱାଭ୍ୟାମ୍ ]—[ଗୁଣବୁଦ୍ଧ୍ୟା] ବିଷୟାନ୍ ଧ୍ୟାୟତଃ (ଚିନ୍ତୟତଃ) ପୁଂସଃ (ଜନସ୍ୟ) ତେଷୁ [ ବିଷୟେଷୁ ] ସଙ୍ଗଃ ଆସକ୍ତିଃ ( ପ୍ରୀତିଃ) ଉପଜାୟତେ । ସଙ୍ଗାତ୍ କାମଃ (ଭୋଗତୃଷ୍ଣା) ସଜାୟତେ । [କୁତଶ୍ଚିତ୍ ପ୍ରତିହତାତ୍] କାମାତ୍ କ୍ରୋଧଃ ( ଚିତ୍ତବିକ୍ଷୋଭଃ ) ଅଭିଜାୟତେ ( ଉତ୍ପଦ୍ୟତେ ) ।୬୨।

**ଅର୍ଥ**—[ ଇନ୍ଦ୍ରିୟ ଅଧୀନ ନ କରିଥିବା ଲୋକ ଭୋଗ ଛାଡ଼ିଥିଲେ ବି କେବଳ ବିଷୟ କଳ୍ପନାରୁ କିପରି ନଷ୍ଟ ହୁଏ, ତାହା ଦୁଇ ଶ୍ଳୋକରେ କହୁଚନ୍ତି]— 'ବିଷୟମାନଙ୍କ କଥା ଚିନ୍ତିବାରୁ ହିଁ ସେଥିରେ ସଙ୍ଗ ହୁଏ । ସଙ୍ଗରୁ କାମ (ବା ଭୋଗବାଞ୍ଛା) ବାଢ଼େ । [ କୌଣସି କାରଣରୁ କାମ ବାଧା ପାଇଲେ ] ସେଇ କାମ ବା କାମନାରୁ କ୍ରୋଧ ବା ବ୍ୟାକୁଳତା ଉଠେ । [କାମନାବାଲାର କ୍ରୋଧ କେବେ

ବନ୍ଦ କରନ୍ତେବ ନାଇ; କାରଣ କାମ କେବେ ତୃପ୍ତ ହୁଏ ନାଇ—ମହାତ୍ମା ଗାନ୍ଧୀ ] । ୬୨ ।

**କ୍ରୋଧାଦ୍ ଭବତି ସଂମୋହଃ ସଂମୋହାତ୍ ସ୍ମୃତିବିଭ୍ରମଃ ।**
**ସ୍ମୃତିଭ୍ରଂଶାଦ ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି । ୬୩ ।**

**ଅନ୍ୱୟ**—ସ୍ପଷ୍ଟ । ୬୩ ।

**ଟୀକା**—କ୍ରୋଧାତ୍ ସଂମୋହଃ (ମୂଢ଼ତା, ଚିତ୍ତବିଭ୍ରମଃ, ଜ୍ଞାନଧ୍ୱଂସଃ) ଭବତି; ସଂମୋହାତ୍ ସ୍ମୃତିବିଭ୍ରମଃ ( କୃତସ୍ୟ ବିସ୍ମରଣାତ୍ ବ୍ୟକ୍ତିତ୍ୱବୋଧେ ଭ୍ରାନ୍ତିଃ) [ଜାୟତେ] ସ୍ମୃତିଭ୍ରଂଶାତ୍ ବୁଦ୍ଧିନାଶଃ (କାର୍ଯ୍ୟାକାର୍ଯ୍ୟ ବିଷୟେ ବିଜ୍ଞାନତା) [ଭବତି] ବୁଦ୍ଧିନାଶାତ୍ ପ୍ରଣଶ୍ୟତି (ନଷ୍ଟଃ ଭବତି—ସ୍ୱଶ୍ରେୟଃସାଧନେ ପୁରୁଷାର୍ଥେ ବା ଅଯୋଗ୍ୟଃ ଭବତି—ଇତ୍ୟର୍ଥଃ) । ୬୩ ।

**ଅର୍ଥ**—କ୍ରୋଧରୁ ମୂଢ଼ତା ଆସେ । ମୂଢ଼ତା ଆସିଲେ ହୋସ୍ ଠିକଣା ରହେ ନାଇ । ହୋସ୍ ଠିକଣା ନ ରହିଲେ [ପୂର୍ବାପର ବିଷୟରେ କର୍ତ୍ତବ୍ୟ ନିର୍ଣ୍ଣୟ ରୂପ] ବୁଦ୍ଧି ନାଶ ହୁଏ । ବୁଦ୍ଧି ନାଶ ହେଲେ ଲୋକ ନଷ୍ଟ ହୁଏ; ଅର୍ଥାତ ଅମନୁଷ୍ୟ ହୋଇଯାଏ । ୬୩ ।

ବ୍ୟାଖ୍ୟା ସୂଚନା—ସ୍ମୃତି ବିଭ୍ରମ=ହୋସ୍ ଠିକଣା ନ ରହିବା । ମୁଁ କିଏ ? କଣ କରିଥିଲି ବା କହିଥିଲି ? ଏଇ ସବୁ ସ୍ମରଣର ଧାରା ଠିକ୍ ଥିବାରୁ ମୋର ବ୍ୟକ୍ତିତ୍ୱବୋଧ ଠିକ୍ ଅଛି । ସେଥିପାଇଁ ମୁଁ ପୂର୍ବାପର ବିଷୟରେ ବିବେକ ଲଗାଇ କାର୍ଯ୍ୟ କରିଯାଉଛି । ଏଇ ସ୍ମରଣଧାରା ବା ହୋସ୍ ନ ରହିଲେ, ମୁଁ ଯାହା ତାହା କରିଯିବି ଓ କହିଯିବି । ଉଦାହରଣ ସ୍ୱରୂପ, ଯାହାକୁ ଗୁରୁ ବା ପୂଜ୍ୟ ବୋଲି ମାନି ଆସିଛି, ତାଙ୍କୁ ଆଜି କ୍ରୋଧରେ କାଣ୍ଡଜ୍ଞାନ ହରାଇ ଗାଳି ଦେଲେ ବା ଅପମାନ ଦେଲେ ବୁଝାଯିବ, ମୋର ହୋସ୍ ଠିକଣା ନାହିଁ; ବ୍ୟକ୍ତିତ୍ୱଜ୍ଞାନ ଲୋପ ପାଇଛି । ୬୩ ।

**ରାଗଦ୍ୱେଷବିମୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍ ।**
**ଆତ୍ମବଶ୍ୟୈର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି । ୬୪ ।**

**ଅନ୍ୱୟ**—ତୁ ରାଗଦ୍ୱେଷବିମୁକ୍ତୈଃ ଆତ୍ମବଶ୍ୟୈଃ ଇନ୍ଦ୍ରିୟୈଃ ବିଷୟାନ୍ ଚରନ୍ [ସନ୍] ବିଧେୟାତ୍ମା [ ପୁରୁଷଃ ] ପ୍ରସାଦଂ ଅଧିଗଚ୍ଛତି । ୬୪ ।

**ଟୀକା**—[ପକ୍ଷାନ୍ତରେ] ତୁ ରାଗଦ୍ୱେଷବିମୁକ୍ତୈଃ (ଅନୁରକ୍ତିବିରକ୍ତିଶୂନ୍ୟୈଃ, ବିଷୟାସକ୍ତିବିହୀନୈଃ) ଆତ୍ମବଶ୍ୟୈଃ (ସ୍ୱାଧୀନୈଃ) ଇନ୍ଦ୍ରିୟୈଃ ବିଷୟାନ୍ ଚରନ୍

(ଛୁଟେନ୍ଦ୍ରିୟାନ୍ତଃ) [ସନ୍ ] ବିଧେୟାତ୍ମା (ମୋକ୍ଷାୟ କୃତାତ୍ମା ଯଦ୍‌ବା ଇଚ୍ଛାତଃ କରଣୀୟଃ ଆତ୍ମା ଯସ୍ୟ ସଃ ସ୍ୱାଧୀକାରଗତମନାଃ ) [ପୁରୁଷଃ] ପ୍ରସାଦଂ (ପ୍ରସନ୍ନତାଂ, ଚିତ୍ତଶାନ୍ତିଂ) ଅଧିଗଚ୍ଛତି (ଲଭତେ) । ୬୪ ।

**ଅର୍ଥ**—[ଅନ୍ୟ ପକ୍ଷରେ] କିନ୍ତୁ ବିଷୟରେ ପ୍ରୀତି ବା ବିରକ୍ତିରୁ ଅଲଗା କରି ନିଜର ଅଧୀନରେ ରଖିଥିବା ଇନ୍ଦ୍ରିୟମାନଙ୍କୁ ଯେଉଁ ବିଷୟରେ ଲଗିଇବ୍ଧ ମୋକ୍ଷ ଆଡ଼କୁ ମନ ଠିକ୍ ରଖିଥିବା ଲୋକ (ବିଧେୟାତ୍ମା) ପ୍ରସନ୍ନ ଥାଏ । (ଅର୍ଥାତ୍, ତାଙ୍କ ମନ ଶାନ୍ତ ଓ ନିର୍ମଳ ରହେ । ସେଥିରେ ଦୋଷ, ପ୍ରମାଦ ବା କୁଭାବ ପଶିବାକୁ ଦିଅନ୍ତି ନ ଥାଏ ) । ୬୪ ।

ବ୍ୟାଖ୍ୟା ସୂଚନା—ବିଧେୟାତ୍ମା = ଯାହାର ଆତ୍ମା ମୋକ୍ଷ ଆଡ଼କୁ କରିଯିବା ପାଇଁ ଠିକ୍ ଅଛି ଯେ; ମନକୁ ଜ୍ଞାନ, ଭକ୍ତି ଓ କର୍ମରେ ଈଶ୍ୱରଙ୍କ ଆଡ଼କୁ କରି ରଖିଚି । ଅକୃତାତ୍ମା—୧୫.୧୧; ଅକୃତବୁଦ୍ଧି ୧୮.୧୬ ଦେଖ । ୬୪ ।

ପ୍ରସାଦେ ସର୍ବଦୁଃଖାନାଂ ହାନିରସ୍ୟୋପଜାୟତେ ।
ପ୍ରସନ୍ନଚେତସୋ ହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ । ୬୫ ।

**ଅନ୍ୱୟ**—ପ୍ରସାଦେ [ସତି] ଅସ୍ୟ ସର୍ବଦୁଃଖାନାଂ ହାନିଃ ଉପଜାୟତେ । ହି ପ୍ରସନ୍ନଚେତସଃ ବୁଦ୍ଧିଃ ଆଶୁ ପର୍ଯ୍ୟବତିଷ୍ଠତେ । ୬୫ ।

**ଟୀକା**—[ଏବଂବିଧେ] ପ୍ରସାଦେ (ଶମେ, ଚିତ୍ତଶାନ୍ତୌ) [ସତି] ଅସ୍ୟ [ବିଧେୟାତ୍ମାନଃ ସର୍ବଦୁଃଖାନାଂ ହାନିଃ (ନାଶଃ) ଉପଜାୟତେ (ଭବତି) ହି (ଯତଃ) ପ୍ରସନ୍ନଚେତସଃ (ସୁପ୍ରସନ୍ନମନସଃ, ଶାନ୍ତସ୍ୟ ) ବୁଦ୍ଧିଃ ଆଶୁ (ଶୀଘ୍ରଂ) ପର୍ଯ୍ୟବତିଷ୍ଠତେ (ସ୍ଥିରା ଭବତି) । ୬୫ ।

**ଅର୍ଥ**—[ଏଇପରି] ଚିତ୍ତଶାନ୍ତି ଆସିଲେ ଏଇ ଯୋଗୀର ସବୁ ଦୁଃଖ ନାଶ ହୁଏ । କାହିଁକି ନା, ଶାନ୍ତଚିତ୍ତ ଲୋକର ବୁଦ୍ଧି ସାଙ୍ଗେ ସାଙ୍ଗେ ସ୍ଥିର ହୋଇଯାଏ । ୬୫ ।

ବ୍ୟାଖ୍ୟା ସୂଚନା—ସବୁ ପ୍ରକାର ଦୁଃଖ = ସୁଖ ଦୁଃଖ ସବୁ, ସୁଖ ଦୁଃଖ ଭାବ, କେବଳ ଦୁଃଖ ନୁହେ । ସୁଖ = ଏପରି ଦୁଃଖ ତୁଳନାରେ ଯେଉଁ ସୁଖ, ସେ ବି ଦୁଃଖରେ ଲେଖା ହୁଏ । ଦ୍ୱନ୍ଦ୍ୱହୀନର ସୁଖ ଭିନ୍ନ । ତାହା ଦୁଃଖାନ୍ତ । ତାହା ଶାନ୍ତିର ଆନନ୍ଦ । ୧୮-୩୭ ଟୀକା ଦେଖ । ୬୫ ।

ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା ।
ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ । ୬୬ ।

**ଅନ୍ୱୟ**—ଅଯୁକ୍ତସ୍ୟ ବୁଦ୍ଧିଃ ନ ଅସ୍ତି । ଅଯୁକ୍ତସ୍ୟ ଚ ଭାବନା ନ [ଅସ୍ତି] ଅଭାବୟତଃ ଚ ଶାନ୍ତିଃ ନ [ଅସ୍ତି] ଅଶାଂତସ୍ୟ ସୁଖଂ କୁତଃ [ସ୍ୟାତ୍] । ୬୬ ।

**ଟୀକା**—[ବ୍ୟତିରେକବ୍ୟାପ୍ତିଂ ଅବଲମ୍ବ୍ୟ ତଦେବ ଉପପାଦୟତି]—ଅଯୁକ୍ତସ୍ୟ (ଅଯୋଗିନଃ, ଅବଶେନ୍ଦ୍ରିୟସ୍ୟ—ଇତି ଭାବଃ) ବୁଦ୍ଧିଃ (ଦୃଢ଼ବିବେକଃ) ନ ଅସ୍ତି । ଅଯୁକ୍ତସ୍ୟ ଚ ଭାବନା (ଏକାଗ୍ରଧ୍ୟାନଂ) ନ [ଅସ୍ତି] । ଅଭାବୟତଃ (ଭାବନାହୀନସ୍ୟ) ଶାନ୍ତିଃ ଆତ୍ମନ (ଚିତ୍ତୋପରତିଃ) ନ [ଅସ୍ତି] । ଅଶାନ୍ତସ୍ୟ ସୁଖଂ (ସ୍ଥାୟି ସୁଖଂ) କୁତଃ [ସ୍ୟାତ୍] (ନ ସ୍ୟାଦିତି ଭାବଃ) । ୬୬ ।

**ଅର୍ଥ**—[ନ ହେବା ଆଡ଼ୁ ଦେଖାଇ ସେହି କଥା ପୁଣି ବୁଝାଉଛନ୍ତି]—[ଯେ ଏପରି ଇନ୍ଦ୍ରିୟ ଆୟତ୍ତ କରି ଯୋଗରେ ନ ଲାଗେ] ସେହି ଅଯୁକ୍ତ ବା ଅଯୋଗୀର ବୁଦ୍ଧି (ବିବେକ) ନାହିଁ । ସେହି ଅଯୁକ୍ତର [ଈଶ୍ୱର] ଭାବନା ନାହିଁ । ଭାବନା ନ ଥିବା ଲୋକର ଶାନ୍ତି ନାହିଁ । ଶାନ୍ତି ନ ଥିଲେ ଲୋକର ସୁଖ କାହୁଁ ଆଇଲା ? । ୬୬ ।

ବ୍ୟାଖ୍ୟା ସୂଚନା—ଶାନ୍ତି = ଚିତ୍ତପ୍ରସାଦ । ସୁଖ—ଦୁଃଖାନ୍ତ । ପୂର୍ବଶ୍ଳୋକ ଓ ୧୮-୩୬ ଟୀକା ଦେଖ । ୬୬ ।

**ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋଽନୁବିଧୀୟତେ**
**ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି । ୬୭ ।**

**ଅନ୍ୱୟ**—ହି ଚରତାଂ ଇନ୍ଦ୍ରିୟାଣାଂ ଅନୁ ଯନ୍ମନଃ ବିଧୀୟତେ ତତ୍ ଅସ୍ୟ ପ୍ରଜ୍ଞାଂ, ଅଂଭସି ବାୟୁଃ ନାବଂ ଇବ ହରତି । ୬୭ ।

**ଟୀକା**—[କଥଂ ନ ସୁଖଂ ? ଇତ୍ୟାହ]—ହି ଯତଃ [ ଏବଂଭୂତସ୍ୟ ଅଯୁକ୍ତସ୍ୟ] ମନଃ, ଚରତାଂ (ବିଷୟେଷୁ ରତାନାଂ) ଇନ୍ଦ୍ରିୟାଣାଂ (ମଧ୍ୟେ) ଯତ୍ [ଇନ୍ଦ୍ରିୟଂ] ଅନୁ-(ପଶ୍ଚାତ୍) ବିଧୀୟତେ (କ୍ରିୟତେ—ତେନ ଅଶାନ୍ତେନ ଜନେନ ଇତି ଶେଷଃ) [ମୋକ୍ଷଂ ଅନୁ-ବିଧୀୟତେ ମନଃ ଯେନ ସ 'ବିଧେୟାତ୍ମା'—୨. ୬୪—ଇତ୍ୟୁକ୍ତଂ] ତତ୍ [ଇନ୍ଦ୍ରିୟଂ] ଅସ୍ୟ [ଅଯୁକ୍ତସ୍ୟ ଜନସ୍ୟ] ପ୍ରଜ୍ଞାଂ (ବୁଦ୍ଧିଂ), ଅମ୍ଭସି (ଜଳେ) ବାୟୁଃ (ପ୍ରଭଂଜନଃ) ନାବଂ (ନୌକାଂ) ଇବ ହରତି (ବିକ୍ଷିପତି) ।୬୭।

**ଅର୍ଥ**—[କାହିଁକି ସୁଖ ନାହିଁ ? ବୁଝାଉଛନ୍ତି]—କାହିଁକି ନା, [ଏହି ଅଯୋଗୀର] ମନ, ବିଷୟରେ ମାତିଥିବା ଇନ୍ଦ୍ରିୟଙ୍କ ଭିତରୁ ଯେଉଁ ଇନ୍ଦ୍ରିୟ

ପଛରେ (ଭୋଗ ଅଭିମୁଖ) କରାଇଥାଏ, ସେହି ଇନ୍ଦ୍ରିୟ, ସ୍ୱୀ ବୁଦ୍ଧିକୁ, ପାଣିରେ ଥିବା ନୌକାକୁ ପବନ ଯେପରି, ହରି ନେଇଯାଏ । ୬୭ ।

**ତସ୍ମାଦ୍‌ଯସ୍ୟ ମହାବାହୋ ନିଗୃହୀତାନି ସର୍ବଶଃ ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୮ ।**

**ଅନ୍ୱୟ**—ତସ୍ମାତ୍ ହେ ମହାବାହୋ ! ଯସ୍ୟ ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଭ୍ୟଃ ସର୍ବଶଃ ନିଗୃହୀତାନି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୮ ।

**ଟୀକା**—[ସ୍ଥିତପ୍ରଜ୍ଞଲକ୍ଷଣଂ ସିଦ୍ଧାନ୍ତେନୈବୋପସଂହରତି]—ତସ୍ମାତ୍ (ଅତଏବ) ମହାବାହୋ, ଯସ୍ୟ ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଭ୍ୟଃ (ଇନ୍ଦ୍ରିୟସେବାର୍ଥଂ କାଙ୍କ୍ଷିତବିଷୟେଭ୍ୟଃ) ସର୍ବଶଃ (ସର୍ବଥା) ନିଗୃହୀତାନି (ନିବର୍ତ୍ତିତାନି, ସଂଯତାନି) ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୮ ।

**ଅର୍ଥ**—[ସ୍ଥିତପ୍ରଜ୍ଞର ଲକ୍ଷଣ ଗୋଟିଏ ସିଦ୍ଧାନ୍ତରେ କହି ଶେଷ କରୁଛନ୍ତି]—ତେଣୁ ହେ ମହାବାହୁ, ଯାହାର ଇନ୍ଦ୍ରିୟମାନେ ଇନ୍ଦ୍ରିୟସେବାର ବିଷୟଭୋଗରୁ ସବୁମତେ ସଂଯତ, ତାହାର ପ୍ରଜ୍ଞା [ଏକା] ପ୍ରତିଷ୍ଠିତ (ଅର୍ଥାତ୍, ସେହି ସ୍ଥିତପ୍ରଜ୍ଞ) ।୬୮।

ବ୍ୟାଖ୍ୟା ସୂଚନା—ଏ ପ୍ରକାର ଇନ୍ଦ୍ରିୟସଂଯମ କରିଥିବା ଯୋଗୀଙ୍କୁ ପର ଶ୍ଳୋକରେ 'ସଂଯମୀ' (ଜିତେନ୍ଦ୍ରିୟ) କୁହାଯାଇଛି । ପୂର୍ବରୁ କହିଛନ୍ତି, ଈଶ୍ୱର ଜ୍ଞାନ ଓ ଭକ୍ତି ବିନା ଏ ସଂଯମ ହୁଏ ନାହିଁ । ଏହି ସଂଯମୀର ଇନ୍ଦ୍ରିୟମାନେ କାମରେ ଲାଗିଥିଲେହେଁ, ଇନ୍ଦ୍ରିୟ-ବିଷୟରେ ଏହାର ରସ ବା ରୁଚି ନ ଥାଏ (୨. ୫୯) । ୬୮ ।

**ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ ।**
**ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ ।୬୯।**

**ଅନ୍ୱୟ**—ସର୍ବଭୂତାନାଂ ଯା ନିଶା ତସ୍ୟାଂ ସଂଯମୀ ଜାଗର୍ତ୍ତି । ଭୂତାନି ଯସ୍ୟାଂ ଜାଗ୍ରତି, ପଶ୍ୟତଃ ମୁନେଃ ସା ନିଶା । ୬୯ ।

**ଟୀକା**—[ନନୁ ଇନ୍ଦ୍ରିୟବ୍ୟାପାରେ ରସଶୂନ୍ୟସ୍ୟ ସୁଖଦୁଃଖାଦ୍ୟଭିଜ୍ଞତସ୍ୟ ନିଦ୍ରୈବ କଥଂ ନ ଗମ୍ୟତେ—ଇତ୍ୟାଶଙ୍କ୍ୟ ଆହ]—[ଇନ୍ଦ୍ରିୟଭୋଗରତାନାଂ] ସର୍ବଭୂତାନାଂ (ସାମାନ୍ୟଜନାନାଂ ) ଯା ନିଶା (ନିଦ୍ରାବସ୍ଥା, କର୍ମହୀନତା—ଇତି ଭାବଃ) ତସ୍ୟାଂ [ଅବସ୍ଥାୟାଂ ପୂର୍ବଶ୍ଳୋକୋକ୍ତଃ] ସଂଯମୀ (ବଶ୍ୟେନ୍ଦ୍ରିୟଃ) ଜାଗର୍ତ୍ତି (ଯଥାର୍ଥକର୍ମୀ ବର୍ତ୍ତତେ) । [ତାନି] ଭୂତାନି (ଜନାଃ) ଯସ୍ୟାଂ (ବିଷୟଭୋଗ-ଇତି ଭାବଃ) ଜାଗ୍ରତି (କର୍ମରତାନି ତିଷ୍ଠନ୍ତି), ପଶ୍ୟତଃ (ବିବେକିନଃ—ଈଶ୍ୱରଂ ସାକ୍ଷାତ୍-

କୁର୍ବତଃ) ମୁନେଃ (ବ୍ରହ୍ମରତଯୋଗିନଃ, ସ୍ଥିତପ୍ରଜ୍ଞସ୍ୟ) ସା ନିଶା (ଅକର୍ମାବସରଃ) -ସଃ ତସ୍ୟାଂ ଅବସ୍ଥାୟାଂ ନ ଲିପ୍ୟତେ ଇତ୍ୟର୍ଥଃ) । ୬୯ ।

ଅର୍ଥ—[ତେବେ ଇନ୍ଦ୍ରିୟର ଭୋଗଜନ୍ୟରେ ସୁଖ ଦୁଃଖାଦି ଅନୁଭବ ଯାହାର ନାଇ, ସେ ଲୋକ ଶୋଇଛି ବୋଲି କାହିଁକି ନ କହିବା ? ଏଥିକୁ କହୁଛନ୍ତି]—[ଇନ୍ଦ୍ରିୟ ଭୋଗାଦିରେ ମାତ୍ର ରହିଥିବା] ସାଧାରଣ ଲୋକଙ୍କ ବିଚାରରେ ଯାହା ରାତି, ସେଥିରେ ଜିତେନ୍ଦ୍ରିୟ ଯୋଗୀ ଚେଇଁ ଥାଏ । ଲୋକେ ଯହିଁରେ ଚେଇଁଥାନ୍ତି, ଈଶ୍ୱରଙ୍କୁ ସାକ୍ଷାତ୍ କରି ସେଇ ବିବେକରେ ଠିକ୍ ଥିବା ମୁନିର ସେଇ ହେଉଛି ରାତି । ୬୯ ।

ବ୍ୟାଖ୍ୟା ସୂଚନା—ରାତି = କାମ ନ କରି ଶୋଇବା ବେଳ । ଏଥିରେ ତାର ରାତି ଅର୍ଥାତ୍, ଏହାହିଁ ତାର କାମଦାମ ଛାଡ଼ି ଶୋଇବା ଅବସ୍ଥା । ଏଥିରେ ତାର ନିଜର କିଛି କାମ ନାଇ । ଚେଇଁବା = କାମରେ ଲାଗିବା । ସାଧାରଣ ଲୋକେ ଭୋଗ ପାଇଁ ମମତାରେ ଛଟପଟ ହୋଇ କାମରେ ଲାଗିଥାନ୍ତି । ସେପରି କାମରେ ଯୋଗୀ ମାତେ ନାହିଁ । ସେ ନିର୍ଦ୍ୱନ୍ଦ୍ୱ ଥାଏ । ଲୋକେ କହି ପାରନ୍ତି, ଏ ଲୋକର କାହିଁରେ ମମତା ନାହିଁ, ସୁଖ ନାଇ, ଦୁଃଖ ନାଇ, ଭୋଗପାଇଁ ବ୍ୟସ୍ତ ହେବାର ନାଇ, ଏ ଜଣ ଜୀବନଟା ଯାକ ଶୋଇଛି, ସାରା ଜୀବନଟା ଜଣ ସ୍ଥିର ରାତି ହୋଇଛି ? ଏହିପରି ବାସ୍ତବିକ ଲୋକେ ବୁଝିବା ଅନୁସାରେ ଜୀବନଟା ଯାକ ଯୋଗୀର ରାତି । କିନ୍ତୁ ଯୋଗୀ ଶୋଇ ନ ଥାଏ । ସେ କର୍ମର ତତ୍ତ୍ୱକୁ ଠିକ୍ ବୁଝିଥିବାରୁ ବିଶ୍ୱଦେବତା ବିଧାତାଙ୍କ କର୍ମ ବୋଲି ସବୁ କାମ ନିରାଳମ୍ବ ଭାବରେ କରି ଯାଉଥାଏ । ଲୋକେ ସେ କଥା ବୁଝିପାରନ୍ତି ନାଇ । ଲୋକଙ୍କର ସେଥିରେ କାମ ନ ଥାଏ । ଲୋକଙ୍କର ସାରା ଜୀବନଟା ଅଜ୍ଞାନରେ କଟିଯାଏ । ଏଇ ହିସାବରେ ଦେଖିଲେ, ସାରା ଜୀବନଟା ଲୋକଙ୍କର ରାତି ।

ଯୋଗୀ ଚେଇଁ ଥାଏ ବା ଜ୍ଞାନରେ ଥାଇ କାମ କରୁଥାଏ । ସେଥିରେ ଅର୍ଥାତ୍ ସେଇ କର୍ମର ବିଚାରରେ ଦେଖିଲେ, ଲୋକେ ଅଜ୍ଞାନରେ ପଡ଼ିଥାନ୍ତି, ଅର୍ଥାତ୍ ଶୋଇଥାନ୍ତି । ଲୋକେ ଚେଇଁଥାନ୍ତି, ଅର୍ଥାତ୍ ଛଟପଟ ହୋଇ ସଂସାର କାମରେ ଲାଗିଥାନ୍ତି । ସେଥିରେ ଯୋଗୀର ଟିକିଏ ହେଲେ ହଲଚଲ ହେବାର ନାଇ, ଅର୍ଥାତ୍, ସେହିପରି ଛଟପଟ ହୋଇ କର୍ମ କରିବା ବିଚାରରେ ଦେଖିଲେ, ଯୋଗୀ ଶୋଇଥାଏ । ସେଥିପାଇଁ ସାଧାରଣ ବଚନ ଅଛି "ସଂସାର ମତରେ ଯୋଗିଆ ବାଇ, ଯୋଗିଆ ମତରେ ସଂସାର ବାଇ ।"

ରାତି = ଅନ୍ଧାର, ଅଜ୍ଞାନ । ଚେଇଁବା = ଦିନବେଳ, ଆଲୁଅ, ଜ୍ଞାନ । ଏଇପରି ମଧ୍ୟ ଅର୍ଥ କରାଯାଇ ପାରେ । ସଂସାର ଲୋକର ବିଷୟ ଜ୍ଞାନ, ଯୋଗି-ପକ୍ଷରେ

ଅଜ୍ଞାନ । ଯୋଗୀର ଯାହା ଜ୍ଞାନ, ସଂସାରୀ ଲୋକର ଜ୍ଞାନ ନ ଥାଏ, ସେଥିରେ ସେ ଅଜ୍ଞାନ ।

[ଯହିଁରେ ଭୋଗୀ ସଂସାର-କାଣ୍ଡ ବଢ଼ାଏ ଓ ଈଶ୍ୱରଙ୍କୁ ଭୁଲେ, ସେଥିରେ ସଂଯମୀ ସଂସାର-କାଣ୍ଡର ଖବର ରଖେ ନାଇ ଓ ଈଶ୍ୱରଙ୍କର ସାକ୍ଷାତ୍କାର କରେ—ମହାତ୍ମା ଗାନ୍ଧୀ] । ୬୯ ।

**ଆପୂର୍ଯ୍ୟମାଣମଚଳପ୍ରତିଷ୍ଠଂ**
**ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍ୱତ୍ ।**
**ତଦ୍ୱତ୍ କାମା ଯଂ ପ୍ରବିଶନ୍ତି ସର୍ବେ**
**ସ ଶାନ୍ତିମାପ୍ନୋତି ନ କାମକାମୀ । ୭୦ ।**

**ଅନ୍ୱୟ**—ଆପଃ ଯଦ୍ୱତ୍ ଆପୂର୍ଯ୍ୟମାଣଂ ଅଚଳପ୍ରତିଷ୍ଠଂ ସମୁଦ୍ରଂ ପ୍ରବିଶନ୍ତି, ତଦ୍ୱତ୍ ସର୍ବେ କାମାଃ ଯଂ ପ୍ରବିଶନ୍ତି, ସଃ ଶାନ୍ତିଂ ଆପ୍ନୋତି, କାମକାମୀ ନ । ୭୦ ।

**ଟୀକା**—[ଯତଃ ଚଂଚଳଂ କାମକାମିନଂ ଇବ ସଂଯମିନଂ କାମା ନ ବିଚାଳୟନ୍ତି ଇତି ରୂପକେଣାହ]—ଆପଃ (ଆବିଳାନ୍ୟପି ସ୍ରୋତାଂସି) ଯଦ୍ୱତ୍ (ଯଥା) ଆପୂର୍ଯ୍ୟମାଣଂ [ସଦା ପ୍ରବାହୈଃ ପୂର୍ଣ୍ଣତ୍ୱଂ ଗଚ୍ଛନ୍ତଂ] [ଅଥଚ] ଅଚଳପ୍ରତିଷ୍ଠଂ (କ୍ଷୟ-ବୃଦ୍ଧିହୀନଂ) ସମୁଦ୍ରଂ ପ୍ରବିଶନ୍ତି; ତଦ୍ୱତ୍ (ତଥା) ସର୍ବେ କାମାଃ (ଭୋଗତୃଷ୍ଣାଃ) ଯଂ (ସଂଯମିନଂ) ପ୍ରବିଶନ୍ତି (ଯଂ ପ୍ରାପ୍ୟ ଅନ୍ତର୍ଦଧତେ ଇତି ଭାବଃ) ସଃ ଶାନ୍ତିଂ (ବ୍ରହ୍ମୈକନିଷ୍ଠାଂ, ଚିତ୍ତପ୍ରସାଦଂ କୈବଲ୍ୟଂ ବା) ଆପ୍ନୋତି । କାମକାମୀ (ଭୋଗତୃଷ୍ଣାପରଃ) ନ [ଶାନ୍ତିଂ ଆପ୍ନୋତି] । ୭୦ ।

**ଅର୍ଥ**—[କାହିଁକି ନା, ସାଧାରଣ ଭୋଗୀ ଲୋକ ଯେପରି କାମନାରେ ଛଟପଟ ହୋଇ କାମରେ ଲାଗିଥାନ୍ତି, ସଂଯମୀ ସେପରି ନୁହେ ବୋଲି ରୂପକରେ କହୁଛନ୍ତି]—[ଗୋଳିଆ] ସୁଅପାଣିଯାକ ଯେପରି ସମୁଦ୍ରରେ ପଶୁଥାଏ, ଅଥଚ ସମୁଦ୍ର ଟିକିଏ ସୁଦ୍ଧା ନ ହଲି ସମାନ ଥାଏ, ସେହିପରି [ଗୋଳିଆ] କାମନାଯାକ ଯାହା ଭିତରେ ପଶି ଲୀନ ହୋଇଯାନ୍ତି, ସେଇ ଏକା ଶାନ୍ତି ପାଏ; କାମନା ଲୋଡ଼ିବା ଲୋକ ନୁହେ । ୭୦ ।

ବ୍ୟାଖ୍ୟା ସୂଚନା—ଶାନ୍ତି = ଚିତ୍ତସ୍ଥିରତା, ଚିତ୍ତ ନିର୍ମଳତା; ଏହା ବ୍ରହ୍ମନିଷ୍ଠାରୁ ହୁଏ । ସୁଅପାଣିଯାକ ଯାବନ୍ତି ମଇଳା ଘେନି ଆସି ସମୁଦ୍ରରେ ପଶନ୍ତି । ମାତ୍ର ସମୁଦ୍ର ଯେପରି ନିର୍ମଳ, ସେହିପରି ଥାଏ, ଟିକିଏ ସୁଦ୍ଧା ହଲିଯାଏ ନାଇ । ସେଇପରି କାମନାରେ କ୍ଷୋଭ, ମମତା ପ୍ରଭୃତି ମଇଳା ରହିଛି । ମନକୁ ଠେଲି ଚହଲାଇ ଦେବା

ଜଳ ବେଗ ମଧ୍ୟ ରହିତ। କିନ୍ତୁ ଯୋଗୀର ନିର୍ମଳ ଶାନ୍ତ ମନକୁ ସେ ଗୋଳିଆ କରିପାରେ ନାଇ କି ଚହଲାଇ ପାରେ ନାଇ । ୭୦ ।

ବିହାୟ କାମାନ୍ ଯଃ ସର୍ବାନ୍ ପୁମାଂଶ୍ଚରତି ନିସ୍ପୃହଃ ।
ନିର୍ମମୋ ନିରହଂକାରଃ ସ ଶାନ୍ତିମଧିଗଚ୍ଛତି । ୭୧ ।

**ଅନ୍ୱୟ**—ଯଃ ପୁମାନ୍ ସର୍ବାନ୍ କାମାନ୍ ବିହାୟ ନିସ୍ପୃହଃ ନିର୍ମମଃ [ତଥା] ନିରହଂକାରଃ [ସନ୍] ଚରତି, ସଃ ଶାଂନ୍ତି ଅଧିଗଚ୍ଛନ୍ତି ।୭୧ ।

**ଟୀକା**—[ଅତଏବ] ଯଃ ପୁମାନ୍ (ପୁରୁଷଃ, ଜନଃ) ସର୍ବାନ୍ କାମାନ୍ ବିହାୟ (ତ୍ୟକ୍ତ୍ୱା) ନିସ୍ପୃହଃ (ଫଳେ ଅନାସକ୍ତଃ) ନିର୍ମମଃ (ମମ ତବ ଇତି ମେ ହିରହିତଃ, ଯଦ୍ୱା କର୍ମଣି ମମ ଇତି ଅଭିମାନରହିତଃ) [ତଥା] ନିରହଂକାରଃ (ଅହଂ କରୋମୀତି ପୁରୁଷକାରବୁଦ୍ଧିହୀନଃ) [ସନ୍] [କର୍ମସୁ ] ଚରତି (ବର୍ତ୍ତତେ), ସଃ [ଏବ] ଶାନ୍ତିଂ ଅଧିଗଚ୍ଛତି (ପ୍ରାପ୍ନୋତି) ।

**ଅର୍ଥ**—[ଅତଏବ] ଯେଉଁ ଲୋକ କାମନା ସବୁ ଛାଡ଼ି, କୌଣସି ଭୋଗର ଇଚ୍ଛା ନ ରଖି, ଆମର ଏ କାମ, ଆମେ ଏହା କରୁଚୁ ବୋଲି ଯେଉଁ ମମତା ଓ ଅହଂକାର, ସେ ସବୁ ତୁଟାଇ, [ବିଧାତାଙ୍କ ଶକ୍ତି ନିସ୍ୟାରେ ମୋର ଏହା କରିବାର ଅଛି ବୋଲି କରୁଚି, ଏହିପରି ଭାବି] କର୍ମ କରିଯାଏ, ସେଇ ଶାନ୍ତି ପାଏ । ୭୧ ।

ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି ।
ସ୍ଥିତ୍ୱାସ୍ୟାମନ୍ତକାଲେଽପି ବ୍ରହ୍ମନିର୍ବାଣମୃଚ୍ଛତି । ୭୨ ।

**ଅନ୍ୱୟ**—ପାର୍ଥ ! ଏଷା ବ୍ରାହ୍ମୀ ସ୍ଥିତିଃ । ଏନାଂ ପ୍ରାପ୍ୟ [ଜନଃ] ନ ବିମୁହ୍ୟନ୍ତି । ଅଂତକାଲେଽପି ଅସ୍ୟାଂ ସ୍ଥିତ୍ୱା ବ୍ରହ୍ମନିର୍ବାଣଂ ଋଚ୍ଛନ୍ତି ।୭୨।

**ଟୀକା**—[ଉକ୍ତାଂ ନିଷ୍ଠାଃ ସ୍ତୁବନ୍ ଉପସଂହରତି]—ହେ ପାର୍ଥ, ଏଷା ବ୍ରାହ୍ମୀ (ବ୍ରହ୍ମସଂବନ୍ଧିନୀ) ସ୍ଥିତିଃ (ନିଷ୍ଠା) । ଏନାଂ [ସ୍ଥିତିଂ] ପ୍ରାପ୍ୟ [ଜନଃ] ନ ବିମୁହ୍ୟତି (ମୋହଂ ଗଚ୍ଛତି) ଅନ୍ତକାଳେ (ମରଣମୁହୂର୍ତ୍ତେ) ଅପି ଅସ୍ୟାଂ [ସ୍ଥିତ୍ୟାଂ] ସ୍ଥିତ୍ୱା ବ୍ରହ୍ମ-ନିର୍ବାଣଂ (ବ୍ରହ୍ମଣି ବିଲୟଂ) ଋଚ୍ଛତି (ପ୍ରାପ୍ନୋତି) । ୭୨ ।

**ଅର୍ଥ**—[କୁହାଯାଉଥିବା ସ୍ଥିତପ୍ରଜ୍ଞର ନିଷ୍ଠାକୁ ପ୍ରଶଂସା କରି ଶେଷ କରୁଛନ୍ତି] —ହେ ପାର୍ଥ, ଏ ହେଉଚି ବ୍ରାହ୍ମୀ ସ୍ଥିତି (ଅର୍ଥାତ୍, ବ୍ରହ୍ମରେ ନିଷ୍ଠା) । ଏହାକୁ ପାଇ,

ଲୋକ ଅଉ ମୋହରେ ପଡ଼େ ନା (ଅର୍ଥାତ୍, ବିବେକ ହରାଏ ନାଇ) । ମରଣବେଳେ ବି ଏଥିରେ ରହିଲେ, ଲୋକ ବ୍ରହ୍ମନିର୍ବାଣ ପାଏ (ଅର୍ଥାତ୍, ବ୍ରହ୍ମରେ ଲୀନ ହୁଏ) ।୭୨।

ବ୍ୟାଖ୍ୟା ସୂଚନା—ଜୀବନଯାକ ଅଭ୍ୟାସ ନ କଲେ, ମଲାବେଳେ ଏଇ ନିଷ୍ଠାରେ ରହିବା ଯେ ଏକପ୍ରକାର ଅସମ୍ଭବ, ତାହା ପରେ ବୁଝାଇବେ । ୮.୬.୧୪ ଟୀକା ଦେଖ । ମାତ୍ର ଜୀବନଯାକ ଯାହା ହେଉ, ମଲାବେଳେ ଏଇ ସ୍ଥିତିରେ ରହି ପାରିଲେ ଯେ ମୁକ୍ତ ହୁଏ—ଏହାହିଁ ସ୍ଥିରମତ । ୭୨ ।

[ଏଇ ଦ୍ୱିତୀୟ ଅଧ୍ୟାୟରେ ଯେଉଁ ଜ୍ଞାନ, କର୍ମ ଓ ଭକ୍ତିରେ ମୁକ୍ତିସାଧନା ବା ଯୋଗର କଥା କୁହାଗଲା, ତାହାହିଁ ଗୀତାର ମତ । ଜ୍ଞାନରେ ଆତ୍ମା ଓ ପରମାତ୍ମାଙ୍କ ପ୍ରକାଶକୁ କର୍ମମୟ ବୋଲି ଜାଣିବ; ଭକ୍ତିରେ ସବୁ କର୍ମ ଈଶ୍ୱରଙ୍କର ବୋଲି ବିଶ୍ୱାସ ଓ ନିଜର ଆତ୍ମ ପ୍ରକାଶ ଧର୍ମରେ ଅନାସକ୍ତଭାବରେ ସବୁ କର୍ମ କରି ଯାଉଥିବ—ଏ ସବୁ କଥା ଏ ଅଧ୍ୟାୟରେ ଠିକେ ଠିକେ କୁହାଗଲା । ଏଇ ବିଷୟମାନ ଭଲ କରି ସାଧନ-ପ୍ରଣାଳୀ ଓ ବିଶଦବ୍ୟାଖ୍ୟା ସହିତ ବୁଝାଇବାରେ ପର ଅଧ୍ୟାୟମାନ ଦରକାର ହୋଇଛି ।]



# ତୃତୀୟ ଅଧ୍ୟାୟ

## କର୍ମଯୋଗ

### ଅଧ୍ୟାୟ ପ୍ରବେଶ—

ବ୍ରାହ୍ମୀ ସ୍ଥିତି ପାଇଁ ମନ ଠିକ୍ କରି ସମବୁଦ୍ଧି, ସ୍ଥିତପ୍ରଜ୍ଞ ହେଲେ, କର୍ମ କରିବା ଆଉ କି ଦରକାର—ଏହା ଅର୍ଜୁନ ବୁଝିପାରିଲେ ନାଇ । ସେଥିପାଇଁ ଭଗବାନ୍ କହୁଛନ୍ତି—ସାଂଖ୍ୟମାର୍ଗରେ ରହିଲେ କର୍ମ ନ କରିବାର ବିଧି ଅଛି ସତ, ମାତ୍ର ସେଥିରେ ମଧ୍ୟ ଆଗ ଯଜ୍ଞାଦି କର୍ମ କରି, ଶେଷକୁ କର୍ମ ଛାଡ଼ିବାର ବିଧି । କାରଣ, ସାଂଖ୍ୟ ମତରେ ବି ବିନା କର୍ମସାଧନାରେ ଲୋକ କର୍ମହୀନ ହୋଇ ସିଦ୍ଧି ପାଇପାଏ ନାଇ । ପୁଣି ଜଗତରେ କର୍ମ ନ କରି ରହି ହେବ କାହୁଁ ? ବାହାରେ ପୁଣି କର୍ମ ଛାଡ଼ିଦେଇ ମନରେ କର୍ମକୁ ଭାବିବା ଅସମ୍ଭବ ନୁହେ । ସେଥିପାଇଁ ବେଦରେ ଯେଉଁ ଯଜ୍ଞାର୍ଥ କର୍ମ ବା ଦେବତାଙ୍କ ପାଇଁ କର୍ମ କରିବାର ଅଛି, ତାହାର ତତ୍ତ୍ୱ ବୁଝି ସେଇପରି କର୍ମ କରିବ । ଇନ୍ଦ୍ରିୟାରାମ ହୋଇ ସ୍ୱାର୍ଥପାଇଁ ପୁରୁଷାର୍ଥ କର୍ମ କରିବା ଠିକ୍ ନୁହେ । ସେଥିପାଇଁ ବେଦ ଅନୁସାରେ ଯଜ୍ଞର ତଥ୍ୟ ବୁଝାଇ କହିଚନ୍ତି, ସବୁ କର୍ମ ବ୍ରହ୍ମମୟ, ଅତଏବ ଅନାସକ୍ତ ଯଜ୍ଞାର୍ଥ କର୍ମ କରିବାକୁ ହେବ । ଏଇ କର୍ମରେଇ ବ୍ରାହ୍ମୀ ସ୍ଥିତି ତଥା ଲୋକସ୍ଥିତି । କର୍ମଭ୍ରଷ୍ଟ ହେଲେ ଏଇ ଲୋକସ୍ଥିତି ଅସ୍ତବ୍ୟସ୍ତ ହୋଇଯିବ । ସେଥିଲାଗି 'ଲୋକସଂଗ୍ରହ' ବା ଲୋକସ୍ଥିତି ରକ୍ଷା ନିମନ୍ତେ ବି କର୍ମ କରିବା ଦରକାର । ଏଇଠାରେ ଭଗବାନ୍ ଅନାସକ୍ତ କର୍ମରେ ନିଜକୁ ଉଦାହରଣ ଦେଇ କହିଚନ୍ତି କି, ଏଇ କର୍ମଯୋଗରେ ଈଶ୍ୱରଙ୍କ କର୍ମ ବୋଲି ବିଚାରି, ସ୍ୱଧର୍ମ ଆଚରଣ କରିବାଇ ଶ୍ରେଷ୍ଠ ପନ୍ଥା । କାମ ବା କାମନାରେ ଏ ଜ୍ଞାନ ଲୁପ୍ତ ହୁଏ । ଇନ୍ଦ୍ରିୟମାନଙ୍କରେ, ଏପରି କି ମନ ଓ ବୁଦ୍ଧିରେ ଆତ୍ମା ବୋଲି ଭାବ ଥିଲେ, 'କାମ' ଆସେ । ମାତ୍ର ବୁଦ୍ଧିର ଉପରେ ଆତ୍ମା । ସେଇ ଆତ୍ମଜ୍ଞାନରେ ଇନ୍ଦ୍ରିୟ, ମନ ଓ ବୁଦ୍ଧିରୁ ଆତ୍ମଜ୍ଞାନ ଉଠାଇଲେ, କାମ ଆଉ ରହେ ନାଇ । ଏହାଇ ତୃତୀୟ ଅଧ୍ୟାୟର ସାର କଥା ।

[ଏଇ ଅଧ୍ୟାୟକୁ ଗୀତାର ସ୍ୱରୂପ ଜାଣିବାରେ କୁଂଚି କୁହାଯାଇ ପାରେ । କର୍ମ କିପରି କରିବା ଉଚିତ, ପୁଣି ସଚ୍ଚା କର୍ମ କାହାକୁ କହନ୍ତି, ଏହା ଏଥିରେ ସ୍ପଷ୍ଟ କରାଯାଇଚି । ଫେରି କୁହାଯାଇଚି କି, ସଚ୍ଚା ଜ୍ଞାନ, ପାରମାର୍ଥିକ୍ କର୍ମରେ ପରିଣତ ହେବା ଦରକାର ।—ମହାତ୍ମା ଗାନ୍ଧୀ ]

ଅର୍ଜୁନ ଉବାଚ

**ଜ୍ୟାୟସୀ ଚେତ୍ କର୍ମଣସ୍ତେ ମତା ବୁଦ୍ଧିର୍ଜନାର୍ଦନ ।**
**ତତ୍ କିଂ କର୍ମଣି ଘୋରେ ମାଂ ନିୟୋଜୟସି କେଶବ ।୧।**

**ଅନ୍ୱୟ**—ଜନାର୍ଦ୍ଦନ, କେଶବ, ବୁଦ୍ଧିଃ କର୍ମଣଃ ଜ୍ୟାୟସୀ ତେ ମତା ଚେତ୍, ତତ୍ ମାଂ କିଂ ଘୋରେ କର୍ମଣି ନିୟୋଜୟସି ? । ୧ ।

**ଟୀକା**—[ଉକ୍ତାୟାଂ ବ୍ରାହ୍ମୀସ୍ଥିତୌ ବୁଦ୍ଧିସମତ୍ୱାତ୍ କର୍ମଣଃ ଅବରତ୍ୱଂ ଶ୍ରୁତ୍ୱା ସଶୟତଃ]—ଅର୍ଜୁନଃ ଉବାଚ—ହେ ଜନାର୍ଦନ, ହେ କେଶବ, ବୁଦ୍ଧିଃ (ଜ୍ଞାନାତ୍ ସାମ୍ୟବୁଦ୍ଧିଃ) କର୍ମଣଃ ଜ୍ୟାୟସୀ (ବରା) ତେ (ତବ) ମତା ଚେତ୍ (ଯଦି), ତତ୍ (ତର୍ହି) ମାଂ କିଂ (କଥଂ) [ସ୍ୱଜନନିଧନାତ୍ମକେ, ହିଂସାତ୍ମକେ ବା] ଘୋରେ (ଭୟାବହେ) କର୍ମଣି ନିୟୋଜୟସି (ପ୍ରେରୟସି) ? ୧ ।

**ଅର୍ଥ**—[ଯେଉଁ ବ୍ରାହ୍ମୀସ୍ଥିତି କଥା ଏବେ କୁହାଗଲା, ସେଥିରେ ବୁଦ୍ଧି-ସମତ୍ୱରୁ କର୍ମ ଅତି ନିକୃଷ୍ଟ, ୨.୪୯—ବୋଲି ଶୁଣି ସନ୍ଦେହରେ ପଡ଼ି] ଅର୍ଜୁନ କହିଲେ—ହେ ଜନାର୍ଦ୍ଦନ, ହେ କେଶବ, [ଜ୍ଞାନରେ] ସାମ୍ୟବୁଦ୍ଧି ଧରିବା, କର୍ମଠାରୁ ବଡ଼ ବୋଲି ଯେବେ ତୁମ ମତ, ତେବେ ମୋତେ କାହିଁକି ଏ ଘୋର ଯୁଦ୍ଧକର୍ମରେ ଲଗାଉଛ ? ୧ ।

ବ୍ୟାଖ୍ୟା ସୂଚନା—ବୁଦ୍ଧି = ବୁଦ୍ଧିଯୋଗ (୨.୪୯); ସାଂଖ୍ୟେ ବୁଦ୍ଧି (୨.୩୯) ।୧।

**ବ୍ୟାମିଶ୍ରେଣେବ ବାକ୍ୟେନ ବୁଦ୍ଧିଂ ମୋହୟସୀବ ମେ ।**
**ତଦେକଂ ବଦ ନିଶ୍ଚିତ୍ୟ ଯେନ ଶ୍ରେୟୋଽହମାପ୍ନୁୟାମ୍ । ୨ ।**

**ଅନ୍ୱୟ**—ବ୍ୟାମିଶ୍ରେଣ ଇବ ବାକ୍ୟେନ ମେ ବୁଦ୍ଧିଂ ମୋହୟସି ଇବ, ତତ୍ ନିଶ୍ଚିତ୍ୟ ଏକଂ ବଦ, ଯେନ ଅହଂ ଶ୍ରେୟଃ ଆପ୍ନୁୟାମ୍ । ୨ ।

**ଟୀକା**—[କ୍ୱଚିତ୍ କର୍ମଣଃ କ୍ୱଚିତ୍ ବୁଦ୍ଧେର୍ବା ପ୍ରଶଂସାତ୍ମକେନ] ବ୍ୟାମିଶ୍ରେଣ (ଅତି ମିଶ୍ରିତେନ) ଇବ ବାକ୍ୟେନ ମେ (ମମ) ବୁଦ୍ଧିଂ (ବିଗ୍ରହଶକ୍ତିଂ) ମୋହୟସି (ଆକୁଳାଂ କରୋଷି) ଇବ; ତତ୍ (ଅତଏବ) ନିଶ୍ଚିତ୍ୟ (ନିର୍ଣ୍ଣୀୟ) ଏକଂ ବଦ, ଯେନ ଅହଂ ଶ୍ରେୟଃ [ହିତଂ] ଆପ୍ନୁୟାଂ [ଲଭେୟ] । ୨ ।

**ଅର୍ଥ**—[କେବେ କର୍ମର, କେବେ ବା ଜ୍ଞାନର ପ୍ରଶଂସାରେ] ଗୋଳିଆ ଭଳି ଲଗୁଥିବା କଥାରେ ମୋ ବୁଦ୍ଧିକି ବିଗାଡ଼ି ଦେଲାପରି କରୁଚ; ତେଣୁ ଠିକଣା କରି କଥାଏ କହ, ଯହିଁରେ କି ମତେ ଯଥାର୍ଥ ଶ୍ରେୟ ମିଳିବ । ୨ ।

ବ୍ୟାଖ୍ୟା ସୂଚନା—ଜ୍ଞାନ ହୋଇଗଲେ ବା ଜ୍ଞାନରେ ବୁଦ୍ଧି ସ୍ଥିର ହୋଇଗଲେ କର୍ମ ଛାଡ଼ି ସନ୍ନ୍ୟାସ କରିବାର ଯେ ପ୍ରଚଳିତ ବିଧି ଥିଲା, ସେଥିରେ ଏବେ ଅର୍ଜୁନଙ୍କର ଖୁବ୍ ଆସ୍ଥା । ଭଗବାନ୍ ଖାଲି ଜ୍ଞାନ କଥାକୁ ଦେଖାଇ ଦେହ ବା ଆତ୍ମା ଯେ ନିତ୍ୟ, ମରିବା ମାରିବାରେ କିଛି ଯାଏ ଆସେ ନାହିଁ (୨.୧୧-୨୫) ବୋଲି ବୁଝାଇଲେ, ପୁଣି କହିଲେ, ଆତ୍ମା ଅନିତ୍ୟ ହେଲେ ବି ତ ମରିବ, ତେବେ ମାରିବାରେ ଦୋଷ କଣ (୨.୨୬-୩୦) ? କ୍ଷତ୍ରିୟର ସ୍ୱଧର୍ମ ମରିବା (୨.୩୧-୩୨) । ଯୁଦ୍ଧ ନ କଲେ ଅକୀର୍ତ୍ତି ମିଳିବ (୨.୩୩-୩୬) । ଅର୍ଜୁନ କେବଳ ତତ୍ତ୍ୱାର୍ଥ ବୁଝି ମଧ୍ୟ ଖାଲି ମୋହରେ ପଡ଼ି ଏପରି ହେଉଛନ୍ତି ବୋଲି ଭଗବାନ୍ ଅଚ୍ଛା କରି ପରି କଥାକୁ ସ୍ପୃଷ୍ଟ କରି ଦେଇ ଭଲି ଠିକେ ଠିକେ ଚେତାଇ ଦେଲେ । କିନ୍ତୁ ଅର୍ଜୁନଙ୍କର ମନ ଯେପରି ଅବସ୍ଥାରେ ଥିଲା, ସେଥିରେ ତାଙ୍କୁ ଲାଗିଥିବ, ଖାଲି ଯୁଦ୍ଧକୁ ପ୍ରବର୍ତ୍ତାଇବା ପାଇଁ ଶ୍ରୀକୃଷ୍ଣ ଏସବୁ ଯୁକ୍ତି କରୁଛନ୍ତି । ଭଗବାନ୍ ଶେଷକୁ ଖାଲି ସୁଖଦୁଃଖାଦି ଛାଡ଼ି ଯୁଦ୍ଧ କର ବୋଲି କହିଲେ (୨.୩୮) । ମାତ୍ର ଆତ୍ମଜ୍ଞାନ ସଙ୍ଗେ ଏ କଥାଟି କିପରି ଖାପ ଖାଇଲା, ତା ବୁଝାଇ କହି ନାହାନ୍ତି । ଅର୍ଜୁନ ସେଠାରେ ବୁଝିବା ସ୍ୱାଭାବିକ ଯେ ଜ୍ଞାନୀ ଲୋକ ସୁଖ ଦୁଃଖ ଛାଡ଼ି କର୍ମରେ ଲାଗିବାକୁ ଯିବ କିଆଁ ? ଜ୍ଞାନୀଲୋକର ବା ସ୍ୱଧର୍ମ ନ କଲେ କ୍ଷତି କଣ ? ପଙ୍କକୁ ଯିବ କାହିଁକି—ଗୋଡ଼ ଧୋଇବ କାହିଁକି ? କର୍ମ ଛାଡ଼ିବାର ଯେ ପନ୍ଥା ଜ୍ଞାନୀ ପକ୍ଷରେ ରହିଛି, ସେଥିରେ ତ ଏକାବେଳେ ସ୍ୱଧର୍ମ ସୁଖ ଦୁଃଖ ସବୁ ତୁଟିଯିବ, ଅଥଚ କର୍ମବନ୍ଧନ ନ ଥିବାରୁ ମୁକ୍ତି ନିଶ୍ଚୟ ମିଳିବ ।

ଭଗବାନ୍ ଏଇ ସାଂଖ୍ୟ କଥା କହିସାରି ପୁଣି କର୍ମଯୋଗ ମାର୍ଗରେ ସେଇ କଥା ବୁଝାଇଲେ (୨.୩୯ ଠାରୁ ) । ଏଇ ଯୋଗରେ ଶ୍ରମ ବୃଥା ହୁଏ ନାଇ, କି ବିଘ୍ନ ନାହିଁ, ଏଥିରୁ ଟିକିଏ କଲେ ବି ଲାଭ (୨.୪୦)— ଏହା କହିଛନ୍ତି ସତ; ମାତ୍ର ଖାଲି କର୍ମରେ ଉତ୍ସାହ ଦେବା ପାଇଁ ଏହା ମଧ୍ୟ କୁହାଯାଇ ପାରେ । ସେତିକି ଛଡ଼ା ଏଇ ଯୋଗମାର୍ଗରେ କର୍ମ କିପରି କରିବାକୁ ହେବ, ତାହାଇ ବିଶେଷରେ କହିଲେ । ଜ୍ଞାନ ସେଥିରେ କିପରି ଦରକାରରେ ଆସିବ ତାହା କହିଲେ । ପୁଣି ପ୍ରସଙ୍ଗତଃ ଯଜ୍ଞକର୍ମ ବି ଛାଡ଼ି ଦେବାକୁ ହେବ ବୋଲି ଆଭାସ ଦେଲେ (୨.୪୧-୪୬) । ମାତ୍ର ଯଜ୍ଞ-କର୍ମରେ ମନ ନ ଦେଲେ ବି ନିଷ୍କାମଭାବରେ କର୍ମ କରିବାରେ ବା ମନ ଦେବ କାହିଁକି ? କର୍ମରେ ମନ ନ ଦେଲେ ତ ମୂଳରୁ ଛାଡ଼ିଯିବ । ସେ କଥାର ଉତ୍ତର କଣ ? ବୁଦ୍ଧି ସ୍ଥିର ରଖିବା ବା ଈଶ୍ୱରରେ ଚିତ୍ତ ଦେଇ କର୍ମ କରିବା ବା ଦରକାର କଣ ? କର୍ମ ନ କଲେ କଣ ଈଶ୍ୱରରେ ଚିତ୍ତ ଦେବା ବା ବୁଦ୍ଧି ସ୍ଥିର ରଖିବାରେ କିଛି କ୍ଷତି ହେବ ? ଏ ସବୁର ସମାଧାନ ଭଗବାନ କିଛି କରି ନାହାନ୍ତି । ପୁଣି ସ୍ପଷ୍ଟ କହୁଛନ୍ତି 'ବୁଦ୍ଧି-ଯୋଗରୁ କର୍ମ ତୁଚ୍ଛ' । (୨.୪୯) ।

ଅର୍ଜୁନ ଠିକଣା କରି କିଛି ବୁଝି ପାରିଲେ ନାଇ । ଅର୍ଥାତ୍ ଫେର୍ ଧନୁଶର ଧରି ରଥ ଉପରେ ଯୁଦ୍ଧକୁ ଠିଆ ହେବାକୁ ତାଙ୍କ ମନ ବଳିଲା ନାଇ । ଆପଣା

ଲୋକଙ୍କୁ ମାରି କୁଳକ୍ଷୟ କରିବା ଅଧର୍ମ ବୋଲି ସେ ବୁଝିଥିଲେ—ତାଙ୍କ ମନ ବ ଘାଣ୍ଟି ହେଉଥିଲା । କର୍ମ ଛାଡ଼ିବାକୁ ସେ ବସିଥିଲେ । ସେଥିରେ ପୁଣି ଭଗବାନ୍ ଜ୍ଞାନ-କଥା ବୁଝାଇ ବସିବାରୁ ସାଂଖ୍ୟମାନଙ୍କ କର୍ମ ଛାଡ଼ିବା କଥା ତାଙ୍କ ମନକୁ ଖୁବ୍ ଯାଉଥିବ । ଭଗବାନ୍ କର୍ମସମ୍ବନ୍ଧରେ ଯାହା ବା କହିଲେ, ସେ କଥା ଜ୍ଞାନସଙ୍ଗେ ଖାପ ଖାଇଲା ପରି ତାଙ୍କୁ ଲାଗିଲା ନାହିଁ । ବସ୍ତୁତଃ କର୍ମ କପରି କରିବାକୁ ହବ, ସେତକ ଭଗବାନ୍ କହିଚନ୍ତି, କାହିଁକି ଯେ କରିବାକୁ ହବ ସେ ବିଷୟରେ ସ୍ପଷ୍ଟ ସୂଚନା କିଛି ଦେଇ ନାହାନ୍ତି ।

ସେଥିପାଇଁ ଅର୍ଜ୍ଜୁନ କହିଲେ, "ଜ୍ଞାନଇ ତ ସବୁ ବୋଲି କହୁଚ, ତେବେ ମତେ ଖାଲି ଏ କାମରେ ମତାଉଚ କାହିଁକି ? ହୋଇପାରେ, ମୋହରେ ପଡ଼ି ମୁଁ କର୍ମ ଛାଡ଼ି ଦେଉଚ ବୋଲି ବିଗୃଣ ମତେ ମତାଉଚ । ମାତ୍ର ଜ୍ଞାନରେ କର୍ମ ଛାଡ଼ିବା ତ ମୋହ ନୁହେ ? ତେବେ ଜ୍ଞାନରେ ପୁଣି କର୍ମ କରିବାକୁ ହବ ବୋଲି କାହିଁକି କହୁଚ ? ମତେ ଏ ବଡ଼ ଗୋଳମାଳଆ କଥା ପରି ଲାଗୁଚ । ଏବେ ଠିକଣା କରି କହ, କର୍ମ କରିବି କି ନ କରିବି ? ଯେବେ କରିବି, ତେବେ କାହିଁକି କରିବି ? ସେଥିରେ ମୋର ସଦ୍‌ଗତି ହେବ ତ ?" । ୨ ।

**ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାନଘ ।**
**ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗିନାମ୍ ।୩।**

**ଅନ୍ୱୟ**—ଅନଘ ! ଅସ୍ମିନ୍ ଲୋକେ ପୁରା ଦ୍ୱିବିଧା ନିଷ୍ଠା ମୟା ପ୍ରୋକ୍ତା । ଜ୍ଞାନଯୋଗେନ ସାଂଖ୍ୟାନାଂ [ନିଷ୍ଠା] କର୍ମ ଯୋଗେନ ଯୋଗିନାଂ [ନିଷ୍ଠା] । ୩ ।

**ଟୀକା**—[ଉତ୍ତରେଣ] ଶ୍ରୀ ଭଗବାନ୍ ଉବାଚ—ହେ ଅନଘ (ଅପାପ) [ବ୍ୟାମିଶ୍ରମିବ ମେ ବାକ୍ୟଂ ମନ୍ୟସେ, ଯତଃ] ଅସ୍ମିନ୍ ଲୋକେ (ଜଗତି) [ଯଃ] (ପୁରା) (ପୂର୍ବକାଲାତ୍ ପ୍ରଚଳିତା, ପୂର୍ବତମାତ୍ ଯାବତ୍) ଦ୍ୱିବିଧ ନିଷ୍ଠା (ମୋକ୍ଷତତ୍ପରତା) ଅସ୍ତି, [ସା ଏବ] ମୟା ପ୍ରୋକ୍ତା (ସୂଚିତା ) [କିଂଭୂତା ସା ଦ୍ୱିବିଧା ନିଷ୍ଠା ଇତ୍ୟାହ]—[ଏକା] ଜ୍ଞାନଯୋଗେନ (ଜ୍ଞାନକୃତମୁକ୍ତିସାଧନେନ) ସାଂଖ୍ୟାନାଂ (ସାଂଖ୍ୟମାର୍ଗପରାଣାଂ, ଜ୍ଞାନିନାଂ ବା) [ନିଷ୍ଠା ]; [ଅପରା ଚ] କର୍ମଯୋଗେନ (ସଦା କର୍ମଣି ଯୁକ୍ତତୟା ସହ ସାଧନେନ) ଯୋଗିନାଂ ନିଷ୍ଠା । ୩ ।

**ଅର୍ଥ**—[ଉତ୍ତରରେ] ଶ୍ରୀ ଭଗବାନ୍ କହିଲେ—ହେ ଅନଘ (ନିଷ୍ପାପ) ଅର୍ଜ୍ଜୁନ, [ସେ କଥା ତତେ ଗୋଳମାଳଆ ଲାଗୁଚ, କାହିଁକି କି ନା ] ଏ ଜଗତରେ ପୂର୍ବକାଳରୁ ଚଳିଆସୁଚି ଯେଉଁ ଦୁଇଟି ପ୍ରକାରର ମୋକ୍ଷସାଧନାର ନିଷ୍ଠା (ବା ମୋକ୍ଷ-ମାର୍ଗ) ତା ମୁଁ [ଖାଲି] କହିଦେଲି, [ଭଲ ବୁଝାଇ ଦେଇ ନାହିଁ]; ସେଇ ଦୁଇଟି

ହେଉଛି], ଗୋଟିଏ ଜ୍ଞାନଯୋଗରେ ସାଂଖ୍ୟବାଦୀ ବା ଜ୍ଞାନୀଙ୍କର ନିଷ୍ଠା, ଆଉଟି କର୍ମଯୋଗରେ ଯୋଗୀଙ୍କର ନିଷ୍ଠା । ୩ ।

ବ୍ୟାଖ୍ୟା ସୂଚନା—ଭଗବାନ୍ ଏଠାରେ ଦୁଇ ନିଷ୍ଠାରେ (ଯୋଗ) ଶବ୍ଦ ପ୍ରୟୋଗ କରିଛନ୍ତି । କହିଛନ୍ତି, ସାଂଖ୍ୟମାନଙ୍କର ଜ୍ଞାନଯୋଗ ଓ ଯୋଗୀମାନଙ୍କର କର୍ମଯୋଗ । ତେଣୁ ଏହି ଯୋଗ ଶବ୍ଦର ଅର୍ଥ ଏଠାରେ ପୁଣି ଭଲ କରି ବୁଝି ରଖିବା ଦରକାର । ଆଗେ କହିଛନ୍ତି, ସିଦ୍ଧି ଅସିଦ୍ଧି, ଅର୍ଥାତ୍ କର୍ମର ଫଳାଫଳରେ ସମାନ ରହିବାଇ ଯୋଗ (୨.୪୮) । ପୁଣି କହିଛନ୍ତି, ଯୋଗର କର୍ମ କରିବାରେ ଯଥାର୍ଥ କୌଶଳ । ପୁଣି ଏହି ଯୋଗ ବା କର୍ମକୌଶଳ କାହାର ହୁଏ ? ଯେ ବୁଦ୍ଧି ଠିକ୍ ରଖି କର୍ମ କରୁଥାଏ (୨.୫୦) ଏଇ ବୁଦ୍ଧି ସମାଧିରେ ସ୍ଥିର ହେଲେ ଲୋକ ଯୋଗ ପାଏ ବା ସ୍ଥିତପ୍ରଜ୍ଞ ହୁଏ (୨.୫୩, ୫୪) ପରଂବ୍ରହ୍ମଙ୍କୁ ଦେଖିବାଇ ଏହି ସମାଧି ବା ଆତ୍ମଜ୍ଞାନରେ ସ୍ଥିର ରହିବା (୨ ୫୯) । ଏହିପରି ସମ୍ପୂର୍ଣ୍ଣରେ ଯେ 'ବିଧେୟାତ୍ମା' ତାର ଇନ୍ଦ୍ରିୟମାନେ ଆତ୍ମବଶ; ସେଇ କେବଳ ସବୁ କର୍ମ କରି ମଧ୍ୟ ଇନ୍ଦ୍ରିୟରେ ବିଷୟ ଭୋଗ କରି, କର୍ମରେ ପ୍ରୀତି ବଢ଼େଇ ଗୁଡ଼ ଆତ୍ମାନନ୍ଦ ପାଏ (୨.୬୪) । ଏ ସବୁଥିରେ ଯୋଗର ବ୍ୟାଖ୍ୟା ହୋଇଯାଇଛି । ମୋଟ କଥା, ଯୋଗ କହିଲେ ବୁଦ୍ଧିକୁ ପରଂବ୍ରହ୍ମରେ ସ୍ଥିର ରଖି ସମସ୍ତ କର୍ମ କରିଯିବାର ଏକ ସାଧନପ୍ରଣାଳୀ । ଏଥିରୁ ଯୋଗୀର 'କର୍ମଯୋଗ' କଥା ବୁଝାଗଲା । ମାତ୍ର ଏଠାରେ ଜ୍ଞାନୀର ଜ୍ଞାନଯୋଗ କଣ ? ଭଗବାନ୍ ୨.୧୧-୩୦ ରେ ଦେହ ବା ଆତ୍ମାର ଜ୍ଞାନ କଥା ବୁଝାଇ ସରି ହଠାତ୍ କହିଛନ୍ତି ଯେ "ହେ ଅର୍ଜୁନ, ଏ ଜ୍ଞାନ ଯେବେ ତୋର ଅଛି, ତେବେ ନିଜର ସ୍ୱଧର୍ମରେ ହେଳା କର ନା; ସୁଖ ଦୁଃଖ, ଲାଭ କ୍ଷତି, ଜୟ ପରାଜୟ, ସବୁ ସମାନ ବୋଲି ବିଚାରି ଯୁଦ୍ଧରେ ଲାଗି ଯା ।" (୨ ୩୧-୩୮) । ଭଗବାନଙ୍କ ମତରେ ଏହାହିଁ ଜ୍ଞାନରେ ଯୋଗ ବା 'ଜ୍ଞାନଯୋଗ' । ଏଇପରି ଜ୍ଞାନଯୋଗ ଓ କର୍ମଯୋଗରେ ବସ୍ତୁତଃ କିଛି ପ୍ରଭେଦ ନାଇ ବୋଲି ଭଗବାନ୍ କହିଗଲେ । ଜ୍ଞାନ ଆଡ଼ୁ ବୁଝ ବା କର୍ମ ଆଡ଼ୁ ବୁଝ, ଯେଉଁ ଆଡ଼ୁ ବୁଝ, ଜ୍ଞାନରେ ସ୍ଥିର ରହି କର୍ମସାଧନା ନିର୍ବିକଳ୍ପ ଓ ନିଷ୍କାମଭାବରେ କରିବାର ଅଛି । ଏହାହିଁ ମୋକ୍ଷତତ୍ପର ଲୋକର ମୋକ୍ଷକର୍ମ-ସାଧନା ବା ଯୋଗ (୨.୩୯ ଟୀକା ଦେଖ ) । ଏହାହିଁ ଅର୍ଜୁନଙ୍କୁ ବୁଝାଇବା ଭଗବାନଙ୍କର ଉଦ୍ଦେଶ୍ୟ । ମାତ୍ର ଅର୍ଜୁନ ପକ୍ଷରେ ଏତେ ଅଳ୍ପରେ ବୁଝିବା ଏତେ ସହଜ ହେଲା ନାଇ । ପ୍ରଚଳିତ ମତମାନ ପୁଣି ସେ ଜାଣିଥିଲେ । ସେଇ ପ୍ରଚଳିତ ମତମାନ କଣ, ତା ଟିକିଏ ସୂଚନାରେ ଦେଖାଯାଉ ।

ବେଦରେ ଆଦ୍ୟମକ ଲକ୍ଷ୍ୟ ଯଜ୍ଞାର୍ଥକର୍ମର ଉପଦେଶ । ବ୍ରହ୍ମ କର୍ମମୟ ଓ ଯଜ୍ଞାର୍ଥ ବା ନିଷ୍କାମ କର୍ମସାଧନା ଯଥାର୍ଥ ମୋକ୍ଷସାଧନା । ଏ ସବୁ ଭଗବାନ୍ କ୍ରମେ ବୁଝାଇବେ । (୩.୯ ଟୀକା; ୩.୯-୧୬; ୪. ୨୩-୩୨ ) । ମାତ୍ର ଲୋକରେ ଯଜ୍ଞ, ଅର୍ଥାତ୍ ହୋମ, ପଶୁବଳି ଓ କ୍ରିୟାକାଣ୍ଡହିଁ କର୍ମ ନାମ ପାଇଥିଲା । ଏ କର୍ମ କିପରି ମୋକ୍ଷସାଧନା

ହୋଇପାରେ ? ସେଥିପାଇଁ ଏହାର ବ୍ୟାଖ୍ୟା ବାହାରିଲା । ପରେ ମୀମାଂସା-ଦର୍ଶନରେ ଏହି ବ୍ୟାଖ୍ୟା ବିଧିବଦ୍ଧ ଭାବରେ ଦେଖିବାକୁ ମିଳେ ।

ଏହି ବ୍ୟାଖ୍ୟା ଅନୁସାରେ, ଯଜ୍ଞାର୍ଥ କର୍ମ ଓ ପୁରୁଷାର୍ଥ କର୍ମ ବୋଲି ଦୁଇ ପ୍ରକାର କର୍ମର ଭେଦ କରାଯାଏ । ଯଜ୍ଞ ପାଇଁ ଯାହା କରାଯାଏ, ସେଥିରେ ସ୍ୱାର୍ଥ ନାହିଁ, ତାହା ଯଜ୍ଞାର୍ଥ । ନିଜ ସ୍ୱାର୍ଥପାଇଁ ଯାହା କରାଯାଏ ତାହା ପୁରୁଷାର୍ଥ କର୍ମ (୩ ୯ ଟୀକା) । ଯଜ୍ଞର ଫଳ ମିଳେ ସତ, କିନ୍ତୁ ଫଳ ପାଇବାକୁ ତା କରାହୁଏ ନାହିଁ । ଯଜ୍ଞର ଶ୍ରେଷ୍ଠ ଫଳ ସ୍ୱର୍ଗପ୍ରାପ୍ତି । ଏହି ସ୍ୱର୍ଗପ୍ରାପ୍ତି ହିଁ ସେହି କର୍ମକାଣ୍ଡୀଙ୍କର ମୁକ୍ତି ତାହା ଯଜ୍ଞ କର୍ମରୁ ମିଳିଥାଏ । ସେମାନେ କହନ୍ତି, ଯେଉଁ କର୍ମର ଯାହା ଫଳ, ତା ନିଶ୍ଚୟ ହେବ । ଜ୍ଞାନର ସହିତ କଲେ ଯେ ହେବ, ଜ୍ଞାନ ନ ଥାଇ କଲେ ଯେ ନ ହେବ— ଏହା ନୁହେଁ । ଦୁଧ ପିଇଲେ ବଳ ହେବ, ବିଷ ପିଇଲେ ରୋଗ ବା ମୃତ୍ୟୁ ହେବ । ଏଥିରେ ଜ୍ଞାନ ଥିବା ନ ଥିବାରେ କିଛି ଯାଏ ଆସେ ନାହିଁ । ପୁଣି ସେହି କର୍ମବାଦୀ ବା ମୀମାଂସକମାନେ ସମସ୍ତ କର୍ମକୁ ନିତ୍ୟ, ନୈମିତ୍ତିକ, କାମ୍ୟ, ନିଷିଦ୍ଧ—ଏହିପରି ଚାରିଭାଗରେ ବାଣ୍ଟି ବିଚାର କରନ୍ତି । ସନ୍ଧ୍ୟା, ଉପାସନା, ତର୍ପଣ, ବୈଶ୍ୱଦେବ ପ୍ରଭୃତି ନିତ୍ୟକର୍ମ । କୌଣସି ନିମିତ୍ତ ବା କାରଣ ଉପସ୍ଥିତ ହେଲେ ଯେଉଁ କର୍ମ କରାଯାଏ, ତାହା ନୈମିତ୍ତିକ କର୍ମ—ଯେପରି କି ଗ୍ରହଶାନ୍ତି, ପ୍ରାୟଶ୍ଚିତ୍ତ ପ୍ରଭୃତି । କୌଣସି ଅଭିଳାଷ ସିଦ୍ଧି ପାଇଁ ଯେଉଁ କର୍ମ କରାଯାଏ ତାହା କାମ୍ୟ କର୍ମ; ଯେପରି କି ପୁତ୍ରେଷ୍ଟି ଯାଗ—ଏହା ପୁତ୍ର ପାଇବା ପାଇଁ କରାଯାଏ । ସୁରାପାନ, ଅଗମ୍ୟାଗମନ ପ୍ରଭୃତି ନିଷିଦ୍ଧ କର୍ମ । ନିଷିଦ୍ଧ କର୍ମ କରିବାର ନୁହେଁ ।

କାମ୍ୟ କର୍ମରେ ଅଭିଳାଷ ପୂର୍ଣ୍ଣ ହୋଇପାରେ, ମାତ୍ର ନିତ୍ୟ ଓ ନୈମିତ୍ତିକ କର୍ମ ଏକାନ୍ତ କର୍ତ୍ତବ୍ୟ । ଯେ କୌଣସି କର୍ମ କଥା କହିଲେ, ଏହି ମତର ବିଧି ବ୍ୟାଖ୍ୟା ଜାଣିଥିବା ଲୋକେ ବିଚାର କରି ଯେ କର୍ମଟି କି ପ୍ରକାରର ତାହା କହିଦେବେ । ମାତ୍ର ସେ ଯାହା ହେଉ, ଏହି ମତରେ କର୍ମ ସର୍ବଥା କରିବାର ବିଧି । ଜ୍ଞାନରେ ହେଉ, ଅଜ୍ଞାନରେ ହେଉ, କର୍ମ ସର୍ବଥା କରିବାକୁ ହେବ ଓ କୌଣସି କାମନା ନ ଥିଲେହେଁ କର୍ମର ଫଳ ଫଳିବ । ଯଜ୍ଞ ହିଁ ଶ୍ରେଷ୍ଠ କର୍ମ । ଏଣୁ ମନୁଷ୍ୟ ସବୁବେଳେ ଯଜ୍ଞ ପାଇଁ ସବୁ କରିବ । ଧନ ସଞ୍ଚିଲେ ବି ଯଜ୍ଞ ପାଇଁ ତାହା କରିବ ଇତ୍ୟାଦି । ଏହିପରି ଯଜ୍ଞାର୍ଥ ଧନ ସଞ୍ଚୟାଦି କର୍ମ, ଗୃହସ୍ଥର ନିତ୍ୟ ନୈମିତ୍ତିକ କର୍ମ, ଯାଗଯଜ୍ଞାଦି କର୍ମ କରିବା, ଏକ କର୍ମ ମାର୍ଗ । ଏ ସବୁ କର୍ମରେ ଫଳ ମିଳେ ସତ, ମାତ୍ର ସବୁବେଳେ ସ୍ପଷ୍ଟତଃ ଫଳ ପାଇବା ଲାଗି ଏସବୁ କର୍ମ କରାହୁଏ ନାହିଁ । ହେଲେହେଁ, ଯେଉଁ କର୍ମରେ ଫଳ ଅଛି, ସେ କର୍ମ କରିବାରେ ଫଳର ଅପେକ୍ଷା ଅଛି । ଏପରି କି ନିଷ୍କାମ କର୍ମରେ ମଧ୍ୟ ମୁକ୍ତି ମିଳିବାର ଅଛି । ମୁକ୍ତିକୁ ନିଷ୍କାମ କର୍ମ ବା ଜ୍ଞାନସାଧନାର ଫଳ କୁହାଯାଇପାରେ । ମୁକ୍ତିର ଅପେକ୍ଷାରେହିଁ ଜ୍ଞାନୀ, ତପସ୍ୱୀ ଓ ଯୋଗୀ ସମସ୍ତେ

ଲାଗିଥାନ୍ତି । ସେଥିପାଇଁ ସେମାନଙ୍କୁ ମଧ୍ୟ ମୁମୁକ୍ଷୁ, ମୁକ୍ତି ଇଚ୍ଛା କରିବା ଲୋକ ବା ମୁକ୍ତିକାମୀ ବୋଲି କଥାରେ କୁହାଯାଏ ।

ମାତ୍ର ମୁକ୍ତିର ଆତ୍ମା ବା ବ୍ରହ୍ମର ସ୍ୱରୂପ । ଏହାହିଁ ଜଗତର ତତ୍ତ୍ୱ; ଏହା ଅନନ୍ତ ଓ ସର୍ବାତୀତ । ଏହାକୁ ତୁଳନାରେ ବୁଝିବା ପାଇଁ ଏହାଛଡ଼ା ଆଉ କିଛିନାହିଁ । ଏହାହିଁ ବିଶ୍ୱ, ଏହାହିଁ ସବୁ—ଏହାର ବିକାର ନାହିଁ କି ବର୍ଣ୍ଣନା ନାହିଁ—ଏଥିରୁ ଫେରିବାର ନାହିଁ କି ଏଥିରୁ ବାହାରି କେଉଁଠାକୁ ଯିବାର ନାହିଁ—ଏଥିରେ ତୁ, ମୁଁ ଓ ସମସ୍ତ ବିଶ୍ୱ ନିତ୍ୟଭାବରେ ଏକ ଓ ଅଖଣ୍ଡ । ଏହି ମୁକ୍ତି ଯେବେ କର୍ମର ଫଳ ହୁଏ, ତେବେ ସେ ଫଳର ଅପେକ୍ଷାରେ ମମତାଦି କର୍ମର ଦୋଷ ଆସି ନ ପାରେ—'ମୋର ଏ କର୍ମ, ମୋର ଏ ଫଳ ବୋଲି ଭାବ ରହି ନ ପାରେ । ତେଣୁ ମୁକ୍ତି, କର୍ମର ଫଳ ବୋଲି ଧରାଯାଏ ନାହିଁ । ଯେଉଁ ଫଳର ଭୋଗ ନିତ୍ୟ ନୁହେଁ—କେତେ କାଳରେ ସରିଯାଏ, ଯାହା ଅନ୍ୟ ସଙ୍ଗେ ତୁଳନାରେ ଅଳ୍ପ ବହୁତ ବୋଲି ବୁଝାଯାଏ ଯାହା ହେବା, ନ ହେବା, ବଗିଡ଼ି ଯିବାରେ ଅନ୍ୟର ଅପେକ୍ଷା ଥାଏ, ଯହିଁରେ ମମତା, ଲୋଭ, ଈର୍ଷା, ଦ୍ୱେଷ, ଭୟ, କ୍ରୋଧ ଓ ବ୍ୟାକୁଳତା ପ୍ରଭୃତି ଜନ୍ମିବାର ଆଶଙ୍କା ଥାଏ, ସେହି ଫଳକୁ କର୍ମର ଫଳ କହନ୍ତି ।

ଯଜ୍ଞାଦି କର୍ମରେ ସ୍ୱର୍ଗ ପ୍ରଭୃତି ଫଳ ଅଛି । ବ୍ୟାଖ୍ୟା କରି ଯେତେ ବୁଝାଇଲେ ମଧ୍ୟ, ଫଳର ଅପେକ୍ଷା ଛାଡ଼ି, ସେସବୁ କର୍ମ କରିବା ସମ୍ଭବ ନୁହେଁ । ସେଥିପାଇଁ ଏହି ଯଜ୍ଞାଦି କର୍ମକୁ ଭଗବାନ୍ ସ୍ପଷ୍ଟ ନିନ୍ଦା କରି ଯାଇଛନ୍ତି । (୨.୪୨,୪୬, ୫୨ ଦେଖ) ଏହି ଶ୍ଲୋକରୁ ମଧ୍ୟ ବେଦର ବ୍ରାହ୍ମଣ-ଭାଗର ଶେଷକୁ ଉପନିଷଦର ତତ୍ତ୍ୱ ବାହାରିଥିଲା । କର୍ମକାଣ୍ଡର ଯଜ୍ଞାଦିରେ ମୁକ୍ତି ଖୋଜିବାରେ ହିଁ ବେଦର ଉପନିଷଦମାନ ପ୍ରକାଶ ପାଇଥିଲା ।

ସାଂଖ୍ୟ ବା ଜ୍ଞାନବାଦ ଏହି ଉପନିଷଦମାନଙ୍କର ଏକପ୍ରକାର ବ୍ୟାଖ୍ୟା । ଏହି ଗୀତାର ଯୋଗରେ ଭଗବାନ୍ ସେହି ଉପନିଷଦର ଯଥାର୍ଥ ମର୍ମ ଯାହା, ତାହାହିଁ ଅର୍ଜୁନଙ୍କୁ ବୁଝାଉଛନ୍ତି । ମାତ୍ର ଉପନିଷଦ୍ ସ୍ୱତନ୍ତ୍ର ଗ୍ରନ୍ଥ ନୁହେଁ । ଏହା ବେଦାନ୍ତ ବା ବେଦର ସିଦ୍ଧାନ୍ତ । ଏହା ସମସ୍ତ ବେଦର ସାର । ସଂହିତା ଓ ବ୍ରାହ୍ମଣକୁ ବାଦ୍‌ଦେଇ ଉପନିଷଦ ବିଚାର କରି ଯାଇ ନ ପାରେ । ପୁଣି ସଂହିତାର ମନ୍ତ୍ର ବା ଆରାଧନାର ଉଚ୍ଛ୍ୱାସବାଣୀ ସବୁ ବ୍ରାହ୍ମଣରେ ବ୍ୟବହାର କରି ଯଜ୍ଞ ବା ଯଜ୍ଞାର୍ଥ କର୍ମର ବ୍ୟାଖ୍ୟା ଓ ବିଧାନ କରାଯାଇଛି । ଅତଏବ ବ୍ରାହ୍ମଣରେ ବା ବେଦର ଯଜ୍ଞ ଓ ଯଜ୍ଞାର୍ଥ କର୍ମର ବିଚାର ଛାଡ଼ିଦେଇ କୌଣସି ବୈଦିକ ସିଦ୍ଧାନ୍ତ ହୋଇ ନ ପାରେ । ସେଥିପାଇଁ କର୍ମକାଣ୍ଡୀମାନଙ୍କୁ ନିନ୍ଦା କରି (୨. ୪୨-୪୬) ଭଗବାନ୍ ଏହି ଗୀତାରେ ପରେ ବେଦର ଯଥାର୍ଥ ସିଦ୍ଧାନ୍ତ ପ୍ରକାଶ କରିଛନ୍ତି; ଗୀତାର ଯୋଗରେ ଯଥାର୍ଥ କର୍ମ ଓ ଯଜ୍ଞର ତତ୍ତ୍ୱାର୍ଥ ତଥା ଉପଯୋଗିତା ୩.୯ ଠାରୁ ଆରମ୍ଭ କରି ଏହି ଅଧ୍ୟାୟ ଓ ୪ର୍ଥ ଅଧ୍ୟାୟରେ ବୁଝାଇବେ

(୩.୯ ଟୀକା) । ୧୭ଶ ଓ ୧୮ଶ ଅଧ୍ୟାୟରେ ମଧ୍ୟ ପୁଣି ଯଜ୍ଞ ଦାନ ତପ ସମ୍ପର୍କରେ ଯଜ୍ଞ ଉପରେ ଜୋର ଦେବାର ବର୍ଦ୍ଧ (୧୭.୧୧) ଓ ଏହା ଯେ ନିତ୍ୟ କର୍ମ ଓ ଯଥାର୍ଥ ଚିତ୍ତଶୁଦ୍ଧି-କର (୧୮-୫), ତାହା କହିବେ ।

ଏ ଗଳ୍ପ ଗୀତାରେ ପ୍ରସ୍ତୁତ ଯୋଗ ବା ଯଥାର୍ଥ ବେଦାନ୍ତରେ ଯଜ୍ଞର ଉପଯୋଗିତାର କଥା । ତାହା କ୍ରମେ ସ୍ପଷ୍ଟ ବୁଝାଯିବ । ମାତ୍ର ଉପନିଷଦର ଅନ୍ତର ଏକପ୍ରକାର ସିଦ୍ଧାନ୍ତ, ସାଂଖ୍ୟ ମତର ବେଦାନ୍ତ । ପରେ ତାହାର ବ୍ୟାଖ୍ୟା, କପିଳଙ୍କ ସାଂଖ୍ୟ ଓ ବାଦରାୟଣଙ୍କ ଉତ୍ତରମୀମାଂସା ବା ବେଦାନ୍ତ ଶାସ୍ତ୍ରରେ ପୁଣି ଭିନ୍ନ ଭିନ୍ନ ପ୍ରକାରରେ କରାଯାଇଥିଲା ସତ, ମାତ୍ର ବ୍ୟାଖ୍ୟା ଯାହା ହେଉ, ଏହାର ମୋକ୍ଷ ସାଧନା, ଜ୍ଞାନ-ଯୋଗ ବା ଜ୍ଞାନରେ କର୍ମ କରିବା ନୁହେଁ; ଏହା ହେଉଛି, ଜ୍ଞାନରେ କର୍ମ-ତ୍ୟାଗ । ଏଥିରେ ତେବେ ଯଜ୍ଞର ଉପଯୋଗିତା କଣ ? ଏଇ ସାଂଖ୍ୟମାନେ ମୀମାଂସାର କର୍ମକାଣ୍ଡ ବ୍ୟାଖ୍ୟା ପସନ୍ଦ କରନ୍ତି । କିନ୍ତୁ ମୀମାଂସକମାନେ କହନ୍ତି ଏଇ ଯଥାର୍ଥ କର୍ମ, ସାରା ଜୀବନ କରିବାକୁ ହବ । ଏହା ଛଡ଼ା ଆଉ କର୍ମ ନାଇ, କି କର୍ମରେ ଜ୍ଞାନର ବିଶେଷ କିଛି ଲୋଡ଼ା ନାଇ । କର୍ମ କଲେଇ ଫଳ ଯାହା ହବାର ତା ହବ । ମାତ୍ର ସାଂଖ୍ୟମାନେ ଏତେଦୂର ଯାଆନ୍ତି ନାଇ । ସେମାନେ କହନ୍ତି, ଏଇ ସବୁ ଯଜ୍ଞାଦିକର୍ମରେ ଦେବତାଙ୍କ ପାଇଁ ମନ୍ତ୍ର ବୋଲି, କର୍ମରେ ଲାଗି ଚିତ୍ତ ଶୁଦ୍ଧି କରି ନେବ । ପରେ ଆତ୍ମା ବା ବ୍ରହ୍ମ କ'ଣ, ଆଲୋଚନା କରିବ । ଏଇ ବ୍ରହ୍ମଜ୍ଞାନ ହୋଇ-ଗଲେ କର୍ମ ଛାଡ଼ି ସନ୍ନ୍ୟାସ କରିବ (୨.୪୮ ଟୀକା) । ପର ଶ୍ଳୋକରେ ଭଗବାନ୍ ଏଇ ମତକୁ ଧରି ନିଜର କର୍ମ ବ୍ୟାଖ୍ୟା ଆରମ୍ଭ କରୁଚନ୍ତି । ୩ ।

ଅନଘ = ଅଘ ବା ପାପହୀନ; ଯାହାର ଛନ୍ଦକପଟ ନାଇ । ମତେ କାହିଁକି ଏପରି ମତାଉଚ, ଇମିତି ଗୋଳାଆପୋଳା ଅଠିକଣା କଥାଗୁଡ଼ାଏ କାହିଁକି କହୁଚ, ଠିକ୍ କରି କଥାଏ କହ, ଅର୍ଜୁନ ଜୋଡ଼ ହୋଇ କହିଲାପରି କହିଲେ । ଭଗବାନ୍ ଦେଖିଲେ, ଅର୍ଜୁନଙ୍କ ପ୍ରଶ୍ନରେ କିଛି କାର୍ଯ୍ୟକତାର ଛନ୍ଦ ନାଇ । ସେ ଯଥାର୍ଥରେ ବୁଝିପାରୁ ନାହାନ୍ତି । ତେଣୁ କଥାଁ ନେଇ କରି 'ଅନଘ' ବୋଲି ଆରମ୍ଭ କରୁଛନ୍ତି । (ତୁଳନା ପାଇଁ ୨.୧୧ରେ 'ପ୍ରଜ୍ଞାବାଦ ନ୍ ଭାଷସେ' କଥାକୁ ଦେଖ) ।

**ନ କର୍ମଣାମନାରମ୍ଭାନ୍ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।**
**ନ ଚ ସଂନ୍ୟସନାଦେବ ସିଦ୍ଧିଂ ସମଧିଗଚ୍ଛତି । ୪ ।**

**ଅନ୍ୱୟ**—କର୍ମଣାଂ ଅନାରମ୍ଭାତ୍ ପୁରୁଷଃ ନୈଷ୍କର୍ମ୍ୟଂ ନ ଅଶ୍ନୁତେ । ସଂନ୍ୟସନାତ୍ ଚ ଏବ ସିଦ୍ଧିଂ ନ ସମଧିଗଚ୍ଛତି । ୪ ।

**ଟୀକା**—[କର୍ମମାତ୍ରଂ ସଦୋଷମିତି ନୈଷ୍କର୍ମ୍ୟମେବ ସାଂଖ୍ୟାନାଂ, ସାଧନଂ ତଥାପି ତେଷାମେବ ସିଦ୍ଧାନ୍ତେ] କର୍ମଣାଂ ଅନାରମ୍ଭାତ୍ (ଅନାଚରଣାତ୍—ପ୍ରଥମତଃ

କର୍ମତ୍ୟାଗାଦ୍ଧତ ଗମ୍ୟତେ) ପୁରୁଷଃ (ଜନଃ) ନୈଷ୍କର୍ମ୍ୟ (କର୍ମଶୂନ୍ୟତ୍ୱଂ) ନ ଅଶ୍ନୁତେ (ଅନୁଭବତି) ।(ସନ୍ନ୍ୟସନାତ୍) (କର୍ମ ତ୍ୟାଗାତ୍) ଚ ଏବ (କର୍ମତ୍ୟାଗମାତ୍ରାଦ୍ଧତ ଭାବଃ) [ସଃ] ସିଦ୍ଧିଂ (ସାଧନାୟାଂ ପୂର୍ଣ୍ଣତାଂ, ମୋକ୍ଷଂ) ନ ସମଧିଗଚ୍ଛତି (ଲଭତେ) । (ତେଽପି ଆଦୌ କର୍ମକାଣ୍ଡସାଧନେନ ଚିତ୍ତଶୁଦ୍ଧିଂ କୃତ୍ୱା ତଦନନ୍ତରଂ ନୈଷ୍କର୍ମ୍ୟଂ ଆଚରନ୍ତି— ଇତି ସ୍ପଷ୍ଟାର୍ଥଃ) । ୪ ।

**ଅର୍ଥ**—[କର୍ମ ମାତ୍ରକେ ସ୍ୱାର୍ଥ ଦୋଷ ଅଛି, ଅତଏବ କର୍ମ ଛାଡ଼ି ସନ୍ନ୍ୟାସ କରିବା ଇ ସାଂଖ୍ୟଙ୍କର ସାଧନା, ହେଲେହେଁ ତାଙ୍କର ମତରେ ବି ବୁଝିବାର ତ ଅଛି], ଆଗ କର୍ମ ନ କଲେ ତ ଲୋକ ନୈଷ୍କର୍ମ୍ୟ ପାଏ ନାଇ; କିମ୍ବା ଖାଲି କର୍ମ ଛାଡ଼ି ସନ୍ନ୍ୟାସ କଲକ୍ଷଣି ତ ସିଦ୍ଧି ପାଇଯାଏ ନାଇ । (ସେମାନେ ବି ତ କହନ୍ତି, ଆଗ କର୍ମକାଣ୍ଡରେ ମାତ୍ର ଚିତ୍ତଶୁଦ୍ଧି କରିସାରି, ତା ପରେ କର୍ମ ଛାଡ଼ିବ ବା 'ନୈଷ୍କର୍ମ୍ୟ' ପାଇବ—ଏଇ ଅଭିପ୍ରାୟ) । ୪ ।

ବ୍ୟାଖ୍ୟା ସୂଚନା—ସିଦ୍ଧି=ସାଧନାରେ ପୂର୍ଣ୍ଣତା, ଯେ କୌଣସି ସାଧନା ପୂର୍ଣ୍ଣ ହେଲେ ବା ସାଧନାର ଫଳ ହେଲେ ସିଦ୍ଧି ହେଲା ବୋଲି କୁହାଯାଏ । ଏଠାରେ ସିଦ୍ଧି ବୋଇଲେ ମୋକ୍ଷ । ନୈଷ୍କର୍ମ୍ୟ=କର୍ମଶୂନ୍ୟତା, ସନ୍ନ୍ୟାସ ବା କର୍ମ ଛାଡ଼ି ଦେବାରେ ନୈଷ୍କର୍ମ୍ୟ ହୁଏ । ଏଇ ନୈଷ୍କର୍ମ୍ୟ, ସାଧନାରେ ସିଦ୍ଧି ବା ମୋକ୍ଷ ହୁଏ ବୋଲି ସାଂଖ୍ୟମାନଙ୍କର ମତ (୩.୨ ଟୀକା) । ଏହାକୁ 'ନୈଷ୍କର୍ମ୍ୟସିଦ୍ଧି' କହନ୍ତି । ଅବଶ୍ୟ ଭଗବାନ୍ ଏଠାରେ ନୈଷ୍କର୍ମ୍ୟ ସମ୍ବନ୍ଧରେ ନିଜର ସିଦ୍ଧାନ୍ତ କଥା କହୁ ନାହାନ୍ତି । ସେ କଥା କ୍ରମେ ବୁଝାଇ କହିବେ—ବିଶେଷରେ ୧୮.୪୮, ୪୯ ଦେଖ । ଏବେ କାହିଁକି କର୍ମ କରିବାକୁ ହେବ, ସେଇ କଥା ବୁଝାଇବାକୁ ଆରମ୍ଭ କରୁଛନ୍ତି । ସେଥିପାଇଁ ଏବେ ଶ୍ଳୋକରେ କହୁଛନ୍ତି, ଯେଉଁ ସାଂଖ୍ୟମାନଙ୍କ ମତରେ କର୍ମ ଛାଡ଼ି ଦେଇ ନୈଷ୍କର୍ମ୍ୟ ଧରିବାର ବିଧି, ସେମାନେ ମଧ୍ୟ ମୂଳରୁ ଏକାବେଳେକେ କର୍ମ ଛାଡ଼ି ଦେଇ ଜ୍ଞାନ ଧରି ବସିବାର ବିଧି ନ ଦିଅନ୍ତି ନାଇ । ସେମାନେ କହନ୍ତି, ଲୋକ ନୈଷ୍କର୍ମ୍ୟ ପାଇବା ପାଇଁ ଅର୍ଥାତ୍ କର୍ମ ଛାଡ଼ିବା ପାଇଁ ଆଗ ସଜ୍ଞାନ କର୍ମର ଆରମ୍ଭ ଲଗାଇ ଦିଆର ହେବ । ଏଇପରି ମୂଳରୁ ତ କର୍ମ କରିବାରେଇ ସନ୍ନ୍ୟାସ ସାଧନା ଆରମ୍ଭ କରିବ ? ଆଚ୍ଛା, ପୁଣି ତାଙ୍କ ମତରେ କର୍ମ ଛାଡ଼ି ସନ୍ନ୍ୟାସ କଲକ୍ଷଣି କଣ ସିଦ୍ଧି ପାଇଯିବ ? କର୍ମ ଛାଡ଼ି ମଧ୍ୟ ବ୍ରତ ଉପବାସ ଦି ତପସ୍ୟା କରି ଜ୍ଞାନ ସାଧିବ । ପୁଣି ଧ୍ୟାନ ଯୋଗାଦିରେ ଅଭ୍ୟାସ କରି ସେଇ ଜ୍ଞାନ ସର୍ବଦା ଠିକ୍ ରଖିବ । ଆଚ୍ଛା, ଧର, ବ୍ରତ ଉପବାସାଦି ତପସ୍ୟା ଓ ଧ୍ୟାନ କରିବାରେ ଇନ୍ଦ୍ରିୟ ବେଗ ରୋକିବାକୁ ହୁଏ । ଅତଏବ ସେସବୁ କର୍ମ ନୁହେଁ, କର୍ମରୁ ନିବୃତ୍ତି । ଏଇ 'ନିବୃତ୍ତି'ରେ ତ କର୍ମ ତୁଟେ ନାହିଁ (୨.୫୯, ୩୬) । ତା ଛଡ଼ା ଗାଧୋଇବା, ଖାଇବା ପ୍ରଭୃତି ଶରୀର ନିର୍ବାହ କର୍ମରେ ତ ତାକୁ ନିଷ୍ଟେ ଲଗିବାକୁ ହୁଏ (୩.୮) । ତେବେ ସେ କର୍ମ ଛାଡ଼ିଲା କଣ ? ଛାଡ଼ିବ ବା କପରି ? ଖାଲି ଯଜ୍ଞ କର୍ମ ତ କର୍ମ ନୁହେ । ତେଣୁ ଏଠାରେ ଯେ ଯୁକ୍ତି

କରିବାକୁ ହେବ, ଯେ କଣ ଯଜ୍ଞକର୍ମ ? ଯାହା କରିବାକୁ ହୁଏ ସେ ସବୁ କର୍ମ । ଅତଏବ ଏଇ ସାଂଖ୍ୟମାର୍ଗ ଧଇଲେ ମଧ କର୍ମ ଯେବେ ବରାବର ଛୁଟି ହୁଅନ୍ତା, କିଂବା ଅନ୍ୟ କୌଣସି ସ୍ଥିତିରେ ଯେବେ କର୍ମ ବରାବର ଛୁଟି ହୁଅନ୍ତା, ତେବେ ଅବା ସେଇ ସାଂଖ୍ୟମାର୍ଗର ସନ୍ୟାସ କଥା, କମ୍ବା ଅନ୍ୟ କୌଣସି ପନ୍ଥାର କଥା ବିଚାର କରା-ଯାଆନ୍ତା । କିନ୍ତୁ କୌଣସି ଅବସ୍ଥା ବା ସ୍ଥିତିରେ ଯେ କର୍ମ ଛାଡ଼ିକରି ରହିବା ସମ୍ଭବ ନୁହେ, ଏଇ କଥା ପର ଶ୍ଳୋକରେ କହୁଛନ୍ତି ।

ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍ ।
କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବଃ ପ୍ରକୃତିଜୈର୍ଗୁଣୈଃ । ୫ ।

**ଅନ୍ୱୟ**—ହି ଜାତୁ କଶ୍ଚିତ୍ କ୍ଷଣଂ ଅପି ଅକର୍ମକୃତ୍ ନ ତିଷ୍ଠତି । ହି ପ୍ରକୃତିଜୈଃ ଗୁଣୈଃ ସର୍ବଃ [ଜନଃ] ଅବଶଃ [ସନ୍] କର୍ମ କାର୍ଯ୍ୟତେ । ୫ ।

**ଟୀକା**—[କଥଂ ବା କର୍ମ ତ୍ୟଜ୍ୟତେ ?]—ହି (ଯତଃ) ଜାତୁ (କଦାଚିତ) କଃ ଚିତ୍ କ୍ଷଣ ଅପି ଅକର୍ମକୃତ୍ (କର୍ମାଣି ଅକୁର୍ବାଣଃ) ନ ତିଷ୍ଠତି । ହି (ଯତଃ) ପ୍ରକୃତିଜୈଃ (ସ୍ୱଭାବୋତ୍ପନ୍ନୈଃ) [ପ୍ରବୃତ୍ତିମୂଳୈଃ] ଗୁଣୈଃ ଗୁଣବିକାରୈଃ ସର୍ବଃ [ଅପି ଜନଃ] ଅବଶଃ (ଅସ୍ୱତନ୍ତ୍ରଃ) [ସନ୍] କର୍ମ କାର୍ଯ୍ୟତେ (କର୍ମଣି ପ୍ରବର୍ତ୍ତ୍ୟତେ) । ୫ ।

**ଅର୍ଥ**—[କର୍ମ ଛାଡ଼ିହେବ କିଅବା ?]—କାହିଁକି ନା, କେବେ କେହି କ୍ଷଣେ ହେଲେ ବି କର୍ମ ନ କରି ରହି ନପାରେ । କାରଣ, ପ୍ରକୃତି ବା ସ୍ୱଭାବରୁ ହୋଇଥିବା ଗୁଣବିକାରମାନେ ସମସ୍ତଙ୍କୁ ଝିଙ୍ଗି କାମ କରାନ୍ତି । ପ୍ରକୃତିଜାତ ଗୁଣକଥା ପରେ ବିଶେଷରେ ୧୩ ଅଧ୍ୟାୟଠାରୁ ସେ ଆଡ଼କୁ ଭଲକରି ବୁଝାଇ କୁହାଯାଇଛି । ୫.୧୪; ୭.୪, ୫; ୧୩. ୧୯, ୨୧, ୨୩; ୧୪. ୫; ୧୮. ୪୦, ୪୧, ୬୦ ପ୍ରଭୃତି ଦେଖ । ୫ ।

ବ୍ୟାଖ୍ୟା ସୂଚନା—ଭଗବାନ୍ କାଟିକରି କଥାଟା ଏଠାରେ କହିଦେଲେ ମୁହୂର୍ତ୍ତେ ହେଲେ କର୍ମ ନ କରି କେହି ରହିପାରେ ନାଇ, ବାଧ୍ୟ ହୋଇ ଲୋକକୁ ସର୍ବଦା କର୍ମ କରିବାକୁ ହେବ । ଏଥିରୁ ତ ବୁଝାଯାଉଛି, କର୍ମ କରିବାରୁ ଖସିବାର କିଛିମାତ୍ର ଉପାୟ ନାଇ । ଅର୍ଜୁନଙ୍କର ବୁଝିବାର ଉଦ୍ଦେଶ୍ୟ ଥିଲା, କର୍ମ କରିବା ଭଲ କି ଛାଡ଼ିଦେବା ଭଲ । ଭଗବାନ୍ କହୁଛନ୍ତି, କର୍ମ ଛାଡ଼ିବା ଭଲ କି ମନ୍ଦ ସେ କଥା ବୁଝିବା ଦରକାର ନାଇ । କର୍ମ ଛାଡ଼ି ଦେଲେ ତ ଛାଡ଼ିବାର ଭଲମନ୍ଦ ବିଚାର କରାଯିବ ? କର୍ମ ଯେ ଛାଡ଼ି ହେବ ନାଇ । ଜ୍ଞାନ—ସାଧନା ପାଇଁ ମୌନୀ ଓ ପଦ୍ମନାହାଣ୍ଡି ସ୍ଥଗିତ ହୋଇ ବା ଅନ୍ୟାନ୍ୟ ନାନା ଭାବରେ ଯେଉଁମାନେ କର୍ମ ଛାଡ଼ି ବସନ୍ତି,

ସେମାନେ ଯଥାର୍ଥରେ କର୍ମ ଛାଡ଼ି ପାରନ୍ତି ନାହିଁ, କି ଛାଡ଼ନ୍ତି ନାହିଁ, ତାଙ୍କ ଭିତରୁ କର୍ମ କେବେହେଁ ଯାଏ ନାହିଁ, ସେମାନେ ବୃଥାରେ ଲାଗିଥାଆନ୍ତି, କିମ୍ବା ବାହାନା କରୁଥାନ୍ତି। ସେଇଆ ପର ଶ୍ଲୋକରେ କହୁଛନ୍ତି । [ପୂର୍ବଶ୍ଳୋକ ଟୀକାରେ 'ନିବୃତ୍ତି' ଓ ୫.୫୮ ଟୀକାରେ 'ବାନପ୍ରସ୍ଥ'ର ତପସ୍ୟା ଓ ସନ୍ନ୍ୟାସୀର 'ନିରାହାର' ଦେଖ] । ୫ ।

**କର୍ମେନ୍ଦ୍ରିୟାଣି ସଂଯମ୍ୟ ଯ ଆସ୍ତେ ମନସା ସ୍ମରନ୍ ।**
**ଇନ୍ଦ୍ରିୟାର୍ଥାନ୍ ବିମୂଢ଼ାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ । ୬ ।**

**ଅନ୍ୱୟ**—ଯଃ କର୍ମେନ୍ଦ୍ରିୟାଣି ସଂଯମ୍ୟ ମନସା ଇନ୍ଦ୍ରିୟାର୍ଥାନ୍ ସ୍ମରନ୍ ଆସ୍ତେ, ସଃ ବିମୂଢ଼ାତ୍ମା ମିଥ୍ୟାଚାରଃ ଉଚ୍ୟତେ । ୬ ।

**ଟୀକା**—[ପୁନଃ ବାହ୍ୟତଃ କର୍ମତ୍ୟାଗଃ ନ ନୈଷ୍କର୍ମ୍ୟଂ ଇତ୍ୟାହ]—ଯଃ କର୍ମେନ୍ଦ୍ରିୟାଣି (ବାକ୍‌ପାଣିପାଦପାୟୂପସ୍ଥଂ ପଞ୍ଚ) ସଂଯମ୍ୟ (ନିଗୃହ୍ୟ) ମନସା ଇନ୍ଦ୍ରିୟାର୍ଥାନ୍ (ଇନ୍ଦ୍ରିୟଭୋଗାନ୍) ସ୍ମରନ୍ (ଚିନ୍ତୟନ୍) ଆସ୍ତେ (ତିଷ୍ଠତି), ସଃ ବିମୂଢ଼ାତ୍ମା (ବିମୂଢ଼ଚେତାଃ) ମିଥ୍ୟାଚାରଃ (ମୋଘଯତ୍ନଃ) ଉଚ୍ୟତେ (କଥ୍ୟତେ)—ବ୍ରତୋପବାସାଦି କଷ୍ଟତପାଂସି ନୈଷ୍କର୍ମ୍ୟମାର୍ଗଃ ଇତି ସ୍ପଷ୍ଟମ୍ । ୬ ।

**ଅର୍ଥ**—[ବାହାରର କର୍ମ ତ୍ୟାଗକରି କେହି କର୍ମହୀନ ହୋଇପାରେ ନାହିଁ]—ଯେ [ବାଣୀ, ହାତ, ଗୋଡ ପ୍ରଭୃତି] କର୍ମେନ୍ଦ୍ରିୟମାନଙ୍କୁ ରୋକି ମନରେ ଇନ୍ଦ୍ରିୟର ଭୋଗକଥା ଚିନ୍ତୁଥାଏ, ସେହି ମୂଢ଼ାତ୍ମାକୁ ମିଥ୍ୟାଚାର କୁହାଯାଏ । ୬ ।

ବ୍ୟାଖ୍ୟା ସୂଚନା—ମିଥ୍ୟାଚାର = ଯାହାର ଆଚରଣ ମିଥ୍ୟା ବା ନିଷ୍ଫଳ, ଯାହାର ଶ୍ରମ ପଣ୍ଡ । ଯେଉଁମାନେ ସିଦ୍ଧି ମିଳିବ ବୋଲି ବ୍ରତ, ଉପବାସ ପ୍ରଭୃତି କରି, ବା ଖାଇବା, ଭୋଗ କରିବା ପ୍ରଭୃତି ବନ୍ଦ କରି ତପସ୍ୟା କରନ୍ତି, ସେମାନଙ୍କ କଥା ଏଠାରେ ବିଚାର କରାଯାଉଛି । ଭଗବାନ୍ କହୁଛନ୍ତି, ସେମାନେ ବୃଥାରେ ସେସବୁ କରନ୍ତି । କାରଣ, ସେଥିରେ ନୈଷ୍କର୍ମ୍ୟ ମିଳେ ନାହିଁ । ସେମାନଙ୍କ ଭିତରୁ ବିଷୟର ରୁଚି, ପୁଣି ବିଷୟର କଳ୍ପନା ବା ସଂକଳ୍ପ ତୁଟେ ନାହିଁ । (ରୁଚି ପାଇଁ ୨.୫୯ ରେ 'ରସବର୍ଜଂ' ଇତ୍ୟାଦି ଦେଖ) । ସଂକଳ୍ପ ନ ଛାଡ଼ିଲେ ଯୋଗ ବା ମୋକ୍ଷ ସାଧନା ନାହିଁ । (୪.୨୪; ୬.୨ ଦେଖ) । ୨.୫୯ରେ ଆଭାସ ଦେଇଛନ୍ତି, ନିରାହାରର ବା ଇନ୍ଦ୍ରିୟ କର୍ମ ଛାଡ଼ିବା ଲୋକର ରୁଚି ତୁଟେ ନାହିଁ । ଏଠାରେ ଠିକ୍ ସେଇ କଥା ବୁଝାଉଛନ୍ତି । ଅତଏବ, ଯେ ଇନ୍ଦ୍ରିୟକୁ ରୋକି, ମନେ ମନେ ବିଷୟ କଥା ଭାବେ, ସେଇ ମିଥ୍ୟାଚାର; ଆଉ ଯେ ଇନ୍ଦ୍ରିୟ ରୋକି ବି ବିଷୟ ନ ଭାବେ ସେ ମିଥ୍ୟାଚାର ନୁହେଁ । ଏପରି ଅର୍ଥ ଏ ଶ୍ଳୋକର ଅଭିପ୍ରାୟ ନୁହେଁ । ଏପରି ଅର୍ଥ କଲେ ମନେ ହେବ, ଯେପରି କି କେହି କେହି ଇନ୍ଦ୍ରିୟ ରୋକି ମଧ୍ୟ ବିଷୟ ଚିନ୍ତା କରନ୍ତି ନାହିଁ ।

ଏପରି ବିଚାରିବା ଠିକ୍ ନୁହେ । ବିଶ୍ୱକର୍ମା ବିଧାତାଙ୍କ ବିଷୟରେ ପୂର୍ଣ୍ଣ ଧାରଣା ନ ଥିଲେ ଇନ୍ଦ୍ରିୟ ରୋକିଲେହିଁ ବିଷୟ ଚିନ୍ତା (ରୁଚି ଓ ସଂକଳ୍ପ) ନିଶ୍ଚୟ ରହିବ । ଏହି ରୁଚି ଓ ସଂକଳ୍ପହିଁ କର୍ମ (୪.୧୮) । ପୁଣି ବିଶ୍ୱକର୍ମମୟ ପରମାତ୍ମାଙ୍କୁ ଧାରଣା କରି ପାରିଲେ କର୍ମ ଛାଡ଼ିବା ବା ଇନ୍ଦ୍ରିୟ ରୋକିବା ଦରକାର ହେବ ନାହିଁ ( ୨.୬୧ ) । ସେ ସବୁ କରିବା ଠିକ୍ ନୁହେଁ । ପରେ ଏହା ଭଲ କରି ବୁଝାଇବେ । ୩. ୨୪, ୨୬ରେ 'ଲୋକ ସଂଗ୍ରହ' ଦେଖ ।

କେହି କେହି ମିଥ୍ୟାଚାର ବୋଇଲେ କପଟାଚାର ବା ଭଣ୍ଡ ସନ୍ନ୍ୟାସୀ ବୋଲି ଅର୍ଥ କରନ୍ତି । ସେପରି ଅର୍ଥ ମଧ୍ୟ ଠିକ୍ ନୁହେ । କପଟାଚାରୀ, ଅର୍ଥାତ୍ ସାଧୁତା ଦେଖାଇ ହେବା ଲୋକ, ଛଳନା କରିବା ଲୋକ, ଭଣ୍ଡ ସନ୍ନ୍ୟାସୀ । ଏଗୁଡ଼ାକ ଯେ କିଛି ନୁହନ୍ତି, ତାଙ୍କର ନୈଷ୍କର୍ମ୍ୟ ବା ସିଦ୍ଧି ହୁଏ ନାଇ, ଏ କଥା ଅର୍ଜୁନଙ୍କୁ ବୁଝାଇବା ଦରକାର ନ ଥିଲା । ଏଠାରେ ପ୍ରକୃତ ସାଧନାର ପନ୍ଥା କେଉଁଟି ? ଜ୍ଞାନମାର୍ଗ ପ୍ରକୃତ ପନ୍ଥା କି ନୁହେଁ, ତାହାହିଁ ବିଚାର କରାଯାଉଛି । ସେଥିପାଇଁ ସ୍ପଷ୍ଟ କହୁଛନ୍ତି, ଯେ କର୍ମଛାଡ଼ି ସନ୍ନ୍ୟାସ ସାଧନା କରେ ତାର ଯତ୍ନ ନିଷ୍ଫଳ । [ଯେପରି, ଯେ ବାଣୀକୁ ରୋକେ, କିନ୍ତୁ ମନେ ମନେ କାହାକୁ ଗାଳିଦିଏ, ସେ ମିଥ୍ୟାଚାରୀ—ମହାତ୍ମା ଗାନ୍ଧୀ] । ୬ ।

**ଯସ୍ତ୍ୱିନ୍ଦ୍ରିୟାଣି ମନସା ନିୟମ୍ୟାରଭତେଽର୍ଜୁନ ।**
**କର୍ମେନ୍ଦ୍ରିୟୈଃ କର୍ମଯୋଗମସକ୍ତଃ ସ ବିଶିଷ୍ୟତେ ।୭।**

**ଅନ୍ୱୟ**—ଅର୍ଜୁନ, ଯଃ ତୁ ମନସା ଇନ୍ଦ୍ରିୟାଣି ନିୟମ୍ୟ ଅସକ୍ତଃ [ସନ୍] କର୍ମେନ୍ଦ୍ରିୟୈଃ କର୍ମଯୋଗଂ ଆରଭତେ, ସଃ ବିଶିଷ୍ୟତେ । ୭ ।

**ଟୀକା**—[ଅନ୍ୟଥା, ଅନାସକ୍ତ କର୍ମପରତ୍ୱମେବ ସାଧୁ, ଯତଃ]—ହେ ଅର୍ଜୁନ, ଯଃ ତୁ ମନସା [ଜ୍ଞାନକର୍ମ] ଇନ୍ଦ୍ରିୟାଣି ନିୟମ୍ୟ ( ସଂଯତାନି କୃତ୍ୱା ) ଅସକ୍ତଃ (ଫଳାଭିଳାଷରହିତଃ) [ସନ୍] କର୍ମେନ୍ଦ୍ରିୟୈଃ କର୍ମଯୋଗଂ (କର୍ମାଚରଣଂ ଆରଭତେ) (କରୋତି), ସଃ ବିଶିଷ୍ୟତେ ( ଶ୍ରେଷ୍ଠଃ ଭବତି ) । ୭ ।

**ଅର୍ଥ**—[ ଆସକ୍ତି ଛାଡ଼ି କର୍ମସବୁ କରିବା ଠିକ୍; କାହିଁକି ନା, ]—ହେ ଅର୍ଜୁନ, ଯେ କିନ୍ତୁ [ଜ୍ଞାନ ଓ କର୍ମର] ଇନ୍ଦ୍ରିୟମାନଙ୍କୁ ମନ ବଳରେ ବଶ କରି ଆସକ୍ତି ବା (ଫଳଇଚ୍ଛା) ଛାଡ଼ି କର୍ମେନ୍ଦ୍ରିୟରେ କର୍ମଯୋଗ (ବା ଯୋଗରେ ରହି କର୍ମର ଆଚରଣ) କରିଯାଏ, ସେଇ ଠିକ୍ କରେ । ୭ ।

ବ୍ୟାଖ୍ୟା ସୂଚନା—ଏଇପରି କରିବାହିଁ ଯଥାର୍ଥ ନୈଷ୍କର୍ମ୍ୟ । କର୍ମକୁ ଛାଡ଼ିବାର ଉପାୟ ନାଇ । କର୍ମକୁ ଛାଡ଼ି ବସିବା ଭୁଲ୍ । ଛାଡ଼ି ବସିଲେ ଛାଡ଼ି ତ ହବ ନାଇ; ବରଂ ଫଳରେ ଖାଲି ମିଥ୍ୟାଚାର ବା ପଣ୍ଡଶ୍ରମ ହେବ । ଏଣୁ କର୍ମ ଛାଡ଼ିବା ନୈଷ୍କର୍ମ୍ୟ

ନୁହେ । ଆସକ୍ତି ଛାଡ଼ିବାହିଁ ନୈଷ୍କର୍ମ୍ୟ । ଏହା ଜ୍ଞାନପନ୍ଥୀ ସନ୍ନ୍ୟାସୀଙ୍କର ବୁଝିବା ଉଚିତ ବୋଲି ଭଗବାନ୍ କହୁଚନ୍ତି । ୧୮.୪୮, ୪୯ ଦେଖ । ପାଞ୍ଚ ଜ୍ଞାନ ବା ବୁଦ୍ଧି ଇନ୍ଦ୍ରିୟ ଓ ପାଞ୍ଚ କର୍ମ ଇନ୍ଦ୍ରିୟ ପାଇଁ ୨.୪ ଟୀକା ଦେଖ । [ଟିଲକ୍ ଏଠାରେ ବୁଝାଉଚନ୍ତି—କର୍ମରେ ଦୋଷ, ମାତ୍ର ଦୋଷ ଛାଡ଼ିବା ପାଇଁ କର୍ମ ଛାଡ଼ି ଦେବାର ଉପାୟ ନାଇ । ସେଥିପାଇଁ କର୍ମର ଦୋଷ ଯେପରି ନ ଲାଗିବ ତାର ଉପାୟ କରିବା ଉଚିତ । ଯେପରି ଜ୍ଞ ପାୟରେ ବିଷ ଅଛି, କିନ୍ତୁ କୌଣସି ରୋଗ ଆରାମ କରିବାକୁ ପାରା ଖାଇବାକୁ ହେବ । ସେଥିପାଇଁ ପାରାକୁ ମାରଣ କରି ତାର ଦୋଷ ଛଡ଼ାଇ ଖାଇବାକୁ ହୁଏ । ସେଇପରି କର୍ମରୁ ଆସକ୍ତି ଛଡାଇ ତାକୁ କରିବାକୁ ହୁଏ । ଆସକ୍ତି ହିଁ କର୍ମର ଦୋଷ । ] । ୭ ।

**ନିୟତଂ କୁରୁ କର୍ମ ତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ ।**
**ଶରୀରଯାତ୍ରାପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ । ୮ ।**

**ଅନ୍ୱୟ**—ତ୍ୱଂ ନିୟତଂ କର୍ମ କୁରୁ । ହି ଅକର୍ମଣଃ କର୍ମ ଜ୍ୟାୟଃ, (ଅନ୍ୟଥା) ଅକର୍ମଣଃ ତେ ଶରୀରଯାତ୍ରା ଅପି ନ ପ୍ରସିଦ୍ଧ୍ୟେତ୍ । ୮ ।

**ଟୀକା**—[ଅତଏବ] ତ୍ୱଂ ନିୟତଂ [ସ୍ୱଧର୍ମେ ନିର୍ଦ୍ଦିଷ୍ଟଂ—ଯଦ୍ୱା ଯଥାକ୍ରଂ ଅଧୁନା ତଥା ଆତ୍ମନା ନିୟମିତଂ, (ଅନାସକ୍ତଂ) କର୍ମ କୁରୁ । ହି [ଯତଃ] ଅକର୍ମଣଂ (କର୍ମାକରଣାତ୍) କର୍ମ (କର୍ମଣଃ ଆଚରଣଂ) ଜ୍ୟାୟଃ (ବରଂ) । [ଅନ୍ୟଥା] ଅକର୍ମଣଃ [କର୍ମହୀନସ୍ୟ] ତେ (ତବ) ଶରୀରଯାତ୍ରା (ଶରୀରନିର୍ବାହଃ) ଅପି ନ ପ୍ରସିଦ୍ଧ୍ୟେତ୍ (ଭବେତ୍) । ୮ ।

**ଅର୍ଥ**—[ଅତଏବ] ତୁ ନିୟତ କର୍ମ କର୍ । ଅର୍ଥାତ୍, ଯେଉଁ କର୍ମ କରିବାର ଅଛି, ପୁଣି ତାହା ଯେପରି ଭାବରେ କରିବାର ଅଛି, ତାହାସବୁ ସେଇପରି ଭାବରେ କର୍ ) । କାହିଁକି ନା, କର୍ମ ନ କରିବାଠାରୁ କର୍ମ କରିବା ଭଲ । [ନଇଲେ], କର୍ମ ନ କଲେ ତୋର [ସ୍ନାନ ଭୋଜନାଦି] ଶରୀରଯାତ୍ରା ବି ଚଳିବ ନାଇ । (ଅର୍ଥାତ୍, ଆଉ କିଛି ଚଳିବା ତେଣିକି ଥାଉ, ଶରୀରଯାତ୍ରା ସୁଦ୍ଧା ଚଳିବ ନାଇ) ।୮।

ବ୍ୟାଖ୍ୟା ସୂଚନା—ନିୟତ କର୍ମର ଦୁଇ ପ୍ରକାର ଅର୍ଥ ଏକାଠି କରି ବୁଝିବାକୁ ହେବ । ୧—ନିୟତ, ଅର୍ଥାତ୍, ପୂର୍ବ ଶ୍ଲୋକରେ ଯେପରି କୁହାଯାଇଚି ସେଇପରି ମନରେ ଇନ୍ଦ୍ରିୟକୁ ସଂଯତ କରି ଅନାସକ୍ତ ଭାବରେ କରିବା । କର୍ମ-୫.୭,୯ ମଧ୍ୟ ଦେଖ । ପର ଶ୍ଲୋକରେ ଯଜ୍ଞାର୍ଥ କର୍ମ ବୋଲି ଯାହା କୁହାଯିବ, ତାହା ଏହିପରି ଈଶ୍ୱରଙ୍କ କର୍ମ ବୋଲି ଅନାସକ୍ତ ଭାବରେ କରିବା କର୍ମ । ଏହା ୪ର୍ଥ ଅଧ୍ୟାୟଠାରୁ ତେଣିକି ସ୍ପଷ୍ଟ କରାଯିବ । ପର ଶ୍ଲୋକ ଟୀକା ଓ ୧୮.୫ ଟୀକା ଦେଖ ।

୨—ନିୟତ, ଅର୍ଥାତ୍, ସ୍ୱଧର୍ମରେ ନିର୍ଦ୍ଦିଷ୍ଟ ବା 'ସ୍ୱଭାବନିୟତ', କର୍ମ—୧୮.୪୭ ଦେଖ । ଏଇ ସ୍ୱଭାବନିୟତ କର୍ମ, ବା ସ୍ୱଧର୍ମ ହିଁ, ଯଜ୍ଞାର୍ଥ କରିବାକୁ ହୁଏ । ପରଶ୍ଳୋକ ଟୀକା ଓ ୩.୩୫ ଟୀକା ଦେଖ । ସ୍ୱଧର୍ମ ହିଁ କରିବାର କର୍ମ, ତାହା ଯଜ୍ଞାର୍ଥ ବା ଅନାସକ୍ତ ଭାବରେ ଈଶ୍ୱରଙ୍କର ବୋଲି କରିବାକୁ ହେବ । ଏପରି ଦୁଇ ଅର୍ଥ ଏକାଠି କରି ବୁଝିବାକୁ ହେବ ।

କର୍ମ ନ କରିବାଠାରୁ କରିବା ଭଲ । କାହିଁକି ନା, କର୍ମ ତ ଏକେ ଶୁଦ୍ଧିବାର ଉପାୟ ନାଇ, ପୁଣି ଶୁଦ୍ଧ ବସିଲେ ପଣ୍ଡଶ୍ରମ ଓ ଭଣ୍ଡାମି ହେବାର ଶଙ୍କା ରହୁଚି । ଏଥିପାଇଁ କରିବା ଭଲ ଓ ତାକୁହିଁ ଯେପରି କରିବା ଉଚିତ, ସେହିପରି ଠିକ୍ ମତେ କରିବା ହିଁ ଯୋଗ ଓ ମୋକ୍ଷର ସାଧନା ।

ଶରୀରକୁ ସୁସ୍ଥ, ସୁନ୍ଦର ରଖି ଚଳାଇବାଇ 'ଶରୀରଯାତ୍ରା'—ଶରୀରରେ ମୁକ୍ତଆଡ଼କୁ ଯାତ୍ରା । ସେଥିପାଇଁ ଶରୀର ଶୁଦ୍ଧି ବା ଶୌଚ ମୁକ୍ତିକାମୀର ନିତ୍ୟକର୍ତ୍ତବ୍ୟ । ଏହା ଜ୍ଞାନ-ଲକ୍ଷଣ, ୧୩.୭ ଦେଖ । ସମସ୍ତ କର୍ମ ବିଧାତାଙ୍କର ବୋଲି ବ୍ରହ୍ମରେ ଚିତ୍ତ ରଖି କରିଯିବାଇ ଧର୍ମ । ଏହା ନିଷ୍କାମ କର୍ମ । ଏଥିରେ ସ୍ୱାର୍ଥ ନାଇ । କିନ୍ତୁ ନିଜ ଶରୀର ରକ୍ଷା ପାଇଁ ସ୍ନାନ ଭୋଜନାଦି ଯାହାସବୁ କରିବାକୁ ହୁଏ, ସେସବୁରେ ଅନ୍ତତଃ ସାକ୍ଷାତ୍ ସ୍ୱାର୍ଥ ଥିଲପରି ଜଣାପଡ଼ୁଚି; ମାତ୍ର ତାହା ନୁହେଁ । ଶରୀରରେ ହିଁ ଧର୍ମଶାସନ କରିବାକୁ ହେବ । ଶରୀର ଆଗ ସମ୍ଭାଳିଲେଇ ଲୋକ ସାଧନାରେ ସିଦ୍ଧିକୁ ଉଠିବ । ସେଥିପାଇଁ ଶରୀରରକ୍ଷା କର୍ମସବୁକୁ, ଶରୀରରେ ମୁକ୍ତ ଆଡ଼କୁ ଯାତ୍ରା ବା 'ଶରୀରଯାତ୍ରା' ବୋଲି କୁହାଯାଏ । ସାଧାରଣ ବଚନ ମଧ୍ୟ ଅଛି—"ଶରୀରମାଦ୍ୟଂ ଖଳୁ ଧର୍ମସାଧନମ୍" ଅର୍ଥାତ୍, ବାସ୍ତବିକ, ଆଗ ଶରୀର, ତେବେ ଯାଇ ଧର୍ମସାଧନା—"ଶରୀର ରଖି ଧର୍ମ କର ।" । ୮ ।

**ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ ।**
**ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର ।୯।**

**ଅନ୍ୱୟ**—ଯଜ୍ଞାର୍ଥାତ୍ କର୍ମଣଃ ଅନ୍ୟତ୍ର ଅୟଂ ଲୋକଃ କର୍ମବନ୍ଧନଃ [ଭବତି] କୌନ୍ତେୟ ! ମୁକ୍ତସଂଗଃ [ସନ୍] ତଦର୍ଥଂ କର୍ମ ସମାଚର ।୯।

**ଟୀକା**—[କିଂ ତତ୍ ନିୟତଂ କର୍ମ ଇତି ବ୍ୟାଖ୍ୟାତୁଂ ଆରଭତେ]—ଯଜ୍ଞାର୍ଥାତ୍ ଦେବାୟ ପରମେଶ୍ୱରାୟ ବା ସମର୍ପଣଂ, ବଳିବା, ଯଜ୍ଞଃ—ତଦର୍ଥଂ ତସ୍ମାତ୍ । ଦେବାୟ ଇଦଂ ଯତ୍ କର୍ମ ତଦ୍ ଯଜ୍ଞାର୍ଥଂ କର୍ମ, ଯତ୍ କର୍ମ ଉପାସ୍ୟାର୍ଥଂ ବଳିରୂପେଣ ଦୀୟତେ ତତ୍; ତଦ୍‌ଯଜ୍ଞାର୍ଥଂ କର୍ମାପି ଲୋକସ୍ଥିତୌ ନିତ୍ୟଂ କର୍ମ ଇତି ଅପୌରୁଷେୟବେଦେଷୁ ଯଜ୍ଞକର୍ମଣଃ ବିଧିଃ, ଇତ୍ୟପି ଗମ୍ୟମ୍) କର୍ମଣଃ ଅନ୍ୟତ୍ର (ଅନ୍ୟସ୍ମିନ କର୍ମଣି) ଅୟଂ

ଲୋକଃ କର୍ମ ବନ୍ଧନଃ (କର୍ମ ବନ୍ଧନଂ ଯସ୍ୟ ସଃ ତଥାଭୂତଃ) [ଭବତି] । [ଅତଏବ] ହେ କୌନ୍ତେୟ, ମୁକ୍ତସଙ୍ଗଃ (ଅନାସକ୍ତଃ) [ସନ୍] ତଦର୍ଥ (ଯଜ୍ଞାର୍ଥଂ) କର୍ମ ସମାଚର । ୯ ।

**ଅର୍ଥ**—[ସେଇ ନିୟତ କର୍ମ କଣ ? ତା ବ୍ୟାଖ୍ୟା କରିବାକୁ ଯାଉଛନ୍ତି]— ଯଜ୍ଞ ପାଇଁ ଯେଉଁ କର୍ମ କରାହୁଏ, ତହିଁରୁ ଭିନ୍ନ କର୍ମରେ ଲୋକ କର୍ମବନ୍ଧନରେ ପଡ଼େ; (ଅର୍ଥାତ୍, ସ୍ୱାର୍ଥ ବୁଦ୍ଧିରେ ବାନ୍ଧି ହୋଇ ଛଟପଟ ହୁଏ, ମୁକ୍ତ ହୋଇ ନ ପାରେ ।) ତେଣୁ ହେ କୌନ୍ତେୟ, ସଙ୍ଗ (ବା ଆସକ୍ତି) ଛାଡ଼ି ସେଇ ଯଜ୍ଞ ପାଇଁ କର୍ମ କର । ୯ ।

ବ୍ୟାଖ୍ୟା ସୂଚନା—ସଙ୍ଗ = ଆସକ୍ତି, କର୍ମରେ ମମତା, ଫଳରେ ସଉକ୍, ମୋର କର୍ମ, ମୁଁ ଫଳ ପାଇବି ଏଇସବୁ ଭାବ; ଏହାଇ କର୍ମରେ ସଙ୍ଗ ବା ଆସକ୍ତି । ଏଇ ସଙ୍ଗ ହେତୁରୁ ରାଗ, ଦ୍ୱେଷ ବା କର୍ମରେ ପ୍ରୀତି ଓ ବିରକ୍ତି ଆସେ ।

ଯଜ୍ଞବିଧିସବୁ ବେଦର କର୍ମକାଣ୍ଡରେ ଅଛି । ବେଦର ବ୍ରାହ୍ମଣ ଭାଗରେ ଏଇ ବିଧିସବୁ ବିଶେଷରେ ବର୍ଣ୍ଣିତ କରାହୋଇଛି । ମାତ୍ର ଏଇ ଯଜ୍ଞକର୍ମ ସବୁ ସ୍ୱର୍ଗାଦି ଫଳ ପାଇଁ କରାହୁଏ ବୋଲି ଭଗବାନ୍ ସେସବୁର ନିନ୍ଦା କରି ଯାଇଛନ୍ତି (୨।୪୨-୪୪ ଦେଖ) । ଏଠାରେ ତେବେ ଯଜ୍ଞାର୍ଥ କର୍ମ କଣ ? ମୀମାଂସକମାନେ ଯଥାର୍ଥ କର୍ମର ଯେଉଁ ବ୍ୟାଖ୍ୟା ଦିଅନ୍ତି, ତାହାର 'ମୀମାଂସକ' ନାମଟି ପରେ ପ୍ରଚଳିତ ହେଲେହେଁ, ବ୍ୟାଖ୍ୟାଟି ବହୁ ପ୍ରାଚୀନ ଓ ପ୍ରଚଳିତ ଥିଲା । ସେଇ ବ୍ୟାଖ୍ୟା (୩.୩ ଟୀକା) ଅନୁସାରେ, ଯଜ୍ଞ ଦେବତାମାନଙ୍କର କର୍ମ ବୋଲି କରାହୁଏ; ନିଜର ସ୍ୱାର୍ଥସାଧନା ପାଇଁ ନୁହେ । ସେଥିପାଇଁ, ଯଜ୍ଞ ନିମନ୍ତେ ଯେଉଁ କର୍ମ କରାହୁଏ ତାକୁ 'ଯଜ୍ଞାର୍ଥ' କର୍ମ ଓ ନିଜ ମନକୁ ପାଞ୍ଚି ସ୍ୱାର୍ଥସିଦ୍ଧି ପାଇଁ ଯେଉଁ କର୍ମ କରାହୁଏ ତାକୁ 'ପୁରୁଷାର୍ଥ' କର୍ମ କହନ୍ତି । ସବୁ କର୍ମ 'ଯଜ୍ଞାର୍ଥ' କରିବାଇ ଠିକ୍ । ଏପରିକି ଧନ ସଞ୍ଚିଲେ ମଧ୍ୟ ତାହା 'ଯଜ୍ଞାର୍ଥ' ବା ଯଜ୍ଞକର୍ମର ସାଧନ ନିମନ୍ତେ କରିବା ଉଚିତ । ତେଣୁ ଯଜ୍ଞାର୍ଥ କର୍ମରେ ସ୍ୱାର୍ଥବୁଦ୍ଧି, ଆସକ୍ତି ବା କର୍ମର ବନ୍ଧନ ନାଇ ।

ମାତ୍ର ଏ ବ୍ୟାଖ୍ୟାର ମୂଳ ଓ ତାତ୍ତ୍ୱିକ ଅର୍ଥ କ'ଣ ତା ଦେଖାଯାଉ । ଉପରେ ଯେଉଁ ଯଜ୍ଞ କଥା କୁହାଗଲା, ତାହା ବୈଦିକ ବା ଶ୍ରୌତଯଜ୍ଞ । ସେଇ ଅନୁକ୍ରମେ ପରେ ସ୍ମୃତିରଆଶ୍ରମ ଧର୍ମବିଧିରେ ନାନା ଯଜ୍ଞ ବା ନିତ୍ୟକର୍ମର ବିଧାନମାନ କରା-ଯାଇଛି; ଯଥା—ସନ୍ଧ୍ୟାଦି ଉପାସନା କରିବା (ଦେବଯଜ୍ଞ); ବେଦ ଶାସ୍ତ୍ରାଦି ପଢ଼ିବା ଓ ପଢ଼ାଇବା (ବ୍ରହ୍ମଯଜ୍ଞ); ପିତୃ ତର୍ପଣ ପ୍ରଭୃତି କରିବା (ପିତୃଯଜ୍ଞ); ଜନ୍ତୁଙ୍କୁ ଖାଇବାକୁ ଦେବା (ଭୂତଯଜ୍ଞ); ଦାନ, ବିତରଣ ପ୍ରଭୃତି କରିବା ଓ ଅତିଥିସେବାଦି କରିବା (ମନୁଷ୍ୟ-ଯଜ୍ଞ), ଏସବୁ ଯଜ୍ଞ । ଏସବୁ ଭିତରେ ଯଜ୍ଞର ଯାହା ସ୍ପଷ୍ଟ ତାତ୍ତ୍ୱିକ ଅର୍ଥ ତାହା ବୁଝି ନେବାକୁ ହେବ । ମୋଟକଥା, ଯଜ୍ଞ କହିଲେ ବୁଝାଯାଉଛି, ଅନ୍ୟ ନିମନ୍ତେ ନିଜର ଯେଉଁ ନିତ୍ୟ କର୍ତ୍ତବ୍ୟ ଅଛି, ତାକୁ ସେଇ ବୁଦ୍ଧିରେ କରିବାଇ ଯଜ୍ଞ ।

ଯଜ୍ଞ ଅର୍ଥାତ୍ କର୍ମ କରିବା ଓ ସେଇ ସଙ୍ଗେ ସଙ୍ଗେ, ଏ କର୍ମ ମୋ ପାଇଁ ନୁହେଁ, ଏ କର୍ମ ଅନ୍ୟ ପାଇଁ, ଏହା କିନ୍ତୁ ମନେ ନିଶ୍ଚୟ କରିବାକୁ ହେବ ବୋଲି ମୁଁ କରିବି—ଏକ କଥାରେ, କର୍ମକୁ ଉତ୍ସର୍ଗ କରି କରିବା ବା କର୍ମ ବଳି ଦେବା । ବୈଦିକ ଯଜ୍ଞ ଓ ଅନ୍ୟାନ୍ୟ ବୈଦିକ ଓ ସ୍ମାର୍ତ୍ତ କ୍ରିୟାମାନଙ୍କରେ ଅଗ୍ନିରେ ଘୃତାଦିର ଆହୁତି ଦେଇ ହୋମ କରାହୁଏ । ଦେବତାମାନଙ୍କ ନାମରେ ଆହୁତି ଅଗ୍ନିରେ ଢାଳିଲା ବେଳେ କହନ୍ତି 'ଇନ୍ଦ୍ରାୟ ନ ମମ ଇଦଂ ଇନ୍ଦ୍ରାୟ', 'ବରୁଣାୟ ନ ମମ ଇଦଂ ବରୁଣାୟ' ଇତ୍ୟାଦି । ଅର୍ଥାତ୍ ଏହା ଇନ୍ଦ୍ରଙ୍କ ପାଇଁ, ମୋର ନୁହେଁ; ଏ ଇନ୍ଦ୍ରଙ୍କୁ ଦିଆଗଲା ଇତ୍ୟାଦି । ଏବେ ମଧ୍ୟ ପୁରୋହିତମାନେ ଏପରି କହି ହୋମରେ ଆହୁତି ପକାଇବାକୁ କହନ୍ତି ।

ଯଜ୍ଞର ଏହା ହିଁ ମୌଳିକ ଭିତ୍ତି ଓ ଏଇ ଧାରଣାରୁ କର୍ମକାଣ୍ଡର ପଶୁବଳି ପ୍ରଭୃତି ଯେନ ଯଜ୍ଞାଦି କର୍ମ କରିବା ବାହାରି ପଡ଼ିବାରୁ, ପରେ ମୀମାଂସକମାନେ ଯଜ୍ଞାର୍ଥ ଓ ପୁରୁଷାର୍ଥ କର୍ମଭେଦ କରି ଯଜ୍ଞାର୍ଥ କର୍ମକୁ ନିଷ୍କାମ କର୍ମ ବୋଲି ବ୍ୟାଖ୍ୟା କରୁଥିଲେ । (୩. ୧୫; ୪.୨ ଟୀକା । )

ଭଗବାନ୍ ଏଇ ଯଜ୍ଞାର୍ଥ କର୍ମକୁ ଲକ୍ଷ୍ୟକରି ଏଠାରେ କହୁଚନ୍ତି । ଯଜ୍ଞାର୍ଥ କର୍ମ ନିଜର ସ୍ୱାର୍ଥ ପାଇଁ ନୁହେଁ । ବରଂ ଏସବୁ 'ନିତ୍ୟନିଯୁକ୍ତ' କର୍ମ ନ କଲେ ଦୋଷ, କଲେ ଫଳ ଆଶା ନାଇ । ଏଇ ନିତ୍ୟ ନିଯୁକ୍ତ ବା ସ୍ୱଭାବନିଯୁକ୍ତ କର୍ମକୁ ସ୍ୱଧର୍ମ ବୋଲି ମଧ୍ୟ ପରେ ବୁଝାଇଚନ୍ତି (୩.୩୫; ୧୮.୪୭ ଓ ଟୀକା) । ଫଳକଥା ସୃଜା ବା ଭୂତସୃଷ୍ଟି ଓ ତାହାର ସଂଗ୍ରହ ବା ପାଳନରେ ବିଧାତାଙ୍କର କର୍ମ ନିହିତ । ସେଇ କର୍ମମାନଙ୍କର ପରସ୍ପର ଆପେକ୍ଷିକ ପ୍ରବୃତ୍ତିରେ ଲୋକସ୍ଥିତି ରହିଚି । ଯେପରି କି ସୂର୍ଯ୍ୟକିରଣ ପଡ଼ିଲେ ଜଳ ଆକାଶକୁ ଉଠି ବର୍ଷାରୂପରେ ପୁଣି ତଳେ ପଡ଼େ, ବର୍ଷାରୁ ଶସ୍ୟ, ଶସ୍ୟରୁ ଅନ୍ନ ଇତ୍ୟାଦି (୩.୧୪,୧୫) । ଏହା ଗୋଟିଏ ଉଦାହରଣ ମାତ୍ର । ଏଇ ଉଦାହରଣରେ ସମସ୍ତ ବିଶ୍ୱକର୍ମ ଓ ମନୁଷ୍ୟାଦିର କର୍ମ ବୁଝିବାକୁ ହେବ । ବିଶ୍ୱକର୍ମରେ ଦେଖ, ଗ୍ରହ, ତାରା ଓ ଭିନ୍ନ ଭିନ୍ନ ଜାଗତିକ ବସ୍ତୁମାନେ ଯଥାନିୟମରେ ନିଜ ନିଜ କକ୍ଷରେ ଠିକ୍ ଚାଲିବେ । ତା ନ ହେଲେ ସାରା ସୃଷ୍ଟି ଅସ୍ତବ୍ୟସ୍ତ ହୋଇଯିବ । ପକ୍ଷୀ ଡିମ୍ବ ଦେବା ପାଇଁ ବସା କରିବ, ଡିମ୍ବ ଉଷୁମାଇ ବିଧିମତେ ଫୋଡ଼ିବ; ଜନ୍ତୁ ପିଲା ପାଇଁ ପହ୍ନାରେ ଦୁଧ ରଖି ପିଲାକୁ ଖାଇବାକୁ ଦେବ, ପିଲାକୁ ଜଗି ବଢ଼ାଇବ । ଏସବୁ କରିବାରେ କାହାରି କିଛି ଯଥାର୍ଥ ସ୍ୱାର୍ଥ ନାଇ । ତଥାପି ସମସ୍ତେ ଯଥାନିୟମରେ ଏହା କରି ଯାଉଚନ୍ତି । ଏହାହିଁ ବିଧାତାଙ୍କର ବିଶ୍ୱ-ବିକାଶ-କର୍ମ । ଏହା ନିୟମିତରୂପେ ଚାଲିଚି । କାହାରି କର୍ମ ପୁଣି ନିଜ ପାଇଁ ନୁହେଁ; ଏହା ଅନ୍ୟ ପାଇଁ । ସ୍ୱଭାବନିୟମରେ ବସ୍ତୁ, ଜନ୍ତୁ ସମସ୍ତେ ଏଇ ଅନାସକ୍ତ ଓ ସ୍ୱାର୍ଥହୀନ କର୍ମରେ ଲାଗିଚନ୍ତି । ସମସ୍ତେ ବିଧାତାଙ୍କର କର୍ମ-ଲୀଳାରେ ନିଜ ନିଜର

ନିର୍ଦ୍ଦିଷ୍ଟ କାମ କରି ଯାଉଚନ୍ତି ମାତ୍ର । ଏହିପରି ଏହି ଅନାସକ୍ତିରେ, ଏହି ପରସ୍ପର ଅପେକ୍ଷାରେ, ଅନ୍ୟ ପାଇଁ ନିଜର ନିର୍ଦ୍ଦିଷ୍ଟ କର୍ମ କରି ବିଶ୍ୱକର୍ମଲୀଳାରେ ନିଜର ସ୍ୱଭାବ ବା ନିଜତ୍ୱ ପାଳନ ବା ପ୍ରକାଶ କରିବାହିଁ ଯଜ୍ଞାର୍ଥ କର୍ମ । ତନ୍ତ୍ରେ ଯଜ୍ଞ ହୋଇଲେ, ନିଜର କର୍ମକୁ ଏହିପରି ସମୃଦ୍ଧ ବିଶ୍ୱକର୍ମ-ଲୀଳାରେ ଉତ୍ସର୍ଗ କରିବା ବା ବଳିଦେବା । ଏହି ବିଶ୍ୱକର୍ମର ଅଭ୍ୟାସ ଓ ଅନୁକରଣ, ବେଦର ଯଜ୍ଞକର୍ମ ବୋଲି ପରେ କହୁଚନ୍ତି । (୩.୧୦,୧୫) ।

ମନୁଷ୍ୟ ଏହି ବିଶ୍ୱକର୍ମର ନିୟମରେ ନିଜର କର୍ମ କରିଯିବାହିଁ ଯଜ୍ଞାର୍ଥ କର୍ମ । ପ୍ରତ୍ୟେକ ସୃଷ୍ଟ ବସ୍ତୁର ଯେପରି ସ୍ୱଭାବନିୟତ କର୍ମ ଅଛି, ମନୁଷ୍ୟର ସେହିପରି ସ୍ୱଭାବ-ନିୟତ କର୍ମ ବା ସ୍ୱଧର୍ମ ଅଛି ( ୧୮.୪୭) । ସୃଷ୍ଟ ବସ୍ତୁ ସ୍ୱଧର୍ମରେ ନ ରହିଲେ ଯେପରି ସୃଷ୍ଟିର କ୍ରମ, ନିୟମ କିଛି ରହିବ ନାହିଁ, ବିଶୃଙ୍ଖଳ ହୋଇ ସବୁ ନଷ୍ଟ ହୋଇଯିବ, ମନୁଷ୍ୟ ସମାଜରେ ସେହିପରି ସ୍ୱଭାବଗୁଣରେ ଯେଉଁ କର୍ମ ପାଇଁ ପ୍ରବଣତା ଫୁଟେ, ତାହା ମନୁଷ୍ୟତପ ବା ପ୍ରଯତ୍ନର ସହିତ କରିବ । ମନୁଷ୍ୟ ଭିତରେ କାହାର ସ୍ୱଭାବଶାନ୍ତି, କାହାର ଶାସନ ଓ ପୋଷଣ, କାହାର ଆୟୋଜନ, କାହାର ସେବା (୧୮.୪୨-୪୪) । ଏହି ସ୍ୱଭାବଗୁଣକୁ ସହଜାତ ବା ଜନ୍ମଗତ, ପୁଣି ଶିକ୍ଷା ସଂସ୍କାରାଦିଜନିତ ପ୍ରବଣତା କୁହାଯାଇପାରେ । ଏହି ସ୍ୱଭାବର ଗୁଣ ବା କର୍ମରେ ବ୍ରାହ୍ମଣାଦି ଚାରି ବର୍ଣ୍ଣ ବା ଚାତୁର୍ବର୍ଣ୍ଣ୍ୟ (୪. ୧୩) । ଏହିସବୁ କର୍ମ ବି ଯଜ୍ଞାର୍ଥ, ଅର୍ଥାତ୍, ବିଧାତା ବା ଈଶ୍ୱରଙ୍କର ବିଶ୍ୱକର୍ମଲୀଳାର ଅଙ୍ଗ ବୋଲି ଅନାସକ୍ତଭାବରେ କରିବାକୁ ହୁଏ ।

ଦେଖିବା ଉଚିତ, ଏହିପରି ସ୍ୱଭାବରେ ବନ୍ଧା ହୋଇଥିବା ସ୍ୱଧର୍ମ ନ କଲେ ମାନବସମାଜ ବି ଅସ୍ତବ୍ୟସ୍ତ ହୋଇଯିବ (୩ ୩୫ ଟୀକା ) । ଏହି ଯଜ୍ଞ ଓ ଯଜ୍ଞାର୍ଥ କର୍ମର କଥାକୁ ଏହି ଅଧ୍ୟାୟରେ ବୈଦିକ ଯଜ୍ଞର ପ୍ରଚଳିତ ସଙ୍କେତମାନ ଧରି ବୁଝାଇ ସାରି ୪ର୍ଥ ଅଧ୍ୟାୟରେ ଏହାର ବ୍ୟାପକ ଓ ତାତ୍ତ୍ୱିକ ବ୍ୟାଖ୍ୟା ଦେଇ ପୁଣି ୧୮ଶ ଅଧ୍ୟାୟରେ ଯଜ୍ଞ, ଦାନ ଓ ତପକୁ ନିତ୍ୟକର୍ମ ବୋଲି ସବୁ କର୍ମରେ ସେ ସବୁର ଉପଯୋଗିତା ଦେଖାଇବେ । ଯଜ୍ଞ=ଉତ୍ସର୍ଗ, ବଳି; ଏହା ଈଶ୍ୱରଙ୍କର ବିଶ୍ୱକର୍ମ-ଲୀଳାରେ ମୋର ଅବଶ୍ୟ କର୍ତ୍ତବ୍ୟ ବୋଲି ମମତା ଛାଡ଼ିବା । [ଯଜ୍ଞ=ପରୋପକାର ପାଇଁ ଓ ଈଶ୍ୱରଙ୍କ ପାଇଁ କରାହେବା କର୍ମ—ମହାତ୍ମା ଗାନ୍ଧୀ ] । ୯ ।

**ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ ।**
**ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟକାମଧୁକ୍ । ୧୦ ।**

**ଅନ୍ୱୟ**—ପୁରା ପ୍ରଜାପତିଃ ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ଉବାଚ ଅନେନ ପ୍ରସବିଷ୍ୟଧ୍ୱମ୍ । ଏଷଃ ବଃ ଇଷ୍ଟକାମଧୁକ୍ ଅସ୍ତୁ । ୧୦ ।

**ଟୀକା**— [ବେଦବିହିତଂ ଯଜ୍ଞଂ ବ୍ୟାକରୋତି ଷଡ୍‌ଭିଃ] = ପୁରା (ସର୍ଗାଦୌ ଇତି ଯାବତ୍) ପ୍ରଜାପତିଃ (ଲୋକାନାଂ ସ୍ରଷ୍ଟା) ସହଯଜ୍ଞାଃ (ଯଜ୍ଞୈଃ ସହ) ପ୍ରଜାଃ (ଲୋକାନ୍—ବ୍ରାହ୍ମଣାଦୀନ୍ ବା) ସୃଷ୍ଟ୍ୱା ଉବାଚ—[ଯୂୟଂ] ଅନେନ (ଯଜ୍ଞେନ) ପ୍ରସବିଷ୍ୟଧ୍ୱଂ ( ଉତ୍ତରୋତ୍ତରଂ ଅଭିବୃଦ୍ଧିଂ ଲଭଧ୍ୱମ୍ ) । ଏଷଃ [ଯଜ୍ଞ] ବଃ (ଯୁଷ୍ମାକଂ) ଇଷ୍ଟକାମଧୁକ୍, (ଇଷ୍ଟାନ୍ ବାଂଛିତାନ୍ କାମାନ୍, ଫଳବିଶେଷାନ୍ ଦୋଗ୍‌ଧୀତି—ବାଂଛିତଭୋଗପ୍ରଦଃ) ଅସ୍ତୁ । ୧୦ ।

**ଅର୍ଥ**—[ବେଦବିହିତ ଯଜ୍ଞକୁ ଛଅ ଶ୍ଳୋକରେ ବ୍ୟାଖ୍ୟା କରୁଛନ୍ତି ।] ସେ କାଳେ (ସୃଷ୍ଟି ଆଦ୍ୟରେ) ସୃଷ୍ଟିପାଳକ ବିଧାତା (ବ୍ରହ୍ମା) [ବ୍ରାହ୍ମଣାଦି] ପ୍ରଜା [ବା ଲୋକଙ୍କୁ] ଯଜ୍ଞ ସହିତ ସୃଷ୍ଟିକରି, କହିଲେ—"ତୁମେ ଏଇଥିରେ ବଢ଼ । ଏଇଥିରୁ ବାଞ୍ଛିତ ଫଳମାନ ତୁମେ ଦୁହଁ ।" (ଅର୍ଥାତ୍ ଯଜ୍ଞକୁହିଁ ଧଇଲେ, ଏ ତୁମକୁ ବାଂଛିତ ଭୋଗ ଦେବ—ଗାଈଠାରୁ ଯେପରି ଲୋକେ ଦୁଧ ଦୁହଁନ୍ତି, ସେଇପରି ତୁମେ ଏହାଠାରୁ ବାଂଛିତ ଭୋଗମାନ ଦୁହିଁବ) । ୧୦ ।

ବ୍ୟାଖ୍ୟା ସୂଚନା—ଈଶ୍ୱର ନିୟତ କର୍ମପରଂପରା, ସୃଷ୍ଟି ସଙ୍ଗେ ସଙ୍ଗେ ସିଦ୍ଧିତ । ଏଇ ନିୟତ ନିର୍ଦ୍ଦିଷ୍ଟ କର୍ମପରଂପରାଇ ବିଶ୍ୱବିକାଶ । ପ୍ରଜା ବୋଇଲେ ଏଠାରେ ମନୁଷ୍ୟମାନେ । ମନୁଷ୍ୟମାନେ ମଧ୍ୟ ନିଜର ସ୍ୱଭାବନିୟତ କର୍ମ, ଅର୍ଥାତ୍ ନିଜର ସ୍ୱଭାବ, ପ୍ରବୃତ୍ତି, ପ୍ରବଣତା ଅନୁସାରେ କର୍ମ ଠିକ କରି, ଏଇ ନିର୍ଦ୍ଦିଷ୍ଟ ବିଶ୍ୱକର୍ମପରଂପରା ପରି ନିଷ୍କାମ ଭାବରେ ଈଶ୍ୱରଙ୍କର ବୋଲି କର୍ମ କରିଯିବାର କଥା । ଏହାଇ ଯଜ୍ଞ । ଏଥିରେଇ ପ୍ରଜାସୃଷ୍ଟି ବିକାଶ ପାଇବ ବୋଲି ଏଠାରେ କୁହାଯାଇଛି (୩.୩୫ ଟୀକା ଦେଖ) ।

ଲୌକିକ ଅର୍ଥରେ ବୁଝିବାକୁ ହୁଏ, ସୃଷ୍ଟିକର୍ତ୍ତା ବ୍ରହ୍ମା ଲୋକ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏଇ ଯଜ୍ଞ ସୃଷ୍ଟି କରିଚନ୍ତି । ଲୋକେ ଏଇ ଯଜ୍ଞକର୍ମରେ ଲାଗିରହି କ୍ରମେ ଉନ୍ନତି କରିବେ । ଏଇ ଯଜ୍ଞକର୍ମ ସମସ୍ତେ କଲେ ଯାହାର ଯାହା ଦରକାର ତା ସବୁ ହୋଇଯିବ । ଏହାହିଁ ବିଧାତାଙ୍କର ଆଦେଶ । ତାତ୍ତ୍ୱିକ ଭାବରେ ଏ କଥାକୁ ବୁଝିବାର ଅଛି । ଭଗବାନ୍ ଏଇ ତାତ୍ତ୍ୱିକ ଅର୍ଥ ଲକ୍ଷ୍ୟରେ ମଧ୍ୟ ବେଦର ଏଇ ପରିଭାଷା ବ୍ୟବହାର କରୁଚନ୍ତି ।

ବ୍ରହ୍ମା ସୃଷ୍ଟି କରିଥିବାର ତତ୍ତ୍ୱାର୍ଥ ପାଇଁ ପରେ ୩.୧୫ ଓ ତାହାର ଟୀକା ଦେଖ । ଏଠାରେ ଏତିକି ବୁଝିଲେ ହେବ ଯେ ବିଶ୍ୱର ସୃଷ୍ଟିଲୀଳାକୁ ବିଧାତା ପରମାତ୍ମା କରିଚନ୍ତି । ଏଇ ସୃଷ୍ଟି ସଙ୍ଗେ ସଙ୍ଗେ ନିୟତ ବିଶ୍ୱକର୍ମ ପରଂପରା ହୋଇଚି । ଭଗବାନ୍ ପରେ କହିବେ, ଏଇ ନିୟତ କର୍ମପରଂପରାହିଁ ବିଶ୍ୱବିକାଶ । 'ଭୂତଭାବୋ-ଭବକର ବିସର୍ଗଇ, କର୍ମ ( ୮.୩ ) । ପ୍ରଜା ବୋଇଲେ, ଯାହା ଜନ୍ମ ହୁଏ

ବା ସୃଷ୍ଟିରେ ପ୍ରକାଶ ପାଏ । ମାତ୍ର ସାଧାରଣତଃ ମନୁଷ୍ୟମାନଙ୍କୁ ପ୍ରଜା ବୋଲି ବୁଝାଯାଏ । ଏଠାରେ ସେଇ ଅର୍ଥରେ ପ୍ରଜା ଶବ୍ଦ ବ୍ୟବହାର କରାଯାଇଛି । ମନୁଷ୍ୟ ଛଡ଼ା ସୃଷ୍ଟିର ସବୁ ବସ୍ତୁ ନିଜ ନିଜର ନିର୍ଦ୍ଦିଷ୍ଟ କର୍ମ ବା ଆତ୍ମପ୍ରକାଶ କରି ଯାଉଛନ୍ତି— ଯଜ୍ଞଭାବରେ କରି ଯାଉଛନ୍ତି । ସେଥିରେ ତାହାଙ୍କୁ କିଛି ଭାବି ଚିନ୍ତି କରିବାକୁ ହେଉନାହିଁ । ଭାବି ଚିନ୍ତି କରିବା ମନୁଷ୍ୟର ବିଶେଷ । ସେଥିପାଇଁ ମନୁଷ୍ୟ ବିବେଚନା ଲଗାଇ ଏ ଆପେକ୍ଷିକ ବିଶ୍ୱକର୍ମ ବା ଯଜ୍ଞ ବୁଦ୍ଧିରେ ସବୁ କରିବାର ଅଛି ବୋଲି ପର ଶ୍ଳୋକରେ କହୁଛନ୍ତି । ୧୦ ।

**ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ ।**
**ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍ସ୍ୟଥ । ୧୧ ।**

**ଅନ୍ୱୟ**—ଅନେନ ଦେବାନ୍ ଭାବୟତ । ତେ ଦେବାଃ ବଃ ଭାବୟନ୍ତୁ । [ ଏବଂ ] ପରସ୍ପରଂ ଭାବୟନ୍ତଃ ପରଂ ଶ୍ରେୟଃ ଅବାପ୍ସ୍ୟଥ । ୧୧ ।

**ଟୀକା**—[ଯୂୟଂ] ଅନେନ (ଯଜ୍ଞେନ) ଦେବାନ୍ (ଇନ୍ଦ୍ରାଦୀନ୍—ଯେଷାମର୍ଥେ ଯଜ୍ଞଃ ତାନ୍ ବା) ଭାବୟତ । ତେ ଦେବାଃ ବଃ (ଯୁଷ୍ମାନ୍) ଭାବୟନ୍ତୁ । [ଏବଂ] ପରସ୍ପରଂ (ଅନ୍ୟୋଽନ୍ୟଂ) ଭାବୟନ୍ତଃ ପରଂ (ଉତ୍କୃଷ୍ଟଂ) ଶ୍ରେୟଃ ଅବାପ୍ସ୍ୟଥ (ପ୍ରାପ୍ସ୍ୟଥ) । ୧୧ ।

**ଅର୍ଥ**—ତୁମେ ଏଇ ଯଜ୍ଞରେ [ନିଜ କଥା ନ ବିଚାରି, ଯାହାଙ୍କ ପାଇଁ ଯଜ୍ଞ ସେମାନଙ୍କ କଥା ବା ସେଇ ଇନ୍ଦ୍ରାଦି] ଦେବତାଙ୍କ କଥା ବିଚାର । ସେଇ ଦେବତାମାନେ ତୁମ କଥା ବୁଝନ୍ତୁ । ଏହିପରି ପରସ୍ପର କଥା ଭାବିବାରେ ପରମ ମଙ୍ଗଳ ଲାଭ କର । ୧୧ ।

ବ୍ୟାଖ୍ୟା ସୂଚନା—ତୁମେ ଦେବତାଙ୍କୁ ଭାବ, ଅର୍ଥାତ୍, ହୃଦୟରେ ଦେବତାଙ୍କୁ ସନ୍ତୋଷ କର; ସେମାନେ ତୁମକୁ ଫଳ ଦିଅନ୍ତୁ । ବୈଦିକ ଯଜ୍ଞକର୍ମ ଧରି ଏହିପରି ଅର୍ଥ କରାଯାଇଥାଏ । ମାତ୍ର ଭଗବାନ୍ ଯଜ୍ଞର ଏଇ ଲୌକିକ ଅର୍ଥକୁ ତାତ୍ତ୍ୱିକ ଭାବରେ ବୁଝାଉଛନ୍ତି । ଯଜ୍ଞଇ ଈଶ୍ୱର ସ୍ୱଭାବକାଶ । ଏହା କର୍ମର ପରଂପରାଇ ଏହାର ନିତ୍ୟ ବିଶୁଧର୍ମ । କିନ୍ତୁ ମନୁଷ୍ୟ ଏହାକୁ କିପରି କରିବ ? ସେଇ କଥା ସ୍ପଷ୍ଟ ନିର୍ଦ୍ଦେଶ କରି ଏଠାରେ ଭଗବାନ୍ କହୁଛନ୍ତି—"ତୁମେ କେହି ନିଜ ପାଇଁ ବୋଲି କର୍ମ ନ କରି, ନିଜର କର୍ତ୍ତବ୍ୟ ଅନ୍ୟ ପାଇଁ ବୋଲି କର ।" ଏହାଇ ସୃଷ୍ଟିରେ ଯଜ୍ଞ କର୍ମର ପାଳନ— ଏହାଇ ସ୍ୱଧର୍ମ କରିବା । ଏଇ ଯଜ୍ଞ ବୁଦ୍ଧିରେ ଅନ୍ୟ ପାଇଁ କର୍ମ କରିବାକୁ ପରେ ଭଗବାନ 'ଦାନ' ବୋଲି କହୁଛନ୍ତି । ୧୮.୫ ଦେଖ ।

ସୃଷ୍ଟି ସାରା ସମସ୍ତେ ପରସ୍ପର କର୍ମକୁ ଅପେକ୍ଷା କରନ୍ତି । ସେଇ ଅପେକ୍ଷା ପୂରଣ କଲେ ସୃଷ୍ଟି ଧରି ହୋଇ ରହେ । ଏହି ଧରି ହୋଇ ରହିବାଇ 'ଧର୍ମ' । ଏହା ସୃଷ୍ଟିର ନିୟମ । ଏହା ବିନା କର୍ମ ବା ସୃଷ୍ଟିବିକାଶ ଅସମ୍ଭବ । ଏଇ ମାନବ-ଜଗତରେ ବି ଏ ନିୟମ ସ୍ପଷ୍ଟ । କାରଣ ସମସ୍ତଙ୍କ କର୍ମ ପରସ୍ପରର ଅପେକ୍ଷା ରଖେ । ତେଣୁ ଜାଣି କରୁ ବା ନ ଜାଣି କରୁ, କେହି ବାସ୍ତବରେ ନିଜ ପାଇଁ କିଛି କରୁ ନାଇ । ଉଦାହରଣ ସ୍ୱରୂପ, ଭୋଗୀ ନିଜେ ଧନ ଖର୍ଚ୍ଚ କରି ଭୋଗର ଯୋଗାଡ଼ କରିବାରେଇ ନିଜର ସଞ୍ଚିତ ବା ଅର୍ଜିଥିବା ଧନ ଅନ୍ୟର କରିଦେବାକୁ ବାଧ୍ୟ ହୁଏ । ମାତ୍ର ସେ ତାହା ନ ଜାଣି ଖାଲି ମୁଁ ଅର୍ଜିଚି, ମୁଁ ସଞ୍ଚିଚି, ମୁଁ ଦେଉଚି, ମୁଁ ଭୋଗୁଚି ବୋଲି ଅହଂକାର କରେ । ଏହା ମୂଢ଼ତା ( ୩. ୨୭ ) । ଏହା ବୁଝି 'ଯଜ୍ଞ'କୁ 'ଦାନ' ବୁଦ୍ଧିରେ କରିବାକୁ ହବ । ୧୧ ।

## ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତାଃ ।
## ତୈର୍ଦତ୍ତାନପ୍ରଦାୟୈଭ୍ୟୋ ଯୋ ଭୁଙ୍‌କ୍ତେ ସ୍ତେନ ଏବ ସଃ ।୧୨।

**ଅନ୍ୱୟ**—[ହି ଯଜ୍ଞଭାବିତାଃ ଦେବାଃ ବଃ ଇଷ୍ଟାନ୍ ଭୋଗାନ୍ ଦାସ୍ୟନ୍ତେ । [ତତଃ] ତୈଃ ଦତ୍ତାନ୍ ଏଭ୍ୟଃ ଅପ୍ରଦାୟ ଯଃ ଭୁଙ୍‌କ୍ତେ ସଃ ସ୍ତେନଃ ଏବ [ ଜ୍ଞେୟଃ ] । ୧୨ ।

**ଟୀକା**—ହି (ଯତଃ) ଯଜ୍ଞଭାବିତାଃ (ଯଜ୍ଞେ ସନ୍ତୁଷ୍ଟାଃ, ଯଦ୍ ବା ଯେଭ୍ୟଃ ଯଜ୍ଞ ଅର୍ପ୍ୟତେ, ତେ ) ଦେବାଃ ବଃ (ଯୁଷ୍ମଭ୍ୟଂ) ଇଷ୍ଟାନ୍ (ଅଭିଲଷିତାନ୍ ) ଭୋଗାନ୍ ଦାସ୍ୟନ୍ତେ, [ତତଃ] ତୈଃ (ଦେବୈଃ) ଦତ୍ତାନ୍ (ଅନ୍ନାଦିଭୋଗାନ୍) ଏଭ୍ୟଃ (ଦେବେଭ୍ୟଃ) ଅପ୍ରଦାୟ (ଅଦତ୍ତ୍ୱା—ଉତ୍ସର୍ଗଂ ନ କୃତ୍ୱା) ଯଃ ଭୁଙ୍‌କ୍ତେ ସଃ ସ୍ତେନଃ (ଚୌରଃ) ଏବ [ଜ୍ଞେୟଃ] । ୧୨ ।

**ଅର୍ଥ**—ଯେଣୁ ଯଜ୍ଞରେ ସନ୍ତୋଷ ହୋଇ (କିଂବା ଯଜ୍ଞରେ ଯାହାଙ୍କୁ ଭାବିବ, ସେଇ) ଦେବତାମାନେ ତୁମକୁ ବାଞ୍ଛିତ ଭୋଗମାନ ଦେବେ, ତେଣୁ ସେମାନେ ଦେଇଥିବା ଜିନିଷକୁ ସେଇ ଦେବତାଙ୍କୁ ନ ଦେଇ (ଉତ୍ସର୍ଗ ନ କରି) ଯେ ଖାଏ (ଭୋଗ କରେ), ସେ ନିଶ୍ଚେ ଚୋର । ୧୨ ।

ବ୍ୟାଖ୍ୟା ସୂଚନା—ଯାହା ଆମେ ଭୋଗକରୁଁ, ସେସବୁ ଦେବତାଙ୍କର ବୋଲି ଭୋଗ କରିବା ବିଧି । ଲୌକିକ ଅର୍ଥରେ ଅନ୍ନାଦି ଯାହା ଆମେ ଭୋଗ କରୁଁ, ସେସବୁ ଯଜ୍ଞରେ ସନ୍ତୁଷ୍ଟ ହୋଇ ଦେବତାମାନେ ଆମକୁ ଦିଅନ୍ତି । ତେଣୁ ଦେବତାମାନଙ୍କୁ ପୁଣି ଯଜ୍ଞରେ ତା ସବୁ ଦେଇ ଅବଶିଷ୍ଟ ଭୋଗ କରିବାକୁ ହୁଏ । [ଦେବ=ଭୂତମାତ୍ର ସୃଷ୍ଟି । ଭୂତ ମାତ୍ରର ସେବା=ଦେବସେବା, ଏହାଇ ଯଜ୍ଞ—ମହାତ୍ମା ଗାନ୍ଧୀ । ୧୨ ।

**ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍ବିଷୈଃ ।**
**ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ । ୧୩ ।**

**ଅନ୍ୱୟ**—ଯଜ୍ଞଶିଷ୍ଟାଶିନଃ ସନ୍ତଃ ସର୍ବକିଲ୍ବିଷୈଃ ମୁଚ୍ୟଂତେ । ଯେ ଆତ୍ମକାରଣାତ୍ ପଚଂତି, ତେ ପାପାଃ ଅଘଂ ତୁ ଏବ ଭୁଂଜତେ । ୧୩ ।

**ଟୀକା**—ଯଜ୍ଞଶିଷ୍ଟାଶିନଃ (ଯଜ୍ଞାବଶିଷ୍ଟଭୋଜିନଃ) ସନ୍ତଃ (ସାଧବଃ) ସର୍ବ-କିଲ୍ବିଷୈଃ (ସର୍ବପାପୈଃ) ମୁଚ୍ୟନ୍ତେ, [କିଂ] ତୁ ଯେ [ କେବଲଂ ] ଆତ୍ମକାରଣାତ୍ (ନିଜଭୋଗାର୍ଥଂ) ପଚନ୍ତି (ଭୋଜ୍ୟଂ ଭୋଗ୍ୟଂ ବା ସଂପାଦୟନ୍ତି), ତେ ପାପାଃ (ଦୁରାଚାରାଃ) ଅଘଂ (ପାପଂ) ଭୁଞ୍ଜତେ । ୧୩ ।

**ଅର୍ଥ**—ଯଜ୍ଞରୁ ବାକି ରହିଥିବା (ବା ଆପଣା ପାଇଁ ବଳି ପଡ଼ିଥିବା) ଜିନିଷ ଭୋଗ କରୁଥିବା ସାଧୁ ଲୋକେ ସବୁ ପାପରୁ ଛାଡ଼ି ପାଆନ୍ତି । କିନ୍ତୁ ଯେ ଖାଲି ଆପଣା ପାଇଁ ରାନ୍ଧନ୍ତି (ଅର୍ଥାତ୍, ଭୋଗ୍ୟ ଜିନିଷ ଯୋଗାଡ଼ କରନ୍ତି) ସେହି ପାପାତ୍ମାମାନେ ପାପ ହିଁ ଗିଳନ୍ତି । ୧୩ ।

ବ୍ୟାଖ୍ୟା ସୂଚନା—ପୁରୁଷାର୍ଥ କର୍ମରେ ପାପ ଲାଗେ । ମାତ୍ର ଯଜ୍ଞରେ କର୍ମ କରି ସେଥିରୁ ଯେ ଆନନ୍ଦ ମିଳେ, ତା ଯେ ଭୋଗ କରନ୍ତି, ସେ ଛାଡ଼ି ପାଆନ୍ତି । ଏହି ଅର୍ଥରେ ଭଗବାନ୍ କହୁଛନ୍ତି, ୪.୩୧ ଦେଖ । ମାତ୍ର ଲୌକିକ ଅର୍ଥ ଓ ପ୍ରଚଳିତ ବ୍ୟବହାରରେ ମଧ୍ୟ ଏହି କଥା ପ୍ରସିଦ୍ଧ—ଦେବଯଜ୍ଞ, ପିତୃଯଜ୍ଞ, ଅତିଥିଯଜ୍ଞ ଓ ମନୁଷ୍ୟ ଯଜ୍ଞ ପ୍ରଭୃତି କରିସାରି ଯାହା ବଳେ, ତାକୁ ସ୍ମୃତି ଓ ସ୍ମୃତିରେ 'ଅମୃତ' କହନ୍ତି (୪. ୩୧) । ଯଜ୍ଞରେ ନ ଦେଇ ଯେ ଖାଏ, ତାକୁ 'ଅଘାଶୀ' ବା ପାପଗିଳା କହନ୍ତି । ୧୩ ।

**ଅନ୍ନାଦ୍ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ ।**
**ଯଜ୍ଞାଦ୍ଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍ଭବଃ । ୧୪ ।**

**ଅନ୍ୱୟ**—ସ୍ପଷ୍ଟ । ୧୪ ।

**ଟୀକା**—ଅନ୍ନାତ୍ ( ଖାଦ୍ୟାତ୍ ) ଭୂତାନି (ପ୍ରାଣିନଃ) ଭବନ୍ତି, ଜାୟନ୍ତେ, (ବର୍ଦ୍ଧନ୍ତେ ଚ) । ପର୍ଜନ୍ୟାତ୍ (ବୃଷ୍ଟେଃ) ଅନ୍ନସଂଭବଃ (ଅନ୍ନସ୍ୟ ଉତ୍ପତ୍ତିଃ) । [ସୂର୍ଯ୍ୟଂ ଗତାତ୍ ଆହୁତିରୂପାତ୍] ଯଜ୍ଞାତ୍ ପର୍ଜନ୍ୟଃ ଭବତି ["ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟ-ମୁପତିଷ୍ଠତେ, ଆଦିତ୍ୟାଜ୍ଜାୟତେ ବୃଷ୍ଟିଃ ବୃଷ୍ଟେରନ୍ନଂ ତତଃ ପ୍ରଜାଃ" ଇତି ମନୁସ୍ମୃତୌ ମହାଭାରତେ ଚ ] ଯଜ୍ଞଃ କର୍ମସମୁଦ୍ଭବଃ (ନିତ୍ୟବିଶ୍ୱକର୍ମୋତ୍ପନ୍ନଃ) [ଭବତି] । ୧୪ ।

**ଅର୍ଥ**—ଅନ୍ନରୁ ପ୍ରାଣୀମାନେ ହୁଅନ୍ତି । ବର୍ଷାରୁ ଅନ୍ନ ହୁଏ । ଯଜ୍ଞ (ଆହୁତି)ରୁ ବର୍ଷା ହୁଏ । ଈଶ୍ୱର କର୍ମବିଧାନରୁ ଯଜ୍ଞ ହୁଏ । ୧୪ ।

ବ୍ୟାଖ୍ୟା ସୂଚନା—କର୍ମରୁ ଯଜ୍ଞ ହୁଏ, ଏଇତକ ଗୁଡ଼ିଏ ବାକ୍ୟ କଥାଟି ମନୁସ୍ମୃତି ଓ ମହାଭାରତରେ ଅଛି ଓ ଲୋକରେ ବହୁ ପ୍ରଚଳିତ । ୩.୯ ଟୀକା ଦେଖ । ଭଗବାନ୍ ଏଠାରେ କର୍ମରୁ ଯଜ୍ଞ କହି ପର ଶ୍ଲୋକରେ ଏଇ ପରମ୍ପରାର ମୂଳ ଅକ୍ଷର-ବ୍ରହ୍ମରେ ବୋଲି ବୁଝାଇବେ । ଏଠାରେ ତାତ୍ତ୍ୱିକ ଅର୍ଥ—ଭୂତମାନଙ୍କର ନିତ୍ୟନିୟତ କର୍ମ ବିଶ୍ୱପ୍ରକାଶ ରୂପ କର୍ମର ଅଙ୍ଗ । ତେଣୁ ସମସ୍ତେ ଯେଉଁ କର୍ମକୁ ବିଧାତାଙ୍କର ବୋଲି ବିଧାତାଙ୍କୁ ଅର୍ପଣ କରିବେ ବା 'ଯଜ୍ଞାର୍ଥ' କରିବେ; କାରଣ, ଏଇ ବିଶ୍ୱରୂପ କର୍ମରୁ ହିଁ ଯଜ୍ଞ ବା କର୍ମୋତ୍ସର୍ଗ ସୃଷ୍ଟି ବାହାରୁଛି । ଏଥିପାଇଁ ବିଧାତାଙ୍କ ବିଶ୍ୱକର୍ମ ହେତୁରୁ ଭୂତମାନଙ୍କର ନିତ୍ୟ କ୍ରିୟା ଯଜ୍ଞରୂପ ହୁଏ । ସେଇ କଥା ପର ଶ୍ଲୋକରେ କହୁଛନ୍ତି । ୧୪ ।

**କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷରସମୁଦ୍ଭବମ୍ ।**
**ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ । ୧୫ ।**

**ଅନ୍ୱୟ**—ସ୍ପଷ୍ଟ । ୧୫ ।

**ଟୀକା**—କର୍ମ ବ୍ରହ୍ମୋଦ୍ଭବଂ (ବ୍ରହ୍ମ, ମହଦ୍ ବ୍ରହ୍ମ, ପ୍ରକୃତିଃ—ତସ୍ମାତ୍ ଉତ୍ପନ୍ନଂ—୭.୪, ୫) ବିଦ୍ଧି (ଜାନୀହି) । ବ୍ରହ୍ମ ଅକ୍ଷରସମୁଦ୍ଭବଂ [ବିଦ୍ଧି] । ତସ୍ମାତ୍ ସର୍ବଗତଂ (ସର୍ବବ୍ୟାପି) ନିତ୍ୟଂ ବ୍ରହ୍ମ (ପରଂବ୍ରହ୍ମ—ପରମାତ୍ମା) ଯଜ୍ଞେ ପ୍ରତିଷ୍ଠିତମ୍ । [ବ୍ରହ୍ମ=ବେଦଃ; ଅକ୍ଷରଃ=ଓଁକାରଃ; ନିତ୍ୟଂ ବ୍ରହ୍ମ=ପରଂବ୍ରହ୍ମ, ଯସ୍ୟ ପ୍ରତୀକଃ ଓଁକାରଃ—ବେଦଃ ଅପୌରୁଷେୟଃ ଇତି ଲୌକିକାର୍ଥଃ] । ୧୫ ।

**ଅର୍ଥ**—କର୍ମ ବା ବ୍ୟକ୍ତସୃଷ୍ଟି ବ୍ରହ୍ମ ବା ପ୍ରକୃତିରୁ ବୋଲି ଜାଣ । ପ୍ରକୃତି ଅକ୍ଷର ବା ପରମାତ୍ମାରୁ ଉତ୍ପନ୍ନ ହୋଇଛି । ତେଣୁ ସର୍ବବ୍ୟାପୀ ବା ସର୍ବସୃଷ୍ଟି-ପ୍ରକାଶମୟ ପରମାତ୍ମା ଯଜ୍ଞରେହିଁ ରହିଛନ୍ତି । ୭.୪, ୫ ଟୀକା, ୮.୩ ଓ ୧୪.୩ ଦେଖ । ୧୫ ।

ବ୍ୟାଖ୍ୟା ସୂଚନା—କିମ୍ବା ଲୋକରେ ପ୍ରଚଳିତ ଅର୍ଥରେ—କର୍ମ, ବ୍ରହ୍ମ ବା ବେଦରୁ ବାହାରିଛି । ବ୍ରହ୍ମ ଅକ୍ଷର ବା ଓଁକାରରୁ ବାହାରିଛି । ଓଁକାର ହେଉଛି ପରମାତ୍ମାଙ୍କ ପ୍ରତୀକ ବା ଧ୍ୟାନ କରିବାର ପ୍ରତିମା । ତେଣୁ ବେଦକୁ ଅପୌରୁଷେୟ ବା ପରମାତ୍ମାଙ୍କ ପ୍ରଣୀତ ବୋଲି କହନ୍ତି । ଅତଏବ ପରମାତ୍ମା ଯଜ୍ଞରେ ପ୍ରତିଷ୍ଠିତ । ଯଜ୍ଞହିଁ ବିଷ୍ଣୁ ବୋଲି ପ୍ରସିଦ୍ଧ । ମାତ୍ର ଭଗବାନ୍ ତାତ୍ତ୍ୱିକ ଭାବରେ ବୁଝାଇଛନ୍ତି, ବ୍ରହ୍ମ ଏ ସୃଷ୍ଟି ବିସ୍ତାର କରି ଯଜ୍ଞରୂପରେ ପ୍ରକାଶ ପାଇଛନ୍ତି ଓ ତାଙ୍କରି ପାଇଁ ତାଙ୍କର କର୍ମ ବୋଲି ସମସ୍ତେ ସବୁ କରୁଛନ୍ତି । ଏଠାରେ ବେଦ ଓ କର୍ମମୟ ବ୍ରହ୍ମ ମଧ୍ୟରେ କିଛି ପ୍ରଭେଦ ନାହିଁ । ବେଦ କୌଣସି ଲୋକର ରଚନା ନୁହେଁ । ଏହା ଅପୌରୁଷେୟ । ବ୍ରହ୍ମାଙ୍କ ମୁହଁରେ ପ୍ରକାଶ ପାଇଥିଲା ମାତ୍ର । ମାତ୍ର ବେଦ ବା ନିତ୍ୟ ବିଶ୍ୱକର୍ମ-ନିୟମାଦିର ଭାବ ଯଜ୍ଞରୂପେ ବ୍ରହ୍ମାଙ୍କ ମନରେ ସ୍ୱତଃ ଉଦିତ ହୋଇ ବାହାରିଥିଲା

ବୋଲି ବିଶ୍ୱାସ । ଋଷିକଣ୍ଠରେ ମଧ୍ୟ ଏହା ସେହିପରି ଉଚ୍ଛ୍ୱାସରେ ପ୍ରକାଶ ପାଇଥିଲା । ଏହା ରଚନା ନୁହେଁ, ପ୍ରବୋଧରେ ଉଚ୍ଛ୍ୱାସ । ୧୫ ।

**ଏବଂ ପ୍ରବର୍ତ୍ତିତଂ ଚକ୍ରଂ ନାନୁବର୍ତ୍ତୟତୀହ ଯଃ ।**
**ଅଘାୟୁରିନ୍ଦ୍ରିୟାରାମୋ ମୋଘଂ ପାର୍ଥ ସ ଜୀବତି ।୧୬।**

**ଅନ୍ୱୟ**—ଏବଂ ପ୍ରବର୍ତ୍ତିତଂ ଚକ୍ରଂ ଇହ ଯଃ ନ ଅନୁବର୍ତ୍ତୟତି, ହେ ପାର୍ଥ ! ଇନ୍ଦ୍ରିୟାରାମଃ ଅଘାୟୁଃ ସଃ ମୋଘଂ ଜୀବତି । ୧୬ ।

**ଟୀକା**—ଏବଂ (ଉକ୍ତରୂପଂ) [ପରଂବ୍ରହ୍ମଣା] ପ୍ରବର୍ତ୍ତିତଂ ଚକ୍ରଂ (ଯଜ୍ଞରୂପ-କର୍ମଚକ୍ରଂ—ପରଂପରାଂ) ଇହ (ଜଗତି) ଯଃ ନ ଅନୁବର୍ତ୍ତୟତି (ଅନୁତିଷ୍ଠତି—କର୍ମ ଈଶ୍ୱରପ୍ରେରିତଂ ମତ୍ୱା ଅସକ୍ତଃ ସନ୍ ଯଃ ନିଷ୍କାମକର୍ତ୍ତବ୍ୟେଷୁ ନ ପ୍ରବର୍ତ୍ତତେ-ଇତି ଭାବଃ ) ହେ ପାର୍ଥ, ଇନ୍ଦ୍ରିୟାରାମଃ ( ଯଥେଚ୍ଛେନ୍ଦ୍ରିୟଭୋଗମାତ୍ରପୁରୁଷାର୍ଥସେବୀ ) ଅଘାୟୁଃ (ପାପଜୀବନଃ) ସଃ ମୋଘଂ (ବ୍ୟର୍ଥଂ) ଜୀବତି । ଅନାସକ୍ତିଃ ଯଜ୍ଞାର୍ଥଂ ପ୍ରଯତ୍ନଂ ନ କୁର୍ଯ୍ୟାତ୍ ଚେତ୍, ତର୍ହି ଇନ୍ଦ୍ରିୟାର୍ଥ ଏବ ପ୍ରଯତ୍ନଃ ସ୍ୟାତ୍ ଇତ୍ୟଭିପ୍ରାୟଃ) । ୧୬ ।

**ଅର୍ଥ**—ଏହିପରି ଚକ୍ରକୁ ଯେ ଅନୁସରଣ ନ କରେ, ବା କର୍ମହିଁ ଈଶ୍ୱରଙ୍କର ବିଶ୍ୱବିକାଶ ବୋଲି ଅନାସକ୍ତ ଭାବରେ (ଅର୍ଥାତ୍, ଯଜ୍ଞାର୍ଥ କର୍ମ ପରଂପରା ଈଶ୍ୱରଙ୍କର ବୋଲି ଅନ୍ୟ ନିମନ୍ତେ କର୍ମ କରିବା ବୁଦ୍ଧିରେ ) ଯେ ଆପଣାକୁ କର୍ମରେ ନ ଲଗାଏ, ହେ ପାର୍ଥ, ସେ ଖାଲି ଇନ୍ଦ୍ରିୟସୁଖ ପାଇଁ କର୍ମରେ ମାତି ବୃଥାରେ ବଞ୍ଚିଥାଏ (ଅର୍ଥାତ୍, ସେ ଖାଲି ଇନ୍ଦ୍ରିୟ ସୁଖ ପାଇଁ କର୍ମରେ ମାତେ ଓ ତାର ଜୀବନ ବୃଥା ) । ୧୬ ।

ବ୍ୟାଖ୍ୟା ସୂଚନା—କର୍ମ ନିତ୍ୟ ଲାଗିରହିଛି । ଏହା ସ୍ୱତଃ ବିକାଶ ପାଉଛି । ଏହା ନିଜ ପାଇଁ କରାହୁଏ ନାହିଁ । ଏହିସବୁ ଯଜ୍ଞବୁଦ୍ଧି ଓ 'ଦାନ' ବା ଅନାସକ୍ତଭାବ ଆସିଗଲେ କର୍ମ କରିବାରେ ପ୍ରଯତ୍ନ ନ ଆସିପାରେ । ସେଥିପାଇଁ ଭଗବାନ୍ ଏଠାରେ ସୂଚାଇ କହୁଛନ୍ତି । ଏସବୁ ଯଜ୍ଞାଦି ଭାବ ରଖି କର୍ମ ଆଚରଣ କରିବାରେ ପ୍ରଯତ୍ନ କରିବାକୁ ହେବ । ଏହି ପ୍ରଯତ୍ନହିଁ 'ତପ'—୧୮.୫ । ଏହି 'ତପ' ନ କଲେ ମନୁଷ୍ୟ ଯେ କର୍ମରେ ନ ପ୍ରବର୍ତ୍ତିବ, ତା ନୁହେଁ । କାରଣ ଏଣେ କର୍ମ ନ କଲେ ମଧ୍ୟ ଇନ୍ଦ୍ରିୟ-ଭୋଗ ପାଇଁ କର୍ମ କରିବାକୁ ହେବ । କିନ୍ତୁ ସେ କର୍ମରୁ କି କାର୍ଯ୍ୟ ? ଇନ୍ଦ୍ରିୟସେବୀର ଜୀବନ ବୃଥା । ଯଜ୍ଞାର୍ଥ କର୍ମହିଁ କର୍ମ । ପୁରୁଷାର୍ଥ କର୍ମ କିଛି ନୁହେଁ—ଏହି ଅଭିପ୍ରାୟ । ସାଂଖ୍ୟବାଦର କର୍ମତ୍ୟାଗ, ପ୍ରସିଦ୍ଧ ମୋକ୍ଷସାଧନା ଥିଲା ଓ ସେଥିରେ ବୈଦିକ ଯଜ୍ଞାଦି କର୍ମ ପ୍ରଥମରୁ କେବଳ ଚିତ୍ତଶୁଦ୍ଧି ପାଇଁ ଲୋଡ଼ା ଓ ତେଣୁ ନିକୃଷ୍ଟ ବୋଲି ଧାରଣା ପଡ଼ିଯାଇଥିଲା । ସେଥିପାଇଁ ସାଂଖ୍ୟ କଥା କହିଲାବେଳେ ୨.୩୮ ପର୍ଯ୍ୟନ୍ତ ଭଗବାନ୍

କର୍ମ ଛାଡ଼ିବା କଥା ନ କହି ଜ୍ଞାନରେ ଅନାସକ୍ତ ହୋଇ ସୁଖଦୁଃଖାଦି ନ ମଣି କର୍ମ କରିବାକୁ କହିଲେ ମଧ୍ୟ, (୨.୩୮) ଅର୍ଜ୍ଜୁନଙ୍କର କର୍ମ ଛାଡ଼ିବା ବୁଦ୍ଧି ଗଲା ନାହିଁ । ପୁଣି ଯେଉଁ କର୍ମ ସ୍ୱତଃ ହେଉଛି, ଯହିଁରେ ନିଜର କିଛି ନାହିଁ, ସେ କର୍ମ ଲୋକ କରିବାକୁ ଶିଖିବେ କିଆଁ ? ସେଥିପାଇଁ ଏଠାରେ ଭଗବାନ୍ ବୈଦିକ ଯଜ୍ଞକୁ ଧରି ତାର ଯଥାର୍ଥ ଅର୍ଥ ସେହି ବୈଦିକ ପରିଭାଷାରେ ବୁଝାଇଦେଲେ—ଯଜ୍ଞ ଗୌଣ ନୁହେଁ, ବରଂ ଯଜ୍ଞହିଁ ଯଥାର୍ଥ କର୍ମ ଓ କରଣୀୟ । ଲୋକେ ଯାହା ବୁଝନ୍ତି, ତାହା ଯଜ୍ଞର ପ୍ରକୃତ ଅର୍ଥ ନୁହେଁ । ପୁଣି ଯଜ୍ଞର ପ୍ରକୃତ ଅର୍ଥ ବୁଝିଛି ବୋଲି କର୍ମ ଛାଡ଼ିଦେଲେ ମଧ୍ୟ ଇନ୍ଦ୍ରିୟ ପାଇଁ କର୍ମରେ ପଡ଼ିବାକୁ ହେବ । ଏହା ପୁରୁଷାର୍ଥ କର୍ମ । ଏହା ବୃଥା । ତେଣୁ ବିଧାତା ଯେଉଁ ଯଜ୍ଞ ପ୍ରବର୍ତ୍ତାଇଛନ୍ତି, ତାର ଏହି ମୂଳ ତାତ୍ତ୍ୱିକ ଅର୍ଥ ବୁଝି କର୍ମ କରିବାର କଥା । ଏହି ଧର୍ମହିଁ ଈଶ୍ୱର ପହିଲେ ପ୍ରଚାର କରିଥିଲେ । ମାତ୍ର ଲୋକେ ଏବେ ଭୁଲି ଯାଇଛନ୍ତି ବୋଲି ପରେ କହିବେ । (୪.୧,୨) । ୧୬ ।

ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ ।
ଆତ୍ମନ୍ୟେବ ଚ ସଂତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ।୧୭

**ଅନ୍ୱୟ**—ଯଃ ମାନବଃ ତୁ ଏବ ଆତ୍ମରତିଃ ଆତ୍ମତୃପ୍ତଃ ଆତ୍ମନି ଚ ଏବ ସନ୍ତୁଷ୍ଟଃ, ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ । ୧୭ ।

**ଟୀକା**— [ତର୍ହେିବ କିଂ ତ୍ୟଂ ଅନୁବର୍ତ୍ତିତବ୍ୟ କର୍ମଚକ୍ରେ ନୈଷ୍କର୍ମ୍ୟାତ୍ମିକା ଜ୍ଞାନନିଷ୍ଠା ସମ୍ଭବତୀତ୍ୟାହ]—ଯଃ ମାନବଃ ତୁ ଏବ [ଏତଦ୍ ବୁଦ୍ଧ୍ୱା] ଆତ୍ମରତିଃ (ଆତ୍ମନି ପ୍ରୀତିସମ୍ପନ୍ନଃ) ଆତ୍ମତୃପ୍ତଃ (ଆତ୍ମାରାମଃ) ଆତ୍ମନି ଚ ଏବ ସନ୍ତୁଷ୍ଟଃ (ନ ତୁ ଭୋଗେଷୁ ଇତି ଭାବଃ) ତସ୍ୟ [ନିଜସ୍ୟ] କାର୍ଯ୍ୟଂ (ଭୋଗସମ୍ପର୍କାଭାବାଦିତିଭାବଃ) ନ ବିଦ୍ୟତେ । ତସ୍ୟୈବ ନୈଷ୍କର୍ମ୍ୟଂ, ନ ତୁ କର୍ମତ୍ୟାଗିନଃ ଇତି ଭାବଃ) । । ୧୭ ।

**ଅର୍ଥ**—[ଏହିପରି ଯଜ୍ଞବୁଦ୍ଧି ଧରି କର୍ମ କଲେ ହିଁ ଲୋକ ଯଥାର୍ଥ କର୍ମହୀନ ହୁଏ ବା ନୈଷ୍କର୍ମ୍ୟ ପାଏ ବୋଲି କହୁଛନ୍ତି]—ଯେଉଁ ଲୋକ ଏହା ବୁଝି ନିଜ ଭିତରେ ମନ ଦିଏ, ନିଜ ଭିତରେ ହିଁ ଆନନ୍ଦ ପାଏ ଓ ସେହି ନିଜ ଭିତରେ (ବା ଆତ୍ମାରେ)ହିଁ ସନ୍ତୋଷ ରହେ ଅର୍ଥାତ୍ ଇନ୍ଦ୍ରିୟସେବାରେ ମାତେ ନାହିଁ), ତାର ନିଜର ହୋଇ କାର୍ଯ୍ୟ ନାହିଁ (ଅର୍ଥାତ୍, ନିୟତ ଯଜ୍ଞାର୍ଥ କର୍ମ କରି ମଧ୍ୟ ସେହି ଏକା କର୍ମହୀନ, ସେହି ଏକା ନୈଷ୍କର୍ମ୍ୟସିଦ୍ଧି ପାଏ) । (୧୮.୪୯) । ୧୭ ।

ନୈବ ତସ୍ୟ କୃତେନାର୍ଥୋ ନାକୃତେନେହ କଶ୍ଚନ ।
ନ ଚାସ୍ୟ ସର୍ବଭୂତେଷୁ କଶ୍ଚିଦର୍ଥବ୍ୟପାଶ୍ରୟଃ । ୧୮ ।

**ଅନ୍ୱୟ**—ଇହ ତସ୍ୟ କୃତେନ [କର୍ମଣା] ନ ଏବ ଅର୍ଥଃ, ଅକୃତେନ ନ କଶ୍ଚନ । ଅସ୍ୟ ଚ ସର୍ବଭୂତେଷୁ କଶ୍ଚିତ୍ ଅର୍ଥବ୍ୟପାଶ୍ରୟଃ ନ [ ବର୍ତ୍ତତେ ] । ୧୮ ।

**ଟୀକା**—[ ଯତଃ ] ଇହ (ଜଗତି) ତସ୍ୟ କୃତେନ [କର୍ମଣା] ନ ଏବ ଅର୍ଥଃ (ପ୍ରୟୋଜନଂ, ସ୍ୱାର୍ଥଃ) [ଅସ୍ତି] ଅକୃତେନ [ଚ] ନ କଶ୍ଚନ [ଅର୍ଥଃ ଅସ୍ତି] ଅସ୍ୟ ଚ ସର୍ବଭୂତେଷୁ ( ସର୍ବଜଗତି ) କଶ୍ଚିତ୍ ଅର୍ଥବ୍ୟପାଶ୍ରୟଃ (ସ୍ୱାର୍ଥାପେକ୍ଷା) ନ [ ବର୍ତ୍ତତେ ] ।

**ଅର୍ଥ**—[ ଜ୍ଞାନୀଙ୍କ ନା ] ଏ ଜଗତରେ ତାର କରିବାରେ କିଛି ସ୍ୱାର୍ଥ ନାହିଁ ନ କରିବାରେ ବି ନାହିଁ, କିଂବା ଜଗତ ଯାକରେ କାହାରିଠାରେ ତାର କିଛି ସ୍ୱାର୍ଥର ଅପେକ୍ଷା ମଧ୍ୟ ନାହିଁ । (ଅର୍ଥାତ୍, ସେ ଯଜ୍ଞାର୍ଥ, ନିତ୍ୟ କର୍ତ୍ତବ୍ୟ କରିଯାଏ, ଫଳ ହେବା ନ ହେବାରେ ତାର କିଛି ଯାଏ ଆସେ ନାହିଁ) । ୧୮ ।

**ତସ୍ମାଦସକ୍ତଃ ସତତଂ କାର୍ଯଂ କର୍ମ ସମାଚର ।**
**ଅସକ୍ତୋ ହ୍ୟାଚରନ୍ କର୍ମ ପରମାପ୍ନୋତି ପୂରୁଷଃ ।୧୯।**

**ଅନ୍ୱୟ**—ତସ୍ମାତ୍ ଅସକ୍ତଃ [ ସନ୍ ] ସତତଂ କାର୍ଯଂ କର୍ମ ସମାଚର । ହି ପୂରୁଷଃ ଅସକ୍ତଃ [ସନ୍] କର୍ମ ଆଚରନ୍ ପରଂ [ବ୍ରହ୍ମ] ଆପ୍ନୋତି । ୧୯ ।

**ଟୀକା**—ତସ୍ମାତ୍ ଅସକ୍ତଃ (ଅନାସକ୍ତଃ) [ସନ୍] ସତତଂ କାର୍ଯଂ (ଜ୍ଞାନିଷ୍ଠ-କର୍ତ୍ତବ୍ୟଂ) କର୍ମ ସମାଚର (ସମ୍ୟକ୍ ଅନୁତିଷ୍ଠ); ହି (ଯତଃ) ପୂରୁଷଃ (ଜନଃ) ଅସକ୍ତଃ [ସନ୍] କର୍ମ ଆଚରନ୍ ପରଂ [ବ୍ରହ୍ମ] ଆପ୍ନୋତି (ଲଭତେ) । ୧୯ ।

**ଅର୍ଥ**—ତେଣୁ ଅନାସକ୍ତ ହୋଇ ସବୁବେଳେ ଅବଶ୍ୟକର୍ତ୍ତବ୍ୟ କର୍ମ ଠିକଣା କରି କର୍ । କାରଣ, ଲୋକ ଆସକ୍ତି ଛାଡ଼ି କର୍ମ କଲେ ପରଂବ୍ରହ୍ମ [ ଗତି ] ପାଏ । ୧୯ ।

ବ୍ୟାଖ୍ୟା ସୂଚନା—ପରଂବ୍ରହ୍ମ କର୍ମର ସ୍ୱତୋବିକାଶ ହିଁ ବିଶ୍ୱକର୍ମ ବା ଜଗତ୍ । ଏଇ ଭାବରେ ଦୃଢ଼ ରହିଲେ ହିଁ ମନୁଷ୍ୟ ପକ୍ଷରେ ଯଥାର୍ଥ ଅନାସକ୍ତ କର୍ମ ସମ୍ଭବ ହୁଏ । ତେଣୁ ଅନାସକ୍ତ କର୍ମର ନିତ୍ୟ ଆଚରଣରେ ଯେ ସ୍ଥିର, ତାର ପରଂବ୍ରହ୍ମପ୍ରାପ୍ତି ଠିକ୍ । ଏଠାରେ କିନ୍ତୁ ବୁଝି ରଖିବାକୁ ହେବ, ଅନାସକ୍ତିରେ କର୍ମପ୍ରତି ବେଖାତିର୍ କରିବା ମଧ୍ୟ ଠିକ୍ ନୁହେଁ । ସେଥିରେ ପରଂବ୍ରହ୍ମ ମିଳେ ନାହିଁ । କାର୍ଯ ବା କରଣୀୟ କର୍ମକୁ ଠିକଣା କରି କରିବାକୁ ହେବ, ଅଥଚ ଆସକ୍ତି ନ ଥିବ । ଏହାହିଁ ତପ ।୧୮-୫। ପରଂବ୍ରହ୍ମ ଏଇ 'ତପ'ରେ ସୃଷ୍ଟି ପ୍ରକାଶ କରନ୍ତି ବୋଲି ବେଦ କହନ୍ତି । ୧୯ ।

**କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ ।**
**ଲୋକସଂଗ୍ରହମେବାପି ସଂପଶ୍ୟନ୍‌କର୍ତ୍ତୁମର୍ହସି । ୨୦ ।**

**ଅନ୍ୱୟ**—ଜନକ ଦୟଃ ହି କର୍ମଣା ଏବଂ ସଂସିଦ୍ଧିଂ ଆସ୍ଥିତାଃ । ଅପି ଲୋକସଂଗ୍ରହଂ ଏବ ସଂପଶ୍ୟନ୍ କର୍ତ୍ତୁଂ ଅର୍ହସି । ୨୦ ।

**ଟୀକା** – ଜନକାଦୟଃ [ପ୍ରାଚୀନାଃ] ହି (ନିଶ୍ଚିତଂ) କର୍ମଣା ଏବ (ନିଷ୍କାମ-କର୍ମାଚରଣେନ ନ ତୁ କର୍ମତ୍ୟାଗେନ ଇତି ଭାବଃ) ସଂସିଦ୍ଧିଂ (ବ୍ରହ୍ମଗତିଂ) ଆସ୍ଥିତାଃ । ଅପି [ତୁ କର୍ମଣି ପ୍ରୟୋଜନସ୍ୟ କର୍ମାଚରଣଂ ତୁଭ୍ୟଂ ନ ରୋଚତେ ଚେତ୍, ଜନକାଦୀନାଂ ଦୃଷ୍ଟାନ୍ତଃ ନ ତବ ଗ୍ରାହ୍ୟଃ ଇତି ଚେତ୍, ତର୍ହି] ଲୋକସଂଗ୍ରହଂ (ସ୍ୱଧର୍ମେ ଲୋକସ୍ଥିତିଂ, ଲୋକସ୍ୟ ହିତଂ) ଏବଂ ସଂପଶ୍ୟନ୍ (ପର୍ଯ୍ୟାଲୋଚୟନ୍) [କର୍ମ] କର୍ତ୍ତୁଂ ଅର୍ହସି । ୨୦ ।

**ଅର୍ଥ**—ଜନକ ପ୍ରଭୃତି [ପ୍ରାଚୀନ ପୁରୁଷମାନେ] ତ ଏହିପରି ଅନାସକ୍ତ କର୍ମରେ ରହି ପୂର୍ଣ୍ଣ ସିଦ୍ଧି ପାଇଥିଲେ । [ତେବେ ଏସବୁରେ ତୋ ମନ ଯେବେ ମାନୁନି, ତେବେ] ଲୋକ ସଂଗ୍ରହ କଥା ଭାବି ତୋର କର୍ମ କରିବାର ତ ଅଛି ।୨୦।

ବ୍ୟାଖ୍ୟା ସୂଚନା—ଜନକ=ବୈଦିକ ରାଜର୍ଷି ମିଥିଳାର ରାଜା ଥିଲେ । ଶୁଣାଅଛି, ସେ ରାଜକାର୍ଯ୍ୟସବୁ ବଧିମତେ କରୁଥିଲେ ମଧ୍ୟ କହିପାରୁଥିଲେ 'ମିଥିଲାୟାଂ ପ୍ରଦୀପ୍ତାୟାଂ ନ ମେ ଲଭ୍ୟେ ନ ମେ କ୍ଷତିଃ ।" ଅର୍ଥାତ୍, ମିଥିଳା ପୋଡ଼ିଗଲେ ବି ମୋର କିଛି ଯାଏଆସେ ନାଇ । ତେବେ ଯେତେଦିନ ମୁଁ ରାଜା ଅଛି, କର୍ତ୍ତବ୍ୟ କରୁଛି । ଜନକ ଏହିପରି ନିଷ୍କାମକର୍ମ କରି ସିଦ୍ଧପୁରୁଷ ଥିଲେ । ତେବେ ଭଗବାନ୍ ଅର୍ଜ୍ଜୁନଙ୍କୁ କହୁଚନ୍ତି—ଯେବେ ସ୍ୱାର୍ଥ ବିନା କର୍ମ କରିବାରେ ତୋ ମନ ନ ବଳୁଛି, କର୍ମ ଗୁଡ଼ାକଯାକ ଭଲ ବୋଲି ବୁଝୁନୁ, ପୁଣି ଜନକାଦି କଥା ବି ଯେବେ ତୋ ମନକୁ ନ ପାଉଛି, ହୁଏତ ପୁଣି ବୁଝୁନୁ କର୍ମ ତ କେବେ ଶୁଦ୍ଧିହେବ ନାଇ, ସେଥିପାଇଁ ଯେତିକି ନ କଲେ ନ ଚଳେ ସେତିକି କଲେ ହେବ, ତେବେ ବି, ଲୋକସଂଗ୍ରହ ପାଇଁ ହେଲେ ଶରୀର ତ କର୍ମ କରିବାର ଅଛି । ଲୋକସଂଗ୍ରହ=ଲୋକରକ୍ଷା, ଜଗତର ସ୍ଥିତି । ସମସ୍ତେ ନିଜ ନିଜ କର୍ମରେ ଠିକ୍ ଥିବାରୁ ଏ ଲୋକସ୍ଥିତି ରହିଛି । ସ୍ୱେଚ୍ଛାଚାରୀ ହେଲେ ସବୁ ଅସଂଗ୍ରହରେ ପଡ଼ି ଅସ୍ତବ୍ୟସ୍ତ ହୋଇଯିବ । ୨୦ ।

**ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ ।**
**ସ ଯତ୍ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।୨୧।**

**ଅନ୍ୱୟ**—ଶ୍ରେଷ୍ଠଃ ଯତ୍ ଯତ୍ ଆଚରତି, ଇତରଃ ଜନଃ ତତ୍ ତତ୍ ଏବ [ଆଚରତି] । ସଃ ଯତ୍ ପ୍ରମାଣଂ କୁରୁତେ ଲୋକଃ ତତ୍ ଅନୁବର୍ତ୍ତତେ । ୨୧ ।

**ଟୀକା**—[ଯତଃ] ଶ୍ରେଷ୍ଠଃ [ଜନଃ] ଯତ୍ ଯତ୍ ଆଚରତି, ଇତରଃ (ଅନ୍ୟଃ ପ୍ରାକୃତଃ) ଜନଃ ତତ୍ ତତ୍ ଏବ [ଆଚରତି] । ସଃ (ଶ୍ରେଷ୍ଠଃ) ଯତ୍ ପ୍ରମାଣଂ କୁରୁତେ (ମନ୍ୟତେ) ଲୋକଃ ତତ୍ ଅନୁବର୍ତ୍ତତେ । ୨୧ ।

**ଅର୍ଥ**—କାହିଁକି ନା, ଜାଣ୍ଡ ତ, ପ୍ରଧାନ ଲୋକ ଯେଉଁ ଯେଉଁ ଆଚରଣ କରିଯାଏ, ସାଧାରଣ ଲୋକ ସେଇ ସେଇ ଆଚରଣ ଧରେ । ସେଇ ପ୍ରଧାନ ଲୋକ ଯାହା ପ୍ରମାଣ ବା ପନ୍ଥା ବୋଲି ଠିକ୍ କରେ, ଲୋକେ ତାକୁହିଁ ଧରି ଚାଲନ୍ତି । ୨୧ ।

**ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ ।**
**ନାନାବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି । ୨୨ ।**

**ଅନ୍ୱୟ**—ପାର୍ଥ ! ମେ କର୍ତ୍ତବ୍ୟଂ ନାସ୍ତି । ତ୍ରିଷୁ ଲୋକେଷୁ କିଞ୍ଚନ ଅନାବାପ୍ତଂ ଅବାପ୍ତବ୍ୟଂ ନ [ଅସ୍ତି] [ଅପି] ଚ କର୍ମଣି ବର୍ତ୍ତେ ଏବ ।୨୨।

**ଟୀକା**—[ତତ୍ର ଚ ଭଗବାନ୍ ଆତ୍ମନଃ ଦୃଷ୍ଟାନ୍ତେନ ଆହ ତ୍ରିଭିଃ]—ହେ ପାର୍ଥ, ମେ (ମମ) [କିଞ୍ଚିତ୍] କର୍ତ୍ତବ୍ୟଂ (କରଣୀୟଂ) ନାସ୍ତି । [ଯତ ମମ] ତ୍ରିଷୁ ଲୋକେଷୁ କିଂଚନ ଅନାବାପ୍ତଂ (ଅପ୍ରାପ୍ତଂ) ଅବାପ୍ତବ୍ୟଂ (ପ୍ରାପଣୀୟଂ) [ବା] ନ [ଅସ୍ତି] [ଅପି ଅହଂ] ଚ କର୍ମଣି ବର୍ତ୍ତେ (କର୍ମ କରୋମି) ଏବ । ୨୨ ।

**ଅର୍ଥ**—[ଏଥିରେ ଭଗବାନ୍ ଆପଣାକୁ ଦୃଷ୍ଟାନ୍ତ ଦେଇ ତିନି ଶ୍ଳୋକରେ କହୁଛନ୍ତି] ହେ ପାର୍ଥ, ମୋର କିଛି କରିବାର ନାଇ କାରଣ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ଲୋକରେ ମୋର କିଛି ନ ପାଇଛି ଏପରି ନାଇ, କି କିଛି ପାଇବାର ବାକି ନାଇ । ତଥାପି ମୁଁ କର୍ମରେ ଲାଗିରହିଛି ଏପରି କି ଲୋକସଂଗ୍ରହ ନିମନ୍ତେ ବା ଲୋକଙ୍କୁ ପନ୍ଥା ଦେଖାଇବାକୁ ମୁଁ ଅବତାର ବି ହୋଇଛି । [୪.୭ ଟୀକା ଦେଖ] ।୨୨।

ବ୍ୟାଖ୍ୟା ସୂଚନା—ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ପ୍ରଭୃତିର ଅବିରାମ ଓ ନିୟମନିର୍ଦ୍ଦିଷ୍ଟ ଗତି ଈଶ୍ୱରଙ୍କ କର୍ମ ସୂଚିତ କରୁଛି । ଏ କର୍ମ ମାନସିକ ନୁହେଁ, ବରଂ ଶାରୀରିକ ବୋଲି କୁହାଯାଇପାରେ । ଈଶ୍ୱର ନିରାକାର ହୋଇ ବି ଶାରୀରିକ କର୍ମ କରନ୍ତି । ଏହା କିପରି କୁହାଯାଇପାରେ, ଏପରି ଶଙ୍କାର ଏଠାରେ ସ୍ଥାନ ନାଇ । କାରଣ ଏ ଅଶରୀରୀ ହୋଇ ବି ଶରୀରୀ ପରି ଆଚରଣ କରୁଥିବାରେ ଦେଖାଯାଆନ୍ତି । ସେ ଏ କର୍ମ କରୁଥିଲେ ମଧ୍ୟ ଅକର୍ମୀ ଓ ଅଲିପ୍ତ । ମନୁଷ୍ୟର ଏହାଇ ବୁଝିବାର ଅଛି ଯେ, ଯେପରି ଈଶ୍ୱରଙ୍କର ପ୍ରତ୍ୟେକ କୃତି ଯନ୍ତ୍ର ପରି କାମ କରୁଛି, ସେହିପରି ମନୁଷ୍ୟକୁ ବି ଯନ୍ତ୍ର ପରି ନିୟମିତ କାମ କରିବାକୁ ହେବ । ଯନ୍ତ୍ରପରି ଗତିରେ ଅନାଦର କରି ସ୍ୱେଚ୍ଛାଗାମୀ ହେବାରେ ମନୁଷ୍ୟର ବିଶେଷତ୍ୱ ନାଇ; ବରଂ ଜ୍ଞାନପୂର୍ବକ ସେଇ ଗତି ଅନୁସରଣ କରିବାରେ ଅଛି ଅଲିପ୍ତ ହୋଇ ଯନ୍ତ୍ରପରି କାମ କଲେ, ତାକୁ କର୍ମର ବାଧା ଲାଗେ ନାଇ । ସେ ମୃତ୍ୟୁ ପର୍ଯ୍ୟନ୍ତ ତାଜା ରହେ । ଦେହ ଦେହର ନିୟମ ଧରି ସମୟରେ ନଷ୍ଟ ହୁଏ । ପରନ୍ତୁ ତାହାର ଭିତରେ ଆତ୍ମା ଯେପରି ଥିଲା ସେହିପରି ରହେ—ମହାତ୍ମା ଗାନ୍ଧୀ । ୨୨ ।

ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।୨୩।

**ଅନ୍ୱୟ—** ହି ଜାତୁ ଯଦି ଅହଂ ଅତନ୍ଦ୍ରିତଃ କର୍ମଣି ନ ବର୍ତ୍ତେୟଂ ପାର୍ଥ ! [ତଦା] ମନୁଷ୍ୟାଃ ସର୍ବଶଃ ମମ ବର୍ତ୍ମ ଅନୁବର୍ତ୍ତନ୍ତେ । ୨୩ ।

**ଟୀକା—** ହି (ଯତଃ) ଜାତୁ (କଦାଚିତ୍) ଯଦି ଅହଂ ଅତନ୍ଦ୍ରିତଃ (ଅନଳସଃ) [ସନ୍] କର୍ମଣି ନ ବର୍ତ୍ତେୟଂ, ହେ ପାର୍ଥ, [ତଦା] ମନୁଷ୍ୟାଃ ସର୍ବଶଃ (ସର୍ବଥା) [ତଦେବ] ମମ ବର୍ତ୍ମ (ପନ୍ଥାନଂ) ଅନୁବର୍ତ୍ତନ୍ତେ (ଅନୁକୁର୍ଯୁଃ) । ୨୩ ।

**ଅର୍ଥ—** କାହିଁକି ନା, କେବେହେଲେ ଯେବେ ମୁଁ ଅତନ୍ଦ୍ରିତ ହୋଇ (ଟିକିଏ ହେଲେ ବନ୍ଦ ନ ହୋଇ) କର୍ମରେ ନ ଲାଗେ, ତେବେ ହେ ପାର୍ଥ, ଲୋକେ ସବୁମନ୍ତେ ମୋର ବାଟ ଧରିବେ (ଅର୍ଥାତ୍, ଲୋକଙ୍କ ଆଦର୍ଶ ହେବା ପାଇଁ ମୁଁ ବରାବର ଟିକିଏ ହେଲେ ହେଳା ନ କରି କାମରେ ଲାଗିଛି) । ୨୩ ।

ଉତ୍ସୀଦେୟୁରିମେ ଲୋକା ନ କୁର୍ଯାଂ କର୍ମ ଚେଦହମ୍ ।
ସଂକରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ ।୨୪।

**ଅନ୍ୱୟ—** ଅହଂ କର୍ମ ନ କୁର୍ଯାଂ ଚେତ୍, ଇମେ ଲୋକାଃ ଉତ୍ସୀଦେୟୁଃ । ସଂକରସ୍ୟ ଚ କର୍ତ୍ତା ସ୍ୟାମ୍ । ଇମାଃ ପ୍ରଜାଃ ଉପହନ୍ୟାମ । । ୨୪ ।

**ଟୀକା—** ଅହଂ କର୍ମ ନ କୁର୍ଯାଂ ଚେତ୍ (ଯଦି) [ତର୍ହି ଅକର୍ମଣି ମୟି ଅନୁକୃତେ ସତି] ଇମେ ଲୋକାଃ ଉତ୍ସୀଦେୟୁଃ (ଉତ୍ସାଦଂ କ୍ଷୟଂ ବା ଗଚ୍ଛେୟୁଃ) [ଅହଂ କର୍ମହୀନଃ] ସନ୍ ସଂକରସ୍ୟ (ବର୍ଣ୍ଣକର୍ମ ବ୍ୟତିକ୍ରମସ୍ୟ) ଚ କର୍ତ୍ତା (ପ୍ରବର୍ତ୍ତକଃ) ସ୍ୟାଂ (ଭବେୟମ୍); [ଏବଂ ଚ] ଇମାଃ ପ୍ରଜାଃ (ଜନାନ୍) ଉପହନ୍ୟାମ୍ (ଵିଧ୍ୱଂସୟେୟମ୍) । ୨୪ ।

**ଅର୍ଥ—** ମୁଁ କର୍ମ ନ କଲେ ଏ ଲୋକେ ଉଚ୍ଛନ୍ନ ହୋଇଯିବେ । ମୁଁ [କର୍ମ] ସଂକରର କର୍ତ୍ତା ହେବି ଓ ଏ ଲୋକଙ୍କୁ ଅସ୍ତବ୍ୟସ୍ତ କରିଦେବି । ଅର୍ଥାତ୍, ମୋତେ ଅନୁକରଣ କରି ଲୋକେ ଅସ୍ତବ୍ୟସ୍ତ ହୋଇଯିବେ । ୨୪ ।

ବ୍ୟାଖ୍ୟା ସୂଚନା—ସଂକର = କର୍ମ ମିଶାମିଶି; ଗୋଳିଆ ପୋଳିଆ; ସବୁ କର୍ମଜଗତରେ ଅବ୍ୟବସ୍ଥା । କିଏ କର୍ମ ନ କରିବ, କିଏ ପୁଣି କାହା କର୍ମ କରିଯିବ, ଏଇପରି ଅବ୍ୟବସ୍ଥା ବା ଗୋଳମାଳ । ପ୍ରଜା = ମନୁଷ୍ୟମାନେ । ଅବତାର ହୋଇ ଜଗତକୁ ଆଦର୍ଶ ଦେଖାଇ ଲୋକସଂଗ୍ରହ କଥା କହୁଥିବାରୁ ଏଠାରେ କେବଳ ମନୁଷ୍ୟ ଜଗତକୁ ଲକ୍ଷ୍ୟ କରି କହୁଚନ୍ତି । ଏଇ ଶ୍ଳୋକରେ 'ସଂକର' ଓ 'ଉତ୍ସନ୍ନ

ଗିତା' କଥା ଦୁଇଟି ସଙ୍ଗେ ତୁଳନା କର । ଅର୍ଜୁନ ସେଠାରେ କହୁଥିଲେ, ଯୁଦ୍ଧରେ ସ୍ୱଜନମାନଙ୍କୁ ମାରିଲେ ଫଳରେ ବର୍ଣ୍ଣସଙ୍କର ଜନ୍ମିବେ ଓ ଜାତିଧର୍ମ ତଥା କୁଳଧର୍ମ ଉଚ୍ଛିନ୍ନ ହୋଇଯିବ । ଏଠାରେ ଭଗବାନ୍ ସେହି କଥାଗୁଡ଼ିକର ପ୍ରକୃତ ମର୍ମ ସୂଚନାରେ କହି ଯାଉଛନ୍ତି । ଭଗବାନ କହୁଛନ୍ତି—ଶ୍ରେଷ୍ଠ ଲୋକ, ମୋର ସ୍ୱଜନ ବୋଲି ମୋହରେ ପଡ଼ି, ସ୍ୱଧର୍ମ ବା ନିର୍ଦ୍ଦିଷ୍ଟ କର୍ମ ଛାଡ଼ି ବସିଲେ, ଲୋକର କର୍ମରେ ଗୋଳମାଳ ଘଟିବ । ପୁଣି ଏହି କର୍ମରେ ଜାତି ଓ ବର୍ଣ୍ଣ ନିର୍ଦ୍ଦିଷ୍ଟ ଥିବାରୁ, କର୍ମ ଗୋଳମାଳ ପଡ଼ିଲେ ଲୋକରେ ଜାତିସଙ୍କର ବା ବର୍ଣ୍ଣସଙ୍କର ଦେଖାଯିବ ଓ ଧର୍ମ ଉଚ୍ଛିନ୍ନ ହୋଇଯିବ, ସ୍ଥିତି ନାଶ ହେବ । ଦୃଷ୍ଟାନ୍ତ ସ୍ୱରୂପ, କ୍ଷତ୍ରିୟ ଧର୍ମ ଯୁଦ୍ଧକୁ ଡରିଲେ ସେ ହେଲା ବର୍ଣ୍ଣସଙ୍କର । ଏହି ସଙ୍କରଭାବ ପଶିଲେ ସ୍ୱଧର୍ମ ସ୍ଥିର ରହିବ ନାହିଁ ଓ ଲୋକସ୍ଥିତି ଅସ୍ତବ୍ୟସ୍ତ ହେବ । ୨୪ ।

**ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ ।**
**କୁର୍ଯ୍ୟାଦ୍ବିଦ୍ୱାଂସ୍ତଥାସକ୍ତଶ୍ଚିକୀର୍ଷୁର୍ଲୋକସଂଗ୍ରହମ୍ ।୨୫।**

**ଅନ୍ୱୟ**—ଭାରତ ! ଅବିଦ୍ୱାଂସଃ କର୍ମଣି ସକ୍ତାଃ ଯଥା କୁର୍ବନ୍ତି, ବିଦ୍ୱାନ୍ ଅସକ୍ତଃ ଲୋକସଂଗ୍ରହଂ ଚିକୀର୍ଷୁଃ ତଥା କୁର୍ଯ୍ୟାତ୍ । ୨୫ ।

**ଟୀକା**—[ଅତଏବ] ହେ ଭାରତ, ଅବିଦ୍ୱାଂସଃ (ଅଜ୍ଞାଃ) କର୍ମଣି ସକ୍ତାଃ (କର୍ମଫଳତୃଷ୍ଣାବନ୍ତଃ) [ସନ୍ତଃ] ଯଥା (ଯଦ୍ବତ୍) କୁର୍ବନ୍ତି, ବିଦ୍ୱାନ୍ (ଜ୍ଞାନୀ) ଅସକ୍ତଃ (ଅନାସକ୍ତଃ) [ସନ୍] ଲୋକସଂଗ୍ରହଂ (ଲୋକାନାଂ ସ୍ୱଧର୍ମେ ପ୍ରବର୍ତ୍ତନଂ, ଲୋକରକ୍ଷାଂ) ଚିକୀର୍ଷୁଃ (କର୍ତ୍ତୁମିଚ୍ଛୁଃ) [ ସନ୍ ଅପି ଏବ ] ତଥା (ତଦ୍ବତ୍) [ କର୍ମାଚରଣଂ ] କୁର୍ଯ୍ୟାତ୍ । ୨୫ ।

**ଅର୍ଥ**—[ଅତଏବ] ହେ ଭାରତ, ଅଜ୍ଞାନୀମାନେ କର୍ମରେ ଆସକ୍ତ ଥାଇ ଯେପରି କର୍ମ କରନ୍ତି, ଜ୍ଞାନୀ ଅନାସକ୍ତ ହୋଇ ଲୋକସଂଗ୍ରହ କରିବା ପାଇଁ ସେପରି କର୍ମ କରିବାର ଅଛି । ୨୫ ।

**ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍ ।**
**ଯୋଜୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ।୨୬।**

**ଅନ୍ୱୟ**—କର୍ମସଙ୍ଗିନାଂ ଅଜ୍ଞାନାଂ ବୁଦ୍ଧିଭେଦଂ ନ ଜନୟେତ୍ । ବିଦ୍ୱାନ୍ ଯୁକ୍ତଃ ସର୍ବକର୍ମାଣି ସମାଚରନ୍ ଯୋଜୟେତ୍ । ୨୬ ।

**ଟୀକା**—କର୍ମସଙ୍ଗିନାଂ ( କର୍ମାସକ୍ତାନାଂ ) ଅଜ୍ଞାନାଂ (ଅବିବେକିନାଂ) ବୁଦ୍ଧିଭେଦଂ (ମୟା ଏତତ୍ କର୍ତ୍ତବ୍ୟଂ, ଏତତ୍ ଚ ଅସ୍ୟ କର୍ମଣଃ ଫଳଂ ଇତି

ନଷ୍ଟସ୍ୱରୂପାସ୍ତାଃ ବୁଦ୍ଧେଃ ଭେଦଂ, ବିଶ୍ୱଜନଂ, ପ୍ରବୃତ୍ତକର୍ମବିଶ୍ୱାସ ଶୈଥିଲ୍ୟଂ) ନ ଜନୟେତ୍ (ଉତ୍ପାଦୟେତ୍) [ଅପି ତୁ] ବିଦ୍ୱାନ୍ (ବିବେକୀ) ଯୁକ୍ତଃ (ମୋକ୍ଷଯତ୍ନପରଃ, ଫଳାଫଳେଷୁ ସମତ୍ୱବାନ୍) [ସନ୍] ସର୍ବକର୍ମାଣି [ସ୍ୱୟଂ] ସମାଚରନ୍ (କୁର୍ବନ୍) [ତାନ୍ ଅଜ୍ଞାନ୍ କର୍ମଣି] ଯୋଜୟେତ୍ (କର୍ମାଣି କାରୟେତ୍) । ୨୬ ।

**ଅର୍ଥ**—କର୍ମଫଳରେ ଆସକ୍ତ ଅଜ୍ଞାନୀଙ୍କର [ମୋର ଏ କର୍ତ୍ତବ୍ୟ, ଏ କର୍ମର ଏ ଫଳ ପ୍ରଭୃତି] କର୍ମରେ ବିଶ୍ୱାସ ଚହଲେଇ ଦେବ ନାହିଁ । ପରନ୍ତୁ ଜ୍ଞାନୀ ନିଜର ମୁକ୍ତି ଯତ୍ନରେ ଫଳାଫଳରେ ସମବୁଦ୍ଧି ରଖି ମଧ୍ୟ ନିଜେ ସବୁ କର୍ମ କରିବାରେ [ତାଙ୍କର ଆଦର୍ଶ ହୋଇ] ତାଙ୍କୁ କରାଇବ । ୨୬ ।

**ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ ।**
**ଅହଂକାରବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ । ୨୭ ।**

**ଅନ୍ୱୟ**—ପ୍ରକୃତେଃ ଗୁଣୈଃ କର୍ମାଣି ସର୍ବଶଃ କ୍ରିୟମାଣାନି [ଭବନ୍ତି] ଅହଂକାରବିମୂଢ଼ାତ୍ମା ଅହଂ କର୍ତ୍ତା ଇତି ମନ୍ୟତେ । ୨୭ ।

**ଟୀକା**—[ନନୁ ବିଦ୍ୱଦବିଦୁଷୋଃ ଦ୍ୱୟୋଃ ସମମେବ କର୍ମ କର୍ତ୍ତବ୍ୟଂ ଚେତ୍, ତୟୋଃ କୋ ବିଶେଷଃ ? ଇତ୍ୟାଶଙ୍କ୍ୟାହ ଦ୍ୱାଭ୍ୟାଂ । [ ସର୍ଗସାମଗ୍ରୀତତ୍ତ୍ୱଭୂତାୟାଃ ପ୍ରକୃତେଃ (ସ୍ୱଭାବସ୍ୟ) ଗୁଣୈଃ (ସତ୍ତ୍ୱାଦିବିକାରୈଃ) [ଯଦ୍ ବା ପ୍ରକୃତିଜୈଃ ଇନ୍ଦ୍ରିୟ-ଗୁଣୈଃ ] କର୍ମାଣି ସର୍ବଶଃ (ସର୍ବଥା) କ୍ରିୟମାଣାନି (ସମ୍ପାଦ୍ୟମାନାନି) [ଭବନ୍ତି] (ଅପି ଚ) ଅହଂକାରବିମୂଢ଼ାତ୍ମା (କାର୍ଯ୍ୟକାରଣସଂଘାତେଷୁ ଅହମେତ୍ୟାତ୍ମପ୍ରତ୍ୟୟଃ ଅହଂକାରଃ ତେନ ବିମୂଢ଼ଃ ବିବେକହୀନଃ ଆତ୍ମା ବୁଦ୍ଧିଃ ଯସ୍ୟ ସଃ ) (ତେଷାଂ କର୍ମଣାଂ) ଅହଂ କର୍ତ୍ତା ଇତି ମନ୍ୟତେ । ୨୭ ।

**ଅର୍ଥ**—[ଜ୍ଞାନୀ ଅଜ୍ଞାନୀ ତ ସମସ୍ତେ କର୍ମ କରିବେ, ତାଙ୍କର ଆଉ ପ୍ରଭେଦ କଣ ? ଏଥିକୁ କହୁଚନ୍ତି] ସୃଷ୍ଟି ବସ୍ତୁର ମୂଳରୂପା ପ୍ରକୃତି ବା ସ୍ୱଭାବର ସତ୍ତ୍ୱ, ରଜ, ତମ ଏଇ ତିନି ଗୁଣରେ ( କିଂବା ପ୍ରକୃତିଜାତ ଇନ୍ଦ୍ରିୟ ଗୁଣରେ ) ସବୁମନ୍ତ୍ର କର୍ମ କରାହେଉଚି ସତ, ମାତ୍ର ଅହଂକାରରେ ବିବେକ ହରାଇ ସାଧାରଣ ଲୋକ ମୁଁ ଏ ସବୁର କର୍ତ୍ତା (ଅର୍ଥାତ୍ ମୁଁ କରୁଚି) ବୋଲି ଭାବେ । ( ୩.୧୧ ଟୀକା ଦେଖ— ୩.୧୬ରେ ଏଇପରି ଲୋକଙ୍କୁ ଇନ୍ଦ୍ରିୟାରାମ କୁହାଯାଇଚି) । ୨୭ ।

**ତତ୍ତ୍ୱବିତ୍ତୁ ମହାବାହୋ ଗୁଣକର୍ମବିଭାଗୟୋଃ ।**
**ଗୁଣା ଗୁଣେଷୁ ବର୍ତ୍ତନ୍ତେ ଇତି ମତ୍ୱା ନ ସଜ୍ଜତେ ।୨୮।**

**ଅନ୍ୱୟ**—ମହାବାହୋ ! ଗୁଣକର୍ମବିଭାଗୟୋଃ ତତ୍ତ୍ୱବିତ୍ ତୁ ଗୁଣାଃ ଗୁଣେଷୁ ବର୍ତ୍ତନ୍ତେ ଇତି ମତ୍ୱା ନ ସଜ୍ଜତେ । ୨୮ ।

**ଟୀକା**—[ବିଦ୍ୱାନ୍ ତୁ ତଥା ନ ମନ୍ୟତେ ଇତ୍ୟାହ] ହେ ମହାବାହୋ, ଗୁଣକର୍ମବିଭାଗୟୋଃ (ନାହଂ ଗୁଣଃ ନ ଚ କର୍ମ ଇତି ଗୁଣାତ୍ କର୍ମଣଃ ଚ ଆତ୍ମନୋ ବିଭାଗୌ ତୟୋଃ) ତତ୍ତ୍ୱବିତ୍ (ସ୍ୱରୂପବେତ୍ତା) ତୁ [ପ୍ରକୃତିବିକାରାଃ] ଗୁଣାଃ ଗୁଣେଷୁ (ଗୁଣକାର୍ଯ୍ୟେଷୁ) ବର୍ତ୍ତନ୍ତେ, ଇତି ମତ୍ୱା ନ ସଜ୍ଜତେ (ଆସକ୍ତଃ ଭବତି) । ୨୮ ।

**ଅର୍ଥ**—[ଜ୍ଞାନୀ ସେପରି ବିଷୟରେ ନାହିଁ ବୋଲି କହୁଛନ୍ତି] ହେ ମହାବାହୁ, ଗୁଣକର୍ମବିଭାଗର ରହସ୍ୟ ଜାଣିବା ଲୋକ, (ଅର୍ଥାତ୍, ମୁଁ ଗୁଣ ନୁହେଁ, ମୋର କର୍ମ ନୁହେଁ ବା ମୁଁ ଗୁଣବିକାର କର୍ମ ନୁହେଁ ବୋଲି ଗୁଣ ଓ କର୍ମ ଏ ଦୁଇଥିରୁ ଆତ୍ମାକୁ ଭିନ୍ନ ବୋଲି ବୁଝିବା ଲୋକ) ପ୍ରକୃତିଜାତ ଗୁଣମାନେ ଗୁଣକାର୍ଯ୍ୟ ବା କର୍ମରେ ଲାଗିଛନ୍ତି ବୋଲି ବିଚାରି [ନିଜେ] କର୍ମରେ [ମୋର ବୋଲି] ଆସକ୍ତ ହୁଏ ନାହିଁ ।୨୮।

ବ୍ୟାଖ୍ୟା ସୂଚନା—ଯେପରି ଶ୍ୱାସ ପ୍ରଶ୍ୱାସ ପ୍ରଭୃତି କ୍ରିୟା ନିଜେ ନିଜେ ହେଉଥାଏ, ସେଥିରେ ଲୋକ ଆସକ୍ତ ହୁଏ ନାହିଁ, ଯେ ଅଙ୍ଗରେ ରୋଗ ନ ହେବାଯାଏ ଲୋକ ତା କଥା ଭାବେ ନାହିଁ, କି ସେ ଅଛି ବୋଲି ଜାଣେ ନାହିଁ, ସେହିପରି ସ୍ୱାଭାବିକ କର୍ମ ଆପେ ଆପେ ହୁଏ । ଲୋକ ସେଥିରେ ଆସକ୍ତ ହୁଏ ନାହିଁ । ଯାହାର ସ୍ୱଭାବ ଉଦାର, ସେ ନିଜ ଉଦାରତା କେବେ ଜାଣେ ନାହିଁ, ଅଥଚ ଦାନ ନ କରି ରହିପାରେ ନାହିଁ । ଏହିପରି ଅନାସକ୍ତି, ଅଭ୍ୟାସ ଓ ଈଶ୍ୱର କୃପାରେ ମିଳେ—ମହାତ୍ମା ଗାନ୍ଧୀ । ୨୮ ।

**ପ୍ରକୃତେର୍ଗୁଣସମ୍ମୂଢାଃ ସଜ୍ଜନ୍ତେ ଗୁଣକର୍ମସୁ ।**
**ତାନକୃତ୍ସ୍ନବିଦୋ ମନ୍ଦାନ୍ କୃତ୍ସ୍ନବିନ୍ନ ବିଚାଳୟେତ୍ ।୨୯।**

**ଅନ୍ୱୟ**—ପ୍ରକୃତେଃ ଗୁଣସମ୍ମୂଢାଃ ଗୁଣକର୍ମସୁ ସଜ୍ଜନ୍ତେ । କୃତ୍ସ୍ନବିତ୍ ତାନ୍ ଅକୃତ୍ସ୍ନବିଦଃ ମନ୍ଦାନ୍ ନ ବିଚାଳୟେତ୍ । ୨୯ ।

**ଟୀକା**—ପ୍ରକୃତେଃ (ଦେହସ୍ୱଭାବସ୍ୟ) ଗୁଣସମ୍ମୂଢାଃ (ଗୁଣୈଃ ହୃତବିବେକାଃ) ଗୁଣକର୍ମସୁ ସଜ୍ଜନ୍ତେ (ମମେତି ଆସକ୍ତା ଭବନ୍ତି) । କୃତ୍ସ୍ନବିତ୍ (ସକଳଜ୍ଞଃ ଜ୍ଞାନୀ) ତାନ୍ ଅକୃତ୍ସ୍ନବିଦଃ (ଅଳ୍ପଜ୍ଞାନ୍) ମନ୍ଦାନ୍ (ମନ୍ଦମତୀନ୍) [ବୁଦ୍ଧିଭେଦେନ] ନ ବିଚାଳୟେତ୍ । ୨୯ ।

**ଅର୍ଥ**—ପ୍ରକୃତି ବା ଦେହ ସ୍ୱଭାବର ଗୁଣ ଘେନି ମୋହରେ ପଡ଼ିଥିବା ଲୋକେ ଗୁଣ କର୍ମମାନଙ୍କରେ ଆସକ୍ତ ଥାନ୍ତି । ସବୁ ଜାଣିଥିବା ଲୋକେ ସେହି ଅଳ୍ପଜ୍ଞ ମନ୍ଦମତି ଲୋକଙ୍କୁ ଘାଣ୍ଟି ଦେବ ନାହିଁ (ଅର୍ଥାତ୍, ସେମାନଙ୍କ କର୍ମ ଓ ଫଳାଦିରେ ବିଶ୍ୱାସ ଚହଲେଇ ଦେବ ନାହିଁ । (୩.୨୬) । ୨୯ ।

**ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା ।**
**ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ । ୩୦ ।**

**ଅନ୍ୱୟ**—ସର୍ବାଣି କର୍ମାଣି ମୟି ସଂନ୍ୟସ୍ୟ ଅଧ୍ୟାତ୍ମଚେତସା ନିରାଶୀଃ ନିର୍ମମଃ ଭୂତ୍ୱା ବିଗତଜ୍ୱରଃ [ସନ୍] ଯୁଧ୍ୟସ୍ୱ । ୩୦ ।

**ଟୀକା**—[ଅତଃ] ସର୍ବାଣି କର୍ମାଣି ମୟି (ପରମେଶ୍ୱରେ) ସଂନ୍ୟସ୍ୟ (ସମର୍ପ୍ୟ—ପରମେଶ୍ୱରସ୍ୟ ସର୍ବଂ ଇଦଂ ମତ୍ୱା—ଇତି ଭାବଃ) ଅଧ୍ୟାତ୍ମଚେତସା (ଦେହାଭିନ୍ନେ ଆତ୍ମନି ମନୋନିବେଶ୍ୟ) ନିରାଶୀଃ (ଫଳାଶାରହିତଃ, ତୃଷ୍ଣାହୀନଃ) [ତଥା] ନିର୍ମମଃ (କର୍ମଣି ମମତ୍ୱହୀନଃ) ଭୂତ୍ୱା, ବିଗତଜ୍ୱରଃ ଅବିକଳ୍ପଃ; ବୀତଶୋକଃ) [ସନ୍] ଯୁଧ୍ୟସ୍ୱ (ଯୁଦ୍ଧଂ କୁରୁ) । ୩୦ ।

**ଅର୍ଥ**—[ତେବେ] ସବୁ କର୍ମ ମୋ'ଠି ଛାଡ଼ିଦେଇ (ଅର୍ଥାତ୍, ଭଗବାନଙ୍କର ବୋଲି ବୁଝି) ଆତ୍ମତତ୍ତ୍ୱରେ ମନକୁ ଠିକ୍ ରଖି ତୃଷ୍ଣା ଓ ମମତା ଛାଡ଼ି ଆଉ ଶୋକ-ସନ୍ତାପ ନକରି ଯୁଦ୍ଧ କର । ୩୦ ।

ବ୍ୟାଖ୍ୟା ସୂଚନା—ଦେହସ୍ଥ ଆତ୍ମା ପରମାତ୍ମାଙ୍କ ଅଂଶର ପ୍ରକାଶ (୭.୫;୧୫.୭) ଏହା ଜାଣିଲେ, ପରମାତ୍ମା ଯେପରି ଜଗତ୍‌କର୍ମରେ ନିର୍ଲିପ୍ତ, ସେହିପରି ନିଜ କର୍ମରେ ନିଜେ ନିର୍ଲିପ୍ତ ହେବ ଓ ନିଜର କିଛି କର୍ମ ନାହିଁ, ସବୁ ପରମାତ୍ମାଙ୍କର ବିଶ୍ୱବିକାଶ କ୍ରିୟା ବୋଲି ମଧ୍ୟ ବୁଝିବ । ଏହାହିଁ ଯଥାର୍ଥ ଯଜ୍ଞ ବା ଆତ୍ମବଳି । ୩୦ ।

**ଯେ ମେ ମତମିଦଂ ନିତ୍ୟମନୁତିଷ୍ଠନ୍ତି ମାନବାଃ ।**
**ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ମୁଚ୍ୟନ୍ତେ ତେଽପି କର୍ମଭିଃ ।୩୧।**

**ଅନ୍ୱୟ**—ଯେ ମାନବାଃ ଶ୍ରଦ୍ଧାବନ୍ତଃ ଅନସୂୟନ୍ତଃ ମେ ଇଦଂ ମତଂ ନିତ୍ୟଂ ଅନୁତିଷ୍ଠନ୍ତି, ତେ ଅପି କର୍ମଭିଃ ମୁଚ୍ୟନ୍ତେ । ୩୧ ।

**ଟୀକା**—[ଏବଂ କର୍ମାନୁଷ୍ଠାନେ ଏବ ଗୁଣଂ ଆହ]—ଯେ ମାନବାଃ [ମୟି, ମଦ୍‌ବାକ୍ୟେ ବା] ଶ୍ରଦ୍ଧାବନ୍ତଃ (ଭକ୍ତତଃ ବିଶ୍ୱାସପରାୟଣାଃ) [ଦୁଃଖାତ୍ମକେ କର୍ମଣି ନିୟୋଜକଂ ମାଂ ଚ] ଅନସୂୟନ୍ତଃ (ମୟି ଦ୍ୱେଷରହିତାଃ) [ସନ୍ତଃ, ଜ୍ଞାନକର୍ମଣୋଃ ତଥା ଇନ୍ଦ୍ରିୟନିଗ୍ରହପ୍ରଶ୍ରୟୟୋଃ ତତ୍ତ୍ୱେ ଚ ନିର୍ବ୍ୟପେକ୍ଷାଃ ସନ୍ତଃ] ମେ (ମମ) ଇଦଂ (ଉକ୍ତଂ) ମତଂ ନିତ୍ୟଂ (ସଦା) ଅନୁତିଷ୍ଠନ୍ତି (ଅନୁସରନ୍ତି) ତେ ଅପି କର୍ମଭିଃ ମୁଚ୍ୟନ୍ତେ । ୩୧ ।

**ଅର୍ଥ**—ଏପରି କର୍ମ କରିଯିବାର ଗୁଣ କହୁଚନ୍ତି]—ଯେ ଲୋକେ ମୋ'ଠି ବିଶ୍ୱାସ ରଖି [କାମଗୁଡ଼ାଏ କାହିଁକି କରାଉଚ ଭଗବାନ୍ ବୋଲି] ମନରେ ମୋ'ଠି ଦ୍ୱେଷ ବା କ୍ଷମ୍ୟା ନ କରି [କୌଣସି ଜ୍ଞାନ କର୍ମାଦି ବା ଇନ୍ଦ୍ରିୟର ଭୋଗ ସଂଯମାଦି ତତ୍ତ୍ୱ ବୁଝିବାକୁ ଅଡ଼ି ଅପେକ୍ଷା ନ କରି] ମୋର ଏ ମତକୁ ସର୍ବଦା ମାନି ଚଳନ୍ତି, (ଅର୍ଥାତ୍, ଈଶ୍ୱରଙ୍କର ଏହା ମତ ବା ନିର୍ଦ୍ଦେଶ ବୋଲି ମାନି ଚଳନ୍ତି] ସେମାନେ ବି କର୍ମରୁ ହିଁ ମୁକ୍ତି ପାଆନ୍ତି ।

ବ୍ୟାଖ୍ୟା ସୂଚନା—ସେମାନେ ବି ମୁକ୍ତି ପାଆନ୍ତି, ଅର୍ଥାତ୍ ଯେ ବୁଝି କରି କରନ୍ତି ସେ ତ ପାଆନ୍ତି; କିନ୍ତୁ ଯେ ଖାଲି ଭକ୍ତିରେ ମୋତେ ମାଲିକ ବୋଲି ସ୍ୱୀକାର ମୋ ସ୍ୱୀକାର ପରି ମୋ କାମ କରିଯାଆନ୍ତି, ସେମାନଙ୍କୁ ମଧ୍ୟ କର୍ମ ଦୋଷ ଲାଗେ ନାଇ । ୩୧ ।

**ଯେ ତ୍ୱେତଦଭ୍ୟସୂୟନ୍ତୋ ନାନୁତିଷ୍ଠନ୍ତି ମେ ମତମ୍ ।**
**ସର୍ବଜ୍ଞାନବିମୂଢ଼ାଂସ୍ତାନ୍ ବିଦ୍ଧି ନଷ୍ଟାନଚେତସଃ । ୩୨ ।**

**ଅନ୍ୱୟ**—[ଅପି] ତୁ ଯେ ଏତତ୍ ମେ ମତଂ ଅଭ୍ୟସୂୟନ୍ତଃ ନ ଅନୁତିଷ୍ଠନ୍ତି, ସର୍ବଜ୍ଞାନବିମୂଢ଼ାନ୍ ତାନ୍ ଅଚେତସଃ ନଷ୍ଟାନ୍ ବିଦ୍ଧି । ୩୨ ।

**ଟୀକା**—[ଅନ୍ୟଥା ଦୋଷମାହ]—[ଅପି] ତୁ ଯେ ଏତତ୍ ମେ ମତଂ ଅଭ୍ୟସୂୟନ୍ତଃ ( ତର୍କେଣ ଦ୍ୱେଷାତ୍ ବା ନିନ୍ଦନ୍ତଃ ନ ଅନୁତିଷ୍ଠନ୍ତି, ସର୍ବଜ୍ଞାନବିମୂଢ଼ାନ୍ (ସର୍ବ ଜ୍ଞାନକର୍ମାଦୀନାଂ ଜ୍ଞାନଂ ଅସ୍ମାକଂ ଅସ୍ତୀତି ଦର୍ପେଣ ବିମୂଢ଼ାନ୍ ) ତାନ୍ ଅଚେତସଃ ( ଅବଲେପାନ୍ଧାନ୍, ଯଥାର୍ଥାତ୍ମଜ୍ଞାନହୀନାନ୍ ) ନଷ୍ଟାନ୍ ( ଜୀବନ୍ତୋଽପି ଅମନୁଷ୍ୟାନ୍ ) ବିଦ୍ଧି । ୩୨ ।

**ଅର୍ଥ**—[ଅନ୍ୟଥା ଦୋଷ କହୁଚନ୍ତି]—କିନ୍ତୁ ଯେ ମୋର ଏଇ ମତକୁ ତର୍କ ବା ବିରକ୍ତିରେ ନିନ୍ଦା କରି ମାନନ୍ତି, ସବୁ ଜ୍ଞାନ ଆମର ଅଛି ବୋଲି ଗର୍ବରେ ବିମୂଢ଼ ହୋଇ ସେଇ ଚେତନା ହରାଇଥିବା ଲୋକେ ସତ୍ୟାନାଶ ହୁଅନ୍ତି, ଜାଣ, (ଅର୍ଥାତ୍, ସେମାନେ ଅମନୁଷ୍ୟ ଜାଣ) । ୩୨ ।

ବ୍ୟାଖ୍ୟା ସୂଚନା—ଏଠାରେ ତାର୍କିକମାନଙ୍କ ନାସ୍ତିକତା ପ୍ରତି ଲକ୍ଷ୍ୟ ଅଛି । କର୍ମହୀନ ହେଲେ ଯେବେ ମୁକ୍ତି, ତେବେ ଭଗବାନ୍ ଏ କର୍ମ ସୃଷ୍ଟି କଲେ କାହିଁ ? କର୍ମରେ ଯେବେ ଦୁଃଖ ଦୋଷ ନିଶ୍ଚୟ ଅଛି ତେବେ ଲୋକଙ୍କୁ ଭଗବାନ୍ ବା କାହିଁକି କର୍ମ ଭିତରେ ପକାଇ ରଖିଚନ୍ତି ? ଏଇସବୁ ତର୍କରୁ ବିରକ୍ତି ଓ ନାସ୍ତିକତା ବା ଈଶ୍ୱର ନିନ୍ଦା ଆସେ ଓ ଏଇସବୁ ଜ୍ଞାନମୋହରେ ଲୋକ ଚେତନା ହରାଏ ବୋଲି ଏଠାରେ କହୁଚନ୍ତି । ୩୨ ।

**ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରକୃତେର୍ଜ୍ଞାନବାନପି ।**
**ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି ? ।୩୩।**

**ଅନ୍ୱୟ**—ଜ୍ଞାନବାନ୍ ଅପି ସ୍ୱସ୍ୟାଃ ପ୍ରକୃତେଃ ସଦୃଶଂ ଚେଷ୍ଟତେ । ଭୂତାନି ପ୍ରକୃତିଂ ଯାନ୍ତି । ନିଗ୍ରହଃ କିଂ କରିଷ୍ୟତି ? । ୩୩ ।

**ଟୀକା**—[ଯତଃ ନ କେବଳଂ ଉକ୍ତଜ୍ଞାନଗର୍ବାନ୍ଧଃ ଅପି ତୁ ଯଥାର୍ଥତଃ] ଜ୍ଞାନବାନ୍ ଅପି ସ୍ୱସ୍ୟାଃ ନିଜାୟାଃ) [ଦେହହେତୁଭୂତାୟାଃ] ପ୍ରକୃତେଃ ସଦୃଶଂ (ଅନୁରୂପଂ) ଚେଷ୍ଟତେ (ଆଚରତି) । ଭୂତାନି (ପ୍ରାଣିନଃ) ପ୍ରକୃତିଂ ଯାନ୍ତି । [ତସ୍ମ

ଈଶ୍ୱରନିର୍ଭରତ୍ୱେନ ଆଚରଣଂ ବିନା ପୁରୁଷସ୍ୟ ଇନ୍ଦ୍ରିୟୈସ୍ତୁ ] ନିଗ୍ରହଃ (ବଳାତ୍କାରଃ) କିଂ କରିଷ୍ୟତି ? (ନ ଫଳତି ଇତ୍ୟର୍ଥଃ) । ୩୩ ।

**ଅର୍ଥ**—[କାହିଁକି ନା, ଖାଲି ଉପରେ ଲୁଚାଯାଇ ଥିବା ଜ୍ଞାନଗର୍ବ କି ନୁହେଁ ଯଥାର୍ଥ] ଜ୍ଞାନୀ ବି ମନକୁ ନିଜ ସ୍ୱଭାବ ଭଳି କର୍ମ କରିଯାଏ । ଜୀବ ମାତ୍ରେ ଯେଉଁ ପ୍ରକୃତି ବାଟ ଧରନ୍ତି । [ଏପରି ସ୍ଥଳେ ପକ୍ଷବୁଦ୍ଧିରେ ଈଶ୍ୱରଙ୍କ ଉପରେ ପକାଇ ଦେଇ କର୍ମରେ ଲାଗି ନ ରହିଲେ] ଖାଲି ଖେଳରୁ ଇନ୍ଦ୍ରିୟଙ୍କୁ ଜୋର କରି ଝିଙ୍କିଲେ କି ଫଳ ହେବ ?

ବ୍ୟାଖ୍ୟା ସୂଚନା—ଜ୍ଞାନୀର କର୍ମତ୍ୟାଗ ସାଧନାକୁ ଏଠାରେ ଲକ୍ଷ୍ୟ କରାଯାଇଛି । ନିଷ୍କର୍ମୀର ଇନ୍ଦ୍ରିୟନିଗ୍ରହ ଏକପ୍ରକାର ଅସମ୍ଭବ । କର୍ମରେ ଲାଗି ରହି ନିର୍ଦ୍ୱନ୍ଦ୍ୱ ହେବା ହିଁ ଇନ୍ଦ୍ରିୟ ନିଗ୍ରହର ଉପାୟ (୫.୩) । କାହିଁକି ନା, ପ୍ରକୃତି ଓ ଇନ୍ଦ୍ରିୟକର୍ମ ଅଲଂଘ୍ୟ । ପର ଶ୍ଳୋକ ଦେଖ । ୩୩ ।

**ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ ।**
**ତୟୋର୍ନ ବଶମାଗଚ୍ଛେତ୍‌ତୌ ହ୍ୟସ୍ୟ ପରିପନ୍ଥିନୌ ।୩୪।**

**ଅନ୍ୱୟ**—ଇନ୍ଦ୍ରିୟସ୍ୟ ଇନ୍ଦ୍ରିୟସ୍ୟ ଅର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ । ତୟୋଃ ବଶଂ ନ ଆଗଚ୍ଛେତ୍ । ହି ତୌ ଅସ୍ୟ ପରିପନ୍ଥିନୌ [ ଭବତଃ ] । ୩୪ ।

**ଟୀକା**—[ କର୍ମସ୍ଥାନସ୍ୟ ରାଗଦ୍ୱେଷୌ ଅଲଂଘନୀୟୌ—ଇତ୍ୟାହ ] ଇନ୍ଦ୍ରିୟସ୍ୟ ଇନ୍ଦ୍ରିୟସ୍ୟ ପ୍ରତ୍ୟେନ୍ଦ୍ରିୟସ୍ୟ) [ ଇଷ୍ଟେଦ୍ୱିଷ୍ଟେ ବା ] ଅର୍ଥେ (ପ୍ରୟୋଜନେ, ବିଷୟେ) ରାଗଦ୍ୱେଷୌ (ପ୍ରୀତିବିରାଗୌ) ବ୍ୟବସ୍ଥିତୌ (ନିଶ୍ଚିତମେବ ବର୍ତ୍ତେତେ) । ତୟୋଃ [ରାଗଦ୍ୱେଷୟୋଃ] ବଶଂ (ଅଧୀନତାଂ) ନ ଆଗଚ୍ଛେତ୍ (ସ୍ୱୀକୁର୍ଯ୍ୟାତ୍) । ହି (ଯତଃ) ତୌ [ରାଗଦ୍ୱେଷୌ] ଅସ୍ୟ [ଜୀବସ୍ୟ] ପରିପନ୍ଥିନୌ ( ଶ୍ରେୟୋମାର୍ଗେ ବିଘ୍ନକରୌ) [ଭବତଃ] । ୩୪ ।

**ଅର୍ଥ**—[ଖାଲି କର୍ମ ଛାଡ଼ିଦେଇ ବସିଲେ ଇନ୍ଦ୍ରିୟନିଗ୍ରହ ଓ ତହିଁ ସଙ୍ଗେ ରାଗ ଦ୍ୱେଷ ଯାଏ ନାଇ ବୋଲି କହୁଛନ୍ତି]—ଇନ୍ଦ୍ରିୟେ ଇନ୍ଦ୍ରିୟେ ଇନ୍ଦ୍ରିୟର ପ୍ରୟୋଜନ ବା ବିଷୟ ଓ ତହିଁରେ କାହିଁ ବା ରାଗ, କାହିଁ ବା ଦ୍ୱେଷ, ରହିଛି ହିଁ ରହିଛି । ତାଙ୍କ (ସେଇ ରାଗ ଦ୍ୱେଷର) ପାଲରେ ପଡ଼ିବା ଠିକ ନୁହେଁ । କାହିଁକି ନା, ସେ ଦୁହେଁ (ରାଗ ଦ୍ୱେଷ) ହିଁ ଲୋକର [ଶ୍ରେୟ ପନ୍ଥାରେ] ଶତ୍ରୁ । (ଅର୍ଥାତ୍, କର୍ମରେ ରାଗ ଦ୍ୱେଷାଦି ଦ୍ୱନ୍ଦ୍ୱ ଛାଡ଼ି ଅନାସକ୍ତ ହେବା ହିଁ ମୋକ୍ଷର ଉପାୟ, କର୍ମ ଛାଡ଼ିବା ମୂଢ଼ତା) [ଜୀବ, ପ୍ରକୃତି ଓ ଇନ୍ଦ୍ରିୟର ସଂବନ୍ଧ ତତ୍ତ୍ୱ, ପାଇଁ ୧୫.୭ ଦେଖ ] । ୩୪ ।

ବ୍ୟାଖ୍ୟା ସୂଚନା—ଇନ୍ଦ୍ରିୟ ଅର୍ଥ=ଇନ୍ଦ୍ରିୟର ଯା ଦରକାର, 'ବିଷୟ' । ରାଗ=ପ୍ରୀତି, ସ୍ନେହ, ସଉକ୍, ଲୋଡ଼ିବା । ଦ୍ୱେଷ=ବିରକ୍ତି, ବିମୁଖ ପାଇବା, ଛାଡ଼ିବା,

ବିଗିଡ଼ିବ । ଏଇ ରାଗଦ୍ୱେଷ, ସୁଖ ଦୁଃଖାଦି ଦ୍ୱନ୍ଦ୍ୱର ମୂଳ । କାନର ବିଷୟ ହେଲା, ଶୁଣିବା । କିଛି ଶୁଣିବାର ଇଚ୍ଛା ହେଲେ, 'ରାଗ' ହେଲା । ଇଚ୍ଛା ନ ହେଲେ, 'ଦ୍ୱେଷ' ହେଲା । ଏ ତ ସାଧାରଣ ସ୍ୱଭାବ । ଏଥି ବୋଲି ରାଗ ଦ୍ୱେଷରେ ପଡ଼ି ନ ଯାଇ ସେ ସବୁ ବିବେଚନା କରିବା ଦରକାର । ଆତ୍ମାକୁ ସୁଖ ଦୁଃଖ ଛୁଇଁବା ଠିକ୍ ନୁହେ । ଏଇ ସ୍ୱଭାବଯାଏ ଲୋକର ପହଞ୍ଚିବା ଦରକାର—ମହାତ୍ମା ଗାନ୍ଧୀ ]

**ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।**
**ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ । ୩୫ ।**

**ଅନ୍ୱୟ**—ସ୍ୱନୁଷ୍ଠିତାତ୍ ପରଧର୍ମାତ୍ ବିଗୁଣଃ ସ୍ୱଧର୍ମଃ ଶ୍ରେୟାନ୍ । ସ୍ୱଧର୍ମେ ନିଧନଂ ଶ୍ରେୟଃ, ପରଧର୍ମଃ ଭୟାବହଃ [ ଭବତି ] ।୩୫।

**ଟୀକା**—[ସ୍ୱଧର୍ମେ ଚେଷ୍ଟମାନସ୍ୟ ସୁଲଂଘନୀୟୌ ତୌ ରାଗଦ୍ୱେଷୌ ଇତ୍ୟାହ]—ସ୍ୱନୁଷ୍ଠିତାତ୍ (ସୁଷ୍ଠୁ ଅନୁଷ୍ଠିତାତ୍, ସାଙ୍ଗତଃ କୃତାତ୍) ପରଧର୍ମାତ୍ (ଅପରସ୍ୱଭାବାନୁରୂପ-କର୍ମଣଃ) ବିଗୁଣଃ (ଲୋକଦୃଷ୍ଟ୍ୟା ଦୁଷ୍ଟଃ, ଦ୍ୱେଷ୍ୟଃ) [ଅପି ବର୍ଣ୍ଣବ୍ୟବସ୍ଥାୟାଂ ସମାଜ-ବ୍ୟବସ୍ଥାୟାଂ ବା ] ସ୍ୱଧର୍ମଃ (ନିଜ-ସ୍ୱଭାବନିୟତଂ କର୍ମ) ଶ୍ରେୟାନ୍ (ଶ୍ରେୟସ୍କରଃ । [ଯତଃ ସର୍ଗସ୍ଥିତୌ, ମାନବଲୋକସ୍ଥିତୌ ବା] ସ୍ୱଧର୍ମେ (ନିଜକର୍ମଣି) ନିଧନଂ [କିମୁତ ବୈଗୁଣ୍ୟଂ, ନିନ୍ଦା, ଦ୍ୱେଷଃ, ଦୁଃଖଂ ବା] ଶ୍ରେୟଃ (ହିତତରଂ); ଅନୁରାଗାତ୍ ଆଶ୍ରିତଃ [ପରଧର୍ମଃ] ଭୟାବହଃ (ସ୍ଥିତିନାଶଭୟହେତୁଃ) [ଭବତି] । (ସ୍ୱଧର୍ମଃ, ଆତ୍ମଧର୍ମଃ; ପରଧର୍ମଃ ଇନ୍ଦ୍ରିୟଧର୍ମୋ ବା ଇତି କେଚିତ୍) । ୩୫ ।

**ଅର୍ଥ**—[ସ୍ୱଧର୍ମରେ ନିର୍ବିକଳ୍ପ ଭାବରେ କର୍ମ କରିଯିବାରେ ସେଇ ରାଗଦ୍ୱେଷ ତୁଟାଇବାକୁ ହୁଏ ବୋଲି କହୁଛନ୍ତି]—ଅନ୍ୟର ଧର୍ମ ଇନ୍ଦ୍ରିୟଭୋଗ ଦୃଷ୍ଟିରେ ପ୍ରୀତିକର ହେଲେହେଁ ବିରକ୍ତିକର ଓ ଲୋକରେ ହୁଏତ ବାଚ୍ୟ ବା ନିନ୍ଦ୍ୟ ସ୍ୱଧର୍ମ ଶ୍ରେୟ । କାହିଁକି ନା, ସୃଷ୍ଟି ବା ମାନବଲୋକସ୍ଥିତିବିଧାନରେ ନିଜ ଧର୍ମରେ ରହି ଖାଲି ବିରକ୍ତି ବା ନିନ୍ଦା କାହିଁକି ମରଣ ବି ମଙ୍ଗଳ । ଅଥଚ ସୁଖକର ବା ସୁଲଭ ବୋଲି ପରଧର୍ମ ଧରିବା ଭୟଙ୍କର । (କାରଣ, ତା ସୃଷ୍ଟି-ଶୃଙ୍ଖଳାର ନିୟମ ନୁହେ) । ୩୫ ।

ବ୍ୟାଖ୍ୟା ସୂଚନା—୧୮.୪୭ ଟୀକା ଦେଖ । କେହି କେହି, ସ୍ୱଧର୍ମ = ଆତ୍ମଧର୍ମ ଓ ପରଧର୍ମ = ଇନ୍ଦ୍ରିୟ ଧର୍ମ, ଏଇପରି ଅର୍ଥ କରନ୍ତି । ମାତ୍ର ବର୍ଣ୍ଣ ଧର୍ମ ସମ୍ପର୍କରେ ବିଚାର କଲେ, ଏହାର ଅର୍ଥ ସ୍ପଷ୍ଟ ହେବ । ୨.୩୧, ୩୩; ୧୮. ୪୩, ୪୫ ଦେଖ ।

ଧର୍ମ = ଯେ ଧାରଣ କରିଚ ବା ଯହିଁରେ ଏ ପ୍ରଜା ଧରି ହୋଇ ରହିଚ । ଯହିଁରେ ସମାଜର ଧାରଣ ପୋଷଣ ହୁଏ, ତାହାହିଁ ମନୁଷ୍ୟର ଧର୍ମ । ଏ ଅଧ୍ୟାୟରେ ୧୦ ଓ ୧୫ ଶ୍ଲୋକରେ ଭଗବାନ୍ ବୈଦିକ ଯଜ୍ଞବ୍ୟାଖ୍ୟାରେ କହିଚନ୍ତି ଯେ, ବିଧାତା

ଧର୍ମ ସହିତ ପ୍ରଜା ସୃଷ୍ଟି କରିଛନ୍ତି । ବ୍ରହ୍ମ ସେହି ନିତ୍ୟକର୍ମରେ ପ୍ରତିଷ୍ଠିତ ଅଛନ୍ତି ।୩.୯ ଟୀକା ଦେଖ । ସୃଷ୍ଟିରେ ଦେଖ, ସେହି ନିତ୍ୟ ନିର୍ଦ୍ଦିଷ୍ଟ କର୍ମ ବା ସ୍ୱଧର୍ମରେ ସୂର୍ଯ୍ୟ ଫୁଲ ଫୁଟାଉଛି, ହିମ ତାକୁ ପୋଡ଼ି ଦେଉଛି । ଏହିପରି ସମସ୍ତେ ନିଜ ନିଜ କାର୍ଯ୍ୟ କରୁଥିବାରୁ ସୃଷ୍ଟି ପ୍ରକାଶର ସଂସ୍ଥା ଠିକ୍ ଚାଲିଛି । ଉଦାହରଣ ସ୍ୱରୂପ—ସୂର୍ଯ୍ୟ ଯେବେ ସହଜ ବୋଲି ଫୁଲ ପେଡ଼ି ବସିବ, ହିମ ତ ଫୁଟାଇବ ନାହିଁ । ଫୁଟାଇଲେ ବି ତାହା ଅନ୍ୟ ପ୍ରକାର ହେବ । ଏହିପରି ସବୁ ଚାଲିଲେ, ସୃଷ୍ଟିର ସଂସ୍ଥାରେ ଗୋଳମାଳ ହୋଇ ସବୁ ବିଗିଡ଼ି ଯିବାର ଭୟ ସ୍ୱାଭାବିକ । ସେଥିପାଇଁ ସମସ୍ତେ ସ୍ୱଧର୍ମରେ ରହିବେ । ସେ ସ୍ୱଧର୍ମରେ ରାଗ ହେଉ, ଦ୍ୱେଷ ହେଉ, ସୁଖ ଥାଉ, ଦୁଃଖ ଥାଉ, ସ୍ତୁତି ଥାଉ, ନିନ୍ଦା ଥାଉ, ତାକୁ ଛାଡ଼ି ଅନ୍ୟର ଧର୍ମ ଧରିବା ଠିକ ନୁହେଁ । ସୂର୍ଯ୍ୟ ହିମର ଦୃଷ୍ଟାନ୍ତରେ ଯାହା କୁହାଗଲା, ମାନବ ଲୋକ ବା ମାନବ ସମାଜର ସଂସ୍ଥାରେ—ତଥା ଅନ୍ୟାନ୍ୟ ଜନ୍ତୁଜଗତରେ ବିଧାତାଙ୍କର ସେହି ନିୟମ ସ୍ଥିର ଓ ନିତ୍ୟ । ସେଥିରେ ହିଁ ବସ୍ତୁଧର୍ମ, ଜନ୍ତୁଧର୍ମ, ବର୍ଣ୍ଣଧର୍ମ ପ୍ରଭୃତି ଭୂତମାନଙ୍କର ସ୍ୱଧର୍ମ ପ୍ରତିଷ୍ଠିତ । ଗାଈ ପିଲା ପାଇଁ ପହ୍ନାରେ ଦୁଧ ନ ରଖିବା ଯେପରି, କ୍ଷତ୍ରିୟ ଶୋକରୁ ଡରି ଯୁଦ୍ଧ ନ କରିବା ସେହିପରି । ମନୁଷ୍ୟର ପ୍ରାକ୍ତନ ଶିକ୍ଷା, ବେଷ୍ଟନୀ, ପୌରୁଷ ପ୍ରଭୃତି ଯୋଗ ସ୍ୱଭାବ ତଥା ସ୍ୱଧର୍ମ ଫୁଟିଉଠେ । ସେହି 'ସ୍ୱଭାବ ନିୟତ' କର୍ମରେ ରହି ସେ ନିଜର 'ଜୀବ-ଭୂତ' ବ୍ରହ୍ମ ସ୍ୱଭାବକୁ ଉଠିବ । (୭.୫ ଦେଖ), ଇନ୍ଦ୍ରିୟରୁ ଆତ୍ମାର ସ୍ୱଭାବକୁ ଉଠିବ । (୩.୪୨, ୪୩; ୬.୫ ଦେଖ) । ମାତ୍ର ମନୁଷ୍ୟହିଁ ମୋହରେ ପଡ଼ି ଆତ୍ମାକୁ ଇନ୍ଦ୍ରିୟ ଆଡ଼କୁ ବା ତଳକୁ ପକାଇପାରେ । (୭.୭ ଦେଖ) । ମନୁଷ୍ୟର ଏହା କରିବା ଉଚିତ ନୁହେଁ । ସୃଷ୍ଟିର ସକଳ ବସ୍ତୁ ଜନ୍ତୁ ନିଜର ସ୍ଥିର ଅଧ୍ୟାତ୍ମ ସ୍ୱଭାବରେ (୮.୩ ଦେଖ) ଯେପରି ସ୍ୱଧର୍ମ ଧରିଥାଆନ୍ତି, ଜ୍ଞାନର ସହିତ ସେହିପରି ନିଜର ଅଧ୍ୟାତ୍ମ ସ୍ୱଭାବକୁ ଧରି ଧର୍ମରେ ରହିବା ହିଁ ମନୁଷ୍ୟର ଯଥାର୍ଥ ମନୁଷ୍ୟତା । ତା ନ କଲେ ସେ ନଷ୍ଟ ହୁଏ । (୩.୩୨ ଦେଖ) । ଏହିପରି ସ୍ୱଧର୍ମ ଛାଡ଼ିଲେ ମନୁଷ୍ୟ ଅଧ୍ୟାତ୍ମ ସ୍ୱଭାବରୁ ନିଜେ ଖସିପଡ଼େ: ସୃଷ୍ଟି ବା ଲୋକସଂସ୍ଥା ବିଗାଡ଼ି ଦେବାରେ ହେତୁ ହୁଏ । ମହତ୍ ଲୋକେ ପୁଣି ଏହା କଲେ ଅନ୍ୟ ଲୋକେ ଅତିଶୀଘ୍ର ଭ୍ରଷ୍ଟ ହୁଅନ୍ତି । ସେଥିପାଇଁ ସ୍ୱଧର୍ମ ଛାଡ଼ିବା ଭୟଙ୍କର ।

ସମାଜରେ କାହା କାମ ପାଇଖାନା ଖଟିବା, କାହା କାମ ହିସାବ ରଖିବା । ହିସାବ ରଖିବା ଲୋକ ଭଲ ବା ଉତ୍ତମ ବୋଲି ଗଣାହେଉ ପଛକେ, କିନ୍ତୁ ପାଇଖାନା ଖଟିବା ଲୋକ ଆପଣା ଧର୍ମ ଛାଡ଼ିଲେ ସେ ଭ୍ରଷ୍ଟ ହେବ ଓ ସେଥିରେ ସମାଜର ହାନି ହେବ । ଈଶ୍ୱରଙ୍କ ପାଖେ ଏ ଦୁହିଁଙ୍କ ସେବାରେ ମୂଲ୍ୟ ତାଙ୍କ ନିଜ ନିଷ୍ଠା ଅନୁସାରେ ହିସାବରେ ଆସିବ । ଏହିପରି ସବୁ ବ୍ୟବସାୟର ମୂଲ୍ୟ ସେଠାରେ ଏକ ହୋଇପାରେ । ଦୁହେଁ ଈଶ୍ୱରାର୍ପଣ ବୁଦ୍ଧିରେ ନିଜ ନିଜ କର୍ତ୍ତବ୍ୟ କଲେ ସମାନ ଭାବରେ ମୋକ୍ଷର ଅଧିକାରୀ ହେବେ—ମହାତ୍ମା ଗାନ୍ଧୀ ] । ୩୫ ।

ଅର୍ଜୁନ ଉବାଚ

**ଅଥ କେନ ପ୍ରଯୁକ୍ତୋଽୟଂ ପାପଂ ଚରତି ପୂରୁଷଃ ।**
**ଅନିଚ୍ଛନ୍ନପି ବାର୍ଷ୍ଣେୟ ବଲାଦିବ ନିୟୋଜିତଃ । ୩୬ ।**

**ଅନ୍ୱୟ**—ଅଥ ବାର୍ଷ୍ଣେୟ, କେନ ପ୍ରଯୁକ୍ତଃ ଅୟଂ ପୂରୁଷଃ ଅନିଚ୍ଛନ୍ନପି ବଳାତ୍ ନିଯୋଜିତଃ ଇବ ପାପଂ [ଆ·—] ଚରତି ? । ୩୬ ।

**ଟୀକା**—ଅର୍ଜୁନଃ ଉବାଚ—ଅଥ ହେ ବାର୍ଷ୍ଣେୟ, [ଈଶ୍ୱରଃ ପାପାୟ ନ ପ୍ରେରୟତି ଚେତ୍ ତର୍ହି ] କେନ ପ୍ରଯୁକ୍ତଃ ଅୟଂ ପୂରୁଷଃ ଅନିଚ୍ଛନ୍ ଅପି ବଳାତ୍ ନିଯୋଜିତଃ ଇବ ପାପଂ [ଆ-] ଚରତି (ପ୍ରକୃତି-ନିୟମାତ୍ ଭ୍ରଷ୍ଟୋ ଭବତି ?—ଇତି ଭାବଃ) । ୩୬ ।

**ଅର୍ଥ**—ଅର୍ଜୁନ କହିଲେ, ହେ ବାର୍ଷ୍ଣେୟ, (ବୃଷ୍ଣି କୁଳୋଦ୍ଭବ କୃଷ୍ଣ) [ଈଶ୍ୱର ଯଦି ପାପ ନ କରାନ୍ତି ତେବେ] କାହାଦ୍ୱାରା ପ୍ରଯୁକ୍ତ ହୋଇ ଏ ମନୁଷ୍ୟ ଇଚ୍ଛା ନ କରି ବି ଝିଙ୍ଗିହୋଇ ଯୋଗ୍ୟ ହେଲାପରି [ଆତ୍ମସ୍ୱଭାବରୁ ଚିହ୍ନି] ଯାଇ ପାପରେ ପଡ଼ୁଛି ? । ୩୬ ।

ଶ୍ରୀ ଭଗବାନୁବାଚ

**କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ ।**
**ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣମ୍ ।୩୭।**

**ଅନ୍ୱୟ**—ରଜୋଗୁଣସମୁଦ୍ଭବଃ ଏଷଃ କାମଃ, ଏଷଃ [ଅପି] କ୍ରୋଧଃ, ମହାଶନଃ ମହାପାପ୍ମା । ଇହ ଏନଂ ବୈରିଣଂ ବିଦ୍ଧି । ୩୭ ।

**ଟୀକା**—[ଅତ୍ର ଉତ୍ତରଂ] ଶ୍ରୀ ଭଗବାନ୍ ଉବାଚ—ରଜୋଗୁଣସମୁଦ୍ଭବଃ (ଦେହସ୍ୱଭାବସ୍ୟ ତୃଷ୍ଣାୟାଃ ହେତୁଭୂତଃ ରଜୋଗୁଣଃ, ତସ୍ମାତ୍ ସମୁଦ୍ଭବତି ଜାୟତେ ଇତି; ଯଦ୍ ବା ତୃଷ୍ଣାମୂଳସ୍ୟ ରଜୋଗୁଣସ୍ୟ ସମୁଦ୍ଭବଃ ପ୍ରକାଶକଃ) ଏଷଃ (ପାପାୟ ବଳାତ୍ ପ୍ରବର୍ତ୍ତକଃ ) କାମଃ, ଏଷଃ [ଅପି] କ୍ରୋଧଃ (କେନଚିତ୍ ପ୍ରତିହତଃ କାମଃ କ୍ରୋଧରୂପଃ ଭବତି ଇତି ଦ୍ୱୟୋଃ କାମକ୍ରୋଧୟୋଃ ଅଭିନ୍ନତ୍ୱଂ କଥିତମ୍) । ଏଷଃ ତୁ ମହାଶନଃ (ଦୁଷ୍ପୂରଃ) [ଅପି ଚ ] ମହାପାପ୍ମା (ମହାପାପସ୍ୟ ପ୍ରବର୍ତ୍ତକଃ, ଅତ୍ୟୁଗ୍ରଃ); ଇହ (ଜଗତିମୋକ୍ଷମାର୍ଗେ) ଏନଂ ବୈରିଣଂ (ଶତ୍ରୁଂ) ବିଦ୍ଧି (ଜାନୀହି) । ୩୭ ।

**ଅର୍ଥ**—[ଏହାର ଉତ୍ତରରେ] ଶ୍ରୀ ଭଗବାନ କହିଲେ—କାମ ଏ, କ୍ରୋଧ ଏ, ଏ ରଜୋଗୁଣରୁ ବାହାରେ (ଅଥବା ରଜୋଗୁଣ ଏଥିରେ ପ୍ରକାଶ ପାଏ), ଏ ଖାଇ

ଯାଉଥାଏ [ଅଥଚ ଏହାର ତୃପ୍ତି ହୁଏ ନାଇ], ଏ ମହାପାପୀ, [ଏ ସଂସାରରେ ମୋକ୍ଷ ପଥରେ] ଏହାକୁ ଶତ୍ରୁ ବୋଲି ଜାଣ । ୩୭ ।

ବ୍ୟାଖ୍ୟା ସୂଚନା—କାମ ବା ତୃଷ୍ଣା ବାଧା ପାଇଲେ କ୍ରୋଧ ହୁଏ । ତେଣୁ କାମ ଏ, କ୍ରୋଧ ଏ—ଏହାକୁ କାମ କହ ବା କ୍ରୋଧ କହ, ଏକ କଥା । ଦେହ-ସ୍ୱଭାବ ବା ପ୍ରକୃତିର ତୃଷ୍ଣା, ଚଞ୍ଚଳତା, ବ୍ୟଗ୍ରତା, ଅଧୀରତା ପ୍ରଭୃତିର ହେତୁ ରଜୋଗୁଣ (୧୪.୭ ଦେଖ) । ଏ ଯେତେ ଖାଉଥିଲେ ବ ତୃପ୍ତ ହୁଏ ନାଇ । କାମକୁ ଭୋଗରେ ଅଣ୍ଟାଇବା ହୁଏ ନାଇ । ମହାପାପୀ = ମହାପାପମାନ କରାଏ; କାମ, ଅର୍ଥାତ୍ ଭୋଗାଦିର ଇଚ୍ଛା ମୂଳରେ ଥାଏ ଯେଉଁ ଦୁରନ୍ତ ମନୋଭାବ ତାହାର ଫଳକାମନା ବା ଭୋଗସ୍ପୃହା ଯେକି ମନୁଷ୍ୟକୁ ମୋହାନ୍ଧ କରି ରଖେ । ସ୍ତ୍ରୀସମ୍ଭୋଗ ଇଚ୍ଛାର ମୂଳରେ ଥିବା ମନୋବୃତ୍ତିକୁ ସାଧାରଣ ଭାଷାରେ ଲୋକେ କାମ ବୋଲି କହନ୍ତି । ସେଇ କାମ ବା କାମୁକତାର ଦୃଷ୍ଟାନ୍ତରେ ସବୁ କାମ ବା ଭୋଗ ଇଚ୍ଛାକୁ ବୁଝିନେବାକୁ ହେବ । ଏ ଶତ୍ରୁ ନିଜ ଭିତରେ ଅଛି । ୩୭ ।

**ଧୂମେନାବ୍ରିୟତେ ବହ୍ନିର୍ଯଥାଦର୍ଶୋ ମଲେନ ଚ ।**
**ଯଥୋଲ୍ବେନାବୃତୋ ଗର୍ଭସ୍ତଥା ତେନେଦମାବୃତମ୍ ।୩୮।**

**ଅନ୍ୱୟ—** ଯଥା ଧୂମେନ ବହ୍ନିଃ ମଲେନ ଆଦର୍ଶଃ ଚ ଆବ୍ରିୟତେ, ଯଥା ଉଲ୍ବେନ ଗର୍ଭଃ ଆବୃତଃ, ତଥା ତେନ ଇଦଂ ଆବୃତମ୍ । ୩୮ ।

**ଟୀକା—**[ତଂ ଜ୍ଞାନବୈରିଣଂ କାମଂ ବର୍ଣ୍ଣୟତି ଦ୍ୱାଭ୍ୟାମ୍]—ଯଥା ଧୂମେନ ବହ୍ନିଃ, ମଲେନ ଆଦର୍ଶଃ (ଦର୍ପଣଃ) ଚ ଆବ୍ରିୟତେ (ଆଚ୍ଛାଦ୍ୟତେ), ଯଥା [ଚ] ଉଲ୍ବେନ (ଗର୍ଭ-ବେଷ୍ଟନ-ଚର୍ମଣା, ଜରାୟୁଣା) ଗର୍ଭଃ (ଭ୍ରୂଣଃ) ଆବୃତଃ, ତଥା ତେନ [କାମେନ] ଇଦଂ [ଜ୍ଞାନଂ—ପରଶ୍ଳୋକେ ବକ୍ଷ୍ୟମାଣଂ] ଆବୃତମ୍ । ୩୮ ।

**ଅର୍ଥ—**[ଦୁଇ ଶ୍ଳୋକରେ ସେଇ ଜ୍ଞାନଶତ୍ରୁ କାମ କଥା କହୁଚନ୍ତି ।] ଯେପରି ଧୂଆଁରେ ନିଆଁ ଓ ମଳରେ ଦର୍ପଣ ଘୋଡ଼ାଇ ହୋଇ ରହେ, ଯେପରି ଜରାୟୁ ମୁଣାରେ ଗର୍ଭର ଶିଶୁ ଘୋଡ଼ାଇ ହୋଇ ରହେ, ସେଇପରି ସେଇ କାମରେ ଅନ୍ତର ଏ ଜ୍ଞାନ ଘୋଡ଼ାଇ ହୋଇଥାଏ । ୩୮ ।

**ଆବୃତଂ ଜ୍ଞାନମେତେନ ଜ୍ଞାନିନୋ ନିତ୍ୟବୈରିଣା ।**
**କାମରୂପେଣ କୌନ୍ତେୟ ଦୁଷ୍ପୂରେଣାନଲେନ ଚ ।୩୯।**

**ଅନ୍ୱୟ—**କୌନ୍ତେୟ, ଏତେନ ଜ୍ଞାନିନଃ ନିତ୍ୟବୈରିଣା କାମ-ରୂପେଣ ଦୁଷ୍ପୂରେଣ ଚ ଅନଲେନ ଜ୍ଞାନଂ ଆବୃତମ୍ । ୩୯ ।

**ଟୀକା**—[ଅପି] ଚ ହେ କୌନ୍ତେୟ, ଏତେନ ଜ୍ଞାନିନଃ ନିତ୍ୟବୈରିଣା (ଶତ୍ରୁଣା ) କାମରୂପେଣ ଦୁଷ୍ପୂରେଣ (ଦୁଷ୍ପୂର୍ଣୀୟେନ) ଅନଲେନ (ନ ଅଲଂ ପର୍ଯ୍ୟାପ୍ତିଃ ଯସ୍ୟ ତେନ— ଯାବଦ୍-ଭୋଗଯୋଗାତ୍ ଉତ୍ତରୋତ୍ତରଂ ବର୍ଦ୍ଧମାନେନ ଅଗ୍ନିସଦୃଶେନ) ଜ୍ଞାନଂ ଆବୃତମ୍ । ୩୯ ।

**ଅର୍ଥ**—[ପୁଣି] ହେ କୌନ୍ତେୟ, [ଅଗ୍ନିକୁ କାଠ, ଘିଅ ପ୍ରଭୃତିରେ ତୃପ୍ତ କରିବା ଭଳିପରି ଭୋଗରେ ଯାହାକୁ ତୃପ୍ତ କରିହୁଏ ନାହିଁ, ସେହି] ଏ ଦୁଷ୍ପୂର ଓ ଜ୍ଞାନୀର ଚିର ଶତ୍ରୁ କାମ ନାମକ ଅଗ୍ନିରେ ଜ୍ଞାନ ଘୋଡ଼ାଇ ହୋଇ ରହେ । ୩୯ ।

ବ୍ୟାଖ୍ୟା ସୂଚନା—ଦୁଷ୍ପୂର=ଯାହାକୁ ପୂରାଇ ବା ସନ୍ତୋଷ କରିହୁଏ ନାହିଁ । ୩୯ ।

**ଇନ୍ଦ୍ରିୟାଣି ମନୋବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ ।**
**ଏତୈର୍ବିମୋହୟତ୍ୟେଷ ଜ୍ଞାନମାବୃତ୍ୟ ଦେହିନମ୍ ।୪୦।**

**ଅନ୍ୱୟ**—ଇନ୍ଦ୍ରିୟାଣି ମନଃ ବୁଦ୍ଧିଃ ଅସ୍ୟ ଅଧିଷ୍ଠାନଂ ଉଚ୍ୟତେ । ଏତୈଃ ଏଷଃ ଜ୍ଞାନଂ ଆବୃତ୍ୟ ଦେହିନଂ ବିମୋହୟତି । ୪୦ ।

**ଟୀକା**—[କାମାତ୍ ଇନ୍ଦ୍ରିୟାଦିଷୁ ଆତ୍ମବୁଦ୍ଧିଃ—ଇତି ଆହ] ଇନ୍ଦ୍ରିୟାଣି, ମନଃ, ବୁଦ୍ଧିଃ, ଅସ୍ୟ [ଶତ୍ରୋଃ ] ଅଧିଷ୍ଠାନଂ ଉଚ୍ୟତେ । ଏତୈଃ [ଇନ୍ଦ୍ରିୟାଦିଭିଃ] ଏଷଃ [ଶତ୍ରୁଃ] ଜ୍ଞାନଂ (ଆତ୍ମନଃ ଯଥାର୍ଥଜ୍ଞାନଂ) ଆବୃତ୍ୟ ଦେହିନଂ (ଜୀବଂ) ବିମୋହୟତି (ତେଷୁ ଇନ୍ଦ୍ରିୟାଦିଷୁ ଆତ୍ମବୁଦ୍ଧିଂ କାରୟତି) । ୪୦ ।

**ଅର୍ଥ**—[କାମ ହେତୁରୁ ଇନ୍ଦ୍ରିୟ ପ୍ରଭୃତିକୁ ଲୋକେ ଆତ୍ମା ବୋଲି ବୁଝେ— ଏହା କହୁଛନ୍ତି] । ଇନ୍ଦ୍ରିୟ, ମନ ଓ ବୁଦ୍ଧି ଏହାର ଅଧିକାର ସ୍ଥାନ ବୋଲି କୁହାଯାଏ । ଏହି ସବୁଥିରେ ଆତ୍ମାର ଯଥାର୍ଥ ଜ୍ଞାନକୁ ଘୋଡାଇ ପକାଇ ଏ [କାମ] ଦେହୀ] (ଜୀବ)କୁ ମୋହ କରିଦିଏ ; ଅର୍ଥାତ୍, ଇନ୍ଦ୍ରିୟ ମନ ଓ ବୁଦ୍ଧିରେ 'ମୁଁ' 'ମୋର' ପ୍ରଭୃତି ଆତ୍ମବୁଦ୍ଧି କରାଇଦିଏ । ୪୦ ।

ବ୍ୟାଖ୍ୟା ସୂଚନା—ତୃଷ୍ଣା ବା କାମ ଯୋଗୁ ଲୋକେ ପ୍ରକୃତ ଆତ୍ମାକୁ ନ ବୁଝି ଇନ୍ଦ୍ରିୟାଦିକୁ ଆତ୍ମା ବୋଲି ବିଚାରନ୍ତି । ସେହି କାମ ଗୁଡ଼ିକ କ୍ରମେ ଇନ୍ଦ୍ରିୟାଦିରୁ ଆତ୍ମବୁଦ୍ଧିକୁ ଉପରକୁ ଉଠାଇବାକୁ ହେବ, ଏହା ପରେ କହୁଛନ୍ତି । [ଇନ୍ଦ୍ରିୟରେ କାମ ରହିଲେ ମନ ମଳିନ ହୁଏ, ସେଥିରୁ ବିବେକଶକ୍ତି ମନ୍ଦ ହୁଏ । ସେଥିରୁ ଜ୍ଞାନ ନାଶ ହୁଏ । ୨.୬୨-୬୪ ଦେଖ—ମହାତ୍ମା ଗାନ୍ଧୀ] । ୪୦ ।

**ତସ୍ମାତ୍ତ୍ୱମିନ୍ଦ୍ରିୟାଣ୍ୟାଦୌ ନିୟମ୍ୟ ଭରତର୍ଷଭ ।**
**ପାପ୍ମାନଂ ପ୍ରଜହି ହ୍ୟେନଂ ଜ୍ଞାନବିଜ୍ଞାନନାଶନମ୍ । ୪୧ ।**

**ଅନ୍ୱୟ**—ତସ୍ମାତ୍ ଭରତର୍ଷଭ, ଆଦୌ ତ୍ୱଂ ଇନ୍ଦ୍ରିୟାଣି ନିୟମ୍ୟ ଜ୍ଞାନବିଜ୍ଞାନନାଶନଂ ପାପ୍ମାନଂ ଏନଂ ହି ପ୍ରଜହି । ୪୧ ।

**ଟୀକା**—ତସ୍ମାତ୍ ହେ ଭରତର୍ଷଭ, ଆଦୌ ତ୍ୱଂ ଇନ୍ଦ୍ରିୟାଣି [ତତଃ ମନଃ, ତତଃ ବୁଦ୍ଧିଂ ଚ ଆତ୍ମଜ୍ଞାନେନ ] ନିୟମ୍ୟ (ବଶୀକୃତ୍ୟ) ଜ୍ଞାନବିଜ୍ଞାନ ନାଶନଂ (ଜ୍ଞାନଂ ସମଷ୍ଟିଜ୍ଞାନଂ, ଅବ୍ୟକ୍ତବ୍ରହ୍ମଣଃ ଜ୍ଞାନଂ, ବିକାରାତ୍ମକ ବ୍ୟକ୍ତଭୂତାନାଂ ପରତଃ ଯତ୍ ନିର୍ବିକଳ୍ପଂ ଅବ୍ୟକ୍ତଂ ତସ୍ୟ ଜ୍ଞାନଂ; ବିଜ୍ଞାନଂ, ବିଶେଷରୂପେଣ ଅନୁଭବଲବ୍ଧମପି ବ୍ୟକ୍ତବ୍ୟଷ୍ଟିଷୁ ଭୂତେଷୁ ବା ତଦେବ ଜ୍ଞାନଂ ଚ: ତୟୋଃ ନାଶନଂ ନାଶକରଂ—କାମଗ୍ରସ୍ତସ୍ୟ ନ ତୁ ବ୍ରହ୍ମଣି ସମାଧିଃ, ନ ବାପୀଶ୍ୱରଭକ୍ତିରପି ଭବତି ) ପାପ୍ମାନଂ (ପାପାତ୍ମକଂ) ଏନଂ [କାମରୂପଂ ଶତ୍ରୁଂ ] ହି (ସ୍ଫୁଟଂ) ପ୍ରଜହି (ପରିତ୍ୟଜ) । ୪୧ ।

**ଅର୍ଥ**—ତେଣୁ ହେ ଭରତର୍ଷଭ, ତୁ ଆଗ ଇନ୍ଦ୍ରିୟ [ତା ପରେ ମନ, ତା ପରେ ବୁଦ୍ଧିକୁ ଆତ୍ମଜ୍ଞାନରେ] ବଶ କରି ଅବ୍ୟକ୍ତ ଆତ୍ମାର ଜ୍ଞାନ ଓ ବ୍ୟକ୍ତ ବିଷୟରେ ଅନୁଭୂତ ଆତ୍ମାର ଜ୍ଞାନ, ଏହିପରି ଦୁଇ ବାଟେ ମିଳୁଥିବା ପରମାତ୍ମା ବା ଈଶ୍ୱର-ଜ୍ଞାନର ନାଶକାରୀ ଏହି ପାପାତ୍ମକ କାମକୁ ଛାଡ଼ । ୪୧ ।

ବ୍ୟାଖ୍ୟା ସୂଚନା—ଦେହର ସୁଖପାଇଁ ଇନ୍ଦ୍ରିୟର ଭୋଗବାଞ୍ଛା କରିବାହିଁ କାମ ବା ଭୋଗତୃଷ୍ଣା । ଦେହକୁ ଲୋକ ସାଧାରଣତଃ ଆତ୍ମା ବୋଲି ବୁଝେ । ଏହି ଦେହର ସୁଖରେ ନିଜକୁ ସୁଖୀ ମଣେ । ସେଥିପାଇଁ ଇନ୍ଦ୍ରିୟର ଭୋଗ ଲୋଡ଼େ । ଏହି ଇନ୍ଦ୍ରିୟ କିନ୍ତୁ ନିଜେ ଭୋଗରେ ନିଜକୁ ଲଗାଇ ପାରେ ନାହିଁ । ମନ ଇନ୍ଦ୍ରିୟକୁ ଚଲାଏ । ମନରେ ଏହା କରିବି ବୋଲି ସ୍ଥିର କରି ଇଚ୍ଛାଶକ୍ତି ନ ଚଳାଇଲେ ଇନ୍ଦ୍ରିୟ ଚଳେ ନାହିଁ । ଦେଖ, ରେଲରେ ଗଲାବେଳେ କେତେ ନଈ, ଗ୍ରାମ, ତାରଖମ୍ବ ପ୍ରଭୃତି ଆଖିରେ ପଡ଼ୁଛି । ମାତ୍ର ସେସବୁ ଆମେ ଦେଖୁ ନାହୁଁ, କି ଆମ ମନେ ରହୁ ନାହିଁ । ମନରେ ଇଚ୍ଛାକରି ଯେଉଁଟି ଦେଖିବୁ, ତାହା ମନେ ରହିବ । ଏଣୁ ମନ ନ ଦେଲେ ଇନ୍ଦ୍ରିୟଭୋଗ ସମ୍ଭବ ନୁହେଁ । ପୁଣି ମନ ଦେବା ପାଇଁ 'ହଁ, ଏହା କରିବାକୁ ହେବ' ବୋଲି ନିଜେ ନିଶ୍ଚୟ କରିବା ଦରକାର । ଏହି ନିଶ୍ଚୟ କରିବାର ବୃତ୍ତିକୁ ବୁଦ୍ଧି କହନ୍ତି । ଆତ୍ମାର ଯେପରି ଧାରଣା ଥାଏ, ଏହି ବୁଦ୍ଧି ସେହିପରି ଚାଳିତ ହୁଏ । ଦେହ, ଇନ୍ଦ୍ରିୟ, ମନ ପ୍ରଭୃତିରେ ଆତ୍ମା ବୋଲି ଧାରଣା ଥିଲେ, ସେହି ଦେହର ସୁଖରେ ହିଁ ବୁଦ୍ଧି ବସେ । ମାତ୍ର, ଦେହାଦି ଆତ୍ମା ନୁହେଁ—ଆତ୍ମା "ନିର୍ଲିପ୍ତ"—ଏ ଧାରଣା ଆସିଗଲେ, ସେଇ ଆତ୍ମା ବା ବ୍ରହ୍ମର ସମାଧିରେ ଲୋକ ସୁଖ ଲୋଡ଼େ । ସେତେବେଳେ ଦେହାଦିରୁ ଆତ୍ମବୁଦ୍ଧି ଛାଡ଼ିଯାଏ ।

ସେତେବେଳେ ଧାରଣା ହୋଇଯାଏ—ଏହି ଦେହ, ଇନ୍ଦ୍ରିୟାଦି ଆତ୍ମାର ସ୍ୱତୋବିକାଶ ମାତ୍ର । ତେଣୁ ସେମାନେ ନିଜ ନିଜର କାର୍ଯ୍ୟ କରିବେ । ଆତ୍ମାର ସେଥିରେ ଲିପ୍ତ ହେବାର କିଛି ନାଇ । ପର ଶ୍ଳୋକ ଦୁଇଟିରେ ସେଇ କଥା ସ୍ପଷ୍ଟ କରିବେ ।

ଜ୍ଞାନ-ବିଜ୍ଞାନ ଭଲ ବୁଝିବା ପାଇଁ ୭. ଅ: ପ୍ର: ଓ ୧-୨ ଟୀକା ଦେଖ । ଏହି ସପ୍ତମ ଅଧ୍ୟାୟଠାରୁ ମଧ୍ୟ ଜ୍ଞାନବିଜ୍ଞାନର କଥା ବୁଝାଇବାର ଆରମ୍ଭ କରିବେ । ଜ୍ଞାନ= ନିର୍ବିକଳ୍ପ ନିରାକାର ବ୍ରହ୍ମର ଜ୍ଞାନ । ଏ ଜଗତ ସବୁ ଦେଖାଯାଉଛି ବା ଶୁଣାଯାଉଛି ବିକାରରେ ସୃଜିତ । ଏହି ବିକାରରୁ ଅତୀତ ଯେ ପରଂବ୍ରହ୍ମ ତାଙ୍କ ଧାରଣାହିଁ ଜ୍ଞାନ । ଏହା ବ୍ରହ୍ମରେ ସମାଧି । ଏ ଜ୍ଞାନ ବା ସମାଧି ଆସିଲେ, ସୁଖ ଦୁଃଖାଦି ଦ୍ୱନ୍ଦ୍ୱ ଦୂରହୁଏ ଓ ଲୋକ ମୁକ୍ତ ହୁଏ ।

ବିଜ୍ଞାନ=ବ୍ୟକ୍ତ ସୃଷ୍ଟିରେ ଅଧ୍ୟାତ୍ମର ଧାରଣା । ସବୁ ବ୍ୟକ୍ତ ବିକାର ଏକ ଅଖଣ୍ଡ ଅବିନାଶୀ ତତ୍ତ୍ୱର ବିକାଶ । ଏହି ବିଜ୍ଞାନରୁ ଈଶ୍ୱରଭାବ ବା ଭକ୍ତି ଆସେ । ଈଶ୍ୱର ଅନୁଭବରେ ଏହି ଅଧ୍ୟାତ୍ମ ଧାରଣା ଆସିଲେ ଲୋକ ବୁଝିଯାଏ, ଈଶ୍ୱରଙ୍କର ବିନା ଇଚ୍ଛାରେ ଗଛରୁ ପତ୍ରଟିଏ ସୁଦ୍ଧା ପଡ଼େ ନାହିଁ । ସବୁ କାର୍ଯ୍ୟହିଁ କୌଣସି ବିଶ୍ୱତତ୍ତ୍ୱର ପ୍ରକାଶ । ସେଥିରେ ମନୁଷ୍ୟର ମୋର ବୋଲି କହିବାର କିଛି ନାହିଁ । ଏହି ବିଜ୍ଞାନଧାରଣା ହିଁ ଭକ୍ତର ଶ୍ରେଷ୍ଠ ସ୍ଥିତି ।

ଜ୍ଞାନ=ଅକ୍ଷରଂ ପୁରୁଷର ଜ୍ଞାନ; ବିଜ୍ଞାନ=କ୍ଷରପୁରୁଷ ବା ବ୍ୟକ୍ତ ସୃଷ୍ଟିରେ ଅଧ୍ୟାତ୍ମ ଈଶ୍ୱରଜ୍ଞାନ । ଜ୍ଞାନବିଜ୍ଞାନରୁ ପୁରୁଷୋତ୍ତମ ଧାରଣା ଆସେ । ତାହାହିଁ ପୂର୍ଣ୍ଣ ବିଶ୍ୱଜ୍ଞାନ ବା ଜ୍ଞାନ-କର୍ମ-ଭକ୍ତିର ସମୂହ ଧାରଣା । ୧୫. ୧୬-୧୮ ଦେଖ ।୪୧।

**ଇନ୍ଦ୍ରିୟାଣି ପରାଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ ।**
**ମନସସ୍ତୁ ପରା ବୁଦ୍ଧିର୍ଯୋ ବୁଦ୍ଧେଃ ପରତସ୍ତୁ ସଃ ।୪୨।**

**ଅନ୍ୱୟ**—ଇନ୍ଦ୍ରିୟାଣି ପରାଣି ଆହୁଃ । ଇନ୍ଦ୍ରିୟେଭ୍ୟଃ ମନଃ ପରଂ [ଅହୁ] । ତୁ ମନସଃ ବୁଦ୍ଧିଃ ପରା [ଆହୁଃ] । ଯଃ ତୁ ବୁଦ୍ଧେଃ ପରତଃ ସଃ [ଏବ ପରଃ ଆତ୍ମା] । ୪୨ ।

**ଟୀକା**—[ ଆଦୌ ଇନ୍ଦ୍ରିୟାଣି କଥଂ ଇତ୍ୟାହ ]—[ଯତଃ କେଚିତ୍ ଆତ୍ମାଧିକାଃ ସ୍ଥୂଳଦେହାତ୍ ଆତ୍ମବୁଦ୍ଧିଂ ଉଦ୍ଗତ୍ୟ ସୂକ୍ଷ୍ମତରତ୍ୱାତ୍ ବ୍ୟାପକତ୍ୱାତ୍ ଚ] ଇନ୍ଦ୍ରିୟାଣି ପରାଣି (ଶ୍ରେଷ୍ଠାନି—ଆତ୍ମରୂପାଣି) ଆହୁଃ (କଥୟନ୍ତି) । [କେଚିତ୍ ପୁନଃ] ଇନ୍ଦ୍ରିୟେଭ୍ୟଃ [ଉଦ୍ଗତ୍ୟ] ମନଃ ପରଂ (ଆତ୍ମରୂପଂ) [ଆହୁଃ] । [ଅପରେ] ତୁ (ପୁନଃ) ମନସଃ [ଉଦ୍ଗତ୍ୟ] ବୁଦ୍ଧିଃ ପରା (ଆତ୍ମରୂପା) [ଇତି ଆହୁଃ] [ଯଥାର୍ଥତଃ] ଯଃ ତୁ ବୁଦ୍ଧେଃ ପରତଃ (ଉପରତଃ—ସୂକ୍ଷ୍ମତୟା ବୁଦ୍ଧିଂ ଅତୀତ୍ୟ ବର୍ତ୍ତତେ ଇତ୍ୟର୍ଥଃ) ସଃ [ଏବ ପରଃ ଆତ୍ମା] । ୪୨ ।

**ଅର୍ଥ**—['ଇନ୍ଦ୍ରିୟ ଆଗ' ବୋଲି କହିଲେ କାହିଁକି ? ସେଥିକୁ କହୁଛନ୍ତି— କାହିଁକି ନା, କେତେକ ଆତ୍ମାକୁ ଖୋଜିବା ଲୋକ ସାଧାରଣ ଲୋକଙ୍କ ପରି ସ୍ଥୂଳ

ଦେହକୁ ଆତ୍ମା ବୋଲି ନ କହି, ଉପରକୁ ଉଠି ଦେହଠୁ ସୂକ୍ଷ୍ମ ଓ ବ୍ୟାପକ] ଇନ୍ଦ୍ରିୟମାନଙ୍କୁ ଶ୍ରେଷ୍ଠ (ଅର୍ଥାତ୍, ଆତ୍ମା) ବୋଲି କହନ୍ତି । ପୁଣି କେତେ ଇନ୍ଦ୍ରିୟଠୁ ଉପରକୁ ଉଠି ମନକୁ ଆତ୍ମା ବୋଲି କହନ୍ତି । ଆଉରି କେତେ ପୁଣି ମନଠୁ ଉପରକୁ ଉଠି ବୁଦ୍ଧିକୁ ଆତ୍ମା ବୋଲି କହନ୍ତି । କିନ୍ତୁ ଯଥାର୍ଥରେ ବୁଦ୍ଧିଠୁ ଯେ ସୂକ୍ଷ୍ମ (ଅର୍ଥାତ୍, ସୂକ୍ଷ୍ମତାରେ ଯେଉଁ ଉପରେ ଅଛି ) ସେଇ ଆତ୍ମା ( ୬.୫ ଦେଖ ) । ୪୨ ।

ବ୍ୟାଖ୍ୟା ସୂଚନା—ସାର କଥା, ଇନ୍ଦ୍ରିୟଠାରୁ ମନ, ମନଠାରୁ ବୁଦ୍ଧି ଓ ବୁଦ୍ଧିଠାରୁ ଆତ୍ମା ସୂକ୍ଷ୍ମ । କାମ ଇନ୍ଦ୍ରିୟକୁ ଅଧିକାର କରି କ୍ରମେ ମନ, ବୁଦ୍ଧି ଓ ଆତ୍ମାକୁ ଆକ୍ରମଣ କରେ । ଏଣୁ ସୂକ୍ଷ୍ମତମ ଓ ନିର୍ମଳତମ ଆତ୍ମାରେ ବୁଦ୍ଧି ବା ବିବେକ ଠିକ୍ ରଖିଲେ ମନ ଓ ଇନ୍ଦ୍ରିୟ ଆୟତ୍ତ ହୁଅନ୍ତି ଓ କାମନାଦି ଦୋଷ ତୁଟେ । ପର ଶ୍ଳୋକ ଦେଖ । 'ପର' ରେ ଉପର = ସୂକ୍ଷ୍ମତାରେ ଅଗ୍ରଗତ; ସୂକ୍ଷ୍ମତର । ୪୨ ।

**ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା ସଂସ୍ତଭ୍ୟାତ୍ମାନମାତ୍ମନା ।**
**ଜହି ଶତ୍ରୁଂ ମହାବାହୋ କାମରୂପଂ ଦୁରାସଦମ୍ ।୪୩।**

**ଅନ୍ୱୟ**—ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା, ଆତ୍ମନା ଆତ୍ମାନଂ ସଂସ୍ତଭ୍ୟ, ମହାବାହୋ କାମରୂପଂ ଦୁରାସଦଂ ଶତ୍ରୁଂ ଜହି । ୪୩ ।

**ଟୀକା**— ଏବଂ (ଉକ୍ତପ୍ରକାରେଣ ବୁଦ୍ଧେଃ ପରଂ (ତତ୍ତ୍ୱଂ, ଆତ୍ମାନଂ) ବୁଦ୍ଧ୍ୱା (ବିବେକତଃ ନିଶ୍ଚିତ୍ୟ) [ତେନୈବ] ଆତ୍ମନା [ଇନ୍ଦ୍ରିୟମନୋବୁଦ୍ଧି ରୂପଂ ଲୋକ-ପ୍ରଚଳିତଂ] ଆତ୍ମାନଂ ସଂସ୍ତଭ୍ୟ (ବଶୀକରଣେନ ସମାଧାୟ) ହେ ମହାବାହୋ, [ତ୍ୱଂ] କାମରୂପଂ (ଉକ୍ତଂ) ଦୁରାସଦଂ (ଦୁଃଖେନ ଆସଦଃ ପ୍ରାପ୍ତିଃ ଆକ୍ରମଣଂ ବା ଯସ୍ୟ ତଂ— ଦୁର୍ଦ୍ଧର୍ଷଂ, ଦୁର୍ଧରଂ) ଶତ୍ରୁଂ ଜହି (ଘାତୟ, ବିନାଶୟ) । ୪୩ ।

**ଅର୍ଥ**—ଏଇପରି ବୁଦ୍ଧିଠୁ ସୂକ୍ଷ୍ମ ଆତ୍ମାକୁ ଅଧ୍ୟୟନ କରି ବୁଝି ଓ ସେଇ ଆତ୍ମାରେ ଇନ୍ଦ୍ରିୟ ସ୍ୱରୂପ ଆତ୍ମାକୁ ବଶ କରି (ଅର୍ଥାତ୍, ଆତ୍ମସମାଧିରେ ଠିକ୍ ରଖି) ହେ ମହାବାହୁ, ତୁ କାମ ଭଳି ସହଜରେ ଧରା ନ ଦେବା ଏ ଶତ୍ରୁକୁ ନାଶ କର୍ (୬.୫ ଦେଖ) । ୪୩ ।

ବ୍ୟାଖ୍ୟା ସୂଚନା—ଦୁରାସଦ = ଯେ ସହଜରେ କାବୁରେ ପଡ଼େ ନାହିଁ । କାମ ବା ଭୋଗସ୍ପୃହା ସହଜରେ ଧରିବାର ବସ୍ତୁ ନୁହେଁ । ଇନ୍ଦ୍ରିୟମାନଙ୍କୁ ବିଷୟ ସବୁବେଳେ ଛୁଉଁଛି । ସେଇ ବିଷୟରେ ମନ ଢଳିଯାଉଛି ଓ ସଙ୍ଗେ ସଙ୍ଗେ କାମ ଜାଗ୍ରତ ହେଉଛି । ( ୨.୬୨ ଦେଖ ) । ସେଇ କାମରୁ ମନକୁ ଛଡ଼ାଇବା ଅସମ୍ଭବ କହିଲେ ଚଳେ । ସେଥିପାଇଁ କାମକୁ ଦୁରାସଦ କୁହାଯାଇଛି । ଦେହହିଁ ଏକା ସ୍ଥୂଳ । ତେଣିକି ଇନ୍ଦ୍ରିୟ, ମନ, ବୁଦ୍ଧି ଓ ଆତ୍ମା କ୍ରମେ ସୂକ୍ଷ୍ମରୁ ସୂକ୍ଷ୍ମତର, ସୂକ୍ଷ୍ମତମ ।

କାମ ଦେହରେ ନ ଥାଏ । ଏହା ସୂକ୍ଷ୍ମ ଇନ୍ଦ୍ରିୟକୁ ମାଡ଼ିବସି କ୍ରମେ ମନ ଓ ବୁଦ୍ଧିକୁ ଧରେ । କାରଣ, ମନରେ ବିଷୟ ଧ୍ୟାନ କରିବାରୁ ଏହାର ଉତ୍ପତ୍ତି ଓ ଇନ୍ଦ୍ରିୟର ଭୋଗରେ ଏହାର ପରିଣତି । କେବଳ ସୂକ୍ଷ୍ମ ବସ୍ତୁରେ ରହିବାରୁ ଏହା ଧରା ପଡ଼େ ନାହିଁ । ଆତ୍ମାକୁ ବୁଝିଲେ ଏହା ବୁଝାଯାଏ ଓ କାମ ଧରାପଡ଼ି ନାଶ ହୁଏ ।

ପର = ସୂକ୍ଷ୍ମତର; ଏଇ ଶ୍ଳୋକରେ ଓ ପୂର୍ବ ଶ୍ଳୋକରେ ଏହା କୌଣସି ସ୍ଥାନ ବା କାଳ ନିର୍ଦ୍ଦେଶରେ କୁହା ହୋଇନାହିଁ । ମାତ୍ର ସ୍ଥାନ-କାଳ-ସଙ୍କେତ ବ୍ୟବହାର କରିବା ଛଡ଼ା, ମାନବର ଚିନ୍ତା ପ୍ରକାଶ କରିବାର ରାସ୍ତା ନାହିଁ । ସେଥିପାଇଁ ଦେହ ପରେ ବା ଉପରକୁ ଇନ୍ଦ୍ରିୟ, ଇନ୍ଦ୍ରିୟ ପରେ ବା ଉପରକୁ ମନ, ମନ ପରେ ବା ଉପରକୁ ବୁଦ୍ଧି, ବୁଦ୍ଧି ପରେ ବା ଉପରକୁ ଆତ୍ମା ବୋଲି କୁହାଯାଇଛି । ମାତ୍ର ମନ କେଉଁଠି ଇନ୍ଦ୍ରିୟ ପରେ ବା ଉପରେ ବସି ନାହିଁ—ଇତ୍ୟାଦି । ସୂକ୍ଷ୍ମତା ବିଚାରରେ ତାହା ଇନ୍ଦ୍ରିୟ ପରେ ବୋଲି କୁହାଯାଇଛି । ସେଇପରି ମନରୁ ପର ବା ଅତୀତ, ବୁଦ୍ଧି ଓ ବୁଦ୍ଧିର ପର ଆତ୍ମା । ଆତ୍ମା ପ୍ରଭୃତି ପରି ବସ୍ତୁର ବର୍ଣ୍ଣନାରେ ସ୍ଥାନ କାଳ ନାହିଁ । ଏଇଠି, ଏତିକି, ବୋଲି ଆତ୍ମା, ମନ ପ୍ରଭୃତିକୁ ବର୍ଣ୍ଣନା କରି ହେବ ନାହିଁ । ୪୩ ।



# ଚତୁର୍ଥ ଅଧ୍ୟାୟ

## କର୍ମ-ଜ୍ଞାନ-ଯୋଗ

### ଅଧ୍ୟାୟ ପ୍ରବେଶ—

କର୍ମ ଛାଡ଼ିବା ନୁହେଁ, କାମନା ଛାଡ଼ି କର୍ମ କରିବା ହିଁ ଯଥାର୍ଥ ମୋକ୍ଷ ସାଧନା ବା ଯୋଗ, ଏହା ତୃତୀୟ ଅଧ୍ୟାୟରେ କହି ସାରି ଏବେ ଚତୁର୍ଥ ଅଧ୍ୟାୟରେ ସେଇ କର୍ମର ତତ୍ତ୍ୱ ବା କର୍ମସମ୍ବନ୍ଧୀୟ ଯଥାର୍ଥ ଜ୍ଞାନ ନାନାଆଡ଼ୁ ଭଲ କରି ବୁଝାଉଛନ୍ତି । ଭଗବାନ୍ କହୁଛନ୍ତି, ବ୍ୟକ୍ତ ସୃଷ୍ଟି ବା ଈଶ୍ୱରଙ୍କ ବିଶ୍ୱକର୍ମ ପରି ନିତ୍ୟ ଓ ଅବିନାଶୀ ଏଇ ଯୋଗ । ଏହା ସୃଷ୍ଟି ଆଦ୍ୟରୁ ମୁହିଁ ପ୍ରବର୍ତ୍ତାଇଛି । ଋଷିମାନେ ଏହା ପରଂପରାରେ ଜାଣି ଲୋକ ରକ୍ଷା କରୁଥିଲେ । ଲୋକେ ଏବେ ଏହା ଭୁଲି କର୍ମ ଛାଡ଼ି ମୋକ୍ଷ ସାଧନାରେ ମାତିଛନ୍ତି ବୋଲି ମୁଁ ଆଜି ପୁଣି ଏହା ତତେ କହୁଛି । ଈଶ୍ୱର ଏଇ ସୁଯୋଗର ପ୍ରକାଶ, ପାଳନ ଓ ପ୍ରଚାର କରନ୍ତି । ଦରକାର ହେଲେ, ଅବତାର ହୋଇ ଲୋକଙ୍କୁ ଶିଖାନ୍ତି । ମୁଁ ଏବେ ଅବତାର ହୋଇଛି । ଗୁଣକର୍ମାଦି କର୍ମ ବିଭାଗ ମୁହିଁ କରିଛି । ମାତ୍ର ମୁଁ ସେ ସବୁଥିରେ ଲିପ୍ତ ନୁହେଁ । କର୍ମରେ ଲିପ୍ତ ନ ହେବାଇ ଯଥାର୍ଥ 'ଅକର୍ମ'—କର୍ମ ଛାଡ଼ିବା 'ଅକର୍ମ' ନୁହେଁ । ଏଇ କଥା ବୁଝି, ମୋ ଉପରେ ପକାଇ ଦେଇ, ନିଜେ ଲିପ୍ତ ନ ହୋଇ 'ଯଜ୍ଞାର୍ଥ' କର୍ମ କରିବା ଉଚିତ । ସବୁ ପ୍ରକାର କର୍ମ ଯଜ୍ଞାର୍ଥ କରାଯାଏ ସତ, ମାତ୍ର ସବୁ ବ୍ରହ୍ମମୟ ବୋଲି ବ୍ରହ୍ମଜ୍ଞାନର ସହିତ ଯଜ୍ଞ ବା ବ୍ରହ୍ମରେ କର୍ମୋତ୍ସର୍ଗ ସର୍ବୋତ୍କୃଷ୍ଟ । ସେଥିରେ ବ୍ରହ୍ମ-ଲାଭ ହୁଏ । ସବୁ କର୍ମର ଆଚରଣରେ ଏଇ ଜ୍ଞାନହିଁ କର୍ମକୁ ପୂରା ଅକର୍ମ କରିଦିଏ । ଶ୍ରଦ୍ଧା ରଖି ତତ୍ତ୍ୱଦର୍ଶୀଙ୍କଠୁ ଏ ଜ୍ଞାନ ବୁଝିନେବା ଉଚିତ । ମାତ୍ର ଇନ୍ଦ୍ରିୟ ଜିଣି ନିଷ୍କାମ କର୍ମର ଅଭ୍ୟାସ କଲେ, ଏଇ ଅଭ୍ୟାସ ପୂରା ହେଲାବେଳକୁ ଏ ଜ୍ଞାନ ମନକୁ ହୁଏ । ଏଇ ଜ୍ଞାନ—ବା ବ୍ରହ୍ମହିଁ ସବୁ, ଏଇ ଭାବ—ବିନା, କର୍ମ ପୂରା ନିଷ୍କାମ ହୋଇପାରେ ନାହିଁ; ସନ୍ଦେହ ଥାଏ । ଅତଏବ କର୍ମର ଏଇ ଯଥାର୍ଥ ଜ୍ଞାନ ଧରି, ସଂଶୟ ଛାଡ଼ି—ସବୁ ବ୍ରହ୍ମମୟ ବୋଲି କର୍ମ ଛାଡ଼ିବାର ସନ୍ନ୍ୟାସରେ ନ ଭୁଲି—କର୍ମରେ ଲାଗି ରହିବାଇ ପନ୍ଥା । ଏଇ ଅଧ୍ୟାୟରେ କର୍ମସମ୍ବନ୍ଧୀୟ ଯଥାର୍ଥ ଜ୍ଞାନ ଓ ସେଇ ହିସାବରେ ଯଜ୍ଞ ଓ ସ୍ୱଧର୍ମର ବ୍ୟାପକ ଅର୍ଥ ପୁଣି ସୃଷ୍ଟି ରକ୍ଷା ପେଇଁ ଅର୍ଥାତ୍ ମନୁଷ୍ୟକୁ ଯଜ୍ଞ ଓ ସ୍ୱଧର୍ମରେ ରଖିବା ପାଇଁ ଈଶ୍ୱରଙ୍କର ଅବତାର କଥା ଅଛି—ମହାତ୍ମା ଗାନ୍ଧୀ ]

ଶ୍ରୀ ଭଗବାନୁବାଚ

**ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟମ୍**
**ବିବସ୍ୱାନ୍ ମନବେ ପ୍ରାହ ମନୁରିକ୍ଷ୍ୱାକବେଽବ୍ରବୀତ୍ ।୧।**

**ଅନ୍ୱୟ**—ଅହଂ ଇମଂ ଅବ୍ୟୟଂ ଯୋଗଂ ବିବସ୍ୱତେ ପ୍ରୋକ୍ତବାନ୍ ବିବସ୍ୱାନ୍ ମନବେ ପ୍ରାହ । ମନୁଃ ଇକ୍ଷ୍ୱାକବେ ଅବ୍ରବୀତ୍ । ୧ ।

**ଟୀକା**—[ଈଶ୍ୱରସ୍ୟ ନିଦେଶଃ ତଥା ବ୍ୟକ୍ତସୃଷ୍ଟିବତ୍ ଅବ୍ୟୟଃ ଅୟଂ ଯୋଗ ଇତି ସୂଚୟନ୍]—ଶ୍ରୀଭଗବାନ୍ ଉବାଚ—ଅହଂ ଇମଂ [ପୂର୍ବୋକ୍ତଂ ସୃଷ୍ଟି ନିୟମବତ୍] ଅବ୍ୟୟଂ (ନିତ୍ୟଂ, ଅପରିବର୍ତ୍ତନୀୟଂ) ଯୋଗଂ [ଆଦୌ] ବିବସ୍ୱତେ (ସୂର୍ଯ୍ୟାୟ) ପ୍ରୋକ୍ତବାନ୍ (ଅବୋଚମ୍); ବିବସ୍ୱାନ୍ (ସୂର୍ଯ୍ୟଃ) [ସ୍ୱପୁତ୍ରାୟ] ମନବେ ପ୍ରାହ । ମନୁଃ [ସ୍ୱପୁତ୍ରାୟ] ଇକ୍ଷ୍ୱାକବେ ଅବ୍ରବୀତ୍ । ୧ ।

**ଅର୍ଥ**—ଈଶ୍ୱରଙ୍କ ସୃଷ୍ଟି ନିୟମ ପରି ଅପରିବର୍ତ୍ତନୀୟ ଏଇ ଯୋଗ ଈଶ୍ୱରଙ୍କର ନିଦେଶ ବୋଲି ଚେତାଇ] ଶ୍ରୀଭଗବାନ୍ କହିଲେ—ମୁଁ ଏଇ ନିତ୍ୟ ଯୋଗକଥା ପହିଲେ ବିବସ୍ୱାନ୍ ବା ସୂର୍ଯ୍ୟଙ୍କୁ କହିଥିଲି । ସୂର୍ଯ୍ୟ ନିଜ ପୁଅ ମନୁଙ୍କୁ କହନ୍ତି । ମନୁ ତାଙ୍କ ନିଜ ପୁଅ ଇକ୍ଷ୍ୱାକୁଙ୍କୁ କହିଥିଲେ । ୧ ।

ବ୍ୟାଖ୍ୟା ସୂଚନା—ଏଇ ଯୋଗ ଅବ୍ୟୟ ବା ନିତ୍ୟ; କାହିଁକି ନା, ଯେଉଁ ନିତ୍ୟ ଅଟଳ ନିୟମରେ ସୃଷ୍ଟି ପ୍ରକାଶ ପାଉଛି, ତାହା ବିଶ୍ୱକର୍ମୀ ଈଶ୍ୱରଙ୍କର ଯୋଗ । ସେଇ ସୃଷ୍ଟି-ନିୟମ ଅନୁକ୍ରମେ ମନୁଷ୍ୟକୁ ସ୍ୱଧର୍ମରେ ଅନାସକ୍ତ କର୍ମ କରିବାକୁ ହୁଏ । ଏଇ ନୀତି ବା ଯୋଗ ନିୟମ ନିତ୍ୟ—ଅନ୍ୟ ପ୍ରକାର ହୋଇ ନ ପାରେ । ପ୍ରଜା ଭିତରେ ବା ମନୁଷ୍ୟ ଲୋକରେ ଏ ନିୟମର ପ୍ରଧାନ ଦୃଷ୍ଟାନ୍ତ ଓ ଆଦର୍ଶ, ସୂର୍ଯ୍ୟ । ୩.୧୪ ଟୀକା ଦେଖ । ସୂର୍ଯ୍ୟର ଅଧିଷ୍ଠାତ୍ରୀ ଦେବତାଙ୍କୁ ଭଗବାନ୍ ପ୍ରଥମେ ଏହା ମନୁଷ୍ୟ ଲୋକରେ ପ୍ରଚାର କରିବା ନିମନ୍ତେ କହିଥିଲେ ବୋଲି କହୁଛନ୍ତି । ଏହା ମଧ୍ୟ ଯଥାର୍ଥ । ସୂର୍ଯ୍ୟଙ୍କ ପୁଅ ମନୁ ପ୍ରଜା ସୃଷ୍ଟି କରିଥିବା କଥା ପ୍ରସିଦ୍ଧ । ତାର୍କିକ ଦୃଷ୍ଟିରେ ମଧ୍ୟ ସୂର୍ଯ୍ୟ ଯେ ପ୍ରଜା ସୃଷ୍ଟିର ହେତୁ ଓ ବିଶ୍ୱକର୍ମନିୟମ ପାଳନରେ ପ୍ରଜାର ଆଦର୍ଶ, ଏହା ସ୍ୱୀକାର୍ଯ୍ୟ । ଯୋଗ, ଏଠାରେ ଅନାସକ୍ତ ସ୍ୱଧର୍ମ ପାଳନରେ ବିଶ୍ୱକର୍ମ (ବିଶ୍ୱ-ପ୍ରକାଶ)ରେ ନିଜକୁ ମିଶାଇ ଦେଇ ସେଥିରେ ଈଶ୍ୱର ଲାଭର ସାଧନା । ୧ ।

**ଏବଂ ପରଂପରାପ୍ରାପ୍ତମିମଂ ରାଜର୍ଷୟୋ ବିଦୁଃ ।**
**ସ କାଳେନେହ ମହତା ଯୋଗୋ ନଷ୍ଟଃ ପରଂତପ ।୨।**

**ଅନ୍ୱୟ**—ଏବଂ ପରଂପରାପ୍ରାପ୍ତଂ ଇମଂ ରାଜର୍ଷୟଃ ବିଦୁଃ । ପରଂତପ ମହତା କାଳେନ ଇହ ସଃ ଯୋଗଃ ନଷ୍ଟଃ ।

**ଟୀକା**—ଏବଂ ପରଂପରାପ୍ରାପ୍ତଂ ( ଉପଦେଶକୋପଦେଷ୍ଟୃଧାରୟା ଆଗତଂ) ଇମଂ [ଯୋଗଂ, ନିମିଜନକାଦିବତ୍ ଅନ୍ୟେ ପ୍ରାଚୀନା] ରାଜର୍ଷୟଃ ବିଦୁଃ । ହେ ପରନ୍ତପ, ମହତା କାଳେନ (କାଳବଶେନ ଯଥାବବୋଧାଭାବାତ୍ ଇତ୍ୟର୍ଥଃ) ଇହ ( ମନୁଷ୍ୟଲୋକେ, ପ୍ରଜାସୁ ) ସଃ ଯୋଗଃ ନଷ୍ଟଃ (ବିପ୍ଳୁତଃ ଅନ୍ୟଥାକୃତଃ—ବହୁ-ବ୍ରହ୍ମର୍ଷୀଣାଂ କେବଳୟା ସାଂଖ୍ୟବୃଦ୍ଧ୍ୟା ସର୍ବକର୍ମତ୍ୟାଗେନୈବ ପରିଣତୋଽୟଂ ଯୋଗଃ ଇତ୍ୟାଶୟଃ) । ୨ ।

**ଅର୍ଥ**—ଏହିପରି ପରଂପରା ବା ଗୁରୁଶିଷ୍ୟଧାରାରେ ଚାଲି ଆସିଥିବା ଏହି ଯୋଗକୁ ପୁଣି ନିମିଜନକାଦିଙ୍କ ପରି ସେହିକାଳର ଅନେକ ରାଜର୍ଷି (ଅର୍ଥାତ୍, ପ୍ରଜା-ହିତପରାୟଣ ଜ୍ଞାନୀ କ୍ଷତ୍ରିୟମାନେ) ଜାଣିଥିଲେ । କିନ୍ତୁ ହେ ପରଂତପ, ବହୁକାଳ ବଶରୁ ଅର୍ଥାତ୍ କାଳକ୍ରମେ ଯଥାର୍ଥ ବୁଝିବାରେ ଦୋଷ ଘଟିବାରୁ) ଏ ମାନବଜଗତରେ ସେ ଯୋଗ ନଷ୍ଟ ହୋଇଯାଇଛି ।

ବ୍ୟାଖ୍ୟା ସୂଚନା—ଏହି ଯୋଗ ବ୍ରାହ୍ମଣଙ୍କର ଯଜ୍ଞକ୍ରିୟା କାଣ୍ଡ ଓ ବହୁ ବ୍ରହ୍ମର୍ଷିଙ୍କର କେବଳ ସାଂଖ୍ୟବୁଦ୍ଧି ବା କର୍ମତ୍ୟାଗ-ସନ୍ନ୍ୟାସରେ ପରିଣତ ହୋଇ ଯାଇଛି, ଏହି ସଙ୍କେତ ଏଠାରେ ଅଛି ।

ରାଜର୍ଷି=ରାଜା+ଋଷି, ଋଷି ପରି ଜ୍ଞାନୀ ରାଜା ବା କ୍ଷତ୍ରିୟ । ରାଜା=ଯେ ପ୍ରଜାରଞ୍ଜନ କରିବାରେ କ୍ଷମ । ପ୍ରଜାଙ୍କୁ ଚଳାଇବାହିଁ ରାଜଧର୍ମ । ବ୍ରାହ୍ମଣର ଧର୍ମ ଶାନ୍ତି । ତେଣୁ ବ୍ରାହ୍ମଣପକ୍ଷରେ ତାମସ ତ୍ୟାଗ ସମ୍ଭବ । ମାତ୍ର କ୍ଷତ୍ରିୟର ସ୍ୱଧର୍ମ ଧାରଣା ଠିକ୍ ଥିଲେ, ଲୋକସଂଗ୍ରହ ପାଇଁ ହେଲେ ବି କର୍ମଯୋଗ ସହଜ । ବ୍ରହ୍ମକର୍ମ ଓ ରାଜନ୍ୟକର୍ମ ପାଇଁ ୧୮.୪୨, ୪୩ ଦେଖ । ତାମସ ତ୍ୟାଗ ପାଇଁ ୧୮.୭ ଦେଖ । ଲୋକ ସଂଗ୍ରହ ପାଇଁ ୩.୨୧-୨୬ ଦେଖ ।

ବିଶ୍ୱକର୍ମ ବା ଭୂତପ୍ରକାଶ-କ୍ରିୟାରେ ଅଭିଭୂତ ହୋଇ ବୈଦିକ ଋଷିମାନେ ଆତ୍ମୋଚ୍ଛ୍ୱାସରେ ବେଦର ମନ୍ତ୍ରମାନ ଉଚ୍ଚାରଣ କଲେ । ଏହି ମନ୍ତ୍ରମାନଙ୍କରେ କେବେ ଇନ୍ଦ୍ର, ଅଗ୍ନି, ବରୁଣ, ମରୁତ ପ୍ରଭୃତି ( ଅର୍ଥାତ୍, ମେଘ, ନିଆଁ, ସମୁଦ୍ର, ପବନ ) ପ୍ରଭୃତିର ଅଧିଷ୍ଠାତ୍ରୀ ଦେବତାଙ୍କୁ ବିଶ୍ୱ ପ୍ରକାଶର ପୀଠ ବୋଲି ଉପାସନା କରାଯାଇଛି । ପୁଣି କେବେ ବା ଏସବୁ ବିଶ୍ୱପ୍ରକାଶ-ପୀଠ ଏକ ମୂଳ ମହାପୀଠର କୋଣ ବୋଲି କୁହାଯାଇଛି । ବିଶ୍ୱକର୍ମର ଏହି ମୂଳ ମହାପୀଠ ସମ୍ବନ୍ଧରେ କହିବାକୁ ଯାଇ ପୁଣି ଋଷି କେତେବେଳେ ଏହାକୁ ସତ୍ ଅର୍ଥାତ୍ ସତ୍ୟ ଓ ପୁଣି କେତେବେଳେ ଅସତ୍ ଅର୍ଥାତ୍ ଅବ୍ୟକ୍ତ ବୋଲି କହିଛନ୍ତି । 'ଋଗ୍‌ବେଦର ନାସଦୀୟସୂକ୍ତ' (ଋ—୧୦.୧୨୯)ରେ ଋଷିଙ୍କ ଗାନରେ ଏହି ବିଶ୍ୱପ୍ରକାଶ-ବର୍ଣ୍ଣନାର ଆଦିମ ସଙ୍କେତ ମିଳେ ଏଠି । ସେଠି ତୃତୀୟ ଋକ୍ ବା ମନ୍ତ୍ରରେ ଋଷି କହିଛନ୍ତି—ସେହି ଏକ ବ୍ରହ୍ମ, ପ୍ରକାଶମୟ ଆବରଣ (ବା ଚକ୍ଷପର ଏକ ଖୋଳ—ମାୟା)ରେ ଆଚ୍ଛାଦିତ ଥିଲେ ଓ ଏକ ଥିଲେ ବି ବହୁ

ହେବାର ଉପରେ ପ୍ରକଟ ହୋଇଥିଲେ । ଏଇ ଉପରୁ ପ୍ରଥମେ ଇଚ୍ଛା ବା କାମ ବାହାରିଲା । ସେଥିରେଇ ନଶ୍ୱର ବିଶ୍ୱ, ପ୍ରକାଶ ପାଇଲା (ଏକନ, ମନ୍ତ୍ର ୪) । ଏଇ ଉପରେ ସ୍ପଷ୍ଟ ବର୍ଣ୍ଣନା କରି ଅନ୍ୟତ୍ର ବେଦରେ କୁହାଯାଇଛି—ସେଇ ଅଦ୍ୱିତୀୟ ଏକ ବ୍ରହ୍ମ କାମନା କଲେ, 'ମୁଁ ଏକ ଅଛି, ବହୁ ହେବି' । ପୁଣି ଏଇ ବ୍ୟକ୍ତ ବା ଦୃଶ୍ୟ ଜଗତକୁ ଯଜ୍ଞ ବୋଲି କହି, ଏଇ ଯଜ୍ଞର ଘୃତ ସମିଧ ପ୍ରଭୃତି କେଉଁଠୁ ଆସିଲା ବୋଲି ପ୍ରଶ୍ନ କରାହୋଇଛି (ଋ—୧୦.୧୩୦.୩) । ଏଇ 'ଯଜ୍ଞ' ଅର୍ଥାତ୍ ନିଜର ଏକ ଅବ୍ୟକ୍ତ ସ୍ୱରୂପକୁ ବହୁରେ ବ୍ୟକ୍ତ କରିବାରେ ଯେଉଁ ଆତ୍ମବଳି, ତାରି ଇଚ୍ଛାରେ ଯେଉଁ 'ତପଃ'-ପ୍ରଭାବ ବା ପ୍ରଯତ୍ନ ପ୍ରଯୁକ୍ତ ହୁଏ, ତା ବ୍ରହ୍ମର କୌଣସି ସ୍ୱାର୍ଥ ପାଇଁ ନୁହେଁ । ତା ପ୍ରକାଶଧର୍ମରେ ପ୍ରକାର ସ୍ଥିତି ଓ ଗତି ପାଇଁ । ଏଇଠାରେ 'ଦାନ', ଅର୍ଥାତ୍ ନିଃସ୍ୱାର୍ଥରେ ତ୍ୟାଗ ବା ପ୍ରକାଶ-ଭାବ ମଧ୍ୟ ସ୍ପଷ୍ଟ ।

ଏଇପରି ବ୍ରହ୍ମବସ୍ତୁର ଯଜ୍ଞ, ଦାନ, ତପ, କ୍ରିୟା (୧୮.୫) ବା ଯୋଗର ପ୍ରଭାବରେ ବିଶ୍ୱପ୍ରକାଶଭାବ ବେଦର ମୌଳିକ ଭିତ୍ତି ବୋଲି ଭଗବାନ୍ ଏଠାରେ କହୁଛନ୍ତି । ମାନବ ସେହି ବ୍ରାହ୍ମୀ ସ୍ଥିତିକୁ ଯିବାର ସାଧନହିଁ ଯୋଗ । ଏଥିରେ ଯଜ୍ଞ, ଦାନ ଓ ତପର ଭାବ ସହିତ ସ୍ୱକର୍ମ ବା ନିଷ୍କାମ ସ୍ୱଧର୍ମ ସାଧନାରେ ନିବିଷ୍ଟ ରହିବାକୁ ହୁଏ । ମାନବର ଏଇ ଯୋଗସାଧନାରେ କର୍ମ କରିବାର ପ୍ରୟୋଜନୀୟତା ଦେଖାଇ ଗୀତାରେ ଭଗବାନ୍ ଉପଦେଶକ ପୁରୁଷରୂପେ କହିଛନ୍ତି, ମୋ ର ଏ ଜଗତରେ କିଛି କର୍ମ କରିବା ଦରକାର ନ ଥିଲେ ମଧ୍ୟ ମୁଁ ଅତନ୍ଦ୍ରିତଭାବରେ କର୍ମ କରୁଛି । ମୁଁ ତା ନକଲେ, ଲୋକ ଉଚ୍ଛନ୍ନ ଯିବେ ଓ ମୁଁ ସଙ୍କରର କର୍ତ୍ତା ହେବି (୩. ୨୩, ୨୪ ଓ ଟୀକା) ।

ଏଇ ଯୋଗ ବା ବେଦର ତତ୍ତ୍ୱବୋଧ ତଥା କ୍ରିୟା କାଳବଶରେ ନଷ୍ଟ ହୋଇଗଲା । କ୍ଷତ୍ରିୟ, ଲୋକ-ପାଳକ । କର୍ମ କରିବା ତା ଇଚ୍ଛା ହେଉ ବା ନ ହେଉ, ସେ କର୍ମ ଛାଡ଼ିପାରେ ନା । ଜନକାଦିଙ୍କ ପରି ସେ ନିଷ୍କାମ ହେଲେ ବି ଲୋକରକ୍ଷା ପାଇଁ କର୍ମ କରିବାକୁ ବାଧ୍ୟ । ସେଥିପାଇଁ କ୍ଷତ୍ରିୟର ପରଂପରାରେ ଏ ଯୋଗର ଧାରଣା ଠିକ୍ ଥିଲା । ମାତ୍ର କାଳକ୍ରମେ ବ୍ରାହ୍ମଣମାନେ ବେଦର ବିଶେଷ ଅଧିକାରୀ ହୋଇ ପଡ଼ିଲେ । ଫଳରେ ସେମାନେ ଏଇ ବେଦର ଭିନ୍ନ ଅର୍ଥ କଲେ । ସେଇ ଅର୍ଥ ଅନୁସାରେ ଜଗତରେ ତତ୍ତ୍ୱ ଓ ଅନୁଷ୍ଠାନାଦିର ପ୍ରଚାର ହେଲା ।

ତାହା କି ପ୍ରକାର ଧାରଣ କଲା ଦେଖାଯାଉ । କୁହାଯାଇଛି ବିଶ୍ୱପ୍ରକାଶ, ଅର୍ଥାତ୍, କର୍ମ ବ୍ରହ୍ମର ଯଜ୍ଞ; ଅର୍ଥାତ୍, ବ୍ରହ୍ମ ନିଜକୁ ଏଥିରେ ବଳି ଦିଏ ବା ଉତ୍ସର୍ଗ କରେ; ଏଇ ରୂପରେ ଆତ୍ମପ୍ରକାଶ କରେ । ଏଇ ଯଜ୍ଞରେ ତପ, ଅର୍ଥାତ୍, ତହିଁରୁ ବାହାରିଥିବା କାମହିଁ ପ୍ରଧାନ ସାଧନ । ଏହାକୁ ଧରି ବେଦର କର୍ମକାଣ୍ଡ ବିସ୍ତାର ପାଇଲା । ସ୍ୱର୍ଗାଦି କାମନାରେ ଲୋକେ ଯାଗଯଜ୍ଞର କ୍ରିୟାକାଣ୍ଡ ସବୁ ଆରମ୍ଭ କଲେ । ଏକ ଦିଗରେ ବୈଦିକ ତତ୍ତ୍ୱର ଏଇପରି ଅଧୋଗତି ଓ ନାଶ ହେଲା ।

ବ୍ରହ୍ମର ସ୍ୱପ୍ରକାଶହିଁ ଯୋଗ । ବ୍ରହ୍ମ, ଅଦ୍ୱିତୀୟ, ଏକ । ସେ ଏହି ଯୋଗର ସାଧନାରେ ସ୍ୱପ୍ରକାଶ କଲେ ମଧ୍ୟ ଯୋଗରେ ନିର୍ବିଷ୍ଟ ବ୍ରହ୍ମ ଅବ୍ୟକ୍ତ, ସତ୍ୟ ଓ ଅଦ୍ୱିତୀୟ । ବୈଦିକ ତତ୍ତ୍ୱର ଏଇ ସତ୍ତ୍ୱର ଧର କାଳକ୍ରମେ ବ୍ରାହ୍ମଣମାନେ କର୍ମତ୍ୟାଗର ସନ୍ନ୍ୟାସ ଆରମ୍ଭ କଲେ । ସାଙ୍ଖ୍ୟଭାବରେ ରହି ସବୁ କର୍ମ ଛାଡ଼ି ଚିତ୍ତକୁ ବ୍ରହ୍ମରେ ଏକାଗ୍ର ରଖିବାହିଁ ବ୍ରହ୍ମସାଧନା ବୋଲି ବୁଝିଲେ । ବେଦତତ୍ତ୍ୱର ଏହା ଅନ୍ୟ ଦିଗରେ ଅଧୋଗତି ବା ନାଶ । କାଳରେ ଏହି ଯୋଗ ନଷ୍ଟ ହେଲା ବୋଲି କହିବାରେ ଭଗବାନ୍ କହୁଛନ୍ତି ।

ଏଇ ଯେଉଁ ଯଜ୍ଞ ଓ ଯଜ୍ଞସମ୍ବନ୍ଧୀୟ ବୈଦିକ ତତ୍ତ୍ୱକଥା କୁହାଗଲା, ଭଗବାନ୍ ଗୀତାରେ କେବଳ ସେତିକି କହି ନାହାନ୍ତି । ସମସ୍ତ ଭଗବଦ୍‌ଗୀତାରେ ଏଇ ଯଜ୍ଞ ଓ ଯୋଗ ଉପରେ ଭଗବଦ୍‌ଭକ୍ତିର ଭାବଟି ଓତପ୍ରୋତରୂପେ ଜଡ଼ିତ ଅଛି । ଭଗବାନ୍ ସଙ୍କେତ କହୁଛନ୍ତି, ମୋଠାରେ ପୂର୍ଣ୍ଣ ଭକ୍ତି କଲେହିଁ ଏହି ଯୋଗ ଅତ୍ୟନ୍ତ ସୁଗମ ହୁଏ । ଭକ୍ତି, ବ୍ୟକ୍ତିର ନୁହେଁ, ବ୍ୟକ୍ତର ଉପାସନା । କେବଳ ବ୍ୟକ୍ତର ନୁହେଁ, ବ୍ୟକ୍ତପୁରୁଷର ଉପାସନା ହିଁ ଭକ୍ତି । ନିଜକୁ ଭକ୍ତପାଖେ ବ୍ୟକ୍ତ ଭଗବାନ୍ ନିଜେ ସ୍ପଷ୍ଟ କହୁଛନ୍ତି— ମୁଁ ଭକ୍ତର "ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍" ଇତ୍ୟାଦି । (୯. ୧୬—୧୯) । ବେଦର ଯଜ୍ଞ ଓ ଯୋଗଭାଗକୁ ସରସ, ସୁନ୍ଦର ଓ ସୁଗମ କରିବା ପାଇଁ ଏଇ ଭକ୍ତିପନ୍ଥା ବହୁ ପ୍ରାଚୀନ କାଳରୁ ବୈଦିକଧର୍ମର ଗୋଟିଏ ମୁଖ୍ୟ-ଶାଖା ପରି ଚଳିଆସୁଥିଲା । ତାହାକୁ ଭାଗବତ ଧର୍ମ ତଥା ପାଞ୍ଚରାତ୍ର ବା ସାତ୍ୱତ ଧର୍ମ କହନ୍ତି । ଏଇ ଭାଗବତ ଧର୍ମର ସାର, ଭଗବାନ୍ ଗୀତାରେ ପ୍ରକାଶ କରିଥିଲେ ବୋଲି ମହାଭାରତରେ ସ୍ପଷ୍ଟ କହୁଛନ୍ତି । ଅନୁମାନ ହୁଏ, ନିର୍ବିକଳ୍ପ ବ୍ରହ୍ମତତ୍ତ୍ୱ-ଯୋଗରେ ଭକ୍ତିର ଏଇ ଗୌରବ ହୁଏତ ଜ୍ଞାନୀ ବ୍ରାହ୍ମଣମାନଙ୍କ ଦ୍ୱାରା ବହୁ ଅନାଦୃତ ହୋଇ ପଡ଼ିଥିଲା । ଏଠାରେ ଭଗବାନ୍ ହୁଏତ ସେଥିପ୍ରତି ମଧ୍ୟ ସୂଚନାରେ ଲକ୍ଷ୍ୟ କରୁଛନ୍ତି । ୨ ।

**ସ ଏବାୟଂ ମୟା ତେଽଦ୍ୟ ଯୋଗଃ ପ୍ରୋକ୍ତଃ ପୁରାତନଃ ।**
**ଭକ୍ତୋଽସି ମେ ସଖା ଚେତି ରହସ୍ୟଂ ହ୍ୟେତଦୁତ୍ତମମ୍ ।୩।**

**ଅନ୍ୱୟ**—[ତ୍ୱଂ] ମେ ଭକ୍ତଃ ସଖା ଚ ଇତି ଅଦ୍ୟ ମୟା ସଃ ଏବ ଅୟଂ ପୁରାତନଃ ଯୋଗଃ ତେ ପ୍ରୋକ୍ତଃ । ହି ଏତତ୍ ଉତ୍ତମଂ ରହସ୍ୟମ୍ । ୩ ।

**ଟୀକା**—ତ୍ୱଂ ମେ (ମମ) ଭକ୍ତଃ, ସଖା ଚ (ମଦ୍‌ବାକ୍ୟେ ଶ୍ରଦ୍ଧାବାନ୍ ଇତ୍ୟର୍ଥଃ) ଇତି [ହେତୋଃ] ଅଦ୍ୟ ମୟା ସଃ ଏବ ଅୟଂ ପୁରାତନଃ (ପୁରାକାଳାତ୍ ପ୍ରଚଳିତଃ)

ଯୋଗଃ ତେ (ତୁଭ୍ୟଂ) ପ୍ରୋକ୍ତଃ (କଥିତଃ) । ହି (ଯତଃ) ଏତତ୍ ଉତ୍ତମଂ ରହସ୍ୟଂ (କେବଳଂ ତ୍ୱଦ୍‌ବତ୍ ଶ୍ରଦ୍ଧାବତେ କ୍ଷତ୍ରିୟାୟ ଉପଦେଶ୍ୟଂ ଭାବଗାଢ ଭାବଃ) ।୩।

**ଅର୍ଥ**—ତୁ ମୋର ଭକ୍ତ, ପୁଣି ସଖା ଥିବାରୁ [ମୋ କଥାରେ ଆସ୍ଥା ରଖି ତା କରିବୁ ବୋଲି] ମୁଁ ଆଜ ତତେ ସେଇ ଏ ପୁରୁଣା ଯୋଗକଥା କହିଲି । କାହିଁକି ନା, ଏ ବଡ଼ ମର୍ମକଥା (ଯାହାକୁ ତାକୁ କହିବା କଥା ନୁହେଁ) (୨.୬; ୯.୧ ଟୀକା) । ୩ ।

ବ୍ୟାଖ୍ୟା ସୂଚନା—ତୁ ମଧ୍ୟ କ୍ଷତ୍ରିୟ, ଅତଏବ ତୋର ସ୍ୱଧର୍ମ ଧାରଣା ଠିକ୍ ହେଲେ ତୋ ପକ୍ଷରେ ଏ ମାର୍ଗ ବୁଝିବା ସହଜ । ଏ ଭାବ ବ ଏଠି ଅଛି । (ପୂର୍ବ ଶ୍ଳୋକ ଓ ଟୀକା) । ୩ ।

ଅର୍ଜୁନ ଉବାଚ

**ଅପରଂ ଭବତୋ ଜନ୍ମ ପରଂ ଜନ୍ମ ବିବସ୍ୱତଃ ।**
**କଥମେତଦବିଜାନୀୟାଂ ତ୍ୱମାଦୌ ପ୍ରୋକ୍ତବାନିତି ।୪।**

**ଅନ୍ୱୟ**—ଭବତଃ ଜନ୍ମ ଅପରଂ, ବିବସ୍ୱତଃ ଜନ୍ମ ପରଂ, ତ୍ୱଂ ଆଦୌ ପ୍ରୋକ୍ତବାନ୍ ଇତି ଏତତ୍ କଥଂ ବିଜାନୀୟାମ୍ । ୪ ।

**ଟୀକା**—ଅର୍ଜୁନଃ ଉବାଚ—[ବସୁଦେବ ଗୃହେ] ଭବତଃ ଜନ୍ମ ଅପରଂ (ଅର୍ବାଚୀନ), ବିବସ୍ୱତଃ (ସୂର୍ଯ୍ୟସ୍ୟ) ଜନ୍ମ ପରଂ (ପ୍ରାଚୀନଂ) ତ୍ୱଂ ଆଦୌ [ବିବସ୍ୱନ୍ତଂ] ପ୍ରୋକ୍ତବାନ୍ ଇତି ଏତତ୍ କଥଂ ବିଜାନୀୟାମ୍ (ଜ୍ଞାସ୍ୟାମି) । ୪ ।

**ଅର୍ଥ**—ଅର୍ଜୁନ କହିଲେ [ବସୁଦେବଙ୍କ ଘରେ] ଆପଣଙ୍କ ଜନ୍ମ ତ ଏବେ, ବିବସ୍ୱାନଙ୍କ ଜନ୍ମ ତ ସେକାଳ କଥା । ତୁମେ ପହିଲେ କହିଥିଲ ବୋଲି ସ୍ୱା କମିତି ଜାଣିବି । ୪ ।

ବ୍ୟାଖ୍ୟା ସୂଚନା—କୃଷ୍ଣ ବସୁଦେବ ଓ ଦେବକୀଙ୍କ ପୁଅ; ଅର୍ଜୁନଙ୍କ ସଖା । କୃଷ୍ଣ ମଧ୍ୟ ଅର୍ଜୁନଙ୍କୁ ସଖା ବୋଲି କହିଲେ । ଅତଏବ ଏଠାରେ ଅର୍ଜୁନ କୃଷ୍ଣଙ୍କୁ ସେଇ ବସୁଦେବପୁତ୍ର ଓ ନିଜର ସଖା ଭାବରେ ଦେଖି ଏ ପ୍ରଶ୍ନ କରୁଚନ୍ତି । ୪ ।

ଶ୍ରୀ ଭଗବାନୁବାଚ

**ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ ।**
**ତାନ୍ୟହଂ ବେଦ ସର୍ବାଣି ନ ତ୍ୱଂ ବେତ୍ଥ ପରନ୍ତପ ।୫।**

**ଅନ୍ୱୟ**—ଅର୍ଜୁନ, ମେ ତବ ଚ ବହୂନି ଜନ୍ମାନି ବ୍ୟତୀତାନି । ପରନ୍ତପ, ଅହଂ ତାନି ସର୍ବାଣି ବେଦ । ତ୍ୱଂ ନ ବେତ୍ଥ । ୫ ।

**ଟୀକା**—[କସ୍ମିଂଶ୍ଚିତ୍ ପୂର୍ବାବତାରେ କଥିତବାନ୍ ଇତ] ଶ୍ରୀ ଭଗବାନ୍ ଉବାଚ—ଅର୍ଜ୍ଜୁନ, ମେ (ମମ) ତବ ଚ ବହୂନି ଜନ୍ମାନି ବ୍ୟତୀତାନି (ଗତାନି) । ହେ ପରଂତପ, ଅହଂ ତାନି ସର୍ବାଣି ବେଦ (ଜାନାମି) । ତ୍ୱଂ ନ ବେତ୍ଥ (ଜାନାସି) । ୫ ।

**ଅର୍ଥ**—[କୌଣସି ପୂର୍ବ ଅବତାରରେ କହୁଚ ବୋଲି ] ଶ୍ରୀ ଭଗବାନ୍ କହିଲେ—ହେ ଅର୍ଜ୍ଜୁନ, ମୋର ଆଉ ତୋର ବି ବହୁତ ଜନ୍ମ ବିତିଯାଇଚି । ହେ ପରଂତପ, ମୁଁ ତା ସବୁ ଜାଣେ; ତୁ ଜାଣୁନାଇ । ୫ ।

**ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ୍ ।**
**ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା । ୬ ।**

**ଅନ୍ୱୟ**—ଅଜଃ ଅପି ସନ୍, ଅବ୍ୟୟାତ୍ମା [ତଥା] ଭୂତାନାଂ ଈଶ୍ୱରଃ ଅପି ସନ୍ ସ୍ୱାଂ ପ୍ରକୃତିଂ ଅଧିଷ୍ଠାୟ ଆତ୍ମମାୟୟା ସମ୍ଭବାମି । ୬ ।

**ଟୀକା**—[କୁତୋ ଭବତଃ ପରମେଶ୍ୱରସ୍ୟ ଏବଂ ଜନ୍ମବନ୍ଧଃ ? ଇତ୍ୟାଶଙ୍କ୍ୟ ତଂ ଏବ ଅବତାରବାଦଂ ସ୍ପଷ୍ଟୟନ୍ ଆହ]—ଅଜଃ (ଜନ୍ମରହିତଃ) ଅପି ସନ୍, ଅବ୍ୟୟାତ୍ମା (ଅନଶ୍ୱରସ୍ୱଭାବଃ, ଅପକ୍ଷବର୍ଜ୍ଜିତଃ) [ତଥା] ଭୂତାନାଂ ଈଶ୍ୱରଃ (ନିୟାମକଃ) [ଅତଏବ ଅପରତନ୍ତ୍ରଃ] ଅପି ସନ୍, [ଅହଂ ଲୋକରକ୍ଷାର୍ଥେ] ସ୍ୱାଂ (ମମାଧୀନାଂ) ପ୍ରକୃତିଂ (ସର୍ଗୋପାଦାନଂ) ଅଧିଷ୍ଠାୟ (ମମ ବିଗ୍ରହଧାରଣାର୍ଥଂ ନିୟମ୍ୟ) [ସର୍ଗପ୍ରକାଶାତ୍ମିକୟା] ଆତ୍ମମାୟୟା (ନିଜବିଗ୍ରହଧାରଣଶକ୍ତ୍ୟା, ପ୍ରକାଶାତ୍ମିକୟା ଶକ୍ତ୍ୟା) ସମ୍ଭବାମି (ଦେହୀ ଇବ ଆବିର୍ଭବାମି) । ୬ ।

**ଅର୍ଥ**—[ଆପଣ ତ ସ୍ୱୟଂ ପରମେଶ୍ୱର, ଆପଣଙ୍କର ପୁଣି ଜନ୍ମ ଜନ୍ମାନ୍ତର କଣ ? ଏଥିପାଇଁ ସେଇ ଅବତାରବାଦ ବୁଝାଇ କହୁଚନ୍ତି ।] ମୋର ଜନ୍ମ ନାଇ, ବଦଳିବା ମୋର ସ୍ୱଭାବ ନୁହେଁ, ପୁଣି ମୁଁ ଭୂତମାନଙ୍କର ଈଶ୍ୱର (ପାଳକ ଓ ଚାଳକ) (ଅର୍ଥାତ୍ ମୁଁ କାହାର ଉପରେ ନିର୍ଭର କରେ ନାଇ । ) ହେଲେ ବି ଲୋକ ରକ୍ଷା ପାଇଁ ମୁଁ ନିଜର ପ୍ରକୃତି ଘେନି ଆପଣାର ମାୟାରେ ଦେହ ଧରି ପ୍ରକାଶ ହୁଏ । ୬ ।

ବ୍ୟାଖ୍ୟା ସୂଚନା—ଭୂତମାନଙ୍କର ବା ସୃଷ୍ଟିର ମୂଳ ଓ ବୀଜ ହେଉଚି ପରମାତ୍ମାଙ୍କର ଏଇ ପ୍ରକୃତି । ୭, ୪,୬; ୯.୮,୧୦; ୧୪.୩,୪ ଦେଖ । ଏଇ ପ୍ରକୃତି ସଙ୍ଗେ ଏକ ହୋଇ ଜଡ଼ିତ ଥିବା ଯେଉଁ ଶକ୍ତିରେ ସୃଷ୍ଟି ପ୍ରକାଶ ହୁଏ, ସେ ହେଉଚି 'ମାୟା' । ଏହା ବି ପ୍ରକୃତିର ଅନ୍ୟ ନାମ । ଏଇ ମାୟା ସତ୍ତ୍ୱ, ରଜ, ତମ ଏହି ତିନି

ଗୁଣରୂପେ ପ୍ରକାଶ ହୁଏ । ନାମରୂପମୟ ସୃଷ୍ଟି ମାନେ ଓ ଦେହମାନେ ଏହି ଗୁଣଜନିତ ଓ ଗୁଣମାନଙ୍କର ବିକାର ବା ପରିଣାମ । ୭.୧୨-୧୪; ୧୪.୫ ଦେଖ । ୬ ।

**ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।**
**ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ । ୭ ।**

**ଅନ୍ୱୟ**—ଭାରତ, ହି ଯଦା ଯଦା ଧର୍ମସ୍ୟ ଗ୍ଲାନିଃ ଭବତି, ଅଧର୍ମସ୍ୟ ଚ ଅଭ୍ୟୁତ୍ଥାନଂ [ଭବତି], ତଦା ଅହଂ ଆତ୍ମାନଂ ସୃଜାମି ।୭।

**ଟୀକା**—[କଦା ଇତ୍ୟାହ] ହେ ଭାରତ, ଯଦା ଯଦା ଧର୍ମସ୍ୟ (ଲୋକାନାଂ ନିତ୍ୟନିୟତକର୍ତ୍ତବ୍ୟସ୍ୟ, ତସ୍ୟ କର୍ତ୍ତବ୍ୟସ୍ୟ ଯଥାବତ୍ ପାଳନେନ ମୋକ୍ଷସାଧନସ୍ୟ ବା) ଗ୍ଲାନିଃ (ହ୍ରାସଃ, ବିଶୃଙ୍ଖଳା) ଭବତି, ଅଧର୍ମସ୍ୟ ଚ ଅଭ୍ୟୁତ୍ଥାନଂ (ବୃଦ୍ଧିଃ) [ଭବତି], ତଦା ହି (ନିଶ୍ଚିତଂ) ଅହଂ ଆତ୍ମାନଂ [ଏବ] ସୃଜାମି (ଦେହବଦ୍‌ରୂପେଣ ପ୍ରକାଶୟାମି) । ୭ ।

**ଅର୍ଥ**—[କେବେ ?—କହୁଛନ୍ତି] ହେ ଭାରତ, ଯେବେ ଯେବେ ଧର୍ମର (ଲୋକରେ ନିୟତକର୍ତ୍ତବ୍ୟର, ବା ସେହି କର୍ତ୍ତବ୍ୟର ଯଥାପାଳନରେ) ହାନି (ବିଶୃଙ୍ଖଳ) ହୁଏ ଓ ଅଧର୍ମ ବଢ଼େ, ସେତିକିବେଳେ ମୁଁ ଆପଣାକୁ [ଏହିପରି] ଦେହରୂପେ ପ୍ରକାଶ କରେ । ୭ ।

ବ୍ୟାଖ୍ୟା ସୂଚନା—ଏଠାରେ ଅବତାରବାଦର ମର୍ମ ଟିକିଏ ବୁଝାଇ ଦେବା ଦରକାର । ଉଦ୍ଧାର=ଉପରକୁ ଉଠିବା, ଅବତାର=ଓହ୍ଲାଇବା । ଜୀବର ଉଦ୍ଧାର ବୋଇଲେ, ଉପରକୁ ବା ଅବ୍ୟକ୍ତ ପରମାତ୍ମଭାବକୁ ଉଠିବା । ପରମାତ୍ମାଙ୍କର ଅବତାର ବୋଇଲେ, ଓହ୍ଲାଇ ଦେହୀ ହୋଇ ବ୍ୟକ୍ତ ରୂପ ଧରିବା (୩.୪୩ ଟୀକାରେ 'ପର' ବା ଉପରର ବ୍ୟାଖ୍ୟା ଦେଖ ।)

ଉଦ୍ଧାର ପନ୍ଥା ଧରି ସିଦ୍ଧଜୀବ ଯୋଗସ୍ଥ ହେଲେ ବ୍ରହ୍ମ ପାଏ । ମନୁଷ୍ୟଠାରେ ହିଁ ବ୍ରହ୍ମ 'ଜୀବଭୂତ' (୭.୫; ୧୫.୭) । ଉଦ୍ଧାର ବା ମୁକ୍ତି ଜୀବର ହିଁ ହୁଏ (୯.୩୩ ଓ ଟୀକା) ସେଥିପାଇଁ ମନୁଷ୍ୟର 'ଶରୀର ଯାତ୍ରା'; ବା ଶରୀର ଧାରଣ, ମୁକ୍ତି ଆଡକୁ ଏକ ଯାତ୍ରା ବା ସାଧନା । (୩.୮ ଓ ଟୀକା) । ଅନ୍ୟାନ୍ୟ ସୃଷ୍ଟ ବସ୍ତୁ କେବଳ କୃତକର୍ମର ଫଳ ଭୋଗ କରନ୍ତି । କିନ୍ତୁ କୃତକର୍ମ ନାଶ କରିବାରେ ବା ମୁକ୍ତିର ସାଧନାରେ ଜୀବର ହିଁ ସ୍ୱତନ୍ତ୍ର ପ୍ରବୃତ୍ତି ଅଛି । ସେଥିପାଇଁ କର୍ମରେ ସେ ସବୁବେଳେ ବୁଦ୍ଧି ବା ବିବେଚନା ଲଗାଉଛି, ପୁଣି ସେଥିରେ ତାହାର ମୋହ ବା ଭ୍ରମ ହେଉଛି । ଆପ୍ତଦ୍ରଷ୍ଟା ବା ତତ୍ତ୍ୱଦର୍ଶୀଠାରେ ବିଶ୍ୱାସ କଲେ ଉପଦେଶରେ ଜ୍ଞାନ ମିଳିବ । ଏ ବାଟ ବି ଭଗବାନ କହୁଛନ୍ତି (୪.୩୪) । ତଥାପି ବେଳେ ବେଳେ ଜଗତରେ ଜୀବର ଉଦ୍ଧାରସାଧନ-ପନ୍ଥା ବା ଧର୍ମରେ ଗ୍ଲାନି ହୁଏ । ଦୁଷ୍କୃତ ବ୍ୟାପିଯାଏ । ସେତେବେଳେ

ଜୀବକୁ ବାଟ ଦେଖାଇବା ପାଇଁ ଈଶ୍ୱର ଅବତାର ହୁଅନ୍ତି । ଅଭୂତଶକ୍ତି ଦେଖାଇବା ବା ଅସାଧାରଣ ଆଚମ୍ବିତ ଆଚରଣ କରିବା ଅବତାରର ଉଦ୍ଦେଶ୍ୟ ବା ଅର୍ଥ ନୁହେଁ । ତା ହେଲେ ଖାଲି ଯେ ଲୋକର ନିଯୁତ କର୍ମଶୈଳୀରେ ବିଶୃଙ୍ଖଳା ପଡ଼ିବାର ଶଙ୍କା ଅଛି, ସେତିକି ନୁହେ; ମନୁଷ୍ୟ ମଧ୍ୟ ସେ ବାଟ ଧରିବାକୁ ଆହ୍ୱାନ ପାଇବ ନାଇଁ, ତା ହୁଏ ପାଇବ ନାଇଁ । 'ଲୋକସଂଗ୍ରହ' ନିମନ୍ତେ ଅବତାର, ସାଧାରଣ ମନୁଷ୍ୟ ପରି ମାନବ କର୍ମରେ ରହନ୍ତି (୩.୨୨-୨୬); ସଙ୍କଟ ଓ ଧର୍ମସଂଶୟବେଳେ ବି ଠିକ୍ ସିଦ୍ଧ ମାନବ-ପରି 'ଯୋଗସ୍ଥ' ହୋଇ ବାଟ ଦେଖାନ୍ତି । ଫଳ କଥା—ସାଧନାରେ ସିଦ୍ଧ ଜୀବ 'ଯୋଗସ୍ଥ' ହେଲେ ସେଇ ହେଲେ ଅବତାର । ମହାଭାରତର ଅଶ୍ୱମେଧ ପର୍ବର 'ଅନୁଗୀତା ପ୍ରକରଣରେ ଅଛି, ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଆଉ ଥରେ ଗୀତା ଉପଦେଶ ଦେବା ପାଇଁ ଓ ବିଶ୍ୱରୂପ ଦେଖାଇବା ପାଇଁ କହିଥିଲେ । ଶ୍ରୀକୃଷ୍ଣ ସେତେବେଳେ ବୁଝାଇ କହିଲେ, "କୁରୁକ୍ଷେତ୍ରରେ ତୋର ଧର୍ମସଙ୍କଟ ହେଲାବେଳେ ମୁଁ 'ଯୋଗସ୍ଥ' ହୋଇଥିଲି । ଏବେ ତା ସମ୍ଭବ ନୁହେ । କାହିଁକି ନା, ସେ ପରିସ୍ଥିତି ନାଇଁ ।" ଅବତାରଭାବ ପୃଥିବୀରେ ସାଧାରଣ । ଖ୍ରୀଷ୍ଟ, ମହମ୍ମଦ ପ୍ରଭୃତି ମଧ୍ୟ ତତ୍ତ୍ୱତଃ ଏଇପରି ଅବତାର । ୭ ।

**ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।**
**ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ । ୮ ।**

**ଅନ୍ୱୟ**—ସାଧୂନାଂ ପରିତ୍ରାଣାୟ, ଦୁଷ୍କୃତାଂ ଚ ବିନାଶାୟ [ଏବଂ ଚ] ଧର୍ମସଂସ୍ଥାପନାର୍ଥାୟ ଯୁଗେ ଯୁଗେ ସଂଭବାମି । ୮ ।

**ଟୀକା**—[କିମର୍ଥଂ ? ଇତ୍ୟାହ]—ସାଧୂନାଂ (ସ୍ୱଧର୍ମବର୍ତ୍ତିନାଂ) ପରିତ୍ରାଣାୟ (ଉଦ୍ଧରଣାୟ—ଯଥାବତ୍ ସ୍ୱଧର୍ମବର୍ତ୍ତିନାଂ ସିଦ୍ଧିଦାନାର୍ଥଂ)ବା ଦୁଷ୍କୃତାଂ (ଦୁଷ୍କର୍ମବତାଂ, ପାପାନାଂ) ଚ ବିନାଶାୟ [ଏବଂ ଚ] ଧର୍ମ ସଂସ୍ଥାପନାର୍ଥାୟ (ଧର୍ମଂ ସ୍ଥିରୀକର୍ତ୍ତୁଂ) ଯୁଗେ ଯୁଗେ (ପ୍ରତିଯୁଗଂ, ଯଥାବସରଂ ଇତି ଭାବଂ) [ଏବଂ] ସଂଭବାମି (ଆବିର୍ଭବାମି) ।୮।

**ଅର୍ଥ**—[କଣ ପାଇଁ ?—କହୁଚନ୍ତି] ସଜ୍ଜନମାନଙ୍କୁ ଉପରକୁ ବା ମୁକ୍ତି ଆଡ଼କୁ ଉଠିବାର ଠିକ୍ ବାଟ ଦେଖାଇ, ଦୁରାଗ୍ରହୀଙ୍କୁ ନାଶ କରି, ଧର୍ମ ଠିକ୍ ରଖିବା ପାଇଁ, ମୁଁ [ଏଇପରି] ଯୁଗେ ଯୁଗେ (ଅର୍ଥାତ୍, ଦରକାର ହେଲାବେଳେ ) ଅବତାର ହୋଇ ପ୍ରକାଶ ହୁଏ । ୮ ।

ବ୍ୟାଖ୍ୟା ସୂଚନା—ସଜ୍ଜନ ବା ସ୍ୱଧର୍ମପର ମୋକ୍ଷକାମୀମାନେ ସ୍ୱାର୍ଥପର ଦୁରା-ଗ୍ରହଙ୍କ ବିସ୍ତାରେ ପ୍ରଭାବିତ ହୋଇଯିବାର ଆଶଙ୍କା ଥାଏ । ତେଣୁ ଅଧର୍ମ ବଢ଼ିଲା-ବେଳେ ତାଙ୍କ ପରିତ୍ରାଣପଥରେ ବାଧା ପଡ଼ିବାର ଶଙ୍କା ମଧ୍ୟ ସ୍ୱାଭାବିକ । ଏହି ସଙ୍କେତ ଏଠାରେ ଅଛି । ୮ ।

**ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋ ବେତ୍ତି ତତ୍ତ୍ୱତଃ ।**
**ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ ନୈତି ମାମେତି ସୋଽର୍ଜୁନ ।୯।**

**ଅନ୍ୱୟ**—ଏବଂ ମେ ଦିବ୍ୟଂ ଜନ୍ମ କର୍ମଚ ଯଃ ତତ୍ତ୍ୱତଃ ବେତ୍ତି, ଅର୍ଜୁନ, ସ ଦେହଂ ତ୍ୟକ୍ତ୍ୱା ପୁନର୍ଜନ୍ମ ନ ଏତି ମାଂ [ ଏବ ] ଏତି । ୯ ।

**ଟୀକା**—[ତଦ୍‌ଜ୍ଞାଃ ତରନ୍ତୀତ୍ୟାହ ]—ଏବଂ (ଉକ୍ତରୂପଂ) ମେ (ମମ) ଦିବ୍ୟଂ (ଐଶ୍ୱରଂ) ଜନ୍ମ କର୍ମ ଚ ଯଃ ତତ୍ତ୍ୱତଃ (କଂ ତତ୍ତ୍ୱ ଇତି ସ୍ୱରୂପତଃ) ବେତ୍ତି (ଜାନାତି) ହେ ଅର୍ଜୁନ, ସଃ ଦେହଂ ତ୍ୟକ୍ତ୍ୱା (ମୃତ୍ୱା ଇତିଭାବଃ) ପୁନର୍ଜନ୍ମ ନ ଏତି (ପ୍ରାପ୍ନୋତି) [ସଃ] ମାଂ [ଏବ] ଏତି (ଦେହାଭିମାନଂ ତ୍ୟକ୍ତ୍ୱା ମୁକ୍ତିଂ ଲଭତେ ଇତିଭାବଃ) । ୯ ।

**ଅର୍ଥ**—[ଏହା ଠିକ୍ କରି ଜାଣି ମୁକ୍ତ ପାଆନ୍ତି ବୋଲି କହୁଚନ୍ତି]—ଏହିପରି ମୋର ଐଶ୍ୱରିକ ଜନ୍ମ ଓ କର୍ମର ତତ୍ତ୍ୱ ଯେ ଜାଣେ, ହେ ଅର୍ଜୁନ, ସେ ଦେହ ଛାଡ଼ି (ମରି) ପୁନର୍ଜନ୍ମ ପାଏ ନାଇ । ସେ ମତେ ପାଏ (ଅର୍ଥାତ୍, ଦେହର ଅଭିମାନ ଛାଡ଼ି ମୁକ୍ତି ପାଏ) । ୯ ।

ବ୍ୟାଖ୍ୟା ସୂଚନା—ଏହିପରି ଲୋକରକ୍ଷା ଓ ଜୀବର ମୁକ୍ତି ସାଧନା ହିଁ ଈଶ୍ୱ-କର୍ମଙ୍କ ଈଶ୍ୱରତ୍ୱର ଚରମ ଗତି—ତାହାହିଁ ଈଶ୍ୱରଙ୍କ ଅଭିପ୍ରାୟ । ଏହା ଜାଣି ଧାରଣା କଲେ ଲୋକ କର୍ମବନ୍ଧନ ଛୁଟାଇ ମୁକ୍ତି ପାଏ । ୯ ।

**ବୀତରାଗଭୟକ୍ରୋଧା ମନ୍ମୟା ମାମୁପାଶ୍ରିତାଃ ।**
**ବହବୋ ଜ୍ଞାନତପସା ପୂତା ମଦ୍‌ଭାବମାଗତାଃ । ୧୦ ।**

**ଅନ୍ୱୟ**—ମନ୍ମୟାଃ, ମାଂ ଉପାଶ୍ରିତାଃ, ଜ୍ଞାନତପସା ପୂତାଃ, ବୀତରାଗଭୟକ୍ରୋଧାଃ ବହବଃ ମଦ୍‌ଭାବଂ ଆଗତାଃ । ୧୦ ।

**ଟୀକା**—[ନ ତୁ ନବୀନୋଽୟଂ ମୁକ୍ତିମାର୍ଗଃ—ଇତ୍ୟାହ ] ମନ୍ମୟାଃ (ମତ୍ପରାଃ, ମଦେକଚିତ୍ତାଃ) [କଃ ପନ୍ଥା ଭଗବନ୍, ତଂ ମେ ଦର୍ଶୟ ଇତି] ମାଂ ଉପାଶ୍ରିତାଃ (ଆଶ୍ରୟାର୍ଥଂ ଅନ୍ୱେଷ୍ୟନ୍ତଃ) [ଈଶ୍ୱରସ୍ୟ ସର୍ବଂ କର୍ମ, ନମିତ୍ତଂ ବୟଂ ଇତି ମନ୍ୟମାନାଃ ସନ୍ତଃ] ଜ୍ଞାନତପସା (ଜ୍ଞାନକୃତପ୍ରଯତ୍ନେନ) ପୂତାଃ (ଶୁଦ୍ଧଚେତସଃ), ବୀତରାଗଭୟକ୍ରୋଧାଃ (ଆସକ୍ତି ଫଳଶୟ ବୈକ୍ଲବ୍ୟରହିତାଃ ) ବହବଃ [ଜନାଃ] ମଦ୍‌ଭାବଂ (ମତ୍ ସ୍ୱରୂପଂ) ଆଗତାଃ (ପ୍ରାପ୍ତାଃ) । ୧୦ ।

**ଅର୍ଥ**—[ଏ ମୁକ୍ତିମାର୍ଗ କିଛି ନୂଆ ନୁହେ ବୋଲି କହୁଚନ୍ତି]—ମୋଠି ତନ୍ମୟ ହୋଇ (ପନ୍ଥା କାହିଁ ଦେଖାଅ ଭଗବାନ୍—ବୋଲି) ମତେ ଆଶ୍ରା କରି (ଈଶ୍ୱରଙ୍କର

କର୍ମ, ଲୋକେ ଖାଲି ନମିତ୍ତ ହୋଇ କରୁଚନ୍ତି ବୋଲି ବୁଝିବ) ସେ ଜ୍ଞାନରୂପ ତପସ୍ୟା ବା ପ୍ରଯତ୍ନ କରିବାରେ ମନଃପୂତ କରି, ଆସକ୍ତି, ଶଙ୍କା, ବ୍ୟାକୁଳତା ଛାଡ଼ି, ବହୁ ଲୋକ ମୋ ସ୍ୱରୂପ ପାଇଚନ୍ତି (ଅର୍ଥାତ୍, ମୁକ୍ତ ହୋଇଚନ୍ତି) । ୧୦ ।

ବ୍ୟାଖ୍ୟା ସୂଚନା—ରାଗ = ଆସକ୍ତି; ମୋର ଏ ଧର୍ମସାଧନାରେ ଫଳ ଫଳିବ ବୋଲି ଅପେକ୍ଷାରେ କର୍ମ କରିବା । ଭୟ = ଶଙ୍କା; ଏ ଠିକ୍ ଧର୍ମପନ୍ଥା କି ନୁହେଁ ? ହଁ, କରୁଚି ତ ଯାହା ହବ; ଭଗବାନ୍ ସତ୍ୟ କି ନୁହେଁ ? କର୍ମରେ ତ ଦୋଷ ଅଛି, କର୍ମ କରିବା ଠିକ୍ କି ନୁହେଁ ? ପ୍ରଭୃତି ଦୋ-ଦୋ-ପାଞ୍ଚ ଭାବ । କ୍ରୋଧ = ବ୍ୟାକୁଳତା ଏତେ କାମ କଲି, କିଛି ହେଲା ନାହିଁ ବୋଲି ଛଟପଟ ହେବା; କରୁ କରୁ କିଛିଏ ବିଘ୍ନ ଘଟିଲେ ସତେ ସୃଷ୍ଟି ସରିଗଲା ପରି ବାଉଳି ପିଟି ହେବା; ରାଗ ହେବା । ଜ୍ଞାନତପଃ = ତତ୍ତ୍ୱବୁଝିବା ଫଳରେ କର୍ମରେ ଯେଉଁ ପ୍ରଯତ୍ନ; ଅନାସକ୍ତ କର୍ମରେ ତତ୍ପରତା । ତପ = କାହିଁକି କରିବ ବୋଲି ହୃଦେଇ ନ ଯାଇ ଲାଗିବା । ଭକ୍ତିରେ ଜ୍ଞାନରେ, ଈଶ୍ୱରଙ୍କ କର୍ମ ବୋଲି କରିବାରେ ଏ ତପ, ସୁଲଭ । ୧୦ ।

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।**
**ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ । ୧୧ ।**

**ଅନ୍ୱୟ**—ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତାନ୍ ଅହଂ ତଥା ଏବ ଭଜାମି । ପାର୍ଥ, ମନୁଷ୍ୟାଃ ସର୍ବଶଃ ମମ ବର୍ତ୍ମ ଅନୁବର୍ତ୍ତନ୍ତେ । ୧୧ ।

**ଟୀକା**—[ନ ତୁ କେବଳଂ ଭକ୍ତରୂପେ ଜ୍ଞାନବତ ମେ ପକ୍ଷପାତଃ ଇତ୍ୟାହ]—ଯେ ଯଥା (ଯତ୍ପ୍ରକାରେଣ, ଯଦ୍ ଯଦର୍ଥଂ ଯଦ୍‌ବା ପ୍ରୟୋଜନମୁଦ୍ଦିଶ୍ୟ—ମୋକ୍ଷାୟ, ଫଳାର୍ଥାୟ ବା ) ମାଂ ପ୍ରପଦ୍ୟନ୍ତେ (ଅବଲମ୍ବନ୍ତେ) ତାନ୍ ଅହଂ ତଥା (ତେନୈବ ପ୍ରକାରେଣ, ତତ୍ପ୍ରୟୋଜନସାଫଲ୍ୟେନ ) ଏବ ଭଜାମି (ଅନୁଗୃହ୍ଣାମି, ଯଦ୍‌ବା ଯୋଜୟିତ୍ୱା ତୋଷୟାମି) । ହେ ପାର୍ଥ, ମନୁଷ୍ୟାଃ ସର୍ବଶଃ (ସର୍ବପ୍ରକାରେଣ-ଯସ୍ୟ ଯଃ ପ୍ରକାରଃ ତେନ ) ମମ ବର୍ତ୍ମ (ମାର୍ଗଂ) ଅନୁବର୍ତ୍ତନ୍ତେ (ଅନୁସରନ୍ତି) । ୧୧ ।

**ଅର୍ଥ**—[କେବଳ ଯେ ମୁଁ ଏହିପରି ଜ୍ଞାନୀଙ୍କି ପକ୍ଷପାତ କରି ମୁକ୍ତି ଦିଏ, ଆଉ କାହା କଥା ବୁଝେ ନାହିଁ, ତା ନୁହେଁ ବୋଲି କହୁଚନ୍ତି ]—ଯେ ଯେପରି ବା ଯେଉଁଥିପାଇଁ ମତେ ଆଶ୍ରା କରନ୍ତି, ମୁଁ ତାଙ୍କୁ ସେହିପରି ବା ସେଥିରେ ମିଳେ । ହେ ପାର୍ଥ, ମନୁଷ୍ୟମାନେ ସବୁମନ୍ତେ ମୋରି ବାଟରେ ଚାଲନ୍ତି (ଅର୍ଥାତ୍, ମୋରି ଶାସନରେ ଅଛନ୍ତି) । ୧୧ ।

ବ୍ୟାଖ୍ୟା ସୂଚନା—ମୋ ବ୍ୟବସ୍ଥାରୁ ବାହାର ହେବାକୁ କାହାରି ବାଟ ନାଇ । ଯେ ଯେପରି ବୁଣେ ସେହିପରି କାଟେ; ଯେପରି କାମ କରେ ସେହିପରି ପାଏ ଉତ୍ତର

ହୁଏ । ଈଶ୍ୱରଙ୍କ ବ୍ୟବସ୍ଥାରେ—କର୍ମର ନିୟମରେ, ଅପବାଦ ନାହିଁ । ସମସ୍ତଙ୍କି ସମାନ ଅର୍ଥାତ୍ ଯୋଗ୍ୟତା ଅନୁସାରେ ନ୍ୟାୟ ମିଳେ—ମହାତ୍ମା ଗାନ୍ଧୀ । ୧୧ ।

**କାଙ୍କ୍ଷନ୍ତଃ କର୍ମଣାଂ ସିଦ୍ଧିଂ ଯଜନ୍ତଇହ ଦେବତାଃ ।**
**କ୍ଷିପ୍ରଂ ହି ମାନୁଷେ ଲୋକେ ସିଦ୍ଧିର୍ଭବତି କର୍ମଜା ।୧୨।**

**ଅନ୍ୱୟ**—ହି ମାନୁଷେ ଲୋକେ କର୍ମଜା ସିଦ୍ଧିଃ କ୍ଷିପ୍ରଂ ଭବତି । କର୍ମଣାଂ ସିଦ୍ଧିଂ କାଙ୍କ୍ଷ୍ୟତଃ ଇହ ଦେବତାଃ ଯଜନ୍ତେ ।୧୨।

**ଟୀକା**—[ କଥଂ ବା ମୋକ୍ଷାୟ ସର୍ବେ ତ୍ୱାଂ ନ ପ୍ରପଦ୍ୟନ୍ତେ ? ଇତ୍ୟାହ] ହି (ଯତଃ) ମାନୁଷେ ଲୋକେ କର୍ମଜା (ଫଳବଦ୍‌ବୈଦିକକର୍ମଭବା, ଯଦ୍‌ବା କାର୍ଯ୍ୟକାରଣସଂଯୋଗାତ୍ମକକର୍ମଭବା) ସିଦ୍ଧିଃ (ସଫଳତା) କ୍ଷିପ୍ରଂ (ଶୀଘ୍ରଂ) ଭବତି । (ତତଃ) କର୍ମଣାଂ (ତାଂ) ସିଦ୍ଧିଂ କାଙ୍କ୍ଷନ୍ତଃ (ଅଭିଳଷନ୍ତଃ) (ଜନାଃ) ଇହ ଦେବତାଃ (ଇନ୍ଦ୍ରାଦୀନ୍ ଦେବାନ୍—ଯଦ୍‌ବା ଦୀବ୍ୟନ୍ତି, ପ୍ରକାଶନ୍ତେ, ଇତି ଦେବତାଃ, ତାଃ—ଶକ୍ତିମଦଭୂତାନି, ଭୂତେଷୁ ପ୍ରକାଶିତା ଶକ୍ତୟଃ ଚ ନ ତୁ ମୁକ୍ତ୍ୟର୍ଥଂ ମାଂ ଇତ୍ୟାଶୟଃ) ଯଜନ୍ତେ (କର୍ମଣା ଭଜନ୍ତି) । ୧୨ ।

**ଅର୍ଥ**—[ତେବେ କାହିଁକି ବା ସମସ୍ତେ ମୁକ୍ତି ପାଇଁ ତୁମକୁ ଆଶ୍ରା ନ କରନ୍ତି ? ଏଥିକୁ କହୁଚନ୍ତି]—ଯେଣୁ ଏ ମନୁଷ୍ୟଜଗତରେ କର୍ମର ଫଳ ତୁରନ୍ତ ମିଳେ, ସେଥିପାଇଁ କର୍ମର ସେଇ ସଫଳତା ବା ଫଳ ଲୋଡ଼ୁଥିବା ଲୋକେ ଏଠାରେ (ହଠାତ୍ ମତେ ଭଜିବାଯାଏ ନ ଯାଇ) ଦେବତାମାନଙ୍କୁ ଆଦରନ୍ତି । ୧୨ ।

ବ୍ୟାଖ୍ୟା ସୂଚନା—କର୍ମ = ଏଠାରେ ଫଳ ପାଇଁ କରାଯାଉଥିବା ବୈଦିକ କର୍ମ । ଯେପରି କି ପୁତ୍ରପାଇବାକୁ କରାଯାଉଥିବା ପୁତ୍ରେଷ୍ଟି ଯାଗ କିମ୍ବା ଏହା କଲେ ଏହା ହେବ ବୋଲି କାର୍ଯ୍ୟକାରଣ ଧରି ଜଗତରେ କରା ହେଉଥିବା ଆଧିଭୌତିକ କର୍ମ ।

ଯେପରି କି, ବଡ଼ଲୋକଙ୍କୁ ଭଜିଲେ ମାନ ବା ଧନ ମିଳିବ, ପାଣି ବା ସମୁଦ୍ରକୁ ନୌକା ବା ବୋଇତରେ ଭଜିଲେ ବେପାର ଭଲ ହେବ ଇତ୍ୟାଦି । ସେହିପରି, ଦେବତା = ଏଠାରେ, ଇନ୍ଦ୍ରାଦି; କିମ୍ବା ଶକ୍ତିପ୍ରକାଶ କରିବା ଭଳି ପ୍ରାଣୀ ବା ପଦାର୍ଥସବୁ । ଏହିପରି ବୈଦିକ ଯଜ୍ଞକର୍ମ ଓ ଦେବତାଙ୍କର ଶ୍ଳୋକସବୁ ଭଗବାନ୍ ଜଗତର ବ୍ୟବହାର କର୍ମ ଓ ସାଧନା ସଙ୍ଗେ ମିଳାଇ ସବୁଠି ବୁଝାଇଚନ୍ତି, ଏହା ଲକ୍ଷ୍ୟ ରଖିବାକୁ ହେବ । (ଦେବତା ବୋଇଲେ ଈଶ୍ୱରଙ୍କ ଅଂଶରୂପୀ ଶକ୍ତି, ଏ ଅର୍ଥରେ ମନୁଷ୍ୟ ବି ଦେବତା ଓ ବାଷ୍ପ, ବିଜୁଳି ଆଦି ମହାଶକ୍ତିମାନେ ବି ଦେବତା । ଏସବୁକୁ ଆରାଧନା କଲେ ତୁରନ୍ତ ଫଳ ମିଳେ—ମହାତ୍ମା ଗାନ୍ଧୀ ) । ୧୨ ।

**ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ ।**
**ତସ୍ୟ କର୍ତାରମପି ମାଂ ବିଦ୍ଧ୍ୟକର୍ତାରମବ୍ୟୟମ୍ ।୧୩।**

**ଅନ୍ୱୟ**—ଚାତୁର୍ବର୍ଣ୍ୟଂ ମୟା ଗୁଣକର୍ମବିଭାଗଶଃ ସୃଷ୍ଟମ୍ । ତସ୍ୟ କର୍ତାରଂ ଅପି ମାଂ ଅବ୍ୟୟଂ ଅକର୍ତାରଂ ବିଦ୍ଧି । ୧୩ ।

**ଟୀକା**—[ଅତଃ ସୂର୍ଯ୍ୟାଦୟୋ ଭୂତେଷୁ ଯଥା ପ୍ରକାଶ-ତପନାଦି ସ୍ୱକର୍ମ ନିର୍ଦ୍ଦିଷ୍ଟଂ, ତଥା ମତ୍‌କର୍ମାନୁସରଣଂ ସୁଗମଂ କର୍ତୁଂ ଇହ ମାନୁଷେ ଲୋକେଽପି]—ଚାତୁର୍ବର୍ଣ୍ୟଂ (ବ୍ରାହ୍ମଣକ୍ଷତ୍ରିୟବୈଶ୍ୟଶୂଦ୍ରାଃ—ଇତି ବର୍ଣଚତୁଷ୍ଟୟଂ—ଏତେନ ମାନବସମାଜେ ସର୍ବକର୍ମବିଭାଗଃ ସୂଚ୍ୟତେ) ମୟା ଗୁଣକର୍ମବିଭାଗଶଃ (ଲୋକାନାଂ ପ୍ରକୃତିଗତଗୁଣେନ କର୍ମବିଭାଗଂ ଅନୁସୃତ୍ୟ) ସୃଷ୍ଟଂ (ବିହିତମ୍) । [ଆପାତତଃ] ତସ୍ୟ (ଚାତୁର୍ବର୍ଣ୍ୟସ୍ୟ) କର୍ତାରଂ ଅପି ମାଂ [ତତ୍ତ୍ୱତଃ] ଅବ୍ୟୟଂ (ଅଭିଲାଷପ୍ରଯତ୍ନାଦିକୃତବିକାରହୀନଂ) [ଅତଏବ] ଅକର୍ତାରଂ (ସର୍ବତଃ କର୍ତୃତ୍ୱାଭିମାନରହିତଂ) ବିଦ୍ଧି । ୧୩ ।

**ଅର୍ଥ**—[ଏଣୁ କାଳେ ଲୋକେ ଫଳ ଦେବା କର୍ମପଛରେ ଧାଇଁ ଅସ୍ଥିର ହେବେ, ସେଥିପାଇଁ ସୂର୍ଯ୍ୟାଦି ସୃଷ୍ଟବସ୍ତୁରେ ଯେପରି ଉତ୍ତାପ ଓ କିରଣ ଦେବା ପଭୃତି ସ୍ୱକର୍ମ ନିର୍ଦ୍ଦିଷ୍ଟ ଅଛି, ସେହିପରି ମୋର ବିହିତ କର୍ମପନ୍ଥା ସ୍ପଷ୍ଟ କରିବା ପାଇଁ ଏହି ମନୁଷ୍ୟ ଜଗତରେ ବି] ଲୋକଙ୍କ ସ୍ୱଭାବଗତ ଗୁଣ ମୁତାବକ କର୍ମ ଅନୁସାରେ ଚାରିବର୍ଣ-ଭାଗବିଧାନ ମୁଁ ସୃଷ୍ଟି କରିଛି । [ଦେଖିଲାବେଳକୁ] ମୁଁ ସେହି ଚାରିବର୍ଣ୍ଣ-ଭାଗର କର୍ତା ପରି ଲାଗୁଥିଲେ ବି ବିକାରହୀନ ଥିବାରୁ ମତେ ସେସବୁର କର୍ତା ନୁହେଁ ବୋଲି ଜାଣ । ୧୩ ।

ବ୍ୟାଖ୍ୟା ସୂଚନା—ଚାରିବର୍ଣ=ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର—୧୮.୪୧-୪୪ ଦେଖ । ମାତ୍ର ଏହି କଥାଟିରେ ମାନବ ଜଗତର ସବୁ ସ୍ୱାଭାବିକ ଗୁଣାନୁସାରେ କର୍ମବିଭାଗ ପ୍ରତି ସଙ୍କେତ କରାଯାଇଛି । ୩.୩୫ ଟୀକା ଦେଖ । ଅବ୍ୟୟ=ବିକାରହୀନ; 'ମୁଁ' ବୋଲି ଅଭିମାନ, ମୋର ବୋଲି ମମତା, ପାଇବି ବୋଲି ଅଭିଲାଷ, ପାଇବାକୁ ଉଦ୍ୟମ ପ୍ରଭୃତିରେ ବିକାର ବା ଅବସ୍ଥାରୁ ଅବସ୍ଥାନ୍ତରକୁ ଯିବା ନାହିଁ ଯାହାର । ମୁଁ କର୍ତା, ପୁଣି କର୍ତା ନୁହେଁ=ମୁଁ କରିଛି, କିନ୍ତୁ ମୋର 'କରିଛି' ବୋଲି ଅଭିମାନ ନାହିଁ । ୧୩ ।

**ନ ମାଂ କର୍ମାଣି ଲିମ୍ପନ୍ତି ନ ମେ କର୍ମଫଳେ ସ୍ପୃହା ।**
**ଇତି ମାଂ ଯୋଽଭିଜାନାତି କର୍ମଭିର୍ନ ସ ବଧ୍ୟତେ ।୧୪।**

**ଅନ୍ୱୟ**—କର୍ମାଣି ମାଂ ନ ଲିମ୍ପନ୍ତି । ନ [ଚ] ମେ କର୍ମଫଳେ ସ୍ପୃହା [ଅସ୍ତି], ଇତି ମାଂ ଯଃ ଅଭିଜାନାତି ସଃ କର୍ମଭିଃ ନ ବଧ୍ୟତେ । ୧୪ ।

**ଟୀକା**—[ ଯଥାର୍ଥତଃ ତାନ ଗୁଣକର୍ମବିଭାଗସର୍ଜନାଦୀନ ] କର୍ମାଣି [କର୍ତ୍ତୃତ୍ୱାଭିମାନାଭାବାତ୍ ] ମାଂ ନ ଲିମ୍ପନ୍ତି (ସ୍ପୃଶନ୍ତି, ଆସକ୍ତଂ କୁର୍ବନ୍ତି), ନ [ଚ] ମେ (ମମ) କର୍ମଫଳେ ସ୍ପୃହା (ଅଭିଳାଷଃ) [ଅସ୍ତି]; ଇତି (ଏବଂ) ମାଂ ଯଃ ଅଭି (ସର୍ବତୋଭାବେନ) ଜାନାତି, ସଃ [କେବଳଂ ମମ ଦୃଷ୍ଟାନ୍ତେନ] କର୍ମଭିଃ ନ ବଧ୍ୟତେ (କର୍ମଣି କର୍ତ୍ତୃତ୍ୱାଦି ଫଳସ୍ପୃହାଂ ଚ ତ୍ୟଜତୀତ୍ୟର୍ଥଃ) । ୧୪ ।

**ଅର୍ଥ**—[ ଯଥାର୍ଥରେ କର୍ମର ମୁଁ କର୍ତ୍ତା ବୋଲି ମୋର ଅଭିମାନ ନ ଥିବାରୁ ସେହି ଗୁଣକର୍ମ-ଭାଗ ସର୍ଜନା ପ୍ରଭୃତି ] କର୍ମସବୁ ମତେ ଛୁଅନ୍ତି ନାହିଁ । ମୋର କର୍ମଫଳରେ ସ୍ପୃହା ନାହିଁ । ଏହିପରି ମତେ ଯେ ଭଲକରି ଜାଣେ, ସେ [ମୋ'ର ଆଦର୍ଶ ଦୃଢ଼ କରି ଧରିଥିବାରୁ] କର୍ମରେ ବାନ୍ଧିହୁଏ ନାହିଁ । (ଅର୍ଥାତ୍, କରୁଚି, ଫଳ ପାଇବି ଇତ୍ୟାଦି ବୋଲି ଘାଣ୍ଟିହୁଏ ନାହିଁ ) । ୧୪ ।

ବ୍ୟାଖ୍ୟା ସୂଚନା—ଜାହିଁକି ନା, ଏହା ଲୋକ ଆଗରେ କର୍ମ କରୁଥିବା, ଅଥଚ ଅକର୍ମୀ ରହିଥିବାର ସର୍ବୋତ୍ତମ ଦୃଷ୍ଟାନ୍ତ । ପୁଣି ସବୁର କର୍ତ୍ତା ଈଶ୍ୱର, ମୁଁ ନିମିତ୍ତ ମାତ୍ର; ତେବେ ଆଉ କର୍ତ୍ତା ପଣିଆର ଅଭିମାନ କପରି ହୋଇପାରେ—ମହାତ୍ମା ଗାନ୍ଧୀ । ୧୪ ।

**ଏବଂ ଜ୍ଞାତ୍ୱା କୃତଂ କର୍ମ ପୂର୍ବୈରପି ମୁମୁକ୍ଷୁଭିଃ ।**
**କୁରୁ କର୍ମୈବ ତସ୍ମାତ୍ତ୍ୱଂ ପୂର୍ବୈଃ ପୂର୍ବତରଂ କୃତମ୍ ॥୧୫॥**

**ଅନ୍ୱୟ**—ଏବଂ ଜ୍ଞାତ୍ୱା ପୂର୍ବୈଃ ଅପି ମୁମୁକ୍ଷୁଭିଃ କର୍ମ କୃତମ୍ । ତସ୍ମାତ୍ ପୂର୍ବୈଃ ପୂର୍ବତରଂ କୃତଂ ଏବ ତ୍ୱଂ କୁରୁ । ୧୫ ।

**ଟୀକା**—[ଆତ୍ମଂ ସୂଚୟନ୍ ସ୍ପଷ୍ଟଂ ଉପଦିଶତି]—['ନ ମାଂ କର୍ମାଣି ଲିମ୍ପନ୍ତି, ନ ମେ କର୍ମଫଳେ ସ୍ପୃହା', ଇତି] ଏବଂ ଜ୍ଞାତ୍ୱା ପୂର୍ବୈଃ (ପ୍ରାଚୀନୈଃ) ଅପି ମୁମୁକ୍ଷୁଭିଃ (ମୁକ୍ତିମିଚ୍ଛୁଭିଃ) କର୍ମ କୃତଂ (ଆଚରିତମ୍) । ତସ୍ମାତ୍ ପୂର୍ବୈଃ [ତୈଃ ମୁମୁକ୍ଷୁଭିଃ ନ ତୁ ନୂତନୈଃ ଇତରୈଃ ବା, ଯଥା] ପୂର୍ବତରଂ [ ନ ତୁ ଅଧୁନାତନଂ, ସ୍ୱକଳ୍ପିତଂ ବା] କୃତଂ [ତଥା] ଏବଂ ତ୍ୱଂ କର୍ମ କୁରୁ । ୧୫ ।

**ଅର୍ଥ**—[ ପ୍ରସିଦ୍ଧ ପ୍ରାଚୀନ ଲୋକଙ୍କ କାର୍ଯ୍ୟ ଦେଖାଇ ସ୍ପଷ୍ଟ ଉପଦେଶ ଦେଉଛନ୍ତି ] ଈଶ୍ୱରଙ୍କୁ କର୍ମ ଛୁଏଁ ନାହିଁ, ଈଶ୍ୱରଙ୍କର କର୍ମଫଳରେ ସ୍ପୃହା ନାହିଁ, ତଥାପି ସେ ସର୍ବକର୍ତ୍ତା, ସର୍ବନିୟନ୍ତା] ଏହିପରି ଜାଣି ପୂର୍ବକାଳରେ ବି ମୁକ୍ତିକାମୀମାନେ ସର୍ବକର୍ମ କରି ଯାଇଚନ୍ତି । ତେଣୁ ସେହି ମୁକ୍ତିକାମୀମାନେ ଆଗେ ଯେପରି କରି ଯାଇଚନ୍ତି, ସେହିପରି ତୁ କର୍ମ କର୍, (ନୂଆ କରି ମୁଁ କିଛି ଲୋକଦେଖାଣିଆ କାମ କରିଥିବାକୁ, କିମ୍ବା ଧରି କୌଣସିମତେ ଯୁଦ୍ଧରେ ପ୍ରବର୍ତ୍ତାଇଦେବାକୁ ତତେ କହୁ

ନାଇ । ମୁକ୍ତିକାମୀମାନେ ଏହିପରି କରିଯାଇଚନ୍ତି, କିନ୍ତୁ ମୂଢ଼ ଇତର ଲୋକେ କରିଚନ୍ତି ଏହା ନୁହେଁ—ଏହି ଅଭିପ୍ରାୟ) । ୧୫ ।

**କିଂ କର୍ମ କିମକର୍ମେତି କବୟୋଽପ୍ୟତ୍ର ମୋହିତାଃ ।**
**ତତ୍ତେ କର୍ମ ପ୍ରବକ୍ଷ୍ୟାମି ଯଜ୍‌ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ।୧୬।**

**ଅନ୍ୱୟ**—କିଂ କର୍ମ କିଂ ଅକର୍ମ ଇତି ଅତ୍ର କବୟଃ ଅପି ମୋହିତାଃ । ତତ୍ ତେ କର୍ମ ପ୍ରବକ୍ଷ୍ୟାମି । ଯତ୍ ଜ୍ଞାତ୍ୱା ଅଶୁଭାତ୍ ମୋକ୍ଷ୍ୟସେ । ୧୬ ।

**ଟୀକା**—[ପୂର୍ବୈଃ କୃତଂ ଇତି ନ ସାଧୁ ଚେତ୍ର ତତ୍ର ଆହ ]—କିଂ କର୍ମ କିଂ ଅକର୍ମ ଇତି ଅର୍ଥ କବୟଃ (ବିବେକିନଃ) ଅପି ମୋହିତାଃ (ଭ୍ରାନ୍ତିଂ ଗତାଃ—ଅତଃ ଆପ୍ତାଃ ଅନୁବର୍ତ୍ତବ୍ୟାଃ ଇତି ଭାବଃ) । ତତ୍ (ତଥାପି) [ବୁଦ୍ଧିସ୍ଥୈବ ] ତେ (ତୁଭ୍ୟଂ) କର୍ମ (କର୍ମବିଷୟକଂ ରହସ୍ୟଂ) ପ୍ରବକ୍ଷ୍ୟାମି । ଯତ୍ [ କର୍ମରହସ୍ୟଂ ] ଜ୍ଞାତ୍ୱା [ତ୍ୱଂ] ଅଶୁଭାତ୍ (କର୍ମବନ୍ଧନରୂପାତ୍ ଆତ୍ମସଂସୃତେଃ) ମୋକ୍ଷ୍ୟସେ ( ମୁକ୍ତଃ ଭବିଷ୍ୟସି ) । ୧୬ ।

**ଅର୍ଥ**—[ ବଡ଼େ ବଡ଼େ କେହି କରିଥିଲେ ବୋଲି କ'ଣ ଖାଲି ନ ବୁଝି ମାନିଯିବା ? ଏଥିକୁ କହୁଚନ୍ତି ]—କର୍ମ କଣ ? ଅକର୍ମ କଣ ? ଏ ବିଷୟ ବୁଝି ଠିକ୍ କରିବାରେ ଖୁବ୍ ଜାଣିବା ଲୋକେ ବି ଭ୍ରମରେ ପଡ଼ିଚନ୍ତି । [ଏଣୁ ପୂର୍ବର ପ୍ରସିଦ୍ଧମାନଙ୍କୁ ମାନି ଚଳିବାକୁ ହୁଏ ବୋଲି ପ୍ରାଚୀନଙ୍କ କଥା କହିଲି ସତ] ମାତ୍ର ତୁ ତ ନିଜେ ବୁଝିବାକୁ ଲୋଡ଼ୁଚୁ, ସେଥିପାଇଁ ତତେ କର୍ମ କଥା ବୁଝାଇ କହିବି, ଯାହା ଜାଣିଲେ ତୁ କର୍ମବନ୍ଧନରୂପ ଅଶୁଭରୁ ଖସିଯିବୁ । ୧୬ ।

ବ୍ୟାଖ୍ୟା ସୂଚନା—ଜାଣିବା ଲୋକେ ବି ଭ୍ରମରେ ପଡ଼ିଚନ୍ତି, ଏହା କହିବାରେ ବ୍ରହ୍ମର୍ଷିଙ୍କ ପ୍ରସ୍ତାବିତ ସାଂଖ୍ୟ-ସନ୍ନ୍ୟାସକୁ ଲକ୍ଷ୍ୟ ଅଛି । ଜ୍ଞାନରେ ଏହିପରି କର୍ମ ଛାଡ଼ି ମୁକ୍ତ ଲୋଡ଼ିବା ହିଁ ଭ୍ରମ । ୧୬ ।

**କର୍ମଣୋ ହ୍ୟପି ବୋଦ୍ଧବ୍ୟଂ ବୋଦ୍ଧବ୍ୟଂ ଚ ବିକର୍ମଣଃ ।**
**ଅକର୍ମଣଶ୍ଚ ବୋଦ୍ଧବ୍ୟଂ ଗହନା କର୍ମଣୋ ଗତିଃ ।୧୭।**

**ଅନ୍ୱୟ**—ହି କର୍ମଣଃ ଅପି ବୋଦ୍ଧବ୍ୟଂ, ଚ ବିକର୍ମଣଃ ବୋଦ୍ଧବ୍ୟଂ, ଚ ଅକର୍ମଣଃ ବୋଦ୍ଧବ୍ୟଂ [ ଅସ୍ତି ] । କର୍ମଣଃ ଗତିଃ ଗହନା । ୧୭ ।

**ଟୀକା**—[ ଦେହାଦେଃ ଚେଷ୍ଟା କର୍ମ, ତୂଷ୍ଣୀମାସନଂ ଚ ଅକର୍ମ, ଇତି ସ୍ପଷ୍ଟଂ—କଥମତ୍ର କବୟଃ ମୋହିତାଃ ? କିମ୍ବା କର୍ମ ପ୍ରବକ୍ଷ୍ୟସି ?—ଇତ୍ୟତଃ ଆହ]

—ହ୍ଯ (ଯସ୍ମାତ୍) [ତସ୍ମୈ ଚ] କର୍ମଣଃ ଅପି ବୋଦ୍ଧବ୍ୟଂ (କର୍ତ୍ତବ୍ୟବୁଦ୍ଧ୍ୟୈବ କରଣୀୟତ୍ୱ-ରୂପଂ ଇତି ଗମ୍ୟଂ ) ଚ (ଯଥା) ବିକର୍ମଣଃ (ବିଗୁଣାତ୍ ସ୍ୱଧର୍ମାତ୍) ବୋଦ୍ଧବ୍ୟଂ [ଅସ୍ତି], ଚ (ତଥା) ଅକର୍ମଣଃ (କର୍ମସ୍ୱାତନ୍ତ୍ର୍ୟାତ୍) ବୋଦ୍ଧବ୍ୟଂ (ଆଚରତୋଽପି କର୍ମଣି ନୈଷ୍କର୍ମ୍ୟମିତି ଗମ୍ୟଂ ) [ଅସ୍ତି]. [ଯତଃ] କର୍ମଣଃ ଗତିଃ (ତତ୍ତ୍ୱଂ) ଗହନା (ଗୂଢ଼ା, ଦୁର୍ବିଜ୍ଞେୟା) । ୧୭ ।

**ଅର୍ଥ** – [ଦେହାଦିର ଚେଷ୍ଟା ତ କର୍ମ, ଚୁପ ହୋଇ ବସିବା ତ ଅକର୍ମ, ଏଥିରେ ଠିକ୍ ନ ଜାଣିପାରିବାର କଣ ଅଛି ?—ଏଇ ଶଙ୍କାରେ କହୁଚନ୍ତି]—କାହିଁକି ନା [ଏତେ ସହଜ ବୋଲି ଯାହା ମନେହୁଏ] ସେଇ କର୍ମରୁ ବି ବୁଝିବାର ଅଛି । ଯେପରି କି ବିଗୁଣ ସ୍ୱଧର୍ମରୁ ( ବା କର୍ମରୁ ) ମଧ୍ୟ ବୁଝିବାର ଅଛି । ପୁଣି ଅକର୍ମ ବା କର୍ମସ୍ୱାନତାରୁ ବି ବୁଝିବାର ଅଛି । କର୍ମର ଗତି (ତତ୍ତ୍ୱ) ବୁଝିବା ଯେ ଗହନ କଥା । ୧୭ ।

ବ୍ୟାଖ୍ୟା ସୂଚନା—କର୍ମ ବୋଇଲେ ମନରେ ସଉକ ଥିଲେ ମଧ୍ୟ ଦେହାଦି ଚେଷ୍ଟା ନୋ କର୍ମ ହୁଏ । ବିକର୍ମ ବୋଲି କହୁ ଗୁଡ଼ାଦେବା ପୂର୍ବରୁ ଦେଖିବାର ଅଛି, ସେ ବିକର୍ମ ଗୁଡ଼ିବାରେ ସ୍ୱାର୍ଥ ବା ନିଜର ଭଲ ମନ୍ଦ ବାଛିବାର ଅଛି ନା ନାଇ (୩.୩୫ ଟୀକା ) । ଅନାସକ୍ତ ଆଚରଣ ହିଁ କର୍ମସ୍ୱାନତା ବା ଅକର୍ମ (୩.୧୦ ) ।, ମୋଟ କଥା ଆସକ୍ତି ହିଁ କର୍ମ, ଦେହାଦି ଚେଷ୍ଟା କହୁ ନୁହେଁ । ପର ଶ୍ଳୋକ ଦେଖ । ୧୭ ।

**କର୍ମଣ୍ୟକର୍ମ ଯଃ ପଶ୍ୟେଦକର୍ମଣି ଚ କର୍ମ ଯଃ ।**
**ସ ବୁଦ୍ଧିମାନ୍ ମନୁଷ୍ୟେଷୁ ସ ଯୁକ୍ତଃ କୃତ୍ସ୍ନକର୍ମକୃତ୍ ।୧୮**

**ଅନ୍ୱୟ**—ଯଃ କର୍ମଣି ଅକର୍ମ ପଶ୍ୟେତ୍, ଯଃ ଚ ଅକର୍ମଣି କର୍ମ [ପଶ୍ୟେତ୍] ସଃ ମନୁଷ୍ୟେଷୁ ବୁଦ୍ଧିମାନ୍, ସଃ କୃତ୍ସ୍ନକର୍ମକୃତ୍ [ସନ୍] ଯୁକ୍ତଃ [ସ୍ୟାତ୍] । ୧୮ ।

**ଟୀକା**—[ତଦ୍‌ଗହନତ୍ୱଂ ଦର୍ଶୟନ୍ ଅହ]—ଯଃ [ସଦାଚରତୋଽପି] କର୍ମଣି ଅକର୍ମ (ଆସକ୍ତ୍ୟଭାବଂ, ନୈଷ୍କର୍ମ୍ୟଂ) ପଶ୍ୟେତ୍, [ଅପି] ଚ ଯଃ ଅକର୍ମଣି (କର୍ମସ୍ୱାନତାୟାଂ, ଅକୃତାୟାଂ ଦେହାଦିଚେଷ୍ଟାୟାଂ ସତ୍ୟାଂ ବା) [ଅହଂ ନିବୃତ୍ତଃ କର୍ମଣଃ, ଇତି ଅଭିମାନବତ୍ କର୍ମ, ରସସଂଜ୍ଞାନିବୃତ୍ତଃ ବା ସଙ୍ଗବତ୍] କର୍ମ [ ପଶ୍ୟେତ୍ ] ସଃ ମନୁଷ୍ୟେଷୁ ବୁଦ୍ଧିମାନ୍ (କର୍ମାକର୍ମବିବେକ-କୁଶଳଃ) ସଃ କୃତ୍ସ୍ନ କର୍ମକୃତ୍ ସର୍ବାଙ୍ଗକର୍ମାନୁଷ୍ଠାତା, ସର୍ବଶଃ କର୍ମାଚରଣପରଃ [ସନ୍] ଯୁକ୍ତଃ (ଯୋଗୀ, ମୋକ୍ଷପରଃ) [ସ୍ୟାତ୍] । ୧୮ ।

**ଅର୍ଥ**—[କିପରି ଗହନ କଥା ତା ଦେଖାଉଛନ୍ତି]—ଯେ କର୍ମ କରି ବି ସେଇ କର୍ମରେ ଅକର୍ମ (ଅର୍ଥାତ୍, ଆସକ୍ତି, ଅଭିମାନ ନ ଥିବାରୁ ନୈଷ୍କର୍ମ୍ୟ ବା କର୍ମ-

ସ୍ଥାନତା ଦେଖେ), ପୁଣି ଯେ କର୍ମ ଛାଡ଼ି ମଧ୍ୟ ସେ ଅକର୍ମରେ [‘ଆମ୍ଭେ ଛାଡ଼ିଚୁ’ ବୋଲି ଅହଂକାର ବା ବାହ୍ୟାରର ବିଷୟଭୋଗ ଛାଡ଼ିଲେ ମଧ୍ୟ ସେଇ ଅକର୍ମ ଭିତରେ କର୍ମର ତୃଷ୍ଣା ବା ସନ୍ଧିକ୍ ଥିବା ଯାଏ, ସେଇ ଅକର୍ମରେ ] ଯଥାର୍ଥ କର୍ମ ଅଛି ବୋଲି ବୁଝେ, ମନୁଷ୍ୟ ଭିତରେ ସେଇ ଏକା ବୁଦ୍ଧିମାନ୍ (ବା କର୍ମ ଅକର୍ମ ଜାଣିବାରେ ଠିକ୍ ବିବେକୀ) ସେ ସବାଙ୍ଗ କରି ସବୁ ମନ୍ତ୍ରେ ଠିକ୍ କର୍ମ କଲେ ଓ ଯଥାର୍ଥ ମୋକ୍ଷପଥ ଯୋଗୀ ସେଇ (୨. ୫୯; ୩.୬,୭ ଦେଖ) । ୧୮ ।

ବ୍ୟାଖ୍ୟା ସୂଚନା—ଯେ କର୍ମ କରୁଥାଏ, ଅଥଚ କର୍ତ୍ତାପଣର ଅଭିମାନ ରଖେ ନାଇ, ତାର କର୍ମ ଅକର୍ମ, ଆଉ ଯେ ବାହାରେ କର୍ମତ୍ୟାଗ କରି ମଧ୍ୟ ମନେ ମନେ ଘୋଡ଼ା ଚଢ଼ୁଥାଏ ତାର ଅକର୍ମ ହେଉଚି କର୍ମ । ଆତ୍ମାର ସ୍ୱାଭାବିକ ଗତି ଊର୍ଦ୍ଧ୍ୱକୁ । ଏଣୁ ଯେବେ ମନୁଷ୍ୟ ତଳକୁ ଖସେ, ତେବେ ସେଥିରେ ଅହଂକାର ଅବଶ୍ୟ ଅଛି ବୋଲି କୁହାଯାଇ ପାରେ । ଅଭିମାନ ନ ଥିବା ଲୋକର କର୍ମ ସହଜରେ ହିଁ ସାତ୍ତ୍ୱିକ ହୁଏ—ମହାତ୍ମା ଗାନ୍ଧୀ ।୧୮ ।

**ଯସ୍ୟ ସର୍ବେ ସମାରମ୍ଭାଃ କାମସଂକଳ୍ପ ବର୍ଜିତାଃ ।**
**ଜ୍ଞାନାଗ୍ନିଦଗ୍‌ଧକର୍ମାଣଂ ତମାହୁଃ ପଣ୍ଡିତଂ ବୁଧାଃ ।୧୯।**

**ଅନ୍ୱୟ**—ଯସ୍ୟ ସର୍ବେ ସମାରମ୍ଭାଃ କାମସଙ୍କଳ୍ପବର୍ଜିତାଃ [ ଭବନ୍ତି ], ଜ୍ଞାନାଗ୍ନିଦଗ୍‌ଧକର୍ମାଣଂ ତଂ ବୁଧାଃ ପଣ୍ଡିତଂ ଆହୁଃ । ୧୯ ।

**ଟୀକା**—[ ତଦେବ ସ୍ପଷ୍ଟଂ କରୋତି ପଞ୍ଚଭିଃ ]—ଯସ୍ୟ ସର୍ବେ ସମାରମ୍ଭାଃ (କର୍ମାଣି) କାମସଙ୍କଳ୍ପବର୍ଜିତାଃ (କାମଃ=ଫଳେଚ୍ଛା, ତସ୍ୟ କାରଣଂ ସଙ୍କଳ୍ପଃ, କଳ୍ପନା, କର୍ମଣି ସ୍ୱେଦନାଲକ୍ଷଣା ବୃତ୍ତିଃ, ଫଳେ ଶରୀରନ୍ୟାସମ୍ଭାଷଂ ବା—କାମାତ୍ କର୍ମଣି ଯା ପ୍ରେଦନା ତାଭ୍ୟାଂ ରହିତାଃ) ଜ୍ଞାନାଗ୍ନିଦଗ୍‌ଧକର୍ମାଣଂ (କର୍ମାକର୍ମଜ୍ଞାନେନ ଦଗ୍‌ଧାନି ଅକର୍ମୀକୃତାନି କର୍ମାଣି ଯସ୍ୟ ତଂ—ଜ୍ଞାନାତ୍ କର୍ମସଙ୍ଗତ୍ୟାଗିନଂ) ତଂ ବୁଧାଃ (ବିବେକିନଃ) ପଣ୍ଡିତଂ (ଜ୍ଞାନକର୍ମକୁଶଳଂ) ଆହୁଃ । ୧୯ ।

**ଅର୍ଥ**—[ତାଙ୍କୁ ହିଁ ପାଞ୍ଚ ଶ୍ଳୋକରେ ସ୍ପଷ୍ଟ କରୁଚନ୍ତି]—ଯାହାର କର୍ମଯୋଜନାରେ ସବୁ, କାମ କଥା ଦୂରେ ଥାଉ, ସଙ୍କଳ୍ପ ପର୍ଯ୍ୟନ୍ତ ନ ଥାଏ, ସେହି ଜ୍ଞାନାଗ୍ନିଦଗ୍‌ଧ-କର୍ମାଙ୍କୁ ହିଁ ଜାଣିବା ଲୋକେ ପଣ୍ଡିତ ବୋଲି କହନ୍ତି । ୧୯ ।

‘ବ୍ୟାଖ୍ୟା ସୂଚନା—ସଙ୍କଳ୍ପ=କଳ୍ପନା ମାତ୍ରରେ ଅଭିଳାଷ ଆଡ଼କୁ ଚଳାଇବା ସଙ୍କଳ୍ପରୁ କାମ ହୁଏ—(୨.୨,୪,୨୪ ଟୀକା ଦେଖ) ଜ୍ଞାନାଗ୍ନିଦଗ୍‌ଧକର୍ମା=କର୍ମ ଅପକର୍ମ ଯଥାର୍ଥ ଜ୍ଞାନରେ, ବା ଆତ୍ମାର ଯଥାର୍ଥରୂପଜ୍ଞାନରେ ପୋଡ଼ି ହୋଇ ଅକର୍ମରେ ପରିଣତ ହୋଇଥାଏ କର୍ମ ଯାହାର; ଜ୍ଞାନରେ ଯାହାର କର୍ମସବୁ ଅକର୍ମ ହୋଇ

ଯ ଇଥାଏ । ପଣ୍ଡିତ = ପଣ୍ଡା ବା ବେଦରେ ଉଜ୍ଜ୍ୱଳ ବୁଦ୍ଧି ଯାହାର; ଅର୍ଥାତ୍, ଯେ ଜ୍ଞାନରେ ଠିକ୍ ରହି କର୍ମ କରି ଜାଣେ ଓ କର୍ମ କରେ । ୧୯ ।

**ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ ।**
**କର୍ମଣ୍ୟଭିପ୍ରବୃତ୍ତୋଽପି ନୈବ କିଂଚିତ୍ କରୋତି ସଃ ।୨୦**

**ଅନ୍ୱୟ**—କର୍ମଫଳାସଙ୍ଗଂ ତ୍ୟକ୍ତ୍ୱା ନିତ୍ୟତୃପ୍ତଃ ନିରାଶ୍ରୟଃ [ ସନ୍ ] ସଃ କର୍ମଣି ଅଭି ପ୍ରବୃତ୍ତଃ ଅପି ନ ଏବ କିଂଚିତ୍ କରୋତି । ୨୦ ।

**ଟୀକା**—କର୍ମଫଳାସଙ୍ଗଂ (କର୍ମଫଳାସକ୍ତିଂ) ତ୍ୟକ୍ତ୍ୱା ନିତ୍ୟତୃପ୍ତଃ (ସଦୈବ ସନ୍ତୁଷ୍ଟଃ) ନିରାଶ୍ରୟଃ (ନିର୍ବ୍ୟପେକ୍ଷଃ, ଯୋଗକ୍ଷେମାର୍ଥମବଲମ୍ବନରହିତଃ) [ସନ୍] ସଃ [ପଣ୍ଡିତଃ] କର୍ମଣି ଅଭି—(ସର୍ବତୋ ଭାବେନ) ପ୍ରବୃତ୍ତଃ (ଚେଷ୍ଟମାନଃ) ଅପି ନ ଏବ କିଂଚିତ୍ କରୋତି (ତସ୍ୟ କର୍ମ ବସ୍ତୁତଃ ଅକର୍ମ ଏବ ଭବତି) । ୨୦ ।

**ଅର୍ଥ**—କର୍ମଫଳ ହଉକ୍ ଗୁଡ଼ି ସବୁବେଳେ ସନ୍ତୋଷ ରହି [ପାଇବା ସମ୍ଭାଳିବା ପ୍ରଭୃତି] ପାଇଁ କିଛି ବା କାହାରି ଅପେକ୍ଷା ନ ରଖି ସେଇ ପଣ୍ଡିତ କର୍ମରେ ସବୁମନ୍ତେ ଲାଗି ରହିଥିଲେହେଁ ପ୍ରକୃତରେ କିଛି ହିଁ କରେ ନାଇ । ଅର୍ଥାତ୍ ତାର କର୍ମହିଁ ଅକର୍ମ—୩.୧୭ ଦେଖ । [ତାକୁ କର୍ମର ବନ୍ଧନ ଭୋଗିବାକୁ ପଡ଼େ ନାହିଁ—ମହାତ୍ମା ଗାନ୍ଧୀ] । ୨୦ ।

**ନିରାଶୀର୍ଯତଚିତ୍ତାତ୍ମା ତ୍ୟକ୍ତସର୍ବପରିଗ୍ରହଃ ।**
**ଶାରୀରଂ କେବଳଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍ ।୨୧।**

**ଅନ୍ୱୟ**—ନିରାଶୀଃ ଯତଚିତ୍ତାତ୍ମା, ତ୍ୟକ୍ତସର୍ବପରିଗ୍ରହଃ [ ଜନଃ ] କେବଳଂ ଶାରୀରଂ କର୍ମ କୁର୍ବନ୍ କିଲ୍ବିଷଂ ନ ଆପ୍ନୋତି । ୨୧ ।

**ଟୀକା**—ନିରାଶୀଃ (ଆଶୀଃ, ତୃଷ୍ଣା, ସା ନ ସ୍ତି ଯସ୍ୟ ସଃ, ତୃଷ୍ଣାହୀନଃ) ଯତଚିତ୍ତାତ୍ମା (ବଶୀକୃତମନୋଦେହଃ) ତ୍ୟକ୍ତ ସର୍ବ ପରିଗ୍ରହଃ (ତ୍ୟକ୍ତାଃ ସର୍ବେ ପରିଗ୍ରହାଃ, କାମ୍ୟସାଧନପରିଗ୍ରହାଃ ଯେନ ସଃ ) କେବଳଂ (ମମତ୍ୱାଦସଙ୍ଗରହିତଂ ) ଶାରୀରଂ (ଦେହାଦ୍ୟନାଚରିତଂ) କର୍ମ କୁର୍ବନ୍ (ଆଚରନ୍) (କିଲ୍ବିଷଂ) (କର୍ମଜନିତଦୋଷଂ) ନ ଆପ୍ନୋତି । ୨୧ ।

**ଅର୍ଥ**—କାମନା ନ ଥିବା ଲୋକ, ମନ ଓ ଦେହକୁ ଆପଣା ବଶରେ ରଖି, ଭୋଗାଦର ସବୁ ଯୋଗାଡ଼ ଛାଡ଼ି [ମୁଁ କିଛି କରୁ ନାଇ, ବା ଆତ୍ମାର କର୍ମରେ କିଛି ନାଇ, ବୋଲି ବୁଝି] ଖାଲି ଶରୀରରେ (ବା କର୍ମ-ଇନ୍ଦ୍ରିୟମାନ ଆତ୍ମାର ବୁଦ୍ଧେ,

ଶରୀରର ଅଙ୍ଗ ବୋଲି ବୁଝି, ସେଇ କର୍ମ-ଇନ୍ଦ୍ରିୟରେ) କର୍ମ କରୁଥିଲେ, ତାଙ୍କୁ କର୍ମର ଦୋଷ ଲାଗେ ନାଇ । ୨୧ ।

ବ୍ୟାଖ୍ୟା ସୂଚନା—ଯାହାର 'ମୁଁ' ଶୂନ୍ୟତାକୁ ପହଞ୍ଚି ଯାଇଛି, ବା ଯାହାର ସବୁ କର୍ମରେ ଈଶ୍ୱରାର୍ପଣ ବୁଦ୍ଧି ଠିକ୍ ଅଛି, ତାର ଖାଲି ଶରୀରହିଁ କର୍ମ କରୁଛି । ଶୋଇଥିବା ଲୋକର ଖାଲି ଦେହର ହିଁ କର୍ମ କରୁଛି—ଏହ କଥା ଯାଇପରେ । ଯେଉଁ କାନ୍ଦୀ-ବାନ୍ଧ ହୋଇ ଅନିଚ୍ଛାରେ ଚାଲି ଚାଲି ଯାଏ, ତାର ଶରୀର ହିଁ କର୍ମ କରେ—ମହାତ୍ମା ଗାନ୍ଧୀ । ୨୧ ।

**ଯଦୃଚ୍ଛାଲାଭସନ୍ତୁଷ୍ଟୋ ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ**
**ସମଃ ସିଦ୍ଧାବସିଦ୍ଧୌ ଚ କୃତ୍ୱାପି ନ ନିବଧ୍ୟତେ । ୨୨ ।**

**ଅନ୍ୱୟ**—ଯଦୃଚ୍ଛାଲାଭସନ୍ତୁଷ୍ଟଃ ଦ୍ୱନ୍ଦ୍ୱାତୀତଃ ବିମତ୍ସରଃ ସିଦ୍ଧୌ ଅସିଦ୍ଧୌ ଚ ସମଃ [ ପଣ୍ଡିତଃ ] [ କର୍ମ ] କୃତ୍ୱା ଅପି ନ ନିବଧ୍ୟତେ । ୨୨ ।

**ଟୀକା**—ଯଦୃଚ୍ଛାଲାଭସନ୍ତୁଷ୍ଟଃ (ଇଚ୍ଛା, ପ୍ରାପ୍ତିଃ—ଯତ ପ୍ରାପ୍ତଂ ତସ୍ୟ ଏବ ଲାଭେନ ସନ୍ତୁଷ୍ଟଃ—ପରଗ୍ରହଂ ବିନା ଇତି ଭାବଃ) ଦ୍ୱନ୍ଦ୍ୱାତୀତଃ (ସୁଖଦୁଃଖାଦିଦ୍ୱନ୍ଦ୍ୱାତ୍ ମୁକ୍ତଃ) ବିମତ୍ସରଃ (ନିର୍ବୈରଃ, ଅସୂୟାହୀନଃ) ସିଦ୍ଧୌ (ସାଫଲ୍ୟେ) ଅସିଦ୍ଧୌ (ବୈଫଲ୍ୟେ) ଚ ସମଃ (ହର୍ଷବିଷାଦରହିତଃ) [ପଣ୍ଡିତଃ କର୍ମ] କୃତ୍ୱା ଅପି ନ ନିବଧ୍ୟତେ [ଲିପ୍ୟତେ—କର୍ମବନ୍ଧନଂ ନ ପ୍ରାପ୍ନୋତୀତି ଭାବଃ] । ୨୨ ।

**ଅର୍ଥ**—ଭାଗ୍ୟକୁ ଯାହା ମିଳିଲା ସେଥିରେ ସନ୍ତୁଷ୍ଟ, ସୁଖ ଦୁଃଖାଦି ଦ୍ୱନ୍ଦ୍ୱରୁ ମୁକ୍ତ (୨.୪୫ ଟୀକା), ଈର୍ଷାଦ୍ୱେଷହୀନ (ଅର୍ଥାତ୍, ଯେ ପରଶ୍ରୀକାତର ନୁହେଁ କି ଅକୃତଜ୍ଞ ନୁହେଁ) ଓ ଫଳ ହେଲେ ନ ହେଲେ ଏକାପରି ଥିବା ଲୋକ, ସବୁ କର୍ମ କରି ବି ସେଥିରେ ବାନ୍ଧି (ବା ଯାଣ୍ଡି) ହୁଏ ନାଇ । ୨୨ ।

**ଗତସଙ୍ଗସ୍ୟ ମୁକ୍ତସ୍ୟ ଜ୍ଞାନାବସ୍ଥିତଚେତସଃ ।**
**ଯଜ୍ଞାୟାଚରତଃ କର୍ମ ସମଗ୍ରଂ ପ୍ରବିଲୀୟତେ । ୨୩ ।**

**ଅନ୍ୱୟ**—ଗତସଙ୍ଗସ୍ୟ, ମୁକ୍ତସ୍ୟ, ଜ୍ଞାନାବସ୍ଥିତଚେତସଃ ଯଜ୍ଞାୟ ଆଚରତଃ [ଜନସ୍ୟ] ସମଗ୍ରଂ କର୍ମ ପ୍ରବିଲୀୟତେ । ୨୩ ।

**ଟୀକା**—ଗତସଙ୍ଗସ୍ୟ (ଆସକ୍ତିରହିତସ୍ୟ) [ଅତଏବ ରାଗଦ୍ୱେଷାଦି କର୍ମବନ୍ଧନାତ୍] ମୁକ୍ତସ୍ୟ ଜ୍ଞାନାବସ୍ଥିତଚେତସଃ (ଈଶ୍ୱରସ୍ୟୈବେଦଂ ସର୍ବଂ, ନାହମ୍‌ ମମେଦଂ ଇତି ଜ୍ଞାନେନ ନିଶ୍ଚିତମନସଃ) ଯଜ୍ଞାୟ (ଧର୍ମଂ ପାଳୟାମି ଇତି ବୁଦ୍ଧ୍ୟା—ଈଶ୍ୱରାର୍ପଣାୟ

ଯଜ୍ଞାର୍ଥଂ [କର୍ମ] ଆଚରତଃ [ଅନୁତିଷ୍ଠତଃ] [ଜନସ୍ୟ] ସମଗ୍ରଂ (କର୍ମଣଃ ଅଗ୍ରଂ ଫଳଂ, ତେନ ସହ) କର୍ମ ପ୍ରବିଲୀୟତେ (ଲୀନଂ ଭବତି, ଅକର୍ମତାଂ ଯାତି) । ୨୩ ।

**ଅର୍ଥ**—ଆସକ୍ତି ନ ଥିବାରୁ ଯେ କର୍ମବନ୍ଧନରୁ ମୁକ୍ତ, [ଈଶ୍ୱରଙ୍କର କର୍ମ ମୁଁ ଖାଲି କରୁଛି] ଏହି ଜ୍ଞାନରେ ଯେ ମନକୁ ଠିକ୍ ରଖିଛି ଓ 'ଯଜ୍ଞାର୍ଥ' କର୍ମ କରି-ଯାଉଛି, ତାର କର୍ମ ପୂରାପୂରି ଅକର୍ମ ହୋଇଯାଏ । ୨୩ ।

ବ୍ୟାଖ୍ୟା ସୂଚନା—ଯଜ୍ଞାର୍ଥ = ମୋ'ର ଧର୍ମ ମୋତେ କରିବାକୁ ହେବ ବୋଲି ସବୁ କର୍ମ ଉତ୍ସର୍ଗ କରି ବଳି ଦେବା ନିମନ୍ତେ କରିବା—୩.୯ ଟୀକା ଦେଖ । ସମଗ୍ର = ପୂରାପୂରି; କର୍ମର ଅଗ୍ର ବା ଶେଷ ଫଳ ସହିତ; ସମ୍ପୂର୍ଣ୍ଣରୂପେ । ୨୩ ।

**ବ୍ରହ୍ମାର୍ପଣଂ ବ୍ରହ୍ମହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍ ।**
**ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମସମାଧିନା ।୨୪।**

**ଅନ୍ୱୟ**—ଅର୍ପଣଂ ବ୍ରହ୍ମ, ହବିଃ ବ୍ରହ୍ମ, ବ୍ରହ୍ମ ଅଗ୍ନୌ ବ୍ରହ୍ମଣା ହୁତଂ, ତେନ ବ୍ରହ୍ମକର୍ମସମାଧିନା ବ୍ରହ୍ମ ଏବ ଗନ୍ତବ୍ୟମ୍ । ୨୪ ।

**ଟୀକା**—[ବୈଦିକ ଯଜ୍ଞ କର୍ମ ପରିଭାଷୟା ଉକ୍ତଯଜ୍ଞସ୍ୟ ସ୍ୱରୂପଂ ବର୍ଣ୍ଣୟନ୍ତି] —[ଅସ୍ମିନ ଯଜ୍ଞେ] ଅର୍ପଣଂ (ହୋମସ୍ୟ କରଣଂ ସ୍ରୁବାଦି, ଅର୍ପଣ କ୍ରିୟା ବା) ବ୍ରହ୍ମ, ହବିଃ (ଅର୍ପ୍ୟମାଣଂ ଘୃତାଦିକଂ) ବ୍ରହ୍ମ, ବ୍ରହ୍ମାଗ୍ନୌ (ବ୍ରହ୍ମ ଏବ ଅଗ୍ନିଃ ତସ୍ମିନ୍) ବ୍ରହ୍ମଣା [ହୋତ୍ରା] ହୁତଂ [ଏବଂ ସର୍ବ ଏବ ନିତ୍ୟକର୍ମମୟୋ ବିଶ୍ୱପ୍ରକାଶଃ ବ୍ରହ୍ମଣଃ ପରମେଶ୍ୱରସ୍ୟ ଇତି ଧାରଣା ଯସ୍ୟ] ତେନ ବ୍ରହ୍ମକର୍ମସମାଧିନା (ଏବଂ ବ୍ରହ୍ମଣା ସହ ବିଶ୍ୱମୟକର୍ମଣଃ ନିଜସ୍ୟ ଚ ଯଥାର୍ଥୈକତ୍ୱାଧାରଣୟା) ବ୍ରହ୍ମ ଏବ ଗନ୍ତବ୍ୟମ୍ (ପ୍ରାପ୍ତବ୍ୟମ୍) ।୨୪।

**ଅର୍ଥ** – [ବୈଦିକ ଯଜ୍ଞ କର୍ମ ପରିଭାଷାରେ ସେହି ଯଜ୍ଞର ତତ୍ତ୍ୱ ଭଲକରି ବୁଝି ଉଚନ୍ତି]—[ ଏହି ଯଜ୍ଞରେ ] ଅର୍ପଣ ବ୍ରହ୍ମ, ହବି ବ୍ରହ୍ମ, ବହ୍ମଅଗ୍ନିରେ ବ୍ରହ୍ମହିଁ ହୋମ କରନ୍ତି । 'ଅର୍ଥାତ୍ କର୍ମ, କର୍ମର ସାଧନ, ସାମଗ୍ରୀ, ଉଦ୍ଦେଶ୍ୟ ଓ କର୍ତ୍ତା—ସବୁ ବ୍ରହ୍ମମୟ) । [ଏହିପରି ନିତ୍ୟକର୍ତ୍ତବ୍ୟମୟ ଜଗତ୍ ବ୍ରହ୍ମ ବା ଈଶ୍ୱରଙ୍କର ପ୍ରକାଶ ବୋଲି] ବ୍ରହ୍ମ ଆଉ କର୍ମର ମେଳ ଧାରଣାରେ ଠିକ୍ ହେଲେ ଲୋକ ବ୍ରହ୍ମ ପାଏ । ୨୪ ।

ବ୍ୟାଖ୍ୟା ସୂଚନା—ଅର୍ପଣ = ଆହୁତି ଢ଼ାଳିବାର ସ୍ରୁବ ପ୍ରଭୃତି ପାତ୍ର; ବା ସେହି ଢ଼ାଳିବା କାର୍ଯ୍ୟ । ହବିଃ = ଘିଅ ପ୍ରଭୃତି ଯାହା ଦେବତାଙ୍କ ପାଇଁ ହୋମରେ ଢ଼ାଳନ୍ତି । ୩ ୯-୧୬ ଦେଖ । ଏହିଠାରେ ଯଜ୍ଞାର୍ଥ କର୍ମର ପ୍ରକୃତ ମର୍ମ ଭଗବାନ୍ ସ୍ପଷ୍ଟ କରିଚନ୍ତି । ୨୪ ।

**ଦୈବମେବାପରେ ଯଜ୍ଞଂ ଯୋଗିନଃ ପର୍ଯ୍ୟୁପାସତେ ।**
**ବ୍ରହ୍ମାଗ୍ନାବପରେ ଯଜ୍ଞଂ ଯଜ୍ଞେନୈବୋପଜୁହ୍ୱତି । ୨୫ ।**

**ଅନ୍ୱୟ**—ଅପରେ ଯୋଗିନଃ ଦୈବଂ ଏବ ଯଜ୍ଞଂ ପର୍ଯୁପାସତେ । ଅପରେ ବ୍ରହ୍ମାଗ୍ନୌ ଯଜ୍ଞେନ ଏବ ଯଜ୍ଞଂ ଉପଜୁହ୍ୱତି । ୨୫ ।

**ଟୀକା**—[ ଏତଂ ଶ୍ରେଷ୍ଠଂ ବ୍ୟାପକଂ କର୍ମଯଜ୍ଞଂ ଉକ୍ତ୍ୱା, ତତଃ ଲୋକେ ପ୍ରଚଳିତାନ୍ ବହୁଧାନ୍ ଇଜ୍ୟାଧ୍ୟୟନଦାନତପଃପ୍ରାଣାୟାମାଦ୍ୟାତ୍ମକାନ୍ ସାଧନାନ୍ ଯଜ୍ଞାର୍ଥାନ୍ ଇତି ତାନ୍ ସଂକ୍ଷେପଂ ପୃଥକ୍ କଥୟତି ଷଡ଼୍‌ଭିଃ] । ଅପରେ (କତିଚନ ଇତ୍ୟର୍ଥଃ) (କର୍ମସାଧକାଃ) ଦୈବଂ (ଦେବାସ୍ତ ଇଦଂ ଇତି] [ଇଜ୍ୟାନୈବେଦ୍ୟାଦ୍ଦନ ] ଏବ ଯଜ୍ଞଂ (କର୍ମୋତ୍ସର୍ଗଂ) ପର୍ଯୁପାସତେ (ଦେବତୃପ୍ତ୍ୟର୍ଥଂ କୁର୍ବନ୍ତି) । [ଏତେ ଦେବଯଜ୍ଞା ମୁଖ୍ୟତଃ ଦ୍ରବ୍ୟଯଜ୍ଞାଃ—ଦାନନୈବେଦ୍ୟାଦ୍ୟଃ ଦ୍ରବ୍ୟଯଜ୍ଞାଃ] । ଅପରେ (ଅନ୍ୟେ) ବ୍ରହ୍ମାଗ୍ନୌ (ବେଦରୂପହୋମାଗ୍ନୌ) [କୃତେନ ସ୍ୱାଧ୍ୟାୟାଧ୍ୟାପନାଦ୍ଦରୂପେଣ] ଯଜ୍ଞେନ (ସମର୍ପଣେନ) ଯଜ୍ଞଂ ଉପଜୁହ୍ୱତି (କର୍ମୋତ୍ସର୍ଗମାନତଚରନ୍ତୀତି ଭାବଃ) [ବ୍ରହ୍ମଯଜ୍ଞା ଏତେ ସ୍ୱାଧ୍ୟାୟ-ଜ୍ଞାନଯଜ୍ଞାଃ ] । ୨୫ ।

**ଅର୍ଥ**—[ଏହି ଶ୍ରେଷ୍ଠ ବ୍ୟାପକ କର୍ମଯଜ୍ଞ କଥା କହିସାରି, ଲୋକରେ ଚଳୁଥିବା ଯାଗ, ପାଠ, ଦାନ, ତପ, ପ୍ରାଣାୟାମ ପ୍ରଭୃତି କର୍ମସାଧନମାନ ଯଜ୍ଞାର୍ଥ ବୋଲି ଛଅ ଶ୍ଲୋକରେ ଠିକେ ଠିକେ ଦେଖାଇ କହୁଚନ୍ତି]—ଆଉ କେତେ ମୁକ୍ତିକାମୀ କର୍ମୀ (ଯୋଗୀ) ଖାଲି ଦେବକାର୍ଯ୍ୟ ବୋଲି [ଯାଗ, ଦାନ, ଦୈବ ପ୍ରଭୃତି] ଯଜ୍ଞାର୍ଥ କରନ୍ତି । [ଏହି ଦେବଯଜ୍ଞ ଲୋକେ ଦ୍ରବ୍ୟଯଜ୍ଞ କରନ୍ତି] । ଆଉ କେହି କେହି ବେଦକୁ ଅଗ୍ନି କରି ସେଥିରେ ପଢ଼ିବା, ପଢ଼ାଇବା ପ୍ରଭୃତି କର୍ମକୁ ପକାଇ ଯଜ୍ଞାର୍ଥ ଉତ୍ସର୍ଗ କରନ୍ତି । ୨୫ ।

ବ୍ୟାଖ୍ୟା ସୂଚନା—ଏହି 'ବ୍ରହ୍ମଯଜ୍ଞ' ବା ବେଦଚର୍ଚ୍ଚା କରିବା ଲୋକେ ସ୍ୱାଧ୍ୟାୟରେ ଜ୍ଞାନଯଜ୍ଞ କରନ୍ତି । ୧୮.୭୦ ଟୀକା ଦେଖ । ସ୍ୱାଧ୍ୟାୟ = ବେଦାଭ୍ୟାସ; ମନେ ମନେ ବେଦ ଗୁଣିବା । ୨୫ ।

**ଶ୍ରୋତ୍ରାଦୀନୀନ୍ଦ୍ରିୟାଣ୍ୟନ୍ୟେ ସଂଯମାଗ୍ନିଷୁ ଜୁହ୍ୱତି ।**
**ଶବ୍ଦାଦୀନ୍ ବିଷୟାନନ୍ୟ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି । ୨୬ ।**

**ଅନ୍ୱୟ**—ଅନ୍ୟେ ଶ୍ରୋତ୍ରାଦୀନି ଇନ୍ଦ୍ରିୟାଣି ସଂଯମାଗ୍ନିଷୁ ଜୁହ୍ୱତି । ଅନ୍ୟେ ଶବ୍ଦାଦୀନ୍ ବିଷୟାନ୍ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି । ୨୬ ।

**ଟୀକା**—ଅନ୍ୟେ ଶ୍ରୋତ୍ରାଦୀନି (କର୍ଣ୍ଣାଦୀନି) ଇନ୍ଦ୍ରିୟାଣି ସଂଯମାଗ୍ନିଷୁ (ନିଗ୍ରହ-ରୂପ-ହୋମାଗ୍ନିଷୁ) ଜୁହ୍ୱତି । [ଇନ୍ଦ୍ରିୟନିରୋଧେନ ଦତମନା ବ୍ରତନିୟମପରା ଏତେ ତପୋଯଜ୍ଞାଃ) । ଅନ୍ୟେ ଶବ୍ଦାଦୀନ୍ (ରୂପରସଗନ୍ଧଶବ୍ଦସ୍ପର୍ଶାନ୍) ବିଷୟାନ୍ ଇନ୍ଦ୍ରିୟାଗ୍ନିଷୁ

(ଇନ୍ଦ୍ରିୟାଣାଂ ଏତେ ନ ତୁ ଆତ୍ମନ ଇତି ତେଷୁ ଇନ୍ଦ୍ରିୟେଷୁ ଏବ) ଜୁହ୍ୱତି (କ୍ଷିପନ୍ତି) [ଏତେ କର୍ମଯୋଗିନଃ ଯୋଗଯଜ୍ଞାଃ] । ୨୬ ।

**ଅର୍ଥ**—ପୁଣି କେହି କେହି କାନ ପ୍ରଭୃତି ଇନ୍ଦ୍ରିୟଙ୍କୁ ସଂଯମ ଅଗ୍ନିରେ ଢ଼ାଳି ଦିଅନ୍ତି, (ଅର୍ଥାତ୍ ଗୃହ୍ୟାସୂଣାଦି ବ୍ରତନିୟମାଦିରେ ଇନ୍ଦ୍ରିୟଭୋଗ ରୋକି ତପସ୍ୟା କରନ୍ତି । [ଏମାନଙ୍କର ତପଃଯଜ୍ଞ] । ଆଉ କେତେ ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ— ଏହି ବିଷୟମାନଙ୍କୁ [ଇନ୍ଦ୍ରିୟଙ୍କ କାର୍ଯ୍ୟ ଏ ସବୁ, ମୋର ବା ଆତ୍ମାର ନୁହେଁ ବୋଲି] ଇନ୍ଦ୍ରିୟ ଅଗ୍ନିରେ ଢ଼ାଳି ଦିଅନ୍ତି । [ଏହି କର୍ମଯୋଗୀଙ୍କର ଯୋଗଯଜ୍ଞ] । ୨୬ ।

**ସର୍ବାଣୀନ୍ଦ୍ରିୟକର୍ମାଣି ପ୍ରାଣକର୍ମାଣି ଚାପରେ ।**
**ଆତ୍ମସଂଯମଯୋଗାଗ୍ନୌ ଜୁହ୍ୱତି ଜ୍ଞାନଦୀପିତେ ।୨୭।**

**ଅନ୍ୱୟ**—ଅପରେ ସର୍ବାଣି ଇନ୍ଦ୍ରିୟକର୍ମାଣି ପ୍ରାଣକର୍ମାଣି ଚ ଜ୍ଞାନଦୀପିତେ ଆତ୍ମସଂଯମଯୋଗାଗ୍ନୌ ଜୁହ୍ୱତି । ୨୭ ।

**ଟୀକା**—ଅପରେ ସର୍ବାଣି ଇନ୍ଦ୍ରିୟକର୍ମାଣି, [ସଂକୋଚନପ୍ରସାରଣାଦି] ପ୍ରାଣ-[ବାୟୋଃ] କର୍ମାଣି ଚ ଜ୍ଞାନଦୀପିତେ (ଆତ୍ମଜ୍ଞାନ-ସମିଦ୍ଧେ) ଆତ୍ମସଂଯମଯୋଗାଗ୍ନୌ (ଆତ୍ମନଂ ସଂଯତଂ କର୍ମଫଳୋପରତଂ କୃତ୍ୱା, ତସ୍ମିନ୍ ଆତ୍ମନି ସମାଧିଃ ଯୋଗଃ, ସ ଏବ ଅଗ୍ନିଃ, (ତସ୍ମିନ୍) ଜୁହ୍ୱତି [ଏତେ କର୍ମତତ୍ତ୍ୱଜ୍ଞାଃ ଯୋଗିନଃ ଜ୍ଞାନଯଜ୍ଞାଃ, ଜ୍ଞାନତଃ ଯୋଗଯଜ୍ଞାଃ ବା ] । ୨୭ ।

**ଅର୍ଥ**—ଆଉ କେତେକ ସବୁ ଦେଖିବା ଶୁଣିବା ଆଦି ଇନ୍ଦ୍ରିୟକର୍ମ ଓ ହଲିବା ମୋଡ଼ି ହେବା ଆଦି ପ୍ରାଣବାୟୁର କର୍ମ, ଜ୍ଞାନରେ ଜଳୁଥିବା ଆତ୍ମସଂଯମର ଯୋଗରୂପ ଅଗ୍ନିରେ ଢ଼ାଳି ଦିଅନ୍ତି (ଅର୍ଥାତ୍, ପରମାତ୍ମାରେ ତନ୍ମୟ ହୋଇ କର୍ମ କରନ୍ତି) । ୨୭ ।

ବ୍ୟାଖ୍ୟା ସୂଚନା—ଏହି କର୍ମତତ୍ତ୍ୱ ଜାଣିଥିବା ଯୋଗୀଙ୍କର ଜ୍ଞାନଯଜ୍ଞ ବା ଜ୍ଞାନକୃତ ଯୋଗଯଜ୍ଞ । ସବୁ କର୍ମରେ ଆତ୍ମାକୁ ଅନାସକ୍ତ ବୁଝିବା ଆତ୍ମସଂଯମ । ଏଇ ବୁଦ୍ଧିରେ ମନକୁ ଠିକ୍ ରଖି କର୍ମ କରିବା, ଆତ୍ମସଂଯମ-ଯୋଗ । ଆତ୍ମାର ଯଥାର୍ଥ ଜ୍ଞାନରେ ଏହି ଯୋଗରୂପ ଅଗ୍ନି ଜଳୁଥାଏ ବୋଲି କୁହାଯାଇଛି । ପୂର୍ବ ଶ୍ଳୋକରେ, ଆତ୍ମଜ୍ଞାନକୁ ଉଠିବା ପାଇଁ କର୍ମଯୋଗସାଧକର କଥା କୁହାଯାଇଛି । ଏଠାରେ, ପୂର୍ଣ୍ଣ ପରମାତ୍ମା ଜ୍ଞାନର ସହିତ କର୍ମ କରିବା କଥା କୁହାଯାଇଛି । ଏ ଜ୍ଞାନ ଆଗରୁ ସାଂଖ୍ୟବୁଦ୍ଧିରେ ନ ହୋଇଥିଲେ, କର୍ମଯୋଗରେ ସିଦ୍ଧି ହେଲେ, ମନକୁ ଏ ଜ୍ଞାନ ହୁଏ (୪.୩୮ ଦେଖ) । ଏହାହିଁ ଜ୍ଞାନରେ କର୍ମ ଢ଼ାଳିଦେବା ବା ଜ୍ଞାନଯଜ୍ଞ । ଏଠାରେ ଜ୍ଞାନରେ କର୍ମ କରିବାର କଥା ଅଛି; କର୍ମ ଛାଡ଼ିବାର କଥା ନାହିଁ । କର୍ମ ଛାଡ଼ିଦେବାରେ 'ଯଜ୍ଞ' ବି ନାହିଁ ।୨୭।

ଦ୍ରବ୍ୟଯଜ୍ଞାସ୍ତପୋଯଜ୍ଞା ଯୋଗଯଜ୍ଞାସ୍ତଥାପରେ ।
ସ୍ୱାଧ୍ୟାୟଜ୍ଞାନଯଜ୍ଞାଶ୍ଚ ଯତୟଃ ସଂଶିତବ୍ରତାଃ । ୨୮ ।

**ଅନ୍ୱୟ**— ଦ୍ରବ୍ୟଯଜ୍ଞାଃ, ତପୋଯଜ୍ଞାଃ, ଯୋଗଯଜ୍ଞାଃ ତଥା ଅପରେ ଚ ସ୍ୱାଧ୍ୟାୟଜ୍ଞାନଯଜ୍ଞାଃ, [ଏତେ ସର୍ବେ] ସଂଶିତବ୍ରତାଃ ଯତୟଃ [ଭବନ୍ତି] । ୨୮ ।

**ଟୀକା**—[ କେଚନ୍ତୁ ] ଦ୍ରବ୍ୟଯଜ୍ଞାଃ [କେଚନ୍ତୁ] ତପୋଯଜ୍ଞାଃ; [କେଚନ୍ତୁ] ଯୋଗଯଜ୍ଞାଃ, ତଥା ଅପରେ ଚ ସ୍ୱାଧ୍ୟାୟ-ଜ୍ଞାନଯଜ୍ଞାଃ (ସ୍ୱାଧ୍ୟାୟେନ ଜ୍ଞାନଯଜ୍ଞାଃ, କିଂବା ସ୍ୱାଧ୍ୟାୟଯଜ୍ଞାଃ ଜ୍ଞାନଯଜ୍ଞାଃ ଚ ) । [ ଏତେ ସର୍ବେ ] ସଂଶିତବ୍ରତାଃ (ସାଧୁ ବ୍ରତଧାରଣଃ; ଯଦ୍‌ବା ସମ୍ , ସମ୍ୟକ୍ ଶିତଂ ଶାଣିତଂ, ତୀକ୍ଷ୍ଣୀକୃତଂ ବ୍ରତଂ ଯେଷାଂ ତେ—ଅବଗ୍ରାଃ ଇତି ନ ହେୟାଃ ଇତ୍ୟର୍ଥଃ)—[ଯତଃ ତେ ସର୍ବେ] ଯତୟଃ (ମୋକ୍ଷାୟ ଯତମାନାଃ) [ଭବନ୍ତି] । ୨୮ ।

**ଅର୍ଥ**—ଏହିପରି କାହାର ଦ୍ରବ୍ୟଯଜ୍ଞ, କାହାର ତପଃଯଜ୍ଞ, କାହାର ଯୋଗ ଯଜ୍ଞ, ପୁଣି ଅନ୍ୟ କେତେକଙ୍କର ସ୍ୱାଧ୍ୟାୟ-ଜ୍ଞାନଯଜ୍ଞ (କିଂବା, ସ୍ୱାଧ୍ୟାୟ ଯଜ୍ଞ ଓ ଜ୍ଞାନଯଜ୍ଞ) । ଏ ସମସ୍ତଙ୍କର ବ୍ରତ (ନିଷ୍ଠା) ପ୍ରଶଂସନୀୟ; କାହିଁକି ନା, ଏମାନେ ସମସ୍ତେ ଯତି (ଅର୍ଥାତ୍ ସାଧକ, ବା ମୋକ୍ଷଲାଗି ଯତ୍ନ କରନ୍ତି) । ୨୮ ।

ବ୍ୟାଖ୍ୟା ସୂଚନା:—ସ୍ୱାଧ୍ୟାୟ = ବେଦ ଗୁଣିବା; ମନନ ଦ୍ୱାରା ଜ୍ଞାନର ଆଲୋଚନା କରିବା; ୪. ୨୫ ଟୀକା ଦେଖ । ୨୮ ।

ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେଽପାନଂ ତଥାପରେ ।
ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣାୟାମପରାୟଣାଃ । ୨୯ ।

**ଅନ୍ୱୟ**—ଅପରେ ପ୍ରାଣାୟାମପରାୟଣାଃ ଅପାନେ ପ୍ରାଣଂ ଜୁହ୍ୱତି । ତଥା ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣେ ଅପାନଂ [ଜୁହ୍ୱତି] । ୨୯ ।

**ଟୀକା**—[ବିବିଧାଃ କର୍ମଯୋଗଯଜ୍ଞାଃ ଉକ୍ତାଃ । ଅଧୁନା ଚିତ୍ତ-ନିରୋଧାର୍ଥଂ ସାଂଖ୍ୟୈଃ ମୁଖ୍ୟତଃ ଆଚରିତଂ ଧ୍ୟାନପୋଷକଂ ବାୟୁସାଧନଯୋଗଂ ସୂଚୟନ୍ତି ]— ଅପରେ ପ୍ରାଣାୟାମପରାୟଣାଃ (ବାୟୁସାଧକାଃ) ଅପାନେ (ପ୍ରଶ୍ୱାସେନ ଅନ୍ତର୍ନୀତେ ବାୟୌ) ପ୍ରାଣଂ (ନିଶ୍ୱାସେନ ବହିଷ୍କର୍ତ୍ତବ୍ୟଂ ବାୟୁଂ) [ପୂରକେନ] ଜୁହ୍ୱତି । ତଥା (ତତଃ) ପ୍ରାଣାପାନଗତୀ (ତୟୋଃ କ୍ରମେଣ ଊର୍ଦ୍ଧ୍ୱାଧୋ ଗତୀ) [କୁମ୍ଭକେନ] ରୁଦ୍ଧ୍ୱା, ପ୍ରାଣେ ଅପାନଂ [ ରେଚକେନ ଜୁହ୍ୱତି ] । ୨୯ ।

**ଅର୍ଥ**—[ନାନାପ୍ରକାର କର୍ମଯୋଗଯଜ୍ଞ କହିଲେ । ଏବେ ମୁଖ୍ୟ ଭାବରେ କର୍ମତ୍ୟାଗୀ ସନ୍ନ୍ୟାସୀମାନେ ଚିତ୍ତନିରୋଧ ଓ ଧ୍ୟାନନିଷ୍ଠା ଲାଗି କରନ୍ତି ଯେଉଁ ପ୍ରାଣାୟାମ ବା ବାୟୁ ସାଧନା ଯୋଗ, ସେ କଥା ଦୁଇ ଶ୍ଲୋକରେ କହି ଦେଉଛନ୍ତି]—ଆଉ କେତେକ ପ୍ରାଣାୟାମକୁ ବଡ଼ କରି ଧରିଥିବା ସାଧକମାନେ ଅପାନରେ ପ୍ରାଣକୁ ପକାନ୍ତି । ତହିଁ ଉତ୍ତାରୁ ପ୍ରାଣ ଓ ଅପାନର ଗତିକୁ ରୁନ୍ଧି, ପରେ ଅପାନକୁ ପ୍ରାଣରେ ଛାଡ଼ନ୍ତି । ୨୯ ।

ବ୍ୟାଖ୍ୟା ସୂଚନା—ପ୍ରାଣବାୟୁ ପାଞ୍ଚୋଟି । ଯଥା—ପ୍ରାଣ = ଯାହା ନିଶ୍ୱାସରେ ଗ୍ଧିତରୁ ଉପରକୁ ଉଠି ବାହାରକୁ ଯାଏ । ଅପାନ = ଯେ ପ୍ରଶ୍ୱାସରେ ତଳକୁ ସଞ୍ଚରେ । ସମାନ = ଯେ ପେଟ ଓ ନାଭିମଣ୍ଡଳରେ ସଞ୍ଚରେ । ବ୍ୟାନ = ଯେ ଶରୀରଯାକ ଅଙ୍ଗ ପ୍ରତ୍ୟଙ୍ଗରେ ସଞ୍ଚରେ । ଉଦାନ = ଯେ ମରଣ ସମୟରେ ଉଡ଼ିଯାଏ । ପ୍ରାଣାୟାମର ବାୟୁସାଧନାରେ ଆଗ ଅପାନକୁ ତଳକୁ ନେଇ, ରୁନ୍ଧି, ପରେ ପୁଣି ପ୍ରାଣରେ ଛାଡ଼ିବାକୁ ହୁଏ । ନେବାକୁ ପୂରକ, ରୁନ୍ଧିବାକୁ କୁମ୍ଭକ ଓ ଛାଡ଼ିବାକୁ ରେଚକ କହନ୍ତି । ଏହି ପ୍ରକାର ଯୋଗସାଧନା ପତଞ୍ଜଳିଙ୍କ ଯୋଗସୂତ୍ରରେ ଅଛି । ଏହାକୁ ଏବେ ପାତଞ୍ଜଳ ଯୋଗ କହନ୍ତି । ଏହା ମୋକ୍ଷାର୍ଥ-କର୍ମ-ପର ଯୋଗରେ ମଧ୍ୟ ଧ୍ୟାନ ଠିକ୍ କରିବା ପାଇଁ ଦରକାର ହୁଏ ବୋଲି ପରେ କହୁଚନ୍ତି । ୫.୧୭; ୮.୬. ୧୦ ୧୫;୮.୮.୧୩ ପ୍ରଭୃତି ଦେଖ । ସାଂଖ୍ୟର ଏହି ଚିତ୍ତନିରୋଧ-କ୍ରିୟାରେ ନିୟତ କର୍ମ କରିବାର ଅଛି ବୋଲି ଏହା ମୋକ୍ଷସାଧନ ଯୋଗରେ ଦରକାର ଓ ଏଠାରେ ଯଜ୍ଞରେ ଗଣାଯାଇଚି । ୨୯ ।

**ଅପରେ ନିୟତାହାରାଃ ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି ।**
**ସର୍ବେଽପ୍ୟେତେ ଯଜ୍ଞବିଦୋ ଯଜ୍ଞକ୍ଷପିତକଲ୍ମଷାଃ ।୩୦।**

**ଅନ୍ୱୟ**—ଅପରେ ନିୟତାହାରାଃ ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି । ଏତେ ସର୍ବେ ଅପି ଯଜ୍ଞବିଦଃ (ଭବନ୍ତି) ଯଜ୍ଞକ୍ଷପିତକଲ୍ମଷାଃ [ଭବନ୍ତି] । ୩୦ ।

**ଟୀକା**—[ତଦ୍ଭିନ୍ନାଃ ବାୟୁସାଧକାଃ] ଅପରେ [ପୁନଃ] ନିୟତାହାରାଃ (ଯମନିୟମ-ବ୍ରହ୍ମଚର୍ଯ୍ୟାଦିଭିଃ ସଂଯତବିଷୟଭୋଗାଃ) [ସନ୍ତଃ, ଅବଶୀକୃତାନ୍] ପ୍ରାଣାନ୍ (ବାୟୂନ୍) [ବଶୀକୃତେଷୁ] ପ୍ରାଣେଷୁ (ପ୍ରାଣବାୟୁଷୁ) ଜୁହ୍ୱତି । [ଏବଂ ବ୍ୟାନାଦ୍ୟୁଦାନାନ୍ତଂ ସାଧୟନ୍ତୀତି ଭାବଃ—ଯଦ୍ୱା ପ୍ରାଣାନ୍ ଇନ୍ଦ୍ରିୟାଣି ସାଧିତେଷୁ ପ୍ରାଣେଷୁ ଉତ୍ସୃଜନ୍ତି—ଇତ୍ୟର୍ଥଃ] । ଏତେ ସର୍ବେ ଅପି [ଯତମାନାଃ, ଯତୟଃ] ଯଜ୍ଞବିଦଃ (ଉତ୍ସର୍ଗେଣ କର୍ମସାଧନାଭିଜ୍ଞାଃ) ଯଜ୍ଞକ୍ଷପିତକଲ୍ମଷାଃ (ଯଜ୍ଞୈଃ କ୍ଷପିତାନି ଧ୍ୱସ୍ତାନି କଲ୍ମଷାଣି, ଯେଷାଂ ତେ—ଯଜ୍ଞୈଃ ବିଗତଦୋଷାଃ ନିଷ୍ପାପଃ । ଯଜ୍ଞକ୍ଷୟିତକଲ୍ମଷାଃ—

ଇତି ସ୍ପଷ୍ଟତରଃ ପାଠଃ ।—ନିଃସ୍ୱାର୍ଥ କର୍ମପର ଇତି ସ୍ପଷ୍ଟଂ । ନିଷ୍କାପରତ୍ୱାତ୍ ସର୍ବେଷାଂ ଅପି ଏତେଷାଂ କର୍ମଣି ଅନାସକ୍ତିଃ ସାଧ୍ୟା ସୁଗମା ଚେତି ଭାବଃ) । ୩୦ ।

**ଅର୍ଥ**—[ ସେଇ ବାୟୁସାଧକମାନେ ] ପୁଣି କେତେ ଯମନିୟମବ୍ରହ୍ମଚର୍ଯ୍ୟାଦିରେ ବିଷୟ ଭୋଗ ରୋକି, ସାଧ୍ୟ ନୋହିଥିବା ପ୍ରାଣକୁ ସାଧ୍ୟ ହୋଇଥିବା ପ୍ରାଣରେ ପକାନ୍ତି । [ଏହିପରି ବ୍ୟାନଠାରୁ ଉଦାନ ପର୍ଯ୍ୟନ୍ତ ବାୟୁ ସବୁ ସାଧନ୍ତି—କିମ୍ବା ପ୍ରାଣ, ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ସାଧ୍ୟ ହୋଇଥିବା ପ୍ରାଣାଦିରେ ଉତ୍ସର୍ଗ କରନ୍ତି—ଏପରି ଅର୍ଥ କରାଯାଇ ପାରେ । ] ଏ ସମସ୍ତେ ବି ଯଜ୍ଞ ଜାଣନ୍ତି ଓ ଯଜ୍ଞରେ ନିଜ ପାପ ଧ୍ୱଂସ କରନ୍ତି (ବା କ୍ଷୟ କରନ୍ତି) । ୩୦ ।

ବ୍ୟାଖ୍ୟା ସୂଚନା—ମୋକ୍ଷସାଧନାରେ କୌଣସି ନା କୌଣସି ଆଚରଣ ଥିଲେହିଁ ତାହା 'ଯଜ୍ଞ', ଅର୍ଥାତ୍, ନିଷ୍କାମ ଆଚରଣ ହେତୁରୁ ମନୁଷ୍ୟକୁ ମୋକ୍ଷ ଆଡ଼କୁ ନିଏ । କର୍ମ ଛାଡ଼ିଦେଲେ ତା ସମ୍ଭବ ନୁହେ । ୬.୩ ଟୀକା ଦେଖ । ୩୦ ।

**ଯଜ୍ଞଶିଷ୍ଟାମୃତଭୁଜୋ ଯାନ୍ତି ବ୍ରହ୍ମ ସନାତନମ୍ ।**
**ନାୟଂ ଲୋକୋଽସ୍ତ୍ୟଯଜ୍ଞସ୍ୟ କୁତୋଽନ୍ୟଃ କୁରୁସତ୍ତମ ।୩୧**

**ଅନ୍ୱୟ**—କୁରୁସତ୍ତମ, ଯଜ୍ଞଶିଷ୍ଟାମୃତଭୁଜଃ ସନାତନଂ ବ୍ରହ୍ମ ଯାଂନ୍ତି । ଅଯଜ୍ଞସ୍ୟ ଅୟଂ ଲୋକଃ ନ ଅସ୍ତି । ଅନ୍ୟଃ କୁତଃ । ୩୧ ।

**ଟୀକା**—ହେ କୁରୁସତ୍ତମ, ଯଜ୍ଞଶିଷ୍ଟାମୃତଭୁଜଃ (ଏବଂ ଧର୍ମାଚରଣେ କର୍ମୋତ୍ସର୍ଗରୂପାତ୍ ଯଜ୍ଞାତ୍ ଉଦ୍‌ଗତଂ ଅମୃତଂ ପରମାନନ୍ଦଂ ଭୁଞ୍ଜାନାଃ) ସନାତନଂ (ନିତ୍ୟଂ) ବ୍ରହ୍ମ ଯାନ୍ତି । ଅଯଜ୍ଞସ୍ୟ (ଯସ୍ୟ ଯଜ୍ଞାର୍ଥ କର୍ମ ନାସ୍ତି, ତସ୍ୟ) [ଜନସ୍ୟ] ଅୟଂ [ଏବ] ଲୋକଃ (ମନୁଷ୍ୟଲୋକଃ ନ ଅସ୍ତି, କର୍ମବନ୍ଧନାତ୍ ହେତୋଃ ରାଗଦ୍ୱେଷାଦିହେତୋଃ ନାସ୍ତୀହ ମନୁଷ୍ୟଲୋକେ ଶାନ୍ତିଃ—ଇତି ଭାବଃ) [ତସ୍ୟ] ଅନ୍ୟଃ [ଲୋକଃ] (ପରଲୋକେ ମୁକ୍ତିଃ ଇତି ଭାବଃ) କୁତଃ [ଭବେତ୍] । ୩୧ ।

**ଅର୍ଥ**—ହେ କୁରୁସତ୍ତମ, ଯଜ୍ଞରୁ (ଅର୍ଥାତ୍ ଏହିପରି କର୍ମୋତ୍ସର୍ଗରେ ଧର୍ମାଚରଣରୁ ) ବାହାରୁଥିବା ଅମୃତତୁଲ୍ୟ ଆନନ୍ଦ ଭୋଗ କରୁଥିବା ଲୋକେ ନିତ୍ୟ ବ୍ରହ୍ମ ଲଭ କରନ୍ତି । ଯଜ୍ଞାର୍ଥ କର୍ମସାଧନା ନ ଥିବା ଲୋକର ଏହି ମନୁଷ୍ୟ ଲୋକଇ ନାଇ, ଅର୍ଥାତ୍, ଏଇ ନରଲୋକରେଇ ସେ ଫଳ ପାଇଁ ଘାଣ୍ଟି ହୋଇ ଶାନ୍ତି ପାଏ ନାଇ) । ତାର ପୁଣି ଆଉ ପରଲୋକ କାହୁଁ ଅଇଲା ? (ଅର୍ଥାତ୍ ପରଲୋକରେ ମୁକ୍ତି ପାଇବା କଥା କାହିଁକି ପଚାରୁଛ ? )—୩.୧୩ ଟୀକା ଦେଖ । ୩୧ ।

**ଏବଂ ବହୁବିଧା ଯଜ୍ଞା ବିତତା ବ୍ରହ୍ମଣୋ ମୁଖେ ।**
**କର୍ମଜାନ୍ ବିଦ୍ଧି ତାନ୍ ସର୍ବାନେବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ ।୩୨**

**ଅନ୍ୱୟ**—ବ୍ରହ୍ମଣଃ ମୁଖେ ଏବଂ ବହୁବିଧାଃ ଯଜ୍ଞା ବିତତାଃ । ତାନ୍ ସର୍ବାନ୍ କର୍ମଜାନ୍ ବିଦ୍ଧି । ଏବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ । ୩୨ ।

**ଟୀକା**—ବ୍ରାହ୍ମଣଃ (ବେଦସ୍ୟ) ମୁଖେ ଏବଂ (ଇତ୍ଥଂ) ବହୁବିଧାଃ ଯଜ୍ଞାଃ ବିତତାଃ (ବିସ୍ତରଶଃ ବର୍ଣ୍ଣିତାଃ) । [ଯଦ୍ ବା ପରଂବ୍ରହ୍ମଣଃ ମୁଖେ, ସପ୍ରକାଶ.ସ୍ୱକ-ସ୍ୱରୂପେ ଏବଂ ବହୁବିଧାଃ ଯଜ୍ଞାଃ ବିତତାଃ, ବ୍ୟକ୍ତାଃ, ବିସ୍ତୃତାଃ] ତାନ୍ ସର୍ବାନ୍ [ଯଜ୍ଞାନ୍] କର୍ମଜାନ୍ ( କର୍ମଜନିତାନ୍ ) ବିଦ୍ଧି; ଏବଂ ଜ୍ଞାତ୍ୱା [ କର୍ମବନ୍ଧନାତ୍ ] ବିମୋକ୍ଷ୍ୟସେ । ୩୨ ।

**ଅର୍ଥ**—ବେଦମୁଖରେ ଏହିପରି ବହୁପ୍ରକାର ଯଜ୍ଞ କଥା ବୁଝାଇ କୁହା ହୋଇଛି । [କିଂବା ପରଂବ୍ରହ୍ମଙ୍କ ସୃଷ୍ଟି ବିକାଶ ସ୍ୱରୂପରେ ଏହିପରି ବହୁପ୍ରକାର ଯଜ୍ଞ ଦେଖାଯାଏ] । ସେ ସବୁ ଯଜ୍ଞ କର୍ମ ଯୋଗ ହୁଏ ଜାଣ । ଏହିପରି ଜାଣିଲେ କର୍ମ କରି କର୍ମ ବନ୍ଧନରୁ ମୁକ୍ତ ପାଇବୁ—୩ ୧୫ ଟୀକା ଦେଖ । ୩୨ ।

ବ୍ୟାଖ୍ୟା ସୂଚନା—ବେଦ ମୁଖରେ—ଏପରି ଅର୍ଥ ନ କରି ପ୍ରଜାପତି ବ୍ରହ୍ମାଙ୍କ ମୁହଁରେ ବେଦ ଆକାରରେ ପ୍ରକାଶ ପାଇଛି ବୋଲି ଅର୍ଥ ମଧ୍ୟ କରିଯାଇପାରେ (୩.୧୦) । କର୍ମ ନ ଥିଲେ ଯଜ୍ଞ ନାଇ । ଯଜ୍ଞ ନ ଥିଲେ ମୁକ୍ତି ନାଇ । ଏହିପରି ଜାଣି ଆଚରଣ କରିବାହିଁ ଯଜ୍ଞ ଜାଣିବ । କର୍ମର ଏଠାରେ ବ୍ୟାପକ ଅର୍ଥ । କର୍ମ ଅର୍ଥରେ ଶାରୀରିକ, ମାନସିକ ଆତ୍ମିକ, ସବୁ କର୍ମ ବୁଝିବାକୁ ହେବ । ଏ ସବୁପ୍ରକାର କର୍ମ ପ୍ରଭୁପ୍ରୀତ୍ୟର୍ଥ ବା ଲୋକସେବାର୍ଥ କରିବାକୁ ହେବ । ଯେ ଏପରି କାମରେ ନିଜର କର୍ମ ନ ଲଗାଏ, ସେ ଚୋର । (୩.୧୨ ଦେଖ)— [ମହାତ୍ମା ଗାନ୍ଧୀ] । ୩୨ ।

**ଶ୍ରେୟାନ୍ ଦ୍ରବ୍ୟମୟାଦ୍‌ଯଜ୍ଞାଜ୍‌ଜ୍ଞାନଯଜ୍ଞଃ ପରଂତପ ।**
**ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ ।୩୩।**

**ଅନ୍ୱୟ**—ପରଂତପ, ଦ୍ରବ୍ୟମୟାତ୍ ଯଜ୍ଞାତ୍ ଜ୍ଞାନଯଜ୍ଞଃ ଶ୍ରେୟାନ୍ । ପାର୍ଥ ସର୍ବଂ ଅଖିଳଂ କର୍ମଜ୍ଞାନେ ପରିସମାପ୍ୟତେ । ୩୩ ।

**ଟୀକା**—[ତଥାପି ଆତ୍ମଜ୍ଞାନେନ ବିନା କୃତେଷୁ ଦାନାଦି ଧର୍ମକାର୍ଯ୍ୟେଷୁ ମମତ୍ୱାଭିମାନସ୍ୟାବକାଶଃ—ଅତଃ]—ହେ ପରଂତପ, [ଦାନାଦେଃ] ଦ୍ରବ୍ୟମୟାତ୍ ଯଜ୍ଞାତ୍ ଜ୍ଞାନଯଜ୍ଞଃ (ବ୍ରହ୍ମଯଜ୍ଞୋ ବା) ଶ୍ରେୟାନ (ହିତତରଃ) । [ଯତଃ] ସର୍ବଂ ଅଖିଳଂ (ଅଶେଷଂ) କର୍ମ ଜ୍ଞାନେ ପରିସମାପ୍ୟତେ (ଶେଷଂ, ପୂର୍ଣ୍ଣତାଂ ଗଚ୍ଛତି—ନୈଷ୍କର୍ମ୍ୟେଣ ପ୍ରତିଭାତି—ଇତ୍ୟର୍ଥଃ) । ୩୩ ।

**ଅର୍ଥ**—[ହେଲେହେଁ ଆତ୍ମଜ୍ଞାନ ନଥାଇ ଦାନ ଦୈବୀ ପ୍ରଭୃତି ଧର୍ମକାର୍ଯ୍ୟ ବା ଦ୍ରବ୍ୟଯଜ୍ଞ କଲେ ହୁଏତ ସେଥିରେ 'ମୋର' ବୋଲି ଅଭିମାନ କେତେବେଳେ ଆସିପାରେ—ଏଣୁ ] ଦ୍ରବ୍ୟମୟ ଯଜ୍ଞରୁ ଜ୍ଞାନ ଯଜ୍ଞ ଭଲ; କାହିଁକି ନା, ଅଶେଷ କର୍ମଯାକ ସବୁ ଜ୍ଞାନରେ ଛୁଟନ୍ତି । (ଅର୍ଥାତ୍, ଜ୍ଞାନ ଠାଇଁ ଶେଷ ହୁଅନ୍ତି ବା କର୍ମ-ଜ୍ଞାନରେ ପରିଣତ ହୁଅନ୍ତି । ଆତ୍ମଜ୍ଞାନ ଥିଲେ କର୍ମର ଅଡୁଆ ବା ବନ୍ଧନ ନ ଥାଏ । ) । ୩୩ ।

ବ୍ୟାଖ୍ୟା ସୂଚନା—ଜ୍ଞାନଯଜ୍ଞ—(୪.୨୪,୨୭) ଦେଖ) । ସ୍ୱାଧ୍ୟାୟ ମଧ୍ୟ ଏକପ୍ରକାର ଜ୍ଞାନଯଜ୍ଞ (୪.୨୮ ଦେଖ) । ପ୍ରାଣାୟାମାଦି ଧ୍ୟାନସହାୟକ ସାଧନ ମଧ୍ୟ ଜ୍ଞାନ ଯଜ୍ଞର ଅଙ୍ଗ (୪.୨୯,୩୦ ଦେଖ) । ମାତ୍ର ଏଠାରେ ବ୍ରହ୍ମ ବା ଆତ୍ମଜ୍ଞାନକୁ ସ୍ପଷ୍ଟ ଲକ୍ଷ୍ୟ କରାଯାଇଛି । ଆଉ ସବୁ ଜ୍ଞାନର ସାଧନ ମାତ୍ର । ସେଥିରେ ସବୁ କର୍ମ ସମାପ୍ତ ହୋଇ ନୈଷ୍କର୍ମ୍ୟରେ ପରିଣତ ହୁଏ ନାଇ । ଜ୍ଞାନରେ କର୍ମ ସମାପ୍ତ ହୁଏ । ଏହାର ଅର୍ଥ ନୁହେ ଯେ ଜ୍ଞାନ ହେଲେ କର୍ମ ଛୁଟିଦେବ । ଏପରି ଭ୍ରମ କରିବାର ଗୀତାରେ ଅବକାଶ ନାଇ । ବିଶେଷରେ ତୃତୀୟ ଅଧ୍ୟାୟ ମୂଳରେ ଅର୍ଜୁନ କରିଥିବା ପ୍ରଶ୍ନର ଉତ୍ତର ହିଁ ଚାଲିଛି, ଏହା ମନେ ରଖିବାକୁ ହେବ । ୩୩ ।

## ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।
## ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ । ୩୪ ।

**ଅନ୍ୱୟ**—ତତ୍ତ୍ୱଦର୍ଶିନଃ ଜ୍ଞାନିନଃ ତେ ଜ୍ଞାନଂ ଉପଦେକ୍ଷ୍ୟନ୍ତି । [ ତ୍ୱଂ ] ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ତତ୍ ବିଦ୍ଧି । ୩୪ ।

**ଟୀକା**—[କଥଂ ତଜ୍‌ଜ୍ଞାନଂ ପ୍ରାପ୍ୟତେ ? ଇତ୍ୟାହ]—ତତ୍ତ୍ୱଦର୍ଶିନଃ ଜ୍ଞାନିନଃ ତେ (ତୁଭ୍ୟଂ) [ତତ୍] ଜ୍ଞାନଂ ଉପଦେକ୍ଷ୍ୟନ୍ତି । [ତ୍ୱଂ ତୁ ଶ୍ରଦ୍ଧାବାନ୍ ସନ୍] ପ୍ରଣିପାତେନ (ଦଣ୍ଡବନ୍ନମସ୍କାରେଣ) ପରିପ୍ରଶ୍ନେନ (ବାରଂ ବାରଂ ପ୍ରଶ୍ନେନ) ସେବୟା (ନିରନ୍ତରଂ ଶୁଶ୍ରୂଷୟା) ତତ୍ ବିଦ୍ଧି (ଜାନୀହି ଏବଂ ବିଦ୍ୟାତ୍ ଇତି ଭାବଃ) । ୩୪ ।

**ଅର୍ଥ**—[କିପରି ସେ ଜ୍ଞାନ ମିଳିବ ? କହୁଛନ୍ତି]—ଆତ୍ମତତ୍ତ୍ୱ ଦେଖିଥିବା (ବା ଅନୁଭବରେ ଜାଣିଥିବା) ଜ୍ଞାନୀମାନେ ତୋତେ ସେ ଜ୍ଞାନ ବତାଇ ଦେବେ । [ତୁମ୍ଭେ ତୁ ବିଶ୍ୱାସରେ ଓ ଭକ୍ତିରେ] ପ୍ରଣିପାତ କରି (ନମ୍ର ହୋଇ), ଭଲ କରି ଥରକୁ ଥର ପଚାରି, [ସବୁବେଳେ ଗୁରୁଙ୍କଠାରୁ ଶୁଣିପାରିବା ଭଳି] ଗୁରୁଙ୍କର ସେବା କରି, ସେଇ ଜ୍ଞାନକୁ ଜାଣ (ଶିଖ) । ଅର୍ଥାତ୍; ଲୋକେ ଏହିପରି ଜ୍ଞାନୀଙ୍କୁ ଗୁରୁ କରି ଜ୍ଞାନ ଶିଖିବା ଉଚିତ) । ୩୪ ।

ବ୍ୟାଖ୍ୟା ସୂଚନା—ଜ୍ଞାନ ପାଇବାରେ ତିନୋଟି ସର୍ତ୍ତ—ପ୍ରଣିପାତ, ପରିପ୍ରଶ୍ନ ଓ ସେବା । ଏ ଯୁଗରେ ଏହା ଖୁବ୍ ମନେ ରଖିବା ଉଚିତ । ପ୍ରଣିପାତ=ନମ୍ରତା,

ବିବେକ । ପରିପ୍ରଶ୍ନ = ବାରମ୍ବାର ପଚାରିବା । ସେବା ନ ଥାଇ ଯେଉଁ ନମ୍ରତା, ସେ ଖୋସାମଦ ମାତ୍ରରେ ପରିଣତ ହୋଇପାରେ । ପୁଣି ନ ଖୋଜିଲେ, ଜ୍ଞାନ ସମ୍ଭବ ନୁହେଁ । ଏଣୁ ବୁଝା ନ ଯିବାଯାଏ, ଶିଷ୍ୟ ଗୁରୁଙ୍କୁ ନମ୍ରତା ପୂର୍ବକ ପଚାରୁଥିବ, ଏହାହିଁ ଜିଜ୍ଞାସାର ଚିହ୍ନ । ଏଥିରେ ଶ୍ରଦ୍ଧା ଦରକାର । ଯହିଁରେ ଶ୍ରଦ୍ଧା ନାହିଁ, ସେ ଆତ୍ମକୁ ହୃଦସ୍ଥ ନମ୍ରତା ଯଏ ନାହିଁ । ତହିଁରେ ପୁଣି ସେବା କୁଆଡ଼ୁ ହେବ ?—ମହାତ୍ମା ଗାନ୍ଧୀ । ଏହାକୁ ତାନ୍ତ୍ରିକ ଓ ବୈଷ୍ଣବଙ୍କ ଗୁରୁଗିରି ଓ ମନ୍ତ୍ରଦୀକ୍ଷା ସଙ୍ଗେ ତୁଳନା କରିବାର ଅଛି । ୩୪ ।

**ଯଜ୍ଜ୍ଞାତ୍ୱା ନ ପୁନର୍ମୋହମେବଂ ଯାସ୍ୟସି ପାଣ୍ଡବ ।**
**ଯେନ ଭୂତାନ୍ୟଶେଷେଣ ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋ ମୟି ।୩୫।**

**ଅନ୍ୱୟ**—ପାଣ୍ଡବ, ଯତ୍ ଜ୍ଞାତ୍ୱା ପୁନଃ ଏବଂ ମୋହଂ ନ ଯାସ୍ୟସି, ଯେନ ଅଶେଷାଣି ଭୂତାନି ଆତ୍ମନି ଅଥ ମୟି ଦ୍ରକ୍ଷ୍ୟସି । ୩୫ ।

**ଟୀକା**—[କିଂଭୂତଂ ତତ୍ ଜ୍ଞାନଂ ତତ୍ ସ୍ତୌତି ସାର୍ଦ୍ଧତ୍ରିଭିଃ] ହେ ପାଣ୍ଡବ, ଯତ୍ ଜ୍ଞାତ୍ୱା ପୁନଃ ଏବଂ (ସ୍ୱଜନବନ୍ଧୁନିମିତ୍ତଂ) ମୋହଂ ନ ଯାସ୍ୟସି, ଯେନ [ଜ୍ଞାନେନ ଚ] ଅଶେଷେଣ (ସର୍ବତୋଭାବେନ, ସମ୍ପୂର୍ଣ୍ଣତୟା) ଭୂତାନି ଆତ୍ମନି ଅଥ (ତଥା) ମୟି (ପରମେଶ୍ୱରେ) ଦ୍ରକ୍ଷ୍ୟସି (ଅନୁଭବସି) । ୩୫ ।

**ଅର୍ଥ**—[କିପରି ସେ ଜ୍ଞାନ ବୋଲି, ତାକୁ ପ୍ରଶଂସା କରି ଦେଖାଇ, ସାଢ଼େ ତିନି ଶ୍ଳୋକରେ କହୁଚନ୍ତି]—ହେ ପାଣ୍ଡବ, [ସେ ଜ୍ଞାନ ଏପରି ଯେ] ତାହା ଜାଣି ତୁ ଆଉ ଏପରି ବନ୍ଧୁବାନ୍ଧବ ଦେଖି ମୋହ ଯିବୁ ନାହିଁ । ସେହି ଜ୍ଞାନରେ ତୁ ଅଶେଷ ଦୃଷ୍ଟ ବସ୍ତୁ ( ବା ପ୍ରାଣୀ ) ଙ୍କୁ ନିଜ ଆତ୍ମାରେ, ତା ପରେ ମୋଠାରେ (ଅର୍ଥାତ୍ ଈଶ୍ୱରଙ୍କଠାରେ ) ଦେଖିବୁ । (ଅର୍ଥାତ୍, ସବୁ ଆତ୍ମସ୍ୱରୂପ ପରବ୍ରହ୍ମର ପ୍ରକାଶ ରୂପ ବୋଲି ଜାଣିବୁ) । ୩୫ ।

ବ୍ୟାଖ୍ୟା ସୂଚନା—"ଯଥା ପିଣ୍ଡେ, ତଥା ବ୍ରହ୍ମାଣ୍ଡେ" କଥାଟିର ଏହି ଅର୍ଥ । ଯାହାର ଆତ୍ମଦର୍ଶନ ହୋଇ ଯାଇଚି, ସେ ଆପଣା ଆତ୍ମା ଓ ପର ଆତ୍ମାରେ ଭେଦ ଦେଖେ ନାହିଁ ।—ମହାତ୍ମା ଗାନ୍ଧୀ । ୩୫ ।

**ଅପି ଚେଦସି ସର୍ବେଭ୍ୟଃ ପାପେଭ୍ୟଃ ପାପକୃତ୍ତମଃ ।**
**ସର୍ବଂ ଜ୍ଞାନପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସି । ୩୬ ।**

**ଅନ୍ୱୟ**—ଅପି ସର୍ବେଭ୍ୟଃ ପାପେଭ୍ୟଃ ପାପକୃତ୍ତମଃ ଅସି ଚେତ୍ ଜ୍ଞାନପ୍ଲବେନ ଏବ ସର୍ବଂ ବୃଜିନଂ ସନ୍ତରିଷ୍ୟସି । ୩୬ ।

**ଟୀକା**—ଅପି ସର୍ବେଭ୍ୟଃ ପାପେଭ୍ୟଃ (ପାପକୃଦ୍‌ଭ୍ୟଃ) [ତ୍ୱଂ] ପାପକୃତ୍ତମଃ [ଗରିଷ୍ଠ ଏବ ପାପାଗ୍ରଗଣ୍ୟ] ଅସି ଚେତ୍ (ଯଦି), [ତର୍ହି ଏତତ୍ ଜ୍ଞାନପ୍ଲବେନ ଜ୍ଞାନ-ରୂପୋଡୁପେନ] ଏବ ସର୍ବଂ ବୃଜିନଂ (ପାପଂ—ପାପସମୁଦ୍ରମିତି ଭାବଃ) ସନ୍ତରିଷ୍ୟସି (ସମ୍ୟକ୍ ପାରଂ ଗନ୍ତାସି) । ୩୬ ।

**ଅର୍ଥ**—ସବୁ ପାପୀଙ୍କ ଭିତରେ ତୁ ବେଶି ପାପ କରିବା ଲୋକ ହୋଇଥିଲେ ବି ଏହି ଜ୍ଞାନ-ଭେଳାରେ ସବୁ ପାପ-ସମୁଦ୍ର ବରାବର ତରିଯିବୁ । ୩୬ ।

**ଯଥୈଧାଂସି ସମିଦ୍ଧୋଽଗ୍ନିର୍ଭସ୍ମସାତ୍ କୁରୁତେଽର୍ଜୁନ ।**
**ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା ।୩୭।**

**ଅନ୍ୱୟ**—ଅର୍ଜୁନ ! ଯଥା ସମିଦ୍ଧଃ ଅଗ୍ନିଃ ଏଧାଂସି ଭସ୍ମସାତ୍ କୁରୁତେ, ତଥା ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ । ୩୭ ।

**ଟୀକା**—[ସନ୍ତରଣେନ ତୁ ବୃଜିନସ୍ୟ ନାଶଃ—ଇତ୍ୟାଶଙ୍କ୍ୟାହ]—ହେ ଅର୍ଜୁନ, ଯଥା ସମିଦ୍ଧଃ (ପ୍ରଦୀପ୍ତଃ) ଅଗ୍ନିଃ ଏଧାଂସି (କାଷ୍ଠାନି) ଭସ୍ମସାତ୍ (ଭସ୍ମ-ରୂପେଣ ପରିଣତାନି) କୁରୁତେ, ତଥା ଜ୍ଞାନାଗ୍ନିଃ ସର୍ବକର୍ମାଣି (କର୍ମଗତବୃଜିନାନି, କର୍ମସଙ୍ଗାନ୍—ଇତି ଭାବଃ) ଭସ୍ମସାତ୍ କୁରୁତେ । ୩୭ ।

**ଅର୍ଥ**—[ପାପକୁ ପାର ହୋଇଗଲେ ତ ପାପ କିଛି ନଷ୍ଟ ହେଲା ନାହିଁ ?—ଏଥିକି କହୁଛନ୍ତି ] ହେ ଅର୍ଜୁନ, ଯେପରି ଦାଉ ଦାଉ ଜଳୁଥିବା ନିଆଁ ଜାଳଗୁଡ଼ାକ ପୋଡ଼ି ପାଉଁଶ କରିଦିଏ, ସେହିପରି ଜ୍ଞାନରୂପ ଅଗ୍ନି ସବୁ କର୍ମକୁ ପୋଡ଼ି ପାଉଁଶ କରିଦିଏ । (ଅର୍ଥାତ୍, କର୍ମର ପାପ ବା ଆସକ୍ତିକୁ ନଷ୍ଟ କରି କର୍ମକୁ ଅକର୍ମ କରିଦିଏ) । ୩୭ ।

**ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ ।**
**ତତ୍ ସ୍ୱୟଂ ଯୋଗସଂସିଦ୍ଧଃ କାଲେନାତ୍ମନି ବିନ୍ଦତି । ୩୮ ।**

**ଅନ୍ୱୟ**—ଜ୍ଞାନେନ ସଦୃଶଂ ପବିତ୍ରଂ ଇହ ନ ହି ବିଦ୍ୟତେ । ତତ୍ ଯୋଗସଂସିଦ୍ଧଃ କାଲେନ ସ୍ୱୟଂ ଆତ୍ମନି ବିନ୍ଦତି । ୩୮ ।

**ଟୀକା**—ଜ୍ଞାନେନ ସଦୃଶଂ ପବିତ୍ରଂ (ଚିତ୍ତଶୁଦ୍ଧିକରଂ, ଶାନ୍ତିପ୍ରଦଂ) ଇହ [ଲୋକେ] ନ ହି [କିଞ୍ଚିତ୍] ବିଦ୍ୟତେ । [ନ ହି ତତ୍ କେବଲଂ ଗୁରୂପଦେଶେନ ପ୍ରାପ୍ୟଂ, ଅପି ତୁ ଆତ୍ମତପସା] ଯୋଗସଂସିଦ୍ଧଃ (କର୍ମଯୋଗେ ପୂର୍ଣ୍ଣତାଂ ଗତଃ ଜନଃ)

କାଲେନ (ଯଥାକାଳଂ—ସିଦ୍ଧିମାତ୍ରେଣେତି ଯାବତ୍) ସ୍ୱୟଂ (ବ୍ୟାଖ୍ୟାଦିନା, ଗୁରୂପଦେଶଂ ବିନାପି) ତତ୍ [ଜ୍ଞାନଂ] ଆତ୍ମନି (ସ୍ୱାନ୍ତରେ) ବିନ୍ଦତି (ପ୍ରାପ୍ନୋତି, ଅନୁଭବତି) । ୩୮ ।

**ଅର୍ଥ**—ଜ୍ଞାନପରି ପବିତ୍ର ଏ ଜଗତରେ କିଛି ନାହିଁ [ ଖାଲି ଗୁରୁଙ୍କଠୁ ବୁଝିଲେ ଯେ ଏହା ମିଳେ, ତା ନୁହେଁ, ନିଜ ପ୍ରଯତ୍ନରେ ମଧ୍ୟ ] ଯୋଗସିଦ୍ଧ ଲୋକ ଠିକ୍ ସମୟରେ, ଅର୍ଥାତ୍ ଯୋଗରେ ସିଦ୍ଧି ପାଇବା ମାତ୍ରକେ) ନିଜେ ଏହି ଜ୍ଞାନକୁ ଆପଣା ଭିତରେ ଅନୁଭବ କରେ । ୩୮ ।

ବ୍ୟାଖ୍ୟା ସୂଚନା —ପବିତ୍ର = ଯାହା ଚିତ୍ତକୁ ଶୁଦ୍ଧ ଓ ଶାନ୍ତ ରଖେ—୬.୩ ଦେଖ । ସମସ୍ତ ନିଷ୍କାମ କର୍ମଯୋଗ, ଜ୍ଞାନ ବିନା ସିଦ୍ଧ ହୁଏ ନାହିଁ । ଆତ୍ମଜ୍ଞାନରେ କର୍ମର ଫଳସ୍ପୃହାଦି ବରାବର ନଷ୍ଟ ହୁଏ । ଜ୍ଞାନ ହେବା ପୂର୍ବରୁ ସୁଖ ଦୁଃଖାଦି ସମାନ କରି କର୍ମର ଅଭ୍ୟାସ କରାଯାଏ । କିନ୍ତୁ ଆତ୍ମଜ୍ଞାନ ଦୃଢ଼ ହେଲେ ହିଁ ବୁଦ୍ଧି ବରାବର ସ୍ଥିର ହୋଇଯାଏ ଓ ଚିତ୍ତ ଶାନ୍ତ ହୁଏ । ୩୮ ।

**ଶ୍ରଦ୍ଧାବାଁଲ୍ଲଭତେ ଜ୍ଞାନଂ ତତ୍ପରଃ ସଂଯତେନ୍ଦ୍ରିୟଃ ।**
**ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତିମଚିରେଣାଧିଗଚ୍ଛତି । ୩୯ ।**

**ଅନ୍ୱୟ**—ଶ୍ରଦ୍ଧାବାନ୍, ତତ୍ପରଃ, ସଂଯତେନ୍ଦ୍ରିୟଃ ଜ୍ଞାନଂ ଲଭତେ । ଜ୍ଞାନଂ ଲବ୍ଧ୍ୱା ଅଚିରେଣ ଶାନ୍ତିଂ ଅଧିଗଚ୍ଛତି । ୩୯ ।

**ଟୀକା**—[କିଂଭୂତଃ ଜନଃ ତଜ୍ଜ୍ଞାନଂ ଲବ୍ଧୁଂ ଆର୍ହତି ?—ଇତ୍ୟାହ] ଶ୍ରଦ୍ଧାବାନ୍ (ଶ୍ରଦ୍ଧା, ଆସ୍ତିକ୍ୟ ବୁଦ୍ଧିଃ, ଆତ୍ମା ଅସ୍ତୀତି ବୁଦ୍ଧିର୍ଯସ୍ୟ, ସ ଶ୍ରଦ୍ଧାବାନ୍; ଯଦ୍ୱା ଗୁରୂପଦେଶେ ସତ୍ୟମସ୍ତୀତି ଶ୍ରଦ୍ଧାବାନ୍) ତତ୍ପରଃ (ତଜ୍ଜ୍ଞାନମାତ୍ରସର୍ବସ୍ୱଃ) ସଂଯତେନ୍ଦ୍ରିୟଃ (ଇନ୍ଦ୍ରିୟବିକ୍ଷୋଭରହିତଃ ଯଥା—ମନନଶୀଲଃ) ଜ୍ଞାନଂ [ଗୁରୁବଚନାତ୍, ଆତ୍ମବୁଦ୍ଧ୍ୟା ବା] ଲଭତେ । ଜ୍ଞାନଂ ଲବ୍ଧ୍ୱା ଅଚିରେଣ (ଝଟିତି) [ଯୋଗସିଦ୍ଧଃ ସନ୍] ପରାଂ (ଶ୍ରେଷ୍ଠାଂ) ଶାନ୍ତିଂ (ଚିତ୍ତଶୁଦ୍ଧିଂ—ସ୍ଥାୟିନଂ ଆନନ୍ଦଂ—ଜୀବନ୍ମୁକ୍ତତାଂ ଇତି ଭାବଃ) ଅଧିଗଚ୍ଛତି (ପ୍ରାପ୍ନୋତି) । ୩୯ ।

**ଅର୍ଥ**—[କିପରି ଲୋକ ସେ ଜ୍ଞାନକୁ ଯୋଗ୍ୟ ?—ଏଥକୁ କହୁଛନ୍ତି]—ବିଶ୍ୱାସୀ ହୋଇ, ସେହି ଜ୍ଞାନରେ ଏକନିଷ୍ଠା କରି, ସ୍ୱାଡ଼େ ସ୍ୟାଡ଼େ ହେଇ ଭୁଲି ନ ଯିବା ଭଳି ଇନ୍ଦ୍ରିୟକୁ ଠିକ୍ ରଖିଲେ ଲୋକ ଜ୍ଞାନ ପାଇବା ସଙ୍ଗେ ସଙ୍ଗେ ଯୋଗସିଦ୍ଧ ହୋଇ ଚରଣଶାନ୍ତି ଲାଭ କରେ । ୩୯ ।

ବ୍ୟାଖ୍ୟା ସୂଚନା—ଶ୍ରଦ୍ଧାବାନ୍ = ବିଶ୍ୱାସୀ; ଏଠାରେ ଗୁରୁବଚନରେ ବିଶ୍ୱାସ, ଓ ଆତ୍ମା ଅଛି ବୋଲି ବିଶ୍ୱାସ—ଦୁଇ କଥା । ୪.୩୪,୩୮ ଦେଖ । ଚରଣଶାନ୍ତି ପାଏ=

ସ୍ଥାୟୀ ଆତ୍ମାନନ୍ଦ ପାଏ; ଆଉ କାହିଁରେ ଭୁଲିଯିବାର ସମ୍ଭାବନା ରହେ ନାଇ । ଏହିପରି ଲୋକ ଜୀଇଁଥାଇ ବି ମୁକ୍ତ । ଏହାଙ୍କୁ ଜୀବନ୍ମୁକ୍ତ କହନ୍ତି । ୩୯ ।

**ଅଜ୍ଞଶ୍ଚାଶ୍ରଦ୍ଦଧାନଶ୍ଚ ସଂଶୟାତ୍ମା ବିନଶ୍ୟତି ।**
**ନାୟଂ ଲୋକୋଽସ୍ତି ନ ପରୋ ନ ସୁଖଂ ସଂଶୟାତ୍ମନଃ ।୪୦**

**ଅନ୍ୱୟ**—ଅଜ୍ଞଃ, ଅଶ୍ରଦ୍ଦଧାନଃ, ସଂଶୟାତ୍ମା ଚ ବିନଶ୍ୟତି । ସଂଶୟାତ୍ମନଃ ନ ଅୟଂ, ନ ପରଃ ଲୋକଃ ନ ସୁଖଂ ଅସ୍ତି । ୪୦ ।

**ଟୀକା**—[ନ ଚେତ୍] ଅଜ୍ଞଃ (ଜ୍ଞାନଗତ୍ୟନଭିଜ୍ଞଃ) ଅଶ୍ରଦ୍ଦଧାନଃ (ଅସ୍ତୀତି ପ୍ରତ୍ୟୟେନ ହୀନଃ) [ଅତଏବ ଅସ୍ତି ବା ନ ବା ଇତି] ସଂଶୟାତ୍ମା (ସନ୍ଦେହଗ୍ରସ୍ତଚିତ୍ତଃ—ଯସ୍ୟ ବ୍ୟବସାୟାତ୍ମିକା ବୁଦ୍ଧିର୍ନାସ୍ତୀତି ଭାବଃ—ଅବିବେଚ୍ୟାତ୍ମା) ଚ ବିନଶ୍ୟତି । [ତସ୍ୟ]ସଂଶୟାତ୍ମନଃ ନ ଅୟଂ, ନାପରଃ [ଚ] ଲୋକଃ, ନ [ଚ] ସୁଖଂ ଅସ୍ତି । ୪୦ ।

**ଅର୍ଥ**—[ନ ହେଲେ] ଜ୍ଞାନରେ କଣ ଅଛି ସେ କଥା ନ ଜାଣିଥିବା ଲୋକ, ଗୁରୁଠାରେ କିଂବା ଜ୍ଞାନରେ ବିଶ୍ୱାସ ନ କରି, ସବୁବେଳେ ଦୋ-ଦୋ-ପଞ୍ଚାରେ ପଡ଼ି ନଷ୍ଟ ହୁଏ । ଏହିପରି ସଂଶୟ (ଦୋ-ଦୋ-ପଞ୍ଚ) ରେ ପଡ଼ିଥିବା ଲୋକର ଇହ ଲୋକ ନାଇ, କି ପର ଲୋକ ନାଇ, କି ସୁଖ ନାଇ (ଅର୍ଥାତ୍, ଏଠାରେ ଶାନ୍ତି ନାଇ, କି ମଲେ ଭଲ ଗତି ନ ଇ, କି ଜୀବନରେ କିଛି ସୁଖ ନାଇ—୪.୩୯ ଦେଖ) । ୪୦ ।

ବ୍ୟାଖ୍ୟା ସୂଚନା—ଯୁକ୍ତି ତର୍କରେ ଏହି ସଂଶୟ ଆସେ, ବିଶ୍ୱାସରେ ଈଶ୍ୱରଭକ୍ତି ଓ ଆତ୍ମଜ୍ଞାନ ସୁଲଭ । ଏହି ସଂଶୟ ହିଁ ଜ୍ଞାନ ପାଇବାରେ ବାଧା । ୪୦ ।

**ଯୋଗସଂନ୍ୟସ୍ତକର୍ମାଣଂ ଜ୍ଞାନସଂଛିନ୍ନସଂଶୟମ୍ ।**
**ଆତ୍ମବନ୍ତଂ ନ କର୍ମାଣି ନିବଧ୍ନନ୍ତି ଧନଞ୍ଜୟ । ୪୧ ।**

**ଅନ୍ୱୟ**—ଧନଂଜୟ, ଜ୍ଞାନସଂଛିନ୍ନସଂଶୟଂ ଯୋଗସଂନ୍ୟସ୍ତ କର୍ମାଣଂ ଆତ୍ମବଂତଂ କର୍ମାଣି ନ ନିବଧ୍ନଂତି । ୪୧ ।

**ଟୀକା**—[ତଜ୍‌ଜ୍ଞାନବତୋ ଯୋଗିନୋ ନ କର୍ମବନ୍ଧନଂ ଇତି ଯୁଦ୍ଧକର୍ମଣି ପ୍ରବର୍ତ୍ତୟନ୍ ଉପସଂହରତି ଦ୍ୱାଭ୍ୟାଂ]—ହେ ଧନଂଜୟ, ଜ୍ଞାନସଂଛିନ୍ନସଂଶୟଂ (ଜ୍ଞାନେନ ହେତୁନା ସତ୍ୟାସତ୍ୟ-କାର୍ଯାକାର୍ଯସଂଶୟଶୂନ୍ୟ) ଯୋଗସଂନ୍ୟସ୍ତକର୍ମାଣଂ (କର୍ମଯୋଗେ କର୍ମଣି ନୈଷ୍କର୍ମ୍ୟଂ ଗତଂ) ଆତ୍ମବନ୍ତଂ (ଆତ୍ମଦର୍ଶିନଂ) କର୍ମାଣି ନ ନିବଧ୍ନନ୍ତି । ୪୧ ।

**ଅର୍ଥ**– [ତେଣୁ ଜ୍ଞାନବାନ୍ କର୍ମନିରତ ଯୋଗୀର କର୍ମବନ୍ଧନ ନାହିଁ ବୋଲି ଯୁଦ୍ଧ କର୍ମରେ ପ୍ରବର୍ତ୍ତାଇ ଦୁଇ ଶ୍ଳୋକରେ ଶେଷ କରୁଚନ୍ତି ।] ହେ ଧନଂଜୟ, ଆତ୍ମା ଅଛି କି ନାହିଁ, କର୍ମ କରିବା ଉଚିତ କି ଛାଡ଼ିବା ଉଚିତ, ଏ ସବୁ ସନ୍ଦେହ ଜ୍ଞାନରେ ତୁଟାଇ, କର୍ମଯୋଗରେ ଲାଗି ରହି, କର୍ମ ସବୁ ଈଶ୍ୱରଙ୍କର ବୋଲି ଈଶ୍ୱରଙ୍କ ଉପରେ ପକାଇ ଦେଇ, ଆତ୍ମତତ୍ତ୍ୱରେ ଠିକ୍ ରହିଥିବା ଯୋଗୀକୁ କର୍ମ ବାନ୍ଧେ ନାହିଁ । (ଅର୍ଥାତ୍, କର୍ମ ତାର ବନ୍ଧନ ହୁଏ ନାହିଁ) । ୪୧ ।

**ତସ୍ମାଦଜ୍ଞାନସମ୍ଭୂତଂ ହୃତ୍ସ୍ଥଂ ଜ୍ଞାନାସିନାତ୍ମନଃ ।**
**ଛିତ୍ତ୍ୱୈନଂ ସଂଶୟଂ ଯୋଗମାତିଷ୍ଠୋତ୍ତିଷ୍ଠ ଭାରତ ।୪୨।**

**ଅନ୍ୱୟ**—ତସ୍ମାତ୍ ଭାରତ, ଅଜ୍ଞାନସମ୍ଭୂତଂ ଆତ୍ମନଃ ହୃତ୍ସ୍ଥଂ ସଂଶୟଂ ଜ୍ଞାନାସିନା ଛିତ୍ତ୍ୱା, ଯୋଗଂ ଆତିଷ୍ଠ; ଉତ୍ତିଷ୍ଠ । ୪୨ ।

**ଟୀକା**—ତସ୍ମାତ୍ ହେ ଭାରତ, ଅଜ୍ଞାନସମ୍ଭୂତଂ (ଅଜ୍ଞାନହେତୁକଂ) ଆତ୍ମନଃ (ତବ ନିଜସ୍ୟ) ହୃତ୍ସ୍ଥଂ (ହୃଦି ସ୍ଥିତଂ) [ଧ୍ରୁବଂ କାର୍ଯ୍ୟଂ ବା ନ ବା ଇତି] ସଂଶୟଂ ଜ୍ଞାନାସିନା (ଜ୍ଞାନରୂପଖଡ୍ଗେନ) ଛିତ୍ତ୍ୱା, [କର୍ମସୁ] ଯୋଗଂ (କର୍ମାଚରଣମେବ ମୋକ୍ଷସାଧନମିତି ସ୍ୱଧର୍ମାଚରଣେ ନିରତଃ ସନ୍ ଈଶ୍ୱରାର୍ପଣବୁଦ୍ଧ୍ୟା ଫଳାଫଳାଦିଷୁ ସମତ୍ୱଂ) ଆତିଷ୍ଠ (ଆଶ୍ରୟ); [ଯୁଦ୍ଧାୟ ଉତ୍ତିଷ୍ଠ] । ୪୨ ।

**ଅର୍ଥ**—ତେଣୁ ହେ ଭାରତ, ଅଜ୍ଞାନରୁ ହେଉଥିବା ଆପଣା ହୃଦୟର ସଂଶୟକୁ ଜ୍ଞାନରୂପ ଖଣ୍ଡାରେ ତୁଟାଇ ଯୋଗବାଟ ଧର; ଯୁଦ୍ଧକୁ ଠିଆ ହୋ । ୪୨ ।

ବ୍ୟାଖ୍ୟା ସୂଚନା—ସଂଶୟ=ଏଠାରେ ଯୁଦ୍ଧ କରିବା ଠିକ୍ କି ନୁହେଁ, ଏହି ସନ୍ଦେହ । ଯୋଗ=ମୁକ୍ତିର ସାଧନ ବୋଲି ଯଥାବିହିତଭାବରେ ଯଜ୍ଞବୁଦ୍ଧିରେ କର୍ମରେ ଲାଗି ରହିବା; ଜ୍ଞାନ ଓ ଭକ୍ତିର ସହିତ ଈଶ୍ୱରଙ୍କ କର୍ମ ବୋଲି ତହିଁରେ ନିଜକୁ ଲଗାଇବା । ୩୨ ।



# ପଞ୍ଚମ ଅଧ୍ୟାୟ

## କର୍ମ-ସଂନ୍ୟାସ-ଯୋଗ

### ଅଧ୍ୟାୟ ପ୍ରବେଶ—

ଅର୍ଜୁନଙ୍କର ସେଇ ଦୃଢ଼ ପ୍ରଚଳିତ ଧାରଣା—ନିର୍ଗୁଣ, ନିର୍ବିକଳ୍ପ ବ୍ରହ୍ମ ଓ ଆତ୍ମାର ଜ୍ଞାନ ବା ଧାରଣା ହୋଇଗଲେ ଆଉ କର୍ମର ପ୍ରୟୋଜନ କଣ ? ଭଗବାନ୍ ନାନା ଭାବରେ ବୁଝାଇ ଗଲେ, ଯୋଗରେ କର୍ମ କରିବାକୁ ହେବ । ଜ୍ଞାନରେ କର୍ମ ଧ୍ୱଂସ ହୁଏ ସତ, ମାତ୍ର ତାର ଅର୍ଥ ନୁହେଁ ଯେ, ଜ୍ଞାନୀ କର୍ମ ଛାଡ଼ିଦିଏ । ତାହାର ଅର୍ଥ, ଆତ୍ମଜ୍ଞାନରେ ଠିକ୍ ନ ରହି କର୍ମ କଲେ କର୍ମରେ ପାପ ଲାଗେ, କର୍ମର ଆସକ୍ତି ଛୁଟେ ନାଇ । ଏହି ଆସକ୍ତି ଛୁଟାଇଲେଇ ସନ୍ୟାସ ହେଲା । ତେବେ ଯେଉଁ କର୍ମରେ ଆସକ୍ତିର ଦୋଷ ଅଛି, ସେଇ କର୍ମରୁ ଆସକ୍ତିକୁ ଛାଡ଼ି ସନ୍ୟାସ କରିବା କଥା ଯେବେ ଠିକ୍ ହେଲା, ତେବେ କର୍ମ-ଯୋଗ ବା କି ଦରକାର ? କାଦୁଅକୁ ଯିବ କାହିଁ, ଗୋଡ଼ ଧୋଇବ କାହିଁ ? କର୍ମ ଛାଡ଼ିଦେବାର ଯେ ପ୍ରସିଦ୍ଧ ପନ୍ଥା ଅଛି, ସେଥିରେ ତ ଆସକ୍ତିର ସମ୍ଭାବନାଇ ନାଇ । ତେବେ, ସନ୍ୟାସ କଥା କହି, ଫେର୍ ଯୋଗର କଥା ଆଉ କାହିଁକି କହୁଚ ? ଦୁଇଟି ତ ଅଲଗା କଥା ହେଲା । ଏ ଦୁଇଟିରେ ଯେଉଁଟି ଭଲ ତା କହ, ବୋଲି ଅର୍ଜୁନ ପଚାରିଲେ । ଭଗବାନ୍ କହିଲେ, ସନ୍ୟାସ ଓ କର୍ମଯୋଗ ଦୁହେଁ ମୁକ୍ତିର ସାଧନା ହେଲେହେଁ, କର୍ମଯୋଗ ଭଲ; କର୍ମଯୋଗୀ ଯେ ନିତ୍ୟସନ୍ୟାସୀ, ସେ ସବୁବେଳେ ଫଳତ୍ୟାଗରୂପ ସନ୍ୟାସଭାବରେ ଜାଗ୍ରତ ଥାଏ; ଏଣୁ ସହଜରେ ମୁକ୍ତି ପାଏ । ସେଥିପାଇଁ ସାଂଖ୍ୟ ସାଙ୍ଗେ ଯୋଗ ମିଶାଇ ନେବାକୁ ହୁଏ । ସାଂଖ୍ୟ ଯାହା, ଯୋଗ ସେଇୟା ବୋଲି ଧରିବାକୁ ହୁଏ—ଅର୍ଥାତ୍ ଜ୍ଞାନରେ ଠିକ୍ ରହି କର୍ମ କରିବାକୁ ହୁଏ । ଏହାହିଁ କର୍ମରେ ରହି ସନ୍ୟାସ, ବା କର୍ମସନ୍ୟାସ, ଏହାହିଁ ଯଥାର୍ଥ କର୍ମଯୋଗ । ପୁଣି କର୍ମ ଛାଡ଼ି ଏକା ସନ୍ୟାସ ପାଇବା ଯେ କଷ୍ଟ । ଜ୍ଞାନର ସହିତ କର୍ମରେ ଲଗି ରହିଲେ ସବୁ ଭୂତରେ ସମଦୃଷ୍ଟି ହୁଏ, କର୍ମରେ ଅନାସକ୍ତି ଆସେ ଓ ଶାନ୍ତି ମିଳେ । ଅକର୍ମୀ ବା ଅଯୁକ୍ତ ହୋଇ ଜ୍ଞାନ ଖୋଜି ବସିଲେ ଲୋକ କାମରେ ପଡ଼ିଯାଇପାରେ । ଅନ୍ତର ବା ଈଶ୍ୱର ଯେ କର୍ମଯୋଗୀ । କର୍ମ, ଫଳ, ଫଳରେ କର୍ମର ଯୋଗ, ସବୁ ତାଙ୍କର ସ୍ୱଭାବ ବା ପ୍ରକୃତିରେ ହୋଇ ଯାଉଚି; କିନ୍ତୁ ସେ କାହିଁରେ ଲିପ୍ତ ନୁହନ୍ତି । ତାଙ୍କର ଜ୍ଞାନ ଧର, କର୍ମ ଛାଡ଼ିବା ବା କପରି ? ତାଙ୍କର ଜ୍ଞାନ ଆସିଲେ, ତାଙ୍କର ପରି ସବୁଠି ସମବୁଦ୍ଧି ହୋଇ ପ୍ରକୃତି ବା ଶରୀରରେ କାମ କରିଯିବାର ତ କଥା । ବ୍ରହ୍ମ କର୍ମହୀନ ନୁହନ୍ତି;

ଅନାସକ୍ତ । ସେଇ ବ୍ରହ୍ମରେ ଠିକ୍ ରହି କର୍ମ କଲେ ଅକ୍ଷୟ ଆନନ୍ଦ ମିଳେ । ଇନ୍ଦ୍ରିୟଭୋଗରେ ସୁଖ କ୍ଷଣିକ ଓ ଅନିତ୍ୟ; କିନ୍ତୁ ଶରୀର ଧରି କର୍ମ କରି ଶରୀର ନ ଥିଲା ପରି ଅନାସକ୍ତ ରହିବା ହିଁ ତ ପ୍ରକୃତ ବ୍ରହ୍ମ ହେବା । ଧ୍ୟାନଯୋଗ ଯେ ଦରକାର, ତାହା ଏହି ବ୍ରହ୍ମଭାବ ଠିକ୍ ରଖିବା ପାଇଁ । ସେ ବ୍ରହ୍ମ କିଏ, ତା କହି ଶେଷ କରୁଚନ୍ତି । ସେ ବ୍ରହ୍ମ, ସମସ୍ତ ଯଜ୍ଞ ବା କର୍ମସ୍ୱର୍ଗଙ୍କୁ ତପ (ବା ମୋକ୍ଷପାଇଁ ପ୍ରଯତ୍ନ) ବୋଲି ଗ୍ରହଣ କରନ୍ତି । ସେଇ ସର୍ବଲୋକ ମହେଶ୍ୱର, ଅର୍ଥାତ୍ ବିଶ୍ୱକର୍ମର ନିୟାମକ; ସେଇ ପୁଣି ସର୍ବଜ ସମାନ ହେବାରୁ ସମସ୍ତଙ୍କର ସୁହୃତ୍—ଏଇ ଜ୍ଞାନ ଦୃଢ଼ ହେଲେ ଶାନ୍ତି ମିଳେ । [କର୍ମଯୋଗ ବିନା କର୍ମ-ସନ୍ୟାସ ହୋଇ ନ ପାରେ । ବସ୍ତୁତଃ ଦୁହେଁ ଏକ—ମହାତ୍ମା ଗାନ୍ଧୀ । ]

ଅର୍ଜୁନ ଉବାଚ

**ସଂନ୍ୟାସଂ କର୍ମଣାଂ କୃଷ୍ଣ ପୁନର୍ଯୋଗଂ ଚ ଶଂସସି ।**
**ଯଚ୍ଛ୍ରେୟ ଏତୟୋରେକଂ ତନ୍ମେ ବ୍ରୂହି ସୁନିଶ୍ଚିତମ୍ । ୧ ।**

**ଅନ୍ୱୟ**—କୃଷ୍ଣ, କର୍ମଣାଂ ସନ୍ନ୍ୟାସଂ, ପୁନଃ ଯୋଗଂ ଚ ଶଂସସି । ଏତୟୋଃ ଯତ୍ ଏକଂ ଶ୍ରେୟଃ ତତ୍ ମେ ସୁନିଶ୍ଚିତଂ ବ୍ରୂହି । ୧ ।

**ଟୀକା**—ଅର୍ଜୁନଃ ଉବାଚ—ହେ କୃଷ୍ଣ, [ସର୍ବଂ କର୍ମାଖିଳଂ ଜ୍ଞାନେ ପରିସମାପ୍ୟତେ (୪.୩୩) ଇତ୍ୟାଦିନା] କର୍ମଣାଂ ସନ୍ୟାସଂ ( ତ୍ୟାଗଂ ), ପୁନଃ [ଯୋଗମାତିଷ୍ଠୋତ୍ତିଷ୍ଠ (୪.୪୨) ଇତି କର୍ମଣାଂ ] ଯୋଗଂ (ଆଚରଣଂ) ଚ ଶଂସସି (ସ୍ତୁତବସି) । ଏତୟୋଃ [ସନ୍ୟାସଯୋଗୟୋଃ] ଯତ୍ ଏକଂ ଶ୍ରେୟଃ (ପ୍ରଶସ୍ୟତରଂ) ତତ୍ ମେ (ମହ୍ୟଂ) ସୁନିଶ୍ଚିତଂ ବ୍ରୂହି । ୧ ।

**ଅର୍ଥ**—[ଜ୍ଞାନ ହେଲେ କର୍ମ ରହେ ନାହିଁ, (୪,୩୩,୩୬, ୩୭ ପ୍ରଭୃତି ଦେଖ]—ଏହା କୁହାଯାଇଚି । ପୁଣି ଯୋଗ ଧରି କର୍ମ କର ବୋଲି କୁହାଯାଇଚି (୪.୧୫, ୨୦; ୨୧, ୪୨ ପ୍ରଭୃତି ଓ ଦଶ୍ଚଲବଷଯୁକ ଶ୍ଳୋକମାନ ଦେଖ) । ଏ ସବୁ ଶୁଣି, କର୍ମ ଛାଡ଼ିବା ପନ୍ଥା ଧରିଲେ ତେବେ କ୍ଷତି କଣ ବୋଲି ବିଚାରି] ଅର୍ଜୁନ କହିଲେ— ହେ କୃଷ୍ଣ, କର୍ମର ସନ୍ୟାସ (ତ୍ୟାଗ) କୁ, ପୁଣି କର୍ମର ଯୋଗ (ଆଚରଣ) କୁ ଦେଖାଇ କଥା କହୁଚ । ଏ ଦୁଇଟିରୁ ଯେଉଁ ଗୋଟିକ ଭଲ, ତା ମୋତେ ଠିକ୍ କରି କହ । (୩.୧,୨ ମଧ୍ୟ ଦେଖ ) । ୧ ।

ଶ୍ରୀ ଭଗବାନୁବାଚ

**ସଂନ୍ୟାସଃ କର୍ମଯୋଗଶ୍ଚ ନିଃଶ୍ରେୟସକରାବୁଭୌ ।**
**ତୟୋସ୍ତୁ କର୍ମସଂନ୍ୟାସାତ୍ କର୍ମଯୋଗୋ ବିଶିଷ୍ୟତେ ।୨।**

**ଅନ୍ୱୟ**—ସନ୍ନ୍ୟାସଃ କର୍ମଯୋଗଃ ଚ ଉଭୌ ନିଃଶ୍ରେୟସକରୌ । ତୁ ତୟୋଃ କର୍ମ ସନ୍ନ୍ୟାସାତ୍ କର୍ମଯୋଗଃ ବିଶିଷ୍ୟତେ । ୨ ।

**ଟୀକା**—ଶ୍ରୀ ଭଗବାନ୍ ଉବାଚ—ସନ୍ନ୍ୟାସଃ (କର୍ମତ୍ୟାଗଃ) କର୍ମଯୋଗଃ (କର୍ମଣାଂ ଯଥାଚରଣଂ) ଚ ଉଭୌ ନିଃଶ୍ରେୟସକରୌ (ମୋକ୍ଷଦାୟକୌ) । [ଅପି] ତୁ ତୟୋଃ କର୍ମସନ୍ନ୍ୟାସାତ୍ କର୍ମଯୋଗଃ ବିଶିଷ୍ୟତେ (ଶ୍ରେୟସ୍ତ୍ୱେନ ନିର୍ଦ୍ଧାର୍ଯ୍ୟତେ) । ୨ ।

**ଅର୍ଥ**—[ଉତ୍ତରରେ] ଶ୍ରୀ ଭଗବାନ୍ କହିଲେ—କର୍ମତ୍ୟାଗ (ସନ୍ନ୍ୟାସ) ଓ କର୍ମଯୋଗ ଦୁହେଁ ନିଃଶ୍ରେୟସ (ଅର୍ଥାତ୍, ଶ୍ରେୟ ବା ମୋକ୍ଷ) ଲାଭ କରାଇଥାନ୍ତି । କିନ୍ତୁ ଦୁହିଙ୍କ ଭିତରେ କର୍ମର ସନ୍ନ୍ୟାସଠାରୁ କର୍ମଯୋଗ ବଡ଼ । ୨ ।

ବ୍ୟାଖ୍ୟା ସୂଚନା—କର୍ମ ଛାଡ଼ି ସନ୍ନ୍ୟାସ କରିବାରେ ଅଳସୁଆ ଓ ମିଥ୍ୟାଗ୍ରସ୍ତ ହୋଇଯିବାର ଓ ଖାଲି ଭେକ ଧରି ଭଣ୍ଡ ସନ୍ନ୍ୟାସୀ ହେଇଯିବାର ଆଶଙ୍କା ଅଛି । କିନ୍ତୁ ଫଳକଳ୍ପନାଦି ଆସକ୍ତି ଛାଡ଼ି, ଯେ ସର୍ବଦା 'ଯଜ୍ଞାର୍ଥ' କର୍ମରେ ଲାଗିଛି, ସେ କର୍ମଯୋଗୀର ଭଣ୍ଡ ହେବାର ଆଶଙ୍କା ନାହିଁ । ସେ ନିତ୍ୟସନ୍ନ୍ୟାସୀ ବୋଲି ପର ଶ୍ଳୋକରେ କୁହାଯାଉଛି । ୨ ।

**ଜ୍ଞେୟଃ ସ ନିତ୍ୟସଂନ୍ୟାସୀ ଯୋ ନ ଦ୍ୱେଷ୍ଟି ନ କାଙ୍କ୍ଷତି ।**
**ନିର୍ଦ୍ୱନ୍ଦ୍ୱୋ ହି ମହାବାହୋ ସୁଖଂ ବନ୍ଧାତ୍ ପ୍ରମୁଚ୍ୟତେ ।୩।**

**ଅନ୍ୱୟ**—ଯଃ ନ କାଙ୍କ୍ଷତି ନ ଦ୍ୱେଷ୍ଟି ସଃ ନିତ୍ୟସନ୍ନ୍ୟାସୀ ଜ୍ଞେୟଃ । ହି ମହାବାହୋ, ନିର୍ଦ୍ୱନ୍ଦ୍ୱଃ ବନ୍ଧାତ୍ ସୁଖଂ ପ୍ରମୁଚ୍ୟତେ । ୩ ।

**ଟୀକା**—[କଥଂ କର୍ମଯୋଗଃ ବିଶିଷ୍ୟତେ, ଇତ୍ୟାହ]—ଯଃ [କର୍ମଯୋଗୀ ଅସକ୍ତତ୍ୟାଗାତ୍ ସର୍ବଂ କର୍ମ କୁର୍ବନ୍ନପି] ନ କାଙ୍କ୍ଷତି (କାମୟତେ), ନ ଦ୍ୱେଷ୍ଟି (ବିରାଗାତ୍ ତ୍ୟକ୍ତୁମିଚ୍ଛତି) ସଃ ନିତ୍ୟସନ୍ନ୍ୟାସୀ ଜ୍ଞେୟଃ । ହି (ଯତଃ) ହେ ମହାବାହୋ, [ଏବଂଭୂତଃ, ନିତ୍ୟସନ୍ନ୍ୟାସୀ ଯୋଗୀ] ନିର୍ଦ୍ୱନ୍ଦ୍ୱଃ (ରାଗଦ୍ୱେଷାଦି-ଦ୍ୱନ୍ଦ୍ୱାତୀତଃ—କର୍ମଧ୍ୟାନସ୍ୟ ନ ଦ୍ୱନ୍ଦ୍ୱାବସରଃ ଅତଃ ତସ୍ମିନ୍ ନ ନିର୍ଦ୍ୱନ୍ଦ୍ୱତ୍ୱଂ ବାଚ୍ୟ—ଇତି ଗମ୍ୟଂ) [ସନ୍] ସୁଖଂ (ଅନାୟାସେନ, କର୍ମଠତ୍ୱାତ୍ ଆଳସ୍ୟାଦିଜନିତଭୟଂ ନୋ—ଇତି ଭାବଃ) ବନ୍ଧାତ୍ (ସଂସାରବନ୍ଧାତ୍) ପ୍ରମୁଚ୍ୟତେ ମୁକ୍ତୋ ଭବତି । ୩ ।

**ଅର୍ଥ**—[କାହିଁକି କର୍ମଯୋଗ ବଡ଼ ବୁଝାଉଛନ୍ତି]—[ସର୍ବଦା କର୍ମରେ ଲାଗିରହି ବି ଆସକ୍ତି ଛାଡ଼ିବା ହେତୁ] ଯେ ଲୋଡ଼େ ନାହିଁ, କି କାହିଁରେ ବିରିଡ଼େ ନାହିଁ, ସେ ନିତ୍ୟସନ୍ନ୍ୟାସୀ ବୋଲି ବୁଝିବାକୁ ହେବ । ହେ ମହାବାହୁ, କାହିଁକି ନା, [ସେ ଲୋଡ଼ିବା ଚିଡ଼ିବା ପ୍ରଭୃତି ଦ୍ୱନ୍ଦ୍ୱ ଛାଡ଼ି,] ନିର୍ଦ୍ୱନ୍ଦ୍ୱ ହୋଇ, ସହଜରେ ମୁକ୍ତ ପାଏ । (ଅର୍ଥାତ୍, ପ୍ରତି କର୍ମରେ ଦ୍ୱନ୍ଦ୍ୱ ବା ଆସକ୍ତି ଛାଡ଼ିବା ରୂପ ସନ୍ନ୍ୟାସ ଅଭ୍ୟାସରେ ଠିକ୍

ରହି ମୋକ୍ଷ ପ୍ରଯତ୍ନ କରୁଥିବାରୁ ତାର ଆଳସ୍ୟାଦିହେତୁରୁ ଆଉ କିଛି ବନ୍ଧନର ଭୟ ନ ଥାଏ । ତେଣୁ ସିଦ୍ଧି ସହଜ ହୁଏ) । ୩ ।

ବ୍ୟାଖ୍ୟା ସୂଚନା—କର୍ମ ଛାଡ଼ିବା ସନ୍ନ୍ୟାସୀ ସମ୍ବନ୍ଧରେ ନିର୍ଦ୍ୱନ୍ଦ୍ୱ ହେବା କଥା କୁହାଯାଇ ନ ପାରେ । ତା'ର କର୍ମ ନାଇ, ତେଣୁ ଦ୍ୱନ୍ଦ୍ୱ ବି ନାଇ । ସେ ଆଉ ନିର୍ଦ୍ୱନ୍ଦ୍ୱ କଣ ହେବ ? ନିର୍ଦ୍ୱନ୍ଦ୍ୱ ହେବାରେ ନିତ୍ୟ ତା ପ୍ରତି କର୍ମରେ ସନ୍ନ୍ୟାସ ବୁଦ୍ଧି ଲୋଡ଼ା । କର୍ମତ୍ୟାଗୀ ଥରେ ସନ୍ନ୍ୟାସ କରିଦେଇ ଏକାବେଳକେ ନିଶ୍ଚିନ୍ତ । ସେ ନିଷ୍କର୍ମା; ତେଣୁ ତାର ଇନ୍ଦ୍ରିୟସେବାରେ ପଡ଼ି ନଷ୍ଟ ହେବାର ଭୟ ଅଛି । ତାର ନିର୍ଦ୍ୱନ୍ଦ୍ୱ ହେବାକୁ ପ୍ରଯତ୍ନ କରିବାର ନାଇ । ତେଣୁ ସେ 'ନିତ୍ୟ ସନ୍ନ୍ୟାସୀ' ବା କାହୁଁ ହେବ ? ପୁଣି ଭୟ ଥିବାରୁ କର୍ମଯୋଗୀ ପରି ସହଜରେ ବନ୍ଧ ବା କିପରି ତୁଟାଇବ ? ବନ୍ଧ=କର୍ମବନ୍ଧନ, ବା ଜନ୍ମ-ମରଣ-ଜନ୍ମାନ୍ତରରୂପ ସଂସାରବନ୍ଧ । ୨.୩୯ ଟୀକା ଦେଖ ।

[କର୍ମର ତ୍ୟାଗ ଆଉ ସନ୍ନ୍ୟାସର ଖାସ୍ ଲକ୍ଷଣ ନୁହେ । ବରଂ ଦ୍ୱନ୍ଦ୍ୱାତୀତ ହେବ ହିଁ ସନ୍ନ୍ୟାସର ଖାସ୍ ଲକ୍ଷଣ । ଜଣେ କର୍ମ-କରୁଥାଇ ବି ସନ୍ନ୍ୟାସୀ ହୋଇପାରେ; ଆଉ ଜଣେ କର୍ମ କରୁ ନ ଥାଇ ବି ମିଥ୍ୟାଗ୍ରସ୍ତ ହୋଇପାରେ । ୩.୬ ଦେଖ—ମହାତ୍ମା ଗାନ୍ଧୀ] । ୩ ।

**ସାଂଖ୍ୟଯୋଗୌ ପୃଥଗ୍‌ବାଲାଃ ପ୍ରବଦନ୍ତି ନ ପଣ୍ଡିତାଃ ।**
**ଏକମପ୍ୟାସ୍ଥିତଃ ସମ୍ୟଗୁଭୟୋର୍ବିନ୍ଦତେ ଫଳମ୍ । ୪ ।**

**ଅନ୍ୱୟ**—ବାଳାଃ ନ ପଣ୍ଡିତାଃ ସାଂଖ୍ୟଯୋଗୌ ପୃଥକ୍ ପ୍ରବଦନ୍ତି । ଏକଂ ଅପି ଆସ୍ଥିତଃ ଉଭୟୋଃ ଫଳଂ ବିନ୍ଦତେ । ୪ ।

**ଟୀକା**—[ଅତଏବ ସାଂଖ୍ୟେ ତ୍ୟାଗଃ, ଯୋଗେ କର୍ମଣି ଆତ୍ମନୟୋଗଶ୍ଚ—ଇତି ଭେଦଃ ତତ୍ତ୍ୱତଃ ନାସ୍ତୀତ୍ୟାହ]—ବାଲାଃ ( ଅଜ୍ଞାଃ ) ନ [ ତୁ ] ପଣ୍ଡିତାଃ (ଜ୍ଞାନବନ୍ତଃ) ସାଂଖ୍ୟଯୋଗୌ ପୃଥକ୍ (ଭିନ୍ନୌ) ପ୍ରବଦନ୍ତି । [ଏତୟୋଃ] ଏକଂ ଅପି ଆସ୍ଥିତଃ (ଆଶ୍ରିତଃ) [ସନ୍ ଜନଃ] ଉଭୟୋଃ ଫଳଂ ବିନ୍ଦତେ (ଲଭତେ) । ୪ ।

**ଅର୍ଥ**—[ଅତଏବ ସାଂଖ୍ୟରେ ତ୍ୟାଗ ଓ ଯୋଗରେ ଆଚରଣ—ଏପରି ପ୍ରକୃତରେ କିଛି ଭେଦ ନାଇ ବୋଲି କହୁଛନ୍ତି]—ନ ଜାଣିବା ଲୋକେ ସାଂଖ୍ୟ ଓ ଯୋଗକୁ ଅଲଗା ଅଲଗା ବୋଲି କହନ୍ତି । ଜାଣିବା ଲୋକେ ସେପରି କହନ୍ତି ନାଇ । ବସ୍ତୁତଃ ଏଥିରୁ ଗୋଟିକୁ ଧଇଲେ ଦୁଇଟିର କାମ ହୋଇଯାଏ । ୪ ।

ବ୍ୟାଖ୍ୟା ସୂଚନା—ଆତ୍ମଜ୍ଞାନ ଆସିଗଲେ, ପରମାତ୍ମାଙ୍କ ଆଦର୍ଶରେ ଲୋକ ଲୋକସଂଗ୍ରହ ପାଇଁ ହେଲେ କର୍ମ କରେ । ତା ନ ହେଲେ ପ୍ରକୃତ ଆତ୍ମଜ୍ଞାନର ଫଳ

ହୋଇ ନାଇ । ପୁଣି ଅନାସକ୍ତରେ କର୍ମଯୋଗ କର ମଧ୍ୟ ସିଦ୍ଧି ସଙ୍ଗେ ସଙ୍ଗେ ଲୋକ ସେଇ ଆତ୍ମଜ୍ଞାନରେ ହିଁ ପ୍ରତିଷ୍ଠିତ ହୁଏ । ୩.୨୨, ୨୫ ଓ ୪.୩୮ ଦେଖ । କର୍ମ ବରବର ଛାଡ଼ିଦେବା କୌଣସି ଜ୍ଞାନର ଫଳ ନୁହେ । ୧୮.୭ ଦେଖ ।୪।

**ଯତ୍ ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ ତଦ୍‌ଯୋଗୈରପି ଗମ୍ୟତେ**
**ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି ସ ପଶ୍ୟତି । ୫ ।**

**ଅନ୍ୱୟ**—ସାଂଖ୍ୟୈଃ ଯତ୍ ସ୍ଥାନଂ ପ୍ରାପ୍ୟତେ, ଯୋଗୈଃ ଅପି ତତ୍ ଗମ୍ୟତେ ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି ସ ପଶ୍ୟତି । ୫ ।

**ଟୀକା**—[ତତ୍ର ସ୍ପୁଷ୍ଟତରଂ କଥ୍ୟତେ]—ସାଂଖ୍ୟୈଃ ଯତ୍ ସ୍ଥାନଂ (ସ୍ଥିତିଃ) ପ୍ରାପ୍ୟତେ, ଯୋଗୈଃ ଅପି ତତ୍ [ସ୍ଥାନଂ] ଗମ୍ୟତେ । ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି, ସଃ [ଏବ ଯଥାର୍ଥତଃ] ପଶ୍ୟତି । ୫ ।

**ଅର୍ଥ**—[ସେଇ କଥା ପୁଣି ଭଲକରି କହୁଚନ୍ତି] ସାଂଖ୍ୟବାଟେ ଲୋକ ଯେଉଁ ଅବସ୍ଥାକୁ ଆସେ, ଯୋଗ ବାଟେ ସେଇ ଅବସ୍ଥା (ସ୍ଥିତି)ରେ ପହଞ୍ଚେ । ଏଇପରି ଯେ ସାଂଖ୍ୟ ଓ ଯୋଗକୁ ଦେଖେ, ସେଇ ଏକା ଠିକ୍ ଦେଖେ । ୫ ।

ବ୍ୟାଖ୍ୟା ସୂଚନା—ଜ୍ଞାନୀ ନିଜର ବିଶେଷ ସାଧନା ପାଇଁ ନ ହେଉ ପଛକେ ଲୋକସଂଗ୍ରହ ପାଇଁ ହେଲେହେଁ ଯେପରି କର୍ମରେ ଲାଗେ, କର୍ମଯୋଗ ଧରିଥିବା ଲୋକ ଜ୍ଞାନରେ କର୍ମକୁ ଠିକ୍ ରଖି ମଧ୍ୟ ସେଇପରି ଅନାସକ୍ତ ହୋଇ କର୍ମରେ ଲାଗେ । ବ୍ରହ୍ମଧାରଣାରେ କର୍ମ ଅନିବାର୍ଯ୍ୟ; କର୍ମସାଧନାରେ ବ୍ରହ୍ମଜ୍ଞାନ ହିଁ ଉଦ୍ଦେଶ୍ୟ । କର୍ମ ଛାଡ଼ିବା କାହିଁରେ ଠିକ୍ ନୁହେ । ପୁଣି ଜ୍ଞାନରେ ଆଗ ସନ୍ନ୍ୟାସ ଧରି କର୍ମକୁ ଆସିବାର ଚେଷ୍ଟା ମଧ୍ୟ ଠିକ୍ ନୁହେ । କର୍ମ କରି ସନ୍ନ୍ୟାସ ଓ ଜ୍ଞାନକୁ ଉଠିବା ସହଜ ବୋଲି ପର ଶ୍ଳୋକରେ କହୁଚନ୍ତି । ୫ ।

**ସନ୍ନ୍ୟାସସ୍ତୁ ମହାବାହୋ ଦୁଃଖମାପ୍ତୁମଯୋଗତଃ ।**
**ଯୋଗଯୁକ୍ତୋ ମୁନିର୍ବ୍ରହ୍ମ ନ ଚିରେଣାଧିଗଚ୍ଛତି । ୬ ।**

**ଅନ୍ୱୟ**—ମହାବାହୋ ! ଅଯୋଗତଃ ତୁ ସନ୍ନ୍ୟାସଃ, ଦୁଃଖଂ-ଆପ୍ତୁଂ । ଯୋଗଯୁକ୍ତଃ ମୁନିଃ ନ ଚିରେଣ ବ୍ରହ୍ମ ଅଧିଗଚ୍ଛତି । ୬ ।

**ଟୀକା**—[ଅପି] ତୁ ହେ ମହାବାହୋ, ଅଯୋଗତଃ (କର୍ମସାଧନଂ ବିନା) [ଯଃ] ସନ୍ନ୍ୟାସଃ, [ସଃ] ଦୁଃଖଂ ଆପ୍ତୁଂ (ପ୍ରାପ୍ତ୍ୟୈ) [ସ୍ୟାତ୍] । (ଅଳସ୍ୟାଦି ସମ୍ଭାବନୟା କ୍ଲେଶସ୍ୟ କାରଣଂ ଇତି ଭାବଃ) । [କିଂ ତୁ] ଯୋଗଯୁକ୍ତଃ (କର୍ମଯୋଗପରଃ) ମୁନିଃ (ଏକୋତାନିଷ୍ଠଃ ଯୋଗୀ) ନ ଚିରେଣ (ଅଚିରାତ୍, ଶୀଘ୍ରଂ, ସୁଖେନ ଇତି ଭାବଃ) ବ୍ରହ୍ମ ଅଧିଗଚ୍ଛତି (ଜାନାତି) । ୬ ।

**ଅର୍ଥ**—ପୁଣି ହେ ମହାବାହୁ, କର୍ମସାଧନା ( ଯୋଗ ) ବିନା ସନ୍ନ୍ୟାସରେ ହୁଏତ ଖାଲି ଦୁଃଖ ପାଇବାର ସାର ହୁଏ । (ବିନା ଯୋଗରେ ଖାଲି ଜ୍ଞାନନିଷ୍ଠା ହାସଲ କରି ନେବାକୁ ବସିଲେ ସାଧାରଣତଃ ଆଳସ୍ୟ, ମିଥ୍ୟାଚାର ପ୍ରଭୃତି ଦୁଃଖହିଁ ମିଳେ; ସେଥିରେ ସନ୍ନ୍ୟାସ ଆସେ ନାହିଁ) । କିନ୍ତୁ ଏକାଗ୍ରନିଷ୍ଠ ଲୋକ କର୍ମଯୋଗରେ ଲାଗିଲେ ଶୀଘ୍ର ଶୀଘ୍ର ବ୍ରହ୍ମଜ୍ଞାନରେ ପହଞ୍ଚିଯାଏ । ୬ ।

ବ୍ୟାଖ୍ୟା ସୂଚନା—ଏଠାରେ ସନ୍ନ୍ୟାସ=କର୍ମ ଛାଡ଼ିବା । କର୍ମ ଛାଡ଼ିଦେଇ ବ୍ରହ୍ମଜ୍ଞାନ ଖୋଜିବା ଠିକ୍ ନୁହେଁ; ନିଷ୍କାମ କର୍ମସାଧନାରେ ବ୍ରହ୍ମଜ୍ଞାନ ମିଳିବାକୁ ହେବ । ସେଇ କାହିଁକି ଠିକ୍ ବାଟ—୫.୧୨ ଦେଖ । କିମ୍ବା ଏଠାରେ ସାଂଖ୍ୟ ସନ୍ନ୍ୟାସର ସାଧନପ୍ରଣାଳୀ ପ୍ରତି ଲକ୍ଷ୍ୟ ଅଛି । କର୍ମସାଧନାରେ ଚିତ୍ତଶୁଦ୍ଧି କରି, ପରେ ସନ୍ନ୍ୟାସ ନେବାକୁ ହୁଏ । ତେବେ ସେ କର୍ମକୁ ବରାବର ଛାଡ଼ିଦେବା କି ଦରକାର ? ସେଥିରେ ଲାଗିରହିବା ପନ୍ଥା ତ ବେଶି ସୁଗମ । ୬ ।

**ଯୋଗଯୁକ୍ତୋ ବିଶୁଦ୍ଧାତ୍ମା ବିଜିତାତ୍ମା ଜିତେନ୍ଦ୍ରିୟଃ ।**
**ସର୍ବଭୂତାତ୍ମଭୂତାତ୍ମା କୁର୍ବନ୍ନପି ନ ଲିପ୍ୟତେ ।୭।**

**ଅନ୍ୱୟ**—ଯୋଗଯୁକ୍ତଃ, ବିଶୁଦ୍ଧାତ୍ମା, ବିଜିତାତ୍ମା, ଜିତେନ୍ଦ୍ରିୟଃ, ସର୍ବଭୂତାତ୍ମଭୂତାତ୍ମା କୁର୍ବନ୍ ଅପି ନ ଲିପ୍ୟତେ । ୭ ।

**ଟୀକା**—[ ତଂ ଯୋଗଯୁକ୍ତଂ ବର୍ଣ୍ଣୟତି ]—[ ସଃ ଏବ ] ଯୋଗଯୁକ୍ତଃ, ବିଶୁଦ୍ଧାତ୍ମା (ନିର୍ମଳହୃଦୟଃ) ବିଜିତାତ୍ମା(ସ୍ୱାୟତ୍ତମନାଃ) ଜିତେନ୍ଦ୍ରିୟଃ (ବଶୀକୃତେନ୍ଦ୍ରିୟଃ) ସର୍ବଭୂତାତ୍ମଭୂତାତ୍ମା (ସର୍ବଭୂତାନାଂ ଯଃ ଆତ୍ମା, ତଦ୍‌ଭୂତଃ ଆତ୍ମା ଯସ୍ୟ ସଃ, ନିଜାତ୍ମୌପମ୍ୟେନ ସର୍ବଜ୍ଞାନୁଭବନ୍) [ସନ୍ କର୍ମାଣି] କୁର୍ବନ୍ (ଆଚରନ୍) ଅପି ନ ଲିପ୍ୟତେ (କର୍ମଣା ବଧ୍ୟତେ) । ୭ ।

**ଅର୍ଥ**—[ସେଇ ଯୋଗଯୁକ୍ତଙ୍କ ଚିହ୍ନାଇ କହୁଚନ୍ତି]—ସେଇ ଯୋଗଯୁକ୍ତ ବ୍ୟକ୍ତି ହୃଦୟଟିକୁ ନିର୍ମଳ କରି, ମନ ଜିଣି ଓ ଇନ୍ଦ୍ରିୟ ବଶ କରି, ସବୁ ପ୍ରାଣୀଠାରେ ନିଜର ଆତ୍ମା ଅନୁଭବ କରି, କର୍ମ କରୁଥାଇ ବି, ସେଥିରେ ଲିପ୍ତ ହୁଏ ନାହିଁ (ଅଲଗା ଥାଏ) । ୭ ।

ବ୍ୟାଖ୍ୟା ସୂଚନା—ଈଶ୍ୱର ଆତ୍ମା ବ୍ରହ୍ମ, ବିଶ୍ୱ କର୍ମମୟ; ସେଇ ବିଶ୍ୱକର୍ମରେ ହିଁ ନିଜର କର୍ମ ଓ ସେ ବିଶ୍ୱାତ୍ମାରେ ହିଁ ନିଜର ଜୀବଭୂତ ଆତ୍ମା ଦେଖିବା କର୍ମଯୋଗୀ ପକ୍ଷରେ ସ୍ୱାଭାବିକ ଓ ସହଜ; ତେଣୁ ତାର ସର୍ବଭୂତରେ ଆତ୍ମଭାବ, ଅର୍ଥାତ୍ ନିଜର ଦେହ ଓ ଆତ୍ମା ତୁଳନାରେ ନିଜେ ଯାହା, ସବୁ ସେହିପରି, ଏଇ ଭାବ ସହଜରେ ହୁଏ । ଏଠାରେ ବୁଝିବା ଠିକ୍ ନୁହେ ଯେ, ଯେ ନିଜେ ଜ୍ଞାନୀ ବୋଲି

ସବୁ ପ୍ରାଣୀରେ ଅନାସକ୍ତ ଓ ଦ୍ୱନ୍ଦ୍ୱହୀନଭାବ ଦେଖେ ଓ ତାହାର ସୁଖ ଦୁଃଖକୁ ଖାତିର କରେ ନାଇ । ଈଶ୍ୱର ନିଜେ ଲିପ୍ତ ନୁହନ୍ତି, ତଥାପି ପ୍ରାଣୀଙ୍କର ସୁଖ ଦୁଃଖ ପ୍ରଭୃତିର ବିଧାନ ଓ ପାଳନ କରନ୍ତି । ଜ୍ଞାନୀ ଲୋକସଂଗ୍ରହ ପାଇଁ ହେଲେ ବି ସେହି ଅନୁକ୍ରମେ ଆଚରଣ କରିବ । ତେଣୁ ତାହାର ଦୟା, ସେବା ପ୍ରଭୃତି ପ୍ରକାଶ ପାଇବା ସ୍ୱାଭାବିକ । ୭ ।

**ନୈବ କିଂଚିତ କରୋମୀତି ଯୁକ୍ତୋ ମନ୍ୟେତ ତତ୍ତ୍ୱବିତ୍ ।**
**ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ ଜିଘ୍ରନ୍ନଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍ ।୮।**
**ପ୍ରଲପନ୍ ବିସୃଜନ୍ ଗୃହ୍ଣନ୍ନୁନ୍ମିଷନ୍ନିମିଷନ୍ନପି ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତ ଇତି ଧାରୟନ୍ ।୯।**

**ଅନ୍ୱୟ**—ତତ୍ତ୍ୱବିତ୍ ଯୁକ୍ତଃ, ଦର୍ଶନ୍, ଶୃଣ୍ୱନ୍, ସ୍ପୃଶନ୍, ଜିଘ୍ରନ୍, ଅଶ୍ନନ୍, ଗଚ୍ଛନ୍, ସ୍ୱପନ୍ ଶ୍ୱସନ୍, ପ୍ରଲପନ୍, ବିସୃଜନ୍, ଗୃହ୍ଣନ୍, ଉନ୍ମିଷନ୍, ନିମିଷନ୍ ଅପି ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତେ ଇତି ଧାରୟନ୍ "ନୈବ କିଂଚିତ୍ କରୋମି" ଇତି ମନ୍ୟତେ । ୮-୯ ।

**ଟୀକା**—[ କୁର୍ବନ୍ ଅପି କଥଂ ନ ଲିପ୍ୟତେ ଇତି ଦର୍ଶୟତି ଚତୁର୍ଭିଃ ]—ତତ୍ତ୍ୱବିତ୍ (ଆତ୍ମଜ୍ଞଃ) ଯୁକ୍ତଃ (ଯୋଗୀ) ପଶ୍ୟନ୍, ଶୃଣ୍ୱନ୍, ସ୍ପୃଶନ୍, ଜିଘ୍ରନ୍, ଅଶ୍ନନ୍, ଗଚ୍ଛନ୍, ସ୍ୱପନ୍, ଶ୍ୱସନ୍, ପ୍ରଲପନ୍, ବିସୃଜନ୍, ଗୃହ୍ଣନ୍, ଉନ୍ମିଷନ୍, ନିମିଷନ୍— [ଏବ ସର୍ବକର୍ମାଣି କୁର୍ବନ୍] ଅପି ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଷୁ ( ବିଷୟେଷୁ ) ବର୍ତ୍ତନ୍ତେ ଇତି ଧାରୟନ୍ ( ବୁଦ୍ଧ୍ୟା ନିଶ୍ଚିନ୍ୱନ୍ ) "ନ ଏବ କିଞ୍ଚିତ୍ କରୋମି" ଇତି ମନ୍ୟେତ । ୮-୯ ।

**ଅର୍ଥ**—[କିଛି ବି କିପରି ଲାଗେ ନାହିଁ, ଏହା ଚାରି ଶ୍ଳୋକରେ ଦେଖାଇ ଦେଉଛନ୍ତି]—ଆତ୍ମଜ୍ଞାନୀ ଯୋଗୀ ଦେଖି, ଶୁଣି, ଛୁଇଁ, ଶୁଙ୍ଘି, ଖାଇ, ଯାଇ, ଶୋଇ, ନିଃଶ୍ୱାସ ଗ୍ରହଣ କରି, ଗପି, ତ୍ୟାଗ (ହଗି, ମୁତି), ନେଇ, ଆଖି ଫିଟାଇ, ଆଖି ବୁଜି, (ଅର୍ଥାତ୍ ଏହିପରି ସବୁ ଇନ୍ଦ୍ରିୟ ଲଗାଇ କାମଯାକ କରି) ବି ଇନ୍ଦ୍ରିୟମାନେ ତାଙ୍କ ନିଜ କାମରେ ଲାଗିଛନ୍ତି ବୋଲି ଧାରଣା କରି, 'ମୁଁ କିଛି କରୁ ନାଇ' ବୋଲି ବୁଝେ । ୮-୯ ।

ବ୍ୟାଖ୍ୟା ସୂଚନା—ଅଭିମାନ ଥିବା ଯାକ ଏପରି ଅଲିପ୍ତ ସ୍ଥିତି ମିଳେ ନାଇ । ପୁଣି ବିଷୟାସକ୍ତ ଲୋକ "ଇନ୍ଦ୍ରିୟ ତାଙ୍କ କାମ କରୁଛନ୍ତି, ମୁଁ ବିଷୟ ଭୋଗ କରୁ ନାଇ" ବୋଲି କହି ଖସିଯାଇ ପାରିବ ନାଇ । ଏପରି ଅନର୍ଥ (ଖରାପ ଅର୍ଥ) କରିବାବାଲା ଗୀତା ବୁଝେ ନାଇ, କି ଧର୍ମ ବି ଜାଣେ ନାଇ । ଏଇ କଥାକୁ ତଳ ଶ୍ଳୋକ ସ୍ପଷ୍ଟ କରୁଛି—ମହାତ୍ମା ଗାନ୍ଧୀ । ୮-୯ ।

**ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ ।**
**ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା ।୧୦।**

**ଅନ୍ୱୟ**—ଯଃ ସଙ୍ଗଂ ତ୍ୟକ୍ତ୍ୱା କର୍ମାଣି ବ୍ରହ୍ମଣି ଆଧାୟ କରୋତି, ଅମ୍ଭସା ପଦ୍ମପତ୍ରଂ ଇବ ପାପେନ ସଃ ନ ଲିପ୍ୟତେ ।୧୦।

**ଟୀକା**—ଯଃ ସଙ୍ଗଂ (ଆସକ୍ତିଂ) ତ୍ୟକ୍ତ୍ୱା, କର୍ମାଣି ବ୍ରହ୍ମଣି ଆଧାୟ (ସମର୍ପ୍ୟ—ବ୍ରହ୍ମଣଃ ଏବ ନାଇତି ମତ୍ୱା ଯଜ୍ଞେନେତି ଭାବଃ) କରୋତି (ଆଚରତି), ଅମ୍ଭସା (ଜଲେନ) ପଦ୍ମପତ୍ରଂ ଇବ ପାପେନ ସଃ ନ ଲିପ୍ୟତେ ।୧୦।

**ଅର୍ଥ**—ଯେ ଆସକ୍ତି ଛାଡ଼ି କର୍ମ ସବୁ ବ୍ରହ୍ମର ବୋଲି (ବା ଈଶ୍ୱରଙ୍କର ବୋଲି) କରିଯାଏ, [ଜଳ ସବୁବେଳେ ପଦ୍ମପତ୍ରରେ ଲାଗୁଥିଲେହେଁ, ସେହି] ଜଳରେ ପଦ୍ମପତ୍ର ଲିପ୍ତ ନ ହେଲା ପରି ପାପରେ ସେ ଲିପ୍ତ ହୁଏ ନାହିଁ ।୧୦।

**କାୟେନ ମନସା ବୁଦ୍ଧ୍ୟା କେବଲୈରିନ୍ଦ୍ରିୟୈରପି ।**
**ଯୋଗିନଃ କର୍ମ କୁର୍ବନ୍ତି ସଙ୍ଗଂ ତ୍ୟକ୍ତ୍ୱାତ୍ମଶୁଦ୍ଧୟେ ।୧୧।**

**ଅନ୍ୱୟ**—ଯୋଗିନଃ ସଙ୍ଗଂ ତ୍ୟକ୍ତ୍ୱା ଆତ୍ମଶୁଦ୍ଧୟେ କାୟେନ୍, ମନସା, ବୁଦ୍ଧ୍ୟା, କେବଲୈଃ ଇନ୍ଦ୍ରିୟୈଃ ଅପି କର୍ମ କୁର୍ବନ୍ତି ।୧୧।

**ଟୀକା**—ଯୋଗିନଃ ସଙ୍ଗଂ ତ୍ୟକ୍ତ୍ୱା ଆତ୍ମଶୁଦ୍ଧୟେ (ଆତ୍ମନଃ ନିର୍ମଲପ୍ରକାଶାର୍ଥଂ) [କେବଲେନ] କାୟେନ, ମନସା [ଚ କେବଲୟା] ବୁଦ୍ଧ୍ୟା, କେବଲୈଃ ଅହଂକାର-ଶୂନ୍ୟୈଃ ଇନ୍ଦ୍ରିୟୈଃ ଅପି କର୍ମ କୁର୍ବନ୍ତି ।୧୧।

**ଅର୍ଥ**—ଯୋଗୀମାନେ ଫଳାସକ୍ତି ଛାଡ଼ି, ଆତ୍ମଶୁଦ୍ଧି ନିମନ୍ତେ [ମୋର ବୋଲି ଅଭିମାନ ନ ରଖି], ଖାଲି ଦେହ, ମନ, ବୁଦ୍ଧି ଓ ଇନ୍ଦ୍ରିୟରେହିଁ କର୍ମ କରିଯାନ୍ତି ।୧୧।

ବ୍ୟାଖ୍ୟା ସୂଚନା—ଏହିପରି କଲେ ଅନ୍ତର ଶୁଦ୍ଧି ହୁଏ ବା ନିର୍ମଳ ପ୍ରକାଶ ହୁଏ; ଅର୍ଥାତ୍, ଆଉ ମୋହ ହୁଏ ନାହିଁ । କେବଳ (ଖାଲି) କାୟ, ମନ, ବୁଦ୍ଧି ଓ ଇନ୍ଦ୍ରିୟରେ କର୍ମ କରନ୍ତି, ଅର୍ଥାତ୍ ସେମାନେ ତାଙ୍କ କାମ କରୁଚନ୍ତି, ମୋର ସେଥିରେ ରାଗ, ଦ୍ୱେଷ, ଯୋଗ, କ୍ଷେମାଦି କିଛି ନାହିଁ । ୫-୯ ଦେଖ ।୧୧।

**ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା ଶାନ୍ତିମାପ୍ନୋତି ନୈଷ୍ଠିକୀମ୍ ।**
**ଅଯୁକ୍ତଃ କାମକାରେଣ ଫଲେ ସକ୍ତୋ ନିବଧ୍ୟତେ ।୧୨।**

**ଅନ୍ୱୟ**—ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା ନୈଷ୍ଠିକୀଂ ଶାନ୍ତିଂ ଆପ୍ନୋତି । ଅଯୁକ୍ତଃ କାମକାରେଣ ଫଳେ ସକ୍ତଃ ନିବଧ୍ୟତେ । ୧୨ ।

**ଟୀକା**—[ଏବଂଭୂତଃ] ଯୁକ୍ତଃ ( କର୍ମଯୋଗୀ ) କର୍ମଫଳଂ (ଫଳମିତି ଭାବଃ ତ୍ୟକ୍ତ୍ୱା ନୈଷ୍ଠିକୀଂ (ପରମାଂ—ଐକାନ୍ତିକତୟା ଲଭ୍ୟାଂ) ଶାନ୍ତିଂ ଆପ୍ନୋତି । ଅଯୁକ୍ତଃ (ଅଯୋଗୀ) କାମକାରେଣ (କାମ ଏବ କାରଃ, ପ୍ରବୃତ୍ତିହେତୁଃ କାରୟିତା, ତେନ—କାମନାବଶତ୍ୱେନ) ଫଳେ ସକ୍ତଃ (ଆସକ୍ତଃ) [ସନ୍] ନିବଧ୍ୟତେ (ବନ୍ଧୋଭବତି) ।୧୨।

**ଅର୍ଥ**—ଏହିପରି କର୍ମ କରୁଥିବା ଯୋଗୀ କର୍ମଫଳ କଥା ଛାଡ଼ି ଆତ୍ମନିଷ୍ଠାରେ ଶାନ୍ତି ପାଏ । ଅଯୋଗୀ କାମନାରେ ପଡ଼ି ଫଳରେ ସକ୍ତ ହୋଇ କର୍ମରେ ବାନ୍ଧି ହୋଇପଡ଼େ । । ୧୨ ।

ବ୍ୟାଖ୍ୟା ସୂଚନା—୫,୬ ଦେଖ । ସେହି ଶ୍ଲୋକର କଥାକୁ ଏଠାରେ ସ୍ପଷ୍ଟ କଲେ । ସେହି ଶ୍ଲୋକରେ ଯେଉଁ ସଂନ୍ୟାସ କଥା କହିଛନ୍ତି, ତାହା ଏବେ ପର ଶ୍ଲୋକରେ ସ୍ପଷ୍ଟ କରୁଛନ୍ତି । ୧୨ ।

**ସର୍ବକର୍ମାଣି ମନସା ସଂନ୍ୟସ୍ୟାସ୍ତେ ସୁଖଂ ବଶୀ ।**
**ନବଦ୍ୱାରେ ପୁରେ ଦେହୀ ନୈବ କୁର୍ବନ୍ ନ କାରୟନ୍ ।୧୩।**

**ଅନ୍ୱୟ**—ବଶୀ ଦେହୀ ସର୍ବକର୍ମାଣି ମନସା ସଂନ୍ୟସ୍ୟ ନ ଏବ କୁର୍ବନ୍ ନ କାରୟନ୍ ନବଦ୍ୱାରେ ପୁରେ ସୁଖଂ ଆସ୍ତେ । ୧୩ ।

**ଟୀକା**—[କର୍ତ୍ତୃତ୍ୱାଭିମାନସଙ୍ଗତ୍ୟାଗୋ ହି ସନ୍ନ୍ୟାସଃ ଇତ୍ୟାହ] ବଶୀ (ସଂଯମୀ, ବଶୀଭୂତେନ୍ଦ୍ରିୟମନାଃ) ଦେହୀ (ପୁରୁଷଃ) ସର୍ବକର୍ମାଣି ମନସା ସଂନ୍ୟସ୍ୟ (ତ୍ୟକ୍ତ୍ୱା—ନ ମନୈତାନି—ଇତି ବୁଦ୍ଧ୍ୟା ଅନାସକ୍ତଃ ସନ୍ କୃତ୍ୱା ଇତି ଭାବଃ—ମନସା ସଂନ୍ୟସ୍ୟ ନ ତୁ ଶରୀରାଦିଚେଷ୍ଟୟା ଇତି ଗମ୍ୟଂ) ନ ଏବ [କିଂଚିତ୍ ସ୍ୱୟଂ] କୁର୍ବନ୍, ନ [ଚ ଅପରଂ ଇନ୍ଦ୍ରିୟାଦିରୂପଂ] କାରୟନ୍, ନବଦ୍ୱାରେ (ନବଦ୍ୱାର-ଯୁକ୍ତେ) ପୁରେ (ନଗରେ—ଦେହରୂପେ—ଇତ୍ୟର୍ଥଃ ) ସୁଖଂ (ନିର୍ଦ୍ୱନ୍ଦ୍ୱଂ ଆସ୍ତେ) ।୧୩।

**ଅର୍ଥ**—[ମୁଁ କରୁଚି, କରାଉଚି ଓ ଫଳ ପାଇବି ବୋଲି ଯେ ଅଭିମାନ ଓ ଆସକ୍ତି ତାକୁ ଛାଡ଼ିବା ହିଁ ସନ୍ନ୍ୟାସ ବୋଲି କହୁଚନ୍ତି । ] ଇନ୍ଦ୍ରିୟ ଓ ମନକୁ ଅଧୀନ କରିଥିବା ଲୋକ ମନରେ ସବୁ କର୍ମ ଛାଡ଼ି (ଅର୍ଥାତ୍, ମୋର ଏ କର୍ମ ସବୁ ନୁହେ, ମୋର, ଏଥିରେ କିଛି ନାହିଁ ବୋଲି ଭାବି) [କର୍ମ କରୁଥିଲେ ମଧ୍ୟ] ଆପେ କିଛି ନ କରି, ବା ଇନ୍ଦ୍ରିୟମାନଙ୍କୁ ଆପଣା ସୁଖ ପାଇଁ କର୍ମରେ ନ ଲଗାଇ (ଅର୍ଥାତ୍, ମୁଁ କର୍ମର କର୍ତ୍ତା ବା କରାଇବାବାଲା ନୁହେ ବୋଲି ଠିକ୍ କରି) ନଅଟି

ଦ୍ୱାରଥିବା ଦେହରୂପ ଘରେ ବା ସହରରେ ନିର୍ଦ୍ୱନ୍ଦ୍ୱ ହୋଇ ରହେ । (ମନରେ ଗ୍ରୁଡ଼—୩.୭ ଓ, ଟୀକା ଦେଖ) । ୧୩ ।

ବ୍ୟାଖ୍ୟା ସୂଚନା—ଦୁଇ କାନ, ଦୁଇ ନାକ, ଦୁଇ ଆଖି, ମଳମୂତ୍ର ତ୍ୟାଗର ଦୁଇଟି ସ୍ଥାନ ଓ ମୁହଁ ଏଇ ନଅଟି ଶରୀରର ପ୍ରଧାନ ଦ୍ୱାର । ତା ଛଡ଼ା ତ ଚମରେ ଅସଂଖ୍ୟ ଛିଦ୍ର ଅଛି । ଏସବୁ ଦ୍ୱାରର ଚଉକିଦାର ଯେବେ ଏଥିରେ ଯିବା ଆସିବା କରୁଥିବା ଅଧିକାରୀମାନଙ୍କୁ ଯିବା ଆସିବା କରିବାକୁ ଛାଡ଼ିଦେଇ, ଆପଣା ଧର୍ମ ପାଳେ, ତେବେ ସେଇ ଚଉକିଦାର ସମ୍ବନ୍ଧରେ କୁହାଯାଇପାରେ ଯେ, ଯିବା ଆସିବା ହେଉଥିଲେ ବି ଏ ଚଉକିଦାର ସେଥିରେ ଭାଗିଦାର ନୁହେଁ, ବରଂ କେବଳ ସାକ୍ଷୀ । ଏଣୁ କରେ ନାଇ, କି କରାଏ ନାଇ । —ମହାତ୍ମା ଗାନ୍ଧୀ । (ଦେଖ ଏଠାରେ ଚଉକିଦାର ପର ଓ ଇନ୍ଦ୍ରିୟାଦିର ନିୟନ୍ତା, ଯିବା ଆସିବା କରୁଥିବା ଅଧିକାରୀମାନେ) । ୧୩ ।

**ନ କର୍ତ୍ତୃତ୍ୱଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ ।**
**ନ କର୍ମଫଳସଂଯୋଗଂ ସ୍ୱଭାବସ୍ତୁ ପ୍ରବର୍ତ୍ତତେ । ୧୪ ।**

**ଅନ୍ୱୟ**—ପ୍ରଭୁଃ ଲୋକସ୍ୟ ନ କର୍ତ୍ତୃତ୍ୱଂ, ନ କର୍ମାଣି, ନ କର୍ମଫଳସଂଯୋଗଂ ସୃଜତି । ସ୍ୱଭାବଃ ତୁ ପ୍ରବର୍ତ୍ତତେ । ୧୪ ।

**ଟୀକା**—ତର୍ହି କଥଂ ବା ଈଶ୍ୱରେଣ ବନ୍ଧୁତ୍ୱଂ କର୍ମଫଳଂ ? ଇତ୍ୟାଶଙ୍କ୍ୟାହ] —ପ୍ରଭୁଃ (ଈଶ୍ୱରଃ) ଲୋକସ୍ୟ (ଜନସ୍ୟ) ନ କର୍ତ୍ତୃତ୍ୱଂ, [ଚ] କର୍ମାଣି, ନ [ଚ] କର୍ମଫଳ-ସଂଯୋଗଂ (କର୍ମଣଃ ଫଳେନ ଯୋଗଂ) ସୃଜତି । ସ୍ୱଭାବଃ (ପ୍ରକୃତିଃ—ଭୂତାନାଂ ଜନକତ୍ୱଂ, ଯସ୍ୟାଃ ସର୍ଗଃ ପ୍ରକାଶତେ ସା ଏବ ତ୍ରିଗୁଣମୟୀ (କର୍ମାତ୍ମିକା ପ୍ରକୃତିଃ—ବିଶ୍ୱକର୍ମଣଃ ସ୍ୱଭାବଃ ଇତି ଗମ୍ୟତେ ) ତୁ [ସ୍ୱୟମେବ କର୍ତ୍ତୃରୂପେଣ] ପ୍ରବର୍ତ୍ତତେ । ୧୪ ।

**ଅର୍ଥ**—[ତେବେ ଈଶ୍ୱର କାହିଁକି କର୍ମ ବା ଫଳ କଲେ ?—ଏଥିକୁ କହୁଛନ୍ତି]—ଈଶ୍ୱର କିଛି ଲୋକର କର୍ତ୍ତୃତ୍ୱ, କର୍ମ ବା କର୍ମ ଓ ଫଳର ମେଳ ସୃଜନ୍ତି ନାଇ । ମାତ୍ର ସ୍ୱଭାବ ହିଁ ଏହି ସବୁ ରୂପରେ ପ୍ରକାଶ ପାଏ ।

ବ୍ୟାଖ୍ୟା ସୂଚନା—ସ୍ୱଭାବ=ପ୍ରକୃତି । ୭, ୪, ୫ ଟୀକା ଓ ୮. ୩ ଦେଖ । ସାଂଖ୍ୟରେ ପ୍ରକୃତି ସବୁ କର୍ମ କରେ । ପୁରୁଷ କିଛି କରେ ନାଇ, ଖାଲି ଦେଖେ । ମାତ୍ର ଗୀତାର ବେଦାନ୍ତ-ମତରେ ପ୍ରକୃତି ଈଶ୍ୱରଙ୍କର ବିଶ୍ୱପ୍ରକାଶ 'ସ୍ୱଭାବ' । କହିବାର ଅଭିପ୍ରାୟ, ଈଶ୍ୱର ନିର୍ଲିପ୍ତ ଏବଂ ଈଶ୍ୱରଙ୍କର ବିଶ୍ୱପ୍ରକାଶ ସ୍ୱଭାବ ହିଁ କର୍ମରୂପରେ ମନକୁ ଫିଟିପଡ଼େ । ଈଶ୍ୱର କର୍ତ୍ତା ନୁହନ୍ତି । ମାତ୍ର କର୍ମର ନିୟମ ଅନିବାର୍ଯ୍ୟ । ଏଇ ଜ୍ଞାନ ନ ହେବାରୁ ମନୁଷ୍ୟ ଈଶ୍ୱରଙ୍କ ଆଦର୍ଶ ଧରି ନ ପାରି ମୋହରେ ପଡ଼େ ବୋଲି ପର ଶ୍ଲୋକରେ କହିବେ । ୧୪ ।

**ନାଦତ୍ତେ କସ୍ୟଚିତ୍ ପାପଂ ନ ଚୈବ ସୁକୃତଂ ବିଭୁଃ ।**
**ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ ।୧୫।**

**ଅନ୍ୱୟ**—ବିଭୁଃ କସ୍ୟଚିତ୍ ପାପଂ ସୁକୃତଂ ଚ ନ ଏବ ଆଦତ୍ତେ । ଅଜ୍ଞାନେନ ଜ୍ଞାନଂ ଆବୃତମ୍ । ତେନ ଜନ୍ତବଃ ମୁହ୍ୟନ୍ତି ।୧୫।

**ଟୀକା**—[ସ୍ଥୂଳତଃ] ବିଭୁଃ (ଈଶ୍ୱରଃ, ନିଗ୍ରହାନୁଗ୍ରହସମର୍ଥଃ ଭକ୍ତସ୍ୟ ପ୍ରଭୁଃ) [ମଦ୍‌କର୍ମମନସ୍ୟୋଽପି] କସ୍ୟଚିତ୍ ପାପଂ [କସ୍ୟଚିତ୍] ସୁକୃତଂ ଚ ନ ଏବ ଆଦତ୍ତେ (ଗୃହ୍ଣାତି) । [କିନ୍ତୁ ମାୟାଜନିତେନ ] ଅଜ୍ଞାନେନ [ ଏତତ୍ ସତ୍ୟସ୍ୟ ] ଜ୍ଞାନଂ ଆବୃତମ୍ । ତେନ [ହେତୁନା] ଜନ୍ତବଃ ମୁହ୍ୟନ୍ତି (ମୋହଂ ଗଚ୍ଛନ୍ତି) । ୧୫ ।

**ଅର୍ଥ**—[ସାର କଥା ହେଉଛି) ପ୍ରଭୁ ମଦ୍‌କର୍ମମନସ୍କ ହେଲେହେଁ କାହାରି ପାପ କି ସୁକୃତରେ ଲିପ୍ତ ନୁହନ୍ତି । ମାୟାର ଅଜ୍ଞାନରେ ଏହି ଜ୍ଞାନ ଘୋଡ଼ାଇ ହୋଇଯାଏ । ତେଣୁ ଲୋକେ ମୋହରେ ପଡ଼ନ୍ତି । ୧୫ ।

ବ୍ୟାଖ୍ୟା ସୂଚନା—ବିଭୁ=ଯେ ନିଗ୍ରହ ଓ ଅନୁଗ୍ରହ କରିବାରେ ସମର୍ଥ । ଏଇଭାବରେ ଦେଖି ଲୋକେ ବିଚାରନ୍ତି, ଈଶ୍ୱର ଲୋକର ପାପ ପୁଣ୍ୟ ଧରି ଚଳନ୍ତି ନାଇ । ଅନୁଗ୍ରହ କରନ୍ତି ଓ ବିଦ୍ୱେଷ କରନ୍ତି । କିନ୍ତୁ ଯଥାର୍ଥ ଜ୍ଞାନରେ ଈଶ୍ୱରଙ୍କଠାରେ ଆତ୍ମସମର୍ପଣ କଲେ ପାପ ସ୍ୱତଃ ରହେ ନାହିଁ—ଏହା ହୋଇପାରେ । ମାତ୍ର ଈଶ୍ୱର କର୍ମର ଫଳକୁ ଅନ୍ୟପ୍ରକାର କରନ୍ତି ନାଇ । ଭକ୍ତ ଈଶ୍ୱରଙ୍କୁ ନିର୍ଲିପ୍ତ ବୋଲି ଧାରଣା କରି ନିଜେ ନିର୍ଲିପ୍ତ ହୋଇ କର୍ମ ତୁଟାଇ ମୁକ୍ତି ପାଏ । ଏଇ ଜ୍ଞାନ ହିଁ ଯଥାର୍ଥ ଜ୍ଞାନ । ନଚେତ୍ ନିତି ପରର ଅକାର୍ଯ୍ୟ କରି ମନ୍ଦିରରେ ଯାଇ ଦିଅଁଙ୍କୁ ଜଣାଇଲେ କିଛି ଫଳ ନାଇ । ଏପରି ଭକ୍ତ, ଭକ୍ତ ନୁହେ । କିମ୍ବା ଈଶ୍ୱର ସବୁ କରଉଚନ୍ତି ବୋଲି ଗୋଡ଼ ଲମ୍ବାଇବା ଠିକ୍ ନୁହେ । [ଅଜ୍ଞାନରୁ ଲୋକ "ମୁଁ କରୁଚି" ବୋଲି କର୍ମବନ୍ଧନ ବାନ୍ଧେ । ପୁଣି ବିଶେ କର୍ମର ଭଲ ମନ୍ଦ ଫଳ ଈଶ୍ୱରଙ୍କଠାରେ ଆରୋପଣ କରେ—ଏହା ହିଁ ମେହଜାଲ—ମହାତ୍ମା ଗାନ୍ଧୀ] ।୧୫।

**ଜ୍ଞାନେନ ତୁ ତଦଜ୍ଞାନଂ ଯେଷାଂ ନାଶିତମାତ୍ମନଃ ।**
**ତେଷାମାଦିତ୍ୟବଜ୍ଜ୍ଞାନଂ ପ୍ରକାଶୟତି ତତ୍ ପରମ୍ ।୧୬।**

**ଅନ୍ୱୟ**—ଯେଷାଂ ତୁ ଆତ୍ମନଃ ଜ୍ଞାନେନ ତତ୍ ଅଜ୍ଞାନଂ ନାଶିତଂ, ତେଷାଂ ଜ୍ଞାନଂ ଆଦିତ୍ୟବତ୍ ତତ୍‌ପରଂ ପ୍ରକାଶୟତି । ୧୬ ।

**ଟୀକା**—[ଜ୍ଞାନିନଃ ତଥା ନ ମୁହ୍ୟନ୍ତି—ଇତ୍ୟାହ]—ଯେଷାଂ ତୁ ଆତ୍ମନଃ [ପାପପୁଣ୍ୟେଭ୍ୟୋ ନିର୍ବିକଳ୍ପରୂପେଣ] ଜ୍ଞାନେନ ତତ୍ (ଉକ୍ତଂ) ଅଜ୍ଞାନଂ ନାଶିତଂ

(ନାଶଂ ପ୍ରାପିତଂ) [ଭବତି], ତେଷାଂ ଜ୍ଞାନଂ ଆଦିତ୍ୟବତ୍ (ତମୋବିନାଶାତ୍ ସର୍ବପ୍ରକାଶକସୂର୍ଯ୍ୟବତ୍) ତତ୍ପରଂ (ସର୍ବାତୀତଂ ବ୍ରହ୍ମ) ପ୍ରକାଶୟତି (ଦର୍ଶୟତି) । ୧୬ ।

**ଅର୍ଥ**—[ଜ୍ଞାନୀମାନେ ଯେପରି ମୋହରେ ପଡ଼ନ୍ତି ନାହିଁ ବୋଲି କହୁଅଛନ୍ତି ।] କିନ୍ତୁ ଯାହାଙ୍କର [ପ ପପୁଣ୍ୟରେ ଅଟଳ୍ପ ସମାନ—ଏହିପରି] ଆତ୍ମାର ଜ୍ଞାନରେ ସେହି ଅଜ୍ଞାନ ତୁଟିଯାଇ ବିଅନ୍ଧୋଇଛି, ସେମାନଙ୍କର ଜ୍ଞାନ, ସୂର୍ଯ୍ୟ ଅନ୍ଧାର ତୁଟାଇ ଜଗତକୁ ପ୍ରକାଶ କଲାପରି, ସେହି ପରଂବ୍ରହ୍ମଙ୍କୁ ଦେଖାଇ ଦିଏ । ୧୬ ।

**ତଦବୁଦ୍ଧୟସ୍ତଦାତ୍ମାନସ୍ତନ୍ନିଷ୍ଠାସ୍ତତ୍ପରାୟଣାଃ ।**
**ଗଚ୍ଛନ୍ତ୍ୟପୁନରାବୃତ୍ତିଂ ଜ୍ଞାନନିର୍ଧୂତକଲ୍ମଷାଃ । ୧୭ ।**

**ଅନ୍ୱୟ**—ଜ୍ଞାନନିର୍ଧୂତକଲ୍ମଷାଃ ତଦ୍‌ବୁଦ୍ଧୟଃ ତଦାତ୍ମାନଃ, ତନ୍ନିଷ୍ଠାଃ, ତତ୍ପରାୟଣାଃ ଅପୁନରାବୃତ୍ତିଂ ଗଚ୍ଛନ୍ତି । ୧୭ ।

**ଟୀକା**—[ ତଦ୍‌ବ୍ରହ୍ମସାକ୍ଷାତ୍କାରାତ୍ ତେ ] ଜ୍ଞାନନିର୍ଧୂତକଲ୍ମଷାଃ (ବ୍ରହ୍ମଜ୍ଞାନାତ୍ ନିରସ୍ତପାପାଃ), ତଦ୍‌ବୁଦ୍ଧୟଃ (ତଦ୍‌ବ୍ରହ୍ମଗତବିବେକାଃ), ତଦାତ୍ମାନଃ (ତନ୍ମୟାଃ) ତନ୍ନିଷ୍ଠାଃ (ତସ୍ମିନ୍ନିଷ୍ଠିତବୁଦ୍ଧୟଃ), ତତ୍ପରାୟଣାଃ (ତଦେବୈକାଶ୍ରୟମିତି ମନ୍ୟମାନାଃ, ସର୍ବଭାବେନ ତଦଗତାଃ) [ସନ୍ତଃ] ଅପୁନରାବୃତ୍ତିଂ (ପୁନର୍ଜନ୍ମାଭାବଂ—ମୁକ୍ତିଂ) ଗଚ୍ଛନ୍ତି (ଲଭନ୍ତେ) । ୧୭ ।

**ଅର୍ଥ**—[ସେହି ବ୍ରହ୍ମସାକ୍ଷାତ୍କାର ହେବାରୁ ] ଜ୍ଞାନରେ ଯାହାଙ୍କର ପାପ-ମଳ ଢ଼ଳିଯାଇଥାଏ, ସେମାନେ ସେହି ବ୍ରହ୍ମରେ ବୁଦ୍ଧି ଠିକ୍ ରଖି, ସେଇଥିରେ ତନ୍ମୟ ହୋଇ, ସେଇଥିରେ ଏକାଗ୍ରନିଷ୍ଠା କରି (ଆଉ ନ ଭୁଲି) ତାଙ୍କୁହିଁ ସର୍ବସ୍ୱ କରି, ପୁଣି ସଂସାରକୁ ଫେରି ନ ଆସିବା ଅବସ୍ଥାକୁ ଉଠିଯାନ୍ତି । [ତଥାପି ଏ ଜ୍ଞାନରେ କର୍ମ ଛାଡ଼ିବାର ନାହିଁ ବୋଲି ଦେଖାଇ ପରଶ୍ଲୋକରେ କହୁଅଛନ୍ତି] । ୧୭ ।

**ବିଦ୍ୟାବିନୟସଂପନ୍ନେ ବ୍ରାହ୍ମଣେ ଗବି ହସ୍ତିନି ।**
**ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ । ୧୮ ।**

**ଅନ୍ୱୟ**—ସ୍ପଷ୍ଟ । ୧୮ ।

**ଟୀକା**—[ତେଷାଂ ଜ୍ଞାନିନାଂ କର୍ମଣି ଲୋକବ୍ୟବହାରଂ ଦର୍ଶୟନ୍ ଆହ]—ବିଦ୍ୟାବିନୟସମ୍ପନ୍ନେ (ବିଦ୍ୟାଜନିତେନ ବିନୟେନ ସମ୍ଯକ୍ତ୍ୟା ସମ୍ପନ୍ନଃ ଯୁକ୍ତଃ, ତସ୍ମିନ୍—ଶାସ୍ତ୍ରାଦିଜ୍ଞାନସଂଯୁକ୍ତେ) ବ୍ରାହ୍ମଣେ, ଗବି, ହସ୍ତିନି, ଶୁନି ଚ ଶ୍ୱପାକେ ଶ୍ୱାନଂ ପଚତି ଭୋଜନାୟ ଇତି, ତସ୍ମିନ୍—ଚଣ୍ଡାଳେ) ଚ ଏବ ପଣ୍ଡିତାଃ (ଜ୍ଞାନିନଃ କର୍ମପରାଃ) ସମଦର୍ଶିନଃ (ସମବ୍ୟବହାରତତ୍ପରାଃ) [ଭବନ୍ତି] । ୧୮ ।

**ଅର୍ଥ**—[ସେହି ଜ୍ଞାନୀଙ୍କର କର୍ମରେ ଲୋକବ୍ୟବହାର ଦେଖାଇ କହୁଚନ୍ତି]—ପାଠପଢ଼ାରେ ସଭ୍ୟ ସଂସ୍କାରବନ୍ତ ବ୍ରାହ୍ମଣଠାରେ, ଗୋରୁଠାରେ, ହାତୀଠାରେ, କୁକୁରଠାରେ, ପୁଣି କୁକୁରଖିଆ ଚଣ୍ଡାଳଠାରେ (ଅର୍ଥାତ୍ ଉଚ୍ଚ ନୀଚ, ସଭ୍ୟ-ଅସଭ୍ୟ, ଜ୍ଞାନୀ-ଅଜ୍ଞାନୀ, ଏପରି କି ମନୁଷ୍ୟ ଓ ଇତର ଜନ୍ତୁ—ସମସ୍ତଙ୍କଠାରେ) ପଣ୍ଡିତମାନେ ସମଦର୍ଶୀ ହୁଅନ୍ତି । (ଅର୍ଥାତ୍, ବଡ଼ ସାନ ବିଚାର ଛାଡ଼ି ସମାନ ବ୍ୟବହାର କରନ୍ତି) । ୧୮ ।

ବ୍ୟାଖ୍ୟା ସୂଚନା—ପଣ୍ଡିତ = ଜ୍ଞାନରେ ପ୍ରତିଷ୍ଠିତ ରହି ସେହି ବିବେକରେ ଯେ କର୍ମ କରେ—୪.୧୯ ଦେଖ । ବିନୟ = ଶିକ୍ଷା ସଭ୍ୟତାଦିଜନିତ ସଂସ୍କାର; [Culture] । ସମଦର୍ଶୀ ହୁଅନ୍ତି = ସମସ୍ତଙ୍କୁ ସେମାନଙ୍କ ଦରକାର ଭଳି ସେବା କରନ୍ତି । ଯଥା—ବ୍ରାହ୍ମଣଙ୍କୁ ସାପ କି ମୁଣ୍ଡାଇଲେ ତାଙ୍କ ସାପ ଦନ୍ତ କ୍ଷତକୁ ଯେପରି ଜ୍ଞାନୀ ପ୍ରେମରେ ଶୋଷି ତାଙ୍କୁ ବିପନ୍ମୁକ୍ତ କରିବାକୁ ଚେଷ୍ଟା କରିବେ, ସେହି ସ୍ଥିତିରେ ଚଣ୍ଡାଳ ସମ୍ବନ୍ଧରେ ମଧ୍ୟ ସେହିପରି ବ୍ୟବହାର କରିବେ ।—ମହାତ୍ମା ଗାନ୍ଧୀ । ୧୮ ।

**ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ ।**
**ନିର୍ଦୋଷଂ ହି ସମଂ ବ୍ରହ୍ମ ତସ୍ମାଦ୍ ବ୍ରହ୍ମଣି ତେ ସ୍ଥିତାଃ ।୧୯।**

**ଅନ୍ୱୟ**—ଯେଷାଂ ମନଃ [ଉକ୍ତରୂପେ] ସାମ୍ୟେ ସ୍ଥିତଂ, ତୈଃ ଇହ ଏବ ସର୍ଗଃ ଜିତଃ । ହି ବ୍ରହ୍ମ ନିର୍ଦୋଷଂ ସମଂ [ଚ] ତସ୍ମାତ୍ ତେ ବ୍ରହ୍ମଣି ସ୍ଥିତାଃ । ୧୯ ।

**ଟୀକା**—[ଏଷାଂ ସମଦର୍ଶିନାଂ ବ୍ରହ୍ମଣି ସ୍ଥିତିଃ—ଇତ୍ୟାହ] ଯେଷାଂ ମନଃ [ଉକ୍ତରୂପେ] ସାମ୍ୟେ (ସର୍ବତ୍ର ସମବ୍ୟବହାରେ) ସ୍ଥିତଂ, ତୈଃ ଇହ [ଜନ୍ମନି] ଏବ ସର୍ଗଃ (ଜନ୍ମ, ଜନ୍ମମରଣବନ୍ଧଃ, ସଂସାରଃ) ଜିତଃ (ନିରସ୍ତଃ) । ହି (ଯତଃ) ବ୍ରହ୍ମ ନିର୍ଦୋଷଂ ସମଂ [ଚ]; ତସ୍ମାତ୍ ତେ ବ୍ରହ୍ମଣି ସ୍ଥିତାଃ । ୧୯ ।

**ଅର୍ଥ**—[ଏହି ସମଦର୍ଶୀ ଜ୍ଞାନୀମାନେ ବ୍ରହ୍ମରେ ଥାନ୍ତି ବୋଲି କହୁଚନ୍ତି]—ଯାହାଙ୍କ ମନ ଏହିପରି ସର୍ବତ୍ର ସମବ୍ୟବହାରରେ ଥାଏ, ସେମାନେ ଏହି ଦେହରେ ଜନ୍ମ ବା ଜନ୍ମବନ୍ଧ ଜିଣନ୍ତି । ବ୍ରହ୍ମ ନିଷ୍କଳଙ୍କ ଓ ସର୍ବତ୍ର ସମ୍ପୂର୍ଣ୍ଣ ପରି ଏକ ପରି । ତେଣୁ ସେହି ଜ୍ଞାନୀମାନେ ବ୍ରହ୍ମରେ ଥାଆନ୍ତି । (ଅର୍ଥାତ୍ ବ୍ରହ୍ମଜ୍ଞାନ ସ୍ଥିର ହୋଇଯିବାରୁ, ସେହି ବ୍ରହ୍ମର ଆଦର୍ଶରେ ନିଜକୁ ବ୍ରହ୍ମରେ ପରିଣତ କରି ଦେଇଥାନ୍ତି ।) । ୧୯ ।

ବ୍ୟାଖ୍ୟା ସୂଚନା—ମନୁଷ୍ୟ ଯେପରି ଓ ଯାହାର ଚିନ୍ତା କରେ, ସେହିପରି ହୁଏ । ଏଣୁ ସମତ୍ୱର ଚିନ୍ତନ କରି ଦୋଷହୀନ ହୋଇ, ସମତ୍ୱର ମୂର୍ତ୍ତି ସ୍ୱରୂପ ନିର୍ଦୋଷ ବ୍ରହ୍ମକୁ ପାଏ—ମହାତ୍ମା ଗାନ୍ଧୀ । ୧୯ ।

**ନ ପ୍ରହୃଷ୍ୟେତ୍ ପ୍ରିୟଂ ପ୍ରାପ୍ୟ ନୋଦ୍‌ବିଜେତ୍ ପ୍ରାପ୍ୟ ଚାପ୍ରିୟମ୍ ।**
**ସ୍ଥିରବୁଦ୍ଧିରସଂମୂଢ଼ୋ ବ୍ରହ୍ମବିଦ୍ ବ୍ରହ୍ମଣି ସ୍ଥିତଃ । ୨୦ ।**

**ଅନ୍ୱୟ**—ସ୍ଥିରବୁଦ୍ଧିଃ, ଅସମ୍ମୂଢ଼ଃ, ବ୍ରହ୍ମଣି ସ୍ଥିତଃ, ବ୍ରହ୍ମବିତ୍ ପ୍ରିୟଂ ପ୍ରାପ୍ୟ ନ ପ୍ରହୃଷ୍ୟେତ୍, ଅପ୍ରିୟଂ ଚ ପ୍ରାପ୍ୟ ନ ଉଦ୍‌ବିଜେତ୍ । ୨୦ ।

**ଟୀକା**—[ତଂ ବ୍ରହ୍ମବିଦଂ ବ୍ରହ୍ମଭୂତଂ ବା ଲକ୍ଷଣେନ ବର୍ଣ୍ଣୟତି]—ସ୍ଥିରବୁଦ୍ଧିଃ (ବିବେକୀ) ଅସମୂଢ଼ଃ (ପ୍ରଣଷ୍ଟମୋହଃ) ବ୍ରହ୍ମଣି ସ୍ଥିତଃ (ବ୍ରହ୍ମସମାଧିସ୍ଥଃ, ବ୍ରହ୍ମଭୂତଃ) ବ୍ରହ୍ମବିତ୍ (ବ୍ରହ୍ମଜ୍ଞଃ) ପ୍ରିୟଂ (ପ୍ରୀତିକରଂ ବସ୍ତୁ) ପ୍ରାପ୍ୟ ନ ପ୍ରହୃଷ୍ୟେତ୍ (ସୁଖମନୁଭବେତ୍), ଅପ୍ରିୟଂ ଚ ପ୍ରାପ୍ୟ ନ ଉଦ୍‌ବିଜେତ୍ (ଦୁଃଖୋଦ୍‌ବେଗଂ ଲଭତେ) । ୨୦ ।

**ଅର୍ଥ**—[ସେହି ବ୍ରହ୍ମବିତ୍ ବା ବ୍ରହ୍ମଭୂତଙ୍କ ଲକ୍ଷଣ ଦେଖାଇ ବର୍ଣ୍ଣନ କରୁଛନ୍ତି]—ଯାହାଙ୍କର ବୁଦ୍ଧି ସ୍ଥିର ହୋଇ ଯାଇଥାଏ, ମୋହ ନଷ୍ଟ ହୋଇ ଯାଇଥାଏ, ଯେ ବ୍ରହ୍ମସମାଧିରେ ଥାନ୍ତି, ସେହି ବ୍ରହ୍ମବିତ୍ (ବ୍ରହ୍ମଜ୍ଞାନୀ) ଭଲରେ ଖୁସି ହୁଅନ୍ତି ନାହିଁ, କି ମନ୍ଦରେ ବ୍ୟାକୁଳ ହୁଅନ୍ତି ନାହିଁ । [ଏହା ଜ୍ଞାନୀର କର୍ମରେ ଥାଇ ସନ୍ନ୍ୟାସ ବା କର୍ମସନ୍ନ୍ୟାସ] । ୨୦ ।

**ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍ ସୁଖମ୍ ।**
**ସ ବ୍ରହ୍ମଯୋଗଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ । ୨୧ ।**

**ଅନ୍ୱୟ**—ବାହ୍ୟସ୍ପର୍ଶେଷୁ ଅସକ୍ତାତ୍ମା ଆତ୍ମନି ଯତ୍ ସୁଖଂ ବିନ୍ଦତି, ସଃ ବ୍ରହ୍ମଯୋଗଯୁକ୍ତାତ୍ମା [ତତ୍] ସୁଖଂ ଅକ୍ଷୟଂ ଅଶ୍ନୁତେ । ୨୧ ।

**ଟୀକା**—[ଏବଂ] ବାହ୍ୟସ୍ପର୍ଶେଷୁ (ଇନ୍ଦ୍ରିୟାଣାଂ ବାହ୍ୟବିଷୟସଂଯୋଗେଷୁ—ଇନ୍ଦ୍ରିୟଭୋଗେଷୁ ଇତ୍ୟର୍ଥଃ) ଅସକ୍ତାତ୍ମା (ଅନାସକ୍ତଚିତ୍ତଃ) [ଅନ୍ତଃପ୍ରବୃତ୍ତାତ୍] ଆତ୍ମନି (ସ୍ୱାନ୍ତରେ) ଯତ୍ ସୁଖଂ ବିନ୍ଦତି (ଲଭତେ), ସଃ (ଉକ୍ତଃ) ବ୍ରହ୍ମଯୋଗଯୁକ୍ତାତ୍ମା (ବ୍ରହ୍ମଣି ସ୍ଥିତୋ ଯୋଗୀ) [ତଦେବ] ସୁଖଂ ଅକ୍ଷୟଂ [ଯଥା ସ୍ୟାତ୍ ତଥା] (ନିତ୍ୟଂ-ନିରନ୍ତରମିତି ଭାବଃ) ଅଶ୍ନୁତେ (ଅନୁଭବତି) । ୨୧ ।

**ଅର୍ଥ**—[ଏହିପରି] ଇନ୍ଦ୍ରିୟର ବାହାର ସ୍ପର୍ଶରେ ଆସକ୍ତ ନୋହୁଥିବା ଲୋକ ନିଜ ଭିତରେ ବା ଆତ୍ମାରେ ଯେଉଁ ସୁଖ ପାଏ, ଉକ୍ତ ବ୍ରହ୍ମସମାଧିରେ ଥିବା ଯୋଗୀ ସେହି ସୁଖକୁ ଅକ୍ଷୟଭାବରେ ଭୋଗ କରେ । ୨୧ ।

ବ୍ୟାଖ୍ୟା ସୂଚନା—ଏହିପରି ଯୋଗ ବା କର୍ମତତ୍ପରତା ଜ୍ଞାନରେ ହିଁ ପ୍ରତିଷ୍ଠିତ ହୁଏ । ଦ୍ୱନ୍ଦ୍ୱ ଛାଡ଼ିବାର ଅଭ୍ୟାସ ବା କର୍ମରେ ସମତ୍ୱର ସାଧନା ଈଶ୍ୱର ସମାଧିରେ ଚିର ଓ ସ୍ଥିର ହୁଏ । ଏଣୁ ଯୋଗୀର ଦ୍ୱନ୍ଦ୍ୱ-ସମତ୍ୱରେ ସ୍ଥିରତା ଓ ଜ୍ଞାନର

ସମ୍ବନ୍ଧ ଈଶ୍ୱରରେ ସମାଧି ବା ସମତ୍ୱ—ଏ ଦୁଇଟି ଏକା କଥା । ଯେ ଦ୍ୱନ୍ଦ୍ୱାତୀତ, ସ୍ଥିତପ୍ରଜ୍ଞ, ସେହି ବ୍ରହ୍ମଭୂତ, ସେହି ନିର୍ଗୁଣାତୀତ, ସେହି ଈଶ୍ୱରରେ ତନ୍ମୟ । ୨.୫୬—୭୨; ୧୨.୧୩—୨୦; ୧୪.୨୨—୨୭ ଦେଖ । ଈଶ୍ୱର ସମାଧି ବିନା ଦ୍ୱନ୍ଦ୍ୱରେ ସମତ୍ୱ ସ୍ଥାୟୀ ନୁହେ ଓ ଦ୍ୱନ୍ଦ୍ୱରେ ସମତ୍ୱ ବିନା ଈଶ୍ୱରସମାଧି ସମ୍ଭବ ନୁହେ । ଯୋଗଯୁକ୍ତ=ଯେ କର୍ମ ସାଧନାରେ ଲାଗି ବହୁ ଦ୍ୱନ୍ଦ୍ୱରେ ସମତ୍ୱ ରଖିପାଏ । ଯୁକ୍ତ=ଦ୍ୱନ୍ଦ୍ୱରେ ସମତ୍ୱ ରଖି କର୍ମ କରିବା ଲୋକ । ବ୍ରହ୍ମଯୋଗଯୁକ୍ତ=ବ୍ରହ୍ମରେ ସ୍ଥିର ରହି ଯୋଗଯୁକ୍ତ; ବ୍ରହ୍ମସମାଧିରେ ଠିକ୍ ରହି କର୍ମରେ ଦ୍ୱନ୍ଦ୍ୱାତୀତ । ବାହ୍ୟସ୍ପର୍ଶ—୨.୧୪ ମାତ୍ରାସ୍ପର୍ଶ ଦେଖ । [ଯେ ଅନ୍ତର୍ମୁଖ ହୁଏ ସେହି ଈଶ୍ୱର ସାକ୍ଷାତ୍କାର କରିପାରେ, ପୁଣି ସେହି ଏକା ପରମ ଆନନ୍ଦ ପାଏ । ବିଷୟରୁ ନିବୃତ୍ତ ହୋଇ କର୍ମ କରିବା ଓ ବ୍ରହ୍ମସମାଧିରେ ରମଣ କରିବା—ଏ ଦୁହେଁ ଭିନ୍ନ ବସ୍ତୁ ନୁହନ୍ତି, ବରଂ ଏକମାତ୍ର ବସ୍ତୁକୁ ଦେଖିବାରେ ଦୁଇ ଦୃଷ୍ଟି ମାତ୍ର; ଏକ ଟଙ୍କାର ଦୁଇପିଠି ପରି—ମହାତ୍ମା ଗାନ୍ଧୀ । ] । ୨୧ ।

**ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ ।**
**ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ ।୨୨।**

**ଅନ୍ୱୟ**—ହି ସଂସ୍ପର୍ଶଜାଃ ଯେ ଭୋଗାଃ ତେ ଆଦ୍ୟନ୍ତବନ୍ତଃ ଦୁଃଖଯୋନୟଃ ଏବ । କୌନ୍ତେୟ ! ବୁଧଃ ତେଷୁ ନ ରମତେ । ୨୨ ।

**ଟୀକା**—[କଥଂ ତ୍ୟାଜ୍ୟାଃ ତେ ସ୍ପର୍ଶଜାଃ ଭୋଗାଃ ? ଇତ୍ୟାହ]—ହି (ଯତଃ) (ସଂସ୍ପର୍ଶଜାଃ ସଂସ୍ପର୍ଶଜନିତାଃ) ଯେ ଭୋଗାଃ ତେ ଆଦ୍ୟନ୍ତବନ୍ତଃ (ଆଗମାପାୟିନଃ, କ୍ଷଣଭଙ୍ଗୁରାଃ, ବାହ୍ୟବିଷୟାଣାଂ ଭୋକ୍ତୃବଶତ୍ୱାଭାବାତ୍—ଇତି ଗମ୍ୟତେ) [ତଥା] ଦୁଃଖଯୋନୟଃ (ପ୍ରତ୍ୟବାୟାଦୌ ଭୋକ୍ତୃଦୁଃଖସ୍ୟ କାରଣାନି) ଏବ [ଭବନ୍ତି] । ହେ କୌନ୍ତେୟ, [ତସ୍ମାତ୍] ବୁଧଃ (ପଣ୍ଡିତଃ) ତେଷୁ ନ ରମତେ । ୨୨ ।

**ଅର୍ଥ**—[ସେହି ସ୍ପର୍ଶଜନିତ ଭୋଗ କାହିଁକି ଛାଡ଼ିବ ?—କହୁଛନ୍ତି] କାହିଁକି ନା, ସ୍ପର୍ଶରୁ ହୁଅନ୍ତି ଯେଉଁ ଭୋଗ ସବୁ [ବାହ୍ୟ ବିଷୟରେ ଲୋକର ହାତ ନ ଥିବାରୁ] ସେଗୁଡ଼ିକ ହୁଅନ୍ତି, ପୁଣି ଯିବାଆସନ୍ତି । [ପୁଣି ବେଳରେ ନ ମିଳିବା, ବାଧା ପାଇବା ପ୍ରଭୃତି ଯୋଗୁଁ ] ଖାଲି ଦୁଃଖର କାରଣ ହୁଅନ୍ତି । ହେ କୌନ୍ତେୟ, ଜ୍ଞାନୀ ସେ ସବୁରେ ମାତେ ନାହିଁ । [ହୁଅନ୍ତି ପୁଣି ଯିବାଆସନ୍ତି—ଆଦ୍ୟନ୍ତବନ୍ତ; ଆଗମାପାୟୀ—୨.୧୪ ଦେଖ] । ୨୨ ।

**ଶକ୍ନୋତୀହୈବ ଯଃ ସୋଢୁଂ ପ୍ରାକ୍ ଶରୀରବିମୋକ୍ଷଣାତ୍ ।**
**କାମକ୍ରୋଧୋଦ୍‌ଭବଂ ବେଗଂ ସ ଯୁକ୍ତଃ ସ ସୁଖୀ ନରଃ ।୨୩।**

**ଅନ୍ୱୟ**—ଯଃ ଶରୀରବିମୋକ୍ଷଣାତ୍ ପ୍ରାକ୍ ଇହ କାମକ୍ରୋଧୋଦ୍ଭବଂ ବେଗଂସୋଢୁଂ ଶକ୍ନୋତି, ସଃ ଯୁକ୍ତଃ ସ ନରଃ ସୁଖୀ । ୨୩ ।

**ଟୀକା**—[ସ୍ୱର୍ଗୈଶ୍ୱର୍ଯ୍ୟାସକ୍ତଚିତ୍ତାନାଂ ଅତ୍ର ସୁଖଂ ତତଃ ବ୍ରହ୍ମନିର୍ବାଣଂ—ଇତ୍ୟାହ ଚତୁର୍ଭିଃ] ଯଃ ଶରୀରବିମୋକ୍ଷଣାତ୍ (ଦେହତ୍ୟାଗାତ୍) ପ୍ରାକ୍ (ପୂର୍ବଂ, ଜୀବନ୍ନପି ଇତି ଭାବଃ) ଇହ (ଅସ୍ମିନ୍ନେବ ଦେହେ) କାମକ୍ରୋଧୋଦ୍ଭବଂ (ସୁଖକରେ ଅଭିଲାଷଃ, କାମଃ ଅନଭିଲଷିତେ ଦ୍ୱେଷଃ କ୍ରୋଧଃ—ତତ୍ସମୁଦ୍ଭୂତଂ) ବେଗଂ (ଚିତ୍ତସ୍ୟ ନେତ୍ରାଦେଃ ଚ ଚାଞ୍ଚଲ୍ୟଂ—ସ୍ୱର୍ଗଜଦୁଃଖମିତି ଭାବଃ) ସୋଢୁଂ (ସମ୍ୟକ୍ ପ୍ରସହିତୁଂ) ଶକ୍ନୋତି (ସମର୍ଥୋ ଭବତି) ସଃ ଯୁକ୍ତଃ (ଯୋଗସ୍ଥଃ) ସ [ଏବ] ନରଃ ସୁଖୀ [ଭବତି] ।୨୩।

**ଅର୍ଥ**—[ବାହ୍ୟ ବିଷୟରେ ଆସକ୍ତ ନ ଥିବା ଲୋକର ଏ ଦେହରେ ସୁଖ ଓ ମଲା ପରେ ବ୍ରହ୍ମନିର୍ବାଣ ବୋଲି ଚାରି ଶ୍ଳୋକରେ କହୁଛନ୍ତି]—[ମଲା ପରେ ଦେହ ଯେପରି ସବୁ ସହେ, ସେହିପରି] ଦେହ ଛାଡ଼ିବା [ପୂର୍ବରୁ ଯେ ଏହି ଦେହରେ ସ୍ୱର୍ଗଜନିତ ଭୋଗରୁ ହେଉଥିବା] କାମ କ୍ରୋଧର ବେଗ ସହିବାକୁ ସମର୍ଥ ହୁଏ, ସେହି ଲୋକ ଏକା ଯୁକ୍ତ (ଯୋଗସ୍ଥ), ଓ ସେହି ଏକା ସୁଖୀ । ୨୩ ।

ବ୍ୟାଖ୍ୟା ସୂଚନା—କାମ=ସୁଖ ଲାଗିବା ବିଷୟରେ ରାଗ ବା ସ୍ନେହ । କ୍ରୋଧ=ଦୁଃଖ ଲାଗିବା ବିଷୟରେ ଦ୍ୱେଷ ବା ବିରକ୍ତି । ବେଗ=ଦେହ ଓ ମନର ଚଞ୍ଚଳତା ବା ଅଧୀରତା ।

[ମୃତ ଶରୀରରେ ଯେପରି ଇଚ୍ଛା ବା ଦ୍ୱେଷ ହୁଏ ନାହିଁ, ସେହିପରି ଯେ ଜୀବିତ ରହି ବି ମଲା ସମାନ—ଜଡ଼ଭରତ ଭଳି ଦେହାତୀତ ରହିପାରେ, ସେହି ଏ ସଂସାରରେ ବିଜୟୀ ହୁଏ । ସେହି ବାସ୍ତବିକ ସୁଖକୁ ଜାଣେ । — ମହାତ୍ମା ଗାନ୍ଧୀ] । ୨୩ ।

**ଯୋଽନ୍ତଃସୁଖୋଽନ୍ତରାରାମସ୍ତଥାନ୍ତର୍ଜ୍ୟୋତିରେବ ଯଃ ।**
**ସ ଯୋଗୀ ବ୍ରହ୍ମନିର୍ବାଣଂ ବ୍ରହ୍ମଭୂତୋଽଧିଗଚ୍ଛତି ।୨୪।**

**ଅନ୍ୱୟ**—ଯଃ ଅନ୍ତଃସୁଖଃ, ଅନ୍ତରାରାମଃ ତଥା ଯଃ ଅନ୍ତର୍ଜ୍ୟୋତିଃ ସଃ ଏବ ବ୍ରହ୍ମଭୂତଃ ଯୋଗୀ ବ୍ରହ୍ମନିର୍ବାଣଂ ଅଧିଗଚ୍ଛତି ।୨୪।

**ଟୀକା**—[ଏବଂଭୂତଃ] ଯଃ ଅନ୍ତଃସୁଖଃ (ଅନ୍ତଃ ଏବ ସୁଖଂ ଯସ୍ୟ—ନ ତୁ ବାହ୍ୟସ୍ୱର୍ଗେଷୁ—ଇତି ଭାବଃ) ଅନ୍ତରାରାମଃ (ଅନ୍ତରରେ ଆରାମଃ ଶାନ୍ତିର୍ବା ଯସ୍ୟ ସଃ) ତଥା (ପୁନଃ) ଯଃ ଅନ୍ତର୍ଜ୍ୟୋତିଃ (ଅନ୍ତର୍ଦର୍ଶନଃ—ଆତ୍ମଦୃଷ୍ଟ୍ୟା ସର୍ବଂ ପଶ୍ୟତି ଭାବଃ) ଏବ ସଃ [ଜୀବନକାଲେ] ବ୍ରହ୍ମଭୂତଃ (ବ୍ରହ୍ମସ୍ୱରୂପଂ ଗତଃ) ଯୋଗୀ [ମରଣେ] ବ୍ରହ୍ମନିର୍ବାଣଂ (ବ୍ରହ୍ମଣି ବିଲୟଂ) ଅଧିଗଚ୍ଛତି (ପ୍ରାପ୍ନୋତି) । ୨୪ ।

**ଅର୍ଥ**—[ଏହିପରି ବାହ୍ୟ ବିଷୟ ଛାଡ଼ି] ଯେ ଆପଣା ଭିତରେ ସୁଖ ପାଏ, ଭିତରେ ଶାନ୍ତି ପାଏ, ଭିତରର ଆତ୍ମଜ୍ଞାନ ଆଲୁଅରେ ସବୁ ଦେଖେ, ସେହି ଯୋଗୀ ଜୀଇଁଥାଇ ବ୍ରହ୍ମ ହୋଇ ଯାଇ, ମଲେ ବ୍ରହ୍ମରେ ମିଶି ଲୀନ ହୁଏ । [ଏହିପରି ବ୍ରହ୍ମ-ଭୂତଙ୍କୁ ଜୀବନ୍ମୁକ୍ତ କହନ୍ତି] । ୨୪ ।

ବ୍ୟାଖ୍ୟା ସୂଚନା—ଏଇ ଶ୍ଳୋକ, ଏହାପର ଶ୍ଳୋକ ଓ ୬.୧୫ ରେ 'ନିର୍ବାଣ' ଶବ୍ଦ 'ମୁକ୍ତି' ଅର୍ଥରେ ପ୍ରୟୋଗ କରାଯାଇଛି । ଏଇ ପ୍ରକାର 'ଶରୀରସାଧନା' ବା 'ବାୟୁସାଧନା'ର ଯୋଗ ହେଉଛି, ଏ ଦେଶର ଆଦିମ ଶୂନ୍ୟସାଧନା ବା ନିର୍ମଳ ବୌଦ୍ଧ ସାଧନା । ସେଥିରେ ସାଧକର 'ନିର୍ବାଣ' ହୁଏ, ଅର୍ଥାତ୍ ସାଧକ ଶେଷରେ ଶୂନ୍ୟ ହୋଇଯାଏ । ଏହା ଆତ୍ମାଭଳି କୌଣସି ବଡ଼ ବସ୍ତୁର 'ମୁକ୍ତି' ନୁହେ । ସେ ସାଧନାରେ ଶୂନ୍ୟରୁ ଆତ୍ମା ବୋଲି କହୁ ନ ଥିଲେ । ସେ ମତରେ, ସବୁ ଶୂନ୍ୟରୁ ହୁଏ —ଶେଷକୁ ଶୂନ୍ୟ ହୋଇଯାଏ—ଦୀପ ଲିଭି ଲୋପରି ଲିଭିଯାଏ । ଏହା 'ନିର୍ବାଣ' । ଏଠାରେ ନିର୍ବାଣ ବୋଇଲେ, ବ୍ରହ୍ମରେ ଲିଭିଯିବା ବା ଲୀନ ହେବା ବୋଲି କହି, ଶୂନ୍ୟ-ବାଦର 'ନିର୍ବାଣ' ସଙ୍ଗେ ବୈଦିକ 'ମୁକ୍ତିର' ସମାଧାନ କରାହୋଇଛି । ସେଥିପାଇଁ ଶୂନ୍ୟସାଧନାର ଯୋଗ ବା ତହିଁରୁ ବାହାରିଥିବା ପାତଞ୍ଜଳ ଯୋଗକୁ ଧ୍ୟାନର ସାଧନା ବୋଲି କୁହା ହୋଇଛି । ଏଇ ଶୂନ୍ୟସାଧନା ଓଡ଼ିଶାରେ 'ଅଲେଖ' ଧର୍ମ ପ୍ରଭୃତିରେ ଏବେ ବି ଜୀବନ୍ତ ଅଛି । ୨୪ ।

**ଲଭନ୍ତେ ବ୍ରହ୍ମନିର୍ବାଣମୃଷୟଃ କ୍ଷୀଣକଲ୍ମଷାଃ ।**
**ଛିନ୍ନଦ୍ୱୈଧା ଯତାତ୍ମାନଃ ସର୍ବଭୂତହିତେ ରତାଃ ।୨୫।**

**ଅନ୍ୱୟ**—ସ୍ପଷ୍ଟ । ୨୫ ।

**ଟୀକା**—[ଯେ ଚ] କ୍ଷୀଣକଲ୍ମଷାଃ (ରାଗଦ୍ୱେଷାଦ୍ୟଭାବତ୍ୱାତ୍ ନିଷ୍ପାପାଃ) ଛିନ୍ନଦ୍ୱୈଧାଃ (ସ୍ୱର୍ଣିତ୍ୟାଗାତ୍ ଆତ୍ମାନାତ୍ମସଂଶୟହୀନାଃ) ଯତାତ୍ମାନଃ (କାମକ୍ରୋଧବେଗ-ସହନାତ୍ ସଂଯତଚିତ୍ତାଃ) ସର୍ବଭୂତହିତେ ରତାଃ (ଆତ୍ମଜ୍ଞାନଜ୍ୟୋତିଷା ସର୍ବଂ ସମଂ) ପଶ୍ୟନ୍ ସର୍ବପ୍ରାଣିହିତସାଧକାଃ—(ଅହିଂସକାଃ—ଇତି ଭାବଃ) ଋଷୟଃ (ସମ୍ୟଗ୍‌ଦର୍ଶିନଃ ବ୍ରହ୍ମନିର୍ବାଣଂ ଲଭନ୍ତେ) ।

**ଅର୍ଥ**—[ଏହିପରି] ରାଗ ଦ୍ୱେଷ ଛାଡ଼ି, ଯେ ପାପ କଟାଇଥାନ୍ତି; ବାହ୍ୟଭୋଗ ଛାଡ଼ି, ସୁଖ ଭିତରେ କି ବାହାରେ, ଏହି ସନ୍ଦେହ ତୁଟାଇଥାନ୍ତି; କାମ କ୍ରୋଧର ବେଗ ସହି ମନକୁ ବଶ କରିଥାନ୍ତି ଓ ଆତ୍ମଜ୍ଞାନର ଆଲୁଅରେ ସବୁ ସମାନ ଦେଖି ସମସ୍ତଙ୍କ ହିତରେ ଥାନ୍ତି (୫.୭ ଟୀକା), ସେହି ବ୍ରହ୍ମଜ୍ଞାନୀ ଋଷିମାନେ ବ୍ରହ୍ମନିର୍ବାଣ ପାଆନ୍ତି [ ଅର୍ଥାତ୍, ମଲେ ବ୍ରହ୍ମରେ ଲୀନ ହୁଅନ୍ତି । ] । ୨୫ ।

**କାମକ୍ରୋଧବିଯୁକ୍ତାନାଂ ଯତୀନାଂ ଯତଚେତସାମ୍ ।**
**ଅଭିତୋ ବ୍ରହ୍ମନିର୍ବାଣଂ ବର୍ତ୍ତତେ ବିଦିତାତ୍ମନାମ୍ ।୨୬ ।**

**ଅନ୍ୱୟ**—ସ୍ପଷ୍ଟ । ୨୬ ।

**ଟୀକା**—[ଅତଏବ] କାମକ୍ରୋଧବିଯୁକ୍ତାନାଂ ଯତଚେତସାଂ ବିଦିତାତ୍ମାନାଂ (ଜ୍ଞାତାତ୍ମତତ୍ତ୍ୱାନାଂ) ଯତୀନାଂ ଅଭିତଃ (ଉଭୟତଃ—ଦେହତ୍ୟାଗାତ୍ ଅର୍ବାକ୍ ପରତ୍ର ଚ) ବ୍ରହ୍ମନିର୍ବାଣଂ ବର୍ତ୍ତତେ । ୨୬ ।

**ଅର୍ଥ**—[ଅତଏବ] କାମକ୍ରୋଧଶୂନ୍ୟ, ସଂଯତମନା, ଓ ଆତ୍ମାକୁ ଜାଣି ଥିବା ଯତିମାନଙ୍କର ଦେହ ଛାଡ଼ିବା ପୂର୍ବରୁ ଓ ପରେ ଦୁଇପଟେ ବ୍ରହ୍ମନିର୍ବାଣ ରହିଛି । (ଅର୍ଥାତ୍, ସେମାନେ ବ୍ରହ୍ମରେ ମିଶିକରି ଅଛନ୍ତି ଓ ବ୍ରହ୍ମରେ ଲଭିଯିବେ ।) । ୨୬ ।

**ସ୍ପର୍ଶାନ୍ କୃତ୍ୱା ବହିର୍ବାହ୍ୟାଂଶ୍ଚକ୍ଷୁଶ୍ଚୈବାନ୍ତରେ ଭ୍ରୁବୋଃ ।**
**ପ୍ରାଣାପାନୌ ସମୌ କୃତ୍ୱା ନାସାଭ୍ୟନ୍ତରଚାରିଣୌ । ୨୭ ।**
**ଯତେନ୍ଦ୍ରିୟମନୋବୁଦ୍ଧିର୍ମୁନିର୍ମୋକ୍ଷପରାୟଣଃ ।**
**ବିଗତେଚ୍ଛାଭୟକ୍ରୋଧୋ ଯଃ ସଦା ମୁକ୍ତ ଏବ ସଃ । ୨୮ ।**

**ଅନ୍ୱୟ**—ବାହ୍ୟାନ୍ ସ୍ପର୍ଶାନ୍ ବହିଃ କୃତ୍ୱା, ଭ୍ରୁବୋଃ ଅନ୍ତରେ ଚକ୍ଷୁଃ ଚ ଏବ [କୃତ୍ୱା] ନାସାଭ୍ୟନ୍ତରଚାରିଣୌ ପ୍ରାଣାପାନୌ ସମୌ-କୃତ୍ୱା ଯତେନ୍ଦ୍ରିୟମନୋବୁଦ୍ଧିଃ, ବିଗତେଚ୍ଛାଭୟକ୍ରୋଧଃ ମୋକ୍ଷପରାୟଣଃ ଯଃ ମୁନିଃ, ସଃ ସଦା ମୁକ୍ତଃ ଏବ । ୨୭-୨୮ ।

**ଟୀକା**—[ ବ୍ରହ୍ମସମାଧି ସାଧନେନ ପ୍ରାଣାୟାମାତ୍ମକ-ଧ୍ୟାନଯୋଗେନ ଉପଲକ୍ଷିତାନ୍ ତାନ୍ ମୋକ୍ଷଯତ୍ନାନ୍ ଯତୀନ ସୂଚୟନ୍ ଆହ]—ବାହ୍ୟାନ୍ ସ୍ପର୍ଶାନ୍ ( ବିଷୟାକ୍ରମଣାନ୍ ) ବହିଃ କୃତ୍ୱା ( ନ ଗଣୟିତ୍ୱେତି ଭାବଃ) ଭ୍ରୁବୋଃ ଅନ୍ତରେ (ମଧ୍ୟେ) ଚକ୍ଷୁଃ (ଦୃଷ୍ଟିଂ) ଚ ଏବ [କୃତ୍ୱା] ନାସାଭ୍ୟନ୍ତରଚାରିଣୌ । ଯଥାକ୍ରମେଣ ବହିର୍ଗତାନ୍ତର୍ଗତୌ ପ୍ରାଣାପାନୌ (ନିଃଶ୍ୱାସପ୍ରଶ୍ୱାସୌ) [କୁମ୍ଭକେନ] ସମୌ କୃତ୍ୱା, ଯତେନ୍ଦ୍ରିୟମନୋବୁଦ୍ଧିଃ (ଆତ୍ମନି ଅର୍ପିତତ୍ୱାତ୍ ଯତାନି ସଂଯତାନି ଇନ୍ଦ୍ରିୟାଣି ମନଶ୍ଚ ବୁଦ୍ଧିଶ୍ଚ ଯସ୍ୟ ସଃ) ବିଗତେଚ୍ଛାଭୟକ୍ରୋଧଃ (କାମଭୟକ୍ରୋଧବର୍ଜିତଃ) ମୋକ୍ଷପରାୟଣଃ (ମୁକ୍ତିପରଃ) ଯଃ ମୁନିଃ (ଧ୍ୟାନରତୋ ଯତିଃ) [ଭବତି] ସଃ ସଦା ମୁକ୍ତଃ (ଛିନ୍ନବନ୍ଧନଃ) ଏବ [ଭବତି]—[ଅତ୍ର ପାତଞ୍ଜଳଂ ଯୋଗଦର୍ଶନଂ ଦ୍ରଷ୍ଟବ୍ୟମ୍] । ୨୭-୨୮ ।

**ଅର୍ଥ**—[ବ୍ରହ୍ମ ସମାଧି ଠିକ୍ ରଖିବାକୁ ପ୍ରାଣାୟାମାଦିଯୁକ୍ତ ଧ୍ୟାନ ଯୋଗର ସାଧନା କର୍ମଯୋଗୀର କପର ଦରକାର, ତାହା ଦେଖାଇ ସେହି ଧ୍ୟାନଯୋଗରେ ଥିବା ଯୋଗୀକୁ ଦେଖାଇ କହୁଛନ୍ତି—ବାହାର ବିଷୟର ଆକ୍ରମଣକୁ ଖାତିର ନ କରି, ଆଖିର ଡୋଳା ଉପରକୁ କରି ଦୁଇ ଭ୍ରୂଲତା ମଝିକୁ ଚାହିଁ, ନାକ ଭିତରେ ଚାଲୁଥିବା ପ୍ରାଣ ଓ ଅପାନ ବାୟୁକୁ କୁମ୍ଭକରେ ସମାନ କରି, ଇନ୍ଦ୍ରିୟ ମନ ଓ ବୁଦ୍ଧିକୁ ଆତ୍ମାର ବଶ କରି, ଇଚ୍ଛା, ଭୟ, କ୍ରୋଧ ଛାଡ଼ି ଯେଉଁ ମୁନି ମୁକ୍ତି ପାଇଁ ଲାଗି ପଡ଼ିଥାଏ, ସେ ହିଁ ହେଉଛି ସର୍ବଦା ମୁକ୍ତ । ୨୭-୨୮ ।

ବ୍ୟାଖ୍ୟା ସୂଚନା—୪.୨୯ ଟୀକା ଦେଖ । ଆଖି ପୂରା ଫିଟାଇଲେ ବାହାରେ ଦୃଷ୍ଟି ପଡ଼ି ଧ୍ୟାନ ଭାଙ୍ଗି ଯାଇପାରେ ଓ ବୁଜିଦେଲେ ନିଦ ଲାଗି ଯାଇପାରେ, ଏଥିପାଇଁ ଆଖି ଅଧଫିଟା କରିବା ପ୍ରଭୃତି ଯୋଗ ସାଧନାର ବିଧିମାନ ଜାଣିବାକୁ ହେଲେ, ପାତଞ୍ଜଳ ଯୋଗଦର୍ଶନ ଦେଖ । ଏଇ ଧ୍ୟାନଯୋଗ ଗୀତାମତରେ କର୍ମସାଧନାରେ ଜ୍ଞାନ ଠିକ୍ ରଖିବାରେ ସହାୟକ । ଯୋଗୀନ୍ଦ୍ର ପତଞ୍ଜଳି ମଧ୍ୟ ଯମ ନିୟମକୁ ପ୍ରଥମ ସ୍ଥାନ ଦେଇ ପ୍ରାଣାୟାମାଦି ଯୋଗ ସାଧନକୁ ମୋକ୍ଷର ସାଧକ ବୋଲି କହିଛନ୍ତି । ଯମ ୫ଟି=ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ । ନିୟମ ୫ଟି=ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ । ୨୭-୨୮ ।

**ଭୋକ୍ତାରଂ ଯଜ୍ଞତପସାଂ ସର୍ବଲୋକମହେଶ୍ୱରମ୍**
**ସୁହୃଦଂ ସର୍ବଭୂତାନାଂ ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି । ୨୯ ।**

**ଅନ୍ୱୟ**—ଯଜ୍ଞତପସାଂ ଭୋକ୍ତାରଂ, ସର୍ବଲୋକମହେଶ୍ୱରଂ, ସର୍ବଭୂତାନାଂ ସୁହୃଦଂ ମାଂ ଜ୍ଞାତ୍ୱା ଶାନ୍ତିଂ ଋଚ୍ଛତି । ୨୯ ।

**ଟୀକା**—[ଏବଂ ସଦା ମୁକ୍ତୋଽସୌ ମୁନିଃ] ଯଜ୍ଞତପସାଂ (ସର୍ବବିଧ କର୍ମୈଶ୍ୱର୍ଯ୍ୟ ସାଧନେନ ମୋକ୍ଷାୟ ଯେ ପ୍ରଯତ୍ନାଃ, ତେଷାଂ) ଭୋକ୍ତାରଂ, (ଗ୍ରହୀତାରଂ, ସ୍ୱୀକର୍ତାରଂ) ସର୍ବଲୋକମହେଶ୍ୱରଂ (ସର୍ବଲୋକାନାଂ, ଶ୍ରେଷ୍ଠନିୟନ୍ତାରଂ) ସର୍ବଭୂତାନାଂ (ସର୍ବପ୍ରାଣିନାଂ) ସୁହୃଦଂ (ଅନୁଗତଂ ଆତ୍ମୀୟଂ) [ଭକ୍ତିଲଭ୍ୟଂ ବିଭୁରୂପଂ] ମାଂ ଜ୍ଞାତ୍ୱା ଶାନ୍ତିଂ ଋଚ୍ଛତି (ପ୍ରାପ୍ନୋତି) । ୨୯ ।

**ଅର୍ଥ**—[ଏହିପରି ସର୍ବଦା ମୁକ୍ତ ମୁନି] ଯଜ୍ଞ ତପର ଭୋକ୍ତା, ସର୍ବଜଗତର ମହେଶ୍ୱର, ସବୁ ପ୍ରାଣୀଙ୍କର ସୁହୃଦ୍ [ଭକ୍ତର ପ୍ରଭୁ ଭଗବାନ୍ ବୋଲି] ମତେ ଜାଣି ନିତ୍ୟ ଶାନ୍ତି ପାଏ । ୨୯ ।

ବ୍ୟାଖ୍ୟା ସୂଚନା—ଯଜ୍ଞତପର ଭୋକ୍ତା=ଯଜ୍ଞାର୍ଥ ସବୁ କର୍ମ ଯେ ତପ, ବା ମୋକ୍ଷପାଇଁ ଉଦ୍ୟମ କରିହୁଏ, ସେ ସବୁର ଭୋକ୍ତା ବା ଗ୍ରହଣକର୍ତ୍ତା । ଭକ୍ତ ଈଶ୍ୱରଙ୍କର

ସବୁ କର୍ମ ବୋଲି ଈଶ୍ୱରଙ୍କୁ ଅର୍ପଣ କରି, କରେ । ଈଶ୍ୱର ତାହା ପାଆନ୍ତି, ଅର୍ଥାତ୍ ଭକ୍ତର ଏଇ ଭାବ ଗ୍ରହଣ କରନ୍ତି । ମହେଶ୍ୱର = ସର୍ବୋପରି ଥିବା ପାଳକ ଓ ଶାଳକ । ସୁହୃତ୍ = ମନ ମୁତାବକ୍ ବନ୍ଧୁ; ଯେ ଯେପରି ବସ୍ତୁରେ, ଈଶ୍ୱର ତାର ସେଇପରି ଆପଣା ଲୋକ । ୫. ୧୪; ୧୫ର ଏ ଶ୍ଳୋକ, ବିରୋଧୀ ନୁହେ । ଏ ଭକ୍ତର ଈଶ୍ୱରଭାବ ଈଶ୍ୱରଙ୍କ ସ୍ୱଭାବ କର୍ମ ରୂପରେ ବ୍ୟକ୍ତ, ତଥାପି ଈଶ୍ୱର କର୍ମରୁ ଅତୀତ, ଏଇପରି ସେ ସବୁ, ସେ କାହିଁରେ ନାହାନ୍ତି । [ସେ ଅବର୍ଣ୍ଣନୀୟ, ମନୁଷ୍ୟର ଭାଷାରୁ ଅତୀତ, ଏଣୁ ତାଙ୍କଠାରେ ଏଇପରି ପରସ୍ପରବିରୋଧୀ ଗୁଣ ଓ ଶକ୍ତିକୁ ଆରୋପ କରି ମନୁଷ୍ୟ ତାଙ୍କର ନିକଟ ଯାଙ୍କ ଦର୍ଶନ ବା ଆଭାସ ପାଇବାର ଆଶା କରେ—ମହାତ୍ମା ଗାନ୍ଧୀ ] । ୨୯ ।



# ଷଷ୍ଠ ଅଧ୍ୟାୟ

## ଧ୍ୟାନ-ଯୋଗ

### ଅଧ୍ୟାୟ ପ୍ରବେଶ—

ତୃତୀୟ ଅଧ୍ୟାୟ ଶେଷରେ (୩.୪୧ ଦେଖ) ଭଗବାନ୍ କର୍ମଯୋଗ ପାଇଁ କାମକୁ ଦମନ କରିବା ସମ୍ପର୍କରେ କହୁଥିଲେ, ଆଗ ଇନ୍ଦ୍ରିୟସଂଯମ କରି ଜ୍ଞାନ-ବିଜ୍ଞାନ-ନାଶକ ଏହି କାମକୁ ଛାଡ଼୍ । ସେଠାରୁ ତୃତୀୟ ଅଧ୍ୟାୟରେ ଆରମ୍ଭ କରିଥିବା ଜ୍ଞାନତତ୍ତ୍ୱକୁ ଅବତାର ସମ୍ପର୍କରେ ଚତୁର୍ଥ ଅଧ୍ୟାୟରେ ବ୍ୟାଖ୍ୟା କରି, ପଞ୍ଚମରେ କର୍ମର ସନ୍ନ୍ୟାସ କିପରି ଠିକ୍ ନୁହେଁ—କର୍ମରେ ସନ୍ନ୍ୟାସହିଁ କିପରି କରିବାକୁ ହୁଏ, ତା କହିଲେ । ଏବେ ଷଷ୍ଠ ଅଧ୍ୟାୟରେ ଧ୍ୟାନରେ ମନ ଠିକ୍ କରି କିପରି ଇନ୍ଦ୍ରିୟ ସଂଯମ କରିବାକୁ ହେବ, ତା କହିବେ, ଓ ସପ୍ତମ ଅଧ୍ୟାୟରେ ଜ୍ଞାନ-ବିଜ୍ଞାନ ବୁଝାଇବା ଆରମ୍ଭ କରି କ୍ରମେ ଅଷ୍ଟମରେ ଅବ୍ୟକ୍ତ ଉପାସନାରୁ, ନବମରେ ବ୍ୟକ୍ତ ଈଶ୍ୱର ସ୍ୱରୂପ, ଦଶମରେ ବିଭୂତି, ଏକାଦଶରେ ବିଶ୍ୱରୂପ, ଓ ଦ୍ୱାଦଶରେ ଭକ୍ତିକଥା କହିଯିବେ ।

ଷଷ୍ଠ ଅଧ୍ୟାୟରେ ପୂର୍ବକଥା ସଂଗ୍ରହ କରି କହୁଚନ୍ତି, ଯେ ଫଳର ଆଶା ନ ରଖି କର୍ମ କରେ, ସେହି ସନ୍ନ୍ୟାସୀ, ସେହି ଯୋଗୀ—ଏହିପରି ଯୋଗହିଁ ସନ୍ନ୍ୟାସ । ଆଗ କର୍ମରେ ଆତ୍ମଭାବ ଠିକ୍ କରି, ପରେ ଶାନ୍ତଭାବରେ ଲୋକସଂଗ୍ରହ ପାଇଁ ସବୁ କରିବ । ଏହା କହିସାରି ୩.୪୨, ୪୩ରେ କହିଥିବା କଥାକୁ ଧରି ଆତ୍ମବୁଦ୍ଧିକୁ କ୍ରମେ ଇନ୍ଦ୍ରିୟାଦିରୁ ଉଠାଇବା ଲାଗି ଆତ୍ମଜ୍ଞାନ ସର୍ବଦା ଠିକ୍ ରଖିବା କଥା କହୁଚନ୍ତି । ସେଥିପାଇଁ, କି ପ୍ରଣାଳୀରେ ଧ୍ୟାନଯୋଗ ସାଧନା କରି, କିପରି ସେହି ଧ୍ୟାନଯୋଗରେ କ୍ରମେ କ୍ରମେ ମନକୁ ଆପଣାର ବଶ କରିବ ଓ କାମନା ସବୁ ଛାଡ଼ିବ, ତାହା ଭଲ କରି ବୁଝାଇଚନ୍ତି । ଏପରି ହେଲେ ସର୍ବଭୂତରେ ଓ ନିଜ ଆତ୍ମାରେ ଏକ ଈଶ୍ୱର ଅନୁଭବ କରି, ଯୋଗୀ, ଆପଣାର ଶରୀରରେ ସୁଖ ଦୁଃଖ ପ୍ରଭୃତି ଯେପରି ହୁଏ, ଅନ୍ୟର ସେହିପରି ହୁଏ ବୋଲି ବୁଝି ପ୍ରାଣିହିତରେ ହିଁ ଲାଗିବ ।

ପୁଣି ଅର୍ଜୁନଙ୍କର ସନ୍ଦେହ ତୁଟାଇ କହୁଚନ୍ତି, ମନ ଚଞ୍ଚଳ ହେଲେହେଁ ଧ୍ୟାନର ଅଭ୍ୟାସ କରି ଓ ଆସକ୍ତି ଛାଡ଼ି ତାକୁ ବଶ କରିବ । ତଥାପି କାଳେ ପାରି ନ ହେବ ବୋଲି ଅର୍ଜୁନଙ୍କର ସଂଦେହ ହେବାରୁ, ଭଗବାନ କହିଚନ୍ତି, "କିଛି ଚିନ୍ତା ନାହିଁ; ଲୋକ ଅନାସକ୍ତିର ଅଭ୍ୟାସ କରୁ କରୁ ଯୋଗଭ୍ରଷ୍ଟ ହେଲେ ବି, ତାର ଯୋଗ

ନଷ୍ଟ ହୁଏ ନାଇ; ପରଜନ୍ମରେ ବ ସେ ସେହି ସଂସ୍କାର ଘେନି ଜନ୍ମ ହୁଏ; ଏହିପରି ଅନେକ ଜନ୍ମରେ ହେଲେହେଁ ସେ ଶେଷରେ ସିଦ୍ଧି ପାଏ । ଏଣୁ ଯୋଗୀ ହେବା ସବୁଠୁ ଭଲ । ବିଶ୍ୱାସରେ ମତେ ଭଜିଲେ, ଯୋଗ ସୁଗମ ହୁଏ ଓ ଏହିପରି ଯୋଗ କରିବାହିଁ ଶ୍ରେଷ୍ଠ ପନ୍ଥା ।”

ଶ୍ରୀ ଭଗବାନୁବାଚ

**ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟଂ କର୍ମ କରୋତି ଯଃ ।**
**ସ ସଂନ୍ୟାସୀ ଚ ଯୋଗୀ ଚ ନ ନିରଗ୍ନିର୍ନ ଚାକ୍ରିୟଃ । ୧ ।**

**ଅନ୍ୱୟ**—କର୍ମଫଳଂ ଅନାଶ୍ରିତଃ ଯଃ କାର୍ଯ୍ୟଂ କର୍ମ କରୋତି, ସ ସଂନ୍ୟାସୀ ଚ ଯୋଗୀ ଚ; ନ ନିରଗ୍ନିଃ ନ ଚ ଅକ୍ରିୟଃ [ତଥା ସ୍ୟାତ୍] । ୧ ।

**ଟୀକା**—[ନିଷ୍କାମକର୍ତ୍ତବ୍ୟରତସ୍ୟ ଅନାସକ୍ତେରେବ ସନ୍ନ୍ୟାସଃ—ଇତି ଦ୍ୱାଭ୍ୟାଂ ସଂକଲ୍ପୟିଷ୍ୟନ୍]—ଶ୍ରୀ ଭଗବାନ୍ ଉବାଚ—କର୍ମଫଳଂ ଅନାଶ୍ରିତଃ (ଅନପେକ୍ଷମାଣଃ) [ସନ୍] ଯଃ କାର୍ଯ୍ୟଂ (ଅବଶ୍ୟକରଣୀୟଂ) [ପାରିବାରିକସାମାଜିକାଦିକଂ ଆଧ୍ୟାତ୍ମିକଂ, ଆଧିଦୈବିକଂ, ଆଧିଭୌତିକଂ ଚ ସର୍ବଂ] କର୍ମ କରୋତି, ସଃ ସନ୍ନ୍ୟାସୀ (ତ୍ୟାଗୀ) ଚ ଯୋଗୀ (କର୍ମଣି ଯଥାର୍ଥଂ ଆତ୍ମନିୟୋଗୀ) ଚ [ଭବତି] । (ସ ଏବ କର୍ମରତଃ ଯୋଗିପୁରୁଷଃ ଯଥାର୍ଥସନ୍ନ୍ୟାସୀତି ଭାବଃ) । ନ ନିରଗ୍ନିଃ (ଗୃହସ୍ଥସ୍ୟ ଅବଶ୍ୟକର୍ତ୍ତବ୍ୟାନାଂ ତ୍ୟାଗୀ—ଅଗ୍ନିଶବ୍ଦେ ଦକ୍ଷିଣାଦିଗୃହସ୍ଥସ୍ୟୋପାସନୀୟା ଅଗ୍ନୟଃ, ତୈଃ ରହିତସ୍ୟ ଗୃହସ୍ଥକର୍ତ୍ତବ୍ୟହୀନତା ଗମ୍ୟତେ) ନ ଚ ଅକ୍ରିୟଃ (ଇଷ୍ଟାପୂର୍ତ୍ତ-ତପୋଦାନ-ଜନସେବାଦି ସାମାଜିକାଧ୍ୟାତ୍ମିକାଦିକର୍ତ୍ତବ୍ୟତ୍ୟାଗୀ) [ସନ୍ନ୍ୟାସୀ ସ୍ୟାତ୍] । ୧ ।

**ଅର୍ଥ**—[ନିର୍ଦ୍ଦିଷ୍ଟ କର୍ତ୍ତବ୍ୟରେ ଅନାସକ୍ତ ଭାବରେ ଲାଗି ରହି ଯୋଗୀ ହେବାହିଁ ସନ୍ନ୍ୟାସ = କର୍ମତ୍ୟାଗୀ ସନ୍ନ୍ୟାସୀ ନୁହେ ବୋଲି ପୂର୍ବ ଅଧ୍ୟାୟର ସାରକଥା ଦୁଇ ଶ୍ଳୋକରେ ଆଗ କହି ଦେଇ ସାରି ଅନ୍ୟ କଥା ଆରମ୍ଭ କରିବେ ବୋଲି ] ଶ୍ରୀ ଭଗବାନ୍ କହିଲେ—କର୍ମ ଫଳରେ ଆସ୍ଥା ଛାଡ଼ି ଯେ କରିବାର କର୍ମ (ଅର୍ଥାତ୍, ପାରିବାରିକ-ସାମାଜିକାଦି-ହିତ-କର୍ମ ନିଜ ପାଇଁ, ପିତୃଦେବତାଙ୍କ ପାଇଁ ତଥା ଜନସେବା ଓ ପ୍ରାଣିହିତ ପାଇଁ ସବୁ ହିତ କର୍ମ) କରନ୍ତି, ସେହି ସନ୍ନ୍ୟାସୀ, ପୁଣି ସେହି ଯୋଗୀ, (ଅର୍ଥାତ୍, ସେହି କର୍ମରେ ଲାଗିଥିବା ଯୋଗୀ ହିଁ ଯଥାର୍ଥ ସନ୍ନ୍ୟାସୀ) । ଅଗ୍ନି ଛାଡ଼ିବା ଲୋକ ସନ୍ନ୍ୟାସୀ ନୁହେ, କି କ୍ରିୟା ଛାଡ଼ିବା ଲୋକ ସନ୍ନ୍ୟାସୀ ନୁହେ । ୧ ।

ବ୍ୟାଖ୍ୟା ସୂଚନା—ଏହିପରି ଅଗ୍ନି ଓ କ୍ରିୟା ଛାଡ଼ି, କର୍ମତ୍ୟାଗରେ ସନ୍ନ୍ୟାସ କରିବା ପ୍ରଚଳିତ ଥିଲା । ଦକ୍ଷିଣ, ଗାର୍ହପତ୍ୟ, ଆହବନୀୟ—ଏହି ତିନି ଅଗ୍ନି ରଖିବା ଓ ଏଇ ଅଗ୍ନିରେ ବୈଶ୍ୱଦେବ କରିବା ପ୍ରଭୃତି ଗୃହସ୍ଥର ନିତ୍ୟକ୍ରିୟା ବେଦ, ସ୍ମୃତି ଆଦିରେ ପ୍ରସିଦ୍ଧ । ତେଣୁ, ଅଗ୍ନି ଛାଡ଼ିବା ଲୋକ=ଗୃହସ୍ଥ କର୍ତ୍ତବ୍ୟ ଛାଡ଼ିବା ଲୋକ । ସେହିପରି ଯାଗ ଶ୍ରାଦ୍ଧ କରିବା ( ଇଷ୍ଟ ), କୂଅ ପୋଖରୀ ଖୋଳାଇବା (ପୂର୍ତ୍ତ) ପ୍ରଭୃତି ସାମାଜିକ କ୍ରିୟା । ତେଣୁ, କ୍ରିୟା ଛାଡ଼ିଥିବା ଲୋକ=ଦାନପୁଣ୍ୟ, ଜନସେବା, ପ୍ରାଣିହିତ ସବୁ ଛାଡ଼ିଥିବା ଲୋକ । ନିରଗ୍ନି ଓ ଅକ୍ରିୟ=ସବୁ ପ୍ରକାର କର୍ମଛାଡ଼ି ସନ୍ନ୍ୟାସ ଧରିବା ଲୋକ । ଏଇପରି ସବୁ କର୍ମ ଛାଡ଼ିବା ଲୋକ ସନ୍ନ୍ୟାସୀ ନୁହେଁ । କର୍ମ ଫଳରୁ ଆସକ୍ତି ଛାଡ଼ି ଯେ ସନ୍ନ୍ୟାସୀ ହୁଏ, ସେଇ ଯଥାର୍ଥ ସନ୍ନ୍ୟାସୀ ଓ ସେଇ ଏକା ଯୋଗୀ; ସେଥିପାଇଁ ପର ଶ୍ଳୋକରେ ପୁଣି ସ୍ପଷ୍ଟ କରି କହୁଛନ୍ତି । ୧ ।

**ଯଂ ସଂନ୍ୟାସମିତି ପ୍ରାହୁର୍ଯୋଗଂ ତଂ ବିଦ୍ଧି ପାଣ୍ଡବ ।**
**ନ ହ୍ୟସଂନ୍ୟସ୍ତସଂକଳ୍ପୋ ଯୋଗୀ ଭବତି କଶ୍ଚନ ।୨ ।**

**ଅନ୍ୱୟ**—ପାଣ୍ଡବ ! ଇତି ଯଂ ସନ୍ନ୍ୟାସଂ ପ୍ରାହୁଃ, ତଂ ଯୋଗଂ ବିଦ୍ଧି । ହି ଅସନ୍ନ୍ୟସ୍ତସଂକଳ୍ପଃ କଃଚନ ଯୋଗୀ ନ ଭବତି । ୨ ।

**ଟୀକା**—ହେ ପାଣ୍ଡବ, ଇତି (ଇତ୍ୟଥଂ) ଯଂ ସନ୍ନ୍ୟାସଂ ପ୍ରାହୁଃ, ତଂ ଯୋଗଂ ବିଦ୍ଧି । ହି ( ଯତଃ ) ଅସନ୍ନ୍ୟସ୍ତସଂକଳ୍ପଃ ( ନ ସନ୍ନ୍ୟସ୍ତଃ ତ୍ୟକ୍ତଃ ସଂକଳ୍ପଃ ଫଳାଭିସନ୍ଧିଃ ଯେନ ସଃ) [ସନ୍] କଃଚନ ଯୋଗୀ ନ ଭବତି । ୨ ।

**ଅର୍ଥ**—ହେ ପାଣ୍ଡବ, ଏହିପରି ଯାହାଙ୍କୁ ସନ୍ନ୍ୟାସ କହନ୍ତି, ତାକୁଇ ଯୋଗ ବୋଲି ଜାଣ । କାହିଁକି ନା, ସଂକଳ୍ପ-ସନ୍ନ୍ୟାସ ନ କରି କେହି ଯୋଗୀ ହୁଏ ନାଇଁ । (ଅର୍ଥାତ୍, ଖାଲି କାମରେ ଯୁକ୍ତଥିଲେ, ବା ଲାଗିଥିଲେ, ଯୋଗୀ ହୁଅନ୍ତି ନାଇଁ । ସଂକଳ୍ପ ବା ଫଳର କଳ୍ପନା ପର୍ଯ୍ୟନ୍ତ ଛାଡ଼ି କର୍ମ କଲେ ଯାଇ ଯୋଗୀ ହୁଅନ୍ତି । ) । ୨ ।

ବ୍ୟାଖ୍ୟା ସୂଚନା—ସଂକଳ୍ପ=ଫଳକୁ କଳ୍ପନା କରି ମନକୁ ସେଇ ଆଡ଼କୁ ଢାଳିବା—ଇଂରେଜିରେ, Will । ଏହି ସଂକଳ୍ପରୁ କାମ ଜାଗ୍ରତ ହୁଏ । ୪.୧୯;୬ ୪, ୨୪ ଦେଖ । ସନ୍ନ୍ୟାସର ଧାତ୍ୱର୍ଥ=ସମ୍ପୂର୍ଣ୍ଣ ତ୍ୟାଗ । ସନ୍ନ୍ୟାସ କରିବା =ବରାବର ଛାଡ଼ିବା ।

ସନ୍ନ୍ୟାସୀ ନ ହେଲେ ମଧ୍ୟ କେହି ଯୋଗୀ ହୁଏ ନାଇଁ । ଖାଲି କର୍ମ କରୁଥିବା ଲୋକ ଯୋଗୀ ନୁହେଁ । କର୍ମର ଫଳ ଆଡ଼କୁ କଳ୍ପନାରେ ଢଳିବା ମଧ୍ୟ ଯୋଗୀର ଲକ୍ଷଣ ନୁହେଁ । ଏହି କଳ୍ପନା ବା ଆସକ୍ତିର ବୀଜ ଛାଡ଼ିବା ହିଁ ସନ୍ନ୍ୟାସ । ତାହାହିଁ

ଯୋଗ । ଅତଏବ ସନ୍ନ୍ୟାସ ଓ ଯୋଗ ଏକା କଥା । ଯେଉଁମାନେ ଏ ଦୁଇଟିକୁ ଭିନ୍ନ ବୋଲି ବୁଝନ୍ତି, ସେମାନେ ସନ୍ନ୍ୟାସ (ତ୍ୟାଗ)ର କଦର୍ଥ କରନ୍ତି, ଓ ଯୋଗ (କର୍ମରେ ଯଥାର୍ଥ ଲାଗି ରହିବା) କଣ, ତା ବି ବୁଝନ୍ତି ନାଇ । ୨ ।

**ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମ କାରଣମୁଚ୍ୟତେ ।**
**ଯୋଗାରୂଢ଼ସ୍ୟ ତସ୍ୟୈବ ଶମଃ କାରଣମୁଚ୍ୟତେ । ୩ ।**

**ଅନ୍ୱୟ**—ଯୋଗଂ ଆରୁରୁକ୍ଷୋଃ ମୁନେଃ କର୍ମ କାରଣଂ ଉଚ୍ୟତେ । ଯୋଗାରୂଢ଼ସ୍ୟ ଶମଃ ଏବ ତସ୍ୟ କାରଣଂ ଉଚ୍ୟତେ । ୩ ।

**ଟୀକା**—[ଭେଦସ୍ତୁ ଏଷ ଏବ ଯତ୍]—ଯୋଗଂ ଆରୁରୁକ୍ଷୋଃ (ପ୍ରାପ୍ତୁମିଚ୍ଛୋଃ) ମୁନେଃ (ସାଧକସ୍ୟ) [ଯଜ୍ଞାଦ୍ୟ] କର୍ମ [ଯୋଗାରୋହଣସ୍ୟ ଶମସ୍ୟ ବା] କାରଣଂ ଉଚ୍ୟତେ । ଯୋଗାରୂଢ଼ସ୍ୟ (ଯୋଗସ୍ଥସ୍ୟ ସିଦ୍ଧସ୍ୟ—ସଂନ୍ୟାସିନଃ ଇତି ଯାବତ୍) ଶମଃ (ତତ୍ତ୍ୱନିଷ୍ଠାର୍ଥଂ ସନ୍ନ୍ୟାସଜତା ଶାନ୍ତିଃ) ଏବ [ଲୋକସଂଗ୍ରହାଦ୍ୟ] ତସ୍ୟ [କର୍ମଣଃ] କାରଣଂ ଉଚ୍ୟତେ । ୩ ।

**ଅର୍ଥ**—[କିନ୍ତୁ କର୍ମ ଓ ସନ୍ନ୍ୟାସର ଏହି ଭେଦ ବୋଲି ଜଣା ପଡ଼ିପାରେ ଯେ] ଯୋଗକୁ ଉଠୁଥିବା ସାଧକର କର୍ମ ହିଁ ଶାନ୍ତିର କାରଣ ବୋଲି କୁହାଯାଏ । ଯୋଗସ୍ଥ ହୋଇଥିବା ସିଦ୍ଧ ସନ୍ନ୍ୟାସୀର ଶାନ୍ତି ହିଁ କର୍ମର କାରଣ ବୋଲି କୁହାଯାଏ । ୪.୩୮ ଦେଖ । ୩ ।

ବ୍ୟାଖ୍ୟା ସୂଚନା—ଶାନ୍ତି=ସ୍ଥିତପ୍ରଜ୍ଞା, ତତ୍ତ୍ୱନିଷ୍ଠତା, ଚିତ୍ତଶୁଦ୍ଧି ବା ନିର୍ମଳତା; ଯୋଗ ବା ମୋକ୍ଷସାଧନାରେ କର୍ମ ଅଭ୍ୟାସ କରି ସିଦ୍ଧ ହେଲେ, ଜ୍ଞାନୀଜନ ଲୋକ ଯଥାର୍ଥ ସନ୍ନ୍ୟାସର ଶାନ୍ତିରେ ରହି ଲୋକସଂଗ୍ରହ ପାଇଁ କର୍ମ କରେ । ୩.୪ ଦେଖ । ୩ ।

**ଯଦା ହି ନେନ୍ଦ୍ରିୟାର୍ଥେଷୁ ନ କର୍ମସ୍ୱନୁଷଜ୍ଜତେ ।**
**ସର୍ବସଂକଳ୍ପସଂନ୍ୟାସୀ ଯୋଗାରୂଢସ୍ତଦୋଚ୍ୟତେ । ୪ ।**

**ଅନ୍ୱୟ**—ଯଦା ସର୍ବସଙ୍କଳ୍ପ ସନ୍ନ୍ୟାସୀ ନ ଇନ୍ଦ୍ରିୟାର୍ଥେଷୁ ନ କର୍ମସୁ ଅନୁଷଜ୍ଜତେ ତଦା ହି [ସଃ] ଯୋଗାରୂଢ଼ ଉଚ୍ୟତେ । ୪ ।

**ଟୀକା**—[ଶମସାଧନଂ ତମେବ ଯୋଗାରୂଢ଼ଂ ସ୍ଫୁଟୀକରୋତି]—ଯଦା ସର୍ବସଙ୍କଳ୍ପସନ୍ନ୍ୟାସୀ ନ ଇନ୍ଦ୍ରିୟାର୍ଥେଷୁ [ଭୋଗେଷୁ] ନ [ବା ତତ୍ସାଧନେଷୁ] କର୍ମସୁ ଅନୁଷଜ୍ଜତେ (ଆସକ୍ତଃ ତିଷ୍ଠତି) ତଦା ହି (ନିଶ୍ଚିତଂ) [ସଃ] ଯୋଗାରୂଢ଼ଃ ଉଚ୍ୟତେ । ୪ ।

**ଅର୍ଥ**—[ଶାସ୍ତ୍ରରେ କର୍ମ କରୁଥିବା ସେହି ଯୋଗାରୂଢ଼ଙ୍କୁ ଲକ୍ଷଣ ଦେଖାଇ କହୁଚନ୍ତି]—ଯେତେବେଳେ ସେ ସମସ୍ତ ଫଳ କଳ୍ପନା ପର୍ଯ୍ୟନ୍ତ ଛାଡ଼ିବାରୁ ଭୋଗରେ ବା କର୍ମରେ କୌଣସିମତେ ଆସକ୍ତ ନ ଥାଏ, ସେତେବେଳେ ତାଙ୍କୁ ଯୋଗାରୂଢ଼ କୁହାଯାଏ । ୪ ।

ବ୍ୟାଖ୍ୟା ସୂଚନା—ମୁଁ ମୁକ୍ତ ହେବି ବା ଯୋଗସ୍ଥ ହେବାର ଅବସ୍ଥାକୁ ଯିବାଲାଗି ଦ୍ୱନ୍ଦ୍ୱ ଛାଡ଼ିବାର ଅଭ୍ୟାସରେ କର୍ମ କରୁଛ—ଏଥିରେ ମଧ୍ୟ ଏକପ୍ରକାର ଆସକ୍ତି ତଥା ଆସକ୍ତିର ଆଶଙ୍କା ଅଛି । ତେଣୁ 'ଯୋଗାରୂଢ଼' ବ୍ୟକ୍ତିକୁ ସର୍ବ-ସଙ୍କଳ୍ପ-ସନ୍ନ୍ୟାସୀ ବା ଯଥାର୍ଥ ସନ୍ନ୍ୟାସୀ ବୋଲି କୁହାଯାଇଛି । ୪ ।

ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍ ।
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ।୫।

**ଅନ୍ୱୟ**—ସ୍ପଷ୍ଟଃ । ୫ ।

**ଟୀକା**—[କର୍ମ ସାଧନାତ୍ କଥଂ ବା ଏତଃ ସନ୍ନ୍ୟାସଃ ସମ୍ଭବତୀତ୍ୟାହ]-ଆତ୍ମନା (ସ୍ୱୀୟ ପ୍ରଯତ୍ନେନ—ନିତ୍ୟମନାସକ୍ତସ୍ୟ ଅନୁଦ୍‌ଭୂତସ୍ୟ ସୂକ୍ଷ୍ମତମସ୍ୟ ଆତ୍ମନଃ ଧ୍ୟାନେନ) [ଦେହମନଆଦିଷୁ ଲିପ୍ତବତ୍ ପ୍ରତିଭାତଂ] ଆତ୍ମାନଂ [ବନ୍ଧନାତ୍] ଉଦ୍ଧରେତ୍ (ଊର୍ଦ୍ଧ୍ୱଂ ନୟେତ୍), ଆତ୍ମାନଂ ନ ଅବସାଦୟେତ୍ (ଅଧୋନୟେତ୍—ଦେହ ସ୍ମୃତ୍ୟା ଅଧଃ ପାତୟେତ୍); ହି (ଯତଃ) [ ଅନାସକ୍ତଃ ଅନୁଦ୍‌ଭୂତଃ ] ଆତ୍ମା ଏବ ଆତ୍ମନଃ (ନିଜସ୍ୟ) [ ଦେହାତ୍ମବୁଦ୍ଧି ମୋକ୍ଷଣାୟ ] ବନ୍ଧୁଃ (ଉପକାରକଃ)— (ଆତ୍ମା ଏବ ବନ୍ଧୁଃ ନ ତୁ ଅନ୍ୟଃ—ଅନ୍ୟେ ବାହ୍ୟା ବନ୍ଧବଃ ବରଂ ବନ୍ଧନାୟ); [ତଥା] ଆତ୍ମା ଏବ (ନ ତୁ ଅନ୍ୟଃ ବାହ୍ୟଃ—ସ ତୁ ଅନ୍ୟଃ ରିପୁଃ ଆତ୍ମକୃତଃ, ଇତି ଭାବଃ) ଆତ୍ମନଃ ରିପୁଃ (ଅଧଃପାତକଃ) । ୫ ।

**ଅର୍ଥ**—[ଯେଉଁ କର୍ମରେ ପଦେ ପଦେ ଏପରି ଆସକ୍ତି ଜଡ଼ିତ ରହିଛି, ସେଇ କର୍ମ ସାଧନାରେ ପୁଣି ଯୋଗସ୍ଥିତିର ସନ୍ନ୍ୟାସକୁ ଉଠିବା କିପରି ସମ୍ଭବ ହୁଏ—ଏଥିକୁ କହୁଚନ୍ତି]—[ ଦେହ ଇନ୍ଦ୍ରିୟ ମନ ବୁଦ୍ଧିରେ ବୁଡ଼ି ରହିଥିବା ] ଆତ୍ମାକୁ [ ବୁଦ୍ଧିରେ ଅତୀତ ] ଆତ୍ମଜ୍ଞାନରେ ଉପରକୁ ଉଠାଇବ— ୩.୪୨,୪୩ ଦେଖ । ଆତ୍ମାକୁ ଦେହାଦିରେ ଲଟପଟ କରି ତଳକୁ ପକାଇ ଦେବ ନାଇ । କାହିଁକି ନା, ଆତ୍ମା ଏକା ଆତ୍ମାର ବନ୍ଧୁ; ଆତ୍ମା ଏକା ଆତ୍ମାର ଶତ୍ରୁ । ୫ ।

ବ୍ୟାଖ୍ୟା ସୂଚନା—ଅନ୍ୟ ବାହାର ବନ୍ଧୁମାନେ ବରଂ ବିଷୟରେ ବାନ୍ଧି ଦିଅନ୍ତି । ଅନ୍ୟ ଶତ୍ରୁମାନେ ଆପଣାର କାର୍ଯ୍ୟରୁ ହୁଅନ୍ତି ।—(ଶଙ୍କର)

ପୂର୍ବେ ୩.୪ରେ ସାଂଖ୍ୟମାନଙ୍କ ମତର ସୂଚନା ଦେଇ କହିଚନ୍ତି—କର୍ମ-ସାଧନରୁ ଆରମ୍ଭ କରି ଲୋକ 'ନୈଷ୍କର୍ମ୍ୟ' ବା ସନ୍ନ୍ୟାସକୁ ଯାଏ । ପୁଣି ୫ ୪.୩ରେ କହିଲେ, କର୍ମର ସାଧନା କରି ଯୋଗାରୂଢ଼ ହେବା ଅବସ୍ଥାକୁ ଉଠିବ, ଅର୍ଥାତ୍, କର୍ମ ବାଟେ ସନ୍ନ୍ୟାସକୁ ଉଠିବ । ତାହା କପରି କରାଯିବ ? ୩. ୪୦, ୪୩ରେ ସୂଚନା ଦେଇଚନ୍ତି, ଇନ୍ଦ୍ରିୟାଦିରୁ ଆତ୍ମାକୁ ଛଡ଼ାଇ, କ୍ରମେ ବୁଦ୍ଧିର ଉପରକୁ ନେଲେ, କାମ ବା ଆସକ୍ତି ତୁଟିଯାଏ । ଆତ୍ମାର ଧ୍ୟାନ ଠିକ୍ ରଖି, କପରି ସେହି ସାଧନା କରିବ, ତାହା ଏବେ ବୁଝାଉଚନ୍ତି ।

ଏଠାରେ କହୁଚନ୍ତି, ନିଜେ ନିଜକୁ ବନ୍ଧନରୁ ମୁକ୍ତ ନ କଲେ, ଆଉ କେହି କରିଦେବ ନାଇ । ସାଧକର ଏକମାତ୍ର ଉପାୟ ଆତ୍ମାଧ୍ୟାନ । ମାତ୍ର 'ଆତ୍ମା' କଥାଟିର, ଅର୍ଥ କଣ ? ଆତ୍ମା ବୋଇଲେ, ମୁଁ-ତ୍ୱ; ମୁଁ ବୋଲି କହିଲେ ମୁଁ ଯାହା ବୁଝେଁ, ତାହା ହିଁ ମୋର ଆତ୍ମା । "ମୁଁ" "ମୋର" ଇତ୍ୟାଦିରେ ଆତ୍ମା ପ୍ରକାଶ ପାଉଚି । ଦେହର ଭୋଗ ବ୍ୟବହାରାଦିରେ ଏହିପରି ସାର୍ଣ୍ଣି ହେଉଥିବା 'ମୁଁ'କୁ ସାଧାରଣତଃ ଲୋକେ ଆତ୍ମା ବୋଲି ବୁଝନ୍ତି । ଆତ୍ମାର ଏହା ଅଧଃପାତ । ସ୍ଥିର କରି ଦେଖିଲେ ବୁଝାଯିବ, ଯେଉଁ 'ମୁଁ' ଏ ସବୁଥିରେ ଥିଲାପରି ଲାଗୁଚି, ସେ 'ମୁଁ' କାହିଁ ? ତାକୁ ଜାଣୁଚି ତେବେ ଯେଉଁ 'ମୁଁ' ତାକୁ ( ସେ 'ମୁଁ' କୁ ) ଜାଣୁଚି ସେ 'ମୁଁ' କାହିଁ ? ଏହିପରି 'ମୁଁ'କୁ ଖୋଜି ଜାଣିବାକୁ ଗଲେ ସେ ବରାବର ଦେହ, ଦେହରୁ ମନ, ମନରୁ ବୁଦ୍ଧି, ବୁଦ୍ଧିରୁ ହୁଏତ କୁଆଡ଼େ ପୁଣି ଉପରକୁ ଉଠିଯାଉଚି । ଏହା ଦେହରେ ଥିଲାପରି ଲାଗୁଚି, କିନ୍ତୁ କୌଣସି ସ୍ଥାନରେ ବାନ୍ଧି ହୋଇ ନାଇ । ଏହାକୁ ଏହିପରି ବା ଏଡ଼ିକି ବୋଲି କଳନା କରି କହିବାର ଉପାୟ ନାଇ । ନିତ୍ୟ ଅନୁଭୂତ ସେହି 'ମୁଁ' କେବେ ସ୍ୱରୂପତଃ ଜାଣି ହେଉ ନାଇ । ସେ ସବୁଥିରେ ଥିଲାପରି ଲାଗୁଚି, ବସ୍ତୁତଃ କାହିଁରେ ନାଇ । ସେ ସବୁବେଳେ ସବୁଥିରୁ ଅଲଗା, ସର୍ବଥା ଚିର ଅନାସକ୍ତ—ଇନ୍ଦ୍ରିୟ ମନର ଅଗୋଚର । ସେହି ବିଶ୍ୱତତ୍ତ୍ୱ, ସେହି ବ୍ରହ୍ମ, ସେହି ଆତ୍ମା । ତାହାର ସ୍ୱଭାବ ଊର୍ଦ୍ଧ୍ୱଗମନ । ସେହି ସବୁଠି ଅଛୁ, ସବୁ କରୁଚି, କାହିଁରେ ନାଇ, କିଛି ବି କରୁ ନାଇ । ତାଠାରୁ ସୂକ୍ଷ୍ମ ଆଉ କିଛି ନାଇ, ପୁଣି ସବୁ ସ୍ଥୂଳ ନାମରୂପ ବି ସେହି । ସେହି ପୁଣି ସବୁରି ଅନ୍ତରରେ ଅଛୁ, ଅଥଚ କାହାରି ଇନ୍ଦ୍ରିୟମନରେ ଧରି ହେଉ ନାହିଁ । ତାକୁ ହିଁ ଭକ୍ତ କହେ ପ୍ରଭୁ, ନିଗ୍ରହାନୁଗ୍ରହସମର୍ଥ ଈଶ୍ୱର; ଜ୍ଞାନୀ କହେ ବିଶ୍ୱମୟ ବ୍ରହ୍ମ; କର୍ମୀ ହୁଏତ କହେ ସର୍ବଗତ ଅନାସକ୍ତ ଆତ୍ମା । ସେହି ଧ୍ୟାନରେ ଦେହ ମନ ଇନ୍ଦ୍ରିୟ କର୍ମାଦିରୁ ଆତ୍ମାକୁ ଉଠାଇବାକୁ ହେବ । ସାଧନାବଳରେ ଉଠାଇ ପାରିଲେ, ତା ପରି ବନ୍ଧୁ କେହି ନାଇ । ବିଷୟରେ ସାର୍ଣ୍ଣି ହୋଇ ଆତ୍ମାକୁ ତଳକୁ ପକାଇଦେଲେ, ସେଇ ଆତ୍ମା ପରି ଶତ୍ରୁ କେହି ନାଇ । ୫ ।

**ବନ୍ଧୁରାତ୍ମାତ୍ମନସ୍ତସ୍ୟ ଯେନାତ୍ମୈବାତ୍ମନା ଜିତଃ ।**
**ଅନାତ୍ମନସ୍ତୁ ଶତ୍ରୁତ୍ୱେ ବର୍ତ୍ତେତାତ୍ମୈବ ଶତ୍ରୁବତ୍ । ୬ ।**

**ଅନ୍ୱୟ**—ଯେନ ଆତ୍ମନା ଆତ୍ମାଜିତଃ ତସ୍ୟ ଆତ୍ମା ଆତ୍ମନଃ ବନ୍ଧୁଃ । ଅନାତ୍ମନଃ ତୁ ଆତ୍ମା ଶତ୍ରୁବତ୍ ଏବ ଶତ୍ରୁତ୍ୱେ ବର୍ତ୍ତେତ । ୬ ।

**ଟୀକା**—[ତଦେବ ବ୍ୟାକରୋତି]—ଯେନ ଆତ୍ମନା ଆତ୍ମ ଜିତଃ (ବଶୀକୃତଃ) ତସ୍ୟ ଆତ୍ମା ଆତ୍ମନଃ (ନିଜସ୍ୟ) ବନ୍ଧୁଃ । ଅନାତ୍ମନଃ (ଅଜିତାତ୍ମନଃ) ତୁ ଆତ୍ମା ଶତ୍ରୁବତ୍ ଏବ ଶତ୍ରୁତ୍ୱେ ବର୍ତ୍ତେତ । ୬ ।

**ଅର୍ଥ**—[ସେଇଥିପାଇଁ ବୁଝାଉଛନ୍ତି] ଯେ ଦ୍ୱାରା ଆତ୍ମା ଆତ୍ମାରେ ଜଣା ହୋଇ ଠିକ୍ ହୋଇଛି, ତାର ଆତ୍ମା ନିଜର ବନ୍ଧୁ । କିନ୍ତୁ ଆତ୍ମାକୁ ଠିକ୍ ନ କରିଥିବା ଲୋକର ଆତ୍ମା ଏକା ଶତ୍ରୁ ପରି ଅକାର୍ଯ୍ୟରେ ରହିବାର କଥା । ୬ ।

ବ୍ୟାଖ୍ୟା ସୂଚନା—ଏଠାରେ ଦେହାଦିରେ ଜଣା ପଡ଼ୁଥିବା ଆତ୍ମାକୁ ସର୍ବୋପରିସ୍ଥ ଆତ୍ମାର ଭାବରେ ଜାଣି ଠିକ୍ କରିବା କଥା ସ୍ପଷ୍ଟ । ଏଇ ଆତ୍ମା ହିଁ ବ୍ୟକ୍ତିର ମନୁଷ୍ୟତାର ଆଦର୍ଶ । ଏଇ ଆଦର୍ଶ ଯାହାର ଯେତେ ଉନ୍ନତ ଓ ବ୍ୟାପକ, ସେ ସେତିକି ଉନ୍ନତ ମନୁଷ୍ୟ ଓ ମୁକ୍ତି ପନ୍ଥାରେ ସେତିକି ଅଗ୍ରସର ।

**ଜିତାତ୍ମନଃ ପ୍ରଶାନ୍ତସ୍ୟ ପରମାତ୍ମା ସମାହିତଃ ।**
**ଶୀତୋଷ୍ଣ-ସୁଖଦୁଃଖେଷୁ ତଥା ମାନାପମାନୟୋଃ । ୭ ।**

**ଅନ୍ୱୟ**—ଜିତାତ୍ମନଃ ପ୍ରଶାନ୍ତସ୍ୟ ପରମାତ୍ମା ଶୀତୋଷ୍ଣସୁଖ-ଦୁଃଖେଷୁ ତଥା ମାନାପମାନୟୋଃ ସମାହିତଃ । ୭ ।

**ଟୀକା**—[ଏବଂ] ଜିତାତ୍ମନଃ ପ୍ରଶାନ୍ତସ୍ୟ (ସକଳଶତ୍ରୁନ୍ୟସ୍ୟ ଶମସାଧନସ୍ୟ) [ଆତ୍ମନା] ପରମାତ୍ମା (ଦେହାଦିଭ୍ୟ ଉତ୍କୃଷ୍ଟଃ ସର୍ବୋପରିସ୍ଥଃ, ସର୍ବାତୀତଃ ଆତ୍ମା) ଶୀତୋଷ୍ଣସୁଖଦୁଃଖେଷୁ ତଥା ମାନାପମାନୟୋଃ (ସର୍ବବିଧଦ୍ୱନ୍ଦ୍ୱେଷୁ ଇତି ଭାବଃ) ସମାହିତଃ (ସମ'ଧୌ ସମତାୟାଂ ସ୍ଥିତଃ—ସଃ ଏବ ନିତ୍ୟଦ୍ୱନ୍ଦ୍ୱାତୀତଃ ଇତି ଭାବଃ) ।୭।

**ଅର୍ଥ**—[ଏହିପରି] ଆତ୍ମାକୁ ଜାଣି ସକଳ ବିଗାଦ ଗ୍ରୁଡ଼ି ଶାନ୍ତିରେ ଥିବା ଯୋଗୀର, ଦେହ ଦିବୁ ଉଠି ସବୁ ଉପରେ ସବୁଥିରୁ ଅଲଗା ଥିବା ଆତ୍ମା, ଶୀତ ଉଷ୍ଣ, ସୁଖ ଦୁଃଖ, ତଥା ମାନ ଅପମାନ ପ୍ରଭୃତି ଦ୍ୱନ୍ଦ୍ୱରେ ସମାନ ଥାଏ । କିମ୍ବା ଏହିପରି ଯୋଗୀର ଜୀବାତ୍ମା, ପରମାତ୍ମାରେ ସମାଧି ବା ଏକତ୍ୱରେ ଥାଏ । ୭ ।

ବ୍ୟାଖ୍ୟା ସୂଚନା—ମନୁଷ୍ୟତାର ସର୍ବୋଚ୍ଚ ଓ ସର୍ବବ୍ୟାପକ ଆଦର୍ଶର ଏଇ ସ୍ଥିତି । ଏଇ ସ୍ଥିତି ପାଇଲେ, ମନୁଷ୍ୟର ଅନ୍ଧ ବନ୍ଧନ ବା ସଂସାରର ଆବିଳତାରେ—ଦୁଃଖ, ରାଗ, ପ୍ରୀତି, ବିରକ୍ତି ପ୍ରଭୃତିରେ—ଘାର୍ଣ୍ଣି ହେବାର ନାଇ । ଏହା ସ୍ପଷ୍ଟ ।୭।

**ଜ୍ଞାନବିଜ୍ଞାନତୃପ୍ତାତ୍ମା କୂଟସ୍ଥୋ ବିଜିତେନ୍ଦ୍ରିୟଃ ।**
**ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ ସମଲୋଷ୍ଟ୍ରାଶ୍ମକାଞ୍ଚନଃ ।୮।**

**ଅନ୍ୱୟ**—ଜ୍ଞାନବିଜ୍ଞାନତୃପ୍ତାତ୍ମା, ବିଜିତେନ୍ଦ୍ରିୟଃ କୂଟସ୍ଥଃ, ସମଲୋଷ୍ଟ୍ରାଶ୍ମକାଞ୍ଚନଃ ଯୋଗୀ ଯୁକ୍ତଃ ଇତି ଉଚ୍ୟତେ । ୮ ।

**ଟୀକା**—[ସଃ ଏବ] ଜ୍ଞାନବିଜ୍ଞାନତୃପ୍ତାତ୍ମା (ଅବ୍ୟକ୍ତାତ୍ମଜ୍ଞାନେନ ତଥା ବିଶ୍ୱସ୍ୟ ବ୍ୟକ୍ତସ୍ୟ ତସ୍ୟୈବ ଆତ୍ମନଃ ଜ୍ଞାନେନ ତୃପ୍ତମନାଃ) ବିଜିତେନ୍ଦ୍ରିୟଃ, କୂଟସ୍ଥଃ (ଅବିଚଳିତଃ) [ଅତଏବ] ସମଲୋଷ୍ଟ୍ରାଶ୍ମକାଞ୍ଚନଃ (ମୃତ୍ଖଣ୍ଡପାଷାଣସୁବର୍ଣ୍ଣେଷୁ ସମଃ—ହେୟୋପାଦେୟବୁଦ୍ଧି ଶୂନ୍ୟଃ) ଯୋଗୀ ଯୁକ୍ତଃ ଇତି ଉଚ୍ୟତେ । ୮ ।

**ଅର୍ଥ**—ଅବ୍ୟକ୍ତ ତତ୍ତ୍ୱ ଓ ବ୍ୟକ୍ତ ବିଶ୍ୱତତ୍ତ୍ୱ—ଏହି ଦୁଇଟିଯାକେ ଏକ ଆତ୍ମାର ଜ୍ଞାନରେ ତୃପ୍ତ, ଜିତେନ୍ଦ୍ରିୟ, କୂଟସ୍ଥ, ଅତଏବ ଢେଲା, ପଥର, ସୁନାରେ ଏକ ବୁଦ୍ଧି କରିଥିବା—ଅର୍ଥାତ୍, ଏ ଭଲ, ସେ ଖରାପ, ଏପରି କିଛି ବିଗୃରୁ ନ ଥିବା ଓ ସବୁ କର୍ମରେ ସମାଧିସ୍ଥ ଥିବା ଯୋଗୀଙ୍କୁ ଯୁକ୍ତ ବୋଲି କୁହାଯାଏ । ୮ ।

ବ୍ୟାଖ୍ୟା ସୂଚନା—[ଜ୍ଞାନବିଜ୍ଞାନ = ୭ମ ଅଧ୍ୟାୟ ପ୍ରବେଶ ଦେଖ । [କୂଟସ୍ଥ = କୂଟ ବା ପର୍ବତଶୃଙ୍ଗ ଉପରେ ଥିବା, ବା ସେହିପରି ଅବିଚଳିତ; ସବୁ ଉପରେ ଥିବାରୁ ଯେ, କାହିଁରେ ଏପାଖ ସେପାଖ ହୁଏ ନାହିଁ; ସେହିପରି ମନୁଷ୍ୟତାର ଶ୍ରେଷ୍ଠ ଓ ବ୍ୟାପକତମ ଆଦର୍ଶରେ ସ୍ଥିର ଥିବାରୁ ଯେ ସଂସାରର ସାଧାରଣ ସୁଖ ଦୁଃଖ, ମାନ ଅପମାନ, ଭଲ ମନ୍ଦ ପ୍ରଭୃତିରେ ବିଚଳିତ ହୁଏ ନାହିଁ, ସେଇ ଯୁକ୍ତ ବା ଯୋଗୀ । ୮ ।

**ସୁହୃନ୍ମିତ୍ରାର୍ଯୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।**
**ସାଧୁଷ୍ୱପି ଚ ପାପେଷୁ ସମବୁଦ୍ଧିର୍ବିଶିଷ୍ୟତେ । ୯ ।**

**ଅନ୍ୱୟ**—ସ୍ପଷ୍ଟଃ । ୯ ।

ପୂର୍ବ ଶ୍ଳୋକ କଥାକୁ ଅଧିକ ସ୍ପଷ୍ଟ କରି ଏଠାରେ କହୁଛନ୍ତି ମାତ୍ର ।୯।

**ଟୀକା**—[ସମତ୍ୱଂ ଶ୍ରେୟଃ ଇତି ପ୍ରସଙ୍ଗମୁପସଂହରତି] ସୁହୃନ୍ମିତ୍ରାର୍ଯୁଦାସୀନ-ମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ (ସୁହୃଦ୍, ସ୍ୱତଃ ହିତଃ, ମିତ୍ରଂ, ଏକଚିତ୍ତଃ, ଅରିଃ ଶତ୍ରୁଃ;

ଉଦାସୀନଃ, ନଃସଙ୍ଗଃ; ମଧ୍ୟସ୍ଥଃ, ନିରପେକ୍ଷଃ; ଦ୍ୱେଷ୍ୟଃ, ବିରୁଦ୍ଧଃ; ବନ୍ଧୁଃ, ସ୍ୱପକ୍ଷଃ; ତେଷୁ ସର୍ବେଷ୍ୱପି ସତ୍‌ସ୍ୱ) ପାପେଷୁ (ଦୁରାଚାରେଷୁ) ସାଧୁଷୁ (ସଦାଚାରେଷୁ) ଚ ସମବୁଦ୍ଧିଃ (ଏକଭାବଃ) [ଯୋଗୀ, କର୍ମତ୍ୟାଗିନଃ ଜନାତ୍] ବିଶିଷ୍ୟତେ । ୯ ।

**ଅର୍ଥ**—[କର୍ମତ୍ୟାଗରେ ସନ୍ନ୍ୟାସ କରିବାଠାରୁ ଏହି ସମତ୍ୱ ବା ସମାଧିରେ କର୍ମ ଭଲ ବୋଲି ପ୍ରସଙ୍ଗ କରୁଛନ୍ତି] ସୁହୃତ୍, ମିତ୍ର, ଶତ୍ରୁ, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷ୍ୟ, ବନ୍ଧୁ—ଏହିଭଳି ସମସ୍ତଙ୍କଠାରେ ପୁଣି ପାପୀଙ୍କଠାରେ ଓ ସାଧୁଙ୍କଠାରେ ବି ସମାନ ବୁଦ୍ଧି କରିଥିବା ଯୋଗୀ [ କର୍ମତ୍ୟାଗୀଠାରୁ ] ବଡ଼ । ୯ ।

ବ୍ୟାଖ୍ୟା ସୂଚନା—ସୁହୃତ୍=ଅଯାଚିତ ବା ମନକୁ ହିତକାରୀ; ମିତ୍ର =ଏକାପରି ବା ଆମ ମନ ମୁତାବକ୍ କାମ କରିଯିବା ଲୋକ; ଉଦାସୀନ= ସବୁଥିରେ ଆସକ୍ତିହୀନ; ମଧ୍ୟସ୍ଥ=କାହାରି ପକ୍ଷପାତ ନ କରିବା ଲୋକ; ଦ୍ୱେଷ୍ୟ= ବିରୋଧୀ; ବନ୍ଧୁ=ସପକ୍ଷ । ୯ ।

**ଯୋଗୀ ଯୁଞ୍ଜୀତ ସତତମାତ୍ମାନଂ ରହସି ସ୍ଥିତଃ ।**
**ଏକାକୀ ଯତଚିତ୍ତାତ୍ମା ନିରାଶୀରପରିଗ୍ରହଃ । ୧୦ ।**

**ଅନ୍ୱୟ**—ଯୋଗୀ ଯତଚିତ୍ତାତ୍ମା, ନିରାଶୀଃ ଅପରିଗ୍ରହଃ ଏକାକୀ ରହସି ସ୍ଥିତଃ ସତତଂ ଆତ୍ମାନଂ ଯୁଞ୍ଜୀତ । ୧୦ ।

**ଟୀକା**—[ଯୋଗେ ଧ୍ୟାନଯୋଗସ୍ୟୋପଯୋଗିତାଂ ଦର୍ଶୟିଷ୍ୟନ୍ ତସ୍ୟ ଯୋଗିନଃ ସମାଧୌ ଧ୍ୟାନନିଷ୍ଠାମାହ ପଞ୍ଚଭିଃ]—ଯୋଗୀ ଯତଚିତ୍ତାତ୍ମା (ବଶୀକୃତେନ୍ଦ୍ରିୟ-ମନାଃ) ନିରାଶୀଃ (ତୃଷ୍ଣାହୀନଃ) ଅପରିଗ୍ରହଃ (ଭୋଗାୟୋଜନହୀନଃ) [ସନ୍] ଏକାକୀ ରହସି (ଏକାନ୍ତେ) ସ୍ଥିତଃ ସତତଂ ଆତ୍ମାନଂ [ପରମାତ୍ମନା ସହ] ଯୁଞ୍ଜୀତ (ସମାଦଧ୍ୟାତ୍ —ଆତ୍ମନି ଆତ୍ମାନଂ ବା ଯୁଞ୍ଜୀତ) । ୧୦ ।

**ଅର୍ଥ**—[ଏହି କର୍ମଯୋଗରେ ଧ୍ୟାନଯୋଗ କିପରି ଦରକାର ହୁଏ, ତାହା ଦେଖାଇବାକୁ ଯୋଗୀର ସମାଧିରେ ଧ୍ୟାନନିଷ୍ଠା କହୁଚନ୍ତି]—ଯୋଗୀ, ଇନ୍ଦ୍ରିୟ ମନ ଆୟତ୍ତ କରି, ତୃଷ୍ଣା ତୁଟାଇ, ଭୋଗର ଯୋଗାଡ ସବୁ ଛାଡ଼ି, ଏକୁଟିଆ ଜାଗାରେ ବସି ସର୍ବଦା (ଅର୍ଥାତ୍, ବାରଂବାର ଅଭ୍ୟାସରେ) ଆତ୍ମାକୁ ସମାଧିରେ ଲଗାଇବ । (ବା ହୃଦୟରେ ସମତ୍ୱ ଅଭ୍ୟାସ କରିବାରେ ଆତ୍ମଧ୍ୟାନରେ ଲାଗିବ) । ୧୦ ।

ବ୍ୟାଖ୍ୟା ସୂଚନା—ଧ୍ୟାନଯୋଗରେ ଆତ୍ମଭାବରେ ସ୍ଥିର ରହିଲେ ମୁକ୍ତ ହୁଏ । ଏହି ଯୋଗ ପତଞ୍ଜଳିଙ୍କ ଦର୍ଶନରେ ଦେଖାଯାଏ । ଏହି ପାତଞ୍ଜଳ ଯୋଗ ପୁଣି ସାଂଖ୍ୟର ଉତ୍ତର ଭାଗ ବୋଲି ଧରାଯାଏ ଓ ଏହା ସାଂଖ୍ୟ ଦର୍ଶନ ଉପରେ ପ୍ରତିଷ୍ଠିତ । ଭଗବାନ ଏଠାରେ ମଧ୍ୟ କହୁଚନ୍ତି, ଯୋଗରେ ଜ୍ଞାନ ଅତି ପ୍ରୟୋଜନ, ଅର୍ଥାତ୍

ସାକ୍ଷ୍ୟ ହେଉ ନାହିଁ । କିନ୍ତୁ କେବଳ ଜ୍ଞାନ ଧରି ବସିବାକୁ ଯାଇ କର୍ମ ଛାଡ଼ିବା ଗୋଟିଏ ବୁଝିବାରେ ଭୁଲ୍ । ସେହିପରି ଧ୍ୟାନରେ ଅଭ୍ୟାସ ନିତାନ୍ତ ପ୍ରୟୋଜନୀୟ ହେଲେହେଁ, ଏହା ଜ୍ଞାନ ସ୍ଥିରତାର ସହାୟକ ମାତ୍ର । ଏହା ନିଜେ ମୁକ୍ତିବିଧାୟକ ନୁହେଁ । ଯେଉଁମାନେ ଏହାକୁ ଏକା ମୁକ୍ତି ପନ୍ଥା ବୋଲି କହନ୍ତି, ସେମାନେ କର୍ମତ୍ୟାଗୀ ସନ୍ୟାସୀମାନଙ୍କ ପରି ଭୁଲ୍ କରନ୍ତି, ଏହା ବୁଝିବାକୁ ହେବ । ୧୦ ।

**ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ ସ୍ଥିରମାସନମାତ୍ମନଃ ।**
**ନାତ୍ୟୁଚ୍ଛ୍ରିତଂ ନାତିନୀଚଂ ଚୈଲାଜିନକୁଶୋତ୍ତରମ୍ ।୧୧।**
**ତତ୍ରୈକାଗ୍ରଂ ମନଃ କୃତ୍ୱା ଯତଚିତ୍ତେନ୍ଦ୍ରିୟକ୍ରିୟଃ ।**
**ଉପବିଶ୍ୟାସନେ ଯୁଞ୍ଜ୍ୟାଦ୍ୟୋଗମାତ୍ମବିଶୁଦ୍ଧୟେ । ୧୨ ।**

**ଅନ୍ୱୟ**—ଶୁଚୌ ଦେଶେ ଆତ୍ମନଃ ନ ଅତ୍ୟୁଚ୍ଛ୍ରିତଂ ନ ଅତି ନୀଚଂ ଚୈଳାଜିନକୁଶୋତ୍ତରଂ ସ୍ଥିରଂ ଆସନଂ ପ୍ରତିଷ୍ଠାପ୍ୟ ତତ୍ର ଆସନେ ଉପବିଶ୍ୟ ଯତଚିତ୍ତେନ୍ଦ୍ରିୟକ୍ରିୟଃ ମନଃ ଏକାଗ୍ରଂ କୃତ୍ୱା ଆତ୍ମବିଶୁଦ୍ଧୟେ ଯୋଗଂ ଯୁଂଜ୍ୟାତ୍ । ୧୧-୧୨ ।

**ଟୀକା**—[ ଯୋଗାଭ୍ୟାସବିଧୌ ଯଥୋପଦେଶନ୍ତୁ ତଥା ] [ସଃ ଯୋଗୀ] ଶୁଚୌ (ଶୁଦ୍ଧେ) ଦେଶେ (ସ୍ଥାନେ) ଆତ୍ମନଃ (ନିଜସ୍ୟ) ନ ଅତ୍ୟୁଚ୍ଛ୍ରିତଂ (ଅତ୍ୟୁଚ୍ଚଂ) ନ ଅତିନୀଚଂ ଚୈଳାଜିନକୁଶୋତ୍ତରଂ (ଚୈଳଂ ବସ୍ତ୍ରଂ ଅଜିନଂ ବ୍ୟାଘ୍ରମୃଗାଦି-ଚର୍ମ—କୁଶୋପରି ଅଜିନଂ, ତଦୁପରି ଚୈଳେନ କୃତଂ) ସ୍ଥିରଂ (ନିଶ୍ଚଳଂ) ଆସନଂ ପ୍ରତିଷ୍ଠାପ୍ୟ, ତତ୍ର (ତସ୍ମିନ୍) ଆସନେ ଉପବିଶ୍ୟ ଯତଚିତ୍ତେନ୍ଦ୍ରିୟକ୍ରିୟଃ (ମନଇନ୍ଦ୍ରିୟାଦୀନାଂ କ୍ରିୟାଃ ସ୍ୱାଧୀନୀକୃତ୍ୟ) ମନଃ ଏକାଗ୍ରଂ (ସମାଧିନିଷ୍ଠଂ) କୃତ୍ୱା ଆତ୍ମବିଶୁଦ୍ଧୟେ (ଚିତ୍ତଶୁଦ୍ଧିନିମିତ୍ତଂ —ଶାନ୍ତୟେ) ଯୋଗଂ ଯୁଞ୍ଜ୍ୟାତ୍ (ଅଭ୍ୟସେତ୍) । ୧୧-୧୨ ।

**ଅର୍ଥ**—[ଯୋଗ ସାଧିବା ବିଧିରେ ଯେପରି ଉପଦେଶ ଅଛି ସେହିପରି]—[ସେହି ଯୋଗୀ] ପରିଷ୍କାର ଥାନରେ ଖୁବ୍ ଉଚ୍ଚ ନୁହେଁ, ଖୁବ୍ ନୀଚ ନୁହେଁ, ଏହିପରି ଭାବରେ କୁଶ ଉପରେ ବାଘ ବା ମିରିଗ ଛାଲ, ତା ଉପରେ ଲୁଗା ପାରି, ଆପଣାର ଥୟ ଆସନ ପକାଇ, ସେଇ ଆସନରେ ବସି, ମନ ଇନ୍ଦ୍ରିୟାଦିର କ୍ରିୟାକୁ ଏଣେ ତେଣେ ଚଞ୍ଚଳ ନ କରି, ନିଜର ଅଧୀନରେ ରଖି, ମନକୁ ଏକାଗ୍ର କରି, ଆତ୍ମଶୁଦ୍ଧି ବା ଶାନ୍ତି ନିମନ୍ତେ ଯୋଗ ସାଧିବ । ୧୧-୧୨ ।

ବ୍ୟାଖ୍ୟା ସୂଚନା—କୁହାଯାଇଛି, ଏହି ଯୋଗ ପାତଞ୍ଜଳ ଦର୍ଶନରେ ଅଛି । ଏହା ମୋକ୍ଷାର୍ଥ କର୍ମଯୋଗ ବା ଗୀତାର ଯୋଗ ନୁହେଁ । ଗୀତାର ଯୋଗରେ ଏହିଯୋଗ

ସାଧିବା ଦରକାର ହୁଏ ମାତ୍ର । କିନ୍ତୁ ସାଂଖ୍ୟମାନଙ୍କର କର୍ମ ଛାଡ଼ି ଏହି ଯୋଗ ସାଧିବାହିଁ ମୁକ୍ତିର ସାଧନା, ଗୀତା ତାହା କହୁନାହାନ୍ତି । ଏଠାରେ ସ୍ପଷ୍ଟ କହୁଚନ୍ତି—ଆତ୍ମଶୁଦ୍ଧି ବା ଚିତ୍ତଶାନ୍ତି ଆସିବା ପାଇଁ ଏଇ ଯୋଗ ସାଧିବାର କଥା, ଏହା ଏକ ସାଧନ—ସିଦ୍ଧି ନୁହେ । ଏଇ ବାଟେ ଗଲେ ଯୋଗାରୂଢ଼ ହେବା ସୁଗମ । ୧୧-୧୨ ।

**ସମଂ କାୟଶିରୋଗ୍ରୀବଂ ଧାରୟନ୍ନଚଲଂ ସ୍ଥିରଃ ।**
**ସଂପ୍ରେକ୍ଷ୍ୟ ନାସିକାଗ୍ରଂ ସ୍ୱଂ ଦିଶଶ୍ଚାନବଲୋକୟନ୍ ।୧୩।**
**ପ୍ରଶାନ୍ତାତ୍ମା ବିଗତଭୀର୍ବ୍ରହ୍ମଚାରିବ୍ରତେ ସ୍ଥିତଃ**
**ମନଃ ସଂଯମ୍ୟ ମଚ୍ଚିତ୍ତୋ ଯୁକ୍ତ ଆସୀତ ମତ୍‌ପରଃ ।୧୪।**

**ଅନ୍ୱୟ**—କାୟଶିରୋଗ୍ରୀବଂ ସମଂ ଅଚଳଂ ଧାରୟନ, ସ୍ଥିରଃ ସ୍ୱଂ ନାସିକାଗ୍ରଂ ସମ୍ପ୍ରେକ୍ଷ୍ୟ, ଦିଶଃ ଚ ଅନବଲୋକୟନ୍ ପ୍ରଶାନ୍ତାତ୍ମା, ବିଗତଭୀଃ ବ୍ରହ୍ମଚାରିବ୍ରତେ ସ୍ଥିତଃ ମନଃ ସଂଯମ୍ୟ ମଚ୍ଚିତ୍ତଃ ମତ୍ପରଃ ସନ୍ ଯୁକ୍ତଃ ଆସୀତ । ୧୩-୧୪ ।

**ଟୀକା**—[ ସଃ ଯୋଗୀ ] କାୟଶିରୋଗ୍ରୀବଂ ( କଟ୍ୟାଦିତଃ ମସ୍ତକାନ୍ତଂ, ମୂଳାଧାରାଦାରଭ୍ୟ ମୂର୍ଦ୍ଧାପର୍ଯ୍ୟନ୍ତଂ) ସମଂ ( ଋଜୁଂ ) ଅଚଳଂ (ଦୃଢ଼ଂ) ଧାରୟନ୍ (କୁର୍ବନ୍) ସ୍ଥିରଃ [ସନ୍] ସ୍ୱଂ (ନିଜଂ) ନାସିକାଗ୍ରଂ (ଭ୍ରୁବୋର୍ମଧ୍ୟଂ) ସମ୍ପ୍ରେକ୍ଷ୍ୟ, ଦିଶଃ (ଅନ୍ୟତଃ—ଇତ୍ୟର୍ଥଃ) ଚ ଅନବଲୋକୟନ୍ [ରାଗାଦିଦୋଷରହିତତ୍ୱାତ୍] ପ୍ରଶାନ୍ତାତ୍ମା, ବିଗତଭୀଃ (ସଂଶୟଶଙ୍କାହୀନଃ), ବ୍ରହ୍ମଚାରିବ୍ରତେ (ବ୍ରହ୍ମଚର୍ଯ୍ୟେ) ସ୍ଥିତଃ [ସନ୍], ମନଃ ସଂଯମ୍ୟ (ବିଷୟେଭ୍ୟଃ ନିବୃତ୍ୟ) ମଚ୍ଚିତ୍ତଃ (ମୟ୍ୟର୍ପିତମନାଃ) ମତ୍ପରଃ (ମନ୍ନିଷ୍ଠଃ) [ ଚ ସନ୍ ] ଯୁକ୍ତଃ ( କର୍ମନିରତଃ—ଯଦ୍ୱା ମଦ୍‌ଧ୍ୟାନନିରତଃ ) ଆସୀତ ( ତିଷ୍ଠେତ୍ ) । ୧୩-୧୪ ।

**ଅର୍ଥ**—[ସେହି ଯୋଗୀ] ଦେହ, ବେକ, ମୁଣ୍ଡ ସଳଖ ରଖି, ଅସ୍ଥିର ନ ହୋଇ, ଆପଣା ନାକର ଉପର ଆଗକୁ ଚାହିଁ, ଦିଗମାନଙ୍କୁ (ଅର୍ଥାତ୍, ଆଉ କୁଆଡ଼େ) ନ ଚାହିଁ ଇନ୍ଦ୍ରିୟାଦିମାନଙ୍କୁ ପୁଣି ଶାନ୍ତ କରି କାଳେ ନ ହେବ ବୋଲି ଭୟ ନ କରି (ଅର୍ଥାତ୍, ବିଶ୍ୱାସ କରି), ବ୍ରହ୍ମଚର୍ଯ୍ୟବିଧି ଓ ନିୟମରେ ରହି, ମନକୁ ବିଷୟଭୋଗରୁ ଛଡ଼ାଇ, ମୋଠି ଚିତ୍ତ ଦେଇ, ମତେଇ ନିଷ୍ଠାରେ ଧରି, ଯୋଗ ସାଧିବାରେ ଲଗିବ । ୧୩-୧୪ ।

ବ୍ୟାଖ୍ୟା ସୂଚନା—ନାକର ଉପର ଅଗ=ଭ୍ରୂଦ୍ୱୟର ମଧ୍ୟ—୫.୨୭ ଦେଖ । ବ୍ରହ୍ମଚାରିବ୍ରତ=ବ୍ରହ୍ମଚର୍ଯ୍ୟ, ଖାଲି ବୀର୍ଯ୍ୟ ଧାରଣ ନୁହେଁ; ବ୍ରହ୍ମ ପାଇବାରେ ଲୋଡ଼ା ଅହିଂସାଦି ସବୁ ବ୍ରତ ବୁଝିବାକୁ ହେବ । ଯୋଗ ସାଧିବାରେ ଲଗିବ=ଏଠାରେ,

କେବଳ ଏଇ ଧ୍ୟାନ ଯୋଗ ବିଷୟରେ ହିଁ ଜୀବନଯାକ ଲାଗିରହିବ, ଏପରି ଅଭିପ୍ରାୟ ନୁହେ । ଏଠାରେ ଧ୍ୟାନଯୋଗ ଅଭ୍ୟାସ କଥା କହୁଚନ୍ତି । ଏଇପରି ଧ୍ୟାନଯୋଗ ଅଭ୍ୟାସରେ ମନକୁ ଭଗବାନରେ ଦୃଢ଼ କରି ଧରିବାକୁ ହେବ ବୋଲି କହୁଚନ୍ତି ସତ, ମାତ୍ର ଫାଙ୍କେ ଫାଙ୍କେ ଜ୍ଞାନର ଶେଷ ଗତି, ଭକ୍ତି ଓ ବିଶ୍ୱାସ ବୋଲି ମଧ୍ୟ କହୁଚନ୍ତି । ୧୩-୧୪ ।

**ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ନିୟତମାନସଃ ।**
**ଶାନ୍ତିଂ ନିର୍ବାଣପରମାଂ ମତ୍ ସଂସ୍ଥାମଧିଗଚ୍ଛତି । ୧୫ ।**

**ଅନ୍ୱୟ**—ଏବଂ ନିୟତମାନସଃ ଯୋଗୀ ସଦା ଆତ୍ମାନଂ ଯୁଂଜନ୍ ମତ୍ ସଂସ୍ଥାଂ ନିର୍ବାଣପରମାଂ ଶାନ୍ତିଂ ଅଧିଗଚ୍ଛତି । ୧୫ ।

**ଟୀକା**—[ ତଦ୍‌ଯୋଗଫଳମାହ ]—ଏବଂ ନିୟତମାନସଃ (ନିୟମେ ସ୍ଥିତମନାଃ) ଯୋଗୀ ସଦା (ଅଭ୍ୟାସେନ ନିରନ୍ତରଂ) ଆତ୍ମାନଂ ଯୁଞ୍ଜନ୍ (ପରମାତ୍ମନି ମୟି ସମାଦଧତ୍) ମତ୍‌ସଂସ୍ଥାଂ (ମୟି ସ୍ଥିତାଂ, ପରମାତ୍ମପ୍ରାପ୍ତୌ ଲଭ୍ୟାଂ) ନିର୍ବାଣପରମାଂ (ନିର୍ବାଣଂ ମୋକ୍ଷଃ, ପରା ଶ୍ରେଷ୍ଠା, ମା, ପରିମାପିକା ଯସ୍ୟାଃ ତାଂ—ମୋକ୍ଷପ୍ରମାଣାଂ) ଶାନ୍ତିଂ ଅଧିଗଚ୍ଛତି (ପ୍ରାପ୍ନୋତି) । ୧୫ ।

**ଅର୍ଥ**—[ସେହି ଯୋଗଫଳ କହୁଚନ୍ତି]—ଏହିପରି ନିୟମରେ ମନ ରଖିଥିବା ଯୋଗୀ ବରାବର [ସକଳ କାର୍ଯ୍ୟରେ] ଆତ୍ମାକୁ ସମାଧିରେ ରଖି (ପରମାତ୍ମାରେ ନିଜକୁ ଯୋଡ଼ି ଏକ କରି) ନିର୍ବାଣ ବା ମୋର ସଙ୍ଗେ ମିଶିଯିବାର ଯେଉଁ ପରମ ଶାନ୍ତି ତା ପାଏ । (ସେ ଶାନ୍ତି ମୋଠାରେ ଅଛି, ଓ ମୋଠାରେ ଲୀନ ହେଲେ ଲୋକ ଅନୁଭବରେ ଏକା ସେ ଶାନ୍ତିକୁ ବୁଝି ପାରେ, ଏଇ ଅଭିପ୍ରାୟ । ) । ୧୫ ।

ବ୍ୟାଖ୍ୟା ସୂଚନା—ନିର୍ବାଣପରମା ଶାନ୍ତି ପାଏ=ନିର୍ବାଣ ବା ମୋର ସଙ୍ଗେ ମିଶି ଲୀନ ହୋଇଯିବାର ଯେ ପରମ, ଅର୍ଥାତ୍, ଶେଷ ଶାନ୍ତି, ତା ପାଏ । ଏଇ ସମ୍ପର୍କରେ ନିର୍ବାଣ କଥାଟିର ପ୍ରୟୋଗ ପ୍ରତି ଲକ୍ଷ୍ୟ କରିବାକୁ ହେବ । ବୌଦ୍ଧ ମତରେ ମୁକ୍ତିକୁ ନିର୍ବାଣ ବା ଲୀନ ହେବା କହନ୍ତି । ଏଠାରେ ବୈଦିକ ମତର ଅନୁସରଣରେ ନିର୍ବାଣକୁ ମୁକ୍ତି ଅର୍ଥରେ ପ୍ରୟୋଗ କରାଯାଇଚି ସତ ମାତ୍ର ନିର୍ବାଣ ବୋଇଲେ ଠିକ୍ ମୁକ୍ତି ନୁହେ । ମୁକ୍ତି କହିଲେ ବୁଝି ଯାଏ, ଆତ୍ମା ଆବରଣର ବନ୍ଧନରୁ ବା ସଂସାର (ଜନ୍ମଜନ୍ମାନ୍ତର) ବନ୍ଧନରୁ ମୁକ୍ତ ହେବା । ମାତ୍ର ନିର୍ବାଣର ଅର୍ଥ, ଲୀନ ହେବା, ବା ଶେଷ ହୋଇଯିବା । ଜାଲଟି ଛିଣ୍ଡିଗଲେ, ଜାଲରେ ପଡ଼ିଥିବା ଜୀବ ମୁକ୍ତ ହେଲା, ଦୀପଟି ଲିଭିଗଲେ, ଦୀପର ନିର୍ବାଣ ହେଲା । ୫. ୨୪ ଟୀକା ଦେଖ ।

ନିର୍ବାଣ କଥାଟି ସାଧାରଣତଃ ବୌଦ୍ଧଧର୍ମ କଥାରେ ବ୍ୟବହୃତ ହୁଏ । ଏଠାରେ ପ୍ରଶ୍ନ ଉଠିପାରେ, ତେବେ ଗୀତା କଣ ବୌଦ୍ଧ ଧର୍ମର ପରବର୍ତ୍ତୀ ଗ୍ରନ୍ଥ ? ତା ହୋଇ ପାରେ । କାରଣ, ଏବର ଗୀତା ଏଇପରି ମହାଭାରତ ଦେଲେ ପ୍ରଚଳିତ ହୋଇ ଥିବାର କୌଣସି ପ୍ରମାଣ ନାଇ । ନିଜେ ମହାଭାରତ ମଧ୍ୟ ଏବେ ଯେପରି ଦେଖା-ଯାଏ, ମୂଳରୁ ସେଇପରି ଓ ସେତିକ ନ ଥିଲା । ମହାଭାରତର ଆଦି ପର୍ବରେ ଅଛି, ପ୍ରଥମେ ମହାଭାରତର ନାମ ଥିଲା 'ଜୟ' । ଏହାର ଅର୍ଥ, ବୋଧହୁଏ, ପାଣ୍ଡବ-ମାନଙ୍କର ଜୟ କୀର୍ତ୍ତନ କରିବା ଗ୍ରନ୍ଥ । ପରେ ଏଇ ଅନୁକ୍ରମେ ବ୍ୟାସ ରଚନା ବୋଲି କଥିତ ଅଷ୍ଟାଦଶ ପୁରାଣର ନାମ ମଧ୍ୟ ହେଲା 'ଜୟ' । ଏବେ ମଧ୍ୟ ମହାଭାରତ ବା ଭାଗବତାଦି ପୁରାଣ ପାଠ କରିବା ପୂର୍ବରୁ ପାଠକ ବୋଲନ୍ତି:—

"ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।"

ଅର୍ଥାତ୍, ନାରାୟଣ, ନରୋତ୍ତମ ନର, ସରସ୍ୱତୀ ଦେବୀ ଓ ବ୍ୟାସଙ୍କୁ ନମସ୍କାର କରି, ତା ପରେ 'ଜୟ' ବୋଲିବାକୁ ହେବ । ଏଠାରେ ନାରାୟଣ ପୁଣି ନର ଓ ନରୋତ୍ତମ ବା ଅର୍ଜୁନ ଓ କୃଷ୍ଣଙ୍କ ଉଲ୍ଲେଖ ଥିବାରୁ ସ୍ପଷ୍ଟ ବୁଝାଯାଉଛି, ଏହା ପ୍ରଥମେ ମହାଭାରତ ପାଠରେ ପ୍ରଯୁକ୍ତ ହୋଇଥିଲା ଓ ପରେ ଅନ୍ୟାନ୍ୟ ପୁରାଣରେ ପ୍ରଚଳିତ । ପୁଣି ନର ନାରାୟଣ ଉଲ୍ଲେଖରୁ ମଧ୍ୟ ଜଣାପଡ଼ୁଛି, ଏହା ମହାଭାରତରେ ଲିଖିତ ନାରାୟଣୀୟ ବା ସାତ୍ୱତ ଧର୍ମର ପ୍ରେରଣାରେ ରଚିତ । ଗୀତା ଏଇ ନାରାୟଣୀୟ ଭକ୍ତିମୂଳକ ଯୋଗର ବିବୃତି ।

ସେଇ ଆଦି ପର୍ବରେ ମଧ୍ୟ ଅଛି, ପ୍ରଥମେ ବ୍ୟାସ 'ଜୟ' ଗ୍ରନ୍ଥ ରଚନା କରି ନିଜ ପୁତ୍ର ଶୁକଙ୍କୁ, ପରେ ସୁମନ୍ତୁ, ଜୈମିନି, ପୈଲ ଓ ବୈଶମ୍ପାୟନ—ଏଇ ଚାରି ଶିଷ୍ୟଙ୍କୁ ଶିଖାଇଲେ । ଏଇ ପାଞ୍ଚଜଣ ପାଞ୍ଚୋଟି ଭିନ୍ନ ଭିନ୍ନ 'ଭାରତ'ର ସଂସ୍କରଣ ରଚନା କଲେ । ସେଥିରୁ ପରେ ବ୍ୟାସ ବାଛି ବୈଶମ୍ପାୟନଙ୍କ ସଂସ୍କରଣଟିରେ ଜୈମିନିଙ୍କ ଅଶ୍ୱମେଧ ପର୍ବ ମାତ୍ର ଯୋଡ଼ି ବର୍ତ୍ତମାନର ମହାଭାରତ ପ୍ରକାଶ କରିଥିଲେ । ଅଶ୍ୱଲାୟନ 'ଗୃହ୍ୟସୂତ୍ର'ରେ ମଧ୍ୟ ଋଷିତର୍ପଣରେ—'ସୁମନ୍ତୁ-ଜୈମିନି-ବୈଶମ୍ପାୟନ ପୈଲ-ସୂତ୍ର-ଭାଷ୍ୟ-ମହାଭାରତ-ଧର୍ମାଚାର୍ଯ୍ୟାଃ' ଏଇପରି ଅଛି । ଏଥିରେ ଭାରତ ଓ ମହାଭାରତ ଦୁଇଟି ନାମ ଲକ୍ଷ୍ୟ କରିବାର ଯୋଗ୍ୟ । ଫଳକଥା, ଭାରତ ପ୍ରଥମରୁ ରଚିତ ହେଲା ପରେ ତାହାର ଭିନ୍ନ ଭିନ୍ନ ସଂସ୍କରଣ ହୋଇ କ୍ରମେ ବଢ଼ି, 'ଜୟ' ବା 'ଭାରତ'ରୁ ଏବେ ମହାଭାରତ ବା ବଡ଼ ଭାରତ ହୋଇଅଛି । ହୁଏତ ବର୍ତ୍ତମାନର ମହାଭାରତ ତଥା ଗୀତାର କୌଣସି କୌଣସି ଅଂଶ ବା ଶ୍ଳୋକ ବୌଦ୍ଧଧର୍ମ ପରେ ହୋଇଥିବା ବିଚିତ୍ର ନୁହେ ।

ମାତ୍ର ଆଉ ଗୋଟିଏ ଦିଗରୁ ଏଇ 'ନିର୍ବାଣ' କଥାଟିର ପ୍ରୟୋଗ ଏଠାରେ ମଧ୍ୟ ବ୍ୟାଖ୍ୟା କରାଯାଇପାରେ । କପିଳବାସ୍ତୁର ଶୁଦ୍ଧୋଦନ-ପୁତ୍ର ସିଦ୍ଧାର୍ଥ ଆଜକୁ ପ୍ରାୟ ୨୫୦୦ ବର୍ଷ ପୂର୍ବେ 'ବୁଦ୍ଧ' ହୋଇଥିଲେ ସତ, କିନ୍ତୁ ବୌଦ୍ଧ ଧର୍ମ ତାଙ୍କଠାରୁ ହୋଇଥିଲା ବୋଲି ଯେଉଁମାନେ ବୁଝନ୍ତି, ସେମାନେ ଇତିହାସ ଠିକ୍ ବୁଝନ୍ତି ନାହିଁ । ବୌଦ୍ଧ ଜାତକ ଦେଖିଲେ ବୁଝାଯାଏ, ବୋଧିସତ୍ତ୍ୱ କାଳେ କାଳେ ଭିନ୍ନ ଭିନ୍ନ ଅବତାରରେ ପ୍ରକଟିତ ହୋଇ ଲୋକଶିକ୍ଷା ଦିଅନ୍ତି ଓ ବହୁ ପୂର୍ବକାଳରୁ ଦେଇ ଆସିଛନ୍ତି । ଶାସ୍ତ୍ର ପୁରାଣମାନଙ୍କରେ ମଧ୍ୟ ବୁଦ୍ଧର ଯେ ଉଲ୍ଲେଖ ଦେଖାଯାଏ । ତାହା ଅନୁସନ୍ଧାନ କଲେ ବୁଝାଯାଏ, ସିଦ୍ଧାର୍ଥ ହିଁ ଏକମାତ୍ର ବୁଦ୍ଧ ନୁହନ୍ତି । ଭାରତର ସଂସ୍କୃତିରେ ବୌଦ୍ଧ ମତ ଗୋଟିଏ ଚିରନ୍ତନ ସାଧନ । ଏହା ବେଦଠାରୁ ଅର୍ବାଚୀନ ନୁହେଁ । ଏ ମତରେ ଶୂନ୍ୟରୁ ସବୁ ବାହାରି କର୍ମବନ୍ଧରେ ପ୍ରକାଶ ପାଇଛି । ସେହି ଶୂନ୍ୟର ସମ୍ୟକ୍ ଧ୍ୟାନ ଧାରଣାରେ କର୍ମ ତୁଟିଗଲେ ନିର୍ବାଣ ହେବ ବା ପୁଣି ସବୁ ଲିଭିଯିବ ବା ଶୂନ୍ୟ ହୋଇଯିବ ।

ଏବେ ସିନ୍ଧୁ-ପ୍ରଦେଶରୁ ଖୋଳା ହୋଇ ପ୍ରାୟ ୫/୬ ହଜାର ବର୍ଷ ପୂର୍ବର ଯେଉଁ ବିରାଟ ଭାରତସଭ୍ୟତାର ଅବଶେଷ ସବୁ ବାହାରୁଛି, ସେଥିରୁ ମଧ୍ୟ ସ୍ପଷ୍ଟ ଜଣାପଡ଼ୁଛି, ଏହି ନାସିକାଗ୍ରଦୃଷ୍ଟି ସାଧକ ଯୋଗୀମାନେ ସେତେବେଳେ ମଧ୍ୟ ନିର୍ବାଣ ସାଧନା କରୁଥିଲେ । ନାସିକାଗ୍ର କହିଲେ ନାକର ଉପର ଅଗ ଭ୍ରୂ-ମଧ୍ୟ ବୋଲି ଗୀତାର ବହୁ ପ୍ରସିଦ୍ଧ ଭାଷ୍ୟକାର ଅର୍ଥ କରିଅଛନ୍ତି । ଗୀତାରେ ମଧ୍ୟ ଅନ୍ୟତ୍ର 'ଭ୍ରୁବୋର୍ମଧ୍ୟେ' ବୋଲି କଥାଟି ଅଛି । କିନ୍ତୁ ସିନ୍ଧୁ ପ୍ରଦେଶରେ ଖୋଳା ହୋଇ ବାହାରିଥିବା ଯୋଗିମୂର୍ତ୍ତିରେ ଦେଖାଯାଏ, ଏହି ନାସିକାଗ୍ର, ନାସିକାର ତଳ ଶେଷ ଭାଗ ମଧ୍ୟ ହୋଇପାରେ । ପାତଞ୍ଜଳ-ସାଧନର ତ୍ରାଟକଯୋଗରେ ମଧ୍ୟ ନାକର ଶେଷ ଅଗକୁ ଚାହିଁବାକୁ ହୁଏ ବୋଲି କେହି କେହି ବିଶେଷଜ୍ଞ ମତ ଦିଅନ୍ତି ।

ବୌଦ୍ଧର ଏହି ଶୂନ୍ୟ ଧାରଣାରେ ମନକୁ ଠିକ୍ ରଖିବାପାଇଁ କର୍ମ ତ୍ୟାଗ କରି ଧ୍ୟାନଯୋଗରେ ନିରତ ରହିବା ପ୍ରଥା ବହୁକାଳରୁ ଏ ଦେଶରେ ଥିଲା । ବେଦରେ ମଧ୍ୟ ଏହି ଶୂନ୍ୟ ତଥା ପୂର୍ଣ୍ଣ ଭିତରେ ଭାବ-ଦ୍ୱନ୍ଦ୍ୱ—ଅର୍ଥାତ୍ ଏ ଜଗତ ମୂଳରେ ଶୂନ୍ୟ କି ପୂର୍ଣ୍ଣ କରି ଅଛି, ଏହି ସନ୍ଦେହ—ପ୍ରକାଶ ପାଇଛି । (ଋଗ୍‌ବେଦ ୧୦. ୧୨୯ ନାସଦୀୟ ସୂକ୍ତ ଦେଖ) । ଏହି ଧାରଣାରୁ ଉଠି କ୍ରମେ ଆତ୍ମା ଓ ପରମାତ୍ମାରେ ପୂର୍ଣ୍ଣତା ବେଦରେ ସ୍ପଷ୍ଟ ପ୍ରକଟିତ ହୋଇଛି । ଉପନିଷଦ୍ ପୁଣି ସ୍ପଷ୍ଟାକ୍ଷରରେ କହୁଛନ୍ତି—

"ପୂର୍ଣ୍ଣମିଦଂ ପୂର୍ଣ୍ଣମଦଃ
ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ
ପୂର୍ଣ୍ଣମେବାବଶିଷ୍ୟତେ ।"

ଅର୍ଥାତ୍ ଏ ପୂର୍ଣ୍ଣ, ସେ ପୂର୍ଣ୍ଣ (ବ୍ୟକ୍ତିର ଅଧ୍ୟାତ୍ମ ଓ ବିଶ୍ୱାସ ଅଧ୍ୟାତ୍ମ ପୂର୍ଣ୍ଣ ), ପୂର୍ଣ୍ଣରୁ ପୂର୍ଣ୍ଣ ପ୍ରକାଶ ପାଉଛି, ପୂର୍ଣ୍ଣରୁ ପୂର୍ଣ୍ଣ ଯାଇ ପୁଣି ପୂର୍ଣ୍ଣ ରହୁଛି—ବେଦର ଏହି ପ୍ରତିଷ୍ଠିତ ବ୍ରହ୍ମ ଓ ଅଧ୍ୟାତ୍ମଧାରଣା ଗୀତାର ତତ୍ତ୍ୱବସ୍ତୁ । ସେଥିରେ କିନ୍ତୁ ଶୂନ୍ୟର ଧ୍ୟାନ ତଥା କର୍ମ ଛାଡ଼ିବା ରୂପ ତାହାର ସାଧନା ଉପଦିଷ୍ଟ ନୁହେଁ । ତଥାପି ଜ୍ଞାନରେ ଧ୍ୟାନର ସାଧନା ପ୍ରତିଷ୍ଠିତ ପନ୍ଥା ଥିଲା । ଅର୍ଜୁନଙ୍କର ଭ୍ରମର କାରଣ ମଧ୍ୟ ସେଇଠାରେ । ତାକୁ ବରାବର ପିଙ୍ଗିଦେଇ କଥା କହିଲେ ଚଳିବ ନାହିଁ । ବହୁ ମୁକ୍ତ ପୁରୁଷଙ୍କର ସେ ସାଧନା ମଧ୍ୟ ଏଡ଼ିଦେବାର ବସ୍ତୁ ନୁହେଁ । ସେଥିପାଇଁ ଭଗବାନ, ବୌଦ୍ଧର ନିର୍ବାଣ ସାଧନା ତଥା କାପିଳମାନଙ୍କ ସାଂଖ୍ୟ ସାଧନା କିପରି ବୈଦିକ କର୍ମ-ସାଧନାର ସହାୟକ ଓ ସେସବୁ କିପରି ବୈଦିକ ସାଧନାଠାରୁ ଭିନ୍ନ ନୁହେଁ, ସେ ସବୁର ଯଥାର୍ଥ ଧାରଣା ଓ ପ୍ରୟୋଗ କିପରି ବୈଦିକ ସାଧନା ସଙ୍ଗେ ଅଙ୍ଗାଙ୍ଗି ଭାବରେ ଜଡ଼ିତ ରହିଅଛି, ସେ ସବୁ ସାଧନାର ପ୍ରକୃତ ତାତ୍ତ୍ୱିକ ଅର୍ଥ ଓ ପ୍ରୟୋଗ କଣ, ତାହା ବୁଝାଇ ଅଛନ୍ତି । ଏହି ଧ୍ୟାନ ସମ୍ପର୍କରେ ଏଠାରେ ସେଥିପାଇଁ ନିର୍ବାଣ ଶବ୍ଦକୁ ସ୍ପଷ୍ଟ ମୁକ୍ତ ଅର୍ଥରେ ପ୍ରୟୋଗ କରି କହିଛନ୍ତି, "ମୋଠାରେ ଥିବା ନିର୍ବାଣ ପରମା ଶାନ୍ତି ।" ଗୀତା ଏଇପରି ତତ୍ତ୍ୱ ଓ ସାଧନା ସମାଧାନର ଏକ ମହାଗ୍ରନ୍ଥ । ପର ଶ୍ଳୋକରେ ସେଥିପାଇଁ ବୁଝାଇ କହୁଛନ୍ତି, କିପରି ଯୋଗୀ, ମଧ୍ୟପନ୍ଥା ଧରି ସାଧାରଣ କର୍ମରେ ଲାଗି ରହିବା ଉଚିତ ।

**ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି ନ ଚୈକାନ୍ତମନଶ୍ନତଃ ।**
**ନ ଚାତିସ୍ୱପ୍ନଶୀଳସ୍ୟ ଜାଗ୍ରତୋ ନୈବ ଚାର୍ଜୁନ । ୧୬ ।**

**ଅନ୍ୱୟ**—ଅର୍ଜୁନ ! ନ ତୁ ଅତ୍ୟଶ୍ନତଃ, ନ ଚ ଏକାନ୍ତଂ ଅନଶ୍ନତଃ, ନ ଚ ଅତିସ୍ୱପ୍ନଶୀଳସ୍ୟ, ନ ଏବ ଜାଗ୍ରତଃ ଯୋଗଃ ଅସ୍ତି । ୧୬ ।

**ଟୀକା**—[ଯୋଗିନଃ ବାହ୍ୟଲକ୍ଷଣମାହ ଦ୍ୱାଭ୍ୟାଂ]—ହେ ଅର୍ଜୁନ, ନ ତୁ ଅତ୍ୟଶ୍ନତଃ (ଅତ୍ୟାହାରସ୍ୟ, ଅତିଶୟେନ ଇନ୍ଦ୍ରିୟଭୋଗରତସ୍ୟ ବା), ନ ଚ ଏକାନ୍ତଂ ଅନଶ୍ନତଃ ( ଉପବାସିନଃ, ନିରୁଦ୍ଧେନ୍ଦ୍ରିୟଭୋଗସ୍ୟ ବା ), ନ ଚ ଅତିସ୍ୱପ୍ନଶୀଳସ୍ୟ (ଅତିନିଦ୍ରାଳୋଃ କର୍ମଣି ବୀତଶ୍ରଦ୍ଧସ୍ୟ ବା) ନ ଏବ [ଅତି] ଜାଗ୍ରତଃ (ବିନିଦ୍ରସ୍ୟ, କର୍ମଣି ଇତସ୍ତତଃ ଧାବତଃ) ଯୋଗଃ ଅସ୍ତି (ସଂଭବତି) । ୧୬ ।

**ଅର୍ଥ**—କିନ୍ତୁ ହେ ଅର୍ଜୁନ, ଅତିଭୋଜନୀ (ପେଟୁ ବା ବିଳାସୀ), ଏକାବେଳକେ ଉପବାସୀ (ଇନ୍ଦ୍ରିୟ ଭୋଗହୀନ), ଭାରି ନିଦ୍ରାଳୁ (ବା ଅଳସୁଆ), ଅତି ଉଜାଗର (ବା ସବୁ କରି ପକାଇବାକୁ ଛଟପଟ ହେବା ଲୋକ)—ଏହିପରି ଯୋଗ ସାଧିବା ଲୋକଙ୍କର ଯୋଗ ହୁଏ ନାହିଁ । ୧୬ ।

ବ୍ୟାଖ୍ୟା ସୂଚନା—ଯୋଗ ସାଧିବାରେ ବହୁ ବ୍ରତ ଉପବାସାଦି ଓ 'ଊର୍ଦ୍ଧ୍ବବାହୁ, ପଞ୍ଚାଗ୍ନି' ପ୍ରଭୃତିର ସାଧନା କରାଯାଇଥାଏ । ସେପରି କଲେ ମଧ୍ୟ ମୋକ୍ଷପର କର୍ମସାଧନା ହୁଏ ନାଇଁ; ସାଧାରଣ ମନୁଷ୍ୟ ପରି ରହି ଅନାସକ୍ତ ହିଁ ଯୋଗୀ ହୁଏ ବୋଲି କହୁଛନ୍ତି । ୧୭ ।

**ଯୁକ୍ତାହାରବିହାରସ୍ୟ ଯୁକ୍ତଚେଷ୍ଟସ୍ୟ କର୍ମସୁ ।**
**ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗୋ ଭବତି ଦୁଃଖହା ।୧୭।**

**ଅନ୍ୱୟ**—ଯୁକ୍ତାହାରବିହାରସ୍ୟ, କର୍ମସୁ ଯୁକ୍ତଚେଷ୍ଟସ୍ୟ, ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗଃ ଦୁଃଖହା ଭବତି । ୧୭ ।

**ଟୀକା**—[ତର୍ହି କସ୍ୟାସ୍ତି ଇତ୍ୟାହ] ଯୁକ୍ତାହାରବିହାରସ୍ୟ (ଯୁକ୍ତଃ, ଯଥୋପଯୋଗୀ, ପରିମିତଃ, ଆହାରଃ, ବିହାରଶ୍ଚ ଯସ୍ୟ ତସ୍ୟ) [ତଥା] କର୍ମସୁ ଯୁକ୍ତଚେଷ୍ଟସ୍ୟ (ନିୟତାଚରଣସ୍ୟ) ଯୁକ୍ତସ୍ୱପ୍ନାବବୋଧସ୍ୟ (ନିୟତନିଦ୍ରାଜାଗରଣସ୍ୟ) ଯୋଗଃ ଦୁଃଖହା (ଦୁଃଖଘ୍ନଃ) ଭବତି । ୧୭ ।

**ଅର୍ଥ**—[ ତେବେ କାହାର ହୁଏ ? କହୁଛନ୍ତି ] ଯେତିକି ଦରକାର ସେତିକି ଆହାର ବିହାର ଯେ କରେ ଓ ସେହିପରି ଭାବରେ କର୍ମରେ ଶ୍ରମ କରେ, ପୁଣି ସେହି ନିୟମରେ ଶୋଇବା ଉଠିବା ପ୍ରଭୃତି ଠିକ୍ ରଖେ, ସେହି ଲୋକ ପକ୍ଷରେ ଏହା ଯୋଗ ଦୁଃଖଭଞ୍ଜନ ହୁଏ । ୧୭ ।

ବ୍ୟାଖ୍ୟା ସୂଚନା—ଯୁକ୍ତ=ଯଥୋପଯୁକ୍ତ, ଯେତିକି ଦରକାର ସେତିକି । ଗୀତାରେ କୁତ୍ରାପି ଅଦ୍ଭୁତ କର୍ମ, ବା ଅତିସାଧନାର ଉଲ୍ଲେଖ ନାହିଁ । ସାଧାରଣ ମାନବ ପରି ଚଳି ମୋକ୍ଷ-ସାଧନା କରିବାକୁ ହୁଏ । ସାଧନା ମନ ବା ବୁଦ୍ଧିରେ; ଶାରୀରିକ କର୍ମଦ୍ୱାରେ ନୁହେ । ଅବତାର ବା ଯୋଗୀ ବୈରାଗୀଙ୍କ ଆଚରିତ କାର୍ଯ୍ୟ ହେଲେ ମଧ୍ୟ ଯୋଗ ବା ମୋକ୍ଷ-ସାଧନାର ଅଙ୍ଗ ନୁହେ । ୧୭ ।

**ଯଦା ବିନିୟତଂ ଚିତ୍ତମାତ୍ମନ୍ୟେବାବତିଷ୍ଠତେ ।**
**ନିଃସ୍ପୃହଃ ସର୍ବକାମେଭ୍ୟୋ ଯୁକ୍ତ ଇତ୍ୟୁଚ୍ୟତେ ତଦା ।୧୮।**

**ଅନ୍ୱୟ**—ଯଦା ବିନିୟତଂ ଚିତ୍ତଂ ଆତ୍ମନି ଏବ ଅବତିଷ୍ଠତେ ତଦା ସର୍ବକାମେଭ୍ୟଃ ନିଃସ୍ପୃହଃ ଯୁକ୍ତଃ ଇତି ଉଚ୍ୟତେ । ୧୮ ।

**ଟୀକା**—[ଆଗ୍ରତଂ ଲକ୍ଷଣମାହ ଦ୍ୱାଭ୍ୟାଂ]—ଯଦା ବିନିୟତଂ (ସମ୍ୟକ୍ ନିୟମେ ସ୍ଥିତଂ) ଚିତ୍ତଂ ଆତ୍ମନି ଏବ ଅବତିଷ୍ଠତେ (ସ୍ଥିରଂ ଭବତି) ତଦା ସର୍ବକାମେଭ୍ୟଃ

(କାମନାମାତ୍ରେଭ୍ୟଃ) ନିଃସ୍ପୃହଃ (ତୃଷ୍ଣାଶୂନ୍ୟଃ) [ ସନ୍ ] ଯୁକ୍ତଃ (ଯୋଗୀ) ଇତି ଉଚ୍ୟତେ । ୧୮ ।

**ଅର୍ଥ**—[ଭକ୍ତର ଲକ୍ଷଣ ଦୁଇ ଶ୍ଳୋକରେ କହୁଚନ୍ତି ]—ଯେତେବେଳେ ସମ୍ପୂର୍ଣ୍ଣ ନିୟମରେ ଥିବା ଚିତ୍ତ ଆତ୍ମାରେ ଏକା ସ୍ଥିର ରହେ, ସେତିକିବେଳେ ବାହାର ଭୋଗର କାମନାମାତ୍ରରୁ ତୃଷ୍ଣା ଛାଡ଼ି ଯାଇଥିବା ଲୋକକୁ ଯୋଗୀ ବୋଲି କୁହାଯାଏ । ୧୮ ।

ବ୍ୟାଖ୍ୟା ସୂଚନା—କେବଳ ଚିତ୍ତ ଆତ୍ମାରେ ସ୍ଥିର କରିବାପାଇଁ ଧ୍ୟାନଯୋଗ ଦରକାର । ଯୋଗୀ କିନ୍ତୁ ଏଠାରେ ଧ୍ୟାନଯୋଗୀ ନୁହେଁ । ଏଠାରେ କାମନାର ତୃଷ୍ଣା ଛାଡ଼ି କର୍ମ କରିଯିବା ଲୋକହିଁ ଯୋଗୀ । ୧୮ ।

**ଯଥା ଦୀପୋ ନିବାତସ୍ଥୋ ନେଙ୍ଗତେ ସୋପମା ସ୍ମୃତା ।**
**ଯୋଗିନୋ ଯତଚିତ୍ତସ୍ୟ ଯୁଞ୍ଜତୋ ଯୋଗମାତ୍ମନଃ ।୧୯।**

**ଅନ୍ୱୟ**—ଯଥା ନିବାତସ୍ଥଃ ଦୀପଃ ନ ଇଙ୍ଗତେ, ଆତ୍ମନଃ ଯୋଗଂ ଯୁଂଜତଃ ଯତଚିତ୍ତସ୍ୟ ଯୋଗିନଃ ସଃ ଉପମା ସ୍ମୃତା । ୧୯ ।

**ଅର୍ଥ**—ପବନ ହେଉ ନଥିବା ଜାଗାରେ ଥିବା ଦୀପ ଯେପରି ହଲେ ନାହିଁ, ଆତ୍ମାରେ ଯୋଗ (ସମାଧି ବା ସ୍ଥିର ଧ୍ୟାନ) ଲଗାଇଥିବା ଯୋଗୀ (ମୋକ୍ଷପର କର୍ମୀ)ର ସେଇ ଉପମା ବୋଲି ଧରିବାକୁ ହୁଏ । (ଅର୍ଥାତ୍ ସେ ଯୋଗୀ) ସେହିପରି କାମ-ରାଗାଦିରେ ହଲଚଲ ହୁଏ ନାହିଁ । ୧୯ ।

**ଯତ୍ରୋପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା ।**
**ଯତ୍ର ଚୈବାତ୍ମନାତ୍ମାନଂ ପଶ୍ୟନ୍ନାତ୍ମନି ତୁଷ୍ୟତି ।୨୦।**
**ସୁଖମାତ୍ୟନ୍ତିକଂ ଯତ୍ତଦ୍‌ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍ ।**
**ବେତ୍ତି ଯତ୍ର ନ ଚୈବାୟଂ ସ୍ଥିତଶ୍ଚଳତି ତତ୍ତ୍ୱତଃ ।୨୧।**
**ଯଂ ଲବ୍‌ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ ।**
**ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ।୨୨।**
**ତଂ ବିଦ୍ୟାଦ୍ ଦୁଃଖସଂଯୋଗବିୟୋଗଂ ଯୋଗସଂଜ୍ଞିତମ୍**
**ସ ନିଶ୍ଚୟେନ ଯୋକ୍ତବ୍ୟୋ ଯୋଗୋଽନିର୍ବିଣ୍ଣଚେତସା ॥**

**ଅନ୍ୱୟ**—ଯତ୍ର ଯୋଗସେବୟା ନିରୁଦ୍ଧଂ ଚିତ୍ତଂ ଉପରମତେ, ଯତ୍ର ଚ ଆତ୍ମନା ଆତ୍ମାନଂ ପଶ୍ୟନ୍ ଏବ ଆତ୍ମନି ତୁଷ୍ୟତି, ଯତ୍ର ତତ୍ ବୁଦ୍ଧି-ଗ୍ରାହ୍ୟଂ, ଅତୀନ୍ଦ୍ରିୟଂ ତତ୍ ଆତ୍ୟନ୍ତିକଂ ସୁଖଂ ବେତ୍ତି, [ଯତ୍ର] ଚ ସ୍ଥିତଃ [ସନ୍] ଅୟଂ ତତ୍ତ୍ୱତଃ ନ ଏବ ଚଳତି, ଯଂ ଲବ୍ଧ୍ୱା ଚ ଅପରଂ ଲାଭଂ ତତଃ ଅଧିକଂ ନ ମନ୍ୟତେ, ଯସ୍ମିନ୍ ସ୍ଥିତଃ [ ସନ୍ ] ଗୁରୁଣା ଦୁଃଖେନ ଅପି ନ ବିଚାଲ୍ୟତେ, ଦୁଃଖସଂଯୋଗବିୟୋଗଂ ତଂ ଯୋଗ-ସଂଜ୍ଞିତଂ ବିଦ୍ୟାତ୍ । ଅନିର୍ବିଣ୍ଣଚେତସା ସଃ ଯୋଗଃ ନିଶ୍ଚୟେନ ଯୋକ୍ତବ୍ୟଃ । ୨୦-୨୩ ।

**ଟୀକା**—[ ଲକ୍ଷଣେନ ବର୍ଣ୍ଣୟନ୍ ତଦ୍‌ଯୋଗମବଶ୍ୟଂ କୁର୍ଯ୍ୟାଦିତ୍ୟାହ ଚତୁର୍ଭିଃ—ଯତ୍ର [ସ୍ଥିତ୍ୟାଂ] ଯୋଗସେବୟା (ଯୋଗାଭ୍ୟାସେନ) ନିରୁଦ୍ଧଂ ( ସର୍ବତୋ ନିବାରିତପ୍ରଚାରଂ) ଚିତ୍ତଂ ଉପରମତେ (ଶାମ୍ୟତି, ଶାନ୍ତିଂ ଗଚ୍ଛତି), ଯତ୍ର ଚ [ଜନଃ] ଆତ୍ମନା ଆତ୍ମାନଂ ପଶ୍ୟନ୍ [ତସ୍ମିନ୍] ଏବ ଆତ୍ମନି (ନ ତୁ ବିଷୟେ—ଇତି ଭାବଃ) ତୁଷ୍ୟତି (ତୃପ୍ତିମେତି), ଯତ୍ର ଯତ୍ ବୁଦ୍ଧିଗ୍ରାହ୍ୟଂ (ନ ତୁ ଇନ୍ଦ୍ରିୟାଦିଗ୍ରାହ୍ୟଂ) [ଅତଏବ] ଅତୀନ୍ଦ୍ରିୟଂ ଇନ୍ଦ୍ରିୟାଣାଂ (ଅବିଷୟଂ) ତତ୍ ଆତ୍ୟନ୍ତିକଂ (ସର୍ବଶ୍ରେଷ୍ଠଂ, ନିତ୍ୟଂ) ସୁଖଂ ବେତ୍ତି, [ଯତ୍ର] ଚ ସ୍ଥିତଃ [ସନ୍] ଅୟଂ ତତ୍ତ୍ୱତଃ (ଆତ୍ମସ୍ୱଭାବାତ୍) ନ ଏବ ଚଳତି, ଯଂ (ସ୍ଥିତିବିଶେଷଂ) ଲବ୍ଧ୍ୱା ଚ ଅପରଂ ଲାଭଂ ତତଃ ଅଧିକଂ ନ ମନ୍ୟତେ, ଯସ୍ମିନ୍ ସ୍ଥିତଃ [ ସନ୍ ] ଗୁରୁଣା ଦୁଃଖେନ ଅପି ନ ବିଚାଲ୍ୟତେ ( ବିଚାଲିତୋ ଭବତି ) ଦୁଃଖସଂଯୋଗବିୟୋଗଂ (ଦୁଃଖପ୍ରସଙ୍ଗରହିତଂ) ତଂ (ସ୍ଥିତିବିଶେଷଂ) ଯୋଗସଂଜ୍ଞିତଂ (ଯୋଗନାମକଂ) ବିଦ୍ୟାତ୍ (ଜାନୀୟାତ୍) ଅନିର୍ବିଣ୍ଣଚେତସା (କଷ୍ଟମିତି ଯତ୍ନଶୈଥିଲ୍ୟଂ ନିର୍ବେଦଃ—ତଦ୍ ରହିତେନ ମନସା ) ସଃ ଯୋଗଃ ନିଶ୍ଚୟେନ (ଅବଶ୍ୟମେବ, ଦୃଢ଼ତୟା ବା) ଯୋକ୍ତବ୍ୟଃ (ଅଭ୍ୟସନୀୟଃ) । ୨୦-୨୩ ।

**ଅର୍ଥ**—[ ସେହି ଯୋଗର ଲକ୍ଷଣ ଦେଖାଇ, ତା ଅବଶ୍ୟ କରିବାକୁ ହେବ ବୋଲି ଚାରି ଶ୍ଳୋକରେ କହୁଅଛନ୍ତି] ଯେଉଁ ଧ୍ୟାନସ୍ଥିତିରେ ଜୀବାତ୍ମା ପରମାତ୍ମାର ଯୋଗ ହେବାରୁ ଚିତ୍ତ ସବୁଆଡ଼ୁ ରୋକା ହୋଇ ଶାନ୍ତି ପାଏ, ଯେଉଁ ଧ୍ୟାନଯୋଗରେ ଯୋଗୀ ନିଜେ ଆତ୍ମାକୁ ଦେଖି ଆତ୍ମାରେ ସନ୍ତୋଷ ରହେ, ଯହିଁରେ ଥାଇ ଲୋକ କେବଳ ବୁଦ୍ଧିଗମ୍ୟ ଓ ଇନ୍ଦ୍ରିୟର ଅଗୋଚର ଯେଉଁ ଅତ୍ୟନ୍ତ ସୁଖ (୨.୬୫; ୧୮.୩୭ ଟୀକା ଦେଖ) ତାକୁ ଜାଣି ଅଉ ଆତ୍ମତତ୍ତ୍ୱରୁ ବିଚଳିତ ହୁଏ ନାହିଁ ଓ ଯାହା ପାଇ ଅନ୍ୟ ଲାଭକୁ ତାଠାରୁ ବଡ଼ ମଣେ ନାହିଁ, ଯେଉଁ ସ୍ଥିତି ବା ଅବସ୍ଥାରେ ଥିଲେ, ଘୋର ଦୁଃଖରେ ବି ଯୋଗୀକୁ ଝୁଙ୍କାଇ ହୁଏ ନାହିଁ, ତାହାକୁହିଁ ଦୁଃଖ ସ୍ପର୍ଶରୁ ଅଲଗା ଯୋଗ ନାମକ ସ୍ଥିତି ବୋଲି ଜାଣିବ । ମନରେ ହେଲେ ହତାଶ ନ ହୋଇ ଯୋଗୀ ସେହି ଯୋଗରେ ନିଷ୍ଠ ଲାଗିବା ଉଚିତ । ୨୦-୨୩ ।

ବ୍ୟାଖ୍ୟା ସୂଚନା—'ଯୋଗୀ' = ମୋକ୍ଷାର୍ଥିକର୍ମଯୋଗୀ । ଯୋଗନାମକ ସ୍ଥିତି = ଧ୍ୟାନଯୋଗସ୍ଥିତି । ଏହି ସବୁ ଯେଉଁ ଧ୍ୟାନଯୋଗରେ ହୁଏ, 'ଯୋଗୀ' ସେହି ଧ୍ୟାନଯୋଗକୁ ସାଧିବା ଉଚିତ । ଧ୍ୟାନଯୋଗ, 'ଯୋଗ'ରେ ଦରକାର । ପାତଞ୍ଜଳ ଯୋଗସୂତ୍ରରେ ଏହି ଯୋଗର ବିଶେଷ ଚର୍ଚ୍ଚା ହୋଇଅଛି । ଦ୍ୱିତୀୟ ସୂତ୍ରରେ ବିଷୟ ଆରମ୍ଭ କରି ପାତଞ୍ଜଳ କହିଚନ୍ତି, "ଯୋଗଃ ଚିତ୍ତବୃତ୍ତିନିରୋଧଃ ।" ତା ପରେ କ୍ରମେ ଏହି ଧ୍ୟାନଯୋଗ ସ୍ଥିତି ସ୍ପଷ୍ଟ କରି ବୁଝାଇଛନ୍ତି । ଗୀତା, ପାତଞ୍ଜଳ ଯୋଗସୂତ୍ରରୁ ଆଗ ହୋଇପାରେ; ମାତ୍ର ଧ୍ୟାନଯୋଗର ସାଧନାପରଂପରା ବହୁ ପୂର୍ବରୁ ଥିଲା । ୧୦-୧୩ ।

**ସଂକଳ୍ପପ୍ରଭବାନ୍ କାମାଂସ୍ତ୍ୟକ୍ତ୍ୱା ସର୍ବାନଶେଷତଃ ।**
**ମନସୈବେନ୍ଦ୍ରିୟଗ୍ରାମଂ ବିନିୟମ୍ୟ ସମନ୍ତତଃ ॥ ୨୪ ॥**

**ଶନୈଃ ଶନୈରୁପରମେଦ୍ ବୁଦ୍ଧ୍ୟା ଧୃତିଗୃହୀତୟା ।**
**ଆତ୍ମସଂସ୍ଥଂ ମନଃ କୃତ୍ୱା ନ କିଂଚିଦପି ଚିନ୍ତୟେତ୍ ॥ ୨୫ ॥**

**ଅନ୍ୱୟ**—ସଂକଳ୍ପପ୍ରଭବାନ୍ ସର୍ବାନ୍ କାମାନ୍ ଅଶେଷତଃ ତ୍ୟକ୍ତ୍ୱା, ଇନ୍ଦ୍ରିୟଗ୍ରାମଂ ମନସା ଏବ ସମନ୍ତତଃ ବିନିୟମ୍ୟ ଶନୈଃ ଶନୈଃ ଉପରମେତ୍ । ଧୃତିଗୃହୀତୟା ବୁଦ୍ଧ୍ୟା ମନଃ ଆତ୍ମସଂସ୍ଥଂ କୃତ୍ୱା ନ କିଂଚିତ୍ ଅପି ଚିନ୍ତୟେତ । ୨୪-୨୫ ।

**ଟୀକା**—[କଥଂ ସଃ ଧ୍ୟାନଯୋଗଃ ଯୋକ୍ତବ୍ୟଃ ମୋକ୍ଷାର୍ଥିକର୍ମଯୋଗିନା—ଇତ୍ୟାହ ଦ୍ୱିଭିଃ]—[ଯୋଗୀ] ସଂକଳ୍ପପ୍ରଭବାନ୍ (ସଂକଳ୍ପଃ, ଶୋଭନାଧ୍ୟାସଃ—କର୍ମଣି ଫଲେ ବା ଶୋଭନାଧ୍ୟାସାଦ୍ୟୁତ୍ପନ୍ନାନ୍) ସର୍ବାନ କାମାନ୍ (ଅଶେଷତଃ) (ଅନବଶେଷତୟା, ସମ୍ପୂର୍ଣ୍ଣତୟା) ତ୍ୟକ୍ତ୍ୱା, ଇନ୍ଦ୍ରିୟଗ୍ରାମଂ (ଇନ୍ଦ୍ରିୟସମୂହଂ) ମନସା ଏବ (ନ ତୁ ବ୍ୟାପାରେଭ୍ୟଃ ଇତି ଗମ୍ୟଂ) ସମନ୍ତତଃ (ସର୍ବବିଷୟେଭ୍ୟଃ) ବିନିୟମ୍ୟ (ସମ୍ୟକ୍ ସଂଯମ୍ୟ) ଶନୈଃ-ଶନୈଃ (ଅଳ୍ପଶଃ, କ୍ରମେଣ—ନ ତୁ ସହସା) ଉପରମେତ୍ [ଶାମ୍ୟେତ୍] । ଧୃତିଗୃହୀତୟା [ଅନିର୍ବିଣ୍ଣୟା] ବୁଦ୍ଧ୍ୟା ମନଃ ଆତ୍ମସଂସ୍ଥଂ (ଆତ୍ମନି ପ୍ରତିଷ୍ଠିତଂ) କୃତ୍ୱା ନ [ଅନ୍ୟତ୍] କିଂଚଦପି ଚିନ୍ତୟେତ୍ । ୨୪-୨୫ ।

**ଅର୍ଥ**—[ଯୋଗୀ ବା ମୋକ୍ଷାର୍ଥିକର୍ମୀ କି ପ୍ରଣାଳୀରେ ଏହି ଧ୍ୟାନଯୋଗ ସାଧିବ, ତାହା ତିନି ଶ୍ଳୋକରେ କହୁଚନ୍ତି] ଯୋଗୀ ସଂକଳ୍ପରୁ ହେଉଥିବା କାମ ମାନେ ବିଲକୁଲ ଝିଙ୍କିକରି ଛାଡ଼ି, ମନରେ ହିଁ ଇନ୍ଦ୍ରିୟମାନଙ୍କୁ ସବୁଆଡ଼ୁ ଟାଣିଆଣି ଆପଣା ଅଧୀନରେ ନିୟମରେ ରଖି, ଆସ୍ତେ ଆସ୍ତେ [ ବିଷୟରୁ ଅସକ୍ତ ଛାଡ଼ି ] ଶାନ୍ତ

ହୋଇ ଆସିବ । ହଦେଇ ନ ଯିବା ଭଳି ବୁଦ୍ଧି ଧରି, ମନକୁ ଆତ୍ମାରେ ଠିକଣା କରି ରଖି, ସେହି ଆତ୍ମା ଛଡ଼ା ଅଉ କିଛି ହେଲେ ଚିନ୍ତା କରିବ ନାଇ । ୨୪-୨୫ ।

ବ୍ୟାଖ୍ୟା ସୂଚନା—ସଙ୍କଳ୍ପ=ଶୋଭନାଭ୍ୟାସ, କର୍ମଟି ସୁନ୍ଦର ବୋଲି ବିଗୁଣିବା—ଆନନ୍ଦଗିରି । ୪.୧୯;୬.୨;୬.୪ ଦେଖ । ମନରେହିଁ ଇନ୍ଦ୍ରିୟମାନଙ୍କୁ ରୋକ, ଅର୍ଥାତ୍ ବିଷୟ ସ୍ପର୍ଶ ବନ୍ଦ କରିବା ଦରକାର ନାଇ । ଗୀତାରେ ଯେଉଁ ଯୋଗର କଥା ବରାବର କୁହାଯାଇଛି, ସେହି ଯୋଗୀର ସବୁ ସାଧନା ସଙ୍ଗ ଏ ଧ୍ୟାନଯୋଗସାଧନା—ହୋ ବରାବର ମନେ ରଖିବାକୁ ହେବ । ଏହି ଯୋଗହିଁ ସ୍ୱତନ୍ତ୍ର ମୋକ୍ଷସାଧନା ନୁହେ । ଏହା ଯୋଗୀକୁ ଯଥାର୍ଥ ଯୋଗସ୍ଥିତିକୁ ଘେନଯାଏ । ୨୪-୨୫ ।

**ଯତୋ ଯତୋ ନିଶ୍ଚଳତି ମନଶ୍ଚଞ୍ଚଳମସ୍ଥିରମ୍ ।**
**ତତସ୍ତତୋ ନିୟମ୍ୟୈତଦାତ୍ମନ୍ୟେବ ବଶଂ ନୟେତ୍ ।୨୬।**

**ଅନ୍ୱୟ**—ଚଂଚଳଂ, ଅସ୍ଥିରଂ ମନଃ ଯତଃ ଯତଃ ନିଶ୍ଚଳତି, ତତଃ ତତଃ ଏତତ୍ ନିୟମ୍ୟ ଆତ୍ମନି ଏବ ବଶଂ ନୟେତ୍ । ୨୬ ।

**ଟୀକା**—[ସ୍ୱଭାବତଃ] ଚଞ୍ଚଳଂ ଅସ୍ଥିରଂ ମନଃ ଯତଃ (ଯଂ ଯଂ ବିଷୟଂ ପ୍ରତି) ନିଶ୍ଚଳତି (ନିର୍ଗଚ୍ଛତି),[ସ ଯୋଗୀ] ତତଃ ତତଃ [ବିଷୟାତ୍] ଏତତ୍ [ମନଃ] ନିୟମ୍ୟ ଆତ୍ମନି ଏବ ବଶଂ ନୟେତ୍ (ସ୍ଥିରଂ କୁର୍ଯାତ୍ ଇତ୍ୟର୍ଥଃ) । ୨୬ ।

**ଅର୍ଥ**—[ସ୍ୱଭାବରେ] ଚଞ୍ଚଳ ଓ ଅସ୍ଥିର ମନ ଯୁଆଡ଼େ ଯୁଆଡ଼େ ଯିବ, ଯୋଗୀ ସିଆଡ଼ୁ ସିଆଡ଼ୁ ଏହାକୁ ରୋକି ଆପଣାର ଅଧୀନ କରି ଆତ୍ମାରେ ଠିକ୍ ରଖିବ । ୨୬ ।

**ପ୍ରଶାନ୍ତମନସଂ ହ୍ୟେନଂ ଯୋଗିନଂ ସୁଖମୁତ୍ତମମ୍ ।**
**ଉପୈତି ଶାନ୍ତରଜସଂ ବ୍ରହ୍ମଭୂତମକଲ୍ମଷମ୍ । ୨୭ ।**

**ଅନ୍ୱୟ**—ଏନଂ ପ୍ରଶାନ୍ତମନସଂ ଶାନ୍ତରଜସଂ, ବ୍ରହ୍ମଭୂତଂ, ଅକଲ୍ମଷଂ ଯୋଗିନଂ ହି ଉତ୍ତମଂ ସୁଖଂ ଉପୈତି । ୨୭ ।

**ଟୀକା**—[ଯେ ଶରଫଳମାହ ପଞ୍ଚଭିଃ]—ଏନଂ ପ୍ରଶାନ୍ତମନସଂ ଶାନ୍ତରଜସଂ (ରଜୋଗୁଣୋତ୍ପନ୍ନକାମକ୍ଲେଶାଦିବିକାରସହିତଂ, ଯଦ୍ୱା ଶାନ୍ତଂ ରଜଃ, ମଳଂ, ଚିତ୍ତଗୃଞ୍ଚଳଂ ଯସ୍ୟ, ତଂ) ବ୍ରହ୍ମଭୂତଂ ଆତ୍ମସ୍ୱରୂପଂ, ଅକଲ୍ମଷଂ (ନିଷ୍ପାପଂ) ଯୋଗିନଂହି ଉତ୍ତମଂ ସୁଖଂ ଉପୈତି (ଉପଗଚ୍ଛତି) । ୨୭ ।

**ଅର୍ଥ**—[ଯୋଗର ଫଳ ପାଞ୍ଚ ଶ୍ଳୋକରେ କହୁଚନ୍ତି]—ଏହିପରି ପ୍ରଶାନ୍ତମନା, ବିକାରଶୂନ୍ୟ, ବ୍ରହ୍ମଭୂତ, ନିଷ୍ପାପ ଯୋଗୀଙ୍କୁ ହିଁ ଉତ୍ତମ ସୁଖ ମିଳେ । ୨୭ ।

ବ୍ୟାଖ୍ୟା ସୂଚନା—ବ୍ରହ୍ମଭୂତ=ଯେ ଆତ୍ମସ୍ୱରୂପରେ ଠିକ୍ ରହିବାରୁ ବ୍ରହ୍ମ ହୋଇଯାଇଥାଏ । ଉତ୍ତମସୁଖ=୨.୬୫; ୧୮.୩୭ ଦେଖ । ୬.୨୧ରେ ମଧ୍ୟ ବୁଦ୍ଧି-ଗ୍ରାହ୍ୟ, ଅତୀନ୍ଦ୍ରିୟ, ଆତ୍ୟନ୍ତିକ ସୁଖ ଦେଖ । ଯୋଗସ୍ଥ ଲୋକର ଚିତ୍ତଶାନ୍ତି ଆସିଲେ ଏହି ସୁଖ ମିଳେ । ଦୁଃଖ ସଙ୍ଗେ ତୁଳନା କରି ଯେଉଁ ସୁଖ ମିଳେ, ସେଥିରେ ଆସକ୍ତି ଓ ଚିତ୍ତଚାଞ୍ଚଲ୍ୟ ଅନିବାର୍ଯ୍ୟ, ତାହା ବୁଦ୍ଧିଗ୍ରାହ୍ୟ ନୁହେଁ, ଇନ୍ଦ୍ରିୟଗ୍ରାହ୍ୟ; ଅତଏବ ଅତୀନ୍ଦ୍ରିୟ ହୋଇ ନ ପାରେ । ଏଠାରେ ଉତ୍ତମ ସୁଖ ମଧ୍ୟ ସେଇପରି । ପୂର୍ବେ ୬ ୨୩ର 'ଦୁଃଖସଂଯୋଗବିୟୋଗ' କଥାଟିରେ ମଧ୍ୟ ସେହି ଅର୍ଥ ଅଛି । ପର ଶ୍ଳୋକରେ ଅତ୍ୟନ୍ତ ସୁଖ ଦେଖ । ୨୭ ।

**ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ବିଗତକଲ୍ମଷଃ ।**
**ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ । ୨୮ ।**

**ଅନ୍ୱୟ**—ବିଗତକଲ୍ମଷଃ ଯୋଗୀ ଏବଂ ସଦା ଆତ୍ମାନଂ ଯୁଞ୍ଜନ୍ ସୁଖେନ ବ୍ରହ୍ମସଂସ୍ପର୍ଶଂ ଅତ୍ୟନ୍ତଂ ସୁଖଂ ଅଶ୍ନୁତେ ।

**ଟୀକା**—ବିଗତକଲ୍ମଷଃ (କ୍ଷୟିତପାପଃ) ଯୋଗୀ ଏବଂ (ଉକ୍ତରୂପଂ) ସଦା ଆତ୍ମାନଂ ଯୁଞ୍ଜନ୍ (ଧ୍ୟାନଯୋଗସାଧନୟା ବ୍ରହ୍ମଣି ସ୍ଥାପୟନ୍) ସୁଖେନ (ଅନାୟାସେନ) ବ୍ରହ୍ମସଂସ୍ପର୍ଶଂ (ବ୍ରହ୍ମପ୍ରାପ୍ତିରୂପଂ) ଅତ୍ୟନ୍ତଂ (ନିତ୍ୟଂ) ସୁଖଂ ଅଶ୍ନୁତେ । ୨୮ ।

**ଅର୍ଥ**—କଲ୍ମଷହୀନ ଯୋଗୀ ଏହିପରି ଧ୍ୟାନଯୋଗ ସାଧିବାରେ ଆତ୍ମାକୁ ବ୍ରହ୍ମରେ ଲଗାଇ ଅନାୟାସରେ ବ୍ରହ୍ମପ୍ରାପ୍ତିରୂପ ନିତ୍ୟ ସୁଖ ପାଏ । ୨୮ ।

**ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।**
**ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ । ୨୯ ।**

**ଅନ୍ୱୟ**—ଯୋଗଯୁକ୍ତାତ୍ମା, ସର୍ବତ୍ର ସମଦର୍ଶନଃ ଆତ୍ମାନଂ ସର୍ବଭୂତସ୍ଥଂ ସର୍ବଭୂତାନି ଚ ଆତ୍ମନି ଈକ୍ଷତେ । ୨୯ ।

**ଟୀକା**—ଯୋଗଯୁକ୍ତାତ୍ମା (ସର୍ବକର୍ମଣି ପରମାତ୍ମନି ସ୍ଥିତାତ୍ମା) [ନିତ୍ୟାସଦ୍-ଭୂତସ୍ୟ, ଅବ୍ୟକ୍ତସ୍ୟ, ଆତ୍ମନଃ ଅତୀନ୍ଦ୍ରିୟତ୍ୱାଂ ଅଧ୍ୟାତ୍ମସତ୍ତ୍ୱଂ ସର୍ବତ୍ର ସମଂ ଅନୁଭୂୟ] ସର୍ବତ୍ର ସମଦର୍ଶନଃ [ସନ୍] ଆତ୍ମାନଂ ସର୍ବଭୂତସ୍ଥଂ (ସର୍ବବ୍ୟକ୍ତବିଶ୍ୱମୟଂ) [ତଥା] ସର୍ବଭୂତାନି (ସର୍ବବସ୍ତୂନି—ବ୍ୟକ୍ତବିଶ୍ୱମାନି) ଚ [ତସ୍ମିନ୍ନେବ] ଆତ୍ମନି (ବ୍ରହ୍ମଣି) ଈକ୍ଷତେ (ପଶ୍ୟତି) । ୨୯ ।

**ଅର୍ଥ**—[ଏହିପରି ଯୋଗରେ ମନ ଦେଇଥିବା ଲୋକ [ଇନ୍ଦ୍ରିୟରେ ଧରା ନ ହେବା, ସବୁ ଦେଖୁଥିବା, ଜାଣୁଥିବା ସେହି ନିତ୍ୟ ଉପସ୍ଥିତ 'ମୁଁ'କୁ ସର୍ବତ୍ର ସମାନ ବୋଲି ଅନୁଭବ କରି ୬.୫ ଟୀକା ଦେଖ]—ସବୁଠି ସମଦର୍ଶୀ ହୋଇ ଆତ୍ମାକୁ ସବୁ ସୃଷ୍ଟ ବସ୍ତୁରେ [ଗୂଢ଼, ଅବ୍ୟକ୍ତ, ଅଧ୍ୟାତ୍ମରୂପେ] ପୁଣି ସାରା ସୃଷ୍ଟିକୁ ସେହି ଆତ୍ମାରେ (ଅର୍ଥାତ୍ ସେହି ଆତ୍ମାର ପ୍ରକାଶରୂପେ) ଦେଖେ । ୨୯ ।

ବ୍ୟାଖ୍ୟା ସୂଚନା—ଏହିପରି ଦେଖିବାରୁ ସେ ସ୍ୱତଃ ସମଦର୍ଶୀ ହୁଏ । ଏହି ଶ୍ଳୋକରେ କୁହାଯାଇଥିବା ତତ୍ତ୍ୱ ସପ୍ତମ, ଅଷ୍ଟମ ଓ ନବମ ଅଧ୍ୟାୟରେ ଜ୍ଞାନ ବିଜ୍ଞାନ ସମ୍ପର୍କରେ ଭଲ କରି ବୁଝାଇ ଦିଆ ହୋଇଛି । ୯ ।

**ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି ।**
**ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି ।୩୦।**

**ଅନ୍ୱୟ**—ଯଃ ମାଂ ସର୍ବତ୍ର ପଶ୍ୟତି, ସର୍ବଂ ଚ ମୟି ପଶ୍ୟତି, ଅହଂ ତସ୍ୟ ନ ପ୍ରଣଶ୍ୟାମି, ସଃ ଚ ମେ ନ ପ୍ରଣଶ୍ୟତି । ୩୦ ।

**ଟୀକା**—[ଏବଂ] ଯଃ ମାଂ (ପରମାତ୍ମାନଂ ପରମେଶ୍ୱରଂ) ସର୍ବତ୍ର ପଶ୍ୟତି, ସର୍ବଂ ଚ ମୟି ପଶ୍ୟତି, ଅହଂ ତସ୍ୟ ନ ପ୍ରଣଶ୍ୟାମି (ଦୃଷ୍ଟେଃ, ଅନୁଭବାଦ୍ ବା, ଅଗୋଚରୋ ଭବାମି) । ସଃ ଚ ମେ (ମମ) ନ ପ୍ରଣଶ୍ୟତି । ୩୦ ।

**ଅର୍ଥ**—[ଏହିପରି] ଯେ ମୋତେ ସବୁଠି ଦେଖେ ଓ ସବୁ ମୋଠି ଦେଖେ, ମୁଁ ତା ଆଖି ଆଗରୁ ଯାଏ ନାହିଁ କି ସେ ମୋ ଆଖି ଆଗରୁ ଯାଏ ନାହିଁ (ଅର୍ଥାତ୍ ସେ ମୋଠି ନିତ୍ୟ ରହେ ନାହିଁ କି ମୁଁ ତାକୁ ଭୁଲେ ନାହିଁ; ସେ ମୋତେ ଛାଡ଼େ ନାହିଁ କି ମୁଁ ତାକୁ ଛାଡ଼େ ନାହିଁ; ସେ ମୋତେ ସର୍ବସ୍ୱ କରେ ଓ ମୁଁ ତାକୁ ଭକ୍ତ ବୋଲି ଗ୍ରହଣ କରେ ୧୨.୧୨-୨୦ ଦେଖ) । ୩୦ ।

ବ୍ୟାଖ୍ୟା ସୂଚନା—ଏହିପରି କର୍ମୀର ଜ୍ଞାନ, ଭକ୍ତିରେ ପୂର୍ଣ୍ଣ ଓ ଦୃଢ଼ । ପର ଶ୍ଳୋକ ଦେଖ । ୩୦ ।

**ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱମାସ୍ଥିତଃ ।**
**ସର୍ବଥା ବର୍ତ୍ତମାନୋଽପି ସ ଯୋଗୀ ମୟି ବର୍ତ୍ତତେ ।୩୧।**

**ଅନ୍ୱୟ**—ଏକତ୍ୱଂ ଆସ୍ଥିତଃ ଯଃ ସର୍ବଭୂତସ୍ଥିତଂ ମାଂ ଭଜତି, ସ ଯୋଗୀ ସର୍ବଥା ବର୍ତ୍ତମାନଃ ଅପି ମୟି ବର୍ତ୍ତତେ । ୩୧ ।

**ଟୀକା**—[ଏବଂ ମୟି ନିଜାତ୍ମନଃ] ଏକତ୍ୱଂ ଆସ୍ଥିତଃ (ଆଶ୍ରିତଃ) ଯଃ ସର୍ବଭୂତସ୍ଥିତଂ ମାଂ ଭଜତି, ସଃ ଯୋଗୀ ସର୍ବଥା (ସର୍ବକର୍ମସୁ) ବର୍ତ୍ତମାନଃ (ଆଚରନ୍ ସ୍ଥିତଃ) ଅପି ମୟି (ଅନାସକ୍ତତ୍ୱାତ୍, ନ ତୁ ତେଷୁ କର୍ମସୁ—ଇତି ଭାବଃ) ବର୍ତ୍ତତେ । ୩୧ ।

**ଅର୍ଥ**—[ଏହିପରି ମୋଠି ନିଜ ଆତ୍ମାର] ଅଭିନ୍ନ ଭାବ ଧରି ଯେ ସର୍ବଭୂତରେ ସଂସ୍ଥିତ ବୋଲି ମୋତେ ଭଜେ, ସେ ଯୋଗୀ ସବୁମତେ କର୍ମରେ ଲଗିଥିଲେ ମଧ୍ୟ ମୋ ଠି ଥାଏ, (ଅର୍ଥାତ ସେ କୌଣସି କର୍ମରେ ନ ଥାଏ. କୌଣସି କର୍ମରେ 'ମୁଁ' 'ମୋର' ବୋଲି ତାର ମମତା ରହି ନ ପାରେ । ୧୩.୨୩ ଟୀକା ଦେଖ) । ୩୧ ।

ବ୍ୟାଖ୍ୟା ସୂଚନା—ମମତା ଥିବାଯାଏ ପରମାତ୍ମା ସେ ପର । —ମହାତ୍ମା ଗାନ୍ଧୀ । ୩୧ ।

**ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ ।**
**ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ ।୩୨।**

**ଅନ୍ୱୟ**—ଅର୍ଜୁନ ! ସୁଖଂ ବା ଯଦି ବା ଦୁଃଖଂ ସର୍ବତ୍ର ଯଃ ଆତ୍ମୌପମ୍ୟେନ ସମଂ ପଶ୍ୟତି ସ ଯୋଗୀ ପରମଃ ମତଃ । ୩୨ ।

**ଟୀକା**—[ତଂ ଯୋଗିନଂ ଲୋକବ୍ୟବହାରେ ନିର୍ବର୍ଣ୍ଣ୍ୟ ଉପସଂହରତି]—ହେ ଅର୍ଜୁନ, ସୁଖଂ ବା ଯଦି ବା ଦୁଃଖଂ [ତତ୍] ସର୍ବତ୍ର ଯଃ ଆତ୍ମୌପମ୍ୟେନ (ଆତ୍ମାନୁଭୂତିସଦୃଶେନ) [ଲୋକବ୍ୟବହାରେ] ସମଂ (ନିଜସ୍ୟ ଯତ୍ ସୁଖଂ, ଅନ୍ୟସ୍ୟ ତତ୍ ସୁଖଂ, ନିଜସ୍ୟ ଯତ୍ ଦୁଃଖଂ ଅନ୍ୟସ୍ୟ ତତ୍ ତଥୈତି) ପଶ୍ୟତି (ଅନୁଭବନ୍ ଆଚରତି) ସ ଯୋଗୀ ପରମଃ (ଶ୍ରେଷ୍ଠଃ) ମତଃ (ଗଣ୍ୟତେ) । ୩୨ ।

**ଅର୍ଥ**—[ସେଇ ଯୋଗୀର ଲୋକରେ ବ୍ୟବହାର ବର୍ଣ୍ଣନ କରି ପ୍ରସଙ୍ଗ ସାଙ୍ଗୁଚନ୍ତି] ହେ ଅର୍ଜୁନ, ସୁଖ ହେଉ ବା ଦୁଃଖ ହେଉ, ଆପଣାର ଯେପରି ହୁଏ, ଅନ୍ୟର ସେହିପରି ହୁଏ ବୋଲି ଆପଣାର ଉପମା ଧରି ଯେ ଲୋକ ବ୍ୟବହାରରେ ସବୁଠି ସମାନ (ବା ପୂର୍ଣ୍ଣ ଅନୁକମ୍ପା ରଖି) ବ୍ୟବହାର କରେ, ସେହି ଯୋଗୀ ଶ୍ରେଷ୍ଠ ବୋଲି ଗଣାଯାଏ । ୩୨ ।

ବ୍ୟାଖ୍ୟା ସୂଚନା—ଅନାସକ୍ତରେ ସୁଖ ଦୁଃଖ ସମାନ ବୋଲି ବୁଝି ଯେ ପରର ସୁଖ ଦୁଃଖରେ ଦୂର ଅନାସକ୍ତ ଦେଖାଏ, ସେ ଯୋଗୀ ନୁହେ ବା ସେ ଏ ଯୋଗର ଅର୍ଥ ବୁଝି ନାଇ । ଶକ୍ତ ବନା ଶୁଷ୍କଜ୍ଞାନରେ ଏପରି ଭ୍ରମ ହୁଏତ ହୋଇପାରେ । ମାତ୍ର ଭକ୍ତରେ ଯେ ଭଗବାନଙ୍କୁ ସର୍ବକର୍ମମୟ ଦେଖେ, ସେ ଭଗବାନଙ୍କ ଅନାସକ୍ତ

ସଙ୍ଗେ କର୍ମ ଯେ ଅନିବାର୍ଯ୍ୟ ଓ ସତ୍ୟ, ଏହା ମଧ୍ୟ ଧାରଣା କରେ । ତେଣୁ ଆତ୍ମାର ଅନାସକ୍ତି ଯେପରି ସତ୍ୟ, ପ୍ରାଣୀମାନଙ୍କର ସୁଖ ଦୁଃଖାଦି ଅନୁଭୂତି ମଧ୍ୟ ସେହିପରି ସତ୍ୟ ଓ ଲୋକସ୍ଥିତିର ହେତୁ । ଲୋକସଂଗ୍ରହରେ ମଧ୍ୟ ସେ ସବୁର ଶ୍ରେଷ୍ଠସ୍ଥାନ । ଏହା ବୁଝି ନିଜର ସାଧାରଣ ବ୍ୟବହାରରେ ଯେଉଁ ସୁଖ ଦୁଃଖ ଅନୁଭୂତ ହୁଏ, ସେହି ସୁଖ ଦୁଃଖ ବୁଦ୍ଧିକୁ ମାପକାଠି କରି ଲୋକରେ ବ୍ୟବହାର କରେ । ତା ନ ହେଲେ ଯେ ଲୋକରେ ବୁଦ୍ଧି-ଭେଦଜନିତ ବିଶୃଙ୍ଖଳା ବି ଅନିବାର୍ଯ୍ୟ— ୫.୭ ଟୀକା ଦେଖ ।

ପଞ୍ଚମ ଅଧ୍ୟାୟରେ ସୂଚିତ ହୋଇଥିବା ଧ୍ୟାନ ଯୋଗର କଥା ଭଗବାନ୍ ଏଠାରେ ଶେଷ କଲେ । ଚିରାଚରିତ ଧ୍ୟାନଯୋଗସାଧନରେ ଯୋଗୀ କର୍ମ ତ୍ୟାଗ କରି ଧ୍ୟାନମାତ୍ରର ଅଭ୍ୟାସରେ ଶାନ୍ତିଲାଭ ବା ମୁକ୍ତି କିମ୍ବା ନିର୍ବାଣ-ପ୍ରାପ୍ତିକୁ ଯାଏ । ମାତ୍ର ଗୀତାର କର୍ମମୟ ଯୋଗରେ ସେହି ଧ୍ୟାନ ସ୍ଥିରବୁଦ୍ଧି ହେବାର ଉପାୟ ମାତ୍ର । ହେଲେହେଁ ଭଗବାନ ଏଠାରେ ଧ୍ୟାନଯୋଗର ପ୍ରାୟ ସମଗ୍ର ସାଧନ-ପନ୍ଥା ପ୍ରତି ଲକ୍ଷ୍ୟ କରି କହି ଯାଉଛନ୍ତି ।

ଧ୍ୟାନଯୋଗର ରାଜଯୋଗ ପତଞ୍ଜଳି ମତରେ ଅଷ୍ଟାଙ୍ଗ । ଏହା ହଠଯୋଗ ଠାରୁ ଭିନ୍ନ । ହଠଯୋଗରେ ଯୋଗୀ ମୁକ୍ତିକାମନା ନ କରି ବିଭୂତିରେ ଅଦ୍ଭୁତ କିମ୍ବା ବା ଲୋକଚମତ୍କାରୀ କାର୍ଯ୍ୟମାନ କରନ୍ତି । ଯେ ଯୋଗ ମୁକ୍ତି ପାଇଁ କରାଯାଏ, ତାହା ରାଜଯୋଗ । ଏହି ରାଜଯୋଗ ସାଧନାର ଅଷ୍ଟାଙ୍ଗ, ଯଥା—

ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା ଧ୍ୟାନ, ସମାଧି । ଏଥିରୁ ପ୍ରଥମ ପାଞ୍ଚୋଟି ବହିରଙ୍ଗ ଯୋଗାଙ୍ଗ ଓ ଧାରଣା, ଧ୍ୟାନ ସମାଧି—ଏହି ତିନୋଟି ଅନ୍ତରଙ୍ଗ ଯୋଗାଙ୍ଗ ।

ଅହିଂସା, ସତ୍ୟ, ଅସ୍ତେୟ (ଚୌର୍ଯ୍ୟର ଅଭାବ), ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ (ବିଷୟର ଅଗ୍ରହଣ)—ଏସବୁର ନାମ ଯମ । ଶୌଚ (ବହିଃ ଓ ଅନ୍ତଃଶୁଦ୍ଧି), ସନ୍ତୋଷ, ତପସ୍ୟା, ସ୍ୱାଧ୍ୟାୟ ଓ ଈଶ୍ୱରପ୍ରଣିଧାନ—ଏସବୁ ନିୟମ ।

ଏହି ଯମ-ନିୟମ-ଦ୍ୱାରା ଠିକ୍ କରି ଯୋଗୀକୁ ଆସନ ସ୍ଥାପନ କରିବାକୁ ହୁଏ । ଏହି ଆସନ—ବୀରାସନ, ପଦ୍ମାସନ ପ୍ରଭୃତି ନାନାପ୍ରକାର । ସ୍ଥିର ହୋଇ ସୁଖରେ ବସିବା ଭଳି ଆସନ କରାଯାଏ । ୬. ୧୧ ମଧ୍ୟ ଦେଖ ।

ଏପରେ ପ୍ରାଣବାୟୁର ସାଧନ—ପ୍ରାଣାୟାମ । ଏଥିରେ ମଧ୍ୟ ୫.୨୭ ଦ୍ୱିତୀୟ ପାଦ ଦେଖ ।

ତା ପରେ ପ୍ରତ୍ୟାହାର । ଏହାର ସାଧନ ପାଇଁ ୫.୨୭ ପ୍ରଥମ ପାଦ ଦେଖ ।

ଏସବୁ ବହିରଙ୍ଗ ଠିକ୍ ହେଲେ ତା ପରେ 'ଧାରଣା' । ଚିତ୍ତକୁ ଏକ ଦେଶରେ ଧାରଣ କରିବା ବା ବାନ୍ଧି ରଖିବାକୁ ଧାରଣା କହନ୍ତି । ଏଥିରେ ମାଟି, ପଥର, ଦେବତା, ଆତ୍ମା—ଯେ କୌଣସି ଏକ ବସ୍ତୁରେ ଏକାଗ୍ରତା ଆଣିବାକୁ ହୁଏ । ନାକଅଗକୁ ଗୃହିଁ ଏଇ ଧାରଣା ମଧ୍ୟ ଠିକ୍ କରାଯାଏ । ଏଠାରେ ଜାଣିବାର କଥା, ପ୍ରତ୍ୟାହାରରେ ଚକ୍ଷୁ ଅଧେ ମେଲି କରି ଭ୍ରୂମଧ୍ୟକୁ ଲକ୍ଷ୍ୟ କରାଯାଏ । ମାତ୍ର ନାକ ଅଗରେ ପରେ ଧାରଣା ରଖି ଧ୍ୟାନ କରାଯାଏ । ଚିତ୍ତବୃତ୍ତିର ଏକତାନ ପ୍ରବାହ ବା ଏକ ଶ୍ୱାସ ବା ଧାରଣାକୁ ବରାବର ଅଭ୍ୟାସରେ ଧରି ରଖିବାକୁ ଧ୍ୟାନ କହନ୍ତି । ଏଇ ଧ୍ୟାନ ସିଦ୍ଧ ହେଲେ, ଧ୍ୟାନ କରିବା ଲୋକ ଯାହାକୁ ଧ୍ୟାନକରେ, ସେଥିରେ ହିଁ ପରିଣତ ହୋଇ ଏକ ହୋଇଯାଏ । ଏଇ ଅଭ୍ୟାସ ହୋଇଗଲେ, ଆତ୍ମାର ଧାରଣାରେ ଧ୍ୟାନ ବସିଲେ, ମନୁଷ୍ୟର ଆତ୍ମ-ସମାଧି ହୁଏ । ଏହାହିଁ ଯୋଗସୂତ୍ର (ପାତଞ୍ଜଳ)ର ବିଧି ।

ଭଗବାନ ଏଠାରେ ଏଇ ସବୁ ବିଧିକୁ ଠିକେ ଠିକେ ଲକ୍ଷ୍ୟ କରି ସେସବୁ 'ଯୋଗ'ରେ କିପରି ପ୍ରୟୋଜନୀୟ, ତାହା ବୁଝାଉଛନ୍ତି ।

ପ୍ରଥମେ କହୁଛନ୍ତି ସର୍ବୋପରି ଯେ 'ଆତ୍ମା', ତାର ଧାରଣାରେ ଦେହାଦିରୁ ଆତ୍ମବୁଦ୍ଧି ଉଠାଇ, ମନୁଷ୍ୟତାର ସର୍ବୋଚ୍ଚ ଧାରଣାରେ ଠିକ୍ ରହିବାକୁ ପ୍ରଯତ୍ନ କରିବ । ବିଜ୍ଞାନ ତତ୍ତ୍ୱକୁ ଧରି କ୍ରମେ ଜ୍ଞାନକୁ ଉଠିବ । ମନୁଷ୍ୟର ସାଧାରଣ ଆତ୍ମଜ୍ଞାନ ଧରି ବ୍ୟକ୍ତାତୀତ ଅକ୍ଷରଭାବକୁ ଉଠିବ । ଏଇପରି ମନୁଷ୍ୟତାର ଚରମ ଓ ସୂକ୍ଷ୍ମତମ ଆଦର୍ଶରେ ଧ୍ୟାନ ଅଭ୍ୟାସ କରିବ । ଏପରି ଅଭ୍ୟାସ ପାଇଁ ସେ ଯତଚିତ୍ତ, ନିରାଶୀ, ଅପରିଗ୍ରହ ହୋଇ ଅର୍ଥାତ୍ ସମାଧି ଅବଲମ୍ବନ କରି (୬.୧୦), ଆସନ ଠିକ୍ ରଖି (୬.୧୧), ନାସିକାଗ୍ରକୁ ବା ଭ୍ରୂମଧ୍ୟକୁ ଗୃହିଁ ମନ ଏକାଗ୍ର କରି (୬.୧୨, ୧୩), ବ୍ରହ୍ମଚର୍ଯ୍ୟାଦି ଧରି ମତେ ଦୃଢ଼କରି ଚିତ୍ତରେ ରଖି, ଯୋଗ ସାଧି ନିର୍ବାଣ (ମୁକ୍ତି)ର ଶାନ୍ତି ପାଇବ (୬.୧୫) ।

କେହି କାଳେ ଏଠାରେ ଶୂନ୍ୟ ବା ସାଂଖ୍ୟ ଧାରଣାର ଯୋଗ (ପାତଞ୍ଜଳ ମତର ଯୋଗ) ବୁଝିବେ, ସେଥିପାଇଁ କହୁଛନ୍ତି, ଅପରିଗ୍ରହ କହିଲେ, ବରାବର ବିଷୟ-ଭୋଗ ବା କର୍ମ ଛାଡ଼ିବା ନୁହେଁ । ଯଥୋପଯୁକ୍ତ ଆହାର ବା ବିଷୟ ସମ୍ପର୍କ (କର୍ମ) ଆଦି ନ କଲେ ଯୋଗ ହୁଏ ନାହିଁ । ଧ୍ୟାନରେ ଠିକ୍ ଥିବା ଲୋକର ସ୍ପୃହା ଗୁଲିଯାଏ, ମାତ୍ର—କର୍ମ ଥାଏ (୬.୧୮) । ତା ପରେ କିପରି କ୍ରମେ ଯୋଗସ୍ଥିତି ଆସେ, କିପରି ଧ୍ୟାନ-ସାଧନାରେ କର୍ମ ଭିତରେ ସେଇ ଯୋଗସ୍ଥିତିକୁ ଉଠିବ ଓ ଶେଷରେ ମନୁଷ୍ୟତାର ଶ୍ରେଷ୍ଠ, ସୂକ୍ଷ୍ମତମ ଓ ଉଚ୍ଚତମ ଆଦର୍ଶରେ ସ୍ଥିର ହେଲେ କିପରି ବ୍ରହ୍ମଭୂତ ହେବ (ବ୍ରହ୍ମ ଧ୍ୟାନରେ ସମାଧି ହେଲେ କିପରି ଧ୍ୟାତା ଓ ଧ୍ୟେୟ ଏକ ହେବ), ତାହା ବୁଝାଉଛନ୍ତି (୬.୩୦) । ତାହାହେଲେ ନିଜେ ବ୍ରହ୍ମରୂପ ହୋଇ ସୃଷ୍ଟିରେ ସର୍ବତ୍ର ସମାନ ଦେଖିବ ଓ ଆପଣା ପର ଲୋକରେ ସମବୁଦ୍ଧି କରିବ (୬.୩୨) ।

ଏଇପରି ଗୀତାର ଯୋଗସ୍ଥିତି ନିମନ୍ତେ ଧ୍ୟାନଯୋଗର ଉପଯୋଗିତା ଭଗବାନ୍ ବୁଝାଇଗଲେ । ଏଠାରେ ଏ ସମସ୍ତ ମୁକ୍ତିତତ୍ତ୍ୱ ଭିତରେ ଜଗତର ସାଧାରଣ ବ୍ୟବହାର ଓ କର୍ମହିଁ ପ୍ରଧାନ ଅବଲମ୍ବନ—ଏହା ଦେଖିବାର ଅଛି । ଆତ୍ମାକୁ ଉଠାଇବାରେ ଏଇ ଉପଯୋଗିତା ଅତ୍ୟନ୍ତ ସ୍ପଷ୍ଟ । ଯେ ଯେଉଁ ଆତ୍ମାର ଧ୍ୟାନ କରିବ, ସେ ତାହାହିଁ ହେବ । ଦେହକୁ ଯେ ଆତ୍ମା ବୋଲି ବୁଝି ବୁଦ୍ଧିକୁ ଚଳାଇବ, ସେ ଦେହସର୍ବସ୍ୱ, ସ୍ୱାର୍ଥପର ଓ ନୀଚ ମନୁଷ୍ୟ ହେବ । ଯେ ଏହି ଆତ୍ମଧାରଣା ବା ନିଜର ମନୁଷ୍ୟତାର ଆଦର୍ଶକୁ ଯେତେ ଉଠାଇବ ସେ ସେତିକି ଉନ୍ନତ ହେବ, ସେତିକି ଦେହାଦିର ସୁଖ ଓ ସ୍ୱାର୍ଥ ତାକୁ ବିଚଳିତ କରିବ ନାହିଁ । ଏଇପରି ଉଠି ଉଠି ଯେ ପରିବାର, ଜାତି, ମନୁଷ୍ୟଜଗତ୍ ଓ ଶେଷରେ ସମସ୍ତ ବିଶ୍ୱରେ ନିଜର ମନୁଷ୍ୟତାର ଆଦର୍ଶ ବ୍ୟାପ୍ତ ଦେଖିବ, ସେ ବିଶ୍ୱଭୂତ—ବ୍ରହ୍ମଭୂତ । ତାକୁ ଲୋକସ୍ୱାର୍ଥ ବା ସୁଖଦୁଃଖାଦି ଦ୍ୱନ୍ଦ୍ୱ ବିଚଳିତ କରିପାରିବ ନାହିଁ । ଏଇପରି ଗୀତାତତ୍ତ୍ୱକୁ ବିଶ୍ୱକର୍ମରେ ଯଥାର୍ଥ ଉପଯୋଗିତାରେ ମିଳାଇ ନେବାକୁ ହେବ । ୩୨ ।

ଅର୍ଜୁନ ଉବାଚ

**ଯୋଽୟଂ ଯୋଗସ୍ତ୍ୱୟା ପ୍ରୋକ୍ତଃ ସାମ୍ୟେନ ମଧୁସୂଦନ**
**ଏତସ୍ୟାହଂ ନ ପଶ୍ୟାମି ଚଞ୍ଚଳତ୍ୱାତ୍ ସ୍ଥିତିଂ ସ୍ଥିରାମ୍ ।୩୩।**

**ଅନ୍ୱୟ**—ମଧୁସୂଦନ ! ସାମ୍ୟେନ ଯଃ ଅୟଂ ଯୋଗଃ ତ୍ୱୟା ପ୍ରୋକ୍ତଃ, ଅହଂ ଚଂଚଳତ୍ୱାତ୍ ଏତସ୍ୟ ସ୍ଥିରାଂ ସ୍ଥିତିଂ ନ ପଶ୍ୟାମି । ୩୩ ।

**ଟୀକା**—[ସମତ୍ୱଂ ଦୁଷ୍କରମିତି ମତ୍ୱା] ଅର୍ଜୁନଃ ଉବାଚ—ହେ ମଧୁସୂଦନ, [ସର୍ବତ୍ର ଆତ୍ମବୁଦ୍ଧ୍ୟା ଭୂତେଷୁ, ଶତ୍ରୁମିତ୍ରାଦିଷୁ ବା ନିଜସ୍ୟ] ସାମ୍ୟେନ (ସମତ୍ୱେନ) ଯଃ ଅୟଂ ଯୋଗଃ ତ୍ୱୟା ପ୍ରୋକ୍ତଃ, ଅହଂ [ମନସଃ] ଚଞ୍ଚଳତ୍ୱାତ୍ ଏତସ୍ୟ [ଯୋଗସ୍ୟ] ସ୍ଥିରାଂ ସ୍ଥିତିଂ ନ ପଶ୍ୟାମି । ୩୩ ।

**ଅର୍ଥ**—[ଏହି ସମାନ ବୁଦ୍ଧି ଅଭ୍ୟସ୍ତହୋଇ ରହିବା ସମ୍ଭବ ନୁହେଁ, ବିଚାରି] ଅର୍ଜୁନ କହିଲେ—ହେ ମଧୁସୂଦନ, [ସର୍ବତ୍ର ଆତ୍ମବୁଦ୍ଧି ହେତୁରୁ ସର୍ବଭୂତରେ ବା ଶତ୍ରୁମିତ୍ରରେ] ସମାନ ହେବାର ଏହି ଯେ ଯୋଗ କଥା ତୁମେ କହିଲ, ମନର ଚଞ୍ଚଳତା ହେତୁ ମୁଁ ଏ ଯୋଗର ସ୍ଥିରତା କିଛି ଦେଖୁନାହିଁ । (ଅର୍ଥାତ୍ କେତେ କାଳ ବା ବେଳେବେଳେ ହୁଏତ ମନ ଠିକ୍ ରହିପାରେ, ମାତ୍ର ବରାବର ରହିଲା ପରି ମନେ ଲାଗୁନାହିଁ । ) । ୩୩ ।

ଚଞ୍ଚଳଂ ହି ମନଃ କୃଷ୍ଣ ପ୍ରମାଥି ବଳବଦ୍ ଦୃଢ଼ମ୍ ।
ତସ୍ୟାହଂ ନିଗ୍ରହଂ ମନ୍ୟେ ବାୟୋରିବ ସୁଦୁଷ୍କରମ୍ ।୩୪।

**ଅନ୍ୱୟ**—ହି କୃଷ୍ଣ ! ମନଃ ଚଂଚଳଂ, ପ୍ରମାଥି, ଦୃଢ଼ଂ, ବଳବତ୍; ତସ୍ୟ ନିଗ୍ରହଂ ଅହଂ ବାୟୋଃ ଇବ ସୁଦୁଷ୍କରଂ ମନ୍ୟେ । ୩୪ ।

**ଟୀକା**—ହି ( ଯତଃ ) ହେ କୃଷ୍ଣ, ମନଃ ଚଞ୍ଚଳଂ, ପ୍ରମାଥି (ପ୍ରକର୍ଷେଣ ମନ୍ଥନକାରି), ଦୃଢ଼ଂ (ବିଶେଷେଣ), ବଳବତ୍ (ଦୁଃସହଂ); ତସ୍ୟ [ମନସଃ] ନିଗ୍ରହଂ (ନିରୋଧଂ) ଅହଂ ବାୟୋଃ [ନିଗ୍ରହଂ] ଇବ ସୁଦୁଷ୍କରଂ (ଅତି ଦୁଃସାଧ୍ୟଂ) ମନ୍ୟେ । ୩୪ ।

**ଅର୍ଥ**—କାହିଁକି ନା, ହେ କୃଷ୍ଣ, ମନ ଚଞ୍ଚଳ, ମନୁଷ୍ୟଙ୍କୁ ମନ୍ଥି ପକାଏ, ସେ ଭାରି ବଳବନ୍ତର, ତାକୁ ରୋକିବା ବାୟୁକୁ ପରି ମତେ ଦୁଃସାଧ୍ୟ ଲାଗୁଚି । ୩୪ ।

ଶ୍ରୀ ଭଗବାନୁବାଚ

ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହଂ ଚଳମ୍ ।
ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ ।

**ଅନ୍ୱୟ**—ମହାବାହୋ ! ଅସଂଶୟଂ ମନଃ ଚଳଂ, ଦୁର୍ନିଗ୍ରହମ୍ । [ କିଂ ] ତୁ କୌଂତେୟ ଅଭ୍ୟାସେନ ବୈରାଗ୍ୟେଣ ଚ [ ତତ୍ ] ଗୃହ୍ୟତେ । ୩୫ ।

**ଟୀକା**— [ଉତ୍ତରେଣ] ଶ୍ରୀ ଭଗବାନ୍ ଉବାଚ । ହେ ମହାବାହୋ ଅସଂଶୟଂ (ନିଶ୍ଚିତମେବ) ମନଃ ଚଳଂ (ଚଞ୍ଚଳଂ), [ତତଃ] ଦୁର୍ନିଗ୍ରହଂ (ବଶୀକର୍ତ୍ତୁଂ ଦୁଃସାଧମ୍) [କିଂ] ତୁ ହେ କୌନ୍ତେୟ, [ଉକ୍ତରୂପେଣ] ଅଭ୍ୟାସେନ, ବୈରାଗ୍ୟେଣ (ଭୋଗତୃଷ୍ଣା-ତ୍ୟାଗେନ) ଚ [ତତ୍] ଗୃହ୍ୟତେ (ବଶୀକର୍ତ୍ତୁଂ ଶକ୍ୟତେ) । ୩୫ ।

**ଅର୍ଥ**—[ ଉତ୍ତରରେ ] ଶ୍ରୀ ଭଗବାନ୍ କହିଲେ, ହେ ମହାବାହୁ, [ଯାହା କହିଲ ଏହା ଠିକ୍ କଥା] ମନ ଚଞ୍ଚଳ, ତାକୁ ବଶ କରିବା କଠିନ । କିନ୍ତୁ ହେ କୌନ୍ତେୟ, [ଯେପରି କହିଗଲି ସେହିପରି] ଅଭ୍ୟାସ ଓ ବୈରାଗ୍ୟରେ ତାକୁ ବଶ କରିଯାଇପାରେ । ୩୫ ।

ବ୍ୟାଖ୍ୟା ସୂଚନା—ବୈରାଗ୍ୟ = ବିଗତ ରାଗ ଯହିଁରେ ତାହା ବିରାଗ, ବିରାଗର ଭାବ ବୈରାଗ୍ୟ, ଅଥବା ବିରାଗହିଁ ବୈରାଗ୍ୟ । ବିଗତ = ନାହିଁ, ରାଗ = ଆସକ୍ତି, ଅନୁରାଗ ତୃଷ୍ଣା, ତେଣୁ ବୈରାଗ୍ୟ ବୋଇଲେ ତୃଷ୍ଣା ଛାଡ଼ିବା, କର୍ମ ଛାଡ଼ିବା ନୁହେ । ପତଞ୍ଜଳି

ଯୋଗଦର୍ଶନର ଦ୍ୱାଦଶ ସୂତ୍ରରେ କହିଛନ୍ତି, "ଅଭ୍ୟାସବୈରାଗ୍ୟାଭ୍ୟାଂ ତନ୍ନିରୋଧଃ", ଅର୍ଥାତ୍, ଅଭ୍ୟାସ ଓ ବୈରାଗ୍ୟରେ ଚିତ୍ତବୃତ୍ତିର ନିରୋଧ କରିବାକୁ ହୁଏ । ପର ସୂତ୍ରମାନଙ୍କରେ ବୁଝାଇଛନ୍ତି—"ତତ୍ର ସ୍ଥିତୌ ଯତ୍ନୋଽଭ୍ୟାସଃ", ଅର୍ଥାତ୍, ଯମ ନିୟମାଦିରେ ବରାବର ସାତ୍ତ୍ୱିକବୃତ୍ତିରେ ରହିବାକୁ ଚେଷ୍ଟା କରିବା ହିଁ ଅଭ୍ୟାସ । ପୁଣି "ଦୃଷ୍ଟାନୁଶ୍ରବିକବିଷୟବିତୃଷ୍ଣସ୍ୟ ବଶୀକାରସଂଜ୍ଞା ବୈରାଗ୍ୟମ୍" ଅର୍ଥାତ୍ ଦେଖୁଥିବା ଐହିକ ଓ ବେଦାଦିରୁ ଶୁଣୁଥିବା ପାରତ୍ରିକ ବିଷୟ ବା ଭୋଗରେ ଅନାସକ୍ତ ହୋଇ, ବିଷୟ ସବୁ ମୋର ଅଧୀନ, ମୁଁ ତାଙ୍କର ନୁହେ, ବୋଲି ବିଚାରିବା ବୈରାଗ୍ୟ ।୩୫।

**ଅସଂଯତାତ୍ମନା ଯୋଗୋ ଦୁଷ୍ପ୍ରାପ ଇତି ମେ ମତିଃ ।**
**ବଶ୍ୟାତ୍ମନା ତୁ ଯତତା ଶକ୍ୟୋଽବାପ୍ତୁମୁପାୟତଃ ।୩୬।**

**ଅନ୍ୱୟ**—ଅସଂଯତାତ୍ମନା ଯୋଗଃ ଦୁଷ୍ପ୍ରାପଃ ଇତି ମେ ମତିଃ, ବଶ୍ୟାତ୍ମନା ତୁ ଉପାୟତଃ ଯତତା [ଯୋଗଃ] ଆପ୍ତୁଂ ଶକ୍ୟଃ । ୩୬ ।

**ଟୀକା**—[ଅପି ତୁ ଏତାବତ୍ ଏବ ଇତି [କିଞ୍ଚିତଂ ଯତ୍ର] ଅସଂଯତାତ୍ମନା ( ଅବଶୀକୃତମନସା ) ଯୋଗଃ ଦୁଷ୍ପ୍ରାପଃ (ଦୁଃସାଧ୍ୟ) ଇତି ମେ (ମମ) ମତିଃ ( ମତମ୍ ) । ବଶ୍ୟାତ୍ମନା ତୁ ଉପାୟତଃ (ସାଧନେନ) ଯତତା (ପ୍ରଯତ୍ନଶୀଳେନ) [ଯୋଗଃ] ଆପ୍ତୁଂ (ପ୍ରାପ୍ତୁଂ) ଶକ୍ୟଃ (ସାଧ୍ୟଃ) । ୩୬ ।

**ଅର୍ଥ**—[ହେଲେହେଁ ଯ୍ୟା ଟିକ୍ ଯେ] ମନ ବଶ ନ କରିବା ଲୋକର ଯୋଗ ଦୁଃସାଧ୍ୟ—ଏ ମୋର ମତ । ମାତ୍ର ଉପାୟରେ ଯତ୍ନ କଲେ, ମନ ବଶ କରି ଯୋଗ ପାଇବା ସାଧ୍ୟ । ୩୬ ।

ଅର୍ଜୁନ ଉବାଚ

**ଅଯତିଃ ଶ୍ରଦ୍ଧୟୋପେତୋ ଯୋଗାଚ୍ଚଲିତମାନସଃ ।**
**ଅପ୍ରାପ୍ୟ ଯୋଗସଂସିଦ୍ଧିଂ କାଂ ଗତିଂ କୃଷ୍ଣ ଗଚ୍ଛତି ।୩୭।**

**ଅନ୍ୱୟ**— କୃଷ୍ଣ ! ଶ୍ରଦ୍ଧୟା ଉପେତଃ ଅଯତିଃ ଯୋଗାତ୍ ଚଳିତ-ମାନସଃ ଯୋଗସଂସିଦ୍ଧିଂ ଅପ୍ରାପ୍ୟ କାଂ ଗତିଂ ଗଚ୍ଛତି ? । ୩୭ ।

**ଟୀକା**—[ତର୍ହି ଯୋଗାତ୍ ଭ୍ରଷ୍ଟସ୍ୟ କା ଭବେଦ୍ଗତି]—ଅର୍ଜୁନଃ ଉବାଚ—ହେ କୃଷ୍ଣ, ଶ୍ରଦ୍ଧୟା (ଯୋଗଃ ଅବଶ୍ୟକର୍ତ୍ତବ୍ୟଃ ଇତି ବିଶ୍ୱାସେନ) ଉପେତଃ (ଯୁକ୍ତଃ) [ଜନଃ] ଅଯତିଃ (ଶ୍ଳଥଯତ୍ନଃ) [ ସନ୍ ] ଯୋଗାତ୍ ଚଳିତମାନସଃ (ଭ୍ରଷ୍ଟଚିତ୍ତଃ) [ଭୂତ୍ୱା] ଯୋଗସଂସିଦ୍ଧିଂ ଅପ୍ରାପ୍ୟ କାଂ ଗତିଂ ଗଚ୍ଛତି । ୩୭ ।

**ଅର୍ଥ**—ଆଚ୍ଛା ତେବେ, ଯୋଗରେ ଖଣ୍ଡେ ଦୂର ଯାଇ ଭ୍ରଷ୍ଟ ହେବା ଲୋକର କଣ ହୁଏ ? ଏହା ଜାଣିବାକୁ ଅର୍ଜୁନ ପଚାରିଲେ—ହେ କୃଷ୍ଣ, ବିଶ୍ୱାସ ରଖି ଯୋଗ କରୁଥିଲେ ହେଁ, ହେଲାରେ ଯୋଗରୁ ମନ ଖସିଯାଇ ଯୋଗସିଦ୍ଧି ନ ପାଇଲେ ଲୋକ କି ଗତି ପାଏ ? । ୩୭ ।

**କଚ୍ଚିନ୍ନୋଭୟବିଭ୍ରଷ୍ଟଶ୍ଛିନ୍ନାଭ୍ରମିବ ନଶ୍ୟତି ।**
**ଅପ୍ରତିଷ୍ଠୋ ମହାବାହୋ ବିମୂଢ଼ୋ ବ୍ରହ୍ମଣଃ ପଥି ।୩୮।**

**ଅନ୍ୱୟ**—ମହାବାହୋ ! ଅପ୍ରତିଷ୍ଠଃ, ବ୍ରହ୍ମଣଃ ପଥି ବିମୂଢ଼ଃ—ଉଭୟବିଭ୍ରଷ୍ଟଃ ଛିନ୍ନାଭ୍ରଂ ଇବ ନ ନଶ୍ୟତି କଚ୍ଚିତ୍ ? । ୩୮ ।

**ଟୀକା**—ହେ ମହାବାହୋ (କୃଷ୍ଣ), [ଫଳତ୍ୟାଗାତ୍ କର୍ମଣି] ଅପ୍ରତିଷ୍ଠଃ (ଆଶ୍ରୟହୀନଃ) [ତଥା ଯୋଗଭ୍ରଂଶାତ୍] ବ୍ରହ୍ମଣଃ ପଥି ବିମୂଢ଼ଃ (ହତଜ୍ଞାନଃ) [ଅତଏବ] ଉଭୟବିଭ୍ରଷ୍ଟଃ (କର୍ମଫଳାତ୍, ମୋକ୍ଷାତ୍ ଚ, ଯଦ୍ୱା ଇହକାଳେ ଭୋଗସୁଖାତ୍ ପରକାଳେ ମୋକ୍ଷାତ୍ ଚ ଚ୍ୟୁତଃ) [ସନ୍, ସଃ] ଛିନ୍ନାଭ୍ରଂ ଖଣ୍ଡଶଃ କୃତଃ ମେଘ ଇବ ନ ନଶ୍ୟତି କଚ୍ଚିତ୍ ( କିମ୍ ) ? । ୩୮ ।

**ଅର୍ଥ**—ହେ ମହାବାହୁ କୃଷ୍ଣ, ଫଳ ଛାଡ଼ିଥିବାରୁ କର୍ମରେ ଆଶ୍ରା ନ ପାଇ ପୁଣି ଯୋଗ ଖଣ୍ଡିଆ ହେବାରୁ ଯୋଗ ପାଇବା ବାଟରେ ହତଜ୍ଞାନ ହୋଇ, [ଏହିପରି କର୍ମଫଳ ଓ ମୁକ୍ତି ବା ଇହକାଳ ଓ ପରକାଳ] ଦୁଇଥିରୁ ଭ୍ରଷ୍ଟ ହୋଇ, ସେ କଣ ଛିଣ୍ଡି ଉଡ଼ିଯିବା ମେଘପରି ନଷ୍ଟ ହୋଇଯାଏ ନାହିଁ ? । ୩୮ ।

**ଏତନ୍ମେ ସଂଶୟଂ କୃଷ୍ଣ ଛେତ୍ତୁମର୍ହସ୍ୟଶେଷତଃ ।**
**ତ୍ୱଦନ୍ୟଃ ସଂଶୟସ୍ୟାସ୍ୟ ଛେତ୍ତା ନ ହ୍ୟୁପପଦ୍ୟତେ ।୩୯।**

**ଅନ୍ୱୟ**—ସ୍ପଷ୍ଟ । ୩୯ ।

**ଟୀକା**—ହେ କୃଷ୍ଣ, ମେ (ମମ) ଏତତ୍ ସଂଶୟ ଅଶେଷତଃ (ନିଃଶେଷଂ) ଛେତ୍ତୁଂ (ଦୂରୀକର୍ତ୍ତୁଂ ଅର୍ହସି,) ହି (ଯତଃ) ତ୍ୱତ୍ (ତ୍ୱତ୍ତଃ) ଅନ୍ୟଃ (ଅପରଃ) ଅସ୍ୟ ସଂଶୟସ୍ୟ ଛେତ୍ତା (ଅପନେତା) ନ ଉପପଦ୍ୟତେ (ସମ୍ଭବତି) । ୩୯ ।

**ଅର୍ଥ**—ହେ କୃଷ୍ଣ ! ମୋର ଏ ସଂଶୟ ବରାବର ତୁଟାଇଦେବା ତୁମକୁ ଲାଗେ । କାହିଁକନା, ତୁମଛଡ଼ା ଆଉ କେହି ଏ ସଂଶୟ ତୁଟେଇବା ଲୋକ ଥିଲା ପରି ଲାଗୁ ନାହିଁ । ୩୯ ।

ବ୍ୟାଖ୍ୟା ସୂଚନା—ହୋଇପାରେ, ଏଠି ବିଶେଷରେ ହଠଯୋଗୀଙ୍କୁ ଲକ୍ଷ୍ୟ କରା ହୋଇଛି । ହଠଯୋଗରେ ଯୋଗୀ, ମୁକ୍ତିକାମନା ନ କରି ବିଭୂତିରେ ଅଦ୍ଭୁତ କ୍ରିୟା ବା ଲୋକଚମତ୍କାରୀ କାର୍ଯ୍ୟମାନ କରନ୍ତି । ଯେ ଯୋଗ ମୁକ୍ତିପାଇଁ କରାହୁଏ, ତା ରାଜଯୋଗ । ପାତଞ୍ଜଳ ଯୋଗରେ ଏଇ 'ରାଜଯୋଗ' ଶ୍ରେଷ୍ଠ ଯୋଗ । ୩୯ ।

ଶ୍ରୀ ଭଗବାନୁବାଚ

**ପାର୍ଥ ନୈବେହ ନାମୁତ୍ର ବିନାଶସ୍ତସ୍ୟ ବିଦ୍ୟତେ ।**
**ନ ହି କଲ୍ୟାଣକୃତ୍ କଶ୍ଚିଦ୍ ଦୁର୍ଗତିଂ ତାତ ଗଚ୍ଛତି । ୪୦ ।**

**ଅନ୍ୱୟ**—ପାର୍ଥ ! ନ ଏବ ଇହ ନ ଅମୁତ୍ର ତସ୍ୟ ବିନାଶଃ ବିଦ୍ୟତେ । ହି ତାତ ! କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ନ ଗଚ୍ଛତି । ୪୦ ।

**ଟୀକା**—[ ଅଥ ଉତ୍ତରଂ ଷଡ୍ଭିଃ ] ଶ୍ରୀ ଭଗବାନ ଉବାଚ—ହେ ପାର୍ଥ, ନ ଏବ ଇହ [ ଲୋକେ ] ନ ଅମୁତ୍ର ( ପରଲୋକେ ) ତସ୍ୟ ବିନାଶଃ ବିଦ୍ୟତେ । ହି ( ଯତଃ ) ହେ ତାତ ( ବତ୍ସ ), କଲ୍ୟାଣକୃତ୍ ( ଶୁଭକର୍ମକୃତ୍ ) କଃ ଚିତ୍ ଦୁର୍ଗତିଂ ନ ଗଚ୍ଛତି । ୪୦ ।

**ଅର୍ଥ**—[ ଏହାର ଉତ୍ତର ଛଅ ଶ୍ଳୋକରେ ] ଶ୍ରୀ ଭଗବାନ କହିଲେ—ହେ ପାର୍ଥ, ଏଠି ( ଇହଲୋକରେ ) ନୁହେଁ, କି ସେଠି ( ପରଲୋକରେ ) ନୁହେଁ; କୌଣସିଠାରେ ତାର ନାଶ ନାହିଁ । କାହିଁକି ନା, ବାପା ଭଲ କାମ କରିବା ଲୋକ କେହି କେବେ ଦୁର୍ଗତିରେ ପଡ଼େ ନାହିଁ । ୬.୪୦ ଦେଖ । ୪୦ ।

**ପ୍ରାପ୍ୟ ପୁଣ୍ୟକୃତାଂ ଲୋକାନୁଷିତ୍ୱା ଶାଶ୍ୱତୀଃ ସମାଃ ।**
**ଶୁଚୀନାଂ ଶ୍ରୀମତାଂ ଗେହେ ଯୋଗଭ୍ରଷ୍ଟୋଽଭିଜାୟତେ ।୪୧।**

**ଅନ୍ୱୟ**—ଯୋଗଭ୍ରଷ୍ଟଃ ପୁଣ୍ୟକୃତାଂ ଲୋକାନ୍ ପ୍ରାପ୍ୟ [ ତତ୍ର ] ଶାଶ୍ୱତୀଃ ସମା ଉଷିତ୍ୱା ଶୁଚୀନାଂ ଶ୍ରୀମତାଂ ଗେହେ ଅଭିଜାୟତେ । ୪୧ ।

**ଟୀକା**—[ ତତ୍ କ୍ରମସ୍ୟ ଉଦାହରଣ ଆହ ] ଯୋଗଭ୍ରଷ୍ଟଃ ପୁଣ୍ୟକୃତାଂ ( ସୁକୃତବତାଂ, ପୁଣ୍ୟକର୍ମକାରିଣାଂ ) [ ସ୍ୱର୍ଗାଦି ] ଲୋକାନ୍ ପ୍ରାପ୍ୟ, [ ତତ୍ର ] ଶାଶ୍ୱତୀଃ ( ନିତ୍ୟାଃ—ମନୁଷ୍ୟବତ୍ସରତୁଲନୟା ବହୁତରାଃ ଇତି ଭାବଃ ) ସମାଃ ( ସମ୍ବତ୍ସରାନ୍ ) ଉଷିତ୍ୱା ( ବାସଂ କୃତ୍ୱା ) ଶୁଚୀନାଂ (ପୁଣ୍ୟାନାଂ) ଶ୍ରୀମତାଂ ( ଶୋଭନଶୀଳାନାଂ ଧନିନାଂ ବା ) ଗେହେ, ( ଗୃହେ ) ଅଭିଜାୟତେ ( ସତ୍-କୁଳଜନ୍ମ ଲଭତେ ) । ୪୧ ।

**ଅର୍ଥ**—[ ତେବେ ତାର କଣ ହୁଏ ? ଏଥକୁ କହୁଚନ୍ତି ]—ସୁକୃତବନ୍ତ-ମାନେ ଯେଉଁ ସ୍ୱର୍ଗାଦି ଲୋକ ପାଆନ୍ତି, ଯୋଗଭ୍ରଷ୍ଟ ଲୋକ, ସେହିଭଳି ଲୋକରେ ଦିବ୍ୟବର୍ଷମାନ ରହିସାରି, [ ପରେ ] ଶୁଦ୍ଧ, ସଦାଚାରୀ ବା ଉତ୍ତମ ଧର୍ମାତ୍ମାମାନଙ୍କ ଘରେ କୁଳୀନ ଜନ୍ମ ପାଏ । ୪୧ ।

ବ୍ୟାଖ୍ୟା ସୂଚନା—ଏଠାରେ, ଦିବ୍ୟବର୍ଷ ବୋଇଲେ ମନୁଷ୍ୟ ବର୍ଷ ପରି ସାମାନ୍ୟ ବା କ୍ଷଣିକ ନୁହେଁ, ତେଣୁ ଦିବ୍ୟ ବା ଦେବତାଙ୍କର ଅଥବା ବ୍ରହ୍ମାଙ୍କର ବର୍ଷ ପରି ବହୁ ଦୀର୍ଘ ବର୍ଷ । ମନୁଷ୍ୟର ଗୋଟିଏ ବର୍ଷ ଦେବତାଙ୍କର ଗୋଟିଏ ଦିବସ । ଉତ୍ତରାୟଣଟି ଦିନ ଓ ଦକ୍ଷିଣାୟନଟି ରାତ୍ରି—୮.୧୭ ଦେଖ । ୪୧ ।

**ଅଥବା ଯୋଗିନାମେବ କୁଲେ ଭବତି ଧୀମତାମ୍ ।**
**ଏତଦ୍ଧି ଦୁର୍ଲଭତରଂ ଲୋକେ ଜନ୍ମ ଯଦୀଦୃଶମ୍ ।୪୨।**

**ଅନ୍ୱୟ**—ଅଥବା ଧୀମତାଂ ଯୋଗିନାଂ ଏବ କୁଲେ ଭବତି । ଈଦୃଶଂ ଯତ୍ ଜନ୍ମ ଏତତ୍ ହି ଲୋକେ ଦୁର୍ଲଭତରମ୍ । ୪୨ ।

**ଟୀକା**—ଅଥବା ଧୀମତାଂ ( ଆତ୍ମାନାତ୍ମବିବେକବତାଂ ) ଯୋଗିନାଂ ଏବ କୁଲେ ଭବତି ( ଜାୟତେ ) । ଈଦୃଶଂ ଯତ୍ ଜନ୍ମ, ଏତତ୍ [ ଜନ୍ମ ] ହି ( ନିଶ୍ଚିତଂ ) ଲୋକେ ( ଜଗତି ) ଦୁର୍ଲଭତରଂ ( ପୂର୍ବୋକ୍ତାତ୍ ଜନ୍ମନଃ ଅଧିକତରଂ କଷ୍ଟଲଭ୍ୟଂ, ଯଦ୍ୱା ପୂର୍ବୋକ୍ତଂ ଇଦଂ ଚ ଜନ୍ମ ଜଗତି ଅତି ଦୁର୍ଲଭମ୍ ) ।୪୨।

**ଅର୍ଥ**—ଅଥବା ବିବେକବନ୍ତ ( ଜ୍ଞାନନିଷ୍ଠାବନ୍ତ ) ଯୋଗୀଙ୍କ କୁଳରେ ସେ ଜନ୍ମ ହୁଏ । ଏପରି ଯେ ଜନ୍ମ, ସେତକ ତ ଏ ଜଗତରେ ଅତି ଦୁର୍ଲଭ । ( ତେବେ ତାର କର୍ମଫଳରେ ଇହଲୋକ ବିନଷ୍ଟ ହୁଏ ନାହିଁ—ଏଇ ଅଭିପ୍ରାୟ ) । ୪୨ ।

**ତତ୍ର ତଂ ବୁଦ୍ଧିସଂଯୋଗଂ ଲଭତେ ପୌର୍ବଦେହିକମ୍ ।**
**ଯତତେ ଚ ତତୋ ଭୂୟଃ ସଂସିଦ୍ଧୌ କୁରୁନନ୍ଦନ ।୪୩।**

**ଅନ୍ୱୟ**—ତତ୍ର ତଂ ପୌର୍ବଦେହିକଂ ବୁଦ୍ଧିସଂଯୋଗଂ ଲଭତେ, ତତଃ ଚ କୁରୁନନ୍ଦନ ! ସଂସିଦ୍ଧୌ ଭୂୟଃ ଯତତେ । ୪୩ ।

**ଟୀକା**—ତତ୍ର [ଯୋଗିନାଂ କୁଲେ ପୂର୍ବଜନ୍ମସଂସ୍କାରାତ୍] ତଂ ପୌର୍ବଦେହିକଂ ( ପୂର୍ବଜନ୍ମନି ଅଭ୍ୟସ୍ତଂ ) [ ଆତ୍ମନି ] ବୁଦ୍ଧିସଂଯୋଗଂ ଲଭତେ । ତତଃ ଚ ହେ କୁରୁନନ୍ଦନ, ସଂସିଦ୍ଧୌ ( ସିଦ୍ଧ୍ୟର୍ଥଂ ) ଭୂୟଃ ( ପୁନଃ ) ଯତତେ । ୪୩ ।

**ଅର୍ଥ**—ସେଇ ଯୋଗିକୁଳରେ ଜନ୍ମି ସେ ପୂର୍ବ ଦେହର ବୁଦ୍ଧି ସଂଯୋଗ ବା ଆତ୍ମନିଷ୍ଠା ପାଏ ଓ ତହୁଁ ହେ କୁରୁନନ୍ଦନ, ସିଦ୍ଧିଲାଗି ପୁଣି ଯତ୍ନରେ ଲାଗିଯାଏ । ୪୩ ।

ବ୍ୟାଖ୍ୟା ସୂଚନା—ବୁଦ୍ଧିସଂଯୋଗ = ବୁଦ୍ଧିଯୋଗ—୨, ୪୯, ୫୦ ଦେଖ । ୪୩ ।

**ପୂର୍ବାଭ୍ୟାସେନ ତେନୈବ ହ୍ରିୟତେ ହ୍ୟବଶୋଽପି ସଃ ।**
**ଜିଜ୍ଞାସୁରପି ଯୋଗସ୍ୟ ଶବ୍ଦବ୍ରହ୍ମାତିବର୍ତ୍ତତେ । ୪୪ ।**

**ଅନ୍ୱୟ**—ତେନ ଏବ ପୂର୍ବାଭ୍ୟାସେନ ସଃ ଅବଶଃ ଅପି ହ୍ରିୟତେ । ଯୋଗସ୍ୟ ଜିଜ୍ଞାସୁଃ ଅପି ଶବ୍ଦବ୍ରହ୍ମ ଅତିବର୍ତ୍ତତେ । ୪୪ ।

**ଟୀକା**—ତେନ ଏବ ପୂର୍ବାଭ୍ୟାସେନ ସଃ ( ଭ୍ରଷ୍ଟଯୋଗୀ ) ଅବଶଃ ( ସ୍ୱଚେଷ୍ଟିତଂ ବିନା ଇତି ଭାବଃ ) ଅପି ହ୍ରିୟତେ ( ଯୋଗସ୍ୟ ପଥି ଆକୃଷ୍ୟତେ) । ଯୋଗସ୍ୟ [ସ୍ୱରୂପଂ] ଜିଜ୍ଞାସୁଃ (ଜ୍ଞାତୁମିଚ୍ଛୁଃ) ଅପି [ ଜନଃ ] ଶବ୍ଦବ୍ରହ୍ମ (ବୈଦିକକର୍ମଣି ଉପାସ୍ୟଂ ଶବ୍ଦରୂପଂ ସର୍ବକର୍ମ ମୂଳଂସଗୁଣଂ ବ୍ରହ୍ମ) ଅତିବର୍ତ୍ତତେ (ଅତିକ୍ରାମ୍ୟତି) । ୪୪ ।

**ଅର୍ଥ**—[ସେହି ପୂର୍ବାଭ୍ୟାସ ହେତୁରୁ ସେହି ଭ୍ରଷ୍ଟଯୋଗୀ ଅବଶ ହେଲେ, (ଅର୍ଥାତ୍, ଆପେ ଜାଣି ଚେଷ୍ଟା ନ କଲେ) ବି ଯୋଗ ଆଡ଼କୁ ଝିଙ୍କି ହୁଏ (ଚାଲେ) । ଯୋଗ ପାଇବାକୁ ଇଚ୍ଛା କରି ପନ୍ଥା ଖୋଜିଲେ ହିଁ ଲୋକ ଶବ୍ଦବ୍ରହ୍ମ ଡେ଼ଇଁଯାଏ । ୪୪ ।

ବ୍ୟାଖ୍ୟା ସୂଚନା—ଜିଜ୍ଞାସୁ = ଠିକ୍ ଯୋଗ କଣ, ଏହା ବୁଝିବାରେ ଯେ ନିଷ୍ଠା କରେ, ଯେ ଠିକ୍ ଯୋଗର ପନ୍ଥା ଖୋଜେ । ଶବ୍ଦବ୍ରହ୍ମ = ବୈଦିକ ଯାଗ ଯଜ୍ଞାଦି କାମ୍ୟକର୍ମ; ବେଦରେ ବିଶ୍ୱାସ କରି ଏହିସବୁ କର୍ମ କରାହୁଏ । ବେଦର ଅର୍ଥ, ସୃଷ୍ଟିର ସର୍ବପ୍ରଥମ ଶବ୍ଦ ବା ଶବ୍ଦବ୍ରହ୍ମ (ତିଳକ୍); ଏହାକୁହିଁ ସଗୁଣ ବ୍ରହ୍ମ କୁହାଯାଏ—୨.୪୫ ଦେଖ । ଏଠାରେ କହିବାର ଅଭିପ୍ରାୟ, ଲୋକ ଯୋଗପନ୍ଥା ଥରେ ଧଇଲେ ସିଦ୍ଧି ଆଡ଼କୁ ଟାଣି ହୋଇ ସିଦ୍ଧି ପାଏ । ୨.୪୦, ୭, ୧୯ ଦେଖ । ଯୋଗର ସ୍ୱରୂପ ଜାଣିଗଲେ ଲୋକ ବୈଦିକ କର୍ମକୁ ଅଳିକ କଥା ବୋଲି ବୁଝିଯାଏ—୨.୪୬ । ବୁଝି ରଖିବା ଉଚିତ, ସମସ୍ତେ କାମ୍ୟ କର୍ମରେ କର୍ମ ଆରମ୍ଭ କରନ୍ତି ବା ଶବ୍ଦବ୍ରହ୍ମର ଉପାସନା ହିଁ ଯୋଗର ପ୍ରଥମ ସୋପାନ । ୬,୩ ରେ ବି ଏହି କଥା ଅନ୍ୟ ଭାବରେ କୁହା ଅଛି । ୪୪ ।

**ପ୍ରଯତ୍ନାଦ୍‌ଯତମାନସ୍ତୁ ଯୋଗୀ ସଂଶୁଦ୍ଧକିଲ୍ବିଷଃ ।**
**ଅନେକଜନ୍ମସଂସିଦ୍ଧସ୍ତତୋ ଯାତି ପରାଂ ଗତିମ୍ । ୪୫ ।**

**ଅନ୍ୱୟ**—ଯୋଗୀ ତୁ ପ୍ରଯତ୍ନାତ୍ ଯତମାନଃ ( ସନ୍ ) ସଂଶୁଦ୍ଧକିଲ୍‌ବିଷଃ । ତତଃ ଅନେକଜନ୍ମସଂସିଦ୍ଧଃ ପରାଂଗତିଂ ଯାତି । ୪୫ ।

**ଟୀକା**—[ ଏବଂ ଅବଶଃ ହୃତୋଽସୌ ] ଯୋଗୀ ତୁ ( ନିଶ୍ଚିତଂ ) ପ୍ରଯତ୍ନାତ୍ (ସ୍ୱକୃଷ୍ଟେନ ଯତ୍ନେନ) ଯତମାନଃ [ ସନ୍ ] ସଂଶୁଦ୍ଧକିଲ୍‌ବିଷଃ (ବିଧୌତପାପଃ ) [ ଭବତି ] । [ ଏବଂ ବାରଂବାରଂ ଭ୍ରଷ୍ଟୋଽପ୍ୟସୌ ] ତତଃ ଅନେକଜନ୍ମସଂସିଦ୍ଧଃ ( ଅନେକଜନ୍ମସୁ ଅପି ସିଦ୍ଧଃ ସନ୍ ) ପରାଂଗତିଂ ଯାତି । ୪୫ ।

**ଅର୍ଥ**—[ଏଇପରି] ସେହି ଯୋଗୀ ଡେଣିକ ଯତ୍ନ ସହିତ ଉଦ୍‌ଯୋଗ କରି ପାପ ଶୁଦ୍ଧ ପବିତ୍ର ହୁଏ ଓ ଏକ ଜନ୍ମରେ ନ ପାରିଲେ ବି ଅନେକ ଜନ୍ମରେ ଯୋଗସିଦ୍ଧ ହୁଏ । ତା ଉତ୍ତାରୁ ପରମ ଗତି (ମୁକ୍ତି) ପାଏ । ୭.୧୯ ଦେଖ । ( ଜନ୍ମରୁ ଜନ୍ମ ବାରଂବାର ଯୋଗଭ୍ରଷ୍ଟ ହେଲେ ବି ତାର ପରକାଳ ନଷ୍ଟ ହୁଏ ନାଇ—ଏଇ ଅଭିପ୍ରାୟ ।) । ୪୫ ।

**ତପସ୍ୱିଭ୍ୟୋଽଧିକୋ ଯୋଗୀ ଜ୍ଞାନିଭ୍ୟୋଽପି ମତୋଽଧିକଃ ।**
**କର୍ମିଭ୍ୟଶ୍ଚାଧିକୋ ଯୋଗୀ ତସ୍ମାଦ୍ ଯୋଗୀ ଭବାର୍ଜୁନ ।୪୬।**

**ଅନ୍ୱୟ**—ଯୋଗୀ ତପସ୍ୱିଭ୍ୟଃ ଅଧିକଃ [ମତଃ] ଜ୍ଞାନିଭ୍ୟଃ ଅପି ଅଧିକଃ ମତଃ । ଯୋଗୀ କର୍ମିଭ୍ୟଶ୍ଚ ଅଧିକଃ [ମତଃ] । ତସ୍ମାତ୍ ଅର୍ଜୁନ ! ଯୋଗୀ ଭବ । ୪୬ ।

**ଟୀକା**—[ ଏବଂ ନିଶ୍ଚିତଗତିଃ ] ଯୋଗୀ ତପସ୍ୱିଭ୍ୟଃ ( ବ୍ରତାଦିଭିଃ କାୟକ୍ଲେଶାଦିନା ଯତମାନେଭ୍ୟଃ) ଅଧିକଃ [ମତଃ], ଜ୍ଞାନିଭ୍ୟଃ (ଶାସ୍ତ୍ରଜ୍ଞପଣ୍ଡିତେଭ୍ୟଃ) ଅପି ଅଧିକଃ [ମତଃ] ଯୋଗୀ କର୍ମିଭ୍ୟଃ (ଯାଗାଦି ବୈଦିକକର୍ମଶୃଙ୍ଗଭ୍ୟଃ) ଅଧିକଃ [ମତଃ] । ତସ୍ମାତ୍ ହେ ଅର୍ଜୁନ, [ ତ୍ୱଂ କର୍ମତ୍ୟାଗାଦିରୂପାନ୍ ଅନ୍ୟାନ୍ ପଥଃ ତ୍ୟକ୍ତ୍ୱା । ] ଯୋଗୀ ଭବ । ୪୬ ।

**ଅର୍ଥ**—[ ଏହିପରି ସର୍ବଥା ପର ଗତି ପାଇବା ଯାହାର ନିଶ୍ଚିତ ]. ସେଇ ଯୋଗୀ ବ୍ରତକାଷ୍ଠାମାନ ଧରି ଲଗିପଡ଼ିଥିବା ତପସ୍ୟାବନ୍ତଙ୍କଠାରୁ ବଡ଼, ଶାସ୍ତ୍ରଜ୍ଞ ପଣ୍ଡିତଙ୍କଠାରୁ ବି ବଡ଼ ବୋଲି ସୁମାରରେ ଆସେ । ଯୋଗୀ, ଯାଗାଦି ବୈଦିକକାମ୍ୟ କର୍ମରେ ମାତିଥିବା କର୍ମୀଙ୍କଠାରୁ ବଡ଼ । ଅତଏବ ହେ ଅର୍ଜୁନ, ତୁ [ କର୍ମ ଛାଡ଼ିବାରେ ସନ୍ୟାସ କରିବା ପ୍ରଭୃତି ସବୁ ପନ୍ଥା ଛାଡ଼ି] ଯୋଗୀ ହୁଅ । ୪୬ ।

**ଯୋଗିନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା ।
ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସ ମେ ଯୁକ୍ତତମୋ ମତଃ ।୪୭।**

**ଅନ୍ୱୟ**—ସର୍ବେଷାଂ ଅପି ଯୋଗିନାଂ ଯଃ ଶ୍ରଦ୍ଧାବାନ୍ [ ସନ୍ ] ମଦ୍‌ଗତେନ ଅଂତରାତ୍ମନା ମାଂ ଭଜତେ, ସ ମେ କ୍ତତମଃ ମତଃ ।୪୭।

**ଟୀକା**—[ବିବିଧବିଭୂତ୍ୟର୍ଥଂ ଦେବାଦୀନ୍ ଭଜନ୍ତଃ, ହଠଯୋଗାଦୀନ୍ ଚ ଆଚରନ୍ତଃ, ଶୁଷ୍କଜ୍ଞାନନିଷ୍ଠାୟାଂ ବୈରାଗ୍ୟଂ ଅଭ୍ୟସ୍ୟନ୍ତଃ ଚ ଅପି ବିବିଧ ଯୋଗିନଃ ସନ୍ତି, [ତେଷାଂ] ସର୍ବେଷାଂ ଅପି ଯୋଗିନାଂ ଯଃ [ ମୟି ] ଶ୍ରଦ୍ଧାବାନ୍ (ବିଶ୍ୱାସପରଃ ସନ୍) ମଦ୍‌ଗତେନ (ମୟି ସ୍ଥିତେନ) ଅନ୍ତରାତ୍ମନା ( ଅନ୍ତଃକରଣେନ, ଜୀବାତ୍ମନା ବା ) ମାଂ ଭଜତେ, ସଃ ମେ (ମମ) ଯୁକ୍ତତମଃ (ଶ୍ରେଷ୍ଠଯୋଗୀ) ମତଃ (ସ୍ୱୀକୃତଃ) ।୪୭।

**ଅର୍ଥ**—[ବିଭୂତି ପାଇବା ପାଇଁ ଦେବାଦି ଭଜି ଓ ହଠଯୋଗ କରି, ପୁଣି ଖାଲି ଜ୍ଞାନ ଧରି ଶୁଷ୍କ ବୈରାଗ୍ୟ-ଅଭ୍ୟାସରେ ମାତି ଲୋକେ ଯୋଗୀ ହୁଅନ୍ତି— [କିନ୍ତୁ] ଯେ ବିଶ୍ୱାସରେ ଅନ୍ତରାତ୍ମାକୁ ମୋଠାରେ ରଖି, ମତେ ଭଜେ, ସେ ସଭିଙ୍କି ବଳି ଶ୍ରେଷ୍ଠଯୋଗୀ ସେହି ବୋଲି ମୋର ମତ । ୪୭ ।

ବ୍ୟାଖ୍ୟା ସୂଚନା—ଅତଏବ ଯୋଗୀ ହୋଇ ବୋଇଲେ, ଈଶ୍ୱରଙ୍କର ସବୁ ବୋଲି ଆତ୍ମସମର୍ପଣ କରି ନିୟତ କର୍ମ କରି ଯା । ତପସ୍ୟାରେ ବି ଯୋଗୀ ହୁଅନ୍ତି, ଜ୍ଞାନରେ ବି ଯୋଗୀ ହୁଅନ୍ତି, କର୍ମରେ ବି ହୁଅନ୍ତି, ମାତ୍ର ଈଶ୍ୱରରେ ବିଶ୍ୱାସ କରି ଭକ୍ତିରେ ଆତ୍ମସମର୍ପଣ କଲେ ହିଁ ଏହା ଯୋଗ ସୁଗମ ହୁଏ । ଏହିପରି କର୍ମ, ଜ୍ଞାନ ଓ ଭକ୍ତିର ସମନ୍ୱୟରେ ମୋକ୍ଷନିମନ୍ତେ ପାଇଁ କର୍ମ କରିବା ହିଁ ଗୀତାର 'ଯୋଗ' । ୨.୭୧ ଟୀକା ଦେଖ । ୪୭ ।



# ସପ୍ତମ ଅଧ୍ୟାୟ

## ଜ୍ଞାନ-ବିଜ୍ଞାନଯୋଗ (ବିଜ୍ଞାନତତ୍ତ୍ୱ)

### ଅଧ୍ୟାୟ ପ୍ରବେଶ—

୩.୪୧ ଓ ଷଷ୍ଠ ଅଧ୍ୟାୟ ପ୍ରବେଶ ଦେଖ । ଏବେ ସେଇ ଜ୍ଞାନ ବିଜ୍ଞାନ କଥା କହିବେ । ଜ୍ଞାନ = ସର୍ବଭୂତ ବା ବ୍ୟକ୍ତରୁ ଅତୀତ ଅବ୍ୟକ୍ତ ଅକ୍ଷର ଆତ୍ମା ବା ବ୍ରହ୍ମର ଜ୍ଞାନ । ବିଜ୍ଞାନ = ବିଷୟୀଭବ ଧ ସର୍ବଭୂତର ଆଧ୍ୟାତ୍ମ୍ୟ ତତ୍ତ୍ୱ, ବା ବ୍ୟକ୍ତର ତତ୍ତ୍ୱଜ୍ଞାନ; ବ୍ୟକ୍ତମାନେ ବ୍ରହ୍ମରୂପ ବା ବ୍ରହ୍ମରୁ ଫିଟି ହୋଇଛନ୍ତି—ଏଇ ଜ୍ଞାନ । ଏଇପରି ଦୁଇବାଟେ, ଦୁଇ ଭାବରେ ଯେ ବ୍ରହ୍ମ ବା ଈଶ୍ୱର ପୁରୁଷର ଧାରଣା, ତାହାହିଁ ଜ୍ଞାନ-ବିଜ୍ଞାନ— ତାହାହିଁ ପରମେଶ୍ୱରଙ୍କର 'ସମଗ୍ର ଜ୍ଞାନ'—ତାହାହିଁ ପୁରୁଷୋତ୍ତମ ଜ୍ଞାନ—୧୫.୧୬-୧୮ ଦେଖ । ୭.୨୯, ୩୦ରେ ଏଇ ସୂଚନା ଅଛି ।

ଏଇ ସମଗ୍ର ଜ୍ଞାନ ଠିକ୍ ରଖିବାର ଅଭ୍ୟାସ ହିଁ ଯୋଗ ସାଧିବା । ପୁଣି ଏଇ ଜ୍ଞାନ ଠିକ୍ ରଖି ଆଚରଣ କରିବା ହିଁ ଗୀତାର 'ଯୋଗ' । ବ୍ରହ୍ମରୁ ସୃଷ୍ଟି ସ୍ତରରେ ପହିଲେ 'ଜୀବଭୂତ' ବ୍ୟକ୍ତ ମାତ୍ରର ଆତ୍ମା ସ୍ୱରୂପ, 'ପରା ପ୍ରକୃତି' । ତହିଁରୁ ଅପରା ପ୍ରକୃତି; ତହିଁରୁ ସମସ୍ତ ବ୍ୟକ୍ତ ଈଶ୍ୱର କୋଶ । ଏଇ ସମସ୍ତ ପରିଣାମର ବୀଜ ତଥା ସର୍ବଭୂତରେ ଶକ୍ତି ବା ପ୍ରଭାବ ରୂପେ ଈଶ୍ୱର ବିରାଜିତ । ସତ୍ତ୍ୱ-ରଜ-ତମ ଗୁଣର ମୂଳରୂପ ମାୟା ଈଶ୍ୱରଙ୍କର ସୃଷ୍ଟି-ଶକ୍ତି । ଏହା ପ୍ରକୃତିର ଆଚରଣ ପରି ପ୍ରକାଶ ପାଏ । ଏଥିରୁ ହିଁ ଜୀବର ଅଜ୍ଞାନ ଓ ମୋହ । ଈଶ୍ୱରଙ୍କୁ ଭଜିଲେ ଏ ମୋହ ତୁଟେ । ସାଧାରଣତଃ ଲୋକେ ଚାରି ପ୍ରକାରରେ ଈଶ୍ୱରଙ୍କୁ ଭଜନ୍ତି । କିନ୍ତୁ ବାସୁଦେବ ସବୁ ବା ବ୍ୟକ୍ତ ବିଜ୍ଞାନର ତତ୍ତ୍ୱ ହିଁ ସବୁ ଅଥବା ସର୍ବଭୂତମୟ ଏକଇ ପରମେଶ୍ୱର—ଏଇ ଜ୍ଞାନରେ ଠିକ୍ ରହି ଭଜିବା ହିଁ ଶ୍ରେଷ୍ଠ ପନ୍ଥା ହେଲେହେଁ, ବିଶ୍ୱାସରେ ଯେ ଯେପରି ଭଜେ, ଈଶ୍ୱର ତାକୁ ସେପରି ଗତି ଦିଅନ୍ତି । ମାତ୍ର ଜ୍ଞାନୀର ଗତି ପରି ସେ ସବୁ ସ୍ଥାୟୀ ନୁହେଁ । କାରଣ ଅନ୍ୟମାନେ ଅବ୍ୟକ୍ତ ବିଶ୍ୱାତ୍ମା ବ୍ରହ୍ମକୁ ନ ବୁଝି, ଖାଲି ବ୍ୟକ୍ତରେ ସୂକ୍ଷ୍ମ ଓ ସ୍ଥୂଳ ନାନା ଭାବରେ—କିଏ 'ଆଧ୍ୟାତ୍ମ୍ୟ, କିଏ 'କର୍ମ', କିଏ 'ଅଧିଭୂତ', କିଏ 'ଅଧିଦୈବ', କିଏ 'ଅଧିଯଜ୍ଞ' ବୋଲି ଈଶ୍ୱରଙ୍କୁ ବୁଝନ୍ତି । କିନ୍ତୁ 'ଅକ୍ଷର' ଅବ୍ୟକ୍ତ ବ୍ରହ୍ମ ସହିତ ଏସବୁ ଧରି ଈଶ୍ୱରଙ୍କୁ ବୁଝିବା ଦରକାର । ପୁଣି ଖାଲି

ବୁଝିଲେ ହେବ ନାହି—ଜୀବନଯାକ ଏଇ ଧ୍ୟାନ ଓ ନିଷ୍ଠା ଅଭ୍ୟାସ କରି ମରଣବେଳେ ବି ଏଇ ଜ୍ଞାନରେ ଠିକ୍ ରହିବା ଦରକାର । ମରଣବେଳେ କିପରି ଏଇ ଜ୍ଞାନରେ ଠିକ୍ ରହିବ, ପୁଣି ଆଧ୍ୟାତ୍ମ ପ୍ରଭୃତି କଣ, ତା ପର ଅଧ୍ୟାୟରେ କହିବେ । ଏଇପରି ଏ ଅଧ୍ୟାୟରେ ବିଜ୍ଞାନର ତତ୍ତ୍ୱ, 'ଅବ୍ୟକ୍ତ ବ୍ରହ୍ମ', ବା 'ପରା ପ୍ରକୃତି' ରୂପ ବ୍ରହ୍ମର କଥା ଭଲକରି ବୁଝାଇ ଦିଆଯାଇଛି । ଏଇ ସମ୍ପର୍କରେ ଏଇ 'ଅବ୍ୟକ୍ତରୁ ଅବ୍ୟକ୍ତ', ପରମ ଅକ୍ଷର ବ୍ରହ୍ମ ବା ବିଜ୍ଞାନ ତତ୍ତ୍ୱର ମୂଳ ପରମ 'ଜ୍ଞାନ'ର କଥା ଅଷ୍ଟମ ଅଧ୍ୟାୟରେ କହିବେ ।

**ମୟ୍ୟାସକ୍ତମନାଃ ପାର୍ଥ ଯୋଗଂ ଯୁଞ୍ଜନ୍ ମଦାଶ୍ରୟଃ ।**
**ଅସଂଶୟଂ ସମଗ୍ରଂ ମାଂ ଯଥା ଜ୍ଞାସ୍ୟସି ତଚ୍ଛୃଣୁ । ୧ ।**

**ଅନ୍ୱୟ**—ପାର୍ଥ ! ମୟି ଆସକ୍ତମନାଃ, ମଦାଶ୍ରୟଃ ଯୋଗଂ ଯୁଂଜନ୍ ମାଂ ସମଗ୍ରଂ ଅସଂଶୟଂ ଯଥା ଜ୍ଞାସ୍ୟସି ତତ୍ ଶୃଣୁ । ୧ ।

**ଟୀକା**—[ଯୋ ମାଂ ଭଜତେ ସ ଯୁକ୍ତତମଃ ଇତ୍ୟୁକ୍ତ୍ୱା--କୀଦୃଶଂ ମାଂ ଇତି ନିରୂପୟିଷ୍ୟନ୍] ଶ୍ରୀ ଭଗବାନ ଉବାଚ—ହେ ପାର୍ଥ, ମୟି ଆସକ୍ତମନାଃ (ଦତ୍ତଚିତ୍ତଃ—ଗତାନ୍ତଃକରଣ) [ତଥା] ମଦାଶ୍ରୟଃ ( ମୟ୍ୟେବ ଆଶ୍ରିତଃ) ଯୋଗଂ ଯୁଞ୍ଜନ୍ (ଅଭ୍ୟସ୍ୟନ୍—ଆଚରନ୍ ବା) ମାଂ ସମଗ୍ରଂ ( ସର୍ବତୋଭାବେନ—ସର୍ବଭାବୈଃ ବା) ଅସଂଶୟଂ ( ନିଶ୍ଚିତତୟା ) ଯଥା ଜ୍ଞାସ୍ୟସି, ତତ୍ ଶୃଣୁ । ୧ ।

**ଅର୍ଥ**—[ ଯେ ମତେ ଭଜେ, ସେ ଶ୍ରେଷ୍ଠ ଯୋଗୀ—ଏହା କହିସାରି, ସେହି ମୁଁ କିପରି ବୋଲି ବୁଝାଇବାକୁ ] ଶ୍ରୀ ଭଗବାନ କହିଲେ—ହେ ପାର୍ଥ, ମୋଠି ମନ ରଖି, ମତେ ହିଁ ଆଶ୍ରା କରି, ଯୋଗରେ ଲଗିବାରେ ତୁ ମତେ ପୂରାପୂରି ( ବା ସବୁମୂଳ ବୋଲି ) ଠିକ୍ କରି ଯେପରି ଜାଣିବୁ, ତା ଶୁଣ । ୧ ।

**ଜ୍ଞାନଂ ତେଽହଂ ସବିଜ୍ଞାନମିଦଂ ବକ୍ଷ୍ୟାମ୍ୟଶେଷତଃ ।**
**ଯଜ୍ଜ୍ଞାତ୍ୱା ନେହ ଭୂୟୋଽନ୍ୟଜ୍ଜ୍ଞାତବ୍ୟମବଶିଷ୍ୟତେ ।୨।**

**ଅନ୍ୱୟ**—ଅହଂ ତେ ସବିଜ୍ଞାନଂ ଇଦଂ ଜ୍ଞାନଂ ଅଶେଷତଃ ବକ୍ଷ୍ୟାମି—ଯତ୍ ଜ୍ଞାତ୍ୱା ଇହ ଭୂୟଃ ଅନ୍ୟତ୍ ଜ୍ଞାତବ୍ୟଂ ନ ଅବଶିଷ୍ୟତେ ।୨।

**ଟୀକା**—ଅହଂ ତେ (ତୁଭ୍ୟଂ) ସବିଜ୍ଞାନଂ (ଇନ୍ଦ୍ରିୟାଦ୍ୟନୁ ଅନୁଭୂତ ଜ୍ଞାନସ୍ୟ ତତ୍ତ୍ୱେନ ସହ) ଇଦଂ ଜ୍ଞାନଂ (ଅନ୍ତର୍ଭୂତଜ୍ଞାନଂ—ଅବ୍ୟକ୍ତସ୍ୟ ନିଶ୍ଚିତଜ୍ଞାନମିତି ଭାବଃ) ଅଶେଷତଃ ( ସମ୍ପୂର୍ଣ୍ଣତୟା ) ବକ୍ଷ୍ୟାମି—ଯତ୍ ଜ୍ଞାତ୍ୱା ଇହ [ ଜଗତି ] ଭୂୟଃ (ପୁନଃ) ଅନ୍ୟତ୍ [କିଞ୍ଚିତ୍] ଜ୍ଞାତବ୍ୟଂ ନ ଅବଶିଷ୍ୟତେ ( ଅବଶିଷ୍ଟଂ ବର୍ତ୍ତତେ ) । ୨ ।

**ଅର୍ଥ**—ମୁଁ ତତେ ଅନୁଭବରେ ମିଳୁଥିବା ଜଗତର ସାଧାରଣ ଜ୍ଞାନର ତତ୍ତ୍ୱ ସହିତ ବ୍ରହ୍ମଜ୍ଞାନକୁ ପୂରାପୂରି କହିବି । ଏହା ଜାଣିଲେ ଏ ଜଗତରେ ଫେର୍ ଆଉ କିଛି ଜାଣିବାର ବାକି ରହେ ନାହିଁ । ୨ ।

ବ୍ୟାଖ୍ୟା ସୂଚନା—ଇନ୍ଦ୍ରିୟମାନଙ୍କର ବିଷୟରୂପେ ଅନୁଭୂତ ବିଶ୍ୱର ଜ୍ଞାନ, ବିଜ୍ଞାନ । ଏଇ ବିଜ୍ଞାନ, ଏଠାରେ ବିଷୟର ଜ୍ଞାନ ନୁହେଁ । ଏଇ ବ୍ୟକ୍ତ ବିଷୟରେ ଯେ ସୂକ୍ଷ୍ମ ଓ ଅବ୍ୟକ୍ତ ଆଧାର ତତ୍ତ୍ୱ ଯହିଁରୁ ଏସବୁ ବ୍ୟକ୍ତ ବିଶ୍ୱ ସଂଭବ—ତାହାର ଜ୍ଞାନହିଁ ବିଜ୍ଞାନ । ପୁଣି ଏହି ବିଜ୍ଞାନରୁ ଅତୀତ, ଅବ୍ୟକ୍ତ—ବିଜ୍ଞାନର ମୂଳାଧାର—ଯାହା ହେତୁରୁ ବିଜ୍ଞାନ ସଂଭବ ସେଇ ଭୂତାତୀତ ଅକ୍ଷର ତତ୍ତ୍ୱ ବା ବିଶ୍ୱାତ୍ମାରୁ ଅତୀତ ସୀଠର ଜ୍ଞାନହିଁ, ଜ୍ଞାନ । ୮.୧୮,୨୦ ଦେଖ । ୨ ।

**ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ ଯତତି ସିଦ୍ଧୟେ ।**
**ଯତତାମପି ସିଦ୍ଧାନାଂ କଶ୍ଚିନ୍ ମାଂ ବେତ୍ତି ତତ୍ତ୍ୱତଃ । ୩ ।**

ଅନ୍ୱୟ—ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିତ୍ ସିଦ୍ଧୟେ ଯତତି, ଯତତାଂ ସିଦ୍ଧାନାଂ ଅପି କଶ୍ଚିତ୍ ମାଂ ତତ୍ତ୍ୱତଃ ବେତ୍ତି । ୩ ।

**ଟୀକା**—[ କଥଂ ବକ୍ଷ୍ୟାମି ? ଯତଃ ] ମନୁଷ୍ୟାଣାଂ (ନ ମନୁଷ୍ୟେତରଃ ଶ୍ରେୟସି ପ୍ରବର୍ତ୍ତତେ ଇତ୍ୟାଶୟଃ ) [ମଧ୍ୟେ] ସହସ୍ରେଷୁ (ଅଗଣିତେଷୁ) [ବିରଳଃ] କଶ୍ଚିତ୍ ସିଦ୍ଧୟେ (ସିଦ୍ଧ୍ୟର୍ଥଂ) ଯତତି (ଯତତେ—ପ୍ରଯତ୍ନଂ କରୋତି) । [ତେଷାଂ] ଯତତାଂ ସିଦ୍ଧାନାଂ (ସିଦ୍ଧାର୍ଥାନାଂ) ଅପି [ମଧ୍ୟେ ବିରଳଃ] କଃ ଚିତ୍ ମାଂ ତତ୍ତ୍ୱତଃ (ଯଥାବତ୍) ବେତ୍ତି । ୩ ।

**ଅର୍ଥ**—[କାହିଁକି ବୁଝାଇବା ଦରକାର କି ?] ହଜାର ହଜାର ମନୁଷ୍ୟଙ୍କ ଭିତରେ କାଁ ଭାଁ କେବଳ ଜଣେ ସିଦ୍ଧି ଲାଗି ଯତ୍ନ କରେ । ସେଇ ଯତ୍ନ କରିବା ସାଧକଙ୍କ ଭିତରେ ପୁଣି କାଁ ଭାଁ କେବଳ ଜଣେ ମତେ ଠିକ୍ କରି ଜାଣନ୍ତି । ୩ ।

ବ୍ୟାଖ୍ୟା ସୂଚନା—ମନୁଷ୍ୟ ଛଡ଼ା ଆଉ କେହି ଶ୍ରେୟ ଲାଗି ଯତ୍ନ କରନ୍ତି ନାହିଁ—ଏ ଅଭିପ୍ରାୟ ଏଠାରେ ଅଛି । ୩ ।

**ଭୂମିରାପୋଽନଳୋ ବାୟୁଃ ଖଂ ମନୋ ବୁଦ୍ଧିରେବ ଚ**
**ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା । ୪ ।**

**ଅନ୍ୱୟ**—ଭୂମିଃ, ଆପଃ, ଅନଳଃ, ବାୟୁଃ, ଖଂ, ମନଃ, ବୁଦ୍ଧିଃ, ଅହଂକାରଃ, ଚ ଏବ ଇତି ଇୟଂ ମେ ଅଷ୍ଟଧା ଭିନ୍ନା ପ୍ରକୃତିଃ । ୪ ।

**ଟୀକା**—[ ଏବଂ ପ୍ରରୋଚୟନ୍ ଶ୍ରୋତାରମଭିମୁଖୀକୃତ୍ୟାହ ]—ଭୂମିଃ, ଅପଃ, ଅନଳଃ, ବାୟୁଃ, ଖଂ, ( କ୍ଷିତ୍ୟପ୍‌ତେଜୋମରୁଦବ୍ୟୋମାନ=ଏତେଷାଂ ଦୃଶ୍ୟମାନାନାଂ ପଞ୍ଚସ୍ଥୂଳମହାଭୂତାନାଂ ସୂକ୍ଷ୍ମରୂପାଣି ଶବ୍ଦାଦୀନି ତନ୍ମାତ୍ରାଣ୍ୟତ୍ର ବିବକ୍ଷିତାନି ) ମନଃ ( ଚକ୍ଷୁରାଦୀନ୍ଦ୍ରିୟାଣାଂ ଶ୍ରେଷ୍ଠଂ ) ବୁଦ୍ଧିଃ ( ବ୍ୟକ୍ତସ୍ୟ ସର୍ବୋପରିଫଳକାମବୃତ୍ତିଃ ) ଅହଂକାରଃ ବୁଦ୍ଧେରୁଦ୍‌ଗତା, ଅହମିତି ପୁରୁଷାତ୍ମ-ବିଷୟିଣୀ ବୃତ୍ତିଃ—ବ୍ୟକ୍ତିତ୍ୱଭାବଃ ) ଚ ଏବ=ଇତି ଇୟଂ ମେ ( ମମ ) ଅଷ୍ଟଧା ( ପରିଣାମାତ୍ ଅଷ୍ଟପ୍ରକାରେଣ ) ଭିନ୍ନ ପ୍ରକୃତିଃ । ୪ ।

**ଅର୍ଥ**—[ ଏହିପରି ଅର୍ଜୁନଙ୍କର ଶୁଣିବାରେ ଆଗ୍ରହ ଜନ୍ମାଇ କହୁଛନ୍ତି ]—ଭୂମି, ଅପ୍ ( ଜଳ ), ଅନଳ ( ତେଜ ), ବାୟୁ, ଖ, ( ଆକାଶ )—[ ଏହି ପଞ୍ଚମହାଭୂତର ସୂକ୍ଷ୍ମ ତନ୍ମାତ୍ରମାନେ ] ମନ, ବୁଦ୍ଧି ଓ ଅହଂକାର ଏହି ଆଠ ପ୍ରକାରରେ ଭିନ୍ନ ଭିନ୍ନ ହୋଇ ପ୍ରକାଶ ପାଇଥିବା ମୋର ପ୍ରକୃତି । ୪ ।

ବ୍ୟାଖ୍ୟା ସୂଚନା—ତନ୍ମାତ୍ରମାନେ=ରୂପ, ଗନ୍ଧ, ରସ, ସ୍ପର୍ଶ, ଶବ୍ଦ—ଏହିଥିରୁ ଭୂମି ପ୍ରଭୃତି ମହାଭୂତମାନେ ବାହାର ସବୁ ଦୃଷ୍ଟ ବସ୍ତୁ ପ୍ରକାଶ କରନ୍ତି । ମନ= ଚକ୍ଷୁ, କର୍ଣ, ନାସିକା, ଜିହ୍ୱା, ଚର୍ମ—ଏହି ପଞ୍ଚ ବୁଦ୍ଧି-ଇନ୍ଦ୍ରିୟର ନେତା ବା ଏମାନଙ୍କର ଶ୍ରେଷ୍ଠ ଇନ୍ଦ୍ରିୟ ।

ଅହଂକାର=ଅନ୍ୟଠାରୁ ଭିନ୍ନ ମୁଁ ବୋଲି ବୁଦ୍ଧିରୁ ବାହାରେ ଯେଉଁ ବୃତ୍ତି, ବା 'ମୁଁ' ବୋଲି ବ୍ୟକ୍ତି ବସ୍ତୁର ଯେଉଁ ବ୍ୟକ୍ତିଭାବ । ବୁଦ୍ଧି=କର୍ମର ଫଳକାମୀ ବ୍ୟକ୍ତିର ଶ୍ରେଷ୍ଠ ବୃତ୍ତି ।

[ ଏହି ଆଠ ତତ୍ତ୍ୱବାଲା ହେଉଚି ସ୍ୱରୂପ କ୍ଷେତ୍ର ବା କ୍ଷର ପୁରୁଷ । ୧୩, ୫, ୧୫, ୧୭ ଦେଖ—ମହାତ୍ମା ଗାନ୍ଧୀ ]

କପିଳଙ୍କ ପ୍ରବର୍ତ୍ତିତ ସାଂଖ୍ୟ ମତରେ ତତ୍ତ୍ୱ ୨୫ଟି । ସେଥିରୁ ପୁରୁଷମାନେ ଗୋଟିଏ ପ୍ରକାର ହେବାରୁ ଗୋଟିଏ ତତ୍ତ୍ୱ । କାରଣ, ସାଂଖ୍ୟ ବହୁପୁରୁଷବାଦୀ । ବେଦାନ୍ତ ପରି ଏ ବ୍ରହ୍ମମାନେ ନାହିଁ । ପୁଣି ସାଂଖ୍ୟରେ ଆଉ ଗୋଟିଏ ତତ୍ତ୍ୱ ଅବ୍ୟକ୍ତ ବା ପ୍ରକୃତି । ଗୀତାର ବେଦାନ୍ତରେ ଏହି ଅବ୍ୟକ୍ତ ପ୍ରକୃତିକୁ ପର ଶ୍ଳୋକରେ ଈଶ୍ୱରଙ୍କର 'ପରା' ପ୍ରକୃତି ବୋଲି କୁହାଯାଇଚି । ସେ ଯାହାହେଉ, ସାଂଖ୍ୟମତରେ ଏହି ଅବ୍ୟକ୍ତ ପ୍ରକୃତିରେ ସତ୍ତ୍ୱ ରଜ ତମ

ଏହି ତିନି ଗୁଣ ନିତ୍ୟ ଭାବରେ ଅଛି । ସେହି ଗୁଣ ଯୋଗୁଁ ଏହି ପ୍ରକୃତିର କ୍ରମ ପରିଣାମରେ ବାକି ୨୩ଟି ତତ୍ତ୍ୱ ପ୍ରକାଶ ପାଏ । ସେ ସବୁକୁ ପ୍ରକୃତିର ବିକୃତି ବା ବିକାର କହନ୍ତି । ଏହି ବିକୃତିକୁ ମଧ୍ୟ ଗୁଣ କହନ୍ତି ବା ଗୁଣର ବିକୃତିରେ ଗୁଣ ପ୍ରକାଶ ପାଏ । "ଗୁଣା ଗୁଣେଷୁ ବର୍ତ୍ତନ୍ତେ" ( ଅର୍ଥାତ୍, ଗୁଣରୁ ଗୁଣ କ୍ରମେ ବଦଳି ବଦଳି ବାହାରୁଛି—୩. ୨୮ ଦେଖ ) ବୋଲି କୁହାଯାଏ । ପ୍ରକୃତିର ସତ୍ତ୍ୱାଦି ଗୁଣର ନାନା ମିଶାମିଶିରେ ଏହି ବିକାର ଗୁଣମାନ ସୃଷ୍ଟି କର୍ମରୂପେ ପ୍ରକାଶ ପାଏ—୩. ୨୯ ଦେଖ । ତେବେ ଏହି ପ୍ରକୃତିର ବିକାର ଗୁଣରେ ଯେଉଁ ୨୩ଟି ତତ୍ତ୍ୱ ପ୍ରକାଶ ପାଏ, ସେଥିରୁ ପ୍ରଥମେ ବୁଦ୍ଧି ବା ମହାନ୍, ତହିଁରୁ ଅହଂକାର ବା ବ୍ୟକ୍ତିବୋଧ । ସେହି ଅହଂକାରରୁ ଏକ ଆଡ଼େ ସମ୍ବନ୍ଧରେ ବିକାରରେ ମନ, ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ଏହି ପାଞ୍ଚ ବୁଦ୍ଧି ଇନ୍ଦ୍ରିୟ ବା ଜ୍ଞାନେନ୍ଦ୍ରିୟ ଓ ବାକ୍ ବା କଥା କହିବା ବା ଚାଲିବା ଜିଭର ସ୍ଥାନ, ପାଣି ବା ହାତ, ପାଦ, ପାୟୁ ବା ମଳଦ୍ୱାର, ଉପସ୍ଥ ବା ମୂତ୍ରଦ୍ୱାର— ଏହି ପଞ୍ଚ କର୍ମେନ୍ଦ୍ରିୟ; ଏହି ଏଗାର ଇନ୍ଦ୍ରିୟର ସୂକ୍ଷ୍ମରୂପ । ଅନ୍ୟଆଡ଼େ ପୁଣି ସେହି ଅହଂକାରରୁ ରୂପ, ରସ, ଗନ୍ଧ, ସ୍ପର୍ଶ, ଶବ୍ଦ—ଏହି ପଞ୍ଚ ମହାଭୂତର ସୂକ୍ଷ୍ମ ରୂପ ବା ତନ୍ମାତ୍ର ଓ ତହିଁରୁ ଭୂମି, ଜଳ, ତେଜ, ବାୟୁ, ଆକାଶ—ଏହି ପଞ୍ଚସ୍ଥୂଳ ମହାଭୂତ । ତନ୍ମାତ୍ରମାନେ ଜ୍ଞାନେନ୍ଦ୍ରିୟର ବିଷୟ ବା କର୍ମସ୍ଥାନ ଓ ସ୍ଥୂଳ ମହାଭୂତମାନେ ମୋଟାମୋଟି କର୍ମେନ୍ଦ୍ରିୟର ବିଷୟ ହେବାରୁ ବ୍ୟକ୍ତ ବିଶ୍ୱ, ଜୀବର ପ୍ରତୀତି ଓ ଅନୁଭୂତିରେ ଆସେ ( ୧୩. ୫, ୬ ଦେଖ ) ।

ଏହିପରି ଅବ୍ୟକ୍ତ ପ୍ରକୃତିରୁ ସାରା ସୃଷ୍ଟି ବ୍ୟକ୍ତ ହୁଏ । ସାଂଖ୍ୟ ମତରେ ପୃଥିବୀ ଜଡ଼ । ଅସଂଖ୍ୟ ପୁରୁଷମାନେ ଚେତନ, କିନ୍ତୁ କର୍ମହୀନ । ପୁରୁଷର ଦୃଷ୍ଟି ପ୍ରକୃତିରେ ପଡ଼ିଲେ ବା ପ୍ରକୃତି ପୁରୁଷ ପାଖରେ ରହିଲେ, ସେ ପ୍ରକୃତି ଏ ବ୍ୟକ୍ତ ବା ବିଶ୍ୱଖେଳା କରୁଥାଏ । ପ୍ରକୃତି ଜଡ଼ ଓ ମୋଠାରୁ ଅଲଗା, ଅର୍ଥାତ୍ "ଗୁଣା ଗୁଣେଷୁ ବର୍ତ୍ତନ୍ତେ" ମୋର ସେଥିରେ କିଛି ନାହିଁ, ମୁଁ ଶୁଦ୍ଧ ଓ ନିଷ୍କ୍ରିୟ—ଏହି ଜ୍ଞାନ ପୁରୁଷର ଆସିଗଲେ ଭୂତ ପ୍ରକୃତିର ମୋକ୍ଷ ହୁଏ ବା ଜଡ଼ ପ୍ରକୃତିର ଖେଳା ଖସିଯାଏ । ୧୩.୩୪ ଦେଖ । ତାହାହିଁ ମୁକ୍ତି, ଅର୍ଥାତ୍ ପୁରୁଷ ପ୍ରକୃତି ଦୁହେଁ ଦୁହିଙ୍କଠାରୁ ଖସିଯିବା ବା ଅଲଗା ହୋଇଯିବା ।

ଗୀତାର ଅଦ୍ୱୈତ ବେଦାନ୍ତରେ ଏହି ବୁଦ୍ଧି, ଅହଂକାର, ମନ ଓ ପଞ୍ଚ ମହାଭୂତର ମୂଳ ତନ୍ମାତ୍ରକୁ ପରମେଶ୍ୱରଙ୍କର 'ଅପରା' ପ୍ରକୃତି ଓ ଅବ୍ୟକ୍ତ ମୂଳ ପ୍ରକୃତିକୁ ପରମେଶ୍ୱରଙ୍କର 'ପରା' ପ୍ରକୃତି ବୋଲି ଧରାଯାଏ । ଏହା କ୍ଷର ବା ନିତ୍ୟ ପରିଣାମଶୀଳ, ଏହାର ତତ୍ତ୍ୱ ବିଜ୍ଞାନ । ସାଂଖ୍ୟର ପୁରୁଷ, ବେଦାନ୍ତରେ ଅବ୍ୟକ୍ତ ଅକ୍ଷର ବ୍ରହ୍ମ । ଏ ଦୁଇଟି ପରମେଶ୍ୱର ବା "ପୁରୁଷୋତ୍ତମ"ଙ୍କ ଦୁଇଟି ବିଭାବ ବା

ପରମେଶ୍ୱରଙ୍କୁ ଦୁଇ ଭାବରେ ଦେଖିବା ମାତ୍ର । 'ପୁରୁଷୋତ୍ତମ' ତେଣୁ ଏ କ୍ଷର ଓ ଅକ୍ଷର ପୁରୁଷରୁ ଅତୀତ ବୋଲି କୁହାଯାଏ । ୧୫, ୧୭-୧୮ ଦେଖ ।

ବେଦାନ୍ତରେ ବୁଦ୍ଧି, ଅହଙ୍କାର, ମନ ଓ ପଞ୍ଚତନ୍ମାତ୍ର ଏହି ଆଠଟିକୁ 'ଅପରା' ପ୍ରକୃତିର ରୂପ ବୋଲି କୁହାଯାଏ । ଏହି ଆଠଟି ସୂକ୍ଷ୍ମ । ବାକୀ ଇନ୍ଦ୍ରିୟ ଓ ମହାଭୂତମାନେ ଏହି ଆଠଟିର ସ୍ଥୂଳ ବିକାର ହେବାରୁ ମୂଳ ପ୍ରକୃତିର ରୂପ ବୋଲି ଧରାଯାଇ ନାହାନ୍ତି । ଏଠାରେ ମନେ ରଖିବାକୁ ହେବ, ଅବ୍ୟକ୍ତ, ସୂକ୍ଷ୍ମରୁ ସୂକ୍ଷ୍ମ ହେଲେହେଁ ସବୁ ବ୍ୟକ୍ତ, ସ୍ଥୂଳ ନୁହେ । ଏହି ଅଷ୍ଟଧା ପ୍ରକୃତି ବ୍ୟକ୍ତ, କିନ୍ତୁ ସୂକ୍ଷ୍ମ । ପୁଣି ମନେ ରଖିବାକୁ ହେବ, ସାଂଖ୍ୟ ଓ ବେଦାନ୍ତର ପରିଭାଷାରେ ବିଶେଷ ଭେଦ ନାହିଁ । ପ୍ରକୃତି, ଗୁଣ ପ୍ରଭୃତି ଦୁଇଥିରେ ସମାନ । ଗୀତାରେ ଅନେକ ସ୍ଥଳରେ ସାଂଖ୍ୟରେ ପରିଭାଷା ମଧ୍ୟ ବ୍ୟବହୃତ ହୋଇଛି ।

ବ୍ୟକ୍ତର ସୂକ୍ଷ୍ମତର ପ୍ରକୃତି ବା 'ପରା' ପ୍ରକୃତିକୁ ବ୍ୟକ୍ତର ଅବ୍ୟକ୍ତ ଅଧ୍ୟାତ୍ମ ତତ୍ତ୍ୱ ବୋଲି କୁହାଯାଏ । ୮.୩,୧୮ ଦେଖ । ପୁରୁଷକୁ ଅବ୍ୟକ୍ତାତ୍ ଅବ୍ୟକ୍ତ (ଅବ୍ୟକ୍ତରୁ ଅବ୍ୟକ୍ତ—୮.୨୦ ଦେଖ) ବୋଲି ମଧ୍ୟ କୁହାଯାଏ । ଅତଃ ସୂକ୍ଷ୍ମ କ୍ଷର-ତତ୍ତ୍ୱ ମଧ୍ୟ ଅବ୍ୟକ୍ତ ବା ଅପ୍ରକାଶିତ, ମାତ୍ର ଅକ୍ଷର-ତତ୍ତ୍ୱ ସେ ଅବ୍ୟକ୍ତରୁ ଆହୁରି ଅବ୍ୟକ୍ତ— ୭.୨ ଟୀକା ଦେଖ । ୪ ।

**ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍ ।**
**ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍ ।୫।**

**ଅନ୍ୱୟ**—[କିନ୍ତୁ] ତୁ ମହାବାହୋ ! ଇୟଂ ଅପରା । ଇତଃ ଅନ୍ୟାଂ—ଯୟା ଇଦଂ ଜଗତ୍ ଧାର୍ଯ୍ୟତେ, [ତାଂ] ଜୀବଭୂତାଂ ମେ ପରାଂ ପ୍ରକୃତିଂ ବିଦ୍ଧି ।୫।

**ଟୀକା**—[କିନ୍ତୁ] ତୁ ହେ ମହାବାହୋ, [ଜଗତ ଉପଲଭ୍ୟମାନା] ଇୟଂ [ମମ] ଅପରା (ନିକୃଷ୍ଟା, ଯୌଗିକୀ, ସ୍ଥୂଳରୂପା ବ୍ୟକ୍ତା), [ପ୍ରକୃତିଃ] । ଇତଃ ଅନ୍ୟାଂ ଯୟା (ତଦପରାପ୍ରକୃତେର୍ବିକାରରୂପେଣ ବ୍ୟକ୍ତଂ) ଇଦଂ ଜଗତ୍ [ଭୂତମାତ୍ରଂ] ଧାର୍ଯ୍ୟତେ, [ବ୍ୟକ୍ତମୂଳାଂ ଅବ୍ୟକ୍ତାଂ ତାଂ] ଜୀବଭୂତାଂ (ସଚେତନେଷୁ ମନୁଷ୍ୟେଷୁ ବା ଜୀବାତ୍ମରୂପେଣ ପରିଣତାଂ) ମେ (ମମ) ପରାଂ (ମୌଳିକୀଂ, ଉତ୍କୃଷ୍ଟାଂ, ମମାତ୍ମକଲ୍ପାଂ ଅବ୍ୟକ୍ତେତିଜ୍ଞେୟାଃ) ପ୍ରକୃତିଂ ବିଦ୍ଧି ।୫।

**ଅର୍ଥ**—କିନ୍ତୁ ହେ ମହାବାହୁ, ଏ ହେଉଛି ମୋର ଅପରା ପ୍ରକୃତି । ଏହା ଛଡ଼ା ମୋର ପରା ପ୍ରକୃତି ଅଛି । ସେ ଚେତନ ବା ମନୁଷ୍ୟଠାରେ ଜୀବରୂପରେ ପ୍ରକାଶ ପାଏ । ସେହି ଆଧାରରେ ଏହି ଜଗତ୍ ଧରା ହୋଇଅଛି, ଜାଣ । ୫ ।

ବ୍ୟାଖ୍ୟା ସୂଚନା—ପର = ଶ୍ରେଷ୍ଠ, ଅବ୍ୟକ୍ତ, ମୌଳିକ—ଯହିଁରୁ ଅପର ଅର୍ଥାତ୍ ନିକୃଷ୍ଟ, ବ୍ୟକ୍ତ ବା ଯୌଗିକ ପ୍ରକୃତି ବାହାରିଛି । ଏହି ପର ପ୍ରକୃତି ଚେତନର ଜୀବ ପରି ଟିକିଏ ସୂଚନାରେ ବୁଝିବା ପଡ଼ିଲେ ହେଁ ଏହା ବସ୍ତୁତଃ ଅବ୍ୟକ୍ତ ବା ଇନ୍ଦ୍ରିୟ ମନ ବୁଦ୍ଧି ପ୍ରଭୃତିରେ ଜଣାପଡ଼େ ନାଇଁ । ଏହା ସମସ୍ତ ବ୍ୟକ୍ତ ଜଗତରେ ଆଧ୍ୟାତ୍ମ ସ୍ୱଭାବ—୮.୩ ଦେଖ । ଏହାଙ୍କୁହିଁ ପରେ ମହଦ୍ ବ୍ରହ୍ମ ବୋଲି କହିଛନ୍ତି—୧୪.୩ ଦେଖ । ଏଠାରେ କହିବାର ତାତ୍ପର୍ଯ୍ୟ—ସୃଷ୍ଟିର ସର୍ବମୂଳ 'ସ୍ୱଭାବକୁ' ମୋର ଯଥାର୍ଥ ପ୍ରକୃତି ବୋଲି ବୁଝ । ଅଷ୍ଟଧା ବ୍ୟକ୍ତ ପ୍ରକୃତିକୁ ମୋର ପ୍ରକୃତି ବୋଲି ବୁଝି ସେହିଠାରେ ରହି ଯା ନା । ସେ ସବୁର ମୂଳରେ ଯାହା ଅଛି, ସେ ସବୁ ଯହିଁରୁ ହେଉଛନ୍ତି, ସେହି ମୋର ସୃଷ୍ଟି ଶକ୍ତିମୟ ମୌଳିକ ପ୍ରକୃତି । ସାର ସୃଷ୍ଟିରେ ବିକାଶମୟ ତତ୍ତ୍ୱ ଓ ମନୁଷ୍ୟର ଜୀବାତ୍ମାର ସ୍ୱରୂପ—ଏ ଦୁହେଁ ଏକ ବସ୍ତୁ । ଏହାହିଁ ସୃଷ୍ଟି ପ୍ରକାଶର ମୂଳ ଓ ଏହାହିଁ ଯଥାର୍ଥ ପ୍ରକୃତି । ବ୍ୟକ୍ତମାନେ ସେହିଥିରୁ ବାହାରନ୍ତି ଓ ତାହାର ଛାୟା ମାତ୍ର । ତେଣୁ ସେହି ବ୍ୟକ୍ତ ପ୍ରକୃତି ନିକୃଷ୍ଟ, ତା କଥା ଗୁଢ଼ ।

ଏଇ ପର ପ୍ରକୃତି ବା ବ୍ୟକ୍ତର ମୂଳତତ୍ତ୍ୱ ଜ୍ଞାନଗମ୍ୟ, ବା 'ବିଜ୍ଞାନ'ର ଯଥାର୍ଥ ବିଷୟ । ଏହା ଅନୁଭବରେ ବାଶ ହୁଏ, ମାତ୍ର ଇନ୍ଦ୍ରିୟାଦିରେ ପ୍ରକାଶିତ ହୁଏ ନାଇଁ ।

ଜଗତ୍ = ଯେ ସବୁବେଳେ ଗତି କରୁଛି; ଅର୍ଥାତ୍, ଯାହା ନିତ୍ୟ ପରିଣାମରେ ଅବସ୍ଥାରୁ ଅବସ୍ଥାନ୍ତରକୁ ଯାଉଛି । ଏହାହିଁ ବ୍ୟକ୍ତ ବିଶ୍ୱ; ଭୂତଗ୍ରାମ; ଭୂତମାନେ ଇଂରେଜୀରେ Becoming । ଏହା 'ବିଜ୍ଞାନ'ର ବିଷୟ । 'ଜ୍ଞାନ'ର ବିଷୟ ଇଂରେଜୀରେ Being । ୫ ।

**ଏତଦ୍‌ଯୋନୀନି ଭୂତାନି ସର୍ବାଣୀତ୍ୟୁପଧାରୟ ।**
**ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥା । ୬ ।**

**ଅନ୍ୱୟ**—ସର୍ବାଣି ଭୂତାନି ଏତଦ୍‌ଯୋନୀନି ଇତି ଉପଧାରୟ । ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ, ତଥା ପ୍ରଳୟଃ । ୬ ।

**ଟୀକା**—ସର୍ବାଣି ଭୂତାନି (ବ୍ୟକ୍ତମାତ୍ରମିତ୍ୟର୍ଥଃ) ଏତଦ୍‌ଯୋନୀନି (ଏତତ୍ ପରପ୍ରକୃତିକାରଣାନି) ଇତି ଉପଧାରୟ ( ଦୃଢ଼ତୟା ଧାରଣାଂ କୁରୁ ) । [ଏବଂ] ଅହଂ କୃତ୍ସ୍ନସ୍ୟ (ସମଗ୍ରସ୍ୟ) ଜଗତଃ ପ୍ରଭବଃ (ଜନୟିତା), ତଥା ପ୍ରଳୟଃ (ସଂହାରକଃ) [ଭବାମି]—[ଭୂତାନି ଅବ୍ୟକ୍ତାଖ୍ୟାଂ ପ୍ରକୃତୌ ପ୍ରଲୀୟନ୍ତେ ] । ୬ ।

**ଅର୍ଥ**—ବ୍ୟକ୍ତମାନେ ସର୍ବଭୂତ ମୋର ଏହି ପର ପ୍ରକୃତିରୁ ବାହାରନ୍ତି ବୋଲି ଭଲ କରି ବୁଝି ରଖ୍ । ଏହିପରି ମୁଁ ଏ ସମଗ୍ର ଜଗତର ପ୍ରକାଶ ଓ ପ୍ରଳୟ । ଅର୍ଥାତ୍ ମୋଠାରୁ ବାହାରି ମୋଠାରେ ଲୀନ ହେଉଛନ୍ତି । ୨.୨୮; ୮.୧୮ ଦେଖ । ୬ ।

ବ୍ୟାଖ୍ୟା ସୂଚନା—କ୍ଷଣିକ ଜଗତ୍ ବସ୍ତୁସବୁ କିଛି ନୁହେଁ ବୋଲି ବିଗ୍ଭରିବା ଠିକ୍ ନୁହେଁ । ସର୍ବସ ବ୍ରହ୍ମର ପ୍ରକାଶ । ଶେଷରେ ଏହି ବ୍ରହ୍ମରେ ସବୁ ଠୁଳ ହୁଏ, କିଛିହିଁ କ୍ଷଣିକ ବା ଅସତ୍ ବୋଲି ହେୟ ନୁହେଁ । କାହିଁକିନା, ଏଇ ଭୂତମାନଙ୍କର 'ବିଜ୍ଞାନ' ତତ୍ତ୍ୱ ହେଉଛି, ଏଇ 'ପର' ପ୍ରକୃତି । ୬ ।

**ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ ।**
**ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ । ୭ ।**

**ଅନ୍ୱୟ**—ଧନଞ୍ଜୟ ! ମତ୍ତଃ ପରତରଂ କିଞ୍ଚିତ୍ ଅନ୍ୟତ୍ ନ ଅସ୍ତି ମୟି ଇଦଂ ସର୍ବଂ ସୂତ୍ରେ ମଣିଗଣାଃ ଇବ ପ୍ରୋତମ୍ । ୭ ।

**ଟୀକା**—[ଅତଏବ] ହେ ଧନଞ୍ଜୟ, ମତ୍ତଃ ( ପରମେଶ୍ୱରାତ୍ ) ପରତରଂ (ସୂକ୍ଷ୍ମତରଂ କାରଣଭୂତଂ) ଅନ୍ୟତ୍ କିଞ୍ଚିତ୍ ନ ଅସ୍ତି । [କାରଣଭୂତେ, ସୂକ୍ଷ୍ମତମ ରୂପେ, ଅନ୍ତର୍ଗତେ] ମୟି ଇଦଂ ସର୍ବଂ [ବ୍ୟକ୍ତମାନଂ, ଅନ୍ତର୍ଗତେ] ସୂତ୍ରେ ମଣିଗଣାଃ (ହାରମଣୟଃ) ଇବ ପ୍ରୋତଂ (ଗ୍ରଥିତଂ) । ୭ ।

**ଅର୍ଥ**— [ଅତଏବ] ହେ ଧନଞ୍ଜୟ, ମୋଠୁ ବଡ଼ ବା ଅଧିକ ସୂକ୍ଷ୍ମ ଆଉ କିଛି ନାହିଁ । [ ପରମ କାରଣ ହୋଇ ସମସ୍ତଙ୍କ ଭିତରେ ମୁଁ ସ୍ୱଭାବରୂପେ ଥିବାରୁ ] ମୋଠାରେ ଏ ଜଗତର ବସ୍ତୁମାନେ, ସୂତାରେ ଗୁନ୍ଥା ମାଳ ଗୁନ୍ଥା ହୋଇ ରହିଲା ପରି, ଗୁନ୍ଥା ହୋଇଛନ୍ତି । ୭ ।

**ରସୋଽହମପ୍ସୁ କୌନ୍ତେୟ ପ୍ରଭାସ୍ମି ଶଶିସୂର୍ଯ୍ୟୟୋଃ ।**
**ପ୍ରଣବଃ ସର୍ବବେଦେଷୁ ଶବ୍ଦଃ ଖେ ପୌରୁଷଂ ନୃଷୁ । ୮ ।**
**ପୁଣ୍ୟୋ ଗନ୍ଧଃ ପୃଥିବ୍ୟାଂ ଚ ତେଜଶ୍ଚାସ୍ମି ବିଭାବସୌ ।**
**ଜୀବନଂ ସର୍ବଭୂତେଷୁ ତପଶ୍ଚାସ୍ମି ତପସ୍ୱିଷୁ । ୯ ।**
**ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍ ।**
**ବୁଦ୍ଧିର୍ବୁଦ୍ଧିମତାମସ୍ମି ତେଜସ୍ତେଜସ୍ୱିନାମହମ୍ । ୧୦ ।**

ବଳଂ ବଳବତାମସ୍ମି କାମରାଗବିବର୍ଜିତମ୍ ।
ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ ।୧୧।
ଯେ ଚୈବ ସାତ୍ତ୍ୱିକା ଭାବା ରାଜସାସ୍ତାମସାଶ୍ଚ ଯେ ।
ମତ୍ତ ଏବେତି ତାନ୍ ବିଦ୍ଧି ନ ତ୍ୱହଂ ତେଷୁ ତେ ମୟି ।୧୨।

**ଅନ୍ୱୟ**—କୌନ୍ତେୟ ! ଅହଂ ଅପ୍‌ସୁ ରସଃ ଶଶିସୂର୍ଯ୍ୟୟୋଃ ପ୍ରଭା ଅସ୍ମି । ସର୍ବବେଦେଷୁ ପ୍ରଣବଃ; ଖେ ଶବ୍ଦଃ; ନୃଷୁ ପୌରୁଷଂ, ପୃଥିବ୍ୟାଂ ଚ ପୁଣ୍ୟଃ ଗନ୍ଧଃ, ବିଭାବସୌ ତେଜଃ ଚ ଅସ୍ମି । ସର୍ବଭୂତେଷୁ ଜୀବନଂ; ତପସ୍ୱିଷୁ ତପଃ ଚ ଅସ୍ମି । ପାର୍ଥ ! ମାଂ ସର୍ବଭୂତାନାଂ ସନାତନଂ ବୀଜଂ ବିଦ୍ଧି । [ଅହଂ] ବୁଦ୍ଧିମତାଂ ବୁଦ୍ଧିଃ ଅସ୍ମି । ଅହଂ ତେଜସ୍ୱିନାଂ ତେଜଃ; ବଳବତାଂ କାମରାଗବିବର୍ଜିତଂ ବଳଂ; ଭରତର୍ଷଭ ! ଭୂତେଷୁ ଧର୍ମାବିରୁଦ୍ଧଃ କାମଃ ଅସ୍ମି । ଯେ ଚ ଏବ ସାତ୍ତ୍ୱିକାଭାବାଃ ରାଜସାଃ ତାମସାଃ ଚ ଯେ ତାନ୍ ମତ୍ତଃ ଏବ ଇତି ବିଦ୍ଧି; ଅହଂ ତୁ ତେଷୁ ନ, ମୟି ତେ [ବର୍ତ୍ତନ୍ତେ] । ୮-୧୨ ।

**ଟୀକା**—[ତତଃ କିଂଭୂତଂ ସର୍ବଂ ମୟି ପ୍ରୋତଂ ଇତି ସୁବୋଧାୟ ସ୍ଥୂଳବସ୍ତୁନଃ ସୂକ୍ଷ୍ମଂ ଗୁଣଶକ୍ତିରୂପାଂ ପ୍ରକୃତିଂ ଉଦାହରତି ପଞ୍ଚଭିଃ] ହେ କୌନ୍ତେୟ । ଅହଂ ଅପ୍‌ସୁ (ଜଳେ) [ତଦନ୍ତର୍ଗତଂ ତନ୍ମାତ୍ରଂ] ରସଃ (ସ୍ୱାଦଃ) [ଅସ୍ମି]; ଶଶିସୂର୍ଯ୍ୟୟୋଃ ପ୍ରଭା (ଔଜ୍ଜ୍ୱଲ୍ୟଂ) ଅସ୍ମି, ସର୍ବବେଦେଷୁ [ଶବ୍ଦବ୍ରହ୍ମରୂପେଷୁ] ପ୍ରଣବଃ [ଓଁକାରଃ ଅସ୍ମି]—[ଯସ୍ମିନ୍ ବେଦାଃ ପ୍ରୋତାଃ ଇତ୍ୟେବଂ ସର୍ବତ୍ର], ଖେ (ଆକାଶେ) ଶବ୍ଦଃ (ଆକାଶସ୍ୟ ଗୁଣଃ ଶବ୍ଦ ଇତି ପ୍ରସିଦ୍ଧଂ) [ଅସ୍ମି]; ନୃଷୁ (ମନୁଷ୍ୟେଷୁ) ପୌରୁଷଂ (ମନୁଷ୍ୟତ୍ୱଂ—ପୁରୁଷକାରୋ ବା) [ଅସ୍ମି], ପୃଥିବ୍ୟାଂ (ଭୂମୌ) ପୁଣ୍ୟଃ (ସୁଗନ୍ଧୋ ଦୁର୍ଗନ୍ଧୋ ବେତି ଭେଦେନ ରହିତଃ) ତନ୍ମାତ୍ରତ୍ୱାତ୍ ଈଶ୍ୱରାଂଶସାଦୃଶ୍ୟତ୍ୱାଚ୍ଚ ପାବନଃ) ଗନ୍ଧଃ ଚ [ଅସ୍ମି]; ବିଭାବସୌ [ଅଗ୍ନୌ] ତେଜଃ (ଦୀପ୍ତିଃ) ଚ ଅସ୍ମି; ସର୍ବଭୂତେଷୁ (ସର୍ବପ୍ରାଣିଷୁ) ଜୀବନଂ [ଅସ୍ମି]; ତପସ୍ୱିଷୁ ତପଃ ଚ ଅସ୍ମି । ମାଂ ସର୍ବଭୂତାନାଂ ସନାତନଂ (ନିତ୍ୟଂ, ନିତ୍ୟଜାତଂ ବା, ବୀଜାନ୍ତରାଦ୍ୟନବସ୍ଥାରହିତଂ) ବୀଜଂ (ପ୍ରରୋହହେତୁଂ—ମୂଳଂ ବା) ବିଦ୍ଧି । ଅହଂ ବୁଦ୍ଧିମତାଂ ବୁଦ୍ଧିଃ (ତଦ୍‌ବୁଦ୍ଧିମତ୍ତ୍ୱଂ); ତେଜସ୍ୱିନାଂ (ଅଧୃଷ୍ୟାଣାଂ) ତେଜଃ (ତଦ୍‌ଧର୍ଷଣକାରଣଂ) ଅସ୍ମି, ବଳବତାଂ କାମରାଗବିବର୍ଜିତଂ (ତୃଷ୍ଣାସକ୍ତିରହିତଂ) [ଧୈର୍ଯ୍ୟରୂପଂ] ବଳଂ [ଅସ୍ମି]; ହେ ଭରତର୍ଷଭ, ଭୂତେଷୁ (ସୃଷ୍ଟବସ୍ତୁଷୁ, ପ୍ରାଣିଷୁ ବା) ଧର୍ମାବିରୁଦ୍ଧଃ (ସ୍ଥିତିଧର୍ମାନୁଗତଃ) କାମଃ (କର୍ମପ୍ରେରଣା) ଅସ୍ମି । [ଏବଂ ସର୍ବେ] ଯେ ଏବ ସାତ୍ତ୍ୱିକା (ଶାନ୍ତରୂପାଃ), ରାଜସାଃ (କର୍ମରୂପାଃ) ଚ, ଯେ ଚ ତାମସାଃ (ମୋହରୂପାଃ)

ଭାବାଃ—ଭାବାଃ [ଭାବାନ୍] ମତ୍ତଃ ଏବଂ ଇତି ବିଦ୍ଧି । ଅହଂ ତୁ ତେଷୁ [ସ୍ଥିତେଷୁ ଅପି, ଇତି] ନ—(ତେଷୁ ନାହଂ ଆତ୍ମବଶ୍ୟତ ଇତି ବା ଭାବଃ) । ମୟି [ସ୍ଥିତେ ସତି] ତେ [ବର୍ତ୍ତନ୍ତେ] (ମୟି ପ୍ରୋତାଃ) ତେ ଆତ୍ମବନ୍ତଃ—ଇତି ଭାବଃ । ୮-୧୨ ।

**ଅର୍ଥ**—[ଏବେ କିପରି ମୋଠି ଗୁନ୍ଥା ହୋଇଛନ୍ତି ବୋଲି ଦେଖାଇ ଦେବାପାଇଁ କେତେ ଦେଖାଯାଉଥିବା ବସ୍ତୁର ଭିତରେ ସୂକ୍ଷ୍ମରୂପେ ଥିବା ସେହି ବସ୍ତୁମାନଙ୍କର ଗୁଣ ବା ଶକ୍ତି ଧରି, ଉଦାହରଣ ଦେଇ ପାଞ୍ଚ ଶ୍ଲୋକରେ କହୁଚନ୍ତି]— ହେ କୌନ୍ତେୟ, ମୁଁ ଜଳରେ ସ୍ୱାଦ; ଚନ୍ଦ୍ର ସୂର୍ଯ୍ୟରେ ହେଉଚି ଆଲୋକ; ବେଦରେ ଶବ୍ଦବ୍ରହ୍ମରୂପ ଓଁକାର; ଆକାଶରେ ଶବ୍ଦ; ମନୁଷ୍ୟରେ ମନୁଷ୍ୟତ୍ୱ କିମ୍ବା ପୁରୁଷକାର; ଭୂମିରେ ପବିତ୍ର ଗନ୍ଧ; ପୁଣି ଅଗ୍ନିରେ ହେଉଚି ତେଜ; ସବୁ ପ୍ରାଣୀରେ ଜୀବନ ଓ ତପସ୍ୱୀଠାରେ ହେଉଚି ତପସ୍ୟା । ମତେଇ ଭୂତମାନଙ୍କର ନିତ୍ୟ ବୀଜ ବୋଲି ଜାଣ । ମୁଁ ବୁଦ୍ଧିମାନ୍‌ଙ୍କ ବୁଦ୍ଧି; ତେଜସ୍ୱୀର ତେଜ, ବଳବାନ୍‌ର ହେଉଚି, ଲୋଭ ସକ୍‌ ନ ଥିବା ଧୈର୍ଯ୍ୟବଳ । ହେ ଭରତର୍ଷଭ, ମୁଁ ହେଉଚି, ଭୂତମାନଙ୍କରେ ସ୍ୱଧର୍ମ ନ ଛାଡ଼ିବାର ପ୍ରବୃତ୍ତି ବା ଇଚ୍ଛା । ଏହିପରି ଯେ ସାତ୍ତ୍ୱିକ ଭାବ, ଯେ ରାଜସ ବା ତାମସ ଭାବ— ସେସବୁ ମୋଠାରୁ ବୋଲି ଏକା ଜାଣ । ମୁଁ କିନ୍ତୁ ସେସବୁ ଥିବାରୁ ଅଚ୍ଛି—ଏହା ନୁହେ । ସେସବୁ ମୁଁ ଥିବାରୁ ଅଛନ୍ତି । (ଅର୍ଥାତ୍, ତାଙ୍କ ଯୋଗେ ମୁଁ ଅଛି ଏପରି ନୁହେ ମୋ ଯୋଗେ ସେମାନେ ଅଛନ୍ତି କିମ୍ବା ମୁଁ ସେ ସବୁରେ ଆତ୍ମାକୁ ବାଣ୍ଟିଦେଇ ରହିଚି ଏଣୁ ତୁ ସେ ସବୁକୁ ଜାଣିଲେ ଟିକିଏ ଟିକିଏ କରି ମୋତେ ଜାଣିଗଲୁ ଏପରି ନୁହେ । ସେ ସବୁ ମୋଠି ଗୁନ୍ଥା ହୋଇ ଆତ୍ମବନ୍ତ ହୋଇଚନ୍ତି ବା ମୁଁ ଥିବାରୁ ମତେ ଆଧାର କରି ଅଛନ୍ତି । ତେଣୁ ମତେ ଜାଣି ସେସବୁକୁ ବୁଝ୍ । ୯.୪ ଦେଖ୍ । ସେମାନେ ମୋର ପ୍ରକାଶ: କିନ୍ତୁ ମୁଁ କେବଳ ପ୍ରକାଶ ନୁହେ ) । ୮-୧୨ ।

ବ୍ୟାଖ୍ୟା ସୂଚନା—ଭୂମିରେ ପବିତ୍ର ଗନ୍ଧ, ଅର୍ଥାତ୍ ସୁଗନ୍ଧ ଦୁର୍ଗନ୍ଧ ଦୁଇଥିରେ ସମାନଭାବରେ ଥିବା ତନ୍ମାତ୍ରରୂପ ଗନ୍ଧ । ଏହିପରି ଜଳରେ ରସ ବା ସ୍ୱାଦ, ଆକାଶରେ ଶବ୍ଦ, ଅଗ୍ନିରେ ତେଜ ବୋଲି ବୁଝିବାକୁ ହେବ । ଆକାଶର ଗୁଣ ଶବ୍ଦ ବୋଲି ପ୍ରସିଦ୍ଧି ଥିଲା ।

ଭୂତମାନଙ୍କର ସନାତନ ବା ନିତ୍ୟବୀଜ । ଅର୍ଥାତ୍ ଯେଉଁ ବୀଜ ତା ମୂଳବସ୍ତୁ ସର୍ବଦା ଭୂତ ପ୍ରକାଶ କରୁଅଛି । ବୀଜର ପୁଣି ବୀଜ, ତାର ପୁଣି ବୀଜ କିମ୍ବା ଗଛରୁ ଚଢ଼େଇ, ପୁଣି ଚଢ଼େଇରୁ ଗଛ, ଏପରି ଜନ୍ମ ବା ଚେଷ୍ଟାର ବୀଜ ନୁହେ । ତେଜସ୍ୱୀ=ଯେ କିଛି ନ ମାନି ଦୃଢ଼ଭାବରେ ନିଜ କାମ କରିଯାଇପାରେ । ବଳ= ଏଠାରେ ଧୈର୍ଯ୍ୟ, ଧୃତି ବା ହଟିଯାଇ ନ ଯିବା । ପରପୀଡ଼ାର ବଳ ନୁହେ । ଧର୍ମବିରୁଦ୍ଧ କାମ=ସୃଷ୍ଟି ପ୍ରକାଶର ନିୟମ ହିଁ ଭୂତମାନଙ୍କର ଧର୍ମ ବା ସ୍ୱଧର୍ମ । ସେଇ ଧର୍ମରେ

ସୂର୍ଯ୍ୟ ଉଠେ, ଋତୁ ହୁଏ, ଗ୍ରହ ତାରା ଚଳ ଆଚଯାତ ହୁଅନ୍ତି, ଜନ୍ତୁ ଆହାର ନିଦ୍ରା ଭୟ ମୈଥୁନରେ ଜୀବଧର୍ମ ପାଳେ—ଇତ୍ୟାଦ । ଏଇ ଧର୍ମ ପାଳିବାରେ ଭୂତମାତ୍ରର ପ୍ରବୃତ୍ତି ସ୍ପଷ୍ଟ । ସେ ପ୍ରବୃତ୍ତି ଜନ୍ତୁଠାରେ କୌଣସି ଅଭାବଜନିତ ଇଚ୍ଛାରୂପେ ପ୍ରକାଶ ପାଏ । ଏହି ପ୍ରବୃତ୍ତି ଭୂତମାତ୍ରର ନିତ୍ୟ ଧର୍ମବିରୁଦ୍ଧ 'କାମ' ବୋଲି ବୁଝାଯାଇଚ । ଏଇ ଶ୍ଳୋକରେ କାମର ପ୍ରୟୋଗ ଓ ତୁଳନା ମନୁଷ୍ୟର କରିବାର କଥା । ତାହା ସେ ନ କଲେ ସେ ଫଳରର କର୍ତ୍ତା ହୁଏ । ୧୦ରେ ସୃଷ୍ଟି ନିୟମର ଅନୁଗାମୀ ସେଇ କାମକୁ ଲକ୍ଷ୍ୟ କରିଯାଇଚ । ମାନବର ସାଧାରଣ ତୃଷ୍ଣା ଆସକ୍ତି ପ୍ରଭୃତି ଏ ସୃଷ୍ଟି ନିୟମରୁ ବହିର୍ଭୂତ ଓ ମୁକ୍ତିବିରୋଧୀ ବୋଲି ଭକ୍ତିକୁ ତାହା ଈଶ୍ୱରାଂଶ ବୋଲି ଭଗବାନ୍ ଏଠାରେ ଉଦାହରଣ ଦେଉ ନାହାନ୍ତି । ଭାବ = ପ୍ରକାଶ, ଯାହା ଅଛି ବା ହୁଏ, ସତ୍ତା । ସାତ୍ତ୍ୱିକ = ଶାନ୍ତିର, ରାଜସ = କର୍ମର, ତାମସ = ମୋହର । ୮.୧୨ ।

**ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍ ।**
**ମୋହିତଂ ନାଭିଜାନାତି ମାମେଭ୍ୟଃ ପରମବ୍ୟୟମ୍ ।୧୩।**

**ଅନ୍ୱୟ**—ଏଭିଃ ଗୁଣମୟୈଃ ତ୍ରିଭିଃ ଭାବୈଃ ମୋହିତଂ ଇଦଂ ସର୍ବଂ ଜଗତ୍ ଏଭ୍ୟଃ ପରଂ ଅବ୍ୟୟଂ ମାଂ ନ ଅଭିଜାନାତି ।୧୩।

**ଟୀକା**—[ଏବଂ ତ୍ୱୟି ସ୍ଥିତାଃ ସର୍ବେ କଥଂ ତ୍ୱାଂ ନ ଜାନନ୍ତି ? ଇତ୍ୟାଶଙ୍କ୍ୟାହ] —ଏଭିଃ (ଉକ୍ତରୂପୈଃ ସାତ୍ତ୍ୱିକାଦିଭିଃ) ତ୍ରିଭିଃ ଗୁଣମୟୈଃ ଭାବୈଃ (ବିକାରୈଃ) ମୋହିତଂ [ସତ୍] ଇଦଂ ସର୍ବଂ ଜଗତ୍, ଏଭ୍ୟଃ (ବିକାରବଦ୍‌ଭ୍ୟୋ ଭାବେଭ୍ୟଃ) ପରଂ (ଉପଲକ୍ଷ—ଅତୀତଂ, ସୂକ୍ଷ୍ମତରମିତି ଭାବଃ) ଅବ୍ୟୟଂ (ନିର୍ବିକାରଂ) ମାଂ ନ ଅଭି (ସର୍ବତୋଭାବେନ) ଜାନାତି । ୧୩ ।

**ଅର୍ଥ**—[ତୁମଠାରେ, ତୁମର ଯୋଗୁ ସମସ୍ତେ ଅଛନ୍ତି, ତେବେ ତୁମକୁ ନ ଜାଣୁଚନ୍ତି କିପରି ?—ଏଥିକୁ କହୁଚନ୍ତି]—ସୃଷ୍ଟିଯାକ ସମସ୍ତେ ଏହିସବୁ ସାତ୍ତ୍ୱିକାଦି-ଗୁଣଜନିତ ବିକାରରେ ଜ୍ଞାନ ହରାଇ ଥିବାରୁ ମୁଁ ଯେ ଏଇ ବିକାରଭାବରୁ ଅତୀତ ଓ ମୋର ଯେ ବିକାର ନାହିଁ—ଏହା ଠିକଣା କରି କେହି ଜାଣିପାରନ୍ତି ନାହିଁ ।୧୩।

**ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।**
**ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ।୧୪।**

**ଅନ୍ୱୟ**—ହି ଏଷା ଗୁଣମୟୀ ମାୟା ମମ, [ ସା ] ଦୈବୀ, ଦୁରତ୍ୟୟା, ଯେ ମାଂ ଏବ ପ୍ରପଦ୍ୟନ୍ତେ ତେ ଏତାଂ ମାୟାଂ ତରନ୍ତି । ୧୪ ।

**ଟୀକା**—[ତର୍ହିବ ତେ ଭକ୍ତାଃ କଥଂ ମୋହୟନ୍ତି, କଥଂ ବା ତ୍ୱାଂ ଜ୍ଞାସ୍ୟନ୍ତି, ଇତ୍ୟତଃ ଆହ]—ହି (ଯତଃ) ଏଷା ଗୁଣମୟୀ ମାୟା (ସର୍ଗ-ପ୍ରକାଶଶକ୍ତିଃ—ବ୍ୟକ୍ତ-ବୃତ୍ତିଃ) ମମ; [ଅତଏବ ସା] ଦୈବୀ (ଈଶ୍ୱରସ୍ୱଭାବପ୍ରାପ୍ତା—ଏଷା, ଆତ୍ମା ଇତଃ ପ୍ରତୀୟତେ —ଇତ୍ୟର୍ଥଃ), [ତତଶ୍ଚ ସା] [ଦୁରତ୍ୟୟା ଦୁଃଖେନୋତ୍ତରଣୀୟା—ତଥୈବ ଈଶ୍ୱର ବୁଦ୍ଧ ତ୍ୱାଦତ ଭବେଃ [ କିଂତୁ ] ଯେ [ଜନାଃ ଶ୍ରଦ୍ଧୟା] ମାଂ ଏବ ପ୍ରପଦ୍ୟନ୍ତେ (ଅନନ୍ୟାନ୍ତ —ଭଜନ୍ତେ) ତେ ଏତାଂ ମାୟାଂ ତରନ୍ତି (ଅତିଯନ୍ତି) । ୧୪ ।

**ଅର୍ଥ**—[ତୁମର ତ ଯେ ଭକ୍ତଗୁ, ତେବେ କାହିଁକି ମୋହ କରନ୍ତି ? କପର ବା ତେବେ ଲୋକେ ତୁମକୁ ଜାଣିବେ ? ଏଥକୁ କହୁଚନ୍ତି]—ଏ ଗୁଣମୟୀ ମାୟା ପର ମୋର ପ୍ରକାଶ ଶକ୍ତି; ସେଥିପାଇଁ ସେଇ ଯେ ଦେବତା ପର ଜଣାପଡ଼େ । ତାକୁ ତୁଟାଇବା ବଡ଼ କଷ୍ଟ । ମାତ୍ର ଯେ ବିଶ୍ୱାସରେ ମତେ ଧରନ୍ତି, ସେଇମାନେ ଏ ମାୟାକୁ ଡ଼େଇଁଯାନ୍ତି । ୧୪ ।

ବ୍ୟାଖ୍ୟା ସୂଚନା—ମାୟା = ଈଶ୍ୱରଙ୍କ ପ୍ରକାଶ ପ୍ରକୃତି ବା ସ୍ୱଭାବର ଏହା ଗୋଟିଏ ବୃତ୍ତିପରି । ଏହା ତିନି ଗୁଣର ସୂକ୍ଷ୍ମତମ ସତ୍ତା କହିଲେ ଚଳେ । ଗୁଣମାନଙ୍କରୁ ହେଉଥିବା ପ୍ରକାଶ, ପ୍ରବୃତ୍ତି, ମୋହାଦରେ ସୃଷ୍ଟିର ଜ୍ଞାନକୁ ମାପେ ବା ନିରୂପଣ କରେ ବୋଲି ଏହାର ନାମ 'ମାୟା' । ସୁବିଧା ପାଇଁ ଏହାକୁ କେବେ କେବେ ଗାଳି 'ପ୍ରକୃତି' ବୋଲି କୁହାଯାଏ । ମାତ୍ର ଏହା ଗୁଣହେତୁକ ଗୋଟିଏ ଆବରଣ ବା ପରଦା ପରି ପ୍ରକୃତ ତତ୍ତ୍ୱକୁ ଯେପରି କ ଘୋଡ଼ାଇ ରଖେ । ଏହା ଦୈବୀ, ଅର୍ଥାତ୍ ଦେବ ବା ଈଶ୍ୱରସମ୍ବନ୍ଧୀୟ—ଏଣୁ ସେହିପରି ଜଣାପଡ଼େ । ଏହାକୁ ହିଁ ଅତ୍ମା ବୋଲି ଲୋକେ ବୁଝିଯାନ୍ତି; ଓ ଆତ୍ମଜ୍ଞାନକୁ ନ ଉଠି ରହିଯାନ୍ତି । ଏଣୁ ଏ ଦୁରତ୍ୟୟା ବା କଷ୍ଟରେ ତୁଟେ । ୧୪ ।

## ନ ମାଂ ଦୁଷ୍କୃତିନୋ ମୂଢ଼ାଃ ପ୍ରପଦ୍ୟନ୍ତେ ନରାଧମାଃ ।
## ମାୟୟାପହୃତଜ୍ଞାନା ଆସୁରଂ ଭାବମାଶ୍ରିତାଃ ।୧୫।

**ଅନ୍ୱୟ**—ମାୟୟା ଅପହୃତଜ୍ଞାନାଃ ଆସୁରଂ ଭାବଂ ଆଶ୍ରିତାଃ ଦୁଷ୍କୃତିନଃ ମୂଢ଼ାଃ ନରାଧମାଃ ମାଂ ନ ପ୍ରପଦ୍ୟନ୍ତେ । ୧୫ ।

**ଟୀକା**—[ଅସ୍ମାତ୍ ହେତୋଃ ଏତସ୍ୟା] ମାୟୟା ଅପହୃତଜ୍ଞାନାଃ (ମାୟୈବ ସର୍ବମିତି ମନ୍ୟମାନାଃ) [ଅତଏବ] ଆସୁରଂ ଅସୁଷୁ ରମମାଣାଂ ଇମଂ—ଆସୁରଂ, ଅଜ୍ଞାନାତ୍ମକଂ, ଯଦ୍ ବା ନ ଦୈବଂ ଜ୍ଞାନାତ୍ମକମିତିଯାବତ୍) ଭାବଂ (ସ୍ୱଭାବଂ) ଆଶ୍ରିତାଃ ଦୁଷ୍କୃତିନଃ (ଅପାଚାରାଃ) ମୂଢ଼ାଃ (ମୋହଂଗତାଃ) ନରାଧମାଃ (ନିକୃଷ୍ଟ ଜନାଃ) ମାଂ ନ ପ୍ରପଦ୍ୟନ୍ତେ (ପ୍ରାପ୍ତୁଂ ଯତନ୍ତେ) । ୧୫ ।

**ଅର୍ଥ**—ଏଣୁ ଏହି ମାୟାରେ ଜ୍ଞାନ ହରାଇ ଅସୁରଭାବ ଧରି ଅପକର୍ମୀ, ମୂଢ଼, ଅଧମ ଲୋକେ ମତେ ଭଜନ୍ତି ନାହିଁ । ୧୫ ।

ବ୍ୟାଖ୍ୟା ସୂଚନା—ଆସୁର=ନ ସୁର ବା ସୂର୍ଯ୍ୟ—ଅସୁର, ଅନ୍ଧକାର, ଅଜ୍ଞାନ; ସେଇ ସମ୍ବନ୍ଧୀୟ ଆସୁର, ଅଜ୍ଞାନାତ୍ମକ କର୍ମୀ ସୁର ଦେବ (ଆଲୋକ), ସମ୍ବନ୍ଧୀୟ ନୁହେ । ନାସ୍ତିକ, ଅନାସ୍ତିକ କେତେକ ବେଦ-ବିରୋଧୀଙ୍କୁ ଗୀତାରେ 'ଆସୁର' କୁହାଯାଇଛି—୧୬, ୭-୨୦ ଦେଖ । ୧୫ ।

**ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ ।**
**ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ॥ ୧୬ ॥**

**ଅନ୍ୱୟ**—ସ୍ପଷ୍ଟ । ୧୬ ।

**ଟୀକା**—[କେ ଭଜନ୍ତୀତ୍ୟାହ]—ହେ ଅର୍ଜୁନ, ଚତୁର୍ବିଧାଃ ସୁକୃତିନଃ (ସଦାଚାରାଃ) ଜନାଃ ମାଂ ଭଜନ୍ତେ । ହେ ଭରତର୍ଷଭ, ଆର୍ତ୍ତଃ (ଆପନ୍ନଃ) ଜିଜ୍ଞାସୁଃ (ତତ୍ତ୍ୱଜ୍ଞାନମିଚ୍ଛୁଃ) ଅର୍ଥାର୍ଥୀ (ପ୍ରୟୋଜନପରଃ) ଜ୍ଞାନୀ (ଆତ୍ମବିତ୍)—[ ଏତେ ତେ ଚତୁର୍ବିଧାଃ ] । ୧୬ ।

**ଅର୍ଥ**—[କିଏ ଭଜନ୍ତି ? କହୁଛନ୍ତି]—ହେ ଅର୍ଜୁନ, ଚାରି ପ୍ରକାର ପୁଣ୍ୟବନ୍ତ ଲୋକ ମତେ ଭଜନ୍ତି । ହେ ଭରତର୍ଷଭ, କିଏ ଦୁଃଖରେ ପଡ଼ି ଭଜେ; କିଏ ଜାଣିବା ପାଇଁ ଭଜେ; କିଏ ଧନପୁତ୍ରାଦି କିଛି ପାଇବାପାଇଁ ଭଜେ; କିଏ ଜ୍ଞାନ ହେତୁରୁ ଭଜେ । [ ଏହି ସେ ଚାରିପ୍ରକାର ] । ୧୬ ।

**ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତିର୍ବିଶିଷ୍ୟତେ ।**
**ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ ॥୧୭॥**

**ଅନ୍ୱୟ**—ତେଷାଂ ଏକଭକ୍ତିଃ, ନିତ୍ୟ ଯୁକ୍ତଃ, ଜ୍ଞାନୀ ବିଶିଷ୍ୟତେ । ଅହଂ ଜ୍ଞାନିନଃ ଅତ୍ୟର୍ଥ ପ୍ରିୟଃ, ସ ଚ ମମ ପ୍ରିୟଃ । ୧୭ ।

**ଟୀକା**—[ଜ୍ଞାନୀ ଶ୍ରେଷ୍ଠଂ ଶ୍ରେଷ୍ଠ ଇତ୍ୟାହ]—ତେଷାଂ [ମଧ୍ୟେ] ଏକଭକ୍ତିଃ (ଏକଂ ଏବ ମାଂ ଭଜମାନଃ) ନିତ୍ୟଯୁକ୍ତଃ (ସଦା ମମ ସମତ୍ୱେନ ସ୍ଥିତଃ) [ସନ୍] ଜ୍ଞାନୀ ବିଶିଷ୍ୟତେ [ଆର୍ତ୍ତଃ ଦୁଃଖାତ୍ ନିବୃତ୍ତୌ, ଜିଜ୍ଞାସୁଃ ତତ୍ତ୍ୱାଭାସପ୍ରାପ୍ତିମାତ୍ରାପ୍ତୌ—ଅଥବା ଅନ୍ୟ ଦେବତାୟାଂ, ଅର୍ଥାର୍ଥୀ ପ୍ରୟୋଜନସିଦ୍ଧୌ, କଦାଚିତ୍ ବିରମନ୍ତି । ନ ତଥା

ଜ୍ଞାନୀଚ ଭାବଃ ]। [ଯତଃ] ଅହଂ ଜ୍ଞାନିନଃ ଅତ୍ୟର୍ଥଂ (ଶ୍ରେଷ୍ଠପୁରୁଷାର୍ଥାୟ—ସର୍ବଶ୍ରେଷ୍ଠ ପ୍ରୟୋଜନାୟ) ପ୍ରିୟଃ, ସଃ ଚ ମମ [ତଥା ସର୍ଗପ୍ରକାଶେ ମମ ଶ୍ରେଷ୍ଠପ୍ରୟୋଜନାୟ] ପ୍ରିୟଃ (ପ୍ରିୟଂକରଃ) । ୧୭ ।

**ଅର୍ଥ**—[କିନ୍ତୁ ଜ୍ଞାନୀ ଏଥିରେ ଶ୍ରେଷ୍ଠ ବୋଲି କହୁଅଛନ୍ତି]—ସର୍ବଦା ମୋର ସମାଧିରେ ଲାଗି ରହୁ ଏକା ମୋତେ ଭଜେ ବୋଲି ଜ୍ଞାନୀ ସେମାନଙ୍କ ଭିତରେ ବଡ଼ । ମୋକ୍ଷସାଧନ ନିମନ୍ତେ ମୁଁ ଜ୍ଞାନୀର ଭାରି ପ୍ରିୟ । ମୋ ସୃଷ୍ଟିରେ ମୋତେ ଚାହେଁ ବୋଲି ଜ୍ଞାନୀ ବି ମୋର ଭାରି ପ୍ରିୟ । ୧୭ ।

ବ୍ୟାଖ୍ୟା ସୂଚନା—[ଦୁଃଖୀ ସୁଖବେଳେ ଜିଜ୍ଞାସୁ (ମତେ ଜାଣିବାପାଇଁ ଲୋଡ଼ୁଥିବା ଲୋକ) ଈଶ୍ୱର ପର ଲାଗୁଥିବା ମାୟା ବା ଅନ୍ୟ ଦେବତାରେ, ଅର୍ଥାର୍ଥୀ, ଲୋଡ଼ିବା କଥା ପାଇଗଲେ, ଈଶ୍ୱରଭାବରୁ ଅଲଗା ହୋଇ ଯାଇପାରନ୍ତି; କିନ୍ତୁ ଜ୍ଞାନୀ କେବେ ହୁଏ ନାହିଁ—ଏହି ତାତ୍ପର୍ଯ୍ୟ । ୧୭ ।

**ଉଦାରାଃ ସର୍ବ ଏବୈତେ ଜ୍ଞାନୀ ତ୍ୱାତ୍ମୈବ ମେ ମତମ୍ ।**
**ଆସ୍ଥିତଃ ସ ହି ଯୁକ୍ତାତ୍ମା ମାମେବାନୁତ୍ତମାଂ ଗତିମ୍ । ୧୮ ।**

**ଅନ୍ୱୟ**—ସର୍ବେ ଏବ ଏତେ ଉଦାରାଃ [କିଂ] ତୁ ଜ୍ଞାନୀ ମମ ଆତ୍ମା ଏବ [ଇତି] ମେ ମତମ୍ ! ହି ସଃ ଯୁକ୍ତାତ୍ମା ମାଂ ଏବ ଅନୁତ୍ତମାଂ ଗତିଂ ଆସ୍ଥିତଃ । ୧୮ ।

**ଟୀକା**—[ଅତଃ ନ ଅପରେ ଦ୍ୱେଷ୍ୟାଃ ଇତ୍ୟାହ] ସର୍ବେ ଏବ ଏତେ [ଚତୁର୍ବିଧାଃ] ଉଦାରାଃ (ଉତ୍ତମା—ମମ ପ୍ରିୟା ଇତି ଭାବଃ) । [କିଂ] ତୁ ଜ୍ଞାନୀ ମମ ଆତ୍ମା ଏବ [ଇତି] ମେ (ମମ) ମତମ୍ । ହି (ଯତଃ) ସଃ ଯୁକ୍ତାତ୍ମା (ସମାହିତବୁଦ୍ଧିଃ) ମାଂ ଏବ ଅନୁତ୍ତମାଂ (ନାସ୍ତି ଉତ୍ତମା ଯସ୍ୟାଃ ତାଂ) ଗତିଂ (ମତ୍ୱା) ଆସ୍ଥିତଃ (ଆଶ୍ରିତଃ) । ୧୮ ।

**ଅର୍ଥ**—[ତେବେ ଆଉ ସମସ୍ତଙ୍କୁ ମୁଁ ପୁଛୁ ନାହିଁ ବୋଲି ବୁଝିବା] ଏ ଚାରି ପ୍ରକାରଯାକ ସମସ୍ତେ ଅତି ଲୋକ ସତ; କିନ୍ତୁ ଜ୍ଞାନୀ ଯେ ମୋର ଆତ୍ମା (ବା ମୁଁ ନିଜେ) ବୋଲି ମୁଁ କହୁଛି । କାହିଁକି ନା, ସେ ମୋଠି ନିଜକୁ ବରାବର ଲଗାଇ ରଖି, ମତେ ଛାଡ଼ିଲେ ଆଉ ଭଲ ଗତି ନାହିଁ ବୋଲି ମତେ ହିଁ ଧରିଥାଏ । ୧୮ ।

**ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ ।**
**ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ ।୧୯।**

**ଅନ୍ୱୟ**—ଜ୍ଞାନବାନ୍ ବହୂନାଂ ଜନ୍ମନାଂ ଅନ୍ତେ ମାଂ ପ୍ରପଦ୍ୟତେ । ବାସୁଦେବଃ ସର୍ବଂ ଇତି [ଭଜମାନଃ] ସ ମହାତ୍ମା ସୁଦୁର୍ଲଭଃ । ୧୯ ।

**ଟୀକା**—[ଅତଂର୍ଥପ୍ରିୟତ୍ୱଂ ଦ୍ରଢ଼ୟତି]—ଜ୍ଞାନବାନ [ନୈକଜନ୍ମକ ଚେତ୍ ନତ୍ୟୁକ୍ତତ୍ୱାତ୍] ବହୂନାଂ ଜନ୍ମନାଂ ଅନ୍ତେ [ଅପି] ମାଂ ପ୍ରପଦ୍ୟତେ (ଲଭତେ) । ବାସୁଦେବଃ (ସର୍ବଭୂତାଧିବାସଃ ଦେବଃ; ପ୍ରାଣିଷୁ ପ୍ରତ୍ୟଗାତ୍ମରୂପଃ; ବ୍ୟକ୍ତେଷୁ ମୁକ୍ତଃ ବିଶ୍ୱାତ୍ମା ବା) ସର୍ବଂ ଇତି [ଭଜମାନଃ] ସଃ ମହାତ୍ମା ସୁଦୁର୍ଲଭଃ (ସହସ୍ରେଷୁ କଶ୍ଚିତ୍ ଇତ୍ୟୁକ୍ତମ୍) । ୧୯ ।

**ଅର୍ଥ**—[କାହିଁକି ଜ୍ଞାନୀ ଅତି ପ୍ରିୟ, ସେଇ କଥା ଭଲ କରି କହୁଚନ୍ତି]—[ବିଶ୍ୱବର ମୋଠି ଲଗି ରହି ଯେତେ ସାଧନା ଦରକାର ହେଉ ପଛକେ, ଏକ ଜନ୍ମରେ ନହେଲେ ବି ଥୁଏ ତ] ବହୁଜନ୍ମରେ ଭଜି ଭଜି ଶେଷରେ ଜ୍ଞାନୀ ମୋତେ ପାଏ । ବାସୁଦେବ ସବୁ ବୋଲି ଅନୁଭବ କରୁଥିବା ସେପରି ମହାତ୍ମା ଯେ ବଡ଼ ଦୁର୍ଲଭ । (ଅର୍ଥାତ୍, ଖାଣ୍ଟି କଦବା ଜଣେ—୭.୩ ଦେଖ) । ୧୯ ।

ବ୍ୟାଖ୍ୟା ସୂଚନା—ବାସୁଦେବ=ସବୁ ପ୍ରାଣୀମାନଙ୍କରେ ବାସ କରୁଥିବା ଦେବତା ବା ଆତ୍ମା, କିଂବା ବ୍ୟକ୍ତିରେ ଫିଟି ପଡ଼ି ପ୍ରକାଶ ହୋଇଚ ଯେଉଁ ବିଶ୍ୱାତ୍ମା —ବିଜ୍ଞାନ-ତତ୍ତ୍ୱ । ଜ୍ଞାନୀ ଭକ୍ତ ପକ୍ଷରେ ଏହି ବ୍ୟକ୍ତ ତତ୍ତ୍ୱରୂପେ ଈଶ୍ୱର ଧାରଣା ସହଜ । ନାରାୟଣୀୟ ଧର୍ମମତରେ ବାସୁଦେବ (ଆତ୍ମା), ପ୍ରଦ୍ୟୁମ୍ନ (ଜୀବ), ଅନିରୁଦ୍ଧ (ମନ) ଓ ସଂକର୍ଷଣ (ଅହଂକାର), ଏହି ଚାରିଟିରୁ ସୃଷ୍ଟି ବୋଲି କୁହାଯାଇଚ । ଏହାକୁ 'ଚତୁର୍ବ୍ୟୂହ' କହନ୍ତି । କିନ୍ତୁ ଗୀତାରେ 'ବାସୁଦେବ' ହିଁ ସବୁ ବୋଲି କୁହାଯାଇଚ । ଆଉ ତିନି ଏହି ଏକ ବ୍ୟୂହରୁ ବାହାରନ୍ତି, ଏହା ଗୀତାର ମତ ବୋଲି ବୁଝିବାକୁ ହେବ । ୧୦.୬ ଟୀକା ଦେଖ । ୧୯ ।

**କାମୈସ୍ତୈସ୍ତୈର୍ହୃତଜ୍ଞାନାଃ ପ୍ରପଦ୍ୟନ୍ତେଽନ୍ୟ ଦେବତାଃ ।**
**ତଂ ତଂ ନିୟମମାସ୍ଥାୟ ପ୍ରକୃତ୍ୟା ନିୟତାଃ ସ୍ୱୟା । ୨୦ ।**

**ଅନ୍ୱୟ**—ସ୍ୱୟା ପ୍ରକୃତ୍ୟା ନିୟତାଃ ତୈଃ ତୈଃ କାମୈଃ ହୃତଜ୍ଞାନାଃ ତଂ ତଂ ନିୟମଂ ଆସ୍ଥାୟ ଅନ୍ୟଦେବତାଃ ପ୍ରପଦ୍ୟନ୍ତେ ।୨୦।

**ଟୀକା**—[ ଅପି ତୁ ସାମାନ୍ୟତଃ ଅପରେ ଭକ୍ତାଃ ] ସ୍ୱୟା ( ନିଜାୟା ) ପ୍ରକୃତ୍ୟା ( ସ୍ୱଭାବେନ ) ନିୟତା ( ଶୃଙ୍ଖଳିତାଃ ) [ ତଦୁତ୍ପନ୍ନୈଃ ] ତୈଃ ତୈଃ ( ନାନାବିଧୈଃ ) [ ପୁତ୍ରପଶ୍ୱାଦିବିଷୟୈଃ ] କାମୈଃ ( ଅଭିଲଷିତୈଃ ) ହୃତଜ୍ଞାନଃ (ଅପହୃତବିବେକାଃ ) [ସନ୍ତଃ] ତଂ ତଂ [ଦେବୋପାସନ ବିଷୟକଂ]

ନିୟମଂ ଆସ୍ଥାୟ (ଆଶ୍ରିତ୍ୟ) [ତତ୍ତ୍କାମଦାଃ] ଅନ୍ୟଦେବତାଃ (ପ୍ରପଦ୍ୟନ୍ତେ ଭଜନ୍ତେ ।) ୨୦ ।

ଅର୍ଥ— [କିନ୍ତୁ ସାଧାରଣତଃ ଅନ୍ୟ ଭକ୍ତମାନେ] ନିଜ ନିଜ ସ୍ୱଭାବ ଅନୁସାରେ ଭିନ୍ନ ଭିନ୍ନ କାମନାମାନ ଧରି, ସେଥିରେ ଜ୍ଞାନ ହରାଇ, ସେଇ ସେଇ ଫଳ ଦେବା ଭଳି ଦେବତା ଉପାସନାର ନିୟମମାନ ଘେନି ଅନ୍ୟ ଦେବତାଙ୍କୁ ଆଦରିଥାନ୍ତି ।୨୦।

**ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ।**
**ତସ୍ୟ ସତ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍ ।୨୧।**

ଅନ୍ୱୟ—ଯଃ ଯଃ ଭକ୍ତଃ ଯାଂ ଯାଂ ତନୁଂ ଶ୍ରଦ୍ଧୟା ଅର୍ଚ୍ଚିତୁଂ ଇଚ୍ଛତି, ଅହଂ ତସ୍ୟ ତସ୍ୟ ତାଂ ଏବ ଶ୍ରଦ୍ଧାଂ ଅଚଳାଂ ବିଦଧାମି ।୨୧।

ଟୀକା—[ତାନପି ନାହଂ ଜହାମି ବରଂ]—ଯଃ ଯଃ ଭକ୍ତଃ [ମଦୀୟାଂ] ଯାଂ ଯାଂ ତନୁଂ (ପ୍ରକାଶଂ) ଶ୍ରଦ୍ଧୟା (ଅୟମେବ ବିଭୂରିତି ବୁଦ୍ଧ୍ୟା) ଅର୍ଚ୍ଚିତୁଂ (ଉପାସିତୁଂ) ଇଚ୍ଛତି, ଅହଂ ତସ୍ୟ ତସ୍ୟ ତାଂ ଏବ ଶ୍ରଦ୍ଧାଂ ଅଚଳାଂ (ଦୃଢ଼ାଂ) ବିଦଧାମି (କରୋମି) ।୨୧।

ଅର୍ଥ—[ତାଙ୍କୁ ବି ମୁଁ ଫିଙ୍ଗି ଦିଏ ନାହିଁ, ବରଂ]—ଯେଉଁ ଯେଉଁ ଭକ୍ତ [ମୋର] ଯେଉଁ ଯେଉଁ ରୂପକୁ [ଏହି ଦେବତା ବୋଲି] ବିଶ୍ୱାସରେ ପୂଜିବାକୁ ଯାଏ, ମୁଁ ସେହି ସେହି ଭକ୍ତର ସେହି ସେହି ବିଶ୍ୱାସକୁ ଦୃଢ଼ କରେ ।୨୧।

ବ୍ୟାଖ୍ୟା ସୂଚନା—କାହିଁକି ନା, ଦେବତାରେ ସେମାନେ ମତେ ହିଁ ଭଜୁଥାନ୍ତି—୭.୧୪ 'ଦେବୀମାୟା' ଦେଖ । ତାତ୍ପର୍ଯ୍ୟ—ଦେବତାରେ ଭକ୍ତି କଲେ, ଭକ୍ତି ଦୃଢ଼ ହେଲେ କ୍ରମେ ଚିତ୍ତଶୁଦ୍ଧି ହୁଏ ଓ ଭକ୍ତି ଏହିପରି ପରମେଶ୍ୱର ଭକ୍ତିକୁ ଉଠେ । ଫଳପାଇଁ ଭକ୍ତି କରୁ କରୁ କ୍ରମେ ଫଳ ହେଉ ନ ହେଉ, ଭକ୍ତି ହିଁ ସାର ହୁଏ । ତାପରେ ଏକ ଭଗବଦ୍ ଭକ୍ତି ସୁଗମ ହୁଏ । ଉଦାହରଣ ସ୍ୱରୂପ ପୁଅପାଇଁ ଯେ ମହାଦେବଙ୍କଠାରେ ଭକ୍ତି କରେ, ପୁଅ ନ ହେଲେ ବା ମରିଗଲେ, ସେ ଭକ୍ତି ଗୁଞ୍ଜିବାର ପ୍ରାୟ ଦେଖାଯାଏ ନାହିଁ । ବରଂ ବେଳେ ବେଳେ ଫଳ ଭାଗ୍ୟ ଉପରେ ପକାଇ ସେ ଲୋକ ବେଶି ଦୃଢ଼ ଭକ୍ତିରେ ମାତେ ।୨୧।

**ସ ତୟା ଶ୍ରଦ୍ଧୟା ଯୁକ୍ତସ୍ତସ୍ୟାରାଧନମୀହତେ ।**
**ଲଭତେ ଚ ତତଃ କାମାନ୍ ମୟୈବ ବିହିତାନ୍ ହି ତାନ୍ ।୨୨।**

ଅନ୍ୱୟ—ସଃ ତୟା ଶ୍ରଦ୍ଧୟା ଯୁକ୍ତଃ [ସନ୍] ତସ୍ୟ ଆରାଧନଂ ଈହତେ । ତତଃ ଚ ମୟା ଏବ ବିହିତାନ୍ ହି ତାନ୍‌କାମାନ୍ ଲଭତେ ।୨୨।

**ଟୀକା**— ସଃ [ଭକ୍ତଃ] ତୟା ଶ୍ରଦ୍ଧୟା ଯୁକ୍ତଃ [ସନ୍] ତସ୍ୟ [ଦେବସ୍ୟ] ଆରାଧନଂ ଈହତେ (ଇଚ୍ଛତି) । ତତଃ ଚ [ନ ହି ତେନ ଦେବେନ, ଅପି ତୁ ସର୍ବଜ୍ଞେନ ସର୍ବକର୍ମଫଳପ୍ରଦାତ୍ରା] ମୟା ଏବ ବିହିତାନ୍ ହି ତାନ୍ କାମାନ୍ ଲଭତେ ।୨୨।

**ଅର୍ଥ**—ସେପରି ଭକ୍ତ ସେହି ଶ୍ରଦ୍ଧାରେ ଲାଗିପଡ଼ି ସେହି ଦେବତାର ଆରାଧନା କରିଥାନ୍ତି, [ସତ, କିନ୍ତୁ ସେ ଦେବତା ପ୍ରକୃତରେ ଫଳ ଦିଅନ୍ତି ନାହିଁ । ସେ ଭକ୍ତ ଯାହା ବା ଫଳ ପାଏ] ସେସବୁ ବାଞ୍ଛିତ ଫଳ, ସେହି ଭକ୍ତିହେତୁରୁ ମୁଁ ସେ ଭକ୍ତଙ୍କୁ ଦେବାରୁ ସେ ପାଏ । ୨୨ ।

**ଅନ୍ତବତ୍ତୁ ଫଳଂ ତେଷାଂ ତଦ୍‌ଭବତ୍ୟଳ୍ପମେଧସାମ୍ ।**
**ଦେବାନ୍ ଦେବଯଜୋ ଯାନ୍ତି ମଦ୍‌ଭକ୍ତା ଯାନ୍ତି ମାମପି । ୨୩ ।**

**ଅନ୍ୱୟ**—ଅଳ୍ପମେଧସାଂ ତୁ ତେଷାଂ ତତ୍ ଫଳଂ ଅନ୍ତବତ୍ ଭବତି । ଦେବଯଜଃ, ଦେବାନ୍ ଯାନ୍ତି, ମଦ୍‌ଭକ୍ତ ମାଂ ଅପି ଯାନ୍ତି । ୨୩ ।

**ଟୀକା**—[କିଂ] ତୁ ଅଳ୍ପମେଧସାଂ (ସ୍ଥୂଳତରବସ୍ତୁସ୍ୱୀଶ୍ୱରଦୃଷ୍ଟିନାଂ) ତେଷାଂ ତତ୍ ଫଳଂ ଅନ୍ତବତ୍ (ନଶ୍ୱରଂ) ଭବତି । ଦେବଯଜଃ (ଦେବୋପାସକାଃ) ଦେବାନ୍ ଯାନ୍ତି । ( ପରମୋପାସକାଃ ) ମଦ୍‌ଭକ୍ତାଃ ମାଂ ଅପି ଯାନ୍ତି । ୨୩ ।

**ଅର୍ଥ**—କିନ୍ତୁ ସେହି ଅଳ୍ପବୁଦ୍ଧି ଭକ୍ତଙ୍କର ସେଇ ଫଳ କାଳରେ ନଶଯାଏ । ଦେବତାଙ୍କୁ ପୂଜିବା ଲୋକେ ଦେବତାଙ୍କୁ ପାଆନ୍ତି (ଅର୍ଥାତ୍, ଦେବଲୋକକୁ ଯିବା ଭଳି ଫଳ ମୁଁ ତାଙ୍କୁ ଦିଏ) । ମୋର ଭକ୍ତମାନେ ମତେ ହିଁ ପାଆନ୍ତି । ୨୩ ।

ବ୍ୟାଖ୍ୟା ସୂଚନା—ଦେବତାମାନେ ନିଜେ ଅନ୍ତବନ୍ତ । ସେମାନେ ବି ପ୍ରଳୟରେ ନାଶ ହୁଅନ୍ତି । ସେମାନେ ସ୍ଥାୟୀ ଫଳ ଦେବେ କୁଆଡ଼ୁ ? ଜଳ, ବାୟୁ ଇତ୍ୟାଦି ପ୍ରଭୃତି ଭୂତ ଶକ୍ତିକୁ ଦେବତା ବୋଲି ବୁଝିଲେ ବି ସେହି କଥା ବୁଝାଯିବ ।

**ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟଃ ।**
**ପରଂ ଭାବମଜାନନ୍ତୋ ମମାବ୍ୟୟମନୁତ୍ତମମ୍ । ୨୪ ।**

**ଅନ୍ୱୟ**—ମମ ଅବ୍ୟୟଂ ଅନୁତ୍ତମଂ ପରଂ ଭାବଂ ଅଜାନନ୍ତଃ ଅବୁଦ୍ଧୟଃ ଅବ୍ୟକ୍ତଂ ମାଂ ବ୍ୟକ୍ତିଂ ଆପନ୍ନଂ ମନ୍ୟନ୍ତେ । ୨୪ ।

**ଟୀକା**—[ମମ ଅବ୍ୟକ୍ତରୂପସ୍ୟ ଧାରଣାଭାବାତ୍ 'ବାସୁଦେବଃ ସର୍ବମିତି' ମମ ବିଶ୍ୱେଷୁ ଗୂଢ଼ଂ ଉପାସ୍ୟଂ ଦେବରୂପଂ ଧର୍ତୁମଶକ୍ତସ୍ୟ ସାମାନ୍ୟଜନସ୍ୟ ତନୁଷ୍ଟ ଦେବତାବୁଦ୍ଧିଃ ଇତ୍ୟାହ]—ମମ ଅବ୍ୟୟଂ [ବିକାରହୀନଂ] ଅନୁତ୍ତମଂ (ସର୍ବୋତ୍ତମଂ)

ପରଂ ଭାବଂ (ସ୍ୱରୂପଂ) ଅଜାନନ୍ତଃ ଅବୁଦ୍ଧୟଃ ( ତତ୍ତ୍ୱବିବେକହୀନାଃ ) ଅବ୍ୟକ୍ତଂ (ଅପ୍ରକାଶଂ—ରାଗଦ୍ୱେଷାହଂକାରାଦ୍ୟଲକ୍ଷଣେନ ବ୍ୟକ୍ତତ୍ୱେନ ହୀନଂ ବା) ମାଂ ବ୍ୟକ୍ତିଂ [ ପ୍ରକାଶଂ ] ଆପନ୍ନଂ (ଗତଂ—ମନୁଷ୍ୟମିବ ବ୍ୟକ୍ତତ୍ୱବନ୍ତଂ ଦେବରୂପଂ ବା) ମନ୍ୟନ୍ତେ । ୨୪ ।

**ଅର୍ଥ**—[ମୋର ଅବ୍ୟକ୍ତ ସ୍ୱରୂପ ଧରି ନ ପାରିବାରୁ 'ବାସୁଦେବ ସବୁ' ବୋଲି ମୋର ଈଶ୍ୱରାତ୍ମା ସ୍ୱରୂପ ବୁଝି ନ ପାରି ସାଧାରଣ ଲୋକେ ମୋତେ ଦେବତା ବୁଦ୍ଧି କରନ୍ତି ବୋଲି କହୁଚନ୍ତି ।] ବିକାରରହିତ, ସର୍ବାତୀତ ମୋର ପରମ ସ୍ୱରୂପକୁ ଜାଣି ନ ପାରି ତତ୍ତ୍ୱବିବେକହୀନ ଲୋକେ, ମୁଁ ଅବ୍ୟକ୍ତ ହେଲେହେଁ ମତେ [ ବ୍ୟକ୍ତ ଈଶ୍ୱର ତତ୍ତ୍ୱରୂପ ଦେବତା ବୋଲି ଭଜିବାକୁ ନ ଯାଇ ଖାଲି ] ମନୁଷ୍ୟର ବ୍ୟକ୍ତତ୍ୱ ପରି ବ୍ୟକ୍ତତ୍ୱବାନ୍ ଦେବତାଟିଏ ବୋଲି ଭାବନ୍ତି । ୨୪ ।

ବ୍ୟାଖ୍ୟା ସୂଚନା—ଈଶ୍ୱର ବ୍ୟକ୍ତ ଈଶ୍ୱର ତତ୍ତ୍ୱରୂପେ ବାସୁଦେବ ନାମକ ପୁରୁଷୋତ୍ତମଙ୍କୁ ଭଜିବାକୁ ହୁଏ ସତ, ମାତ୍ର ତାଙ୍କର ଯଥାର୍ଥ ଅବ୍ୟକ୍ତ ସ୍ୱରୂପକୁ ସାଙ୍ଗେ ସାଙ୍ଗେ ଧାରଣାରେ ନ ରଖିଲେ 'ବାସୁଦେବ ସବୁ', ଏ ଅନୁଭବ ଦୃଢ଼ ହୁଏ ନାଇଁ । ଖାଲି ବ୍ୟକ୍ତରେ ବାସୁଦେବଙ୍କୁ ଖୋଜିବାରେ ବ୍ୟକ୍ତର ଶକ୍ତିମୟ ତନୁମାନଙ୍କରେ ଦେବତା ବୋଲି ଭାବ ଜନ୍ମେ—ଏଇ ତାତ୍ପର୍ଯ୍ୟ । କାହିଁକି ସେପରି ହୁଏ, ପର ଶ୍ଳୋକରେ କହୁଚନ୍ତି । ୨୪ ।

**ନାହଂ ପ୍ରକାଶଃ ସର୍ବସ୍ୟ ଯୋଗମାୟାସମାବୃତଃ ।**
**ମୂଢୋଽୟଂ ନାଭିଜାନାତି ଲୋକୋ ମାମଜମବ୍ୟୟମ୍ । ୨୫ ।**

**ଅନ୍ୱୟ**—ଯୋଗମାୟାସମାବୃତଃ ଅହଂ ସର୍ବସ୍ୟ ପ୍ରକାଶଃ ନ [ଭବାମି] ମୂଢ଼ଃ ଅୟଂ ଲୋକଃ ଅଜଂ ଅବ୍ୟୟଂ ମାଂ ନ ଅଭିଜାନାତି । ୨୫ ।

**ଟୀକା**—ଯୋଗମାୟାସମାବୃତଃ (ଯୁକ୍ତିରେବ ବ୍ରହ୍ମଣୋ ଯୋଗଃ, ତଂ ମାଟି କରୂପୟତି—ଇତି ସା ଯୋଗମାୟା; ଯଦ୍ୱା ଯୋଗ ଏବ ମାୟା—କୌଶଳସ୍ୟ ମାନଂ—ତୟା ସମାବୃତଃ ଅଚ୍ଛନ୍ନଃ) ଅହଂ ସର୍ବସ୍ୟ [ସମ୍ମୁଖେ] ପ୍ରକାଶଃ (ସ୍ଫୁଟଃ) ନ [ଭବାମି] । [ତତଃ ତସ୍ୟା ମାୟାୟା] ମୂଢ଼ଃ (ମାୟୈବ ସର୍ବଂ ଇତି ମୋହଂ ଗତଃ—ତୟାଭିଭୂତଃ) ଅୟଂ ଲୋକଃ ଅଜଂ (ଜନ୍ମହୀନଂ) ଅବ୍ୟୟଂ (ବିକାରହୀନଂ) ମାଂ ନ ଅଭି (ସମ୍ୟକ୍) ଜାନାତି । ୨୫ ।

**ଅର୍ଥ**—ଯୋଗମାୟାରେ ବରାବର ଘୋଡ଼ାଇ ହୋଇଥିବାରୁ ମୁଁ ସବୁରି ପାଖେ ସ୍ପଷ୍ଟ ନୁହେଁ । ତେଣୁ, ସେହି ମାୟାର ଆବରଣରେ ବୁଦ୍ଧି ହରାଇ ଏ ଜଗତର ଲୋକେ ଜନ୍ମହୀନ ଓ ବିକାରହୀନ ବୋଲି ମୋତେ ଭଲ କରି ଜାଣିପାରନ୍ତି ନାଇଁ । ୨୫ ।

ବ୍ୟାଖ୍ୟା ସୂଚନା—ସୃଷ୍ଟି ହେଉଚି ଈଶ୍ୱରଙ୍କର ଯୋଗ (ଅର୍ଥାତ୍ ପ୍ରକାଶ ହେବାର ଯୁକ୍ତି ବା ଶକ୍ତି । ) ତାକୁ ଯେ ମାପେ ବା ପ୍ରକାଶ କରି ଏହିପରି ବୋଲି ଦେଖାଏ, ସେ ଯୋଗମାୟା । ଦୈବୀମାୟା—୭ ୧୪ ଦେଖ । ଲୋକେ ସେହି ମାୟା ଛଡ଼ା ଆଉ କିଛି ଦେଖି ପାରନ୍ତି ନାଇ । ଏଣୁ ସେହି ମାୟାର ପ୍ରକାଶରେ ହିଁ ଈଶ୍ୱର ଖୋଜନ୍ତି ବୋଲି ଦେବତା ଭଜନ୍ତି । ସଙ୍ଗେ ସଙ୍ଗେ ମୋର ଅବ୍ୟକ୍ତ ସ୍ୱରୂପର ଧାରଣା ଥିଲେ, ଏ ଭ୍ରମ ହୁଏ ନାଇ—ଅବ୍ୟକ୍ତ ପୁରୁଷୋତ୍ତମଙ୍କର ଯେ ବ୍ୟକ୍ତରେ ଗୂଢ଼ ମାୟାରୁ ଅତୀତ, ଶଶ୍ୱତ୍‌ସ୍ୱରୂପ ଅଛି ତା ଧରି ପାରନ୍ତି । [ଏହି ଦୃଶ୍ୟ ଜଗତକୁ ଉତ୍ପନ୍ନ କରିବାର ସାମର୍ଥ୍ୟ ଥିଲେ ବି ଅଲିପ୍ତ ରହିବାରୁ ପରମ ସ୍ୱାଙ୍କର ଅଦୃଶ୍ୟ ରହିବାର ଯେଉଁ ଭାବ—ସେହି ତାଙ୍କର ଯୋଗମାୟା—ମହାତ୍ମା ଗାନ୍ଧୀ] । ୨୫ ।

**ବେଦାହଂ ସମତୀତାନି ବର୍ତ୍ତମାନାନି ଚାର୍ଜୁନ ।**
**ଭବିଷ୍ୟାଣି ଚ ଭୂତାନି ମାଂ ତୁ ବେଦ ନ କଶ୍ଚନ ।୨୬ ।**

**ଅନ୍ୱୟ**—ଅର୍ଜୁନ ! ଅହଂ ସମତୀତାନି, ବର୍ତ୍ତମାନାନି ଭବିଷ୍ୟାଣି ଚ ଭୂତାନି ବେଦ । ମାଂ ତୁ କଃଚନ ନ ବେଦ । ୨୬ ।

**ଟୀକା**—[ଏବଂ ସମାବୃତସ୍ୟାପି ମମ ଜ୍ଞାନଂ ନ ପ୍ରତିବଦ୍ଧଂ—ଇତ୍ୟାହ] ହେ ଅର୍ଜୁନ, ଅହଂ ସମତୀତାନି (ବିଗତାନି) ବର୍ତ୍ତମାନାନି [ଅତଃପରଂ] ଭବିଷ୍ୟାଣି (ଭବିତବ୍ୟାନି) ଭୂତାନି ବେଦ । [ଅପି] ତୁ ମାଂ କଃଚନ ନ ବେଦ । ୨୬ ।

**ଅର୍ଥ**—[ଏହିପରି ମାୟାରେ ଘୋଡ଼େଇ ହୋଇଥିଲେ ବି ମୋ ଜ୍ଞାନ ସେଥିରେ ଘୋଡ଼ାଇ ହୁଏ ନାଇ ବୋଲି କହୁଚନ୍ତି]—ହେ ଅର୍ଜୁନ, ମୁଁ ଗତ, ବର୍ତ୍ତମାନ ଓ ଅନାଗତ ଭୂତମାନଙ୍କୁ ଜାଣେ । ମତେ କିନ୍ତୁ କେହି ଜାଣେ ନାଇ ।୨୬।

ବ୍ୟାଖ୍ୟା ସୂଚନା—ମୁଁ ମାୟାରେ ସମାବୃତ ବୋଲି କହିବାର ଅର୍ଥ ଏହି—ମୁଁ ମାୟୀ ବା ମାୟାବୀ । ମତେ ମାୟା ବାଧେ ନାଇ—ଏହି ଭାବ । ମତେ କେହି ଜାଣେ ନାଇ କହିବାରେ ଜ୍ଞାନୀ ଭକ୍ତ ଯେ ଜାଣେ—ଏ କଥା ମନା କରାଯାଉ ନାଇ । ୨୬ ।

**ଇଚ୍ଛାଦ୍ୱେଷସମୁତ୍ଥେନ ଦ୍ୱନ୍ଦ୍ୱମୋହେନ ଭାରତ ।**
**ସର୍ବଭୂତାନି ସଂମୋହଂ ସର୍ଗେ ଯାନ୍ତି ପରନ୍ତପ । ୨୭ ।**

**ଅନ୍ୱୟ**—ଭାରତ ! ପରନ୍ତପ ! ଇଚ୍ଛାଦ୍ୱେଷସମୁତ୍ଥେନ ଦ୍ୱନ୍ଦ୍ୱମୋହେନ ସର୍ଗେ ସର୍ବଭୂତାନି ସଂମୋହଂ ଯାନ୍ତି । ୨୭ ।

ଟୀକା—[ଉପସଂହରନ୍ତି ଚରୁର୍ଭିଃ] ହେ ପରଂତପ, ହେ ଭାରତ, ଇଚ୍ଛାଦ୍ୱେଷ-ସମୁତ୍ଥେନ (ଅନୁରାଗବିରାଗୋତ୍ପନ୍ନେନ) ଦ୍ୱନ୍ଦ୍ୱମୋହେନ (ସୁଖଦୁଃଖାଦିଦ୍ୱନ୍ଦ୍ୱ-ନିମିତ୍ତେନ ମୋହେନ) [ହେତୁନା] ସର୍ଗେ (ବ୍ୟକ୍ତିବିଶେଷୁ—ବ୍ୟକ୍ତଂ ସର୍ବମିତି ମତ୍ୱା) ସର୍ବଭୂତାନି ସମୋହଂ (ସମୂଢ଼ତାଂ) ଯାନ୍ତି । ୨୭ ।

ଅର୍ଥ—[ଘୃର ଶ୍ଳୋକରେ ଅଧ୍ୟାୟ କଥା ଶେଷ କରୁଚନ୍ତି] ହେ ପରନ୍ତପ, ହେ ଭାରତ, ଇଚ୍ଛା ଅନିଚ୍ଛାରୁ ହୁଏ ଯେଉଁ ସୁଖ ଦୁଃଖାଦି ଦ୍ୱନ୍ଦ୍ୱ, ସେହି ଦ୍ୱନ୍ଦ୍ୱରେ ମୋହିତ ହୋଇ ସୃଷ୍ଟି ବିଷୟରୁ ହିଁ ବୁଝିବାରେ ପ୍ରାଣିମାନେ ତତ୍ତ୍ୱ-ବୁଦ୍ଧି ହରାଇଥାନ୍ତି । ୨୭ ।

ବ୍ୟାଖ୍ୟା ସୂଚନା—ତାତ୍ପର୍ଯ—ବୁଝିବା ପାଇଁ ଅନାସକ୍ତ ଲୋଡ଼ା—ସେଥିପାଇଁ ସୃଷ୍ଟିର ଅଧ୍ୟାତ୍ମ ବ୍ରହ୍ମର ଧାରଣା ବି ଦରକାର । ୨୭ ।

**ଯେଷାଂ ତ୍ୱନ୍ତଗତଂ ପାପଂ ଜନାନାଂ ପୁଣ୍ୟକର୍ମଣାମ୍**
**ତେ ଦ୍ୱନ୍ଦ୍ୱମୋହନିର୍ମୁକ୍ତା ଭଜନ୍ତେ ମାଂ ଦୃଢ଼ବ୍ରତାଃ ।୨୮।**

ଅନ୍ୱୟ—ଯେଷାଂ ତୁ ପୁଣ୍ୟକର୍ମଣାଂ ଜନାନାଂ ପାପଂ ଅନ୍ତର୍ଗତଂ ଦ୍ୱନ୍ଦ୍ୱମୋହନିର୍ମୁକ୍ତାଃ ତେ ଦୃଢ଼ବ୍ରତାଃ ମାଂ ଭଜନ୍ତେ । ୨୮ ।

ଟୀକା—ଯେଷାଂ ତୁ ପୁଣ୍ୟକର୍ମଣାଂ ଜନାନାଂ [ସାତ୍ତ୍ୱିକପୁଣ୍ୟକର୍ମାଭ୍ୟାସାତ୍] ପାପଂ ଅନ୍ତର୍ଗତଂ (ନଷ୍ଟଂ) ଦ୍ୱନ୍ଦ୍ୱମୋହନିର୍ମୁକ୍ତାଃ ତେ ଦୃଢ଼ବ୍ରତାଃ (ଏକନିଷ୍ଠାପରାଃ) [ସନ୍ତଃ] ମାଂ ଭଜନ୍ତେ । ୨୮ ।

ଅର୍ଥ—କିନ୍ତୁ ଯେଉଁ ସୁକୃତବନ୍ତ ଲୋକଙ୍କର [ସାତ୍ତ୍ୱିକ ପୁଣ୍ୟ କର୍ମମାନ କରି] ପାପ କ୍ଷୟ ହୋଇଛି, ସେମାନେ ଦ୍ୱନ୍ଦ୍ୱ ମୋହରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ଅଟଳ ବ୍ରତ ଧରି ମତେ ଭଜନ୍ତି । ୨୮ ।

ବ୍ୟାଖ୍ୟା ସୂଚନା—ସାତ୍ତ୍ୱିକଭାବରେ ପୁଣ୍ୟ କର୍ମ ଅଭ୍ୟାସ କରି ଚିତ୍ତ-ଶୁଦ୍ଧି ହେଲେ ଲୋକ ମୁକ୍ତିସାଧନାକୁ ଉଠେ—୧୪.୧୮ ଦେଖ । ୨୮ ।

**ଜରାମରଣମୋକ୍ଷାୟ ମାମାଶ୍ରିତ୍ୟ ଯତନ୍ତି ଯେ ।**
**ତେ ବ୍ରହ୍ମ ତଦ୍ୱିଦୁଃ କୃତ୍ସ୍ନମଧ୍ୟାତ୍ମଂ କର୍ମ ଚାଖିଳମ୍ ।୨୯।**
**ସାଧିଭୂତାଧିଦୈବଂ ମାଂ ସାଧିଯଜ୍ଞଂ ଚ ଯେ ବିଦୁଃ ।**
**ପ୍ରୟାଣକାଳେଽପି ଚ ମାଂ ତେ ବିଦୁର୍ଯୁକ୍ତଚେତସଃ ।୩୦।**

**ଅନ୍ୱୟ**—ଯେ ମାଂ ଆଶ୍ରିତ୍ୟ ଜରାମରଣମୋକ୍ଷାୟ ଯତନ୍ତି, ତେ କୃତ୍ସ୍ନଂ ତତ୍ ପରଂବ୍ରହ୍ମ ଅଧ୍ୟାତ୍ମଂ ଅଖିଳଂ କର୍ମ ଚ ବିଦୁଃ । ଯେ ସାଧିଭୂତାଧିଦୈବଂ ସାଧିଯଜ୍ଞଂ ଚ ମାଂ ବିଦୁଃ, ତେ ଯୁକ୍ତଚେତସଃ ପ୍ରୟାଣକାଳେ ଅପି ଚ ମାଂ ବିଦୁଃ । ୨୯-୩୦ ।

**ଟୀକା**—[ଏବଂ] ଯେ ମାଂ ଆଶ୍ରିତ୍ୟ ଜରାମରଣମୋକ୍ଷାୟ (ସଂସାରବନ୍ଧାତ୍-ମୁକ୍ତ୍ୟର୍ଥଂ) ଯତନ୍ତି (ଯତନ୍ତେ, ପ୍ରଯତ୍ନଂ କୁର୍ବନ୍ତି) ତେ କୃତ୍ସ୍ନଂ (ସମଗ୍ରଂ) ['ସମଗ୍ରଂ ଯଥା-ମାଂ ଜ୍ଞାସ୍ୟସି' ଇତି ଯଦୁକ୍ତଂ] ତତ୍ ବିଦୁଃ । [କିଂ ତତ୍ କୃତ୍ସ୍ନମିତି ବର୍ଣୟନ୍ତି]—ପରଂବ୍ରହ୍ମ, ଅଧ୍ୟାତ୍ମଂ, ଅଖିଳଂ କର୍ମ ଚ । [ଏବଂ ଚ ସର୍ବଜ୍ଞାନଜ୍ଞାନପରାଃ] ଯେ ସାଧିଭୂତା-ଧିଦୈବଂ (ଅଧିଭୂତେନ ଅଧିଦୈବେନ ଚ ସହ) ସାଧିଯଜ୍ଞଂ (ଅଧିଯଜ୍ଞେନ ଚ ସହ) ମାଂ ବିଦୁଃ, ତେ ଯୁକ୍ତଚେତସଃ [ସନ୍ତଃ] ପ୍ରୟାଣକାଳେ (ଦେହତ୍ୟାଗସମୟେ) ଅପି ଚ ମାଂ ବିଦୁଃ (ମରଣମୂର୍ଚ୍ଛିତେଽପି ମୟି ବୁଦ୍ଧିସଂଯୋଗଂ କର୍ତୁଂ ଶକ୍ନୁବନ୍ତୀତି ଭାବଃ) । ୨୯-୩୦ ।

**ଅର୍ଥ**—[ଏହିପରି] ଯେ ମୋତେ ଭଜି ବାର୍ଦ୍ଧକ୍ୟ ମରଣାଦି ସଂସାର ବନ୍ଧନରୁ ମୁକ୍ତ ପାଇବାରେ ଲାଗନ୍ତି, ସେହିମାନେ ସେହି 'ସମଗ୍ର'କୁ (୭.୧ ଦେଖ) ଜାଣନ୍ତି । [ସେ ସମଗ୍ର କଣ, କହୁଅଛନ୍ତି]—ପରମବ୍ରହ୍ମ, ଅଧ୍ୟାତ୍ମ ଓ ଅଶେଷ କର୍ମ । [ପୁଣି ଏହିପରି ଜ୍ଞାନ ସହିତ ଜ୍ଞାନରେ ଠିକ୍ ରହି] ଯେ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସହିତ ମତେ ଜାଣନ୍ତି, ସେହିମାନେ ବୁଦ୍ଧିକୁ ମୋଠି ବରାବର ଲଗାଇ ରଖିଥିବାରୁ ଦେହ ଛାଡ଼ିଲା ବେଳେ ବ ମତେ ମନରେ ରଖିଥାନ୍ତି । ( ମରଣକାଳରେ ଶାନ୍ତ ରହି ପରମେଶ୍ୱରରେ ତନ୍ମୟ ରହି ପାରିଲେ ହିଁ ମୁକ୍ତ ହୁଏ । ୮.୫ ଦେଖ) । ୨୯-୩୦ ।

ବ୍ୟାଖ୍ୟା ସୂଚନା—ପରମ ବ୍ରହ୍ମ, ଅଧ୍ୟାତ୍ମ ପ୍ରଭୃତି ପର ଅଧ୍ୟାୟ ମୂଳରେ ବୁଝାଇବେ । ୨୯-୩୦ ।



# ଅଷ୍ଟମ ଅଧ୍ୟାୟ

## ଅକ୍ଷର-ବ୍ରହ୍ମଯୋଗ ( ଜ୍ଞାନ-ବିଜ୍ଞାନର 'ଜ୍ଞାନ' )

### ଅଧ୍ୟାୟ ପ୍ରବେଶ—

ଅର୍ଜୁନ ପଚାରିବାରୁ ଭଗବାନ୍ ପୂର୍ବ ଅଧ୍ୟାୟର ଶେଷ ଦୁଇ ଶ୍ଳୋକରେ କହିଥିବା ପରଂବ୍ରହ୍ମ, ଅଧ୍ୟାତ୍ମ, କର୍ମ, ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ କଥାମାନ ବୁଝାଇ ଯଥାକ୍ରମେ କହୁଛନ୍ତି—ଈଶ୍ୱର ହିଁ ବ୍ୟକ୍ତରୁ ଅତୀତ, ପୁଣି ବ୍ୟକ୍ତରେ ସ୍ୱଭାବ-ରୂପେ ଗୂଢ଼ ଥାଇ ଅବ୍ୟକ୍ତ—ପୁଣି ସେହି ସୃଷ୍ଟି ବିକାଶ ଓ ଭୂତମାନେ ସବୁ ସେଇ । ସେଇ ଉପାସ୍ୟ ଦେବତା ଓ ସେଇ କର୍ମର କର୍ତ୍ତା, ଭୋକ୍ତା । ମରଣବେଳେ କିପରି ଈଶ୍ୱରରେ ତନ୍ମୟ ରହିବ ?—ଏ କଥାରେ କହୁଛନ୍ତି, ଯେ ଯାହା ଭାବି ଦେହ ଛାଡ଼େ ସେ ତା ପାଏ । ସେଥିପାଇଁ ଜୀବନରେ ସବୁ କର୍ମରେ ଏଇ ଅତୀତ ଓ ସର୍ବମୟ ଈଶ୍ୱର-ଧ୍ୟାନ, ଅଭ୍ୟାସରେ ଦୃଢ଼ କରିବା ଦରକାର । ନ ହେଲେ ମରଣର ଅଶାନ୍ତିରେ ମନ ଠିକ୍ ରହି ନ ପାରେ । ସେଥିପାଇଁ ଜୀବନରେ ଧ୍ୟାନ-ଅଭ୍ୟାସର ଯୋଗ ସାଧିବା ବି ଦରକାର । କିପରି ସେ ଅଭ୍ୟସ୍ତ ଧ୍ୟାନରେ ରହି ଦେହ ଛାଡ଼ିବ, ତା' କହୁଛନ୍ତି । ଏ ଗତି ପାଇଲେ ପୁନର୍ଜନ୍ମ ହୁଏ ନାଇ । ଅନ୍ୟ ଯେ କୌଣସି ଗତିରୁ ପୁନର୍ଜନ୍ମ ହୁଏ । ବ୍ରହ୍ମାଙ୍କ ଲୋକରେ ସହସ୍ର ଯୁଗରେ ଦିନ ଓ ସେତିକି ପୁଣି ରାତି ବୋଲି କହନ୍ତି । ହେଲେହେଁ, ସେଠାକୁ ଯାଇ ବି ପୁଣି ଫେରନ୍ତି । ବ୍ରହ୍ମାଙ୍କ ଦିନ ଶେଷରେ ପ୍ରଳୟ ହୁଏ । କିନ୍ତୁ ତା' ମୁକ୍ତି ନୁହେଁ । ସେ ପ୍ରଳୟରେ ସମସ୍ତେ ମୋ ଅବ୍ୟକ୍ତ ପ୍ରକୃତିରେ ଲୀନ ହୁଅନ୍ତି ମାତ୍ର । ପୁଣି ଦିନ ଆସିଲେ ସମସ୍ତେ ନିଜ କର୍ମବଶରେ ଜନ୍ମନ୍ତି । ଏ ଅବ୍ୟକ୍ତ ପ୍ରକୃତିରୁ ଅତୀତ, ମୋର 'ଅବ୍ୟକ୍ତ ଅକ୍ଷର' ସ୍ୱରୂପ । ସେଇଠି ମୁକ୍ତି । ସେଇ ପରମ ଗତି । ଏହିପରି ପୁନର୍ଜନ୍ମ ଗତି ଓ ମୁକ୍ତିର ଗତି—ଏ ଦୁଇଟି ଗତି ଚିରକାଳ ଅଛି । ଲୋକେ ମଲାବେଳେ ତାର ଗତି ଜାଣିବା-ପାଇଁ କେତେଗୁଡ଼ିଏ ସଙ୍କେତ ପ୍ରଚଳିତ ଅଛି । ତା' କହିଦେଇ, କହୁଛନ୍ତି, ଏ ସଙ୍କେତର ସାର କଥା :—ଗୋଟିଏ ଶୁକ୍ଳଗତି ବା ଜ୍ଞାନର ଗତି, ଆରଟି କୃଷ୍ଣଗତି ବା ଅଜ୍ଞାନର ଗତି । ଏତିକି ଜାଣିଲେ ଯୋଗୀ ଆଉ ଭୁଲ କରେ ନାଇ—ସବୁ ପୁଣ୍ୟ କର୍ମର ଫଳକୁ ଡେଇଁ ସେ ପରମ ସ୍ଥାନ ପାଏ ।

**କିଂ ତଦ୍‌ବ୍ରହ୍ମ କିମଧ୍ୟାତ୍ମଂ କିଂ କର୍ମ ପୁରୁଷୋତ୍ତମ ।**
**ଅଧିଭୂତଂ ଚ କିଂ ପ୍ରୋକ୍ତମଧିଦୈବଂ କିମୁଚ୍ୟତେ ।୧।**
**ଅଧିଯଜ୍ଞଃ କଥଂ କୋଽତ୍ର ଦେହେଽସ୍ମିନ୍ ମଧୁସୂଦନ**
**ପ୍ରୟାଣକାଲେ ଚ କଥଂ ଜ୍ଞେୟୋଽସି ନିୟତାତ୍ମଭିଃ ।୨।**

**ଅନ୍ୱୟ**—ସ୍ପଷ୍ଟଃ । ୧-୨ ।

**ଟୀକା**—[ ପୂର୍ବଶ୍ଳୋକଦ୍ୱୟୋକ୍ତଂ ସମ୍ୟକ୍ ବୁଭୁତ୍ସୁଃ ]—ଅର୍ଜୁନ ଉବାଚ—ହେ ପୁରୁଷୋତ୍ତମ, ତତ୍ ବ୍ରହ୍ମ କିମ୍ ? ଅଧ୍ୟାତ୍ମଂ କିମ୍ ? କର୍ମ କିମ୍ ? କିଂ ଚ ଅଧିଭୂତଂ ପ୍ରୋକ୍ତମ୍ ? ଅଧିଦୈବଂ କିଂ ଉଚ୍ୟତେ ? ହେ ମଧୁସୂଦନ, ଅତ୍ର ଅସ୍ମିନ୍ ଦେହେ କଃ [ ଅଧିଦେହଃ ] ? [ସଃ] ଅଧିଯଜ୍ଞଃ କଥଂ [ଭବତି] ? ପ୍ରୟାଣକାଳେ ଚ ନିୟତାତ୍ମଭିଃ (ଯୁକ୍ତଚେତୋଭିଃ) କଥଂ ଜ୍ଞେୟଃ ଅସି ? ୧-୨ ।

**ଅର୍ଥ**—[ପୂର୍ବ ଅଧ୍ୟାୟର ଶେଷ ଦୁଇ ଶ୍ଳୋକର ବିଷୟ ଭଲ କରି ବୁଝିବା ପାଇଁ] ଅର୍ଜୁନ କହିଲେ—ହେ ପୁରୁଷୋତ୍ତମ, ସେ ବ୍ରହ୍ମ କ'ଣ ? ଅଧ୍ୟାତ୍ମ କ'ଣ ? କର୍ମ କ'ଣ ? ଅଧିଭୂତ ବା କାହାକୁ କୁହାଗଲା ? ଅଧିଦେବ କାହାକୁ କୁହାଯାଏ ? ହେ ମଧୁସୂଦନ, ଏଇଠି ଏ ଦେହରେ [ଅଧିଦେହ] କିଏ ? ସେ ଅଧିଯଜ୍ଞ କିପରି ହୁଏ ? ପୁଣି ତମଠି ତନ୍ମୟ ଥିବା ଲୋକଙ୍କର ଜ୍ଞାନରେ ମରଣ କାଳରେ ତମେ କିପରି ରହ ? । ୨-୧ ।

ବ୍ୟାଖ୍ୟା ସୂଚନା—କୌଣସି ଶବ୍ଦ ଆଗରେ ଏହିପରି 'ଅଧି' ଲାଗିଲେ ଅର୍ଥ ହୁଏ—'ତଦଧିକୃତ୍ୟ ଭବତୀତି' 'ତହିଁରେ ଯାହା ଥାଏ' ବା 'ସେହି ବିଷୟକ ତତ୍ତ୍ୱ' । ଏହିପରି ଅଧ୍ୟାତ୍ମ=ଆତ୍ମା ବା ଭିତରର ବ୍ୟାପକ ଓ ସୂକ୍ଷ୍ମ ବସ୍ତୁବିଷୟକ ତତ୍ତ୍ୱ । ଅଧିଭୂତ=ଭୂତ (ସୃଷ୍ଟ ବସ୍ତୁ) ବିଷୟକ ତତ୍ତ୍ୱ—ଇତ୍ୟାଦି । ଲୋକେ ନାନା-ଭାବରେ ଏ ସୃଷ୍ଟିତତ୍ତ୍ୱ ବୁଝି ଧାରଣା ବା ଉପାସନା କରନ୍ତି । ପ୍ରଧାନତଃ ତାହା ତିନି ପ୍ରକାର—(୧) ବ୍ରହ୍ମ=ବିକାରମୟ ସୃଷ୍ଟିରୁ ଅତୀତ ଅକ୍ଷର-ତତ୍ତ୍ୱ । (୨) ସୃଷ୍ଟ ବସ୍ତୁର ଆତ୍ମା ବା ସୂକ୍ଷ୍ମ ଅଧ୍ୟାତ୍ମ-ତତ୍ତ୍ୱ । ଏହାହିଁ ସାଂଖ୍ୟର 'ପ୍ରକୃତି' ଓ ଗୀତାର 'ପରା ପ୍ରକୃତି'—୭.୫ ଦେଖ । ୭.୪ ରେ ଥିବା ଗୀତାର 'ଅପରା ପ୍ରକୃତିର' ସୂକ୍ଷ୍ମ ତତ୍ତ୍ୱ ମଧ୍ୟ ଏଇ 'ଅଧ୍ୟାତ୍ମ' ତତ୍ତ୍ୱର ଅଙ୍ଗୀଭୂତ । ବରଂ ସାଂଖ୍ୟର ଅସଂଖ୍ୟ ପୁରୁଷଙ୍କୁ 'ବ୍ରହ୍ମର' 'ଜୀବଭୂତ' 'ପରା ପ୍ରକୃତି' ଓ ସାଂଖ୍ୟର ପ୍ରକୃତିକୁ ଗୀତାର 'ଅପରା

ପ୍ରକୃତି'ର ମୂଳତତ୍ତ୍ୱ ସଙ୍ଗେ ତୁଳନା କରାଯାଇପାରେ । ମାତ୍ର ଏଠି ଗୀତାର 'ଅପରା ପ୍ରକୃତି' ହେଉଛି, କର୍ମ ବା ବ୍ୟକ୍ତର ଅବ୍ୟକ୍ତ ତତ୍ତ୍ୱ । 'ପରା ପ୍ରକୃତି' ସଙ୍ଗେ ବ୍ୟକ୍ତ ସୃଷ୍ଟି ବା ବିକାଶର ସମ୍ବନ୍ଧ ଏଇଠାରେ । ବିଶେଷ ଜାଣିବା ପାଇଁ 'ଗୀତା ପ୍ରବେଶ'ରେ 'ତତ୍ତ୍ୱ ସମାଧାନ' ପ୍ରକରଣ ଦେଖ । (୩)କର୍ମ = ଏହି ବିକାରମୟ ସୃଷ୍ଟି ବ୍ୟାପାର; କର୍ମର ଫଳ, ସୃଷ୍ଟି; କର୍ମ ଓ ସୃଷ୍ଟି ଏକ ଅର୍ଥରେ ମଧ୍ୟ ବ୍ୟବହାର କରାଯାଏ; କାରଣ, କର୍ମ ହିଁ ସୃଷ୍ଟି । ଏଇ ସୃଷ୍ଟି-ବ୍ୟାପାରର ନିତ୍ୟ ପରିଣାମ ହିଁ ସବୁ, ଏହି ପରିଣାମ ବା ଦେହାନ୍ତର, କର୍ମରୁ ଅନ୍ୟ କର୍ମରେ ପରିଣତ ହୋଇ ଚାଲିଛି—ଏହା ହିଁ କର୍ମତତ୍ତ୍ୱ । ଏହି ତିନି ତତ୍ତ୍ୱକୁ ଭିନ୍ନ ଭିନ୍ନ ବୋଲି ନ ବୁଝି ଏକ ପରମେଶ୍ୱର-ସ୍ୱରୂପର ଭିନ୍ନ ଭିନ୍ନ ପ୍ରକାର ଦୃଷ୍ଟି ବା ଭିନ୍ନ ଭିନ୍ନ ବିଭାଗ ବୋଲି ବୁଝିବା ହିଁ ଜ୍ଞାନ-ବିଜ୍ଞାନ ବା ସବିଜ୍ଞାନ-ଜ୍ଞାନ । ମାତ୍ର ଏଥିରୁ ତିନୋଟିକୁ ସବୁ ବୋଲି କେହି କେହି ବୁଝନ୍ତି । ଏ ତିନୋଟିରୁ 'ଅବ୍ୟୟ' ବ୍ରହ୍ମକୁ ଛାଡ଼ିଦେଲେ ଅଧ୍ୟାତ୍ମ ଓ କର୍ମ ଏ ଦୁଇଟି ବିଭାଗରେ ଦୃଷ୍ଟି ବୁଝିବାକୁ ହେବ । ତହିଁରୁ ଅଧ୍ୟାତ୍ମଟି ହେଉଛି, ଦୃଷ୍ଟ ବସ୍ତୁ ସମ୍ବନ୍ଧରେ ସୂକ୍ଷ୍ମ ଓ ସ୍ଥିତିଶୀଳ ତତ୍ତ୍ୱ । ପୁଣି କର୍ମ ହେଉଛି, ଜଗତର ସ୍ଥୂଳ ଓ ବିକାର ବା ପରିଣାମରେ ଗତିଶୀଳ ତତ୍ତ୍ୱ । ଏହିପରି ଏ ଦୁଇଟି, ଏକ ତତ୍ତ୍ୱ-ବସ୍ତୁର ଦୁଇଟି ଦୃଷ୍ଟି ମାତ୍ର । କର୍ମକୁ ହିଁ 'ଅପରା ପ୍ରକୃତି' କୁହାଯାଇପାରେ । କର୍ମହିଁ ବିଶ୍ୱ-ପ୍ରକାଶ ।

ଏ ଦୁଇଟିରୁ ପ୍ରତ୍ୟେକଟିର ପୁଣି ଦୁଇ ଦୁଇ ପ୍ରକାରରେ ଧାରଣା ବା ଉପାସନା ଅଛି । ଅଧ୍ୟାତ୍ମର (୪) ଅଧିଦେବତା ବା ଅଧିଦେବ ଓ (୫) ଅଧିଦେହ; ପୁଣି କର୍ମର (୬) ଅଧିଭୂତ ଓ (୭) ଅଧିଯଜ୍ଞ । ବିଶ୍ୱବସ୍ତୁମାନଙ୍କର ଆତ୍ମା ବା 'ସ୍ୱଭାବ'-ରୂପ ସୂକ୍ଷ୍ମ ବସ୍ତୁକୁ ପ୍ରତ୍ୟେକ ବ୍ୟକ୍ତ-'ଭାବ' ବା ବ୍ୟକ୍ତରେ ଭିନ୍ନ ଭିନ୍ନ କଳ୍ପନା କରି ମନୁଷ୍ୟର ଆତ୍ମା—ଅର୍ଥାତ୍, ବ୍ୟକ୍ତଭାବ—, ବା ପୁରୁଷ ପରି ସୂର୍ଯ୍ୟଦେବତା, ବୃକ୍ଷ-ଦେବତା, ପର୍ବତ ଦେବତା ପ୍ରଭୃତି ବୋଲି ପୂଜା କରାହୁଏ । ଏହି ଧାରଣା 'ଅଧିଦୈବତ' ତତ୍ତ୍ୱ । ସୃଷ୍ଟି କର୍ତ୍ତା ବ୍ରହ୍ମା ବା ହିରଣ୍ୟଗର୍ଭ, ପୁଣି ବିଷ୍ଣୁ, ରୁଦ୍ର, ଇନ୍ଦ୍ର ପ୍ରଭୃତି ଏହି ଅଧିଦୈବତ ବର୍ଗର । ସେଇପରି ପ୍ରତିଦେହରେ ଭିନ୍ନ ଭିନ୍ନ ଯେ ଦେହୀ ବା ଆତ୍ମା ତାହା 'ଅଧିଦେହ'-ତତ୍ତ୍ୱ । ଯଜ୍ଞ କର୍ମ-ସ୍ୱରୂପ ବା କର୍ମରୁ ହୁଏ—୩. ୧୪,୩୨ ଦେଖ । ସେଥିପାଇଁ କେହି କେହି କହନ୍ତି, ଏହି ଜଗତ୍ ଯଜ୍ଞରୁ ହୁଏ, ବା ଯଜ୍ଞମୟ । ଯଜ୍ଞ ହିଁ ବିଷ୍ଣୁ ବା ନାରାୟଣ । ଏହା ସୃଷ୍ଟିର-'ଅଧିଯଜ୍ଞ' ତତ୍ତ୍ୱ । ପୁଣି କେହି କହନ୍ତି, ଏଇ ସୃଷ୍ଟିରେ ବିକାରମୟ ଭୂତ ଛଡ଼ା ଆଉ କିଛି ନାଇ । ଏହା 'ଅଧିଭୂତ'-ତତ୍ତ୍ୱ ।

ଅର୍ଜୁନ ଏହି ସବୁ ଭିନ୍ନ ଭିନ୍ନ ଧାରଣା ଓ ଉପାସନାର କଥା ନିଶ୍ଚୟ ଜାଣିଥିଲେ । ତେଣୁ ଏଠାରେ ଭଗବାନଙ୍କୁ ପଚାରିବାରେ—ଏ ଦେହରେ କିଏ

(ଅଧି ଦୈବ) ବୋଲି ଏହି ପ୍ରସଙ୍ଗରେ ଆସୁଥିବା ଅଧିକା କଥାଟି ପଗ୍ଚରି ଯାଇଛନ୍ତି । ପୁଣି ଯଜ୍ଞତତ୍ତ୍ୱ ତ ଆଗେ ୩ୟ ଓ ୪ର୍ଥ ଅଧ୍ୟାୟରେ ବୁଝାଇ ଦିଆଯାଇଛି । ବିଶେଷରେ ୩.୧୫;୪.୨୪ ଦେଖ । ସେଥିପାଇଁ ଏହି ଅଧିଯଜ୍ଞ କଥାରେ ସନ୍ଦେହ କରି ଖାଲି ପଗ୍ଚରିଦେଲେ, 'ଅଧିଦୈବ'-ତତ୍ତ୍ୱ ପୁଣି 'ଅଧିଯଜ୍ଞ' କିପରି ହୁଏ ? ଅର୍ଥାତ୍, ଏ ଦୁଇଟିର ପୁଣି କି ସମ୍ବନ୍ଧ ? ତେବେ କ'ଣ ଯଜ୍ଞାର୍ଥ ଓ ପୁରୁଷାର୍ଥ କର୍ମର ପ୍ରଭେଦ ନାହିଁ ? ୩ ୯ ଟୀକା ଦେଖ । ଏହି ହେତୁରୁ ହିଁ ଅର୍ଜୁନଙ୍କର ପ୍ରଶ୍ନରେ ଅଧିଦୈବ-ତତ୍ତ୍ୱକୁ ଲକ୍ଷ୍ୟକରିବା ଦରକାର ପଡ଼ିଲା । ପୁଣି ଅର୍ଜୁନଙ୍କୁ ଏ ସବୁ ପ୍ରଚଳିତ କଥାର ଅର୍ଥ ଜଣାଥିବାରୁ ଭଗବାନ୍ ପର ଦୁଇ ଶ୍ଳୋକରେ ଅତି ଅଳ୍ପ ଫେଇଁତରେ ମାତ୍ର ବୁଝାଇ ଦେଇଛନ୍ତି, ଏସବୁ ଏକପରମେଶ୍ୱର ସମ୍ବନ୍ଧରେ ଭିନ୍ନ ଭିନ୍ନ ଧାରଣା ମାତ୍ର—ଅଲଗା ଅଲଗା ନୁହେ । ୧-୨ ।

ଶ୍ରୀ ଭଗବାନୁବାଚ

**ଅକ୍ଷରଂ ବ୍ରହ୍ମ ପରମଂ ସ୍ୱଭାବୋଽଧ୍ୟାତ୍ମମୁଚ୍ୟତେ ।**
**ଭୂତଭାବୋଦ୍‌ଭବକରୋ ବିସର୍ଗଃ କର୍ମସଂଜ୍ଞିତଃ । ୩ ।**
**ଅଧିଭୂତଂ କ୍ଷରୋ ଭାବଃ ପୁରୁଷଶ୍ଚାଧିଦୈବତମ୍ ।**
**ଅଧିଯଜ୍ଞୋଽହମେବାତ୍ର ଦେହେ ଦେହଭୃତାଂବର । ୪ ।**

**ଅନ୍ୱୟ**—ପରମଂ ଅକ୍ଷରଂ ବ୍ରହ୍ମ । ସ୍ୱଭାବଃ ଅଧ୍ୟାତ୍ମଂ ଉଚ୍ୟତେ । ଭୂତଭାବୋଦ୍ଭବକରଃ ବିସର୍ଗଃ କର୍ମସଂଜ୍ଞିତଃ । କ୍ଷରଃ ଭାବଃ ଅଧିଭୂତମ୍ । ପୁରୁଷଃ ଚ ଅଧିଦୈବତମ୍, ଦେହଭୃତାଂବର ! ଅତ୍ର ଦେହେ ଅହଂ ଏବ ଅଧିଯଜ୍ଞଃ । ୩-୪ ।

**ଟୀକା**—[ବ୍ରହ୍ମାଦି ଯନ୍ତ୍ର ବ୍ୟାକରୋତି ଦ୍ୱାଭ୍ୟାମ୍]—ଶ୍ରୀ ଭଗବାନ କହିବ ଚ—ପରମଂ ଅକ୍ଷରଂ (ସର୍ବସୂକ୍ଷ୍ମତମଂ ନିର୍ବିକାରଂ ବସ୍ତୁ—ନ ତୁ ସାଂଖ୍ୟାନାଂ ପ୍ରକୃତିଃ, ଯା ତୁ ଅକ୍ଷରଂ ମହଦତି ଉଚ୍ୟତେ—ଇତ୍ୟାଶୟଃ) ବ୍ରହ୍ମ [ଅହମେବ] । ସ୍ୱଭାବଃ (ବସ୍ତୁତ୍ୱଂ-ଈଶ୍ୱରସ୍ୟ ଦୃଷ୍ଟିପ୍ରକାଶିକା ସତ୍ତା—ପରା ପ୍ରକୃତିଃ) ଅଧ୍ୟାତ୍ମଂ ଉଚ୍ୟତେ [ଅହମେବ] । ଭୂତଭାବୋଦ୍ଭବକରଃ (ଭୂତାନାଂ ବିକାର ପରିଣାମାଦିଭାବଃ ତେଷାଂ, ଯଦ୍ୱା ଭୂତାନାଂ ଇନ୍ଦ୍ରିୟଗ୍ରାହ୍ୟସ୍ଥୂଲାନାଂ ଭାବାନାଂ ମାନସସୂକ୍ଷ୍ମାନାଂ ଚ ଉତ୍ପାଦକଃ) ବିସର୍ଗଃ (ସୃଷ୍ଟି ବ୍ୟାପାରଃ ଏବ ଈଶ୍ୱରସ୍ୟ ପ୍ରକାଶଃ—ପ୍ରକାଶୋ ବିମୋଚନମିତି ଶବ୍ଦାର୍ଥଃ ) କର୍ମସଂଜ୍ଞିତଃ (କର୍ମନାମା) [ଅହମେବ] । କ୍ଷରଃ (ବିନାଶଶୀଳଃ, ନିତ୍ୟପରିଣାମମୟଃ) ଭାବଃ (ସତ୍ତା) ଅଧିଭୂତଂ [ଅହମେବ] ପୁରୁଷଃ (ପୁରେ, ଅଭ୍ୟନ୍ତରେ, ବ୍ୟକ୍ତିମଧ୍ୟେ ଶେତେ ବର୍ତ୍ତତେ ଇତି—ଯଃ ଭୂତେଷୁ, ଇନ୍ଦ୍ରିୟେଷୁ, ଶକ୍ତିଷୁ ବା ମନୁଷ୍ୟବତ୍ ବ୍ୟକ୍ତିତ୍ୱା-

ଶ୍ଳେଷେଣ ଉଚ୍ୟତେ—ଯଶ୍ଚ (ଦୈବତମିତ୍ୟୁପାସ୍ୟତେ) ଚ ଅଧିଦୈବତଂ [ଅହମେବ] । ହେ ଦେହଭୃତାଂବର, (ଶ୍ରେଷ୍ଠଦେହିନ୍) (ଅତ୍ର) ଦେହେ [ଅଧିଦେହଂ] ଅହଂ ଏବ ଅଧିଯଜ୍ଞଃ । ୩-୪ ।

**ଅର୍ଥ**—[ବ୍ରହ୍ମ ପ୍ରଭୃତି ସାତୋଟି କଥା ଆଗ ଦୁଇ ଶ୍ଳୋକରେ ବୁଝାଇବାକୁ ଆରମ୍ଭ କରି]—ଶ୍ରୀ ଭଗବାନ୍ କହିଲେ—ପରମ ଅକ୍ଷର ବ୍ରହ୍ମ ମୁଁ । ମତେଇ ଜୀବର ସ୍ୱଭାବ ବା ନିଜ ସତ୍ତା ଅଥବା ଅଧ୍ୟାତ୍ମ କୁହାଯାଏ । ସର୍ବଦା ବଦଳିବାରେ ଭୂତମାନଙ୍କର ଭାବ ବା ହେଉଥିବାଟା ଯହିଁରୁ ହୁଏ କର୍ମନାମକ ସେହି ମହାବିଶ୍ୱବିସ୍ତାର ମୁଁ । ସର୍ବଦା ବଦଳିଯାଉଥିବା ଅଧିଭୂତ ବସ୍ତୁମାନେ ମୁଁ । ବସ୍ତୁ ମଧ୍ୟରେ ଅଧିଦେବ ପୁରୁଷ ମୁହିଁ । ହେ ଦେହଶ୍ରେଷ୍ଠ, ଏ ଦେହରେ [ଅଧିଦେହ ବା] ଯଜ୍ଞର କର୍ତ୍ତା, [ଭୋକ୍ତା ରୂପରେ] ମୁହିଁ ଅଧିଯଜ୍ଞ । ୩-୪ ।

ବ୍ୟାଖ୍ୟା ସୂଚନା—ପ୍ରକୃତିକୁ ମଧ୍ୟ ସାଂଖ୍ୟମାନେ ଅକ୍ଷର କହନ୍ତି । ତେଣୁ ଏଠାରେ ବ୍ରହ୍ମକୁ 'ପରମ ଅକ୍ଷର' କୁହାଯାଇଛି । ଅକ୍ଷର=କ୍ଷର ନୁହେଁ । କ୍ଷର=ବ୍ୟୟ, ବିକାର, ପରିଣାମ, ପରିବର୍ତ୍ତନ, ବଦଳିବା ବା କୌଣସିମତେ ଅନ୍ୟପ୍ରକାର ହେବା । ଜଗତର ବସ୍ତୁମାନେ କ୍ଷର ବା କ୍ଷଣିକ—କୌଣସି ବସ୍ତୁ ବା ଭୂତଭାବ କେବେ ସ୍ଥିର ନୁହେଁ, ସର୍ବଦା ବଦଳିବାରେ ଲାଗିଛି । ସର୍ବଦା ବଦଳିବାରେ ବି ବସ୍ତୁ ତଥା ଜଗତ୍ତ ପୁଣି ଏକାପରି ଲାଗୁଛି । ଏହି ଏକାପରି ଲାଗୁଥିବା ସତ୍ତାଇ ସ୍ୱଭାବ । ଏହା 'ପରା ପ୍ରକୃତି' —୭.୫ ଦେଖ । କର୍ମ ହିଁ ଅପରା ପ୍ରକୃତିର ବିକାଶ—୭.୪ ଦେଖ । ପୁରୁଷ= ମନୁଷ୍ୟପରି ସ୍ନେହ, ମମତା, ଦୟା, କ୍ଷମାଦି ଥିବା ବ୍ୟକ୍ତିତ୍ୱ । ଏହାକୁ ପୂଜା କରାଯାଏ । ଏ ପୂଜାଗ୍ରହଣ କରି ସନ୍ତୋଷ ହୋଇ ଅନୁଗ୍ରହ ବି କରେ ବୋଲି ବିଶ୍ୱାସ । ତେଣୁ ଏହାକୁ ପୁରୁଷ କୁହାଯାଏ । ବିସର୍ଗ=ଫିଙ୍ଗାଇ ଛାଡ଼ିଦେବା (୯.୭ ଟୀକା ଦେଖ) ।୩-୪।

**ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରମ୍ ।**
**ଯଃ ପ୍ରୟାତି ସ ମଦ୍ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ । ୫ ।**

**ଅନ୍ୱୟ**—ସ୍ପଷ୍ଟଃ । ୫ ।

**ଟୀକା**—(ଏବଂ ଜ୍ଞାତ୍ୱା) ଚ ଯଃ ଅନ୍ତକାଳେ (ପ୍ରୟାଣକାଳେ) ମାଂ ଏବ ସ୍ମରନ୍ କଳେବରଂ (ଦେହଂ) ମୁକ୍ତ୍ୱା (ତ୍ୟକ୍ତ୍ୱା) ପ୍ରୟାତି, ସଃ ମଦ୍ଭାବଂ (ମମ ସ୍ୱରୂପଂ) ଯାତି (ଲଭତେ) । ଅତ୍ର [ବିଷୟେ] ସଂଶୟଃ (ବିଚିକିତ୍ସା) ନ ଅସ୍ତି । ୫ ।

**ଅର୍ଥ**—(ଏହିପରି ଧାରଣା କରି) ପୁଣି ଯେ ମଲାବେଳେ ମତେଇ ସ୍ମରୁଥିବାରୁ ଦେହ ଛାଡ଼ିଯାଏ, ସେ ମୋହରି ସ୍ୱରୂପ ପାଏ । ଏଥିରେ ସନ୍ଦେହ ନାହିଁ । ୫ ।

ବ୍ୟାଖ୍ୟା ସୂଚନା—ଜଗତର ସବୁ ବସ୍ତୁ ବା ତତ୍ତ୍ୱରେ ଏହିପରି ମତେ ଯେ ସର୍ବମୟ କରି ଧାରଣା କରିପାରେ, ସେ ମଲାବେଳେ ଯାହା ଭାବିବ, ସେଥିରେ ମତେଇ ଭାବିବ । ନଚେତ୍ ଅନ୍ୟ ପ୍ରକାରେ ଭାବିଲେ ଅନ୍ୟ ପ୍ରକାର ଫଳ ପାଇବ ବୋଲି ପରେ କହୁଚନ୍ତି । ୫ ।

ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରମ୍ ।
ତଂ ତମେବୈତି କୌନ୍ତେୟ ସଦା ତଦ୍‌ଭାବଭାବିତଃ । ୬ ।

ଅନ୍ୱୟ—କୌନ୍ତେୟ ! ସଦା ତଦ୍‌ଭାବଭାବିତଃ ଅନ୍ତେ ଯଂ ଯଂ ବା ଅପି ଭାବଂ ସ୍ମରନ୍ କଳେବରଂ ତ୍ୟଜତି, ତଂ ତଂ ଏବ ଏତି । ୬ ।

ଟୀକା—[ ଯତଃ ] ହେ କୌନ୍ତେୟ, [ଜୀବନକାଳେ] ସଦା ତଦ୍‌ଭାବ-ଭାବିତଃ (ତଦ୍‌ଧ୍ୟାନେନାଭ୍ୟସ୍ତଃ) [ସନ୍ ଜନଃ] ଅନ୍ତେ (ଅନ୍ତକାଳେ) ଯଂ ଯଂ [ଦେବାଦିଫଳାଧାନାଂ] ବା ଅପି ଭାବଂ ସ୍ମରନ୍ କଳେବରଂ ତ୍ୟଜତି, ତଂ ତଂ ଏବ ଏତି (ଲଭତେ) । ୬ ।

ଅର୍ଥ—[କାହିଁକି ନା] ହେ କୌନ୍ତେୟ, ଜୀବନଯାକ ସବୁବେଳେ ସେହି କଥାର ଧ୍ୟାନରେ ଅଭ୍ୟାସ କରିବା ହେତୁ ଲୋକ [ଦେବତା କର୍ମ ଫଳ ଆଦି] ଯେଉଁ ଯେଉଁ କଥା ସ୍ମରୁ ସ୍ମରୁ ଦେହ ଛାଡ଼େ, ସେହି ସେହି କଥା ପାଏ । ୬ ।

ବ୍ୟାଖ୍ୟା ସୂଚନା—ମଲାବେଳେ ହଠାତ୍ କିଛି ଭାବିବା ସହଜ ନୁହେ । ଜୀବନଯାକ କରିଥିବା କଥାହିଁ ସେତେବେଳେ ମନକୁ ଆଣିବା ସହଜ । ଏହି ଅଭିପ୍ରାୟ ବି ଏଠାରେ ଅଛି । ପରି ଶ୍ଳୋକରେ ଏହି ଅଭିପ୍ରାୟ ବି ସ୍ପଷ୍ଟ ହୋଇଚି । ୬ ।

ତସ୍ମାତ୍ ସର୍ବେଷୁ କାଳେଷୁ ମାମନୁସ୍ମର ଯୁଧ୍ୟ ଚ ।
ମୟ୍ୟର୍ପିତମନୋବୁଦ୍ଧିର୍ମାମେବୈଷ୍ୟସ୍ୟସଂଶୟଃ । ୭ ।

ଅନ୍ୱୟ—ସ୍ପଷ୍ଟ । ୭ ।

ଟୀକା—ତସ୍ମାତ୍ ସର୍ବେଷୁ କାଳେଷୁ ମାଂ ଅନୁସ୍ମର (କର୍ମଣି କର୍ମଣି—କର୍ମଣଃ ପଶ୍ଚାତ୍—ମମ ସ୍ମରଣଂ କୁରୁ ) । ( ଯୁଦ୍ଧଂ କୁରୁ ) ଚ । [ଏବଂ] ମୟି ଅର୍ପିତମନୋବୁଦ୍ଧିଃ [ସନ୍] ମାଂ ଏବ ଏଷ୍ୟସି । [ ଅତ୍ର ] ଅସଂଶୟଃ ( ନ ସନ୍ଦେହଃ ) । ୭ ।

ଅର୍ଥ—ଅତଏବ ମତେ ସବୁବେଳେ ଧ୍ୟାନରେ ରଖିଥା ଓ ଯୁଦ୍ଧ କର । ଏହିପରି ମୋଠି ମନ ବୁଦ୍ଧି ଅର୍ପଣ କରି ଦେଲେ, ମତେଇ ପାଇବୁ ସନ୍ଦେହ ନାହିଁ । ୭ ।

**ଅଭ୍ୟାସଯୋଗଯୁକ୍ତେନ ଚେତସା ନାନ୍ୟଗାମିନା ।**
**ପରମଂ ପୁରୁଷଂ ଦିବ୍ୟଂ ଯାତି ପାର୍ଥାନୁଚିନ୍ତୟନ୍ ॥ ୮ ॥**

**ଅନ୍ୱୟଃ**—ପାର୍ଥ ! ଅଭ୍ୟାସଯୋଗଯୁକ୍ତେନ ନ ଅନ୍ୟଗାମିନା ଚେତସା ଅନୁଚିନ୍ତୟନ୍ ଦିବ୍ୟଂ ପରମଂ ପୁରୁଷଂ ଯାତି ॥ ୮ ॥

**ଟୀକା**—ପାର୍ଥ, [ଯତଃ ଏବଂ] ଅଭ୍ୟାସଯୋଗଯୁକ୍ତେନ (ଏକସ୍ମିନ୍ ବିଷୟେ ତୁଲ୍ୟପ୍ରତ୍ୟୟପ୍ରବାହଃ, ଅଭ୍ୟାସଃ, ସଃ ଏବ ଯୋଗଃ, ସାଧନନିଷ୍ଠା—ତେନ ଯୁକ୍ତେନ ବ୍ୟାପୃତେନ) [ଅତଏବ] ନ ଅନ୍ୟଗାମିନା (ଅନ୍ୟବିଷୟଗତେନ) ଚେତସା ଅନୁଚିନ୍ତୟନ୍ [ଜନଃ ତଂ ଏବ] ଦିବ୍ୟଂ (ଦ୍ୟୋତମନ୍ତଂ, ନିତ୍ୟପ୍ରକାଶରୂପଂ) ପରମଂ ପୁରୁଷଂ (ପୁରୁଷୋତ୍ତମଂ, ପରମେଶ୍ୱରଂ) ଯାତି ॥ ୮ ॥

**ଅର୍ଥ**—[କାହିଁକି ନା, ଏହିପରି] ଅଭ୍ୟାସନିଷ୍ଠାରେ ଲଗିଥିବା ହେତୁରୁ ଆଉ କୁଆଡ଼େ ଯାଉ ନ ଥିବା ମନରେ ନିତ୍ୟ ଦେବତା ପରମେଶ୍ୱର ପୁରୁଷୋତ୍ତମଙ୍କୁ ଚିନ୍ତା କରି କରି ଲୋକ ତାଙ୍କୁଇ ପାଏ ॥ ୮ ॥

ବ୍ୟାଖ୍ୟା ସୂଚନା—ଅଭ୍ୟାସଯୋଗଯୁକ୍ତ=ଅଭ୍ୟାସନିଷ୍ଠାରେ ଲଗିଥିବା । ଅଭ୍ୟାସ=ଏକପ୍ରକାର ଧାରଣାରେ ବରାବର ଥିବା; ସେଇ ଅଭ୍ୟାସ ହେଉଛି ଯୋଗ ବା ସାଧନାର ନିଷ୍ଠା, ସେଥିରେ ଯୁକ୍ତ ବା ଲଗି ରହିଥିବା ॥ ୮ ॥

**କବିଂ ପୁରାଣମନୁଶାସିତାର-**
**ମଣୋରଣୀୟାଂସମନୁସ୍ମରେଦ୍ ଯଃ ।**
**ସର୍ବସ୍ୟ ଧାତାରମଚିନ୍ତ୍ୟରୂପ-**
**ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ॥ ୯ ॥**
**ପ୍ରୟାଣକାଲେ ମନସାଽଚଲେନ**
**ଭକ୍ତ୍ୟା ଯୁକ୍ତୋ ଯୋଗବଲେନ ଚୈବ ।**
**ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ସମ୍ୟକ୍**
**ସ ତଂ ପରଂ ପୁରୁଷମୁପୈତି ଦିବ୍ୟମ୍ ॥୧୦॥**

**ଅନ୍ୱୟ**—ପ୍ରୟାଣକାଲେ ଅଚଲେନ ମନସା ଭକ୍ତ୍ୟା ଯୁକ୍ତଃ ଯୋଗବଲେନ ଚ ଏବ ଭ୍ରୁବୋଃ ମଧ୍ୟେ ପ୍ରାଣଂ ସମ୍ୟକ୍ ଆବେଶ୍ୟ ଯଃ କବିଂ, ପୁରାଣଂ, ଅନୁଶାସିତାରଂ, ଅଣୋଃ ଅଣୀୟାଂସଂ, ସର୍ବସ୍ୟ ଧାତାରଂ,

ଅଚିନ୍ତ୍ୟରୂପଂ, ତମସଃ ପରସ୍ତାତ୍ ଆଦିତ୍ୟବର୍ଣଂ ଅନୁସ୍ମରେତ୍, ସଃ ତଂ ଦିବ୍ୟଂ ପରଂ ପୁରୁଷଂ ଉପୈତି । ୯-୧୦ ।

**ଟୀକା**—[କିଂଭୂତୋଽସୌ ପୁରୁଷଃ ? ଅନ୍ତକାଲେ କଥଂ ବା ସ୍ମର୍ତ୍ତବ୍ୟ ? ଇତ୍ୟାହ] ପ୍ରୟାଣକାଲେ ଅଚଳେନ ମନସା ଭକ୍ତ୍ୟା ଯୁକ୍ତଃ (ଭକ୍ତନିଷ୍ଠାଯୁକ୍ତଃ ସନ୍) ଯୋଗବଲେନ (ଚିରାଭ୍ୟସ୍ତଯୋଗସାଧନବଲେନ) ଚ ଏବ ଭ୍ରୁବୋଃ ମଧ୍ୟେ (ବ୍ରହ୍ମରନ୍ଧ୍ରମୂଳେ ଇତଭାବଃ) ପ୍ରାଣଂ ସମ୍ୟକ୍ ଆବେଶ୍ୟ (ସଂସ୍ଥାପ୍ୟ) ଯଃ କବିଂ (ସର୍ବଜ୍ଞଂ) ପୁରାଣଂ (ଅନାଦିସିଦ୍ଧଂ) ଅନୁଶାସିତାରଂ (ସର୍ବନିୟନ୍ତାରଂ) ଅଣୋଃ (ସୂକ୍ଷ୍ମତମାତ୍) [ଅପି] ଅଣୀୟାଂସଂ (ସୂକ୍ଷ୍ମତରଂ) ସର୍ବସ୍ୟାଧାତାରଂ (ଆଧାରସ୍ୱରୂପଂ) ଅଚିନ୍ତ୍ୟରୂପମ୍ (ସ୍ୱରୂପତଃ ଅବର୍ଣନୀୟଂ, ମନସଃ ଅଗୋଚରଂ) ତମସଃ (ଅଜ୍ଞାନତଃ) ପରସ୍ତାତ୍ (ଅତୀତଂ) ଆଦିତ୍ୟବର୍ଣଂ (ନିତ୍ୟପ୍ରକାଶଂ) ଅନୁସ୍ମରେତ୍ (ଯଥାର୍ଥତଃ ସ୍ମରେତ୍) ସଃ ତଂ ଦିବ୍ୟଂ ପରଂ ପୁରୁଷଂ ଉପୈତି (ପ୍ରାପ୍ନୋତି) । ୯-୧୦ ।

**ଅର୍ଥ**—[କିପରି ଏ ପୁରୁଷ ? ଅନ୍ତକାଳେ କିପରି ବା ସ୍ମରଣ କରାଯାଏ ? ଏଥିକୁ କହୁଛନ୍ତି]—ଦେହ ଛାଡ଼ିଲାବେଳେ ଅଟଳ ମନରେ ଭକ୍ତି ଧରି, ଅଭ୍ୟାସ କରିଥିବା ଯୋଗସାଧନବଳରେ ଭ୍ରୂଲତା-ସନ୍ଧିରେ—ଅର୍ଥାତ୍, ବ୍ରହ୍ମରନ୍ଧ୍ର ମୂଳରେ—ପ୍ରାଣ ଠିକ୍ ରଖି ସର୍ବଜ୍ଞାତା, ଅନାଦି, ଈଶ୍ୱର ଶାସକ, ସୂକ୍ଷ୍ମତମ, ଅଣୁରୁ ସୂକ୍ଷ୍ମ, ସର୍ବାଧାର, ଅଚିନ୍ତନୀୟ, ଅଜ୍ଞାନରୁ ଅତୀତ ଓ ସୂର୍ଯ୍ୟ ପରି ପ୍ରକାଶମୟଙ୍କୁ ଯେ ଠିକଣା କରି ସ୍ମରନ୍ତି, ସେ ସେହି ଦିବ୍ୟ ପରମପୁରୁଷଙ୍କୁ ପାଆନ୍ତି । ୯-୧୦ ।

ବ୍ୟାଖ୍ୟା ସୂଚନା—ଏଠାରେ ଯୋଗ ବୋଇଲେ ଗୀତାର ସମତ୍ୱ-କର୍ମ-ଯୋଗ ନୁହେଁ; ପାତଞ୍ଜଳ ମତରେ ପରେ ପ୍ରକାଶ ପାଇଥିବା ପୂର୍ବରୁ ପ୍ରଚଳିତ ଯୋଗସାଧନା । ସେଥିରେ ପ୍ରାଣକୁ ସବୁଆଡ଼ୁ ଏକାଗ୍ର କରି ବ୍ରହ୍ମରନ୍ଧ୍ର ବାଟେ ତାକୁ ଭେଦକରି ଛାଡ଼ିବାର ସାଧନ କୁହାଯାଇଅଛି । ପିଲା ଜନ୍ମ ହେଲାବେଳେ ତାକର ଯେଉଁ ସ୍ଥାନଟି ନରମ ହୋଇ ଲଟଲଟ ହେଉଥାଏ, ସେଇଟି ବ୍ରହ୍ମରନ୍ଧ୍ର । ୯-୧୦ ।

**ଯଦକ୍ଷରଂ ବେଦବିଦୋ ବଦନ୍ତି**
**ବିଶନ୍ତି ଯଦ୍ ଯତୟୋ ବୀତରାଗାଃ ।**
**ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି**
**ତତ୍ ତେ ପଦଂ ସଂଗ୍ରହେଣ ପ୍ରବକ୍ଷ୍ୟେ । ୧୧ ।**

**ଅନ୍ୱୟ**—ବେଦବିଦଃ ଯତ୍ ଅକ୍ଷରଂ ବଦନ୍ତି, ବୀତରାଗାଃ ଯତୟଃ ଯତ୍ ବିଶନ୍ତି, ଯତ୍ ଇଚ୍ଛନ୍ତଃ ବ୍ରହ୍ମଚର୍ଯ୍ୟ ଚରନ୍ତି, ତତ୍ ପଦଂ ତେ ସଂଗ୍ରହେଣ ପ୍ରବକ୍ଷ୍ୟେ । ୧୧ ।

**ଟୀକା**—ବେଦବିଦଃ (ବେଦତତ୍ତ୍ୱଜ୍ଞାଃ, ବେଦାନ୍ତଜ୍ଞାଃ) ଯତ୍ ଅକ୍ଷରଂ (ଅବିନାଶିନଂ) ବଦନ୍ତି, ବୀତରାଗାଃ (ଅନାସକ୍ତାଃ) ଯତୟଃ (ମୋକ୍ଷଯତ୍ନକୃତଃ) ଯତ୍ର ବିଶନ୍ତି (ପ୍ରବିଶନ୍ତି, ଯତ ସ୍ଥିତିଃ ସମ୍ଭବାୟ ମୋକ୍ଷାୟ ବା ଯତନ୍ତେ—ଇତି ଭାବଃ) ଯତ୍ [ପ୍ରାପ୍ତୁଂ] ଇଚ୍ଛନ୍ତଃ [ଭକ୍ତପରାଃ ଜନାଃ] ବ୍ରହ୍ମଚର୍ଯ୍ୟଂ ଚରନ୍ତି (ଆଚରନ୍ତି), ତତ୍ ପଦଂ (ପରମଗନ୍ତବ୍ୟଂ) ତେ (ତୁଭ୍ୟଂ) ସଂଗ୍ରହେଣ (ସଂକ୍ଷେପତଃ) ପ୍ରବକ୍ଷ୍ୟେ (କଥୟିଷ୍ୟାମି) । ୧୧ ।

**ଅର୍ଥ**—ଯଥାର୍ଥ ବେଦତତ୍ତ୍ୱ ଜାଣିବା ଲୋକେ ଯାହାକୁ ଅକ୍ଷର ବୋଲି କହନ୍ତି, ବିଷୟାସକ୍ତି ଛାଡ଼ିଥିବା ଯତିମାନେ ଯହିଁରେ ପଶି ଲୀନ ହୁଅନ୍ତି. (ବା ଯହିଁରେ ବୁଦ୍ଧି ସ୍ଥିର ରଖି ଯୋଗସ୍ଥିତି ପାଆନ୍ତି), ଯାହା ପାଇବାକୁ ମନ ମରି ଭକ୍ତମାନେ ବ୍ରହ୍ମଚର୍ଯ୍ୟ ଧରିଥାନ୍ତି, ସେହି ପଦ (ସ୍ଥାନ ବା ସ୍ଥିତି) କଥା ତୋତେ ଅଳ୍ପକେ କହିବି । ୧୧ ।

ବ୍ୟାଖ୍ୟା ସୂଚନା—ଗୀତାର ଅନେକ ଶ୍ଳୋକ ବା ଶ୍ଳୋକାଂଶ ପରି ଏହି ଶ୍ଳୋକଟି ଉପନିଷଦରୁ ଏକପ୍ରକାର ଉଦ୍ଧାର କରି ଏଠାରେ ରଖାଯାଇଛି । କଠୋ ପନିଷଦ୍ ୨.୧୫ ଦେଖ । ସେଠାରେ 'ପ୍ରବକ୍ଷ୍ୟେ' ପରେ ଅଛି, 'ଓମିତ୍ୟେତତ୍' ଅର୍ଥାତ୍ ଏହି ପଦ ବା ଅକ୍ଷରଟି ଓଁ । ଏଠାରେ ପରେ ଥିବା ଶ୍ଳୋକ ପରେ ମଧ୍ୟ ସେହି ଓଁ କଥା ଅଛି । ଯୋଗସାଧନାରେ ଓଁ ବ୍ରହ୍ମର ପ୍ରତୀକ ବା ପ୍ରତିମା । ହେଲେହେଁ, ଅକ୍ଷର = ଅବ୍ୟୟ; ଓ ପଦ = ପରମଗତି ବା ସ୍ଥାନ, ଏ ଅର୍ଥ ମଧ୍ୟ ଏଠାରେ ସ୍ପଷ୍ଟ । ଭଗବାନ୍ ଗୀତାରେ ଏହିପରି ବହୁତ ପ୍ରଚଳିତ କଥାର ତାତ୍ତ୍ୱିକ ସାର୍ବଜନୀନ ଅର୍ଥ ଦେଇଛନ୍ତି । ଯଥା—ଯଜ୍ଞ, ଯୋଗ । ସେଇପରି ବ୍ରହ୍ମଚର୍ଯ୍ୟ = ବ୍ରହ୍ମ ପାଇବାକୁ ଯାହା ସବୁ କରାଯାଏ—କେବଳ ବୀର୍ଯ୍ୟଧାରଣ ନୁହେ । ବେଦ୍‌ବିତ୍ (ଜ୍ଞାନୀ); ବୀତରାଗ ଯତି (କର୍ମଯୋଗୀ); ପରମଗତି ପାଇବାକୁ ଇଚ୍ଛା କରୁଥିବା ଲୋକ (ଭକ୍ତ)—ଏଇ ତିନି ଦିଗରୁ ସେଇ ବ୍ରହ୍ମକୁ ଏଠାରେ ସୂଚନା କରାଯାଇଛି । ଭକ୍ତମାନେ ଈଶ୍ୱର ପାଇବାକୁ ଯେଉଁ ସତ୍ୟାଦିରେ ନିଷ୍ଠା, ଜପ, ଉପବାସ, ଉପାସନା, ଧ୍ୟାନାଦି କରନ୍ତି, ସେସବୁ ମଧ୍ୟ ଏଠାରେ ବ୍ରହ୍ମଚର୍ଯ୍ୟ । ୧୧ ।

**ସର୍ବଦ୍ୱାରାଣି ସଂଯମ୍ୟ ମନୋ ହୃଦି ନିରୁଧ୍ୟ ଚ ।**
**ମୂର୍ଧ୍ନ୍ୟାଧାୟାତ୍ମନଃ ପ୍ରାଣମାସ୍ଥିତୋ ଯୋଗଧାରଣାମ୍ ।୧୨।**
**ଓମିତ୍ୟେକାକ୍ଷରଂ ବ୍ରହ୍ମ ବ୍ୟାହରନ୍ ମାମନୁସ୍ମରନ୍ ।**
**ଯଃ ପ୍ରୟାତି ତ୍ୟଜନ୍ ଦେହଂ ସ ଯାତି ପରମାଂ ଗତିମ୍ ।୧୩।**

**ଅନ୍ୱୟ**—ସର୍ବଦ୍ୱାରାଣି ସଂଯମ୍ୟ, ମନଃ ଚ ହୃଦି ନିରୁଧ୍ୟ, ଆତ୍ମନଃ ପ୍ରାଣଂ ମୂର୍ଦ୍ଧ୍ନି ଆଧାୟ, ଯୋଗଧାରଣାଂ ଆସ୍ଥିତଃ ଓଁ ଇତି ଏକାକ୍ଷରଂ ବ୍ରହ୍ମ ବ୍ୟାହରନ୍, ମାଂ ଅନୁସ୍ମରନ୍, ଯଃ ଦେହଂ ତ୍ୟଜନ୍ ପ୍ରୟାତି, ସଃ ପରମାଂ ଗତିଂ ଯାତି । ୧୨-୧୩ ।

**ଟୀକା**—[ଶ୍ରୁତ୍ୟୁକ୍ତଂ 'ଓମିତ୍ୟେତତ୍' ପଦଂ ସ୍ମାରୟନ୍ନିବ ଆହ]—[ଦେହସ୍ୟ ଇନ୍ଦ୍ରିୟରୂପାଣି] ସର୍ବଦ୍ୱାରାଣି [ବିଷୟେଭ୍ୟଃ] ସଂଯମ୍ୟ, [ବାହ୍ୟବିଷୟାତ୍] ମନଃ ଚ ହୃଦି ନିରୁଧ୍ୟ (ସ୍ଥିରଂ କୃତ୍ୱା), ଆତ୍ମନଃ (ନିଜସ୍ୟ) ପ୍ରାଣଂ ମୂର୍ଦ୍ଧ୍ନି (ବ୍ରହ୍ମରନ୍ଧ୍ରମୂଳେ—ଭ୍ରୁବୋର୍ମଧ୍ୟେ) ଆଧାୟ (ଧାରୟିତ୍ୱା) ଯୋଗଧାରଣାଂ (ଧ୍ୟାନେ ଧୃତିଂ, ଯୋଗସ୍ଥିରତାଂ) ଆସ୍ଥିତଃ (ଆଶ୍ରିତଃ), ଓଁ ଇତି ଏକାକ୍ଷରଂ ବ୍ରହ୍ମ (ବ୍ରହ୍ମବାଚକଂ, ବ୍ରହ୍ମପ୍ରତୀକଂ ବା ) ବ୍ୟାହରନ୍ (ଉଚ୍ଚାରୟନ୍) ମାଂ ଅନୁସ୍ମରନ୍ ଯଃ ଦେହଂ ତ୍ୟଜନ୍, ପ୍ରୟାତି, ସଃ ପରମାଂ ଗତିଂ ଯାତି । ୧୨-୧୩ ।

**ଅର୍ଥ**—[ଓଁ—ଏଇ ପଦ ବୋଲି ବେଦ କଥାକୁ ମନେ ପକାଇଦେଲା ପରି କହୁଚନ୍ତି]—ସବୁ ଇନ୍ଦ୍ରିୟଦ୍ୱାରମାନଙ୍କୁ ବିଷୟରୁ ବନ୍ଦ କରି, ମନକୁ ହୃଦୟରେ ଆପଣା ଭିତରେ] ରୁନ୍ଧି, ଆପଣା ପ୍ରାଣକୁ ବ୍ରହ୍ମରନ୍ଧ୍ର ମୂଳରେ ରଖି, ଯୋଗଧ୍ୟାନରେ ଠିକ୍ ରହି, ଓଁ—ଏଇ ଏକାକ୍ଷର ବ୍ରହ୍ମକୁ ତୁଣ୍ଡରେ କହି କହି, ମତେ ସ୍ମରଣ କରୁ କରୁ, ଯେ ଦେହ ଛାଡ଼ିଯାଏ, ସେ ପରମ ଗତି ପାଏ । ୧୨-୧୩ ।

ବ୍ୟାଖ୍ୟା ସୂଚନା—'ଓଁ' କୁ ବ୍ରହ୍ମର ପ୍ରତୀକ ବା ପ୍ରତିମା କରି ଧ୍ୟାନଯୋଗ ଅଭ୍ୟାସ କରନ୍ତୁ । ୧୨-୧୩ ।

**ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ ।**
**ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ ॥ ୧୪ ॥**

**ଅନ୍ୱୟ**—ପାର୍ଥ ! ଯଃ ଅନନ୍ୟଚେତାଃ ସତତଂ ନିତ୍ୟଶଃ ମାଂ ସ୍ମରତି, ତସ୍ୟ ନିତ୍ୟଯୁକ୍ତସ୍ୟ ଯୋଗିନଃ ଅହଂ ସୁଲଭଃ । ୧୪ ।

**ଟୀକା**—[ଜୀବନେ ସତତାଭ୍ୟାସାତ୍ ଏବଂ ସମ୍ଭବତୀତି ସ୍ମାରୟତି]—ହେ ପାର୍ଥ, ଯଃ [ଜୀବନକାଳେ] ଅନନ୍ୟଚେତାଃ (ମତ୍ତଃ ନ ନ୍ୟମନାଃ) [ ସନ୍ ] ସତତଂ (ନିରନ୍ତରଂ) ନିତ୍ୟଶଃ (ପ୍ରତିଦିନଂ, ପ୍ରତିକର୍ମଣି ବା) ମାଂ ସ୍ମରତି, ତସ୍ୟ ନିତ୍ୟଯୁକ୍ତସ୍ୟ (ନିତ୍ୟସମାହିତସ୍ୟ) ଯୋଗିନଃ ଅହଂ [ଏବଂ] ସୁଲଭଃ [ଅସ୍ମି] । ୧୪ ।

**ଅର୍ଥ**—[ ଜୀବନକାଳରେ ନିରନ୍ତର ଅଭ୍ୟାସ କରୁଥିଲେହିଁ ଏକା ମଲା-ବେଳେ ଏପରି ସ୍ମରଣ କରିବା ସହଜ ହୁଏ ବୋଲି ଚେତାଇ କହୁଚନ୍ତି]—ହେ ପାର୍ଥ, ଯେ ଜୀବନଯାକ ମୋ ଛଡ଼ା ଅଉ କାହିଁରେ ମନ ନ ଦେଇ ନିତି ବରାବର ମତେ ସୁମରୁଥାଏ, ସର୍ବଦା ସମାଧି ଅଭ୍ୟାସ କରିଥିବା ସେହି ଯୋଗୀକୁ ମୁଁ ଏପରି ସହଜରେ ମିଳେ । (ନଚେତ୍ ମଲାବେଳେ ମନ ସ୍ଥିର କରି ମତେ ମନେ ପକାଇବା ସହଜ ନୁହେ—ଏହି ଭାବ ) । ୧୪ ।

**ମାମୁପେତ୍ୟ ପୁନର୍ଜନ୍ମ ଦୁଃଖାଳୟମଶାଶ୍ୱତମ୍ ।**
**ନାପ୍ନୁବନ୍ତି ମହାତ୍ମାନଃ ସଂସିଦ୍ଧିଂ ପରମାଂ ଗତାଃ ।୧୫।**

**ଅନ୍ୱୟ**—ମାଂ ଉପେତ୍ୟ ପରମାଂ ସଂସିଦ୍ଧିଂ ଗତାଃ ମହାତ୍ମାନଃ ପୁନଃ ଦୁଃଖାଳୟଂ ଅଶାଶ୍ୱତଂ ଜନ୍ମ ନ ଆପ୍ନୁବନ୍ତି । ୧୫ ।

**ଟୀକା**—[ଏବଂ] ମାଂ ଉପେତ୍ୟ (ପ୍ରାପ୍ୟ), ପରମାଂ (ସର୍ବୋତ୍କୃଷ୍ଟାଂ) ସଂସିଦ୍ଧିଂ (ଗତିଂ) ଗତାଃ ମହାତ୍ମାନଃ ପୁନଃ ଦୁଃଖାଲୟଂ (ଦୁଃଖସ୍ୟ ଗୃହମିବ, ସର୍ବଦୁଃଖସ୍ଥାନଂ) ଅଶାଶ୍ୱତଂ (ବିନଶ୍ୱରଂ) ଜନ୍ମ ନ ଆପ୍ନୁବନ୍ତି । ୧୫ ।

**ଅର୍ଥ**—[ଏହିପରି] ମତେ ପାଇବାରୁ ପରମ ଗତିକୁ ଯିବା ମହାତ୍ମାମାନେ ଆଉ ଦୁଃଖର ଘର ପରି ଓ ଅନିତ୍ୟ ମନୁଷ୍ୟାଦି ଜନ୍ମ ପାଆନ୍ତି ନାହିଁ । ୧୫ ।

**ଆବ୍ରହ୍ମଭୁବନାଲ୍ଲୋକାଃ ପୁନରାବର୍ତ୍ତିନୋଽର୍ଜୁନ ।**
**ମାମୁପେତ୍ୟ ତୁ କୌନ୍ତେୟ ପୁନର୍ଜନ୍ମ ନ ବିଦ୍ୟତେ ।୧୬।**

**ଅନ୍ୱୟ**—ଅର୍ଜୁନ ! ଆବ୍ରହ୍ମଭୁବନାତ୍ ଲୋକାଃ ପୁନଃ ଆବର୍ତ୍ତିନଃ । ହେ କୌନ୍ତେୟ ! ମାଂ ଉପେତ୍ୟ ପୁନଃ ଜନ୍ମ ନ ବିଦ୍ୟତେ । ୧୬ ।

**ଟୀକା**—[ଦେବୋପାସକାନାଂ ବ୍ରହ୍ମାଦି ଲୋକୋଽପି ଅଶାଶ୍ୱତଃ ଇତି ଦର୍ଶୟନ୍ ଆହ] ହେ ଅର୍ଜୁନ, ଆବ୍ରହ୍ମଭୁବନାତ୍ (ସୃଷ୍ଟିକର୍ତ୍ତା ବ୍ରହ୍ମା ଦେବେଷୁ ଶ୍ରେଷ୍ଠଃ ସରତମସ୍ତ—ତସ୍ୟ ଭୁବନାତ୍ ଲୋକାତ୍ [ଆରଭ୍ୟ ଅଧୋଽଧଃ ସର୍ବେ] ଲୋକାଃ ଭୁବନାନି, ଯଦ୍ୱା ଲୋକସ୍ଥାଃ,) ଲୋକାନ୍ ଗତାସ୍ତ (ଜନାଃ) ପୁନଃ ଆବର୍ତ୍ତିନଃ (ଲବ୍ଧଜନ୍ମାନଃ) ହେ କୌନ୍ତେୟ, ମାଂ ତୁ ଉପେତ୍ୟ ପୁନଃ ଜନ୍ମ ନ ବିଦ୍ୟତେ ।୧୬।

**ଅର୍ଥ**—[ବ୍ରହ୍ମାଙ୍କ ଲୋକ ପରି ଅତି ଉଚ୍ଚସ୍ଥାନ ମଧ୍ୟ ଅଶାଶ୍ୱତ ବୋଲି ଦେଖାଇ କହୁଚନ୍ତି]—ହେ ଅର୍ଜୁନ, ବ୍ରହ୍ମାଙ୍କ ଲୋକଠୁ ଧରି [ତା ତଳକୁ ତଳ] ସବୁ ଲୋକଯାକ ପ୍ରଳୟରେ ଯାଇ ପୁଣି ଫେରନ୍ତି (କିମ୍ବା ସେସବୁ ଲୋକକୁ ଯାଇ

ଜୀବ ପୁଣି କାଳରେ ଜନ୍ମ ହୁଏ) । କିନ୍ତୁ କୌନ୍ତେୟ, ମତେ ପାଇଲେ ଆଉ ପୁଣି ଜନ୍ମ ନାଇ । ୧୬ ।

ବ୍ୟାଖ୍ୟା ସୂଚନା—ବ୍ରହ୍ମା ସୃଷ୍ଟିକର୍ତ୍ତା । ସେସବୁ ଦେବତାଙ୍କଠାରୁ ବେଶିକାଳ ରହନ୍ତି । ଯେ ଲୋକ ଚିର ନୁହେଁ, ସେ ଲୋକକୁ ପାଇ ବ୍ୟକ୍ତି ବରାବର ସେଠାରେ ରହିଲେହେଁ, ସେ ଲୋକ ପ୍ରଳୟରେ ଧ୍ୱଂସ ହେଲାବେଳେ ଏ ବ୍ୟକ୍ତି ଧ୍ୱଂସରେ ଯାଇ, ପୁଣି ସୃଷ୍ଟିବେଳେ ତ ହେଲେ ଜନ୍ମ ପାଇବ ?—ଏଇ ଲକ୍ଷ୍ୟରେ ବ୍ରହ୍ମାଙ୍କ କାଳପରିମାଣ ବୁଝାଉଚନ୍ତି । ୧୬ ।

**ସହସ୍ରଯୁଗପର୍ଯ୍ୟନ୍ତମହର୍ଯଦ୍ ବ୍ରହ୍ମଣୋ ବିଦୁଃ ।**
**ରାତ୍ରିଂ ଯୁଗସହସ୍ରାନ୍ତାଂ ତେଽହୋରାତ୍ରବିଦୋ ଜନାଃ ।୧୭।**

**ଅନ୍ୱୟ**—ତେ ଅହୋରାତ୍ରବିଦଃ ଜନାଃ ସହସ୍ରଯୁଗପର୍ଯ୍ୟନ୍ତଂ ଯତ୍ ବ୍ରହ୍ମଣଃ ଅହଃ, ଯୁଗସହସ୍ରାନ୍ତାଂ ରାତ୍ରିଂ ବିଦୁଃ । ୧୭ ।

**ଟୀକା**—[ ବ୍ରହ୍ମଲୋକୋଽପି କାଲାବଚ୍ଛିନ୍ନଃ ଇତ୍ୟାହ ]—ତେ ଅହୋରାତ୍ରବିଦଃ [ ଦିବାରାତ୍ରିପରିମାଣଜ୍ଞାଃ ] ଜନାଃ ସହସ୍ରଯୁଗପର୍ଯ୍ୟନ୍ତଂ ଯତ୍ [ତତ୍] ବ୍ରହ୍ମଣଃ ଅହଃ ( ଦିବସଃ ) [ ତଥା ] ଯୁଗସହସ୍ରାନ୍ତାଂ ( ଯୁଗସହସ୍ରେଣ ଅନ୍ତଃ ଶେଷଃ ଯସ୍ୟାଃ ତାଂ ) [ ତସ୍ୟ ବ୍ରହ୍ମଣଃ ] ରାତ୍ରିଂ ବିଦୁଃ । ୧୭ ।

**ଅର୍ଥ**—[ ବ୍ରହ୍ମାଙ୍କ ଲୋକ ବୋଲି ବଡ଼ କରି ଧରିବ ନା, ସେ ବି କାଳର ମାପରେ ଯାଏ ଆସେ—ବୋଲି କହୁଚନ୍ତି ]—[ଯେଉଁମାନେ ଦିନ ରାତି ମାପ କଥା ସବୁ ଜାଣନ୍ତି ] ସେହି ଅହୋରାତ୍ରବିଦ୍‌ମାନେ ହଜାରେ ଯୁଗରେ ଯେଉଁ କାଳ ବା କଳ୍ପ, ତାକୁ ବ୍ରହ୍ମାଙ୍କ ଦିନ, ପୁଣି ସେହିପରି ହଜାରେ ଯୁଗରେ [ବ୍ରହ୍ମାଙ୍କ] ରାତି ବୋଲି ଜାଣନ୍ତି (କହନ୍ତି) । ୧୭ ।

ବ୍ୟାଖ୍ୟା ସୂଚନା—ଯୁଗ ଏଠାରେ ଦେବଯୁଗ । ହଜାରେ ଦେବଯୁଗ= କଳ୍ପ=ବ୍ରହ୍ମାଙ୍କ ଦିନ ବା ରାତି । ଦେବଯୁଗ=ସତ୍ୟ, ତ୍ରେତା, ଦ୍ୱାପର ଓ କଳି, ଏହି ଚାରି ଯୁଗର ସମଷ୍ଟି । ଯଥା—ସତ୍ୟଯୁଗ ୧୭, ୨୮, ୦୦୦ ମନୁଷ୍ୟ-ବର୍ଷ+ତ୍ରେତାଯୁଗ ୧୨, ୯୬, ୦୦୦+ଦ୍ୱାପର ଯୁଗ ୮,୬୪,୦୦୦-।-କଳି ଯୁଗ ୪,୩୨, ୦୦୦=ଦେବଯୁଗ ୪୩, ୨୦, ୦୦୦ ମନୁଷ୍ୟବର୍ଷ । କଳ୍ପ= ୪୩, ୨୦, ୦୦୦, ୦୦୦ ମନୁଷ୍ୟବର୍ଷ । ଏକ ମନୁଷ୍ୟବର୍ଷ=ଏକ ଦେବଦିନ । ୩୬୦ ଦେବଦିନ=୧ ଦେବବର୍ଷ । ସତ୍ୟଯୁଗ=୪୮୦୦ ଦେବବର୍ଷ । ତ୍ରେତା= ୩୬୦୦ ଦେବବର୍ଷ । ଦ୍ୱାପର=୨୪୦୦ ଦେବବର୍ଷ । କଳି=୧୨୦୦ ଦେବବର୍ଷ । ଏହିପରି ୧୨୦୦୦ ଦେବବର୍ଷ=ଦେବଯୁଗ । ୧୦୦୦ ଦେବଯୁଗ=କଳ୍ପ । ୧୭ ।

**ଅବ୍ୟକ୍ତାଦ୍‌ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ।**
**ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ । ୧୮ ।**

**ଅନ୍ୱୟ**—ଅହରାଗମେ ଅବ୍ୟକ୍ତାତ୍ ସର୍ବାଃ ବ୍ୟକ୍ତୟଃ ପ୍ରଭବନ୍ତି । ରାତ୍ର୍ୟାଗମେ ତତ୍ର ଏବ ଅବ୍ୟକ୍ତସଂଜ୍ଞକେ ପ୍ରଲୀୟନ୍ତେ । ୧୮ ।

**ଟୀକା**—[ ବ୍ରହ୍ମଣଃ ] ଅହରାଗମେ ( ଦିବାରମ୍ଭେ ) ଅବ୍ୟକ୍ତାତ୍ ( ବ୍ରହ୍ମଣଃ ସୁପ୍ତପ୍ରକୃତେଃ—ବ୍ରହ୍ମଣଃ ସ୍ୱାପାବସ୍ଥା ଅବ୍ୟକ୍ତଂ ଇତ୍ୟୁଚ୍ୟତେ ) ସର୍ବାଃ ବ୍ୟକ୍ତୟଃ ( ଜ୍ଞାନଗମ୍ୟାଃ, ପ୍ରକାଶାଃ ) ପ୍ରଭବନ୍ତି (ଜାୟନ୍ତେ) । ରାତ୍ର୍ୟାଗମେ ତତ୍ର ଏବ ଅବ୍ୟକ୍ତସଂଜ୍ଞକେ [ ସ୍ୱାପେ ] ପ୍ରଲୀୟନ୍ତେ (ପ୍ରଳୟଂ ଯାନ୍ତି, ଲୁପ୍ୟନ୍ତେ ) । ୧୮ ।

**ଅର୍ଥ**—[ ବ୍ରହ୍ମାଙ୍କର ] ଦିନ ହୋଇ ଆସିଲେ ଅବ୍ୟକ୍ତ ପ୍ରକୃତିରୁ ସବୁ ବ୍ୟକ୍ତ ବା ଜାଣି ହେବା ଭଳି ଆକୃତିମନ୍ତ ସୃଷ୍ଟି, ଉତ୍ପନ୍ନ ହୁଅନ୍ତି; ରାତି ହୋଇ ଆସିଲେ ପୁଣି ସେହି ଅବ୍ୟକ୍ତ ନାମକ ବସ୍ତୁରେ ଲୁଚିଯାନ୍ତି ବା ପ୍ରଳୟ ପାଆନ୍ତି । ୧୮ ।

ବ୍ୟାଖ୍ୟା ସୂଚନା—ବ୍ରହ୍ମାଙ୍କ ନିଦ୍ରାକୁ ଅବ୍ୟକ୍ତ କୁହାଯାଏ । ଏହା ପରଂବ୍ରହ୍ମ ପରମେଶ୍ୱରଙ୍କର ଅବ୍ୟକ୍ତ ପ୍ରକୃତି । ରୂପକରେ ଏହାଇ ବ୍ରହ୍ମାଙ୍କ ନିଦ୍ରା । ୧୮ ।

**ଭୂତଗ୍ରାମଃ ସ ଏବାୟଂ ଭୂତ୍ୱା ଭୂତ୍ୱା ପ୍ରଲୀୟତେ ।**
**ରାତ୍ର୍ୟାଗମେଽବଶଃ ପାର୍ଥ ପ୍ରଭବତ୍ୟହରାଗମେ । ୧୯ ।**

**ଅନ୍ୱୟ**—ପାର୍ଥ ! ସଃ ଏବ ଅୟଂ ଭୂତଗ୍ରାମଃ ଅବଶଃ [ସନ୍] ଭୂତ୍ୱା ଭୂତ୍ୱା ରାତ୍ର୍ୟାଗମେ ପ୍ରଲୀୟତେ, ଅହରାଗମେ ପ୍ରଭବତି । ୧୯ ।

**ଟୀକା**—[ ତତ୍ର ପୁନରାବର୍ତ୍ତିତ୍ୱଂ ସ୍ପଷ୍ଟୀକରୋତି ] ହେ ପାର୍ଥ, [ଉକ୍ତଃ ସର୍ବବ୍ୟକ୍ତରୂପଃ ] ସ ଏବ ଅୟଂ ଭୂତଗ୍ରାମଃ ( ଭୂତସମୂହଃ ) [ ସ୍ୱକର୍ମବଶାତ୍ ] ଅବଶଃ (ଅସ୍ୱତନ୍ତ୍ରଃ) [ ସନ୍ ] ଭୂତ୍ୱା ଭୂତ୍ୱା ( ପୁନଃ ପୁନଃ ଉତ୍ପନ୍ନୋ ଭୂତ୍ୱା ) ରାତ୍ର୍ୟାଗମେ ପ୍ରଲୀୟତେ, ଅହରାଗମେ [ ଚ ] ପ୍ରଭବତି । ୧୯ ।

**ଅର୍ଥ**—[ ୧୬ ଶ୍ଳୋକରେ "ଯାଇ ପୁଣି ଫେରନ୍ତି" କଥାକୁ ସ୍ପଷ୍ଟ କରି ଦେଉଛନ୍ତି ]—ହେ ପାର୍ଥ, ସେହି ବ୍ୟକ୍ତରୂପ ଏହି ଭୂତସବୁ ନିଜ କର୍ମବଶରୁ ଅବଶ୍ୟ ବାରମ୍ବାର ଉତ୍ପନ୍ନ ହେଉଥାନ୍ତି—ରାତି ଆସିଲେ ପ୍ରଳୟରେ ଲୁଚିଥାନ୍ତି, ପୁଣି ଦିନ ଆସିଲେ ସୃଷ୍ଟିରେ ବାହାରନ୍ତି । ୧୯ ।

**ପରସ୍ତସ୍ମାତ୍ତୁ ଭାବୋଽନ୍ୟୋଽବ୍ୟକ୍ତୋଽବ୍ୟକ୍ତାତ୍ ସନାତନଃ ।**
**ଯଃ ସ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ ନ ବିନଶ୍ୟତି । ୨୦ ।**

**ଅନ୍ୱୟ**—ତୁ ତସ୍ମାତ୍ ଅବ୍ୟକ୍ତାତ୍ ପରଃ ଯଃ ସନାତନଃ ଅନ୍ୟଃ ଅବ୍ୟକ୍ତଃ ଭାବଃ, ସଃ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ ନ ବିନଶ୍ୟତି । ୨୦ ।

**ଟୀକା**—[ କିଂ ] ତୁ ତସ୍ମାତ୍ ଅବ୍ୟକ୍ତାତ୍ (ସୁପ୍ତାତ୍—ହିରଣ୍ୟଗର୍ଭାତ୍ ବ୍ରହ୍ମଣଃ ) ପରଃ ( ପରତଃ ସ୍ଥିତଃ, ଅତୀତଃ ) ଯଃ ସନାତନଃ (ନିତ୍ୟଃ) ଅନ୍ୟଃ ( ଅପରଃ ) ଅବ୍ୟକ୍ତଃ ( ଇନ୍ଦ୍ରିୟାଦ୍ୟଗୋଚରଃ ) ଭାବଃ ( ସତ୍ତା, ତତ୍ତ୍ୱଂ ) [ ଅସ୍ତି ], ସଃ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ [ ସତ୍ସୁ ] ନ ବିନଶ୍ୟତି ( ବ୍ୟକ୍ତାନି ଆତ୍ମନି ବିଲୀୟନ୍ତେ ଅବ୍ୟକ୍ତୋ ଭବତି—ସ୍ଥିତିଶୀଳ ଭାବଃ) । ୨୦ ।

**ଅର୍ଥ**—କିନ୍ତୁ ସେହି ସୁପ୍ତବ୍ରହ୍ମରୂପ ଅବ୍ୟକ୍ତରୁ ଅତୀତ ( ଅବ୍ୟକ୍ତ ଉପରେ ) ଆଉ ଯେଉଁ ଏକ ନିତ୍ୟ ଅବ୍ୟକ୍ତ ତତ୍ତ୍ୱ ଅଛି, ସବୁ ଭୂତମାନେ ପ୍ରଳୟରେ ଲୁପ୍ତ ହେଲେ ବି ତାର କିଛି ଯାଏ ଆସେ ନାହିଁ । ୨୦ ।

**ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିମ୍ ।**
**ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ । ୨୧ ।**

**ଅନ୍ୱୟ**—ଅବ୍ୟକ୍ତଃ ଅକ୍ଷରଃ ଇତି ଉକ୍ତଃ, ତଂ ପରମାଂ ଗତିଂ ଆହୁଃ । ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ତତ୍ ମେ ପରମଂ ଧାମ । ୨୧ ।

**ଟୀକା**—[ ଯଃ ଅସୌ ] ଅବ୍ୟକ୍ତଃ (ଅତୀନ୍ଦ୍ରିୟଃ) [ ଭାବଃ ] ଅକ୍ଷରଃ ଇତି [ ବେଦାନ୍ତଜ୍ଞୈଃ ] ଉକ୍ତଃ ତଂ [ ଭାବଂ ] ପରମଂ ଗତିଂ ଆହୁଃ । ଯଂ [ ଭାବମେତଂ ] ପ୍ରାପ୍ୟ [ ଲୋକାଃ ] ନ [ ପୁନଃ ସଂସାରମ୍ପ୍ରତି ] ନିବର୍ତ୍ତନ୍ତେ, ତତ୍ ମେ ( ମମ ) ପରମଂ ( ନିତ୍ୟଂ, ଶ୍ରେଷ୍ଠଂ ) ଧାମ ( ସ୍ଥାନଂ, ଗନ୍ତବ୍ୟଂ—ଇତି ଭାବଃ ) । ୨୧ ।

**ଅର୍ଥ**—ଏହି ଯେଉଁ ନିତ୍ୟ ଅବ୍ୟକ୍ତକୁ ଅକ୍ଷର ବୋଲି କୁହାଯାଏ, ତାକୁଇ ପରମ ଗତି କହନ୍ତି । [ ଅର୍ଥାତ୍ ] ଯେଉଁ ଅକ୍ଷର ତତ୍ତ୍ୱ ପାଇଲେ ଲୋକ ଆଉ ସଂସାରକୁ ଫେରେ ନାହିଁ, ସେହି ମୋର ନିତ୍ୟଧାମ । ୨୧ ।

**ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା ।**
**ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତମ୍ । ୨୨ ।**

**ଅନ୍ୱୟ**—ପାର୍ଥ ! ଭୂତାନି ଯସ୍ୟ ଅନ୍ତଃସ୍ଥାନି, ସର୍ବଂ ଇଦଂ ଯେନ ତତଂ, ଅନନ୍ୟୟା ଭକ୍ତ୍ୟା ତୁ ଲଭ୍ୟଃ ସଃ ପରଃ ପୁରୁଷଃ । ୨୨ ।

**ଟୀକା**—[ଭକ୍ତାସ୍ତୁ ଏତଂ ପୁରୁଷଃ ଇତ୍ଥ ଭଜନ୍ତେ]—ହେ ପାର୍ଥ, ଭୂତାନି ଯସ୍ୟ ଅନ୍ତଃସ୍ଥାନି (ଅନ୍ତର୍ଗତାନି), ସର୍ବଂ ଇଦଂ [ଜଗତ୍] ଯେନ [ହେତୁନା] ତତଂ (ବ୍ୟକ୍ତଂ, ବିସ୍ତୃତଂ, ଯେନ ବ୍ୟାପ୍ତଂ ଚ) ଅନନ୍ୟୟା ଭକ୍ତ୍ୟା ତୁ ଲଭ୍ୟଃ (ଗମ୍ୟଃ) ସଃ [ଏବ—ସର୍ବତଃ] ପରଃ [ଏଷଃ ଭକ୍ତାନାଂ] ପୁରୁଷଃ (ଉପାସ୍ୟଦେବଃ) । ୨୨ ।

**ଅର୍ଥ**—[ଭକ୍ତମାନେ ଏହାଙ୍କୁଇ ପରମ ଦେବତା ବୋଲି ଭଜନ୍ତି]—ହେ ପାର୍ଥ, ଭୂତ ସୃଷ୍ଟିମାନେ ଯାହାଙ୍କୁ ଆଧାର କରିଅଛନ୍ତି, ଯାହାଙ୍କରୁ ଏସବୁ ସୃଷ୍ଟି ଫିଟି ବିସ୍ତାରିତ ହୋଇଛି (ବା ଯାହାଙ୍କରେ ଏ ସୃଷ୍ଟି ବ୍ୟାପ୍ତ), ଅନ୍ୟ କାହାଁରେ ନ ଭୂଲିଥିବା ଏକାଗ୍ର ଭକ୍ତିରେ ମିଳେ, [ସେ] ସେହି ପରମ ପୁରୁଷ (ବା ଦେବତା) । (ପୁରୁଷୋତ୍ତମଙ୍କୁ ବୁଝିବାରେ ଏହି ପରମ ଅବ୍ୟକ୍ତର ଧାରଣା ହିଁ ଶ୍ରେଷ୍ଠ ପନ୍ଥା—ଏହି ଅଭିପ୍ରାୟ—୧୫. ୧୬, ୧୭ ଦେଖ) । ୨୨ ।

ଯତ୍ର କାଲେ ତ୍ୱନାବୃତ୍ତିମାବୃତ୍ତିଂଚୈବ ଯୋଗିନଃ ।
ପ୍ରୟାତା ଯାନ୍ତି ତଂ କାଲଂ ବକ୍ଷ୍ୟାମି ଭରତର୍ଷଭ । ୨୩ ।

**ଅନ୍ୱୟ**—ଭରତର୍ଷଭ, ଯୋଗିନଃ ତୁ ଯତ୍ର କାଲେ ପ୍ରୟାତାଃ ଅନାବୃତ୍ତିଂ ଚ (ପୁନଃ) ଆବୃତ୍ତିଂ ଏବ ଯାନ୍ତି ତଂ କାଲଂ ବକ୍ଷ୍ୟାମି । ୨୩ ।

**ଟୀକା**—[ତତଃ ପରଂପରାଗତଂ ଯୋଗିନାଂ ଜ୍ଞାନାଜ୍ଞାନଗତିସୂଚକଂ ମରଣକାଲଂ ବ୍ୟାଚଷ୍ଟେ]—ହେ ଭରତର୍ଷଭ, ଯୋଗିନଃ ତୁ ଯତ୍ର କାଲେ ପ୍ରୟାତାଃ (ପ୍ରୟାଣଂ ଗତାଃ) [ସନ୍ତଃ, ସଂସାରସ୍ୟ] ଅନାବୃତ୍ତିଂ (ଅପ୍ରତ୍ୟାଗମନଂ), ଯତ୍ର କାଲେ ପ୍ରୟାତାଃ] ଚ (ପୁନଃ) ଆବୃତ୍ତିଂ (ପ୍ରତ୍ୟାଗମନଂ) ଏବ ଯାନ୍ତି (ଲଭନ୍ତେ) ତଂ କାଲଂ ବକ୍ଷ୍ୟାମି । ୨୩ ।

**ଅର୍ଥ**—[ତା ଉତ୍ତାରୁ ପରଂପରାରେ ଚଳି ଆସୁଥିବା ଯୋଗୀଙ୍କର ଜ୍ଞାନ-ଅଜ୍ଞାନ-ଗତି-ସୂଚକ ମରଣକାଳ କଥା କହୁଚନ୍ତି]—ହେ ଭରତଶ୍ରେଷ୍ଠ, ଯୋଗୀମାନେ ଯେଉଁ କାଳରେ ପ୍ରୟାଣ (ବା ଶେଷଯାତ୍ରା, ମହାଯାତ୍ରା) କରି ଆଉ ସଂସାରକୁ ନ ଫେରିବା ଗତି ପାଆନ୍ତି, ପୁଣି ଯେତେବେଳେ ପ୍ରୟାଣ କରି ଫେରିବା ଗତି ହିଁ ପାଆନ୍ତି, ସେ କାଳ କଥା କହିବି । ୨୩ ।

ଅଗ୍ନିର୍ଜ୍ୟୋତିରହଃ ଶୁକ୍ଳଃ ଷଣ୍ମାସା ଉତ୍ତରାୟଣମ୍ ।
ତତ୍ର ପ୍ରୟାତା ଗଚ୍ଛନ୍ତି ବ୍ରହ୍ମ ବ୍ରହ୍ମବିଦୋ ଜନାଃ । ୨୪ ।

**ଅନ୍ୱୟ**—ଉତ୍ତରାୟଣଂ ଷଣ୍ମାସାଃ ଶୁକ୍ଳଃ ଅହଃ ଅଗ୍ନିଃ ଜ୍ୟୋତିଃ ତତ୍ର ପ୍ରୟାତାଃ ବ୍ରହ୍ମବିଦଃ ଜନାଃ ବ୍ରହ୍ମ-ଗଚ୍ଛନ୍ତି । ୨୪ ।

**ଟୀକା**—ଉତ୍ତରାୟଣଂ [ଇତି କଥିତାଃ ଉପଲକ୍ଷିତାଃ] ଷଣ୍ମାସାଃ (ଷଟ୍‌ସଂଖ୍ୟକାଃ ମାସାଃ) ଶୁକ୍ଳଃ [ପକ୍ଷଃ] ଅହଃ (ଦିବା) [ଯତ୍ର କାଲେ ଚ ଶବଦାହସ୍ୟ] ଅଗ୍ନିଃ ଜ୍ୟୋତିଃ (ଜ୍ୱାଲୟା ସାର୍ଦ୍ଧଃ), ତତ୍ର [କାଲେ] ପ୍ରୟାତାଃ ବ୍ରହ୍ମବିଦଃ ଜନାଃ ବ୍ରହ୍ମ ଗଚ୍ଛନ୍ତି (ପ୍ରାପ୍ନୁବନ୍ତି) । ୨୪ ।

**ଅର୍ଥ**—ଉତ୍ତରାୟଣ ଛମାସ, ଶୁକ୍ଳପକ୍ଷ, ଦିନବେଳ—ଏସବୁ କାଳରେ [ପୁଣି ଯେତେବେଳେ ମୃତଲୋକର ଶବ ଦାହର] ଅଗ୍ନି ଧୂଆଁ ନ ହୋଇ ଦାଉ ଦାଉ ହୋଇ ଜଳେ, ସେହି ତେଜ କାଳରେ ପ୍ରୟାଣ କରିବା ବ୍ରହ୍ମଜ୍ଞ ଲୋକେ ବ୍ରହ୍ମ ପାଆନ୍ତି [ବୋଲି କୁହାଯାଏ] । ୨୪ ।

ବ୍ୟାଖ୍ୟା ସୂଚନା—ଶବ ଦାହର ଅଗ୍ନି ଧୂଆଁ ନ ହୋଇ ଚହିଁରୁ ଜ୍ୱାଲା ବା ଜ୍ୟୋତି ବାହାରିଲେ, ସେହି ଜ୍ୟୋତି ଦେବତା ଓ ଦିନ, ଶୁକ୍ଳପକ୍ଷ, ଉତ୍ତରାୟଣ ପ୍ରଭୃତି ଦେବତାମାନେ ଦେହୀକୁ ବ୍ରହ୍ମ ଲୋକକୁ ନଅନ୍ତି ବୋଲି ବେଦରେ ଅଛି । ଏଇ ସଙ୍ଗେ ଗୋଟିଏ ଧାରଣା ପଡ଼ିଯାଇଚି ଯେ, ଯେବେ ଚିତା ଧୂଆଁ ନ ହୋଇ ଭଲ ଜଳେ ଓ ଯେବେ ଲୋକ ଦିନରେ, ଶୁକ୍ଳପକ୍ଷରେ ଓ ଉତ୍ତରାୟଣରେ ମରେ, ତେବେ ମୁକ୍ତି ପାଏ । ଭୀଷ୍ମ ମରିବା ପାଇଁ ଉତ୍ତରାୟଣକୁ ଅପେକ୍ଷା କରିଥିବା କଥା ସମସ୍ତେ ଜାଣିଥିବେ । ମାତ୍ର ଭଗବାନ୍ ଏସବୁ ପ୍ରଚଳିତ ଧାରଣାକୁ ଜ୍ଞାନ ଓ ଅଜ୍ଞାନ ଗତିର ରୂପକ ମାତ୍ର ବୋଲି ପରେ କହିଚନ୍ତି ।

ଉତ୍ତରାୟଣ=ଏଠାରେ ବେଦର ଉତ୍ତରାୟଣ, ମେଷ ମାସରୁ କନ୍ୟା ମାସ ଶେଷ ଯାଏ । ଏହି କାଳତକ ସୂର୍ଯ୍ୟ ଆକାଶର ଉତ୍ତରାର୍ଦ୍ଧରେ ରହନ୍ତି । ସେହିପରି ପର ଶ୍ଳୋକରେ ଦକ୍ଷିଣାୟନ=ତୁଲାରୁ ମୀନ ଶେଷଯାଏ, ଯେ କାଳତକ ସୂର୍ଯ୍ୟ ଆକାଶରେ ଦକ୍ଷିଣାର୍ଦ୍ଧରେ ରହନ୍ତି । ପରେ ପୌରାଣିକ କାଳରେ ସୂର୍ଯ୍ୟ ଉତ୍ତର ଗତି ଆରମ୍ଭ କରିବାଠାରୁ ଦକ୍ଷିଣ ଗତି ଆରମ୍ଭ କରିବାଯାଏ—ମକରରୁ ମିଥୁନ ଯାଏ ଉତ୍ତରାୟଣ । ସେହିପରି କର୍କଟରୁ ଧନୁଯାଏ ଦକ୍ଷିଣାୟନ ବୋଲି ଧରାହେଲା । ଏବେ ବ୍ୟବହାରରେ ଏହା ପୌରାଣିକ ଅର୍ଥରେ ଚଳେ । ୨୪ ।

**ଧୂମୋ ରାତ୍ରିସ୍ତଥା କୃଷ୍ଣଃ ଷଣ୍ମାସା ଦକ୍ଷିଣାୟନମ୍ ।**
**ତତ୍ର ଚାନ୍ଦ୍ରମସଂ ଜ୍ୟୋତିର୍ଯୋଗୀ ପ୍ରାପ୍ୟ ନିବର୍ତ୍ତତେ ।୨୫।**

**ଅନ୍ୱୟ**—ସ୍ପଷ୍ଟଃ । ୨୫ ।

**ଟୀକା**—[ଏବଂ ଚ] ଦକ୍ଷିଣାୟନଂ ଷଣ୍ମାସାଃ, କୃଷ୍ଣଃ [ ପକ୍ଷଃ ], ରାତ୍ରି ତଥା [ଯତ୍ର ଅଗ୍ନିଃ] ଧୂମଃ, ତତ୍ର, [ ପ୍ରୟାତଃ ଅପିତ୍ତଃ ] ଯୋଗୀ ଚାନ୍ଦ୍ରମସଂ ଜ୍ୟୋତିଃ ( ପିତୃଣାଂ ସ୍ଥାନଂ ଚନ୍ଦ୍ରଲୋକଂ ) ପ୍ରାପ୍ୟ [ ପୁନଃ ସଂସାରମ୍ ] ନିବର୍ତ୍ତତେ । ୨୫ ।

**ଅର୍ଥ**—[ ସେହିପରି ପୁଣି ] ଦକ୍ଷିଣାୟନ ଛମାସ, କୃଷ୍ଣପକ୍ଷ, ରାତ୍ରି, ପୁଣି ଚତାଗ୍ନିର ଧୂମ, ଏଥିରେ ପ୍ରୟାତ [ ଅପିତ୍ତ ] ଯୋଗୀ ଚନ୍ଦ୍ରାଲୋକର ଆଲୋକ [ମାତ୍ର] ପାଇ ଫେରେ । ୨୫ ।

ବ୍ୟାଖ୍ୟା ସୂଚନା—ଚନ୍ଦ୍ରଲୋକ ହେଉଛି, ପିତୃଲୋକଙ୍କ ସ୍ଥାନ । ୨୫ ।

**ଶୁକ୍ଳକୃଷ୍ଣେ ଗତୀ ହ୍ୟେତେ ଜଗତଃ ଶାଶ୍ୱତେ ମତେ ।**
**ଏକୟା ଯାତ୍ୟନାବୃତ୍ତିମନ୍ୟୟାବର୍ତ୍ତତେ ପୁନଃ । ୨୬ ।**

**ଅନ୍ୱୟ**—ହି ଜଗତଃ ଏତେ ଶୁକ୍ଳକୃଷ୍ଣେ ଶାଶ୍ୱତେ ଗତୀ ମତେ । ଏକୟା ଅନାବୃତ୍ତିଂ ଯାତି, ଅନ୍ୟୟା ପୁନଃ ଆବର୍ତ୍ତତେ । ୨୬ ।

**ଟୀକା**—[ ଯୋଗିନାଂ ଏତସ୍ମିନ୍ ଦକାଦକ୍ଷୁ ପ୍ରୟାଣ-ପ୍ରୟାସେ ସର୍ବେଷାଂ ଶ୍ରଦ୍ଧା ଅସ୍ତୁ ମା ଅସ୍ତୁ ବା, ତତ୍ତ୍ୱତଃ ଏତେ ଗତୀ ବୋଦ୍ଧବ୍ୟେ ]—ହି ( ଯତଃ ) [ ଜ୍ୱାଳାଧୂମାଦିଭିରୁପଲକ୍ଷିତେ ] ଜଗତଃ [ ଜନସ୍ୟ ] ଏତେ [ ଦ୍ୱେ ] ଶୁକ୍ଳକୃଷ୍ଣେ ( ଜ୍ଞାନ-ଅଜ୍ଞାନାତ୍ମକେ ) ଶାଶ୍ୱତେ ( ଚିରଂତନେ ) ଗତୀ ମତେ । [ ଜନଃ ତୟୋଃ ] ଏକୟା ( ଶୁକ୍ଳୟା ଜ୍ଞାନଗତ୍ୟା ) ଅନାବୃତ୍ତିଂ ଯାତି, ଅନ୍ୟୟା ପୁନଃ ଆବର୍ତ୍ତତେ । ୨୬ ।

**ଅର୍ଥ**—[ ଯୋଗୀଙ୍କର ଏପରି ଜ୍ୱାଳା, ଦିନ ପ୍ରଭୃତିରେ ମରଣ ଲୋଡ଼ିବାରେ ସମସ୍ତେ ବିଶ୍ୱାସ କରନ୍ତୁ ବା ନ କରନ୍ତୁ, ମାତ୍ର ତତ୍ତ୍ୱରେ ଏ ଗତି ଦୁଓଟି ବୁଝିବାକୁ ହେବ ]—କାହିଁକି ନା, ଜଗତରେ ଜ୍ଞାନ ଓ ଅଜ୍ଞାନରୁ ହେଉଥିବା ଏ ଧଳା କଳା ଗତି ଯୋଡ଼ିକ ଚିରକାଳ ଅଛି ବୋଲି ମାନିବାକୁ ହୁଏ । ଏଥିରୁ ଗୋଟିକରେ—ଅର୍ଥାତ୍, ଧଳା ବା ଜ୍ଞାନଗତିରେ—ଲୋକ ଆଉ ନ ଫେରିବା ସ୍ଥାନକୁ ଯାଏ । ଆରଟିରେ ଯାଇ ପୁଣି ସଂସାରକୁ ଫେରେ । ୨୬ ।

**ନୈତେ ସୃତୀ ପାର୍ଥ ଜାନନ୍ ଯୋଗୀ ମୁହ୍ୟତି କଶ୍ଚନ ।**
**ତସ୍ମାତ୍ ସର୍ବେଷୁ କାଲେଷୁ ଯୋଗଯୁକ୍ତୋ ଭବାର୍ଜୁନ ।୨୭।**

**ଅନ୍ୱୟ**—ପାର୍ଥ ! କଶ୍ଚନ ଯୋଗୀ ଏତେ ସୃତୀ ଜାନନ୍ ନ ମୁହ୍ୟତି । ତସ୍ମାତ୍ ଅର୍ଜୁନ ! ସର୍ବେଷୁକାଲେଷୁ ଯୋଗ ଯୁକ୍ତଃ ଭବ ।୨୭।

**ଟୀକା**—[ ଉପସଂହରତି ]—ହେ ପାର୍ଥ, କଃଚନ ଯୋଗୀ ( ସର୍ବ-କର୍ମଣି ବ୍ରହ୍ମନିଷ୍ଠଃ ) ଏତେ [ ଦ୍ୱେ ] ସୃତୀ ( ଜ୍ଞାନାତ୍ ମୁକ୍ତିଃ ଅଜ୍ଞାନାତ୍ ସଂସାରଃ ଚ ଇତି ଗତୀ ) ଜାନନ୍ ନ ମୁହ୍ୟତି । ତସ୍ମାତ୍ ହେ ଅର୍ଜୁନ, ସର୍ବେଷୁ କାଲେଷୁ ଯୋଗଯୁକ୍ତଃ (ମତ୍କର୍ମପରଃ) ଭବ । ୨୭ ।

**ଅର୍ଥ**—[ ଶେଷ କରୁଚନ୍ତି ]—ହେ ପାର୍ଥ, କୌଣସି ଯୋଗୀ—ଅର୍ଥାତ୍, ସବୁ କର୍ମରେ ବ୍ରହ୍ମନିଷ୍ଠ ଲୋକ—ଏ ଦୁଇଟି ଗତିର ତତ୍ତ୍ୱ ଜାଣିଲେ, ଆଉ ଅଜ୍ଞାନରେ ପଡ଼େ ନାଇ । ଅତଏବ ହେ ଅର୍ଜୁନ, ସବୁବେଳେ ଯୋଗରେ ଲାଗି ରହ । ୨୭ ।

ବ୍ୟାଖ୍ୟା ସୂଚନା—ଦୁଇ ମାର୍ଗ ଜାଣିବା ଲୋକ, ଆଉ ସମତ୍ୱ ରଖିବା ଲୋକ ଅନ୍ଧକାର ବା ଅଜ୍ଞାନ ମାର୍ଗକୁ ଧରେ ନାଇ । ଯାହାକୁଇ କହନ୍ତି ମୋହରେ ନ ପଡ଼ିବା—ମହାତ୍ମା ଗାନ୍ଧୀ । ୨୭ ।

**ବେଦେଷୁ ଯଜ୍ଞେଷୁ ତପଃସୁ ଚୈବ**
**ଦାନେଷୁ ଯତ୍ ପୁଣ୍ୟଫଲଂ ପ୍ରଦିଷ୍ଟମ୍ ।**
**ଅତ୍ୟେତି ତତ୍ ସର୍ବମିଦଂ ବିଦିତ୍ୱା**
**ଯୋଗୀ ପରଂ ସ୍ଥାନମୁପୈତି ଚାଦ୍ୟମ୍ । ୨୮ ।**

**ଅନ୍ୱୟ**—ବେଦେଷୁ ଯଜ୍ଞେଷୁ ତପଃସୁ ଦାନେଷୁ ଚ ଏବ ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟଂ ଇଦଂ ବିଦିତ୍ୱା ଯୋଗୀ ତତ୍‌ସର୍ବଂ ଅତ୍ୟେତି । ପରଂ ଆଦ୍ୟଂ ସ୍ଥାନଂ ଚ ଉପୈତି । ୨୮ ।

**ଟୀକା**—ବେଦେଷୁ ( ସ୍ୱାଧ୍ୟାୟେଷୁ ) ଯଜ୍ଞେଷୁ ( ଯାଗାଦି କର୍ମାନୁଷ୍ଠାନେଷୁ ତପଃସୁ ଦାନେଷୁ ଚ ଏବ ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟଂ ( ଉପଦିଷ୍ଟଂ ), ଇଦଂ ( କଂ ତଦ୍ ବ୍ରହ୍ମାଦିପ୍ରଶ୍ନାନାଂ ଉତ୍ତରରୂପଂ ଚରମଗନ୍ତବ୍ୟଂ ) ବିଦିତ୍ୱା ଯୋଗୀ ତତ୍ ସର୍ବଂ [ ପୁଣ୍ୟଫଳଂ ସ୍ୱର୍ଗାଦିକଂ ] ଅତ୍ୟେତି ( ଅତିକ୍ରାମତି ) । ପରଂ ( ଶ୍ରେଷ୍ଠଂ ) ଆଦ୍ୟଂ ସ୍ଥାନଂ ଚ ଉପୈତି । ୨୮ ।

**ଅର୍ଥ**—ବେଦାଭ୍ୟାସ୍, ଯାଗ, ତପସ୍ୟା, ଦାନ—ଏସବୁରେ ଯେ ପୁଣ୍ୟଫଳ, ଅର୍ଥାତ୍, ସ୍ୱର୍ଗାଦି ମିଳେ ବୋଲି କୁହାଯାଏ, [ ବ୍ରହ୍ମ କଣ ପ୍ରଭୃତି ପ୍ରଶ୍ନର ଉତ୍ତରରେ କୁହାଯାଇଥିବା । ଏହି ତତ୍ତ୍ୱକୁ ଜାଣିଲେ, ଯୋଗୀ ସେସବୁ ପୁଣ୍ୟଫଳ ଡେ଼ଇଁଯାଏ ଓ ପରମ ଆଦ୍ୟ ଧାମରେ ପହଞ୍ଚେ । ୨୮ ।



# ନବମ ଅଧ୍ୟାୟ

## ରାଜବିଦ୍ୟା-ରାଜଗୁହ୍ୟ-ଯୋଗ

## (ଜ୍ଞାନ-ବିଜ୍ଞାନ ଉପଲବ୍ଧିର ଶ୍ରେଷ୍ଠ ପନ୍ଥା ଭକ୍ତି)

### ଅଧ୍ୟାୟ ପ୍ରବେଶ—

ଏ ଜ୍ଞାନବିଜ୍ଞାନ-ତତ୍ତ୍ୱ ବଡ଼ ଗହନ କଥା । ତର୍କଯୁକ୍ତିରେ ଦୋଷ ବାଛୁବା ଲୋକଙ୍କୁ ଏ କଥା ବୁଝାଯାଏ ନାହିଁ । ଭକ୍ତିର ବିଶ୍ୱାସରେ ହିଁ ଏ ତତ୍ତ୍ୱ ପ୍ରତ୍ୟକ୍ଷ ହୁଏ ଓ ସୁଖରେ ଆଚରଣ କରିହୁଏ । ସେଥିପାଇଁ ଭଗବାନ୍ କହୁଛନ୍ତି—ବିଶ୍ୱାସରେ ଦେଖ୍, ମୋଠାରୁ ସବୁ, କିନ୍ତୁ ମୁଁ କାହିଁରେ ନାହିଁ । ମୋର ଏହାହିଁ ଈଶ୍ୱରତ୍ୱ ବା ଐଶ୍ୱର ଯୋଗ । ମୋର ପ୍ରକୃତିକି ଧରି କଳ୍ପକୁ କଳ୍ପ ମୁଁ ଜଗତ ଫିଟାଇ ଗୁଡ଼ି ଦେଉଛି; ପୁଣି ପ୍ରକୃତିରେ ସବୁ ଲୁଚାଇ ଦେଉଛି । ସେ ପ୍ରକୃତିର ଏହାହିଁ ସ୍ୱଭାବ । ମାତ୍ର ମୁଁ କାହିଁରେ ଲଗା ନୁହେଁ, ମୁଁ ନିତ୍ୟ ଉଦାସୀନ । ଠିକ୍ ଏହିପରି ଭାବରେ ପ୍ରକୃତିରେ ସବୁ କାମ କରି ମଧ୍ୟ ମନୁଷ୍ୟ ଦେହରେ ନିତ୍ୟ ଉଦାସୀନ 'ଦେହୀ' ମୁହିଁ । ମୂଢ଼ମାନେ ରାକ୍ଷସୀ ଓ ଆସୁରୀ ପ୍ରକୃତି ଧରି ଏହି ଦେହୀର ତତ୍ତ୍ୱକୁ ଅବଜ୍ଞା କରନ୍ତି । ମହାତ୍ମାମାନେ ଦୈବୀ ପ୍ରକୃତି ଧରି ଏହି ଦେହୀ ରୂପରେ ହିଁ ମତେ କେବେ ଅବତାର ବୋଲି, କେବେ ବା ଅଧ୍ୟାତ୍ମ ଜ୍ଞାନରେ ଏକ ବୋଲି, ପୁଣି କେବେ ବା ଅଲଗା ଅଲଗା ଈଶ୍ୱର ବହୁତ ବୋଲି ଭଜନ୍ତି । ମୁହିଁ ସର୍ବସ୍ୱ; ଅମୃତ ଓ ମୃତ୍ୟୁ, ସତ୍ ଓ ଅସତ୍ ସବୁ ମୁହିଁ । ଯେ ଯେପରି ମତେ ଭକ୍ତିରେ ଧରେ, ସେ ସେପରି ଫଳ ପାଏ । ଭକ୍ତିରେ ଯେ ଯାହା ଦିଏ ମୁଁ ତା ପାଏ । ଯାହା କରୁଛୁ, ମୋରି ବୋଲି କର୍ । ଏହି ସନ୍ନ୍ୟାସ ଯୋଗରେ ମୁକ୍ତ ହୋଇ ମତେ ପାଇବୁ । ସମସ୍ତେ ମୋ ପାଖେ ସମାନ, କେହି ଶତ୍ରୁ ନୁହେ, କେହି ମିତ୍ର ନୁହେ । ଯେ ଭକ୍ତିରେ ମତେ ଧରେ, ମୁଁ ତାର ହୁଏ, ସେ ମତେ ପାଏ । ଦୁରାଚାର ମଧ୍ୟ ମୋତେ ଭଜିଲେ ସାଧୁ ହୋଇଯାଏ । ସ୍ତ୍ରୀ, ବୈଶ୍ୟ, ଶୂଦ୍ର ବା ଅନ୍ତ୍ୟଜଙ୍କ କଥା ଆଉ କାହିଁକି ବା କହିବି ? ସେ ସମସ୍ତେ ତ ଦୁରାଚାରୀଠାରୁ ଭଲ । ଅନିତ୍ୟ, ଅସୁଖ ହେଲେହେଁ ଏଇ ମନୁଷ୍ୟ ଜନ୍ମ ହିଁ ମତେ ଭଜିବାର ସ୍ଥାନ । ଅତଏବ ସର୍ବତୋଭାବରେ

ମତେ ଭଜ୍, ମନ ମୋଠାରେ ଦେ, କର୍ମ ମୋର ପାଇଁ କର୍, ମତେହିଁ ନମସ୍କାର କର୍, ମୋଠାରେ ଲାଗି ରହ୍, ମତେ ପାଇବୁ । ଏହାହିଁ ନବମ ଅଧ୍ୟାୟର ସାର କଥା ।

ଶ୍ରୀ ଭଗବାନୁବାଚ

**ଇଦଂ ତୁ ତେ ଗୁହ୍ୟତମଂ ପ୍ରବକ୍ଷ୍ୟାମ୍ୟନସୂୟବେ ।**
**ଜ୍ଞାନଂ ବିଜ୍ଞାନସହିତଂ ଯଜ୍‌ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ।୧।**

**ଅନ୍ୱୟ**—ବିଜ୍ଞାନସହିତଂ ଜ୍ଞାନଂ ଗୁହ୍ୟତମଂ, ଅନସୂୟବେ ତେ ଇଦଂ ତୁ ପ୍ରବକ୍ଷ୍ୟାମି, ଯତ୍ ଜ୍ଞାତ୍ୱା ଅଶୁଭାତ୍ ମୋକ୍ଷ୍ୟସେ । ୧ ।

**ଟୀକା**—ଶ୍ରୀ ଭଗବାନ୍ ଉବାଚ—ବିଜ୍ଞାନସହିତଂ ( ବ୍ୟକ୍ତଜ୍ଞାନସହିତଂ ) ଜ୍ଞାନଂ (ତତ୍ତ୍ୱଜ୍ଞାନଂ) ଗୁହ୍ୟତମଂ (ଗୋପ୍ୟାତ୍ ଗୁପ୍ତଂ—ନ ଯସ୍ମୈ କସ୍ମୈଚିତ୍ ଯୁକ୍ତିବାଦିନେ ବକ୍ତବ୍ୟଂ—ଶ୍ରଦ୍ଧାବତେ ବକ୍ତବ୍ୟମିତି ଭାବଃ) ବ୍ୟାଖ୍ୟାୟା ନ ଗମ୍ୟତେ ଏତଦ୍‌ଜ୍ଞାନଂ, ତତଃ] ଅନସୂୟବେ ଅଦୋଷଦର୍ଶିନେ, ଶ୍ରଦ୍ଧାବତେ) ତେ (ତୁଭ୍ୟଂ) ତୁ [ ଅନୁଭବେନ ଯଥାସାଧ୍ୟଂ ତଥା ] ଇଦଂ ପ୍ରବକ୍ଷ୍ୟାମି, ଯତ୍ ଜ୍ଞାତ୍ୱା [ତ୍ୱଂ] ଅଶୁଭାତ୍ (ଦେହାତ୍ମଜ୍ଞାନରୂପାତ୍ ଅଶ୍ରେୟସଃ) ମୋକ୍ଷ୍ୟସେ [ମୁକ୍ତୋ ଭବିଷ୍ୟସି] । ୧ ।

**ଅର୍ଥ**—ଭଗବାନ୍ କହିଲେ—[ଏହି ଯେଉଁ ବ୍ୟାଖ୍ୟା କରି ବୁଝାଇଗଲି, ସେ କିଛି ନୁହେ । ବ୍ୟାଖ୍ୟା ଯୁକ୍ତିତର୍କରେ ଏ ଜ୍ଞାନ ମିଳେ ନାଇ, ବିଶ୍ୱାସର ଅନୁଭବରେ ମିଳେ ଏଇ] ବିଜ୍ଞାନ ସହିତ ଜ୍ଞାନ (ବା ବ୍ୟକ୍ତଜ୍ଞାନ ସହିତ ତତ୍ତ୍ୱଜ୍ଞାନ) । ଏଣୁ ଏହାକୁ ଭାରି ଲୁଚାଇ ରଖିବାକୁ ହୁଏ । [ଅର୍ଥାତ୍, ଯାହାକୁ ଇଚ୍ଛା ତାକୁ, ଯୁକ୍ତିତର୍କ କରିବା ଲୋକଙ୍କୁ କୁହାଯାଏ ନାଇ । କେବଳ ବିଶ୍ୱାସୀକୁ କୁହାଯାଏ । ] ତୁ ତର୍କ କରି ଦୋଷ ବାଛୁନୁ ନାଇ, ତୁ ବିଶ୍ୱାସୀ, ସେଥିପାଇଁ ଏକା ତତେ କିନ୍ତୁ ଏହା କହିବି । ଏହା ଜାଣିଲେ ତୁ ଅଶୁଭରୁ ମୁକ୍ତି ପାଇବୁ । ୧ ।

**ରାଜବିଦ୍ୟା ରାଜଗୁହ୍ୟଂ ପବିତ୍ରମିଦମୁତ୍ତମମ୍ ।**
**ପ୍ରତ୍ୟକ୍ଷାବଗମଂ ଧର୍ମ୍ୟଂ ସୁସୁଖଂ କର୍ତୁମବ୍ୟୟମ୍ । ୨ ।**

**ଅନ୍ୱୟ**—ଇଦଂ ରାଜବିଦ୍ୟା, ରାଜଗୁହ୍ୟଂ, ପବିତ୍ରଂ ଉତ୍ତମଂ ପ୍ରତ୍ୟକ୍ଷାବଗମଂ ଧର୍ମ୍ୟଂ କର୍ତୁଂ ସୁସୁଖଂ, ଅବ୍ୟୟଂ । ୨ ।

**ଟୀକା**—[ ବିଶେଷେଣ ଶ୍ରୋତାରଂ ଅଭିମୁଖୀକର୍ତୁଂ ତଦେବ ସ୍ତୌତି ] ଇଦଂ ରାଜବିଦ୍ୟା (ବିଦ୍ୟାନାଂ ରାଜା, ଶ୍ରେଷ୍ଠ ବିଦ୍ୟା), ରାଜଗୁହ୍ୟଂ (ଗୁହ୍ୟାନାଂ ରାଜା), ପବିତ୍ରଂ (ଶୁଦ୍ଧିକରଂ), ଉତ୍ତମଂ (ଶ୍ରେଷ୍ଠଂ), ପ୍ରତ୍ୟକ୍ଷାବଗମଂ (ସ୍ୱଷ୍ଟାନୁଭବବୋଧ୍ୟଂ) ଧର୍ମ୍ୟଂ

(ଯଥାର୍ଥକର୍ତ୍ତବ୍ୟଂ) କର୍ତ୍ତୁଂ (ଆଚରିତୁଂ) ସୁସୁଖଂ ତୁଂ (ସୁଖସାଧ୍ୟଂ) [ଅପି ଚ] ଅବ୍ୟୟଂ (ଅକ୍ଷୟଂ, ନିତ୍ୟଂ—ବିଚକ୍ଷଣପ୍ରତ୍ୟବାୟାଦ୍ୟସ୍ତୁ ନ ବିକାର୍ଯ୍ୟମିତି ଭାବଃ) । ୨ ।

**ଅର୍ଥ**—[ଶ୍ରୋତାର ଭଲକରି ଶ୍ରଦ୍ଧା ଜନ୍ମାଇବାକୁ ସେହି କଥାକୁ ପ୍ରଶଂସା କରି କହୁଛନ୍ତି]—ଏ ଶ୍ରେଷ୍ଠ ବିଦ୍ୟା, ଏ ଶ୍ରେଷ୍ଠ ରହସ୍ୟ, ଏ ବିଶୁଦ୍ଧ, ଉତ୍ତମ, ଅନୁଭବରେ ସ୍ପଷ୍ଟ ଜଣାପଡ଼େ; ଏହି ଧର୍ମ ହିଁ ଆଚରଣ କରିବା ଠିକ୍; ଏହା କରିବାକୁ ବି ସହଜ; ଏହାର କ୍ଷୟବୃଦ୍ଧି ନାଇ, ଅର୍ଥାତ୍, ଏଥିରେ ସନ୍ଦେହ, ବିଘ୍ନ ପ୍ରଭୃତିର ଭୟ ନାଇ) ।୨।

**ଅଶ୍ରଦ୍ଦଧାନାଃ ପୁରୁଷା ଧର୍ମସ୍ୟାସ୍ୟ ପରନ୍ତପ ।**
**ଅପ୍ରାପ୍ୟ ମାଂ ନିବର୍ତ୍ତନ୍ତେ ମୃତ୍ୟୁସଂସାରବର୍ତ୍ମନି । ୩ ।**

**ଅନ୍ୱୟ**—ସ୍ପଷ୍ଟଃ । ୩ ।

**ଟୀକା**—ହେ ପରଂତପ, ଅସ୍ୟ ଧର୍ମସ୍ୟ [ବିଷୟେ] ଅଶ୍ରଦ୍ଦଧାନାଃ (ଶ୍ରଦ୍ଧାହୀନାଃ, ସଂଶୟିନଃ) ପୁରୁଷାଃ (ପୁରୁଷକାରଗ୍ରସ୍ତାଃ ଜନାଃ) ମାଂ ଅପ୍ରାପ୍ୟ ମୃତ୍ୟୁ-ସଂସାରବର୍ତ୍ମନି (ମୃତ୍ୟୁଃ, ଜନ୍ମ, ପୁନରେବ ମୃତ୍ୟୁରିତି ମାର୍ଗେ) ନିବର୍ତ୍ତନ୍ତେ (ଭୂୟଃ ତିଷ୍ଠନ୍ତି—ଭ୍ରମନ୍ତି) । ୩ ।

**ଅର୍ଥ**—ହେ ପରଂତପ, ଏହି ଧର୍ମରେ ଅବିଶ୍ୱାସ କରି ପୁରୁଷପଣିଆ କରିବା ଲୋକେ ମୋତେ ନ ପାଇ ମୃତ୍ୟୁ, ଜନ୍ମ ପୁଣି ମୃତ୍ୟୁ—ଏହି ବାଟରେ ବୁଲୁଥାନ୍ତି । ୩ ।

ବ୍ୟାଖ୍ୟା ସୂଚନା—ବିଶ୍ୱାସ ନ ଥିଲେ, ଭକ୍ତି ନାଇ । ଭକ୍ତି ନ ଥିଲେ, ମୋତେ ପାଇବା ସହଜ ନୁହେ—ଏହି ଅଭିପ୍ରାୟ । ୩ ।

**ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା ।**
**ମତ୍ସ୍ଥାନି ସର୍ବଭୂତାନି ନ ଚାହଂ ତେଷ୍ୱବସ୍ଥିତଃ । ୪ ।**

**ଅନ୍ୱୟ**— ସ୍ପଷ୍ଟ । ୪ ।

**ଟୀକା**—[ଏବଂ ଅର୍ଜୁନଂ ଅଭିମୁଖୀକୃତ୍ୟାହ]—ଅବ୍ୟକ୍ତମୂର୍ତ୍ତିନା (ଅତୀନ୍ଦ୍ରିୟ ସ୍ୱରୂପେଣ) ମୟା ଇଦଂ ସର୍ବଂ ଜଗତ୍ ତତଂ (ବ୍ୟାପ୍ତଂ—ବିସ୍ତୃତଂ ବା), ସର୍ବଭୂତାନି ମତ୍ସ୍ଥାନି (ମୟିସ୍ଥିତାନି), ଅହଂ ଚ ତେଷୁ ନ ଅବସ୍ଥିତଃ (ମୟି ସ୍ଥିତେ ସତି ତାନି-ସ୍ଥିତାନି ନ ତୁ ଅନ୍ୟତଃ ତେଷାଂ ଧାରଣଂ—କିନ୍ତୁ ନ ସ୍ଥିତେଷ୍ୱ ତେଷୁ ନାପି ମମ ସତ୍ତାୟାଂ ସଂଶୟଃ ତାନଧିକୃତ୍ୟାପି ତଦଗତୋଽହଂ—ଇତି ସ୍ପଷ୍ଟାର୍ଥଃ) । ୪ ।

**ଅର୍ଥ**—[ଏଇପରି ଅର୍ଜୁନଙ୍କର ଶୁଣିବାରେ ଆଗ୍ରହ ଜନ୍ମାଇ କହୁଚନ୍ତି]—ମୋର ଅବ୍ୟକ୍ତ ସ୍ୱରୂପରେ ଏ ସାରା ଜଗତ୍ ବ୍ୟାପ୍ତ ବା ବିସ୍ତାରିତ । ଭୂତମାନେ ମୋଠି ବା ମୋତେ ଆଧାର କରିଅଛନ୍ତି । ମୁଁ କିନ୍ତୁ ତାଙ୍କୁ ସ୍ଥାନ କରି ସେଥିରେ ରହି-ନାଇ । ୪ ।

ବ୍ୟାଖ୍ୟା ସୂଚନା—ମୁଁ ଥିବାରୁ ଭୂତମାନେ ଅଛନ୍ତି । ଅନ୍ୟଥା ସେସବୁ ଅଛନ୍ତି ବୋଲି କହିହେବ ନାହିଁ । କିନ୍ତୁ ଭୂତମାନେ ଥାଆନ୍ତୁ ବା ନ ଥାଆନ୍ତୁ, ମୋ ଥିବାରେ କିଛି ଯାଏ ଆସେ ନାହିଁ । ମୁଁ ଭୂତମାନଙ୍କୁ ବା ବ୍ୟକ୍ତ ବିଶ୍ୱକୁ ଧାରଣ କରି ପୁଣି ସେଥିରୁ ଅତୀତ—ଏହା ସ୍ପଷ୍ଟାର୍ଥ । ୭.୧୨;୮.୨୦ ଦେଖ । ୪ ।

**ନ ଚ ମତ୍‌ସ୍ଥାନି ଭୂତାନି ପଶ୍ୟ ମେ ଯୋଗମୈଶ୍ୱରମ୍ ।**
**ଭୂତଭୃନ୍ନ ଚ ଭୂତସ୍ଥୋ ମମାତ୍ମା ଭୂତଭାବନଃ । ୫ ।**

**ଅନ୍ୱୟ**—[ଅପି ଚ ଭୂତାନି ନ ମତ୍‌ସ୍ଥାନି, ମେ ଐଶ୍ୱରଂ ଯୋଗଂ ପଶ୍ୟ । ମମ ଆତ୍ମା ଭୂତଭାବନଃ ଭୂତଭୃତ୍ ଚ [ସନ୍] ନ ଭୂତସ୍ଥଃ । ୫ ।

**ଟୀକା**—[ଅପି] ଚ ଭୂତାନି [ଯଥାର୍ଥତଃ] ନ ମତ୍‌ସ୍ଥାନି [ଯତଃ ତଦତୀତତ୍ୱାତ୍ ନାହଂ ତେଷୁ ଲିପ୍ତଃ । [ଇଦଂ] ମେ (ମମ) ଐଶ୍ୱରଂ (କର୍ତ୍ତୃତ୍ୱୈକରୂପଂ) ଯୋଗଂ (ଘଟନଂ—ବିଚିତ୍ର କର୍ମକୌଶଳଂ) ପଶ୍ୟ । ମମ ଆତ୍ମା (ସ୍ୱରୂପଂ—ଅହମିତି ଭାବଃ) ଭୂତଭାବନଃ ( ଭୂତକର୍ତ୍ତା ) ଭୂତଭୃତ୍ (ଭୂତନିୟାମକଃ—ପାଲୟିତା) ଚ [ ସନ୍ ] ନ ଭୂତସ୍ଥଃ (ଭୂତେଷ୍ୱଲିପ୍ତଃ)—[ଇତ୍ୟେବ ମେ ଐଶ୍ୱରଃ ଯୋଗଃ] । ୫ ।

**ଅର୍ଥ**—ପୁଣି ଭୂତମାନେ ଯଥାର୍ଥରେ ମୋ ଭିତରେ ବି ନାହାନ୍ତି, [କାହିଁକି ନା, ମୁଁ ତ ସେସବୁରେ ଲିପ୍ତ ବା ଲଗା ନୁହେଁ, ମୁଁ ସେସବୁଥିରୁ ଯେ ଅତୀତ । ] ଏହି ମୋର ଈଶ୍ୱର ରୂପର ଯୋଗ (ଘଟନା ବା କର୍ମକୌଶଳ) ଦେଖ । [ଦେଖ କିପରି] ମୋ ଆତ୍ମା ଭୂତ ସୃଷ୍ଟି କରେ, ଭୂତପାଳନ ବି କରେ, ମାତ୍ର ସେସବୁରେ ନାହିଁ (ସେଥିରେ ମୁଁ ଲିପ୍ତ ନୁହେଁ ବା ମୋର ବୋଲି ଅଭିମାନ ନାହିଁ) । ୫ ।

**ଯଥାକାଶସ୍ଥିତୋ ନିତ୍ୟଂ ବାୟୁଃ ସର୍ବତ୍ରଗୋ ମହାନ୍ ।**
**ତଥା ସର୍ବାଣି ଭୂତାନି ମତ୍‌ସ୍ଥାନୀତ୍ୟୁପଧାରୟ । ୬ ।**

**ଅନ୍ୱୟ**—ସ୍ପଷ୍ଟ । ୬ ।

**ଟୀକା**—[ଦୃଷ୍ଟାନ୍ତେନ ତତ୍ ସ୍ପଷ୍ଟୀକରୋତି] ଯଥା ମହାନ୍ (ଇୟତ୍ତୟା ଅନବଧାର୍ଯ୍ୟଃ) ବାୟୁଃ ଆକାଶସ୍ଥିତଃ (ବ୍ୟୋମାଧାରଃ) [ସନ୍] ନିତ୍ୟଂ (ନିରନ୍ତରଂ) ସର୍ବତ୍ରଗଃ (ବ୍ୟୋମାଂଶୈଃ ଯଥା ତଥା ସର୍ବତ୍ର ବ୍ୟାପ୍ନୋତୀତି ସର୍ବତ୍ରବ୍ୟାପୀ) [ଅଥଚ ଯଥା ତଦ୍‌ବାୟୁମତୀତ୍ୟ ତିଷ୍ଠତ୍ ତଦ୍ ବ୍ୟୋମ ତସ୍ମିନ୍ ବାୟୌ ନ ସ୍ଥିତଂ ସଂଶ୍ଲିଷ୍ଟଂ ବା, ବାୟୁଶ୍ଚ ବ୍ୟୋମ୍ନି ସ୍ଥିତଃ ସନ୍ ନ ଯଥାର୍ଥେନ ତସ୍ମିନ୍ ସ୍ଥିତଃ] ତଥା (ତଦ୍‌ବାୟୁଃ

ବ୍ୟୋମସ୍ଥଃ ଇବ) ସର୍ବାଣି ଭୂତାନି ମତ୍ସ୍ଥାନି—ଇତି ଉପଧାରୟ (ମାନବକଳ୍ପିତ-ବସ୍ତୁସାଦୃଶ୍ୟେନ ଧାରଣାଂ କୁରୁ ।୭।

**ଅର୍ଥ**—[ ଦୃଷ୍ଟାନ୍ତରେ ସେହି କଥା ବୁଝାଉଛନ୍ତି]—ଯେପରି ଆକାଶକୁ ଆଧାର କରି ରହିଥିବା ବିସ୍ତୀର୍ଣ୍ଣ ମହାବାୟୁମଣ୍ଡଳ ସବୁବେଳେ ଆକାଶ ଭିତରେ ସବୁଆଡ଼େ ଯାଉଛି ଆସୁଛି, ଅଥଚ ସେହି ବାୟୁରୁ ଅତୀତ ଆକାଶ ସେହି ବାୟୁକୁ ଧରି ଥାଇ ବି ସେଥିରେ ନାହିଁ ବା ସଂଶ୍ଳିଷ୍ଟ ହେଉନାହିଁ । ପୁଣି ବାୟୁ ବି ଆକାଶରେ ରହି ମଧ ଯଥାର୍ଥରେ ଶୂନ୍ୟ ଆକାଶରେ ଅଛି, ଏପରି ବି ନୁହେଁ । ସେହିପରି, ଅର୍ଥାତ୍, ସେହି ବାୟୁ ଆକାଶରେ ବ୍ୟାପି ରହିଲା ପରି ଭୂତମାନେ ମୋଠି ଅଛନ୍ତି ବୋଲି ଉପମାରେ ବୁଝ । ୭ ।

**ସର୍ବଭୂତାନି କୌନ୍ତେୟ ପ୍ରକୃତିଂ ଯାନ୍ତି ମାମିକାମ୍ ।**
**କଳ୍ପକ୍ଷୟେ ପୁନସ୍ତାନି କଳ୍ପାଦୌ ବିସୃଜାମ୍ୟହମ୍ । ୭ ।**

**ଅନ୍ୱୟ**—କୌନ୍ତେୟ ! ସର୍ବଭୂତାନି କଳ୍ପକ୍ଷୟେ ମାମିକାଂ ପ୍ରକୃତିଂ ଯାନ୍ତି, କଳ୍ପାଦୌ ପୁନଃ ତାନି ଅହଂ ବିସୃଜାମି । ୭ ।

**ଟୀକା**—[ତଂ ଐଶ୍ୱରଂ ଯୋଗଂ ସ୍ୱରୂପତଃ ବର୍ଣ୍ଣୟତି]—ହେ କୌନ୍ତେୟ ! ସର୍ବଭୂତାନି କଳ୍ପକ୍ଷୟେ ( କଳ୍ପ ବ୍ରହ୍ମଣଃ ଦିବସକାଳଃ, ତସ୍ୟାନ୍ତେ ) ମାମିକାଂ (ମଦୀୟାଂ) ପ୍ରକୃତିଂ (ଅଧ୍ୟାତ୍ମରୂପେଣ ବର୍ତ୍ତମାନଂ ସ୍ୱଭାବଂ) ଯାନ୍ତି (ପ୍ରବିଶନ୍ତି) । କଳ୍ପାଦୌ ପୁନଃ ତାନି ଅହଂ ବିସୃଜାମି (ପ୍ରକାଶାୟ ବିମୁଞ୍ଚାମି ) । ୭ ।

**ଅର୍ଥ**—[ସେହି ଐଶ୍ୱର ଯୋଗ କିପରି, ତାହା ସ୍ପଷ୍ଟ କରି କହୁଛନ୍ତି ] ହେ କୌନ୍ତେୟ, ଭୂତମାନେ କଳ୍ପ ଶେଷରେ (୮. ୧୭ ଟୀକା ଦେଖ ) ମୋର ପ୍ରକୃତି ବା ଅଧ୍ୟାତ୍ମ ସ୍ୱଭାବରେ (୭.୫;୮.୩ ଦେଖ) ଲୀନ ହୁଅନ୍ତି । କଳ୍ପ ଆରମ୍ଭରେ ପୁଣି ତାଙ୍କୁ ମୁଁ ଫିଟାଇ ଛାଡ଼ିଦିଏ । ୭ ।

ବ୍ୟାଖ୍ୟା ସୂଚନା—ଏହି ଫିଟାଇ ଛାଡିଦେବାକୁ ବିସର୍ଜନ, ସର୍ଜନ, ବିସର୍ଗ, ସର୍ଗ, ସୃଜନ ବା ସୃଷ୍ଟି କହନ୍ତି । ୮.୩ 'ବିସର୍ଗ' ଦେଖ । ୭ ।

**ପ୍ରକୃତିଂ ସ୍ୱାମବଷ୍ଟଭ୍ୟ ବିସୃଜାମି ପୁନଃ ପୁନଃ ।**
**ଭୂତଗ୍ରାମମିମଂ କୃତ୍ସ୍ନମବଶଂ ପ୍ରକୃତେର୍ବଶାତ୍ । ୮ ।**

**ଅନ୍ୱୟ**—ସ୍ୱାଂ ପ୍ରକୃତିଂ ଅବଷ୍ଟଭ୍ୟ ପ୍ରକୃତେଃ ବଶାତ୍ ଅବଶଂ ଇମଂ କୃତ୍ସ୍ନଂ ଭୂତଗ୍ରାମଂ ପୁନଃ ପୁନଃ ବିସୃଜାମି । ୮ ।

ଟୀକା—[ଏବଂ ଭୂତାନାଂ ଈଶ୍ୱରଃ ଅହଂ] ସ୍ୱାଂ ପ୍ରକୃତିଂ ଅବଷ୍ଟଭ୍ୟ (ଆଲମ୍ବ୍ୟ—ତତ୍ ପାଳନାୟ ତାଂ ପ୍ରତି ଆନତଃ ଇବ ସନ୍—ଇତି ବ୍ୟୁତ୍ପତ୍ତ୍ୟର୍ଥଃ) ଭୂତ [ପ୍ରକାଶାତ୍ମିକାୟାଃ ତସ୍ୟାଃ] ପ୍ରକୃତେଃ ବଶାତ୍ ଅବଶଂ (ଅସ୍ୱତନ୍ତ୍ରଂ) ଇମଂ କୃତ୍ସ୍ନଂ (ସମଗ୍ରଂ) ଭୂତଗ୍ରାମଂ (ବ୍ୟକ୍ତସର୍ଗଂ) [ପ୍ରତିକଳ୍ପଂ] ପୁନଃ ପୁନଃ ବିସୃଜାମି । ୮ ।

ଅର୍ଥ—[ ଏହିପରି ଭୂତମାନଙ୍କର ଈଶ୍ୱର ସ୍ୱରୂପରେ ମୁଁ ] ନିଜର ସେହି ପ୍ରକୃତି ଧରି (ଅର୍ଥାତ୍, ମୋର ସେହି ପ୍ରକୃତିର ପାଳନ ବା ସ୍ୱରୂପପ୍ରକାଶ ଲାଗି ତା କଥା ଧରି) ସେଇ ପ୍ରକୃତି ବିକାଶ ହେତୁରୁ ଅବଶ୍ୟ ହୁଅନ୍ତି ଏହି ଯେଉଁ ସମସ୍ତ ଭୂତମାନେ, ତାଙ୍କୁ [ କଳ୍ପକୁ କଳ୍ପ ] ଫିଟାଇ ସୃଷ୍ଟି ଦେଉଥାଏ । ୮ ।

**ନ ଚ ମାଂ ତାନି କର୍ମାଣି ନିବଧ୍ନନ୍ତି ଧନଞ୍ଜୟ ।**
**ଉଦାସୀନବଦାସୀନମସକ୍ତଂ ତେଷୁ କର୍ମସୁ । ୯ ।**

ଅନ୍ୱୟ—ଧନଞ୍ଜୟ ! ତେଷୁ କର୍ମସୁ ଅସକ୍ତଂ ଉଦାସୀନବତ୍ ଆସୀନଂ ମାଂ ତାନି କର୍ମାଣି ନ ଚ ନିବଧ୍ନନ୍ତି । ୯ ।

ଟୀକା—[ଅପି ଚ] ହେ ଧନଞ୍ଜୟ, ତେଷୁ [ସୃଷ୍ଟିରୂପ-ଐଶ୍ୱରଯୋଗ] କର୍ମସୁ ଅସକ୍ତଂ (ଅନାସକ୍ତଂ) ଉଦାସୀନବତ୍ (କର୍ମସ୍ଥାନମିବ ଆସୀନଂ ମାଂ ତାନି କର୍ମାଣି ନ ନିବଧ୍ନନ୍ତି (ଲିପ୍ତଂ କୁର୍ବନ୍ତି) । ୯ ।

ଅର୍ଥ—କିନ୍ତୁ ହେ ଧନଞ୍ଜୟ, ସେହିସବୁ ସୃଷ୍ଟିରୂପ ଐଶ୍ୱରଯୋଗକର୍ମରେ ଅନାସକ୍ତ ହୋଇ ଉଦାସୀନ ପରି ରହିଥିବାରୁ ସେସବୁ କର୍ମ ମତେ ଲିପ୍ତ କରନ୍ତି ନାଇ । ୯ ।

ବ୍ୟାଖ୍ୟା ସୂଚନା—ସେସବୁ କର୍ମ ମୋର ଜଞ୍ଜାଳ ନୁହନ୍ତି । ସେସବୁଥିରେ ମୋର ଯାଏ ଆସେ ନାଇ । ମୁଁ କାହିଁରେ ଲଗା ନୁହେ—ଏହି ଭାବ । ୯ ।

**ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।**
**ହେତୁନାନେନ କୌନ୍ତେୟ ଜଗଦ୍‌ବିପରିବର୍ତ୍ତତେ । ୧୦ ।**

ଅନ୍ୱୟ—ମୟା ଅଧ୍ୟକ୍ଷେଣ ସଚରାଚରଂ ପ୍ରକୃତିଃ ସୂୟତେ । କୌନ୍ତେୟ ! ଅନେନ ହେତୁନା ଜଗତ୍ ବିପରିବର୍ତ୍ତତେ । ୧୦ ।

ଟୀକା—[ଏବଂ] ମୟା ଅଧ୍ୟକ୍ଷେଣ (ନ ତୁ ପ୍ରକୃତେର୍ବଶାତ୍ ଅବଶେନ ଇତି ଭାବଃ) ପ୍ରକୃତିଃ [ ଅବଶଂ ] ସଚରାଚରଂ (ସର୍ବଜଗତ୍) ସୂୟତେ ( ଜନ୍ୟତେ, କାର୍ଯ୍ୟତେ) [ଅହଂ ପ୍ରକୃତିଂ ସଚରାଚରଂ ସୂୟେ—ଜନୟାମି—ଇତି ପ୍ରୟୋଜକା-

ମୂଳବାକ୍ୟସ୍ୟ କର୍ମଣି ବାଚ୍ୟେ ପ୍ରୟୋଗଃ ] । ହେ କୌନ୍ତେୟ, ଅନେନ ହେତୁନା [ଏବଂ ବ୍ରହ୍ମମୟଂ] ଜଗତ୍ ବିପରିବର୍ତ୍ତତେ, (ନାନାଭାବେନ ପ୍ରକାଶତେ, ସଦା ପରିବର୍ତ୍ତ-ମାନଂ ଭବତି) । ୧୦ ।

**ଅର୍ଥ**—ଏହିପରି ପ୍ରକୃତିର ଅଧ୍ୟକ୍ଷ ହୋଇ (ତାର ଅଧୀନ ନ ହୋଇ—ତାର ସ୍ୱରୂପପାଳନ କରିବା ନିମନ୍ତେ) ମୁଁ ପ୍ରକୃତିକୁ ଧରି ପ୍ରକୃତିର କର୍ମରେ ଅବଶ ଚରାଚର ଜଗତକୁ ଜନ୍ମାଏ । ହେ କୌନ୍ତେୟ, ଏହି ହେତୁରୁ ଏହି ବ୍ରହ୍ମମୟ ଜଗତ୍ ନାନା-ଭାବରେ ନାନା କ୍ରିୟାରେ ସବୁବେଳେ ବଦଳିବାରେ ଲାଗିଛି । ପ୍ରକୃତିର କ୍ରିୟାରେ ସୃଷ୍ଟିମାନଙ୍କେ ସବୁ ବିକାର ବା ପରିବର୍ତ୍ତନ ସର୍ବଦା ଲାଗିଛି । ୧୦ ।

**ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍ ।**
**ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରମ୍ । ୧୧ ।**

**ଅନ୍ୱୟ**—ମମ ଭୂତମହେଶ୍ୱରଂ ପରଂ ଭାବଂ ଅଜାନନ୍ତଃ ମୂଢ଼ାଃ ମାନୁଷୀଂ ତନୁଂ ଆଶ୍ରିତଂ ମାଂ ଅବଜାନନ୍ତି । ୧୧ ।

**ଟୀକା**—[ଅତଃ] ମମ [ଉକ୍ତଂ] ଭୂତମହେଶ୍ୱରଂ ପରଂ ଭାବଂ (ସ୍ୱରୂପତତ୍ତ୍ୱଂ) ଅଜାନନ୍ତଃ [ଅତଏବ] ମୂଢ଼ାଃ (ପ୍ରକୃତିକର୍ମଣା ମୋହଂ ଗତାଃ) ମାନୁଷୀଂ ତନୁଂ (ଶରୀରଂ) ଆଶ୍ରିତଂ [ସ୍ୱାସ୍ୱରୂପଂ ଜୀବଭୂତଂ] ମାଂ [ଅଭିମାନିନଂ ଜୀବମିତି] ଅବଜାନନ୍ତି (ଅବଜ୍ଞାୟା ଅଳ୍ପଂ ମନ୍ୟନ୍ତେ) । ୧୧ ।

**ଅର୍ଥ**—[ ଏହି ହେତୁରୁ ବି ] ମୋର ସେହି ଭୂତମହେଶ୍ୱର ବା ସୃଷ୍ଟିର ମହାପ୍ରଭୁ ରୂପ ପରମତତ୍ତ୍ୱକୁ ନ ଜାଣି ପ୍ରକୃତି କର୍ମରେ ମୂଢ଼ ହୋଇ (ଅର୍ଥାତ୍ ଦେହକୁ ଆତ୍ମା ବିଚାରି) ଲୋକେ, ମନୁଷ୍ୟ ଦେହରେ ମୁଁ ନିଜେ ଜୀବରୂପରେ ଥିଲେହେଁ ମୋତେ ଅଭିମାନୀ ଜୀବ ବୋଲି ଅବଜ୍ଞା କରନ୍ତି । ୧୧ ।

ବ୍ୟାଖ୍ୟା ସୂଚନା—ମନୁଷ୍ୟ ଦେହ ଧରି ମୁଁ ନିଜେ ଅବତାର ହୋଇଥିଲେହେଁ ମୋତେ ସାଧାରଣ ମନୁଷ୍ୟଟିଏ ବୋଲି ହେଳା କରନ୍ତି—ଏପରି ସଙ୍କେତ ମଧ୍ୟ ଏଠାରେ ଥାଇପାରେ । କାହିଁକି ନା, ଦୁର୍ଯୋଧନ ପ୍ରଭୃତି କୃଷ୍ଣଙ୍କୁ ଏହିପରି ଅବଜ୍ଞା କରିଥିବାରୁ ମହାଭାରତ ଯୁଦ୍ଧ ହେଲା ।—[ଯେ ଈଶ୍ୱରଙ୍କ ସତ୍ତା ନ ମାନନ୍ତି, ସେମାନେ ଶରୀରସ୍ଥିତ ଅନ୍ତର୍ଯାମୀଙ୍କୁ ଚହ୍ନନ୍ତି ନାହିଁ ଓ ସେହି ଶରୀରସ୍ଥିତ ଅନ୍ତର୍ଯାମୀଙ୍କୁ ନ ମାନି ଜଡ଼ବାଦୀ ହୁଅନ୍ତି—ମହାତ୍ମା ଗାନ୍ଧୀ ] । ୧୧ ।

**ମୋଘାଶା ମୋଘକର୍ମାଣୋ ମୋଘଜ୍ଞାନା ବିଚେତସଃ ।**
**ରାକ୍ଷସୀମାସୁରୀଂ ଚୈବ ପ୍ରକୃତିଂ ମୋହିନୀଂ ଶ୍ରିତାଃ ।୧୨।**

**ଅନ୍ୱୟ**—ବିଚେତସଃ, ମୋଘାଶାଃ, ମୋଘକର୍ମାଣଃ, ମୋଘଜ୍ଞାନାଃ, ରାକ୍ଷସୀଂ, ଆସୁରୀଂ ମୋହିନୀଂ ଚ ପ୍ରକୃତିଂ ଶ୍ରିତାଃ [ ଭବନ୍ତି ] । ୧୨ ।

**ଟୀକା**—[ ଏବଂ ପରଂ ଭାବମଜାନନ୍ତଃ ଅବଜାନନ୍ତଃ ତେ ] ବିଚେତସଃ ( ବିକ୍ଷିପ୍ତଚିତ୍ତାଃ ) [ଭୋଗଂ ସେବମାନାଃ, ସୁଖେ ] ମୋଘାଶାଃ ( ହତାଶାଃ, ବ୍ୟର୍ଥାଭିଲାଷାଃ ) ମୋଘକର୍ମାଣଃ ( ବୃଥା ଅଶ୍ରେୟସି ବା କର୍ମାଚରଣପରାଃ ), ମୋଘଜ୍ଞାନାଃ ( ତର୍କମାତ୍ରାବଲମ୍ବନୟୋଜିତଜ୍ଞାନଶାସ୍ତ୍ରଜ୍ଞାନାଃ ) ରାକ୍ଷସୀଂ ( ହିଂସାଦ୍ୟପସ୍ଥିରପରାଂ) ଆସୁରୀଂ (ତାମସୀଂ, ଜ୍ଞାନବିରହିତାଂ) ମୋହିନୀଂ [ ମୋହକରୀଂ ] ଚ ପ୍ରକୃତିଂ [ ସ୍ୱଭାବଂ ] ଶ୍ରିତାଃ ( ଆଶ୍ରିତାଃ ) [ ଭବନ୍ତି ] । ୧୨ ।

**ଅର୍ଥ**—[ଏହିପରି ଯେ ମୋର ପରମେଶ୍ୱରସ୍ୱରୂପ ନ ଜାଣି ଅବଜ୍ଞା କରନ୍ତି ସେହି ] ବିବେକହୀନ ଲୋକେ ଭୋଗସେବାରେ ମାତ୍ର ବୃଥାରେ ସୁଖ ଆଶା କରନ୍ତି; ଶ୍ରେୟରେ ମନ ନ ଦେଇ ବୃଥାରେ କର୍ମ କରନ୍ତି; ଖାଲି ବୃଥାରେ ନାସ୍ତିକ ପରି ତର୍କ କରିବାକୁ ଶାସ୍ତ୍ରଜ୍ଞାନ ଅର୍ଜନ୍ତି । ଫଳରେ ସେମାନେ ରାକ୍ଷସ ପରି ହିଂସାଦି ଦୁଷ୍କର୍ମରେ ମାତି, ଅସୁରପରି ଅଜ୍ଞାନରେ ପଡ଼ି, ମୋହର ସ୍ୱଭାବକୁ ଧରି ବସନ୍ତି । ୧୨ ।

ବ୍ୟାଖ୍ୟା ସୂଚନା—ଚରାଚର ବିଶ୍ୱପରମେଶ୍ୱରଙ୍କର ପ୍ରକୃତି ଲୀଳା ଓ ଜୀବନକୁ ସେହି ପରମେଶ୍ୱର-ପ୍ରକୃତିର ଶ୍ରେଷ୍ଠ କୋଣ ବୋଲି ଧରି ନ ପାରି କୃଷ୍ଣଙ୍କୁ ମନୁଷ୍ୟଟିଏ ବୋଲି ବିଗ୍ଭରି ଭଜନ୍ତି । ତାଙ୍କର ଆଶା ବୃଥା, କର୍ମ ବୃଥା, ଜ୍ଞାନ ବୃଥା । ଏଠାରେ 'ବାଳ-ଗୋପାଳ'-ଲୀଳା ପ୍ରଭୃତିରେ କିଂବା ରାଧା ଗୋପୀ-ରମଣାଦିରେ ଯେଉଁମାନେ କୃଷ୍ଣଙ୍କୁ ଭଜନ୍ତି ସେମାନଙ୍କ ପ୍ରତି ସଙ୍କେତ ଅଛି । ୧୨ ।

**ମହାତ୍ମାନସ୍ତୁ ମାଂ ପାର୍ଥ ଦୈବୀଂ ପ୍ରକୃତିମାଶ୍ରିତାଃ ।**
**ଭଜନ୍ତ୍ୟନନ୍ୟମନସୋ ଜ୍ଞାତ୍ୱା ଭୂତାଦିମବ୍ୟୟମ୍ । ୧୩ ।**

**ଅନ୍ୱୟ**—[ କିଂ ] ତୁ ପାର୍ଥ ! ଦୈବୀଂ ପ୍ରକୃତିଂ ଆଶ୍ରିତାଃ ମହାତ୍ମାନଃ ମାଂ ଭୂତାଦିଂ ଅବ୍ୟୟଂ ଜ୍ଞାତ୍ୱା ଅନନ୍ୟମନସଃ [ ସନ୍ତଃ ] ଭଜନ୍ତି । ୧୩ ।

**ଟୀକା**—[ କିଂ ] ତୁ ହେ ପାର୍ଥ, [ ଶାନ୍ତକ୍ଷମାଦିଂ ] ଦୈବୀଂ ( ଐଶ୍ୱରୀଂ, ଈଶ୍ୱରାଭିମୁଖୀଂ ବା ) ପ୍ରକୃତିଂ ଆଶ୍ରିତାଃ ମହାତ୍ମାନଃ ( ଉଦାରଚେତସଃ—ନ ତୁ ଦେହାତ୍ମବୁଦ୍ଧୟଃ ଇତି ଭାବଃ ) ମାଂ ଭୂତାଦିଂ ( ଭୂତକାରଣଂ ) [ ତଥା ] ଅବ୍ୟୟଂ (ଅନାସକ୍ତତ୍ୱାତ୍ ଅବିକାରିଣଂ ) ଜ୍ଞାତ୍ୱା ଅନନ୍ୟମନସଃ ( ଏକାଗ୍ରଚିତ୍ତାଃ ) [ ସନ୍ତଃ ] ଭଜନ୍ତି । ୧୩ ।

**ଅର୍ଥ**—କିନ୍ତୁ ହେ ପାର୍ଥ, ଶାନ୍ତି କ୍ଷମା ପ୍ରଭୃତି ଯେଉଁ ଦୈବୀ ପ୍ରକୃତି ଧରିଥିବା ମହାତ୍ମାମାନେ ମୋତେ ଭୂତମାତ୍ରର ମୂଳ, ଅଥଚ, ବିକାରହୀନ ବୋଲି ଜାଣି, ଏକାଗ୍ରମନରେ ଭଜନ୍ତି । ( ଅର୍ଥାତ୍, ସବୁ ମୋର ବୋଲି ଜାଣି ମୁଁ ଅନାସକ୍ତ ଥିଲାପରି ନିଜେ ଅନାସକ୍ତ ରହି ମୋଠାରେ ଆପଣାକୁ ବରାବର ଅର୍ପି ଦିଅନ୍ତି । ତାଙ୍କ ଆଶା ମୋର ଠେଇଁ, ତାଙ୍କ କର୍ମ ମୋରପାଇଁ, ତାଙ୍କ ଜ୍ଞାନ ମୁହିଁ ) । ୧୩ ।

ବ୍ୟାଖ୍ୟା ସୂଚନା—ଦୈବୀ, ଅର୍ଥାତ୍, ଐଶ୍ୱରୀ ପ୍ରକୃତି, ଯାହା ଧରିଲେ ଲୋକ ଈଶ୍ୱରଙ୍କ ଆଡ଼କୁ ଯାଏ । ଦୈବୀ ଓ ଆସୁରୀ ପ୍ରକୃତିର ଭେଦପାଇଁ ୧୬ଶ ଅଧ୍ୟାୟ ଦେଖ । ୧୩ ।

**ସତତଂ କୀର୍ତ୍ତୟନ୍ତୋ ମାଂ ଯତନ୍ତଶ୍ଚ ଦୃଢ଼ବ୍ରତାଃ ।**
**ନମସ୍ୟନ୍ତଶ୍ଚ ମାଂ ଭକ୍ତ୍ୟା ନିତ୍ୟଯୁକ୍ତା ଉପାସତେ । ୧୪ ।**

**ଅନ୍ୱୟ**—ନିତ୍ୟଯୁକ୍ତାଃ [ ଭକ୍ତାଃ ] ସତତଂ କୀର୍ତ୍ତୟନ୍ତଃ, ଦୃଢ଼ବ୍ରତାଃ ଯତନ୍ତଃ ଚ, ମାଂ ଭକ୍ତ୍ୟା ନମସ୍ୟନ୍ତଃ ଚ ମାଂ ଉପାସତେ । ୧୪ ।

**ଟୀକା**—[କଥଂ ଭଜନ୍ତୀତ୍ୟାହ]—ନିତ୍ୟଯୁକ୍ତାଃ (ସର୍ବଦା ମମକର୍ମରତାଃ) [ ଭକ୍ତାଃ ] ସତତଂ କୀର୍ତ୍ତୟନ୍ତଃ ( ମମୈଶ୍ୱର୍ଯ୍ୟଂ ଗାୟନ୍ତଃ ) ଦୃଢ଼ବ୍ରତାଃ (ଅଟଳନିଷ୍ଠାଃ) [ ସନ୍ତଃ, କର୍ମଣା, ମନସା, ବାଚା, ସର୍ବଭାବେନ ମାଂ ପ୍ରାପ୍ତୁଂ ] ଯତନ୍ତଃ ପ୍ରଯତ୍ନଂ କୁର୍ବନ୍ତଃ ଚ ମାଂ ଭକ୍ତ୍ୟା ନମସ୍ୟନ୍ତଃ ଚ ମାଂ ଉପାସତେ । ୧୪ ।

**ଅର୍ଥ**—[ କିପରି ଭଜନ୍ତି କହୁଛନ୍ତି ]—ସର୍ବଦା ଯୋଗ ବା ମୋର କର୍ମରେ ଲାଗିଥିବା ଭକ୍ତମାନେ, ସବୁବେଳେ ବିଭୂକୀର୍ତ୍ତନ କରି ଓ ଅଟଳ ନିଷ୍ଠାରେ [ କାୟମନୋବାକ୍ୟରେ ସର୍ବତୋଭାବରେ ମୋତେ ପାଇବାରେ ] ଲାଗିପଡ଼ି, ଆଉ ଭକ୍ତିରେ ମୋତେ ନମସ୍କାର କରି ଭଜନ୍ତି । ଅର୍ଥାତ୍, ମୋ ଛଡ଼ା ଆଉ କାହିଁରେ କିଛି ଦେଖନ୍ତି ନାହିଁ । ୧୪ ।

**ଜ୍ଞାନଯଜ୍ଞେନ ଚାପ୍ୟନ୍ୟେ ଯଜନ୍ତୋ ମାମୁପାସତେ ।**
**ଏକତ୍ୱେନ ପୃଥକ୍ତ୍ୱେନ ବହୁଧା ବିଶ୍ୱତୋମୁଖମ୍ । ୧୫ ।**

**ଅନ୍ୱୟ**—ଜ୍ଞାନଯଜ୍ଞେନ ଯଜନ୍ତଃ ଅନ୍ୟେ ଚ ଅପି [ ଭକ୍ତାଃ ] ବିଶ୍ୱତୋମୁଖଂ ମାଂ ଏକତ୍ୱେନ, ପୃଥକ୍ତ୍ୱେନ ବହୁଧା ଉପାସତେ । ୧୫ ।

**ଟୀକା**—( ଜ୍ଞାନଯଜ୍ଞେନ ) ଜ୍ଞାନପ୍ରୟୋଗେନ—ମଦର୍ଥଂ ଜ୍ଞାନସ୍ୟ ଉତ୍ସର୍ଗଂ ( କୃତ୍ୱା ) ଯଜନ୍ତଃ, ( ଭଜନ୍ତଃ ମତ୍‌ସମ୍ବନ୍ଧଜ୍ଞାନମାଶ୍ରିତ୍ୟ ମାଂ ଭଜନ୍ତଃ—ଇତ୍ୟର୍ଥଃ )

ଅନ୍ୟେ ଚ ଅପି [ ଭକ୍ତାଃ ] ବିଶ୍ୱତୋମୁଖଂ ( ସର୍ବଦା, ସର୍ବତ୍ର, ସର୍ବକର୍ମଣା ଚ ସର୍ବତୋଭାବେନ ପ୍ରକାଶିତଂ ) ମାଂ [ ଏକମେବାଦ୍ୱିତୀୟମିତି ] ଏକତ୍ୱେନ, [ ଦେବାଦଷୁ ] ପୃଥକ୍ତ୍ୱେନ ବହୁଧା ( ନାନାଭାବେନ ) [ ବା ] ଉପାସତେ । ୧୫ ।

**ଅର୍ଥ**—ପୁଣି ଜ୍ଞାନ ଲଗାଇ ମୋତେ ବୁଝି ଭଜୁଥିବା କେତେ ଭକ୍ତ ବ ମୋତେ ଏକ ବ୍ରହ୍ମ ବୋଲି ବା ଭିନ୍ନ ଭିନ୍ନ ବହୁପ୍ରକାର ଦେବତା ( ବା ମୂର୍ତ୍ତି ତାଙ୍କର ପିତା, ମାତା, ବନ୍ଧୁ ପ୍ରଭୃତି ) ବୋଲି ପୂଜନ୍ତି । [ ସେ ସମସ୍ତେ ମତେଇ ପୂଜନ୍ତି, କାହିଁକି ନା ] ମୁଁ ଯେ ବିଶ୍ୱତୋମୁଖ (ଅର୍ଥାତ୍, ସର୍ବତ୍ର, ସବୁବେଳେ, ସବୁ କର୍ମରେ, ସର୍ବତୋଭାବରେ ତ ମୋର ପ୍ରକାଶ—ଆଉ ତ କିଛୁ ନାଇ) । ୧୫ ।

ବ୍ୟାଖ୍ୟା ସୂଚନା—ଅଦ୍ୱୈତ, ଦ୍ୱୈତ, ସାଂଖ୍ୟର ବହୁପୁରୁଷତତ୍ତ୍ୱବାଦ ପ୍ରଭୃତି ସବୁ ଜ୍ଞାନ ମତ ସାଧୁ ବୋଲି ମଧ୍ୟ ଏଠାରେ ଚେତାଇ ଦେଉଚନ୍ତି । ୭. ୪ ଟୀକା ଦେଖ । ଦ୍ୱୈତମତ = ଜୀବାତ୍ମା ଓ ପରମାତ୍ମାଙ୍କୁ ପ୍ରଭୁଭୃତ୍ୟ ଭାବରେ ଦୁଇଟି ବୋଲି ବୁଝି ଭଜିବା । ୧୫ ।

**ଅହଂ କ୍ରତୁରହଂ ଯଜ୍ଞଃ ସ୍ୱଧାହମହମୌଷଧମ୍ ।**
**ମନ୍ତ୍ରୋଽହମହମେବାଜ୍ୟମହମଗ୍ନିରହଂ ହୁତମ୍ । ୧୬ ।**

**ଅନ୍ୱୟ**—ସ୍ପଷ୍ଟ । ୧୬ ।

**ଟୀକା**—[ ଯତଃ ] ଅହଂ କ୍ରତୁଃ ( ବୈଦିକ ଯଜ୍ଞକର୍ମ ), ଅହଂ ଯଜ୍ଞଃ ( ଗୃହସ୍ଥସ୍ୟ ସ୍ମାର୍ତ୍ତକର୍ମ ), ଅହଂ ସ୍ୱଧା ( କବ୍ୟାଦି ପିତୃଭୋଜ୍ୟଂ ), ଅହଂ ଔଷଧଂ, ଭୋଜ୍ୟଂ, ଭେଷଜଂ ବା ), ମନ୍ତ୍ରଃ ଅହଂ, ଅହଂ ଏବ ଆଜ୍ୟଂ ( ଦେବେଷୁ ଦେୟଂ ଭୋଜ୍ୟଂ ), ଅହଂ ଅଗ୍ନିଃ, ଅହଂ ହୁତଂ ( ଘୃତାଦି ଦ୍ରବ୍ୟଂ ) । ୧୬ ।

**ଅର୍ଥ**—[ କାହିଁକି ନା, ] ମୁହିଁ କ୍ରତୁ ବା ଯାଗ, ମୁହିଁ ବୈଶ୍ୱଦେବାଦି ସ୍ମାର୍ତ୍ତଯଜ୍ଞ, ମୁହିଁ କବ୍ୟ, ମୁହିଁ ଭୋଜ୍ୟ, ମୁହିଁ ମନ୍ତ୍ର, ମୁହିଁ ଦ୍ରବ୍ୟ, ମୁହିଁ ଅଗ୍ନି, ମୁହିଁ ଘୃତ । ୧୬ ।

ବ୍ୟାଖ୍ୟା ସୂଚନା—କିଂବା ଏ ସମସ୍ତ ଶ୍ଳୋକରେ ବୈଦିକ ଯଜ୍ଞ ଓ ଯଜ୍ଞର ଭିନ୍ନ ଭାଗ ସାମଗ୍ରୀ ଆଦି ବୁଝାଯାଇଛି । ତା ହେଲେ, କ୍ରତୁ = ଯଜ୍ଞ, ଯଜ୍ଞ = ହୋମ, ଔଷଧ = ହୋମ ଇତ୍ୟାଦି । ଯଜ୍ଞରେ ବି ପିତୃ ତର୍ପଣ ଦରକାର, ସେଥିପାଇଁ 'ସ୍ୱଧା' ( ପିତୃଭୋଜ୍ୟ ) । ୧୬ ।

**ପିତାହମସ୍ୟ ଜଗତୋ ମାତା ଧାତା ପିତାମହଃ ।**
**ବେଦ୍ୟଂ ପବିତ୍ରମୋଙ୍କାର ଋକ୍‌ସାମଯଜୁରେବ ଚ । ୧୭ ।**

ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍ ।
ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍ ।୧୮।
ତପାମ୍ୟହମହଂ ବର୍ଷଂ ନିଗୃହ୍ଣାମ୍ୟୁତ୍ସୃଜାମି ଚ ।
ଅମୃତଞ୍ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜୁନ । ୧୯ ।

**ଅନ୍ୱୟ**—ସ୍ପଷ୍ଟ । ୧୭—୧୯ ।

**ଟୀକା**—[ ଅପି ଚ ] ଅହଂ ଅସ୍ୟ ଜଗତଃ ପିତା, ମାତା, ଧାତା, (କର୍ତ୍ତା) ପିତାମହ (ପାଳକଃ), ବେଦ୍ୟଂ ( ଜ୍ଞେୟଂ ), [ ଯତ୍ ] ପବିତ୍ରଂ ( ପୂଣ୍ୟକର୍ମାଦି ) [ତତ୍ସର୍ବଂ], ଓଁକାରଃ ( ପ୍ରଣବଃ ବ୍ରହ୍ମପ୍ରତୀକଂ ସର୍ବବେଦବୀଜଂ ) ଋକ୍, ସାମ, ଯଜୁଃ ଏବ [ ଇତି ତ୍ରୟୀ ] ଚ ( ଅହଂ ); ଅହଂ ଗତିଃ ( ଏକମାତ୍ର ପ୍ରାପ୍ତବ୍ୟଃ ) ଭର୍ତ୍ତା ( ପତିଃ ପ୍ରଭୁଃ ) ସାକ୍ଷୀ ( ଦ୍ରଷ୍ଟା ) ନିବାସଃ ( ଭୋଗସ୍ଥାନଂ ) ଶରଣଂ ( ଆଶ୍ରୟଃ ) ସୁହୃତ୍ [ ହିତୈଷୀ ]; [ ତଥା ଅହଂ ] ପ୍ରଭବଃ ( ସୃଷ୍ଟିଃ ), ପ୍ରଳୟଃ ସ୍ଥାନଂ ( ସ୍ଥିତିଃ ), ନିଧାନଂ ( ବୀଜକୋଷଃ ) [ ତଥା ] ଅବ୍ୟୟଂ ( ନିତ୍ୟଂ, ଅବିକାରସ୍ୱଭାବଂ ) ବୀଜଂ (ସୃଷ୍ଟିମୂଳଂ); ଅହଂ ତପାମି ( ତପନୋଽହମିତିଭାବଃ ) ଅହଂ ବର୍ଷଂ (ବୃଷ୍ଟିଃ) [ ଯତଃ ତପନଃ ସନ୍ ଜଳଂ ] ନିଗୃହ୍ଣାମି ( ସଂହରାମି ) [ ବୃଷ୍ଟିଃ ଭୂତ୍ୱା ତଜ୍ଜଳଂ ] ଉତ୍ସୃଜାମି ( ତ୍ୟଜାମି ) ଚ; [ଅହଂ] ଅମୃତଂ ଚ ମୃତ୍ୟୁଃ ଚ ଏବ । ହେ ଅର୍ଜ୍ଜୁନ, ଅହଂ ସତ୍ ( ଯତ୍ ଅସ୍ତୀତି ପ୍ରତୀୟତେ ତତ୍ ) ଅସତ୍ ( ଯତ୍ ଅବ୍ୟକ୍ତଂ ତତ୍ ) ଚ । [ ଏବଂ ବିଶ୍ୱତୋମୁଖଃ, ଏକ-ପୃଥକ୍-ବହୁ-ଭାବେନ ପ୍ରତୀତଃ—ଇତିଭାବଃ ] । ୧୭-୧୯ ।

**ଅର୍ଥ**—ପୁଣି ମୁହିଁ ଏ ଜଗତର ପିତା, ମାତା, କର୍ତ୍ତା, ପାଳକ, ଜ୍ଞାତବ୍ୟ, ପୁଣ୍ୟ । ମୁହିଁ ବେଦବୀଜ ଓଁକାର ଓ ଋକ୍, ଯଜୁଃ, ସାମ ବେଦମାନ । ମୁହିଁ ଲୋକର ଗତି, ପତି ( ପ୍ରଭୁ ), ସାକ୍ଷୀ, ଘର, ଶରଣ, ସୁହୃତ୍ । ମୁହିଁ ସୃଷ୍ଟି, ସ୍ଥିତି, ପ୍ରଳୟ, ସୃଷ୍ଟିର ଗର୍ଭ ଓ ସୃଷ୍ଟିର ନିତ୍ୟ ବୀଜ । ମୁହିଁ ତତାଇ ଶୁଖାଉଚି, ମୁହିଁ ବର୍ଷୁଚି—ଅର୍ଥାତ୍ ମୁହିଁ [ ପାଣି ] ନେଉଚି ଓ ମୁହିଁ ଛାଡୁଚି । ପୁଣି ମୁହିଁ ଅମୃତ, ମୁହିଁ ମରଣ । ହେ ଅର୍ଜୁନ, ଯାହା ଅଛି [ ବା ପ୍ରକାଶ ପଡୁଛି ] ଯାହା ବା ନାଇ [ ବା ଅବ୍ୟକ୍ତ ], ସବୁ ମୁହିଁ । ୧୭-୧୯ ।

ବ୍ୟାଖ୍ୟା ସୂଚନା—ସତ୍ = ଅବ୍ୟକ୍ତ, ନିତ୍ୟ; ଅସତ୍ = ବ୍ୟକ୍ତ, କ୍ଷଣିକ ଏହିପରି ଅର୍ଥ କରି ହୁଏ ସତ—୨,୧୬ ଦେଖ; ମାତ୍ର ବେଦରେ ଏହିପରି ପ୍ରସଙ୍ଗରେ ସତ୍ = ବ୍ୟକ୍ତ ହୋଇଚି; ଅସତ୍ = ନାଇ ବା ଜଣା ପଡୁନାଇ; ଏହିପରି ଅର୍ଥରେ ପ୍ରୟୋଗ ଅଛି । ସେପରି ସ୍ଥଳରେ ଅମୃତ = ନିତ୍ୟ, ମୃତ = ଅନିତ୍ୟ, ପ୍ରୟୋଗ ପ୍ରାୟ ଥାଏ । ୧୭-୧୯ ।

**ତ୍ରୈବିଦ୍ୟା ମାଂ ସୋମପାଃ ପୂତପାପା**
**ଯଜ୍ଞୈରିଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ ।**
**ତେ ପୁଣ୍ୟମାସାଦ୍ୟ ସୁରେନ୍ଦ୍ରଲୋକ—**
**ମଶ୍ନନ୍ତି ଦିବ୍ୟାନ୍ ଦିବି ଦେବଭୋଗାନ୍ ।୨୦।**

**ଅନ୍ୱୟ**—ତ୍ରୈବିଦ୍ୟାଃ, ସୋମପାଃ, ପୂତପାପାଃ [ ସନ୍ତଃ ] ଯଜ୍ଞୈଃ ମାଂ [ ଏବ ] ଇଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ । ତେ ପୁଣ୍ୟଂ ସୁରେନ୍ଦ୍ରଲୋକଂ ଆସାଦ୍ୟ, ଦିବି ଦିବ୍ୟାନ୍ ଦେବଭୋଗାନ୍ ଅଶ୍ନନ୍ତି । ୨୦ ।

**ଟୀକା**—[ ଇନ୍ଦ୍ରାଦିରୂପେଣାପି ମାଂ ଏବ ଭଜନ୍ତି ]—ତ୍ରୈବିଦ୍ୟାଃ ( ତ୍ରୟଃ ବେଦାଃ, ତେ ଏବ ବିଦ୍ୟା ଯେଷାଂ ତେ ), ସୋମପାଃ ( ଯଜ୍ଞବିହୁତଂ ସୋମରସଂ ଦେବେଭ୍ୟଃ ନିବେଦ୍ୟ ପିବନ୍ତୀତି), [ ତେନ କର୍ମଣା ] ପୂତପାପାଃ ( କ୍ଷୟିତକଲ୍ମଷାଃ ) [ ସନ୍ତଃ ] ଯଜ୍ଞୈଃ [ ଇନ୍ଦ୍ରାଦିରୂପେଣ ] ମାଂ ଏବ ଇଷ୍ଟ୍ୱା ( ଉପାସ୍ୟ ) ସ୍ୱର୍ଗତିଂ ( ସ୍ୱର୍ଗପ୍ରାପ୍ତିଂ, ଇନ୍ଦ୍ରାଲୋକାଦିଷୁ ଗତିଂ ) ପ୍ରାର୍ଥୟନ୍ତେ (କାମୟନ୍ତେ) । ତେ ପୁଣ୍ୟଂ ( ପୁଣ୍ୟଫଳରୂପଂ ତତ୍ର ପୁଣ୍ୟେନ—ଇତିଭାବଃ) ସୁରେନ୍ଦ୍ରଲୋକଂ ( ଇନ୍ଦ୍ରଲୋକଂ, ସ୍ୱର୍ଗଂ ) ଆସାଦ୍ୟ (·ପ୍ରାପ୍ୟ ) [ ତତ୍ର ] ଦିବି ( ସ୍ୱର୍ଗେ ) ଦିବ୍ୟାନ୍ ( ଅମର୍ତ୍ତ୍ୟାନ୍ ) ଦେବଭୋଗାନ୍ ଅଶ୍ନନ୍ତି ( ଭୁଞ୍ଜତେ ) । ୨୦ ।

**ଅର୍ଥ**—[ ଇନ୍ଦ୍ରାଦିରୂପରେ ମତେଇ ଭଜନ୍ତି ] ଋକ୍, ଯଜୁଃ, ସାମ ଏହି ତିନି ବେଦ ବିଧିରେ ଚଳୁଥିବା ଲୋକେ, ସୋମରସ ପିଇ, ପାପ ଛଡ଼ାଇ, ଯଜ୍ଞରେ ଇନ୍ଦ୍ରାଦି ବୋଲି ମତେଇ ପୂଜି, ସ୍ୱର୍ଗକୁ ଗିବାକୁ ଲୋଡ଼ନ୍ତି । ସେମାନେ ପୁଣ୍ୟ ଇନ୍ଦ୍ରଲୋକକୁ ଯାଇ, ସେହି ସ୍ୱର୍ଗରେ ସୁଧାନନ୍ଦନରମ୍ଭାଦି ଦେବତାଙ୍କର ଦିବ୍ୟ ଭୋଗ ସବୁ ଭୋଗ କରନ୍ତି । ୨୦ ।

ବ୍ୟାଖ୍ୟା ସୂଚନା—ଯଜ୍ଞରେ ସୋମରସ ଦେବତାଙ୍କୁ ଅର୍ପଣ କରି ପିଅନ୍ତି । ସୋମ ନାମକ ଲତାର ରସକୁ ସୋମ ବା ସୋମରସ କହନ୍ତି । ତାକୁ ପିଇଲେ ନିଶା ହୁଏ । ଏବେ ଠିକ୍ ସୋମଲତା ଏ ଦେଶରେ ମିଳେ ନାଇ, ମାତ୍ର ଖଡ଼ିସିର୍ଝୁପରି ଏକ ଲତାକୁ କଣ୍ଟାରେ ଛେଚି, ତାର ମାଦକ ରସକୁ ଏବେ 'ସୋମ' ବୋଲି ଅଗ୍ନିଷ୍ଟୋମାଦି ଯାଗ କରିବା ଲୋକେ ସେହି ଯାଗରେ ବ୍ୟବହାର କରନ୍ତି । 'କାବା' ନାମରେ ଏକପ୍ରକାର ସୋମଲତା ଓ ରସ ଏବେ ମଧ୍ୟ ଅତିଥିସେବା ଓ ଦେବପୂଜାଦିରେ ଯବ, ସେଲିବିସ୍, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପରେ ଚଳେ ।—ସବୁ ବୈଦିକ-କ୍ରିୟା, ଫଳ ପାଇବାକୁ କରି ହେଉଥିଲି ଓ ଏବେ ମଧ୍ୟ କଦାଚିତ୍ ହୁଏ । ୨୦ ।

**ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳମ୍**
**କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।**
**ଏବଂ ତ୍ରୟୀଧର୍ମମନୁପ୍ରପନ୍ନା**
**ଗତାଗତଂ କାମକାମା ଲଭନ୍ତେ । ୨୧ ।**

**ଅନ୍ୱୟ**—ତେ ତଂ ବିଶାଳଂ ସ୍ୱର୍ଗଲୋକଂ ଭୁକ୍ତ୍ୱା ପୁଣ୍ୟେ କ୍ଷୀଣେ [ ସତି ] ମର୍ତ୍ତ୍ୟଲୋକଂ ବିଶନ୍ତି । ତ୍ରୟୀଧର୍ମଂ ଅନୁପ୍ରପନ୍ନାଃ କାମକାମାଃ ଏବଂ ଗତାଗତଂ ଲଭନ୍ତେ । ୨୧ ।

**ଟୀକା**—[ କିଂଚ ] ତେ ତଂ ବିଶାଳଂ ( ବିପୁଳଂ, ଅତି ଭୋଗମୟଂ ) ସ୍ୱର୍ଗଲୋକଂ ଭୁକ୍ତ୍ୱା [ତସ୍ମିନ୍ ସଙ୍କଳ୍ପକାଳାବଧି] ପୁଣ୍ୟେ କ୍ଷୀଣେ (ନିଃଶେଷଂ ଗତେ) [ ସତି, ପୁନଃ ଏତତ୍ ମୋକ୍ଷସାଧନଂ ] ମର୍ତ୍ତ୍ୟଲୋକଂ [ପ୍ରତି] ବିଶନ୍ତି । ତ୍ରୟୀଧର୍ମଂ ( ବେଦଧର୍ମଂ ) ଅନୁପ୍ରପନ୍ନାଃ ( ଆଶ୍ରିତାଃ ) କାମକାମାଃ ( ଫଳାକାଙ୍କ୍ଷିଣଃ ) ଏବଂ (ଉକ୍ତ ପ୍ରକାରେଣ) ଗତାଗତଂ ( ସ୍ୱର୍ଗେ ଗମନଂ, ତସ୍ମାତ୍ ପ୍ରତ୍ୟାବର୍ତ୍ତନଂ ଚ) ଲଭନ୍ତେ । ୨୧ ।

**ଅର୍ଥ**—[ କିଂଚ ] ସେମାନେ ସେହି ଅତି ଭୋଗମୟ ସ୍ୱର୍ଗଲୋକ ଭୋଗିସାରି, ପୁଣ୍ୟ ସରିଗଲେ ପୁଣି [ଏହି ମୋକ୍ଷସାଧନାର ସ୍ଥାନ] ମନୁଷ୍ୟ ଲୋକରେ ଆସି ପଡ଼ନ୍ତି । ବେଦ ଧର୍ମ ଧରିଥିବା ଭୋଗକାମୀମାନେ ଏହିପରି ଯିବା ଆସିବାରେ ପଡ଼ନ୍ତି । ୨୧ ।

**ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।**
**ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ।୨୨।**

**ଅନ୍ୱୟ**—ଯେ ଜନାଃ ଅନନ୍ୟାଃ ମାଂ ଚିନ୍ତୟନ୍ତଃ ପର୍ଯ୍ୟୁପାସତେ, ନିତ୍ୟାଭିଯୁକ୍ତାନାଂ ତେଷାଂ ଯୋଗକ୍ଷେମଂ ଅହଂ ବହାମି । ୨୨ ।

**ଟୀକା**—[ସର୍ବେ ମମୈବ ଭକ୍ତାଃ—ଇତ୍ୟପି ସତି]—ଯେ ଜନାଃ ଅନନ୍ୟାଃ [ସନ୍ତଃ] (ଅନ୍ୟାନ୍ ଦେବାଦୀନ୍ ମୁଚ୍ୟ—ଇତ୍ୟର୍ଥଃ ) ମାଂ [ଏବ] ଚିନ୍ତୟନ୍ତଃ (ଧ୍ୟାୟନ୍ତଃ) ପର୍ଯ୍ୟୁପାସତେ (ସେବନ୍ତେ), ନିତ୍ୟାଭିଯୁକ୍ତାନାଂ (ସଦା ମଦେକନିଷ୍ଠାନାଂ) ତେଷାଂ ଯୋଗକ୍ଷେମଂ (ପ୍ରାପ୍ତି ଭୁକ୍ତ୍ୟାଦିକଂ) ଅହଂ ବହାମି (ଧାରୟାମି) । ୨୨ ।

**ଅର୍ଥ**—[ସମସ୍ତେ ମୋର ଭକ୍ତ ହେଲେହେଁ]—ଯେ ଲୋକେ ଆଉ ସବୁ ଛାଡ଼ି ମତେଇ ଧ୍ୟାନ କରି ମତେଇ ଭଜନ୍ତି, ସେହି ନିତ୍ୟ ଭକ୍ତମାନଙ୍କର ପାଇବା ସମ୍ଭାଳିବା ଭାର ମୁଁ ନିଏଁ । (ଅର୍ଥାତ୍, ସେମାନେ କଣ ପାଇବେ, କଣ ଭୋଗିବେ,

ସେ ସବୁ କଥା ମତେ ଲଗେ । କାହିଁକି ନା, ସେମାନେ ଫଳାଫଳ କଥା ନ ଭାବୁଣ ମୋ ଉପରେ ସବୁ ପକାଇ ଦେଇ କାମ କର ଯାଆନ୍ତି) । ୨୨ ।

ବ୍ୟାଖ୍ୟା ସୂଚନା—ଯୋଗକ୍ଷେମ ସାଂସାରିକ ଅର୍ଥ ନବାହ ଯୋଗ = ନ ପାଇଥିବା ବସ୍ତୁ ପାଇବା, କ୍ଷେମ = ପ୍ରାପ୍ତ ବସ୍ତୁକୁ ସମ୍ଭାଳିବା । ୨.୪୫ ଦେଖ ।

[ଏପର ଯୋଗୀଙ୍କ ଚର୍ନ୍ହିବାର ତିନୋଟି ଲକ୍ଷଣ ଅଛି । ସମତ୍ୱ, କର୍ମରେ କୌଶଳ, ଅନନ୍ୟ ଭକ୍ତି—ଏ ତିନୋଟିଯାକ ସବୁଥିରେ ଓତପ୍ରୋତ ହୋଇ ରହିବା ଦରକାର । ଭକ୍ତି ବିନା ସମତ୍ୱ ମିଳେ ନାଇ । ସମତ୍ୱ ବିନା ଭକ୍ତି ମିଳେ ନାଇ । ପୁଣି କର୍ମ-କୌଶଳ ବିନା ଭକ୍ତି ତଥା ସମତ୍ୱ ଖାଲି ଲୋକ ଦେଖାଣିଆ ଜିନଷ ହୋଇ ଯାଇପାରେ—ମହାତ୍ମା ଗାନ୍ଧି] । ୨୨ ।

**ଯେଽପ୍ୟନ୍ୟଦେବତାଭକ୍ତା ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।**
**ତେଽପି ମାମେବ କୌନ୍ତେୟ ଯଜନ୍ତ୍ୟବିଧିପୂର୍ବକମ୍ । ୨୩ ।**

**ଅନ୍ୱୟ**—ଅନ୍ୟ ଦେବତା ଭକ୍ତାଃ ଅପି ଯେ ଶ୍ରଦ୍ଧୟା ଅନ୍ୱିତାଃ ଯଜନ୍ତେ, ହେ କୌନ୍ତେୟ ! ତେ ମାଂ ଏବ ଅପି ଅବିଧିପୂର୍ବକଂ ଯଜନ୍ତି । ୨୩ ।

**ଟୀକା**—[ କିନ୍ତୁ ଇନ୍ଦ୍ରାଦି ]—ଅନ୍ୟ ଦେବତାଭକ୍ତାଃ ଅପି ଯେ [ଏତତ୍ ସତ୍ୟମିତି] ଶ୍ରଦ୍ଧୟା ଅନ୍ୱିତାଃ (ଯୁକ୍ତାଃ) [ ସନ୍ତଃ ] ଯଜନ୍ତେ (କର୍ମଣା ଉପାସତେ), ହେ କୌନ୍ତେୟ, ତେ ମାଂ ଏବ ଅପି ଅବିଧିପୂର୍ବକଂ ଯଜନ୍ତି (ଭଜନ୍ତି) । ୨୩ ।

**ଅର୍ଥ**—[କିନ୍ତୁ] ଇନ୍ଦ୍ର ପ୍ରଭୃତି ଅନ୍ୟ ଦେବତାଙ୍କ ଭକ୍ତ ହୋଇ ଯେ ବିଶ୍ୱାସରେ ଲଗି ପଡ଼ି କର୍ମ କରନ୍ତି, ହେ କୌନ୍ତେୟ, ସେମାନେ ମତେହିଁ ଅବିଧିରେ ଭଜନ୍ତି । ୨୩ ।

**ଅହଂ ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁରେବ ଚ ।**
**ନ ତୁ ମାମଭିଜାନନ୍ତି ତତ୍ତ୍ୱେନାତଶ୍ଚ୍ୟବନ୍ତି ତେ । ୨୪ ।**

**ଅନ୍ୱୟ**—ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁଃ ଏବ ଚ ଅହଂ । [ କିନ୍ତୁ ] ତୁ ତତ୍ତ୍ୱେନ ମାଂ ନ ଅଭିଜାନନ୍ତି । ଅତଃ ତେ ଚ୍ୟବନ୍ତି । ୨୪ ।

**ଟୀକା**—[ମାମେବ ଯଜନ୍ତୀତି କଥଂ ?]—ହି (ଯତଃ) [ସର୍ବଦେବରୂପେଣ] ସର୍ବଯଜ୍ଞାନାଂ ଭୋକ୍ତା (ଗ୍ରହୀତା) ଚ ପ୍ରଭୁଃ (ଫଳଦାତା) ଏବ ଚ ଅହଂ (ନାନ୍ୟଃ ଇନ୍ଦ୍ରାଦିରିତି ଭାବଃ) । [କିନ୍ତୁ] ତୁ [ଯାଜ୍ଞିକାଦୟଃ] ତତ୍ତ୍ୱେନ (ତତ୍ ତତ୍

ଦେବସ୍ୱରୂପେଣ) ମାଂ ନ ଅଭିଜାନନ୍ତି (ଯଥାର୍ଥତଃ ଜାନନ୍ତି; ଅତଃ ତେ ଚ୍ୟବନ୍ତି (ସଂସାରେ ପତନ୍ତି) । ୨୪ ।

**ଅର୍ଥ**—[ମତେହିଁ ପୂଜନ୍ତୁ ବୋଲି କହୁଛି]—କାହିଁକି, ସବୁ ଦେବତା-ରୂପରେ ଯଜ୍ଞଯାଗରେ ପୂଜା ପାଇବା ବାଲା ମୁହିଁ, ପୁଣି ଦେବା ବାଲା ବି ମୁହିଁ । କିନ୍ତୁ ଦୈବିକ ଯଜ୍ଞ ହୋମଯାଗ କରିବା ଲୋକେ ମୋତେ ସେହି ସେହି ଦେବତାଙ୍କର ସ୍ୱରୂପ ବୋଲି ଠିକ୍ ଜାଣନ୍ତି ନାଇ । ଏଥିପାଇଁ ସେମାନେ ପଡ଼ିଯାନ୍ତି ବା ମର୍ତ୍ତ୍ୟକୁ ଆସନ୍ତି । ୨୪ ।

**ଯାନ୍ତି ଦେବବ୍ରତା ଦେବାନ୍ ପିତୃନ୍ ଯାନ୍ତି ପିତୃବ୍ରତାଃ ।**
**ଭୂତାନି ଯାନ୍ତି ଭୂତେଜ୍ୟା ଯାନ୍ତି ମଦ୍ୟାଜିନୋଽପି ମାଂ ।୨୫।**

**ଅନ୍ୱୟ**—ଦେବବ୍ରତାଃ, ଦେବାନ୍ ଯାନ୍ତି, ପିତୃବ୍ରତାଃ ପିତୃନ୍ ଯାନ୍ତି, ଭୂତେଜ୍ୟାଃ ଭୂତାନି ଯାନ୍ତି, ମଦ୍ୟାଜିନଃ ଅପି ମାଂ ଯାନ୍ତି । ୨୫ ।

**ଟୀକା**—(ଅତୋଽବଧାରୟ)—ଦେବବ୍ରତାଃ (ଦେବରତାଃ) ଦେବାନ୍ (ତତ୍ ତତ୍ ଦେବଲୋକାନ୍) ଯାନ୍ତି, ପିତୃବ୍ରତାଃ (ପିତୃପୂଜକାଃ) ପିତୃନ୍ (ପିତୃ-ଲୋକାନ୍) ଯାନ୍ତି, ଭୂତେଜ୍ୟାଃ (ଭୂତପ୍ରେତାଦିପୂଜକାଃ—ଜଡ଼ୋପାସକାଃ ବା) ଭୂତାନି (ଭୂତାଦିଲୋକାନ୍—ତତ୍ ତତ୍ ଜଡବିଭୂତିଂ ବା) ଯାନ୍ତି । ମଦ୍ୟାଜିନଃ (ମମପୂଜକାଃ) ଅପି ମାଂ ଯାନ୍ତି (ପ୍ରାପ୍ନୁବନ୍ତି) । ୨୫ ।

**ଅର୍ଥ**—[ ଏବେ ବୁଝି ରଖ ] ଦେବତାଙ୍କୁ ଭଜିବା ଲୋକେ ଦେବଲୋକ ପାଆନ୍ତି । ପିତୃଙ୍କୁ ଭଜିବା ଲୋକେ ପିତୃଲୋକ ପାଆନ୍ତି । ଭୂତ ପ୍ରେତ ପିଶାଚ (ବା ଜଡ଼ବସ୍ତୁକୁ) ଭଜିବା ଲୋକେ ଭୂତ ପ୍ରେତ ପିଶାଚ ଲୋକ (ସେହି ସେହି ଜଡବସ୍ତୁର ବିଭବ) ପାଆନ୍ତି । ମୋ ଭକ୍ତମାନେ ଏକା ମୋତେ ପାଆନ୍ତି ।୨୫।

ବ୍ୟାଖ୍ୟା ସୂଚନା—ଭୂତ କହିଲେ ଏଠାରେ ସମୁଦ୍ର ପ୍ରଭୃତିକୁ ଜାହାଜ ପ୍ରଭୃତି ସାଧନରେ ଉପାସନା କରି ବାଣିଜ୍ୟରେ ଲାଭବାନ୍ କରିବା ଅର୍ଥ ବି ହୋଇପାରେ ।୨୫।

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି**
**ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରୟତାତ୍ମନଃ । ୨୬ ।**

**ଅନ୍ୱୟ**—ସ୍ପଷ୍ଟ । ୨୬ ।

**ଟୀକା**—(ତତ୍ର ମଦ୍‌ଯଜନଂ କଥଂ ଗୃହ୍ଣାମୀତ୍ୟାହ)—ଯଃ ମେ (ମହ୍ୟଂ) ପତ୍ରଂ ପୁଷ୍ପଂ ଫଲଂ ତୋୟଂ (ଜଲଂ) [ବା] ଭକ୍ତ୍ୟା ପ୍ରଯଚ୍ଛତି, ପ୍ରୟତାତ୍ମନଃ (ମଦର୍ପିତ ନିଷ୍କାମମନସଃ) [ ତସ୍ୟ ] ତତ୍ ଭକ୍ତ୍ୟୁପହୃତଂ (ଭକ୍ତ୍ୟା ଦତ୍ତଂ ଉପହାରଂ) ଅହଂ ଅଶ୍ନାମି (ପ୍ରୀତ୍ୟା ଗୃହ୍ଣାମି) । ୨୬ ।

**ଅର୍ଥ**—[ତେବେ ମୋର ସେ ପୂଜାକୁ ମୁଁ କପରି ଘେନେ ? କହୁଚନ୍ତି] —ଯେ ମୋତେ ଭକ୍ତିରେ ପତ୍ର, ପୁଷ୍ପ, ଫଳ ବା ଜଳ, ଯାହା ଦିଏ, ମୋଠାରେ ମନ ରଖି ନିଷ୍କାମଭାବରେ ଦେବାରୁ ତାର ସେହି ଭକ୍ତି ଉପହାର ମୁଁ ଆଦରରେ ନିଏଁ । (ଅର୍ଥାତ୍, ଯାହା କରିବ ସବୁ ମୋଠି ଆପଣାକୁ ଭକ୍ତିରେ ସମର୍ପି ଦେଇ ମୋ ପାଇଁ କଲେ ହେଲା । କଣ ଦେଲା, କପରି ଦେଲା, କେତେ ଦେଲା ବା କଣ କଲା, ସେ କଥା ଭାବିବା ଦରକାର ନାହିଁ । ୨୬ ।

ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍
ଯତ୍ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ।୨୭।

**ଅନ୍ୱୟ**—ସ୍ପଷ୍ଟ । ୨୭ ।

**ଟୀକା**—[ଅତଏବ] ହେ କୌନ୍ତେୟ, ଯତ୍ କରୋଷି, ଯତ୍ ଅଶ୍ନାସି, ଯତ୍ ଜୁହୋଷି, ଯତ୍ ଦଦାସି, ଯତ୍ [ବା] ତପସ୍ୟସି, ତତ୍ [ସର୍ବଂ] ମଦର୍ପଣଂ (ମହ୍ୟଂ ଉପହୃତମିତି) କୁରୁଷ୍ୱ । ୨୭ ।

**ଅର୍ଥ**—[ତେବେ] ହେ କୌନ୍ତେୟ, ଯାହା କରୁଚ, ଯାହା ଖାଉଚ (ଭୋଗ କରୁଚ) ଯାହା ହୋମରେ ପକାଉଚ, ଯାହା ବା ତପସ୍ୟା (ଉଦ୍ୟମ) କରୁଚ, ତାସବୁ ମୋଠାରେ ଅର୍ପଣ କଲା ପରି କର । ୨୭ ।

ଶୁଭାଶୁଭଫଳୈରେବଂ ମୋକ୍ଷ୍ୟସେ କର୍ମବନ୍ଧନୈଃ ।
ସନ୍ନ୍ୟାସଯୋଗଯୁକ୍ତାତ୍ମା ବିମୁକ୍ତୋ ମାମୁପୈଷ୍ୟସି ।୨୮।

**ଅନ୍ୱୟ**—ଏବଂ ଶୁଭାଶୁଭଫଳୈଃ କର୍ମବନ୍ଧନୈଃ ମୋକ୍ଷ୍ୟସେ । ସନ୍ନ୍ୟାସଯୋଗଯୁକ୍ତାତ୍ମା ବିମୁକ୍ତଃ ମାଂ ଉପୈଷ୍ୟସି । ୨୮ ।

**ଟୀକା**—[ଏବଂ କୃତ୍ୱା] ଶୁଭାଶୁଭଫଳୈଃ ( ଶୁଭଂ ଅଶୁଭଂ ଚ ଫଳଂ—ତଦ୍‌ବଦ୍‌ଭିଃ) କର୍ମବନ୍ଧନୈଃ ମୋକ୍ଷ୍ୟସେ (ମୁକ୍ତିଂ ଗମିଷ୍ୟସି) । [ଏବଂ ଚ] ସନ୍ନ୍ୟାସଯୋଗଯୁକ୍ତାତ୍ମା (ଫଲତ୍ୟାଗେନ ସ୍ୱଭୂକର୍ମାଚରଣନିଷ୍ଠଃ) ବିମୁକ୍ତଃ [ ଚ ସନ୍ ] ମାଂ ଉପୈଷ୍ୟସି (ପ୍ରାପ୍ସ୍ୟସି) । ୨୮ ।

**ଅର୍ଥ**—ଏହିପରି କଲେ ଶୁଭାଶୁଭ ଫଳ ଯେଉଁ କର୍ମର ସେ ବନ୍ଧନ (ଜଞ୍ଜାଳ), ତହିଁରୁ ଛାଡ଼ି ପାଇବୁ । [ପୁଣି ଏପରି] ଫଳ ଛାଡ଼ି ଈଶ୍ୱର ଭାବରେ ଲାଗି କାମ କଲେ ବନ୍ଧନରୁ ମୁକ୍ତ ହୋଇ ମୋତେ ପାଇବୁ । ୨୮ ।

**ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।**
**ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟି ତେ ତେଷୁ ଚାପ୍ୟହମ୍ ।୨୯।**

**ଅନ୍ୱୟ**—ଅହଂ 'ସର୍ବଭୂତେଷୁ ସମଃ, ମେ ଦ୍ୱେଷ୍ୟଃ ନ ଅସ୍ତି ନ ପ୍ରିୟଃ । ତୁ ଯେ ଭକ୍ତ୍ୟା ମାଂ ଭଜନ୍ତି, ତେ ମୟି, ଅହଂ ଚ ଅପି ତେଷୁ [ ବର୍ତ୍ତେ ] । ୨୯ ।

**ଟୀକା**—[ତର୍ହି ଅଭକ୍ତାଃ ଭବତଃ ଦ୍ୱେଷ୍ୟାଃ କମ୍ ?—ଇତ୍ୟାହ]—ଅହଂ ସର୍ବଭୂତେଷୁ ସମଃ, ମେ (ମମ) ଦ୍ୱେଷ୍ୟଃ (ବିରକ୍ତଭାଜନଂ) ନ (କଶ୍ଚିତ୍) ଅସ୍ତି । ନ [ଚ କଶ୍ଚିତ୍ ମେ] ପ୍ରିୟଃ [ଅସ୍ତି] । [କିଂ] ତୁ ମାଂ ଯେ ଭକ୍ତ୍ୟା ଭଜନ୍ତି [ତେଷୁ ନ କେବଳଂ ସମଃ ଅହଂ] ତେ ମୟି, ଅହଂ ଚ ଅପି ତେଷୁ [ବର୍ତ୍ତେ] । ୨୯ ।

**ଅର୍ଥ**—[ତେବେ ଅଭକ୍ତଙ୍କୁ କଣ ସୁଖ ପାଅ ନାଇଁ ?—ଏଥକୁ କହୁଛନ୍ତି] —ମୋର ସବୁ ପ୍ରାଣୀଙ୍କଠି ସମାନ ବୁଦ୍ଧି । ମୋର ଅପ୍ରିୟ ନାଇଁ କି ପ୍ରିୟ ନାଇଁ । ହେଲେହେଁ, ଯେ ମୋତେ ଭକ୍ତିରେ ଭଜନ୍ତି, ସେମାନେ ମୋ ଭିତରେ ମୁଁ ବି ତାଙ୍କ ଭିତରେ ( ଅର୍ଥାତ୍ ଆମେ ଦୁହେଁ ଏକ ଆତ୍ମା ) । ୨୯ ।

**ଅପି ଚେତ୍ ସୁଦୁରାଚାରୋ ଭଜତେ ମାମନନ୍ୟଭାକ୍ ।**
**ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍ ବ୍ୟବସିତୋ ହି ସଃ । ୩୦ ।**

**ଅନ୍ୱୟ**—ଚେତ୍ ସୁଦୁରାଚାରଃ ଅପି ଅନନ୍ୟଭାକ୍ ମାଂ ଭଜତେ ସଃ ସାଧୁଃ ଏବ ମନ୍ତବ୍ୟଃ । ହି ସଃ ସମ୍ୟକ୍ ବ୍ୟବସିତଃ । ୩୦ ।

**ଟୀକା**—[ ତସ୍ୟାଃ ଭକ୍ତେଃ ପ୍ରଭାବଂ ଦର୍ଶୟତି ] ଚେତ୍ ଯଦି ସୁଦୁରାଚାରଃ ( ଅତିଦୁର୍ବୃତ୍ତଃ ) ଅପି ଅନନ୍ୟଭାକ୍ (ଅନ୍ୟସ୍ମିନ୍ ଭଜନଂ ତ୍ୟକ୍ତ୍ୱା) ମାଂ ଭଜତେ, ସଃ ସାଧୁଃ ଏବ ମନ୍ତବ୍ୟଃ । ହି (ଯତଃ) ସଃ ସମ୍ୟକ୍ (ସର୍ବଭାବେନ) ବ୍ୟବସିତଃ (ଶୋଭନ ସଙ୍କଳ୍ପେନ ସ୍ଥିତଃ) ।

**ଅର୍ଥ**—[ସେହି ଭକ୍ତିର ପ୍ରଭାବ ଦେଖାଉଛନ୍ତି] ଯେତେବି ଭାରି ଦୁରାଚାରୀ ଲୋକ ବି ଆଉ ସବୁ ଛାଡ଼ି ମତେ ଭଜେ ତେବେ ସେ ସାଧୁ ବୋଲି ବୁଝିବାକୁ ହେବ । କାହିଁକି ନା, ସେ ସବୁମନ୍ତେ ସୁନ୍ଦର ସଙ୍କଳ୍ପ ଧରିଛି । [ 'ଅନନ୍ୟଭକ୍ତି, ଦୁରାଚାରୀକୁ ଶାନ୍ତ କରିଦିଏ ।—ମହାତ୍ମା ଗାନ୍ଧି ] । ୩୦ ।

କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।
କୌନ୍ତେୟ ପ୍ରତିଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି ।୩୧।

ଅନ୍ୱୟ—ସ୍ପଷ୍ଟ । ୩୧ ।

**ଟୀକା**—[ପରନ୍ତୁ ସଃ] କ୍ଷିପ୍ରଂ ( ଶୀଘ୍ରଂ ) ଧର୍ମାତ୍ମା (ସଦାଚାରଃ) ଭବତି । [ତତଃ] ଶଶ୍ୱତ୍ (ଚିରସ୍ଥ) ଶାନ୍ତିଂ ନିଗଚ୍ଛତି (ପ୍ରାପ୍ନୋତି) । ହେ କୌନ୍ତେୟ, ମେ (ମମ) ଭକ୍ତଃ ନ ପ୍ରଣଶ୍ୟତି [ଇତି] ପ୍ରତିଜାନୀହି ( ପ୍ରତିଜ୍ଞାଂ କୁରୁ=ଏତାଂ ମମ ପ୍ରତିଜ୍ଞାଂ ଜାନୀହି ଇତ୍ୟର୍ଥଃ) । ୩୧ ।

**ଅର୍ଥ**—[ ପୁଣି ] ସେ ଶୀଘ୍ର ଦୁରାଚାର ଛାଡ଼ି ଧର୍ମାତ୍ମା ହୋଇ ଯାଏ; ପରେ ଚିର ଶାନ୍ତି ପାଏ । ହେ କୌନ୍ତେୟ, ମୋ ଭକ୍ତ କେବେ ନାଶ ହୁଏ ନାହିଁ—ଏହି ମୋର ପ୍ରତିଜ୍ଞା ଜାଣ୍ । ୩୧ ।

ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ ।
ସ୍ତ୍ରିୟୋ ବୈଶ୍ୟାସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂ ଗତିମ୍ ।୩୨।

ଅନ୍ୱୟ—ସ୍ପଷ୍ଟ । ୩୨ ।

**ଟୀକା**—[ଅତଃ କିମନ୍ୟ ବକ୍ତବ୍ୟଂ ଯତ୍]—ହେ ପାର୍ଥ, ଯେ ଅପି ପାପଯୋନୟଃ (ପାପାତ୍ ଦୁଃଖାୟ ଜନ୍ମ ଯେଷାଂ) ସ୍ୟୁଃ (ଭବେୟୁଃ) [ଯେ ବା] ସ୍ତ୍ରିୟଃ ବୈଶ୍ୟାଃ ତଥା ଶୂଦ୍ରାଃ [ ସ୍ୟୁଃ ] ମାଂ ହି ଏବ ବ୍ୟପାଶ୍ରିତ୍ୟ (ସଂସେବ୍ୟ) ତେ ଅପି ପରାଂ ଗତିଂ ଯାନ୍ତି । ୩୨ ।

**ଅର୍ଥ**—[ ତେବେ ଆଉ କହିବା କଣ ଯେ ]—ହେ ପାର୍ଥ, ଯେ ବା ପୂର୍ବ ପାପରୁ ଦୁଃଖ ପାଇବା ଭଳି କୁଳରେ ଜନ୍ମ ପାଇଥାନ୍ତି, ଯେ ବା ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ର ହୋଇ ଜନ୍ମିଥାନ୍ତି, ମତେ ହିଁ ଆଶ୍ରା କରି ସେ ସମସ୍ତେ ବି ପରମ ଗତି ପାଆନ୍ତି । ୩୨ ।

କିଂ ପୁନର୍ବ୍ରାହ୍ମଣାଃ ପୁଣ୍ୟା ଭକ୍ତା ରାଜର୍ଷୟସ୍ତଥା ।
ଅନିତ୍ୟମସୁଖଂ ଲୋକମିମଂ ପ୍ରାପ୍ୟ ଭଜସ୍ୱ ମାମ୍ । ୩୩ ।

ଅନ୍ୱୟ—ସ୍ପଷ୍ଟ । ୩୩ ।

**ଟୀକା**—କିଂ ପୁନଃ [ବକ୍ତବ୍ୟ ତେଷାଂ ବିଷୟେ, ଯେ] ପୁଣ୍ୟାଃ (ସଦାଚାରାଃ ନ ତୁ ଜାତ୍ୟା ଏବ ଇତିଭାବଃ) ବ୍ରାହ୍ମଣାଃ, ତଥା ଭକ୍ତାଃ (ନ ତୁ କେବଳସ୍ତାଃ—ଇତ୍ୟାଶୟଃ) ରାଜର୍ଷୟଃ [ସ୍ୟୁଃ] । [ଅତଃ ତ୍ୱଂ] ଅନିତ୍ୟଂ (କାଲେ ନଶ୍ୟନ୍ତଂ)

ଅସୁଖଂ (ଅଖଣ୍ଡସୁଖବର୍ଜ୍ଜିତଂ) ଇମଂ [ମୋକ୍ଷସାଧନଂ ମନୁଷ୍ୟ-] ଲୋକଂ ପ୍ରାପ୍ୟ ମାଂ ଭଜସ୍ୱ । ୩୩ ।

**ଅର୍ଥ**—ସଦାଚାରୀ ବ୍ରାହ୍ମଣ ଓ ଭକ୍ତ, କ୍ଷତ୍ରିୟ-ଋଷିଙ୍କ କଥା ପୁଣି କହିବା ଦରକାର କଣ ?—ଏବେ ତୁ ଅନିତ୍ୟ, ପୁଣି ପ୍ରକୃତ ସୁଖ ନ ଥିବା ସ୍ଥାନ ହେଲେହେଁ, [ ମୋକ୍ଷ ସାଧନାର କ୍ଷେତ୍ର ] ଏହି ମନୁଷ୍ୟ ଜନ୍ମ ପାଇଚୁ, ମତେ ଭଜ୍ । ୩୩ ।

ବ୍ୟାଖ୍ୟାସୂଚନା—ନିତ୍ୟ ସୁଖ ମନୁଷ୍ୟଲୋକରେ, ନ ଥାଇପାରେ, ମାତ୍ର ଏହି ମନୁଷ୍ୟ ଜନ୍ମ ପାଇଲେଇ ଲୋକ ମୋକ୍ଷସାଧନାର ଅଧିକାରୀ ହୁଏ । ଭକ୍ତି ବା ମୋକ୍ଷ ସାଧନାର ଅନ୍ୟ କ୍ଷେତ୍ର ନାଇ । ଏହାଇ ଭଗବାନ୍‌ଙ୍କର ଚେତାଇ ଦେବାର ଅଭିପ୍ରାୟ । ୩୩ ।

**ମନ୍ମନା ଭବ ମଦ୍‌ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ**
**ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍‌ପରାୟଣଃ ।୩୪।**

**ଅନ୍ୱୟ**—ସ୍ପଷ୍ଟ । ୩୪ ।

**ଟୀକା**—ମନ୍ମନାଃ (ମଦ୍‌ଗତଚିତ୍ତଃ) ଭବ, ମଦ୍‌ଭକ୍ତଃ (ଭବ), ମଦ୍‌ଯାଜୀ (ମଦର୍ଥ-କର୍ମପରଃ) [ଭବ], ମାଂ ନମସ୍କୁରୁ ଏବଂ ମତ୍ପରାୟଣଃ (ମତ୍ସର୍ବସ୍ୱଃ) [ସନ୍] ଆତ୍ମାନଃ [ମୟି] ଯୁକ୍ତ୍ୱା (ସଂସ୍ଥାପ୍ୟ, ସମାଧାୟ) ମାଂ ଏବ ଏଷ୍ୟସି । ୩୪ ।

**ଅର୍ଥ**—ମୋଠାରେ ମନ ଦେ, ମତେ ଭଜ୍, ମୋର ପାଇଁ କର୍ମ କର୍, ମତେ ନମସ୍କାର କର୍ । ଏହିପରି ମତେ ସର୍ବସ୍ୱ କରି ଆତ୍ମାକୁ ମୋଠାରେ ଲଗାଇଲେ, ମତେଇ ପାଇବୁ । ୩୪ ।

ବ୍ୟାଖ୍ୟା ସୂଚନା—(୯ମ ଅଧ୍ୟାୟରେ ସ୍ପଷ୍ଟ ଆରମ୍ଭ ହୋଇଥିବା ଭକ୍ତି ତତ୍ତ୍ୱର ବ୍ୟାଖ୍ୟା) (୧) ବିଜ୍ଞାନ ବା ବ୍ୟକ୍ତ ବିଶ୍ୱର ଅଧ୍ୟାତ୍ମତତ୍ତ୍ୱ, ପୁଣି (୨) ଜ୍ଞାନ ବା ଏଇ ବ୍ୟକ୍ତ ବିକାରରେ ନିଗୂଢ଼ ସେଇ ଅଧ୍ୟାତ୍ମର ନିତ୍ୟ ଅକ୍ଷର ପୀଠ, ଅର୍ଥାତ୍, ବ୍ୟକ୍ତର ପରମପୀଠ ହେଉଚ, ଯେଉଁ ସ୍ଥିର ନିତ୍ୟ ବସ୍ତୁର ପ୍ରକୃତି, ବା ବ୍ୟକ୍ତର ଅବ୍ୟକ୍ତ ଆଧ୍ୟାତ୍ମତତ୍ତ୍ୱ ଯେଉଁ ନିତ୍ୟବସ୍ତୁ ହେତୁରୁ ସମ୍ଭବ;—ଏଇ ଦୁଇ ତତ୍ତ୍ୱ ଭଗବାନ୍ ୭ମ ଓ ୮ମ ଅଧ୍ୟାୟରେ କହିଗଲେ । ମାତ୍ର ଅର୍ଜ୍ଜୁନଙ୍କର ଏଥିରେ ବ୍ରହ୍ମ ଧାରଣା ଠିକ୍ ହେଲା ନାଇ ବୋଲି ସନ୍ଦେହ କରି, ଏଇ ଅଧ୍ୟାୟରେ ଭକ୍ତିର ତତ୍ତ୍ୱ ସ୍ପଷ୍ଟଭାବରେ ଆରମ୍ଭ କରିଚନ୍ତି । ଏଇ ଭକ୍ତିତତ୍ତ୍ୱ ଏଠାରେ ବୁଝାଇ ଦେଲେ ଏଇ ଅଧ୍ୟାୟ ଓ ପର ଅଧ୍ୟାୟ ବୁଝାଇବାରେ ସୁବିଧା ହେବ ।

ଯଥାର୍ଥରେ ଜ୍ଞାନରେ ତର୍କ କରି, ବ୍ରହ୍ମବସ୍ତୁର ଧାରଣା କରି ତହିଁ ସଙ୍ଗେ ସଙ୍ଗେ ବିଶ୍ୱକର୍ମରେ ପ୍ରଯତ୍ନକୁ ଉଠିବା ବଡ଼ କଷ୍ଟ । ଯୁକ୍ତିରେ ନିତ୍ୟ ପଞ୍ଚଣାମମସ୍ତ

ବିଶ୍ୱରେ ସ୍ଥିର ଅବ୍ୟକ୍ତ ଅନନ୍ତର ଧାରଣା ଶାନ୍ତ ମନୁଷ୍ୟର ଚିନ୍ତାର ଅତୀତ କହିଲେ ଚଳେ । ଅନନ୍ତ ଅବ୍ୟକ୍ତ ନିତ୍ୟର ଧାରଣା ଯୁକ୍ତିରେ ଯେ ଭଙ୍ଗି ବସିବ, ତାକୁ ନିତ୍ୟବସ୍ତୁ ବୁଝାଇବାର ଉପାୟ ବା କଅଣ ଅଛି ? ହେଲେହେଁ ନିତ୍ୟ ସ୍ଥିର ବସ୍ତୁର ଧାରଣା ବିନା ନିତ୍ୟ ବିକାରର ବ୍ୟାଖ୍ୟା ବି ଅସମ୍ଭବ । ମାତ୍ର ଯୁକ୍ତିରେ ସାଧାରଣତଃ ଏ ଦିଗରେ ଗତି ନାହିଁ ।

ବରଂ ଯୁକ୍ତି କରି ଲୋକ ଏ କର୍ମଜାଲ ଗୁଡ଼ିକ, ଶୂନ୍ୟର ଧାରଣାରେ ନିର୍ବାଣ ଓ ସେଥିରେ ଶାନ୍ତି କାମନା କରିବା ବେଶି ସ୍ୱାଭାବିକ । ଯେଉଁମାନେ ଚିନ୍ତାରେ ପୂର୍ଣ୍ଣ ବ୍ରହ୍ମର ଧାରଣା କରିବାକୁ ଯାଇଛନ୍ତି, ଏଇ ବ୍ରହ୍ମ "ଅବାଙ୍‌ମନସଗୋଚର" ଅର୍ଥାତ୍ ମାନବର ବାକ୍ୟ ଓ ମନରେ ଏହା ଧରି ହେବାର ନୁହେଁ । ତେବେ ମାନବ ବୁଝିବାପାଇଁ ଏହା ଶୂନ୍ୟ ନୁହେଁ ତ ଆଉ କଣ ? ମୁଁ ଯାହାକୁ ବୁଝାଇ ପାରିବି ନାହିଁ, କି ବୁଝି ପାରିବି ନାହିଁ ତା ଶୂନ୍ୟ ନୁହେଁ ତ ଆଉ କଣ ?

ତଥାପି ବିଶ୍ୱ ତ ଶୂନ୍ୟ ନୁହେଁ । ଏହା ଯେ ଚିର ଓ ନିତ୍ୟ ପୂର୍ଣ୍ଣ । ଏ ପୂର୍ଣ୍ଣତାର ପୀଠ ନିଶ୍ଚୟ ଅଛି । ନିତ୍ୟ ପରିଣାମ ଗ୍ରଳିତ । ତେବେ ସେ ପରିଣାମ କାହାର ? ପରିଣାମୀର କେବଳ ପରିଣାମହିଁ ସବୁ ବା ହେବ କିପରି ? ପରିଣାମ ବସ୍ତୁ ନୁହେଁ—ଏହା ଗୁଣ । ଯେଉଁ ବସ୍ତୁର ଏ ଗୁଣ, ସେ ବସ୍ତୁର ଧାରଣା ପୁଣି ଅସମ୍ଭବ ।

ସେଇଠାରେ ସାଧାରଣ ଯୁକ୍ତି ଯଥାର୍ଥରେ ପରାସ୍ତ । ପରମ ବିଶ୍ୱାସରେ ବୁଦ୍ଧି ଦୃଢ଼ ନ କଲେ ପୂର୍ଣ୍ଣ ନିତ୍ୟ ବିଶ୍ୱସତ୍ତାରେ ସ୍ଥିର ରହିବା ମାନବର ଦୁଃସାଧ୍ୟ । ବହୁ ଚେଷ୍ଟାରେ ମଧ୍ୟ ସଂଶୟଚ୍ଛେଦ ସମ୍ଭବ ନୁହେଁ ।

ଏଇ ବିଶ୍ୱାସର ସ୍ଥିତି ଓ ବ୍ୟାପ୍ତି କଣ ? ବିଶ୍ୱର ପରିଣାମ ବା ବିକାର କର୍ମମୟ । ଏଇ କର୍ମର ପଦେ ପଦେ ଶକ୍ତିର ବିକାଶ । ଏହି ଶକ୍ତି ବା ଗୁଣର ପୀଠ, 'ପୁରୁଷ' ପୁରୁଷ ବା ମାନବ ପରି ବ୍ୟକ୍ତି ନିଜର ଶକ୍ତିପ୍ରକାଶରେ କର୍ମମାନ କରୁଛି । ମାନବର କର୍ମ ପଛରେ ଏକ ପୁରୁଷ (ଉତ୍ତମ ପୁରୁଷ ବା 'ମୁଁ' ବା 'ଆତ୍ମା') ଅଛି । ସେଇପରି ବିଶ୍ୱ-କର୍ମର ପୀଠ-ସ୍ୱରୂପ ବିଶ୍ୱପୁରୁଷ ବା ପୁରୁଷୋତ୍ତମ । ଏହାଇ ବିଶ୍ୱାସୀ ଭକ୍ତର ପରମାତ୍ମା ବା ପରଂବ୍ରହ୍ମ-ଧାରଣା ।

ଏଇ ଧାରଣା କିନ୍ତୁ ଯୁକ୍ତିରେ ବୁଝାଇବାର ବା ବୁଝିବାର ବସ୍ତୁ ନୁହେଁ । ମନୁଷ୍ୟ ନିଜର ମନ ଓ ଚିନ୍ତାରେ ସବୁ ବୁଝିବ । ସମସ୍ତ ମାନବ-ଚିନ୍ତା ଆପେକ୍ଷିକ । ଏକ ବସ୍ତୁ ବା ଭାବରେ ନିରବଚ୍ଛିନ୍ନ ଭାବରେ ଚିନ୍ତା ରହି ନ ପାରେ । ବସ୍ତ୍ୱନ୍ତର ବା ଭାବାନ୍ତର ଅପେକ୍ଷାରେ ଏହା ସର୍ବଦା ଗ୍ରଳିତ ହୁଏ । ପୁଣି ଯେ ଚିନ୍ତା କରେ ଓ ଯାହାକୁ ଚିନ୍ତା କରେ—ସେ ଦୁଇଟି ବସ୍ତୁ ଭିତରେ 'ତମଃ ପ୍ରକାଶ' (ବା ଅନ୍ଧାର ଆଲୁଅ) ପରି ବିରୋଧ-ସମ୍ବନ୍ଧ । ଗୋଟିଏ ଅପରଟି ଦ୍ୱାରା ସମ୍ପୂର୍ଣ୍ଣରୂପେ ଓ

ସର୍ବତୋଭାବରେ ଅବିଚ୍ଛିନ୍ନ । ତଉ, ଚିନ୍ତ୍ୟ ହୋଇ ନ ପାରେ, କିମ୍ବା ଚିନ୍ତ୍ୟ ଚଉ ହୋଇ ନ ପାରେ—ଦାର୍ଶନିକ ଭାଷାରେ 'ଜ୍ଞ', 'ଜ୍ଞେୟ' ହୋଇ ନ ପାରେ; କି 'ଜ୍ଞେୟ', 'ଜ୍ଞ' ହୋଇ ନ ପାରେ ।

ତେବେ ଅନ୍ୟର ଅପେକ୍ଷାହୀନ ବିଶ୍ବତତ୍ତ୍ବ, ଯହିଁରେ 'ଜ୍ଞ' ଓ 'ଜ୍ଞେୟ' ଦୁହେଁ ମିଶି ଏକ—ତାହାର ଧାରଣା ଚିନ୍ତାର ଅଗୋଚର । ହେଲେହେଁ, ପ୍ରାଣ ତଥା ଚିନ୍ତାରେ ଏହାର ସୂଚନା ସ୍ପଷ୍ଟ । ଏଥିପାଇଁ ଏହାକୁ ସନ୍ଦେହ ନ କରି ଅତି ବିଶ୍ୱାସରେ ଗ୍ରହଣ କରିବାକୁ ହୁଏ । ଶ୍ରଦ୍ଧାବାନ୍ ବିଶ୍ୱାସୀକୁ ଏହା ଏକା ନିରୋଳାରେ ଉପଦେଶ ଦିଆହୁଏ (୯.୧ ଦେଖ) । ବେଦରେ ମଧ୍ୟ ଋଷି ଗାଇଛନ୍ତି—

'ବେଦାନ୍ତେ ପରମଂ ଗୁହ୍ୟଂ ପୁରାକାଳେ ପ୍ରଚୋଦିତଂ ।
ନାପ୍ରଶାନ୍ତାୟ ଦାତବ୍ୟଂ ନାଶିଷ୍ୟାୟାପୁତ୍ରାୟ ବା ପୁନଃ ।'

ଅର୍ଥାତ୍ ପୂର୍ବକାଳରେ ପ୍ରବର୍ତ୍ତିତ, ବେଦାନ୍ତର ଅତି ଗୋପନୀୟ ( ଗୁହ୍ୟତମ, ପରମଗୁହ୍ୟ ) ତତ୍ତ୍ବକୁ ଅପ୍ରଶାନ୍ତ (ବା ସନ୍ଦେହୀ ) ଅଶିଷ୍ୟ ( ବା ଶାସନ ନ ମାନିବା ଲୋକ, ଉପଦେଶରେ ଅବିଶ୍ୱାସୀ) କିମ୍ବା ଅପୁତ୍ରକୁ ବା ଯେ ପୁତ୍ର ନୁହେ ତାକୁ ଦେବାର ନୁହେ । ପୁତ୍ର ସର୍ବଦା ବଶ୍ୟ ଓ ଶିଷ୍ୟ ଥିଲା । ବଂଶପରଂପରାରେ ବିଦ୍ୟା ଚଳି ଆସୁଥିଲା । ୪.୧,୨ରେ ଯେଉଁ ଗୁରୁ ଶିଷ୍ୟ ପରଂପରାର କଥା ଭଗବାନ୍ କହିଚନ୍ତି ସେଥିରେ ସୂର୍ଯ୍ୟ, ମନୁ ଓ ଇକ୍ଷ୍ୱାକୁ ପରଂପରା ମଧ୍ୟ ଏଇ ପିତୃ-ପୁତ୍ର ପରଂପରାର ସ୍ପଷ୍ଟ ନିଦର୍ଶନ ।

ମାତ୍ର ଯେ ବିଶ୍ୱାସରେ ଶୁଣି ନିଃସନ୍ଦେହରେ ଯୁକ୍ତି ବିନା ଗ୍ରହଣ କରିବ, ତାକୁହିଁ ଏ ଉପଦେଶ ଦେବ—ଏହା ଠିକ୍ ହେଲେହେଁ, ଏ ଭକ୍ତିତତ୍ତ୍ବ ବା ବ୍ରହ୍ମବସ୍ତୁରେ ପୁରୁଷ-ଭାବ କେବଳ ଆରୋପ ନୁହେ । ଏହା ଗୋଟିଏ ସୁଲଭ ଓ ସୁବିଧାଜନକ କଳ୍ପନା ନୁହେ—କୌଣସି ପ୍ରକାରେ ସାମାନ୍ୟ ଲୋକଙ୍କୁ ଭକ୍ତି ଭୁଲାଇ ବ୍ରହ୍ମଆଡ଼କୁ ଟାଣିବାର ଏହା ଗୋଟିଏ ଅବଲମ୍ବନ ମାତ୍ର ନୁହେ । ଏହା ମଧ୍ୟ ଜଗତ୍ ତଥା ବ୍ରହ୍ମପରି ସତ୍ୟ, ସନାତନ ଓ ସ୍ଥିର । ବ୍ରହ୍ମହିଁ ଈଶ୍ବର ।

ସୃଷ୍ଟିର ପରମପୀଠ, ବ୍ରହ୍ମ ଓ ସୃଷ୍ଟିର ବିକାଶ, ବ୍ରହ୍ମ । ବ୍ରହ୍ମହିଁ ଅକ୍ଷର, ବ୍ରହ୍ମହିଁ ଅଧ୍ୟାତ୍ମ ଓ ବ୍ରହ୍ମହିଁ କର୍ମ । ଅକ୍ଷର ଓ ଅଧ୍ୟାତ୍ମର ସୂକ୍ଷ୍ମତା ସ୍ପଷ୍ଟ ମାନବ ଧାରଣାକୁ ଅତୀତ । ଏହା କେବଳ ସୂଚନାମାତ୍ରରେ ମାନବଚିନ୍ତାର ଅଧିକାର-ଭୂମି ସ୍ପର୍ଶକରି କରେ ନାଇ । ଏହା ଅନୁଭୂତିରେ ସଙ୍କେତମାତ୍ର । ଏହାକୁ ଜ୍ଞାନ କୁହାଯାଇଛି । ମାତ୍ର ଏଠାରେ 'ଜ୍ଞାନ'ର ଅର୍ଥ, 'ଜ୍ଞ' ବା ଜ୍ଞାତାର ଧାରଣା । ଏହି 'ଜ୍ଞ' ହେଉଚି, ଆତ୍ମା ବା 'ମୁଁ' ଏହାହିଁ ନିଜ ଭିତରେ ଥିଲାପରି ଲାଗୁଚି, ପୁଣି ସବୁ କର୍ମରେ ପ୍ରକାଶ ପାଇଲାପରି ଲାଗୁଚି, ଅଥଚ ଚିନ୍ତାରେ ଏହାର ଇଦମିତ୍ଥଂ ଇୟତ୍ତା ନାଇ (୭.୫ ବ୍ୟାଖ୍ୟା ସୂଚନା ଦେଖ) । ଏହି ମୁଁ-କୁ ସଙ୍କେତରେ ଅନୁଭବମାତ୍ର କରିବାକୁ ହୁଏ ସତ, ମାତ୍ର ଏହି ଅନୁଭୂତିରେ

ଏହାର ପୁରୁଷ-ରୂପ ସ୍ପଷ୍ଟ । ଏହା ଦେହରୁ ଅତୀତ, ମନରୁ ଅତୀତ, ଚିନ୍ତାରୁ ଅତୀତ— ଏହା ବସ୍ତୁତଃ 'ଅବାଙ୍ମନସଗୋଚର' । ତଥାପି ଏଇ ମୁଁ ହିଁ ବ୍ୟକ୍ତିର ଆଦର୍ଶ ଓ ସର୍ବଥା ସେବ୍ୟ । ମୁଁ-ସଙ୍ଗେ ଏ ଯେଉଁ ଉପାସ୍ୟ-ଉପାସକ ଭାବ, ଏହା ମଧ୍ୟ ଯୁକ୍ତିର ଅତୀତ । ତଥାପି ଏହା ଛଡ଼ା ଜଗତ୍ ଅସମ୍ଭବ କହିଲେ ଚଳେ ।

ଏହା ଇନ୍ଦ୍ରିୟ ମନର ଅଗମ୍ୟ ହେଲେହେଁ, ଇନ୍ଦ୍ରିୟ ମନ ଏହାର ଅଙ୍ଗୀଭୂତ । ଏହି ଇନ୍ଦ୍ରିୟମନରେ ଏହାର ପୁରୁଷ-ଧାରଣା ଓ ସନ୍ତତ ଉପାସନା । ବ୍ୟକ୍ତିତତ୍ତ୍ୱର ଏହି ଉପାସ୍ୟ ପୁରୁଷଧାରଣାରେ ଆତ୍ମା ବା ମୁଁ'ର ପୂର୍ଣ୍ଣ ଧାରଣା ନା ବୋଲି କହିଲେ, ଆପତ୍ତି କରିବାର କିଛି ନାଇ । ତଥାପି ଭୋଗୀର ସ୍ରକ୍-ଚନ୍ଦନ-ବନିତା-ବିଳାସଠାରୁ ଯୋଗୀର ଅନାସକ୍ତ ବା କର୍ମତ୍ୟାଗରେ ମୁକ୍ତିସାଧନା ପର୍ଯ୍ୟନ୍ତ ସବୁ ଏହି ଆତ୍ମୋପାସନା ବା ମୁଁ-ପୂଜାର ଉପାଦାନ ଓ ଉପକରଣ ।

ଭୂତତତ୍ତ୍ୱବାଦର ଅଧ୍ୟାତ୍ମ ଓ ତାହା ପାଠ ଅକ୍ଷର ବ୍ରହ୍ମର ଧାରଣା ଓ ଉପାସନା ଠିକ୍ ସେହିପରି । ଏହି ବ୍ରହ୍ମର ଦୃଢ଼ ଧାରଣାରେ କର୍ମରେ ଅନାସକ୍ତି ଓ ଦ୍ୱନ୍ଦ୍ୱରେ ସମତା ଆସେ । ଏଥିରେ ବ୍ୟକ୍ତିର ଆତ୍ମା, ବିଶ୍ୱାତ୍ମାରେ ଏକ ବା ସମାଧିସ୍ଥ ହେଲେ, ସର୍ବଭୂତରେ ସମଜ୍ଞାନ ଫୁଟେ । ତେଣୁ ଏହି ବିଶ୍ୱାତ୍ମାର ସଙ୍କେତ ଅନୁଭୂତିରେ ବ୍ୟକ୍ତି ହେଲେ ବିଶ୍ୱ ପୁରୁଷର ଧାରଣା ଓ ଉପାସନା ମନକୁ ହୁଏ । ଏଠାରେ ମଧ୍ୟ ଯୁକ୍ତି ନାଇ । ମାନବର ଆପେକ୍ଷିକ ଜ୍ଞାନାଜ୍ଞାନ, ନ୍ୟାୟାନ୍ୟାୟ ପ୍ରଭୃତିରେ ଏହାର କଳନା ନାଇ । ଏ ସମସ୍ତ ଜ୍ଞାନାଜ୍ଞାନ ଓ ନ୍ୟାୟାନ୍ୟାୟର ଧାରଣା ସେଇ ବିଶ୍ୱପୁରୁଷ ବା ଈଶ୍ୱରଙ୍କ ଚିନ୍ତାର ଅଙ୍ଗୀଭୂତ, ଅଥଚ ଏ ସବୁରେ ଈଶ୍ୱର ଅଗମ୍ୟ ।

'ମୁଁ'କୁ ତଳକୁ ପକାଇ ( ୭.୫ ଦେଖ ), ଶରୀର ତଥା, ଶରୀର ଚିନ୍ତାକୁ 'ମୁଁ' ମନେ କରି ଲୋକ ଯେପରି ସ୍ରକ୍-ଚନ୍ଦନ-ବନିତାଦି ବିଳାସରେ ମାତେ, ବିଶ୍ୱବସ୍ତୁ ବା ବିଶ୍ୱତତ୍ତ୍ୱକୁ ଭୂତ ବା କର୍ମମାତ୍ର ବୋଲି ବୁଝି ଲୋକ ସେଇପରି ଜଡ଼ବାଦୀ ହୁଏ କିମ୍ବା ଭୂତାଦିର ଉପାସନା କରେ ( ୯.୨୪ ଦେଖ ) । ଏଇପରି ମନର ଅଧିକାରରେ ଈଶ୍ୱର-ତତ୍ତ୍ୱକୁ ଆଣିବାକୁ ଯାଇ ଲୋକ ପୁଣି ମନର ଅଧିକାର ଅନୁସାରେ ବିଭିନ୍ନ ଦେବତାଦିର ଉପାସନା କରେ ( ୯.୨୫ ଦେଖ ) ।

ପ୍ରତ୍ୟଗାତ୍ମା ବା ନିଜ ଭିତରେ ଥିଲାପରି ଲାଗୁଥିବା ଆତ୍ମା ( ମୁଁ ) ଯେପରି ଇନ୍ଦ୍ରିୟ-ଦେହାଦିର କର୍ମରେ ପ୍ରକାଶ ପାଏ, ବିଶ୍ୱାତ୍ମା ସେଇପରି ବିଶ୍ୱକର୍ମରେ ପ୍ରକାଶ ପାଏ । ପ୍ରତ୍ୟଗାତ୍ମା ବା ମୁଁ-ର ପୁରୁଷରୂପ ଉପାସନା ଯେପରି ଅନିବାର୍ଯ୍ୟ, ବିଶ୍ୱାତ୍ମାର ଈଶ୍ୱର ରୂପ ଉପାସନା ଠିକ୍ ସେଇପରି । ଜଡ଼ଭାବରେ ହେଉ, ଦେବପୁରୁଷଭାବରେ ବା ପୁରୁଷୋତ୍ତମ ବିଶ୍ୱମୟ ବିଶ୍ୱତତ୍ତ୍ୱରୂପରେ ହେଉ, ସମସ୍ତେ ଏଇ ବିଶ୍ୱପୁରୁଷର ଉପାସନାଇ କରନ୍ତି—କେହି ବାସ୍ତବରେ ନାସ୍ତିକ ନୁହେ । ଦେହ ସୌଖୀନତାରେ ଆତ୍ମଲାଭ କରିବା ଲୋକ ପରି ଜଡ଼ସେବାରେ ବିଶ୍ୱଶକ୍ତିର ସାଧକ ଜାଣି ବା ନ ଜାଣି ସେଇ ବିଶ୍ୱବସ୍ତୁର ଉପାସନାରେ ଆତ୍ମଲାଭ ବା ବିଶ୍ୱାତ୍ମଲାଭ ଅନୁସରଣ କରେ ।

ଅତଏବ ବୁଦ୍ଧି ବା ଚିନ୍ତାରେ ଯେଉଁ ଆତ୍ମା ଓ ପରମାତ୍ମାର ସୂକ୍ଷ୍ମ ସଙ୍କେତ ମିଳେ, ଅନୁଭୂତିରେ ହିଁ ତାର ପ୍ରତୀତି ସ୍ପଷ୍ଟ । ସେଇ ସ୍ପଷ୍ଟ ପ୍ରତୀତିରେ ପୁରୁଷଭାବ ସର୍ବଥା ସୁଗମ ହେଲେହେଁ, ତର୍କର ବିଶ୍ଳେଷଣରେ ତାହା ଦୁରଧିଗମ୍ୟ; ତେଣୁ ସେଇ ଅନୁଭୂତିର ପ୍ରତି ବିଶ୍ୱାସର ବସ୍ତୁ । ବହୁଦର୍ଶୀ ସାଧକସିଦ୍ଧମାନେ ଏଇ ବିଶ୍ୱାସରେ ଦୃଢ଼ । ଏଇ ବିଶ୍ୱାସ ଶ୍ରଦ୍ଧାବାନ୍ ଶିଷ୍ୟାଦିଙ୍କୁ କେବଳ କୁହାଯାଏ । ଏଇ ଈଶ୍ୱରଭାବ ଅତି ନିଗୂଢ଼ ତତ୍ତ୍ୱ । କାହିଁକି ନା, ଏଥିର ବ୍ୟାଖ୍ୟା ଅସମ୍ଭବ । କହି ବୁଲିଲେ, ଯେ ସେ ଯୁକ୍ତି କରି ବସିବେ । ତେଣୁ ଏହା ଯାକୁ ତାକୁ କହି ବୁଝାଇ ବୁଲିବାର ବସ୍ତୁ ନୁହେଁ ।

ପୁଣି ଯାକୁ ତାକୁ କହି ଧରି ମନାଇବାର ବସ୍ତୁ ଏ ନୁହେ । ସେଥିରେ ମଧ୍ୟ ଧର୍ମାନ୍ଧତା ଆସିଯାଏ । ସେଥିପାଇଁ ପରଶ୍ଳୋକମାନଙ୍କରେ ଏଇ ବିଶ୍ୱପୁରୁଷର ଯଥାର୍ଥ ଧାରଣା ସ୍ପଷ୍ଟ କରି ଭଗବାନ ପୁଣି କହୁଚନ୍ତି—ମୂଢ଼ମାନେ ମତେ ଠିକ୍ ମନୁଷ୍ୟ ପରି ବୋଲି ବିଗ୍ରହବାରୁ ମୋର ପ୍ରକୃତ ସ୍ୱରୂପ ଧାରଣାରେ ଆଣି ନ ପାରି ନିଷ୍ଫଳ ଉପାସନାରେ ମୋହରେ ପଡ଼ନ୍ତି (୯.୧୧, ୧୨ ଦେଖ) । ସେଇମାନେ ଅଜ୍ଞାନରେ ପଡ଼ି ଧର୍ମାନ୍ଧ ହୋଇ ଅସହିଷ୍ଣୁ ହୁଅନ୍ତି (୯.୧୨ ଦେଖ) ।

ଏଇଠାରେ ବୁଝିବାକୁ ହେବ, ଜ୍ଞାନ କର୍ମ ଭକ୍ତି ଯଥାର୍ଥରେ ଯୋଗର ତିନୋଟି ପନ୍ଥା ନୁହେ । ଯେଉଁମାନେ ଏପରି ବୁଝି ଗୀତାର ଅର୍ଥ କରନ୍ତି, ସେମାନେ ଠିକ୍ କରନ୍ତି ନାଇଁ । ବିଜ୍ଞାନରେ ବୁଦ୍ଧି ସ୍ଥିର ରଖି ନିର୍ଦ୍ୱନ୍ଦ୍ୱ ହୋଇ କର୍ମ କରିବା ହିଁ ଯଜ୍ଞ-ସାଧନା ବା ବିଶ୍ୱତତ୍ତ୍ୱରେ କର୍ମୋତ୍ସର୍ଗ । ଏଇ ବିଶ୍ୱତତ୍ତ୍ୱର ସୂକ୍ଷ୍ମ ସଙ୍କେତରେ ପୁରୁଷୋତ୍ତମ ଈଶ୍ୱର ଅନୁଭୂତି ସ୍ପଷ୍ଟ । ସେଥିପାଇଁ ୯.୨୪ରେ ଭଗବାନ୍ କହୁଚନ୍ତି—ମୁହିଁ ସର୍ବ ଯଜ୍ଞର ଭୋକ୍ତା ଓ ପ୍ରଭୁ । ମୋଠାରେ ସମସ୍ତ କର୍ମ ଉତ୍ସର୍ଗ କର୍ । ତାହାଇ ଯଥାର୍ଥ ଯଜ୍ଞ-ସାଧନା (୯.୨୭) । ଅତଏବ ଈଶ୍ୱରରେ ବୁଦ୍ଧି ସ୍ଥିର ରଖି ସ୍ୱଧର୍ମନିଷ୍ଠ ହେବା ଗୀତାର ଯୋଗ ବା ମୋକ୍ଷସାଧନା । ଜ୍ଞାନ, ଭକ୍ତି ଓ କର୍ମ ସବୁ ଏକ । ଏମାନେ ସାଧନାର ଭିନ୍ନ ପନ୍ଥା ନୁହନ୍ତି । ଗୋଟିକୁ ଛାଡ଼ି ଅନ୍ୟଟି ରହି ନ ପାରେ । ଜ୍ଞାନର ସଙ୍କେତ ଭକ୍ତିରେ ସ୍ପଷ୍ଟ ଓ ସୁଗମ । କର୍ମ ବା ସ୍ୱଧର୍ମ ତେଣୁ ବିଶ୍ୱକର୍ମର ଅଙ୍ଗୀଭୂତ । ସବୁ ଈଶ୍ୱରଙ୍କର ସୃଷ୍ଟିର ବିକାଶ ବା କର୍ମମାନେ ଈଶ୍ୱରଙ୍କର । ପୁରୁଷର ଧାରଣାରେ ଦ୍ୱୈତର ସଙ୍କେତ ଥିଲି ପରି ଲାଗୁଚି । ନିଜର ଆତ୍ମ-ଧାରଣାରେ ମଧ୍ୟ ତାହାହିଁ ଅଛି । ମୋର ଆତ୍ମସେବା ମୁଁ କରୁଚି—ଏ ଦ୍ୱୈତ ଭାବ ଯେପରି ବସ୍ତୁତଃ ଦ୍ୱୈତଭାବ ନୁହେ । ଈଶ୍ୱର ଭାବରେ ଥିବା ଦ୍ୱୈତଭାବ ମଧ୍ୟ ସେଇପରି 'ଅବାଙ୍ମନସଗୋଚର'ଙ୍କର ମାନସ ପ୍ରତିକାଶ ବା ମନରେ ପ୍ରତିବିମ୍ବ ।



# ଦଶମ ଅଧ୍ୟାୟ

## ବିଭୂତି ଯୋଗ

### ଅଧ୍ୟାୟ ପ୍ରବେଶ—

ପୂର୍ବ ଅଧ୍ୟାୟରେ କହିଲେ, ଯୋଗର ଶ୍ରେଷ୍ଠମାର୍ଗ ହେଉଛି, ଭକ୍ତି ବା ବିଶ୍ୱରୂପରେ ପରମେଶ୍ୱରଙ୍କ ଉପାସନା । ଏବେ କଥାକୁ ଆହୁରି ସ୍ପଷ୍ଟ କରିବା ପାଇଁ 'ପରମଂ ବଚଃ' ବା ଶ୍ରେଷ୍ଠ କଥା କହୁଚନ୍ତି—"ମୋର ଆଦି କେହି ଜାଣନ୍ତି ନାଇ ମୁଁ ଆଦି, ଅଜ ଓ ଲୋକ ମହେଶ୍ୱର; ସୁଖ ଦୁଃଖାଦି ଯେତେ ବସ୍ତୁ ଓ ଭାବ, ସବୁ ମୋଠାରୁ; ପୁଣି ମନୁ ପ୍ରଭୃତି ଆଦିପୁରୁଷ ବି ମୋଠାରୁ । ଏଇପରି ବୁଝି ଭକ୍ତି ଓ କୀର୍ତ୍ତିନାଦି କଲେ ହିଁ ହେଲା; ମୁଁ ନିଜେ ଏଇ ଭକ୍ତଙ୍କ ଅଜ୍ଞାନ ଦୂର କରେ ।"

ଅର୍ଜୁନ ପଚାରିଲେ—"ତୁମକୁ ତୁମ ଛଡ଼ା ଆଉ କେହି ଜାଣନ୍ତି ନାହିଁ, ଏହା ଠିକ୍; ତେବେ ତୁମକୁ କିପରି ଚିନ୍ତା କରିବାକୁ ହେବ, ତୁମେ କହ ।"

ଭଗବାନ୍ କହିଲେ—"ମୋ ବିଭୂତିର ତ ସୀମା ନାଇ ।" ତେବେ ବୁଝି ପାରିବା ପାଇଁ ଦୃଷ୍ଟାନ୍ତରେ ଠିକେ ଠିକେ କେତୋଟା କହିଦେଇ ସାର କହିଲେ "ଯେଉଁଠି ଯେଉଁ ଶକ୍ତି, ଶୋଭା, ମହିମା ପ୍ରଭୃତି ଦେଖାଯାଏ, ସବୁ ମୁହିଁ । ମୋଟ କଥା, ସମଗ୍ର ଜଗତକୁ ମୁଁ ନିଜର ସାମାନ୍ୟ ଏକ ଅଂଶରେ ମାତ୍ର ଧରି ରଖିଚି ।"

୭.୮-୧୨ ଓ ୯. ୧୭ ୧୯ରେ ଈଶ୍ୱରଙ୍କ ଏଇ ସର୍ବାଧାରତ୍ୱ ଓ ବିଭୂତି ବା ବିଭୂଶକ୍ତିର ଅଳ୍ପ ଆଭାସ ଦିଆଯାଇଚି, ଦେଖି ନେବାକୁ ହେବ ।

ଶ୍ରୀ ଭଗବାନୁବାଚ

**ଭୂୟ ଏବ ମହାବାହୋ ଶୃଣୁ ମେ ପରମଂ ବଚଃ ।**
**ଯତ୍ତେଽହଂ ପ୍ରୀୟମାଣାୟ ବକ୍ଷ୍ୟାମି ହିତକାମ୍ୟୟା ।୧।**

ଅନ୍ୱୟ—ସ୍ପଷ୍ଟ ।୧।

ଟୀକା—ଶ୍ରୀ ଭଗବାନ୍ ଉବାଚ—ହେ ମହାବାହୋ, ଭୂୟଃ (ପୁନଃ) ଏବ ମେ (ମମ) ପରମଂ (ଅନୁତ୍ତମଂ) ବଚଃ (ବଚନଂ) ଶୃଣୁ, ଯତ୍ [ବଚଃ] ପ୍ରୀୟମାଣାୟ (ମତ୍ତି ପ୍ରୀତିଂ ପ୍ରାପ୍ନୁବତେ) ତେ (ତୁଭ୍ୟଂ) [ତବ] ହିତକାମ୍ୟୟା (ହିତେଚ୍ଛୟା) ବକ୍ଷ୍ୟାମି । ୧ ।

ଅର୍ଥ—ଶ୍ରୀ ଭଗବାନ କହିଲେ—ହେ ମହାବାହୁ, ଫେର ଏବେ ଭଲକରି ମୋର ଅସଲ କଥା ଶୁଣ୍ । ଆଗ୍ରହରେ ଖୁସି ହୋଇ ମୋ କଥାପଦ ତୁ ଶୁଣୁଥିବାରୁ ତୋ ଭଲ ପାଇଁ ମୁଁ ତୋତେ ଏହା କହିବି । ୧ ।

ବ୍ୟାଖ୍ୟା ସୂଚନା—ପୂର୍ବ ଅଧ୍ୟାୟରେ ଗୁହ୍ୟତମ ବା ନିଗୂଢ଼ କଥା କହି ସାରି ଅର୍ଥାତ୍ ଈଶ୍ୱରଭାବ ତଥା ଭକ୍ତିରେ ଜ୍ଞାନ ଓ ବୁଦ୍ଧି ଯୋଗ ସୁଗମ ହୁଏ ବୋଲି କହି ଏବେ 'ପରମଂ ବଚଃ' ବା ଭକ୍ତିର ଅସଲ କଥା କହୁଚନ୍ତି । ଭକ୍ତିରେ ଏକଦେଶଦର୍ଶୀ ହୋଇ ଈଶ୍ୱରଙ୍କୁ ମନୁଷ୍ୟ ପରି ଜନ୍ମ ମୃତ୍ୟୁ ପ୍ରଭୃତି ଦ୍ୱନ୍ଦ୍ୱର ଅଧୀନ ବୋଲି ବିଶ୍ୱାସିଲେ ଧର୍ମାନ୍ଧତା ଆସେ । ତେଣୁ ଈଶ୍ୱରଙ୍କୁ ଅନାଦି ଅନନ୍ତ ସର୍ବମୟ ତଥା ଭାବ-ଅଭାବ ପ୍ରଭୃତି ସବୁ ପ୍ରକାର ଭୂତ ଓ ଭାବର କର୍ତ୍ତା ବୋଲି ବୁଝି, ବୁଦ୍ଧି ସ୍ଥିର ରଖିବା ଉଚିତ ବୋଲି କ୍ରମେ ୧୧ ଶ୍ଳୋକଯାଏ ନିଜର ବିଭୂତି ବା ଐଶ୍ୱର୍ଯ୍ୟ ଠିକେ ଠିକେ କହି, ପରେ ଅର୍ଜୁନ ପୁଣି ପଚାରିବାରୁ ବ୍ୟକ୍ତିରେ ନିଜର ସତ୍ତାର ଆଭାସ ଦେବେ ।

**ନ ମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ ।**
**ଅହମାଦିର୍ହି ଦେବାନାଂ ମହର୍ଷୀଣାଞ୍ଚ ସର୍ବଶଃ ॥ ୨ ॥**

ଅନ୍ୱୟ—ନ ସୁରଗଣାଃ, ନ ମହର୍ଷୟଃ ମେ ପ୍ରଭବଂ ବିଦୁଃ । ଦେବାନାଂ ମହର୍ଷୀଣାଂ ହି ସର୍ବଶଃ ଅହଂ ଆଦିଃ । ୨ ।

ଟୀକା—[ତତ୍ ପରମଂ ବଚଃ ବଦତି ଦଶଶ୍ଳୋକୈଃ] ନ ସୁରଗଣାଃ ନ [ଚ] ମହର୍ଷୟଃ ମେ (ମମ) ପ୍ରଭବଂ (ଜନ୍ମ) ବିଦୁଃ (ଅବତାରେଣ ନରଦେହଧାରଣଂ ନ ତତ୍ତ୍ୱତଃ ମମ ପ୍ରଭବଃ ଇତି ଭାବଃ) । ହି ଯତଃ [ତେଷାଂ] ଦେବାନାଂ ମହର୍ଷୀଣାଂ ଚ ସର୍ବଶଃ ଅହଂ ଆଦିଃ (ପ୍ରଭବଃ) । ୨ ।

ଅର୍ଥ—[ସେହି ଅସଲ କଥା ଦଶ ଶ୍ଳୋକରେ କହୁଚନ୍ତି]—[ଯେଉଁ ଦେବତାଙ୍କୁ ଅନାଦିଦେବ କୁହାଯାଏ ସେହି] ଦେବତାମାନେ କି ମହର୍ଷିମାନେ କେହି ହେଲେ ମୋ ଜନ୍ମ ଦେଖି ନାହାନ୍ତି । (ମନୁଷ୍ୟ ରୂପରେ ମୋ ଜନ୍ମ ଦେଖିଥିବେ, କିନ୍ତୁ ସେ ଦେଖିବା ମୋ ଜନ୍ମକୁ ଯଥାର୍ଥରେ ଜାଣିବା ନୁହେଁ) । ମୁଁ କାହିଁରୁ ହେଲି ବୋଲି କେହି କହି ପାରିବେ ନାହିଁ । କାହିଁକି ନା, ଦେବତାଙ୍କର ଓ ମହର୍ଷିଙ୍କର ସବୁମତେ ମୁହିଁ ଯେ ଆଦି କାରଣ । ୨ ।

ବ୍ୟାଖ୍ୟା ସୂଚନା—୭.୫ର ଟୀକାରେ ମୁଁ-ର ଯେପରି ଆଦି କେହି ଜାଣନ୍ତି ନାହିଁ, ସେହିପରି ଈଶ୍ୱର ବା ବିଶ୍ୱତତ୍ତ୍ୱ-ପୁରୁଷର ଆଦି, ଦେବ ମାନବରେ ଅଗୋଚର । ଈଶ୍ୱର, ଅନାଦି । ୨ ।

**ଯୋ ମାମଜମନାଦିଞ୍ଚ ବେତ୍ତି ଲୋକମହେଶ୍ୱରମ୍ ।**
**ଅସଂମୂଢ଼ଃ ସ ମର୍ତ୍ତ୍ୟେଷୁ ସର୍ବପାପୈଃ ପ୍ରମୁଚ୍ୟତେ । ୩ ।**

**ଅନ୍ୱୟ**—ସ୍ପଷ୍ଟ । ୩ ।

**ଟୀକା**—ଯଃ ମାଂ [ ଏବଂ ] ଅଜଂ (ଜନ୍ମରହିତଂ) ଅନାଦିଂ [ଅଥ] ଚ ଲୋକମହେଶ୍ୱରଂ (ବିଶ୍ୱସ୍ୟ କର୍ତ୍ତାରଂ ପ୍ରବର୍ତ୍ତକଂ ନିୟାମକଂ ଚ) ବେତ୍ତି, ସଃ ମର୍ତ୍ତ୍ୟେଷୁ (ମନୁଷ୍ୟେଷୁ—ଇତି ଭାବଃ) ଅସମ୍ମୂଢ଼ଃ ମାୟାତୀତଃ—ଅହଂକାରାଦିମୋହରହିତଃ) [ସନ୍] ସର୍ବପାପୈଃ ପ୍ରମୁଚ୍ୟତେ [ବ୍ୟକ୍ତିବିଶେଷେ ଈଶ୍ୱରମନୁଭବନ୍ତୀତି ଭାବଃ] । ୩ ।

**ଅର୍ଥ**—ଯେ ମତେ ଏହିପରି ଜନ୍ମହୀନ ଓ ଅନାଦି ଅଥଚ ନରଲୋକ, ପିତୃଲୋକ, ଦେବଲୋକ, ଭୂତଲୋକ ପ୍ରଭୃତି ସବୁ ଲୋକମାନଙ୍କର ଅର୍ଥାତ୍ ସମଗ୍ର ବ୍ୟକ୍ତ ବିଶ୍ୱର ମହେଶ୍ୱର (କର୍ତ୍ତା, ପ୍ରବର୍ତ୍ତକ ଓ ପାଳକ) ବୋଲି ଜାଣେ, ମନୁଷ୍ୟ ଭିତରେ ସେହି ଲୋକ ଏକା ମମତାଦି ମୋହ ଛାଡ଼ି ସର୍ବ ପାପରୁ ମୁକ୍ତ ହୁଏ । (ଅର୍ଥାତ୍ ଏହି ଜଗତରେ ସର୍ବଜ୍ଞ ଈଶ୍ୱରଙ୍କୁ ବୁଝିପାରେ) ।

ବ୍ୟାଖ୍ୟା ସୂଚନା—୭. ୫ ଟୀକାରେ ବୁଝାଇ ଦିଆ ଯାଇଥିବା ନିଜର ପ୍ରତ୍ୟଗାତ୍ମାର ଧାରଣା ସଙ୍ଗେ ବିଶ୍ୱାତ୍ମାର ଧାରଣା ସମ୍ବନ୍ଧ ମିଳାଇ ବୁଝିବାକୁ ହେବ । ପ୍ରତ୍ୟଗାତ୍ମାର ଧାରଣା ବିଶ୍ୱବୋଧ ବା ଈଶ୍ୱରତ୍ୱବୋଧର କୁଞ୍ଚିକାଠି, ଏହା ମନେ ରଖିବାକୁ ହେବ । ସବୁ କର୍ମ ମୋ ଆତ୍ମରୁ ଜାତ ବା ମୋ'ଠାରୁ ବିକାଶ ପାଏ, କିନ୍ତୁ ମୁଁ କାହିଁରୁ ଜାତ ବା ପ୍ରକାଶ ପାଏ ନାହିଁ । ଏହା ନିଜ ଅନୁଭବରେ ସ୍ପଷ୍ଟ । କ୍ଷେତ୍ରଜ୍ଞ ଆତ୍ମା, ଅଜ । ୩ ।

**ବୁଦ୍ଧିର୍ଜ୍ଞାନମସଂମୋହଃ କ୍ଷମା ସତ୍ୟଂ ଦମଃ ଶମଃ ।**
**ସୁଖଂ ଦୁଃଖଂ ଭବୋଽଭାବୋ ଭୟଞ୍ଚାଭୟମେବଚ । ୪ ।**
**ଅହିଂସା ସମତା ତୁଷ୍ଟିସ୍ତପୋ ଦାନଂ ଯଶୋଽଯଶଃ ।**
**ଭବନ୍ତି ଭାବା ଭୂତାନାଂ ମତ୍ତ ଏବ ପୃଥଗ୍‌ବିଧାଃ । ୫ ।**

**ଅନ୍ୱୟ**—ସ୍ପଷ୍ଟ ।

ଟୀକା—[ଲୋକମହେଶ୍ୱରଂ ବର୍ଣ୍ଣୟନ୍ତି]—ବୁଦ୍ଧିଃ (ବିବେକଶକ୍ତିଃ), ଜ୍ଞାନଂ (ଆତ୍ମାଦିବିଷୟାବଧାରଣଂ), ଅସମ୍ମୋହଃ (ଯଥାବୃତ୍ତିଃ) କ୍ଷମା (ସହିଷ୍ଣୁତା), ସତ୍ୟଂ (ଯଥାବନ୍ତ୍ କଥନଂ), ଦମଃ (ଇନ୍ଦ୍ରିୟସଂଯମଃ)ଶମଃ (ଚିତ୍ତସ୍ଥୈର୍ଯ୍ୟଂ),ସୁଖଂ (ଆହ୍ଲାଦଃ), ଦୁଃଖଂ (ସନ୍ତାପଃ), ଭବଃ (ଉତ୍ପତ୍ତିଃ, ପ୍ରକାଶଃ) ଅଭାବ (ବିନାଶ, ଅନୁତ୍ପତ୍ତିଶ୍ଚ), ଭୟଂ (ତ୍ରାସଃ ଶଙ୍କା), ଅଭୟଂ (ଦୃଢ଼ତା) ଏବ ଚ; ଅହିଂସା (ପରପୀଡ଼ନାତ୍ ନିବୃତ୍ତିଃ), ସମତା (ପ୍ରୀତିବିରକ୍ତଶୂନ୍ୟତା), ତୁଷ୍ଟିଃ (ସନ୍ତୋଷଃ), ତପଃ (କାୟକ୍ଳେଶସାଧନଂ). ଦାନଂ(ସ୍ୱଧନବିତରଣଂ), ଯଶଃ (ଖ୍ୟାତିଃ), ଅଯଶଃ (ଅଖ୍ୟାତିଃ)—[ଏତେ ଅପରେ ଚ] ଭୂତାନାଂ (ମୂର୍ତ୍ତିବସ୍ତୂନାଂ ପ୍ରାଣିନାଂ ବା) ପୃଥଗ୍‌ବିଧାଃ (ନାନାବିଧାଃ) ଭାବାଃ (ପ୍ରକାଶାଃ ସ୍ଥିତୟଶ୍ଚ) ମତ୍ତଃ (ମତ୍‌ସକାଶାତ୍) ଏବ ଭବନ୍ତି । ୪-୫ ।

**ଅର୍ଥ**—(ଲୋକମହେଶ୍ୱର ଭାବକୁ ଭଲକରି ବୁଝାଇବାକୁ କହୁଅଛନ୍ତି)—ବୁଦ୍ଧି, ଜ୍ଞାନ, ଅସମ୍ମୋହ (ଠିକ୍ ବୁଝି, ଠିକ୍ ରହି, ଠିକ୍ କାମ କରିବା), କ୍ଷମା, ସତ୍ୟ କହିବା, ଇନ୍ଦ୍ରିୟସଂଯମ, ଚିତ୍ତଶାନ୍ତି, ସୁଖ, ଦୁଃଖ, ଜନ୍ମ ଓ ପ୍ରକାଶ, ନାଶ ଓ ଅପ୍ରକାଶ, ଭୟ ପୁଣି ଅଭୟ, ଅହିଂସା, ସମଭାବ (ପ୍ରୀତି ବିରକ୍ତି ନ ରଖିବା), ସନ୍ତୋଷ, ତପସ୍ୟା, ଦାନ, ସୁନାମ, ଦୁର୍ନାମ—ଏସବୁ ଓ ଆଉ ସବୁ ଏହିପରି ଦୃଷ୍ଟବସ୍ତୁ ବା ପ୍ରାଣୀମାନଙ୍କର (ଲୋକଙ୍କର) ଭିନ୍ନ ଭିନ୍ନ ପ୍ରକାରରେ ହେବା କଥା ସବୁ ମୋଠାରୁ ହୁଏ । ୪-୫ ।

ବ୍ୟାଖ୍ୟା ସୂଚନା—ଭାବ=ଯାହା ହୁଏ, ହେବା କଥା । ମୋତେ ଏଇପରି ବୋଲି ବୁଝିଗଲେ ଆଉ ମମତାଦି ମାୟାମୋହ ରହି ନ ପାରେ । ନିଜର ସବ କର୍ମ ଏଇ ବିଶ୍ୱକର୍ମର ଅଙ୍ଗୀଭୂତ ବୋଲି ଧାରଣା ହୁଏ ଓ ଯଜ୍ଞ ଭାବରେ କର୍ମକୌଶଳ ସ୍ଥିର ଓ ପରିବର୍ଦ୍ଧିତ ହୋଇଯାଏ । ୪-୫ ।

**ମହର୍ଷୟଃ ସପ୍ତ ପୂର୍ବେ ଚତ୍ୱାରୋ ମନବସ୍ତଥା ।**
**ମଦ୍‌ଭାବା ମାନସା ଜାତା ଯେଷାଂ ଲୋକ ଇମାଃ ପ୍ରଜା । ୬ ।**

**ଅନ୍ୱୟ**—ଲୋକେ ଇମାଃ ପ୍ରଜାଃ ଯେଷାଂ ତେ ସପ୍ତମହର୍ଷୟଃ, ପୂର୍ବେ ଚତ୍ୱାରଃ ତଥା ମନବଃ ମାନସାଜାତାଃ ମଦ୍‌ଭାବାଃ । ୬ ।

ଟୀକା—[ଯତଃ, ମୂଳତଃ] ଲୋକେ (ଜଗତି) ଇମାଃ(ସ୍ଥାବରଜଙ୍ଗମାତ୍ମିକାଃ) ପ୍ରଜାଃ (ସୃଷ୍ଟବସ୍ତୂନି) [ଯଦ୍ ବା ଅତ୍ର ବ୍ରାହ୍ମଣାଦୟଃ ସୃଷ୍ଟଜୀବାଃ] ଯେଷାଂ (ଯୈଃ ଜନ୍ୟତେ ଇତି ଭାବଃ) ତେ ସପ୍ତ [ମରୀଚ୍ୟାଦି] ମହର୍ଷୟଃ, [ତେଷାଂ ଚ] ପୂର୍ବେ [ବାସୁଦେବାଦୟଃ] ଚତ୍ୱାରଃ ତଥା [ସ୍ୱାୟଂଭୁବାଦୟଃ] ମନବଃ ମାନସା ଜାତାଃ ମଦ୍‌ଭାବାଃ (ମନ୍ମାନସାଃ ଭାବାଃ ଇତ୍ୟର୍ଥଃ) [ଆସନ୍] । ୬ ।

**ଅର୍ଥ**—[କାହିଁକି ନା, ମୂଳରୁ] ଲୋକରେ ଏହି ବସ୍ତୁ ଜନ୍ତୁ ପ୍ରଭୃତି (ବା ବ୍ରାହ୍ମଣାଦି) ପ୍ରଜା ଯାହାଙ୍କଠୁଁ ହୋଇଛନ୍ତି, ସେଇ ସପ୍ତମହର୍ଷି ତା ପୂର୍ବେ ଚାରିହେଁ (ଚାରି ଆଦି ଦେବ), ପୁଣି ମନୁମାନେ ମୋର ମନରୁ ବାହାରିଥିବା ଭାବ (ପ୍ରକାଶ) ମାତ୍ର । ୬ ।

ବ୍ୟାଖ୍ୟା ସୂଚନା—(ପୁରାଣାଦିରେ ଅଛି, ବାସୁଦେବରୁ କ୍ରମେ ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ (ବା ବ୍ରହ୍ମଦେବ)—ଅର୍ଥାତ୍, ଯଥାକ୍ରମେ ଆତ୍ମାରୁ ଜୀବ, ମନ ଓ ଅହଙ୍କାର, ପୁଣି ତହିଁରୁ ମନୁମାନେ ଓ ସପ୍ତର୍ଷି ବାହାରି ସୃଷ୍ଟି କଲେ (ତିଲକ) । ଏଠାରେ ଏସବୁକୁ ଈଶ୍ୱରଙ୍କ ମାନସଭାବ କୁହାଯାଇଛି । ବେଦରେ ମଧ୍ୟ ଅଛି, ପ୍ରଥମେ 'ସପ୍ତଧୀ' ବା ସାତଟି ଚିନ୍ତା ବାହାରି ଥିଲା । ମନ = ତପୋଗର୍ଭିକ ବୃତ୍ତି ପରମାତ୍ମା "ଏକୋଽହଂ ବହୁସ୍ୟାମ୍" ଏକ ମୁଁ ବହୁତ ହୁଏ ବୋଲି ସୃଷ୍ଟି ପ୍ରକାଶରୂପ (ପ୍ରଯତ୍ନ) କରନ୍ତି । ଏଇ ପ୍ରଯତ୍ନ ମନରେ ପ୍ରକାଶ ପାଏ ଓ ଆଦିଦେବ, ମନୁ ମହର୍ଷି ରୂପେ କ୍ରମେ ଏଇ ମନର ବିକାଶ ହୁଏ । ତେଣୁ ପୁରାଣର ସପ୍ତର୍ଷି ଓ ମନୁମାନେ ସେହି ମାନସପ୍ରକାଶରୁ ସାଙ୍କେତିକ ପୁରୁଷରୂପ କଳ୍ପନା ବୋଲି ଏଠାରେ ଧରାଯାଇଛି । ଏଠାରେ ସପ୍ତର୍ଷି—ମରୀଚି, ଅତ୍ରି, ଅଙ୍ଗିରା (ବା ଭୃଗୁ), ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ । ଏ କଳ୍ପରେ ମନୁ ଚଉଦରୁ ଛଅଟି ଗତ ହୋଇଛି । ସପ୍ତମଟି ବୈବସ୍ୱତ ମନୁ; ସେଇ ମନୁଙ୍କ କାଳ ବା ବୈବସ୍ୱତ ମନ୍ୱନ୍ତର ଏବେ ଚାଲିଛି । ତେଣୁ ମନୁମାନେ ଏଠାରେ ଏହି ସାତୋଟି; ଯଥା—ସ୍ୱାୟଂଭୁବ, ସ୍ୱାରୋଚିଷ, ଔତ୍ତମି, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ । ପୂର୍ବେ ୨ୟ ଶ୍ଳୋକରେ ଆଦି ଦେବ ଓ ଆଦି ମହର୍ଷିଙ୍କୁ ଲକ୍ଷ୍ୟ କରି କହିଛନ୍ତି । ଏଠାରେ ପୁଣି ମନୁମାନେ (ତଥା ମନବଃ) ବୋଲି ସ୍ପଷ୍ଟ କହିଦିଆ ହୋଇଛି ।୬।

**ଏତାଂ ବିଭୂତିଂ ଯୋଗଂ ଚ ମମ ଯୋ ବେତ୍ତି ତତ୍ତ୍ୱତଃ ।**
**ସୋଽବିକମ୍ପେନ ଯୋଗେନ ଯୁଜ୍ୟତେ ନାତ୍ର ସଂଶୟଃ । ୭ ।**

**ଅନ୍ୱୟ**—ଯଃ ଏତାଂ ମମ ବିଭୂତିଂ, ଯୋଗଂ ଚ ତତ୍ତ୍ୱତଃ ବେତ୍ତି ସଃ ଅବିକମ୍ପେନ ଯୋଗେନ ଯୁଜ୍ୟତେ, ଅତ୍ର ସଂଶୟଃ ନ [ ଅସ୍ତି ] । ୭ ।

**ଟୀକା**—ଯଃ ଏତାଂ (ଏବଂଭୂତାଂ) ମମ ବିଭୂତିଂ (ଐଶ୍ୱର୍ଯ୍ୟଂ, ବୈଭବଂ, ବିସ୍ତାରଂ) [ଏବଂ] ଯୋଗଂ (ଐଶ୍ୱରକର୍ମ, ବିସ୍ତାରକର୍ମ, ଚ) ତତ୍ତ୍ୱତଃ (ତତ୍ କର୍ମତଃ ଯଥାର୍ଥତଃ) ବେତ୍ତି, ସଃ ଅବିକମ୍ପେନ (ଅଚଳେନ—ସଂଶୟରହିତେନ) ଯୋଗେନ (ସର୍ବତଃ ଈଶ୍ୱରଭାବଯୁକ୍ତେନ କର୍ମଣା) ଯୁଜ୍ୟତେ, ଅତ୍ର ସଂଶୟଃ ନ [ଅସ୍ତି] । ୭ ।

ଅର୍ଥ—ଏହିପରି ଭାବରେ ମୋହର ବିଭୂତି (ବିଭୁତ୍ୱ ବା ବିସ୍ତାର) ଓ ଯୋଗ ( ଐଶ୍ୱରକର୍ମ ବା ବିସ୍ତାରକ୍ରିୟା ) ଯେ ତତ୍ତ୍ୱରେ ଜାଣେ, ସେ ସଂଶୟ ଛାଡ଼ି ଅଟଳ ଭାବରେ ଯୋଗରେ ଲାଗେ । ଏଥିରେ ସନ୍ଦେହ ନାହିଁ । ୭ ।

ବ୍ୟାଖ୍ୟା ସୂଚନା—ତତ୍ତ୍ୱରେ=ତତ୍ ଅର୍ଥାତ୍ ସେ ଜଣ ବୋଲି ଯଥାର୍ଥ ଜାଣିବାକୁ 'ତତ୍ତ୍ୱ' କହନ୍ତି । ଯୋଗ=ଈଶ୍ୱରଭାବରେ ସ୍ଥିର ରହି କର୍ତ୍ତବ୍ୟ କରିବା । ଏହାହିଁ ମୋକ୍ଷପ୍ରଯତ୍ନ । ୧୦.୧୮ ଦେଖ । ୭ ।

ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ ।
ଇତି ମତ୍ୱା ଭଜନ୍ତେ ମାଂ ବୁଧା ଭାବସମନ୍ୱିତାଃ । ୮ ।

ଅନ୍ୱୟ—ସ୍ପଷ୍ଟ । ୮ ।

ଟୀକା—[ ତଦେବ ବର୍ଣ୍ଣୟତି ] ଅହଂ ସର୍ବସ୍ୟ ପ୍ରଭବଃ (କାରଣଂ), ମତ୍ତଃ ସର୍ବଂ ପ୍ରବର୍ତ୍ତତେ (କର୍ମପରମ୍ପରା ପ୍ରକାଶତେ) ଇତି ମତ୍ୱା ( ଜ୍ଞାତ୍ୱା ) [ଏବଂ] ଭାବ-ସମନ୍ୱିତା ( ଭାବଯୁକ୍ତାଃ ) ବୁଧାଃ ( ବିବେକିନଃ ) ମାଂ ଭଜନ୍ତେ । ୮ ।

ଅର୍ଥ—[ ସେହି କଥା ବୁଝାଉଛନ୍ତି ]—ମୁଁ ସବୁରି ମୂଳ, ମୋଠାରୁ ସବୁ ପ୍ରବୃତ୍ତି ( ବା କର୍ମମାନେ ) ହୁଅନ୍ତି ଏହା ମାନି, ଏହି ଭାବ ଧରି ବିବେକବନ୍ତମାନେ ମତେ ହିଁ ଭଜନ୍ତି ।

ମଚ୍ଚିତ୍ତା ମଦ୍‌ଗତପ୍ରାଣା ବୋଧୟନ୍ତଃ ପରସ୍ପରମ୍ ।
କଥୟନ୍ତଶ୍ଚ ମାଂ ନିତ୍ୟଂ ତୁଷ୍ୟନ୍ତି ଚ ରମନ୍ତି ଚ । ୯ ।

ଅନ୍ୱୟ—ସ୍ପଷ୍ଟ । ୯ ।

ଟୀକା—[ କଥଂ ଭଜନଂ କୁର୍ବନ୍ତୀତ୍ୟାହ ]—ମଚ୍ଚିତ୍ତାଃ (ମୟି ନିବିଷ୍ଟଚିତ୍ତାଃ) ମଦ୍‌ଗତପ୍ରାଣାଃ ( ମଦର୍ପିତେନ୍ଦ୍ରିୟାଃ ) [ ତେ ବୁଧାଃ ] ପରସ୍ପରଂ (ଅନ୍ୟୋନ୍ୟଂ) ମାଂ ( ମମ କଥାଂ ) ବୋଧୟନ୍ତଃ (ଉପଦିଶନ୍ତଃ) ନିତ୍ୟଂ କଥୟନ୍ତଃ ଚ ତୁଷ୍ୟନ୍ତି (ସନ୍ତୋଷ-ମାପଦ୍ୟନ୍ତେ) ଚ ରମନ୍ତି (ରମନ୍ତେ—ମୟି ଅବିରତଂ ଯୁକ୍ତାଃ ଭବନ୍ତି) ଚ । ୯ ।

ଅର୍ଥ—[ କିପରି ଭଜନ କରନ୍ତି ? କହୁଛନ୍ତି ]—ମୋଠାରେ ମନପ୍ରାଣ ସମର୍ପି ସେହି ବିବେକବନ୍ତମାନେ ଆପଣା ଆପଣା ଭିତରେ ପରସ୍ପରକୁ ମୋ କଥା ବୁଝାଇ ଓ ସବୁବେଳେ ନିଜେ ନିଜେ କୀର୍ତ୍ତନ କରି, ସେଇଥିରେ ସନ୍ତୋଷ ପାଆନ୍ତି ଓ ସେଇଥିରେ ଲାଗି ରହନ୍ତି । ୯ ।

**ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।**
**ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ ।୧୦।**

**ଅନ୍ୱୟ**—ସ୍ପଷ୍ଟ । ୧୦ ।

**ଟୀକା**—[ ଏବଂ ] ପ୍ରୀତିପୂର୍ବକଂ ଭଜତାଂ ସତତଯୁକ୍ତାନାଂ (ନିରତାନାଂ) ତେଷାଂ (ତେଭ୍ୟଃ ଇତ୍ୟର୍ଥଃ) [ଅହଂ] ତଂ ବୁଦ୍ଧିଯୋଗଂ (ମୟି ବୁଦ୍ଧିଯୋଗଂ) ଦଦାମି, ଯେନ ତେ ମାଂ ଉପଯାନ୍ତି (ଲଭନ୍ତେ) । ୧୦ ।

**ଅର୍ଥ**—ଏହିପରି ପ୍ରୀତିରେ ଭଜୁଥିବା ଓ ସର୍ବଦା ଲଗିଥିବା ସେହି ଲୋକମାନଙ୍କୁ ମୁଁ ସେହି ବୁଦ୍ଧି ଯୋଗ ଦିଏ, ଯହିଁରେ ସେମାନେ ମୋ ପାଖକୁ ଆସନ୍ତି । (ଅର୍ଥାତ୍ ମୋତେ ପାଆନ୍ତି) । ୧୦ ।

ବ୍ୟାଖ୍ୟା ସୂଚନା—ବୁଦ୍ଧିଯୋଗ=ସର୍ବଦା ବୁଦ୍ଧି ବା କାର୍ଯ୍ୟାକାର୍ଯ୍ୟ ବିବେକକୁ ମୋଠି ଲଗାଇ ରଖିବା । ଏହି ବୁଦ୍ଧିଯୋଗ ଆସିଲେ ଲୋକ ନିର୍ଦ୍ୱନ୍ଦ୍ୱ ହୁଏ ବା ସୁଖଦୁଃଖାଦି ଦ୍ୱନ୍ଦ୍ୱରେ ସମାନ ରହେ ଓ ସେଥିରେ ନିତ୍ୟ ଶାନ୍ତି ପାଏ । ୧୦ ।

**ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।**
**ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା । ୧୧ ।**

**ଅନ୍ୱୟ**—ତେଷାଂ ଏବ ଅନୁକମ୍ପାର୍ଥଂ ଆତ୍ମଭାବସ୍ଥଃ ଭାସ୍ୱତା ଜ୍ଞାନଦୀପେନ ଅଜ୍ଞାନଜଂ ତମଃ ଅହଂ ନାଶୟାମି । ୧୧ ।

**ଟୀକା**—ତେଷାଂ ଏବ ଅନୁକମ୍ପାର୍ଥଂ (ଅନୁଗ୍ରହଂ ପ୍ରକାଶ୍ୟ) ଆତ୍ମଭାବସ୍ଥଃ ( ଅହଂ ଈଶ୍ୱରଃ ସର୍ବମୂଳମିତି ଭାବଂ ତେଷାଂ ସମ୍ବନ୍ଧେ ଧାରୟନ୍ ) [ସନ୍ ତଦାତ୍ମଭାବ ପ୍ରକାଶରୂପେଣ] ଭାସ୍ୱତା (ଉଜ୍ଜ୍ୱଳେନ) ଜ୍ଞାନଦୀପେନ [ତେଷାଂ] ଅଜ୍ଞାନଜଂ ତମଃ ( ମୋହାନ୍ଧକାରଂ ) ଅହଂ ନାଶୟାମି । ୧୧ ।

**ଅର୍ଥ**—ତାଙ୍କର [ମନୋଭାବ ଅନୁଯାୟୀ] ତାଙ୍କୁ ଅନୁଗ୍ରହ କରି, ତାଙ୍କ ପାଖେ ନିଜର ଈଶ୍ୱରସ୍ୱରୂପ ପ୍ରକାଶ କରି ଉଜ୍ଜ୍ୱଳ ଜ୍ଞାନଦୀପରେ ତାଙ୍କ ମୋହ-ଅନ୍ଧକାରକୁ ମୁଁ ନାଶ କରେ । ୭. ୨୧ ଦେଖ । ୧୧ ।

ଅର୍ଜୁନ ଉବାଚ

**ପରଂ ବ୍ରହ୍ମ ପରଂ ଧାମ ପବିତ୍ରଂ ପରମଂ ଭବାନ୍ ।**
**ପୁରୁଷଂ ଶାଶ୍ୱତଂ ଦିବ୍ୟମାଦିଦେବମଜଂ ବିଭୁମ୍ । ୧୨ ।**

**ଆହୁସ୍ତ୍ୱାମୃଷୟଃ ସର୍ବେ ଦେବର୍ଷିର୍ନାରଦସ୍ତଥା ।**
**ଅସିତୋ ଦେବଲୋ ବ୍ୟାସଃ ସ୍ୱୟଂ ଚୈବ ବ୍ରବୀଷି ମେ ।୧୩।**

**ଅନ୍ୱୟ**—ସ୍ପଷ୍ଟ । ୧୨-୧୩ ।

**ଟୀକା**—[ ଏବଂ ଭକ୍ତସ୍ୟ ଭଗବଦ୍ରୂପଂ ଈଶ୍ୱରତ୍ୱଂ ଶ୍ରୁତ୍ୱା ସୁଖସେବ୍ୟତ୍ୱାତ୍ ପ୍ରତୀତଃ]—ଅର୍ଜୁନଃ ଉବାଚ—ଭବାନ ପରଂବ୍ରହ୍ମ, ପରଂଧାମ (ତେଜଃ, ପ୍ରକାଶଃ, ଆଶ୍ରୟୋ ବା), ପରମଂ ପବିତ୍ରଂ (ପାବନଂ, ପାପହ୍ମା) [ଅସ୍ତି] । ଦେବର୍ଷିଃ ନାରଦଃ ତଥା ଅସିତଃ, ଦେବଲଃ, ବ୍ୟାସଃ, [ଇତ୍ୟାଦୟଃ] ସର୍ବେ ଋଷୟଃ ତ୍ୱାଂ ଶାଶ୍ୱତଂ (ନିତ୍ୟଂ) ଦିବ୍ୟଂ (ସ୍ୱପ୍ରକାଶଂ) ଆଦିଦେବଂ ଅଜଂ, ବିଭୁଂ (ସର୍ବବ୍ୟାପ୍ତମ୍ ) ପୁରୁଷଂ (ପରମେଶ୍ୱରଂ—ଭକ୍ତସ୍ୟ ଭଗବନ୍ତଂ) ଆହୁଃ । ସ୍ୱୟଂ ଚ ଏବ [ତ୍ୱଂ ତଥା] ମେ (ମହ୍ୟଂ) ବ୍ରବୀଷି । ୧୨-୧୩ ।

**ଅର୍ଥ**—[ଏହିପରି ପରଂବ୍ରହ୍ମଙ୍କୁ ଭକ୍ତର ଭଗବାନ୍ ଈଶ୍ୱର ବୋଲି ଶୁଣି, ବିଶ୍ୱାସରେ ସହଜରେ ସେବା କରି ହେବ ବୋଲି ଭରସା ପାଇ] ଅର୍ଜୁନ କହିଲେ— ଆପଣ ହେଉଛନ୍ତି ପରଂବ୍ରହ୍ମ (ସର୍ବୋପରି ମହାନ୍), ଈଶ୍ୱର ପରମ ପ୍ରକାଶ ( କିଂବା ଶ୍ରେଷ୍ଠ ଆଧାର ) ପରମ ପବିତ୍ର ପାପହାରୀ । ଦେବର୍ଷି ନାରଦ, ପୁଣି ଅସିତ, ଦେବଲ, ବ୍ୟାସ ଆଦି ଆଉ ସବୁ ଋଷିମାନେ ଆପଣଙ୍କୁ ନିତ୍ୟ ଜ୍ୟୋତିର୍ମୟ ଆଦି ଦେବ, ଅଜନ୍ମା, ପାପ ପୁଣ୍ୟର ଫଳାଫଳଦାତା ( ବିଭୁ ) ପୁରୁଷ ବା ପରମେଶ୍ୱର ବୋଲି କହନ୍ତି । ପୁଣି ନିଜେ ତ ଆପଣ ମୋତେ ସେହି କଥା କହୁଛନ୍ତି । ୧୨-୧୩ ।

ବ୍ୟାଖ୍ୟା ସୂଚନା—ବିଭୁ=ସର୍ବବ୍ୟାପୀ କିମ୍ବା ଯେ ଦଣ୍ଡ ପୁରସ୍କାର ଦେଇ ପାରେ; ନିଗ୍ରହାନୁଗ୍ରହ ସମର୍ଥ । ପୁରୁଷ ଉପାସ୍ୟ ଦେବ । ପୁରୁଷ ଅର୍ଥାତ୍ ମନୁଷ୍ୟ ପରି ସଂସାର ସ୍ନେହମମତାଦି ଭାବ ଅଛି । ଉପାସ୍ୟଦେବତାର କଳ୍ପନା ଏହି ପୁରୁଷ ପରି । ସୂର୍ଯ୍ୟଦେବତା, ଜଳଦେବତାଦିର କଳ୍ପନା ମଧ୍ୟ ସେହିପରି । ୧୨-୧୩ ।

**ସର୍ବମେତଦୃତଂ ମନ୍ୟେ ଯନ୍ମାଂ ବଦସି କେଶବ ।**
**ନ ହି ତେ ଭଗବନ୍ ବ୍ୟକ୍ତିଂ ବିଦୁର୍ଦେବା ନ ଦାନବାଃ ।୧୪।**

**ଅନ୍ୱୟ**—ସ୍ପଷ୍ଟ । ୧୪ ।

**ଟୀକା**—ହେ କେଶବ, ଯତ୍ ମାଂ ବଦସି, ଏତତ୍ ସର୍ବଂ ଋତଂ [ସତ୍ୟଂ] ମନ୍ୟେ । ହେ ଭଗବନ୍, ତେ (ତବ) ବ୍ୟକ୍ତିଂ [ ପ୍ରକାଶରୂପଂ ] ନ ହି ଦେବାଃ ନ ଦାନବାଃ ବିଦୁଃ । ୧୪ ।

**ଅର୍ଥ**—ହେ କେଶବ, ଯାହା ମୋତେ କହୁଚ—ଏସବୁ ସତ, ମାନୁଚି । ହେ ଭଗବନ୍, ପ୍ରକୃତରେ ତୁମର ପ୍ରକାଶସ୍ୱରୂପକୁ ଦେବତାମାନେ ଜାଣନ୍ତି ନାଇ, କି ଦାନବମାନେ ବି ଜାଣନ୍ତି ନାଇ । ୧୪ ।

ବ୍ୟାଖ୍ୟା ସୂଚନା—ଦେବ ଓ ଦାନବଙ୍କର ସ୍ୱର୍ଗରେ ଆଧିପତ୍ୟ ଘେନି ଝଗଡ଼ାର କଥା ବେଦ ଓ ପୁରାଣାଦିରେ ଅଛି । ଦେବଙ୍କ ପରି ଦାନବ ମଧ୍ୟ ଏକ ଗଣ । ୧୪ ।

**ସ୍ୱୟମେବାତ୍ମନାତ୍ମାନଂ ବେତ୍ଥ ତ୍ୱଂ ପୁରୁଷୋତ୍ତମ ।**
**ଭୂତଭାବନ ଭୂତେଶ ଦେବଦେବ ଜଗତ୍‌ପତେ । ୧୫ ।**

**ଅନ୍ୱୟ**—ସ୍ପଷ୍ଟ । ୧୫ ।

**ଟୀକା**—ହେ ଭୂତଭାବନ (ଭୂତଜନକ), ହେ ଭୂତେଶ ( ଭୂତନାୟକ ), ହେ ଦେବଦେବ (ଶ୍ରେଷ୍ଠଦେବ), ହେ ଜଗତ୍‌ପତେ ( ଜଗତ୍‌ପାଳକ ), ହେ ପୁରୁଷୋତ୍ତମ ( ଭକ୍ତଗ୍ରାହକ, ଭାବଗ୍ରାହୀନ୍, ପରମେଶ୍ୱର ), ତ୍ୱଂ ସ୍ୱୟଂ ଏବ ଆତ୍ମନା ଆତ୍ମାନଂ ବେତ୍ଥ । ୧୫ ।

**ଅର୍ଥ**—ହେ ବିଶ୍ୱପିତା, ହେ ବିଶ୍ୱନିୟନ୍ତା, ହେ ଦେବଦେବ, ହେ ଜଗତ୍‌ପାଳକ, ହେ ଭାବଗ୍ରାହୀ ପୁରୁଷୋତ୍ତମ, ସ୍ୱୟଂ ତୁମେଇ ନିଜେ ନିଜକୁ ଜାଣ । ୧୫ ।

**ବକ୍ତୁମର୍ହସ୍ୟଶେଷେଣ ଦିବ୍ୟା ହ୍ୟାତ୍ମବିଭୂତୟଃ ।**
**ଯାଭିର୍ବିଭୂତିଭିର୍ଲୋକାନିମାଂସ୍ତ୍ୱଂ ବ୍ୟାପ୍ୟ ତିଷ୍ଠସି । ୧୬ ।**

**ଅନ୍ୱୟ**—ତ୍ୱଂ ଯାଭିଃ ବିଭୂତିଭିଃ ଇମାନ୍ ଲୋକାନ୍ ବ୍ୟାପ୍ୟ ତିଷ୍ଠସି, [ତାଃ] ଦିବ୍ୟାଃ ହି ଆତ୍ମବିଭୂତୟଃ ଅଶେଷେଣ ବକ୍ତୁଂ ଅର୍ହସି । ୧୬ ।

**ଟୀକା**—[ ତ୍ୱଦନ୍ୟଃ ଏତସ୍ୟ ବକ୍ତା କଥଂ ସମ୍ଭବତି ? ଅତଏବ ]—ଯାଭିଃ ବିଭୂତିଭିଃ (ପ୍ରକାଶଭାବୈଃ, ବିଭୁଗୁଣୈଃ) ତ୍ୱଂ ଇମାନ୍ ଲୋକାନ୍ ବ୍ୟାପ୍ୟ ତିଷ୍ଠସି, [ଯାଃ ତବ] ଦିବ୍ୟାଃ ହି (ଏବ) ଆତ୍ମବିଭୂତୟଃ, [ତାଃ] ଅଶେଷେଣ ( ସର୍ବତୋଭାବେନ ) ବକ୍ତୁଂ ଅର୍ହସି । ୧୬ ।

**ଅର୍ଥ**—[ତୁମ ଛଡ଼ା ଏସବୁ ଆଉ କେହି କହିବାକୁ ନାହିଁ—ଅତଏବ] ଯେଉଁ ବିଶ୍ୱପ୍ରକାଶ ରୂପରେ ( ବିଭୂତିରେ ) ତୁମେ ଏ ଜଗତ୍‌ସାରା ବ୍ୟାପି ରହିଛ, ଯାହାସବୁ ତୁମର ଦିବ୍ୟ ଆତ୍ମବିଭୂତି, ତାହାସବୁ ପୂରାପୂରି ଟିକିଏ ବାକି ନ ରଖି ମୋତେ କହିବାକୁ ହେବ । ୧୬ ।

**କଥଂ ବିଦ୍ୟାମହଂ ଯୋଗିଂସ୍ତ୍ୱାଂ ସଦା ପରିଚିନ୍ତୟନ୍ ।**
**କେଷୁ କେଷୁ ଚ ଭାବେଷୁ ଚିନ୍ତ୍ୟୋଽସି ଭଗବନ୍ ମୟା ॥୧୭॥**

**ଅନ୍ୱୟ**—ସ୍ପଷ୍ଟ । ୧୭ ।

**ଟୀକା**—ହେ ଯୋଗିନ୍, କଥଂ (କେନରୂପେଣ) ସଦା ପରିଚିନ୍ତୟନ୍ ଅହଂ ତ୍ୱାଂ ବିଦ୍ୟାଂ (ଜାନୀୟାଂ); ହେ ଭଗବନ୍, କେଷୁ କେଷୁ ଭାବେଷୁ ଚ ମୟା ଚିନ୍ତ୍ୟଃ ଅସି । ୧୭ ।

**ଅର୍ଥ**—ହେ ଯୋଗି (ବିଶ୍ୱକର୍ମମୟ) [ସେଥିରୁ ମୁଁ ବୁଝି ପାରିବି] କି ରୂପରେ ଭାବିଲେ ମୁଁ ତୁମକୁ ଜାଣି ପାରିବି; ହେ ଭଗବନ୍, କି କି ଭାବରେ ତୁମକୁ ମୁଁ ଚିନ୍ତା କରି ପାରିବି [ତାହା ବି ଜାଣିଯିବି] । ୧୭ ।

ବ୍ୟାଖ୍ୟା ସୂଚନା—ଯୋଗୀ—ଯୋଗ ଯାହାର ଅଛି । ୭. ୨୫ ଟୀକା ଦେଖ । ୧୭ ।

**ବିସ୍ତରେଣାତ୍ମନୋ ଯୋଗଂ ବିଭୂତିଂ ଚ ଜନାର୍ଦ୍ଦନ ।**
**ଭୂୟଃ କଥୟ ତୃପ୍ତିର୍ହି ଶୃଣ୍ୱତୋ ନାସ୍ତି ମେଽମୃତମ୍ ॥୧୮॥**

**ଅନ୍ୱୟ**—ସ୍ପଷ୍ଟ । ୧୮ ।

**ଟୀକା**—ହେ ଜନାର୍ଦ୍ଦନ, ଭୂୟଃ ଆତ୍ମନଃ ଯୋଗଂ (ବିଶ୍ୱବିସ୍ତାରଯୁକ୍ତିଂ ଶୈଳୀଂ ବା) ବିଭୂତିଂ (ବିସ୍ତାରଂ ଐଶ୍ୱର୍ଯ୍ୟଂ) ଚ ବିସ୍ତାରେଣ (ସବିଶେଷେଣ) କଥୟ । ହି (ଯତଃ) [ଏତତ୍] ଅମୃତଂ ଶୃଣ୍ୱତଃ ମେ (ମମ) ତୃପ୍ତିଃ [ସନ୍ତୋଷାଦ୍ ବିରାଗଃ] ନ ଅସ୍ତି । ୧୮ ।

**ଅର୍ଥ**—ହେ ଜନାର୍ଦ୍ଦନ, ପୁଣି ଆପଣାର ଯୋଗ (ବିଶ୍ୱବିକାଶପ୍ରଣାଳୀ ବା ପ୍ରକାର) ଓ ବିଶ୍ୱବିକାଶ ରୂପ (ବିଭୂତି) ବିଶେଷ କରି କହ । କାହିଁକି ନା ଏ ଅମୃତ ଶୁଣି ମୋର ତୃପ୍ତି ହେଉନାହିଁ । ୧୮ ।

ବ୍ୟାଖ୍ୟା ସୂଚନା—୧୦. ୧୬; ୭. ୨୫ ଟୀକା ଦେଖ । ୭ମ ଓ ୯ମ ଅଧ୍ୟାୟରେ କହିଥିବାରୁ ପୁଣି କହ ବୋଲି ଏଠାରେ କହୁଛନ୍ତି । ଏହି ଅଧ୍ୟାୟ ପ୍ରବେଶର ଶେଷ ଦେଖ । ୧୮ ।

ଶ୍ରୀ ଭଗବାନୁବାଚ

**ହନ୍ତ ତେ କଥୟିଷ୍ୟାମି ଦିବ୍ୟା ହ୍ୟାତ୍ମବିଭୂତୟଃ ।**
**ପ୍ରାଧାନ୍ୟତଃ କୁରୁଶ୍ରେଷ୍ଠ ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ ।୧୯।**

**ଅନ୍ୱୟ**—ସ୍ପଷ୍ଟ । ୧୯ ।

**ଟୀକା**—ଶ୍ରୀ ଭଗବାନ୍ ଉବାଚ—ହନ୍ତ (ଅବ୍ୟୟଂ—ସ୍ନେହାନୁକମ୍ପାୟାଂ) ହେ କୁରୁଶ୍ରେଷ୍ଠ, ପ୍ରାଧାନ୍ୟତଃ ( ଯଜ୍ଞାର୍ଥାଃ କତିଚିତ୍ ପ୍ରଧାନାଃ ଆତ୍ମବିଭୂତୟଃ) ତେ (ତୁଭ୍ୟଂ) କଥୟିଷ୍ୟାମି । ହି (ଯତଃ) ବିସ୍ତରସ୍ୟ ମେ (ମମ) [ବିଭୂତୀନାଂ] ଅନ୍ତଃ (ଶେଷଃ) ନ ଅସ୍ତି । ୧୯ ।

**ଅର୍ଥ**—ଶ୍ରୀ ଭଗବାନ୍ କହିଲେ—ହଉ ତେବେ, ହେ କୁରୁଶ୍ରେଷ୍ଠ, ଠିକେ ଠିକେ ମୋ ନିଜ ଦିବ୍ୟ ବିଭୂତି କେତେକ ତତେ କହିବି । କାହିଁକି ନା, ବହୁତ କରି କହି ବସିଲେ ମୋ ବିଭୂତିର ତ ଅନ୍ତ ନାହିଁ । ୧୯ ।

**ଅହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟସ୍ଥିତଃ ।**
**ଅହମାଦିଶ୍ଚ ମଧ୍ୟଞ୍ଚ ଭୂତାନାମନ୍ତ ଏବ ଚ । ୨୦ ।**

**ଅନ୍ୱୟ**—ସ୍ପଷ୍ଟ । ୨୦ ।

**ଟୀକା**—[ତନ୍ନ ପ୍ରଥମମେବ ତାବତ୍ ଶୃଣୁ]—ହେ ଗୁଡ଼ାକେଶ, ଅହଂ ସର୍ବଭୂତାଶୟସ୍ଥିତଃ (ସର୍ବଭୂତାନାଂ ହୃଦୟସ୍ଥଃ) ଆତ୍ମା; ଅହଂ ଏବ ଭୂତାନାଂ ଆଦିଃ ଚ ମଧ୍ୟଂ ଚ ଅନ୍ତଃ ଚ । ୨୦ ।

**ଅର୍ଥ**—[ତେବେ ପହିଲରୁ ଆଗ ଭଲ କରି ଶୁଣ]—ହେ ଗୁଡ଼ାକେଶ, ସବୁ ପ୍ରାଣୀଙ୍କ ହୃଦୟରେ ଥିବା ଆତ୍ମା ମୁହିଁ ହେଉଚି ପ୍ରାଣୀଙ୍କର ଜନ୍ମ, ଜୀବନ ଓ ମରଣ । ୨୦ ।

ବ୍ୟାଖ୍ୟା ସୂଚନା—ଭୂତ ବୋଇଲେ ସୃଷ୍ଟ ବସ୍ତୁମାତ୍ରେ ଅର୍ଥ କଲେ, ବୁଝିବାକୁ ହେବ—ସବୁ ବସ୍ତୁରେ ଅଧ୍ୟାତ୍ମରୂପେ ମୁହିଁ ଅଛି; ସବୁ ବସ୍ତୁର ସୃଷ୍ଟି, ସ୍ଥିତି ଓ ନାଶ ମୁହିଁ । ମାତ୍ର ପରେ ୧୦.୩୨ ଦେଖ । ସେଥିପାଇଁ ଏଠାରେ ଭୂତ= ଚେତନ ବସ୍ତୁ ବା ପ୍ରାଣୀ । ୨୦ ।

**ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍ ।**
**ମରୀଚିର୍ମରୁତାମସ୍ମି ନକ୍ଷତ୍ରାଣାମହଂ ଶଶୀ ୨୧ ।**

**ଅନ୍ୱୟ**—ସ୍ପଷ୍ଟ । ୨୧ ।

**ଟୀକା**—[ ଏବଂ ଚ ଧ୍ୟେୟଃ ଅହମିତି ବକ୍ତୁମାରଭତେ ]—ଅହଂ ଆଦିତ୍ୟାନାଂ (ମାସାଧିପତୀନାଂ) ବିଷ୍ଣୁଃ, ଜ୍ୟୋତିଷାଂ (ଦ୍ୟୋତମାନାନାଂ) ଅଂଶୁମାନ (ଉଦ୍‌ଗତକିରଣଃ) ରବିଃ (ସୂର୍ଯ୍ୟଃ) ମରୁତାଂ (ବାୟୂନାଂ) ମରୀଚିଃ (ତନ୍ନାମା ଶ୍ରେଷ୍ଠୋ ମରୁତ୍ ) ଅସ୍ମି । ଅହଂ ନକ୍ଷତ୍ରାଣାଂ ( ରାତ୍ରିଜ୍ୟୋତିଷାଂ ) ଶଶୀ ( ଚନ୍ଦ୍ରଃ ) [ ଅସ୍ମି ] । ୨୧ ।

**ଅର୍ଥ**—[ ଏହିପରି ମୋତେ ଭିନ୍ନ ଭିନ୍ନ ବସ୍ତୁରେ ଧ୍ୟାନ କରିବୁ ବୋଲି କହି ଯାଉଛନ୍ତି]—ମୁଁ ହେଉଛି ବାରମାସାଧିପତି ଆଦିତ୍ୟମାନଙ୍କ ଭିତରେ ଶ୍ରେଷ୍ଠ ବିଷ୍ଣୁନାମା ଆଦିତ୍ୟ । ଜ୍ୟୋତିମନ୍ତମାନଙ୍କ ଭିତରେ ଅଂଶୁମାନ୍ ସୂର୍ଯ୍ୟ । ୪୯ ବାୟୁଙ୍କ ଭିତରେ ଶ୍ରେଷ୍ଠ ମରୀଚିନାମା ମରୁତ୍ । ରାତ୍ରିର ଜ୍ୟୋତିଷ୍କ (ନକ୍ଷତ୍ର) ମାନଙ୍କ ଭିତରେ ମୁଁ ହେଉଛି ଚନ୍ଦ୍ରମା । ୨୧ ।

**ବେଦାନାଂ ସାମବେଦୋଽସ୍ମି ଦେବାନାମସ୍ମି ବାସବଃ**
**ଇନ୍ଦ୍ରିୟାଣାଂ ମନଶ୍ଚାସ୍ମି ଭୂତାନାମସ୍ମି ଚେତନା । ୨୨ ।**

**ଅନ୍ୱୟ**—ସ୍ପଷ୍ଟ । ୨୨ ।

**ଟୀକା**—[ଇତି ଆରଭ୍ୟ ଅଷ୍ଟତ୍ରିଂଶତ୍ ଶ୍ଳୋକପର୍ଯ୍ୟନ୍ତଂ "ଏବଂ ଧ୍ୟେୟଃ ସର୍ବେଷାଂ ପ୍ରଧାନଃ ଅସ୍ମି, କୁତ୍ରଚିଦ୍‌ବା ଗୁଣବତାଂ ତେଷାଂ ଗୁଣରୂପଂ କାରଣଂ ଅସ୍ମି"—ଇତି ଆତ୍ମବିଭୂତୟଃ କଥୟିତୁମାରେଭେ[—[ଅହଂ] ବେଦାନାଂ [ ମଧ୍ୟେ ଭକ୍ତାନାଂ ଶ୍ରେଷ୍ଠଃ ] ସାମବେଦଃ ଅସ୍ମି, ଦେବାନାଂ ବାସବଃ (ଇନ୍ଦ୍ରଃ) ଅସ୍ମି, [ସମନସ୍କାନାଂ ଏକାଦଶାନାଂ] ଇନ୍ଦ୍ରିୟାଣାଂ ମନଃ ଚ ଅସ୍ମି, ଭୂତାନାଂ ଚେତନା (ଜ୍ଞାନଶକ୍ତିଃ, ବିଷୟସ୍ପର୍ଶବୃତ୍ତିଃ) ଅସ୍ମି । ୨୨ ।

**ଅର୍ଥ**—ଏହିଠାରୁ ୩୮ଶ ଶ୍ଳୋକ ପର୍ଯ୍ୟନ୍ତ "ଏହିପରି ସବୁର ପ୍ରଧାନ ରୂପରେ ମୋତେ ଧ୍ୟାନ କରିବାକୁ ହେବ ବୋଲି—କାହିଁରେ ବା ବସ୍ତୁର ଗୁଣ ବା ଶକ୍ତି ବୋଲି"—ଆତ୍ମବିଭୂତି ଭଗବାନ୍ କହିବାକୁ ଆରମ୍ଭ କରୁଛନ୍ତି]—ବେଦମାନଙ୍କରେ [ଭକ୍ତରେ ଯାହାକୁ ଗାନ କରନ୍ତି, ସେ] ମୁଁ ସାମବେଦ, ଦେବତାଙ୍କ ଭିତରେ ମୁଁ ଇନ୍ଦ୍ର; [ମନ, ପାଞ୍ଚ ବୁଦ୍ଧି-ଇନ୍ଦ୍ରିୟ ଓ ପାଞ୍ଚ କର୍ମ-ଇନ୍ଦ୍ରିୟ ଏହିପରି ଏଗାର] ଇନ୍ଦ୍ରିୟ ଭିତରେ ମୁଁ ମନ; ପ୍ରାଣୀମାନଙ୍କ ଭିତରେ ଚେତନା ବା ବିଷୟସ୍ପର୍ଶଶକ୍ତି ମୁଁ । ୨୨ ।

ବ୍ୟାଖ୍ୟା ସୂଚନା—ଋଗ୍‌ବେଦର ଗାନଯୋଗ୍ୟ ମନ୍ତ୍ର ସବୁ ସାମବେଦରେ ଅଛି । ତେଣୁ ସାମବେଦର ପ୍ରସିଦ୍ଧି । ୨୨ ।

**ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି ବିତ୍ତେଶୋ ଯକ୍ଷରକ୍ଷସାମ୍ ।**
**ବସୂନାଂ ପାବକଶ୍ଚାସ୍ମି ମେରୁଃ ଶିଖରିଣାମହମ୍ ।୨୩।**

**ଅନ୍ୱୟ**—ସ୍ପଷ୍ଟ । ୨୩ ।

**ଟୀକା**—[ଏକାଦଶାନାଂ] ରୁଦ୍ରାଣାଂ [ମଧ୍ୟେ] ଶଙ୍କରଃ ଶ୍ରେଷ୍ଠରୁଦ୍ରଃ ଚ ଅସ୍ମି । ଯକ୍ଷରକ୍ଷସାଂ (ଯକ୍ଷାଃ—ଧନରକ୍ଷକାଃ, ରକ୍ଷାଂସି ଇନ୍ଦ୍ରିୟସୁଖସେବିନଃ ରାକ୍ଷସାଃ ଚ, ତେଷାଂ) ବିତ୍ତେଶଃ (ଧନପତିଃ, କୁବେରଃ) ଅସ୍ମି । [ଅଷ୍ଟାନାଂ] ବସୂନାଂ ପାବକଃ (ଶ୍ରେଷ୍ଠବସୁଃ) ଚ ଅସ୍ମି । ଶିଖରିଣାଂ (ପର୍ବତାନାଂ) ଅହଂ ମେରୁଃ [ଅସ୍ମି] । ୨୩ ।

**ଅର୍ଥ**—ପୁଣି ଏକାଦଶ ରୁଦ୍ରଙ୍କ ଭିତରେ ଶଙ୍କର ମୁଁ, ଯକ୍ଷ ରାକ୍ଷସଙ୍କ ଭିତରେ ଧନପତି କୁବେର ମୁଁ, ଅଷ୍ଟବସୁଙ୍କ ଭିତରେ ପାବକ ମୁଁ । ପର୍ବତଙ୍କ ଭିତରେ ମେରୁ ମୁଁ । ୨୩ ।

ବ୍ୟାଖ୍ୟା ସୂଚନା—ଯକ୍ଷ = ଯେ ଧନ ଜଗିଥାନ୍ତି । ରାକ୍ଷସ = ଯେ ଆପଣା ସୁଖପାଇଁ ସବୁ କରନ୍ତି । ଯକ୍ଷ ଓ ରାକ୍ଷସ ବୋଲି ଦୁଇଟି ଗଣ ଅଛନ୍ତି । ୨୩ ।

**ପୁରୋଧସାଂ ଚ ମୁଖ୍ୟଂ ମାଂ ବିଦ୍ଧି ପାର୍ଥ ବୃହସ୍ପତିମ୍ ।**
**ସେନାନୀନାମହଂ ସ୍କନ୍ଦଃ ସରସାମସ୍ମି ସାଗରଃ ।୨୪।**

**ଅନ୍ୱୟ**—ସ୍ପଷ୍ଟ । ୨୪ ।

**ଟୀକା**—ହେ ପାର୍ଥ, ପୁରୋଧସାଂ (ପୁରୋହିତାନାଂ) ଚ ମୁଖ୍ୟଂ (ଶ୍ରେଷ୍ଠଂ) ବୃହସ୍ପତିଂ (ଦେବପୁରୋହିତଂ, ଦେବଗୁରୁଂ) ମାଂ ବିଦ୍ଧି । ସେନାନୀନାଂ (ସେନାପତୀନାଂ) ଅହଂ ସ୍କନ୍ଦଃ (କାର୍ତ୍ତିକେୟଃ, ତାରକାସୁରବଧେ ଦେବସେନାପତିଃ) । ସରସାଂ (ଜଳାଶୟାନାଂ) ସାଗରଃ (ସମୁଦ୍ରଃ) ଅସ୍ମି । ୨୪ ।

**ଅର୍ଥ**—ହେ ପାର୍ଥ, ପୁଣି ପୁରୋହିତଙ୍କ ଭିତରେ ପ୍ରଧାନ ଦେବଗୁରୁ ବୃହସ୍ପତି ବୋଲି ମତେ ଜାଣ । ସେନାପତିଙ୍କ ଭିତରେ [ତାରକାସୁର ସହିତ ଯୁଦ୍ଧରେ ଦେବସେନାପତି] କାର୍ତ୍ତିକେୟ ମୁହିଁ । ଜଳାଶୟମାନଙ୍କରେ ସାଗର ମୁହିଁ । ୨୪ ।

**ମହର୍ଷୀଣାଂ ଭୃଗୁରହଂ ଗିରାମସ୍ମ୍ୟେକମକ୍ଷରମ୍ ।**
**ଯଜ୍ଞାନାଂ ଜପଯଜ୍ଞୋଽସ୍ମି ସ୍ଥାବରାଣାଂ ହିମାଳୟଃ । ୨୫ ।**

**ଅନ୍ୱୟ**—ସ୍ପଷ୍ଟ । ୨୫ ।

**ଟୀକା**— ମହର୍ଷୀଣାଂ ଅହଂ ଭୃଗୁଃ, ଗିରାଂ (ବଚନାନାଂ) ଏକଂ ଅକ୍ଷରଂ ଓଁକାର ଇତ୍ୟର୍ଥଃ) ଅସ୍ମି, ଯଜ୍ଞାନାଂ ଜପଯଜ୍ଞଃ (ଧ୍ୟାନାଭ୍ୟାସଯଜ୍ଞଃ) ଅସ୍ମି, ସ୍ଥାବରାଣାଂ (ଅଚଳାନାଂ) ହିମାଳୟଃ [ଅସ୍ମି] । ୨୫ ।

**ଅର୍ଥ**— ମହର୍ଷିଙ୍କ ଭିତରେ ଶ୍ରେଷ୍ଠ ଭୃଗୁ ମୁଁ, ବଚନମାନଙ୍କରେ ହେଉଛୁ ଏକାକ୍ଷର (ଓଁକାର) ମୁଁ, ଯଜ୍ଞମାନଙ୍କରେ ଧ୍ୟାନ ଅଭ୍ୟାସର ସାଧନ ଜପଯଜ୍ଞ ମୁଁ, ସ୍ଥିର ବସ୍ତୁମାନଙ୍କରେ ହେଉଛି ହିମାଳୟ ପର୍ବତ ମୁହିଁ । ୨୫ ।

**ଅଶ୍ୱତ୍ଥଃ ସର୍ବବୃକ୍ଷାଣାଂ ଦେବର୍ଷୀଣାଂ ଚ ନାରଦଃ ।**
**ଗନ୍ଧର୍ବାଣାଂ ଚିତ୍ରରଥଃ ସିଦ୍ଧାନାଂ କପିଳୋ ମୁନିଃ । ୨୬ ।**

**ଅନ୍ୱୟ**— ସ୍ପଷ୍ଟ । ୨୬ ।

**ଟୀକା**— ସର୍ବବୃକ୍ଷାଣାଂ ଅଶ୍ୱତ୍ଥଃ (ପିପ୍ପଳଃ), ଦେବର୍ଷୀଣାଂ ଚ ନାରଦଃ, ଗନ୍ଧର୍ବାଣାଂ ଚିତ୍ରରଥଃ (ଗନ୍ଧର୍ବରାଜଃ), ସିଦ୍ଧାନାଂ (ସିଦ୍ଧପୁରୁଷାଣାଂ) [ସାଂଖ୍ୟପ୍ରବର୍ତ୍ତକଃ] କପିଳଃ ମୁନିଃ [ଅହମେବ] । ୨୬ ।

**ଅର୍ଥ**— ଗଛମାନଙ୍କରେ ପବିତ୍ର ଅଶ୍ୱତ୍ଥ ଗଛ, ଦେବର୍ଷିମାନଙ୍କ ଭିତରେ ନାରଦ, ଗନ୍ଧର୍ବଙ୍କ ଭିତରେ ଗନ୍ଧର୍ବରାଜ ଚିତ୍ରରଥ ଓ ସିଦ୍ଧପୁରୁଷମାନଙ୍କ ଭିତରେ ସାଂଖ୍ୟ-ପ୍ରବର୍ତ୍ତକ କପିଳ ମୁନି ମୁହିଁ । ୨୬ ।

**ଉଚ୍ଚୈଃଶ୍ରବସମଶ୍ୱାନାଂ ବିଦ୍ଧି ମାମମୃତୋଦ୍ଭବମ୍ ।**
**ଐରାବତଂ ଗଜେନ୍ଦ୍ରାଣାଂ ନରାଣାଞ୍ଚ ନରାଧିପମ୍ ।୨୭।**

**ଅନ୍ୱୟ**— ସ୍ପଷ୍ଟ । ୨୭ ।

**ଟୀକା**— ଅଶ୍ୱାନାଂ ଅମୃତୋଦ୍ଭବଂ (ଅମୃତାର୍ଥଂ କ୍ଷୀରୋଦଧିମନ୍ଥନାତ୍ ଉଦ୍ଭୂତଂ) ଉଚ୍ଚୈଃଶ୍ରବସଂ (ଇନ୍ଦ୍ରାଶ୍ୱଂ) [ତଥା] ଗଜେନ୍ଦ୍ରାଣାଂ [ ଚ ତଥାଭୂତଂ] ଐରାବତଂ (ଇନ୍ଦ୍ରଗଜଂ) ନରାଣାଂ ଚ ନରାଧିପଂ (ନୃପତିଂ) ମାଂ ବିଦ୍ଧି । ୨୭ ।

**ଆୟୁଧାନାମହଂ ବଜ୍ରଂ ଧେନୂନାମସ୍ମି କାମଧୁକ୍ ।**
**ପ୍ରଜନଶ୍ଚାସ୍ମି କନ୍ଦର୍ପଃ ସର୍ପାଣାମସ୍ମି ବାସୁକିଃ । ୨୮ ।**

**ଅନ୍ୱୟ**— ସ୍ପଷ୍ଟ । ୨୮ ।

**ଟୀକା**—ଆୟୁଧାନାଂ ଅହଂ ବଜ୍ରଂ (ଇନ୍ଦ୍ରାସ୍ତ୍ରଂ), ଧେନୂନାଂ (ଗବାଂ) କାମଧୁକ୍ (ବଶିଷ୍ଠସ୍ୟ ଧେନୁଃ—ଯତ୍ର କାମ୍ୟତେ ତସ୍ୟାଃ ତଦ୍ ଦୁହ୍ୟତେ-ଇତି କାମଧୁକ୍) ଅସ୍ମି । [କାମାନାଂ] ପ୍ରଜନଃ (ପ୍ରଜାହେତୁଃ) କନ୍ଦର୍ପଃ (ସଂଗମାତ୍ମକଃ—କାମଃ କାମଦେବୋ ବା ) ଅସ୍ମି । ସର୍ପାଣାଂ ବାସୁକିଃ ଅସ୍ମି । ୨୮ ।

**ଅର୍ଥ**—ହତିଆରଙ୍କ ଭିତରେ ମୁଁ ବଜ୍ର । ଗାଈଙ୍କ ଭିତରେ ହେଉଚି କାମଦୁଘା ସୁରଭି । ଅଭିଳାଷଯାକରେ ହେଉଚି, ସନ୍ତାନହେତୁ କନ୍ଦର୍ପ ବା କାମଦେବ ( କିମ୍ବା ସନ୍ତାନମାତ୍ରାର୍ଥ ସ୍ତ୍ରୀ ପୁରୁଷ ସଙ୍ଗର ଅଭିଳାଷ ), ସାପଙ୍କ ଭିତରେ ହେଉଚି, ବାସୁକି । ୨୮ ।

**ଅନନ୍ତଶ୍ଚାସ୍ମି ନାଗାନାଂ ବରୁଣୋ ଯାଦସାମହମ୍ ।**
**ପିତୃଣାମର୍ଯ୍ୟମା ଚାସ୍ମି ଯମଃ ସଂଯମତାମହମ୍ । ୨୯ ।**

**ଅନ୍ୱୟ**—ସ୍ପଷ୍ଟ । ୨୯ ।

**ଟୀକା**—ନାଗାନାଂ ଚ ଅନନ୍ତଃ (ବାସୁକିଭ୍ରାତା, ବିଷ୍ଣୋଃ ଶଯ୍ୟାଭୂତଃ) ଅସ୍ମି । ଯାଦସାଂ ଜଳଜନ୍ତୂନାଂ ଅହଂ ବରୁଣଃ (ଜଳାଧିପଃ) । ପିତୃଣାଂ ଚ ଅର୍ଯ୍ୟମା (ପିତୃଣାଂ ଅଧିପତିଃ) ଅସ୍ମି । ସଂଯମତାଂ (ନିଗ୍ରହଂ କୁର୍ବତାଂ) ଯମଃ (ମୃତ୍ୟୁଦେବଃ) (ଅହମ୍) । ୨୯ ।

**ଅର୍ଥ**—ପୁଣି ନାଗଙ୍କ ଭିତରେ ହେଉଚି [ବିଷ୍ଣୁଙ୍କ ଶଯ୍ୟା, ବାସୁକି ଭ୍ରାତା] ଅନନ୍ତ । ଜଳଜନ୍ତୁଙ୍କ ଭିତରେ ମୁଁ ଜଳଦେବତା ବରୁଣ । ପିତୃଙ୍କ ଭିତରେ ହେଉଚି ପିତୃଙ୍କ ଅଧିପତି ଅର୍ଯ୍ୟମା । ସବୁ କଠୋର ନିୟମରେ ପକାଇବା ବାଲଙ୍କ ଭିତରେ ମୁଁ ଯମ ଦେବତା । ୨୯ ।

**ପ୍ରହ୍ଲାଦଶ୍ଚାସ୍ମି ଦୈତ୍ୟାନାଂ କାଳଃ କଳୟତାମହମ୍ ।**
**ମୃଗାଣାଂ ଚ ମୃଗେନ୍ଦ୍ରୋଽହଂ ବୈନତେୟଶ୍ଚ ପକ୍ଷିଣାମ୍ ।୩୦।**

**ଅନ୍ୱୟ**—ସ୍ପଷ୍ଟ । ୩୦ ।

**ଟୀକା**—ଦୈତ୍ୟାନାଂ ଚ ପ୍ରହ୍ଲାଦଃ ଅସ୍ମି । କଳୟତାଂ (ମାପୟିତୃଣାଂ) ଅହଂ କାଳଃ । ମୃଗାଣାଂ (ପଶୂନାଂ) ଚ ଅହଂ ମୃଗେନ୍ଦ୍ରଃ (ସିଂହଃ) । ପକ୍ଷିଣାଂ ଚ ବୈନତେୟଃ (ବିନତାପୁତ୍ରଃ ଗରୁଡ଼ଃ) । ୩୦ ।

**ଅର୍ଥ**—ପୁଣି ଦୈତ୍ୟଙ୍କ ଭିତରେ ହେଉଚି ପ୍ରହ୍ଲାଦ । ମାପିବାବାଲଙ୍କ ଭିତରେ ମୁଁ ପୁଣି କାଳ ବା ସମୟ । ପଶୁଙ୍କ ଭିତରେ ସିଂହ ଓ ପକ୍ଷୀଙ୍କ ଭିତରେ ଗରୁଡ଼ ମୁଁ । ୩୦ ।

ପବନଃ ପବତାମସ୍ମି ରାମଃ ଶସ୍ତ୍ରଭୃତାମହମ୍ ।
ଝଷାଣାଂ ମକରଶ୍ଚାସ୍ମି ସ୍ରୋତସାମସ୍ମି ଜାହ୍ନବୀ । ୩୧ ।

ଅନ୍ୱୟ—ସ୍ପଷ୍ଟ । ୩୧ ।

ଟୀକା—ପବତାଂ (ଶୁଦ୍ଧିକରାଣାଂ) ପବନଃ ଅସ୍ମି । ଶସ୍ତ୍ରଭୃତାଂ (ଶସ୍ତ୍ର-ଧାରଣାଂ) ରାମ ଅହଂ ଝଷାଣାଂ (ମତ୍ସ୍ୟାନାଂ) ମକରଃ (ଗ୍ରାହଃ, ବୃହତ୍ ସମୁଦ୍ରକୁମ୍ଭୀରଃ) ଅସ୍ମି । ସ୍ରୋତସାଂ (ଜଳପ୍ରବାହାନାଂ) ଜାହ୍ନବୀ (ଗଙ୍ଗା) ଅସ୍ମି । ୩୧ ।

ଅର୍ଥ—ଶୁଦ୍ଧ ଓ ସଫା କରିବାବାଲାଙ୍କ ଭିତରେ ମୁଁ ହେଉଚି ପବନ; ଶସ୍ତ୍ରଧାରୀଙ୍କ ଭିତରେ ମୁଁ ରାମ । ମାଛ ଭଳି ଜୀବଙ୍କ ଭିତରେ ହେଉଚି ମଗର (ସମୁଦ୍ର କୁମ୍ଭୀର); ସ୍ରୋତମାନଙ୍କ ଭିତରେ ମୁଁ ହେଉଚି ଗଙ୍ଗାନଦୀ । ୩୧ ।

ସର୍ଗାଣାମାଦିରନ୍ତଶ୍ଚ ମଧ୍ୟଂ ଚୈବାହମର୍ଜୁନ ।
ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ ବାଦଃ ପ୍ରବଦତାମହମ୍ । ୩୨ ।

ଅନ୍ୱୟ—ସ୍ପଷ୍ଟ । ୩୨ ।

ଟୀକା—ହେ ଅର୍ଜୁନ, ସର୍ଗାଣାଂ—(ସୃଷ୍ଟୀନାଂ) ଆଦିଃ, ଅନ୍ତଃ ଚ ମଧ୍ୟଂ ଚ ଏବ ଅହମ୍ । ବିଦ୍ୟାନାଂ ଅଧ୍ୟାତ୍ମବିଦ୍ୟା (ତତ୍ତ୍ୱବିଦ୍ୟା); [ତଥା] ପ୍ରବଦତାଂ (ଯୁକ୍ତି-ବାଦିନାଂ) ବାଦଃ (ଯୁକ୍ତିଃ) ଅହମ୍ । ୩୨ ।

ଅର୍ଥ—ହେ ଅର୍ଜୁନ, ଯେତେ ସୃଷ୍ଟି ଅଛି, ସବୁର ଆଦି, ଅନ୍ତ ଓ ମଧ୍ୟ ମୁହିଁ —୧୦. ୨୦ ଦେଖ । ବିଦ୍ୟାମାନଙ୍କରେ ବସ୍ତୁ-ତତ୍ତ୍ୱ-ବିଦ୍ୟା ଓ ତର୍କ କରିବା ଲୋକଙ୍କର ଯୁକ୍ତି ମୁହିଁ । ୩୨ ।

ଅକ୍ଷରାଣାମକାରୋଽସ୍ମି ଦ୍ୱନ୍ଦ୍ୱଃ ସାମାସିକସ୍ୟ ଚ ।
ଅହମେବାକ୍ଷୟଃ କାଲୋ ଧାତାଽହଂ ବିଶ୍ୱତୋମୁଖଃ ।୩୩।

ଅନ୍ୱୟ—ସ୍ପଷ୍ଟ । ୩୩ ।

ଟୀକା—ଅକ୍ଷରାଣାଂ ଅକାରଃ ଅସ୍ମି, ସାମାସିକସ୍ୟ (ସମାସସମୂହସ୍ୟ, ଚ [ସର୍ବପଦ-ପ୍ରଧାନଃ] ଦ୍ୱନ୍ଦ୍ୱଃ । ଅକ୍ଷୟଃ (ନିତ୍ୟପ୍ରବାହରୂପଃ ଅନନ୍ତଃ) କାଲଃ ଅହଂ ଏବ; ବିଶ୍ୱତୋମୁଖଃ (ସର୍ବତଃ ପ୍ରଜ୍ଞ ଶମାନଃ) ଧାତା (ସ୍ରଷ୍ଟା) ଅହମ୍ । ୩୩ ।

ଅର୍ଥ—ଅକ୍ଷରମାନଙ୍କରେ ହେଉଚି ପହିଲି ଅକ୍ଷର ଅକାର ଓ ସମାସମାନଙ୍କରେ [ଦୁଇ ବା ସର୍ବପଦ ପ୍ରଧାନ] ଦ୍ୱନ୍ଦ୍ୱ ସମାସ । ମୁହିଁ ଏକ ଅସରନ୍ତି କାଳ । ମୁହିଁ ସବୁମନ୍ତେ ସବୁଆଡ଼େ ବିରାଜିତ ସର୍ବକର୍ତ୍ତା ବିଧାତା । ୩୩ ।

**ମୃତ୍ୟୁଃ ସର୍ବହରଶ୍ଚାହମୁଦ୍‌ଭବଶ୍ଚ ଭବିଷ୍ୟତାମ୍ ।**
**କୀର୍ତ୍ତିଃ ଶ୍ରୀର୍ବାକ୍ ଚ ନାରୀଣାଂ ସ୍ମୃତିର୍ମେଧା ଧୃତିଃ କ୍ଷମା ।୩୪।**

**ଅନ୍ୱୟ**—ସ୍ପଷ୍ଟ । ୩୪ ।

**ଟୀକା**—ସର୍ବହରଃ (ସର୍ବସଂହାରକଃ) ମୃତ୍ୟୁଃ ଚ ଅହଂ; ଭବିଷ୍ୟତାଂ (ଅନାଗତାନାଂ) ଉଦ୍ଭବଃ (ଆବିର୍ଭାବଃ) ଚ [ଅହଂ]; ନାରୀଣାଂ (ସ୍ତ୍ରୀବାଚକଗୁଣାନାଂ ଇତ୍ୟର୍ଥଃ) କୀର୍ତ୍ତିଃ, ଶ୍ରୀଃ (ଶୋଭା) ବାକ୍, ସ୍ମୃତିଃ, ମେଧା (ବୁଦ୍ଧିଃ) ଧୃତିଃ (ଧାରଣା) କ୍ଷମା ଚ । ୩୪ ।

**ଅର୍ଥ**—ସବୁ ଗୋଟାଇ ନେଉ ଯାଉଚ ଯେ ମୃତ୍ୟୁ, ସେ ବି ମୁହିଁ; ପରେ ଯେ ହେବ, ତାର ପ୍ରକାଶ ବି ମୁହିଁ । ସ୍ତ୍ରୀବାଚକ ଗୁଣ ଭିତରେ କୀର୍ତ୍ତି, ଶୋଭା, ବାକ୍ (ବାଣୀ), ସ୍ମୃତି, ବୁଦ୍ଧି, ଧାରଣା ଓ କ୍ଷମା ମୁହିଁ । ୩୪ ।

ବ୍ୟାଖ୍ୟା ସୂଚନା—କୀର୍ତ୍ତି ପ୍ରଭୃତି ସଂସ୍କୃତରେ ସ୍ତ୍ରୀଲିଙ୍ଗ ଶବ୍ଦ । ପୁଣି ଏମାନେ ଗୋଟିଏ ଗୋଟିଏ ଦେବୀ ଓ ଦକ୍ଷ ପ୍ରଜାପତିଙ୍କ କନ୍ୟା ବୋଲି ପୁରାଣରେ ଅଛି । ୩୪ ।

**ବୃହତ୍ ସାମ ତଥା ସାମ୍ନାଂ ଗାୟତ୍ରୀ ଛନ୍ଦସାମହମ୍ ।**
**ମାସାନାଂ ମାର୍ଗଶୀର୍ଷୋଽହମୃତୂନାଂ କୁସୁମାକରଃ । ୩୫ ।**

**ଅନ୍ୱୟ**—ସ୍ପଷ୍ଟ । ୩୫ ।

**ଟୀକା**—ତଥା ସାମ୍ନାଂ (ବୈଦିକଗାନାନାଂ) ବୃହତ୍ ସାମ, ଛନ୍ଦସାଂ (ଗାୟତ୍ର୍ୟନୁଷ୍ଟୁବ୍ ବୃହତୀ ପଂକ୍ତି ଜଗତ୍ୟାଦି ବୈଦିକ ଛନ୍ଦୋନିୟମାନାଂ ମଧ୍ୟେ) ଗାୟତ୍ରୀ ଅହମ୍, ମାସାନାଂ ମାର୍ଗଶୀର୍ଷଃ (ଋଦ୍ଧିମାର୍ଗସ୍ୟ ମୂଲଃ, ମାର୍ଗଶିରଃ—ପୁରା ମୃଗଶିରୋନକ୍ଷତ୍ରେ ବାସନ୍ତ-ବିଷୁବଂ, ମାର୍ଗଶୀର୍ଷାଦ୍ ବତ୍ସରାରମ୍ଭଶ୍ଚାସୀତ୍), ଋତୂନାଂ [ଚ] କୁସୁମାକରଃ (ବସନ୍ତଃ) ଅହମ୍ । ୩୫ ।

**ଅର୍ଥ**—ପୁଣି ସାମ ବା ବେଦର ଗାନ ଯାକରେ ବୃହତ୍ ସାମ ବୋଲି ଯେଉଁ ଗାନ, ସେ ମୁହିଁ । ବେଦର ଛନ୍ଦ ଯାକରେ ଗାୟତ୍ରୀଛନ୍ଦ ବି ମୁହିଁ । ମାସଯାକରେ ମୁଁ ମାର୍ଗଶୀର ଓ ଋତୁଯାକରେ ବସନ୍ତ । ୩୫ ।

ବ୍ୟାଖ୍ୟା ସୂଚନା—ଅତି ପୁରାକାଳରେ ମୃଗଶିରା ନକ୍ଷତ୍ରରେ ସୂର୍ଯ୍ୟ ଥିଲାବେଳେ ବାସନ୍ତ ବିଷୁବ ହେଉଥିଲା । ସେଇ ମାସର ଅମାବସ୍ୟା ପରଠାରୁ ଚାନ୍ଦ୍ରମାସ ବି ବର୍ଷର ଆଦ୍ୟମାସ ହେଲା । ୩୫ ।

**ଦ୍ୟୂତଂ ଛଳୟତାମସ୍ମି ତେଜସ୍ତେଜସ୍ୱିନାମହମ୍ ।**
**ଜୟୋଽସ୍ମି ବ୍ୟବସାୟୋଽସ୍ମି ସତ୍ତ୍ୱଂ ସତ୍ତ୍ୱବତାମହମ୍ ।୩୬।**

**ଅନ୍ୱୟ**—ସ୍ପଷ୍ଟ । ୩୬ ।

**ଟୀକା**—ଛଳୟତାଂ (ବଞ୍ଚନକାରଣାଂ) ଦ୍ୟୂତଂ (କୈତବଂ) ଅସ୍ମି । ତେଜସ୍ୱିନାଂ ତେଜଃ ଅହମ୍ । [ଜେତୄଣାଂ] ଜୟଃ ଅସ୍ମି । [ବ୍ୟବସାୟିନାଂ] ବ୍ୟବସାୟଃ (ନିଶ୍ଚୟଃ) ଅସ୍ମି । ସତ୍ତ୍ୱବତାଂ (ବଳିନାଂ) ସତ୍ତ୍ୱଂ (ବଳଂ) ଅହମ୍ । ୩୬ ।

**ଅର୍ଥ**—ଠକଙ୍କର ହେଉଚି ଜୁଆଖେଳ ବା ଠକେଇ ମୁଁ । ତେଜସ୍ୱୀଙ୍କ ତେଜ ମୁଁ । ଜିତାପଟର ଜୟ ହେଉଚି ମୁଁ । ଦୃଢ଼ ନିଷ୍ଠା ଧରିଥିବା ଲୋକଙ୍କର ଦୃଢ଼ତା ହେଉଚି ମୁଁ । ବଳିଆଙ୍କର ବଳ ମୁଁ । ୩୬ ।

ବ୍ୟାଖ୍ୟା ସୂଚନା—ଜୁଆଖେଳ ମୁହିଁ, ଏହା ଈଶ୍ୱରଙ୍କର ବିଶ୍ୱପ୍ରକାଶ ତତ୍ତ୍ୱ ଦୃଷ୍ଟିରେ ବୁଝିବାକୁ ହେବ । ସୁଖ, ଦୁଃଖ, ଯଶ, ଅଯଶ ସବୁ ସେଇ । ସବୁଥିରେ ବିଭୂତି ତାଙ୍କର । ୧୦.୪, ୫ ଦେଖ । ଠକ ଯଦି ଜୁଆ ଖେଳିବାରେ ଏହା ବୁଝିଯାଏ, ତେବେ ସେ ସଦାଶୁଦ୍ଧ ହୋଇଯିବ । ୯.୩୦, ୩୧ ଦେଖ । ୩୬ ।

**ବୃଷ୍ଣୀନାଂ ବାସୁଦେବୋଽସ୍ମି ପାଣ୍ଡବାନାଂ ଧନଞ୍ଜୟଃ ।**
**ମୁନୀନାମପ୍ୟହଂ ବ୍ୟାସଃ କବୀନାମୁଶନାଃ କବିଃ । ୩୭ ।**

**ଅନ୍ୱୟ**—ସ୍ପଷ୍ଟ । ୩୭ ।

**ଟୀକା**—ବୃଷ୍ଣୀନାଂ ବାସୁଦେବଃ (ବସୁଦେବପୁତ୍ରଃ ଶ୍ରୀକୃଷ୍ଣଃ), ପାଣ୍ଡବାନାଂ ଧନଞ୍ଜୟଃ [ଚ] ଅସ୍ମି । ମୁନୀନାଂ ଅପି ଅହଂ ବ୍ୟାସଃ, କବୀନାଂ (ଦ୍ରଷ୍ଟୄଣାଂ ବିଶେଷଜ୍ଞାନାଂ ) [ଅହଂ ଭୃଗୁପୁତ୍ରଃ] ଉଶନାଃ କବିଃ । ୩୭ ।

**ଅର୍ଥ**—ଯଦୁକୁଳର ବୃଷ୍ଣିଶାଖା ଲୋକଙ୍କ ଭିତରେ ମୁଁ ବସୁଦେବପୁତ୍ର ଶ୍ରୀକୃଷ୍ଣ ପାଣ୍ଡବଙ୍କ ଭିତରେ ମୁଁ ଅର୍ଜୁନ । ମୁନିଙ୍କ ଭିତରେ ବି ମୁଁ ବ୍ୟାସ । କବି ବା ଜାଣିବାବାଲାଙ୍କ ଭିତରେ ମୁଁ ଭୃଗୁଙ୍କ ପୁତ୍ର ଉଶନା ବା ଉଶନା କବି—(ଉଶନାଙ୍କୁ କବି ବୋଲି କୁହାଯାଏ) । ୩୭ ।

**ଦଣ୍ଡୋ ଦମୟତାମସ୍ମି ନୀତିରସ୍ମି ଜିଗୀଷତାମ୍ ।**
**ମୌନଂ ଚୈବାସ୍ମି ଗୁହ୍ୟାନାଂ ଜ୍ଞାନଂ ଜ୍ଞାନବତାମହମ୍ ।୩୮।**

**ଅନ୍ୱୟ**—ସ୍ପଷ୍ଟ । ୩୮ ।

**ଟୀକା**—ଦମୟତାଂ ଦଣ୍ଡଃ ଅସ୍ମି; ଜିଗୀଷତାଂ ନୀତିଃ (ସାମଦାନାଦି-ରାଜନୀତିଃ) ଅସ୍ମି; ଗୁହ୍ୟାନାଂ (ଗୋପ୍ୟବିଷୟାଣାଂ) ମୌନଂ (ତୂଷ୍ଣୀଂଭାବଃ) ଚ ଏବ ଅସ୍ମି; ଜ୍ଞାନବତାଂ ଜ୍ଞାନଂ ଅହମ୍ । ୩୮ ।

**ଅର୍ଥ**—ଦଣ୍ଡିବା ଲୋକଙ୍କର ଦଣ୍ଡ ହେଉଛି ମୁଁ, ଜିଣିବାକୁ ବସିଥିବା ଲୋକଙ୍କର କୌଶଳ ହେଉଛି ମୁଁ, ପୁଣି ଲୁଗ୍ଣଇବା କଥାଯାକରେ ମୌନ-ବା ତୁନି ହେବା ହେଉଛି ମୁଁ, ଜ୍ଞାନବନ୍ତଙ୍କର ଜ୍ଞାନ ମୁହିଁ । ୩୮ ।

ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜୁନ ।
ନ ତଦସ୍ତି ବିନା ଯତ୍ ସ୍ୟାନ୍ମୟା ଭୂତଂ ଚରାଚରମ୍ । ୩୯ ।

**ଅନ୍ୱୟ**—ସ୍ପଷ୍ଟ । ୩୯ ।

**ଟୀକା**—ଅପି ଚ ହେ ଅର୍ଜୁନ, ସର୍ବଭୂତାନାଂ (ସର୍ବସୃଷ୍ଟବସ୍ତୂନାଂ) ଯତ୍ ବୀଜଂ (ମୂଳଂ) ତତ୍ ଅହଂ । ମୟା ବିନା ଚରାଚରଂ (ସ୍ଥାବରଜଙ୍ଗମାତ୍ମକଂ) ଯତ୍ ଭୂତଂ ତତ୍ ନ ଅସ୍ତି । ୩୯ ।

**ଅର୍ଥ**—ପୁଣି ହେ ଅର୍ଜୁନ, ସୃଷ୍ଟ ବସ୍ତୁ ମାତ୍ରର ଯେ ମୂଳ ସେ ମୁହିଁ । ମୋ ବିନା ଚରାଚର ଭୂତ ଯେ, ସେ ନାଇ । [ ଏହାହିଁ ମୋ ବିଭୂତିର ସାର କଥା ଜାଣ ] । ୩୯ ।

ନାନ୍ତୋଽସ୍ତି ମମ ଦିବ୍ୟାନାଂ ବିଭୂତୀନାଂ ପରନ୍ତପ ।
ଏଷ ତୂଦ୍ଦେଶତଃ ପ୍ରୋକ୍ତୋ ବିଭୂତେର୍ବିସ୍ତରୋ ମୟା । ୪୦ ।

**ଅନ୍ୱୟ**—ସ୍ପଷ୍ଟ । ୪୦ ।

**ଟୀକା**—ହେ ପରନ୍ତପ, ମମ ଦିବ୍ୟାନାଂ ବିଭୂତୀନାଂ ଅନ୍ତ ନ ଅସ୍ତି । ଏଷଃ ତୁ ବିଭୂତେଃ ବିସ୍ତରଃ (ବର୍ଣ୍ଣନଂ) ମୟା ଉଦ୍ଦେଶତଃ ( ଏକଦେଶେନ ସଙ୍କ୍ଷେପେଣ ଇତ୍ୟର୍ଥଃ ) ପ୍ରୋକ୍ତଃ । ୪୦ ।

**ଅର୍ଥ**—ହେ ପରନ୍ତପ, ମୋ ଦିବ୍ୟବିଭୂତିର ଅନ୍ତ ନାହିଁ । ମାତ୍ର ଏହି ଯେ ବିଭୂତିକ ଏତେ ବର୍ଣ୍ଣନା କରି କହିଲି, ତା ଖାଲି 'ଏହିପରି ବୋଲି' ତତେ ଦେଖାଇ ଦେବା ପାଇଁ କହିଦେଲି । ୪୦ ।

ଯଦ୍ ଯଦ୍ ବିଭୂତିମତ୍ ସତ୍ତ୍ୱଂ ଶ୍ରୀମଦୂର୍ଜିତମେବ ବା ।
ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଽଂଶସମ୍ଭବମ୍ । ୪୧ ।

**ଅନ୍ୱୟ**—ବିଭୂତିମତ୍, ଶ୍ରୀମତ୍, ଊର୍ଜିତଂ ବା ଯତ୍ ଯତ୍ ସତ୍ତ୍ୱଂ, ତତ୍ ତତ୍ ଏବଂ ତ୍ୱଂ ମମ ତେଜୋଽଂଶସମ୍ଭବଂ ଅବଗଚ୍ଛ । ୪୧ ।

**ଟୀକା**—[ ସ୍ଥୂଳତଃ ] ବିଭୂତିମତ୍ (ଐଶ୍ୱର୍ଯ୍ୟଯୁକ୍ତଂ) ଶ୍ରୀମତ୍ (ଶୋଭାସମ୍ପଦ୍-ଯୁକ୍ତଂ) ଊର୍ଜିତଂ କେନଚିଦପି (ଗୁଣାତିଶୟେନ ଯୁକ୍ତଂ) ବା ଯତ୍ ଯତ୍ ସତ୍ତ୍ୱଂ

(ବସ୍ତୁ-ଜନ୍ତ୍ୱାଦି-ମାତ୍ରଂ) [ଭବେତ୍], ତତ୍ ତତ୍ ଏବ ତ୍ୱଂ ମମ ତେଜୋଽଂଶସମ୍ଭବଂ ( ମମ ପ୍ରଭାବସ୍ୟ ଅଂଶେନ ସମ୍ଭୂତଂ ) ଅବଗଚ୍ଛ ( ବିଦ୍ଧି ) । ୪୧ ।

**ଅର୍ଥ**—[ମୋଟ କଥା ହେଉଛି]—ଦର୍ଶିବା, ଷମିବା, ଚଳାଇବା ପ୍ରଭୃତି ବିଭୂତି ଥାଇ, ଶୋଭା ସମ୍ପତ୍ତି ଥାଇ ବା କୌଣସି ସୁନ୍ଦର ମହତ୍ ଗୁଣ ଥାଇ ଯେଉଁ ଯେଉଁ ବସ୍ତୁ ଜନ୍ତୁ ବା ଯାହା କିଛି ହୁଏ, ସେ ସବୁଇ ମୋ'ର କଳାରେ ହୁଏ ବୋଲି ଜାଣ । ୪୧ ।

**ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜ୍ଜୁନ ।**
**ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ । ୪୨ ।**

**ଅନ୍ୱୟ**—ଅଥବା ଅର୍ଜ୍ଜୁନ ! ଏତେନ ବହୁନା ଜ୍ଞାତେନ ତବ କିଂ ? ଅହଂ ଇଦଂ କୃତ୍ସ୍ନଂ ଜଗତ୍ ଏକାଂଶେନ ବିଷ୍ଟଭ୍ୟ ସ୍ଥିତଃ । ୪୨ ।

**ଟୀକା**—ଅଥବା ହେ ଅର୍ଜ୍ଜୁନ, ଏତେନ ବହୁନା ଜ୍ଞାତେନ ତବ କିଂ [ପ୍ରୟୋଜନଂ ଅସ୍ତି] ? [ଏତତ୍ ଏବ ଦୃଢ଼ଂ ବିଦ୍ଧି ଯତ୍] ଅହଂ ଇଦଂ କୃତ୍ସ୍ନଂ (ସମଗ୍ରଂ) ଜଗତ୍ ଏକାଂଶେନ ବିଷ୍ଟଭ୍ୟ (ଧୃତ୍ୱା, ବ୍ୟାପ୍ୟ, ବିସ୍ତାର୍ଯ୍ୟ ବା) ସ୍ଥିତଃ । ୪୨ ।

**ଅର୍ଥ**—କିମ୍ବା ହେ ଅର୍ଜ୍ଜୁନ, ଏତେ ବହୁତ ଜାଣିବାରେ ତୋର କଣ ଅଛି ? [ ଏତିକି ଠିକଣା କରି ବୁଝି ରଖ୍ ଯେ ] ମୁଁ ଏ ସମଗ୍ର ଜଗତ୍ ଗୋଟିଏ ଅଂଶରେ ଧରି ବା ବ୍ୟାପିକରି ଅଛି । ୪୨ ।

ବ୍ୟାଖ୍ୟା ସୂଚନା—ନିଖିଳ ଜଗତରେ ସର୍ବଦା ସର୍ବତ୍ର ମୁଁ ଅଛି । ତା ବାଦ ଯେଉଁଠି ଜଗତ୍ ବା ଜଗତ୍‌ର କୌଣସି କଳ୍ପନା ପର୍ଯ୍ୟନ୍ତ ନାଇ, ସେଠି ବି ମୁଁ ଅଛି । ଅର୍ଥାତ୍, ମୁଁଇ ଜଗତ୍ ଓ ମୁଁଇ ଜଗତରୁ ଅତୀତ । ୪୨ ।



# ଏକାଦଶ ଅଧ୍ୟାୟ

## ବିଶ୍ୱରୂପ-ଦର୍ଶନ-ଯୋଗ

### ଅଧ୍ୟାୟ ପ୍ରବେଶ—

ଯେଉଁ ବିଶ୍ୱମୟ ବିଭୂତିର କଥା ଭଗବାନ୍ ଦଶମ ଅଧ୍ୟାୟରେ କହିଗଲେ, ନିଜର ବିଶ୍ୱରୂପରେ ସେହି ବିଭୂତି ଏ ଅଧ୍ୟାୟରେ ଭକ୍ତ ଅର୍ଜୁନଙ୍କୁ ଜ୍ଞାନଚକ୍ଷୁ ଦେଇ ସାକ୍ଷାତ୍ ଦେଖାଇବେ । ଅର୍ଜୁନ ଅସଲ ଗୋପନୀୟ ଅଧ୍ୟାତ୍ମ ବିଭୂତି କଥା ସବୁ ଶୁଣି, ସେହି ବିଭୂତିମୟ ଭଗବାନଙ୍କର ବିଶ୍ୱରୂପ ସାକ୍ଷାତ୍ ଦେଖିବା ସମ୍ଭବ ହେଲେ, ତାହା ଦେଖିବା ପାଇଁ ଭଗବାନଙ୍କୁ କହିଲେ । ଭଗବାନ ତହୁଁ ଅର୍ଜୁନଙ୍କୁ ଜ୍ଞାନଚକ୍ଷୁ ଦେଇ ନିଜର ବିରାଟ ବିଶ୍ୱରୂପ ଦିଶାଇ ଦେଲେ । ଅର୍ଜୁନ ଏବେ ବିଶ୍ୱତୋମୁଖ ପୁରୁଷୋତ୍ତମଙ୍କୁ ବିଶ୍ୱମୟ ଦେଖିଲେ । ସବୁ ସୁରାସୁର ଭୂତମାନେ ଋଷି, ଦୈତ୍ୟ, ଦେବ, ଦାନବ, ସର୍ପ, ଭୂମି, ଜଳ, ଯାହା କିଛି ଜଗତରେ ଅଛି, ସବୁ ସେହି ରୂପରେ ଏକାବେଳକେ ଅତ୍ୟୁଜ୍ଜ୍ୱଳ ଭାବରେ ଦେଖାଗଲା । ଅର୍ଜୁନ ଦେଖିଲେ, ସୃଷ୍ଟିର ମୂଳାଧାର ଏହି ବିଶ୍ୱରୂପ, ଯେପରିକି ମହାକାଳ ରୂପରେ ସବୁ ଖାଲି ଖାଇ ଯାଉଛି । ସୃଷ୍ଟି ସାରା ଯେପରିକି ଖାଲି ମହାସଂହାର ଓ ଧ୍ୱଂସର ତାଣ୍ଡବ ଲାଗି ରହିଛି । ଏପରିକି କୁରୁକ୍ଷେତ୍ରର ବୀରମାନେ ସେ ରୂପର କରାଳ ମୁଖରେ ପଶି ଧ୍ୱଂସରେ ଲୀନ ହୋଇ ଯାଉଛନ୍ତି । ଏହା ସବୁ ଦେଖି ଅର୍ଜୁନଙ୍କୁ ଡର ମାଡ଼ିଲା । ଭଗବାନ୍ କହିଲେ, ସୃଷ୍ଟିରେ ମୋର ଏହି ଧ୍ୱଂସ ଲୀଳା ହିଁ ଲାଗିଛି । ତୋର ଆଉ ମାରିବାର ଭୟ କାହିଁକି ? ମୁଁ ତ ସବୁ ମାରୁଛି, ତୁ ଖାଲି ନିମିତ୍ତ । ଅର୍ଜୁନ ସେଠାରୁ ପୁଣି ସ୍ତୁତି କରି ସୌମ୍ୟ ଦେବରୂପ ଦେଖିବାକୁ ମାଗିଲେ । ଭଗବାନ୍ ଏବେ ଆଶ୍ୱାସ ଦେଇ ପୁଣି ମନୁଷ୍ୟ ରୂପ ଧରି ବୁଝାଇ ଦେଲେ, ଏହିପରି ଭଗବାନଙ୍କୁ କେବଳ ଭକ୍ତ ହିଁ ଦେଖିପାରେ; ଭକ୍ତିର ଜ୍ଞାନରେ ହିଁ ଏପରି ଦେଖିବା ସମ୍ଭବ; ଆଉ କାହିଁରେ ଏପରି କେହି ଦେଖି ପାରନ୍ତି ନାଇ । ଅତଏବ ଭକ୍ତିରେ ଈଶ୍ୱରଙ୍କର ବୋଲି ସବୁ କର୍ମ କରିଯିବା ହିଁ ପନ୍ଥା ।

[ଭକ୍ତଙ୍କର ବଡ଼ ପ୍ରିୟ ଏ ଅଧ୍ୟାୟ । ଏଥିରେ ଖାଲି କବିତା ଭର୍ତ୍ତି ହୋଇଛି । ଏ ଅଧ୍ୟାୟ ଯେତେ ପଢ଼ିଲେ ବି ଅକିଯିବ ନାଇ—ମହାତ୍ମା ଗାନ୍ଧୀ । ]

ଅର୍ଜୁନ ଉବାଚ

**ମଦନୁଗ୍ରହାୟ ପରମଂ ଗୁହ୍ୟମଧ୍ୟାତ୍ମସଂଜ୍ଞିତମ୍ ।**
**ଯତ୍ତ୍ୱୟୋକ୍ତଂ ବଚସ୍ତେନ ମୋହୋଽୟଂ ବିଗତୋ ମମ ॥୧॥**

**ଅନ୍ୱୟ**—ମଦନୁଗ୍ରହାୟ ଯତ୍ ପରମଂ ଗୁହ୍ୟଂ ଅଧ୍ୟାତ୍ମସଂଜ୍ଞିତଂ ବଚଃ ତ୍ୱୟା ଉକ୍ତମ୍ ତେନ ମମ ଅୟଂ ମୋହଃ ବିଗତଃ । ୧ ।

**ଟୀକା**—[ଅଧୁନା ଈଶ୍ୱରସ୍ୟ ବିଶ୍ୱାତ୍ମତ୍ୱେ ପ୍ରତୀତଃ ତତ୍ ସାକ୍ଷାତ୍ କର୍ତୁମିଚ୍ଛୁଃ ଚତୁର୍ଭିଃ] ଅର୍ଜୁନଃ ଉବାଚ—ମଦନୁଗ୍ରହାୟ (ମାଂ ଅନୁକମ୍ପ୍ୟ) ଯତ୍ ପରମଂ [ତଥା] ଗୁହ୍ୟଂ (ଦୁର୍ବିଜ୍ଞେୟଂ) ଅଧ୍ୟାତ୍ମସଂଜ୍ଞିତଂ (ଜନସର୍ଗସ୍ୟ ଅଧ୍ୟାତ୍ମମିତି କଥିତଂ) ବଚଃ ତ୍ୱୟା ଉକ୍ତମ୍ ତେନ ଅୟଂ ମମ [ଦେହାତ୍ମବିଷୟକଃ] ମୋହଃ (ଅଜ୍ଞାନାନ୍ଧତ୍ୱଂ) ବିଗତଃ (ଅପଗତଃ) । ୧ ।

**ଅର୍ଥ**—[ଏବେ ଈଶ୍ୱର ଯେ ବିଶ୍ୱାତ୍ମା ଓ କର୍ତ୍ତା, ଭୋକ୍ତା, ଆଦି ଏ ବିଷୟରେ ବିଶ୍ୱାସ ହେବାରୁ ଈଶ୍ୱରଙ୍କର ସେହି ବିଶ୍ୱତୋମୁଖରୂପ ସାକ୍ଷାତ୍ ଦେଖିବାକୁ ମନ କରି] ଅର୍ଜୁନ କହିଲେ—ମୋତେ ଅନୁଗ୍ରହ କରି ଯେଉଁ ଅସଲ, ଗୂଢ଼ ଓ ବିଶ୍ୱାତ୍ମାକୁ ଧରି ରହିଥିବା ତଥ୍ୟର କଥା ତୁମେ କହିଲ, ସେଥିରେ ମୋର ଏ [ଦେହଆତ୍ମା ସମ୍ବନ୍ଧୀୟ] ଅଜ୍ଞାନ ଯାଇଛି । ୨ ।

ବ୍ୟାଖ୍ୟା ସୂଚନା—ପରମଂବଚଃ=ଅସଲକଥା । ୧୦.୧ ଦେଖ । ଗୁହ୍ୟତମ, ରାଜଗୁହ୍ୟଂ=ଅତି ଗୂଢ଼, ଗହନ—୯.୧,୨ ଦେଖ । ଅଧ୍ୟାତ୍ମ—୮.୧,୩ ଦେଖ । ୧ ।

**ଭବାପ୍ୟୟୌ ହି ଭୂତାନାଂ ଶ୍ରୁତୌ ବିସ୍ତରଶୋ ମୟା ।**
**ତ୍ୱତ୍ତଃ କମଲପତ୍ରାକ୍ଷ ମାହାତ୍ମ୍ୟମପି ଚାବ୍ୟୟମ୍ । ୨ ।**

**ଅନ୍ୱୟ**—ସ୍ପଷ୍ଟ । ୨ ।

**ଟୀକା**—ହେ କମଲପତ୍ରାକ୍ଷ (ପଦ୍ମଦଳେକ୍ଷଣ), ଭୂତାନାଂ ହି ଭବାପ୍ୟୟୌ (ଭବଃ ଉତ୍ପତ୍ତିଃ, ଅପ୍ୟୟଃ ପ୍ରଳୟଃ, ତୌ) ମୟା (ତ୍ୱତ୍ତଃ ତବ ସକାଶାତ୍) ବିସ୍ତରଶଃ ଶ୍ରୁତୌ, ଅବ୍ୟୟଂ ତବ ମାହାତ୍ମ୍ୟମ୍ ଅପିଚ [ଶ୍ରୁତମ୍] । ୨ ।

**ଅର୍ଥ**—ହେ ପଦ୍ମପଲାଶଲୋଚନ ଭୂତମାନଙ୍କର ଉତ୍ପତ୍ତି ନାଶ କଥା ତୁମଠୁ ମୁଁ ଖୁବ୍ ଶୁଣିଲି, ପୁଣି ତୁମ ଅକ୍ଷୟ ମହିମା ବି ବହୁତ ଶୁଣିଲି । ୨ ।

**ଏବମେତଦ୍ ଯଥାତ୍ଥ ତ୍ୱମାତ୍ମାନଂ ପରମେଶ୍ୱର ।**
**ଦ୍ରଷ୍ଟୁମିଚ୍ଛାମି ତେ ରୂପମୈଶ୍ୱରଂ ପୁରୁଷୋତ୍ତମ । ୩ ।**

**ଅନ୍ୱୟ**—ସ୍ପଷ୍ଟ । ୩ ।

**ଟୀକା**—ହେ ପରମେଶ୍ୱର, ତ୍ୱଂ ଆତ୍ମାନଂ ଯଥା ଆତ୍ଥ (ବଦସି) ଏବଂ (ତଥା) ଏତତ୍ [ନିଶ୍ଚିତଂ, କିନ୍ତୁ] ହେ ପୁରୁଷୋତ୍ତମ, ତେ (ତବ) ଐଶ୍ୱରଂ ରୂପଂ ଦ୍ରଷ୍ଟୁଂ ଇଚ୍ଛାମି । ୩ ।

**ଅର୍ଥ**—ହେ ପରମେଶ୍ୱର, ତୁମେ ଆପଣା କଥା ଯେପରି କହୁଚ, ସେହିପରି ଏହା ସେ କଥା । [କିନ୍ତୁ] ହେ ପୁରୁଷୋତ୍ତମ, ଏବେ ତୁମର ସେହି ବିଶ୍ୱମୟ ଐଶ୍ୱର ରୂପକୁ ଦେଖିବାକୁ ଇଚ୍ଛା ହେଉଚି । ୩ ।

ବ୍ୟାଖ୍ୟା ସୂଚନା—ଐଶ୍ୱର ରୂପ=ବିଶ୍ୱର ଈଶ୍ୱର, ଅର୍ଥାତ୍, ରାଜାସ୍ୱ ରୂପ । ଈଶ୍ୱର=ପ୍ରକାଶ, ପାଳକ ଓ ସଂହାରକ ବିଭୁ । ୩ ।

**ମନ୍ୟସେ ଯଦି ତଚ୍ଛକ୍ୟଂ ମୟା ଦ୍ରଷ୍ଟୁମିତି ପ୍ରଭୋ ।**
**ଯୋଗେଶ୍ୱର ତତୋ ମେ ତ୍ୱଂ ଦର୍ଶୟାତ୍ମାନମବ୍ୟୟମ୍ । ୪ ।**

**ଅନ୍ୱୟ**—ପ୍ରଭୋ ! ଯଦି ତତ୍ ମୟା ଦ୍ରଷ୍ଟୁଂ ଶକ୍ୟଂ ଇତି ମନ୍ୟସେ ତତଃ ଯୋଗେଶ୍ୱର ତ୍ୱଂ ମେ ଅବ୍ୟୟଂ ଆତ୍ମାନଂ ଦର୍ଶୟ । ୪ ।

**ଟୀକା**—ହେ ପ୍ରଭୋ, ଯଦି ତତ୍ [ରୂପଂ] ମୟା ଦ୍ରଷ୍ଟୁଂ ଶକ୍ୟଂ ଇତି [ତ୍ୱଂ] ମନ୍ୟସେ ତତଃ (ତର୍ହି) ହେ ଯୋଗେଶ୍ୱର (ବିଶ୍ୱବିସ୍ତାରଶକ୍ତିପାଳକ) । ତ୍ୱଂ ମେ (ମହ୍ୟଂ) [ତତ୍ ତବ] ଅବ୍ୟୟଂ (ନିତ୍ୟଂ ବିଶ୍ୱମୟଂ ଚ) ଆତ୍ମାନଂ ଦର୍ଶୟ ।

**ଅର୍ଥ**—ହେ ପ୍ରଭୁ, ଯେବେ ତୁମର ସେହି ରୂପକୁ ମୁଁ ଦେଖିପାରେ ବୋଲି ତୁମ ମନେହୁଏ, ତେବେ ହେ ଯୋଗେଶ୍ୱର, ତୁମେ ମୋତେ ସେହି ନିତ୍ୟ ଅଥଚ ବିଶ୍ୱମୟ ଆତ୍ମସ୍ୱରୂପକୁ ଦେଖାଅ । ୪ ।

ବ୍ୟାଖ୍ୟା ସୂଚନା—ଯୋଗେଶ୍ୱର=ନିଜ ବିଶ୍ୱବିସ୍ତାର ଶକ୍ତି ବା ପ୍ରକୃତିର ପାଳନ କର୍ତ୍ତା । ୭.୨୫ ଦେଖ । ଅବ୍ୟୟ=ନିତ୍ୟ, ଯାହାର ବିକାର ବା ପରିବର୍ତ୍ତନ ନାହିଁ, ଯେ ବଦଳେ ନାହିଁ । ବିଶ୍ୱର ପ୍ରକାଶ ସର୍ବଦା ବିକାର ବା ବଦଳିବାରେ ଲାଗିଚି । ହେଲେହେଁ ସେହି ବିଶ୍ୱର ଅଧ୍ୟାତ୍ମ ସ୍ୱରୂପ ପରମାତ୍ମାଙ୍କର ଯୋଗଶକ୍ତି, ଅବ୍ୟୟ । ୪ ।

ଶ୍ରୀ ଭଗବାନୁବାଚ

**ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ ।**
**ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ । ୫ ।**

**ଟୀକା**—[ ତତଃ ତଦ୍‌ବିଶ୍ୱରୂପଂ ଦର୍ଶୟିଷ୍ୟନ୍ ଅର୍ଜୁନଂ ଚ ଅଭୂତଂ ତଦ୍ ଦ୍ରଷ୍ଟୁଂ ଯଥାବସ୍ଥିତଂ କରିଷ୍ୟନ୍] ଶ୍ରୀ ଭଗବାନ୍ ଉବାଚ—ହେ ପାର୍ଥ, ଶତଶଃ ଅଥ ସହସ୍ରଶଃ [ଏତାନି] ମେ (ମମ) ରୂପାଣି ପଶ୍ୟ । (ତାନି) ନାନାବିଧାନି ଦିବ୍ୟାନି (ଅଲୌକିକାନି) ନାନାବର୍ଣ୍ଣାକୃତୀନି (ବିବିଧବର୍ଣ୍ଣାକାରବିଶିଷ୍ଟାନି) । ୫ ।

**ଅର୍ଥ**—[ତହୁଁ ସେହି ବିଶ୍ୱରୂପ ଦେଖାଇବାକୁ ବିଗ୍ରହ ଓ ଅର୍ଜୁନଙ୍କୁ ସେହି ଅତି ଅଦ୍ଭୁତ ରୂପ ଦେଖିବାରେ ପ୍ରସ୍ତୁତ କରିବା ମାନସରେ]—ଶ୍ରୀ ଭଗବାନ୍ କହିଲେ—ହେ ପାର୍ଥ, [ଯେବେ ତେବେ] ଶହ ଶହ ହଜାର ହଜାର ପ୍ରକାରରେ ଏହି ମୋ ରୂପମାନଙ୍କୁ ଦେଖ (ଦେଖିବାକୁ ତିଆର ହୋ) । ଏ ସବୁ ଦିବ୍ୟ ରୂପ ନାନା ପ୍ରକାର, ରଙ୍ଗ ନେଳ ପ୍ରଭୃତି ନାନା ବର୍ଣ୍ଣ ଓ ନାନା ଆକାରରେ ପୂର୍ଣ୍ଣ । ୫ ।

**ପଶ୍ୟାଦିତ୍ୟାନ ବସୂନ୍ ରୁଦ୍ରାନଶ୍ୱିନୌ ମରୁତସ୍ତଥା ।**
**ବହୂନ୍ୟଦୃଷ୍ଟପୂର୍ବାଣି ପଶ୍ୟାଶ୍ଚର୍ଯାଣି ଭାରତ । ୬ ।**

**ଅନ୍ୱୟ**—ସ୍ପଷ୍ଟ । ୬ ।

**ଟୀକା**—[ଏତସ୍ମିନ୍ ବିଶ୍ୱରୂପେ]—ଆଦିତ୍ୟାନ୍, ବସୂନ, ରୁଦ୍ରାନ୍, ଅଶ୍ୱିନୌ (ଅଶ୍ୱିନୀକୁମାରନାମାନୌ ସ୍ୱର୍ବୈଦ୍ୟୌ) ମରୁତଃ ପଶ୍ୟ । ହେ ଭାରତ, ତଥା ବହୂନି ଅଦୃଷ୍ଟପୂର୍ବାଣି (ପୂର୍ବଂ କଦାପି ନ ଦୃଷ୍ଟାନି) ଆଶ୍ଚର୍ଯାଣି (ଅଦ୍ଭୁତାନି) ପଶ୍ୟ । ୬ ।

**ଅର୍ଥ**—[ ଏବେ ଏହି ବିଶ୍ୱରୂପରେ ] ଆଦିତ୍ୟମାନଙ୍କୁ, ବସୁମାନଙ୍କୁ, ରୁଦ୍ରମାନଙ୍କୁ, ଅଶ୍ୱିନୀକୁମାରଙ୍କୁ, ମରୁଦ୍‌ଗଣଙ୍କୁ ଦେଖ । ହେ ଭାରତ, ଆହୁରି କେତେ କେତେ କେବେ ନ ଦେଖିଥିବା ଆଶ୍ଚର୍ଯ୍ୟ ସବୁ ଦେଖ । ୬ ।

ବ୍ୟାଖ୍ୟା ସୂଚନା—ଆଦିତ୍ୟ, ବସୁ ଓ ରୁଦ୍ର ଏମାନେ ବୈଦିକ ଦେବତା । ୮ ବସୁ, ୧୧ ରୁଦ୍ର ଓ ୧୨ ଆଦିତ୍ୟ, ପୁଣି ଇନ୍ଦ୍ର ଓ ପ୍ରଜାପତି ଏହିପରି ୩୩ଟି ବୈଦିକ ଦେବତା । ସେଇଥିରୁ ପୁରାଣାଦିର ୩୩ କୋଟି ଦେବତାର କଳ୍ପନା । ୬ ।

**ଇହୈକସ୍ଥଂ ଜଗତ୍‌କୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରମ୍ ।**
**ମମ ଦେହେ ଗୁଡ଼ାକେଶ ଯଚ୍ଚାନ୍ୟଦ୍‌ଦ୍ରଷ୍ଟୁମିଚ୍ଛସି ।୭।**

**ଅନ୍ୱୟ**—ସ୍ପଷ୍ଟ । ୭ ।

**ଟୀକା**—ହେ ଗୁଡ଼ାକେଶ, ସଚରାଚରଂ (ସ୍ଥାବରଜଙ୍ଗମାଦିସମେତଂ) କୃତ୍ସ୍ନଂ (ସମଗ୍ରଂ) ଜଗତ୍ ଅନ୍ୟତ୍ ଚ ଯତ୍ ଦ୍ରଷ୍ଟୁଂ ଇଚ୍ଛସି [ତତ୍ ସର୍ବଂ] ଅଦ୍ୟ ଇହ (ଅସ୍ମିନ୍) ମମ ଦେହେ ଏକସ୍ଥଂ (ଏକତ୍ରାବସ୍ଥିତଂ) ପଶ୍ୟ । ୭ ।

**ଅର୍ଥ**—ହେ ଗୁଡ଼ାକେଶ, ସ୍ଥାବର, ଜଙ୍ଗମ (ଅଚଳନ୍ତା, ଚଳନ୍ତା) ସର୍ବସମେତ ସମଗ୍ର ଜଗତଯାକ, ଆଉ ଯାହା ବା କିଛି ଦେଖିବାକୁ ଲୋଡ଼ୁଚୁ, ସେସବୁ ଆଜି ଏହି ମୋ ଦେହରେ ଏକାଠି ଦେଖ । ୭ ।

**ନ ତୁ ମାଂ ଶକ୍ୟସେ ଦ୍ରଷ୍ଟୁମନେନୈବ ସ୍ୱଚକ୍ଷୁଷା**
**ଦିବ୍ୟଂ ଦଦାମି ତେ ଚକ୍ଷୁଃ ପଶ୍ୟ ମେ ଯୋଗମୈଶ୍ୱରମ୍ ।୮।**

**ଅନ୍ୱୟ**—ସ୍ପଷ୍ଟ । ୮ ।

**ଟୀକା**—[କିଂ] ତୁ [ତ୍ୱଂ] ଅନେନ ଏବ ସ୍ୱଚକ୍ଷୁଷା, (ଚର୍ମଚକ୍ଷୁଷା, ମାନୁଷଦୃଷ୍ଟ୍ୟା) [ଏବଂବିଧଂ] ମାଂ ଦ୍ରଷ୍ଟୁଂ ନ ଶକ୍ୟସେ । [ତର୍ହି] ତେ (ତୁଭ୍ୟଂ) ଦିବ୍ୟଂ (ଅପାର୍ଥିବଂ) ଚକ୍ଷୁଃ (ଦୃଷ୍ଟିଂ) ଦଦାମି, [ତେନ ଦିବ୍ୟଚକ୍ଷୁଷା] ମେ (ମମ) ଐଶ୍ୱରଂ ଯୋଗଂ (ବିଶ୍ୱବିସ୍ତାରଶକ୍ତିଂ) ପଶ୍ୟ । ୮ ।

**ଅର୍ଥ**—କିନ୍ତୁ ତୋର ଏହି ଚର୍ମଚକ୍ଷୁରେ ମୋର ଏ ରୂପ ଦେଖି ପାରିବୁ ନାହିଁ । ସେଥିପାଇଁ ତୋତେ ଦିବ୍ୟ ଚକ୍ଷୁ ଦେଉଛି । ସେଥିରେ ମୋର ଏ ଐଶ୍ୱର ଯୋଗ (ଈଶ୍ୱର ସ୍ୱରୂପର ବିସ୍ତାର କିମ୍ବା ଶକ୍ତି—୭.୨୫ ଦେଖ) ଦେଖ୍ । ୮ ।

ବ୍ୟାଖ୍ୟା ସୂଚନା—ଅର୍ଜୁନ ତତ୍ତ୍ୱଦୃଷ୍ଟିରେ ବିଶ୍ୱରୂପ ଦେଖିଥିଲେ; ଏହା ଏଠାରେ ସ୍ପଷ୍ଟ । ତତ୍ତ୍ୱଦୃଷ୍ଟି ନ ଫିଟିଲେ ଯେ ସେ ଲୋକ ପକ୍ଷରେ ବିଶ୍ୱରୂପ ଦେଖିବା ସମ୍ଭବ ନୁହେଁ, ଏହା ମଧ୍ୟ ଭଗବାନ୍ ନିଜେ କହୁଛନ୍ତି । ତତ୍ତ୍ୱଦୃଷ୍ଟିରେ ବିଶ୍ୱର ଯେ କଳନା ଓ ନିରୂପଣ, ଏ ବିଶ୍ୱରୂପ ହେଉଛି, ତାର ଯଥାର୍ଥ ସ୍ୱରୂପ । ୮ ।

ସଞ୍ଜୟ ଉବାଚ

**ଏବମୁକ୍ତ୍ୱା ତତୋ ରାଜନ୍ ମହାଯୋଗେଶ୍ୱରୋ ହରିଃ ।**
**ଦର୍ଶୟାମାସ ପାର୍ଥାୟ ପରମଂ ରୂପମୈଶ୍ୱରମ୍ । ୯ ।**

**ଅନ୍ୱୟ**—ସ୍ପଷ୍ଟ । ୯ ।

**ଟୀକା**—ସଞ୍ଜୟଃ ଉବାଚ—ହେ ରାଜନ୍ (ଧୃତରାଷ୍ଟ୍ର), ମହାଯୋଗେଶ୍ୱରଃ ହରିଃ (ଶ୍ରୀକୃଷ୍ଣଃ) ଏବଂ ଉକ୍ତ୍ୱା, ତତଃ ପରମଂ ଐଶ୍ୱରଂ ରୂପଂ ପାର୍ଥାୟ ଦର୍ଶୟାମାସ ।୯।

**ଅର୍ଥ**—ସଞ୍ଜୟ କହିଲେ—ହେ ରାଜନ୍ (ଧୃତରାଷ୍ଟ୍ର), ମହାଯୋଗେଶ୍ୱର ହରି (ଶ୍ରୀକୃଷ୍ଣ) ଏହିପରି କହିସାରି ସଙ୍ଗେ ସଙ୍ଗେ ପାର୍ଥଙ୍କୁ ନିଜର ପରମ ଈଶ୍ୱର ରୂପ ଦେଖାଇ ଦେଲେ । ୯ ।

ବ୍ୟାଖ୍ୟା ସୂଚନା—ମହାଯୋଗେଶ୍ୱର—ସର୍ବବିଶ୍ୱବିସ୍ତାର କର୍ମମାନର ନିୟନ୍ତା ଓ ପାଳକ; କିମ୍ବା ଯେ ସମସ୍ତ କର୍ମସାଧନର ଯୋଗ ବା ଯୁକ୍ତିଯୁକ୍ତ ଉପାୟରେ ନିପୁଣ ଏ ଅର୍ଥ ସୂଚନା ମଧ୍ୟ ଏଠାରେ ଆଇପାରେ । କି ଠିକ ନା, ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏପରି ଭାବରେ ବିଶ୍ୱତତ୍ତ୍ୱ ବୁଝାଇ ତତ୍ତ୍ୱଦୃଷ୍ଟିରେ ପରମ ବିଶ୍ୱରୂପ ଦେଖିବାଯାଏ ଘେନି ଆସିବାରେ ଶ୍ରୀକୃଷ୍ଣଙ୍କର ମହାଯୋଗ ପ୍ରକାଶ ପାଉଛି । ୯ ।

**ଅନେକବକ୍ତ୍ରନୟନମନେକାଦ୍ଭୁତଦର୍ଶନମ୍ ।**
**ଅନେକଦିବ୍ୟାଭରଣଂ ଦିବ୍ୟାନେକୋଦ୍ୟତାୟୁଧମ୍ ।୧୦।**

**ଦିବ୍ୟମାଲ୍ୟାମ୍ବରଧରଂ ଦିବ୍ୟଗନ୍ଧାନୁଲେପନମ୍ ।**
**ସର୍ବାଶ୍ଚର୍ଯ୍ୟମୟଂ ଦେବମନନ୍ତଂ ବିଶ୍ୱତୋମୁଖମ୍ । ୧୧ ।**

**ଅନ୍ୱୟ**—ସ୍ପଷ୍ଟ । ୧୧ ।

**ଟୀକା**—[ କିଂଭୂତଂ ରୂପଂ ଇତି ବିଶେଷେଣ ବର୍ଣ୍ଣୟତି ସଞ୍ଜୟଃ ]—ଅନେକବକ୍ତ୍ରନୟନଂ (ବହୁମୁଖଚକ୍ଷୁର୍ଯୁକ୍ତଂ) ଅନେକାଦ୍ଭୁତଦର୍ଶନଂ (ନାନାଶ୍ଚର୍ଯ୍ୟ-ରୂପଧରଂ) ଅନେକଦିବ୍ୟାଭରଣଂ (ବହୁ ଦିବ୍ୟଭୂଷଣ-ମଣ୍ଡିତଂ) ଦିବ୍ୟାନେକୋ-ଦ୍ୟତାୟୁଧଂ (ଉଦ୍ୟତ-ବହୁଦିବ୍ୟ-ପ୍ରହରଣଯୁକ୍ତଂ) ଦିବ୍ୟମାଲ୍ୟାମ୍ବରଧରଂ (ଦିବ୍ୟମାଲ୍ୟ-ବସ୍ତ୍ରାନ୍ୱିତଂ) ଦିବ୍ୟଗନ୍ଧାନୁଲେପନଂ (ଦିବ୍ୟଗନ୍ଧାଙ୍ଗରାଗଲିପ୍ତଂ) ସର୍ବାଶ୍ଚର୍ଯ୍ୟମୟଂ ଦେବଂ (ଜ୍ୟୋତିର୍ମୟଂ ସ୍ୱରୂପରୂପଂ) ଅନନ୍ତଂ ବିଶ୍ୱତୋମୁଖଂ (ସର୍ବତୋଦେଦୀପ୍ୟମାନଂ) [ଐଶ୍ୱରଂ ରୂପଂ ଦର୍ଶୟାମାସ] ୧୦-୧୧ ।

**ଅର୍ଥ**—[କିପରି ରୂପ ? ସଞ୍ଜୟ ତାହା ବର୍ଣ୍ଣନା କରୁଚନ୍ତି]—(ସେ ଈଶ୍ୱର ରୂପରେ) ଅନେକ ମୁଖ, ଅନେକ ଚକ୍ଷୁ, ଅନେକ ବିଚିତ୍ର ଦୃଶ୍ୟ, ଅନେକ ଦିବ୍ୟ ଅଳଙ୍କାର ଓ ମାରିବାକୁ ଉଠାଇ ଧରି ହୋଇଥିବା ଅନେକ ଅସ୍ତ୍ରଶସ୍ତ୍ର, ପିନ୍ଧା ହୋଇଥିବା ଅନେକ ଦିବ୍ୟ ମାଳ୍ୟ ଓ ବସ୍ତ୍ର, ବୋଳା ହୋଇଥିବା ଅନେକ ଦିବ୍ୟ ସୁଗନ୍ଧ ଦ୍ରବ୍ୟ । ସେ ରୂପ ସବୁମନ୍ତେ ଆଶ୍ଚର୍ଯ୍ୟମୟ ହୋଇ ଦିବ୍ୟ ଜ୍ୟୋତିରେ ଝଟକୁଥିଲା । ଅନନ୍ତ ସେ ରୂପ ବିଶ୍ୱମୟ, ସବୁଠି ସବୁଆଡ଼େ ବିରାଜୁଥିଲା । ୧୦-୧୧ ।

**ଦିବି ସୂର୍ଯ୍ୟସହସ୍ରସ୍ୟ ଭବେଦ୍ ଯୁଗପଦୁତ୍ଥିତା ।**
**ଯଦି ଭାଃ ସଦୃଶୀ ସା ସ୍ୟାଦ୍ ଭାସସ୍ତସ୍ୟ ମହାତ୍ମନଃ ।୧୨।**

**ଅନ୍ୱୟ**—ଯଦି ଦିବି ସୂର୍ଯ୍ୟସହସ୍ରସ୍ୟ ଭାଃ ଯୁଗପତ୍ ଉତ୍ଥିତା ଭବେତ୍ [ ତର୍ହି ] ସା ତସ୍ୟ ମହାତ୍ମନଃ ଭାସଃ ସଦୃଶୀ ସ୍ୟାତ୍ । ୧୨ ।

**ଟୀକା**—[କିମଧିକେନ ବର୍ଣ୍ଣନେନ ]—ଯଦି ଦିବି ( ଆକାଶେ ) ସୂର୍ଯ୍ୟସହସ୍ରସ୍ୟ (ସହସ୍ରସୂର୍ଯ୍ୟାଣାଂ) ଭାଃ (ଦୀପ୍ତିଃ) ଯୁଗପତ୍ (ଏକଦା, ସହସା, ଏକତ୍ରୈବ) ଉତ୍ଥିତା (ଉଦ୍‌ଗତା) ଭବେତ୍, [ ତର୍ହି ] ସା (ଏବ ଭାଃ) ତସ୍ୟ (ବିଶ୍ୱରୂପିଣଃ) ମହାତ୍ମନଃ ଭାସଃ (ଦୀପ୍ତେଃ) ସଦୃଶୀ (ତୁଲ୍ୟା) [ବା] ସ୍ୟାତ୍ । ୧୨ ।

**ଅର୍ଥ**—[ ଅଧିକ ଆଉ କଣ କହିବ ]—ଆକାଶରେ ଯେବେ ହଜାର ଏକାବେଳକେ ସହସ୍ରସୂର୍ଯ୍ୟର ତେଜ ଉଠନ୍ତା, ତେବେ ଅବା ସେହି ସହସ୍ର ସୂର୍ଯ୍ୟତେଜ ସେହି ବିଶ୍ୱରୂପୀ ମହାତ୍ମାଙ୍କ ତେଜ ସଙ୍ଗେ କେତେକାଣି ସମାନ ହୁଅନ୍ତା । ୧୨ ।

**ତତ୍ରୈକସ୍ଥଂ ଜଗତ୍‌କୃତ୍ସ୍ନଂ ପ୍ରବିଭକ୍ତମନେକଧା ।**
**ଅପଶ୍ୟଦ୍ ଦେବଦେବସ୍ୟ ଶରୀରେ ପାଣ୍ଡବସ୍ତଦା ।୧୩।**

**ଅନ୍ୱୟ**—ତଦା ପାଣ୍ଡବଃ ଅନେକଧା ପ୍ରବିଭକ୍ତଂ କୃତ୍ସ୍ନଂ ଜଗତ୍ ତତ୍ର ଦେବଦେବସ୍ୟ ଶରୀରେ ଏକସ୍ଥଂ ଅପଶ୍ୟତ୍ । ୧୩ ।

**ଟୀକା**—ତଦା ପାଣ୍ଡବଃ (ଅର୍ଜୁନଃ) ଅନେକଧା ପ୍ରବିଭକ୍ତଂ କୃତ୍ସ୍ନଂ (ସମଗ୍ରଂ) ଜଗତ୍ ତତ୍ର ଦେବଦେବସ୍ୟ ଶରୀରେ (ଦେହେ) ଏକସ୍ଥଂ (ଏକତ୍ରାବସ୍ଥିତଂ) ଅପଶ୍ୟତ୍ । ୧୩ ।

**ଅର୍ଥ**—ସେତେବେଳେ ଅର୍ଜୁନ ସେହି ସର୍ବଦେବେଶ୍ୱର ଦେବଦେବଙ୍କ ଦେହରେ ଅଶେଷ ପ୍ରକାରରେ ପ୍ରକାଶ ପାଉଥିବା ଏହି ସମଗ୍ର ଜଗତକୁ ଏକାଠି ଥିବାର ଦେଖିଲେ । ୧୩ ।

**ତତଃ ସ ବିସ୍ମୟାବିଷ୍ଟୋ ହୃଷ୍ଟରୋମା ଧନଞ୍ଜୟଃ ।**
**ପ୍ରଣମ୍ୟ ଶିରସା ଦେବଂ କୃତାଞ୍ଜଳିରଭାଷତ ।୧୪।**

**ଅନ୍ୱୟ**—ତତଃ ବିସ୍ମୟାବିଷ୍ଟଃ, ହୃଷ୍ଟରୋମା ସଃ ଧନଞ୍ଜୟଃ କୃତାଞ୍ଜଳିଃ [ ସନ୍ ] ଦେବଂ ଶିରସା ପ୍ରଣମ୍ୟ ଅଭାଷତ । ୧୪ ।

**ଟୀକା**—ତତଃ ବିସ୍ମୟାବିଷ୍ଟଃ (ଆଶ୍ଚର୍ଯ୍ୟାନ୍ୱିତଃ) [ଅତଏବ] ହୃଷ୍ଟରୋମା (ରୋମାଞ୍ଚିତଦେହଃ) ସଃ ଧନଞ୍ଜୟଃ [ଭକ୍ତ୍ୟା] କୃତାଞ୍ଜଳିଃ (ବଦ୍ଧାଞ୍ଜଳିଃ) ସନ୍ ତଂ ଦେବଂ ଶିରସା ପ୍ରଣମ୍ୟ [ବକ୍ଷ୍ୟମାଣ ପ୍ରକାରେଣ] ଅଭାଷତ । ୧୪ ।

**ଅର୍ଥ**—ତହୁଁ ଅର୍ଜୁନ ବିସ୍ମୟରେ ଗଦ୍‌ଗଦ ହୋଇଗଲେ, ତାଙ୍କ ରୋମ ଟାଙ୍କୁରି ଉଠିଲା । ଏବେ ସେହି ଧନଞ୍ଜୟ ଯେହି ଦେବଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କରି ହାତ ଯୋଡ଼ି କହିଲେ । ୧୪ ।

ଅର୍ଜୁନ ଉବାଚ

**ପଶ୍ୟାମି ଦେବାଂସ୍ତବ ଦେବ ଦେହେ**
**ସର୍ବାଂସ୍ତଥା ଭୂତବିଶେଷସଂଘାନ୍ ।**
**ବ୍ରହ୍ମାଣମୀଶଂ କମଳାସନସ୍ଥ—**
**ମୃଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍ । ୧୫ ।**

**ଅନ୍ୱୟ**—ଦେବ ତବ ଦେହେ ସର୍ବାନ୍ ଦେବାନ୍, ତଥା ଭୂତବିଶେଷସଙ୍ଘାନ୍ ଈଶଂ, କମଳାସନସ୍ଥଂ ବ୍ରହ୍ମାଣଂ ସର୍ବାନ୍ ଋଷୀନ୍ ଚ ଦିବ୍ୟାନ୍ ଉରଗାନ ଚ ପଶ୍ୟାମି । ୧୫ ।

**ଟୀକା**—ଅର୍ଜୁନଃ ଉବାଚ—ହେ ଦେବ (ପ୍ରକାଶମୟ ପୁରୁଷ), ତବ ଦେହେ (ଇନ୍ଦ୍ରାଦୀନ୍) ସର୍ବାନ୍ ଦେବାନ୍, ତଥା ଭୂତବିଶେଷସଙ୍ଘାନ୍ (ବିଭିନ୍ନଭୂତସମୂହାନ୍) ଈଶଂ (ପ୍ରଜାନାଂ ଈଶ୍ୱରଂ) କମଳାସନସ୍ଥଂ (ପଦ୍ମଯୋନିଂ) ବ୍ରହ୍ମାଣଂ [ଯଦ୍ୱା ବ୍ରହ୍ମାଣଂ ଚ, ଈଶଂ ମହେଶ୍ୱରଂ ରୁଦ୍ରଂ ଚ କମଳାୟାଃ ସମୀପେ କ୍ରୋଡ଼େ ବା ଶୟାନଂ ବିଷ୍ଣୁଂ ଚ] ସର୍ବାନ୍ [ଭୃଗ୍ୱାଦୀନ୍] ଋଷୀନ୍ ଚ, [ଶେଷାଦୀନ୍] ଦିବ୍ୟାନ୍ ଉରଗାନ୍ ସର୍ପାନ୍ ଚ ପଶ୍ୟାମି । ୧୫ ।

**ଅର୍ଥ**—ଅର୍ଜୁନ କହିଲେ—

ଦେବ ହେ ବିଶ୍ୱପ୍ରକାଶ,
ଦେଖଇ ମୁଁ ଦେହେ ତବ ସର୍ବ ଦେବଗଣେ;
ଦଳେ ଦଳେ ଦେଖେ ପୁଣି [ଯେତେ ଜୀବଜନ୍ତୁ
ତରୁ ତୃଣ ନଦୀ ଗିରି ଗ୍ରହତାରା ଆଦି]
ମାରି ସୃଷ୍ଟିଯାକ ସବୁ; ପୁଣି ଏହି ବ୍ରହ୍ମା
ପ୍ରଜାପତି ପଦ୍ମଯୋନି, ସର୍ବ ଋଷିକୁଳ
ଏହି ଏହି ଦିବ୍ୟରୁଚି ଦିଦିବ ଉରଗେ । ୧୫ ।

**ଅନେକବାହୂଦରବକ୍ତ୍ରନେତ୍ରଂ**
**ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପମ୍ ।**
**ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ**
**ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପ । ୧୬ ।**

**ଅନ୍ୱୟ**—ସ୍ପଷ୍ଟ । ୧୬ ।

**ଟୀକା**—ହେ ବିଶ୍ୱେଶ୍ୱର, ହେ ବିଶ୍ୱରୂପ, ଅନେକବାହୂଦରବକ୍ତ୍ରନେତ୍ରଂ (ବହୁହସ୍ତୋଦରମୁଖଚକ୍ଷୁଷଂ) ଅନନ୍ତରୂପଂ ତ୍ୱାଂ ସର୍ବତଃ (ପଶ୍ୟାମି) । ପୁନଃ ନ ତବ ଅନ୍ତଂ, ନ ମଧ୍ୟଂ ନ ଆଦିଂ [ଚ] ପଶ୍ୟାମି । ୧୬ ।

**ଅର୍ଥ**—ବିଶ୍ୱେଶ୍ୱର, ବିଶ୍ୱରୂପ, ଯହିଁ ଚାହେଁ ତହିଁ
ଅଶେଷ ହେ ବହୁମୁଖ ଉଦର ନୟନ
ଅନନ୍ତ ସେ ରୂପେ ତବ, କିନ୍ତୁ କାହିଁ ଦେବ !
ଆଦି ମଧ୍ୟ ଅନ୍ତ ତବ ନ ଦେଖଇ କିଛି । ୧୬ ।

କିରୀଟିନଂ ଗଦିନଂ ଚକ୍ରିଣଂ ଚ
ତେଜୋରାଶିଂ ସର୍ବତୋ ଦୀପ୍ତିମନ୍ତମ୍ ।
ପଶ୍ୟାମି ତ୍ୱାଂ ଦୁର୍ନିରୀକ୍ଷ୍ୟଂ ସମନ୍ତାତ୍‌
ଦୀପ୍ତାନଲାର୍କ ଦ୍ୟୁତିମପ୍ରମେୟମ୍ । ୧୭ ।

**ଅନ୍ୱୟ**—କିରୀଟିନଂ, ଗଦିନଂ, ଚକ୍ରିଣଂ, ଚ ସର୍ବତଃ ଦୀପ୍ତିମନ୍ତଂ ତେଜୋରାଶିଂ ତ୍ୱାଂ ଦୀପ୍ତାନଲାର୍କଦ୍ୟୁତିଂ ସମନ୍ତାତ୍ ଦୁର୍ନିରୀକ୍ଷ୍ୟଂ ଅପ୍ରମେୟଂ ପଶ୍ୟାମି । ୧୭ ।

**ଟୀକା**—କିରୀଟିନଂ (ମୁକୁଟବନ୍ତଂ) ଗଦିନ (ଗଦାଧରଂ) ଚକ୍ରିଣଂ (ଚକ୍ରହସ୍ତଂ) ଚ ସର୍ବତଃ ଦୀପ୍ତିମନ୍ତଂ (ଭୂୟଃ ପ୍ରକାଶମାନଂ) ତେଜୋରାଶିଂ (ପ୍ରଭା-ପୁଞ୍ଜୋଜ୍ଜ୍ୱଳଂ) ତ୍ୱାଂ ଦୀପ୍ତାନଲାର୍କଦ୍ୟୁତିଂ (ସମିଦ୍ଧାଗ୍ନି ଚଣ୍ଡସୂର୍ଯ୍ୟତେଜସଂ) ସମନ୍ତାତ୍ (ସର୍ବତଃ) ଦୁର୍ନିରୀକ୍ଷ୍ୟଂ (ଦୁର୍ଦ୍ଦର୍ଶଂ) ଅପ୍ରମେୟଂ (ଇୟତ୍ତୟା ଇଦୃକ୍‌ତୟା ଚ ଅନବଧାର୍ଯ୍ୟଂ, ଅକଳନୀୟଂ) ପଶ୍ୟାମି । ୧୭ ।

**ଅର୍ଥ**—ଏହି ତ ମୁକୁଟ ଶିରେ, କରେ ଚକ୍ର ଗଦା,
ବିଶ୍ୱତେଜପୁଞ୍ଜମୟ ଦୀପ୍ତିରେ ଝଟକେ,
ଦୀପ୍ତ ହୁତାଶନ ପୁଣି ପ୍ରଚଣ୍ଡ ମାର୍ତ୍ତଣ୍ଡ
ସମ ଜଳେ ଦଶି ଦିଶି, ଝଲସେ ନୟନ,
ଯହିଁ ତହିଁ ସବୁ ତୁମ୍ଭ ଅକଳନରୂପ । ୧୭ ।

ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ
ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା
ସନାତନସ୍ତ୍ୱଂ ପୁରୁଷୋ ମତୋ ମେ । ୧୮ ।

**ଅନ୍ୱୟ**—ସ୍ପଷ୍ଟ । ୧୮ ।

**ଟୀକା**—[ଯସ୍ମାତ୍ ଅପ୍ରମେୟଂ ତେ ଐଶ୍ୱର୍ଯ୍ୟଂ, ତସ୍ମାତ୍]—ତ୍ୱାଂ ଅକ୍ଷରଂ (ନିତ୍ୟଂ) ପରମଂ (ସର୍ବଶ୍ରେଷ୍ଠଂ) ବେଦିତବ୍ୟଂ (ଜ୍ଞାତବ୍ୟଂ) ତ୍ୱଂ ଅସ୍ୟ ବିଶ୍ୱସ୍ୟ ପରଂ (ସର୍ବୋପରିଷ୍ଟଂ, ସୂକ୍ଷ୍ମତମଂ) ନିଧାନଂ (ଆଶ୍ରୟଃ, ଆଧାରଃ) । ତ୍ୱଂ ଅବ୍ୟୟଃ (ଅବିନାଶୀ) ଶାଶ୍ୱତଧର୍ମଗୋପ୍ତା (ନିତ୍ୟବୈଦିକଧର୍ମସ୍ୟ ପାଳକଃ) । ତ୍ୱଂ ସନାତନଃ (ନିତ୍ୟବର୍ତ୍ତମାନଃ) ପୁରୁଷଃ ମେ (ମମ) ମତଃ । ୧୮ ।

**ଅର୍ଥ**—ବୁଝିବ ଅକ୍ଷର ତୁମ୍ଭେ ( ଏ ବିଶ୍ୱବିକାଶେ—
ଭୂତଭାବେ—ଅଖଣ୍ଡ ଯେ ଲୟ ଉପଚୟେ—
ଅଚଳ ଅଟଳ ସ୍ଥିର) । ପରମ ସେ ତତ୍ତ୍ୱ—
ବିଦ୍ୟାର ଚରମଗତି । ତୁମ୍ଭେ ପୁଣି ବିଭୋ,
ବ୍ୟକ୍ତ ଏ ନିଖିଳ ବିଶ୍ୱ ପରମ ଆଶ୍ରୟ;
ଅବ୍ୟକ୍ତ ହେ ଅବିନାଶୀ, ଶାଶ୍ୱତ ନିୟମ
ଧର୍ମ, ଚଳାଉଛ ସବୁ, ସନାତନ ତୁମ୍ଭେ
(ସର୍ବବୃଦ୍ଧିକ୍ଷୟେ ପୁଣି ନିତ୍ୟ ନବ ନବ);
ତେବେହେଁ ପୁରୁଷ ତୁମ୍ଭେ (ପ୍ରୀତି ଅନୁଗ୍ରହେ
ମାନବୀୟ ଭାବେ, ପୁଣି, ଭକ୍ତର ଦେବତା) । ୧୮ ।

**ଅନାଦିମଧ୍ୟାନ୍ତମନନ୍ତବୀର୍ଯ୍ୟ—**
**ମନନ୍ତବାହୁଂ ଶଶିସୂର୍ଯ୍ୟନେତ୍ରମ୍ ।**
**ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ**
**ସ୍ୱତେଜସା ବିଶ୍ୱମିଦଂ ତପନ୍ତମ୍ । ୧୯ ।**

**ଅନ୍ୱୟ**—ସ୍ପଷ୍ଟ । ୧୯ ।

**ଟୀକା**—ଅନାଦିମଧ୍ୟାନ୍ତଂ (ଆଦିମଧ୍ୟାନ୍ତଶୂନ୍ୟଂ) ଅନନ୍ତବୀର୍ଯ୍ୟଂ (ଅଶେଷପ୍ରଭାବଂ) ତ୍ୱାଂ ଅନନ୍ତବାହୁଂ (ଅନନ୍ତବାହୁମନ୍ତଂ) ଶଶିସୂର୍ଯ୍ୟନେତ୍ରଂ (ଶଶିସୂର୍ଯ୍ୟୌ ନେତ୍ରେ ଯସ୍ୟ; ତାଦୃଶଂ) ଦୀପ୍ତହୁତାଶବକ୍ତ୍ରଂ (ପ୍ରଦୀପ୍ତାନଳମୁଖଂ) ସ୍ୱତେଜସା ଇଦଂ ବିଶ୍ୱଂ (ଜଗତ୍) ତପନ୍ତଂ (ସନ୍ତାପୟନ୍ତଂ) ପଶ୍ୟାମି । ୧୯ ।

**ଅର୍ଥ**—ନାହିଁ ଆଦି ନାହିଁ ଅନ୍ତ ନାହିଁ ମଧ୍ୟ କିଛି
ଅନନ୍ତ ପ୍ରଭାବ ତବ, ଅଗଣିତ ବାହୁ,
[ଦିଶେ ବିଶ୍ୱସାରା ଭରି]; ଚନ୍ଦ୍ରମା ତପନ
ଚକ୍ଷୁ ତବ; ପ୍ରଜ୍ୱଳିତ କାଳ ହୁତାଶନ
ଦପଦପି ଜଳେ ମୁଖ; ସନ୍ତାପିତ ଅତି
ପ୍ରଚଣ୍ଡ ସେ ତେଜେ ତବ ଏ ନିଖିଳ ବିଶ୍ୱ । ୧୯ ।

**ଦ୍ୟାବାପୃଥିବ୍ୟୋରିଦମନ୍ତରଂ ହି**
**ବ୍ୟାପ୍ତଂ ତ୍ୱୟୈକେନ ଦିଶଶ୍ଚ ସର୍ବାଃ ।**
**ଦୃଷ୍ଟ୍ୱାଦ୍‌ଭୁତଂ ରୂପମିଦଂ ତବୋଗ୍ରଂ**
**ଲୋକତ୍ରୟଂ ପ୍ରବ୍ୟଥିତଂ ମହାତ୍ମନ୍ । ୨୦ ।**

**ଅନ୍ୱୟ**—ଦ୍ୟାବାପୃଥିବ୍ୟୋଃ ଇଦଂ ଅନ୍ତରଂ ହି ଏକେନ ତ୍ୱୟା ବ୍ୟାପ୍ତମ୍, ସର୍ବାଃ ଦିଶଃ ଚ [ବ୍ୟାପ୍ତାଃ]। ମହାତ୍ମନ୍ ! ତବ ଇଦଂ ଅଦ୍ଭୁତଂ ଉଗ୍ରଂ ରୂପଂ ଦୃଷ୍ଟ୍ୱା ଲୋକତ୍ରୟଂ ପ୍ରବ୍ୟଥିତଂ ଭବତି । ୨୦ ।

**ଟୀକା**—ଦ୍ୟାବାପୃଥିବ୍ୟୋଃ (ସ୍ୱର୍ଗଧରାତଳୟୋଃ) ଇଦଂ [ବ୍ୟୋମରୂପଂ] ଅନ୍ତରଂ (ଏନ୍ତରାଳଂ) ହି (ନିଶ୍ଚିତଂ) ଏକେନ ତ୍ୱୟା ବ୍ୟାପ୍ତମ୍, ସର୍ବାଃ ଦିଶଃ ଚ [ବ୍ୟାପ୍ତାଃ]। ହେ ମହାତ୍ମନ୍, ତବ ଇଦଂ ଅଦ୍ଭୁତଂ ( ବିସ୍ମୟକରଂ, ଅଲୌକିକଂ) ଉଗ୍ରଂ (ପ୍ରଚଣ୍ଡଂ) ରୂପଂ ଦୃଷ୍ଟ୍ୱା ଲୋକତ୍ରୟଂ ( ସ୍ୱର୍ଗମର୍ତ୍ତ୍ୟପାତାଳଂ ) ପ୍ରବ୍ୟଥିତଂ (ସନ୍ତପ୍ତଂ) [ଭବତି] । ୨୦ ।

**ଅର୍ଥ**—ସ୍ୱର୍ଗ ମର୍ତ୍ତ୍ୟ ବ୍ୟବଧାନ ମହାବ୍ୟୋମ ଭରି,
ଭରି ପୁଣି ବିଶାଳ ଏ ପୂର୍ଣ୍ଣ ଦିଗଦିଗ
ଏକା ତୁମ୍ଭେ, [କେହି ଆଉ ନ ଦିଶଇ କାହିଁ]
ହେ ମହାତ୍ମା, ଅଦ୍ଭୁତ ଏ ଉଗ୍ର ରୂପ ତବ
ଦେଖି କ୍ଷିନ୍ନ ଦ୍ୟାବାଭୂମି, ବ୍ୟଥିତ ପାତାଳ । ୨୦ ।

**ଅମୀ ହି ତ୍ୱାଂ ସୁରସଂଘା ବିଶନ୍ତି ।**
**କେଚିଦ୍‌ଭୀତାଃ ପ୍ରାଞ୍ଜଳୟୋ ଗୃଣନ୍ତି**
**ସ୍ୱସ୍ତୀତ୍ୟୁକ୍ତ୍ୱା ମହର୍ଷିସିଦ୍ଧସଂଘାଃ**
**ସ୍ତୁବନ୍ତି ତ୍ୱାଂ ସ୍ତୁତିଭିଃ ପୁଷ୍କଳାଭିଃ । ୨୧ ।**

**ଅନ୍ୱୟ**—ଅମୀ ହି ସୁରସଂଘାଃ ତ୍ୱାଂ ବିଶନ୍ତି । କେଚିତ୍ ଭୀତାଃ ପ୍ରାଞ୍ଜଳୟଃ ଗୃଣନ୍ତି । ମହର୍ଷିସିଦ୍ଧସଂଘାଃ ସ୍ୱସ୍ତି ଇତି ଉକ୍ତ୍ୱା ପୁଷ୍କଳାଭିଃ ସ୍ତୁତିଭିଃ ତ୍ୱାଂ ସ୍ତୁବନ୍ତି । ୨୧ ।

**ଟୀକା**—ଅମୀ ( ଏତେ ଦୃଶ୍ୟମାନାଃ ) ହି (ନିଶ୍ଚିତଂ, ଉପସ୍ଥିତାଃ ବା) ସୁରସଂଘାଃ (ଦେବସମୂହାଃ) ତ୍ୱାଂ (ତବାନ୍ତଃ) ବିଶନ୍ତି; [ଅପରେ] କେଚିତ୍ ଭୀତାଃ [ସନ୍ତଃ] ପ୍ରାଞ୍ଜଳୟଃ (କୃତାଞ୍ଜଳିପୁଟାଃ)[ତ୍ୱାଂ] ଗୃଣନ୍ତି (ଗୁଣଗାନେନ ଅଭୟଂ ପ୍ରାର୍ଥୟନ୍ତେ); ମହର୍ଷିସିଦ୍ଧସଂଘାଃ (ମହର୍ଷିସିଦ୍ଧପୁରୁଷସମୂହାଃ) ସ୍ୱସ୍ତି (ମଙ୍ଗଳଂ ଅସ୍ତୁ) ଇତି ଉକ୍ତ୍ୱା ପୁଷ୍କଳାଭିଃ (ସମ୍ପୂର୍ଣ୍ଣାଭିଃ) ସ୍ତୁତିଭିଃ ତ୍ୱାଂ ସ୍ତୁବନ୍ତି । ୨୧ ।

**ଅର୍ଥ**—ଏହି ତ ଏ ଦେବ ଦଳ ଯାଉଛନ୍ତି ପଶି
[କାହିଁ ଲୁଚି] ଦେହେ ତବ; ଭୟେ ପୁଣି କେତେ
କର ଯୋଡ଼ି ଯାହି ଯାହି ଡ଼ାକୁଛନ୍ତି ଉଚ୍ଚେ,
ମହାଋଷି ସିଦ୍ଧଗଣ ସ୍ୱସ୍ତି ସ୍ୱସ୍ତି କହି
ବିଶ୍ୱବନ୍ଦ୍ୟ ଗୁରୁସ୍ତବେ କରେ ତବ ସ୍ତୁତି । ୨୧ ।

ରୁଦ୍ରାଦିତ୍ୟା ବସବୋ ଯେ ଚ ସାଧ୍ୟା
ବିଶ୍ୱେଽଶ୍ୱିନୌ ମରୁତଶ୍ଚୋଷ୍ମପାଶ୍ଚ ।
ଗନ୍ଧର୍ବଯକ୍ଷାସୁରସିଦ୍ଧସଂଘା
ବୀକ୍ଷନ୍ତେ ତ୍ୱାଂ ବିସ୍ମିତାଶ୍ଚୈବ ସର୍ବେ । ୨୨ ।

**ଅନ୍ୱୟ**—ରୁଦ୍ରାଦିତ୍ୟାଃ ବସବଃ, ଯେ ଚ ସାଧ୍ୟା, ବିଶ୍ୱେ [ଦେବାଃ] ଅଶ୍ୱିନୌ (ଅଶ୍ୱିନୀକୁମାରୌ, ସ୍ୱର୍ବୈଦ୍ୟୌ) ମରୁତଃ ଚ ଊଷ୍ମପାଃ ଗନ୍ଧର୍ବ ଯକ୍ଷାସୁରସିଦ୍ଧସଂଘାଃ [ଏତେ] ସର୍ବେ ଚ ବିସ୍ମିତାଃ ଏବ ତ୍ୱାଂ ବୀକ୍ଷନ୍ତେ । ୨୨ ।

**ଟୀକା**—ରୁଦ୍ରାଦିତ୍ୟାଃ, ବସବଃ, ଯେ ଚ ସାଧ୍ୟାଃ (ସାଧ୍ୟା ଇତ୍ୟଭିଧାଃ ଦେବଗଣାଃ), ବିଶ୍ୱେ [ଦେବାଃ] ଅଶ୍ୱିନୌ (ଅଶ୍ୱିନୀକୁମାରୌ, ସ୍ୱର୍ବୈଦ୍ୟୌ) ମରୁତଃ (ବାୟୁଦେବାଃ) ଚ ଊଷ୍ମପାଃ (ଊଷ୍ମାଣଂ ପିବନ୍ତୀତି, ପିତରଃ) ଚ ଗନ୍ଧର୍ବଯକ୍ଷାସୁରସିଦ୍ଧ-ସଂଘାଃ (ଏତେ ନାମ ଦେବଗାଃ ଅତ୍ର ଅସୁରଃ, ଦେବଗଣବିଶେଷଃ) ସର୍ବେ ଚ ବିସ୍ମିତାଃ (ଆଶ୍ଚର୍ଯ୍ୟାନ୍ୱିତାଃ) ଏବ ତ୍ୱାଂ ବୀକ୍ଷନ୍ତେ । ୨୨ ।

**ଅର୍ଥ**— ରୁଦ୍ରାଦିତ୍ୟ ବସୁ ପୁଣି ସାଧ୍ୟ ଯେଉଁମାନେ,
ଯେ ସରବେ, ବିଶ୍ୱଦେବା, ଅଶ୍ୱିନୀକୁମାର,
ମରୁଦ୍‌ଗଣ, ଊଷ୍ମଭୋଜୀ ପିତୃଗଣ ପୁଣି,
ଗନ୍ଧର୍ବ, ଅସୁର, ଯକ୍ଷ, ସିଦ୍ଧ ଦଳେ ଦଳେ,
ସରବେ ବିସ୍ମୟେ ବୁଡ଼ି ରହିଚନ୍ତି ଗୁହିଁ
ତବ ରୂପ ସ୍ଥିରନେତ୍ରେ ଚକ୍ଷାର୍ପିତ ପର । ୨୨ ।

ବ୍ୟାଖ୍ୟା ସୂଚନା—ଶ୍ରାଦ୍ଧରେ ପିତୃମାନଙ୍କୁ ଯେଉଁ ଅନ୍ନ ଦିଆଯାଏ, ତାହା ଉଷ୍ଣ ଥିବାତକ ପିତୃମାନେ ଗ୍ରହଣ କରନ୍ତି ବୋଲି, ପିତୃମାନଙ୍କୁ ଊଷ୍ମଭୋଜୀ କୁହାଯାଏ । ଦେଖିବାର ଅଛି, ଅସୁରଙ୍କୁ ଏଠାରେ ଦେବଙ୍କ ଭିତରେ ଗଣା ଯାଇଚି । ଋଗ୍‌ବେଦରେ ଅଛି, ଅସୁର ଓ ଦେବ—ଦୁହେଁ ଏକା । (୭—୩୬.୫. ୧; ୧.୩୫.୭; ୧.୨୪.୧୪; ୧. ୨୫.୮ ଦେଖ) । ୨୨ ।

ରୂପଂ ମହତ୍ତେ ବହୁବକ୍ତ୍ରନେତ୍ରଂ
ମହାବାହୋ ବହୁବାହୂରୁପାଦମ୍ ।
ବହୂଦରଂ ବହୁଦଂଷ୍ଟ୍ରାକରାଳଂ
ଦୃଷ୍ଟ୍ୱା ଲୋକାଃ ପ୍ରବ୍ୟଥିତାସ୍ତଥାହମ୍ । ୨୩ ।

**ଅନ୍ୱୟ**—ସ୍ପଷ୍ଟ । ୨୩ ।

**ଟୀକା**—ହେ ମହାବାହୋ, ତେ (ତବ) ବହୁବକ୍ତ୍ରନେତ୍ରଂ, ବହୁବାହୂରୁପାଦଂ, ବହୂଦରଂ ବହୁଦଂଷ୍ଟ୍ରାକରାଳଂ (ବହୁଦନ୍ତୈଃ ଭୀଷଣଂ) ମହତ୍ ରୂପଂ ଦୃଷ୍ଟ୍ୱା ଲୋକାଃ (ଭୁବନାନି) ପ୍ରବ୍ୟଥିତାଃ । ଅହଂ [ଏବ] ତଥା [ପ୍ରବ୍ୟଥିତଃ] । ୨୩ ।

**ଅର୍ଥ**— ଅଶେଷ ବଦନ ନେତ୍ର, ବାହୁଜଂଘପାଦେ
ଅଗଣିତ, ଅକଳିତ ଉଦର ବହୁରେ,
ଗୁରୁ ତୀକ୍ଷ୍ଣ ଦନ୍ତମାଳେ ବିକରାଳ ଅତି
ସୁବିଶାଳ ରୂପ ତବ ଦେଖି ମହାବାହୁ,
ବ୍ୟଥିତ ଭୁବନରାଶି; [ଅକିଞ୍ଚନ ମୁହିଁ]
ବ୍ୟଥିତ ବ୍ୟାକୁଳ [ସେ ବା କି ବଚନ କଥା] । ୨୩ ।

ବ୍ୟାଖ୍ୟା ସୂଚନା—ବିଶ୍ୱମୟ ରୂପ ଦେଖୁ ଦେଖୁ ସେଥିରେ ମହାଧ୍ୱଂସଲୀଳା କ୍ରମେ ପ୍ରକଟିତ ହୋଇ ଉଠିଲା । ଅର୍ଜୁନ କ୍ରମେ ଦେଖିଲେ, ଯାହା ଏତେ ସୁନ୍ଦର ସୃଷ୍ଟି ବୋଲି ପ୍ରକାଶରେ ଦୀପ୍ତ, ତତ୍ତ୍ୱ ଦୃଷ୍ଟିରେ ସେ ସେପରି କି ଖାଲି ଧ୍ୱଂସର ଏକ ମହାଲୀଳା ଯଥାର୍ଥରେ ଜଗତର ପ୍ରତ୍ୟେକ ବସ୍ତୁ ପ୍ରତିମୁହୂର୍ତ୍ତରେ ନୂଆ ହେଉଛି, କିଛି ରହୁନାହିଁ; ସବୁ ଧ୍ୱଂସ ହୋଇ ଯାଉଛି । ଏହାହିଁ ବୌଦ୍ଧଙ୍କ କ୍ଷଣିକ ବାଦ ।

**ନଭଃସ୍ପୃଶଂ ଦୀପ୍ତମନେକବର୍ଣ୍ଣଂ**
**ବ୍ୟାତ୍ତାନନଂ ଦୀପ୍ତବିଶାଳନେତ୍ରମ୍ ।**
**ଦୃଷ୍ଟ୍ୱା ହି ତ୍ୱାଂ ପ୍ରବ୍ୟଥିତାନ୍ତରାତ୍ମା**
**ଧୃତିଂ ନ ବିନ୍ଦାମି ଶମଂ ଚ ବିଷ୍ଣୋ । ୨୪ ।**

**ଅନ୍ୱୟ**—ବିଷ୍ଣୋ ! ନଭଃସ୍ପୃଶଂ, ଦୀପ୍ତଂ, ଅନେକବର୍ଣ୍ଣଂ ବ୍ୟାତ୍ତାନନଂ, ଦୀପ୍ତବିଶାଳନେତ୍ରଂ ତ୍ୱାଂ ଦୃଷ୍ଟ୍ୱା ହି ପ୍ରବ୍ୟଥିତାନ୍ତରାତ୍ମା ଧୃତିଂ ଶମଂ ଚ ନ ବିନ୍ଦାମି । ୨୪ ।

**ଟୀକା**—ହେ ବିଷ୍ଣୋ (ବିଶ୍ୱବ୍ୟାପିନ୍), ନଭଃସ୍ପୃଶଂ (ଆବ୍ୟୋମବ୍ୟାପିନଂ) ଦୀପ୍ତଂ (ତେଜୋମୟଂ) ଅନେକବର୍ଣ୍ଣଂ ବ୍ୟାତ୍ତାନନଂ (ବିବୃତମୁଖଂ) ଦୀପ୍ତବିଶାଳନେତ୍ରଂ ତ୍ୱାଂ ଦୃଷ୍ଟ୍ୱା ହି (ନିଶ୍ଚିତଂ) [ଅହଂ] ପ୍ରବ୍ୟଥିତାନ୍ତରାତ୍ମା [ସନ୍] ଧୃତିଂ (ଧୈର୍ଯ୍ୟଂ,ଧାରଣାଂ) ଶମଂ (ଶାନ୍ତିଂ) ଚ ନ ବିନ୍ଦାମି (ଅନୁଭବାମି) । ୨୪ ।

**ଅର୍ଥ**— ବିଶ୍ୱବ୍ୟାପୀ ଦେବତା ହେ, ଗଗନପରଶୀ
ବହୁବର୍ଣ୍ଣ-ବିଭାସ୍ୱର ଦୀପ୍ତ ରୁଦ୍ର ରୂପ
ବିଶ୍ୱଗ୍ରାସୀ ମୁଖ ମେଲି ଗ୍ରହିଁଚ ଜଗତି
ଜ୍ୱଳନ୍ତ ବିଶାଳ ନେତ୍ରେ; ପ୍ରଚଣ୍ଡ ଏ ରୂପ
ଦେଖି ଅନ୍ତରାତ୍ମା ମମ ବ୍ୟଥା-ବିଲୋଡ଼ିତ
ନ ପାରେ ମୁଁ ଧୈର୍ଯ୍ୟ ରଖି, ନାହିଁ ଶାନ୍ତ ମନ । ୨୪ ।

**ଦଂଷ୍ଟ୍ରାକରାଳାନି ଚ ତେ ମୁଖାନି**
**ଦୃଷ୍ଟ୍ୱୈବ କାଳାନଳସନ୍ନିଭାନି ।**
**ଦିଶୋ ନ ଜାନେ ନ ଲଭେ ଚ ଶର୍ମ**
**ପ୍ରସୀଦ ଦେବେଶ ଜଗନ୍ନିବାସ ! । ୨୫ ।**

**ଅନ୍ୱୟ**—ସ୍ପଷ୍ଟ । ୨୫ ।

**ଟୀକା**—ଦଂଷ୍ଟ୍ରାକରାଳାନି (ଦନ୍ତୈଃ ଭୟଂକରାଣି) କାଳାନଳସନ୍ନିଭାନି (ପ୍ରଳୟାଗ୍ନିବତ୍ ସର୍ବଗ୍ରାସୀନି) ଚ ତେ (ତବ) ମୁଖାନି ଦୃଷ୍ଟ୍ୱା ଏବ [କ୍ୱାହଂ କ୍ୱ ଯାମୀତ୍ୟାଦି] ଦିଶଃ ନ ଜାନେ, ଶର୍ମ (ସ୍ଥୈର୍ଯ୍ୟସୁଖଂ) ଚ ନ ଲଭେ । ହେ ଦେବେଶ, ହେ ଜଗନ୍ନିବାସ, ପ୍ରସୀଦ (ପ୍ରସନ୍ନୋ ଭବ) । ୨୫ ।

**ଅର୍ଥ**— ଦନ୍ତେ ବିକରାଳ, କାଳ ଅନଳ ସଦୃଶ
ଦେଖି ତବ ମୁଖମାଳ [ବ୍ୟକ୍ତ ଦିଶି ଦିଶି],
ନ ଦିଶେ ଦିଗ୍‌ଦେଶ ମୋରେ, ନ ଲଭଇ ସ୍ଥିତି;
(କି କରିବି, କାହିଁ ଯିବି, ନଜାଣଇ କିଛି,
ଅଥୟ ଲଗଇ ଅଛି); ଆହେ ଦେବେଶ୍ୱର,
ଜଗତ ଆଶ୍ରୟ, ଏବେ ହୁଅ ସୁପ୍ରସନ୍ନ । ୨୫ ।

**ଅମୀ ଚ ତ୍ୱାଂ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ**
**ସର୍ବେ ସହୈବାବନିପାଳସଂଘୈଃ ।**
**ଭୀଷ୍ମୋ ଦ୍ରୋଣଃ ସୂତପୁତ୍ରସ୍ତଥାଽସୌ**
**ସହାସ୍ମଦୀୟୈରପି ଯୋଧମୁଖ୍ୟୈଃ । ୨୬ ।**
**ବକ୍ତ୍ରାଣି ତେ ତ୍ୱରମାଣା ବିଶନ୍ତି**
**ଦଂଷ୍ଟ୍ରାକରାଳାନି ଭୟାନକାନି ।**
**କେଚିଦ୍ ବିଲଗ୍ନା ଦଶନାନ୍ତରେଷୁ**
**ସଂଦୃଶ୍ୟନ୍ତେ ଚୂର୍ଣ୍ଣିତୈରୁତ୍ତମାଙ୍ଗୈଃ । ୨୭ ।**

**ଅନ୍ୱୟ**—ଅବନିପାଳସଙ୍ଘୈଃ ସହ ଏବ ଅମୀ ଚ ସର୍ବେ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ, ଅସ୍ମଦୀୟୈଃ ଯୋଧମୁଖ୍ୟୈଃ ସହ ଅପି ଭୀଷ୍ମଃ, ଦ୍ରୋଣଃ ତଥା ଅସୌ ସୂତପୁତ୍ରଃ (ଏତେ) ତ୍ୱରମାଣାଃ (ସନ୍ତଃ) ତ୍ୱାଂ ତେ ଦଂଷ୍ଟ୍ରା-କରାଳାନି ଭୟାନକାନି ବକ୍ତ୍ରାଣି ବିଶନ୍ତି କେଚିତ୍ ଦଶନାନ୍ତରେଷୁ ବିଲଗ୍ନାଃ (ସନ୍ତଃ) ଚୂର୍ଣ୍ଣିତୈଃ ଉତ୍ତମାଙ୍ଗୈଃ (ଉପଲକ୍ଷିତାଃ) ସନ୍ଦୃଶ୍ୟନ୍ତେ । ୨୬-୨୭ ।

**ଟୀକା**—ଅବନିପାଳସଙ୍ଘୈଃ (ନୃପତିସମୂହୈଃ) ସହ ଏବ ଅମୀ ଚ ସର୍ବେ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ, ଅସ୍ମଦୀୟୈଃ (ଅସ୍ମାକୀନୈଃ) ଯୋଧମୁଖ୍ୟୈଃ (ସେନା-ନାୟକୈଃ) ସହ ଅପି ଭୀଷ୍ମଃ, ଦ୍ରୋଣଃ ତଥା ଅସୌ ସୂତପୁତ୍ରଃ (କର୍ଣ୍ଣଃ) (କୌରବଯୋଧମୁଖ୍ୟାଃ, ଇତି-ଭାବଃ) ତ୍ୱରମାଣାଃ (ସବେଗାଃ) [ସନ୍ତଃ] ତ୍ୱାଂ—ତେ (ତବ) ଦଂଷ୍ଟ୍ରାକରାଳାନି ଭୟାନକାନି ବକ୍ତ୍ରାଣି ବିଶନ୍ତି । କେଚିତ୍ [ତେଷାଂ ମଧ୍ୟେ] ଦଶନାନ୍ତରେଷୁ (ଦନ୍ତମଧ୍ୟେ) ବିଲଗ୍ନାଃ [ସନ୍ତଃ] ଚୂର୍ଣ୍ଣିତୈଃ (ଚର୍ବିତୈଃ) ଉତ୍ତମାଙ୍ଗୈଃ (ଶିରୋଭିଃ) [ଉପଲକ୍ଷିତାଃ] ସନ୍ଦୃଶ୍ୟନ୍ତେ । ୨୬-୨୭ ।

**ଅର୍ଥ**— ଏହି ତ ସରବେ ପୁଣି ଧୃତରାଷ୍ଟ୍ର ସୁତ
ସଙ୍ଗେ ଘେନି ଦଳେ ଦଳେ ସର୍ବ ରାଜବୀରେ,
ଏହି ଭୀଷ୍ମ, ଏହି ଦ୍ରୋଣ, ଏହି ତ ସେ କର୍ଣ୍ଣ
ସଙ୍ଗେ ସଙ୍ଗେ ଆମର ଏ ମୁଖ୍ୟ ବୀର ଯେତେ,
କି ବେଗେ ଯାଆନ୍ତି ପଶି ମହାଭୟଙ୍କର
ଦନ୍ତେ ବିକଟାଳ ଏହି ତୁଣ୍ଡମାନେ ତବ ।
[ଗରଭେ ନ ଯାଇଁ ପୁଣି] ଦଶନ ପେଷଣେ
ପଡ଼ି କେତେ ଦିଶନ୍ତି ହୋଇ ବିଚୂର୍ଣ୍ଣ କପାଳେ । ୨୬-୨୭ ।

ଯଥା ନଦୀନାଂ ବହବୋଽମ୍ବୁବେଗାଃ
ସମୁଦ୍ରମେବାଭିମୁଖା ଦ୍ରବନ୍ତି ।
ତଥା ତବାମୀ ନରଲୋକବୀରା
ବିଶନ୍ତି ବକ୍ତ୍ରାଣ୍ୟଭିତୋ ଜ୍ୱଳନ୍ତି । ୨୮ ।

**ଅନ୍ୱୟ**—ସ୍ପଷ୍ଟ । ୨୮ ।

**ଟୀକା**—ଯଥା ନଦୀନାଂ ବହବଃ ଅମ୍ବୁବେଗାଃ (ବାରିପ୍ରବାହାଃ) ସମୁଦ୍ରଂ ଅଭିମୁଖାଃ [ସନ୍ତଃ, ତତ୍ର ସମୁଦ୍ରେ] ଏବ ଦ୍ରବନ୍ତି (ପ୍ରବିଶ୍ୟ ଲୀନାଃ ଭବନ୍ତି) ତଥା ଅମୀ ନରଲୋକବୀରାଃ ଅଭିତଃ (ସର୍ବତଃ) ଜ୍ୱଳନ୍ତି (ଦୀପ୍ୟମାନାନି) ତବ ବକ୍ତ୍ରାଣି ବିଶନ୍ତି । ୨୮ ।

**ଅର୍ଥ**—ଶତ ଶତ ଖରସ୍ରୋତ ସିନ୍ଧୁପଥ ଧରି,
ମିଶନ୍ତି ସାଗରେ ଯଥା, ତେସନକି ଏହି
ମାନବ-ଜଗତ-ବୀରେ ଯାଉଛନ୍ତି ପଶି
[ଦରି ଦରି] ପ୍ରଜ୍ୱଳିତ ତୁଣ୍ଡମାଳେ ତବ । ୨୮ ।

**ଯଥା ପ୍ରଦୀପ୍ତଂ ଜ୍ୱଳନଂ ପତଙ୍ଗାଃ**
**ବିଶନ୍ତି ନାଶାୟ ସମୃଦ୍ଧବେଗାଃ**
**ତଥୈବ ନାଶାୟ ବିଶନ୍ତି ଲୋକା**
**ସ୍ତବାପିବକ୍ତ୍ରାଣି ସମୃଦ୍ଧବେଗାଃ । ୨୯ ।**

**ଅନ୍ୱୟ**—ସ୍ପଷ୍ଟ । ୨୯ ।

**ଟୀକା**—ପତଙ୍ଗାଃ ଯଥା ସମୃଦ୍ଧବେଗାଃ (ଧାବମାନାଃ) [ସନ୍ତଃ] ନାଶାୟ ପ୍ରଦୀପ୍ତଂ (ଜ୍ୱଳିତଂ) ଜ୍ୱଳନଂ (ଅଗ୍ନିଂ) ବିଶନ୍ତି, ତଥା ଏବ ସମୃଦ୍ଧବେଗାଃ ଅପି ଲୋକାଃ ନାଶାୟ ତବ ବକ୍ତ୍ରାଣି ବିଶନ୍ତି । ୨୯ ।

**ଅର୍ଥ**—ଘୋରବେଗେ ଆସି ଯଥା ଜ୍ୱଳନ୍ତ ଅନଳେ
ବିନାଶେ ପତଙ୍ଗଗଣି ପଡ଼ନ୍ତି, ତେସନ
ପଡ଼ନ୍ତି ବିନାଶେ ଆସି ଘୋର ବେଗେ ଏଥି
ସର୍ବଲୋକେ [ଜ୍ୱଳନ୍ତ] ଏ ତବ ତୁଣ୍ଡମାଳେ । ୨୯ ।

**ଲେଲିହ୍ୟସେ ଗ୍ରସମାନଃ ସମନ୍ତାତ୍**
**ଲୋକାନ୍ ସମଗ୍ରାନ୍ ବଦନୈର୍ଜ୍ୱଳଦ୍ଭିଃ**
**ତେଜୋଭିରାପୂର୍ଯ୍ୟ ଜଗତ୍ ସମଗ୍ରଂ**
**ଭାସସ୍ତବୋଗ୍ରାଃ ପ୍ରତପନ୍ତି ବିଷ୍ଣୋ । ୩୦ ।**

**ଅନ୍ୱୟ**—ବିଷ୍ଣୋ ! ଜ୍ୱଳଦ୍ଭିଃ ବଦନୈଃ ସମଗ୍ରାନ୍ ଲୋକାନ୍ ସମନ୍ତାତ୍ ଗ୍ରସମାନଃ [ତ୍ୱଂ] ଲେଲିହ୍ୟସେ, ତବ ଉଗ୍ରାଃ ଭାସଃ ସମଗ୍ରଂ ଜଗତ୍‌ତେଜୋଭିଃ ଆପୂର୍ଯ୍ୟ ପ୍ରତପନ୍ତି । ୩୦ ।

**ଟୀକା**—ହେ ବିଷ୍ଣୋ (ବ୍ୟାପିନ୍), ଜ୍ୱଳଦ୍‌ଭିଃ ବଦନୈଃ ସମଗ୍ରାନ୍ ଲୋକାନ୍ (ଭୁବନାନି) ସମନ୍ତାତ୍ (ସର୍ବତଃ) ଗ୍ରସମାନଃ (ଅଭିଭବନ୍) [ତ୍ୱଂ] ଲେଲିହ୍ୟସେ ପୁନଃ ପୁନଃ ଲେହନେନୈବ ତଂ ଗ୍ରାସଂ ସମାଦଧାସୀବ—ଅତି କ୍ଷିପ୍ରଂ ଗ୍ରସସେ—ଇତ୍ୟଭିପ୍ରାୟଃ) । ତବ ଉଗ୍ରାଃ (ପ୍ରଚଣ୍ଡାଃ) ଭାସଃ(ଦୀପ୍ତପ୍ରକାଶାଃ) ସମଗ୍ରଂ ଜଗତ୍ ତେଜୋଭିଃ ଆପୂର୍ଯ୍ୟ ପ୍ରତପନ୍ତି (ସନ୍ତାପୟନ୍ତି) । ୩୦ ।

ଅର୍ଥ— ଜ୍ୱଳନ୍ତ ବଦନମାନେ ଆହେ ବିଶ୍ୱରୂପି !
ଗ୍ରାସି ଦିଗ ଦିଗନ୍ତର, ଲହ ଲହ ଜିଭେ
ସମଗ୍ର ଏ କୋଟି କୋଟି ଭୁବନମଣ୍ଡଳ
ଯାଉଅଛ ଚାଟି; ତବ ପ୍ରଚଣ୍ଡ ତାପନ
ସନ୍ତାପେ, ବିଦ୍ୟୋତେ ଭରି ଏ ଜଗତସାରା । ୩୦ ।

**ଆଖ୍ୟାହି ମେ କୋ ଭବାନୁଗ୍ରରୂପୋ**
**ନମୋଽସ୍ତୁ ତେ ଦେବବର ପ୍ରସୀଦ ।**
**ବିଜ୍ଞାତୁମିଚ୍ଛାମି ଭବନ୍ତମାଦ୍ୟଂ**
**ନ ହି ପ୍ରଜାନାମି ତବ ପ୍ରବୃତ୍ତିମ୍ । ୩୧ ।**

ଅନ୍ୱୟ—କଃ ଭବାନ୍ ଉଗ୍ରରୂପଃ [ଇତି] ମେ ଆଖ୍ୟାହି । ତେ ନମଃ ଅସ୍ତୁ । ହେ ଦେବବର, ପ୍ରସୀଦ । ଆଦ୍ୟଂ ଭବନ୍ତଂ ବିଜ୍ଞାତୁଂ ଇଚ୍ଛାମି । ହି ତବ ପ୍ରବୃତ୍ତିଂ ତ ପ୍ରଜାନାମି । ୩୧ ।

ଟୀକା—କଃ ଭବାନ୍ [ଏଷଃ] ଉଗ୍ରରୂପଃ [ଇତି] ମେ (ମହ୍ୟଂ) ଆଖ୍ୟାହି (ସ୍ପଷ୍ଟଂ କଥୟ) । ତେ (ତୁଭ୍ୟଂ) ନମଃ ଅସ୍ତୁ । ହେ ଦେବବର, ପ୍ରସୀଦ । ଆଦ୍ୟଂ (ସର୍ବାଦିଭୂତଂ) ଭବନ୍ତଂ ବିଜ୍ଞାତୁଂ ଇଚ୍ଛାମି । ହି (ଯତଃ) ତବ [ଏତାଂ ଗ୍ରାସରୂପାଂ] ପ୍ରବୃତ୍ତିଂ ନ ପ୍ରଜାନାମି (ବୋଦ୍ଧୁଂ ଶକ୍ନୋମି) । ୩୧ ।

ଅର୍ଥ— କିଏ ତୁମେ ଉଗ୍ରରୂପ, କହ ଫେଇ ମୋରେ;
ନମଇଁ ମୁଁ ଦେବବର, ହୁଅ ସୁପ୍ରସନ୍ନ;
ବିଶ୍ୱମୂଳ ତୁମକୁ ହେ ଜାଣିବାରେ ମନ;
ବିଶ୍ୱଗ୍ରାସୀ ଚେଷ୍ଟା ତବ ନ ବୁଝଇ କିଛି । ୩୧ ।

ଶ୍ରୀ ଭଗବାନୁବାଚ

**କାଲୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ**
**ଲୋକାନ୍ ସମାହର୍ତୁମିହ ପ୍ରବୃତ୍ତଃ ।**
**ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ**
**ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ । ୩୨ ।**

**ଅନ୍ୱୟ**—ଇହ ଲୋକାନ୍ ସମାହର୍ତ୍ତୁଂ ପ୍ରବୃତ୍ତଃ ଲୋକକ୍ଷୟକୃତ୍ ପ୍ରବୃଦ୍ଧଃ କାଳଃ ଅସ୍ମି । ପ୍ରତ୍ୟନୀକେଷୁ ଯେ ଯୋଧାଃ ଅବସ୍ଥିତାଃ [ ତେ ] ସର୍ବେ ତ୍ୱାଂ ଋତେ ଅପି ନ ଭବିଷ୍ୟନ୍ତି । ୩୨ ।

**ଟୀକା**—[ତତଃ] ଶ୍ରୀ ଭଗବାନ୍ ଉବାଚ—ଇହ (ଜଗତି) ଲୋକାନ୍, (ପ୍ରାଣିନଃ ଭୁବନାନି ବା) ସମାହର୍ତ୍ତୁଂ (ସଂହାରେଣ ସଂଯମୟିତୁଂ, ସମାନେତୁଂ) ପ୍ରବୃତ୍ତଃ ଲୋକକ୍ଷୟକୃତ୍ (ଲୋକପାଶକାରୀ) ପ୍ରବୃଦ୍ଧଃ (ପୁରାତନଃ, ଅତ୍ୟୁତ୍କଟଃ ବା) କାଳଃ ଅସ୍ମି । ପ୍ରତ୍ୟନୀକେଷୁ (ପ୍ରତିପକ୍ଷସେନାସୁ—ଯଦ୍ ବା ଅନୀକଂ ଅନୀକଂ ପ୍ରତି ତେଷୁ, ସର୍ବସେନାଦଳେଷୁ) ଯେ ଯୋଧାଃ (ଭୀଷ୍ମ-ଦ୍ରୋଣାଦୟଃ) ଅବସ୍ଥିତାଃ, [ତେ] ସର୍ବେ ତ୍ୱାଂ ଋତେ (ବିନା) ଅପି ନ ଭବିଷ୍ୟନ୍ତି (ସ୍ଥାସ୍ୟନ୍ତି) । ୩୨ ।

**ଅର୍ଥ**—[ତହୁଁ] ଶ୍ରୀ ଭଗବାନ୍ କହିଲେ—ଏ ଜଗତରେ ଲୋକମାନଙ୍କୁ ଗୋଟାଇ ଆଣିବାରେ ଲାଗିଥିବା ଚିରପ୍ରସିଦ୍ଧ କାଳ ମୁଁ (ଅର୍ଥାତ୍, କାଳରୂପ ଏ ମୋର ଲୋକଙ୍କୁ ଗୋଟାଇ ଆଣି ସଂହାର କରିବାରେ ଲାଗିଛି) । ଏ ଲୋକକ୍ଷୟକାରୀ । ଏ ବିପକ୍ଷ ସେନାରେ (ବା ସେନାଦଳମାନଙ୍କରେ) ଭୀଷ୍ମାଦି ଯେଉଁ ଯୋଦ୍ଧାମାନେ ଅଛନ୍ତି, ସେ ସମସ୍ତେ ତୋ ବିନା (ଅର୍ଥାତ୍, ତୁ ନ ମାଇଲେ) ବି ରହିବେ ନାହିଁ । ୩୨ ।

**ତସ୍ମାତ୍ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ**
**ଜିତ୍ୱା ଶତ୍ରୂନ୍ ଭୁଙ୍କ୍ଷ୍ୱ ରାଜ୍ୟଂ ସମୃଦ୍ଧମ୍ ।**
**ମୟୈବୈତେ ନିହତାଃ ପୂର୍ବମେବ**
**ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ । ୩୩ ।**

**ଅନ୍ୱୟ**—ସ୍ପଷ୍ଟ । ୩୩ ।

**ଟୀକା**—ତସ୍ମାତ୍ ତ୍ୱଂ [ଯୁଦ୍ଧାୟ] ଉତ୍ତିଷ୍ଠ; ଯଶଃ ଲଭସ୍ୱ; ଶତ୍ରୂନ୍ ଜିତ୍ୱା [ଅସପତ୍ନତ୍ୱାତ୍] ସମୃଦ୍ଧଂ ରାଜ୍ୟଂ ଭୁଙ୍କ୍ଷ୍ୱ । ଏତେ [ତବ ଶତ୍ରବଃ] ମୟା ପୂର୍ବଂ ଏବ ନିହତାଃ [ତିଷ୍ଠନ୍ତି]; ହେ ସବ୍ୟସାଚିନ୍, [ତେଷ ନିଧନେ ତ୍ୱଂ] ନିମିତ୍ତମାତ୍ରଂ (କାରଣ ବ୍ୟପଦେଶମାତ୍ରଂ—ଲୋକଦୃଷ୍ଟ୍ୟୈବ କାରଣଂ) ଏବ ଭବ । ୩୩ ।

**ଅର୍ଥ**—ତେବେ ତୁ ଯୁଦ୍ଧକୁ ଠିଆ ହୋ; ଯଶ ପା; ଶତ୍ରୁକୁ ମାରି ନିର୍ବାଧାରେ ସମୃଦ୍ଧିଶାଳୀ ରାଜ୍ୟ ଭୋଗ କର । ଏମାନେ ତ ଆଗରୁ ମୋ ହାତେ ମରି ହୋଇ ଅଛନ୍ତି । ହେ ସବ୍ୟସାଚି, ତୁ ଏ ମାରିବାରେ ଖାଲି ନିମିତ୍ତ ହୋଇଯା । ୩୩ ।

ବ୍ୟାଖ୍ୟା ସୂଚନା—ସବ୍ୟସାଚୀ = ସବ୍ୟ ବା ବାଁ ହାତରେ ଯେ ସାଚିପାରେ ବା ଶର ସନ୍ଧାନ କରିପାରେ । ଅର୍ଜୁନ ଦୁଇ ହାତରେ ସମାନ ଶର ମାରି ପାରୁଥିଲେ ବୋଲି ତାଙ୍କ ନାମ, ସବ୍ୟସାଚୀ । ନିମିତ୍ତ = ନାଁକୁ ଯେ କୌଣସି କାର୍ଯ୍ୟର କାରଣ,

ଅଥଚ ପ୍ରକୃତ କାରଣ ନୁହେ, ସେ କାର୍ଯ୍ୟରେ ସେ ନିମିତ୍ତ—ସେ କାରଣ ବୋଲି ଜଣାପଡ଼େ ମାତ୍ର । ୩୩ ।

ଦ୍ରୋଣଂ ଚ ଭୀଷ୍ମଂ ଚ ଜୟଦ୍ରଥଂ ଚ
କର୍ଣ୍ଣଂ ତଥାନ୍ୟାନପି ଯୋଧବୀରାନ୍ ।
ମୟାହତାଂସ୍ତ୍ୱଂ ଜହି ମା ବ୍ୟଥିଷ୍ଠା
ଯୁଧ୍ୟସ୍ୱ ଜେତାସି ରଣେ ସପତ୍ନାନ୍ । ୩୪ ।

**ଅନ୍ୱୟ**—ସ୍ପଷ୍ଟ । ୩୪ ।

**ଟୀକା**—[ଏବଂ] ମୟା ହତାନ୍ ଦ୍ରୋଣଂ ଚ, ଭୀଷ୍ମଂ ଚ, ଜୟଦ୍ରଥଂ ଚ, କର୍ଣ୍ଣଂ ତଥା ଅନ୍ୟାନ୍ ଅପି ଯୋଧବୀରାନ୍ (ନିମିତ୍ତଃ ସନ୍) ତ୍ୱଂ ଜହି (ନାଶୟ); ମା (ନ) ବ୍ୟଥିଷ୍ଠା (ବ୍ୟଥାଂ ପ୍ରାପ୍ନୁହି); ରଣେ ସପତ୍ନାନ୍ (ଶତ୍ରୂନ୍) ଜେତାସି (ଜେଷ୍ୟସି); ଯୁଧ୍ୟସ୍ୱ (ଯୁଦ୍ଧଂ କୁରୁ) । ୩୪ ।

**ଅର୍ଥ**—[ଏହିପରି] ମୋତେ ହାତେ ମର ହୋଇଥିବା ଦ୍ରୋଣ, ଭୀଷ୍ମ ଓ ଜୟଦ୍ରଥ, ପୁଣି କର୍ଣ୍ଣ ଓ ଆଉ ଆଉ ବୀରମାନଙ୍କୁ ତୁ [ଖାଲି ନିମିତ୍ତ ହୋଇ] ମାରିଦେ; ବ୍ୟସ୍ତ ହୋ ନା; ଯୁଦ୍ଧରେ ଶତ୍ରୁଙ୍କୁ ଜିଣିବୁ; ଯୁଦ୍ଧକର । ୩୪ ।

ସଞ୍ଜୟ ଉବାଚ

ଏତଚ୍ଛ୍ରୁତ୍ୱା ବଚନଂ କେଶବସ୍ୟ
କୃତାଞ୍ଜଳିର୍ବେପମାନଃ କିରୀଟୀ
ନମସ୍କୃତ୍ୱା ଭୂୟ ଏବାହ କୃଷ୍ଣମ୍
ସଗଦ୍‌ଗଦଂ ଭୀତଭୀତଃ ପ୍ରଣମ୍ୟ । ୩୫ ।

**ଅନ୍ୱୟ**—କେଶବସ୍ୟ ଏତତ୍ ବଚନଂ ଶ୍ରୁତ୍ୱା ବେପମାନଃ କିରୀଟୀ କୃତାଂଜଳିଃ [ସନ୍] ଭୂୟଃ ଏବ ଭୀତଭୀତଃ [ସନ୍] ପ୍ରଣମ୍ୟ କୃଷ୍ଣଂ ନମସ୍କୃତ୍ୱା ସଗଦଗଦଂ ଆହ । ୩୫ ।

**ଟୀକା**—ସଞ୍ଜୟ ଉବାଚ—କେଶବସ୍ୟ ଏତତ୍ [ଆଶ୍ୱାସନା ଯୁକ୍ତଂ] ବଚନଂ ଶ୍ରୁତ୍ୱା [ଭୟାତ୍] ବେପମାନଃ (କମ୍ପିତକଳେବରଃ) କିରୀଟୀ (ଅର୍ଜ୍ଜୁନଃ) କୃତାଞ୍ଜଳିଃ [ସନ] ଭୂୟଃ (ପୁନଃ) ଏବ ଭୀତଭୀତଃ [ସନ୍] ପ୍ରଣମ୍ୟ କୃଷ୍ଣଂ ନମସ୍କୃତ୍ୱା (ଆର୍ଷପ୍ରୟୋଗଃ—ନମସ୍କୃତ୍ୟ) [ ଭୟବିସ୍ମୟାନନ୍ଦମିଶ୍ରଣେନ ] ସଗଦ୍‌ଗଦଂ ଆହ (କଥୟତ-ଅକଥୟତ୍ ଇତି ଭାବଃ) । ୩୫ ।

**ଅର୍ଥ**—[ଧୃତରାଷ୍ଟ୍ରଙ୍କୁ] ସଞ୍ଜୟ କହିଲେ—କେଶବଙ୍କର ଏହି ଆଶ୍ୱାସ ବଚନ ଶୁଣି ଏତେବେଳଯାଏ ଭୟରେ କମ୍ପୁଥିବା ଅର୍ଜୁନ ହାତ ଯୋଡ଼ି ପୁଣି ଡ଼ର ଡର ଡଳେ ଲଇଁ ନମସ୍କାର କରି (ଅର୍ଥାତ୍, ପ୍ରଣାମ କରି) ଗଦ୍‌ଗଦ ହୋଇ କୃଷ୍ଣଙ୍କୁ କହିଲେ । ୩୫ ।

ଅର୍ଜୁନ ଉବାଚ

**ସ୍ଥାନେ ହୃଷୀକେଶ ତବ ପ୍ରକୀର୍ତ୍ତ୍ୟା**
**ଜଗତ୍ ପ୍ରହୃଷ୍ୟତ୍ୟନୁରଜ୍ୟତେ ଚ ।**
**ରକ୍ଷାଂସି ଭୀତାନି ଦିଶୋ ଦ୍ରବନ୍ତି**
**ସର୍ବେ ନମସ୍ୟନ୍ତି ଚ ସିଦ୍ଧସଂଘାଃ । ୩୬ ।**

**ଅନ୍ୱୟ**—ହୃଷୀକେଶ ! ତବ ପ୍ରକୀର୍ତ୍ତ୍ୟା ଜଗତ୍ ପ୍ରହୃଷ୍ୟତି ଅନୁରଜ୍ୟତେ ଚ, ଭୀତାନି ରକ୍ଷାଂସି ଦିଶଃ ଦ୍ରବନ୍ତି । ସର୍ବେ ସିଦ୍ଧସଂଘାଃ ନମସ୍ୟନ୍ତି, [ତତ୍‌ସର୍ବଂ] ସ୍ଥାନେ । ୩୬ ।

**ଟୀକା**—ଅର୍ଜୁନ ଉବାଚ—ହେ ହୃଷୀକେଶ, ତବ ପ୍ରକୀର୍ତ୍ତ୍ୟା (ଗୁଣକୀର୍ତ୍ତନେନ) ଜଗତ୍ [ଯତ୍] ପ୍ରହୃଷ୍ୟତି (ଅତ୍ୟାନନ୍ଦଂ ଉପୈତି) ଅନୁରଜ୍ୟତେ (ଅନୁରାଗଂ ପ୍ରାପ୍ନୋତି) ଚ, [ତ୍ୱତ୍ତଃ] ଭୀତାନି ରକ୍ଷାଂସି (ଦୁରାଗ୍ରହାଃ) [ଯତ୍] ଦିଶଃ ଦ୍ରବନ୍ତି (ଇତସ୍ତତଃ ଦ୍ରୁତଂ ପଳାୟନ୍ତେ), ସର୍ବେ ସିଦ୍ଧସଂଘାଃ (ସିଦ୍ଧପୁରୁଷସମୂହାଃ) [ଯତ୍] ଚ [ତୁଭ୍ୟଂ] ନମସ୍ୟନ୍ତି, [ତତ୍‌ସର୍ବଂ] ସ୍ଥାନେ (ଯଥାସ୍ଥାନପ୍ରଯୁକ୍ତଂ—ଯୁକ୍ତଂ) [ଭବତି] (ନ ତତ୍ ସର୍ବଂ ଚମତ୍କାରିତି ଭାବଃ) । ୩୬ ।

**ଅର୍ଥ**—ଅର୍ଜୁନ କହିଲେ—

ତେବେ କି ଏଥି ବଚନ
ଯଥାର୍ଥ ହେ ହୃଷୀକେଶ, ତବ ଗୁଣଗାନେ
ଆନନ୍ଦ ଜଗତ ମୁଗ୍ଧ ଅନୁରାଗେ ଅତି
ଦୁଷ୍କୃତି ରାକ୍ଷସକୁଳ          ହୋଇ ମହାଭୟାକୁଳ
ଛାଡ଼ି ଦିଗଭାଗ ତବ ପଳାନ୍ତି ହେ କାହିଁ
[ବିଶ୍ୱକର୍ମସାଧନାରେ] ପୁଣି
ସିଦ୍ଧମାନେ ଦଳେ ଦଳେ          ନମନ୍ତି ହେ [ପଦତଳେ
ତବ ବିଶ୍ୱରୂପ ଚେଷ୍ଟା ବୁଝି ଭକ୍ତ ବହି] । ୩୬ ।

କସ୍ମାଚ୍ଚ ତେ ନ ନମେରନ୍ ମହାତ୍ମନ୍
ଗରୀୟସେ ବ୍ରହ୍ମଣୋଽପ୍ୟାଦିକର୍ତ୍ରେ ।
ଅନନ୍ତ ଦେବେଶ ଜଗନ୍ନିବାସ
ତ୍ୱମକ୍ଷରଂ ସଦସତ୍ତତ୍ପରଂ ଯତ୍ । ୩୭ ।

**ଅନ୍ୱୟ**—ମହାତ୍ମନ୍ ! କସ୍ମାତ୍ ଚ ତେ ବ୍ରହ୍ମଣଃ ଅପି ଗରୀୟସେ ଆଦିକର୍ତ୍ରେ ନ ନମେରନ୍ ? ହେ ଅନନ୍ତ ! ହେ ଦେବେଶ ! ହେ ଜଗନ୍ନିବାସ ! (ତ୍ୱଂ) ସତ୍, (ତ୍ୱଂ) ଅସତ୍, ତତ୍ପରଂ ଯତ ଅକ୍ଷରଂ [ତତ୍] ତ୍ୱଂ । ୩୭ ।

**ଟୀକା**—ହେ ମହାନ୍ କସ୍ମାତ୍ ଚ ତେ [ସିଦ୍ଧାଃ] ବ୍ରହ୍ମଣଃ (ବିଧାତୁଃ) ଅପି ଗରୀୟସେ (ପରତରାୟ) ଆଦିକର୍ତ୍ରେ (ମୂଳବିଧାତ୍ରେ) [ତୁଭ୍ୟଂ] ନ ନମେରନ୍ (ନମସ୍କୁର୍ଯ୍ୟୁଃ) ? ହେ ଅନନ୍ତ, ହେ ଦେବେଶ, ହେ ଜଗନ୍ନିବାସ, [ତ୍ୱଂ] ସତ୍ (ବ୍ୟକ୍ତଂ), [ତ୍ୱଂ] ଅସତ୍ (ଅବ୍ୟକ୍ତଂ), ତତ୍ପରଂ (ତୟୋଃ ସଦସତୋଃ ଅତୀତଂ) ଯତ୍ ଅକ୍ଷରଂ [ତତ୍] ତ୍ୱଂ । ୩୭ ।

**ଅର୍ଥ**— ହେ ମହାତ୍ମା, (ବିଶ୍ୱ ତବ ଅଧ୍ୟାତ୍ମ-ବିକାଶ)
ଏ ସୃଷ୍ଟି-ବିଧାତା ବ୍ରହ୍ମା, ତହୁଁ ବଳି ତୁମ୍ଭେ
ଆଦି ବିଶ୍ୱକର୍ମୀ ଭବେ; କାହିଁକି ବା ତେବେ
ନ ନମିବେ ପଦେ ତବ ସିଦ୍ଧ ସେ ସକଳେ
ହେ ଅନନ୍ତ, ଦେବେଶ ହେ, ଜଗତ-ଆଶ୍ରୟ,
ତୁମ୍ଭେ ବ୍ୟକ୍ତ (ବିଶ୍ୱମୟ କର୍ମ ବିସର୍ଜନେ),
ଅବ୍ୟକ୍ତ (ଅଧ୍ୟାତ୍ମରୂପେ ଏ ନିଖିଳ ତତ୍ତ୍ୱ)
[ପ୍ରତ୍ୟକ୍ଷ ନାହିଁ ହେ ଯହିଁ ପରୋକ୍ଷ ନ ହୁଏ କହି]
ସେ ସବୁ ଅତୀତ ତୁମ୍ଭେ ଅକ୍ଷର ହେ ସତ୍ୟ । ୩୭ ।

ବ୍ୟାଖ୍ୟା ସୂଚନା—ସତ୍, ଅସତ୍ ଓ ତତ୍ପର=ବ୍ୟକ୍ତ, ଅବ୍ୟକ୍ତ ଓ ଅକ୍ଷର— ୭.୨୪ ଦେଖ; ୮.୨୦, ୨୧; ୯.୧୯ ଟୀକା; ୧୩.୧୨; ୧୫.୧୬, ୧୭ ଦେଖ । ଗୀତାରେ ପୁଣି 'ଅକ୍ଷର' ଶବ୍ଦ 'ପ୍ରକୃତି' ଓ 'ବ୍ରହ୍ମ' ଦୁଇ ଅର୍ଥରେ ଭିନ୍ନ ଭିନ୍ନ ସ୍ଥାନରେ ପ୍ରୟୋଗ କରା ହୋଇଛି, ଏହା ବୁଝି ରଖି ପ୍ରସଙ୍ଗ ଅନୁସାରେ ଅର୍ଥ କରିବାକୁ ହେବ । ୩୭ ।

ତ୍ୱମାଦିଦେବଃ ପୁରୁଷଃ ପୁରାଣଃ
ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ବେତ୍ତାଽସି ବେଦ୍ୟଂ ଚ ପରଂ ଚ ଧାମ
ତ୍ୱୟା ତତଂ ବିଶ୍ୱମନନ୍ତରୂପ । ୩୮ ।

**ଅନ୍ୱୟ**—ସ୍ପଷ୍ଟ । ୩୮ ।

**ଟୀକା**—ତ୍ୱଂ ଆଦିଦେବଃ ପୁରାଣଃ (ସର୍ବାଦିଃ, ଅନାଦିଃ ବା) ପୁରୁଷଃ; ତ୍ୱଂ ଅସ୍ୟ ବିଶ୍ୱସ୍ୟ ପରଂ (ସର୍ବଶ୍ରେଷ୍ଠଂ, ସୂକ୍ଷ୍ମାତିସୂକ୍ଷ୍ମଂ) ନିଧାନଂ (ଆଧାରଃ ଲୟସ୍ଥାନଂ ବା); [ତ୍ୱଂ] ବେତ୍ତା (ଜ୍ଞାତା) ଅସି; ବେଦ୍ୟଂ (ଜ୍ଞେୟଂ) ଚ [ଅସି]; ପରଂ (ଶ୍ରେଷ୍ଠଂ) ଧାମ (ଗନ୍ତବ୍ୟ ପଦଂ) ଚ [ଅସି]; ହେ ଅନନ୍ତରୂପ, ବିଶ୍ୱଂ ତ୍ୱୟା ତତଂ (ବିସ୍ତୃତଂ, ବ୍ୟାପ୍ତଂ ବା) । ୩୮ ।

**ଅର୍ଥ**—ତୁମ୍ଭେ ଆଦିଦେବ; ତୁମ୍ଭେ ଅନାଦି ପୁରୁଷ;
ତୁମ୍ଭେ ଏ ବିଶ୍ୱଭୁବନ ପରମ ଆଧାର;
ତୁମ ଜ୍ଞାତା, ଜ୍ଞେୟ ତୁମ୍ଭେ　　ପରମଗତି ଏ ଭବେ
ବିସ୍ତାରିତ ବିଶ୍ୱ ତୁମ୍ଭେ, ଅନନ୍ତ ଶରୀର ।

ବାୟୁର୍ୟମୋଽଗ୍ନିର୍ବରୁଣଃ ଶଶାଙ୍କଃ
ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ ।
ନମୋ ନମସ୍ତେଽସ୍ତୁ ସହସ୍ରକୃତ୍ୱଃ
ପୁନଶ୍ଚ ଭୂୟୋଽପି ନମୋ ନମସ୍ତେ । ୩୯ ।

**ଅନ୍ୱୟ**—ସ୍ପଷ୍ଟ । ୩୯ ।

**ଟୀକା**—ତ୍ୱଂ ବାୟୁଃ, ଯମଃ,ଅଗ୍ନିଃ, ବରୁଣଃ,ଶଶାଙ୍କଃ (ଚନ୍ଦ୍ରଃ), ପ୍ରଜାପତିଃ ପିତାମହଃ,(ବ୍ରହ୍ମା), ପ୍ରପିତାମହଃ(ତସ୍ୟ ବ୍ରହ୍ମଣୋଽପି ପିତା),ଚ—(ସର୍ବଦେବମୟୋଽସି ଭଗବନ୍); ତେ (ତୁଭ୍ୟଂ) ସହସ୍ରକୃତ୍ୱଃ (ସହସ୍ରବାରଂ) ନମଃ ନମଃ ଅସ୍ତୁ, ପୁନଃ [ସହସ୍ରକୃତ୍ୱଃ ନମଃ ନମଃ] ଚ; ଭୂୟଃ (ପୁନ) ଅପି [ସହସ୍ରକୃତ୍ୱଃ] ତେ (ତୁଭ୍ୟଂ) ନମଃ ନମଃ । ୩୯ ।

**ଅର୍ଥ**— ବରୁଣ ଶଶାଙ୍କ ବାୟୁ ଅଗ୍ନି ଯମ ତୁମ୍ଭେ,
ପ୍ରଜାପତି ତୁମ୍ଭେ, ତୁମ୍ଭେ ହେ ପରମପିତା,
ନମଇଁ ସହସ୍ରବାର ପଦେ ତବ ମୁହିଁ,
ନମେ ପୁଣି, ପୁଣି ନମେ ବାରମ୍ବାର ବନ୍ଦେ । ୩୯ ।

ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ
ନମୋଽସ୍ତୁତେ ସର୍ବତ ଏବ ସର୍ବ
ଅନନ୍ତବୀର୍ଯାମିତବିକ୍ରମସ୍ତ୍ୱଂ
ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ । ୪୦ ।

**ଅନ୍ୱୟ**—ସର୍ବ ! ପୁରସ୍ତାତ୍ ଅଥ ପୃଷ୍ଠତଃ ନମଃ, ସର୍ବତଃ ତେ [ନମଃ] ଅସ୍ତୁ; ହେ ଅନନ୍ତବୀର୍ଯ ! ଅମିତବିକ୍ରମଃ ତ୍ୱଂ ସର୍ବଂ ସମାପ୍ନୋଷି, ତତଃ ସର୍ବଃ ଅସି । ୪୦ ।

**ଟୀକା**—ହେ ସର୍ବ, ପୁରସ୍ତାତ୍ (ଅଗ୍ରତଃ) ଅଥ ପୃଷ୍ଠତଃ (ପଶ୍ଚାତ୍) ନମଃ; ସର୍ବତଃ ତେ (ତୁଭ୍ୟଂ) ନମଃ ଅସ୍ତୁ; ହେ ଅନନ୍ତବୀର୍ଯ (ଅଶେଷଶକ୍ତେ), ଅମିତବିକ୍ରମଃ (ଅକଳିତପ୍ରଭାବଃ) ତ୍ୱଂ ସର୍ବଂ ସମାପ୍ନୋଷି (ସର୍ବଂ ବ୍ୟାପ୍ୟ ସର୍ବେ.ପରି ବର୍ତ୍ତସେ), ତତଃ ସର୍ବଃ ଅସି । ୪୦ ।

**ଅର୍ଥ**— ଆହେ ସର୍ବ, (ସର୍ବ ବିଶ୍ୱଧାମ),
ନମେ ପଛେ, ନମେ ଆଗେ, ନମେ ସର୍ବ ଦିଗଭାଗେ
ଅନନ୍ତପ୍ରଭାବ ତୁମେ ଅମିତ ବିକ୍ରମ,
[ବିଶ୍ୱମୟ ଯାହା କିଛି], ବର୍ତ୍ତନାରେ ତବ
ସମାପ୍ତ ସରବେ; ତେଣୁ ତୁମ୍ଭେ ଦେବ ସର୍ବ । ୪୦ ।

ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ
ହେ କୃଷ୍ଣ ହେ ଯାଦବ ହେ ସଖେତି ।
ଅଜାନତା ମହିମାନଂ ତବେଦଂ
ମୟା ପ୍ରମାଦାତ୍ ପ୍ରଣୟେନ ବାପି । ୪୧ ।
ଯଚ୍ଚାବହାସାର୍ଥମସତ୍କୃତୋଽସି
ବିହାରଶଯ୍ୟାସନଭୋଜନେଷୁ ।
ଏକୋଽଥବାପ୍ୟଚ୍ୟୁତ ତତ୍ ସମକ୍ଷଂ
ତତ୍ କ୍ଷାମୟେ ତ୍ୱାମହମପ୍ରମେୟମ୍ । ୪୨ ।

**ଅନ୍ୱୟ**—ଇଦଂ ତବ ମହିମାନଂ ଅଜାନତା ସଖା ଇତି ମତ୍ୱାଂ ପ୍ରମାଦାତ୍ ପ୍ରଣୟେନ ବା ଅପି ହେ କୃଷ୍ଣ ! ହେ ଯାଦବ ! ହେସଖା ଇତି

ଯତ୍ ପ୍ରସଭଂ ଉକ୍ତମ୍ ବିହାରଶଯ୍ୟାସନଭୋଜନେଷୁ ଏକଃ ଅଥବା ତତ୍ ତତ୍ ଅନ୍ୟେଷାଂ] ସମକ୍ଷଂ ଅପି ଯତ୍ ଚ ଅବହାସାର୍ଥଂ ଅସତ୍କୃତଃ ଅସି ହେ ଅଚ୍ୟୁତ ! ତତ୍ ସର୍ବଂ ଅପ୍ରମେୟଂ ତ୍ୱାଂ କ୍ଷାମୟେ । ୪୧-୪୨ ।

**ଟୀକା**—ଇଦଂ (ଏବଂ) [ଇମଂ ବା ପାଠଃ] ତବ ମହିମାନଂ ଅଜାନତା [ତ୍ୱଂ ମମ] ସଖା ଇତି ମତ୍ୱା ପ୍ରମାଦାତ୍ (ଭ୍ରମାତ୍) ପ୍ରଣୟେନ (ସଖ୍ୟେନ) ବା ଅପି ହେ କୃଷ୍ଣ, ହେ ଯାଦବ, ହେ ସଖା ଇତି ଯତ୍ ପ୍ରସଭଂ (ଅତ୍ୟାଗ୍ରହୋଦ୍ଧାହେଣ—ଅତି-ସଖ୍ୟାଦତିଭାବଃ) [ମୟା] ଉକ୍ତମ୍, ବିହାର-ଶଯ୍ୟା-ଆସନ-ଭୋଜନେଷୁ [ସଖ୍ୟ-ବ୍ୟବହାରେଷୁ] ଏକଃ (ଏକାକୀ ଅହଂ ଅଥବା ତତ୍ (ତଥା) ଅନ୍ୟେଷାଂ ସମକ୍ଷଂ ଅପି ଯତ୍ ଚ ଅବହାସାର୍ଥଂ (ପରିହାସାୟ) ଅସତ୍କୃତଃ (ଅବଜ୍ଞାତଃ) ଅସି, ହେ ଅଚ୍ୟୁତ, ତତ୍ ସର୍ବଂ ଅପ୍ରମେୟଂ (ପ୍ରମାଣାତୀତଂ) ତ୍ୱାଂ କ୍ଷାମୟେ (କ୍ଷମାଂ କାରୟେ—କ୍ଷନ୍ତୁଂ ପ୍ରାର୍ଥୟେ—ଇତ୍ୟର୍ଥଃ) । ୪୧-୪୨ ।

**ଅର୍ଥ**— ସଖା ମଣି, ଏ ମହିମା ନ ଜାଣି ହେ ତବ,
ପ୍ରଣୟେ ବା ଭ୍ରମେ ପଡ଼ି, ସଖ୍ୟ ଅବହେଳେ,
ହେ କୃଷ୍ଣ, ହେ ଯାଦବ, ହେ ସଖା ବୋଲି ଯାହା
ଡାକଇ, କରଇ ପୁଣି ଅବଜ୍ଞା ହେ ଯେତେ
ବିହାରେ ଶୟନେ ଅବା ଆସନେ ଭୋଜନେ
ଗଲେ, ଏକା କେବେ, କେବେ ପୁଣି ଲୋକମେଳେ,
ହେ ଅଚ୍ୟୁତ, ନାହିଁ ତବ କଳନା ଏ ବିଶ୍ୱେ
[କି ଆଉ କହିବି ?] କ୍ଷମା ମାଗୁଛି ସେ ଦୋଷ । ୪୧-୪୨ ।

**ପିତାସି ଲୋକସ୍ୟ ଚରାଚରସ୍ୟ**
**ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍ ।**
**ନ ତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟଃ**
**ଲୋକତ୍ରୟେଽପ୍ୟପ୍ରତିମପ୍ରଭାବଃ । ୪୩ ।**

**ଅନ୍ୱୟ**— ସ୍ପଷ୍ଟ । ୪୩ ।

**ଟୀକା**—ହେ ଅପ୍ରତିମ-ପ୍ରଭାବ (ଅତୁଳନୀୟ-ଶକ୍ତେ), ତ୍ୱଂ ଅସ୍ୟ ଚରାଚରସ୍ୟ ଲୋକସ୍ୟ ପିତା ଅସି; ପୂଜ୍ୟଃ ଗରୀୟାନ୍ ଗୁରୁଃ ଚ [ଅସି]; ଲୋକତ୍ରୟେ (ତ୍ରିଭୁବନେ) ତ୍ୱତ୍ସମଃ (ତବ ତୁଲ୍ୟଃ) ନ ଅସ୍ତି; ଅନ୍ୟଃ [ତ୍ୱାଂ] ଅତି [ଭୂୟଃ] ଅଧିକଃ (ଗୁରୁତରଃ) କୁତଃ [ସ୍ୟାତ୍] । ୪୩ ।

**ଅର୍ଥ**— ଅତୁଳ ପ୍ରଭାବଦେବ,
ଚରାଚର ବିଶ୍ୱପିତା, ପୂଜ୍ୟ ମହାଗୁରୁ
ତୁମ୍ଭେ ଏକା; ନାହିଁ ତବ ସମାନ ତ୍ରିଲୋକେ;
ବଳି ଆଉ ଅଧିକ ହେ ସମ୍ଭବବ କାହିଁ ? ।୪୩।

**ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ**
**ପ୍ରସାଦୟେ ତ୍ୱାମହମୀଶମୀଡ୍ୟମ୍ ।**
**ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ**
**ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁମ୍ ।୪୪।**

**ଅନ୍ୱୟ**—ଦେବ ତସ୍ମାତ୍ କାୟଂ ପ୍ରଣିଧାୟ ପ୍ରଣମ୍ୟ, ଅହଂ ଈଡ୍ୟଂ ଈଶଂ ତ୍ୱାଂ ପ୍ରସାଦୟେ, ପିତା ପୁତ୍ରସ୍ୟ ଇବ, ସଖା ସଖ୍ୟୁଃ ଇବ ପ୍ରିୟଃ [ତ୍ୱଂ] ପ୍ରିୟାୟ ସୋଢୁଂ ଅର୍ହସି । ୪୪ ।

**ଟୀକା**—ହେ ଦେବ, ତସ୍ମାତ୍ [ଅଷ୍ଟାଙ୍ଗଂ] କାୟଂ (ଦେହଂ) ପ୍ରଣିଧାୟ (ଭୂମୌ କୃତ୍ୱା) ପ୍ରଣମ୍ୟ, ଅହଂ ଈଡ୍ୟଂ (ସ୍ତୁତ୍ୟଂ) ଈଶଂ (ସର୍ବନିୟନ୍ତାରଂ) ତ୍ୱାଂ ପ୍ରସାଦୟେ (ମମ ପ୍ରସନ୍ନୋ ଭବ ଇତି ପ୍ରାର୍ଥୟେ); ପିତା ପୁତ୍ରସ୍ୟ [ଅପରାଧଂ] ଇବ ସଖା ସଖ୍ୟୁଃ [ଅପରାଧଂ] ଇବ ପ୍ରିୟଃ ( ସୁହୃତ୍ ) [ତ୍ୱଂ] ପ୍ରିୟାୟ (ମହ୍ୟଂ—ମଦର୍ଥଂ ଇତ୍ୟର୍ଥଃ) ସୋଢୁଂ (କ୍ଷନ୍ତୁଂ) ଅର୍ହସି । ୪୪ ।

**ଅର୍ଥ**— ତେବେ, ଦେବ, ଏଥି ଭୂମେ ପକାଇ ଶରୀର,
ସାଷ୍ଟାଙ୍ଗେ ପ୍ରଣମି, ମାଗେ, ହୁଅ ହେ ପ୍ରସନ୍ନ,
ପୂଜ୍ୟ ତୁମ୍ଭେ, ଈଶ ତୁମ୍ଭେ; ପୁତ୍ରର ଯେସନ
ପିତା, ସଖାର ବା ସଖା, କ୍ଷମେ ଦୋଷରାଶି,
ହେ ପ୍ରିୟ, ମୁଁ ପ୍ରିୟ ତବ (ଭକ୍ତ ତବ ମୁହିଁ)
ମୋ ପାଇଁ ତେସନେ କ୍ଷମା ଲାଗଇ ତୁମ୍ଭଙ୍କୁ । ୪୪ ।

**ଅଦୃଷ୍ଟପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା**
**ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।**
**ତଦେବ ମେ ଦର୍ଶୟ ଦେବରୂପଂ**
**ପ୍ରସୀଦ ଦେବେଶ ଜଗନ୍ନିବାସ । ୪୫ ।**

**ଅନ୍ୱୟ**—ଅଦୃଷ୍ଟପୂର୍ବଂ ହୃଷିତଃ ଅସ୍ମି, ଚ ଭୟେନ ମେ ମନଃ ପ୍ରବ୍ୟଥିତମ୍, ତତ୍ ଏବ ଦେବେଶ, ଜଗନ୍ନିବାସ, ମେ ଦେବରୂପଂ ଦର୍ଶୟ । ୪୫ ।

**ଟୀକା**—ଅଦୃଷ୍ଟପୂର୍ବଂ (ଇତଃ ପୂର୍ବଂ କଦାପି ନ ଦୃଷ୍ଟଂ) [ତବ ବିଶ୍ୱରୂପଂ] ଦୃଷ୍ଟ୍ୱା ହୃଷିତଃ (ହର୍ଷାୟୁକ୍ତଃ, ହର୍ଷାତ୍ ହୃଷ୍ଟରୋମା) ଅସ୍ମି [ଇତି ସତ୍ୟଂ, ଅପି] ଚ, ଭୟେନ ମେ (ମମ) ମନଃ ପ୍ରବ୍ୟଥିତମ୍; (ଅତଃ) ଏବ ହେ ଦେବେଶ, ହେ ଜଗନ୍ନିବାସ, ପ୍ରସୀଦ; ମେ (ମହ୍ୟଂ) [ସୁଦର୍ଶନଂ] ଦେବରୂପଂ (ନ ତୁ ପ୍ରବୃଦ୍ଧକାଳରୂପଂ—ଇତ୍ୟାଶୟଃ) ଦର୍ଶୟ । ୪୫ ।

**ଅର୍ଥ**— ଦେଖି ତ ନ ଥିଲି ବିଭୋ, ଏ ରୂପ ହେ ତବ
ପୂର୍ବେ କେବେ; ଏବେ ଦେଖି ଫୁଲ୍ଲଉଠେ ପ୍ରାଣ,
ହରଷେ ଉଷତ ମୁହିଁ; ହେଲେହେଁ ତରାସେ
ବ୍ୟାକୁଳିତ ଅନ୍ତରାତ୍ମା ମମ, [ଲୋକେଶ୍ୱର]
ଲୋକାଶ୍ରୟ ଦେବେଶ ହେ, ହୁଅ ସୁପ୍ରସନ୍ନ,
[ସଂହର ପ୍ରବୃଦ୍ଧ ଏହି କାଳରୂପ ଘୋର]
[ସୁଦର୍ଶନ] ଦେବରୂପେ ଦେଖାଇଅ ମୋରେ । ୪୫ ।

**କିରୀଟିନଂ ଗଦିନଂ ଚକ୍ରହସ୍ତ—**
**ମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ ।**
**ତେନୈବ ରୂପେଣ ଚତୁର୍ଭୁଜେନ**
**ସହସ୍ରବାହୋ, ଭବ ବିଶ୍ୱମୂର୍ତ୍ତେ । ୪୬ ।**

**ଅନ୍ୱୟ**—ସ୍ପଷ୍ଟ । ୪୬ ।

**ଟୀକା**—[ତଦ୍‌ଦେବରୂପଂ ବର୍ଣ୍ଣୟତି] ତଥା (ତଦ୍‌ଦେବରୂପେଣ) ଏବ ଅହଂ ତ୍ୱାଂ କିରୀଟିନଂ ଗଦିନଂ (ଗଦାଧରଂ) ଚକ୍ରହସ୍ତଂ ଦ୍ରଷ୍ଟୁଂ ଇଚ୍ଛାମି; ହେ ସହସ୍ରବାହୋ, ବିଶ୍ୱମୂର୍ତ୍ତେ ତେନ ଏବ [ଦେବଲକ୍ଷଣେନ] ଚତୁର୍ଭୁଜେନ ରୂପେଣ [ଉପଲକ୍ଷିତଃ] ଭବ (ଆତ୍ମାନଂ ପ୍ରକାଶୟ)—(ଚତୁର୍ଭୁଜତ୍ୱାଦ ସୁଦର୍ଶନଂ ଦେବତ୍ୱଂ ଧାରୟ, ସହସ୍ରବାହୁତ୍ୱାଦକଂ ଦୁର୍ଦ୍ଦର୍ଶଂ ମହାକାଳରୂପଲକ୍ଷଣଂ ଉପସଂହର—ଇତି ଭାବଃ) । ୪୬ ।

**ଅର୍ଥ**— ଦେଖେଁ ମୁହିଁ ସେହି ତବ ସୁଦର୍ଶନ ରୂପେ,
କିରୀଟ ମସ୍ତକେ, କରେ [ଶଙ୍ଖ], ଚକ୍ର, ଗଦା,
ଆହେ ରୁଦ୍ର ବିଶ୍ୱମୂର୍ତ୍ତି, ହେ ସହସ୍ରବାହୁ
ସେହିରୂପେ ଦିଅ ଦେଖା ଚତୁର୍ଭୁଜ ଧରି । ୪୬ ।

ଶ୍ରୀ ଭଗବାନୁବାଚ

ମୟା ପ୍ରସନ୍ନେନ ତବାର୍ଜୁନେଦଂ
ରୂପଂ ପରଂ ଦର୍ଶିତମାତ୍ମଯୋଗାତ୍ ।
ତେଜୋମୟଂ ବିଶ୍ୱମନନ୍ତମାଦ୍ୟଂ
ଯନ୍ମେ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବମ୍ । ୪୭ ।

**ଅନ୍ୱୟ**—ଅର୍ଜୁନ ! ଯତ୍ ମେ ରୂପଂ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବଂ, ଇଦଂ ତେଜୋମୟଂ ବିଶ୍ୱଂ ଅନନ୍ତଂ ଆଦ୍ୟଂ ପରଂ ରୂପଂ ପ୍ରସନ୍ନେନ ମୟା ଆତ୍ମଯୋଗାତ୍ ତେ ଦର୍ଶିତମ୍ । ୪୭ ।

**ଟୀକା**—ଶ୍ରୀଭଗବାନ୍ ଉବାଚ—[ଭୟଂ କଥଂ] ହେ ଅର୍ଜୁନ, ଯତ୍ ମେ (ମମ) ରୂପଂ ତ୍ୱଦନ୍ୟେନ (ତ୍ୱତ୍ତଃ ଅପରେଣ) ନ ଦୃଷ୍ଟପୂର୍ବଂ, ଇଦଂ [ ତତ୍ ] ତେଜୋମୟଂ ବିଶ୍ୱଂ (ସର୍ବମୟଂ) ଅନନ୍ତଂ ଆଦ୍ୟଂ ପରଂ ରୂପଂ ପ୍ରସନ୍ନେନ [ଏବ] ମୟା ଆତ୍ମଯୋଗାତ୍ (ମମ ନିଜୈଶ୍ୱର୍ଯ୍ୟପ୍ରକାଶଯୋଗବଲେନ) ତେ (ତୁଭ୍ୟଂ) ଦର୍ଶିତମ୍ । (ଯଦ୍ ବା ତବ ଆତ୍ମଯୋଗାତ୍ ଆତ୍ମନଃ ମୟି ସମ୍ୟକ୍ ନିଯୋଗାତ୍ ମୟା ପ୍ରସନ୍ନେନ ସତା ତୁଭ୍ୟଂ ଇଦଂ ବିଶ୍ୱରୂପଂ ଦର୍ଶିତମ୍ ) । ୪୭ ।

**ଅର୍ଥ**—[ଭୟ କାହିଁକି] ରେ ଅର୍ଜୁନ, ମୋର ଯେଉଁ ରୂପ ତୋ ଛଡ଼ା ଆଉ କେହି ପୂର୍ବେ କେବେ ଦେଖି ନ ଥିଲେ, ଏଇ ସେହି ତେଜୋମୟ ଅନନ୍ତ ଆଦ୍ୟ ଶ୍ରେଷ୍ଠ ବିଶ୍ୱରୂପକୁ ମୁଁ ପ୍ରସନ୍ନ ହୋଇ, ଅପଣାର ବିଶ୍ୱ ପ୍ରକାଶ-ଯୋଗବଳରେ ତତେ ପରା ଦେଖାଇଲି । (କିମ୍ବା, ତୁ ନିଜ ଆତ୍ମାକୁ ଶ୍ରଦ୍ଧାରେ ମୋଠି ବରାବର ଲଗାଇ-ଥିବାରୁ ମୁଁ ପ୍ରସନ୍ନ ହୋଇ ଏ ରୂପ ତୋତେ ଦେଖାଇଲି) । ୪୭ ।

ବ୍ୟାଖ୍ୟା ସୂଚନା—ଭଗବାନଙ୍କଠାରେ ଶ୍ରଦ୍ଧା ଓ ଭକ୍ତିରେ ଆତ୍ମାକୁ ସମ୍ପୂର୍ଣ୍ଣରୂପେ ନ ଲଗାଇଲେ ଏ ବିଶ୍ୱରୂପ ଦେଖିବା ବା ଉପଲବ୍ଧିରେ ଜାଣିବାର ଉପାୟ ନାହିଁ, ଏହି ସୂଚନା ଏଠାରେ ଅଛି । ଭଗବାନଙ୍କଠାରେ ଯୋଗଯୁକ୍ତ ଲୋକ ପକ୍ଷରେ ଏ ବିଶ୍ୱରୂପ ଅନୁଭବରେ ଜାଣିବା ସହଜ । ୪୭ ।

ନ ବେଦଯଜ୍ଞାଧ୍ୟୟନୈର୍ନ ଦାନୈ-
ର୍ନ ଚ କ୍ରିୟାଭିର୍ନ ତପୋଭିରୁଗ୍ରୈଃ ।
ଏବଂ ରୂପଃ ଶକ୍ୟ ଅହଂ ନୃଲୋକେ
ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁପ୍ରବୀର । ୪୮ ।

**ଅନ୍ୱୟ**—ସ୍ପଷ୍ଟ । ୪୮ ।

**ଟୀକା**—ହେ କୁରୁପ୍ରବୀର, ନୃଲୋକେ (ମନୁଷ୍ୟେଷୁ) ତ୍ୱତ୍ (ତ୍ୱତ୍ତଃ—ତ୍ୱଦ୍ ବଦ୍ ଭକ୍ତାତ୍ ଇତ୍ୟଭିପ୍ରାୟଃ) ଅନ୍ୟେନ ଏବଂରୂପଃ (ଏତତ୍ ସ୍ୱରୂପଃ) ଅହଂ, ଦ୍ରଷ୍ଟୁଂ, [ନ] ଶକ୍ୟଃ (ଶକ୍ୟ ଅହଂ ଇତି ଆର୍ଷଂ—ଶକ୍ୟୋଽହଂ)—ନ ବେଦଯଜ୍ଞାଧ୍ୟୟନୈଃ (ବେଦପାଠ-ଯଜ୍ଞାନୁଷ୍ଠାନ-ଶାସ୍ତ୍ରାଧ୍ୟୟନୈଃ), ନ ଦାନୈଃ ନ ଚ [ଅପରାଭିଃ ପୂର୍ତ୍ତାଦିଭିଃ] କ୍ରିୟାଭିଃ, ନ ଉଗ୍ରୈଃ (କଠୋରୈଃ) ତପୋଭିଃ (କାୟକ୍ଲେଶସାଧନୈଃ) [ଏବଂରୂପଃ ଅହଂ ଦ୍ରଷ୍ଟୁଂ ଜନେନ ଶକ୍ୟଃ] । ୪୮ ।

**ଅର୍ଥ**—ହେ କୁରୁପ୍ରବୀର, ମନୁଷ୍ୟଲୋକରେ ତୋ ଭଳି ଭକ୍ତ ଛଡ଼ା ଆଉ କେହି ଏପରି ରୂପରେ ମୋତେ ଦେଖିପାରେ ନା—ବେଦପାଠରେ ନୁହେଁ—ଯଜ୍ଞ କଲେ ନୁହେଁ—ଶାସ୍ତ୍ର ଜାଣିଲେ ନୁହେଁ—ଦାନ କଲେ ନୁହେଁ, [କୂପ ପୋଖରୀ ଖୋଳାଇବା, ଧର୍ମଶାଳାଦି କରିଦେବା ପ୍ରଭୃତି] ସୁକୃତରେ ନୁହେଁ—କଠୋର ତପସ୍ୟାରେ ନୁହେଁ—[କାହିଁରେ ମୋତେ ଲୋକ ଏ ରୂପରେ ଦେଖିପାରେ ନା ] । ୪୮ ।

ମା ତେ ବ୍ୟଥା ମା ଚ ବିମୂଢ଼ଭାବୋ
ଦୃଷ୍ଟ୍ୱା ରୂପଂ ଘୋରମୀଦୃଙ୍ମମେଦମ୍ ।
ବ୍ୟପେତଭୀଃ ପ୍ରୀତମନାଃ ପୁନସ୍ତ୍ୱଂ
ତଦେବ ମେ ରୂପମିଦଂ ପ୍ରପଶ୍ୟ ।୪୯।

**ଅନ୍ୱୟ**—ମମ ଈଦୃକ୍ ଘୋରଂ ଇଦଂ ରୂପଂ ଦୃଷ୍ଟ୍ୱା । ମା ତେ ବ୍ୟଥା, ମା ଚ ବିମୂଢ଼ଭାବଃ, ବ୍ୟପେତଭୀଃ ପ୍ରୀତମନାଃ ତ୍ୱଂ ତତ୍ ପୁନଃ ମେ ଇଦଂ ଏବଂ ରୂପଂ ପ୍ରପଶ୍ୟ । ୪୯ ।

**ଟୀକା**—ମମ ଈଦୃକ୍ ଘୋରଂ ଇଦଂ ରୂପଂ ଦୃଷ୍ଟ୍ୱା ମା ତେ (ତବ) ବ୍ୟଥା [ଭୂତ୍] । ମା ଚ [ଏଷଃ] ବିମୂଢ଼ଭାବଃ (ଅବୋଧତ୍ୱଂ) [ଭୂତ୍]; ବ୍ୟପେତଭୀଃ (ବିଗତ-ଭୟଃ) ପ୍ରୀତମନାଃ [ଚ ସନ୍] ତ୍ୱଂ ତତ୍ (ଇଦାନୀଂ) ପୁନଃ ମେ (ମମ) ଇଦଂ [ଯଥାପୂର୍ବଂ ମାନୁଷଂ] ଏବ ରୂପଂ (ନ ତୁ ତ୍ୱତ୍ପାର୍ଥିତଂ ଦେବରୂପଂ—ତଦ୍ଦୃଷ୍ଟ୍ୟୋଜନମଧୁନା ଇତି ଭାବଃ) ପ୍ରପଶ୍ୟ । ୪୯ ।

**ଅର୍ଥ**—ମୋର ଏହିପରି ଘୋର ଏ ରୂପ ଦେଖି ତୋର ବ୍ୟଥା ନ ହେଉ, କି ଅବୋଧ ଭାବ ନ ହେଉ; (ଅର୍ଥାତ୍, ତୁ ଏପରି ଭୟରେ ବ୍ୟାକୁଳ ହୋଇ ଅବୋଧ ପରି ହୋ ନା) । ଭୟ ଛାଡ଼ି, ଖୁସି ହୋଇ, ଏବେ ମୋର ତୁ ଏହି ମନୁଷ୍ୟରୂପ ପୁଣି

ଦେଖ୍ । [ଦେବରୂପ ଦେଖିବାକୁ ଯେ କହୁଚୁ, ତା ଆଉ କଚ୍ଛ ଦରକାର ନାହିଁ—ଅଭିପ୍ରାୟ] । ୪୯ ।

ସଞ୍ଜୟ ଉବାଚ

ଇତ୍ୟର୍ଜ୍ଜୁନଂ ବାସୁଦେବସ୍ତଥୋକ୍ତ୍ୱା
ସ୍ୱକଂ ରୂପଂ ଦର୍ଶୟାମାସ ଭୂୟଃ ।
ଆଶ୍ୱାସୟାମାସ ଚ ଭୀତମେନମ
ଭୂତ୍ୱା ପୁନଃ ସୌମ୍ୟବପୁର୍ମହାତ୍ମା ।୫୦।

**ଅନ୍ୱୟ**—ଇତି ଉକ୍ତ୍ୱା ବାସୁଦେବଃ ଭୂୟଃ ତଥା ସ୍ୱକଂ ରୂପ ଅର୍ଜ୍ଜୁନଂ ଦର୍ଶୟାମାସ, ମହାତ୍ମା ପୁନଃ ସୌମ୍ୟ ବପୁଃ ଭୂତ୍ୱା ଭୀତଂ ଏନଂ ଚ ଆଶ୍ୱାସୟାମାସ । ୫୦ ।

**ଟୀକା**—ସଞ୍ଜୟଃ ଉବାଚ—ଇତି (ଏବଂ) ଉକ୍ତ୍ୱା ବାସୁଦେବଃ (ଶ୍ରୀକୃଷ୍ଣଃ) ଭୂୟଃ (ପୁନଃ) [ଯଥୋକ୍ତଂ] ତଥା ସ୍ୱକଂ (ସ୍ୱୀୟଂ) [ମାନୁଷଂ] ରୂପଂ ଅର୍ଜ୍ଜୁନଂ ଦର୍ଶୟାମାସ; ମହାତ୍ମା [ଶ୍ରୀକୃଷ୍ଣଃ] ପୁନଃ [ତଥା] ସୌମ୍ୟବପୁଃ (ସୁଦର୍ଶନଦେହଃ) ଭୂତ୍ୱା ଭୀତଂ ଏନଂ [ଅର୍ଜ୍ଜୁନଂ] ଚ ଆଶ୍ୱାସୟାମାସ । ୫୦ ।

**ଅର୍ଥ**—ସଞ୍ଜୟ କହିଲେ—ଏହିପରି କହି ବାସୁଦେବ ପୁଣି ଅର୍ଜ୍ଜୁନଙ୍କୁ ନିଜ ମନୁଷ୍ୟ ରୂପ ଦେଖାଇଲେ ଓ ମହାତ୍ମା ଶ୍ରୀକୃଷ୍ଣ ସୁନ୍ଦର ରୂପ ଧରି ଭୟରେ ଥିବା ଅର୍ଜ୍ଜୁନଙ୍କୁ ପୁଣି ଆଶ୍ୱାସନା ଦେଲେ । [ପୁଣି ଦେବରୂପ ନ ଧରି ଏକାବେଳକେ ମନୁଷ୍ୟରୂପ ଧରିବାହିଁ ଯେପରିକ ପୁଣି ଆଶ୍ୱାସନା ଦେଲାପରି ହେଲା—ଏହି ଅଭିପ୍ରାୟ] । ୫୦ ।

ବ୍ୟାଖ୍ୟା ସୂଚନା—ଅର୍ଜ୍ଜୁନ ଚତୁର୍ଭୁଜ ଦେବରୂପ ଦେଖିବାକୁ ଲୋଡ଼ିଥିଲେ । ତେଣୁ ଭଗବାନ୍ ସେହି ଚତୁର୍ଭୁଜ ଦେବରୂପ ଦେଖାଇ ଦେଇ ମନୁଷ୍ୟ ରୂପ ଧଇଲେ ବୋଲି ଏଠାରେ ଅର୍ଥ କରାଯାଇପାରେ । ସେପରି ଅର୍ଥ କଲେ ପୂର୍ବ ଶ୍ଳୋକ ସମ୍ପର୍କ ଧରି ଅନ୍ୱୟ ଏହିପରି କରିବାକୁ ହେବ—ତଦେବ—ତ୍ୱତ୍ ପ୍ରାର୍ଥିତଂ ଚତୁର୍ଭୁଜଂ ରୂପଂ ପ୍ରପଶ୍ୟ । ୪୯ । ସଞ୍ଜୟଃ ଉବାଚ—ଇତି ଉକ୍ତ୍ୱା ବାସୁଦେବଃ ଭୂୟଃ ତଥା ସ୍ୱକଂ ଚତୁର୍ଭୁଜଂ ରୂପଂ ଅର୍ଜ୍ଜୁନଂ ଦର୍ଶୟାମାସ; ତଦନନ୍ତରଂ ଚ ପୁନଃ ମହାତ୍ମା କୃଷ୍ଣଃ ନିଜ ମାନୁଷରୂପେଣ ସୌମ୍ୟବପୁଃ ଭୂତ୍ୱା ଭୀତଂ ଏନଂ ଅର୍ଜ୍ଜୁନଂ ଆଶ୍ୱାସୟାମାସ । ୫୦ । ଯେଉଁ ଚତୁର୍ଭୁଜ ରୂପ ଦେଖିବାକୁ କହୁଚୁ ସେଇ ରୂପ ଦେଖ (୪୯) ଏହା କହି ବାସୁଦେବ ପୁଣି ସେହି ଶଙ୍ଖଚକ୍ର ଗଦାପଦ୍ମଧାରୀ ନିଜର ଚତୁର୍ଭୁଜ ଦେବରୂପ

ଅର୍ଜୁନଙ୍କୁ ଦେଖାଇଲେ । ତା ଉତ୍ତାରୁ ପୁଣି ମହାତ୍ମା କୃଷ୍ଣ ନିଜ ମନୁଷ୍ୟ ରୂପର ସୁନ୍ଦର ଦେହ ଧରି ଭୟରେ ଥିବା ଅର୍ଜୁନଙ୍କୁ ଆଶ୍ୱାସନା ଦେଲେ । ୫୦ ।

ଅର୍ଜୁନ ଉବାଚ

**ଦୃଷ୍ଟ୍ୱେଦଂ ମାନୁଷଂ ରୂପଂ ତବ ସୌମ୍ୟଂ ଜନାର୍ଦ୍ଦନ**
**ଇଦାନୀମସ୍ମି ସଂବୃତ୍ତଃ ସଚେତାଃ ପ୍ରକୃତିଂ ଗତଃ ।୫୧।**

**ଅନ୍ୱୟ**—ଜନାର୍ଦ୍ଦନ ! ଇଦାନୀଂ ତବ ଇଦଂ ସୌମ୍ୟଂ ମାନୁଷଂ ରୂପଂ ଦୃଷ୍ଟ୍ୱା ସଚେତାଃ ସଂବୃତ୍ତଃ ପ୍ରକୃତିଂ ଗତଃ ଅସ୍ମି । ୫୧ ।

**ଟୀକା**—ଅର୍ଜୁନଃ ଉବାଚ—ହେ ଜନାର୍ଦ୍ଦନ, ଇଦାନୀଂ ତବ ଇଦଂ ସୌମ୍ୟଂ (ସୁଦର୍ଶନଂ) ମାନୁଷଂ ରୂପଂ ଦୃଷ୍ଟ୍ୱା [ଅହଂ] ସଚେତାଃ (ସୁମନାଃ) ସଂବୃତ୍ତଃ (ସଂଜାତଃ) [ସନ୍] ପ୍ରକୃତିଂ (ସ୍ୱାସ୍ଥ୍ୟଂ) ଗତଃ ଅସ୍ମି । ୫୧ ।

**ଅର୍ଥ**—ଅର୍ଜୁନ କହିଲେ—ହେ ଜନାର୍ଦ୍ଦନ, ଏବେ ତୁମର ଏ ସୁନ୍ଦର ମାନବରୂପ ଦେଖି ମୁଁ ସୁସ୍ଥମନା ହୋଇ ପ୍ରକୃତିସ୍ଥ ହେଲି । (ଅର୍ଥାତ୍, ଯେପରି ଅବଧାନରେ ଶୁଣୁଥିଲି, ଏବେ ପୁଣି ସେହିପରି ଶୁଣିପାରିବି) । ୫୧ ।

ଶ୍ରୀ ଭଗବାନୁବାଚ

**ସୁଦୁର୍ଦ୍ଦର୍ଶମିଦଂ ରୂପଂ ଦୃଷ୍ଟବାନସି ଯନ୍ମମ**
**ଦେବା ଅପ୍ୟସ୍ୟ ରୂପସ୍ୟ ନିତ୍ୟଂ ଦର୍ଶନକାଙ୍କ୍ଷିଣଃ ।୫୨।**

**ଅନ୍ୱୟ**—ସ୍ପଷ୍ଟ । ୫୨ ।

**ଟୀକା**—ଶ୍ରୀ ଭଗବାନ୍ ଉବାଚ—ଯତ୍ ମମ ଇଦଂ ସୁଦୁର୍ଦ୍ଦର୍ଶଂ (ଅତିଦୁର୍ଲଭଂ) ରୂପଂ ଦୃଷ୍ଟବାନ୍ ଅସି, ଦେବାଃ ଅପି ଅସ୍ୟ ରୂପସ୍ୟ ନିତ୍ୟଂ ଦର୍ଶନ-କାଙ୍କ୍ଷିଣଃ (ଦର୍ଶନେଚ୍ଛବଃ) [ସନ୍ତି] । ୫୨ ।

**ଅର୍ଥ**—ଶ୍ରୀ ଭଗବାନ୍ କହିଲେ—ମୋର ଏ ଯେଉଁ ଅତି ଦୁର୍ଦ୍ଦର୍ଶନ ରୂପ ଇଲାଗେ ଦେଖି ଗଲୁଟି, ଦେବତାମାନେ ବି ଏହି ରୂପର ଦର୍ଶନ ପାଇଁ ନିତି ସ୍ପୃହି ବସିଥାନ୍ତି । ୫୨ ।

**ନାହଂ ବେଦୈର୍ନ ତପସା ନ ଦାନେନ ନ ଚେଜ୍ୟୟା**
**ଶକ୍ୟ ଏବଂବିଧୋ ଦ୍ରଷ୍ଟୁଂ ଦୃଷ୍ଟବାନସି ମାଂ ଯଥା ।୫୩।**

ଅନ୍ୱୟ—ସ୍ପଷ୍ଟ । ୫୩ ।

ଟୀକା—[ଯଥୋକ୍ତଂ ମୟା ତଥା]—ନ ବେଦୈଃ, ନ ତପସା; ନ ଦାନେନ ନ ଚ ଇଜ୍ୟୟା (ଯଜ୍ଞେନ) ଅହଂ ଏବଂବିଧଃ ଦ୍ରଷ୍ଟୁଂ ଶକ୍ୟଃ । [କିଂ ବିଧଃ ?] ଯଥା ତ୍ୱଂ ମାଂ ଦୃଷ୍ଟବାନ୍ ଅସି । ୫୩ ।

ଅର୍ଥ—[ଯିମିତ କହୁଚ, ସିମିତଟି ଏକା]—ବେଦ, ତପସ୍ୟା, ଦାନ, କି ଯଜ୍ଞ—କାହିଁରେ ମୁଁ ଏ ପ୍ରକାର ଦେଖା ପଡ଼େ ନାହିଁ । [କି ପ୍ରକାର ?]—ଯେଉଁପରି ତୁ ମୋତେ ଦେଖିଲୁ [ପୂର୍ବେ ୧୧.୪୮ ଦେଖ] । ୫୩ ।

ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟଃ ଅହମେବଂବିଧୋଽର୍ଜୁନ ।
ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଂ ଚ ପରଂତପ ।୫୪।

ଅନ୍ୱୟ—ଅର୍ଜୁନ ! ପରଂତପ ! ତୁ ଅନନ୍ୟୟା ଭକ୍ତ୍ୟା ଏବଂବିଧଃ ଅହଂ ତତ୍ତ୍ୱେନ ଜ୍ଞାତୁଂ, ଦ୍ରଷ୍ଟୁଂ, ପ୍ରବେଷ୍ଟୁଂ ଚ ଶକ୍ୟଃ ।୫୪।

ଟୀକା—[ତର୍ହି କେନ ଦ୍ରଷ୍ଟୁଂ ଶକ୍ୟଃ ତ୍ୱଂ ?—ଇତ୍ୟ ଶଙ୍କ୍ୟାହ]—କିଂ ତୁ ହେ ଅର୍ଜୁନ, ହେ ପରଂତପ, ଅନନ୍ୟୟା (ଐକାନ୍ତିକୟା) ଭକ୍ତ୍ୟା ଏବଂବିଧଃ ଅହଂ ତତ୍ତ୍ୱେନ (ଯଥାର୍ଥତଃ) ଜ୍ଞାତୁଂ, ଦ୍ରଷ୍ଟୁଂ, ପ୍ରବେଷ୍ଟୁଂ ଚ ଶକ୍ୟଃ ।୫୪।

ଅର୍ଥ—[କିପରି ଦେଖାପଡ ? ଏଥକୁ କହୁଚନ୍ତି]—କିଂତୁ ହେ ଅର୍ଜୁନ, ହେ ପରଂତପ, ଏକାନ୍ତ ଭକ୍ତିରେ ହିଁ ମୁଁ ତତ୍ତ୍ୱରେ ଏପରି ଜଣାପଡ଼େ, ଦେଖା ଦିଏ ଓ ମୋ ଭିତରେ ପଶି ହୁଏ । (ଅର୍ଥାତ୍, ଭକ୍ତିରେ ହିଁ ମୋ ତତ୍ତ୍ୱ ଜାଣି ଶେଷରେ ମୋ ସଙ୍ଗେ ମିଶି ଏକ ହୋଇ ହୁଏ) । ୫୪ ।

ବ୍ୟାଖ୍ୟା ସୂଚନା—ଅନନ୍ୟ ଭକ୍ତିରେ ଭଗବାନ୍ ବୋଲି ବିଶ୍ୱ ଓ ବିଶ୍ୱାତ୍ମାଙ୍କୁ ବୁଝି ତନ୍ମୟ ହୋଇଗଲେ ଏକା ବିଶ୍ୱକୁ ଏହିପରି ଜାଣି ବିଶ୍ୱର ସ୍ଥୂଳରୂପରେ ଭକ୍ତ ଏଇପରି ଦେଖେ । ଏଇଭାବରେ ବିଭୂତି ଯୋଗ ଓ ବିଶ୍ୱରୂପ ଦର୍ଶନ ଯୋଗର ତାତ୍ତ୍ୱିକ ବ୍ୟାଖ୍ୟା ଏଠି ସ୍ପଷ୍ଟ କରି ହୋଇଚି । ୫୪ ।

ମତ୍‌କର୍ମକୃନ୍ମତ୍‌ପରମୋ ମଦ୍‌ଭକ୍ତଃ ସଙ୍ଗବର୍ଜିତଃ ।
ନିର୍ବୈରଃ ସର୍ବଭୂତେଷୁ ଯଃ ସ ମାମେତି ପାଣ୍ଡବ ।୫୫।

ଅନ୍ୱୟ—ସ୍ପଷ୍ଟ । ୫୫ ।

**ଟୀକା**—[ଅତଏବ] ହେ ପାଣ୍ଡବ, ଯଃ ମତ୍କର୍ମକୃତ୍, ମତ୍ପରମଃ (ମତ୍-ସର୍ବସ୍ୱଃ) ମଦ୍‌ଭକ୍ତଃ ସଙ୍ଗବର୍ଜିତଃ (ଅନାସକ୍ତଃ) [ତସ୍ମାତ୍] ସର୍ବଭୂତେଷୁ ନିର୍ବୈରଃ (ଦ୍ୱେଷରହିତଃ) ସଃ ମାଂ ଏତି (ପ୍ରାପ୍ନୋତି) । ୫୫ ।

**ଅର୍ଥ**—[ତେବେ] ହେ ପାଣ୍ଡବ, ଯେ ମୋର କର୍ମହିଁ କରେ, ମତେଇ ସର୍ବସ୍ୱ ମଣେ, ମୋତେଇ ଭକ୍ତିରେ ଧରେ, ଆସକ୍ତି ଛାଡ଼ି ପ୍ରାଣୀମାନଙ୍କରେ ବିରକ୍ତି ତୁଟାଇ ଥାଏ (ଅର୍ଥାତ୍, କର୍ତ୍ତବ୍ୟରେ ମାରିବା ଦରକାର ପଡ଼ିଲେ ମଧ୍ୟ, କାହାର ପ୍ରତି ମନ୍ଦଭାବ ଧରେ ନାହିଁ), ସେହି ମୋଠାକୁ ଆସେ (ମତେ ପାଏ) । ୫୫ ।



# ଦ୍ୱାଦଶ ଅଧ୍ୟାୟ
## ଭକ୍ତି-ଯୋଗ

**ଅଧ୍ୟାୟ ପ୍ରବେଶ—**

ସପ୍ତମ ଅଧ୍ୟାୟରେ ଜ୍ଞାନ-ବିଜ୍ଞାନ-ତତ୍ତ୍ୱ ବୁଝାଇବାକୁ ଆରମ୍ଭ କରି, ଭଗବାନ୍ କହିଲେ, ଆଧ୍ୟାତ୍ମ ଅବ୍ୟକ୍ତ ହିଁ ସବୁ—୭. ୧୯, ୨୪ ଦେଖ । ଅଷ୍ଟମରେ ଅକ୍ଷର ବ୍ରହ୍ମ ବୁଝାଇ, ଭକ୍ତିରେ ସେ ପରମ ପୁରୁଷ ମିଳେ ବୋଲି କହିଲେ—୮. ୨୦-୨୨ ଦେଖ । ନବମରେ ରାଜମାର୍ଗ ବୋଲି କହି ବ୍ୟକ୍ତ ଉପାସନାର ଭକ୍ତି କଥା ସ୍ପଷ୍ଟ ଆରମ୍ଭ କଲେ ୯. ୨୬-୨୮ ଦେଖ । ଦଶମ ଓ ଏକାଦଶରେ ସେହି ବ୍ୟକ୍ତର ବିଭୂତି ଓ ବ୍ୟକ୍ତ ବିଶ୍ୱରୂପରେ ଭକ୍ତର ଭଗବାନଙ୍କୁ ଦେଖାଇଲେ । ପୁଣି ଅବ୍ୟକ୍ତ ଓ ବ୍ୟକ୍ତ ଦୁଇ ଉପାସନାରେ ମଧ୍ୟ ଭକ୍ତିରେ ଲଗି ପରମେଶ୍ୱରଙ୍କର ବୋଲି ସବୁ କର୍ମ କରିବାକୁ କହିଲେ । ୮.୭; ୧୧. ୫୫ ଦେଖ ।

ଏହିପରି ଅବ୍ୟକ୍ତ ଭକ୍ତି ଓ ବ୍ୟକ୍ତ ଭକ୍ତି ଏହି ଦୁଇ ପ୍ରକାର କଥା ଶୁଣି, ଦ୍ୱାଦଶରେ ଅର୍ଜୁନ ଏବେ ପଚାରିଲେ, ଏ ଦୁଇଟିରୁ କେଉଁଟି ଭଲ । ଭଗବାନ୍ ବୁଝାଉଛନ୍ତି, ଦୁଇଟିରେ ଏକା ଗତି ମିଳେ, ମାତ୍ର ଅବ୍ୟକ୍ତ ଉପାସନା କଷ୍ଟ ଓ ବ୍ୟକ୍ତ ଉପାସନା ସୁଲଭ, ପୁଣି ଶୀଘ୍ର ଫଳପ୍ରଦ । ଏହି ବ୍ୟକ୍ତ ଉପାସନା ହିଁ ଯଥାର୍ଥ ଭକ୍ତି । ଈଶ୍ୱରଙ୍କୁ ଅର୍ପଣ କରି ବା ଈଶ୍ୱରଙ୍କର ବୋଲି ସବୁ କର୍ମ କରିଯିବା ହିଁ ଭକ୍ତିର ଯଥାର୍ଥ ଲକ୍ଷଣ । ସେଥିପାଇଁ ଭଗବାନଙ୍କଠାରେ ଚିତ୍ତ ସ୍ଥିର ରଖିବାରେ ଅଭ୍ୟାସ, ଜ୍ଞାନ, ଧ୍ୟାନ, ବିଭୂସେବା ପ୍ରଭୃତି ଉପାୟ କହିସାରି, ଶେଷରେ କର୍ମଫଳ ତ୍ୟାଗ ଶ୍ରେଷ୍ଠ ପନ୍ଥା ବୋଲି କହିଛନ୍ତି । ତହୁଁ ଭକ୍ତର ଲକ୍ଷଣମାନ ଚହ୍ଲାଇ ଦେଇ କହିଛନ୍ତି ଯେ, ଭକ୍ତ ହିଁ ଭଗବାନଙ୍କର ଅତ୍ୟନ୍ତ ପ୍ରିୟ ।

ଅର୍ଜୁନ ଉବାଚ

**ଏବଂ ସତତଯୁକ୍ତା ଯେ ଭକ୍ତାସ୍ତ୍ୱାଂ ପର୍ଯୁପାସତେ ।**
**ଯେ ଚାପ୍ୟକ୍ଷରମବ୍ୟକ୍ତଂ ତେଷାଂ କେ ଯୋଗବିତ୍ତମାଃ । ୧ ।**

**ଟୀକା**—ଅର୍ଜୁନ ଉବାଚ—ଏବଂ [ଯଥୋକ୍ତଂ ତ୍ୱୟା ତଥା] ସତତଯୁକ୍ତାଃ (ସଦା ତ୍ୱନ୍ନିଷ୍ଠାଃ) ଯେ ଭକ୍ତାଃ ତ୍ୱାଂ [ବ୍ୟକ୍ତପୁରୁଷଂ] ପର୍ଯୁପାସତେ, ଯେ ଚ [କେବଳଂ] ଅକ୍ଷରଂ ବ୍ୟକ୍ତିବିକାରେଷୁ ସର୍ବଥା ଅଲିପ୍ତଂ) ଅବ୍ୟକ୍ତଂ (ଅଚିନ୍ତ୍ୟଂ) [ନିର୍ଗୁଣଂ ନିର୍ବିକଳ୍ପଂ ବ୍ରହ୍ମ ଧ୍ୟାୟନ୍ତି] ତେଷାଂ [ଉଭୟମାର୍ଗିଣାଂ ମଧ୍ୟେ ] କେ ଯୋଗବିତ୍ତମାଃ ( ଶ୍ରେଷ୍ଠ-ଯୋଗଜ୍ଞାଃ ) । ୧ ।

**ଅନ୍ୱୟ**—ଏବଂ ସତତଯୁକ୍ତାଃ ଯେ ଭକ୍ତାଃ ତ୍ୱାଂ ପର୍ଯ୍ୟୁପାସତେ, ଯେ ଚ ଅପି ଅକ୍ଷରଂ ଅବ୍ୟକ୍ତଂ ତେଷାଂ କେ ଯୋଗ ବିତ୍ତମାଃ । ୧ ।

**ଅର୍ଥ**—ଅର୍ଜ୍ଜୁନ କହିଲେ—ଏହିପରି ସର୍ବଦା ତୁମର ଯୋଗରେ ଲାଗିରହି ଯେଉଁ ଭକ୍ତମାନେ ବ୍ୟକ୍ତପୁରୁଷ ବୋଲି ତୁମକୁ ଭଜନ୍ତି ( ପାଇବାରେ ଲାଗନ୍ତି ), [ପୁଣି ଯେଉଁମାନେ ବ୍ୟକ୍ତଶରୀର ବିକାରରୁ ଅତୀତ ] ଅବ୍ୟକ୍ତ ଅକ୍ଷର ବୋଲି ତୁମକୁ ଭଜନ୍ତି, ସେହି ଦୁଇ ପ୍ରକାର ଯୋଗୀଙ୍କ ଭିତରେ କିଏ ଭଲ ଯୋଗ ଜାଣିବାବାଲା ? । ୧ ।

ବ୍ୟାଖ୍ୟା ସୂଚନା—ବ୍ୟକ୍ତ ଭକ୍ତିହିଁ ଯଥାର୍ଥ ଭକ୍ତି ଓ ଅବ୍ୟକ୍ତ ଭକ୍ତି ଜ୍ଞାନ-ଉପାସନା—ଏହା ଏଠାରେ ମନେ ରଖିବାକୁ ହେବ । ଦ୍ୱିତୀୟ, ପଞ୍ଚମ ଓ ଷଷ୍ଠ ଅଧ୍ୟାୟରେ ଯେଉଁ ସାଂଖ୍ୟ ଓ ଯୋଗ କଥା କୁହାଯାଇଛି, ଏ ଅବ୍ୟକ୍ତ ଓ ବ୍ୟକ୍ତ ଉପାସନାର ମଧ୍ୟ ସେହି ଧାରା ଓ ସେହି ଲକ୍ଷ୍ୟ । ୧.୩୯;୫.୨-୬;୬.୨ ପ୍ରଭୃତି ଦେଖ । ୧ ।

ଶ୍ରୀ ଭଗବାନୁବାଚ

**ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।**
**ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ । ୨ ।**

**ଅନ୍ୱୟ**—ମୟି ମନଃ ଆବେଶ୍ୟ ପରୟା ଶ୍ରଦ୍ଧୟା ଉପେତାଃ, ନିତ୍ୟଯୁକ୍ତାଃ ଯେ ମାଂ ଉପାସତେ, ତେ ମେ ଯୁକ୍ତତମାଃ ମତାଃ । ୨ ।

**ଟୀକା**—[ ତତ୍ର ବ୍ୟକ୍ତଭକ୍ତପରାଃ ଶ୍ରେଷ୍ଠାଃ ଇତି]—ଶ୍ରୀ ଭଗବାନ୍ ଉବାଚ —ପୁରୁଷୋପାଧିବିଶିଷ୍ଟେ ମୟି ମନ ଆବେଶ୍ୟ ( ନିଧାୟ ) [ଅୟଂ ଈଶ୍ୱରଃ ମାଂ ଅନୁଗ୍ରହୀଷ୍ୟତି, ଇତି ] ପରୟା ଶ୍ରଦ୍ଧୟା ଉପେତାଃ (ଅନ୍ୱିତା) ନିତ୍ୟଯୁକ୍ତାଃ ( ନିତ୍ୟ-ନିରତାଃ) [ସନ୍ତଃ] ଯେ [ଭକ୍ତାଃ] ମାଂ ଉପାସତେ, ତେ ମେ (ମମ) ଯୁକ୍ତତମାଃ (ଶ୍ରେଷ୍ଠଯୋଗିନଃ) ମତାଃ । ୨ ।

**ଅର୍ଥ**—[ ସେ ଦୁହିଙ୍କ ଭିତରେ ବ୍ୟକ୍ତରେ ଭକ୍ତି କରିବା ଲୋକେ ବଡ଼ ବୋଲି ]—ଶ୍ରୀ ଭଗବାନ କହିଲେ—[ପୁରୁଷ ଗୁଣମାନ ଥିବାରୁ ଅନୁଗ୍ରହ କ୍ଷମାଦରେ ସମର୍ଥ ବୋଲି] ମୋଠି ମନ ଦେଇ ବିଶ୍ୱାସରେ ସବୁବେଳେ ଲାଗିପଡ଼ି ଯେ ମୋତେ ଭଜନ୍ତି, ସେହିମାନେ ଶ୍ରେଷ୍ଠଯୋଗୀ ବୋଲି ମୁଁ ମନକରେ । ୨ ।

**ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।**
**ସର୍ବତ୍ରଗମଚିନ୍ତ୍ୟଂ ଚ କୂଟସ୍ଥମଚଳଂ ଧ୍ରୁବମ୍ । ୩ ।**
**ସଂନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।**
**ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେରତାଃ । ୪ ।**

**ଅନ୍ୱୟ**—ଯେ ତୁ ଇନ୍ଦ୍ରିୟଗ୍ରାମଂ ସନ୍ନିୟମ୍ୟ ସର୍ବତ୍ର ସମବୁଦ୍ଧୟଃ ସର୍ବଭୂତହିତେରତାଃ [ସନ୍ତ] ସର୍ବତ୍ରଗଂ ଅଚିନ୍ତ୍ୟଂ ଚ କୂଟସ୍ଥଂ ଅଚଳଂ ଧ୍ରୁବଂ ଅବ୍ୟକ୍ତଂ ଅନିର୍ଦ୍ଦେଶ୍ୟଂ ତୁ ଅକ୍ଷରଂ ପର୍ଯ୍ୟୁପାସତେ, ତେ ମାଂ ଏବ ପ୍ରାପ୍ନୁବନ୍ତି । ୩-୪ ।

**ଟୀକା**—[ତର୍ହି ଅପରେ ମାଂ ନ ଲଭନ୍ତେ ଇତି ନ—ଇତ୍ୟାହ]—ଯେ ତୁ ଇନ୍ଦ୍ରିୟଗ୍ରାମଂ (ଇନ୍ଦ୍ରିୟସମୂହଂ) ସନ୍ନିୟମ୍ୟ (ସ୍ୱବଶୀକୃତଂ) [ଇଷ୍ଟାନିଷ୍ଟେ] ସର୍ବତ୍ର ସମବୁଦ୍ଧୟଃ ସର୍ବଭୂତହିତେରତାଃ [ସନ୍ତଃ] ସର୍ବତ୍ରଗଂ (ସର୍ବବ୍ୟାପିନଂ ଅଚିନ୍ତ୍ୟଂ ଚ କୂଟସ୍ଥଂ (ସର୍ବୋପରସ୍ଥଂ, ଅବସ୍ଥାତ୍ରୟଂ ଅଚଳଂ ଅବିକୃତଂ) ଧ୍ରୁବଂ (ସ୍ଥିରଂ) ଅବ୍ୟକ୍ତଂ ଇନ୍ଦ୍ରିୟୈ, ପ୍ରମାଣୈ ବା ଅଗମ୍ୟଂ ଅନିର୍ଦ୍ଦେଶ୍ୟଂ (ଇଦମିତ୍ଥମ୍ ଇତ୍ୟଦ୍ ବା —ଇତି ଅପରିଚ୍ଛେଦ୍ୟଂ) ଅକ୍ଷରଂ (ନିତ୍ୟଂ) [ବ୍ରହ୍ମ] ପର୍ଯ୍ୟୁପାସତେ, ତେ ମାଂ ଏବ ପ୍ରାପ୍ନୁବନ୍ତି । ୩-୪ ।

**ଅର୍ଥ**—[ତେବେ ଅନ୍ୟ ଦଳ ଯେ ମତେ ନ ପାଆନ୍ତି, ତା ନୁହେ—ବୋଲି କହୁଚନ୍ତି]—ତେବେ ଯେ ଇନ୍ଦ୍ରିୟମାନେ ବଶ କରି, ଇଷ୍ଟ ଅନିଷ୍ଟ, ସବୁଥିରେ ସମାନ ବୁଦ୍ଧି ରଖି, ସର୍ବ ପ୍ରାଣୀ ହିତରେ ଲାଗିରହି, ସର୍ବବ୍ୟାପୀ, ଅଚିନ୍ତନୀୟ, ସର୍ବାତୀତ (ସର୍ବୋପରିସ୍ଥିତ), ଅଚଳ, ସ୍ଥିର, ଅପ୍ରକାଶ (ଅବ୍ୟକ୍ତ), ଅକଳନ, ଅକ୍ଷର ବ୍ରହ୍ମଙ୍କୁ ପାଇବାରେ ଲାଗନ୍ତି, ସେମାନେ ବି ମତେଇ ପାଆନ୍ତି । ୩-୪ ।

**କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍ ।**
**ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍‌ଭିରବାପ୍ୟତେ । ୫ ।**

**ଅନ୍ୱୟ**—ଅବ୍ୟକ୍ତାସକ୍ତଚେତସାଂ ତେଷାଂ ଅଧିକତରଃ କ୍ଲେଶଃ ହି ଦେହବଦ୍‌ଭିଃ ଅବ୍ୟକ୍ତା ଗତିଃ ଦୁଃଖଂ ଅବାପ୍ୟତେ । ୫ ।

**ଟୀକା**—[ତଥାପି ଏବଂ] ଅବ୍ୟକ୍ତାସକ୍ତଚେତସାଂ (ଅବ୍ୟକ୍ତେ ଦତ୍ତଚିତ୍ତାନାଂ) ତେଷାଂ ଅଧିକତରଃ କ୍ଲେଶଃ; ହି (ଯତଃ) ଦେହବଦ୍‌ଭିଃ (ବ୍ୟକ୍ତଦେହଧାରିଭିଃ) ଅବ୍ୟକ୍ତା (ଅବ୍ୟକ୍ତବିଷୟା) ଗତିଃ (ନିଷ୍ଠା, ସିଦ୍ଧିର୍ବା) ଦୁଃଖଂ (କଷ୍ଟେନ) ଅବାପ୍ୟତେ (ପ୍ରାପ୍ୟତେ) । ୫ ।

**ଅର୍ଥ**—[ହେଲେହେଁ ଏତିକି] ଅବ୍ୟକ୍ତ ବା ଅପ୍ରକାଶ ବ୍ରହ୍ମରେ ମନ ଦେଇଥିବା ସେହି ଲୋକମାନଙ୍କର କ୍ଲେଶ ବେଶି; କାହିଁକି ନା, ବ୍ୟକ୍ତଦେହଧାରୀ ମାନବକୁ ଅମୂର୍ତ୍ତ (ଅବ୍ୟକ୍ତ) ଉପାସନାର ଗତି କଷ୍ଟରେ ମିଳେ । ୫. ୨; ୩. ୬ ଦେଖ । ୫ ।

ବ୍ୟାଖ୍ୟା ସୂଚନା—[ଦେହଧାରୀ ମନୁଷ୍ୟ ଅମୂର୍ତ୍ତ ସ୍ୱରୂପର କଳ୍ପନାହିଁ କରିପାରେ । ସେହି ଅମୂର୍ତ୍ତ ସ୍ୱରୂପକୁ ବର୍ଣ୍ଣନା କରିବାକୁ ଗୋଟିଏ ହେଲେ ଶବ୍ଦ ନାହିଁ । ସେଥିପାଇଁ ବେଦରେ ଏ ନୁହେ, ଏ ନୁହେ (ନେତି, ନେତି) ବୋଲି ବୁଝାଇଚନ୍ତି । ଯେଉଁମାନେ ମୂର୍ତ୍ତିପୂଜା ମନା କରନ୍ତି, ସେମାନେ ସୂକ୍ଷ୍ମଭାବରେ ଦେଖିଲେ ମୂର୍ତ୍ତିପୂଜାହିଁ କରନ୍ତି । ପୁସ୍ତକ ପୂଜା କରିବା, ମନ୍ଦିରରେ ଯାଇ ପୂଜା କରିବା, ଗୋଟିଏ ଦିଗକୁ ମୁହଁ କରି ପୂଜା କରିବା—ସବୁ ଏକ ପ୍ରକାର ମୂର୍ତ୍ତିପୂଜା । ତଥାପି ସାକାର ଆଉ ପାଖେ ନିରାକାର ଅଛି । ଭକ୍ତର ଶେଷ ହେଉଚି, ଭକ୍ତ ଭଗବାନଠାରେ ଲୀନ ହେବା ଓ ଦୁହେଁ ଏକରୂପ ହେବା । ହେଲେହେଁ ସାକାର ବା ସମ୍ପୂର୍ଣ୍ଣ ଈଶ୍ୱର ପୁରୁଷ ଭଜିବାରେ ଏହି ଭକ୍ତି ସୁଲଭ ହୁଏ । ଏଣୁ ନିରାକାରକୁ ସିଧା ପହଞ୍ଚିବା କଷ୍ଟ ବୋଲି କୁହାଯାଇଚି]—ମହାତ୍ମା ଗାନ୍ଧୀ । ୫ ।

**ଯେ ତୁ ସର୍ବାଣି କର୍ମାଣି ମୟି ସଂନ୍ୟସ୍ୟ ମତ୍ପରାଃ ।**
**ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ । ୬ ।**
**ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍ ।**
**ଭବାମି ନ ଚିରାତ୍ ପାର୍ଥ ମୟ୍ୟାବେଶିତଚେତସାମ୍ । ୭ ।**

**ଅନ୍ୱୟ**—[କିଂ] ତୁ ପାର୍ଥ ! ଯେ ସର୍ବାଣି କର୍ମାଣି ମୟି ସଂନ୍ୟସ୍ୟ ମତ୍ପରାଃ ଅନନ୍ୟେନ ଏବ ଯୋଗେନ ମାଂ ଧ୍ୟାୟନ୍ତଃ ଉପାସତେ, ମୟି ଆବେଶିତଚେତସାଂ ତେଷାଂ ମୃତ୍ୟୁସଂସାର-ସାଗରାତ୍ ନ ଚିରାତ୍ ଅହଂ ସମୁଦ୍ଧର୍ତ୍ତା ଭବାମି । ୬-୭ ।

**ଟୀକା**—[ଈଶ୍ୱରଭକ୍ତାନାଂ ସିଦ୍ଧିଃ ସୁଗମା ଇତ୍ୟାହ ]—[କିଂ] ତୁ ହେ ପାର୍ଥ, ଯେ ସର୍ବାଣି କର୍ମାଣି ମୟି ( ପୁରୁଷ ରୂପେ ଈଶ୍ୱରେ ) ସଂନ୍ୟସ୍ୟ ( ସମର୍ପ୍ୟ ) ମତ୍ପରାଃ [ସନ୍ତଃ] ଅନନ୍ୟେନ ଏବ ଯୋଗେନ ମାଂ ଧ୍ୟାୟନ୍ତଃ [ସନ୍ତଃ] ଉପାସତେ (ମାଂ ପ୍ରାପ୍ତୁମିଚ୍ଛନ୍ତି), ମୟି ଆବେଶିତଚେତସାଂ (ଦତ୍ତଚିତ୍ତାନାଂ) ତେଷାଂ ମୃତ୍ୟୁସଂସାର-ସାଗରାତ୍ (ଜନ୍ମମୃତ୍ୟୁପ୍ରବାହ ଦୁସ୍ତରସମୁଦ୍ରାତ୍) ନ ଚିରେଣ ଅହଂ ସମୁଦ୍ଧର୍ତ୍ତା (ଉଦ୍ଧାର-କର୍ତ୍ତା) ଭବାମି । ୬-୭ ।

**ଅର୍ଥ**—[ଈଶ୍ୱର ପୁରୁଷ-ଭକ୍ତଙ୍କର ସିଦ୍ଧି ସହଜ ବୋଲି କହୁଚନ୍ତି]—କିନ୍ତୁ ହେ ପାର୍ଥ, ଯେ ସବୁ କର୍ମ ମୋର ଉପରେ ପକାଇଦେଇ (ଅର୍ଥାତ୍, ଈଶ୍ୱରଙ୍କର ବୋଲି ବିଚାରି, ନିଜେ ନିମିତ୍ତମାତ୍ର ହୋଇକରି) ମୋଠାରେ ତତ୍ପର ରହି ଆଉ କାହାଠାରେ ମନ ନ ଦେଇ, ମୋଠାରେ ଏକା ଧ୍ୟାନ ଲଗାଇ, ମୋତେ ପାଇବାକୁ ଲୋଡ଼ନ୍ତି

(ଆରାଧନା କରନ୍ତି), ମୋଠାରେ ଚିତ୍ତ ଦେଇଥିବାରୁ ସେହି ଲୋକଙ୍କୁ ଅଳ୍ପ କାଳରେ ମୁଁ ଜନ୍ମମରଣରୂପ ସଂସାରସମୁଦ୍ରରୁ ପାର୍ କରାଏ । ୬-୭ ।

**ମୟ୍ୟେବ ମନ ଆଧତ୍ସ୍ୱ ମୟି ବୁଦ୍ଧିଂ ନିବେଶୟ।**
**ନିବସିଷ୍ୟସି ମୟ୍ୟେବ ଅତ ଊର୍ଦ୍ଧ୍ୱଂ ନ ସଂଶୟଃ । ୮ ।**

**ଅନ୍ୱୟ**—ମୟି ଏବ ମନଃ ଆଧତ୍ସ୍ୱ, ମୟି ବୁଦ୍ଧିଂ ନିବେଶୟ, ଅତଃ ଊର୍ଦ୍ଧ୍ୱଂ ମୟି ଏବ ନିବସିଷ୍ୟସି, ସଂଶୟଃ ନ । ୮ ।

**ଟୀକା**—[ତସ୍ମାତ୍] ମୟି (ଈଶ୍ୱରସ୍ୱରୂପେ) ଏବ ମନଃ ଆଧତ୍ସ୍ୱ (ସ୍ଥିରଂ କୁରୁ), ମୟି ବୁଦ୍ଧିଂ (ବିବେକଶକ୍ତିଂ) ନିବେଶୟ (ସ୍ଥାପୟ), ଅତଃ ଊର୍ଦ୍ଧ୍ୱଂ (ପରଂ—ଏବଂ କୃତେ ସତ୍ୟନ୍ତ ଭାବିଃ) ମୟି ଏବ (ନିବସିଷ୍ୟସି); (ନିତ୍ୟଂ ସ୍ଥାସ୍ୟସି); [ଅତ୍ର] ସଂଶୟଃ ନ [ଅସ୍ତି] । ୮ ।

**ଅର୍ଥ**—[ଏବେ] ମୋଠାରେ ମନ ଦେ, ବୁଦ୍ଧି (ବିବେକ) ରଖ; ଏହା କଲେ ମୋଠାରେ ବରାବର ରହିବୁ, ଏଥିରେ ସନ୍ଦେହ ନାହିଁ । ୮ ।

**ଅଥ ଚିତ୍ତଂ ସମାଧାତୁଂ ନ ଶକ୍ନୋଷି ମୟି ସ୍ଥିରମ୍ ।**
**ଅଭ୍ୟାସଯୋଗେନ ତତୋ ମାମିଚ୍ଛାପ୍ତୁଂ ଧନଞ୍ଜୟ । ୯ ।**

**ଅନ୍ୱୟ**—ଅଥ ଧନଞ୍ଜୟ ! ମୟି ଚିତ୍ତଂ ସ୍ଥିରଂ ସମାଧାତୁଂ ନ ଶକ୍ନୋଷି, ତତଃ ଅଭ୍ୟାସଯୋଗେନ ମାଂ ଆପ୍ତୁଂ ଇଚ୍ଛ । ୯ ।

**ଟୀକା**—ଅଥ (ଅନନ୍ତରଂ) [ଯଦି] ହେ ଧନଂଜୟ, ମୟି ଚିତ୍ତଂ ସ୍ଥିରଂ ସମାଧାତୁଂ (ଏକତ୍ୱେନ ସମତ୍ୱେନ ବା ସ୍ଥାପୟିତୁଂ) ନ ଶକ୍ନୋଷି, ତତଃ ଅଭ୍ୟାସ-ଯୋଗେନ (ଚଳଚିତ୍ତଂ ପୁନଃ ପୁନଃ ପ୍ରତ୍ୟାହୃତ୍ୟ ମଦନୁସରଣଲକ୍ଷଣଃ ଯଃ ଅଭ୍ୟାସଃ ସ ଏବ ଯୋଗଃ, ତେନ) ମାଂ ଆପ୍ତୁଂ ଇଚ୍ଛ (ଯତସ୍ୱ) । ୯ ।

**ଅର୍ଥ**—ତେବେ ହେ ଧନଞ୍ଜୟ, ଯେବେ ମୋଠି ମନ ସ୍ଥିର କରି ରଖି ନ ପାରୁଛୁ, ତେବେ ମନ ମୋଠି କରିବାର ଅଭ୍ୟାସରେ ଲାଗି ମୋତେ ପାଇବାକୁ ଯତ୍ନ କର୍ । ୯ ।

ବ୍ୟାଖ୍ୟା ସୂଚନା—ଅଭ୍ୟାସ-ଯୋଗ ବା ଧ୍ୟାନ-ଯୋଗର ଉପଯୋଗିତା ଏତିକ ଓ ଏଇଥିପାଇଁ ବୋଲି ଗୀତାର ମତ । ଏହାହିଁ ପାତଞ୍ଜଳ ଯୋଗ ଷଷ୍ଠ ଅଧ୍ୟାୟରେ ଗୀତାର ବ୍ରହ୍ମପ୍ରାପ୍ତ୍ୟର୍ଥ କର୍ମ-ଯୋଗରେ ଏହାର ଉପଯୋଗିତା ବିଷୟ ଭଲ କରି କୁହାଯାଇଛି । ଏହି ଭକ୍ତି-କର୍ମଯୋଗ ବା ଈଶ୍ୱରାର୍ଥ କର୍ମରେ ମୋକ୍ଷ-

ସାଧନ କୌଶଳହିଁ ଗୀତାର ଯୋଗ । ୬. ୨୫, ୨୬ ଦେଖ । ପୁଣି ଏଠାରେ ଅଭ୍ୟାସ-ଯୋଗ କଥାରେ ଅଭ୍ୟାସ ଜ୍ଞାନ ଓ ଧ୍ୟାନ ସବୁ ଅଛି—ଏହା ବୁଝିବାକୁ ହେବ । ପରର ୧୨. ୧୨ ଦେଖ । ୯ ।

**ଅଭ୍ୟାସେଽପ୍ୟସମର୍ଥୋଽସି ମତ୍କର୍ମପରମୋ ଭବ ।**
**ମଦର୍ଥମପି କର୍ମାଣି କୁର୍ବନ୍ ସିଦ୍ଧିମବାପ୍ସ୍ୟସି । ୧୦ ।**

**ଅନ୍ୱୟ**—ଅଭ୍ୟାସେ ଅପି ଅସମର୍ଥଃ ଅସି ମତ୍କର୍ମପରମଃ ଭବ । ମଦର୍ଥଂ ଅପି କର୍ମାଣି କୁର୍ବନ୍ ସିଦ୍ଧିଂ ଅବାପ୍ସ୍ୟସି । ୧୦ ।

**ଅର୍ଥ**—[ଏବଂ] ଅଭ୍ୟାସେ ଅପି ଅସମର୍ଥଃ ଅସି [ ଚେତ୍, ତର୍ହି ] ମତ୍କର୍ମ-ପରମଃ ସର୍ବଂ କର୍ମ ଈଶ୍ୱରସ୍ୟ ଇତି ତସ୍ମିନ୍ନିବିଷ୍ଟଃ, ଯଦ୍ୱା ମଦର୍ଥଂ ସେବା-କୀର୍ତ୍ତନ-ପୂଜା ପାଠାଦି କର୍ମ ପରମଂ ସର୍ବସ୍ୱଂ ଯସ୍ୟ, ତଥାଭୂତଃ ଭବ । [ଏବଂ] ମଦର୍ଥଂ ଅପି କର୍ମାଣି କୁର୍ବନ୍ ସିଦ୍ଧିଂ ଅବାପ୍ସ୍ୟସି (ଲପ୍ସ୍ୟତେ) । ୧୦ ।

**ଟୀକା**—[ଏହିପରି] ଅଭ୍ୟାସରେ ବି ଯେବେ ମନ ମୋଠି ସ୍ଥିର କରି ଲଗାଇ ନ ପାରୁଚୁ, ତେବେ ମୋର ସବୁ କର୍ମ, ତୁ କରୁଚୁ ବୋଲି ବିଶ୍ବାସ, (କିଂବା ମୋରଲାଗି ସେବା କୀର୍ତ୍ତନ ପୂଜା ପାଠାଦି କର୍ମକୁ ସର୍ବସ୍ୱ କରି ଧର) ଏହିପରି ମୋ ପାଇଁ କର୍ମ କରୁ କରୁ ବି ସିଦ୍ଧି ପାଇବୁ । ୧୦ ।

ବ୍ୟାଖ୍ୟା ସୂଚନା—ମୋର ପାଇଁ ବା ମୋର ଉପାସନାର କର୍ମ କରୁ କରୁ ମୋଠି ମନ ବଳେ ଲାଗିଯିବ, ଆଉ ଧ୍ୟାନ ଅଭ୍ୟାସରେ ଯେ ବିଚଳନର ଆଶଙ୍କା ଅଛି, ତା ରହିବ ନାଇ । ପୁଣି ଧ୍ୟାନ ଅଭ୍ୟାସାଦି ଯୋଗ ବିଶେଷରେ ଅବ୍ୟକ୍ତ ଉପାସନାର ପନ୍ଥା; ସେବା ପୂଜା କୀର୍ତ୍ତନାଦି କେବଳ ବ୍ୟକ୍ତ ଉପାସନାର ସରଳ ଓ ସାଧାରଣ ମାର୍ଗ, ବା ଯଥାର୍ଥ ଭକ୍ତିମାର୍ଗ, ଏହି ଅଭିପ୍ରାୟ ମଧ୍ୟ ଏଠାରେ ଅଛି । ମାତ୍ର ଯୋଗରେ ସ୍ଥିର ରହି କର୍ମଫଳ ଛାଡ଼ିବାହିଁ ଧ୍ୟାନ ଅଭ୍ୟାସ, ତଥା ବ୍ୟକ୍ତ ସେବା—ଦୁହିଙ୍କର ଶେଷ ଉଦ୍ଦେଶ୍ୟ । ତାହାହିଁ ଗୀତାର ଯୋଗ । ସେଥିପାଇଁ ପର ଶ୍ଳୋକରେ କହୁଚନ୍ତି । [ ଅଭ୍ୟାସ = ଚିତ୍ତବୃତ୍ତି ନିରୋଧର ସାଧନ; ଜ୍ଞାନ = ଶ୍ରବଣ ମନନାଦି ଧ୍ୟାନ = ଉପାସନା । ଏ ସମସ୍ତଙ୍କ ଫଳରେ ଯେବେ କର୍ମଫଳ ତ୍ୟାଗ ନ ଆସେ, ତେବେ ସେ ଅଭ୍ୟାସ, ଅଭ୍ୟାସ ନୁହେଁ; ସେ ଜ୍ଞାନ, ଜ୍ଞାନ ନୁହେଁ, କି ସେ ଧ୍ୟାନ, ଧ୍ୟାନ ନୁହେ— ମହାତ୍ମା ଗାନ୍ଧୀ ।]

**ଅଥୈତଦପ୍ୟଶକ୍ତୋଽସି କର୍ତ୍ତୁଂ ମଦ୍‌ଯୋଗମାଶ୍ରିତଃ ।**
**ସର୍ବକର୍ମଫଳତ୍ୟାଗଂ ତତଃ କୁରୁ ଯତାତ୍ମବାନ୍ । ୧୧ ।**

**ଅନ୍ୱୟ**—ଅଥ ଏତତ୍ କର୍ତ୍ତୁଂ ଅପି ଅଶକ୍ତଃ ଅସି, ମଦ୍‌ଯୋଗ ଆଶ୍ରିତଃ ଯତାତ୍ମବାନ୍ ତତଃ ସର୍ବକର୍ମଫଳତ୍ୟାଗଂ କୁରୁ । ୧୧ ।

**ଟୀକା**—ଅଥ ଏତତ୍ (ଏବଂ ମଦର୍ଥଂ କର୍ମ) କର୍ତ୍ତୁଂ ଅପି ଅଶକ୍ତଃ (ଅକ୍ଷମଃ) ଅସି [ଚେତ୍, ତର୍ହି] ମଦ୍‌ଯୋଗଂ (ସର୍ବକର୍ମଣି ନିତ୍ୟଂ ମତ୍ପରତ୍ୱଂ) ଆଶ୍ରିତଃ (ଅବଲମ୍ବମାନଃ) [ସନ୍] ଯତାତ୍ମବାନ୍ ସ୍ୱବଶୀକୃତେନ୍ଦ୍ରିୟମନାଃ) [ଭୂତ୍ୱା] ତତଃ ସର୍ବକର୍ମଫଳତ୍ୟାଗଂ କୁରୁ । (ତସ୍ମାତ୍ ଈଶ୍ୱରସ୍ୟ ସର୍ବଂ କର୍ମ ଅହଂ କରୋମି ଇତି ସନ୍ କରୋମୀତି ଦୃଢ଼ା ଭକ୍ତିଃ ସ୍ୱତଃ ସ୍ୟାତ୍ ଇତି ଭାବଃ) । ୧୧ ।

**ଅର୍ଥ**—ମାତ୍ର ଏହିପରି ମୋ ଆରାଧନା ପାଇଁ କର୍ମରେ ଲାଗିରହିବାରେ ଯେବେ ଅକ୍ଷମ ହେଉଛ (ଅର୍ଥାତ୍, ଏହିସବୁ କାମରେ ମନ ଠିକ୍ ନ ରହି ଯେବେ ଆଉ ଅଉ କାମରେ ସ୍ୱାଡ୍ରେ ସ୍ୟାଡ୍ରେ ହେଉଛି), ତେବେ ଈଶ୍ୱରହିଁ ସବୁ ବୋଲି ବିଚାରି, ସବୁ କର୍ମରେ ମୋର ଯୋଗରେ ଆପଣାକୁ ଠିକ୍ ରଖି, ପରେ ସବୁ କର୍ମର ଫଳତ୍ୟାଗ କର । ୧୧ ।

ବ୍ୟାଖ୍ୟା ସୂଚନା—ଏଥିରେ ହିଁ ଶାନ୍ତି ବା ସିଦ୍ଧି ମିଳେ ବୋଲି ପର ଶ୍ଳୋକରେ କହିବେ । ଏହାହିଁ ଗୀତା ପ୍ରଶଂସିତ ଯୋଗର ଶ୍ରେଷ୍ଠ ସାଧନା । ଧ୍ୟାନଯୋଗ ଏଇଥିପାଇଁ ଦରକାର । ଧ୍ୟାନରେ ମନ ଠିକ୍ ରଖିବା ସାଧାରଣ ଲୋକ ପକ୍ଷରେ କଷ୍ଟ; କାରଣ, କର୍ମଫଳର ଆସକ୍ତି ମନୁଷ୍ୟକୁ ଟାଣେ । ସେଥିପାଇଁ ସେବା ପୂଜାରେ ଲାଗି ରହିବାର ବିଧି । ସେଥିରେ ଭକ୍ତର ଈଶ୍ୱରଭାବ ଦୃଢ଼ ହୁଏ । ମାତ୍ର ସେଥିରେ ମଧ୍ୟ ଅନ୍ୟ କର୍ମ ମନକୁ ଟାଣି ପାରେ । ସେଥିପାଇଁ କର୍ମେ କର୍ମେ ଈଶ୍ୱରଙ୍କୁ ଦେଖି ବା ଯୋଗରେ ଲାଗି ଫଳ ତ୍ୟାଗ କରିବାର ପନ୍ଥା ଧରିବା ଉଚିତ । ଏଥିରେ ଆଉ ପ୍ରତ୍ୟବାୟାଦି ନାହିଁ । ପୁଣି ପୂର୍ବେ କହିଚନ୍ତି, ଏଇ ଯୋଗରୁ ଟିକିଏ ହେଲେ ବି ମହାଭୟରୁ ତ୍ରାଣ କରେ । ୨.୪୦ ଦେଖ । ଜିଜ୍ଞାସୁ ବି ଶବ୍ଦବ୍ରହ୍ମ ପାର ହୁଏ । ୬.୪୪ ଦେଖ ।

**ଶ୍ରେୟୋ ହି ଜ୍ଞାନମଭ୍ୟାସାଜ୍ଜ୍ଞାନାଦ୍ଧ୍ୟାନଂ ବିଶିଷ୍ୟତେ ।**
**ଧ୍ୟାନାତ୍ କର୍ମଫଳତ୍ୟାଗସ୍ତ୍ୟାଗାଚ୍ଛାନ୍ତିରନନ୍ତରମ୍ । ୧୨ ।**

**ଅନ୍ୱୟ**—ହି ଅଭ୍ୟାସାତ୍ ଜ୍ଞାନଂ ଶ୍ରେୟଃ, ଜ୍ଞାନାତ୍ ଧ୍ୟାନଂ ବିଶିଷ୍ୟତେ, ଧ୍ୟାନାତ୍ କର୍ମଫଳତ୍ୟାଗଃ [ଶ୍ରେୟାନ୍] ତ୍ୟାଗାତ୍ ଅନନ୍ତରଂ ଶାନ୍ତିଃ [ନିଶ୍ଚିତା] । ୧୨ ।

**ଟୀକା**—[ତତ୍ ଫଳତ୍ୟାଗଂ ସ୍ତୌତି]—ହି (ଯତଃ) ଅଭ୍ୟାସାତ୍ [ଈଶ୍ୱର-ସ୍ୱରୂପସ୍ୟ] ଜ୍ଞାନଂ ଶ୍ରେୟଃ [ନିରର୍ଥକୋଽଭ୍ୟାସଃ ତଜ୍ଜ୍ଞାନଂ ବିନା; ତଜ୍ଜ୍ଞାନମୂଳୋଽ

ଭ୍ୟାସଃ—ଇତ୍ୟର୍ଥଃ [ ଜ୍ଞାନାତ୍ [ଈଶ୍ୱରେ ମନୋବୁଦ୍ଧି-ନିବେଶନାତ୍] ଧ୍ୟାନଂ ବିଶିଷ୍ୟତେ [ଯତଃ ନିଷ୍ଫଳଂ ଜ୍ଞାନଂ ତଦ୍ଧ୍ୟାନଂ ବିନା], ଏବଂ [ଜ୍ଞାନାଭ୍ୟାସପୂର୍ବକାତ୍] ଧ୍ୟାନାତ୍ [ଅପି] କର୍ମଫଳତ୍ୟାଗଃ [ଶ୍ରେୟାନ୍]; [ଯତଃ ଏତସ୍ମାତ୍ ତ୍ୟାଗାତ୍ ଅନନ୍ତରଂ ତଦ୍ଧ୍ୟାନଗତଚରୂପା] ଶାନ୍ତିଃ (ସର୍ବତୋଭାବେନ ଚିତ୍ତସ୍ଥୈର୍ଯ୍ୟଂ) [ଜାୟତେ] । ୧୨ ।

**ଅର୍ଥ**—[ସେହି କର୍ମଫଳତ୍ୟାଗହିଁ ସବୁଠାରୁ ଭଲ ପନ୍ଥା ବୋଲି ବୁଝାଉଅଛନ୍ତି]—କାହିଁକିନା, ଅଭ୍ୟାସରୁ ତ ଈଶ୍ୱର ସ୍ୱରୂପ ଜ୍ଞାନ ବଡ଼ । (କାରଣ, ଜ୍ଞାନ ନ ଥିଲେ କାହା ଯେନି ବା ଅଭ୍ୟାସ ? ) ଜ୍ଞାନଠୁ ତ ଧ୍ୟାନ ବଡ଼େ । (କାରଣ, ଖାଲି ଜ୍ଞାନ ଥିଲେହେଁ ଧ୍ୟାନ ନ କଲେ ଈଶ୍ୱରଙ୍କଠି ମନ ବୁଦ୍ଧି ଲଗାଇ ହେବ ନାଇ । ) ଧ୍ୟାନଠୁ ବି ବଡ଼େ କର୍ମଫଳ ତ୍ୟାଗ । ଏହି ତ୍ୟାଗ ଉତ୍ତାରୁ ଶାନ୍ତି ଯେ ମନକୁ ହୁଏ । (ଅର୍ଥାତ୍, ଧ୍ୟାନ ବିଗିଡ଼ି ଯାଇପାରେ, ଆଳସ୍ୟ ବି ଆସିପାରେ, ଫଳରେ ଧ୍ୟାନରେ ଶାନ୍ତି ବା ଚିତ୍ତର ସ୍ଥିରତା ନ ହୋଇପାରେ । ମାତ୍ର କର୍ମ ମୋର, ଫଳରେ ମୋର କିଛି ନାଇ ବୋଲି କର୍ମ କରି ବସିଲେ ଅସୁବିଧା କିଛି ନାଇ । ପୂର୍ବ ଶ୍ଳୋକର ଟୀକା ଓ ୬.୩ ଟୀକା ଦେଖ) । ୧୨ ।

**ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ।**
**ନିର୍ମମୋ ନିରହଂକାରଃ ସମଦୁଃଖସୁଖଃ କ୍ଷମୀ । ୧୩ ।**
**ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ନିଶ୍ଚୟଃ ।**
**ମୟ୍ୟର୍ପିତମନୋବୁଦ୍ଧିର୍ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ ।୧୪।**

**ଅନ୍ୱୟ**—ସର୍ବଭୂତାନାଂ ଅଦ୍ୱେଷ୍ଟା, ମୈତ୍ରଃ କରୁଣଃ, ଏବ ଚ ନିର୍ମମଃ, ନିରହଂକାରଃ, ସମଦୁଃଖସୁଖଃ, କ୍ଷମୀ, ସତତଂ ସନ୍ତୁଷ୍ଟଃ, ଯୋଗୀ, ଯତାତ୍ମା, ଦୃଢ଼ନିଶ୍ଚୟଃ ଯଃ ମୟି ଅର୍ପିତମନୋବୁଦ୍ଧିଃ, ମଦ୍‌ଭକ୍ତଃ ସଃ ମେ ପ୍ରିୟଃ । ୧୩-୧୪ ।

**ଟୀକା**—[ଏବଂବିଧଫଳତ୍ୟାଗିନଃ ଭକ୍ତସ୍ୟ ସ୍ୱସ୍ୱଧାରଣାଂ କାରୟିଷ୍ୟନ୍ ତମେବ ଭକ୍ତଂ ନାନାଲକ୍ଷଣୈଃ ବର୍ଣ୍ଣୟତି ସପ୍ତଭିଃ=ସର୍ବଭୂତାନାଂ [ବିପକ୍ଷେ, ଉତ୍ପନ୍ନେଷୁ ] ଅଦ୍ୱେଷ୍ଟା (ଦ୍ୱେଷଶୂନ୍ୟଃ, ପରଶ୍ରୀକାତରତାରହିତଃ) [ ସମେଷୁ ] ମୈତ୍ରଃ (ମିତ୍ରଭାବାପନ୍ନଃ, [ହୀନେଷୁ] କରୁଣଃ (ସଦୟଃ) ଏବ ଚ; ନିର୍ମମଃ (ମମେତ୍ୟଭିମାନଶୂନ୍ୟଃ) [ଅତଏବ] ନିରହଂକାରଃ (ନିରଭିମାନଃ) ସମଦୁଃଖସୁଖଃ (ଦୁଃଖେଷ୍ୱନୁଦ୍‌ବିଗ୍ନମନାଃ, ସୁଖେଷୁ ବିଗତସ୍ପୃହଃ—୨ ୫୬) କ୍ଷମୀ (ସର୍ବସହିଷ୍ଣୁଃ) ସତତଂ ସନ୍ତୁଷ୍ଟଃ, ଯୋଗୀ (ସର୍ବକର୍ମଣି ସମାହିତଃ) ଯତାତ୍ମା (ସଂଯତେନ୍ଦ୍ରିୟମନାଃ); ଦୃଢ଼ନିଶ୍ଚୟଃ (ଅବିଚଳିତଃ) [ ସନ୍ ] ଯଃ ମୟି ଅର୍ପିତମନୋବୁଦ୍ଧିଃ [ସନ୍] ମଦ୍‌ଭକ୍ତଃ, ସଃ ମେ (ମମ) ପ୍ରିୟଃ । ୧୩-୧୪ ।

**ଅର୍ଥ**—[ଏହିପରି ଫଳତ୍ୟାଗୀ ଭକ୍ତର ସ୍ପଷ୍ଟ ଧାରଣା କରାଇବା ପାଇଁ ସେହି ସେହି ଭକ୍ତର ଲକ୍ଷଣମାନ ଦେଖାଇ ସାତ ଶ୍ଳୋକରେ କହୁଚନ୍ତି—ଏହି ସମ୍ପର୍କରେ ଦ୍ୱିତୀୟ ଅଧ୍ୟାୟର ସ୍ଥିତପ୍ରଜ୍ଞର ଲକ୍ଷଣ ଓ ବ୍ରାହ୍ମୀ ସ୍ଥିତି—୨.୫୫,୭୨; ଓ ଚତୁର୍ଦ୍ଦଶର ତଥା ବ୍ରହ୍ମଭୂତର ଲକ୍ଷଣ—୧୪. ୨୨,୨୬ ଦେଖ । ଏସବୁ ସ୍ଥିତି ଏକାପରି]—ପ୍ରାଣୀମାନଙ୍କ ବିଷୟରେ ବଡ଼ଠି ପରଶ୍ରୀକାତର ନୁହେଁ; ସମାନଠି ମିତ୍ରପରି ଓ ସ୍ଥାନଠି ଦୟାଳୁ, ମୋର ବୋଲି ଅଭିମାନ ନ ଥିବାରୁ ନିରହଂକାର। ସୁଖ ଦୁଃଖରେ ଏକାପରି, ସର୍ବସହିଷ୍ଣୁ; ସର୍ବଦା ସନ୍ତୁଷ୍ଟ;—ଏହିପରି ଯେଉଁ ଯୋଗୀ ଆପଣାକୁ (ଇନ୍ଦ୍ରିୟ, ମନ ପ୍ରଭୃତିକୁ) ଠିକ୍ ରଖି, ଦୃଢ଼ ହୋଇ, ମନବୁଦ୍ଧି ମୋଠାରେ ଦେଇ, ମୋର ଭକ୍ତ ହୁଏ, ସେହି ମୋର ପ୍ରିୟ । ୧୩-୧୪ ।

ଯସ୍ମାନ୍ନୋଦ୍‌ବିଜତେ ଲୋକୋ
ଲୋକାନ୍ନୋଦ୍‌ବିଜତେ ଚ ଯଃ ।
ହର୍ଷାମର୍ଷଭୟୋଦ୍‌ବେଗୈର୍ମୁକ୍ତୋ
ଯଃ ସ ଚ ମେ ପ୍ରିୟଃ । ୧୫ ।

**ଅନ୍ୱୟ**—ସ୍ପଷ୍ଟ । ୧୫ ।

**ଟୀକା**—[ଲୋକଃ ଯସ୍ମାତ୍ ନ ଉଦ୍‌ବିଜତେ (ଉଦ୍‌ବେଗଂ ପ୍ରାପ୍ନୋତି), ଯଃ ଚ ଲୋକାତ୍ ନ ଉଦ୍‌ବିଜତେ, ଯଃ ହର୍ଷାମର୍ଷଭୟୋଦ୍‌ବେଗୈଃ (ଇଷ୍ଟଲାଭେ ଉତ୍ସାହଃ ହର୍ଷଃ, ପରସମ୍ପତ୍ତୌ କାତରତା ଈର୍ଷା ବା, ଅମର୍ଷଃ ଇଷ୍ଟହାନ୍ୟାଦୌ ଭୟଂ, ଫଳାଫଳେଷୁ ଭୟାଦୟଃ ଚ ଚିତ୍ତଚାଞ୍ଚଲ୍ୟଂ ଉଦ୍‌ବେଗଃ ଚ, ତୈଃ ମୁକ୍ତଃ, ଯଃ ଚ ମେ (ମମ) ପ୍ରିୟଃ । ୧୫ ।

**ଅର୍ଥ**—ପୁଣି ଲୋକେ ଯାହା ହେତୁରୁ ଭୟାଦି ଉଦ୍‌ବେଗ ପାଆନ୍ତି ନାହିଁ, ଯେ ଲୋକଙ୍କ କାର୍ଯ୍ୟ ଯେଉଁ ନିଜେ ବି ଉଦ୍‌ବେଗ ପାଏ ନାହିଁ, ଯେ ଖୁସି ହୋଇ ମାତିଯାଏ ନାହିଁ, ଈର୍ଷା କରେ ନାହିଁ, ଶଙ୍କା ବା ଭୟରେ ଘାଣ୍ଟି ହୁଏ ନାହିଁ, କାହିଁରେ ଅଧୀର ହୁଏ ନାହିଁ, ସେହି ମୋର ପ୍ରିୟ । ୧୫ ।

ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ ।
ସର୍ବାରମ୍ଭପରିତ୍ୟାଗୀ ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ ।୧୬।

**ଅନ୍ୱୟ**—ସ୍ପଷ୍ଟ । ୧୬ ।

**ଟୀକା**—ଅନପେକ୍ଷଃ (ନିଃସ୍ପୃହଃ) [ କାୟମନୋବାକ୍ୟେଷୁ ] ଶୁଚିଃ (ପବିତ୍ରଃ), ଉଦାସୀନଃ (ଅପକ୍ଷପାତୀ, ଅନାସକ୍ତଃ), ଗତବ୍ୟଥଃ (ନିଶ୍ଚିନ୍ତଃ) ସର୍ବାରମ୍ଭ-ପରିତ୍ୟାଗୀ (ଈଶ୍ୱରସ୍ତ୍ର ସର୍ବକର୍ମପ୍ରେରକତ୍ୱେନ୍ୟପରମତଳନ୍ୟାସୀ—ଯଃ ମମେଦଂ କଂଚନ ନ କୁରୁତେ ସଃ) [ ଅଥଚ ନ ଜଡଃ, ଅପି ତୁ ] ଦକ୍ଷଃ (କର୍ମକୁଶଳଃ) ଯଃ ମଦ୍‌ଭକ୍ତଃ, ସେ ମେ ପ୍ରିୟ । ୧୬ ।

**ଅର୍ଥ**—ଯାହାର କାହିଁରେ ଅପେକ୍ଷା ନାଇ (ଅର୍ଥାତ୍ ଯେ, ଏହା ନ ହେଲେ ନ ହେବ ବୋଲି ଗୃହିଁ ବସେ ନାଇ) ଯେ କାୟମନୋବାକ୍ୟରେ ପବିତ୍ର (ଅର୍ଥାତ୍, ସୁମନା ଓ ସଦାଗ୍ରହୀ), ଯେ ସବୁଥିରେ ଉଦାସ (ଅର୍ଥାତ୍, ହେଲେ ନ ହେଲେ ଧାର୍ଣ୍ଣି ହୁଏ ନାଇ), ପୁଣି ନିଶ୍ଚିନ୍ତ, ଯେ ସବୁ ଆରମ୍ଭ ବା କର୍ମର ମୂଳ ମୁଁ ଏ ଭାବ ଗ୍ଲାଡ଼ିଚ (ଅର୍ଥାତ୍, ସବୁ କର୍ମ ଈଶ୍ୱରଙ୍କ ଉପରେ ପକାଇ ଦେଇଚ), [ମାତ୍ର ଏପରି ହୋଇ ସୁ ଅକର୍ମଣ୍ୟ ବା ଜଡ଼ ନୁହେଁ] ଦକ୍ଷ (ଅର୍ଥାତ୍, ଜାଣି, ବୁଝି, ଠିକ୍ କର୍ମ କରିପାରେ ବା କର୍ମରେ ନିଜ ପ୍ରଯତ୍ନ କରିବାରେ କୁଶଳ)—ଏଇପରି ଯେ ମୋର ଭକ୍ତ ସେ ମୋର ପ୍ରିୟ । ୧୬ ।

**ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଙ୍କ୍ଷତି ।**
**ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ । ୧୭ ।**

**ଅନ୍ୱୟ**—ସ୍ପଷ୍ଟ । ୧୭ ।

**ଟୀକା**—ଯଃ [ପ୍ରିୟଂ ପ୍ରାପ୍ୟ] ନ ହୃଷ୍ୟତି (ଅନୁସଜ୍ଜତେ), [ଅପ୍ରିୟଂ ପ୍ରାପ୍ୟ] ନ ଦ୍ୱେଷ୍ଟି, [ ପ୍ରିୟନାଶେ ] ନ ଶୋଚତି, ( ଅପ୍ରାପ୍ତଂ ) ନ କାଙ୍କ୍ଷତି, [ଏବଂ] ଶୁଭାଶୁଭପରିତ୍ୟାଗୀ [ ସନ୍ ] ଯଃ [ ମୟି ] ଭକ୍ତିମାନ୍, ସଃ ମେ ପ୍ରିୟଃ । ୧୭ ।

**ଅର୍ଥ**—ଯେ ଭଲରେ ଖୁସି ହୋଇ ମାତିଯାଏ ନାଇ, ମନ୍ଦରେ ବିଗିଡ଼ିଯାଏ ନାଇ, ପ୍ରିୟ ବସ୍ତୁ ବା ବ୍ୟକ୍ତି ନଷ୍ଟ ହେଲେ ଶୋଚନା କରେ ନାଇ, କି କିଛି ପାଇବ ବୋଲି ଗୃହିଁ ବସେ ନାଇ, ଏଇପରି ଭଲ ମନ୍ଦ ଗ୍ଲାଡ଼ି ଯେ ମୋଠି ଭକ୍ତି ରଖେ, ସେଇ ମୋର ପ୍ରିୟ । ୧୭ ।

**ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ**
**ଶୀତୋଷ୍ଣସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ । ୧୮ ।**
**ତୁଲ୍ୟନିନ୍ଦାସ୍ତୁତିର୍ମୌନୀ ସନ୍ତୁଷ୍ଟୋ ଯେନ କେନଚିତ୍ ।**
**ଅନିକେତଃ ସ୍ଥିରମତିର୍ଭକ୍ତିମାନ ମେ ପ୍ରିୟୋନରଃ ।୧୯।**

ଅନ୍ୱୟ—ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ ସମଃ, ଶୀତୋଷ୍ଣସୁଖଦୁଃଖେଷୁ ସମଃ, ସଙ୍ଗବିବର୍ଜିତଃ, ତୁଲ୍ୟନିନ୍ଦାସ୍ତୁତିଃ, ମୌନୀ, ଯେନ କେନଚିତ୍ ସନ୍ତୁଷ୍ଟଃ, ଅନିକେତଃ, ସ୍ଥିରମତିଃ, ଭକ୍ତିମାନ୍ ନରଃ ମେ ପ୍ରିୟଃ । ୧୮-୧୯ ।

ଟୀକା—ଶତ୍ରୌ ମିତ୍ରେ ଚ ତଥା ମାନାପମାନୟୋଃ ସମଃ (ସମବୁଦ୍ଧିଃ), ଶୀତୋଷ୍ଣସୁଖଦୁଃଖେଷୁ (ଦ୍ୱନ୍ଦ୍ୱେଷୁ) ସମଃ (ଏକବଦ୍‌ଭାବଃ), ସଙ୍ଗବିବର୍ଜିତଃ (ଅନାସକ୍ତଃ—ଫଲ.ଫଳେଷୁ ପ୍ରୀତିବିରକ୍ତିରହିତଃ] ତୁଲ୍ୟନିନ୍ଦାସ୍ତୁତିଃ (ଆତ୍ମନିନ୍ଦା-ପ୍ରଶଂସାସୁ ସମଃ), ମୌନୀ (ସଂଯତବାକ୍—ସତ୍ୟପ୍ରିୟଭାଷୀ) ଯେନ କେନଚିତ୍ (ଯଦୃଚ୍ଛା ଲାଭେନ) ସନ୍ତୁଷ୍ଟଃ, ଅନିକେତଃ (ମମେତି ନିର୍ଦ୍ଦିଷ୍ଟ ସ୍ଥାନଶୂନ୍ୟଃ—ଯଦ୍‌ବା ନିକେତେ, ଦେହେ, ପରିବାରେ ଅଲିପ୍ତଃ), [ମୟି] ସ୍ଥିରମତିଃ ଭକ୍ତିମାନ୍ ନରଃ ମେ ପ୍ରିୟଃ । ୧୮-୧୯ ।

ଅର୍ଥ—ଶତ୍ରୁ ମିତ୍ରଠାରେ ପୁଣି ମାନ ଅପମାନରେ ସମାନବୁଦ୍ଧି, ଶୀତ-ଉଷ୍ଣ, ସୁଖ-ଦୁଃଖ ପ୍ରଭୃତି ଦ୍ୱନ୍ଦ୍ୱରେ ଏକ ପରି, ଅନାସକ୍ତ, ଆପଣାର ନିନ୍ଦା ପ୍ରଶଂସାରେ ସମାନ, ମିତଭାଷୀ (ଅର୍ଥାତ୍, ଖାଣ୍ଟି ସତ ଓ ପ୍ରିୟ କଥା କହିବାବାଲା), ଯାହା କିଛି ମିଳିଲା ସେଥିରେ ସନ୍ତୁଷ୍ଟ, ଘର ବୋଲି ଯାହାର ମମତା ନାହିଁ, ଏହିପରି ମୋଠି ମନ ଠିକ୍ ରଖି ଭକ୍ତି କରିବା ଲୋକ ମୋର ପ୍ରିୟ । ୧୮-୧୯ ।

**ଯେ ତୁ ଧର୍ମ୍ୟାମୃତମିଦଂ ଯଥୋକ୍ତଂ ପର୍ଯ୍ୟୁପାସତେ ।**
**ଶ୍ରଦ୍ଦଧାନା ମତ୍‌ପରମା ଭକ୍ତାସ୍ତେଽତୀବ ମେ ପ୍ରିୟାଃ ।୨୦।**

ଅନ୍ୱୟ—ଯେ ତୁ ଶ୍ରଦ୍ଦଧାନାଃ ଇଦଂ ଧର୍ମ୍ୟାମୃତଂ ଯଥା ଉକ୍ତଂ ପର୍ଯ୍ୟୁପାସତେ, ମତ୍‌ପରମାଃ ତେ ଭକ୍ତାଃ ମେ ଅତୀବ ପ୍ରିୟାଃ । ୨୦ ।

ଟୀକା—[ଉପସଂହରତି]—ଯେ ତୁ (ନିଶ୍ଚିତଂ) ଶ୍ରଦ୍ଦଧାନାଃ [ସନ୍ତଃ] ଧର୍ମ୍ୟାମୃତଂ (ଅମୃତସମଧର୍ମଂ—ଭକ୍ତିନିଷ୍ଠକର୍ମଣା ଅମରତ୍ୱଂ) ଯଥୋକ୍ତଂ [ତଥା] ପର୍ଯ୍ୟୁପାସତେ (ସମ୍ୟକ୍ ଉପଯାନ୍ତି) ମତ୍‌ପରମାଃ ତେ ଭକ୍ତାଃ ମେ (ମମ) ଅତୀବ [ଅତ୍ୟନ୍ତ] ପ୍ରିୟାଃ । ୨୦ ।

ଅର୍ଥ—[ଶେଷ କହୁଛନ୍ତି]—ଯେ କି ବିଶ୍ୱାସରେ ଏହି ଧର୍ମ ଅମୃତକୁ (ଅର୍ଥାତ୍, ଭକ୍ତିନିଷ୍ଠ କର୍ମରେ ଅମରତ୍ୱକୁ) ଯେପରି କୁହାଗଲା ସେହିପରି ଅନ୍ୱେଷଣ ବା ସେବା କରନ୍ତି, ମୋତେଇ ସର୍ବସ୍ୱ କରିଥିବାରୁ, ସେହି ଭକ୍ତମାନେ ମୋର ଅତିଶୟ ପ୍ରିୟ । ୨୦ ।

---

# ତ୍ରୟୋଦଶ ଅଧ୍ୟାୟ

## କ୍ଷେତ୍ର-କ୍ଷେତ୍ରଜ୍ଞ-ବିଭାଗ ଯୋଗ

**ଅଧ୍ୟାୟ ପ୍ରବେଶ—**

କୌଣସି କୌଣସି ପୁସ୍ତକରେ ଏଇ ଅଧ୍ୟାୟ ଆରମ୍ଭରେ ଅଛି—

ଅର୍ଜୁନ ଉବାଚ

ପ୍ରକୃତିଂ ପୁରୁଷଂଚୈବ କ୍ଷେତ୍ରଂ କ୍ଷେତ୍ରଜ୍ଞ ମେବ ଚ
ଏତଦ୍ ବେଦିତୁମିଚ୍ଛାମି ଜ୍ଞାନଂ ଜ୍ଞେୟଂ ଚ କେଶବ ।

ଅର୍ଥାତ୍, ଅର୍ଜୁନ ପଚାରିଲେ—ହେ କେଶବ ! ପ୍ରକୃତି ପୁରୁଷ ପୁଣି କ୍ଷେତ୍ର କ୍ଷେତ୍ରଜ୍ଞ ଓ ଜ୍ଞାନ ଜ୍ଞେୟ—ଏ ସବୁ ବୁଝିବା ଲୋଡ଼ା ପଡ଼ୁଛି ।

ଶଙ୍କରାଚାର୍ଯ୍ୟ ପ୍ରଭୃତି ଏ ଶ୍ଳୋକଟି 'ପ୍ରକ୍ଷିପ୍ତ' ବା ପରେ ଭର୍ତ୍ତି କରାହୋଇଛି ବୋଲି ଠିକ୍ କରି ଛାଡ଼ି ଯାଇଛନ୍ତି । ପୁଣି ଏ ଶ୍ଳୋକଟି ମିଶାଇଲେ ଗୀତାର ଶ୍ଳୋକ ସଂଖ୍ୟା ୭୦୦ ନ ହୋଇ ୭୦୧ ହୋଇଯାଉଛି । ଆହୁରି ମଧ୍ୟ ପୂର୍ବରୁ କ୍ଷେତ୍ର-କ୍ଷେତ୍ରଜ୍ଞ ନାମରେ କୌଣସି କଥା କୁହାଯାଇ ନାହିଁ । ମାତ୍ର ପୂର୍ବ ୧୨ଟି ଅଧ୍ୟାୟରେ ଆତ୍ମାର ଜ୍ଞାନ, ଯଜ୍ଞାର୍ଥ କର୍ମ ଓ ଧ୍ୟାନାଦିରେ ସେଇ ଜ୍ଞାନର ସ୍ଥିର ଅନୁଭୂତି, ସେଇଥିରୁ ଜ୍ଞାନ-ବିଜ୍ଞାନମୟ ଈଶ୍ୱର ଭାବ ଓ ସେଇ ଈଶ୍ୱରଙ୍କ ପାଇଁ ଯଜ୍ଞ, ଅର୍ଥାତ୍ ସେ ଈଶ୍ୱରରେ ସର୍ବକର୍ମ ତଥା ଆତ୍ମସମର୍ପଣ ବା ଭକ୍ତିରେ ଈଶ୍ୱରପ୍ରାପ୍ତି—(ଏଠାରେ ବିଶେଷରେ ୧୨.୮,୧୨ (ଦେଖ) ପ୍ରଭୃତି ସବୁ କୁହାଯାଇଛି । ଗୀତାର ବିଶ୍ୱ ସନ୍ଦେଶ ଏଇଠାରେ ଏକପ୍ରକାର ଶେଷ ହେଲା । ଏହାହିଁ ଗୀତାର ଯୋଗ ଓ ସିଦ୍ଧି । ମାତ୍ର ସାଂଖ୍ୟବାଦ ବା ଜ୍ଞାନ ଓ କର୍ମତ୍ୟାଗ ସନ୍ନ୍ୟାସ ସେତେବେଳକୁ ବହୁ ସମ୍ମାନିତ ଓ ପ୍ରଚଳିତ ହୋଇ ଯାଇଥିଲା । ସେଥିରେ ପ୍ରକୃତି ବା କ୍ଷେତ୍ର ଓ ପୁରୁଷ ବା କ୍ଷେତ୍ରଜ୍ଞ (ଅର୍ଥାତ୍ ଜଡ଼ ପ୍ରକୃତିର ନିଷ୍କ୍ରିୟ ଦ୍ରଷ୍ଟା ଓ ସାକ୍ଷୀ) ଏ ଦୁଇଟି ଭିନ୍ନ ଭିନ୍ନ ତତ୍ତ୍ୱ—୭.୪,୫ର ଟୀକା ଦେଖ । ଭଗବାନ୍ ଏକ ବାତ୍ୟା ପରି ଏ ଦୁଇଟି ଏକ ଈଶ୍ୱରଙ୍କର ଭିନ୍ନ ଭିନ୍ନ ପ୍ରକୃତି ବା ସ୍ୱରୂପ ବୋଲି କହି, ତା ପରେ ନିଜର ବ୍ୟକ୍ତସ୍ୱରୂପ ବୁଝାଇବାରେ ବିଶ୍ୱରୂପ ପର୍ଯ୍ୟନ୍ତ ଦେଖାଇ ଅର୍ଜୁନଙ୍କୁ ତନ୍ମୟ କରିଦେଲେ; ସବୁ ସନ୍ଦେହ ଫେଡ଼ି ବୁଝାଇ ନାହାନ୍ତି । ସେଥିପାଇଁ ପ୍ରଚଳିତ ତତ୍ତ୍ୱ କଥାର ପରିଭାଷା ଧରି ଏବେ ବୁଝାଇବା ଆରମ୍ଭ କରୁଛନ୍ତି । ଅର୍ଜୁନ ପୁଣି ଏସବୁ ପଚାରି ଦେଇଥିବା ଅସ୍ୱାଭାବିକ ବି ନୁହେଁ । ପ୍ରକୃତି ପୁରୁଷ ପରି କ୍ଷେତ୍ର-କ୍ଷେତ୍ରଜ୍ଞ ପ୍ରଭୃତି କଥା ବହୁ ପ୍ରଚଳିତ ଥିବ । ସପ୍ତଶତୀ ଗୀତାର ଶ୍ଳୋକ ସଂଖ୍ୟା ୭୦୧ ମଧ୍ୟ ହୋଇପାରେ ।

ତେବେ ଉପରର ଶ୍ଳୋକ ପ୍ରକ୍ଷିପ୍ତ ହେଉ ବା ସ୍ୱାଭାବିକ ହେଉ ସେହି ଶ୍ଳୋକର ଅଭିପ୍ରାୟ ହିଁ ଏହି ଅଧ୍ୟାୟ ତଥା ଆସନ୍ନ ଅଧ୍ୟାୟମାନଙ୍କର ପ୍ରବେଶ । ବିଶ୍ୱବ୍ୟାପୀ ପ୍ରକୃତି ପୁରୁଷ ତତ୍ତ୍ୱକୁ ଏଠାରେ କ୍ଷେତ୍ର (ଅର୍ଥାତ୍, ଶରୀର) ଓ କ୍ଷେତ୍ରଜ୍ଞ (ଅର୍ଥାତ୍ ଏହି ଶରୀରର ଅଧ୍ୟାତ୍ମ ପୁରୁଷ ତତ୍ତ୍ୱ, ବା ସବୁ ଜାଣିଲାବାଲା ତତ୍ତ୍ୱ) ହିସାବରେ ବୁଝାଇବାର ଆରମ୍ଭ କରି 'ଯଥା ପିଣ୍ଡେ ତଥା ବ୍ରହ୍ମାଣ୍ଡେ' ବୋଲି କ୍ରମ ବୁଝାଇବେ । ବାସ୍ତବିକ ସାଂଖ୍ୟବାଦ ଯେ ଏହି ଶରୀର ଓ ଆତ୍ମାର ଧାରଣାରୁ ଆରମ୍ଭ ହୋଇଛି, ତାହା ଟିକିଏ ଚିନ୍ତା କଲେ ବୁଝାଯାଏ । ଶରୀରଟି କ୍ଷେତ୍ର (ଅର୍ଥାତ୍, ଚାଷର ଜାଗା, ବିଲ ବା କାରଖାନା) । ବାହାରରୁ ବିଷୟ, 'ସ୍ପର୍ଶ' ହେତୁ ଜ୍ଞାନେନ୍ଦ୍ରିୟ ବାଟେ ମନରେ କର୍ମରୂପେ ପଡ଼ି ବୁଦ୍ଧିକୁ ଯାଏ । ସେଠାରୁ ସଂକଳ୍ପ ରୂପ ଧରି ମନବାଟେ କର୍ମେନ୍ଦ୍ରିୟରେ ପ୍ରକାଶ ପାଏ । ଏଥିପାଇଁ ଦେହ ହେଉଛି କ୍ଷେତ୍ର ।

ଅଧ୍ୟାୟର ସଂକ୍ଷେପସାର :—ଭଗବାନ୍ ଏ ଅଧ୍ୟାୟରେ ବୁଝାଉଛନ୍ତି—କ୍ଷେତ୍ର ମୁହିଁ, କ୍ଷେତ୍ରଜ୍ଞ ବି ମୁହିଁ । ଏ ଦୁହିଙ୍କୁ ଜାଣିବାଇ ମୋ ସମ୍ବନ୍ଧେ ଯଥାର୍ଥ ଜ୍ଞାନ । ତହୁଁ କ୍ଷେତ୍ର କଣ ? କ୍ଷେତ୍ର-କ୍ଷେତ୍ରଜ୍ଞ-ଜ୍ଞାନର ଉପାୟ ଯେଉଁ ଜ୍ଞାନ, ତାର ଲକ୍ଷ୍ୟ କଣ ? ଓ ଯାହା ଜାଣିବାକୁ ହୁଏ ସେହି ସର୍ବମୟ ଓ ସର୍ବାତୀତ ବ୍ରହ୍ମ କଣ—ଏସବୁ ବୁଝାଇ କହିଛନ୍ତି ଯେ, ଭକ୍ତ ଏସବୁ ଜାଣି ମୋତେ ପାଏ । ସେଠାରୁ ସୃଷ୍ଟିର ପ୍ରକୃତି ଓ ପୁରୁଷ ତତ୍ତ୍ୱକୁ ଏହି କ୍ଷେତ୍ର କ୍ଷେତ୍ରଜ୍ଞ ସଙ୍ଗେ ଏକ କରି ବୁଝାଇ, ପୁରୁଷ ତତ୍ତ୍ୱକୁ ପରମ ତ୍ମା ମହେଶ୍ୱର ବୋଲି ବର୍ଣ୍ଣନା କରିଛନ୍ତି । ଏହା ଜାଣିବାର ଭିନ୍ନ ଭିନ୍ନ ପନ୍ଥା ହେଉଛି ଧ୍ୟାନଯୋଗ, ସାଂଖ୍ୟ, କର୍ମଯୋଗ ଓ ଶ୍ରବଣ ମନନ । ଏହା ଜାଣିଲେ ବୁଝିହେବ ସବୁ ପ୍ରକୃତି ପୁରୁଷର ସଂଯୋଗରୁ ହେଲେହେଁ, ଈଶ୍ୱର ସବୁଥିରେ ସମାନ । ପ୍ରକୃତିରେ ସବୁ ଭୂତମାନେ ରହନ୍ତି ଓ ପ୍ରକୃତିରୁ ବାହାରନ୍ତି । ପୁରୁଷ, ଦେହରେ ଥାଇ ବି ଅଲିପ୍ତ । ପ୍ରକୃତି-ଗୁଣରେ ସବୁ ହେଉଛି । ଏହି ଭାବରେ କ୍ଷେତ୍ର କ୍ଷେତ୍ରଜ୍ଞ ଓ ପ୍ରକୃତିରୁ ଭୂତର ବିସ୍ତାର ଜାଣିଲେ ମୁକ୍ତ ହୁଏ ।

**ଇଦଂ ଶରୀରଂ କୌନ୍ତେୟ କ୍ଷେତ୍ରମିତ୍ୟଭିଧୀୟତେ ।**
**ଏତଦ୍ ଯୋ ବେତ୍ତି ତଂ ପ୍ରାହୁଃ କ୍ଷେତ୍ରଜ୍ଞ ଇତି ତଦ୍‌ବିଦଃ ॥୧॥**

**ଅନ୍ୱୟ**—କୌନ୍ତେୟ ! ଇଦଂ ଶରୀରଂ କ୍ଷେତ୍ରଂ ଇତି ଅଭିଧୀୟତେ । ତଦ୍‌ବିଦଃ ଏତତ୍ ଯଃ ବେତ୍ତି ତଂ କ୍ଷେତ୍ରଜ୍ଞଃ ଇତି ପ୍ରାହୁଃ । ୧ ।

**ଟୀକା**—ଶ୍ରୀ ଭଗବାନ୍ ଉବାଚ—ହେ କୌନ୍ତେୟ, [କର୍ମଫଳକର୍ମାଣୋପ୍ତ ଧନ-ଭୂମିରୂପଂ] ଇଦଂ ଶରୀରଂ କ୍ଷେତ୍ରଂ ଇତି ଅଭିଧୀୟତେ (କଥ୍ୟତେ) । ତଦ୍‌ବିଦଃ

(କ୍ଷେତ୍ରକ୍ଷେତ୍ରଜ୍ଞବିଷୟବିଜ୍ଞାନବିଶାରଦାଃ) ଏତତ୍ (କ୍ଷେତ୍ରଂ) ଯଃ ବେତ୍ତି, ତଂ (ଦେହାଧିଷ୍ଠିତ-ପୁରୁଷଂ) କ୍ଷେତ୍ରଜ୍ଞଃ ଇତି ପ୍ରାହୁଃ (କଥୟନ୍ତି) । ୧ ।

**ଅର୍ଥ**—ଶ୍ରୀ ଭଗବାନ କହିଲେ—ହେ କୌନ୍ତେୟ, [ବାହାରୁ ମାତାପିତାଙ୍କଠାରେ ମାଲ ଆଣି, ତାକୁ ତିଆରି, ବାହାର କରିଥିବା ସ୍ଥାନ] ଏହି ଶରୀରକୁ କ୍ଷେତ୍ର ବୋଲି କୁହାଯାଏ । କ୍ଷେତ୍ର କ୍ଷେତ୍ରଜ୍ଞ ବିଷୟ ଜାଣିବା ଲୋକେ, ଏହି କ୍ଷେତ୍ରକୁ ଯେ ଜାଣେ, ସେହି ଦେହାଧିଷ୍ଠିତ ପୁରୁଷକୁ କ୍ଷେତ୍ରଜ୍ଞ ବୋଲି କହନ୍ତି । ୧ ।

**କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ ।**
**କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ ଯତ୍ତଜ୍ଜ୍ଞାନଂ ମତଂ ମମ ।୨।**

**ଅନ୍ୱୟ**—ସ୍ପଷ୍ଟ । ୨ ।

**ଟୀକା**—ହେ ଭାରତ—[ନ ତୁ କେବଳଂ କ୍ଷେତ୍ରଂ] ସର୍ବକ୍ଷେତ୍ରେଷୁ କ୍ଷେତ୍ରଜ୍ଞଂ ଚ ଅପି ମାଂ ବିଦ୍ଧି । କ୍ଷେତ୍ର କ୍ଷେତ୍ରଜ୍ଞୟୋଃ ଯତ୍ ଜ୍ଞାନଂ ତତ୍ ମମ (ମତ୍ସମ୍ବନ୍ଧୀୟଂ) ଜ୍ଞାନଂ ମତମ୍ । ୨ ।

**ଅର୍ଥ**—ହେ ଭାରତ, [କେବଳ, ଅଧିଭୂତ କ୍ଷେତ୍ର ନୁହେଁ] ସବୁ କ୍ଷେତ୍ରରେ ଥିବା [ଅଧିଦୈବତ] କ୍ଷେତ୍ରଜ୍ଞ ବି ମୁଁ ବୋଲି ଜାଣ । ଏହି କ୍ଷେତ୍ର କ୍ଷେତ୍ରଜ୍ଞର ଯେ ଜ୍ଞାନ ସେହି [ଏକା] ମୋ ଜ୍ଞାନ (ଅର୍ଥାତ୍, ମୋ ସମ୍ବନ୍ଧୀୟ ଯଥାର୍ଥ ଜ୍ଞାନ) ବୋଲି ମାନିବାକୁ ହୁଏ ।

ବ୍ୟାଖ୍ୟା ସୂଚନା—ସପ୍ତମ, ଅଷ୍ଟମ ଓ ନବମ ଅଧ୍ୟାୟର ବ୍ରହ୍ମାଣ୍ଡର ବିଜ୍ଞାନ ବା ବ୍ୟକ୍ତଜ୍ଞାନ ସହିତ ଜ୍ଞାନ ବା ଅକ୍ଷରତତ୍ତ୍ୱକୁ ଏଠାରେ ପିଣ୍ଡ ବା ଦେହର କ୍ଷେତ୍ର ସହିତ କ୍ଷେତ୍ରଜ୍ଞର ଜ୍ଞାନ ସଙ୍ଗେ ତୁଳନା କରି ଦେଖ । ୨ ।

**ତତ୍ କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ ଯଦ୍ବିକାରି ଯତଶ୍ଚ ଯତ୍ ।**
**ସ ଚ ଯୋ ଯତ୍ପ୍ରଭାବଶ୍ଚ ତତ୍ ସମାସେନ ମେ ଶୃଣୁ । ୩ ।**

**ଅନ୍ୱୟ**—ସ୍ପଷ୍ଟ । ୩ ।

**ଟୀକା**—ତତ୍ କ୍ଷେତ୍ରଂ ଯତ୍ ଚ ଯାଦୃକ୍ ଚ ଯଦ୍ବିକାରି (ଯଦ୍ ଯଦ୍ ବିକାରବତ୍ ) ଯତଃ ( ଯଦୁପାଦାନାତ୍ ) ଯତ୍ ଚ [ଭବତି]; ଚ (ତଥା) ସଃ (କ୍ଷେତ୍ରଜ୍ଞଃ) ଯଃ ଯତ୍ପ୍ରଭାବଃ (ଯତ୍ପ୍ରଭାବେନ ସମନ୍ୱିତଃ) ଚ—ତତ୍ [ସର୍ବଂ] ସମାସେନ (ସଂକ୍ଷେପତଃ) ମେ (ମତ୍ ସକାଶାତ୍ ) ଶୃଣୁ । ୩ ।

**ଅର୍ଥ**—ସେହି କ୍ଷେତ୍ର ଯାହା, ଯେପରି, ଯେଉଁ ବିକାର ବା ପରିଣାମମାନ ତାର ଅଛି ଓ ସେହି ଯହିଁରୁ ଯାହା ହୁଏ; ପୁଣି ସେ କ୍ଷେତ୍ରଜ୍ଞ ଯେ, ତାର ଯାହା ଶକ୍ତି, ତାହା ସବୁ ଅଳ୍ପରେ ମୋଠାରୁ ଶୁଣ । ୩ ।

**ଋଷିଭିର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍ ।**
**ବ୍ରହ୍ମସୂତ୍ରପଦୈଶ୍ଚୈବ ହେତୁମଦ୍‌ଭିର୍ବିନିଶ୍ଚିତୈଃ ।୪।**

**ଅନ୍ୱୟ**—ଋଷିଭିଃ ପୃଥକ୍ ବିବିଧୈଃ ଛନ୍ଦୋଭିଃ ବହୁଧା ଗୀତଂ, ଚ ବିନିଶ୍ଚିତୈଃ ହେତୁମଦ୍‌ଭିଃ, ବ୍ରହ୍ମସୂତ୍ରପଦୈଃ ଏବ । ୪ ।

**ଟୀକା**—[ତଦପି ସର୍ବଂ ବୈଦିକୈଃ] ଋଷିଭିଃ [ବେଦେ ପଦ୍ଧତିସୁ] ପୃଥକ୍ [ପୃଥକ୍] ବିବିଧୈଃ ଛନ୍ଦୋଭିଃ ବହୁଧା (ନାନାପ୍ରକାରେଣ) ଗୀତଂ; ଚ (ତଥା) ବିନିଶ୍ଚିତୈଃ (ସଂଶୟନିରାସକୈଃ) ହେତୁମଦ୍‌ଭିଃ (ସକାରଣୈଃ—ଉହାପୋହବିଚାର-ଯୁକ୍ତୈଃ) ବ୍ରହ୍ମସୂତ୍ରପଦୈଃ ବାଦରାୟଣକୃତ ବ୍ରହ୍ମସୂତ୍ରନାମକଗ୍ରନ୍ଥସ୍ୟ ସୂତ୍ର-ପଦୈଃ) ଏବ [ପ୍ରତିପାଦିତମ୍] । ୪ ।

**ଅର୍ଥ**—ସେସବୁ ବୈଦିକ ଋଷିଙ୍କଦ୍ୱାରା ବେଦସଂହିତା ଉପନିଷଦ୍‌ମାନଙ୍କରେ ଭିନ୍ନ ଭିନ୍ନ ରକମ ଛନ୍ଦରେ ବହୁ ପ୍ରକାରରେ ଗାନ କରାହୋଇଛି । [ସେହି ବହୁ ପ୍ରକାରର ପରସ୍ପର ଆପାତବିରୋଧାଦିଜନିତ] ସଂଶୟ କାଟିକରି କାରଣମାନ ଦେଇ ସେ ସବୁ ସମାଧାନ କରି [ବାଦରାୟଣଙ୍କ କୃତ ବେଦାନ୍ତର] ବ୍ରହ୍ମସୂତ୍ର ଗ୍ରନ୍ଥର ପଦମାନଙ୍କରେ ବୁଝାଇ ଦିଆ ହୋଇଛି । ୪ ।

ବ୍ୟାଖ୍ୟା ସୂଚନା—ବ୍ରହ୍ମସୂତ୍ରପଦ=ଶ୍ରୁତି ବା ଉପନିଷଦର ବ୍ରହ୍ମପ୍ରତିପାଦକ ବାକ୍ୟ—ଶଙ୍କର । ବାଦରାୟଣଙ୍କ ବ୍ରହ୍ମସୂତ୍ର ବା ବେଦାନ୍ତସୂତ୍ରରେ ସ୍ମୃତି ବୋଲି ଗୀତାକୁ ବାରମ୍ବାର ଲକ୍ଷ୍ୟ କରାଯାଇଛି । ତେଣୁ ବର୍ତ୍ତମାନର ବ୍ରହ୍ମସୂତ୍ରଠାରୁ ଗୀତା ନିଶ୍ଚୟ ପ୍ରାଚୀନ । ହୁଏତ ପୂର୍ବେ ଏହି ବାଦରାୟଣ-ବ୍ରହ୍ମସୂତ୍ରପରି ଅନ୍ୟ ବ୍ରହ୍ମସୂତ୍ର ଥିଲା । ମାତ୍ର ତିଲକ୍ କହନ୍ତି, ମହାଭାରତରେ ଏହି ପ୍ରଚଳିତ ବୃହତ୍ ସଂସ୍କରଣ ପୂର୍ବରୁ 'ବ୍ରହ୍ମସୂତ୍ର' ପ୍ରସିଦ୍ଧ ହୋଇ ସାରିଥିଲା ଓ ମୂଳ ଗୀତା ମଧ୍ୟ ବଢ଼ି ବଢ଼ି ଶେଷ ସଂସ୍କରଣରେ ଏହି ସପ୍ତଶତୀ ଆକାର ପାଇଥିଲା । ହୁଏତ ବାଦରାୟଣ ବ୍ୟାସହିଁ ମହାଭାରତର ଏହି ଶେଷ ସଂସ୍କରଣ କରିଥିଲେ । ତା ନ ହେଲେ ଶଙ୍କରାଚାର୍ଯ୍ୟଙ୍କ ଅର୍ଥ ଧରିଲେ "ହେତୁମଦ୍‌ଭିଃ ବିନିଶ୍ଚିତୈଃ" କଥାର ସମାଧାନ ହୁଏ ନାହିଁ । ୪ ।

**ମହାଭୂତାନ୍ୟହଙ୍କାରୋ ବୁଦ୍ଧିରବ୍ୟକ୍ତମେବ ଚ ।**
**ଇନ୍ଦ୍ରିୟାଣି ଦଶୈକଂ ଚ ପଞ୍ଚ ଚେନ୍ଦ୍ରିୟଗୋଚରାଃ । ୫ ।**
**ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଂଘାତଶ୍ଚେତନା ଧୃତିଃ ।**
**ଏତତ୍ କ୍ଷେତ୍ରଂ ସମାସେନ ସବିକାରମୁଦାହୃତମ୍ । ୬ ।**

**ଅନ୍ୱୟ**—ଅବ୍ୟକ୍ତଂ, ବୁଦ୍ଧିଃ, ଅହଂକାରଃ, ଏବ ଚ ଦଶଇନ୍ଦ୍ରିୟାଣି ଏକଂ ଚ, ପଞ୍ଚ ଇନ୍ଦ୍ରିୟଗୋଚରାଃ ଚ, ମହାଭୂତାନି, ସଂଘାତଃ, ଚେତନା, ଧୃତିଃ, ଏତତ୍ ଇଚ୍ଛା, ଦ୍ୱେଷଃ, ସୁଖଂ, ଦୁଃଖଂ, ସବିକାରଂ କ୍ଷେତ୍ରଂ ସମାସେନ ଉଦାହୃତଂ । ୫-୬ ।

**ଟୀକା**—[କ୍ଷେତ୍ରସ୍ୱରୂପଂ ଆହ]—ଅବ୍ୟକ୍ତଂ (ଭୂତାନାଂ ମୂଳଂ—ସାଂଖ୍ୟାନାଂ ପ୍ରକୃତିଃ), ବୁଦ୍ଧିଃ, ଅହଙ୍କାରଃ, ଏବ ଚ ଦଶ ଇନ୍ଦ୍ରିୟାଣି (ପଞ୍ଚବୁଦ୍ଧୀନ୍ଦ୍ରିୟାଣି, ପଞ୍ଚକର୍ମେନ୍ଦ୍ରିୟାଣି, ଚ ) ଏକଂ [ଇନ୍ଦ୍ରିୟଂ ମନଃ] ଚ ପଞ୍ଚ ଇନ୍ଦ୍ରିୟଗୋଚରାଃ (ଶବ୍ଦାଦୟଃ ବିଷୟାଃ, ତନ୍ମାତ୍ରାଣି) ଚ [ପଞ୍ଚ] ମହାଭୂତାନି—[ଇତି ସାଂଖ୍ୟାନାଂ ଚତୁର୍ବିଂଶତି ତତ୍ତ୍ୱାନି]—[ ତେଷାଂ ] ସଂଘାତଃ ( ସଂହତିଃ, ସମବାୟଃ, ସଂଶ୍ଲେଷଃ ) ଚେତନା ( ପ୍ରାଣଚେଷ୍ଟା ) ଧୃତିଃ ( ଏତେଷାଂ ବ୍ୟକ୍ତିତ୍ୱାବଚ୍ଛେଦେନ ସ୍ୱବ୍ୟାପାରେଷୁ ନିରବଚ୍ଛିନ୍ନଂ ଧାରୟିତ୍ରୀ ବୃତ୍ତିଃ—ଧୈର୍ଯ୍ୟଂ) ଏତତ୍ [ସର୍ବଂ, ତତଃ] ଇଚ୍ଛା, ଦ୍ୱେଷଃ, ସୁଖଂ, ଦୁଃଖଂ [ଇତ୍ୟାଦି ଦ୍ୱନ୍ଦ୍ୱଂ ଚ—ତଥା ଅପରୈଃ ଚ ବିକାରୈଃ ସହ ] ସବିକାରଂ କ୍ଷେତ୍ରଂ ସମାସେନ (ସଂକ୍ଷେପତଃ) ଉଦାହୃତଂ (କଥିତମ୍ ) । ୫-୬ ।

**ଅର୍ଥ**—[ କ୍ଷେତ୍ରର ସ୍ୱରୂପ କହୁଛନ୍ତି ]—ଭୂତର ମୂଳ ଅବ୍ୟକ୍ତ (ଅର୍ଥାତ୍, ସାଂଖ୍ୟର ପ୍ରକୃତି); ବୁଦ୍ଧି; ପୁଣି ଅହଙ୍କାର; ପାଞ୍ଚ ବୁଦ୍ଧୀନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ ଏପରି ଦଶ ଓ ଏକ ଇନ୍ଦ୍ରିୟ ମନ ଓ ଶବ୍ଦାଦି ପଞ୍ଚ ଇନ୍ଦ୍ରିୟ ବିଷୟ ବା ଭୂତ ତନ୍ମାତ୍ର; ଓ କ୍ଷିତ୍ୟାଦି ପଞ୍ଚ ମହାଭୂତ, [ ଏ ହେଲା ସାଂଖ୍ୟରେ ୨୪ ତତ୍ତ୍ୱ—୬.୪ ଟୀକା ଦେଖ]; ଏସବୁ ପରସ୍ପର ସଂପର୍କରେ ଏହି ଦେହରେ ଥିଲାପରି ଏକାଠି ରହିବା ସଂଘାତ); ଜୀବିଥିବା ବା ପ୍ରାଣର ଚେଷ୍ଟା (ଚେତନା), ଗୋଟିଏ ଲୋକର ପରି ଏ ସବୁ ପୂର୍ବାପର ସମ୍ବନ୍ଧରେ ଠିକ୍‌ରୂପେ କର୍ମରେ ଲାଗି ରହିବା (ଧୃତି)—ଏହିସବୁ; ପୁଣି ଏହିଥିରୁ ହେଉଥିବା ଇଚ୍ଛା, ଅନିଚ୍ଛା, ସୁଖ, ଦୁଃଖ ପ୍ରଭୃତି ଦ୍ୱନ୍ଦ୍ୱ ଓ ଆଉସବୁ ବିକାରମାନ ଯେଉଁ ଜଣା ପଡ଼ୁଥିବା ବସ୍ତୁକୁ ମୋଟାମୋଟି କ୍ଷେତ୍ର ବୋଲି କୁହାଯାଏ । ୫-୬ ।

ବ୍ୟାଖ୍ୟା ସୂଚନା—ବୈଶେଷିକ ବା କଣାଦପନ୍ଥୀ ନୈୟାୟିକମାନେ ଇଚ୍ଛା-ଦ୍ୱେଷାଦିକୁ ଆତ୍ମାର ଧର୍ମ କହନ୍ତି । ସେହି ପ୍ରଚଳିତ ମତକୁ ଲକ୍ଷ୍ୟ କରି ଏଠାରେ

ସେ ସବୁକୁ କ୍ଷେତ୍ରର ଧର୍ମ ବୋଲି କୁହାଯାଇଛି । ପୁଣି ଏହି ଦେହରେ ଜୀବ ହୋଇଥିବା 'ପରାପ୍ରକୃତି'—୭.୪ ଦେଖ—କ୍ଷେତ୍ରଜ୍ଞ; ସତ୍ତ୍ୱଗୁଣ ବିକାର ସହିତ 'ଅପରାପ୍ରକୃତି'—୭.୫ ଦେଖ—କ୍ଷେତ୍ର; ଅର୍ଥାତ୍, ଚେତନପିଣ୍ଡ ବା ଦେହ ବୋଲି ପୂର୍ବେ ସଙ୍କେତ କରାହୋଇଛି । ସାଂଖ୍ୟମତରେ କିନ୍ତୁ 'ପ୍ରକୃତି' ହେଉଛି ଜଡ଼ ଓ ଦେହ ବା କ୍ଷେତ୍ରର ମୂଳ । ୫-୬ ।

ଅମାନିତ୍ୱମଦମ୍ଭିତ୍ୱମହିଂସା କ୍ଷାନ୍ତିରାର୍ଜବମ୍ ।
ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ । ୭ ।
ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମନହଂକାର ଏବ ଚ ।
ଜନ୍ମମୃତ୍ୟୁଜରାବ୍ୟାଧିଦୁଃଖଦୋଷାନୁଦର୍ଶନମ୍ । ୮ ।

ଅସକ୍ତିରନଭିଷଙ୍ଗଃ ପୁତ୍ରଦାରଗୃହାଦିଷୁ ।
ନିତ୍ୟଂ ଚ ସମଚିତ୍ତତ୍ୱମିଷ୍ଟାନିଷ୍ଟୋପପତ୍ତିଷୁ । ୯ ।
ମୟି ଚାନନ୍ୟଯୋଗେନ ଭକ୍ତିରବ୍ୟଭିଚାରିଣୀ ।
ବିବିକ୍ତଦେଶସେବିତ୍ୱମରତିର୍ଜନସଂସଦି । ୧୦ ।

ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ ତତ୍ତ୍ୱଜ୍ଞାନାର୍ଥଦର୍ଶନମ ।
ଏତଜ୍ଜ୍ଞାନମିତି ପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା । ୧୧ ।

ଅନ୍ୱୟ—ସ୍ପଷ୍ଟ । ୭-୧୧ ।

**ଟୀକା**—[ ଅଥ କ୍ଷେତ୍ର-କ୍ଷେତ୍ରଜ୍ଞ-ବିବେକସାଧନଭୂତଂ ଯଥାର୍ଥଜ୍ଞାନଂ ଲକ୍ଷଣେନ ଆହ ]—ଅମାନିତ୍ୱଂ (ଆତ୍ମନି ପୂଜ୍ୟକଗୌରବବୁଦ୍ଧିଃ ମାନଂ—ତଦଭାବଃ) ଅଦମ୍ଭିତ୍ୱଂ (ଆତ୍ମଗୁଣଖ୍ୟାପନଂ ଦମ୍ଭଃ—ତଦଭାବଃ) ଅହିଂସା (ପ୍ରାଣିପୀଡନା ଭାବଃ) କ୍ଷାନ୍ତିଃ (ସହିଷ୍ଣୁତା, କ୍ଷମା) ଆର୍ଜବଂ (ସରଳତା, ସାଧୁତା) ଆଚାର୍ଯ୍ୟୋପାସନଂ ଗୁରୁଶୁଶ୍ରୂଷା, ଜ୍ଞାନେ ଶ୍ରଦ୍ଧା) ଶୌଚଂ (ପ୍ରକ୍ଷାଳନାଦି ଦେହସ୍ୟ, ରାଗାଦ୍ୟଭାବାତ୍ ମନସଃ ଚ ପବିତ୍ରତା) ସ୍ଥୈର୍ଯ୍ୟଂ (ଦୃଢ଼ନିଷ୍ଠତ୍ୱଃ) ଆତ୍ମବିନିଗ୍ରହଃ (ସର୍ବଶରୀରେନ୍ଦ୍ରିୟାଣାଂ ସନ୍ମାର୍ଗେ ସ୍ଥାପନଂ) ଇନ୍ଦ୍ରିୟାର୍ଥେଷୁ ( ଇନ୍ଦ୍ରିୟସେବାସୁ ) ବୈରାଗ୍ୟଂ ( ଅରୁଚିଃ ) ଅନହଂକାରଃ (ମମେତ୍ୟଭିମାନାଭାବଃ) ଏବ ଚ ଜନ୍ମମୃତ୍ୟୁଜରାବ୍ୟାଧିଦୁଃଖଦୋଷାନୁଦର୍ଶନଂ (ଜନ୍ମାଦିଷୁ ଦୁଃଖଂ—ଇତି ଦୋଷଃ ଜନ୍ମାଦୀନି ଅନୁସଂଯୁକ୍ତଃ ଇତି ବୁଦ୍ଧିଃ) ପୁତ୍ରଦାରଗୃହାଦିଷୁ ଅସକ୍ତିଃ (ଅନାସକ୍ତିଃ) [ତଥା ତେଷୁ ଚ] ଅନଭିଷ୍ୱଙ୍ଗଃ (ନିର୍ମମତା, ଅମୂଢ଼ତା) ଇଷ୍ଟାନିଷ୍ଟୋପପତ୍ତିଷୁ (ଶୁଭାଶୁଭପ୍ରାପ୍ତିଷୁ) ନିତ୍ୟଂ (ସଦା) ସମଚିତ୍ତତ୍ୱଂ

(ସମଭାବଃ), ମୟି ( ପରମେଶ୍ୱରେ ) ଅନନ୍ୟଯୋଗେନ (ଐକାନ୍ତିକତତ୍ପରା-କର୍ମାଚରଣେନ) ଅବ୍ୟଭିଚାରିଣୀ (ଅଚଳା, ନାନ୍ୟତ୍ରଗାମିନୀ ଭକ୍ତିଃ) ବିବିକ୍ତଦେଶସେବିତ୍ୱଂ (ଧ୍ୟାନୋପଯୋଗିନଃ, ଶୁଚିନୀବାତସ୍ୟ ଏକାନ୍ତସ୍ୟ ବା ସ୍ଥାନସ୍ୟ ଯଥାଶ୍ରୟଃ) ଜନସଂସଦି ଲୋକକୋଲାହଳେ, ସାମାନ୍ୟଜନାନାଂ କର୍ମବ୍ୟାପାରେ ବା) ଅରତିଃ (ଅପ୍ରୀତିଃ) ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ (ଅଧ୍ୟାତ୍ମବସ୍ତୁନି ନିତ୍ୟନିଷ୍ଠା) ତତ୍ତ୍ୱଜ୍ଞାନାର୍ଥଦର୍ଶନଂ (ବସ୍ତୁତତ୍ତ୍ୱସ୍ୟ ବ୍ରହ୍ମଣଃ ଜ୍ଞାନେନ ଯଥାର୍ଥପୁରୁଷାର୍ଥଃ ଇତି ନିଶ୍ଚିତାନୁଭୂତିଃ)—ଏତେ ଚ [ ସର୍ବଂ—ଏବଂ ବିଧୟସ୍ଥା ପ୍ରଯୁକ୍ତଂ ସର୍ବଂ ନ ତୁ ଖଳୁ ଶାସ୍ତ୍ରାଧ୍ୟୟନାତ୍ ଯୁକ୍ତ୍ୟା ସ୍ୱୀକୃତଂ, ଇତି ଭାବଃ] ଜ୍ଞାନଂ ଇତି ପ୍ରୋକ୍ତଂ (କଥିତଂ)—ଅତଃ ଅନ୍ୟଥା ଯତ୍ [ଶାସ୍ତ୍ରାଧ୍ୟୟନାଦିତଃ ସ୍ୱୀକୃତଂ ଅନାଚରିତଂ ଜ୍ଞାନଂ ବା କଥ୍ୟତେ, ତତ୍] ଅନ୍ୟଥା ଯତ୍ ଅଜ୍ଞାନମ୍ । ୭-୧୧ ।

**ଅର୍ଥ**—[ଏ ଉକ୍ତିରୁ କ୍ଷେତ୍ର କ୍ଷେତ୍ରଜ୍ଞବିବେକର ଉପାୟ ଯେଉଁ ଜ୍ଞାନ ତାର ଲକ୍ଷଣ ଦେଖାଇ କହୁଚନ୍ତି]—'ଆମେ' ବୋଲି ଅଭିମାନ ନ ଥିବା; ବଡ଼େଇ ନ କରିବା; ଜୀବହିଂସା ନ ଥିବା; ସବୁ ସହିଯିବା ବା କ୍ଷମା; ଚାଲିଚଳନରେ ସରଳତା ବା ସାଧୁତା; ଗୁରୁସେବା ବା ଗୁରୁଙ୍କଠାରୁ ପାଇବା ଜ୍ଞାନରେ ବିଶ୍ୱାସ; ଦେହଶୁଦ୍ଧି ଓ ମନର ପବିତ୍ରତା; ଯହିଁରେ ଲଗିବ ସେଥିରେ ସ୍ଥିରତା; ଆପଣାର ଚିନ୍ତା ଓ କାର୍ଯ୍ୟକୁ ଠିକ୍ ବାଟରେ ରଖିବା; ଇନ୍ଦ୍ରିୟ ଭୋଗରେ ଅନିଚ୍ଛା; ମୋର ତୋର ବୋଲି ଭେଦଭାବ ନ ଥିବା, ପୁଣି, ଜନ୍ମମରଣ, ବାର୍ଦ୍ଧକ୍ୟ ରୋଗ ପ୍ରଭୃତିରେ ଦୁଃଖ ଥିବାରୁ ସେ ସବୁଥିରେ ଦୋଷ ଦେଖିବା; ପୁଅ ମାଇପ ଘର ପ୍ରଭୃତିର ମମତା ନ ରଖିବା ଓ ଲଟପଟ ନ ହେବା, ଭଲ ମନ୍ଦ ଘଟିଲେ ସବୁଥିରେ ସମାନ ରହିବା; ମୋଠାରେ (ପରମେଶ୍ୱରରେ) ତତ୍ପର ରହିବାରେ ଅଚଳ ଭକ୍ତି; ବାଛିକରି ଧ୍ୟାନଯୋଗ୍ୟ ଏକାନ୍ତ ସ୍ଥାନ ଆଶ୍ରୟ କରିବା; ଲୋକଗହଳି ବା ଲୋକଙ୍କର ସାଧାରଣ ବାଡ଼ିଆପିଟା ଗୋଳମାଳିଆରେ ଅରୁଚି, ବସ୍ତୁର ଅଧ୍ୟାତ୍ମ ତତ୍ତ୍ୱରେ ସର୍ବଦା ନିଷ୍ଠା; ବସ୍ତୁର ତତ୍ତ୍ୱ ବା ବ୍ରହ୍ମଜ୍ଞାନ ହିଁ ଶ୍ରେଷ୍ଠ ପୁରୁଷାର୍ଥ ବା ଦରକାରୀ ବୋଲି ବୁଝିବା—ଏହି ସବୁକୁ (ଅର୍ଥାତ୍, ଏହିପରି ଆଚରଣରେ ପ୍ରକାଶ ପାଉଥିବା ସବୁକୁ—ଖାଲି ପାଠରେ ପଢ଼ି ଯୁକ୍ତିରେ ମାନି ମନାଇବାର କଥା ଏସବୁ ନୁହେଁ, ଏହି ତାତ୍ପର୍ଯ୍ୟ) ଜ୍ଞାନ ବୋଲି କୁହାଯାଏ । ଏଥିରୁ ଭିନ୍ନ ଯାହା [ପାଠପଢ଼ା ଆଦିରୁ ହୋଇଥିବା ଯୁକ୍ତିର ସିଦ୍ଧାନ୍ତ ସବୁକୁ ଜ୍ଞାନ ବୋଲି କୁହାଯାଏ] ସେ ସବୁ ଅଜ୍ଞାନ । ୭-୧୧ ।

ବ୍ୟାଖ୍ୟା ସୂଚନା—ଯୁକ୍ତିର ସିଦ୍ଧାନ୍ତରୁ ଯଥାର୍ଥ ଜ୍ଞାନ ଭିନ୍ନ ବୋଲି ବୁଝାଇବା-ପାଇଁ ଏଠାରେ ଜ୍ଞାନୀର ଆଚରଣରେ ପ୍ରକାଶ ପାଉଥିବା ଲକ୍ଷଣମାନଙ୍କୁ ଜ୍ଞାନ ବୋଲି କହିଚନ୍ତି । ଜନସଂସଦ୍ = ଲୋକସଭା ବା ଗହଳି । ଆଚାର୍ଯ୍ୟୋପାସନଂ = ଆଚାର୍ଯ୍ୟ ବା (ଶିକ୍ଷାଦାତା ଗୁରୁଙ୍କ ପାଖକୁ ଯିବା), ଅର୍ଥାତ୍, ବିଶ୍ୱାସରେ ଗୁରୁଙ୍କୁ ଭଜିବା ବିବିକ୍ତ ଦେଶ = ବିଭକ୍ତ ହୋଇଥିବା ସ୍ଥାନ; ଧ୍ୟାନଯୋଗ୍ୟ ନିର୍ଜନ ସ୍ଥାନ । ଅବ୍ୟଭିଚାରିଣୀ ଭକ୍ତି

=ଯେଉଁ ଭକ୍ତ ବ୍ୟଭିଚାରିଣୀ ନୁହେ, ବା ଅନ୍ୟ କାହା ପାଖକୁ ଯାଏ ନାଇ, ବା ଅନ୍ୟ ଅଡ଼କୁ ଝୁଏ ନାଇ । ୭-୧୧ ।

**ଜ୍ଞେୟଂ ଯତ୍ତତ୍ ପ୍ରବକ୍ଷ୍ୟାମି ଯଜ୍‌ଜ୍ଞାତ୍ୱାଽମୃତମଶ୍ନୁତେ ।**
**ଅନାଦିମତ୍ ପରଂ ବ୍ରହ୍ମ ନ ସତ୍ ତନ୍ନାସଦୁଚ୍ୟତେ । ୧୨ ।**

**ଅନ୍ୱୟ**—ଯତ୍ ଜ୍ଞେୟଂ ପ୍ରବକ୍ଷ୍ୟାମି, ଯତ୍ ଜ୍ଞାତ୍ୱା ଅମୃତଂ ଅଶ୍ନୁତେ, ତତ୍ ଅନାଦିମତ୍ ପରଂ ବ୍ରହ୍ମ ନ ସତ୍ ନ ଅସତ୍ ଉଚ୍ୟତେ । ୧୨ ।

**ଟୀକା**—[କ୍ଷେତ୍ର-କ୍ଷେତ୍ରଜ୍ଞବିବେକାତ୍ ଏତଜ୍‌ଜ୍ଞାନସ୍ୟ ଯଥାର୍ଥଜ୍ଞେୟଂ ବେଦୋପନିଷଦ୍ ବଚନାନି ଉଦ୍ଧୃତ୍ୟ ବର୍ଣ୍ଣୟତି]—ଯତ୍ ଜ୍ଞେୟଂ [ତତ୍] ପ୍ରବକ୍ଷ୍ୟାମି, ଯତ୍ ଜ୍ଞାତ୍ୱା [ଜନଃ] ଅମୃତଂ (ମୃତ୍ୟୋରଭାବଂ—ମୋକ୍ଷଂ) ଅଶ୍ନୁତେ (ଲଭତେ ; ତତ୍ [ଜ୍ଞେୟଂ] ଅନାଦିମତ୍ (ଆଦିବର୍ଜ୍ଜିତଂ) ପରଂ ବ୍ରହ୍ମ; [ତତ୍] ନ ସତ୍ (ଅସ୍ତୀତି ସତ୍—ବ୍ୟକ୍ତଂ) ନ ଅସତ୍ (ନାସ୍ତୀତି ଅସତ୍—ଇନ୍ଦ୍ରିୟାଗୋଚରତ୍ୱେନ ବର୍ତ୍ତମାନଂ, ଅତଏବ ନାସ୍ତୀତି ନ, ଯଦ୍‌ବା ନାସତ୍, ଅବ୍ୟକ୍ତାତ୍ ପରଂ) ଉଚ୍ୟତେ । ୧୨ ।

**ଅର୍ଥ**—[କ୍ଷେତ୍ର କ୍ଷେତ୍ରଜ୍ଞର ବିବେକରେ ହେଉଥିବା ଏହି ଜ୍ଞାନର ଯଥାର୍ଥ ଜ୍ଞେୟ ପରଂବ୍ରହ୍ମ ବୋଲି ବେଦ ଉପନିଷଦାଦିରୁ ବଚନ ଉଦ୍ଧାର କରି କହୁ ଯାଉଛନ୍ତି]—[ଏହି କ୍ଷେତ୍ର-କ୍ଷେତ୍ରଜ୍ଞଙ୍କୁ ଠିକ୍ କରି ବୁଝିଲେ] ଯାହା ଜ୍ଞେୟ ବା ଜାଣିବାକୁ ହୁଏ, ସେ କଥା କହିବି । ତାର ଆଦି ନାଇ; ସେହି ପରଂ ବ୍ରହ୍ମ । ସେ ସତ୍ କି ଅସତ୍ ବୋଲି କହି ହେବନାଇ । (ଅର୍ଥାତ୍, ସତ୍ ବା ଅଛି ବୋଲି କହି ହେବନାହିଁ, କାରଣ ବ୍ୟକ୍ତ ନୁହେ; ନାଇ ବୋଲି କହି ହେବ ନାଇ, କାରଣ ସେ ଯଥାର୍ଥରେ ଅଛି । କିଂବା ସତ୍ ବା ବ୍ୟକ୍ତ ଓ ଅସତ୍ ବା ଅବ୍ୟକ୍ତ—ଏ ଦୁଇଟିରୁ କୌଣସିଟି ଜାଣିଲେ ପୂର୍ଣ୍ଣରୂପ ତାଙ୍କୁ ଜାଣି ହେବ ନାଇ । ସେ ଏ ଦୁଇଟିର ଅତୀତ, ବା କୌଣସିଟିରେ ସମାପ୍ତ ନୁହନ୍ତି । ୯. ୧୯ ଓ ଟୀକା ଦେଖ) । ୧୨ ।

**ସର୍ବତଃ ପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖମ୍ ।**
**ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି । ୧୩ ।**

**ଅନ୍ୱୟ**—ତତ୍ ଲୋକେ ସର୍ବତଃ ପାଣି-ପାଦଂ, ସର୍ବତଃ ଅକ୍ଷି-ଶିରୋମୁଖଂ, ସର୍ବତଃ ଶ୍ରୁତିମତ୍, ସର୍ବଂ ଆବୃତ୍ୟ ତିଷ୍ଠତି । ୧୩ ।

**ଟୀକା**—[ଅବ୍ୟକ୍ତମପି ତଦ୍ ସର୍ବବ୍ୟକ୍ତେ ବର୍ତ୍ତତେ—ଇତ୍ୟାହ]—ତତ୍ ଲୋକେ ସର୍ବତଃ ପାଣିପାଦଂ, ସର୍ବତଃ ଅକ୍ଷିଶିରୋମୁଖଂ, ସର୍ବତଃ ଶ୍ରୁତିମତ୍ (କର୍ଣ୍ଣଯୁକ୍ତଂ), ସର୍ବଂ [ଚ] ଆବୃତ୍ୟ (ବ୍ୟାପ୍ୟ) ତିଷ୍ଠତି (ସର୍ବଂ କରୋତି, ସର୍ବତ୍ର ଗଚ୍ଛତି, ସର୍ବଂ ପଶ୍ୟତି, ସର୍ବତ୍ର ଉପଲଭ୍ୟତେ ଦୃଶ୍ୟତେ ଚ, ସର୍ବଂ ଶୃଣୋତି—ସର୍ବତ୍ର ସର୍ବଭାବେନ ତଦେବ ବର୍ତ୍ତତେ—ଇତି ଭାବଃ) । ୧୩ ।

**ଅର୍ଥ**—[କେଉଁଠି ଜଣାଯାଉନାଇ, ଅଥଚ ସେଇ ସବୁଠି ଅଛି ବୋଲି କହୁଚନ୍ତି]—ସେ ଜଗତରେ ସବୁ ହାତରେ କାମକରୁଚ, ସବୁଠାକୁ ଗୋଡ଼ରେ ଗଲାପରି ଯାଉଚ; ସେହିପରି ସବୁଠି ତାର ଆଖି, ମୁଣ୍ଡ, ମୁହଁ; ସବୁଠି ତାର କାନ, ସେଇ ସବୁ ବ୍ୟାପିକରି ରହିଚ । ୧୩ ।

ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।
ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ । ୧୪ ।

**ଅନ୍ୱୟ**—ସ୍ପଷ୍ଟ । ୧୪ ।

**ଟୀକା**—[ ତତ୍ ] ସର୍ବେନ୍ଦ୍ରିୟଗୁଣାଭାସଂ ( ସର୍ବାନ୍ ଇନ୍ଦ୍ରିୟଗୁଣାନ୍ ଧାରୟତିବ—ଇନ୍ଦ୍ରିୟାଣାଂ ବିଷୟଭୋଗାଃ ଅନ୍ତଃକରଣେ ତସ୍ୟାତ୍ମନଃ ଇତି ସର୍ବୈଃ ପ୍ରତୀୟତେ—ଇତ୍ୟାଶୟଃ) [ଅପି ଚ] ସର୍ବେନ୍ଦ୍ରିୟବିବର୍ଜିତଂ (ଇନ୍ଦ୍ରିୟରହିତଂ) ଅସକ୍ତଂ (ସର୍ବସଂଶ୍ଳେଷରହିତଂ, ସର୍ବାଶ୍ରିତଂ) [ଅଥ] ଚ ସର୍ବଭୃତ୍ (ସର୍ବାଧାରଂ) ଏବ ନିର୍ଗୁଣଂ ( ତ୍ରିଗୁଣାତୀତଂ ) [ ଅପି ] ଚ ଗୁଣଭୋକ୍ତୃ (ଗୁଣଜନିତସୁଖଦୁଃଖାଦୀନାଂ) (ଉପଲବ୍ଧ) । ୧୪ ।

**ଅର୍ଥ**—ସେ ସବୁ ଇନ୍ଦ୍ରିୟ ଧର୍ମ-ଧରିଲା ପରି ଲାଗେ, ଅଥଚ ସବୁ ଇନ୍ଦ୍ରିୟରୁ ଅଲଗା; କାହିଁରେ ତାର ସମ୍ପର୍କ ନାଇ, ପୁଣି ସେହି ସବୁର ଆଧାର; ସେ ଗୁଣରୁ ଅଲଗା, ପୁଣି ଗୁଣଜନିତ ସୁଖଦୁଃଖାଦିର ଅନୁଭବୀ । ୧୪ ।

ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ ।
ସୂକ୍ଷ୍ମତ୍ୱାତ୍ ତଦବିଜ୍ଞେୟଂ ଦୂରସ୍ଥଂ ଚାନ୍ତିକେ ଚ ତତ୍ । ୧୫ ।

**ଅନ୍ୱୟ**—ଭୂତାନାଂ ବହିଃ ଅନ୍ତଶ୍ଚ, ଅଚରଂ ଚରଂ ଏବ ଚ ତତ୍ ସୂକ୍ଷ୍ମତ୍ୱାତ୍ ଅବିଜ୍ଞେୟଂ, ଦୂରସ୍ଥଂ ଚ ତତ୍ ଅନ୍ତିକେ । ୧୫ ।

**ଟୀକା**—[ତତ୍] ଭୂତାନାଂ (ପ୍ରାଣିନାଂ) ବହିଃ ଅନ୍ତଃ ଚ (ପିଣ୍ଡେ ତଥା ପିଣ୍ଡାଦତିରିକ୍ତେ ବ୍ରହ୍ମାଣ୍ଡେ—ଇତିଭାବଃ । [ଅହଂ ଇତି ଅନୁଭୂତଃ ମାନବାତ୍ମା] ଦେହେ, ଦେହାତ୍ ବହିର୍ବା ନ ନିର୍ବଚନୀୟଃ—ଇତି ଚ ଗମ୍ୟଂ) ଅଚରଂ (ସ୍ଥାବରଂ) ଚରଂ

(ଜଙ୍ଗମଂ) ଚ ଏବ; ତତ୍ ସୂକ୍ଷ୍ମତ୍ୱାତ୍ ଅବିଜ୍ଞେୟଃ (ଇନ୍ଦ୍ରିୟାଣାମବିଷୟତ୍ୱାତ୍ ଅପ୍ରତ୍ୟକ୍ଷଂ) [ଅତଏବ] ଦୂରସ୍ଥଂ; [ପୁନଃ ଚ ତତ୍] ଅନ୍ତିକେ (ନିକଟେ=ପ୍ରତ୍ୟଗାତ୍ମରୂପେଣ ଇତି ଭାବଃ) । ୧୫ ।

**ଅର୍ଥ**—ସେ ପ୍ରାଣୀଙ୍କ ବାହାରେ ପୁଣି ଭିତରେ; ଦେହରେ ସ୍ଥିର ଅଛି, ପୁଣି ସବୁଆଡ଼େ ବି ଯାଉଛି; ସେ ରୂପାଦିହୀନ ଓ ସୂକ୍ଷ୍ମ ହେବାରୁ ଅପ୍ରତ୍ୟକ୍ଷ, ଅତଏବ ଦୂରରେ; ପୁଣି ସେହି ବି ଆତ୍ମରୂପରେ ନିକଟରେ ଅଛି । ୧୫ ।

ବ୍ୟାଖ୍ୟା ସୂଚନା—ଏଠାରେ ପିଣ୍ଡର ଆତ୍ମା ଓ ବ୍ରହ୍ମାଣ୍ଡର ଆତ୍ମା ଦୁହିଙ୍କୁ ଲକ୍ଷ୍ୟ କରି ବୁଝିଲେ ହେବ; କମ୍ବା ସହଜରେ ଧରିବା ପାଇଁ ମାନବ ଭିତରେ 'ମୁଁ' ବୋଲି ଯେଉଁ ଆତ୍ମା ଅନୁଭୂତିରେ ଜଣାପଡ଼ୁଛି, ତାର ଲକ୍ଷଣ ସବୁ ଧରି ବୁଝିଲେ ବି ହେଲା । ସେ ଆତ୍ମା ଭିତରେ ଅଛି କି ବାହାରେ ଅଛି, ଦେହରେ ସ୍ଥିର କି ମନ ସଙ୍ଗେ ଗତି କରୁଛି, ନିକଟରେ କି ଦୂରରେ—କେହି ଠିକ୍ କରି କହିପାରିବେ ନାହିଁ । ଯାହା କହିବ, ସେ ତାହା । ଏହି ମାନବାତ୍ମାର ଅନୁଭୂତି-ତୁଳନାରେ ପରଂବ୍ରହ୍ମଙ୍କୁ ବୁଝିବାକୁ ହେବ । ଏଥିପାଇଁ କହନ୍ତି='ଯଥା ପିଣ୍ଡେ, ତଥା ବ୍ରହ୍ମାଣ୍ଡେ' । ୧୫ ।

**ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବ ଚ ସ୍ଥିତମ୍ ।**
**ଭୂତଭର୍ତ୍ତୃ ଚ ତଜ୍ଜ୍ଞେୟଂ ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ । ୧୬ ।**

**ଅନ୍ୱୟ**—ଅବିଭକ୍ତଂ ଚ ଭୂତେଷୁ ବିଭକ୍ତଂ ଇବ ସ୍ଥିତଂ । ତତ୍ ଜ୍ଞେୟଂ ଭୂତଭର୍ତ୍ତୃ, ଗ୍ରସିଷ୍ଣୁ ଚ ପ୍ରଭବିଷ୍ଣୁ ଚ । ୧୬ ।

**ଟୀକା**—ଅବିଭକ୍ତଂ (ଏକଂ ଅଖଣ୍ଡଂ) ଅପି [ତତ୍] ଭୂତେଷୁ (ଜାଗତିକ-ନାମରୂପମୟବସ୍ତୁଷୁ) ବିଭକ୍ତଂ (ବିଭିନ୍ନଂ) ଇବ (ଯଥା ସ୍ୟାତ୍, ତଥା) ସ୍ଥିତମ୍ ।

ତଜ୍ଜ୍ଞେୟଂ [ହି] ଭୂତଭର୍ତ୍ତୃ (ଭୂତାନାଂ ପାଳକଂ, ଆଧାରଂ) ଗ୍ରସିଷ୍ଣୁ (ସଂହାରକଂ) ଚ ପ୍ରଭବିଷ୍ଣୁ (ସୃଷ୍ଟିକର୍ତ୍ତୃ) ଚ । ୧୬ ।

**ଅର୍ଥ**—ଏକ ଅଖଣ୍ଡ ହେଲେ ବି ସେ ଦୃଷ୍ଟବସ୍ତୁମାନଙ୍କରେ ଭିନ୍ନ ଭିନ୍ନ ହେଲପରି ଅଛି । ସେହି ଜ୍ଞେୟ ହିଁ ଦୃଷ୍ଟବସ୍ତୁର ସ୍ଥିତିକାରଣ, ପ୍ରଳୟକାରୀ ଓ ସର୍ଜନକାରୀ । ୧୬ ।

**ଜ୍ୟୋତିଷାମପି ତଜ୍ଜ୍ୟୋତିସ୍ତମସଃ ପରମୁଚ୍ୟତେ ।**
**ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ବିଷ୍ଠିତମ୍ ।୧୭।**

**ଅନ୍ୱୟ**—ସ୍ପଷ୍ଟ । ୧୭ ।

ଟୀକା—ଜ୍ୟୋତିଷାଂ (ଆଦିତ୍ୟାଦୀନାଂ) ଜ୍ୟୋତିଃ (ତେଜଃ, ପ୍ରକାଶକଂ ବା) ଅପି ତତ୍; ତମସଃ (ଅନ୍ଧକାରାତ୍) ପରଂ (ନ ତମଃ ଇତି ଯତ୍ ଜ୍ୟୋତିଃ ନ ତଦ୍‌ବାଧଂ ଇତି ଭାବଃ) ଉଚ୍ୟତେ; [ତଦେବ] ଜ୍ଞାନଂ; [ତଦେବ] ଜ୍ଞେୟଂ (ଜ୍ଞାତବ୍ୟଂ), ଜ୍ଞାନଗମ୍ୟଂ (ଜ୍ଞାନସ୍ୟ ପରଂ ପ୍ରାପ୍ୟଂ), ତତ୍ ଏବ ସର୍ବସ୍ୟ [ପ୍ରାଣିନଃ] ହୃଦି (ଅନ୍ତରେ) ବିଷ୍ଠିତଂ (ଅଧିଷ୍ଠିତମ୍) । ୧୭ ।

ଅର୍ଥ—ସୂର୍ଯ୍ୟାଦି ଜ୍ୟୋତିର୍ମୟ ବସ୍ତୁର ଜ୍ୟୋତି ସେହି; ହେଲେହେଁ ଅନ୍ଧକାରର ଅତୀତ ସେହି ବୋଲି ଜଣାଯାଏ; ଜ୍ଞାନ ସେହି, ଜ୍ଞାନରେ ଖୋଜିବାର ବସ୍ତୁ ସେହି, ଜ୍ଞାନର ଶ୍ରେଷ୍ଠ ଗତି ସେହି; ସେହି ଆତ୍ମାରୂପେ ସଭିଙ୍କ ହୃଦୟରେ ବିରାଜୁଛି । ୧୭ ।

ବ୍ୟାଖ୍ୟା ସୂଚନା—ଜ୍ୟୋତିର ହେତୁ ହେଲେହେଁ ଅନ୍ଧାରରୁ ଅତୀତ = ଯାହା ଅନ୍ଧାର ନୁହେଁ ବା ଯହିଁରେ ଅନ୍ଧାର କଟିଯାଏ, ଅଥବା ଯାହା ଅନ୍ଧାରର ବିପରୀତ, ତାକୁ ଆମେ ଜ୍ୟୋତି କହୁ । କିନ୍ତୁ ଅନ୍ଧାରରୁ ଅତୀତ ଜ୍ୟୋତି ବୋଇଲେ ଅନ୍ଧାର ସଙ୍ଗେ ତୁଳନା କଲେ ଯେଉଁ ଜ୍ୟୋତି ବୁଝାଯାଏ, ତା ନୁହେଁ; ଅର୍ଥାତ୍, ଅନ୍ଧାର ଓ ଆଲୁଅରୁ ଅତୀତ ଜ୍ୟୋତି । ଅନ୍ଧାର ସେହି, ଆଲୁଅ ସେହି; କିନ୍ତୁ କୌଣସିଟି ବୁଝିଲେ ତାକୁ ପୂର୍ଣ୍ଣ ବୁଝାଗଲା ନାହିଁ । ୧୭ ।

**ଇତି କ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଂ ଚୋକ୍ତଂ ସମାସତଃ ।**
**ମଦ୍‌ଭକ୍ତ ଏତଦ୍ ବିଜ୍ଞାୟ ମଦ୍‌ଭାବାୟୋପପଦ୍ୟତେ । ୧୮ ।**

ଅନ୍ୱୟ—ସ୍ପଷ୍ଟ । ୧୮ ।

ଟୀକା—ଇତି (ଏବଂ) କ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଂ ଚ ସମାସତଃ (ସଂକ୍ଷେପତଃ) ଉକ୍ତମ୍ । ମଦ୍‌ଭକ୍ତଃ ଏତଦ୍ ବିଜ୍ଞାୟ ମଦ୍‌ଭାବାୟ ଉପପଦ୍ୟତେ (ଯୁଜ୍ୟତେ) । ୧୮ ।

ଅର୍ଥ—ଏହିପରି କ୍ଷେତ୍ର ପୁଣି ଜ୍ଞାନ ଓ ଜ୍ଞେୟ ମୋଟାମୋଟି କୁହାଗଲା । ମୋ ଭକ୍ତ ଏହା ଜାଣି ମୋ ଭାବ ବା ସ୍ୱରୂପ ପାଇବାକୁ ଯୋଗ୍ୟ ହୁଏ । ୧୮ ।

**ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି**
**ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତିସମ୍ଭବାନ୍ । ୧୯ ।**

ଅନ୍ୱୟ—ପ୍ରକୃତିଂ ପୁରୁଷଂ ଚ ଏବ ଉଭୌ ଅପି ଅନାଦୀ ବିଦ୍ଧି, ବିକାରାନ୍ ଗୁଣାନ୍ ଚ ଏବ ପ୍ରକୃତିସମ୍ଭବାନ୍ ବିଦ୍ଧି । ୧୯ ।

**ଟୀକା**—[ ପ୍ରକୃତିପୁରୁଷରୂପେଣ କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଭେଦଂ ପୁନଃ ସ୍ପଷ୍ଟୀକରୋତି]—[କ୍ଷେତ୍ରଭୂତାଂ] ପ୍ରକୃତିଂ (ସାଂଖ୍ୟବାଦିଭିଃ ପ୍ରକୃତିଃ ଇତି କଥିତାଂ ମମ ଅପରାଂ ପ୍ରକୃତିଂ) [ଜୀବଭୂତଂ କ୍ଷେତ୍ରଜ୍ଞଂ] ପୁରୁଷଂ (ସାଂଖ୍ୟବାଦିଭିଃ ପୁରୁଷଃ ଇତି କଥିତାଂ ମମ ପରାଂ ପ୍ରକୃତିଂ) ଚ ଏବ ଉଭୌ [ମମାଂଶତ୍ୱାତ୍] ଅନାଦୀ (ଆଦିରହିତୌ) ବିଦ୍ଧି । [ଦେହେନ୍ଦ୍ରିୟାଦୀନ୍] ବିକାରାନ୍ [ସୁଖଦୁଃଖାଦୀନ୍] ଗୁଣାନ୍ [ସାଂଖ୍ୟାନାଂ ସତ୍ତ୍ୱାଦ୍ୟାତ୍ମପରିଣାମୈଃ ବିକାରୈଃ ଗୁଣୈଃ ଚ ସହ ] ଚ ପ୍ରକୃତି-ସମ୍ଭବାନ୍ ବିଦ୍ଧି । ୧୯ ।

**ଅର୍ଥ**—[ସାଂଖ୍ୟମତରେ କଥିତ ପ୍ରକୃତି ପୁରୁଷ ନାମରେ ସେହି କ୍ଷେତ୍ର କ୍ଷେତ୍ରଜ୍ଞଙ୍କୁ ସ୍ପଷ୍ଟ କରୁଛନ୍ତି]—କ୍ଷେତ୍ରରୂପ ଧରିଥିବା ପ୍ରକୃତି ଓ ଜୀବରୂପ ଧରିଥିବା ପୁରୁଷ ଦୁହିଙ୍କୁ ଅନାଦି ବୋଲି ଜାଣ । ଦେହ ଇନ୍ଦ୍ରିୟାଦି ବିକାର ଓ ସତ୍ତ୍ୱରଜତମ ଗୁଣର ସୁଖଦୁଃଖାଦି, ପ୍ରକୃତିରୁ ହୁଅନ୍ତି ବୋଲି ଜାଣ । ୧୯ ।

ବ୍ୟାଖ୍ୟା ସୂଚନା—ସାଂଖ୍ୟମତରେ ପ୍ରକୃତି ଓ ପୁରୁଷ ଦୁହେଁ ସ୍ୱତନ୍ତ୍ର ଅନାଦି ମୂଳ ତତ୍ତ୍ୱ ହେଲେହେଁ, ଭଗବାନ୍ ବୁଝାଇଚନ୍ତି, ସେ ଦୁହେଁ ଈଶ୍ୱରଙ୍କର ଅପରା ଓ ପରା ପ୍ରକୃତି । ତେଣୁ ସେ ଦୁଇଟି ଈଶ୍ୱରଙ୍କ ପରି ଅନାଦି । ଗୁଣମାନେ ପ୍ରକୃତିର ବିକାର । ୭.୪, ୫ ଦେଖ । ୧୯ ।

**କାର୍ଯ୍ୟକରଣକର୍ତ୍ତୃତ୍ୱେ ହେତୁଃ ପ୍ରକୃତିରୁଚ୍ୟତେ ।**
**ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ ।୨୦।**

**ଅନ୍ୱୟ**—ପ୍ରକୃତିଃ କାର୍ଯ୍ୟକରଣକର୍ତ୍ତୃତ୍ୱେ ହେତୁଃ ଉଚ୍ୟତେ, ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁଃ ଉଚ୍ୟତେ । ୨୦ ।

**ଟୀକା**—[ଅସ୍ମିନ୍ କ୍ଷେତ୍ରେ] ପ୍ରକୃତିଃ କାର୍ଯ୍ୟକରଣକର୍ତ୍ତୃତ୍ୱେ (ଦେହେନ୍ଦ୍ରିୟାଦୀନାଂ ତଦାକାରପରିଣାମେ) [କାର୍ଯ୍ୟକାରଣ କର୍ତ୍ତୃତ୍ୱେ—ଇତି ପାଠେ, ପ୍ରକୃତେଃ ବୁଦ୍ଧିଃ, ତସ୍ମାତ୍ ଅହଂକାରଃ ଇତ୍ୟାଦି କାରଣାତ୍ କାର୍ଯ୍ୟପରିଣାମେଷୁ କାର୍ଯ୍ୟକାରଣପରଂପରାୟାଃ କର୍ତ୍ତୃତ୍ୱେ] ହେତୁଃ ଉଚ୍ୟତେ । ପୁରୁଷଃ ( ଜୀବଃ ) [ତତ୍ ପ୍ରକୃତିଭବାନାଂ] ସୁଖଦୁଃଖାନାଂ ଭୋକ୍ତୃତ୍ୱେ (ଭୋଗବିଷୟେ) ହେତୁଃ ଉଚ୍ୟତେ । ୨୦ ।

**ଅର୍ଥ**—ଦେହ ଇନ୍ଦ୍ରିୟ ପ୍ରଭୃତିର କର୍ତ୍ତା ଭାବରେ ପ୍ରକୃତିକୁ ହେତୁ କୁହାଯାଏ (ଅର୍ଥାତ୍ ପ୍ରକୃତି ହେତୁରୁ ଏସବୁ ହୁଏ) । ସେ ପ୍ରକୃତିଜନିତ ସୁଖଦୁଃଖର ଭୋଗରେ ପୁରୁଷକୁ ହେତୁ ବୋଲି କୁହାଯାଏ ଅର୍ଥାତ୍ ପୁରୁଷ ହେତୁରୁ ସୁଖ ଦୁଃଖ ଭୋଗ ହୁଏ । ୨୦ ।

ବ୍ୟାଖ୍ୟା ସୂଚନା—କାର୍ଯ୍ୟ = ଶରୀର; କରଣ = ଇନ୍ଦ୍ରିୟ । କୌଣସି ଟୀକାକାର 'କାର୍ଯ୍ୟକାରଣକର୍ତ୍ତୃତ୍ୱେ' ବୋଲି ଲେଖିଚନ୍ତି । ତା ହେଲେ ପ୍ରକୃତିରୁ ବୁଦ୍ଧି, ବୁଦ୍ଧିରୁ ଅହଙ୍କାର, ଅହଂକାରରୁ ଇନ୍ଦ୍ରିୟାଦି ଓ ତନ୍ମାତ୍ର—ଏହିପରି ଗୋଟିଏ କାରଣରୁ ଆଉ ଗୋଟିଏ କାର୍ଯ୍ୟ; ପୁଣି ସେହି କାର୍ଯ୍ୟ, କାରଣ ହୋଇ ସେଥିରୁ ଅନ୍ୟ କାର୍ଯ୍ୟ—ପ୍ରକୃତି, କାରଣ; ବୁଦ୍ଧି, କାର୍ଯ୍ୟ; ଫେର୍ ବୁଦ୍ଧି, କାରଣ; ଅହଂକାର କାର୍ଯ୍ୟ—ଏହିପରି କାର୍ଯ୍ୟ କାରଣ ପରମ୍ପରାର ହେତୁ, ପ୍ରକୃତି ବୋଲି ସାଂଖ୍ୟମାନେ ସ୍ଥିର କରନ୍ତି—୭.୪ ଟୀକା ଦେଖ । ମାତ୍ର ଏଠାରେ କ୍ଷେତ୍ର କଥା କହୁଥିବାରୁ 'କରଣ' ପାଠହିଁ ଠିକ୍ ବୋଧ ହେଉଚି । ୨୦ ।

**ପୁରୁଷଃ ପ୍ରକୃତିସ୍ଥୋ ହି ଭୁଂକ୍ତେ ପ୍ରକୃତିଜାନ୍ ଗୁଣାନ୍ ।**
**କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍‌ଯୋନିଜନ୍ମସୁ । ୨୧ ।**

**ଅନ୍ୱୟ**—ହି ପୁରୁଷଃ ପ୍ରକୃତିସ୍ଥଃ ପ୍ରକୃତିଜାନ୍ ଗୁଣାନ୍ ଭୁଂକ୍ତେ [ତତଃ] ଗୁଣସଙ୍ଗଃ ଅସ୍ୟ ସଦ୍‌ସଦ୍ ଯୋନିଜନ୍ମସୁ କାରଣଂ । ୨୧ ।

**ଟୀକା**—ହି (ଯତଃ) ପୁରୁଷଃ [ଜୀବରୂପେଣ] ପ୍ରକୃତିସ୍ଥଃ (ପ୍ରକୃତିଭବ ଦେହେନ୍ଦ୍ରିୟାଦିଷୁ ତାଦାତ୍ମ୍ୟେନ ସ୍ଥିତଃ) [ସନ୍] ପ୍ରକୃତିଜାନ୍ [ସୁଖଦୁଃଖମୋହାଦ୍ୟାକାରାନ୍] ଗୁଣାନ୍ ଭୁଂକ୍ତେ । [ତତଃ, ଏବଂଭୂତଃ] ଗୁଣସଙ୍ଗଃ (ଅହଂ ସୁଖୀ, ଅହଂ ମୂଢ଼ଃ ଇତ୍ୟାଦି ଗୁଣେଷୁ ଆତ୍ମଭାବଃ) ଅସ୍ୟ [ପୁରୁଷସ୍ୟ] ସଦ୍‌ସଦ୍‌ଯୋନିଜନ୍ମସୁ (ଉତ୍ତମ-ମଧ୍ୟମାଧମଜନ୍ମଭେଦେଷୁ) କାରଣଂ [ଭବତି] । ୨୧ ।

**ଅର୍ଥ**—ଯହିଁ ପୁରୁଷ ପ୍ରକୃତିଜନିତ ଦେହରେ 'ମୁଁ' ବୋଲି ଜୀବରୂପେ ରହି ପ୍ରକୃତିରୁ ହେଉଥିବା ସୁଖଦୁଃଖ ମୋହାଦି ଗୁଣସବୁ ଭୋଗେ ସେଥିପାଇଁ [ ମୁଁ ସୁଖୀ, ମୁଁ ମୂଢ଼ ଇତ୍ୟାଦି] ଏହି ଗୁଣର ସମ୍ପର୍କ ହିଁ ଏହି ପୁରୁଷର [ମନୁଷ୍ୟ, ପଶୁ, କୀଟ ପ୍ରଭୃତି] ଭଲ ମନ୍ଦ ଜାତିରେ ଜନ୍ମ ହେବାର କାରଣ ହୁଏ । ଅର୍ଥାତ୍ ଏହି ଗୁଣରେ ଆପଣାକୁ ଜଡ଼ିତ କରି ମିଶାଇ ଦେବାରୁ ସେ ସେହି ଗୁଣର କର୍ମ ଅନୁସାରେ ଭଲ ମନ୍ଦ ଜନ୍ମ ପାଏ । ୨୧ ।

**ଉପଦ୍ରଷ୍ଟାନୁମନ୍ତା ଚ ଭର୍ତ୍ତା ଭୋକ୍ତା ମହେଶ୍ୱରଃ ।**
**ପରମାତ୍ମେତି ଚାପ୍ୟୁକ୍ତୋ ଦେହେଽସ୍ମିନ୍ ପୁରୁଷଃ ପରଃ ।୨୨।**

**ଅନ୍ୱୟ**—ଅସ୍ମିନ୍ ଦେହେ ଉପଦ୍ରଷ୍ଟା, ଅନୁମନ୍ତା ଚ ଭର୍ତ୍ତା, ଭୋକ୍ତା, ପରଃ ପୁରୁଷଃ, ମହେଶ୍ୱରଃ ପରମାତ୍ମା ଚ ଅପି ଉକ୍ତଃ । ୨୨ ।

**ଟୀକା**—ଅସ୍ମିନ୍ ଦେହେ [ଗୁଣାନାଂ] ଉପଦ୍ରଷ୍ଟା (ସମୀପେ ସ୍ଥିତ୍ୱା ଦର୍ଶକଃ) ଅନୁମନ୍ତା (ଅନୁମୋଦକଃ) ଭର୍ତ୍ତା (ପ୍ରକାଶକଃ, ପାଳକଃ, ବର୍ଦ୍ଧକଃ) ଭୋକ୍ତା [ଗ୍ରାହକଃ] [ପୁରୁଷଃ], ପରଃ (ଶ୍ରେଷ୍ଠଃ) ପୁରୁଷଃ ମହେଶ୍ୱରଃ (ସର୍ବନିୟନ୍ତା), ପରମାତ୍ମା ଚ ଅପି ଉକ୍ତ । ୨୨ ।

**ଅର୍ଥ**—ଏହି ଦେହରେ ଯେଉଁ ପୁରୁଷ ଗୁଣମାନଙ୍କ ନିକଟରେ ଦେଖି ବାଛି ପ୍ରକାଶ କରି ଭୋଗ କରନ୍ତି, ତାଙ୍କୁଇ ଶ୍ରେଷ୍ଠ ପୁରୁଷ ମହେଶ୍ୱର ଓ ପରମାତ୍ମା ବୋଲି ମଧ୍ୟ କୁହାଯାଏ । (ଯେ ଜୀବାତ୍ମା ସେହି ପରମାତ୍ମା) । ୨୨ ।

**ଯ ଏବଂ ବେତ୍ତି ପୁରୁଷଂ ପ୍ରକୃତିଂ ଚ ଗୁଣୈଃ ସହ ।**
**ସର୍ବଥା ବର୍ତ୍ତମାନୋଽପି ନ ସ ଭୂୟୋଽଭିଜାୟତେ ।୨୩।**

**ଅନ୍ୱୟ**—ସ୍ପଷ୍ଟ । ୨୩ ।

**ଟୀକା**—ଯଃ [ଜନଃ, ଭକ୍ତୋ ବା] ଏବଂ ପୁରୁଷଂ, ଗୁଣୈଃ ସହ ପ୍ରକୃତିଂ ଚ [କ୍ଷେତ୍ରଜ୍ଞ-କ୍ଷେତ୍ର-ପ୍ରମାଣେନ] ବେତ୍ତି ସଃ ସର୍ବଥା [କର୍ମଣି] ବର୍ତ୍ତମାନଃ [ସନ୍] ଅପି ଭୂୟଃ (ପୁନଃ) ନ ଅଭିଜାୟତେ (ଜନ୍ମ ଲଭତେ, ସଃ ଜନ୍ମବନ୍ଧଂ ଅତିକ୍ରାମତୀତି ଭାବଃ) । ୨୩ ।

**ଅର୍ଥ**—ପୁରୁଷଙ୍କୁ ଯେ ଏହିପରି (ଗୁଣ ସମ୍ପର୍କରେ ରହିଥିଲେହେଁ ଯଥାର୍ଥତଃ ପରମାତ୍ମା ବୋଲି) ଓ ପ୍ରକୃତିକୁ ଗୁଣ ଯେନି ଅଛି ବୋଲି ଜାଣେ, ସେ ସବୁମନ୍ତେ [ପ୍ରକୃତିର ଗୁଣରେ କର୍ମ] କରୁଥାଇ ବି ଆଉ ଜନ୍ମ ପାଏ ନାଇ (ଅର୍ଥାତ୍ ମୁକ୍ତ ହୁଏ) । ୨୩ ।

ବ୍ୟାଖ୍ୟା ସୂଚନା—୧୯ ଶ୍ଳୋକଠାରୁ ଏପର୍ଯ୍ୟନ୍ତ ସାଂଖ୍ୟ ପରିଭାଷା ଧରି କୁହାଯାଇ-ଥିଲେ । ସାଂଖ୍ୟରେ କର୍ମ ଛାଡ଼ି ସନ୍ନ୍ୟାସ କରିବା ହିଁ ବିଧି । ତେଣୁ ଏଠାରେ ସ୍ପଷ୍ଟ କରି କହିଦେଲେ, ସବୁମନ୍ତେ କର୍ମ କରୁଥାଇ ବି ମୁକ୍ତ ହୁଏ । ଏହା ହିଁ ଗୀତାର ଯୋଗ ବା ଈଶ୍ୱରାର୍ଥ କର୍ମରେ ମୁକ୍ତିର ସାଧନା । ୨୩ ।

**ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା ।**
**ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମ-ଯୋଗେନ ଚାପରେ ।୨୪।**

**ଅନ୍ୱୟ**—କେଚିତ୍ ଆତ୍ମନା ଆତ୍ମନି ଧ୍ୟାନେନ ଆତ୍ମାନଂ ପଶ୍ୟନ୍ତି, ଅନ୍ୟେ ସାଂଖ୍ୟେନ ଯୋଗେନ, ଅପରେ ଚ କର୍ମଯୋଗେନ । ୨୪ ।

**ଟୀକା**—[ସର୍ବସାଧନସମନ୍ୱୟେନ ଆତ୍ମସ୍ୱରୂପସ୍ୟ ପୁରୁଷସ୍ୟ ଦର୍ଶନଂ ଆହ]—କେଚିତ୍ ଆତ୍ମନା ଆତ୍ମନି ଧ୍ୟାନେନ (ଧ୍ୟାନଯୋଗେନ ଏତଂ ପରଂ ଆତ୍ମାନଂ ପଶ୍ୟନ୍ତି; ଅନ୍ୟେ ସାଂଖ୍ୟେନ (ଜ୍ଞାନସେବୟା କର୍ମସନ୍ନ୍ୟାସେନ) ଯୋଗେନ (ସାଧନେନ) ଅପରେ ଚ କର୍ମଯୋଗେନ (ନିଷ୍କାମକର୍ମାଚରଣେନ) [ଏତଂ ପଶ୍ୟନ୍ତି] । ୨୪ ।

**ଅର୍ଥ**—[ନାନାପ୍ରକାର ପ୍ରଚଳିତ ସାଧନା ବା ଯୋଗରେ ଲୋକେ ଏ ଆତ୍ମସାକ୍ଷାତ୍କାର କରନ୍ତି ବୋଲି କହୁଚନ୍ତି]—କେହି କେହି ଧ୍ୟାନଯୋଗ ସାଧି ମନକୁ ଆତ୍ମାରେ ଲଗାଇ ଏହି ପରମାତ୍ମାକୁ ଦେଖନ୍ତି; ଆଉ କେହି କେହି ଜ୍ଞାନମାର୍ଗ ଧରି କର୍ମ ଗୁଡ଼ିକ ସନ୍ନ୍ୟାସ କରି (ପ୍ରକୃତି ପୁରୁଷ ଭେଦର ସ୍ଥିର ଧାରଣା କରି), ପୁଣି ଆଉ କେହି ନିଷ୍କାମକର୍ମରେ ଲାଗି ସେହି ଯୋଗରେ ଏହାକୁ ଦେଖନ୍ତି ବା ଲାଭ କରନ୍ତି । ୨୪ ।

**ଅନ୍ୟେ ତ୍ୱେବମଜାନନ୍ତଃ ଶ୍ରୁତ୍ୱାଽନ୍ୟେଭ୍ୟ ଉପାସତେ ।**
**ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ । ୨୫ ।**

**ଅନ୍ୱୟ**—ଏବଂ ଅଜାନନ୍ତଃ ଅନ୍ୟେ ତୁ ଅନ୍ୟେଭ୍ୟଃ ଶ୍ରୁତ୍ୱା ଉପାସତେ । ଶ୍ରୁତିପରାୟଣାଃ ତେ ଅପି ଚ ମୃତ୍ୟୁଂ ଏବ ଅତିତରନ୍ତି । ୨୫ ।

**ଟୀକା**—ଏବଂ [ସାଧନା] ଅଜାନନ୍ତଃ ଅନ୍ୟେ ତୁ (ପୁନଃ) [ଜ୍ଞାନବଦ୍ଭ୍ୟଃ ଆପ୍ତେଭ୍ୟଃ ବା] ଅନ୍ୟେଭ୍ୟଃ ଶ୍ରୁତ୍ୱା ଉପାସତେ (ଶ୍ରଦ୍ଧୟା ସେବନ୍ତେ) । [କା କଥା ଧ୍ୟାନବତାଂ ଜ୍ଞାନିନାଂ କର୍ମିଣାଂ ବା ] ଶ୍ରୁତିପରାୟଣାଃ (ଅନ୍ୟତଃ ଶ୍ରବଣସର୍ବସ୍ୱାଃ) ତେ ଅପି ଚ ମୃତ୍ୟୁଂ ଏବ ଅତିତରନ୍ତି (ଅତିବର୍ତ୍ତନ୍ତେ) । ଶ୍ରବଣମନନାଦିରତାଃ ଭକ୍ତ୍ୟା ଅପି ତରନ୍ତୀତି ଭାବଃ । ୨୫ ।

**ଅର୍ଥ**—ଏହିପରି [ସାଧନପନ୍ଥାମାନ] ନ ଜାଣି ଆଉ କେହି କେହି ପୁଣି ଜାଣିଥିବା ଅନ୍ୟ ଲୋକଠାରୁ (ଭକ୍ତ ବା ଶିଷ୍ଟଙ୍କଠାରୁ) ଶୁଣିକରି ବିଶ୍ୱାସରେ ଲାଗିଯାନ୍ତି ଓ ସେମାନେ ବି ମରଣରୁ ଉଦ୍ଧରି ଯାନ୍ତି (ମୁକ୍ତି ପାଆନ୍ତି) । (ଅର୍ଥାତ୍, ସାଧନପନ୍ଥା ଜାଣିଥିବା ଲୋକଙ୍କ କଥା କହିବା ଦରକାର ନାହିଁ, ଖାଲି ଶ୍ରବଣ ମନନ କରି ଭକ୍ତମାନେ ତାହି ପାଆନ୍ତି । ୨୫ ।

ବ୍ୟାଖ୍ୟା ସୂଚନା—ପୂର୍ବ ଦୁଇ ଶ୍ଳୋକରେ ଜ୍ଞାନ ଓ କର୍ମାଦିର ସାଧନାରେ ଈଶ୍ୱର-ଭାବ ବା ଭକ୍ତି, ମନକୁ ଆସିଯାଏ ବୋଲି କହି, ଏଠାରେ କହୁଚନ୍ତି କି, କିଛି ନ ଜାଣିଥିବା ଲୋକ ମଧ୍ୟ ବିଶ୍ୱାସରେ ଭକ୍ତିରେ ମାତିଗଲେ ଜ୍ଞାନ ଓ କର୍ମର ସାଧନା ତାର ସୁଗମ ହୋଇଯାଏ । ଏହିପରି ଯୋଗରେ ଜ୍ଞାନ, କର୍ମ ଓ ଭକ୍ତି ଓତପ୍ରୋତ ଭାବରେ ରହିଚି; ମାତ୍ର ବ୍ୟକ୍ତି ଭକ୍ତି ସହଜ ପନ୍ଥା । ୨୫ ।

**ଯାବତ୍ ସଂଜାୟତେ କିଂଚିତ୍ ସତ୍ତ୍ୱଂ ସ୍ଥାବରଜଙ୍ଗମମ୍ ।**
**କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ ତଦ୍‌ବିଦ୍ଧି ଭରତର୍ଷଭ । ୨୭ ।**

**ଅନ୍ୱୟ**—ସ୍ପଷ୍ଟ । ୨୭ ।

**ଟୀକା**—[ ଉକ୍ତଂ ତତ୍ତ୍ୱଜ୍ଞାନଂ ବସ୍ତୁରଣଃ କଥୟତି ]—ହେ ଭରତର୍ଷଭ, ଯାବତ୍ କିଞ୍ଚିତ୍ ସ୍ଥାବରଜଙ୍ଗମଂ ସତ୍ତ୍ୱଂ (ବସ୍ତୁ) ସଂଜାୟତେ (ଭବତି), ତତ୍ କ୍ଷେତ୍ର-କ୍ଷେତ୍ରଜ୍ଞସଂଯୋଗାତ୍ [ଭବତୀତି] ବିଦ୍ଧି । ୨୭ ।

**ଅର୍ଥ**—[ମୋହ ଜ୍ଞାନ ଭଲ କରି ବୁଝାଉଛନ୍ତି]—ହେ ଭରତର୍ଷଭ ! ଯାହା କିଛି ଚଳନ୍ତା ଅଚଳନ୍ତା ବସ୍ତୁ ଜଗତରେ ଜନ୍ମେ ବା ଅଛି, ସେ ସବୁ କ୍ଷେତ୍ର-କ୍ଷେତ୍ରଜ୍ଞ ଦୁହିଙ୍କ ସଂଯୋଗରୁ ହୋଇଛି ବୋଲି ଜାଣ୍ । ୨୭ ।

ବ୍ୟାଖ୍ୟା ସୂଚନା—ପ୍ରକୃତି ପୁରୁଷ ସଙ୍ଗେ କ୍ଷେତ୍ରକ୍ଷେତ୍ରଜ୍ଞ ଏକ ବୋଲି ସ୍ପଷ୍ଟ କରିଦେଲେ । "ଯଥା ପିଣ୍ଡେ ତଥା ବ୍ରହ୍ମାଣ୍ଡେ"—ଏହାହିଁ ବେଦାନ୍ତ ତଥା ସାଂଖ୍ୟତତ୍ତ୍ୱର ସାର କଥା । କ୍ଷେତ୍ର=ଦେହ, କ୍ଷେତ୍ରଜ୍ଞ=ଜୀବାତ୍ମା । ଏ ଦୁହିଙ୍କର ପରସ୍ପର ସଂପର୍କରେ ଯାହା ପ୍ରତୀତିକୁ ଆସେ ତାହାହିଁ ସ୍ଥାବର ଜଙ୍ଗମ ସବୁ । ଏ ପ୍ରତୀତି ଅନ୍ୟପ୍ରକାର ହେଲେ ବି ସବୁ ଅନ୍ୟ ପ୍ରକାର ହୋଇଯିବ । ଏହି ଧାରଣାରୁ ବିଶ୍ୱତତ୍ତ୍ୱର ବିକାଶ । ଜୀବାତ୍ମା ରୂପେ ଶରୀର ଧରିଅଛି, ଯେଉଁ 'ଜୀବଭୂତ' ଆତ୍ମା ବା ଈଶ୍ୱରଙ୍କ 'ପରାପ୍ରକୃତି' ସେଇ ପୁଣି ବ୍ୟକ୍ତ ଈଶ୍ୱର, 'ସ୍ୱଭାବ' ବା ଅଧ୍ୟାତ୍ମ ବା ପରମାତ୍ମା; ଓ ଦେହରୂପେ ପରିଣତ ହୋଇଛି । ଯେଉଁ ଅଷ୍ଟଧା ଈଶ୍ୱରଙ୍କର 'ଅପରା ପ୍ରକୃତି' 'ଅଧିଭୂତ' 'କ୍ଷରଭାବ' ସେ ବି ଅଧ୍ୟାତ୍ମ ପ୍ରକୃତିର ବିକାଶ ମାତ୍ର । ଅତଏବ ସେ ବି 'କ୍ଷେତ୍ର-କ୍ଷେତ୍ରଜ୍ଞ ସଂଯୋଗ' । ଏହିପରି ଦେହ ଓ ଆତ୍ମା ବୁଝି ସାଂଖ୍ୟରେ ଦ୍ୱୈତତତ୍ତ୍ୱରୁ ବେଦାନ୍ତ ବା ଗୀତାର ଅଦ୍ୱୈତ ତତ୍ତ୍ୱ ବୁଝିବାକୁ ହେବ—୭.୪, ୫; ୮.୩, ୪ ଦେଖ । ୨୭ ।

**ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରମ୍ ।**
**ବିନଶ୍ୟତ୍‌ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି । ୨୮ ।**

**ଅନ୍ୱୟ**—ବିନଶ୍ୟତ୍ସୁ ସର୍ବେଷୁ ଭୂତେଷୁ ଅବିନଶ୍ୟନ୍ତଂ ତଂ ସମଂ ତିଷ୍ଠନ୍ତଂ ପରମେଶ୍ୱରଂ ଯଃ ପଶ୍ୟତି ସଃ ପଶ୍ୟତି । ୨୮ ।

**ଟୀକା**—ବିନଶ୍ୟତ୍ସୁ (ଅଚିରେଷୁ) ସର୍ବେଷୁ [ ବିଶ୍ୱଦେହରୂପେଷୁ ] ଭୂତେଷୁ ଅବିନଶ୍ୟନ୍ତଂ (ନିତ୍ୟଂ) ସମଂ (ଅବିକୃତଂ, ଏକରୂପଂ) ତିଷ୍ଠନ୍ତଂ ପରମେଶ୍ୱରଂ ଯଃ ପଶ୍ୟତି, ସଃ (ଯଥାର୍ଥଂ) ପଶ୍ୟତି । ୨୮ ।

**ଅର୍ଥ**—ନଷ୍ଟ ହେଉଥିବା (ଅର୍ଥାତ୍, ସର୍ବଦା ବଦଳୁଥିବା) ଭୂତ ମାନଙ୍କରେ ନିତ୍ୟ (ଅବିନାଶୀ) ସର୍ବଦା ସମାନ ଥିବା ପରମେଶ୍ୱରଙ୍କୁ ଯେ ଦେଖେ, ସେହି ଏକା ଠିକ୍ ଦେଖେ । ଜିମ୍ବା ଭୂତମାନେ ନଷ୍ଟ ହେଲେ ବି ପରମେଶ୍ୱରଙ୍କୁ ଯେ ନିତ୍ୟ ଓ ଏକାପର ଥିବାର ବୁଝେ, ସେହି ଏକା ବୁଝେ । ୨୭ ।

**ସମଂ ପଶ୍ୟନ ହି ସର୍ବତ୍ର ସମବସ୍ଥିତମୀଶ୍ୱରମ୍ ।**
**ନ ହିନସ୍ତ୍ୟାତ୍ମନାତ୍ମାନଂ ତତୋ ଯାତି ପରାଂ ଗତିମ୍ ।୨୮।**

**ଅନ୍ୱୟ**—ହି ସର୍ବତ୍ର ସମଂ ସମବସ୍ଥିତଂ ଈଶ୍ୱରଂ ପଶ୍ୟନ୍ ଆତ୍ମନା ଆତ୍ମାନଂ ନ ହିନସ୍ତି । ତତଃ ପରାଂ ଗତିଂ ଯାତି । ୨୮ ।

**ଟୀକା**—ହି (ଯତଃ) ସର୍ବତ୍ର ସମଂ (ଏକରୂପଂ) ସମବସ୍ଥିତଂ (ସମ୍ୟକ୍ସ୍ଥିତଂ) ଈଶ୍ୱରଂ ପଶ୍ୟନ୍ [ଜନଃ] ଆତ୍ମନା (ଦେହାତ୍ମମୋହେନ) ଆତ୍ମାନଂ (ପ୍ରତ୍ୟଗାତ୍ମାନଂ) ନ ହିନସ୍ତି (ନାଶୟତି) ତତଃ [ସଃ] ପରାଂ ଗତିଂ ଯାତି । ୨୮ ।

**ଅର୍ଥ**—କାହିଁକି ନା ସବୁଠି ସମାନ ରହିଥିବା ଈଶ୍ୱରଙ୍କୁ ଦେଖିଲେ, ଲୋକ ଆଉ ଦେହକୁ ଆତ୍ମା ବିଚାରି [ମୋହରେ ପଡ଼ି ଅନ୍ତରରେ ଥିବା] ଯଥାର୍ଥ ଆତ୍ମାକୁ ନଷ୍ଟ କରେ ନାହିଁ । [ଏହି ଅନ୍ତରାତ୍ମାକୁ ଠିକ୍ ଚିହ୍ନି] ତହିଁ ଉତ୍ତାରୁ ସେ ପରମ ଗତିପାଏ । ୬.୫,୬ ଦେଖ । ୨୮ ।

**ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ ।**
**ଯଃ ପଶ୍ୟତି ତଥାତ୍ମାନମକର୍ତାରଂ ସ ପଶ୍ୟତି । ୨୯ ।**

**ଅନ୍ୱୟ**—ଯଃ ଚ ପ୍ରକୃତ୍ୟା ଏବ କର୍ମାଣି ସର୍ବଶଃ କ୍ରିୟମାଣାନି, ତଥା ଆତ୍ମାନଂ ଅକର୍ତାରଂ ପଶ୍ୟତି, ସଃ ପଶ୍ୟତି । ୨୯ ।

**ଟୀକା**—[ଯତଃ ପ୍ରକୃତେଃ ଗୁଣୈଃ, ନାତ୍ମନା, କର୍ମାଣି କ୍ରିୟନ୍ତେ, ତତଃ] ଯଃ ଚ (ପୁନଃ) [ଦେହଭାବାନ୍ୱିକସ୍ୟା] ପ୍ରକୃତ୍ୟା ଏବ କର୍ମାଣି ସର୍ବଶଃ (ସର୍ବଥା) କ୍ରିୟମାଣାନି, ତଥା ଆତ୍ମାନଂ ଅକର୍ତାରଂ (ଅଲିପ୍ତଂ) ପଶ୍ୟତି, ସଃ ପଶ୍ୟତି । ୨୯ ।

**ଅର୍ଥ**—[ପ୍ରକୃତିର ଗୁଣ-ପରିଣାମରେ ହିଁ କର୍ମ ଚାଲିଚି, ଆତ୍ମା କରୁ ନାହିଁ; ତେଣୁ] ଯେ ପୁଣି ଦେହଭୂତ ପ୍ରକୃତିରେ ହିଁ ସବୁ କର୍ମ କରା ହେଉଛି ଓ ଆତ୍ମା ଯଥାର୍ଥରେ କର୍ତା ନୁହେ ବୋଲି ଦେଖେ, ସେହି ଏକା ଠିକ୍ ଦେଖେ । ୨୯ ।

ବ୍ୟାଖ୍ୟା ସୂଚନା—ଏହା ସ୍ପଷ୍ଟତଃ ସାଂଖ୍ୟର ଦ୍ୱୈତ ତତ୍ତ୍ୱଭାବରେ ପୁରୁଷକୁ ଆତ୍ମାନାମ ଦେଇ କୁହାଯାଇଛି । କିନ୍ତୁ ବେଦାନ୍ତରେ ଏହି ପରିଭାଷା ହିଁ ବ୍ୟବହାର କରାଯାଏ ଏବଂ ପର ଶ୍ଳୋକରେ ବୁଝାଇବେ, ଗୀତାର ବେଦାନ୍ତରେ 'ଅଧ୍ୟାତ୍ମ' ଓ

'ଅଧିଭୂତ' ପରମାତ୍ମାଙ୍କର ପରା ଓ ଅପରା ପ୍ରକୃତି; ଓ ଗୁଣାଦିର ବିକାଶରେ ବିଶ୍ୱବିସ୍ତାର ପରମାତ୍ମାଙ୍କ 'ଯୋଗ' ଓ 'ଯୋଗମାୟା'ର କାର୍ଯ୍ୟ । ଯେପରି ବୁଝିଲେହେଁ, ଆତ୍ମା ଯେ ଅଲିପ୍ତ, ଏହା ଅନୁଭବସିଦ୍ଧ । ନ ଜାଣି କାହା ଉପରେ ଧକ୍‌କା ବାଜିଗଲେ ଲୋକ ସେଥିପାଇଁ ଦାୟୀ ହୁଏ ନାଇ । ଏହି ଧକ୍‌କା ଦେହର କର୍ମ ମାତ୍ର । ସେ କର୍ମରେ ଆତ୍ମା ବା ପୁରୁଷର ମୋର ବୋଲି ଅଭିମାନ ନାଇ । ଏହିପରି ବୁଝାଯାଏ, ପୁରୁଷ ବସ୍ତୁତଃ ନିର୍ଲିପ୍ତ । [ଯେମିତି କି ଶୋଇଥିବା ଲୋକ ନିଦ୍ରାର କର୍ତ୍ତା ନୁହେ । ପ୍ରକୃତି ନିଦ୍ରାର କର୍ମ କରିଯାଏ । ନିର୍ବିକାର ଲୋକର ଆଖି କିଛି ଖରାପ ଦେଖିପାରେ ନାଇ । ପ୍ରକୃତି ବ୍ୟଭିଚାରିଣୀ ନୁହେ । ଅଭିମାନୀ ପୁରୁଷ ଯେବେ ଏହାର ସ୍ୱାମୀ ହୁଏ, ତେବେ ଏହି ପ୍ରକୃତିର ସଙ୍ଗ ହେତୁରୁ ପୁରୁଷର ବିଷୟବିକାର ଉତ୍ପନ୍ନ ହୁଏ—ମହାତ୍ମା ଗାନ୍ଧୀ ] । ୨୯ ।

**ଯଦା ଭୂତପୃଥଗ୍‌ଭାବମେକସ୍ଥମନୁପଶ୍ୟତି ।**
**ତତ ଏବ ଚ ବିସ୍ତାରଂ ବ୍ରହ୍ମ ସଂପଦ୍ୟତେ ତଦା । ୩୦ ।**

**ଅନ୍ୱୟ**—ଯଦା ଭୂତପୃଥଗ୍‌ଭାବଂ ଏକସ୍ଥଂ ଅନୁପଶ୍ୟତି, ତତଃ ଏବ ଚ ବିସ୍ତାରଂ ତଦା ବ୍ରହ୍ମ ସଂପଦ୍ୟତେ । ୩୦ ।

**ଟୀକା**—ଯଦା [ଜନଃ] ଭୂତପୃଥକ୍‌ଭାବଂ (ସୃଷ୍ଟବସ୍ତୂନାଂ ନାନାତ୍ୱଂ) ଏକସ୍ଥଂ (ପ୍ରକୃତିଭୂତେ ଅଧ୍ୟାତ୍ମେ ସ୍ଥିତଂ) ଅନୁପଶ୍ୟତି (ଆତ୍ମଦର୍ଶନାତ୍‌ ପଶ୍ଚାତ୍‌ ପଶ୍ୟତି —ଆତ୍ମନଃ ଭେଦାନ୍ତରଂ ଇତି ବା ପଶ୍ୟତି) ତତଃ (ପ୍ରକୃତେଃ) ଏବ ଚ [ଭୂତାନାଂ] ବିସ୍ତାରଂ (ବିସର୍ଜନଂ ନାନାତ୍ୱେନ ପରିଣାମଂ) [ପଶ୍ୟତି], ତଦା [ସଃ] ବ୍ରହ୍ମ ସଂପଦ୍ୟତେ (ପ୍ରାପ୍ନୋତି, ସ୍ପଷ୍ଟଂ ସାକ୍ଷାତ୍‌ କରୋତି) । ୩୦ ।

**ଅର୍ଥ**—ଯେତେବେଳେ ଲୋକ ଆତ୍ମାକୁ ଦେଖିବା ସଙ୍ଗେ ସଙ୍ଗେ ନାମ-ରୂପମୟ ଭିନ୍ନଭିନ୍ନ ଭୂତ-ପ୍ରକାଶ, ଆତ୍ମାର ଗୋଟିଏ ପ୍ରକାର ବା ପ୍ରକୃତିରେ ହିଁ ରହି ଥିବାର ବୁଝେ, ପୁଣି ସେହି ପ୍ରକୃତିରୁ ହିଁ ଭୂତମାନେ ନାନା ଭାବରେ ପ୍ରକାଶ ପାନ୍ତି ବୋଲି ବୁଝେ, ସେତିକବେଳେ ସେ ବ୍ରହ୍ମ ପାଏ । (ଅର୍ଥାତ୍‌ ବ୍ରହ୍ମକୁ ଠିକ୍‌ ବୁଝେ) ।୩୦।

ବ୍ୟାଖ୍ୟା ସୂଚନା—[ଅନୁଭବରେ ସବୁ ବ୍ରହ୍ମରେ ଦେଖିବାହିଁ ବ୍ରହ୍ମକୁ ପାଇବା । ସେତେବେଳେ ଜୀବ ଶିବର ଭେଦ ରହେ ନାଇ]—ମହାତ୍ମା ଗାନ୍ଧୀ । ୩୦ ।

**ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍‌ ପରମାତ୍ମାୟମବ୍ୟୟଃ ।**
**ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ ।୩୧।**

**ଅନ୍ୱୟ**—ଅୟଂ ପରମାତ୍ମା ଅନାଦିତ୍ୱାତ୍, ନିର୍ଗୁଣତ୍ୱାତ୍ ଅବ୍ୟୟଃ ହେ କୌନ୍ତେୟ ! ଶରୀରସ୍ଥଃ ଅପି ନ କରୋତି, ନ ଲିପ୍ୟତେ । ୩୧ ।

**ଟୀକା**—[ଭୋକ୍ତୃତ୍ୱେଽପି ଜୀବସ୍ୟ ଅନିବାର୍ଯ୍ୟଂ ବୈଷମ୍ୟଂ—ଇତ୍ୟାଶଙ୍କ୍ୟାହ] ଅୟଂ ଅବ୍ୟୟଃ (ନିର୍ବିକାରଃ) ପରମାତ୍ମା ଅନାଦିତ୍ୱାତ୍, ନିର୍ଗୁଣତ୍ୱାତ୍ କୌନ୍ତେୟ. ଶରୀରସ୍ଥଃ (ଦ୍ରଷ୍ଟା, ଭୋକ୍ତା) ଅପି ନ କରୋତି ନ ଲିପ୍ୟତେ । ୩୧ ।

**ଅର୍ଥ**—[କର୍ମଫଳ ଭୋଗିବାରେ ତ ଜୀବର ଭିନ୍ନ ଭିନ୍ନ ହେବାର କଥା ?—ସେଥିକୁ କହୁଛନ୍ତି]—ଏହି ପରମାତ୍ମାଙ୍କର ବିକାର ନାଇ—ସେ ଅବ୍ୟୟ ସେ ଅନାଦି (ଅର୍ଥାତ୍ କାହିଁକି ବାହାର ନାହିନ୍ତି—ବା କାର୍ଯ୍ୟ କାରଣ ବିକାର ବା ପରିଣାମର ଫଳ ନୁହନ୍ତି ।) ସେ ଗୁଣହୀନ ବା ଗୁଣାତୀତ । ତେଣୁ ହେ କୌନ୍ତେୟ ଦେହରେ [ଜୀବ ରୂପରେ ଭୋକ୍ତା ଦ୍ରଷ୍ଟା ହୋଇ] ରହିଥିଲେହେଁ କରନ୍ତି ନାଇ, କି ଲିପ୍ତ ବା ଘାଣ୍ଟି ହୁଅନ୍ତି ନାଇ । ୩୧ ।

**ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ ।**
**ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମା ନୋପଲିପ୍ୟତେ ।୩୨।**

**ଅନ୍ୱୟ**—ଯଥା ସର୍ବଗତଂ ଆକାଶଂ ସୌକ୍ଷ୍ମ୍ୟାତ୍ ନ ଉପଲିପ୍ୟତେ, ଦେହେ ସର୍ବତ୍ରାବସ୍ଥିତଃ ଆତ୍ମା ତଥା ନ ଉପଲିପ୍ୟତେ ।୩୨।

**ଟୀକା**—[କଥଂ ଇତି ଉଦାହରଣଂ ଆହ]—ଯଥା ସର୍ବଗତଂ (ସର୍ବତ୍ରସ୍ଥିତଂ) ଆକାଶଂ ସୌକ୍ଷ୍ମ୍ୟାତ୍ (ଅମୂର୍ତ୍ତତ୍ୱାତ୍—ସଙ୍ଗାଭାବାତ୍) ନ [ବସ୍ତୁଭିଃ] (ଉପଲିପ୍ୟତେ ସଂଶ୍ଲିଷ୍ୟତେ) [ବସ୍ତୂନାଂ ପ୍ରାଣିନାଂ ବା] ଦେହେ ସର୍ବତ୍ରାବସ୍ଥିତଃ ଆତ୍ମା ତଥା ନ ଉପଲିପ୍ୟତେ । ୩୨ ।

**ଅର୍ଥ**—[କିପରି ? ଉଦାହରଣରେ ବୁଝାଉଛନ୍ତି]—ଯେପରି ସର୍ବତ୍ର ଥାଇ ବି ଆକାଶ ସୂକ୍ଷ୍ମ ବା ଅମୂର୍ତ୍ତ ହେବାରୁ କାହିଁରେ ଲାଗୁନାଇ, [ତଥାପି ଲୋକେ ଘର ଭିତର ଆକାଶ, ବଣର ଆକାଶ, ଆମ ଗାଁ ଆକାଶ—ଇତ୍ୟାଦି ବୋଲି ଭୁଲ୍ କରିଥାନ୍ତି], ସେହିପରି ଦେହ ମାନଙ୍କରେ ସର୍ବତ୍ର ଥାଇ ବି ଆତ୍ମା କାହିଁରେ ଲାଗି ରହେ ନାଇ । [ତଥାପି ଅଜ୍ଞାନ ହେତୁରୁ ବୁଦ୍ଧି, ଅହଂକାର, ମନ, ଦେହରେ ଲାଗି ଅଲଗା ଅଲଗା ପରି ଜଣା ପଡ଼ିଥାଏ] । ୩୨ ।

**ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଂ ଲୋକମିମଂ ରବିଃ ।**
**କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ ପ୍ରକାଶୟତି ଭାରତ ।୩୩।**

**ଅନ୍ୱୟ**—ଭାରତ ! ଯଥା ଏକଃ ରବିଃ କୃତ୍ସ୍ନଂ ଇମଂ ଲୋକଂ ପ୍ରକାଶୟତି, କ୍ଷେତ୍ରୀ ତଥା କୃତ୍ସ୍ନଂ କ୍ଷେତ୍ରଂ ପ୍ରକାଶୟତି । ୩୩ ।

**ଟୀକା**—[ଆତ୍ମନଃ ପ୍ରକୃତିପ୍ରକାଶନଂ ଚ ଉଦାହରତି] ହେ ଭାରତ, ଯଥା ଏକଃ ରବିଃ କୃତ୍ସ୍ନଂ (ସମଗ୍ରଂ) ଇମଂ (ଦୃଶ୍ୟମାନଂ) ଲୋକଂ (ଭୁବନଂ) [ଆଲୋକେନ] ପ୍ରକାଶୟତି, କ୍ଷେତ୍ରୀ (ଦେହୀ, କ୍ଷେତ୍ରଜ୍ଞଃ, ଆତ୍ମା) ତଥା କୃତ୍ସ୍ନଂ ସମଗ୍ରଂ କ୍ଷେତ୍ରଂ (ନିସର୍ଗଂ) [ସ୍ୱୀୟଚିଦାଭାସେନ] ପ୍ରକାଶୟତି । ୩୩ ।

**ଅର୍ଥ**—[ପ୍ରକୃତିକୁ ପ୍ରକାଶ କରିବା ଉଦାହରଣରେ କହୁଛନ୍ତି]—ହେ ଭାରତ, ଯେପରି ଏକା ସୂର୍ଯ୍ୟ ଏହି ସମଗ୍ର ସୌର ଲୋକକୁ ଆଲୋକରେ ପ୍ରକାଶ କରେ (ବା ଦେଖାଇ ଦିଏ), ସେହିପରି କ୍ଷେତ୍ରୀ ବା ଆତ୍ମା (ଦେହୀ) ସମଗ୍ର କ୍ଷେତ୍ର ବା ସାରା ଭୂତସୃଷ୍ଟିକୁ ନିଜର ଚୈତନ୍ୟବଳରେ ପ୍ରକାଶ କରେ । ୩୩ ।

ବ୍ୟାଖ୍ୟା ସୂଚନା—ଏଠାରେ ମଧ ଦେହୀ ଆତ୍ମାର ଚୈତନ୍ୟରେ ବସ୍ତୁର ଯେପରି ପ୍ରକାଶ ହୁଏ, ତାହାହିଁ ବ୍ୟକ୍ତ ବିଶ୍ୱ—ଏଇ କଥାକୁ ବି ଲକ୍ଷ୍ୟ ଅଛି—ପୂର୍ବେ ୧୩.୨୭ର ଟୀକା ଦେଖ ।

**କ୍ଷେତ୍ରକ୍ଷେତ୍ରଜ୍ଞୟୋରେବମନ୍ତରଂ ଜ୍ଞାନଚକ୍ଷୁଷା ।**
**ଭୂତପ୍ରକୃତିମୋକ୍ଷଂ ଚ ଯେ ବିଦୁର୍ଯାନ୍ତି ତେ ପରମ୍ ।୩୪।**

**ଅନ୍ୱୟ**—ଏବଂ କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଅନ୍ତରଂ, ଭୂତପ୍ରକୃତିମୋକ୍ଷଂ ଚ ଯେ ଜ୍ଞାନଚକ୍ଷୁଷା ବିଦୁଃ ତେ ପରଂ ଯାନ୍ତି । ୩୪ ।

**ଟୀକା**—ଏବଂ କ୍ଷେତ୍ରକ୍ଷେତ୍ରଜ୍ଞୟୋଃ [ଏବ] ଅନ୍ତରଂ (ପ୍ରଭେଦଂ) ଭୂତ-ପ୍ରକୃତିମୋକ୍ଷଂ (ଭୂତାନାଂ ପ୍ରକୃତେଃ, ଅର୍ଥାତ୍ ଯସ୍ୟାଃ ପ୍ରକୃତେଃ ବିକୃତିରେବ ଭୂତାନି ତସ୍ୟା ପ୍ରକୃତେଃ ଆତ୍ମନା ଅଲିପ୍ତତ୍ୱଂ, ଗୁଣସଙ୍ଗାଭାବଃ ତୁ ମୋକ୍ଷଃ ଇତି-ଯଦ୍ୱା ଭୂତପ୍ରକୃତେଃ ଅବ୍ୟକ୍ତାତ୍ ବ୍ୟକ୍ତରୂପଂ ମୋକ୍ଷଂ ବିସ୍ତାରଂ ) ଚ ଯେ ଜ୍ଞାନଚକ୍ଷୁଷା [ନ ତୁ ଇନ୍ଦ୍ରିୟାଦିଭିଃ—ତସ୍ୟ ଇନ୍ଦ୍ରିୟୋପଲବ୍ଧେଃ ଅସମ୍ଭବତ୍ୱାତ୍] ବିଦୁଃ, ତେ ପରଂ [ବ୍ରହ୍ମ] ଯାନ୍ତି (ପ୍ରାପ୍ନୁବନ୍ତି) । ୩୪ ।

**ଅର୍ଥ**—ଏଇପରି କ୍ଷେତ୍ରକ୍ଷେତ୍ରଜ୍ଞ ଦୁଇଟିର ଭେଦ ଓ ଭୂତମୂଳ ପ୍ରକୃତି ସହିତ ଆତ୍ମାର ଅଲିପ୍ତତା ବା ମୋକ୍ଷ, କିମ୍ବା ଅବ୍ୟକ୍ତ ଭୂତପ୍ରକୃତିରୁ ବ୍ୟକ୍ତ ବିଶ୍ୱ ଫିଟିପଡ଼ିବାର ତତ୍ତ୍ୱ]—ଯେ ଜ୍ଞାନଦୃଷ୍ଟିରେ ଜାଣନ୍ତି, ସେଇ ପରଂବ୍ରହ୍ମ ପାଆନ୍ତି ।୩୪।

ବ୍ୟାଖ୍ୟା ସୂଚନା—ଜ୍ଞାନଦୃଷ୍ଟିରେ = ଇନ୍ଦ୍ରିୟରେ ନୁହେ; କାହିଁକି ନା, ଏ ଅନୁଭବ ଇନ୍ଦ୍ରିୟରେ ହୋଇପାରେ ନା । ୩୪ ।

———

# ଚତୁର୍ଦ୍ଦଶ ଅଧ୍ୟାୟ

## ଗୁଣତ୍ରୟ ବିଭାଗ ଯୋଗ

### ଅଧ୍ୟାୟ ପ୍ରବେଶ—

ପ୍ରକୃତିର ତିନି ଗୁଣ ଏବେ ସେଇ ବୁଝାଇଦେବେ । ମାତ୍ର ଭଲ କରି ପୁଣି ମନେ ରଖିବା ଉଚିତ—ପ୍ରକୃତି ଯେପରି କି ପରମେଶ୍ୱରଙ୍କ ସୃଷ୍ଟି ପ୍ରକାଶ ବା 'ବିସର୍ଗ'ର ଶକ୍ତି ଅଥବା ସଂକଳ୍ପ ମାତ୍ର । ଏହା ପ୍ରଥମେ 'ପରା ପ୍ରକୃତି'—୭. ୫; ସେହି ପରା ପ୍ରକୃତି ସଜୀବରେ ଜୀବ ହୋଇ ଯେପରି ବ୍ୟକ୍ତି 'କ୍ଷେତ୍ର'ର ମୂଳରୂପେ ଥାଇ ବିଷୟ ଭୋଗ କରେ, ନିର୍ଜୀବରେ ସେହିପରି ବ୍ୟକ୍ତି ବସ୍ତୁର 'ଅଧ୍ୟାତ୍ମ' 'ସ୍ୱଭାବ' ରୂପେ ବିଶ୍ୱମୟ ବିଶ୍ୱପ୍ରକାଶର ଆଧାର । ଏଥିରୁ 'ଅପରା ପ୍ରକୃତି'—୭. ୪—ବା 'ମହତ୍ ବ୍ରହ୍ମ' ଫୁଟି ପଡ଼େ । 'ଅଧ୍ୟାତ୍ମ' ଓ 'ମହତ୍' ଦୁହେଁ ସ୍ଥୂଳ ପ୍ରକାଶ ଆଡ଼କୁ କ୍ରମବିକାଶରେ ଫୁଟିଲେହେଁ ଅତି ସୂକ୍ଷ୍ମ ହେବାରୁ ସେ ଦୁଇଟିଯାକକୁ 'ଅବ୍ୟକ୍ତ' କହନ୍ତି—୮.୧୮, ୨୦ । ଏଠାରେ ଏହି ମହତ୍ ବ୍ରହ୍ମକୁ ପରମେଶ୍ୱରଙ୍କର ଯୋନି ବା ଗର୍ଭସ୍ଥାନ, ଦେହୀ ବା ଅଧ୍ୟାତ୍ମ ସ୍ୱଭାବକୁ ବୀଜ ବୋଲି ରୂପକରେ କୁହାଯାଇଛି । ସେହି ମହତ୍ ବ୍ରହ୍ମରେ ଥାଏ ତିନି ଗୁଣର 'ଅବ୍ୟକ୍ତ' ବା ଅଜ୍ଞେୟ ସ୍ୱରୂପ । କ୍ରମେ ତାହା ଫୁଟିପଡ଼େ ଓ ସେହି ତିନି ଗୁଣର ଭିନ୍ନ ଭିନ୍ନ ପ୍ରକାର ଅସମାନ ମିଶ୍ରଣରେ ନାମରୂପମୟ ବିକାର ବା ମୂଳର ଅନ୍ୟରୂପ (ପ୍ରକୃତିର ବିକୃତି) ପ୍ରକାଶ ପାଏ ।

ଏହାଇ ସୃଷ୍ଟି ବା ବିସର୍ଗ । ପରମେଶ୍ୱରଙ୍କର ସଂକଳ୍ପରୂପରେ ଏ ଗୁଣ କିପରି ଥାଏ, ତାହା କହି ହେବ ନାଇ । ମାତ୍ର ପ୍ରଥମେ ଏଥିରୁ ସତ୍ତ୍ୱ, ତା ପରେ ରଜ, ତା ପରେ ତମ—ଏହିପରି କ୍ରମେ ସ୍ଥୂଳରୁ ସ୍ଥୂଳତର ଆଡ଼କୁ ସୃଷ୍ଟିର ବିସ୍ତାର ହୁଏ । ଗୁଣାତୀତ ଅବସ୍ଥା, ଏହି ତିନି ଗୁଣର ମୂଳ ସ୍ୱରୂପ । ଏହା କୌଣସି ଗୁଣ ନୁହେଁ, ଅଥଚ ସବୁ ଗୁଣର ସ୍ଥିର ସାମ୍ୟ ଅଜ୍ଞେୟ ଅବସ୍ଥାର ମୂଳ । ଏହା ସତ୍ତ୍ୱର ନିକଟ, କାହିଁକି ନା, ସତ୍ତ୍ୱ ଏଥିରୁ ପ୍ରଥମ ପରିଣାମ । ସତ୍ତ୍ୱଗୁଣରେ ଚଢ଼ି ଉଦ୍ୟମ କଲେ, ସେ ଅବସ୍ଥାକୁ ଉଠି ହୁଏ । ଏହା ମନେ ରଖିଲେ, ଏ ଅଧ୍ୟାୟର ସୃଷ୍ଟି, ଗୁଣବିସ୍ତାର ଓ ଗୁଣାତୀତ ସବୁ ବୁଝି ହେବ । ପ୍ରକୃତି ବୋଇଲେ ପୂର୍ବ ଅଧ୍ୟାୟ ପରି ସାଧାରଣତଃ 'ଅପରା ପ୍ରକୃତି' ବୁଝିବାକୁ ହେବ ।

ଏ ଅଧ୍ୟାୟର ସଂକ୍ଷେପରେ ସାର—ଏ ଅତି ଉତ୍ତମ ଜ୍ଞାନ, ଏଥିରେ ମୁକ୍ତି ହୁଏ । ମହତ୍ତ୍ୱ ରୂପ ଯୋନିରେ ଈଶ୍ୱର ବୀଜ ଦେଲେ ସୃଷ୍ଟି ହୁଏ । ଏହି ମହତ୍ତ୍ୱ ବା ପ୍ରକୃତିରୁ ତିନି ଗୁଣ ଫିଟନ୍ତି । ସତ୍ତ୍ୱ, ଜ୍ଞାନ ଓ ସୁଖ, ରଜ ଆସକ୍ତି ଓ କର୍ମ ପୁଣି ତମ ଅଜ୍ଞାନ ଓ

ମୋହରେ ଚହ୍ନାଯାଏ । ମାତ୍ର ଗୁଣ କେବେ ଗୋଟିଏ ଗୋଟିଏ ଅଲଗା ଦେଖାଯାନ୍ତି ନାହିଁ; ସମସ୍ତେ ସର୍ବଦା ମିଶିଥାନ୍ତି; ମାତ୍ର ଗୋଟିକର ପ୍ରାଧାନ୍ୟ ଥାଏ, ସେହି ପ୍ରଧାନ ଗୁଣରେ ଜନ୍ତୁ ବା ବସ୍ତୁ ଚହ୍ନାଯାଏ । ସେହି ଚହ୍ନିବାର ଲକ୍ଷଣ କଣ ? କେଉଁ ଗୁଣ-ପ୍ରାଧାନ୍ୟରେ ମରିଲେ କଣ ହୁଏ ? କେଉଁ ଗୁଣରେ ଫଳ କଣ ? କେଉଁ ଗୁଣରୁ କଣ ହୁଏ ?—ଏସବୁ କହି ଭଗବାନ୍ କହୁଛନ୍ତି, ସତ୍ତ୍ୱରୁ ଈଶ୍ୱର ଭାବକୁ ଉଠିହୁଏ—ଈଶ୍ୱର ଗୁଣାତୀତ । 'ଗୁଣ ତୀତ'ଙ୍କ ଲକ୍ଷଣରେ ଚହ୍ନିବାକୁ ଅର୍ଜୁନ ଲୋଡ଼ିବାରୁ, ଭଗବାନ ସେ ଲକ୍ଷଣସବୁ କହୁଛନ୍ତି (ଦ୍ୱିତୀୟ ଅଧ୍ୟାୟର ସ୍ଥିତପ୍ରଜ୍ଞ, ଦ୍ୱାଦଶର ଭକ୍ତ ଯେ ଲକ୍ଷଣ ଧରେ, ବସ୍ତୁତଃ ଏଠି ତାହାହିଁ ପୁଣି ବର୍ଣ୍ଣନ କରାଯାଇଛି) । ତହୁଁ ଦୃଢ଼ଭକ୍ତିରେ ଯୋଗ କଲେ ଲୋକ ଗୁଣାତୀତ ହୋଇ ସ୍ୱୟଂ ବ୍ରହ୍ମ ହୁଏ—ସେ ବ୍ରହ୍ମର ସ୍ଥାନ 'ମୁଁହିଁ' ବୋଲି ଶେଷ କରିଛନ୍ତି ।

ଶ୍ରୀ ଭଗବାନୁବାଚ

**ପରଂ ଭୂୟଃ ପ୍ରବକ୍ଷ୍ୟାମି ଜ୍ଞାନାନାଂ ଜ୍ଞାନମୁତ୍ତମମ୍ ।**
**ଯଜ୍ଜ୍ଞାତ୍ୱା ମୁନୟଃ ସର୍ବେ ପରାଂ ସିଦ୍ଧିମିତୋ ଗତାଃ ।୧।**

**ଅନ୍ୱୟ**—ସ୍ପଷ୍ଟ । ୧ ।

**ଟୀକା**—ଶ୍ରୀ ଭଗବାନ୍ ଉବାଚ—ଭୂୟଃ (ପୁନଃ) ଜ୍ଞାନାନାଂ ଉତ୍ତମଂ ପରଂ (ଶ୍ରେଷ୍ଠଂ) ଜ୍ଞାନଂ ପ୍ରବକ୍ଷ୍ୟାମି, ଯତ୍ ଜ୍ଞାତ୍ୱା ସର୍ବେ ମୁନୟଃ ଇତଃ (ଅସ୍ମାତ୍ ମନୁଷ୍ୟଲୋକାତ୍) ପରାଂ ସିଦ୍ଧିଂ ଗତାଃ (ପ୍ରାପ୍ତାଃ) । ୧ ।

**ଅର୍ଥ**—ଶ୍ରୀ ଭଗବାନ୍ କହିଲେ—ପୁଣି ସବୁ ଜ୍ଞାନ ଯାକରେ ଉତ୍ତମ ପରମଜ୍ଞାନ କଥା କହିବି । ଏହା ଜାଣି (ସ୍ଥିରଧୀ) ମୁନିମାନେ ସବୁ ଏହି ମନୁଷ୍ୟ ଲୋକରୁ ପରାଗତି ପାଇଛନ୍ତି । ୧ ।

ବ୍ୟାଖ୍ୟା ସୂଚନା—ମନୁଷ୍ୟଲୋକ ହିଁ ମୁକ୍ତିସାଧନାର ସ୍ଥାନ—ଏହି ଅଭିପ୍ରାୟ ଏଠାରେ ଅଛି । ୯. ୩୩ ଦେଖ । ୧ ।

**ଇଦଂ ଜ୍ଞାନମୁପାଶ୍ରିତ୍ୟ ମମ ସାଧର୍ମ୍ୟମାଗତାଃ ।**
**ସର୍ଗେଽପି ନୋପଜାୟନ୍ତେ ପ୍ରଳୟେ ନ ବ୍ୟଥନ୍ତି ଚ ।୨।**

**ଅନ୍ୱୟ**—ସ୍ପଷ୍ଟ । ୨ ।

**ଟୀକା**—ଇଦଂ ଜ୍ଞାନଂ ଉପାଶ୍ରିତ୍ୟ ମମ ସାଧର୍ମ୍ୟଂ ( ସମତ୍ୱଂ ) ଆଗତାଃ (ପ୍ରାପ୍ତାଃ) [ଜନାଃ] ପ୍ରଳୟେ (ସର୍ଗନାଶେ) ନ ବ୍ୟଥନ୍ତି, ସର୍ଗେ ଅପି ଚ (ପୁନଃ) ନ ଉପଜାୟନ୍ତେ (ଜନ୍ମ ଲଭନ୍ତେ) । ୨ ।

**ଅର୍ଥ**—ଏହି ଜ୍ଞାନ ଧରି ମୋର ସଙ୍ଗେ ଏକଭାବ ପାଇଲେ (ଅର୍ଥାତ୍, ଗୁଣାତୀତ ହେଲେ) ଲୋକଙ୍କୁ ପ୍ରଳୟ ବାଧେ ନାହିଁ, କି ସୃଷ୍ଟିରେ ବି ସେମାନେ ଆଉ ଜନ୍ମ ପାଆନ୍ତି ନାହିଁ । ୨ ।

**ମମ ଯୋନିର୍ମହଦ୍‌ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହମ୍ ।**
**ସମ୍ଭବଃ ସର୍ବଭୂତାନାଂ ତତୋ ଭବତି ଭାରତ ।୩।**

**ଅନ୍ୱୟ**—ଭାରତ ! ମହତ୍ ବ୍ରହ୍ମ ମମ ଯୋନିଃ, ତସ୍ମିନ୍ ଅହଂ ଗର୍ଭଂ ଦଧାମି, ତତଃ ସର୍ବଭୂତାନାଂ ସମ୍ଭବଃ ଭବତି । ୩ ।

**ଟୀକା**—[ସର୍ଗପ୍ରକାଶପଦ୍ଧତିଂ ବର୍ଣ୍ଣୟତି]—ହେ ଭାରତ, ମହଦ୍‌ବ୍ରହ୍ମ (ମମ ଅପରା ପ୍ରକୃତିଃ—ନ ତୁ ପରଂବ୍ରହ୍ମ—ସର୍ବସର୍ଗକର୍ମଣଃ ମୂଳତ୍ୱାତ୍, ସର୍ବତୋ ମହତ୍ତ୍ୱାତ୍, ବ୍ୟାପିତ୍ୱାଚ୍ଚ ପ୍ରକୃତିଃ ମହତ୍ ବ୍ରହ୍ମ ଇତି ବେଦେଷ୍ୱପି କଥ୍ୟତେ), ମମ ଯୋନିଃ (ଉତ୍ପାଦନସ୍ଥାନଂ); ତସ୍ମିନ୍ [ ମହତି ଯୋନୌ ] ଅହଂ ଗର୍ଭଂ (ସର୍ଗବୀଜଂ, ଭ୍ରୂଣଂ) ଦଧାମି ( ପ୍ରକ୍ଷିପାମି, ବପାମି ); ତତଃ ( ଗର୍ଭାତ୍—ହିରଣ୍ୟଗର୍ଭାତ୍ ଇତ୍ୟୁକ୍ତତ୍ୱାତ୍ ) ସର୍ବଭୂତାନାଂ ସମ୍ଭବଃ ଭବତି । ୩ ।

**ଅର୍ଥ**—[ ଜୀବର ଗର୍ଭଧାରଣ ରୂପକରେ ସୃଷ୍ଟି ପ୍ରକାର ପ୍ରଣାଳୀ କହୁଚନ୍ତି ] —ହେ ଭାରତ, ବ୍ରହ୍ମ ହେଉଚି ମୋର ସର୍ଗବିଧାନ କ୍ରିୟାରେ ଯୋନି ପରି । ସେଇଥିରେ ମୁଁ ସୃଷ୍ଟିର ବୀଜ ପକାଇ ଦିଏ । ସେଥିରୁ ସର୍ବଭୂତର ଉତ୍ପତ୍ତି ହୁଏ । ୩ ।

ବ୍ୟାଖ୍ୟା ସୂଚନା—ମହଦ୍‌ବ୍ରହ୍ମ = ଅପରା ପ୍ରକୃତି ବା ଯୋଗମାୟା—ପରଂବ୍ରହ୍ମ ନୁହେ—ସବୁ ପ୍ରତ୍ୟକ୍ଷମାନ ସର୍ଗକର୍ମ ବା ବ୍ୟକ୍ତିର ମୂଳ, ସବୁଠାରୁ ବଡ଼ ଓ ସର୍ବବ୍ୟାପୀ ଏହି ପ୍ରକୃତିକୁ ମହଦ୍‌ବ୍ରହ୍ମ ବା ବ୍ରହ୍ମର ମହତ୍‌ରୂପ, ମହତତ୍ତ୍ୱ, ଅଥବା ମହାନ୍ କୁହାଯାଏ । ବୀଜ ପକାଇ ଦିଏ—ଜଡ଼ ପ୍ରକୃତିକୁ ପୁରୁଷର ପ୍ରକାଶାତ୍ମକ ଭାବ ବା ସଂକଳ୍ପରେ ଭାବାନ୍ୱିତ କରେ । ଏହି ବୀଜରୁ ପ୍ରକୃତିରେ ଯେଉଁ ଗର୍ଭ ବା ଭ୍ରୂଣ ହୁଏ, ତାକୁ ବେଦଶାସ୍ତ୍ରାଦିରେ ହିରଣ୍ୟଗର୍ଭ ବା ସୃଷ୍ଟିର ଉପାସ୍ୟ ପୁରୁଷ କହନ୍ତି । ହିରଣ୍ୟଗର୍ଭ= ସବୁଠାରୁ ଶକ୍ତିଶାଳୀ, ଶ୍ରେଷ୍ଠ ଗୂଢ଼ତମ ଗର୍ଭ । ୩ ।

**ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସଂଭବନ୍ତି ଯାଃ ।**
**ତାସାଂ ବ୍ରହ୍ମ ମହଦ୍‌ଯୋନିରହଂ ବୀଜପ୍ରଦଃ ପିତା ।୪।**

**ଅନ୍ୱୟ**—କୌନ୍ତେୟ ! ସର୍ବଯୋନିଷୁ ଯାଃ ମୂର୍ତ୍ତୟଃ ସମ୍ଭବନ୍ତି, ତାସାଂ ମହଦ୍‌ବ୍ରହ୍ମ ଯୋନିଃ, ଅହଂ ବୀଜପ୍ରଦଃ ପିତା । ୪ ।

**ଟୀକା**—[ନ ତୁ କେବଲଂ ସର୍ଗାଦୌ କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଇତ୍ଥଂ ସମ୍ବନ୍ଧଃ—ଅପି ତୁ ନାମରୂପମୟାନ୍ ସର୍ବାଣି ଯାନ୍ ଉତ୍ପଦ୍ୟନ୍ତେ ତାନ୍ ସର୍ବାଣ୍ୟେବ ନିତ୍ୟସ୍ୟ ଦେହେ ଜୀବଭୂତସ୍ୟ ଈଶ୍ୱରସ୍ୟ ପ୍ରକୃତିସଙ୍ଗାଦିତ୍ୟାହ]—ହେ କୌନ୍ତେୟ, [ ଦୃଶ୍ୟମାନେଷୁ ] ସର୍ବଯୋନିଷୁ ( ସର୍ବଜାତିଷୁ ) [ ଜଗତି ସ୍ଥାବରଜଙ୍ଗମାଦୟଃ ] ଯାଃ ମୂର୍ତ୍ତୟଃ (ନାମରୂପମୟାନ୍ ବସ୍ତୂନି) ସମ୍ଭବନ୍ତି (ଜାୟନ୍ତେ), ତ.ସାଂ [ ସର୍ବାସାଂ ] ମହତ୍ ବ୍ରହ୍ମ ( ମୂଳତଃ ) ଯୋନିଃ; ଅହଂ ( ଚ ) ବୀଜପ୍ରଦଃ ପିତା (ବପ୍ତା) । ୪ ।

**ଅର୍ଥ**—[ ଖାଲି ସୃଷ୍ଟି ଆଦ୍ୟରେ ଯେ ମୁଁ ବୀଜ ପକାଇ ଦିଏ, ସେତିକି ନୁହେଁ, ନାମରୂପ ଯେଉଁ ଯାହା ସୃଷ୍ଟିରେ ଉତ୍ପନ୍ନ ହୁଏ, ସେ ସବୁ, ପ୍ରାଣି ଦେହରେ ଜୀବ ହୋଇ ଜଣାପଡୁଥିବା ଈଶ୍ୱର ଓ ପ୍ରକୃତି, ଏ ଦୁହିଙ୍କ ସଂଯୋଗରୁ ହେଉଛି ବୋଲି କହୁଛନ୍ତି ]—ହେ କୌନ୍ତେୟ, ଏ ଜଗତରେ ଚଳନ୍ତା ଅଚଳନ୍ତା ସବୁ ଯୋନି ବା ଜାତିରେ ଯେ ମୂର୍ତ୍ତି ବା ପ୍ରକାଶିତ ନାମରୂପ ଥିବା ବସ୍ତୁ ସବୁ ହେଉଛନ୍ତି, ମହତ୍ ବ୍ରହ୍ମହିଁ ସେ ସବୁର ଯୋନି ଓ ମୁଁ ବୀଜ ଦେବା ବାପ । ୪ ।

**ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ ।**
**ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟମ୍ । ୫ ।**

**ଅନ୍ୱୟ**—ମହାବାହୋ ! ସତ୍ତ୍ୱଂ, ରଜଃ, ତମଃ ଇତି ପ୍ରକୃତିସମ୍ଭବାଃ ଗୁଣାଃ ଅବ୍ୟୟଂ ଦେହିନଂ ଦେହେ ନିବଧ୍ନନ୍ତି । ୫ ।

**ଟୀକା**—[ ଏବଂ ପ୍ରକୃତିସଂଯୋଗାତ୍ ]—ହେ ମହାବାହୋ, ସତ୍ତ୍ୱଂ, ରଜଃ, ତମଃ ଇତି ( ତ୍ରୟଃ ) ପ୍ରକୃତିସମ୍ଭବାଃ ଗୁଣାଃ ଅବ୍ୟୟଂ ( ବିକାରହୀନଂ ) ଦେହିନଂ [ ଜୀବଂ, ଆତ୍ମାନଂ ] ଦେହେ ନିବଧ୍ନନ୍ତି ( ସୁଖଦୁଃଖାଦିଭିଃ ସଂଯୋଜୟନ୍ତି ) । ୫ ।

**ଅର୍ଥ**—ହେ ମହାବାହୁ, [ ଏହିପରି ପ୍ରକୃତି ସଂଯୋଗରୁ ] ସେହି ପ୍ରକୃତିରୁ ହେଉଥିବା ସତ୍ତ୍ୱ, ରଜ, ତମ ବୋଲି ତିନୋଟି ଗୁଣ, ନିର୍ବିକାର ଦେହୀ [ ଜୀବ ବା ଆତ୍ମା ] କୁ ଦେହରେ ବାନ୍ଧନ୍ତି, ( ଅର୍ଥାତ୍ ସୁଖଦୁଃଖାଦି ଭୋଗାନ୍ତି ) । ୫ ।

ବ୍ୟାଖ୍ୟା ସୂଚନା—ଏହିଠାରୁ କେବଳ ଦେହ ଓ ଦେହୀ, କ୍ଷେତ୍ର ଓ କ୍ଷେତ୍ରଜ୍ଞ ଧର୍ମ ଗୁଣ କଥା କହୁଁ ଉଛନ୍ତି; କାରଣ, କେବଳ ମାନବର କର୍ମଶୁଦ୍ଧି ଓ ମୁକ୍ତି ପାଇଁ ଗୀତାର ଉପଦେଶ—ଏହା ମନେ ରଖିବାକୁ ହେବ । ୫ ।

**ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକମନାମୟମ୍ ।**
**ସୁଖସଙ୍ଗେନ ବଧ୍ନାତି ଜ୍ଞାନସଙ୍ଗେନ ଚାନଘ । ୬ ।**

**ଅନ୍ୱୟ**—ଅନଘ ! ତତ୍ର ପ୍ରକାଶକଂ, ଅନାମୟଂ, ସତ୍ତ୍ୱଂ ନିର୍ମଳତ୍ୱାତ୍ ସୁଖସଂଗେନ ଜ୍ଞାନସଂଗେନ ଚ ବଧ୍ନାତି । ୬ ।

**ଟୀକା**—[କିଂ ତେଷାଂ ଗୁଣାନାଂ ଲକ୍ଷଣଂ, କଥଂ ତେ ନିବଧ୍ନନ୍ତୀତି ଚେତ୍ ଭିଃ] —ହେ ଅନଘ, ତତ୍ର (ତେଷାଂ ଗୁଣାନାଂ ମଧ୍ୟେ) ପ୍ରକାଶକଂ (ଜ୍ଞାନମୟଂ) ଅନାମୟଂ (ସୁଖରୂପଂ) ସତ୍ତ୍ୱଂ [ ନାମ ଗୁଣଃ ] ନିର୍ମଳତ୍ୱାତ୍ [ ଦେହିନଂ ] ସୁଖସଙ୍ଗେନ, ଜ୍ଞାନସଙ୍ଗେନ ଚ ( ଅହଂ ସୁଖୀ, ଅହଂ ଜ୍ଞାନୀ—ଇତ୍ୟାଦି ଆସକ୍ତ୍ୟା ) ବଧ୍ନାତି । ୬ ।

**ଅର୍ଥ**—[ସେହି ଗୁଣମାନଙ୍କର ଲକ୍ଷଣ କଣ ଓ ସେମାନେ କିପରି ବାନ୍ଧନ୍ତି—ଏହା ତିନି ଶ୍ଳୋକରେ କହୁଛନ୍ତି ]—ହେ ଅନଘ ( ବ୍ୟସନଶୂନ୍ୟ ) ସେଥିମଧ୍ୟରେ ଉଜ୍ଜ୍ୱଳ ବା ଜ୍ଞାନମୟ, ବ୍ୟାଧିଶୂନ୍ୟ ବା ସୁଖରୂପ ସତ୍ତ୍ୱଗୁଣ ନିର୍ମଳ ହୋଇଥିବାରୁ ଦେହୀକୁ ସୁଖସମ୍ପର୍କରେ, ଜ୍ଞାନସମ୍ପର୍କରେ [ ମୁଁ ସୁଖୀ ମୁଁ ଜ୍ଞାନୀ ବୋଲି ] ବାନ୍ଧି ରଖେ । ୬ ।

ବ୍ୟାଖ୍ୟା ସୂଚନା—ନିର୍ମଳ ହୋଇଥିବାରୁ=ରଜ ପରି ରାଗ ବା ଆସକ୍ତି ଓ ତମ ପରି ମୋହ ବା ଜଡ଼ତାରେ ଗୋଳିଆ ନୁହେ । ସତ୍ତ୍ୱ ଧଳା, ରଜ ଲାଲ ଓ ତମ କଳା ବୋଲି ବି କଳ୍ପନା କରାଯାଏ । ଏଠାରେ, ଜ୍ଞାନ=ଜଗତର କାର୍ଯ୍ୟ ବ୍ୟବହାରରେ ଯଥାଯଥ ସାଧୁଜ୍ଞାନ; ଏହାକୁ ସାଧାରଣ କଥାରେ 'କାଣ୍ଡଜ୍ଞାନ' କହନ୍ତି । ଏହି ଜ୍ଞାନ ଥିଲେ ଲୋକ ଅଯଥା ଲାଳସାରେ ଛଟପଟ ହୁଏ ନାଇ ଓ ସଂସାରରେ ସାଧାରଣ ସୁଖଶାନ୍ତି ପାଏ । ଏହି ସତ୍ତ୍ୱଗୁଣ ଖୁବ୍ ଦୃଢ଼ ହୋଇ ବଢ଼ିଲେ ଲୋକ ଏହି ସୁଖ ଓ ଜ୍ଞାନରୁ ସହଜରେ ଆସକ୍ତି ଛାଡ଼ି ନିତ୍ୟସୁଖ ଓ ଆତ୍ମଜ୍ଞାନକୁ ଉଠିପାରେ । ପରେ ୧୪.୧୮ ଦେଖ । ୬ ।

**ରଜୋ ରାଗାତ୍ମକଂ ବିଦ୍ଧି ତୃଷ୍ଣାସଙ୍ଗସମୁଦ୍‌ଭବମ୍ ।**
**ତନ୍ନିବଧ୍ନାତି କୌନ୍ତେୟ କର୍ମସଙ୍ଗେନ ଦେହିନମ୍ ।୭।**

**ଅନ୍ୱୟ**—କୌନ୍ତେୟ ! ତୃଷ୍ଣାସଂଗସମୁଦ୍ଭବଂ ରଜଃ ରାଗାତ୍ମକଂ ବିଦ୍ଧି, ତତ୍ କର୍ମସଂଗେନ ଦେହିନଂ ନିବଧ୍ନାତି । ୭ ।

**ଟୀକା**—ହେ କୌନ୍ତେୟ, ତୃଷ୍ଣାସଂଗସମୁଦ୍ଭବଂ (ତୃଷ୍ଣା, ସ୍ପୃହା; ସଂଗ, ଆସକ୍ତିଃ, ତୟୋଃ ଉତ୍ପନ୍ନଂ—ଯଦ୍ ବା ତୟୋଃ ସମୁଦ୍ଭବଂ ଉତ୍ପାଦକଂ) ରଜଃ (ତନ୍ନାମା ଗୁଣଃ ) ରାଗାତ୍ମକଂ (ଗୈରିକାଦିବତ୍ ଯତ୍ ରଞ୍ଜକରାଗେଣ, ବର୍ଣ୍ଣେନ, ସ୍ୱଚ୍ଛଂ ସ୍ଫଟିକାଦିକଂ ରଞ୍ଜୟତି, ତଦ୍‌ବତ୍—ନ ତୁ ସତ୍ତ୍ୱବତ୍ ନିର୍ମଳମିତି ଭାବଃ) ବିଦ୍ଧି; ତତ୍ [ଇହ ପରତ୍ର ବା ଫଳବତ୍ ] କର୍ମସଙ୍ଗେନ ( କର୍ମପ୍ରୀତ୍ୟା ) [ଦେହିନଂ] ନିବଧ୍ନାତି । ୭ ।

**ଅର୍ଥ**—ପାଇବାର ଇଚ୍ଛା, ପାଇଥିବାରେ ପ୍ରୀତି (ଅର୍ଥାତ୍, ତୃଷ୍ଣା ଆଉ ସଙ୍ଗ) ଏଥିରୁ ହୁଏ ଯେ ରଜୋଗୁଣ; ବା ଏସବୁ ବାହାରନ୍ତି ଯେଉଁ ରଜୋଗୁଣରୁ ସେ [ରଙ୍ଗିନ୍ କଳସ, ଦର୍ପଣାଦିକୁ, ବା ଗେରୁ ପ୍ରଭୃତି ସଫା ଲୁଗାକୁ ରଙ୍ଗେଇ ଦେଲା ଭଳି ] ରଙ୍ଗେଇ ଦେବାର ବସ୍ତୁ ବୋଲି ଜାଣ୍ । ସେ [ ଏଠାରେ ଓ ପରଲୋକରେ ଫଳ ମିଳିବା ଭଳି] କର୍ମସମ୍ପର୍କରେ ଦେହୀକୁ ବାନ୍ଧିରଖେ । (ଅର୍ଥାତ୍ ଲୋକ ରଜଗୁଣ ହେତୁରୁ କାମନା-ସାଧନାର କର୍ମକୁ ସୁଖ ମଣି ସେଥିରେ ବାନ୍ଧି ହୁଏ । ୭ ।

**ତମସ୍ତ୍ୱଜ୍ଞାନଜଂ ବିଦ୍ଧି ମୋହନଂ ସର୍ବଦେହିନାମ୍ ।**
**ପ୍ରମାଦାଲସ୍ୟନିଦ୍ରାଭିସ୍ତନ୍ନିବଧ୍ନାତି ଭାରତ । ୮ ।**

**ଅନ୍ୱୟ**—ଭାରତ ! ସର୍ବଦେହିନାଂ ମୋହନଂ ତମଃ ତୁ ଅଜ୍ଞାନଜଂ ବିଦ୍ଧି । ତତ୍ ପ୍ରମାଦାଲସ୍ୟନିଦ୍ରାଭିଃ ନିବଧ୍ନାତି । ୮ ।

**ଟୀକା**—ହେ ଭାରତ, ସର୍ବଦେହିନାଂ ମୋହନଂ ( ଅବିବେକକରଂ ) ତମଃ ( ତନ୍ନାମ ଗୁଣଃ ) ଅଜ୍ଞାନଜଂ ବିଦ୍ଧି । ତତ୍ [ ତମଃ ଦେହିନଂ ] ପ୍ରମାଦାଲସ୍ୟ ନିଦ୍ରାଭିଃ (ଅନବଧାନତା ଭ୍ରାନ୍ତିର୍ବା ପ୍ରମାଦଃ, ନିରୁଦ୍ୟମଃ ଆଲସ୍ୟଂ, ଚିତ୍ତାବସାଦଃ ନିଦ୍ରା—ତାଭିଃ ) ନିବଧ୍ନାତି ।

**ଅର୍ଥ**—ହେ ଭାରତ, ଦେହୀମାନଙ୍କର ମୋହ ବା ଅବିବେକ ଜନ୍ମାଏ ଯେ ତମଗୁଣ, ସେ ଅଜ୍ଞାନରୁ ହୁଏ ବୋଲି ଜାଣ୍ । ସେ ତମଗୁଣ ଦେହୀକୁ ପ୍ରମାଦ, ଆଳସ୍ୟ ଓ ନିଦ୍ରା ପ୍ରଭୃତିରେ ବାନ୍ଧି ରଖେ । ୮ ।

ବ୍ୟାଖ୍ୟା ସୂଚନା—ପ୍ରମାଦ = ହେଳା, ଭୁଲ୍ କରିବା; ଭୁଲିଯିବା । ଆଳସ୍ୟ = ଉଦ୍ୟମ ନ କରି ବସି ରହିବା, ଅଳସୁଆ ପଣ । ନିଦ୍ରା = ଥକିଯିବା, ଶୋଇପଡ଼ିବା । ତମଗୁଣରୁ ଲୋକ ହେଳା ନିଦ୍ରା ଆଳସ୍ୟ ପ୍ରଭୃତିକୁ ସୁଖ ମଣି ସେଥିରେ ବାନ୍ଧିହୁଏ ।୮।

**ସତ୍ତ୍ୱଂ ସୁଖେ ସଞ୍ଜୟତି ରଜଃ କର୍ମଣି ଭାରତ ।**
**ଜ୍ଞାନମାବୃତ୍ୟ ତୁ ତମଃ ପ୍ରମାଦେ ସଞ୍ଜୟତ୍ୟୁତ ।୯।**

**ଅନ୍ୱୟ**—ଭାରତ ! ସତ୍ତ୍ୱଂ ସୁଖେ ସଞ୍ଜୟତି, ରଜଃ କର୍ମଣି; ତମଃ ତୁ ଉତ ଜ୍ଞାନଂ ଆବୃତ୍ୟ ପ୍ରମାଦେ ସଞ୍ଜୟତି । ୯ ।

**ଟୀକା**—[ସମାସେନ ପୁନଃ ପୁନଃ ତଦାହ]—ହେ ଭାରତ, [ଏବଂ] ସତ୍ତ୍ୱଂ [ଦେହିନଂ] ସୁଖେ ସଞ୍ଜୟତି (ସଂଶ୍ଳେଷୟତି), ରଜଃ କର୍ମଣି, ତମଃ ତୁ ଉତ (ଇତି ପାଦପୂରଣାର୍ଥମବ୍ୟୟଂ) ଜ୍ଞାନଂ (ବିବେକଂ) ଆବୃତ୍ୟ (ଆଚ୍ଛାଦ୍ୟ) ପ୍ରମାଦେ (ପ୍ରାପ୍ତକର୍ମଣଃ ଅକରଣରୂପେ ଭ୍ରମେ) ସଞ୍ଜୟତି । ୯ ।

**ଅର୍ଥ**—[ମୋଟାମୋଟି ପୁଣି ଏକାଠି କହୁଛନ୍ତି]=ହେ ଭାରତ, ଏହିପରି ସତ୍ତ୍ୱଗୁଣ ଦେହୀଙ୍କୁ ସୁଖରେ ଲଗାଇ ରଖେ; ରଜୋଗୁଣ କର୍ମରେ, ତମ କିନ୍ତୁ ଜ୍ଞାନ ବା ବିବେଚନା ଶକ୍ତିକୁ ଘୋଡ଼ାଇ ଦେଇ ପ୍ରମାଦ ( ହେଳା ବା ଭ୍ରମ )ରେ ଲଗାଇ ରଖେ । ୯ ।

ବ୍ୟାଖ୍ୟା ସୂଚନା—ଏଠାରେ **କର୍ମ** = ଫଳ ଘେନି ଯେଉଁ କର୍ମରେ ଲୋକ ମାତେ, ସେହି କର୍ମ; ଯୋଗୀ ଯେ ନିଷ୍କାମ କର୍ମରେ ସିଦ୍ଧି ପାଏ, ସେ କର୍ମ ବା କର୍ମସନ୍ନ୍ୟାସ ନୁହେ । ପ୍ରମାଦ=ଠିକ୍ ସମୟରେ ଠିକ୍ କାର୍ଯ୍ୟ ନ କରି ଖାଲି ଭୁଲି କରିବା । ୯ ।

**ରଜସ୍ତମଶ୍ଚାଭିଭୂୟ ସତ୍ତ୍ୱଂ ଭବତି ଭାରତ ।**
**ରଜଃ ସତ୍ତ୍ୱଂ ତମଶ୍ଚୈବ ତମଃ ସତ୍ତ୍ୱଂ ରଜସ୍ତଥା । ୧୦ ।**

**ଅନ୍ୱୟ**—ଭାରତ ! ରଜଃ ତମଃ ଚ ଅଭିଭୂୟ ସତ୍ତ୍ୱଂ ଭବତି ତଥା ସତ୍ତ୍ୱଂ ତମଃ ଚ ରଜଃ, ସତ୍ତ୍ୱଂ ରଜଃ ଚ ତମଃ । ୧୦ ।

**ଟୀକା**—[ତ୍ରିଗୁଣମୟୀ ପ୍ରକୃତିଃ ଗୁଣୈକେନ ନ କଦା ପ୍ରବର୍ତ୍ତତେ କିନ୍ତୁ ଗୁଣାନାଂ କଶ୍ଚିତ୍ କଦା ଅପରୌ ଅଭିଭୂୟ ଉଦ୍‌ଗଚ୍ଛତୀତି—ଏବାହ] ହେ ଭାରତ, [ସତ୍ତ୍ୱଂ ବଧ୍ନାତୀତି ଯଦୁକ୍ତଂ, ତତ୍ର] ରଜଃ ତମଃ ଚ ଅଭିଭୂୟ (ତିରସ୍କୃତ୍ୟ) ସତ୍ତ୍ୱଂ ଭବତି (ଉଦ୍‌ଗଚ୍ଛତି) [ ଇତି ବୋଦ୍ଧବ୍ୟଂ ]—ତଥା ସତ୍ତ୍ୱଂ ତମଃ ଚ ଏବ [ଅଭିଭୂୟ] ରଜଃ [ଭବତି], ସତ୍ତ୍ୱଂ ରଜଃ ଚ [ଅଭିଭୂୟ] ତମଃ [ଭବତି] । ୧୦ ।

**ଅର୍ଥ**—[ ତ୍ରିଗୁଣମୟୀ ପ୍ରକୃତି କେବେ ଗୋଟିଏ ଗୋଟିଏ ଗୁଣ ଅଲଗା କରି ଦେଖାଏ ବୋଲି ଏଥିରୁ ବୁଝିବାର ନୁହେ—କୌଣସି ଗୋଟିଏ ଗୁଣ ଆଉ ଦୁଇଟିକୁ ଦବାଇ ଦେଇ ଉପରକୁ ସ୍ପଷ୍ଟ ଦେଖାଯାଏ ବୋଲି ବୁଝାଇ ଦେଉଛନ୍ତି ]—ହେ ଭାରତ, ସତ୍ତ୍ୱ ଦି ଗୁଣ ଯାହା ବାନ୍ଧିରଖେ ବୋଲି କହିଗଲିଟି, ତାର ଅର୍ଥ ହେଉଛି ସବୁବେଳେ ତିନିଗୁଣ ମିଶିକରି ଥାଏ; ମାତ୍ର ସତ୍ତ୍ୱ ବାନ୍ଧିରଖେ ବୋଇଲେ ରଜ ତମକୁ ଦବାଇ ଦେଇ ସତ୍ତ୍ୱ ଉପରକୁ ଉଠିଥାଏ; ସେହିପରି ସତ୍ତ୍ୱ ତମକୁ ଦବାଇ ରଜ; ଓ ସତ୍ତ୍ୱ ରଜକୁ ଦବାଇ ତମ ଥାଏ । [ଏହାହିଁ ମୋର କହିବାର ଅଭିପ୍ରାୟ] । ୧୦ ।

**ସର୍ବଦ୍ୱାରେଷୁ ଦେହେଽସ୍ମିନ୍‌ପ୍ରକାଶ ଉପଜାୟତେ ।**
**ଜ୍ଞାନଂ ଯଦା ତଦା ବିଦ୍ୟାଦ୍‌ବିବୃଦ୍ଧଂ ସତ୍ତ୍ୱମିତ୍ୟୁତ । ୧୧ ।**

**ଅନ୍ୱୟ**—ଯଦା ଅସ୍ମିନ୍ ଦେହେ ସର୍ବଦ୍ୱାରେଷୁ ପ୍ରକାଶଃ ଜ୍ଞାନଂ ଉପଜାୟତେ, ତଦା ସତ୍ତ୍ୱଂ ବିବୃଦ୍ଧଂ ଇତି ଉତ ବିଦ୍ୟାତ୍ । ୧୧ ।

**ଟୀକା**—[ ସତ୍ତ୍ୱବୃଦ୍ଧିଲକ୍ଷଣଂ ଚ ସୂଚୟତି ]—ଯଦା ଅସ୍ମିନ୍ ଦେହେ [ଇନ୍ଦ୍ରିୟମନ ଆଦିରୂପେଷୁ] ସର୍ବଦ୍ୱାରେଷୁ ପ୍ରକାଶଃ [ଏବ] ଜ୍ଞାନଂ (ନିର୍ମଳାବଧାରଣା —ବିଷୟସ୍ୟ ଯଥାବତ୍ ଧାରଣା—ଇତିଭାବଃ) ଉପଜାୟତେ, ତଦା ସତ୍ତ୍ୱଂ ବିବୃଦ୍ଧଂ ଇତି ଉତବିଦ୍ୟାତ୍ (ଜାନୀୟାତ୍) । ୧୧ ।

**ଅର୍ଥ**—[ ସତ୍ତ୍ୱବୃଦ୍ଧି ଲକ୍ଷଣ ପୁଣି ଦେଖାଇ ଦେଉଛନ୍ତି ]—ଯେବେ ଏ ଦେହରେ ଇନ୍ଦ୍ରିୟ ମନ ପ୍ରଭୃତି ସବୁ ଦ୍ୱାରରେ ପ୍ରକାଶ, ଅର୍ଥାତ୍, ନିର୍ମଳ ଜ୍ଞାନ ଜନ୍ମେ, ସେତେବେଳେ ସତ୍ତ୍ୱଗୁଣ ବଢ଼ିଛି ବୋଲି ଜାଣିବ । ୧୧ ।

ବ୍ୟାଖ୍ୟା ସୂଚନା—ଏଠାରେ, ନିର୍ମଳ ଜ୍ଞାନ = ବିଷୟରେ ଠିକ୍ ଧାରଣା, ଯେଉଁ ଜ୍ଞାନରେ ଭୁଲ୍ ନ ଥାଏ; ଯେପରିକି, ପର ଦ୍ରବ୍ୟକୁ ସ୍ପଷ୍ଟ ପର ଦ୍ରବ୍ୟ ବୋଲି ବୁଝିବ ଓ ସେଥିରେ ନିଜର ପାଇବାର ଅଛି ବୋଲି ଭୁଲ ବା ଲୋଭ ନ କରିବା ଇତ୍ୟାଦି । ୧୧ ।

**ଲୋଭଃ ପ୍ରବୃତ୍ତିରାରମ୍ଭଃ କର୍ମଣାମଶମଃ ସ୍ପୃହା ।**
**ରଜସ୍ୟେତାନି ଜାୟନ୍ତେ ବିବୃଦ୍ଧେ ଭରତର୍ଷଭ ।୧୨।**

**ଅନ୍ୱୟ**—ଭରତର୍ଷଭ ! ଲୋଭଃ, ପ୍ରବୃତ୍ତିଃ, କର୍ମଣାଂ ଆରମ୍ଭଃ, ଅଶମଃ, ସ୍ପୃହା ଏତାନି ରଜସି ବିବୃଦ୍ଧେ ଜାୟନ୍ତେ । ୧୨ ।

**ଟୀକା**—[ରଜୋବୃଦ୍ଧି ଲକ୍ଷଣମାହ]—ହେ ଭରତର୍ଷଭ, ଲୋଭଃ, (ଅତି ସ୍ୱାର୍ଥପରତା) ପ୍ରବୃତ୍ତିଃ (ଫଳାସ୍ୱ କର୍ମଯୋଜନା, ଉଦ୍‌ଯୋଗଃ ସଦା କୁର୍ବଦ୍ ଭାବଃ କର୍ମଣାଂ ଆରମ୍ଭଃ (ଫଳଲିପ୍ସୁ-ସ୍ୱପାତାଦ୍ୟାଡ଼ମ୍ବରେଣାନୁଷ୍ଠାନଂ) ଅଶମଃ (ଅତୃପ୍ତିଃ) ସ୍ପୃହା (ନିତ୍ୟବର୍ଦ୍ଧମାନଃ ଅଭିଲାଷଃ, ତୃଷ୍ଣା)—ଏତାନି (ଏବଂ ଭୂତାନି ଲକ୍ଷଣାନି) ରଜସି (ରଜୋଗୁଣେ) ବିବୃଦ୍ଧେ (ବୃଦ୍ଧିଂ ଗତେ) [ସତି] ଜାୟନ୍ତେ (ଭବନ୍ତି) ।୧୨।

**ଅର୍ଥ**—[ରଜୋଗୁଣ ବଢ଼ିଲେ କଣ ହୁଏ ? କହୁଛନ୍ତି]—ହେ ଭରତର୍ଷଭ, ଲୋଭ ବା ଅତି ସ୍ୱାର୍ଥପରତା, ଫଳ ପାଇଁ କର୍ମରେ ଲାଗିବା, କର୍ମମାନ ପାଇଁ ଆଡ଼ମ୍ବରରେ ସେଥିରେ ମାତିବା, ଅତୃପ୍ତି, ସର୍ବଦା ପାଇବାର ଇଚ୍ଛା—ଏ ସବୁ ରଜୋଗୁଣ ବଢ଼ିଲେ ହୁଏ । ୧୨ ।

**ଅପ୍ରକାଶୋଽପ୍ରବୃତ୍ତିଶ୍ଚ ପ୍ରମାଦୋ ମୋହ ଏବ ଚ ।**
**ତମସ୍ୟେତାନି ଜାୟନ୍ତେ ବିବୃଦ୍ଧେ କୁରୁନନ୍ଦନ ।୧୩।**

**ଅନ୍ୱୟ**—କୁରୁନନ୍ଦନ ! ଅପ୍ରକାଶଃ, ଅପ୍ରବୃତ୍ତିଃ, ଚ ପ୍ରମାଦଃ, ମୋହ ଏବ ଚ—ଏତାନି ତମସି ବିବୃଦ୍ଧେ ଜାୟନ୍ତେ । ୧୩ ।

ଟୀକା—[ ତମୋବୃଦ୍ଧିଲକ୍ଷଣମାହ ]—ହେ କୁରୁନନ୍ଦନ, ଅପ୍ରକାଶଃ ଅନ୍ଧକାରଃ, (ନିର୍ମଳଜ୍ଞାନସ୍ୟାଭାବଃ), ଅପ୍ରବୃତ୍ତିଃ, (ଉଦ୍ୟମହୀନତା, ଆଳସ୍ୟଂ) ଚ ପ୍ରମାଦଃ (କର୍ତ୍ତବ୍ୟବିସ୍ମରଣଂ) ମୋହଃ (ଜଡ଼ତା, ଅବିବେକଃ, ବେଦତତ୍ତ୍ୱସ୍ୟ ଅନ୍ୟଥା ଜ୍ଞାନଂ, ମିଥ୍ୟାଭିନିବେଶାଦିକଂ) ଏବ ଚ—ଏତାନି ତମସି ବିବୃଦ୍ଧେ [ସତି] ଜାୟନ୍ତେ । ୧୩ ।

ଅର୍ଥ—[ତମୋଗୁଣ ବଢ଼ିଲେ, କଣ ହୁଏ, କହୁଚନ୍ତି]—ହେ କୁରୁନନ୍ଦନ, ଅନ୍ଧାର (ଅର୍ଥାତ୍, କଏ କଅଣ ବୋଲି ଠିକ୍ ବୁଝି ନ ପାର ଅଣ୍ଡାଳ ହେବା; ଆଳସ୍ୟ; କଣ କରିବ, ନ କରିବ—ଏଥିରେ ଭୁଲ, ଅବିବେକୀର ଖାଲି ଘାଣ୍ଟି ହେବା (ଯେପରି କି, ମୋର, ମୋ କୁଟୁମ୍ବ ବୋଲି, ଘର କୁଟୁମ୍ବ ପାଇଁ କିଛି ନ କରି ଖାଲି ଘାଣ୍ଟି ହେବା) —ଏସବୁ ତମଗୁଣ ବଢ଼ିଲେ ହୁଏ । ୧୩ ।

**ଯଦା ସତ୍ତ୍ୱେ ପ୍ରବୃଦ୍ଧେ ତୁ ପ୍ରଳୟଂ ଯାତି ଦେହଭୃତ୍ ।**
**ତଦୋତ୍ତମବିଦାଂ ଲୋକାନମଳାନ୍ ପ୍ରତିପଦ୍ୟତେ ।୧୪।**

ଅନ୍ୱୟ—ଯଦା ତୁ ସତ୍ତ୍ୱେ ପ୍ରବୃଦ୍ଧେ ଦେହଭୃତ୍ ପ୍ରଳୟଂ ଯାତି, ତଦା ଅମଳାନ୍ ଉତ୍ତମବିଦାଂ ଲୋକାନ୍ ପ୍ରତିପଦ୍ୟତେ । ୧୪ ।

ଟୀକା—[ ଫଳାଦିସୂଚନୟା ତଦେବ ଗୁଣତ୍ରୟଂ ସ୍ପଷ୍ଟୀକୁର୍ବନ୍ ଆହ]— ଯଦା ତୁ ସତ୍ତ୍ୱେ ପ୍ରବୃଦ୍ଧେ [ସତି] ଦେହଭୃତ୍ [ଜୀବଃ] ପ୍ରଳୟଂ [ମରଣଂ] ଯାତି (ଲଭତେ), ତଦା ଅମଳାନ୍ [ଆଲୋକମୟାନ୍] ଉତ୍ତମବିଦାଂ (ଦିବ୍ୟଜ୍ଞାନବତାଂ— ଦେବାଦୀନାଂ, ଇତି ଭାବଃ ) ଲୋକାନ୍ [ ଭୁବନାନି, ସ୍ଥାନାନି] ପ୍ରତିପଦ୍ୟତେ (ପ୍ରତିଗଚ୍ଛତି) । ୧୪ ।

ଅର୍ଥ—[ଫଳାଦି ଦେଖାଇ ସେହି ତିନିଗୁଣ କଥା ସ୍ପଷ୍ଟ କରିବାରେ ଲଗିଚନ୍ତି] —ଯେବେ ପୁଣି ସତ୍ତ୍ୱ ବୃଦ୍ଧିରେ ଥାଇ ଲୋକ ମୃତ୍ୟୁ ଲଭେ, ତେବେ ଉଜ୍ଜ୍ୱଳ [ଜ୍ଞାନ:- ଲୋକମୟ] ନିର୍ମଳ ଦିବ୍ୟଜ୍ଞାନୀ ବା ଦେବତାଙ୍କ ଲୋକକୁ ଯାଏ । ୧୪ ।

**ରଜସି ପ୍ରଳୟଂ ଗତ୍ୱା କର୍ମସଙ୍ଗିଷୁ ଜାୟତେ ।**
**ତଥା ପ୍ରଲୀନସ୍ତମସି ମୂଢ଼ଯୋନିଷୁ ଜାୟତେ । ୧୫ ।**

ଅନ୍ୱୟ—ରଜସି ପ୍ରଳୟଂ ଗତ୍ୱା କର୍ମସଙ୍ଗିଷୁ ଜାୟତେ । ତଥା ତମସି ପ୍ରଲୀନଃ ମୂଢ଼ଯୋନିଷୁ ଜାୟତେ । ୧୫ ।

ଟୀକା—(ବୃଦ୍ଧେ) ରଜସି ପ୍ରଳୟଂ ଗତ୍ୱା (ଜୀବଃ) କର୍ମସଙ୍ଗିଷୁ (କର୍ମ- ସକ୍ତେଷୁ ମନୁଷ୍ୟେଷୁ ) [ମଧ୍ୟେ] ଜାୟତେ (ଜନ୍ମ ଲଭତେ) । ତଥା [ବୃଦ୍ଧେ]

ତମସି ପ୍ରଲୀନଃ [ମୃତଃ] (ସନ୍) ମୂଢ଼ଯୋନିଷୁ (ପଶୁପକ୍ଷ୍ୟାଦିଷୁ ଇତି ଭାବଃ) ଜାୟତେ । ୧୫ ।

**ଅର୍ଥ**—ରଜୋଗୁଣ ବୃଦ୍ଧିରେ ଥାଇ ମୃତ୍ୟୁ ଲଭିଲେ ଲୋକ କର୍ମାସକ୍ତ ସାଧାରଣ ମନୁଷ୍ୟଙ୍କ ଭିତରେ ଜନ୍ମ ହୁଏ; ସେହିପରି ତମୋଗୁଣ ବୃଦ୍ଧିରେ ଥାଇ ମଲେ, ପଶୁପକ୍ଷୀ ପ୍ରଭୃତି ମୂଢ଼ ଜାତିରେ ଜନ୍ମହୁଏ । ୧୫ ।

**କର୍ମଣଃ ସୁକୃତସ୍ୟାହୁଃ ସାତ୍ତ୍ୱିକଂ ନିର୍ମଳଂ ଫଳମ୍ ।**
**ରଜସସ୍ତୁ ଫଳଂ ଦୁଃଖମଜ୍ଞାନଂ ତମସଃ ଫଳମ୍ । ୧୬ ।**

**ଅନ୍ୱୟ**—ସୁକୃତସ୍ୟ କର୍ମଣଃ ନିର୍ମଳଂ ଫଳଂ ସାତ୍ତ୍ୱିକଂ ଆହୁଃ; ରଜସଃ ତୁ ଫଳଂ ଦୁଃଖଂ, ତମସଃ ଫଳଂ ଅଜ୍ଞାନଂ । ୧୬ ।

**ଟୀକା**—(ଇହାପି)—ସୁକୃତସ୍ୟ (ପୁଣ୍ୟସ୍ୟ) କର୍ମଣଃ [ସାଧୁ କୃତମିତି—ଆତ୍ମପରିତୋଷରୂପଂ] ନିର୍ମଳଂ ଫଳଂ ସାତ୍ତ୍ୱିକଂ ଆହୁଃ; ରଜସଃ ତୁ (ଲୋଭତୃଷ୍ଣାଦି-ଜନିତଂ ବ୍ୟଥାରୂପଂ] ଫଳଂ ଦୁଃଖଂ; ତମସଃ [ନିଦ୍ରାଳସ୍ୟଜନିତଂ ଆତ୍ମବିସ୍ମୃତିରୂପଂ] ଫଳଂ ଅଜ୍ଞାନମ୍ । ୧୬ ।

**ଅର୍ଥ**—[ଏହି ଦେହରେ ବି] ପୁଣ୍ୟ ସୁକୃତରୁ [ଭଲକାମ ହେଲା ବୋଲି ଆତ୍ମପରିତୋଷରୂପ] ଯେଉଁ ନିର୍ମଳ ଫଳ ବା ଅନ୍ତଃକରଣ ଶୁଦ୍ଧି ହୁଏ, ତାକୁ ସାତ୍ତ୍ୱିକ କହନ୍ତି, ରଜୋଗୁଣର କଂର୍ତ୍ତୁ [ଲୋଭତୃଷ୍ଣାଦି ବ୍ୟାକୁଳତାରୂପ] ଫଳ ଦୁଃଖ; ପୁଣି ତମୋଗୁଣର [ନିଦ୍ରା ଆଳସ୍ୟ ହେତୁରୁ ସବୁ ଭୁଲିଯିବା ରୂପ] ଯେ ଫଳ, ସେ ତ ଅଜ୍ଞାନ ବା କିଛି ନ ଜାଣିବା । ୧୬ ।

**ସତ୍ତ୍ୱାତ୍ ସଂଜାୟତେ ଜ୍ଞାନଂ ରଜସୋ ଲୋଭ ଏବ ଚ ।**
**ପ୍ରମାଦମୋହୌ ତମସୋ ଭବତୋଽଜ୍ଞାନମେବ ଚ । ୧୭ ।**

**ଅନ୍ୱୟ**—ସ୍ପଷ୍ଟ । ୧୭ ।

**ଟୀକା**—ସତ୍ତ୍ୱାତ୍ ଜ୍ଞାନଂ ସଂଜାୟତେ; ରଜସଃ ଚ ଲୋଭଃ ଏବ [ସଂଜାୟତେ]; ତମସଃ (ନ କେବଳଂ) ପ୍ରମାଦମୋହୌ ଭବତଃ, (ଅପି ଚ) ଅଜ୍ଞାନଂ ଏବ (ଅପି) [ଭବତି] ।

**ଅର୍ଥ**—ସତ୍ତ୍ୱରୁ ଜ୍ଞାନ ଉପୁଜେ; ରଜରୁହିଁ ଲୋଭ, ତମରୁ ଖାଲି ଯେ ଭୁଲ୍ କରିବା, ଆଉ ଅଣ୍ଡାଳି ହେବାକୁ ହୁଏ; ସେତିକି ନୁହେଁ, କିଛି ନ ଜାଣିବାହିଁ ସାର ହୁଏ । ୧୭ ।

**ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।**
**ଜଘନ୍ୟଗୁଣବୃତ୍ତିସ୍ଥା ଅଧୋଗଚ୍ଛନ୍ତି ତାମସାଃ ।୧୮।**

**ଅନ୍ୱୟ**—ସତ୍ତ୍ୱସ୍ଥାଃ ଊର୍ଦ୍ଧ୍ୱଂ ଗଚ୍ଛଂତି, ରାଜସାଃ ମଧ୍ୟେ ତିଷ୍ଠଂତି; ଜଘନ୍ୟଗୁଣ ବୃତ୍ତିସ୍ଥାଃ ତାମସାଃ ଅଧଃ ଗଚ୍ଛଂତି । ୧୮ ।

**ଟୀକା**—ସତ୍ତ୍ୱସ୍ଥାଃ (ସତ୍ତ୍ୱଗୁଣାଶ୍ରିତାଃ ଜନାଃ) [ସୁଖଂ] ଊର୍ଦ୍ଧ୍ୱଂ (ମୋକ୍ଷମାର୍ଗଂ) ଗଚ୍ଛନ୍ତି (ପ୍ରପଦ୍ୟନ୍ତେ), ରାଜସାଃ [ଜନାଃ] ମଧ୍ୟେ ତିଷ୍ଠନ୍ତି (ସାମାନ୍ୟମାନବା ଇବ ବିଷୟାନ୍ ସେବମାନାଃ ଆସତେ—ଇତ୍ୟର୍ଥଃ); ଜଘନ୍ୟଗୁଣବୃତ୍ତିସ୍ଥାଃ (ନିକୃଷ୍ଟଗୁଣ-ଭାବାଶ୍ରିତାଃ) ତାମସାଃ [ ଜନାଃ ] ( ଅଧଃ ଗଚ୍ଛନ୍ତି, ବିନଶ୍ୟନ୍ତି—ଆତ୍ମନାଶଂ ଲଭନ୍ତେ ) । ୧୮ ।

**ଅର୍ଥ**—ସତ୍ତ୍ୱଗୁଣରେ ଥିବା ଲୋକେ ସହଜରେ ଗୁଣାତୀତ ହେବାପାଇଁ ମୋକ୍ଷମାର୍ଗ ଧରି ଉପରକୁ ଉଠନ୍ତି । ରଜୋ ଗୁଣୀମାନେ ମଝିରେ ରହନ୍ତି । (ଅର୍ଥାତ୍ ସାଧାରଣ ଲୋକ ପରି ବିଷୟ ଭୋଗକରି ସଂସାରରେ ପଡ଼ିଯାନ୍ତି) । ହୀନପ୍ରକୃତିରେ ଥିବା ତମୋଗୁଣୀମାନେ ଅଧୋଗତି ପାଆନ୍ତି (ଅର୍ଥାତ୍, ଅମନୁଷ୍ୟ ହୋଇଯାଆନ୍ତି—ସତ୍ୟାନାଶ ଯାଆନ୍ତି) । ୧୮ ।

**ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ ଯଦା ଦ୍ରଷ୍ଟାନୁପଶ୍ୟତି ।**
**ଗୁଣେଭ୍ୟଶ୍ଚ ପରଂ ବେତ୍ତି ମଦ୍ଭାବଂ ସୋଽଧିଗଚ୍ଛତି ।୧୯।**

**ଅନ୍ୱୟ**—ଯଦା ଦ୍ରଷ୍ଟା ଗୁଣେଭ୍ୟଃ ନ ଅନ୍ୟଂ କର୍ତ୍ତାରଂ ଅନୁପଶ୍ୟତି, ଗୁଣେଭ୍ୟଃ ପରଂ ଚ ବେତ୍ତି [ତଦା] ସଃ ମଦ୍ଭାବଂ ଅଧିଗଚ୍ଛତି । ୧୯ ।

**ଟୀକା**—[ତତଃ ଗୁଣାତୀତଂ ଉଦ୍ଦିଶ୍ୟ ମୋକ୍ଷଂ ଉପଦିଶତି] ଯଦା ଦ୍ରଷ୍ଟା (ଉଦାସୀନବତ୍ ଦର୍ଶକଃ) [ସନ୍ ଜନଃ] ଗୁଣେଭ୍ୟଃ ନ ଅନ୍ୟଂ କର୍ତ୍ତାରଂ ଅନୁପଶ୍ୟତି, ଗୁଣେଭ୍ୟଃ ପରଂ ଚ ବେତ୍ତି, [ତଦା] ସଃ ମଦ୍ଭାବଂ (ମତ୍ସ୍ୱରୂପଂ) ଅଧିଗଚ୍ଛତି (ପ୍ରାପ୍ନୋତି) । ୧୯ ।

**ଅର୍ଥ**—[ ଏବେ ଏସବୁ ଗୁଣକୁ ଅତୀତକୁ ଦେଖାଇ ମୁକ୍ତିକଥା କହୁଚନ୍ତି]—ଯେତେବେଳେ ଉଦାସୀନ ଦର୍ଶକ ପରି ଲୋକ ପ୍ରକୃତିର ଗୁଣଗୁଡ଼ିକ ଛଡ଼ା ଆଉ କର୍ତ୍ତା ନାଇ ବୋଲି ଦେଖେ (ଅର୍ଥାତ୍, ବୁଝିପାଏ), ପୁଣି ଗୁଣରୁ ଯେ ଅତୀତ (ଅର୍ଥାତ୍), ଗୁଣ ଧରି ଯାହାଙ୍କ ସ୍ୱରୂପ କହି ବା ବୁଝି ହେବ ନାଇ ତାଙ୍କୁ ଜାଣେ, ସେତେବେଳେ ସେ ମୋ ସ୍ୱରୂପ ବା ପରଂବ୍ରହ୍ମକୁ ପାଏ । ୧୯ ।

ବ୍ୟାଖ୍ୟା ସୂଚନା—[ଗୁଣଙ୍କୁ କର୍ତ୍ତା ବୋଲି ମାନିଲେ, ଲୋକର ଅହଂଭାବ ହୋଇପାରେ ନା । ତାର ସବୁ କାମ ସ୍ୱାଭାବିକ ଓ ଶରୀରଯାତ୍ରା ପାଇଁ ହୋଇ ପଡ଼େ । ପୁଣି ଶରୀରଯାତ୍ରା ବି ପରମାର୍ଥ ନିମନ୍ତେ ହେବାରୁ, କର୍ମ ମାତ୍ରାରେ ତାର ସର୍ବଦା ତ୍ୟାଗ ଓ ବୈରାଗ୍ୟ ଥାଏ । ଏପରି ଜ୍ଞାନୀ ସହଜରେ ଗୁଣ ଉପରେ ଥିବା ନିର୍ଗୁଣ ଈଶ୍ୱରଙ୍କୁ ମାନେ ଓ ଭଜେ] ମହାତ୍ମା ଗାନ୍ଧୀ । ୧୯ ।

**ଗୁଣାନେତାନତୀତ୍ୟ ତ୍ରୀନ ଦେହୀ ଦେହସମୁଦ୍‌ଭବାନ୍ ।**
**ଜନ୍ମମୃତ୍ୟୁଜରାଦୁଃଖୈର୍ବିମୁକ୍ତୋଽମୃତମଶ୍ନୁତେ ।୨୦।**

**ଅନ୍ୱୟ**—ଦେହୀ ଏତାନ୍ ଦେହସମୁଦ୍ଭବାନ୍ ତ୍ରୀନ୍ ଗୁଣାନ୍ ଅତୀତ୍ୟ, ଜନ୍ମମୃତ୍ୟୁଜରାଦୁଃଖୈଃ ବିମୁକ୍ତଃ ଅମୃତଂ ଅଶ୍ନୁତେ । ୨୦ ।

**ଟୀକା**—[ଏବଂ] ଦେହୀ (ଜୀବଃ) ଏତାନ୍ ଦେହସମୁଦ୍ଭବାନ୍ ତ୍ରୀନ୍ ଗୁଣାନ୍ ଅତୀତ୍ୟ (ଅତିକ୍ରମ୍ୟ)[ତତ୍ ଗୁଣକୃତୈଃ] ଜନ୍ମମୃତ୍ୟୁଜରାଦୁଃଖୈଃ ବିମୁକ୍ତଃ [ସନ୍] ଅମୃତଂ (ମୃତ୍ୟୁଶୂନ୍ୟତ୍ୱଂ, ମୋକ୍ଷଂ) ଅଶ୍ନୁତେ (ପ୍ରାପ୍ନୋତି) । ୨୦ ।

**ଅର୍ଥ**—[ଏହିପରି] ଦେହୀ ବା ଜୀବ ଦେହ ବା ପ୍ରକୃତିରୁ ହେଉଥିବା [ଆତ୍ମା ସଙ୍ଗେ ସମ୍ପର୍କ ନ ଥିବା] ଏହି ତିନି ଗୁଣକୁ ପାରି, ସେହି ଗୁଣହେତୁକ ଜନ୍ମମୃତ୍ୟୁ ଜରା ପ୍ରଭୃତି ଦୁଃଖରୁ ତ୍ରାହି ପାଇ ଅମୃତ (ବା ମରଣରୁ ନିଷ୍କୃତି) ପାଏ । ଅର୍ଥାତ୍, ତାର ଆଉ ଜନ୍ମ ମରଣ ବାର୍ଦ୍ଧକ୍ୟ ପ୍ରଭୃତି ହୁଏ ନାହିଁ, ସେ ମୋକ୍ଷ ହୋଇଯାଏ) । ୨୦ ।

ଅର୍ଜୁନ ଉବାଚ

**କୈର୍ଲିଙ୍ଗୈସ୍ତ୍ରୀନ୍ ଗୁଣାନେତାନତୀତୋ ଭବତି ପ୍ରଭୋ ।**
**କିମାଚାରଃ କଥଂ ଚୈତାଂସ୍ତ୍ରୀନ୍ ଗୁଣାନତିବର୍ତ୍ତତେ । ୨୧ ।**

**ଅନ୍ୱୟ**—ପ୍ରଭୋ ! ଏତାନ୍ ତ୍ରୀନ୍ ଗୁଣାନ୍ ଅତୀତଃ କୈଃ ଲିଙ୍ଗୈଃ ଭବତି ? କିମାଚାରଃ ? କଥଂ ଚ ଏତାନ୍ ତ୍ରୀନ୍ ଗୁଣାନ୍ ଅତିବର୍ତ୍ତତେ ? । ୨୧ ।

**ଟୀକା**—[ଅଥ ଗୁଣାତୀତସ୍ୟ ଲକ୍ଷଣାଦି ସମ୍ୟକ୍ ବୁଭୁତ୍ସୁଃ] ଅର୍ଜୁନଃ ଉବାଚ—ହେ ପ୍ରଭୋ, ଏତାନ୍ ତ୍ରୀନ୍ ଗୁଣାନ୍ ଅତୀତଃ [ଜନଃ] କୈଃ ଲିଙ୍ଗୈଃ (ଲକ୍ଷଣୈଃ) [ଉପଲକ୍ଷିତଃ] ଭବତି ? କିମାଚାରଃ (କୈଃ ଆଚରଣୈଃ ଉପଲକ୍ଷିତଃ) [ଭବତି] ? କଥଂ ଚ ଏତାନ୍ ତ୍ରୀନ୍ ଗୁଣାନ୍ ଅତିବର୍ତ୍ତତେ ? । ୨୧ ।

ଅର୍ଥ—[ଏଠାରେ ଗୁଣାତୀତର ଲକ୍ଷଣାଦି ଭଲ କରି ବୁଝିବା ପାଇଁ]—ଅର୍ଜୁନ କହିଲେ—ହେ ପ୍ରଭୁ, ଏ ତିନି ଗୁଣକୁ ଡେଇଁ କରି ଉପରକୁ ଉଠିଥାଏ ଯେ ଗୁଣାତୀତ, ସେ କି ଲକ୍ଷଣ ବା ଚିହ୍ନରେ ଜଣାପଡ଼େ ? ତାର କିପରି ଆଚରଣ ? ପୁଣି କିପରି ସେ ଏହି ଗୁଣମାନଙ୍କୁ ଡେଇଁଯାଏ ? [ତୁଳନା ପାଇଁ ୨.୫୪ ଦେଖ] । ୨୧ ।

ଶ୍ରୀ ଭଗବାନୁବାଚ

ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହମେବ ଚ ପାଣ୍ଡବ ।
ନ ଦ୍ୱେଷ୍ଟି ସମ୍ପ୍ରବୃତ୍ତାନି ନ ନିବୃତ୍ତାନି କାଂକ୍ଷତି ।୨୨।

ଅନ୍ୱୟ—ପାଂଡ଼ବ ! ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହଂ ଏବ ଚ (ଏତାନି) ସମ୍ପ୍ରବୃତ୍ତାନି ନ ଦ୍ୱେଷ୍ଟି, ନିବୃତ୍ତାନି ନ କାଙ୍କ୍ଷତି । ୨୨ ।

ଟୀକା—(ଗୁଣ ତୀତସ୍ୟ ଅନୁଭବଂ ଏବ ଲକ୍ଷଣଂ ଆରଭ୍ୟ)—ଶ୍ରୀ ଭଗବାନ୍ ଉବାଚ—ହେ ପାଣ୍ଡବ, [ଗୁଣାତୀତଃ ସାତ୍ତ୍ୱିକଂ] ପ୍ରକାଶଂ (ପ୍ରବୋଧନଂ) ଚ [ରାଜସୀଂ] ପ୍ରବୃତ୍ତିଂ (କର୍ମପ୍ରବଣତାଂ) ଚ [ତାମସଂ] ମୋହଂ (ଜଡତା, ଅବିବାଧତ୍ୱଂ) ଏବ ଚ [ଏତାନ] ସମ୍ପ୍ରବୃତ୍ତାନ (ସ୍ୱତଃ ବିଷୟସ୍ପର୍ଶାଦୁଦ୍ଭୂତାନି) [ସନ୍] ନ ଦ୍ୱେଷ୍ଟି (ତ୍ୟକ୍ତୁମିଚ୍ଛତି), [ପ୍ରବୃତ୍ତାନି ତାନ] ନିବୃତ୍ତାନ [ସନ୍] ନ କାଂକ୍ଷତି (ସ୍ପୃହୟତି) । ୨୨ ।

ଅର୍ଥ—[ଉତ୍ତରରେ ଗୁଣାତୀତର ଭିତର ଲକ୍ଷଣରୁ ଆରମ୍ଭ କରି—ଶ୍ରୀ ଭଗବାନ୍ କହିଲେ—ହେ ପାଣ୍ଡବ, [ଗୁଣାତୀତ ଲୋକ, ଉପରେ କୁହାଯାଇଥିବା ସତ୍ତ୍ୱ, ରଜ ଓ ତମ ଗୁଣର କାର୍ଯ୍ୟ ଓ ଫଳ ଯଥାକ୍ରମେ] ପ୍ରକାଶ, ପ୍ରବୃତ୍ତି ଓ ମୋହ ମନକୁ ବିଷୟ ସ୍ପର୍ଶ ଅନୁସାରେ ହେଲେ, କାହିଁକି ମୋର ଏଗୁଡାକ ହୋଇଚି ବୋଲି ବିରକ୍ତ ହୁଏ ନାଇ, କିମ୍ବା ସେ ସବୁ ପୁଣି ବନ୍ଦ ହୋଇଗଲେ ବା ନ ହେଲେ, କାହିଁକି ନ ହେଲା ? କିପରି ହେବ ? ବୋଲି ବ୍ୟାକୁଳ ହୋଇ ଲୋଡେ ନାଇ । ୨୨ ।

ବ୍ୟାଖ୍ୟା ସୂଚନା—ଏହି ସମ୍ପର୍କରେ ୨.୫୭, ୭୧ ରେ 'ସ୍ଥିତପ୍ରଜ୍ଞ' ଓ ୧୨.୧୩,୧୯.ରେ 'ଈଶ୍ୱରଙ୍କ ପ୍ରିୟ ଭକ୍ତ' ଲକ୍ଷଣ ଦେଖ—ସେ ସବୁ ଲକ୍ଷଣ ମଧ୍ୟ ଏହିପରି 'ସ୍ଥିତପ୍ରଜ୍ଞ' 'ଭକ୍ତ' ଓ 'ଗୁଣାତୀତର' ଲକ୍ଷଣ ଏକ—ଏହିପରି କର୍ମ ଭକ୍ତି ଓ ଜ୍ଞାନର ସମନ୍ୱୟ । ୨୨ ।

ଉଦାସୀନବଦାସୀନୋ ଗୁଣୈର୍ଯୋ ନ ବିଚାଲ୍ୟତେ ।
ଗୁଣା ବର୍ତ୍ତନ୍ତ ଇତ୍ୟେବ ଯୋଽବତିଷ୍ଠତି ନେଙ୍ଗତେ ।୨୩।
ସମଦୁଃଖସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଂଚନଃ ।
ତୁଲ୍ୟପ୍ରିୟାପ୍ରିୟୋ ଧୀରସ୍ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ ।୨୪।

**ମାନାପମାନୟୋସ୍ତୁଲ୍ୟସ୍ତୁଲ୍ୟୋ ମିତ୍ରାରିପକ୍ଷୟୋଃ ।**
**ସର୍ବାରମ୍ଭପରିତ୍ୟାଗୀ ଗୁଣାତୀତଃ ସ ଉଚ୍ୟତେ । ୨୫ ।**

**ଅନ୍ୱୟ**—ଉଦାସୀନବତ୍ ଆସୀନଃ ଯଃ ଗୁଣୈଃ ନ ବିଚାଲ୍ୟତେ, ଗୁଣାଃ ବର୍ତ୍ତନ୍ତେ ଇତ୍ୟେବ ଯଃ ଅବତିଷ୍ଠତି, ନ ଇଙ୍ଗତେ, ସମଦୁଃଖ-ସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଞ୍ଚନଃ, ତୁଲ୍ୟପ୍ରିୟାପ୍ରିୟଃ, ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ, ଧୀରଃ, ମାନାପମାନୟୋଃ ତୁଲ୍ୟଃ, ମିତ୍ରାରିପକ୍ଷୟୋଃ ତୁଲ୍ୟଃ ସର୍ବାରମ୍ଭପରିତ୍ୟାଗୀ, ସଃ ଗୁଣାତୀତଃ ଉଚ୍ୟତେ । ୨୩-୨୫ ।

**ଟୀକା**—[ତତଃ ଗୁଣାତୀତସ୍ୟ ଆଚରଣଂ ବିଭିଃ]—ଉଦାସୀନବତ୍ (ଭାବାଭାବେଷୁ—ଇଷ୍ଟାନିଷ୍ଟେଷୁ ବା ନିର୍ବିକଳ୍ପଃ ଇବ) ଆସୀନଃ (ସ୍ଥିତଃ), ଯଃ ଗୁଣୈଃ ନ ବିଚାଲ୍ୟତେ, [ଅର୍ଥାତ୍] ଗୁଣାଃ । [କାର୍ଯ୍ୟକାରଣ ବିଷୟାକାରୈଃ ସ୍ୱସ୍ୱଂ] ବର୍ତ୍ତନ୍ତେ ଇତି ଏବ [ଇତ୍ୟେବଂ ଇତି ଚ ପାଠଃ] ଯଃ ଅବତିଷ୍ଠତି (ଅବତିଷ୍ଠତେ, ସ୍ଥିରଃ ତିଷ୍ଠତି) ନ ଇଙ୍ଗତେ (ବିଚଲତି), [ଯଃ ପୁନଃ] ସମଦୁଃଖସୁଖଃ ସ୍ୱସ୍ଥଃ (ଆତ୍ମନି ପ୍ରତିଷ୍ଠିତଃ), ସମଲୋଷ୍ଟାଶ୍ମକାଞ୍ଚନଃ (ଲୋଷ୍ଟଂ, ମୃତ୍‌ଖଣ୍ଡଂ; ଅଶ୍ମା, ପ୍ରସ୍ତରଂ; କାଞ୍ଚନଂ ସୁବର୍ଣ୍ଣଂ ଚ—ତତ୍ ସର୍ବଂ ସମଂ ଏକମୂଲ୍ୟବତ୍ ଯସ୍ୟ ସଃ) ତୁଲ୍ୟପ୍ରିୟାପ୍ରିୟଃ (ପ୍ରିୟେଷୁ ଅପ୍ରିୟେଷୁ ଚ ସମବୁଦ୍ଧିଃ) ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ (ଆତ୍ମନଃ ନିନ୍ଦାସଂସ୍ତୁତିଷୁ ସମବୁଦ୍ଧିଃ) ଧୀରଃ (ଧୈର୍ଯ୍ୟବାନ୍ ଅଚଳଃ) [ତଥା] ମାନାପମାନୟୋଃ ତୁଲ୍ୟଃ, ମିତ୍ରାରିପକ୍ଷୟୋଃ ତୁଲ୍ୟଃ, ସର୍ବାରମ୍ଭପରିତ୍ୟାଗୀ (କର୍ମଣଃ ଆତ୍ମାର୍ଥଂ ପ୍ରାରମ୍ଭିକସଙ୍କଳ୍ପସମୂହପାତୋଦ୍ୟୋମତ୍ୟାଗୀ) ସଃ ଗୁଣାତୀତଃ ଉଚ୍ୟତେ । ୨୩-୨୫ ।

**ଅର୍ଥ**—[ତହୁଁ ତିନି ଶ୍ଳୋକରେ ଗୁଣାତୀତର ଆଚରଣ କହୁଚନ୍ତି]—ହେଲା ନ ହେଲାରେ ଯାହାର ଯାଏ ଆସେ ନାହିଁ, ତାର ପରି (ଉଦାସୀନ ପରି) ବସିଥାଇ, ଯେ ଗୁଣରେ ହଲ୍‌ଚଲ୍ ହୁଏ ନାହିଁ; ଅର୍ଥାତ୍, ଗୁଣସବୁ କାର୍ଯ୍ୟକାରଣ ବିଷୟରୂପରେ ନିଜ କାର୍ଯ୍ୟ କରି ଯାଉଚନ୍ତି, ବିଗୁଣ ସ୍ଥିର ଥାଏ, ବିଚଳିତ ବା ବ୍ୟାକୁଳ ହୁଏ ନାହିଁ, ଯେ ପୁଣି ସୁଖଦୁଃଖରେ ଏକାପରି ଥାଇ, ଆପଣା ଭିତରେ (ଆତ୍ମାରେ) ଆପେ ଠିକ୍ ଥାଏ; ଢେଲା ହେଉ, ପଥର ହେଉ, ସୁନାମୁଣ୍ଡା ହେଉ, ସବୁ ସମାନ ବୋଲି ବିଚାରେ; ପ୍ରିୟ ଅପ୍ରିୟରେ ସମାନ ଥାଏ; ଆପଣାର ନିନ୍ଦା ପ୍ରଶଂସାରେ ସମାନ ବୁଦ୍ଧି କରେ; ଧୈର୍ଯ୍ୟ ରଖିଥାଏ, ଅର୍ଥାତ୍ କାହିଁରେ ଅତି ବ୍ୟସ୍ତ ହୁଏ ନାହିଁ କି ଅଳି ପଡ଼େ ନାଇ; ପୁଣି ମାନ ଅପମାନରେ ସମାନ ଥାଏ; ମିତ୍ର ଶତ୍ରୁ ଦୁଇ ପକ୍ଷକୁ ସମାନ ବିଚାରେ, କର୍ମମାନ ନିଜ ପାଇଁ ପାଞ୍ଚି ସେଥିରେ ଉଦ୍ୟମ ଲଗାଇବା ଛାଡ଼ିଥାଏ; ତାକୁହିଁ ଗୁଣାତୀତ କୁହାଯାଏ । ୨୩-୨୫ ।

ବ୍ୟାଖ୍ୟା ସୂଚନା—[୨୨ଠାରୁ ୨୫ ଶ୍ଳୋକ ଏକତ୍ର ବିଚାର କରିବାକୁ ହେବ । ପୂର୍ବେ କୁହାଯାଇଛି, ସତ୍ତ୍ୱ, ରଜ, ତମର ପରିଣାମ ବା ଚିହ୍ନ—ପ୍ରକାଶ, ପ୍ରବୃତ୍ତି ଓ ମୋହ ଯେ ଗୁଣ ତେଇଁ ଯାଇଚି, ତା ଉପରେ ଏ ସବୁର ପ୍ରଭାବ ନାଇ । ଏହାହିଁ କହିବାର ତାତ୍ପର୍ଯ୍ୟ । ପଥର, ପ୍ରକାଶର ଇଚ୍ଛା କରେ ନାଇ, ପ୍ରବୃତ୍ତି ବା ଜଡ଼ତାର ଦ୍ୱେଷ କରେ ନାଇ, ଦେଖିବାକୁ ଏହା ଶାନ୍ତିରେ ଅଛି । ଏହାକୁ ଚଳାଇ ଦେଲେ, ଏ ଦ୍ୱେଷ କରେ ନାଇ; ବନ୍ଦ କରି ଦେଲେ, ଏହାର ପ୍ରବୃତ୍ତି ବା ଗତି ବନ୍ଦ ହେଲା; ଜଡ଼ତା ଆସିଲା; ଏ ବିଚାରରେ ଏ ଦୁଃଖୀ ହୁଏ ନାଇ; ବରଂ ସବୁ ଅବସ୍ଥାରେ ଏକ ସମାନ ଥାଏ । ମାତ୍ର ପଥର ଓ ଗୁଣାତୀତର ପ୍ରଭେଦ ଅଛି । ଗୁଣାତୀତ ପଥର ନୁହେ, ସେ ଚେତନାମୟ ଓ ଜାଣିକରି ସେ ଗୁଣର ପରିଣାମ ସବୁର—ସ୍ପର୍ଶର—ଦ୍ୱେଷ ଓ ଆକାଂକ୍ଷା ତ୍ୟାଗ କରିଚି ଏବଂ ଜଡ଼ ପଥର ପରି ହୋଇଚି । ପଥର ଯେପରି ଗୁଣ ବା ପ୍ରକୃତି କାର୍ଯ୍ୟର ସାକ୍ଷୀ କର୍ତ୍ତା ନୁହେ, ସେହିପରି ଜ୍ଞାନୀ ଅଭିମାନ ଛାଡ଼ି ସେ ସବୁର ସାକ୍ଷୀ ହୋଇଯାଏ, କର୍ତ୍ତା ହୋଇ ରହେ ନା । ଏହିପରି ଜ୍ଞାନୀ ସମ୍ବନ୍ଧରେ କୁହାଯାଇଚି ଯେ, ଗୁଣ ଆପଣା କାମ କରୁଚନ୍ତି ବୋଲି ବୁଝି ସେ ବିଚଳିତ ହୁଏ ନାଇ, ଅଚଳ ରହେ । ଗୁଣରେ ତନ୍ମୟ ଥିବାରୁ ଆମେ ଏ ଅବସ୍ଥା କଳ୍ପନା କରୁଚୁ ସତ, ଅନୁଭବ କରି ପାରୁନାହୁଁ । ପରନ୍ତୁ ଏହି କଳ୍ପନାକୁ ଦୃଷ୍ଟିରେ ରଖି, ଆମେ 'ମୁଁ' ପଣିଆକୁ ଉନ୍ମୂଳନ କମାଇଲେ ଶେଷରେ ଗୁଣାତୀତ ଅବସ୍ଥାର ପାଖେ ପହଞ୍ଚି, ସେହି ଅବସ୍ଥାର ଟିକିଏ ଆଭାସ ପାଇ ପାରିବୁ । ଗୁଣାତୀତ ଆପଣାର ଅବସ୍ଥା ଅନୁଭବ କରି ପାରେ; ତାର ଦର୍ଶନ କରିପାରେ ନାଇ । ଦର୍ଶନ କରିପାରେ ତ ସେ ଗୁଣାତୀତ ନୁହେ; କାହିଁକି ନା, ଏଥିରେ ଅହଂଭାବ ରହିଲା । ଯାହା ଲୋକେ ସହଜରେ ଅନୁଭବ କରିପାରନ୍ତି, ତାହା ପ୍ରକାଶ, ପ୍ରବୃତ୍ତି, ଜଡ଼ତା ବା ମୋହ । ସାତ୍ତ୍ୱିକତା ଏହି ଗୁଣାତୀତ ଅବସ୍ଥାର ପାଖକୁ ପାଖ ଲାଗିଛି ବୋଲି ଗୀତାରେ ଅନେକ ସ୍ଥାନରେ ସ୍ପଷ୍ଟ କୁହାଯାଇଚି । ଏଣୁ ମନୁଷ୍ୟମାତ୍ରର ସତ୍ତ୍ୱଗୁଣ ବିକାଶ କରାଇବା ପାଇଁ ପ୍ରଯତ୍ନ ହୁଏ । ଏଥିରେ ଗୁଣାତୀତ ହେବ ବୋଲି ସେ ବିଶ୍ୱାସ ରଖେ]—ମହାତ୍ମା ଗାନ୍ଧୀ । ୨୩-୨୫ ।

**ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ।**
**ସ ଗୁଣାନ୍ ସମତୀତ୍ୟୈତାନ୍ ବ୍ରହ୍ମଭୂୟାୟ କଳ୍ପତେ ।୨୬।**

**ଅନ୍ୱୟ**—ଯଃ ଚ ମାଂ ଅବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ, ସଃ ଏତାନ୍ ଗୁଣାନ୍ ସମତୀତ୍ୟ ବ୍ରହ୍ମଭୂୟାୟ କଳ୍ପତେ । ୨୬ ।

**ଟୀକା**—[କଥଂ ଗୁଣାନ୍ ଅତିବର୍ତ୍ତତେ ଇତ୍ୟସ୍ୟ ଉତ୍ତରଂ ଆହ]—ଯଃ ଚ ମାଂ (ପରମେଶ୍ୱରଂ) ଅବ୍ୟଭିଚାରେଣ (ଅନନ୍ୟପରତୟା) ଭକ୍ତିଯୋଗେନ ସେବତେ, ସଃ ଏତାନ୍ ଗୁଣାନ୍ ସମତୀତ୍ୟ ବ୍ରହ୍ମଭୂୟାୟ (ବ୍ରହ୍ମଭାବାୟ—ମୋକ୍ଷାୟ) କଳ୍ପତେ (ଯୋଗ୍ୟଃ ଭବତି) । ୨୬ ।

**ଅର୍ଥ**—[ଗୁଣଙ୍କୁ ଲୋକ କପରି ଡେଇଁପାରେ ? ଏହାର ଉତ୍ତର କହୁଚନ୍ତି]—ଯେ ପୁଣି ଜମା ଅନ୍ୟ କୁଆଡ଼େ ମନ ନ ଦେଇ ଭକ୍ତିଯୋଗରେ (ଅର୍ଥାତ୍, ଭକ୍ତିର ସହିତ ସବୁ ପରମେଶ୍ୱରଙ୍କର ବୋଲି କର୍ମସେବାରେ) ମୋତେ (ପରମେଶ୍ୱରଙ୍କୁ) ଭଜେ, ସେ ଏହି ଗୁଣମାନଙ୍କୁ ଡେଇଁ ବ୍ରହ୍ମଭାବ ବା ମୋକ୍ଷକୁ ଯୋଗ୍ୟ ହୁଏ । [ଭକ୍ତିହିଁ ଶ୍ରେଷ୍ଠ ପନ୍ଥା—ପୂର୍ବେ ୧୪.୨୨ ଟୀକା ଦେଖ । ] । ୨୬ ।

**ବ୍ରହ୍ମଣୋ ହି ପ୍ରତିଷ୍ଠାହମମୃତସ୍ୟାବ୍ୟୟସ୍ୟ ଚ ।**
**ଶାଶ୍ୱତସ୍ୟ ଚ ଧର୍ମସ୍ୟ ସୁଖସ୍ୟୈକାନ୍ତିକସ୍ୟ ଚ ।୨୭।**

**ଅନ୍ୱୟ**—ହି ଅହଂ ଅମୃତସ୍ୟ ଅବ୍ୟୟସ୍ୟ ବ୍ରହ୍ମଣଃ ଚ, ଶାଶ୍ୱତସ୍ୟ ଧର୍ମସ୍ୟ ଚ ଐକାଂତିକସ୍ୟ ସୁଖସ୍ୟ ଚ ପ୍ରତିଷ୍ଠା । ୨୭ ।

**ଟୀକା**—ହି ( ଯତଃ ) ( ଅହଂ ଅମୃତସ୍ୟ ମୋକ୍ଷରୂପସ୍ୟ ) ଅବ୍ୟୟସ୍ୟ (ନିତ୍ୟସ୍ୟ, ଅପରିବର୍ତ୍ତିନୀୟସ୍ୟ) ବ୍ରହ୍ମଣଃ ଚ, ଶାଶ୍ୱତସ୍ୟ (ସନାତନସ୍ୟ, ନିତ୍ୟବର୍ତ୍ତମାନସ୍ୟ) ଧର୍ମସ୍ୟ ଚ, (ତଥା) ଐକାନ୍ତିକସ୍ୟ (ଅନବଚ୍ଛିନ୍ନସ୍ୟ) ସୁଖସ୍ୟ (ପରମାନନ୍ଦସ୍ୟ) ପ୍ରତିଷ୍ଠା (ପରମଂ ସ୍ଥାନଂ)—(ବିବିଧଭାବେନ ଉକ୍ତାନି ବିବିଧସାଧନାନି ବା ସର୍ବାଣି ଏତାନି ମୟି ଚରଂ ତିଷ୍ଠନ୍ତି—ଇତି ଭାବଃ) । ୨୭ ।

**ଅର୍ଥ**—କାହିଁକି ନା, ମୁହିଁ ମୋକ୍ଷରୂପ ଅମୃତ ଓ ଅବିନାଶୀ ନିତ୍ୟବ୍ରହ୍ମର, ପୁଣି ନିତ୍ୟବର୍ତ୍ତମାନ ସନାତନ ଧର୍ମ ବା ସ୍ଥିର ବିଶ୍ୱନିୟମର, ତଥା ଏକାନ୍ତ ସୁଖ ବା ପରମାନନ୍ଦର ପରମ ସ୍ଥାନ । (ଅର୍ଥାତ୍, ନାନା ଭାବରେ ନାନା ଉପାୟରେ ମିଳିବ ବୋଲି କୁହାଯାଇଥିବା—ଏସବୁ ମୋଠାରେ ସର୍ବଦା ଅଛନ୍ତି । ମୋତେ ଭଜିଲେ ଜ୍ଞାନ କର୍ମ ଧ୍ୟାନ ଅଭ୍ୟାସାଦି ବାଟରେ ମିଳୁଥିବା ବସ୍ତୁ ସହଜରେ ମିଳିବ) । ୨୭ ।

ବ୍ୟାଖ୍ୟା ସୂଚନା—ଏକାନ୍ତ ସୁଖ=ଦୁଃଖ ତୁଳନାରେ ବୁଝିବା ସୁଖ ନୁହେଁ—ନିତ୍ୟ ସୁଖ । ୮.୩୭ ରେ 'ଦୁଃଖାନ୍ତ' ଦେଖ । ୨୭ ।

———

# ପଞ୍ଚଦଶ ଅଧ୍ୟାୟ

## ପୁରୁଷୋତ୍ତମ-ଯୋଗ

### ଅଧ୍ୟାୟ ପ୍ରବେଶ—

ସମସ୍ତ ଜଗତର ମାୟାଜନିତ ମୋହ ବା ବନ୍ଧ ଅସ୍ଥିର ବିନାଶୀ ବସ୍ତୁର ଜ୍ଞାନ ଛାଡ଼ି ଅବ୍ୟକ୍ତ ଅକ୍ଷର ବ୍ରହ୍ମରେ ମନ ଦେବ । ଏ ସମସ୍ତ ଚରାଚର ଜଗତ ମଧ୍ୟରେ ପୁଣି ଯାହା ସ୍ଥିର ତତ୍ତ୍ୱ, ତାକୁଇ ଧ୍ୟାନରେ ରଖି ନିଷ୍କାମ ହେବ । ଏହିପରି 'କ୍ଷର'ରୁ ଅଲଗା, ପୁଣି କ୍ଷର ମଧ୍ୟରେ, ଅଥଚ କ୍ଷରରୁ ଅତୀତ ଅକ୍ଷର ବ୍ରହ୍ମ କଥା କୁହାଯାଇଛି । ଏହା ସାଂଖ୍ୟମତ ବା ଜ୍ଞାନଯୋଗର ଲକ୍ଷ୍ୟ । ପୁଣି ଭକ୍ତକୁ ସ୍ପଷ୍ଟ କହୁଛନ୍ତି—କାହିଁରୁ ମୁଁ ଅଲଗା ନୁହେଁ, ସବୁ ମୁହିଁ; ସବୁଠି ମତେ ଦେଖ; ମୁହିଁ ଭୂତମହେଶ୍ୱର; ଅକ୍ଷରରେ ମନ ଦେବା କଷ୍ଟ; ମୋର ବ୍ୟକ୍ତ ପୁରୁଷ-ରୂପରେ ଆତ୍ମସମର୍ପଣ କରି କର୍ମ କରି ଯା; ମୁହିଁ ଦେବତା, ଋଷି, ମନୁଷ୍ୟ, ପଶୁ, ପକ୍ଷୀ, ଗ୍ରହ, ତାରା, ଗଛ, ପାହାଡ଼, ନଈ ସବୁ ରୂପରେ ସର୍ବତ୍ର ବିଭୂତି ପ୍ରକାଶ କରୁଛି; ସର୍ବସ୍ରଷ୍ଟା ଓ ପାଳକ ମୁହିଁ । ପୁଣି କାଳର ସର୍ବସଂହାରକ ରୂପ ମୋର ଦେଖ ।

ଅବ୍ୟକ୍ତ ବ୍ରହ୍ମର ପ୍ରତିଷ୍ଠା ମୁହିଁ; ପୁଣି ବିଶ୍ୱଧର୍ମ ବା ବ୍ୟକ୍ତ କର୍ମର ପ୍ରତିଷ୍ଠା ମୁହିଁ—୧୪. ୨୭ । ଏହି ଦୁଇଟି ଅଲଗା କଥା ପରି ଲାଗୁଛି । ନିଷ୍କ୍ରିୟ ଅନିର୍ଦ୍ଦେଶ୍ୟ ଅକ୍ଷରରୁ କ୍ଷର କର୍ମ ପ୍ରବାହକୁ ଆସିବା, ପୁଣି କ୍ଷରରୁ ଅକ୍ଷରକୁ ଯିବା ଅଡୁଆ ଲାଗିପାରେ । ପୁଣି ବି, ସୃଷ୍ଟି ଯେବେ ମାୟାଜାଲ, ତେବେ ସେଥିରେ ସତ୍ୟ କାହିଁ ? ଏ ସବୁ ସ୍ପଷ୍ଟ କରିବା ପାଇଁ ଏହି ଅଧ୍ୟାୟରେ ଭଗବାନ୍ କହୁଛନ୍ତି, ସୃଷ୍ଟିକୁ ମନୁଷ୍ୟ ଯେପରି ବୁଝୁଛି, ତାହା ମାୟାଜନିତ ମୋହ ବା ଗୁଣର ଅହଂବୁଦ୍ଧିଜନିତ ଆବରଣ ହେତୁରୁ ହେଲେହେଁ, ଜଗତର ବହୁତ୍ୱ ମିଥ୍ୟା ନୁହେ ଏହା ପରମେଶ୍ୱରଙ୍କ ସ୍ୱରୂପ । ଏ ଏକ ସ୍ୱରୂପ ହେଲେହେଁ, ଅକ୍ଷର ମଧ୍ୟ ଅନ୍ୟ ସ୍ୱରୂପ । ଟଙ୍କାଟିର ଦୁଇପାଖ ପରି ଏ ଦୁଇଟି ପରମେଶ୍ୱରଙ୍କୁ ଦୁଇଆଡ଼ୁ ଚାହିଁବା କଥା ମାତ୍ର—ଏହା ପରମେଶ୍ୱର ସ୍ୱରୂପର ଦୁଇଟି ବିଭାବ । ପୂର୍ଣ ଟଙ୍କାଟି ଯେପରି ଏ ପାଖ ନୁହେ କି ସେ ପାଖ ନୁହେଁ; ଦୁଇଟିରୁ ଅତୀତ, ଅଥଚ ଦୁଇଟିର ଆଧାର, ସେହିପରି 'କ୍ଷର' ଓ 'ଅକ୍ଷର' ଦୁଇଟି ଏକ ପୁରୁଷ; ମୁଁ ଦୁଇଟିରୁ ଅତୀତ ହେଲେହେଁ କୌଣସିଟିରୁ ଭିନ୍ନ ନୁହେଁ; କୌଣସି ଗୋଟିକୁ ଜାଣିଲେ ବି ମୋ ସମ୍ବନ୍ଧରେ ପୂର୍ଣ ଜ୍ଞାନ ହେଲା ନାଇ । ମୁଁ ପୁରୁଷୋତ୍ତମ । ଏହି କଥା ଏ ଅଧ୍ୟାୟରେ କୁହାଯାଇଛି । ସୃଷ୍ଟିରେ ବିଜ୍ଞାନ ସହିତ ଜ୍ଞାନ ଓ ଦେହରେ କ୍ଷେତ୍ର ସହିତ କ୍ଷେତ୍ରଜ୍ଞ ମୁହିଁ । ଏ ସବୁ ତତ୍ତ୍ୱର ସ୍ପଷ୍ଟ ସମାଧାନ ଏଇଥିରେ ହୋଇଛି ।

କଥାରେ ଯେତେ ବୁଝାଇଲେହେଁ, ପୂର୍ଣ୍ଣ ଭକ୍ତ ଓ ଈଶ୍ୱରରେ ଆତ୍ମସମର୍ପଣ ବିନା ଏହା ଧାରଣା କରି ହେବ ନାହିଁ । ଏହି ପୁରୁଷୋତ୍ତମ ତତ୍ତ୍ୱ ସମସ୍ତ ଗୀତାର ଶ୍ରେଷ୍ଠ ତତ୍ତ୍ୱ । ଏହା ଗୀତାର ଉପଦିଷ୍ଟ ବେଦାନ୍ତର ଜ୍ଞାନକର୍ମାତ୍ମକ ଭକ୍ତି, ବା ଜ୍ଞାନ କର୍ମ ଓ ଭକ୍ତିର ଚରମ ତତ୍ତ୍ୱ ବୁଝିବାରେ କୁଞ୍ଚି ପରି ।

ଅଧ୍ୟାୟର ସଂକ୍ଷେପ ସାର :—ପୂର୍ବ ଅଧ୍ୟାୟ ଶେଷ ଶ୍ଳୋକର ଅବ୍ୟୟ ବ୍ରହ୍ମ ଓ ଶାଶ୍ୱତ ବିଶ୍ୱଧର୍ମ—ଦୁଇ କଥା ମୁହିଁ ଏହା ସ୍ପଷ୍ଟ କରିବାକୁ କହିଲେ ବେଦଶାସ୍ତ୍ରାଦିରେ ବ୍ରହ୍ମଙ୍କୁ ଅଶ୍ୱତ୍ଥ ବୃକ୍ଷ ବୋଲି ବର୍ଣ୍ଣନା କରି କହନ୍ତି, ମୂଳ ଉପରେ, ଶାଖା ତଳେ, ପୁଣି ସାଧାରଣତଃ କୁହାଯାଏ, ଉପରେ ତଳେ ଦୁଇଆଡ଼େ ଶାଖା କର୍ମରୂପେ ମୂଳ ତଳେ ମନୁଷ୍ୟ ଲୋକରେ ବ୍ୟାପିଛି; କିନ୍ତୁ ସେପରି ବୁଝି ହୁଏ ନାହିଁ; ମୂଳ ଅର୍ଥାତ୍ କର୍ମକୁ ଅନାସକ୍ତିରେ ତୁଟାଇ, ଈଶ୍ୱରରେ ଭକ୍ତିହିଁ ପନ୍ଥା; ଏହିପରି ଗୁଣାତୀତ—ମାନେ 'ଅବ୍ୟୟପଦ' ପାଇଥାନ୍ତି । ସେ ଅବ୍ୟୟ ପଦର ଲକ୍ଷଣ କହି ଈଶ୍ୱରାଂଶ ଜୀବ ଯେପରି ଦେହରେ ରହି ବିଷୟ ଭୋଗେ ଓ ଦେହାନ୍ତର ପାଏ, ତା କହିଥାନ୍ତି । ଏହା ଜ୍ଞାନୀମାନେ ଜାଣନ୍ତି । 'ଅକୃତାତ୍ମା'ମାନେ ଜାଣନ୍ତି ନାହିଁ । ଈଶ୍ୱର ସର୍ବଜ୍ଞ ଅଧ୍ୟାତ୍ମତତ୍ତ୍ୱ; ମାତ୍ର 'କ୍ଷର' ତତ୍ତ୍ୱ ଓ 'ଅକ୍ଷର' ତତ୍ତ୍ୱ ଦୁଇଟି **ପୁରୁଷ**; ଦୁଇଟିରୁ ଅତୀତ ମୁଁ **ପୁରୁଷୋତ୍ତମ** । ଏହି ପୁରୁଷୋତ୍ତମ ବୋଲି ଈଶ୍ୱରଙ୍କୁ ଜାଣିଲେ ଭକ୍ତ ପୂର୍ଣ୍ଣ ହୁଏ ଏହା ଗୁହ୍ୟତମ ଶାସ୍ତ୍ର ।

ଶ୍ରୀ ଭଗବାନୁବାଚ

**ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍ ।**
**ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ । ୧ ।**

**ଅନ୍ୱୟ**—ଊର୍ଦ୍ଧ୍ୱମୂଳଂ, ଅଧଃଶାଖଂ ଅବ୍ୟୟଂ, ଅଶ୍ୱତ୍ଥଂ ପ୍ରାହୁଃ ଛନ୍ଦାଂସି ଯସ୍ୟ ପର୍ଣ୍ଣାନି, ତଂ ଯଃ ବେଦ ସଃ ବେଦବିତ୍ । ୧ ।

**ଟୀକା**—[ପୂର୍ବାଧ୍ୟାୟଶେଷଶ୍ଳୋକୋକ୍ତଂ ଅବ୍ୟୟସ୍ୟ ବ୍ରହ୍ମଣଃ, ଶାଶ୍ୱତସ୍ୟ ବିଶ୍ୱଧର୍ମସ୍ୟ ଚ ପ୍ରତିଷ୍ଠା ଅହଂ ଇତି ସମ୍ୟକ୍ ସ୍ପଷ୍ଟଂ ବକ୍ଷ୍ୟନ୍ ବେଦଶାସ୍ତ୍ରୋକ୍ତାଶ୍ୱତ୍ଥବୃକ୍ଷରୂପକେଣ ଜଗଦ୍ବର୍ଣ୍ଣନଂ ସମାରଭମାଣଃ ]—ଶ୍ରୀ ଭଗବାନ୍ ଉବାଚ—[ଇମଂ ସଂସାରଂ ] ଊର୍ଦ୍ଧ୍ୱମୂଳଂ ( ସର୍ବୋପରି ସର୍ବାତୀତେ ପରେ ବ୍ରହ୍ମଣି ଏକଂ ମୂଳଂ ଯସ୍ୟ ତଂ ) ଅଧଃଶାଖଂ (ମର୍ତ୍ତ୍ୟାଦୌ ଦୃଶ୍ୟମାନଜଗତ୍ ବହୁଶାଖାରୂପଂ ଯସ୍ୟ ତଂ) ଅବ୍ୟୟଂ (ଅବିନାଶିନଂ) ଅଶ୍ୱତ୍ଥଂ ( ମହାପିପ୍ପଳବୃକ୍ଷଂ ) ପ୍ରାହୁଃ (କଥୟନ୍ତି) । ଛନ୍ଦାଂସି (କର୍ମାନୁଷ୍ଠାନମୟଚ୍ଛନ୍ଦୋବଦ୍ଧବେଦମନ୍ତ୍ରାଃ—ପୁନଶ୍ଚ ଆଚ୍ଛାଦୟନ୍ତୀତି ଛନ୍ଦାଃ; ଫଳବତ୍କର୍ମଭିଃ ବେଦାଃ ଏତସ୍ୟ ଅବ୍ୟୟସ୍ୟ ଭୂତଭବମୟସ୍ୟ ବୃକ୍ଷସ୍ୟ ସ୍ୱରୂପଂ

ଆଚ୍ଛାଦୟନ୍ତୀତି ରୂପକଯୋଜନା ଗମ୍ୟା) ଯସ୍ୟ [ବୃକ୍ଷସ୍ୟ ଅବ୍ୟୟସ୍ୱରୂପସ୍ୟାଚ୍ଛାଦକାନି] ପର୍ଣାନି [ସନ୍ତି] । ତଂ [ବୃକ୍ଷଂ ଯାଥାର୍ଥ୍ୟେନ] ଯଃ ବେଦ ସଃ [ଏବ] ବେଦବିତ୍ (ବେଦତତ୍ତ୍ୱଜ୍ଞଃ, ବେଦାନ୍ତଜ୍ଞଃ—ନ ତୁ ଯଃ ଯଜ୍ଞକର୍ମକାଣ୍ଡଂ ବେଦେତ୍ୟଭିବଃ) । ୧ ।

**ଅର୍ଥ**—[ପୂର୍ବ ଅଧ୍ୟାୟ ଶେଷ ଶ୍ଳୋକରେ ଭଗବାନ୍ କହିଚନ୍ତି, ଏକ ଅବ୍ୟୟ ବ୍ରହ୍ମ ଓ ବହୁରୂପ ବିଶ୍ୱର ଶାଶ୍ୱତଧର୍ମ—ଦୁଇକଥା ମୋଟିଏ, କିପରି ? ସେହି କଥା ବୁଝାଇବାକୁ ବେଦଶାସ୍ତ୍ରୋକ୍ତ ଅଶ୍ୱତ୍ଥଟିଛି ରୂପକରେ ଆରମ୍ଭ କରି]-ଶ୍ରୀ ଭଗବାନ୍ କହିଲେ—ଉପରେ ସର୍ବୋତ୍ତମ ପରଂବ୍ରହ୍ମର ଏକ ମୂଳ ଓ ତଳେ ବିଶ୍ୱର ପ୍ରକାଶରେ ଶାଖା ଯେଉଁ [ଅକ୍ଷର ଓ ଅଧ୍ୟାତ୍ମରୂପେ]ଅବିନାଶୀ ଅଶ୍ୱତ୍ଥ ଗଛଟିଏ ବୋଲି [ଏହି ସଂସାରକୁ] କହନ୍ତି । ଛନ୍ଦସମୂହ ଏହାର ଗହଳ ପତ୍ର ରୂପେ ଏହାର ସ୍ୱରୂପ ଘୋଡ଼ାଇ ରଖିଚି । ଏହା ଯେ ଜାଣେ ସେହି ଏକା ବେଦ ଠିକ୍ ଜାଣେ—(ଅର୍ଥାତ୍, ଯେ ବେଦର କର୍ମକାଣ୍ଡ ମାତ୍ର ଜାଣେ, ସେ ବେଦ ଠିକ୍ ଜାଣେ ନାହିଁ ) । ୧ ।

ବ୍ୟାଖ୍ୟା ସୂଚନା—ଛନ୍ଦ=କର୍ମକାଣ୍ଡମୟ ବେଦ ବା ବେଦ ମନ୍ତ୍ର; ପୁଣି ଧାତୁଗତ ଅର୍ଥ ଅନୁସାରେ, ଯେ ଆଚ୍ଛାଦନ କରେ ବା ଘୋଡାଇ ପକାଏ—ବେଦର କର୍ମକାଣ୍ଡରେ ଏ ବୃକ୍ଷରୂପୀ ବ୍ରହ୍ମର ସ୍ୱରୂପ ଘୋଡ଼ାଇ ହୋଇଅଛି । ୨.୪୨-୪୬ ଦେଖ । ଏଠାରେ, ବେଦବିତ୍=ଯେ ବେଦାନ୍ତ ଜାଣେ । ୧ ।

ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତାସ୍ତସ୍ୟ ଶାଖା
　　　　ଗୁଣପ୍ରବୃଦ୍ଧା ବିଷୟପ୍ରବାଳାଃ ।
ଅଧଶ୍ଚ ମୂଳାନ୍ୟନୁସନ୍ତତାନି
　　　　କର୍ମାନୁବନ୍ଧୀନି ମନୁଷ୍ୟଲୋକେ । ୨ ।

**ଅନ୍ୱୟ**—ଅଧଃ, ଊର୍ଦ୍ଧ୍ୱଂ ଚ ତସ୍ୟ ଗୁଣପ୍ରବୃଦ୍ଧାଃ ବିଷୟପ୍ରବାଳାଃ ଶାଖାଃ ପ୍ରସୃତାଃ । ଅଧଃ ମନୁଷ୍ୟଲୋକେ ଚ କର୍ମାନୁବନ୍ଧୀନି ମୂଳାନି ଅନୁସନ୍ତତାନି । ୨ ।

**ଟୀକା**—[ କଥଂ ସର୍ବେ ନ ବିଦୁଃ—ଇତ୍ୟାହ ]—ଅଧଃ (ମର୍ତ୍ତ୍ୟେ) ଊର୍ଦ୍ଧ୍ୱଂ (ସ୍ୱର୍ଗେ) ଚ ତସ୍ୟ [ବୃକ୍ଷସ୍ୟ] ଗୁଣପ୍ରବୃଦ୍ଧାଃ (ସତ୍ତ୍ୱାଦିଗୁଣପରିଣାମୈଃ ବର୍ଦ୍ଧିତାଃ) (ଭୋଗରୂପପତ୍ରଯୁକ୍ତାଃ) ଶାଖାଃ ପ୍ରସୃତାଃ (ବିସ୍ତୃତାଃ) ଅଧଃ ମନୁଷ୍ୟଲୋକେ ଚ (ପୁନଃ) କର୍ମାନୁବନ୍ଧୀନି (ଫଳବତ୍ କର୍ମରୂପେଣ ବ୍ୟକ୍ତାନି ) ମୂଳାନି ଅନୁସନ୍ତତାନି (ବହୁବିସ୍ତୃତାନି) [ଇତି ଚ ବଦନ୍ତି] । ୨ ।

**ଅର୍ଥ**—[କାହିଁକି ସମସ୍ତେ ଜାଣିପାରନ୍ତି ନାହିଁ ?—କହୁଛନ୍ତି]—ସତ୍ତ୍ୱାଦିଗୁଣ ଜଡ଼ରେ ବଢ଼ିଥିବା ବିଷୟ ଭୋଗରୂପ ପତ୍ରସବୁ ଯେଉଁ ସେହି ଗଛର ଡ଼ାଳମାନ ତଳେ ମର୍ତ୍ତ୍ୟରେ ଓ ଉପରେ ସ୍ୱର୍ଗାଦି ଲୋକରେ ବ୍ୟାପିଛି । ପୁଣି ତଳେ ମନୁଷ୍ୟ ଲୋକରେ ଫଳ ପାଇବାକୁ କରାଯାଉଥିବା କର୍ମରୂପ ଚେରଯାକ ସନ୍ଧି ସନ୍ଧି ହୋଇ ପଶି ମାଡ଼ିଯାଇଛି । ୨ ।

ବ୍ୟାଖ୍ୟା ସୂଚନା—ସାଧାରଣ ଲୋକେ ଜଗତକୁ ଏହିପରି ଦେଖନ୍ତି ବୋଲି ତତ୍ତ୍ୱ ବୁଝି ପାରନ୍ତି ନାହିଁ । ଏପରି ଯେ ବୁଝନ୍ତି, ସେ ବେଦର କର୍ମକାଣ୍ଡ ହିଁ ବୁଝନ୍ତି ଓ ଯଥାର୍ଥ ବେଦବିତ୍ ବା ବେଦାନ୍ତବିତ୍ ନୁହନ୍ତି । ୨ ।

**ନ ରୂପମସ୍ୟେହ ତଥୋପଲଭ୍ୟତେ**
**ନାନ୍ତୋ ନ ଚାଦିର୍ନ ଚ ସଂପ୍ରତିଷ୍ଠା ।**
**ଅଶ୍ୱତ୍ଥମେନଂ ସୁବିରୂଢ଼ମୂଳ-**
**ମସଙ୍ଗଶସ୍ତ୍ରେଣ ଦୃଢେନ ଛିତ୍ତ୍ୱା । ୩ ।**
**ତତଃ ପଦଂ ତତ୍ ପରିମାର୍ଗିତବ୍ୟଂ**
**ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ ।**
**ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ**
**ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ । ୪ ।**

**ଅନ୍ୱୟ**—ତଥା ଇହ ଅସ୍ୟ ରୂପଂ ନ ଉପଲଭ୍ୟତେ, ନ ଅନ୍ତଃ, ନ ଚ ଆଦିଃ, ନ ଚ ସଂପ୍ରତିଷ୍ଠା । [ତତଃ] ସୁବିରୂଢ଼ମୂଳଂ ଏନଂ ଅଶ୍ୱତ୍ଥଂ ଦୃଢେନ ଅସଙ୍ଗଶସ୍ତ୍ରେଣ ଛିତ୍ତ୍ୱା, ତତଃ ଯସ୍ମିନ୍ ଗତାଃ ଭୂୟଃ ନ ନିବର୍ତ୍ତନ୍ତି, ତତ୍ ପଦଂ, ଯତଃ ପୁରାଣୀ ପ୍ରବୃତ୍ତିଃ ପ୍ରସୃତା, ତଂ ଏବ ଚ ଆଦ୍ୟଂ ପୁରୁଷଂ ପ୍ରପଦ୍ୟେ [ଇତି] ପରିମାର୍ଗିତବ୍ୟଂ ।୩-୪ ।

**ଟୀକା**—[କିଂଚ] ତଥା (ଏବଂ ଦୃଷ୍ଟ୍ୟା) ଇହ (ମନୁଷ୍ୟଲୋକେ) ଅସ୍ୟ ରୂପଂ ନ ଉପଲଭ୍ୟତେ (ବୁଧ୍ୟତେ)—ନ ଅନ୍ତଃ, ନ ଚ ଆଦିଃ, ନ ଚ ସଂପ୍ରତିଷ୍ଠା (ସ୍ଥିତିଃ) [ଉପଲଭ୍ୟତେ] । ତତଃ [କର୍ମାନୁବନ୍ଧବାସନାଦିଭିଃ] ସୁବିରୂଢ଼ମୂଳଂ (ଅତି ଦୂରଗତଦୃଢ଼ମୂଳଂ) ଏବଂ [ସଂସାରବନ୍ଧରୂପଂ] ଅଶ୍ୱତ୍ଥଂ ଦୃଢେନ (ନିଶ୍ଚିତଧାରେଣ) ଅସଙ୍ଗଶସ୍ତ୍ରେଣ (ଅନାସକ୍ତିରୂପଖଡ୍ଗେନ) ଛିତ୍ତ୍ୱା (ବିନିଶ୍ଚିତବୁଦ୍ଧ୍ୟା ଫଳେ ଅନାସକ୍ତଃ ସନ୍ କର୍ମବନ୍ଧନଂ ବିହାୟ ଇତ୍ୟର୍ଥଃ) ତତଃ (ତଦନନ୍ତରଂ) ଯସ୍ମିନ୍ ଗତାଃ

[ସନ୍ତଃ ଜନାଃ] ଭୂୟଃ (ପୁନଃ) ନ ନିବର୍ତ୍ତନ୍ତି (ନିବର୍ତ୍ତନ୍ତେ) ତତ୍ [ବ୍ରହ୍ମଣଃ] ପଦଂ (ସ୍ଥାନଂ)—ଯତଃ (ଯସ୍ମାତ୍ କାରଣଭୂତାତ୍ ମୂଳଭୂତାତ୍ ବା) ପୁରାଣୀ (ପୁରାତନୀ) [ଇୟଂ ସଂସାରସ୍ୟ] ପ୍ରବୃତ୍ତିଃ (ପ୍ରବର୍ତ୍ତନଂ) ପ୍ରସୃତା (ବିତତା) ତଂ ଏବ ଆଦ୍ୟଂ ପୁରୁଷଂ ପ୍ରପଦ୍ୟେ (ଶରଣଂ ଗଚ୍ଛାମି) [ଇତି] ପରିମାର୍ଗିତବ୍ୟଂ (ଅନ୍ୱେଷ୍ଟବ୍ୟଂ, ଉପାସିତବ୍ୟମ୍) । ୩-୪ ।

**ଅର୍ଥ**—ସେପରି ବୁଝିଲେ କିନ୍ତୁ ଏ ମନୁଷ୍ୟଲୋକରେ ଏହାର ସ୍ୱରୂପ, ଅର୍ଥାତ୍, ଅନ୍ତ କି ଆଦି କି ସ୍ଥିତି କିଛି ବୁଝାପଡ଼େ ନାହିଁ । କର୍ମବାସନାଦି ରୂପରେ ଅତି ଗମ୍ଭୀରକୁ ଚେର ମାଡ଼ିଥିବା ଏହି ସଂସାରବନ୍ଧନ ରୂପ ଅଶ୍ୱତ୍‌ଥକୁ ଖୁବ୍ ଟାଣୁଆ ଅନାସକ୍ତି ରୂପ ହତିଆରରେ କାଟି, (ଅର୍ଥାତ୍, ନିଶ୍ଚିତ ବିବେକରେ ବିଷୟରେ ଅନାସକ୍ତ ଧରି କାମନା ବାସନା ଆଦି ତୁଟାଇ), ଯେଉଁଠାକୁ ଗଲେ ଆଉ ଜନ୍ମ ହେବାକୁ ଫେରନ୍ତି ନାହିଁ, ସେହି ପରଂବ୍ରହ୍ମ ପଦକୁ—ଯାହାଙ୍କଠୁଁ ପୁଣି ଏହି ଅନାଦି ସୃଷ୍ଟି କର୍ମ ପ୍ରବୃତ୍ତି ବ୍ୟାପିଛି, ସେହି ଆଦ୍ୟପୁରୁଷଙ୍କୁ ଭଜୁଛି ବୋଲି ଉପାସନାରେ ଖୋଜିବା ଉଚିତ । ୩-୪ ।

ବ୍ୟାଖ୍ୟା ସୂଚନା—ଏହି ପୁରୁଷର ଭକ୍ତିରେ ଏକ ଆଡ଼େ ସେହି ଅବ୍ୟୟପଦ, ଯେଉଁଠାକୁ ଗଲେ ଫେରନ୍ତି ନାହିଁ, ପୁଣି ଅନ୍ୟ ଆଡ଼େ ସେହିଥିରୁ ଅନାଦି ବିଶ୍ୱକର୍ମ ବାହାରି ବ୍ୟାପିଛି । ଏ ଦୁଇଟି ବିଭାଗ ମନେ ରଖିବାକୁ ହେବ । ପ୍ରଥମ ଶ୍ଳୋକରେ ବେଦାନ୍ତର ତତ୍ତ୍ୱଜ୍ଞାନ କହିଲେ; ଦ୍ୱିତୀୟ ଶ୍ଳୋକରେ ସଂସାର ସମ୍ବନ୍ଧରେ ବେଦ ଉପାସକମାନଙ୍କର ସାଧାରଣ ଧାରଣା କହି ସାରି, ଏବେ ତୃତୀୟ ଓ ଚତୁର୍ଥ ଶ୍ଳୋକରେ କହୁଛନ୍ତି, ଏପରି ବୁଝିଲେ ହେବ ନାହିଁ—ପୂର୍ଣ୍ଣ ଭକ୍ତିରେ ଅନାସକ୍ତ କର୍ମରେ ରହି ସେହି ପୁରୁଷୋତ୍ତମଙ୍କୁ ଖୋଜିବାକୁ ହେବ । ୩-୪ ।

ନିର୍ମାନମୋହା ଜିତସଙ୍ଗଦୋଷା
　　ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।
ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖଦୁଃଖସଂଜ୍ଞୈ-
　　ର୍ଗଚ୍ଛନ୍ତ୍ୟମୂଢ଼ାଃ ପଦମବ୍ୟୟଂ ତତ୍ । ୫ ।

**ଅନ୍ୱୟ**—ନିର୍ମାନମୋହାଃ, ଜିତସଙ୍ଗଦୋଷାଃ, ଅଧ୍ୟାତ୍ମନିତ୍ୟାଃ, ବିନିବୃତ୍ତକାମାଃ, ସୁଖଦୁଃଖ-ସଂଜ୍ଞୈଃ ଦ୍ୱନ୍ଦ୍ୱୈଃ ବିମୁକ୍ତାଃ ଅମୂଢ଼ାଃ ତତ୍ ଅବ୍ୟୟଂ ପଦଂ ଗଚ୍ଛନ୍ତି । ୫ ।

**ଟୀକା**—ନିର୍ମାନମୋହାଃ (ମାନମୋହବର୍ଜିତାଃ) ଜିତସଙ୍ଗଦୋଷାଃ (ଆସକ୍ତି-ଦୋଷରହିତାଃ) ଅଧ୍ୟାତ୍ମନିତ୍ୟାଃ (ଅଧ୍ୟାତ୍ମବିଷୟେ ନିତ୍ୟନିଷ୍ଠାଃ)

ବିନିବୃତ୍ତକାମାଃ (ସର୍ବତୋଭାବେନ କାମନାରହିତାଃ ସୁଖଦୁଃଖସଂଜ୍ଞୈଃ) (ସୁଖଦୁଃଖାଦି-ନାମକୈଃ ଶିତୋଷ୍ଣାଦିଧର୍ମୋପପନ୍ନୈଃ) ଦ୍ୱନ୍ଦ୍ୱୈଃ (ଯୁଗ୍ମକୈଃ) ବିମୁକ୍ତାଃ ଅମୂଢ଼ାଃ (ବିବେକିନଃ) ତତ୍ ଅବ୍ୟୟଂ ପଦଂ ଗଚ୍ଛନ୍ତି । ୫ ।

**ଅର୍ଥ**—[ବ୍ୟକ୍ତି କର୍ମରେ ଅନାସକ୍ତ ହୋଇ, ଅଧ୍ୟାତ୍ମ ଭଜି, ସେହି ଅବ୍ୟକ୍ତ ଅକ୍ଷର ପାଇବା କଥା ଭଲ କରି କହୁଛନ୍ତି]—ଯାହାଙ୍କର 'ଆମେ' ବୋଲି ଅଭିମାନ ତଥା ସ୍ୱଜନ କୁଟୁମ୍ବାଦି ମୋହ ନ ଥାଏ, କର୍ମ ବା ପ୍ରିୟବସ୍ତୁରେ ଆସକ୍ତ ହେଲେ ଯେ ଦୋଷ ହୁଏ, ତାକୁ ଯେ ଜାଣିଥାନ୍ତି, ଯେ ବ୍ୟକ୍ତିର ଅଧ୍ୟାତ୍ମରେ ସବୁବେଳେ ନିଷ୍ଠା କରିଥାନ୍ତି, ଯାହାଙ୍କର ଫଳସ୍ପୃହା ବରାବର ତୁଟି ଯାଇଚି, ସେ ସୁଖଦୁଃଖାଦି ଦ୍ୱନ୍ଦ୍ୱ-ମାନଙ୍କରୁ ମୁକ୍ତ, ସେହି ବିବେକୀମାନେ ସେ ଅବ୍ୟୟ ପଦକୁ ପାଆନ୍ତି । ୫ ।

**ନ ତଦ୍‌ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ ।**
**ଯଦ୍‌ ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ । ୬ ।**

**ଅନ୍ୱୟ**—ନ ସୂର୍ଯ୍ୟଃ, ନ ଶଶାଙ୍କଃ, ନ ପାବକଃ, ତତ୍ ଭାସୟତେ । ଯଦ୍ ଗତ୍ୱା ନ ନିବର୍ତ୍ତନ୍ତେ ତତ୍ ମମ ପରମଂ ଧାମ । ୬ ।

**ଟୀକା**—[ ତତ୍ ଅବ୍ୟୟଂ ପଦଂ ବର୍ଣ୍ଣୟତି ]—ନ ସୂର୍ଯ୍ୟଃ, ନ ଶଶାଙ୍କଃ, [ଚ] ପାବକଃ, ତତ୍ ଭାସୟତେ (ପ୍ରକାଶୟତି—ସୂର୍ଯ୍ୟଚନ୍ଦ୍ରାଗ୍ନ୍ୟାଦୀନାଂ ଉପାସନାସ୍ତା ତତ୍‌ପ୍ରାପ୍ତିସାଧନା ନିଷ୍ଫଳା—ଇତି ଗୂଢ଼ାଭିପ୍ରାୟଃ) । ଯତ୍ ଗତ୍ୱା [ଜନାଃ] ନ ନିବର୍ତ୍ତନ୍ତେ (ପୁନରାଗଚ୍ଛନ୍ତି), ତତ୍ ମମ ପରମଂ ଧାମ (ତେଜଃ—ସ୍ଥାନଂ, ପଦଂ ବା) । ୬ ।

**ଅର୍ଥ**—[ସେହି ଅବ୍ୟୟପଦ ବର୍ଣ୍ଣନ କରୁଛନ୍ତି]—ସୂର୍ଯ୍ୟ, କି ଚନ୍ଦ୍ର, କି ଅଗ୍ନି କେହି ତାକୁ ନିଜ ନିଜ କିରଣରେ ଜଗତର ବସ୍ତୁପରି ଦେଖାଇ ପାରନ୍ତି ନାହିଁ । ଯେଉଁଠାକୁ ଗଲେ ଲୋକେ ଆଉ ଫେରନ୍ତି ନାହିଁ । (ଅର୍ଥାତ୍, ଆଉ ଜନ୍ମ ପାଆନ୍ତି ନାହିଁ) ସେହି ମୋର ପରମ ତେଜ (କିଂବା ସ୍ଥାନ—ଅର୍ଥାତ୍, ସେହି ପରଂବ୍ରହ୍ମ) । ୬ ।

ବ୍ୟାଖ୍ୟା ସୂଚନା—ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତିର ଉପାସନାରେ ମୁଁ ମିଳେ ନାହିଁ, ଏ ଅଭିପ୍ରାୟ ବି ଏଠାରେ ଅଛି । ୬ ।

**ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।**
**ମନଃଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି । ୭ ।**

**ଅନ୍ୱୟ**—ସନାତନଃ ମମ ଏବଂ ଅଂଶଃ ଜୀବଲୋକେ ଜୀବଭୂତଃ ପ୍ରକୃତିସ୍ଥାନି ମନଃଷଷ୍ଠାନି ଇନ୍ଦ୍ରିୟାଣି କର୍ଷତି । ୭ ।

**ଟୀକା**—[ତତଃ ବ୍ୟକ୍ତାକ୍ଷରସ୍ୟ 'ସ୍ୱଭାବ' ଅଧ୍ୟାତ୍ମଭୂତସ୍ୟାଧ୍ୟାତ୍ମଭାବଂ ବକ୍ତୁମାରଭ୍ୟ ତଦାଦୌ ଜୀବଭୂତବ୍ୟକ୍ତସ୍ୟ ସ୍ୱରୂପଂ ଆହ]—ସନାତନଃ (ନିତ୍ୟଃ, ନିତ୍ୟଜାତଃ ବା)

ମମ ଏବ ଅଂଶଃ ଜୀବଲୋକେ ଜୀବଭୂତଃ (ଜୀବଭାବଂ ପ୍ରାପ୍ତଃ) [ସନ୍] ପ୍ରକୃତିସ୍ଥାନି (ଅପରାପ୍ରକୃତିଗତାନି—ନ ତୁ ତତ୍ତ୍ୱତଃ ଆତ୍ମୋପାଧିଭୂତାନି ଇତି ଭାବଃ) ମନଃଷଷ୍ଠାନି (ମନଃ ଷଷ୍ଠଂ ଯେଷାଂ ତାନି ପଞ୍ଚ) ଇନ୍ଦ୍ରିୟାଣି (ଚକ୍ଷୁରାଦୀନି ସମନସ୍କାନି ବୁଦ୍ଧୀନ୍ଦ୍ରିୟାଣୀତି ଭାବଃ) କର୍ଷତି (ସ୍ୱଂ ପ୍ରତି ଆକର୍ଷତି)—[ଜୀବସ୍ୟ ମନ ଇନ୍ଦ୍ରିୟାଣାଂ ସଂସର୍ଗାତ୍ ସୂକ୍ଷ୍ମଶରୀରଂ ଇଦଂ] । ୭ ।

**ଅର୍ଥ**—[ତାହୁଁ ବ୍ୟକ୍ତ 'କ୍ଷର'ର ସ୍ୱଭାବ ନିଜତ୍ୱ ବା ତତ୍ତ୍ୱ—ଅର୍ଥାତ୍, ସଜୀବ, ନିର୍ଜୀବ ଦୁଇ ପ୍ରକାରରେ ବ୍ୟକ୍ତ ଅଧିଭୂତର 'ଅଧ୍ୟାତ୍ମ'ଭାବ—୮.୩,୪ ଦେଖ—ବା ପ୍ରାଣୀଠାରେ ଜୀବ ରୂପେ ଓ ଭୂତ ମାତ୍ରରେ ବି ଆଧାର ବା ସ୍ୱଭାବ ରୂପେ ଥିବା ତତ୍ତ୍ୱର ସ୍ୱରୂପ—୭.୪,୫ ଦେଖ—କହିବାକୁ ଯାଇ ଆଗ (୧) ସଜୀବ ବ୍ୟକ୍ତର ସ୍ୱରୂପ କହୁଛନ୍ତି—ମୋର ନିତ୍ୟସ୍ୱରୂପର ଅଂଶ (ପରା ପ୍ରକୃତିର କଳା) ଏ ଜୀବ-ଲୋକରେ ଜୀବରୂପ ହୋଇ ଗୁଣମୟୀ ଅପରା ପ୍ରକୃତିରେ ଥିବା ମନ ଓ ଚକ୍ଷୁ ପ୍ରଭୃତି ପାଞ୍ଚବୁଦ୍ଧି ଇନ୍ଦ୍ରିୟକୁ ଆପଣା ଆଡ଼କୁ ଟାଣେ (ତାଙ୍କୁ ଆକର୍ଷି କରି ଧରେ) । ୭ ।

ବ୍ୟାଖ୍ୟା ସୂଚନା—ଏହି ଇନ୍ଦ୍ରିୟ ମନର ସମ୍ଭବତ୍ୱ ଜୀବର ଶରୀରକୁ ସୂକ୍ଷ୍ମଶରୀର କହନ୍ତି । ସ୍ଥୂଳଶରୀର ହେଉଚି ଏହି ଦେଖାଯାଉଥିବା ଦେହ । ୭ ।

**ଶରୀରଂ ଯଦବାପ୍ନୋତି ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ ।**
**ଗୃହୀତ୍ୱୈତାନି ସଂଯାତି ବାୟୁର୍ଗନ୍ଧାନିବାଶୟାତ୍ । ୮ ।**

**ଅନ୍ୱୟ**—ଈଶ୍ୱରଃ ଯତ୍ ଚ ଅପି ଶରୀରଂ ଉତ୍କ୍ରାମତି ଯଦ୍ୱା ଶରୀରଂ ଅବାପ୍ନୋତି, ବାୟୁଃ ଆଶୟାତ୍ ଗଂଧାନ୍ ଇବ ଏତାନି ଗୃହୀତ୍ୱା ସଂଯାତି । ୮ ।

**ଟୀକା**—[ଏବଂ ଜୀବଭୂତଃ] ଈଶ୍ୱରଃ ଯତ୍ ଚ ଅପି ଶରୀରଂ ଉତ୍କ୍ରାମତି (ତ୍ୟକ୍ତ୍ୱା ଗଚ୍ଛତି), [ତସ୍ମାତ୍ ଉକ୍ତଂ ମନଇନ୍ଦ୍ରିୟାତ୍ମକଂ ସୂକ୍ଷ୍ମଶରୀରଂ ଆକୃଷ୍ୟ] ଯଦା ଶରୀରଂ ଅବାପ୍ନୋତି (ପୁନଃ ଗଚ୍ଛତି) [ତଦା] ବାୟୁଃ ଆଶୟାତ୍ (ପୁଷ୍ପାଦେଃ ଅଧାରାତ୍) ଗନ୍ଧାନ୍ ଇବ ଏତାନି (ମନଇନ୍ଦ୍ରିୟାଣି) ଗୃହୀତ୍ୱା ସଂଯାତି । ୮ ।

**ଅର୍ଥ**—[ଏହିପରି, ଏହି ଜୀବରୂପୀ] ଈଶ୍ୱର ଯେଉଁ ଶରୀର ବି ଛାଡନ୍ତି, [ସେଥିରୁ ସୂକ୍ଷ୍ମରୁ ଶରୀର ରୂପରେ] ଏହି ଇନ୍ଦ୍ରିୟମାନଙ୍କୁ ଘେନି ଫୁଲରୁ ପବନ ଗନ୍ଧ ଘେନି ଉଡ଼ିଗଲା ପରି ଯାଆନ୍ତି, ପୁଣି ବା ଯେଉଁ ଶରୀରକୁ ଧରନ୍ତି ସେଥିରେ ସେହିପରି ସୂକ୍ଷ୍ମ ଶରୀର ଘେନି ଯାଇ ପଶନ୍ତି । ୮ ।

**ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ ରସନଂ ଘ୍ରାଣମେବ ଚ ।**
**ଅଧିଷ୍ଠାୟ ମନଶ୍ଚାୟଂ ବିଷୟାନୁପସେବତେ । ୯ ।**

**ଅନ୍ୱୟ**—ଅୟଂ ଶ୍ରୋତ୍ରଂ, ଚକ୍ଷୁଃ, ସ୍ପର୍ଶନଂ ଚ ରସନଂ, ଘ୍ରାଣଂ ଏବ ଚ ମନଃ ଅଧିଷ୍ଠାୟ ବିଷୟାନ୍ ଉପସେବତେ । ୯ ।

**ଟୀକା**—[ତତ୍ର ପ୍ରାପ୍ତଶରୀରେ] ଅୟଂ [ଜୀବଃ, ଏତେନ ସୂକ୍ଷ୍ମଶରୀରେଣ] ଶ୍ରୋତ୍ରଂ (କର୍ଣ୍ଣଂ), ଚକ୍ଷୁଃ, ସ୍ପର୍ଶନଂ (ତ୍ୱକ୍) ଚ ରସନଂ (ଜିହ୍ୱାଂ) ଘ୍ରାଣଂ (ନାସିକାଂ) ଏବ ଚ ମନଃ (ଏତାନି ସ୍ଥୂଳେନ୍ଦ୍ରିୟାଣୀତି ଭାବଃ) ଅଧିଷ୍ଠାୟ [କ୍ରମେଣ ଶବ୍ଦରୂପାଦୀନ୍] ବିଷୟାନ୍ ଉପସେବତେ (ଉପଭୁଂକ୍ତେ) । ୯ ।

**ଅର୍ଥ**—[ସେହି ନୂତନ ଶରୀରରେ] ଏହି ଜୀବ [ସଙ୍ଗେ ଅଣିଥିବା ସୂକ୍ଷ୍ମ ଶରୀର ଦ୍ୱାରା] କାନ, ଆଖି, ଚମ, ଜିଭ ପୁଣି ନାକ ଆଉ ମନକୁ ମାଡ଼ିବସି ଶବ୍ଦ-ରୂପ ଆଦି ବିଷୟମାନଙ୍କୁ ଭୋଗ କରେ । ୯ ।

ବ୍ୟାଖ୍ୟା ସୂଚନା—ଏ ଇନ୍ଦ୍ରିୟ ବିଷୟ ସବୁ ଗୁଣମାନଙ୍କର ବିକାଶ । ଏହି ଗୁଣମାନଙ୍କର ମୂଳତତ୍ତ୍ୱ 'ଦୈବୀମାୟା' । ଏ ମାୟା କଣ ତା କହି ବୁଝାଇ ହେବନାହିଁ । ତଥାପି ଏହା ଅସତ୍ ବା ମିଥ୍ୟା ନୁହେ । ଏହା ଈଶ୍ୱରଙ୍କ ଅପରା ପ୍ରକୃତି ରୂପ ଆଚରଣ ବା ଅତି ସୂକ୍ଷ୍ମ ଶରୀର ପରି ପ୍ରକାଶ ପାଏ ଓ କ୍ରମେ ପରା ପ୍ରକୃତିକୁ ମୋହରେ ଘୋଡ଼ାଇ ପକାଏ, ଅର୍ଥାତ୍, ଇନ୍ଦ୍ରିୟାଦିଦ୍ୱାର ଛଡ଼ା ଅନ୍ୟ ବାଟେ କିଛୁ ଦେଖାଇ ହୁଏ ନାହିଁ । ସେଥିପାଇଁ ଭିତରର ଆତ୍ମା ବାଟେ ଦେଖିଲେ ପରଂବ୍ରହ୍ମ ଦିଶେ । ତାହା ପର ଦୁଇ ଶ୍ଲୋକରେ କହୁଛନ୍ତି ।

[ଏଠାରେ ବିଷୟ ବୋଇଲେ ଖରାପ ବିଳାସ ନୁହେ—ସେହିସବୁ ଇନ୍ଦ୍ରିୟର ସ୍ୱାଭାବିକ କ୍ରିୟାମାତ୍ର । ଯେପରି କି ଆଖିରେ ଦେଖିବା, ଜିଭରେ ଚାଖିବା ପ୍ରଭୃତି । ଏହିସବୁ କ୍ରିୟାରେ ବିକାର ବା ଅହଂଭାବ ପଶିଲେ, ଦୂଷିତ ହୋଇ ଖରାପ ହୋଇଯାଏ । ବିକାର ନ ଥିଲେ ଏସବୁ ନିର୍ଦ୍ଦୋଷ । କପରି ବିଷୟ ଭୋଗ କରି ମଧ୍ୟ ବିକାର ନଥାଏ, ତାହା ତଳ ଶ୍ଳୋକରେ କହୁଛନ୍ତି—ମହାତ୍ମା ଗାନ୍ଧୀ] । ୯ ।

**ଉତ୍କ୍ରାମନ୍ତଂ ସ୍ଥିତଂ ବାପି ଭୁଞ୍ଜାନଂ ବା ଗୁଣାନ୍ୱିତମ୍ ।**
**ବିମୂଢା ନାନୁପଶ୍ୟନ୍ତି ପଶ୍ୟନ୍ତି ଜ୍ଞାନଚକ୍ଷୁଷଃ । ୧୦ ।**

**ଅନ୍ୱୟ**—ଉତ୍କ୍ରାମନ୍ତଂ, ଗୁଣାନ୍ୱିତଂ ବା ଭୁଂଜାନଂ ସ୍ଥିତଂ ବା ଅପି ବିମୂଢ଼ାଃ ନ ଅନୁପଶ୍ୟନ୍ତି, ଜ୍ଞାନଚକ୍ଷୁଷଃ ପଶ୍ୟନ୍ତି । ୧୦ ।

**ଟୀକା**—[ଏବଂ ଦୃଷ୍ଟ ଶରୀରେଣ ସହ]—ଉତ୍କ୍ରାମନ୍ତଂ, ଗୁଣାନ୍ୱିତଂ [ସନ୍ତଂ] ଭୁଞ୍ଜାନଂ ସ୍ଥିତଂ ବା ଅପି [ଇମଂ ଈଶ୍ୱରାଂଶଂ ଜୀବଂ] ବିମୂଢ଼ାଃ (ଅବିବେକିନଃ, ଅନାତ୍ମ-ଦର୍ଶିନଃ) ନ ଅନୁପଶ୍ୟନ୍ତି (ଉତ୍କ୍ରମଣାଦନୁପଶ୍ୟାତ୍—ଏତାନି ଆବରଣାନି ବିଦ୍ଧ୍ୟା ବା

ବିମଳଂ ଅଧ୍ୟାତ୍ମପୁରୁଷଂ ନ ପଶ୍ୟନ୍ତି ଇତି ଅନୁଶବ୍ଦସ୍ୟ ତତ୍ପର୍ଯ୍ୟଂ), ଜ୍ଞାନଚକ୍ଷୁଷଃ (ଅଧ୍ୟାତ୍ମ ଜ୍ଞାନରୂପଚକ୍ଷୁ ଷ୍ମନ୍ତଃ) ପଶ୍ୟନ୍ତି । ୧୦ ।

**ଅର୍ଥ**—[ଏହିପରି ସୂକ୍ଷ୍ମଶରୀର ଯେଉଁ ସ୍ଥୂଳ ଦେହ ଗୁଡ଼ି] ଯାଉଥିବା, ଅଥବା ଗୁଣଯୁକ୍ତ ହୋଇ ଭୋଗରେ ଲାଗି ରହିଥିବା ଏହି ଈଶ୍ୱରାଂଶ ଜୀବରୂପ ପୁରୁଷଙ୍କୁ ଅଜ୍ଞାନୀମାନେ ଫେଡ଼ି ଦେଖିପାରନ୍ତି ନାହିଁ; ମାତ୍ର ଅଧ୍ୟାତ୍ମଜ୍ଞାନ ଯାହାଙ୍କର ଥାଏ, ସେମାନେ ସେହି ଜ୍ଞାନର ଅନ୍ତର୍ଦୃଷ୍ଟିରେ ଦେଖନ୍ତି । ୧୦ ।

**ଯତନ୍ତୋ ଯୋଗିନଶ୍ଚୈନଂ ପଶ୍ୟନ୍ତ୍ୟାତ୍ମନ୍ୟବସ୍ଥିତମ୍ ।**
**ଯତନ୍ତୋଽପ୍ୟକୃତାତ୍ମାନୋ ନୈନଂ ପଶ୍ୟନ୍ତ୍ୟଚେତସଃ ।୧୧।**

**ଅନ୍ୱୟ**—ଯତନ୍ତଃ ଯୋଗିନଃ ଏନଂ ଆତ୍ମନି ଅବସ୍ଥିତଂ ପଶ୍ୟନ୍ତି ଅକୃତାତ୍ମାନଃ ଅଚେତସଃ ଯତନ୍ତଃ ଅପି ଏନଂ ନ ପଶ୍ୟନ୍ତି । ୧୧ ।

**ଟୀକା**—[କଥଂ ପଶ୍ୟନ୍ତି ନ ବା ପଶ୍ୟନ୍ତି ଇତି ଅହ]—ଯତନ୍ତଃ ( ଯତ୍ନଂ କୁର୍ବନ୍ତଃ, ଆତ୍ମାନଂ ସର୍ବକର୍ମଣି ଈଶ୍ୱରାଭିମୁଖଂ କୁର୍ବନ୍ତଃ ଇତ୍ୟଭିପ୍ରାୟଃ) ଯୋଗିନଃ ( ଏକନିଷ୍ଠାଃ କର୍ମପରାଃ ଜନାଃ ) ଏନଂ [ଜୀବରୂପଂ ଈଶ୍ୱରଂ] ଆତ୍ମନି ( ସ୍ୱାନ୍ତରେ ) ଅବସ୍ଥିତଂ ପଶ୍ୟନ୍ତି । ଅକୃତାତ୍ମାନଃ (ତଦର୍ଥମବହିତାତ୍ମାନଃ) ଅଚେତସଃ (ଜ୍ଞାନାଦ-ଦର୍ପେଣ ବିଗତାତ୍ମଚୈତନ୍ୟାଃ) ଯତନ୍ତଃ ଅପି ଏନଂ ନ ପଶ୍ୟନ୍ତି । ୧୧ ।

**ଅର୍ଥ**—[କିପରି ଦେଖନ୍ତି, ପୁଣି ନ ଦେଖନ୍ତି ବୋଲି କହୁଛନ୍ତି]—ଆପଣାକୁ ଈଶ୍ୱର ଆଡ଼କୁ କରି ଯତ୍ନ କରୁଥିବା ଯୋଗୀମାନେ ଏହି ଜୀବରୂପ ଈଶ୍ୱରଙ୍କୁ ଆପଣା ଭିତରେ ଥିବାର ଦେଖନ୍ତି । ଜ୍ଞାନଗର୍ବାଦରେ ଚୈତନ୍ୟ ହରାଇ ବା ଅସ୍ଥିର ହୋଇ ଆତ୍ମାଙ୍କୁ ସେଥିପାଇଁ ତିଆରି ନ କରି ଯେତେ ଲାଗିଲେ ଲୋକେ ଏହାଙ୍କୁ ଦେଖିପାରନ୍ତି ନାହିଁ । ୧୧ ।

ବ୍ୟାଖ୍ୟା ସୂଚନା—ଅକୃତାତ୍ମା = ଯେ ଈଶ୍ୱରଙ୍କୁ ଦେଖିବା ପାଇଁ ବା ମୋକ୍ଷପାଇଁ ଆତ୍ମାକୁ ତିଆରି କରି ନ ଥାଏ । ଦେଖ—'ବିଧେୟାତ୍ମ' ୨.୬୪, 'ଅକୃତବୁଦ୍ଧି' ୧୮.୧୬ ।

[ ୯.୩୦ ରେ ଦୁରାଚାର ପାଇଁ ଭଗବାନ୍ ଯେ କଥା ଦେଇଛନ୍ତି, ଏ ଶ୍ଳୋକ ତାର ବିରୋଧୀ ନୁହେ । ଅକୃତାତ୍ମା ବୋଇଲେ ଭକ୍ତିହୀନ ସ୍ୱେଚ୍ଛାଚାରୀ । ଯେ ନମ୍ରତା ଓ ଶ୍ରଦ୍ଧାରେ ଈଶ୍ୱରଙ୍କୁ ଭଜେ, ସେ ଆତ୍ମଶୁଦ୍ଧି ହୋଇ ଈଶ୍ୱରଙ୍କୁ ପାଏ । ଯେ ଯମ ନିୟମ ପ୍ରଭୃତିକୁ ଖାତିର ନ କରି ଖାଲି ବୁଦ୍ଧିପ୍ରୟୋଗରେ ଈଶ୍ୱରଙ୍କୁ ପାଇବ ବୋଲି ଲୋଡ଼େ, ସେ ଅଚେତା—ହୃଦୟଶୂନ୍ୟ; ଅତଏବ ଈଶ୍ୱରଙ୍କୁ ପାଏ ନାହିଁ—ମହାତ୍ମା ଗାନ୍ଧୀ ] । ୧୧ ।

**ଯଦାଦିତ୍ୟଗତଂ ତେଜୋ ଜଗଦ୍ଭାସୟତେଽଖିଳମ୍ ।**
**ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକମ୍ ।୧୨।**

**ଅନ୍ୱୟ**—ଆଦିତ୍ୟଗତଂ ଯତ୍ ତେଜଃ ଅଖିଳଂ ଜଗତ୍ ଭାସୟତେ, ଯତ୍ ଚନ୍ଦ୍ରମସି, ଯତ୍ ଚ ଅଗ୍ନୌ, ତତ୍ ମାମକଂ ତେଜଃ ବିଦ୍ଧି ।୧୨ ।

**ଟୀକା**—[ ସର୍ବବସ୍ତୁଷୁ 'ସ୍ୱଭାବ' ଅଧ୍ୟାତ୍ମତତ୍ତ୍ୱଂ ବା ବର୍ଣ୍ଣୟତି ]—ଆଦିତ୍ୟଗତଂ ଯତ୍ ତେଜଃ ( ଜ୍ୟୋତିଃ, ତାପଃ ଚ ) ଅଖିଳଂ (ସମଗ୍ରଂ) ଜଗତ୍ ଭାସୟତେ ( ଆଲୋକେନ ପ୍ରକାଶୟତି ), ଯତ୍ [ ତେଜଃ ] ଚନ୍ଦ୍ରମସି ( ଚନ୍ଦ୍ରେ ), ଯତ୍ [ ତେଜଃ ] ଚ ଅଗ୍ନୌ, ତତ୍ ମାମକଂ ( ମଦୀୟଂ ) ତେଜଃ ବିଦ୍ଧି । ୧୨ ।

**ଅର୍ଥ**—[ ସର୍ବ ବସ୍ତୁରେ ସେହି ସ୍ୱଭାବ ବା ଅଧ୍ୟାତ୍ମତତ୍ତ୍ୱର କଥା କହୁଛନ୍ତି ]—ସୂର୍ଯ୍ୟରେ ଥାଇ ଯେ ତେଜ ସମସ୍ତ ସୌର ଜଗତକୁ ଦେଖାଇ ଦେଉଛି, ଯେଉଁ ତେଜ ଚନ୍ଦ୍ରରେ, ଯେଉଁ ତେଜ ବା ଅଗ୍ନିରେ, ସେ ସବୁ ତେଜ ମୋର ବୋଲି ଜାଣ । ( ମୁହିଁ ସବୁଥିରେ ଅଧ୍ୟାତ୍ମତତ୍ତ୍ୱ ) । ୧୨।

**ଗାମାବିଶ୍ୟ ଚ ଭୂତାନି ଧାରୟାମ୍ୟହମୋଜସା ।**
**ପୁଷ୍ଣାମି ଚୌଷଧୀଃ ସର୍ବାଃ ସୋମୋ ଭୂତ୍ୱା ରସାତ୍ମକଃ ।୧୩।**

**ଅନ୍ୱୟ**—ଚ ଓଜସା ଗାଂ ଆବିଶ୍ୟ ଭୂତାନି ଧାରୟାମି, ରସାତ୍ମକଃ ସୋମଃ ଭୂତ୍ୱା ସର୍ବାଃ ଓଷଧୀଃ ଚ ପୁଷ୍ଣାମି । ୧୩ ।

**ଟୀକା**—[ ଏବଂ ] ଚ ଓଜସା ( ତେଜସା, ଶକ୍ତ୍ୟା ବା ) ଗାଂ ( ପୃଥିବୀଂ ) ଆବିଶ୍ୟ ( ଅଧ୍ୟାତ୍ମରୂପେଣ ଅଧିଷ୍ଠାୟ, ବ୍ୟାପ୍ୟ ବା ) ଭୂତାନି ଧାରୟାମି । ରସାତ୍ମକଂ ( ସୋମଲତ ଦ୍ୟୋଷଧୀନାଂ ପୋଷକଃ ଜଳୀୟଃ ଇତି ପ୍ରସିଦ୍ଧଃ—ଜଳମୟଃ ) ସୋମଃ ( ଚନ୍ଦ୍ରଃ ) ଭୂତ୍ୱା ସର୍ବାଃ ଓଷଧୀଃ ( ବନଗୁଳ୍ମାନ୍ ) ଚ ପୁଷ୍ଣାମି (ବର୍ଦ୍ଧୟାମି) । ୧୩ ।

**ଅର୍ଥ**—ଏହିପରି ତେଜ ବା ଶକ୍ତିରେ ପୃଥିବୀକୁ ପ୍ରଭାବିତ କରି ମୁଁ ଚରାଚର ଭୂତମାନଙ୍କୁ ଧାରଣ କରେ । ଜଳମୟ ଚନ୍ଦ୍ର ହୋଇ ସବୁ ଓଷଧୀ ( ଗୁଳ୍ମ )ମାନଙ୍କୁ ମୁହିଁ ବଢ଼ାଏ । ୧୩ ।

ବ୍ୟାଖ୍ୟା ସୂଚନା—ରସାତ୍ମକ = ଜଳମୟ; ବୃକ୍ଷ-ପୋଷକ, ରସମୟ । ଚନ୍ଦ୍ର, ସୋମଲତା ପରି ରସମୟ ବା ଜଳମୟ ବୋଲି ବେଦରେ ଅଛି । ଚନ୍ଦ୍ରକିରଣରେ ଓଷଧୀ ବା ଗୁଳ୍ମମାନେ ବଢ଼ନ୍ତି ବୋଲି ବି ଅଛି । ୧୩ ।

**ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ ।**
**ପ୍ରାଣାପାନସମାଯୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧମ । ୧୪ ।**

**ଅନ୍ୱୟ**—ଅହଂ ବୈଶ୍ୱାନରଃ ଭୂତ୍ୱା ପ୍ରାଣିନାଂ ଦେହଂ ଆଶ୍ରିତଃ ପ୍ରାଣାପାନସମାଯୁକ୍ତଃ ଚତୁର୍ବିଧଂ ଅନ୍ନଂ ପଚାମି । ୧୪ ।

**ଟୀକା**—[ ପ୍ରାଣିନାଂ ଦେହବର୍ତ୍ତୀତ୍ତ୍ୱମହମିତ୍ୟାହ ]—ଅହଂ ବୈଶ୍ୱାନରଃ (ବିଶ୍ୱନରେଷୁ ସର୍ବପ୍ରାଣିଷୁ ଦେହତାପରୂପେଣ ବର୍ତ୍ତତେ ଅସୌ ଇତି ବୈଶ୍ୱାନରଃ—ଜଠରାଗ୍ନିଃ) ଭୂତ୍ୱା ପ୍ରାଣିନାଂ, ଦେହଂ ଆଶ୍ରିତଃ [ ସନ୍ ] ପ୍ରାଣାପାନସମାଯୁକ୍ତଃ (ପ୍ରାଣାପାନାଦିବାୟୁଭିଃ ସହିତଃ ) [ ଚର୍ବ୍ୟଂ, ଚୋଷ୍ୟଂ, ଲେହ୍ୟଂ, ପେୟଂ ଇତି ] ଚତୁର୍ବିଧଂ ଅନ୍ନଂ ପଚାମି । ୧୪ ।

**ଅର୍ଥ**—[ ପୁଣି ପ୍ରାଣିଦେହରେ ପୋଷକ ଅଗ୍ନି ମୁହିଁ ବୋଲି କହୁଚନ୍ତି ] —ମୁଁ ବୈଶ୍ୱାନର ( ଅର୍ଥାତ୍, ଦେହତାପ ବା ଜଠରାଗ୍ନି ) ରୂପେ, ପ୍ରାଣୀଙ୍କ ଦେହରେ ରହି, ପ୍ରାଣ ଓ ଅପାନ ବାୟୁକୁ ସଙ୍ଗେ ଘେନି [ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ, ଅର୍ଥାତ୍, ଚୋବାଇ, ଶୋଷି, ଚାଟି, ପିଇ ପେଟକୁ ନେଉଥିବା ] ଚାରିପ୍ରକାର ଅନ୍ନକୁ ପାକ କରେ । ୧୪ ।

**ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ**
**ମତ୍ତଃ ସ୍ମୃତିର୍ଜ୍ଞାନମପୋହନଂ ଚ ।**
**ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ**
**ବେଦାନ୍ତକୃଦ୍‌ବେଦବିଦେବ ଚାହମ୍ । ୧୫ ।**

**ଅନ୍ୱୟ**—(ଏବଂ) ଚ ସର୍ବସ୍ୟ ଅହଂ ହୃଦି ସନ୍ନିବିଷ୍ଟଃ, ମତ୍ତଃ ସ୍ମୃତିଃ, ଜ୍ଞାନଂ, ଅପୋହନଂ ଚ, ସର୍ବୈଃ ବେଦୈଃ ଅହଂ ଚ ଏବ ବେଦ୍ୟଃ । ଅହଂ ଚ ବେଦାନ୍ତକୃତ୍ ବେଦବିତ୍ ଏବ । ୧୫ ।

**ଟୀକା**—[ ସର୍ବାନ୍ତଃସ୍ଥଃ ସର୍ବମସ୍ତ୍ୟେଽହଂ ]—[ଏବଂ] ଚ ସର୍ବସ୍ୟ ଅହଂ ହୃଦି ସନ୍ନିବିଷ୍ଟଃ (ସ୍ଥିତଃ), ମତ୍ତଃ, ସ୍ମୃତିଃ (ସ୍ମରଣଂ) ଜ୍ଞାନଂ (ବିଷୟାଦିବୋଧଃ) ଅପୋହନଂ (ବିତର୍କବୃତ୍ତିଃ) ଚ । ସର୍ବୈଃ ବେଦୈଃ ଅହଂ ଚ ଏବ ବେଦ୍ୟଃ (ଜ୍ଞେୟଃ) ଅହଂ ଚ ବେଦାନ୍ତକୃତ୍ (ବ୍ରହ୍ମବିଦ୍ୟାୟାଃ କର୍ତ୍ତା) [ ତଥା ] ବେଦବିତ୍ (ବେଦଜ୍ଞଃ) ଏବ । ୧୫ ।

**ଅର୍ଥ**—[ ସବୁ ବ୍ୟକ୍ତି ଭିତରେ ତତ୍ତ୍ୱ ମୁହିଁ ବୋଲି ମୋଟରେ କହୁଚନ୍ତି]—ଏହିପରି ହିଁ ମୁଁ ସମସ୍ତଙ୍କ ହୃଦୟରେ ଅଛି । ଲୋକର ସ୍ମରଣ, ଜ୍ଞାନ, ଯୁକ୍ତି-ତର୍କ, ସବୁ

ମୋଠାରୁ; ପୁଣି ସବୁ ବେଦଯାକରେ ଯାହା ଜାଣିବାର ଅଛି, ସେ ମୁହିଁ; ଆହୁରି ମୁଁ ବେଦାନ୍ତ ବା ବ୍ରହ୍ମବିଦ୍ୟା କରିଛି ମୁହିଁ; ବେଦ ଜାଣିଛି ମୁହିଁ (ଅର୍ଥାତ୍, ସର୍ବଜ୍ଞ ସର୍ବଥା ସବୁ ମୁହିଁ) । ୧୫ ।

ବ୍ୟାଖ୍ୟା ସୂଚନା—ଈଶ୍ୱର ନିର୍ଗୁଣ, ଅବ୍ୟୟ, ଅକ୍ଷର—ସୃଷ୍ଟ୍ୟାଦି କେହି ତାଙ୍କୁ ଦେଖାଇ ପାରନ୍ତି ନାହିଁ । ଏ ଜଗତରେ କାହିଁରେ ତାଙ୍କୁ ଜାଣି ହେବ ନାହିଁ; ସେ ଖାଲି ଅଟଳ, ନିର୍ବିକଳ୍ପ ଆତ୍ମନିଷ୍ଠାରେ ମିଳିବ ବୋଲି କହୁଥିଲେ । ଏସବୁ ଅକ୍ଷର ପୁରୁଷର ଲକ୍ଷଣ । ଏବେ ସବୁ ଜ୍ୟୋତିରେ ସେହି, ସବୁ ବ୍ୟକ୍ତ ବିଷୟରେ ସେହି—ଏହିପରି କ୍ଷରପୁରୁଷ ରୂପରେ ତାଙ୍କୁଇ କହିଗଲେ । ଅକ୍ଷର, ଅବ୍ୟକ୍ତ, ଅଜ୍ଞେୟ ସେହି ପୁଣି କ୍ଷରବ୍ୟକ୍ତଯାକ ବ୍ୟାପି ବି ବିରାଜିତ ସେହି । ଏହା ପୁଣି ମୋଟରେ କହିଦେଇ, ତାଙ୍କୁଇ ପୁରୁଷୋତ୍ତମ ବୋଲି ପର ଶ୍ଳୋକମାନଙ୍କରେ ବୁଝାଇବେ । ୧୫ ।

**ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।**
**କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ।୧୬।**

**ଅନ୍ୱୟ**—ଲୋକେ କ୍ଷରଃ ଅକ୍ଷରଃ ଏବ ଚ ଇମୌ ଦ୍ୱୌ ପୁରୁଷୌ, ସର୍ବାଣି ଭୂତାନି କ୍ଷରଃ । କୂଟସ୍ଥଃ ଅକ୍ଷରଃ ଉଚ୍ୟତେ । ୧୬ ।

**ଟୀକା**—[ ତତ୍ ଦ୍ୱିବିଧଂ ପୁରୁଷଂ କ୍ଷରାକ୍ଷର-ସଞ୍ଜ୍ଞୟା ସଂକଳୟତି ]—[ଅସ୍ମିନ୍] ଲୋକେ ( ଜଗତି ) କ୍ଷରଃ (କ୍ଷରେଷୁ, ବିକାରବତ୍ସୁ, ନାଶଶୀଳେଷୁ, ବ୍ୟକ୍ତେଷୁ, ଭୂତମାତ୍ରେଷୁ ପ୍ରଭବ-ପ୍ରଳୟବିକାରାଦିରୂପେଣ ବିଭକ୍ତ ଇବ ଅବିଭକ୍ତଃ ସ୍ଥିତଃ), ଅକ୍ଷରଃ (ଅବିକାରୀ, ଅବିନାଶୀ, ଭୂତାତୀତଃ, ଭୂତେଭ୍ୟଃ ପରଃ ଅତିଶକ୍ତଃ ଚ ଇତି ନିର୍ଗୁଣଃ, ନିର୍ବିକଳ୍ପଃ, ଅଜ୍ଞେୟଃ ) ଚ—ଇମୌ ଦ୍ୱୌ ( ଉପାସ୍ୟରୂପୌ ) ପୁରୁଷୌ [ଭବତଃ] । [ତୟୋଃ] ସର୍ବାଣି ଭୂତାନି ( ତେଷୁ ପ୍ରତୀତ—ଇତି ଭାବଃ ) କ୍ଷରଃ । କୂଟସ୍ଥଃ (କୂଟେ ସର୍ବୋପରି ସର୍ବାତୀତଃ ସନ୍ ନିର୍ବିକଳ୍ପତୟା ସ୍ଥିତଃ) ଅକ୍ଷରଃ [ ଚ ] ଉଚ୍ୟତେ । ୧୬ ।

**ଅର୍ଥ**—[ ଏହି ଦୁଇ ପ୍ରକାରକୁ କ୍ଷର ଓ ଅକ୍ଷର ପୁରୁଷ ବୋଲି ଏକ କଥାରେ କହି ଦେଉଛନ୍ତି ]—ଜଗତରେ କ୍ଷର (ଅର୍ଥାତ୍, ବିକାରବାନ୍, ନାଶଶୀଳ, ଭୂତମାତ୍ରରେ ସୂକ୍ଷ୍ମଶକ୍ତିରୂପରେ ବର୍ତ୍ତମାନ), ପୁଣି ଅକ୍ଷର (ଅର୍ଥାତ୍, ଅବ୍ୟୟ, ଅବିନାଶୀ, ନିର୍ଗୁଣ)—ଏହି ଦୁଇ ଉପାସ୍ୟ ପୁରୁଷ ଅଛନ୍ତି । ଭୂତମାତ୍ର (ବ୍ୟକ୍ତବିଶ୍ୱ) ରେ ଅନୁଭବରେ ଜଣା ପଡ଼ୁଥିବା ପୁରୁଷକୁ କ୍ଷର; ପୁଣି କୂଟସ୍ଥ (ଅର୍ଥାତ୍, ସର୍ବୋପରି, ସବୁ ଭୂତରୁ ଅତୀତ ଅଲଗା ହୋଇ ସ୍ଥିର ରହିଥିବା ) ପୁରୁଷକୁ ଅକ୍ଷର ବୋଲି କୁହାଯାଏ । ୧୬ ।

ବ୍ୟାଖ୍ୟା ସୂଚନା—କୂଟସ୍ଥ = କୂଟ ବା ପର୍ବତଶୃଙ୍ଗ ଉପରେ ଥାଏ ଯେ ଅତଏବ ସର୍ବୋପରି ସ୍ଥିର; ଅଟଳ । ୧୬ ।

**ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।**
**ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ।୧୭।**

**ଅନ୍ୱୟ**—ଅନ୍ୟ ଉତ୍ତମଃ ପୁରୁଷଃ ପରମାତ୍ମା ଇତି ଉଦାହୃତଃ; ଯଃ ଅବ୍ୟୟଃ ଈଶ୍ୱରଃ ଲୋକତ୍ରୟଂ ଆବିଶ୍ୟ ବିଭର୍ତ୍ତି । ୧୭ ।

**ଟୀକା**—[ ଦ୍ୱୟୋରଣତଃ ଦ୍ୱିରୂପା ବା ପୁରୁଷୋତ୍ତମଃ ]—[ ଏତୟୋଃ ] ଅନ୍ୟଃ ଉତ୍ତମଃ ପୁରୁଷଃ ପରମାତ୍ମା ଇତି ଉଦାହୃତଃ (କଥିତଃ); ଯଃ ଅବ୍ୟୟଃ ଈଶ୍ୱରଃ (ସନ୍) ଲୋକତ୍ରୟଂ ଆବିଶ୍ୟ (ଅଧିଷ୍ଠାୟ) ବିଭର୍ତ୍ତି (ପାଳୟତି) । ୧୭ ।

**ଅର୍ଥ**—[ଏ ଦୁଇରୁ ଅତୀତ ବା କୌଣସିଟିରେ ପୂର୍ଣ୍ଣଧାରଣାରେ ଆସିବାଭଳି ନ ହୋଇ ଟଙ୍କାର ଦୁଇ ପାଖପରି ଦୁହିଙ୍କୁ ଏକତ୍ର ଧରିବାରୁ ଈଶ୍ୱର ହେଉଛନ୍ତି, ପୁରୁଷୋତ୍ତମ]—ଏ ଦୁଇରୁ ଭିନ୍ନ ଉତ୍ତମ ପୁରୁଷଙ୍କୁ ପରମ ଆତ୍ମା ବୋଲି କୁହାଯାଏ । ସେ ଅବିନାଶୀ ନିତ୍ୟ ଈଶ୍ୱର ହୋଇ ମଧ୍ୟ ତିନି ଲୋକ ଭିତରେ ରହି ସେହି ଲୋକମାନଙ୍କୁ ପାଳନ, ପୋଷଣ ଓ ନିୟନ୍ତ୍ରଣ କରନ୍ତି । ୧୭ ।

**ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।**
**ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।୧୮।**

**ଅନ୍ୱୟ**—ଯସ୍ମାତ୍ ଅହଂ କ୍ଷରଂ ଅତୀତଃ, ଅକ୍ଷରାତ୍ ଅପି ଚ ଉତ୍ତମଃ, ଅତଃ ଲୋକେ ବେଦେ ଚ ପୁରୁଷୋତ୍ତମଃ ପ୍ରଥିତଃ ଅସ୍ମି । ୧୮ ।

**ଟୀକା**—[ତତଃ] ଯସ୍ମାତ୍ ଅହଂ କ୍ଷରଂ ଅତୀତଃ (କ୍ଷରାତ୍ ପରଃ ଇତି ଭାବଃ) ଅକ୍ଷରାତ୍ ଅପି ଚ ଉତ୍ତମଃ, ଅତଃ ଲୋକେ ( ପୁରାଣାଦୌ ଲୌକିକଶାସ୍ତ୍ରେ ) [ଅପୌରୁଷେୟେ] ବେଦେ ଚ [ଅହଂ] ପୁରୁଷୋତ୍ତମଃ [ଇତି] ପ୍ରଥିତଃ (ଖ୍ୟାତଃ) ଅସ୍ମି । ( ଲୋକେ—ଉପାସ୍ୟଦେବରୂପେଣ, ତଥା, ବେଦେ—ତତ୍ତ୍ୱଦର୍ଶନେନ, ଇତି ଚ ସ୍ପଷ୍ଟଂ ଗମ୍ୟତେ ) । ୧୮ ।

**ଅର୍ଥ**—[ତେଣୁ] ଯେହେତୁ ମୁଁ କ୍ଷରରୁ ଅତୀତ ବା ଉପରେ ଓ ଅକ୍ଷରରୁ ବି ଶ୍ରେଷ୍ଠ, ସେଥିପାଇଁ ପୁରାଣାଦି ଲୌକିକ ଶାସ୍ତ୍ରରେ ଓ ଅପୌରୁଷେୟ ନିତ୍ୟ ଜ୍ଞାନମୟ ବେଦରେ ମୁଁ ପୁରୁଷୋତ୍ତମ ବୋଲି ଖ୍ୟାତ । ୧୮ ।

ବ୍ୟାଖ୍ୟା ସୂଚନା—ଦୁଇଥିରୁ ଅତୀତ = ଦୁଇଥିରୁ ଉତ୍ତମ ବା ଶ୍ରେଷ୍ଠ, ଦୁଇଟିରୁ କୌଣସି ମୋର ପୂର୍ଣ୍ଣସ୍ୱରୂପ ନୁହେ । ଲୋକେ, ଅର୍ଥାତ୍, ପୁରାଣାଦିରେ, ପୁଣି ବେଦେ,

ଅର୍ଥାତ୍, ଶ୍ରୁତିରେ ବୋଲି ଅର୍ଥ କରାଯାଏ । ମାତ୍ର ଏହାର ସ୍ପଷ୍ଟ ଅର୍ଥ ହେଉଛି, ଲୋକଙ୍କ ଉପାସ୍ୟ ଦେବରୂପେ, ପୁଣି ଜ୍ଞାନର ବିଗ୍ରହରେ । ଏଣୁ ମନେହୁଏ, ଏହା କୁହା ବା ଲେଖା ହେଲାବେଳକୁ 'ପୁରୁଷୋତ୍ତମ-ପୁରୀ' ରେ ଲୋକଙ୍କ ଉପାସ୍ୟ ପୁରୁଷୋତ୍ତମ ବା ଜଗନ୍ନାଥଙ୍କ ପ୍ରତିଷ୍ଠା ହୋଇ ସାରିଥିଲା । ୧୮ ।

ଯୋ ମାମେବମସଂମୂଢୋ ଜାନାତି ପୁରୁଷୋତ୍ତମମ୍ ।
ସ ସର୍ବବିଦ୍‌ଭଜତି ମାଂ ସର୍ବଭାବେନ ଭାରତ । ୧୯ ।

ଅନ୍ୱୟ—ସ୍ପଷ୍ଟ । ୧୯ ।

ଟୀକା—[ ପୁରୁଷୋତ୍ତମ-ଜ୍ଞାନ-ଫଳଂ ଉକ୍ତ୍ୱା ଉପସଂହରତି]—ଭାରତ, ଅସମ୍ମୂଢ଼ଃ (ବୁଦ୍ଧିଯୁକ୍ତଃ) ଯଃ ଏବଂ ( ଯଥୋକ୍ତଂ ତଥା ) ପୁରୁଷୋତ୍ତମଂ ମାଂ ଜାନାତି, ସର୍ବବିତ୍ ସଃ ସର୍ବଭାବେନ ମାଂ ଭଜତି । ୧୯ ।

ଅର୍ଥ—[ ପୁରୁଷୋତ୍ତମ ଜ୍ଞାନର ଫଳ କହି ବିଷୟ ଶେଷ କରୁଛନ୍ତି ]—ଭାରତ, ବିବେକ ଠିକ୍ ରଖି ଯେ ଏଇପରି ପୁରୁଷୋତ୍ତମ ବୋଲି ମୋତେ ଜାଣେ, ସର୍ବଜ୍ଞାନ ଲଭି ସେହି ସବୁ ପ୍ରକାରରେ ମୋତେ ଭଜେ । ୧୯ ।

ବ୍ୟାଖ୍ୟା ସୂଚନା—ସର୍ବବିତ୍ = ସର୍ବଜ୍ଞାନ ଲଭିଥିବା ଲୋକ; ଏହି ସର୍ବଜ୍ଞାନ ୭.୨୯,୩୦ ଓ ୮.୩,୪ରେ ମଧ୍ୟ ଅନ୍ୟ ଭାବରେ କୁହାଯାଇଛି, ଦେଖ । ୧୯ ।

ଇତି ଗୁହ୍ୟତମଂ ଶାସ୍ତ୍ରମିଦମୁକ୍ତଂ ମୟାନଘ ।
ଏତଦ୍ ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ ।୨୦।

ଅନ୍ୱୟ—ଅନଘ ! ଇତି ଇଦଂ ଗୁହ୍ୟତମଂ ଶାସ୍ତ୍ରଂ ମୟା ଉକ୍ତଂ । ଭାରତ ! ବୁଦ୍ଧିମାନ୍ ଏତତ୍ ବୁଦ୍ଧ୍ୱା କୃତକୃତ୍ୟଃ ଚ ସ୍ୟାତ୍ । ୨୦ ।

ଟୀକା—ହେ ଅନଘ [ନିଷ୍ପାପ], ଇତି [ଏବଂ] ଇଦଂ ଗୁହ୍ୟତମଂ (ଅତି ଦୁର୍ବିଜ୍ଞେୟଂ) ଶାସ୍ତ୍ରଂ (ବିଦ୍ୟା) ମୟା ଉକ୍ତଂ । ହେ ଭାରତ, ବୁଦ୍ଧିମାନ୍, (ବିବେକଯୁକ୍ତଃ ଜନଃ) ଏତତ୍ ବୁଦ୍ଧ୍ୱା (ବିଦିତ୍ୱା) କୃତକୃତ୍ୟଃ (କରଣୀୟେ ସିଦ୍ଧଃ, କୃତାର୍ଥଃ) ଚ ସ୍ୟାତ୍ । ୨୦ ।

ଅର୍ଥ—ହେ ଅନଘ (ଅପାପ), ଏହିପରି ଏ ଅତି ରହସ୍ୟମୟ ଶାସ୍ତ୍ର ମୁଁ କହିଲି । ହେ ଭାରତ, ବିବେକୀ ଲୋକ ଏହା ବୁଝି କୃତାର୍ଥ ହୁଏ । ୨୦ ।

ବ୍ୟାଖ୍ୟା ସୂଚନା—ଗୁହ୍ୟତମ=ଅତ୍ୟନ୍ତ ରହସ୍ୟମୟ, ଦୁର୍ବିଜ୍ଞେୟ; ଯାହା ସହଜରେ ବୁଝିହୁଏ ନାହିଁ; ସେ ତତ୍ତ୍ୱ ଯାହାକୁ ତାକୁ କହିବା ଠିକ୍ ନୁହେ, ତାହା ଲୁଚାଇ ରଖିବାକୁ ହୁଏ; ଅଧିକାର ନ ଥିବା ଲୋକକୁ ଦେଲେ, ସେ ତାହାର ଅନର୍ଥ କରି, ତାହାର ଅଭ୍ୟାସ ବ୍ୟବହାରାଦି ଭ୍ରଷ୍ଟ କରିଦେବ । ସେଥିପାଇଁ ଅନଧିକାରୀକୁ ବିଦ୍ୟା ଦେବାର ବିଧି ନ ଥିଲା । ବେଦରେ ମଧ୍ୟ ଅନଧିକାରୀକୁ ଦେବା ମନା ଅଛି । ୨.୭ ଓ ଟୀକା ଦେଖ । ୨୦ ।



# ଷୋଡ଼ଶ ଅଧ୍ୟାୟ

## ଦୈବାସୁରସଂପଦ୍‌ବିଭାଗ ଯୋଗ

### ଅଧ୍ୟାୟ ପ୍ରବେଶ—

ପୂର୍ବ ଅଧ୍ୟାୟରେ 'ବିମୂଢ଼ ଦେଖନ୍ତି ନାହିଁ,' 'ଜ୍ଞାନ ଚକ୍ଷୁ ଥିବା ଲୋକେ' ଦେଖନ୍ତି—୧୫. ୧୦; 'ଯତ୍ନ କରିବା ଯୋଗୀ ଓ ଯତ୍ନ କରୁଥିବା ଅକୃତାତ୍ମା'—୧୫.୧୧; 'ଅସମ୍ମୂଢ଼' 'ସର୍ବବିତ୍'—୧୫.୧୯; ବୁଦ୍ଧିମାନ୍ ୧୫. ୨୦ ଏସବୁରେ ଦୁଇଟି ପ୍ରକାର ଲୋକଙ୍କୁ ଲକ୍ଷ୍ୟ କରାଯାଇଛି; ଯଥା—ଯେ ପୁରୁଷୋତ୍ତମଙ୍କୁ ପାଇବାପାଇଁ ନିଜକୁ ତିଆରି ରଖି ସେହି ଆଡ଼କୁ କର୍ମ ସବୁ ଲଗାଏ ଓ ଯେ ନିଜର ସୁଖସମ୍ଭୋଗ ପାଇଁ ସବୁ କର୍ମ କରେ—ଏ ଦୁଇଟି ଯଥାକ୍ରମେ ଦୈବ ଓ ଆସୁର ସ୍ୱଭାବର ଫଳ । ଏହି କଥା ଦୁଇଟିକୁ ସ୍ପଷ୍ଟ କରିବାକୁ ଏବେ ଦେବ ଓ ଅସୁର ସମ୍ପଦ କଥା କହୁଛନ୍ତି । ଏଠାରେ, ସମ୍ପଦ୍=ସଫା ଜାଣି ହେବା ଭଳି ପ୍ରାଚୁର୍ଯ୍ୟ ବା ବହୁଳତା; ଏହାକୁ କଞ୍ଚା ଓଡ଼ିଆରେ 'ଢଙ୍ଗ' କୁହାଯାଇପାରେ । ଦୈବ=ଦେବ ସମ୍ବନ୍ଧୀୟ, ବା ପ୍ରକାଶାତ୍ମକ =ଯହିଁରେ ଠିକ୍ ବେଠିକ୍ ଜଣାଯାଏ । ଅସୁର=ଅ+ସୁର; ସୂର୍ଯ୍ୟ ବା ଆଲୋକ ନୁହେଁ; ଅର୍ଥାତ୍, ଅନ୍ଧାର ବା ଅଜ୍ଞାନ ସମ୍ବନ୍ଧୀୟ—ଯହିଁରେ ଠିକ୍‌ଟା ବେଠିକ୍ ଓ ବେଠିକ୍‌ଟା ଠିକ୍ ବୋଲି ଜଣାପଡ଼େ । ଐତିହାସିକ ଦୃଷ୍ଟିରେ ମଧ୍ୟ ବୈଦିକ ଆର୍ଯ୍ୟମାନେ ଥିଲେ, ଦେବ ଉପାସକ ବା ଦୈବ; ପୁଣି ଶ୍ରେଷ୍ଠ ଅନାର୍ଯ୍ୟମାନେ ଥିଲେ, ଅସୁର ଉପାସକ ବା ଆସୁର । ଏଇ ଦୁହିଙ୍କ ସଭ୍ୟତାର ସଂଘର୍ଷ ଏ ଦେଶରେ ପୁରାଣ ପ୍ରସିଦ୍ଧ । ଏଇଥିରୁ ପୁରାଣ ଓ କିଂବଦନ୍ତୀ ପ୍ରଭୃତିରେ ଦେବ, ଅସୁର ଓ ସେ ଦୁହିଙ୍କ ଯୁଦ୍ଧ କଥା ସବୁ ବାହାରିଛି । ଅସୁରର ଦାନବ, ଦୈତ୍ୟ, ରାକ୍ଷସ ନାମମାନ ବି ଅଛି—୯.୧୨ ଦେଖ । ଏଠାରେ ସାରକଥା—ଜଗତରେ ନିଜର ସ୍ୱଭାବ ଅନୁସାରେ ଦୁଇ ପ୍ରକାର ମନୁଷ୍ୟ ଦେଖାଯା'ନ୍ତି । କେତେକଙ୍କର ଦୈବ ଅର୍ଥାତ୍ ପ୍ରକାଶ ବା ଜ୍ଞାନ ପାଇବା ଆଡ଼କୁ ମୁହଁ ବା ଉଦ୍ୟମ; ଆଉମାନେ ଦେହ ବା କ୍ଷେତ୍ରକୁ ଆତ୍ମା ବୋଲି ବୁଝି ସ୍ୱାର୍ଥରେ ଲାଗିଥାନ୍ତି—ଅର୍ଥାତ୍, ଅଜ୍ଞାନ ଆଡକୁ ତାଙ୍କ ମୁହଁ । ଦୈବୀସମ୍ପଦ୍ ଥିବା ଲୋକେ ପୁରୁଷୋତ୍ତମଙ୍କୁ ପାଇବା ଆଡକୁ ଯାଆନ୍ତି । ସେହିମାନେ ବୁଦ୍ଧିମାନ୍ ବା ପ୍ରକାଶରେ ବୁଦ୍ଧିକୁ ଠିକ୍ ରଖନ୍ତି । ଅନ୍ୟମାନେ ସେପରି କରନ୍ତି ନାହିଁ ।

**ଅଧ୍ୟାୟର ସଂକ୍ଷେପ ସାର**—ଦୈବୀ ଓ ଆସୁରୀ ସମ୍ପଦ୍ ଘେନି ଜନ୍ମ ହେବା ଲୋକଙ୍କର ଲକ୍ଷଣ-ସୂଚନା; ତାର ଫଳ ଯଥାକ୍ରମେ ମୋକ୍ଷ ଓ ବନ୍ଧନ; ଅର୍ଜୁନ ଦୈବୀ ସମ୍ପଦ୍ ଘେନି ଜନ୍ମ ପାଇଛନ୍ତି । ଦୈବୀ କଥା ବହୁତ କୁହାଯାଇଛି, ଏବେ ଅସୁର

ଭାବରେ ଜନ୍ମିଥିବା ଲୋକଙ୍କର କ୍ରିୟା ଓ ଲକ୍ଷଣ ପୁଣି ବହୁତ କରି ବର୍ଣ୍ଣନ କରୁଛନ୍ତି । ଏହି ଅସୁର-ସ୍ୱଭାବ ଲୋକଙ୍କୁ ଭଗବାନ୍ ଆସୁରୀ ବା ମୂଢ଼ଯୋନିରେ ଜନ୍ମ ଦେଉଥାନ୍ତି—ଏହିପରି ସେମାନେ ହୀନଗତି ପାଇ ସଂସାରରେ ପଡ଼ିଥାନ୍ତି । କାମ, କ୍ରୋଧ, ଲୋଭ ଏ ତିନୋଟି ଅଜ୍ଞାନ, ତଥା ନରକର ଦ୍ୱାର । ଏ ତିନୋଟି ଛାଡ଼ି କର୍ମ କଲେ ପରାଗତି ମିଳେ । ଏଥିପାଇଁ ଶାସ୍ତ୍ରରେ ବିଧାନମାନ ଅଛି; ଶାସ୍ତ୍ର ହିଁ ପ୍ରମାଣ; ତାକୁ ଧରି ଚଳିବା ଉଚିତ ।

ଶ୍ରୀ ଭଗବାନୁବାଚ

ଅଭୟଂ ସତ୍ତ୍ୱସଂଶୁଦ୍ଧିର୍ଜ୍ଞାନଯୋଗବ୍ୟବସ୍ଥିତିଃ ।
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜବମ୍ ।୧।

ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନମ୍ ।
ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଲମ୍ ।୨।

ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋ ନାତିମାନିତା ।
ଭବନ୍ତି ସଂପଦଂ ଦୈବୀମଭିଜାତସ୍ୟ ଭାରତ ।୩।

ଅନ୍ୱୟ—ସ୍ପଷ୍ଟ ।୧-୩।

ଟୀକା—[ଦୈବସଂପଦ୍ ନିବର୍ଣ୍ଣୟ]—ଶ୍ରୀଭଗବାନ୍ ଉବାଚ—ଅଭୟଂ (ଭୟାଭାବଃ, ଦୃଢ଼ନିଷ୍ଠୟଃ) ସତ୍ତ୍ୱସଂଶୁଦ୍ଧିଃ (ଅନ୍ତଃକରଣଶୁଦ୍ଧିଃ) ଜ୍ଞାନଯୋଗବ୍ୟବସ୍ଥିତିଃ (ଜ୍ଞାନେ ଆତ୍ମବିଜ୍ଞାନେ ଯୋଗଃ) ଦାନଂ (ପରାର୍ଥେ ତ୍ୟାଗଃ) ଦମଃ (ଇନ୍ଦ୍ରିୟସଂଯମଃ) ଚ ଯଜ୍ଞଃ (ଈଶ୍ୱରେ କର୍ମୋତ୍ସର୍ଗଃ, ଯଜ୍ଞସ୍ୱାଚରଣଂ—୩.୯;୪.୨୩) ଚ ସ୍ୱାଧ୍ୟାୟଃ (ଶାସ୍ତ୍ରାଲୋଚନଂ, ମନନଂ ଚ) ତପଃ ସାଧନେ ପ୍ରଯତ୍ନଃ) ଆର୍ଜବଂ (ସରଳବ୍ୟବହାରଃ କୂଟଶୂନ୍ୟତା) ଅହିଂସା, ସତ୍ୟଂ (ଯଥାଦୃଷ୍ଟଂ ଅନୁଭୂତଂ ବା ତଥା ଭାଷଣଂ) ଅକ୍ରୋଧଃ (କ୍ରୋଧାଭାବଃ) ତ୍ୟାଗଃ (ନିଃସ୍ୱାର୍ଥପରତା) ଶାନ୍ତିଃ (ଚିତ୍ତୋପରତିଃ) ଅପୈଶୁନଂ (ପରସ୍ୟ ପରଦୋଷକଥନଂ, ପୈଶୁନଂ—ତଦଭାବଃ) ଭୂତେଷୁ ଦୟା (ଔଦାର୍ଯ୍ୟଂ) ଅଲୋଲୁପ୍ତ୍ୱଂ (ଲୋଭାଭାବଃ) ମାର୍ଦ୍ଦବଂ (ମୃଦୁତା, ଅକ୍ରୂରତା) ହ୍ରୀଃ (ଅପକର୍ମଣି ସଙ୍କୋଚଃ, ଶାଳୀନତା) ଅଚାପଲଂ (ବ୍ୟର୍ଥକ୍ରିୟାଶୂନ୍ୟତା) ତେଜଃ (ସାହସଂ) କ୍ଷମା (ସହିଷ୍ଣୁତା) ଧୃତିଃ (ଦୁଃଖାଦିଭିଃ କୃତେ ଅବସାଦେ ଚିତ୍ତସ୍ୟ ଇନ୍ଦ୍ରିୟାଣାଂ ଚ ସ୍ୱକର୍ମଣି ସ୍ଥିରୀକୃତ୍ୟ ଧାରଣଂ) ଶୌଚଂ (ଦେହମନସୋଃ ପବିତ୍ରତା) ଅଦ୍ରୋହଃ (ପରଧ୍ୱଂସକଲ୍ପନା-ୟାମସହିଷ୍ଣୁତା ଦ୍ରୋହଃ—ତଦଭାବଃ) ନାତିମାନିତା (ଆତ୍ମନଃ ବହୁମନ୍ତୃତ୍ୱାଭାବଃ — —[ଏତାନି]ହେ ଭାରତ; ଦୈବୀଂ (ଦିବ୍ୟତେ, ପ୍ରକାଶତେ—ଇତି ଦେବଃ, ତସ୍ୟ ଇୟଂ

ଦୈବୀଂ, ତାଂ) ସମ୍ପଦଂ ଅଭିଜାତସ୍ୟ (ଅଭିମୁଖେନ ଜାତସ୍ୟ, ବର୍ଦ୍ଧିତସ୍ୟ ବା) [ଜନସ୍ୟ] ଭବନ୍ତି । ୧-୩ ।

**ଅର୍ଥ**—[ଦୈବୀସମ୍ପଦ୍ ବର୍ଣ୍ଣନା କରି] ଶ୍ରୀଭଗବାନ୍ କହିଲେ—ଦୃଢ଼ତା (ଡ଼ର ନ ଥିବା), ଅନ୍ତଃକରଣ ଶୁଦ୍ଧି, ଆତ୍ମଜ୍ଞାନରେ ନିଜକୁ ଠିକ୍ ରଖିବା, ଦାନ, ଇନ୍ଦ୍ରିୟ ସଂଯମ, ଈଶ୍ୱରରେ କର୍ମୋତ୍ସର୍ଗ (ଯଜ୍ଞ ୩,୯; ୪.୨୩ ଦେଖ), ବେଦଶାସ୍ତ୍ରା-ଲୋଚନା, ଦୃଢ଼ଭାବରେ କର୍ମସାଧନ ଯତ୍ନ, ସରଳତା, ଅହିଂସା, ସତ୍ୟକଥନ, ନ ରାଗିବା, ନିଃସ୍ୱାର୍ଥପରତା (ତ୍ୟାଗ) ମନର ସ୍ଥିରତା, ଚୁଗୁଲି ନ କରିବା (ଅପୈଶୁନ), ଜୀବେ ଦୟା, ଲାଳସା ଛାଡ଼ିବା (କାହିଁରେ ଲମ୍ପଟ ନ ହେବା), ପର ମନରେ କଷ୍ଟ ନ ଦେବା (ମୃଦୁତା), ମର୍ଯ୍ୟାଦା ବା ଶାଳୀନତା (ହ୍ରୀ), ବୃଥା କାର୍ଯ୍ୟ ଘେନି ଚଞ୍ଚଳ ନ ହେବା, ତେଜ (ସାହସ, ଅର୍ଥାତ୍, ହୀନ ବୃତ୍ତିର ବିରୋଧ କରିବାରେ ପ୍ରବଳ ଇଚ୍ଛା ବା ଶକ୍ତି), କ୍ଷମା, ଦୁଃଖାଘରେ ମନ ବା ଇନ୍ଦ୍ରିୟର ଅବସାଦ ହେଲା ବେଳେ ତାକୁ ଠିକ୍ ରଖିବା (ଧୃତି), ଦେହ ମନ ପରିଷ୍କାର ପବିତ୍ର ରଖିବା (ଶୌଚ), କାହାର ମନ୍ଦ ନ ବିଗ୍ଭରିବା ବା ନ କରିବା (ଅଦ୍ରୋହ), ଆପଣାକୁ ବଡ ବିଗ୍ଭରି ନ ଫୁଲିବା—ହେ ଭାରତ, ଦୈବୀ ସମ୍ପଦ୍ ଆଡ଼କୁ (ବା ଦୈବୀ ଢ଼ଙ୍ଗରେ) ହୋଇଥିବା ଲୋକର ଏହି ଲକ୍ଷଣମାନ ପ୍ରକାଶ ପାଏ । ୧-୩ ।

**ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବ ଚ ।**
**ଅଜ୍ଞାନଂ ଚାଭିଜାତସ୍ୟ ପାର୍ଥ ସମ୍ପଦମାସୁରୀମ୍ । ୪ ।**

**ଅନ୍ୱୟ**—ପାର୍ଥ ! ଦଂଭଃ, ଦର୍ପଃ ଅଭିମାନଃ ଚ, କ୍ରୋଧଃ, ପାରୁଷ୍ୟଂ, ଏବ ଚ ଅଜ୍ଞାନଂ, ଆସୁରୀଂ, ସମ୍ପଦଂ ଅଭିଜାତସ୍ୟ । ୪ ।

**ଟୀକା**—[ଆସୁରୀଂ ସମ୍ପଦଂ ଆହ]—ଦମ୍ଭଃ (ଭକ୍ତିଧ୍ୱଜିନଃ ଗର୍ବଃ) ଦର୍ପଃ (ଧନଜନ୍ୟ) ଅଭିମାନଃ (ଅଭିମାନିତା)ଚ କ୍ରୋଧଃ, ପାରୁଷ୍ୟଂ (ନିଷ୍ଠୁରତା, ନିର୍ଦ୍ଦୟତା) ଏବ ଚ ଅଜ୍ଞାନଂ (ଅବିବେକଃ) [ଏତାନି] ହେ ପାର୍ଥ, ଆସୁରୀଂ ସମ୍ପଦଂ ଅଭିଜାତସ୍ୟ [ଭବନ୍ତି] । ୪ ।

**ଅର୍ଥ**—[ଆସୁରୀ ସମ୍ପଦ କହୁଚନ୍ତି]—ବୃଥା ପଟାଟୋପ (ଦମ୍ଭ), ବଡ଼ାଇ କରିବା (ଦର୍ପ , ଓ ଅଭିମାନ (ଅର୍ଥାତ୍, 'ଆମକୁ ଏପରି କହିଲ' ବୋଲି ଯେଉଁ ଆତ୍ମ-ବଡ଼ିମାର ଭାବ), କୋଧ, ନିଷ୍ଠୁରତା ଓ ଅବିବେକ—ହେ ପାର୍ଥ, ଆସୁର ଢ଼ଙ୍ଗରେ ହୋଇଥିବା ଲୋକର ଏହି ଲକ୍ଷଣମାନ ପ୍ରକାଶ ପାଏ । ୪ ।

**ଦୈବୀ ସମ୍ପଦ ବିମୋକ୍ଷାୟ ନିବନ୍ଧାୟାସୁରୀ ମତା ।**
**ମା ଶୁଚଃ ସମ୍ପଦଂ ଦୈବୀମଭିଜାତୋଽସି ପାଣ୍ଡବ । ୫ ।**

**ଅନ୍ୱୟ**—ଦୈବୀ ସମ୍ପଦ୍ ବିମୋକ୍ଷାୟ, ଆସୁରୀ ନିବନ୍ଧାୟ ମତା । ପାଣ୍ଡବ । ମା ଶୁଚଃ । ଦୈବୀଂ ଅଭିଜାତଃ ଅସି । ୫ ।

**ଟୀକା**—[ ସମ୍ପଦୋଃ ଫଳଂ ଦର୍ଶୟନ୍ ଅର୍ଜୁନଂ ଆଶ୍ୱାସୟତି ]—ଦୈବୀ ସମ୍ପଦ୍ ବିମୋକ୍ଷାୟ, ଆସୁରୀ [ ସମ୍ପଦ୍ ] ନିବନ୍ଧାୟ (ସଂସାରବନ୍ଧାୟ) ମତା ! ହେ ପାଣ୍ଡବ, ତ୍ୱଂ [ କାଂ ସମ୍ପଦଂ ଅଭିଜାତଃ ଅହଂ ] ଇତି ମା ଶୁଚଃ । [ ମୟା ସମ୍ୟକ୍ ଜ୍ଞାତଂ ଯତ୍ ତ୍ୱଂ ] ଦୈବୀଂ [ ସମ୍ପଦଂ ] ଅଭିଜାତଃ ଅସି । ୫ ।

**ଅର୍ଥ**—[ ସମ୍ପଦ୍ ଦୁଇଟିର କାର୍ଯ୍ୟ ବା ଫଳ ଦେଖାଇ ଅର୍ଜୁନଙ୍କୁ ଆଶ୍ୱାସ ଦେଉଛନ୍ତି ]—ଦୈବୀ ସମ୍ପଦ୍ ମୋକ୍ଷପାଇଁ ଓ ଆସୁରୀ ସମ୍ପଦ୍ ବନ୍ଧ ପାଇଁ ବୋଲି ବୁଝାଯାଏ । ହେ ପାଣ୍ଡବ, [ ତୁ କେଉଁ ଢଙ୍ଗରେ ହୋଇଛୁ ବୋଲି ] ବ୍ୟସ୍ତ ହୋ ନା । [ ମୁଁ ଜାଣେ ] ତୁ ଦୈବୀ ଢଙ୍ଗରେ ହୋଇଛୁ । ୫ ।

**ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବ ଚ ।**
**ଦୈବୋ ବିସ୍ତରଶଃ ପ୍ରୋକ୍ତ ଆସୁରଂ ପାର୍ଥ ମେ ଶୃଣୁ ।୬।**

**ଅନ୍ୱୟ**—ସ୍ପଷ୍ଟ । ୬ ।

**ଟୀକା**—[ ଆସୁରୀଂ ସମ୍ପଦଂ ଅଭିଜାତଂ, ଆସୁରଂ ସର୍ଗଂ ବା ବିସ୍ତରେଣ ବକ୍ତୁଂ ପ୍ରତିଜାନାତି ]—ଅସ୍ମିନ୍ ଲୋକେ ଦ୍ୱୌ ଭୂତସର୍ଗୌ (ପ୍ରାଣିନାଂ ପ୍ରକାରୌ)—ଦୈବଃ, ଆସୁରଃ ଏବ ଚ [ ଇତି ] । ଦୈବଃ [ ଇତଃ ପୂର୍ବଂ ] ବିସ୍ତରଶଃ ପ୍ରୋକ୍ତଃ । ଅଧୁନା ହେ ପାର୍ଥ, ମେ (ମତ୍‌ସକାଶାତ୍) ଆସୁରଂ [ ସର୍ଗଂ ] ଶୃଣୁ । ୬ ।

**ଅର୍ଥ**—[ ଆସୁର ଢଙ୍ଗ କଥା ଭଲ କରି କହିବେ ବୋଲି କହୁଛନ୍ତି ] ଏ ମର୍ତ୍ତ୍ୟ ଲୋକରେ ଦୁଇଟି ପ୍ରକାର ଲୋକ ଦେଖାଯାନ୍ତି—ଦୈବ ଓ ଆସୁର । ଦୈବ କଥା ବହୁତ କୁହାଗଲାଣି; ହେ ପାର୍ଥ, ଏବେ ଆସୁର କଥା ମୋଠୁ ଶୁଣ । ୬ ।

**ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ଜନା ନ ବିଦୁରାସୁରାଃ ।**
**ନ ଶୌଚଂ ନାପି ଚାଚାରୋ ନ ସତ୍ୟଂ ତେଷୁ ବିଦ୍ୟତେ ।୭।**

**ଅନ୍ୱୟ**—ସ୍ପଷ୍ଟ । ୭ ।

**ଟୀକା**—[ ତଦାସୁରଂ ନିରୂପୟତି ଦ୍ୱାଦଶଭିଃ ]—ଆସୁରାଃ ଜନାଃ ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ( କୁତ୍ର ପ୍ରବୃତ୍ତିଃ, କୁତ୍ର ବା ନିବୃତ୍ତିଃ କାର୍ଯ୍ୟା—ଇତି ) ନ ବିଦୁଃ । ନ ଶୌଚଂ, ନ ଅପି ଚ ଆଚାରଃ ନ ସତ୍ୟଂ, ତେଷୁ ବିଦ୍ୟତେ । ୭ ।

**ଅର୍ଥ**—[ବାରଟି ଶ୍ଳୋକରେ ସେହି ଆସୁର କଥା କହୁଚନ୍ତି]—ଆସୁର ଲୋକଙ୍କର ପ୍ରବୃତ୍ତି କି ନିବୃତ୍ତି କିଛି ଈଶ୍ୱର ନାହିଁ—(ଅର୍ଥାତ୍, କାହିଁରେ ପ୍ରବର୍ତ୍ତିବାକୁ ହେବ, କାହିଁରେ ବା ନିବର୍ତ୍ତିବାକୁ ହେବ, ସେମାନେ ବୁଝି ବିଚାର କରନ୍ତି ନାହିଁ) । ତାଙ୍କଠି ଶୌଚ ନାହିଁ, କି ଆଚାର ନାହିଁ, କି ସତ୍ୟ ନାହିଁ । ୭ ।

**ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରମ୍ ।**
**ଅପରସ୍ପରସମ୍ଭୂତଂ କିମନ୍ୟତ୍ କାମହୈତୁକମ୍ । ୮ ।**

**ଅନ୍ୱୟ**—ତେ ଜଗତ୍ ଅସତ୍ୟଂ, ଅପ୍ରତିଷ୍ଠଂ, ଅନୀଶ୍ୱରଂ, ଅପରସ୍ପରସମ୍ଭୂତଂ, କାମହୈତୁକଂ, କିଂ ଅନ୍ୟତ୍ ଆହୁଃ । ୮ ।

**ଟୀକା**—ତେ ଜଗତ୍ ଅସତ୍ୟଂ (ସଦା କ୍ଷଣିକଂ, ଅନିତ୍ୟଂ) ଅପ୍ରତିଷ୍ଠଂ (ନିରାଧାରଂ) ଅନୀଶ୍ୱରଂ (ଈଶ୍ୱରଶୂନ୍ୟଂ, ଅଚାଳିତଂ, ସ୍ୱତନ୍ତ୍ରଂ) ଅପରସ୍ପରସମ୍ଭୂତଂ (ନ ପୁରୁଷପ୍ରକୃତିସମ୍ପର୍କେଣ ସମ୍ଭୂତଂ—ଯଦ୍ ବା ପ୍ରକୃତିତଃ ଭୂତପର୍ଯ୍ୟନ୍ତଂ ନ ଗୁଣାନାଂ କାର୍ଯ୍ୟକାରଣ ସମ୍ପର୍କେଣ ଜାତଂ) [ଅତଏବ] କାମହୈତୁକଂ [ବିନା] କିଂ ଅନ୍ୟତ୍ (ନ କିଂଚିତ ଅନ୍ୟତ୍ ଇତି ଭାବଃ) [ଇତି] ଆହୁଃ । [ଯଦ୍ ବା କାମହୈତୁକଂ —କାମଜନ୍ୟଂ—ଅପରସ୍ପରସମ୍ଭୂତଂ ନ ସ୍ତ୍ରୀପୁଂସଯୋଃ ପରସ୍ପରସଂଗମାତ୍ ଉତ୍ପନ୍ନଂ ଚେତ୍, ଅନ୍ୟତ୍ କିଂ ? ନ କିଂଚିତ୍ ଅନ୍ୟତ୍ ଇତି ଆହୁଃ । ୮ ।

**ଅର୍ଥ**—ସେମାନେ ଜଗତକୁ ଅସତ୍ୟ ( ଅର୍ଥାତ୍, କ୍ଷଣ କ୍ଷଣକେ ଆନ, ଅନିତ୍ୟ ), ନିରାଧାର, ଈଶ୍ୱରଶୂନ୍ୟ, ପୁରୁଷ ପ୍ରକୃତି ଦୁହିଁଙ୍କ ପରସ୍ପର ସମ୍ପର୍କରେ ଉତ୍ପନ୍ନ ନୁହେ, କାମନା ଭୋଗପାଇଁ ସବୁ ହୋଇଥିବା ଛଡ଼ା ଆଉ କଣ ଅଛି ବୋଲି କହନ୍ତି । ୮ ।

ବ୍ୟାଖ୍ୟା ସୂଚନା—ନିରାଧାର = ଯାହାର କିଛି ଆଧାର ବା ଭିତ୍ତି ନାହିଁ । ଈଶ୍ୱରଶୂନ୍ୟ = କୌଣସି ଚାଳକ ନାହିଁ, ସ୍ୱତନ୍ତ୍ର । ଅପରସ୍ପର ସମ୍ଭୂତର ଅନ୍ୟ ଅର୍ଥ ହୋଇପାରେ, ଯେ ପ୍ରକୃତି, ବୁଦ୍ଧି ଅହଂକାର ପ୍ରଭୃତି ପର ଗୁଣରୁ ଗୁଣରୂପେ ପରସ୍ପରରୁ ଉତ୍ପନ୍ନ ନୁହେ; କିମ୍ବା ଯଜ୍ଞରୁ ବର୍ଷା, ବର୍ଷାରୁ ଅନ୍ନାଦି ପର ପରସ୍ପରରୁ ଉତ୍ପନ୍ନ ନୁହେ—୩. ୧୪, ୧୫ ଦେଖ । ମୋଟ କଥା, ଯାହାଙ୍କର ସୃଷ୍ଟିଧାରଣାର କୌଣସି ତତ୍ତ୍ୱର ଆଲୋଚନାର ଗନ୍ଧ ନାହିଁ କିମ୍ବା ଏପରି ବ ଅନ୍ୱୟ ହୋଇପାରେ, ଯଥା—କାମହେତୁରୁ, ସ୍ତ୍ରୀପୁରୁଷର ପରସ୍ପର ସଙ୍ଗମରୁ ଜଗତ୍ ନୁହେ ତ ଆଉ କଣ ? ଆଉ କି ତତ୍ତ୍ୱଟା ଅଛି ? । ୮ ।

**ଏତାଂ ଦୃଷ୍ଟିମବଷ୍ଟଭ୍ୟ ନଷ୍ଟାତ୍ମାନୋଽଲ୍ପବୁଦ୍ଧୟଃ ।**
**ପ୍ରଭବନ୍ତ୍ୟୁଗ୍ରକର୍ମାଣଃ କ୍ଷୟାୟ ଜଗତୋଽହିତାଃ । ୯ ।**

**ଅନ୍ୱୟ**—ଏତାଂ ଦୃଷ୍ଟିଂ ଅବଷ୍ଟଭ୍ୟ ଅଳ୍ପବୁଦ୍ଧୟଃ ନଷ୍ଟାତ୍ମାନଃ ଉଗ୍ରକର୍ମାଣଃ ଅହିତାଃ [ଜନାଃ] ଜଗତଃ କ୍ଷୟାୟ ପ୍ରଭବନ୍ତି । ୯ ।

**ଟୀକା**—ଏତାଂ (ପୂର୍ବୋକ୍ତାଂ) ଦୃଷ୍ଟିଂ (ମତଂ) ଅବଷ୍ଟଭ୍ୟ (ଆଶ୍ରିତ୍ୟ) ଅଳ୍ପ-ବୁଦ୍ଧୟଃ (ମନ୍ଦବିବେକାଃ) ନଷ୍ଟାତ୍ମାନଃ (ଇନ୍ଦ୍ରିୟପରବଶାଃ ବାଧିତାତ୍ମାନଃ) ଉଗ୍ରକର୍ମାଣଃ (କ୍ରୂରକର୍ମାଣଃ) ଅହିତାଃ (ଦୁଷ୍ଟାଃ) [ଜନାଃ] ଜଗତଃ କ୍ଷୟାୟ ପ୍ରଭବନ୍ତି (ପ୍ରକାଶନ୍ତେ) ।୯।

**ଅର୍ଥ**—ଏହି ଭାବ ଧରି ମନ୍ଦବୁଦ୍ଧି, ଇନ୍ଦ୍ରିୟାସକ୍ତ; କ୍ରୂରକର୍ମା; ଦୁରନ୍ତ ଲୋକେ ସୃଷ୍ଟିନାଶ କରିବା ପାଇଁ ହୁଅନ୍ତି । ୯ ।

**କାମମାଶ୍ରିତ୍ୟ ଦୁଷ୍ପୂରଂ ଦମ୍ଭମାନମଦାନ୍ୱିତାଃ ।**
**ମୋହାଦ୍‌ଗୃହୀତ୍ୱାସଦ୍‌ଗ୍ରାହାନ୍ ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ । ୧୦ ।**

**ଅନ୍ୱୟ**—ଦୁଷ୍ପୂରଂ କାମଂ ଆଶ୍ରିତ୍ୟ ଦମ୍ଭମାନମଦାନ୍ୱିତାଃ ଅଶୁଚିବ୍ରତାଃ ମୋହାତ୍ ଅସଦ୍‌ଗ୍ରାହାନ୍ ଗୃହୀତ୍ୱା ପ୍ରବର୍ତ୍ତନ୍ତେ । ୧୦ ।

**ଟୀକା**—ଦୁଷ୍ପୂରଂ (ତର୍ପୟିତୁମଶକ୍ୟଂ) କାମଂ (କାମନାଂ, ଅଭିଳାଷଂ) ଆଶ୍ରିତ୍ୟ ଦମ୍ଭମାନମଦାନ୍ୱିତାଃ (ଦମ୍ଭାଭିମାନଦର୍ପଯୁକ୍ତାଃ) [ସନ୍ତଃ] ଅଶୁଚିବ୍ରତାଃ (ଅପବିତ୍ରକର୍ମରତତ୍ପରାଃ) [ତେ] ମୋହାତ୍ (ଅବିବେକାଭାବାତ୍) ଅସଦ୍‌ଗ୍ରାହାନ୍ (ଗର୍ହିତନିଶ୍ଚୟାନ୍) ଗୃହୀତ୍ୱା (ଅବଲମ୍ବ୍ୟ) ପ୍ରବର୍ତ୍ତନ୍ତେ । ୧୦ ।

**ଅର୍ଥ**—ଦୁର୍ବାର ଲାଳସାମାନ ଧରି, ଦମ୍ଭ ଓ ଅଭିମାନରେ ମତୁଆଳ ହୋଇ, ସେହି କୁତ୍ସିତକର୍ମୀମାନେ, ଅବିବେକ ହେତୁରୁ ମନ୍ଦ ସଂକଳ୍ପରେ ମାତି କାମ କରନ୍ତି । ୧୦ ।

**ଚିନ୍ତାମପରିମେୟାଂ ଚ ପ୍ରଳୟାନ୍ତାମୁପାଶ୍ରିତାଃ ।**
**କାମୋପଭୋଗପରମା ଏତାବଦିତି ନିଶ୍ଚିତାଃ । ୧୧ ।**
**ଆଶାପାଶଶତୈର୍ବଦ୍ଧାଃ କାମକ୍ରୋଧପରାୟଣାଃ ।**
**ଈହନ୍ତେ କାମଭୋଗାର୍ଥମନ୍ୟାୟେନାର୍ଥସଂଚୟାନ୍ । ୧୨ ।**

**ଅନ୍ୱୟ**—ପ୍ରଳୟାନ୍ତାଂ ଅପରିମେୟାଂ ଚିନ୍ତାଂ ଉପାଶ୍ରିତାଃ କାମୋପଭୋଗପରମାଃ ଏତାବତ୍ ଇତି ନିଶ୍ଚିତାଃ ଆଶାପାଶଶତୈଃ ବଦ୍ଧାଃ କାମକ୍ରୋଧପରାୟଣାଃ କାମଭୋଗାର୍ଥଂ ଅନ୍ୟାୟେନ ଅର୍ଥସଂଚୟାନ୍ ଈହନ୍ତେ । ୧୧-୧୨ ।

**ଟୀକା**—ପ୍ରଳୟାନ୍ତାଂ ( ପ୍ରଳୟପର୍ଯ୍ୟନ୍ତଂ ବ୍ୟାପ୍ତାଂ ) [ଇବ] ଅପରମେୟାଂ (ଇୟତ୍ତାଶୂନ୍ୟାଂ) [ଭୋଗାନାଂ] ଚନ୍ତାଂ ଉପାଶ୍ରିତାଃ (ଅବଲମ୍ବମାନାଃ) କାମୋପଭୋଗ-ପରମାଃ ( କାମନାଭୋଗସର୍ବସ୍ୱାଃ ) [କାମଭୋଗଃ ଏବ ପରମ ପୁରୁଷାର୍ଥଃ—ଇତି] ଏତାବତ୍ ଇତି ନିଶ୍ଚିତାଃ, ଆଶାପାଶଶତୈଃ (ବହ୍ୱାଶାବନ୍ଧନୈଃ) ବଦ୍ଧାଃ କାମକ୍ରୋଧ-ପରାୟଣାଃ [ତେ] କାମଭୋଗାର୍ଥଂ ଅନ୍ୟାୟେନ ଅର୍ଥସଞ୍ଚୟାନ୍ ଈହନ୍ତେ (ଇଚ୍ଛନ୍ତି) । ୧୧-୧୨ ।

**ଅର୍ଥ**—ସତେ ଅବା ପ୍ରଳୟଯାଏ ଲାଗି ରହିବ, ଏହିପରି ଅମାପ ବହୁଭୋଗ ଚନ୍ତାମାନ ଧରି, କାମନାଭୋଗକୁ ସର୍ବସ୍ୱ ମଣି, ଏହି କାମନାଭୋଗ ହିଁ ସବୁ—ଏତିକି ମାତ୍ର ସ୍ଥିର କରି, ଶହ ଶହ ଆଶାଜାଲରେ ବାନ୍ଧି ହୋଇ, କାମକ୍ରୋଧରେ ମାତି, ସେହି ଆସୁର ଲୋକମାନେ କାମନାଭୋଗପାଇଁ ଅନ୍ୟାୟରେ ଧନ ସଞ୍ଚବାକୁ ଲୋଡନ୍ତି । ୧୧-୧୨ ।

ଇଦମଦ୍ୟ ମୟା ଲବ୍ଧମିମଂ ପ୍ରାପ୍ସ୍ୟେ ମନୋରଥମ୍ ।
ଇଦମସ୍ତୀଦମପି ମେ ଭବିଷ୍ୟତି ପୁନର୍ଧନମ୍ । ୧୩ ।
ଅସୌ ମୟା ହତଃ ଶତ୍ରୁର୍ହନିଷ୍ୟେ ଚାପରାନପି ।
ଈଶ୍ୱରୋଽହମହଂ ଭୋଗୀ ସିଦ୍ଧୋଽହଂ ବଳବାନ୍ ସୁଖୀ । ୧୪ ।
ଆଢ୍ୟୋଽଭିଜନବାନସ୍ମି କୋଽନ୍ୟୋଽସ୍ତି ସଦୃଶୋ ମୟା ।
ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟ ଇତ୍ୟଜ୍ଞାନବିମୋହିତାଃ । ୧୫ ।
ଅନେକଚିତ୍ତବିଭ୍ରାନ୍ତା ମୋହଜାଲସମାବୃତାଃ ।
ପ୍ରସକ୍ତାଃ କାମଭୋଗେଷୁ ପତନ୍ତି ନରକେଽଶୁଚୌ । ୧୬ ।

**ଅନ୍ୱୟ**—ମୟା ଅଦ୍ୟ ଇଦଂ ଲବ୍ଧଂ, ଇମଂ ମନୋରଥଂ ପ୍ରାପ୍ସ୍ୟେ, ଇଦଂ ଅସ୍ତି ଇଦଂ ଅପି ଧନଂ ପୁନଃ ମେ ଭବିଷ୍ୟତି, ଅସୌ ଶତ୍ରୁଃ ମୟା ହତଃ, ଅପରାନ୍ ଅପି ହନିଷ୍ୟେ, ଅହଂ ଈଶ୍ୱରଃ, ଅହଂ ଭୋଗୀ, ଅହଂ ସିଦ୍ଧଃ, ବଳବାନ୍, ସୁଖୀ, ଆଢ୍ୟଃ, ଅଭିଜନବାନ୍ ଅସ୍ମି, ମୟା ସଦୃଶଃ ଅନ୍ୟଃ କଃ ଅସ୍ତି ? ଯକ୍ଷ୍ୟେ, ଦାସ୍ୟାମି, ମୋଦିଷ୍ୟେ—ଇତି ଅଜ୍ଞାନ ବିମୋହିତାଃ ଅନେକ ଚିତ୍ତବିଭ୍ରାନ୍ତା, ମୋହଜାଲସମାବୃତାଃ, କାମଭୋଗେଷୁ ପ୍ରସକ୍ତାଃ ଅଶୁଚୌ ନରକେ ପତନ୍ତି । ୧୩-୧୬ ।

**ଟୀକା**—ମୟା ଅଦ୍ୟ ଇଦଂ ଲବ୍‌ଧଂ, ଇମଂ ମନୋରଥଂ (ଅଭିଲଷଣୀୟଂ) [ଅହଂ] ପ୍ରାପ୍‌ସ୍ୟେ, ଇଦଂ [ଧନଂ ମେ] ଅସ୍ତି, ଇଦଂ ଅପି ଧନଂ ପୁନଃ ମେ (ମମ) ଭବିଷ୍ୟତି, ଅସୌ ଶତ୍ରୁଃ ମୟା ହତଃ, ଅପରାନ୍ ଅପି [ଶତ୍ରୂନ୍] ହନିଷ୍ୟେ, ଅହଂ ଈଶ୍ୱରଃ (ପ୍ରଭୁଃ, ଧନୀ ବା) ଅହଂ ଭୋଗୀ, ଅହଂ ସିଦ୍ଧଃ, [ଅହଂ] ବଳବାନ୍, [ଅହଂ] ସୁଖୀ, [ଅହଂ] ଆଢ୍ୟଃ (ଶ୍ରୀମାନ୍), [ଅହଂ] ଅଭିଜନବାନ୍ (କୁଳୀନଃ) ଅସ୍ମି; ମୟା ସଦୃଶଃ ଅନ୍ୟଃ କଃ ଅସ୍ତି ? [ଅହଂ] ଯକ୍ଷ୍ୟେ (ଯାଗଂ କରିଷ୍ୟାମି), ଦାସ୍ୟାମି, (ନାଟ୍ୟାଦିଭିଃ) ମୋଦିଷ୍ୟେ—ଇତି ଅଜ୍ଞାନବିମୋହିତାଃ, ଅନେକଚିତ୍ତବିଭ୍ରାନ୍ତାଃ (ଅନେକଚିତ୍ତେନ, ବହୁକାମନାଭିଃ ଭ୍ରାନ୍ତମନ୍ତଃ) ମୋହଜାଳସମାବୃତାଃ;(ମୋହପାଶ-ଯନ୍ତ୍ରିତାଃ) କାମଭୋଗେଷୁ ପ୍ରସକ୍ତାଃ (ସଦାଦତ୍ତଚିତ୍ତାଃ), ଅଶୁଚୌ (ଘୋରେ, କ୍ଳେଶାବହେ) ନରକେ ପତନ୍ତି । ୧୩-୧୬ ।

**ଅର୍ଥ**—ଆଜି ମତେ ଯା ମିଳିଲା, ଏହି ମନୋରଥକୁ ଏବେ ପୂର୍ଣ୍ଣ କରିବି, ଏ ଧନ ମୋର ଅଛି, ଏତକ ବି ପୁଣି ମୋର ହୋଇଯିବ, ଏ ଶତ୍ରୁକୁ ତ ମୁଁ ମାରିଲି, ଆଉମାନଙ୍କୁ ବି ମାରିବି, ମୁଁ ମାଲିକ, ମୁଁ ଭୋଗୀ, ମୁଁ ସିଦ୍ଧ, ମୁଁ ବଳବାନ୍, ମୁଁ ସୁଖୀ; ମୁଁ ହେଉଚି ଶ୍ରୀମାନ୍, ମୁଁ କୁଳୀନ, ମୋ ପରି ଆଉ କିଏ ଅଛି ? ମୁଁ ଯାଗ କରିବି, ଦାନ ଦେବି, ମଉଜ କରିବି—ଏହିପରି ଅଜ୍ଞାନରେ ମୂଢ଼ ହୋଇଥିବା ଲୋକେ ବହୁ କାମନାରେ ଭ୍ରମି ଭ୍ରମି ମୋହଜାଲରେ ବାନ୍ଧି ହୋଇ କାମଭୋଗରେ ଲାଗିରହି, ଘୋର ନରକରେ ପଡ଼ନ୍ତି । ୧୬ ।

**ଆତ୍ମସମ୍ଭାବିତାଃ ସ୍ତବ୍‌ଧା ଧନମାନମଦାନ୍ୱିତାଃ ।**
**ଯଜନ୍ତେ ନାମଯଜ୍ଞୈସ୍ତେ ଦମ୍ଭେନାବିଧିପୂର୍ବକମ୍ । ୧୭ ।**

**ଅନ୍ୱୟ**—ଆତ୍ମସମ୍ଭାବିତାଃ ସ୍ତବ୍‌ଧାଃ ଧନମାନମଦାନ୍ୱିତାଃ ତେ ଅବିଧିପୂର୍ବକଂ ଦମ୍ଭେନ ନାମଯଜ୍ଞୈଃ ଯଜନ୍ତେ । ୧୭ ।

**ଟୀକା**—[ 'ଯକ୍ଷ୍ୟେ' 'ଦାସ୍ୟାମି'—ଇତି ଯଜ୍ଞଦାନରତାଃ କଥଂ ତେ ନରକେ ପତନ୍ତୀତ୍ୟାଶଙ୍କ୍ୟାହ]—ଆତ୍ମସମ୍ଭାବିତାଃ—(ଆତ୍ମନା ଏବ ବହୁମତାଃ—ନ ତୁ ଅପରୈରିତି ଭାବଃ)ସ୍ତବ୍‌ଧାଃ(ଅନମ୍ରାଃ)ଧନମାନମଦାନ୍ୱିତାଃ(ଧନମାନାହଂକାରଯୁକ୍ତାଃ) ତେ ଅବିଧିପୂର୍ବକଂ (ଯାଦୃଚ୍ଛିକଂ) ଦମ୍ଭେନ (ଆତ୍ମବହୁମତଂ ଖ୍ୟାପନାୟ—ଧର୍ମଧ୍ୱଜିତୟା) ନାମଯଜ୍ଞୈଃ (ନାମ, ନିଜଶ୍ରେଷ୍ଠତ୍ୱଖ୍ୟାପନଂ—ତଦର୍ଥଂ ଉଦ୍ଦିଷ୍ଟଂ କର୍ମ ଯସ୍ମିନ୍ ଯଜ୍ଞେ, ସଃ ନାମଯଜ୍ଞଃ ତୈଃ; ଯଦ୍‌ବା ନାମମାତ୍ରଯଜ୍ଞୈଃ) ଯଜନ୍ତେ (କର୍ମଣି ଉପ୍ତ୍ତିଜନ୍ତି) । ୧୭ ।

**ଅର୍ଥ**—[ଯାଗ କରିବ, ଦାନ କରିବ ବୋଲି ଯଜ୍ଞଦାନାଦି କରି, ସେମାନେ ନରକରେ କିପରି ପଡ଼ନ୍ତି ?—ଏଥିକୁ କହୁଚନ୍ତି]—ଆପଣା ମନକୁ ଆପେ ବଡ଼ ସେହି ଅନଢ଼ୁଆ ବାଜ [ଧର୍ମଧ୍ୱଜୀ] ଲୋକେ ଧନମାନର ମତ୍ତତାରେ ପୂରିରହି ଖାଲି 'ଆମେ' ବୋଲି ଅହଂକାରରେ ସବୁ ବଧି ଛୁଡ଼ି, କେଜେ 'ନାଁ' କରିବା ଯଜ୍ଞରେ କର୍ମସବୁ ଚାଳନ୍ତି । (କିଂବା ଖାଲି 'ନାଁ'କୁ ଯଜ୍ଞ କରନ୍ତି); ଅଥବା ଖାଲି 'ନାମ' ଧରି ମାଳି ଗଡ଼ାଇ ଭାରି ଧାର୍ମିକ ବୋଲି ବଡ଼ାଇ କରନ୍ତି ) । ୧୭ ।

ବ୍ୟାଖ୍ୟା ସୂଚନା—'ନାମେ ଭକ୍ତି' ବା ଖାଲି ନାମ ଜପିବା ଓ କ୍ଲୀଂ ପ୍ରଭୃତି ମନ୍ତ୍ର ଜପିବା ପ୍ରଭୃତି ଆଦମ ଭାରତୀୟ ଅସୁର ସାଧନାକୁ ଏଠି ଲକ୍ଷ୍ୟ ଥିଲା ପରି ମନେହୁଏ । କାରଣ, ଏହା କର୍ମହୀନ ଯଜ୍ଞ ଓ ଅକର୍ମର ବାହ୍ୟାଡମ୍ବର ମାତ୍ର । ପୁଣି .ଅବଧିପୂର୍ବକ କରାହେବା କର୍ମମୟ ଯଜ୍ଞଠାରୁ ଏହା ଭିନ୍ନ । ସେଥିପାଇଁ ୧୭. ୧,୩ ଦେଖ । ୧୭ ।

**ଅହଂକାରଂ ବଲଂ ଦର୍ପଂ କାମଂ କ୍ରୋଧଂ ଚ ସଂଶ୍ରିତାଃ ।**
**ମାମାତ୍ମପରଦେହେଷୁ ପ୍ରଦ୍ୱିଷନ୍ତୋଽଭ୍ୟସୂୟକାଃ । ୧୮ ।**

**ଅନ୍ୱୟ**—ଅହଂକାରଂ, ବଳଂ, ଦର୍ପଂ, କାମଂ, କ୍ରୋଧଂ ଚ ସଂଶ୍ରିତାଃ ଆତ୍ମପରଦେହେଷୁ ମାଂ ପ୍ରଦ୍ୱିଷନ୍ତଃ ଅଭ୍ୟସୂୟକାଃ [ଭବନ୍ତି] । ୧୮ ।

**ଟୀକା**—[ଏବଂ] ଅହଂକାରଂ, ବଳଂ, ଦର୍ପଂ, କାମଂ, କ୍ରୋଧଂ ଚ ସଂଶ୍ରିତାଃ [ତେ] ଆତ୍ମପରଦେହେଷୁ [ଜୀବାତ୍ମରୂପେଣ ସ୍ଥିତଂ] ମାଂ ପ୍ରଦ୍ୱିଷନ୍ତଃ (ଅଭ୍ୟସୂୟନ୍ତଃ) [ସନ୍ତଃ] ଅଭ୍ୟସୂୟକାଃ (ନିନ୍ଦୁକାଃ) [ଭବନ୍ତି] । ୧୮ ।

**ଅର୍ଥ**—[ସେହିପରି] ଅହଂକାର, ବଳ, ବଡ଼ିମା, କାମ ଓ କ୍ରୋଧକୁ ଆଶ୍ରା କରି ସେମାନେ ଆପଣା ଓ ପର ଦେହରେ ଜୀବାତ୍ମା ରୂପେ ଥିବା ମତେ ଦ୍ୱେଷକରି ନିନ୍ଦୁକ ହୁଅନ୍ତି । (ଅର୍ଥାତ୍, ମାନବ ଦେହରେ ଈଶ୍ୱର ଅଛନ୍ତି, ଏ କଥାକୁ ହୁଏତ ତର୍କରେ ଉଡ଼ାଇ ଦେବାକୁ ବସନ୍ତି ) । ୧୮ ।

**ତାନହଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ନରାଧମାନ୍ ।**
**କ୍ଷିପାମ୍ୟଜସ୍ରମଶୁଭାନାସୁରୀଷ୍ୱେବ ଯୋନିଷୁ । ୧୯ ।**

**ଅନ୍ୱୟ**—ସ୍ପଷ୍ଟ । ୧୯ ।

**ଟୀକା**—[ଏବଂ ମାଂ] ଦ୍ୱିଷତଃ ତାନ୍ କ୍ରୂରାନ୍ ଅଶୁଭାନ୍ ନରାଧମାନ୍ ଅହଂ ସଂସାରେଷୁ ଆସୁରୀଷୁ ଏବ ଯୋନିଷୁ ଅଜସ୍ରଂ (ସର୍ବଦା) କ୍ଷିପାମି (ପାତୟାମି) । ୧୯ ।

**ଅର୍ଥ**—[ଏହିପରି] ମତେ ଦ୍ୱେଷ କରୁଥିବା ସେହି କ୍ରୂର ଅମଙ୍ଗଳ ନରାଧମମାନଙ୍କୁ ମୁଁ ସଂସାର-ବନ୍ଧନରେ ଖାଲି ଆସୁରୀ ଯୋନିରେ ବାରମ୍ବାର ପକାଏ । (ଅର୍ଥାତ୍, ଆସୁରୀ ଜାତିରେ ଜନ୍ମ ହୁଏ) । ୧୯ ।

ବ୍ୟାଖ୍ୟା ସୂଚନା—କ୍ରୂର=କାହିଁକି ନା, ସେମାନେ ମନୁଷ୍ୟ ଭିତରେ ଈଶ୍ୱର ପୁରୁଷଙ୍କୁ ନ ଦେଖି ଅନ୍ୟଠାରେ ନିଷ୍ଠୁର ହୁଅନ୍ତି । ଅଶୁଭ=ଅମଙ୍ଗଳ; କାହିଁକି ନା, ତାଙ୍କର କାର୍ଯ୍ୟରେ ସମାଜର ମଙ୍ଗଳ ନଷ୍ଟ ହୁଏ । ୧୯ ।

**ଆସୁରୀଂ ଯୋନିମାପନ୍ନା ମୂଢ଼ା ଜନ୍ମନି ଜନ୍ମନି ।**
**ମାମପ୍ରାପ୍ୟୈବ କୌନ୍ତେୟ ତତୋ ଯାନ୍ତ୍ୟଧମାଂ ଗତିମ୍ ।୨୦।**

**ଅନ୍ୱୟ**—ସ୍ପଷ୍ଟ । ୨୦ ।

**ଟୀକା**—ହେ କୌନ୍ତେୟ, ତେ ମୂଢ଼ାଃ [ଏବଂ] ଜନ୍ମନି ଜନ୍ମନି ଆସୁରୀଂ ଯୋନିଂ ଆପନ୍ନାଃ (ଗତାଃ) [ସନ୍ତଃ] ମାଂ ଏବ ଅପ୍ରାପ୍ୟ, ତତଃ (ତଦାସୁରୀଯୋନେଃ) [ଅପି] ଅଧମାଂ (ହୀନାଂ) ଗତିଂ ଯାନ୍ତି । ୨୦ ।

**ଅର୍ଥ**—ହେ କୌନ୍ତେୟ, ସେହି ମୂଢ଼ମାନେ ଏହିପରି ଜନ୍ମକୁ ଜନ୍ମ ଆସୁରୀ ଯୋନି ପାଇ ପାଇ, ମତେ ନ ପାଇ, ତହୁଁ ବଳି ଆହୁରି ଅଧମ ଗତି ପାଆନ୍ତି ।

ବ୍ୟାଖ୍ୟା ସୂଚନା—ଏହି ଆସୁରୀ ଢଙ୍ଗରେ ବରାବର ରହିଲେ ଏହିପରି କ୍ରମେ ହୀନ ଗତି ପାଆନ୍ତି । ଏଥିରୁ ବୁଝିବା ଠିକ୍ ନୁହେଁ ଯେ, ସେମାନେ ଢଙ୍ଗ ବଦଳାନ୍ତି ନାହିଁ । ଯେ କୌଣସି ଦୁରାଚାର ମଧ୍ୟ ଭକ୍ତରେ ବଦଳି ଯାଇପାରେ—ଏହା ମନେ ରଖିବାକୁ ହେବ । ୯.୩୦, ୩୧ ଦେଖ । ୨୦ ।

**ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ ।**
**କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ ।୨୧।**

**ଅନ୍ୱୟ**—ସ୍ପଷ୍ଟ । ୨୧ ।

**ଟୀକା**—[ସର୍ବାସୁରସଂପଦ୍‌ମୂଳଂ ଦୋଷତ୍ରୟଂ ସମାସତଃ ଆହ]—କାମଃ, କ୍ରୋଧଃ, ତଥା ଲୋଭଃ [ଇତି] ଇଦଂ ତ୍ରିବିଧଂ ଆତ୍ମନଃ ନାଶନଂ (ନାଶକରଂ) ନରକସ୍ୟ ଦ୍ୱାରଂ । ତସ୍ମାତ୍ ଏତତ୍ ତ୍ରୟଂ ତ୍ୟଜେତ୍ । ୨୧ ।

**ଅର୍ଥ**—[ସବୁ ଆସୁର ଦୋଷର ମୂଳ, ତିନୋଟିର ମୋଟାମୋଟି କହି ଦେଉଛନ୍ତି] କାମ, କ୍ରୋଧ ଓ ଲୋଭ ଏହି ତିନୋଟି ଆତ୍ମନାଶକାରୀ ନରକର ତିନୋଟି ଦ୍ୱାର ପରି । ତେଣୁ ଏ ତିନୋଟିକୁ ଛାଡ଼ିବାର ବିଧି । ୨୧ ।

**ଏତୈର୍ବିମୁକ୍ତଃ କୌନ୍ତେୟ ତମୋଦ୍ୱାରୈସ୍ତ୍ରିଭିର୍ନରଃ ।**
**ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିମ୍ ।୨୨।**

**ଅନ୍ୱୟ**—କୌଂତେୟ, ତମୋଦ୍ୱାରୈଃ ଏତୈଃ ତ୍ରିଭିଃ ବିମୁକ୍ତଃ ନରଃ ଆତ୍ମନଃ ଶ୍ରେୟଃ ଆଚରତି, ତତଃ ପରାଂ ଗତିଂ ଯାତି ।୨୨।

**ଟୀକା**—[ ତତ୍ତ୍ୟାଗଫଳମାହ ]—ହେ କୌନ୍ତେୟ, ତମୋଦ୍ୱାରୈଃ (ଅଜ୍ଞାନଦ୍ୱାରରୂପୈଃ—ନରକସ୍ୟ ଦ୍ୱାରୈଃ, ଇତି ଯାବତ୍) ଏତୈଃ ତ୍ରିଭିଃ ବିମୁକ୍ତଃ ନରଃ ଆତ୍ମନଃ (ନିଜସ୍ୟ) ଶ୍ରେୟଃ (ଶୁଭଂ) ଆଚରତି । ତତଃ ପରାଂ ଗତିଂ ଯାତି ।୨୨।

**ଅର୍ଥ**— [ତାଙ୍କୁ ଛାଡ଼ିବାର ଫଳ କହୁଚନ୍ତି]—ହେ କୌନ୍ତେୟ, ଅଜ୍ଞାନ ବା ନରକର ଦ୍ୱାର ଏ ତିନୋଟିରୁ ଉଦ୍ଧାର ପାଇଲେ, ଲୋକ ନିଜ ଆତ୍ମାର ଶ୍ରେୟରେ ଲାଗେ । ତା ପରେ ପରମ ଗତି ପାଏ ।୨୨।

**ଯଃ ଶାସ୍ତ୍ରବିଧିମୁତ୍‌ସୃଜ୍ୟ ବର୍ତ୍ତତେ କାମକାରତଃ ।**
**ନ ସ ସିଦ୍ଧିମବାପ୍ନୋତି ନ ସୁଖଂ ନ ପରାଂ ଗତିମ୍ ।୨୩।**

**ଅନ୍ୱୟ**—ସ୍ପଷ୍ଟ ।୨୩।

**ଟୀକା**—[ ଶାସ୍ତ୍ରବିଧିଃ ନ ତ୍ୟାଜ୍ୟଃ ଇତ୍ୟାହ ]—[ଏବଂ ଅନ୍ୟଥା ଚ ଉପଦିଷ୍ଟଂ ] ଶାସ୍ତ୍ରବିଧିଂ (ଆପ୍ତୋପଦେଶଂ) ଉତ୍ସୃଜ୍ୟ (ତ୍ୟକ୍ତ୍ୱା) ଯଃ କାମକାରତଃ (ଯଥେଚ୍ଛୟା) ବର୍ତ୍ତତେ, ସଃ ନ ସିଦ୍ଧିଂ, ନ ସୁଖଂ, ନ [ଚ] ପରାଂ ଗତିଂ ଅବାପ୍ନୋତି ।୨୩।

**ଅର୍ଥ**—[ଶାସ୍ତ୍ରବିଧି ଛାଡ଼ିବାର ନୁହେ ବୋଲି କହୁଚନ୍ତି]—ଏହିପରି ଓ ଆଉ ଅନେକମନ୍ତେ କୁହାଯାଇଥିବା] ଶାସ୍ତ୍ରର ବିଧି (ଅର୍ଥାତ୍, ଅନୁଭବୀ ଋଷିଙ୍କ ଉପଦେଶ) ଛାଡ଼ି, ମନଇଚ୍ଛା ମୁତାବକ କାମରେ ଯେ ମାତେ, ସେ ସିଦ୍ଧି, କି ସୁଖ, କି ଭଲ ଗତି, କିଛି ପାଏ ନାହିଁ ।୨୩।

ବ୍ୟାଖ୍ୟା ସୂଚନା—ଆସୁର ଲୋକେ ତ ଯଜ୍ଞାଦି କରନ୍ତି, କିନ୍ତୁ ସେମାନେ ଅବିଧିରେ କରନ୍ତି ବୋଲି କୁହାଯାଇଚି । ଏହି ବିଧି ଏଠାରେ ଶାସ୍ତ୍ରବିଧି ବୋଲି କୁହାଯାଇଚି । ସବୁ କାର୍ଯ୍ୟ ନିଜେ ବୁଝି ପ୍ରତି କାର୍ଯ୍ୟରେ ନିୟମମାନ ତିଆରି କରି ଚଳିବା ଠିକ୍ ନୁହେ । ବହୁ କାଳରୁ ଚଳି ଆସିଥିବା ଅନୁଭବୀ ଆପ୍ତମାନଙ୍କ ଉପଦେଶ ମାନି ଚଳିଲେ, କିଛି ଭାବିବାକୁ ନାହିଁ । ସେହିସବୁ ଉପଦେଶହିଁ ଶାସ୍ତ୍ରବିଧି । ସେସବୁ ସାଧାରଣତଃ ଭୁଲ ହୁଏ ନାହିଁ । ଏହାହିଁ କହିବାର ତାତ୍ପର୍ଯ୍ୟ । ପୁଣି ପର ଶ୍ଳୋକ ଟୀକା ଦେଖ ।୨୩।

**ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ ।**
**ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି । ୨୪ ।**

**ଅନ୍ୱୟ**—ତସ୍ମାତ୍ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ ଶାସ୍ତ୍ରଂ ତେ ପ୍ରମାଣଂ, ଶାସ୍ତ୍ରବିଧାନୋକ୍ତଂ ଜ୍ଞାତ୍ୱା ଇହ କର୍ମ କର୍ତ୍ତୁଂ ଅର୍ହସି । ୨୪ ।

**ଟୀକା**—[ଉପଦେଶେନୋପସଂହରତି]—ତସ୍ମାତ୍ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ (କର୍ତ୍ତବ୍ୟାକର୍ତ୍ତବ୍ୟବିନିର୍ଣ୍ଣୟେ) ଶାସ୍ତ୍ରଂ (ଆପ୍ତୋପଦେଶଂ) ତେ (ତବ) ପ୍ରମାଣଂ (ସିଦ୍ଧାନ୍ତ-ସାଧନଂ), [ତତ୍] ଶାସ୍ତ୍ରବିଧାନୋକ୍ତଂ (ଶାସ୍ତ୍ରବିଧିନିର୍ଦ୍ଦେଶଂ) ଜ୍ଞାତ୍ୱା ଇହ କର୍ମ କର୍ତ୍ତୁଂ ଅର୍ହସି । ୨୪ ।

**ଅର୍ଥ**—[ଉପଦେଶ ଦେଇ ଅଧ୍ୟାୟ ଶେଷ କରୁଛନ୍ତି]—ଅତଏବ କଣ କରିବା ଠିକ୍, କଣ କରିବା ଠିକ୍ ନୁହେ—ଏହା ଜାଣିବା ପାଇଁ ଶାସ୍ତ୍ର (ଅର୍ଥାତ୍, ଅନୁଭବୀ ଆପ୍ତ ଋଷିମାନଙ୍କ ଉପଦେଶ) ତୋର ପ୍ରମାଣ ( ବା ଯଥାର୍ଥ ମାପକାଠି ) । ତେବେ ଶାସ୍ତ୍ରବିଧିରେ କୁହାହୋଇଥିବା କଥା ଜାଣି ତୋର ଏଠାରେ କର୍ମ କରିବା ଦରକାର । ୨୪ ।

ବ୍ୟାଖ୍ୟା ସୂଚନା—ଇହ=ଏଠାରେ—ଏ ଯୁଦ୍ଧରେ କମ୍ବା ଇହ ଜଗତରେ; ତେବେ ଶାସ୍ତ୍ରରେ ଯାହା ଅଛି ସେଇଥିଁ ଯେବେ ସମସ୍ତେ ଆଖି ବୁଜି କରିବେ, ତେବେ ମାନବ ସମାଜରେ ଆଉ ନୂଆ କିଛି ହେବନାହିଁ; ଆଉ ବି କେହି ଆପ୍ତ ହେବେ ନାହିଁ; ଯେତିକ ହୋଇଯାଇଛନ୍ତି ସେତିକ । ଏହିପରି ଶଙ୍କା ହେବା ସ୍ୱାଭାବିକ । ଅର୍ଜ୍ଜୁନଙ୍କର ସେହି ଶଙ୍କା ହୋଇଛି । ପର ଅଧ୍ୟାୟ ମୂଳରେ ସେ ତାହା ପଚାରିଛନ୍ତି ଓ ଭଗବାନ୍ ବୁଝାଇଛନ୍ତି, ଦେଖ । ୨୪ ।

———

# ସପ୍ତଦଶ ଅଧ୍ୟାୟ

## ଶ୍ରଦ୍ଧାତ୍ରୟବିଭାଗ ଯୋଗ

### ଅଧ୍ୟାୟ ପ୍ରବେଶ—

ଦୈବ ସମ୍ପଦ୍ ବିଷୟରେ ଯାହା କୁହାଗଲା, ତାହା ସତ୍ତ୍ୱଗୁଣ ବେଶି ଥିବାର ଚିହ୍ନ । ଆସୁର ସମ୍ପଦ୍ ଖୁବ୍ ହେଲେ ରଜୋଗୁଣର ଉପର ସୀମାକୁ ଉଠିପାରେ । ସେଥିରେ ସତ୍ତ୍ୱଗୁଣ ସ୍ପଷ୍ଟ ଫିଟିପାରେ ନାହିଁ । ସେଥିପାଇଁ ଆସୁର ଜୀବର ଦୈବ-ଭାବ ଧରିବାକୁ ଚେଷ୍ଟା କରିବା ଆଗ ଦରକାର । ଏହି ଚେଷ୍ଟାରେ ଶାସ୍ତ୍ର ମାନି ଚାଲିବା ହିଁ ପନ୍ଥା । ତା ନ ହେଲେ ଭୟର ସମ୍ଭାବନା ଅଛି । ଶାସ୍ତ୍ର ଏଠାରେ— 'ଏପରି ଖାଇବ' 'ଏପରି ବସି ପୂଜା କରିବ ନାହିଁ'—ପ୍ରଭୃତି ପରି କେତେଗୁଡ଼ିଏ ଶୁଖିଲା ବିଧିନିଷେଧ ନୁହେଁ । ଏହା ବହୁକାଳର ଅନୁଭବ ଫଳ ଓ ଆତ୍ମଦର୍ଶୀ ଋଷିମାନଙ୍କ ପ୍ରକୃତ ଆଚରଣ ବିଧି—ଶିଷ୍ଟାଚାର । ହେଲେହେଁ, କାମପ୍ରବୃତ୍ତିଙ୍କ କଥା ଛାଡ଼ିଦେଲେ ବି ଲୋକମଙ୍ଗଳ ନିମନ୍ତେ ବୁଦ୍ଧଙ୍କ ପରି ପୁରୁଷ ମଧ୍ୟ ବେଳେ ବେଳେ ଶାସ୍ତ୍ର ଛାଡ଼ି ବା ବିଶ୍ୱାସରେ କର୍ମ କରନ୍ତି ।

ସେହିପରି ଲୋକଙ୍କୁ ଲକ୍ଷ୍ୟକରି ସପ୍ତଦଶ ଅଧ୍ୟାୟର ମୂଳରେ ଅର୍ଜୁନ ପଚାରିଲେ । ଭଗବାନ୍ କହିଲେ, ସେହି ଶ୍ରଦ୍ଧା ଗୁଣ ଅନୁସାରେ ତିନି ପ୍ରକାର; ଖାଲି ଆମେ ଶ୍ରଦ୍ଧାରେ ନୂଆ କଥା କରୁଚୁ ବୋଲି ଶାସ୍ତ୍ର ଛାଡ଼ିକରି ବସିଲେ ହୁଏ ନାହିଁ । ନିଜର ଶକ୍ତି ଅନୁସାରେ ସବୁରି ଶ୍ରଦ୍ଧା ହୁଏ, ମାତ୍ର ଯେତେବେ ବାସ୍ତବିକ ଶ୍ରଦ୍ଧାରେ କିଛି କରିଯାଏ, ତେବେ ସେହି ଶ୍ରଦ୍ଧା ଅନୁସାରେ ସେ କାର୍ଯ୍ୟର ଭଲ ମନ୍ଦ ବିଚାର କରିବାକୁ ହୁଏ । ମାତ୍ର ଯେଉଁମାନେ ଶାସ୍ତ୍ରବିଧି ଛାଡ଼ି କାମ୍ୟ ଅଶାସ୍ତ୍ର ବିଧି ଧରି ଦମ୍ଭ ଅହଂକାରରେ ପ୍ରଯତ୍ନ କରନ୍ତି, ସେହିମାନେ ଅସୁର ବୋଲି କହୁଥିଲି । ଖାଲି ଶାସ୍ତ୍ର ଛାଡ଼ି କିଛି କଲେହିଁ ଲୋକ ଅସୁର ହୁଏ; ଏହା ନୁହେଁ । ଗୁଣ ଦେଖି ସବୁ ବୁଝିବାକୁ ହୁଏ । ଏପରି କି, ଆହାର ମଧ୍ୟ ଗୁଣ ଅନୁସାରେ ତିନିପ୍ରକାର—କିଏ ଖାଉଚି ଦେଖି ଲୋକର ଗୁଣ ଚିହ୍ନାଯାଏ । ମାନବର ନିତ୍ୟନୈମିତ୍ତିକ କର୍ତ୍ତବ୍ୟ ଯଜ୍ଞଦାନ ତପରେ ସେହିପରି ତିନୋଟି ଗୁଣ ପ୍ରକାଶ ପାଏ । ଏହା ବୁଝାଇସାରି 'ଓଁ ତତ୍ ସତ୍' ଏହି ବେଦବଚନରେ ଈଶ୍ୱରମୁଖୀ ସାତ୍ତ୍ୱିକ ଶ୍ରଦ୍ଧାର ତତ୍ତ୍ୱ କିପରି ଲୋକବ୍ୟବହାରରେ ବନ୍ଧା ଅଛି, ତାହା ଦେଖାଇ କହିଚନ୍ତି— ଯାହା ଅଶ୍ରଦ୍ଧା ବା ଅପଶ୍ରଦ୍ଧାରେ କରା ହୁଏ, ତାହାହିଁ ଅସତ୍ ।

ଅର୍ଜୁନ ଉବାଚ

**ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।**
**ତେଷାଂ ନିଷ୍ଠା ତୁ କା କୃଷ୍ଣ ସତ୍ତ୍ୱମାହୋ ରଜସ୍ତମଃ । ୧ ।**

**ଅନ୍ୱୟ**—କୃଷ୍ଣ ! ଯେ ଶାସ୍ତ୍ରବିଧିଂ ଉତ୍ସୃଜ୍ୟ ଶ୍ରଦ୍ଧୟା ଅନ୍ୱିତାଃ ଯଜଂତେ, ତେଷାଂ ନିଷ୍ଠା କା ? ସତ୍ତ୍ୱଂ ଆହୋ ରଜଃ ତମଃ ? । ୧ ।

**ଟୀକା**—ଅର୍ଜୁନ ଉବାଚ—ହେ କୃଷ୍ଣ, ଯେ ତୁ ଶାସ୍ତ୍ରବିଧିଂ ଉତ୍ସୃଜ୍ୟ ( ତ୍ୟକ୍ତ୍ୱା, ଅନାଦୃତ୍ୟ ବା ) ଶ୍ରଦ୍ଧୟା ଅନ୍ୱିତାଃ [ ସନ୍ତଃ ] ଯଜନ୍ତେ ( ଆତ୍ମାନଂ କର୍ମଣି ନିଯୋଜୟନ୍ତି ) ତେଷାଂ [ ସା ଶ୍ରଦ୍ଧାମୂଳା ] ନିଷ୍ଠା କା (କିଂଭୂତା) ? ସତ୍ତ୍ୱଂ ଆହୋ ( ଅଥବା ) ରଜଃ, ତମଃ [ ବା ] ? ( ଅପି ସା ନିଷ୍ଠା ସାତ୍ତ୍ୱିକୀ, ରାଜସୀ, ତାମସୀ ବା ଇତ୍ୟର୍ଥଃ ) । ୧ ।

**ଅର୍ଥ**—ଅର୍ଜୁନ କହିଲେ—କିଂତୁ ହେ କୃଷ୍ଣ, ଯେଉଁମାନେ ଶାସ୍ତ୍ରବିଧିକି ତଳେ ପକାଇ [ ନିଜର ] ବିଶ୍ୱାସରେ ଲାଗିପଡ଼ି କର୍ମରେ ଲାଗନ୍ତି, ତାଙ୍କର ସେହି ବିଶ୍ୱାସ ନିଷ୍ଠା କଣ ? ସତ୍ତ୍ୱ, ନା ରଜ, ନା ତମ ?

ବ୍ୟାଖ୍ୟା ସୂଚନା—ଶ୍ରଦ୍ଧା = ଏହିଥିରେ ସତ୍ୟ ଅଛି ବା ମଙ୍ଗଳ ହେବ ବୋଲି ବିଶ୍ୱାସ । ୧୬.୧୭ ରେ କୁହାଯାଇଥିବା ଅବିଧିପୂର୍ବକ କରାହେବା 'ନାମଯଜ୍ଞ' ଠାରୁ ଏହା ଭିନ୍ନ । ୧ ।

ଶ୍ରୀ ଭଗବାନୁବାଚ

**ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା**
**ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ । ୨ ।**

**ଅନ୍ୱୟ**—ସ୍ପଷ୍ଟ । ୨ ।

**ଟୀକା**—[ ଉତ୍ତରେଣ ] ଶ୍ରୀ ଭଗବାନ୍ ଉବାଚ—ଦେହିନାଂ ସା ଶ୍ରଦ୍ଧା ସ୍ୱଭାବଜା ( ସ୍ୱଭାବଗୁଣାନୁସାରିଣୀ ) ସାତ୍ତ୍ୱିକୀ ରାଜସୀ ତାମସୀ ଚ ଏଇ ଇତି ତ୍ରିବିଧା ଭବତି; ତାଂ ଶୃଣୁ । ୨ ।

**ଅର୍ଥ**—[ ଉତ୍ତରରେ ଶ୍ରୀ ଭଗବାନ୍ କହିଲେ ]—ଲୋକର ସେ ଶ୍ରଦ୍ଧା ସ୍ୱଭାବ ଅନୁସାରେ ସାତ୍ତ୍ୱିକୀ, ରାଜସୀ ଓ ତାମସୀ—ଏହିପରି ତିନି ପ୍ରକାର ହୁଏ । ତା ତେବେ ଶୁଣ । ୨ ।

ବ୍ୟାଖ୍ୟା ସୂଚନା—ଶାସ୍ତ୍ର ତଳକୁ ପକାଇ ଲୋକେ ଉପରକୁ ଉଠି କାମ କରିଥାନ୍ତି, ମାତ୍ର ସେ କାମ ଠିକ୍ ହୋଇପାରେ; ଭୁଲ ବି ହୋଇପାରେ । ମାତ୍ର ଯେଉଁ ବିଶ୍ୱାସରେ ସେପରି ଲୋକ କାମ କରେ, ତାକୁ ସାତ୍ତ୍ୱିକ, କି ରାଜସ, କି ତାମସ —ଏହା ବାରି ଚହ୍ଣିବା ଦରକାର । ୨ ।

**ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ ।**
**ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ ।୩।**

**ଅନ୍ୱୟ**—ଭାରତ ! ସର୍ବସ୍ୟ ସତ୍ତ୍ୱାନୁରୂପା ଶ୍ରଦ୍ଧା ଭବତି । ଅୟଂ ପୁରୁଷଃ ଶ୍ରଦ୍ଧାମୟଃ । ଯଃ ଯତ୍‌ଶ୍ରଦ୍ଧଃ ସ ଏବ ସଃ । ୩ ।

**ଟୀକା**—ହେ ଭାରତ, ସର୍ବସ୍ୟ ସତ୍ତ୍ୱାନୁରୂପା ( ସ୍ୱଭାବାନୁସାରିଣୀ ) ଶ୍ରଦ୍ଧା ଭବତି । ଅୟଂ ପୁରୁଷଃ (ବ୍ୟକ୍ତିଜୀବଃ, ବ୍ୟକ୍ତିଃ) ଶ୍ରଦ୍ଧାମୟଃ (ଶ୍ରଦ୍ଧାସ୍ୱରୂପଃ—ଶ୍ରଦ୍ଧୟା ପ୍ରକାଶତେ ଇବ ଇତି ଭାବଃ); ଯଃ ଯଦଚ୍ଛ୍ରଦ୍ଧଃ (ଯଦ୍ୱା ଶ୍ରଦ୍ଧୟା ବ୍ୟବସିତଃ) ସଃ ଏବ ସଃ [ ପୁରୁଷଃ ଇତି ପରିଚୀୟତେ ] । ୩ ।

**ଅର୍ଥ**—ହେ ଭାରତ, ସମସ୍ତଙ୍କର ସ୍ୱଭାବବଶ୍ୟାବିହିତ ସତ୍ତ୍ୱ ( ବା ଧାତୁ ) ଅନୁସାରେ ଶ୍ରଦ୍ଧା ହୁଏ । ଏ ପୁରୁଷ ( ଅର୍ଥାତ୍, ବ୍ୟକ୍ତି ବା ଲୋକ ) ଶ୍ରଦ୍ଧାମୟ (ଅର୍ଥାତ୍ ବିଶ୍ୱାସରେହିଁ ଗଢ଼ି ହୋଇଯାଏ) । ଯାହାର ଶ୍ରଦ୍ଧା ଯାହା, ସେ ତ ସେଇୟା । ୩ ।

ବ୍ୟାଖ୍ୟା ସୂଚନା—ଯଥା—ଯାହାର ଜନସେବାରେ ଶ୍ରଦ୍ଧା, ସେ ମାନବ-ସେବକ; ରାଜ୍ୟକୁ ରାଜ୍ୟଲୋକଙ୍କର କରିବାରେ ଯାହାର ଶ୍ରଦ୍ଧା, ସେ ଗଣତାନ୍ତ୍ରିକ; ଲୋକଙ୍କୁ କୂଟ କପଟରେ ପକାଇ ସ୍ୱାର୍ଥ ସାଧିବାରେ ଯାହାର ଶ୍ରଦ୍ଧା, ସେ ମାମଲତ୍‌କାର; ଶୋଇବା ବସିବାରେ ଯାହାର ଶ୍ରଦ୍ଧା, ସେ ଅଳସୁଆ; ବୃଥା ଖେଳିବା ବୁଲିବାରେ ଯାହାର ଶ୍ରଦ୍ଧା, ସେ ହେଁଜେଡ଼ା—ଇତ୍ୟାଦି ରୂପେ ଶ୍ରଦ୍ଧା ହିଁ ବ୍ୟକ୍ତିତ୍ୱ ବା ଲୋକର ପରିଚୟ । ୩ ।

**ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ ।**
**ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ ।୪।**

**ଅନ୍ୱୟ**—ସାତ୍ତ୍ୱିକାଃ ଦେବାନ୍ ଯଜଂତେ, ରାଜସାଃ ଯକ୍ଷରକ୍ଷାଂସି, ତାମସାଃ ଚ ଜନାଃ ପ୍ରେତାନ୍ ଭୂତଗଣାନ୍ ଯଜଂତେ । ୪ ।

**ଟୀକା**—[ ତତଃ ତେଷାଂ ଦୃଷ୍ଟଲକ୍ଷଣାନି ଉଦାହୃତ୍ୟ ଆହ]—ସାତ୍ତ୍ୱିକାଃ ଦେବାନ୍ ଯଜନ୍ତେ ( ଭଜନ୍ତି—ପ୍ରକାଶାତ୍ମକଜ୍ଞାନାଲୋଚିତାନି କର୍ମାଣି କୁର୍ବନ୍ତି ବା ), ରାଜସାଃ ଯକ୍ଷରକ୍ଷାଂସି [ ଚ ଯଜନ୍ତେ ]—ରାଗାତ୍ମକାହଂକାରେଣ କୃତାନି କର୍ମାଣି

କୁର୍ବନ୍ତି ବା ), ତାମସାଃ ଚ ଜନାଃ ପ୍ରେତାନ୍ ଭୂତଗଣାନ୍ ଯଜନ୍ତେ (ଅଜ୍ଞାନାତ୍ମକ-ମୋହଜନକାନି କର୍ମାଣି କୁର୍ବନ୍ତି ବା )। ୪ ।

**ଅର୍ଥ**—[ତିହୁଁ ଗୁଣାନୁସାରେ ତାଙ୍କର କାର୍ଯ୍ୟ ଦେଖାଇ କହୁ ଦେଉଛନ୍ତି] —ସାତ୍ତ୍ୱିକ ଲୋକେ ଦେବତାଙ୍କୁ ଭଜନ୍ତି, ରାଜସ ଲୋକେ ଯକ୍ଷ ରାକ୍ଷସଙ୍କୁ, ଆଉ ତାମସ ଲୋକେ ଭୂତପ୍ରେତମାନଙ୍କୁ ଭଜନ୍ତି । ୪ ।

ବ୍ୟାଖ୍ୟା ସୂଚନା—ନିଜ ଶ୍ରଦ୍ଧା ଅନୁସାରେ କର୍ମ ଯାହାର, ଲୋକ ତାକୁଇ ଭଜେ ବା ତଦନୁରୂପ କାର୍ଯ୍ୟ କରେ । ଦେବତାମାନେ ପ୍ରକାଶମୟ; ଏଣୁ ତାଙ୍କୁ ଭଜି ଜ୍ଞାନରେ ବୃଦ୍ଧି କର୍ମ କରାଯାଏ । ଯକ୍ଷ = ଧନପତି କୁବେରଙ୍କ ଧନ ଜଗୁଆଳୀ; ରକ୍ଷ = ରାକ୍ଷସ ବା ଦୂରନ୍ତକର୍ମୀ ଦାନବ; ଧନ ଜଣ ସ୍ୱାର୍ଥ ସାଧିବା, ପରପୀଡ଼ାଦି ଦୂରନ୍ତ କାର୍ଯ୍ୟରେ ମାତ୍ର ସ୍ୱାର୍ଥ ଖୋଜିବା ପ୍ରଭୃତି କାମନା-ଲୋଭର କର୍ମରେ ଯକ୍ଷରାକ୍ଷସ ପୂଜା ହେବାର କଥା । ଭୂତ ପ୍ରେତଙ୍କୁ ଭଜିବା = ଯେପରି କ, ବାଡ଼ି, ବସନ୍ତ, ହାଡ଼ିବାଇ ପ୍ରଭୃତିଙ୍କୁ ଭୟରେ କିଛି ବୁଝି ନପାରି, ଦେବତା ବୋଲି ଭଜିବା; ଏହିସବୁ କର୍ମ ଅଜ୍ଞାନର ମୋହ ବା ଭୟରୁ ହୁଏ ।

**ଅଶାସ୍ତ୍ରବିହିତଂ ଘୋରଂ ତପ୍ୟନ୍ତେ ଯେ ତପୋଜନାଃ ।**
**ଦମ୍ଭାହଂକାରସଂଯୁକ୍ତାଃ କାମରାଗବଲାନ୍ୱିତାଃ । ୫ ।**
**କର୍ଶୟନ୍ତଃ ଶରୀରସ୍ଥଂ ଭୂତଗ୍ରାମମଚେତସଃ ।**
**ମାଂଚୈବାନ୍ତଃ ଶରୀରସ୍ଥଂ ତାନ୍ ବିଦ୍ଧ୍ୟାସୁରନିଶ୍ଚୟାନ୍ ।୬।**

**ଅନ୍ୱୟ**—ଯେ ଜନାଃ ଦମ୍ଭାହଂକାରସଂଯୁକ୍ତାଃ, କାମରାଗ ବଲାନ୍ୱିତାଃ, ଶରୀରସ୍ଥଂ ଭୂତଗ୍ରାମଂ, ଅନ୍ତଃ ଶରୀରସ୍ଥଂ ମାଂ ଚ ଏବ କର୍ଶୟନ୍ତଃ ଅଶାସ୍ତ୍ରବିହିତଂ ଘୋରଂ ତପଃ ତପ୍ୟନ୍ତେ ଅଚେତସଃ ତାନ୍ ଆସୁର-ନିଶ୍ଚୟାନ୍ ବିଦ୍ଧି । ୫-୬ ।

**ଟୀକା**—[ ଅଥ ପ୍ରସଙ୍ଗତଃ ଲୋକେ ବହୁମତାନାଂ କେଷାଂଚିତ୍ ତପସା ଧର୍ମଧ୍ୱଜିତ୍ୱଂ ପ୍ରକଟୟତାଂ ସାତ୍ତ୍ୱିକତ୍ୱଂ ନିରସ୍ୟତି; ଯଥାର୍ଥତଃ ଶାସ୍ତ୍ରଂ କଂ ତତ୍ ସୂଚନୟା ଚ ଦର୍ଶୟତି ]—ଯେ ଜନାଃ [ଅହଂ ତପସ୍ୱୀତି] ଦମ୍ଭାହଂକାରସଂଯୁକ୍ତାଃ, କାମରାଗ-ବଲାନ୍ୱିତାଃ (ପ୍ରତିପତ୍ତ୍ୟାଦୀଚ୍ଛୁହ୍ୟା ତଥା ହଠଯୋଗାଦିନା ଅଭୂତର୍ଦ୍ଧିସ୍ୟାପ୍ରଦର୍ଶନାଦିଷୁ ଆସକ୍ତେଃ ଯତ୍ ବଲଂ ତେନ ଯୁକ୍ତାଃ) [ସନ୍ତଃ] ଶରୀରସ୍ଥଂ ଭୂତଗ୍ରାମଂ (ପଞ୍ଚଭୂତାତ୍ମକଂ ରକ୍ତମାଂସାଦି ) ଅନ୍ତଃ ଶରୀରସ୍ଥଂ [ଜୀବଭୂତଂ] ମାଂ (ପରମେଶ୍ୱରଂ) ଚ କର୍ଶୟନ୍ତଃ (କୃଶଂ କୁର୍ବନ୍ତଃ—ପୀଡ଼ୟନ୍ତଃ) ଅଶାସ୍ତ୍ରବିହିତଂ (ଏବଂବିଧେ କର୍ମଣି କଠୋରଂ ତପଃ—ଘୋରଃ ପ୍ରଯତ୍ନଃ ବା ଯତ୍ର ଉପଦିଶ୍ୟତେ, ନ ତତ୍ ଶାସ୍ତ୍ରଂ—ଇତ୍ୟାଶୟଃ),

ଘୋରଂ (ଉତ୍କଟଂ) ତପଃ ତପ୍ୟନ୍ତେ, ଅଚେତସଃ ( ଅବିବେକାନ୍ ) ତାନ୍ ଆସୁର-ନିଶ୍ଚୟାନ୍ (ଆସୁରଂ କର୍ମ ସାଧୁ ଇତି ନିଶ୍ଚୟଃ, ନିର୍ଣ୍ଣୟୋ ଯେଷାଂ, ତାନ୍—ଆସୁର-କର୍ମିଣଃ) ବିଦ୍ଧି । ୫-୬ ।

**ଅର୍ଥ**—[ଏହିଠାରେ ସନ୍ଦେହ ଭାଙ୍ଗିବା ପାଇଁ ଲୋକରେ ଖାତିର ପାଉଥିବା, ତପସ୍ୟା ଦେଖାଇ ହେଉଥିବା ଧର୍ମଧ୍ୱଜୀ ଲୋକେ ଯେ ସାତ୍ତ୍ୱିକ ନୁହନ୍ତି—ତାହା କହି ଦେଉଚନ୍ତି ଓ ସଙ୍ଗେ ସଙ୍ଗେ ପ୍ରକୃତ ଶାସ୍ତ୍ର କଣ ତା ବି ସୂଚାଇ ଦେଉଚନ୍ତି—] ଯେଉଁ ଲୋକେ ଆମେ ଭାରି ତପସ୍ୱୀ ବୋଲି ବୃଥା ଗର୍ବ ଓ ଅହଂକାର ଧରି, ପ୍ରତିପତ୍ତିଲାଲସା ଓ ହଠଯୋଗାଦିର ଅଦ୍ଭୁତ କର୍ମପ୍ରୀତିରେ ମାତି, ଶରୀରର ରକ୍ତ-ମାଂସାଦି ଭୂତମାନଙ୍କୁ ଓ ଶରୀର ଭିତରେ ଜୀବାତ୍ମାରୂପରେ ଥିବା ମତେ (ବା ପରମେଶ୍ୱରଙ୍କୁ) ପୀଡ଼ା ଦେଇ, ଅଶାସ୍ତ୍ରକୁ ଶାସ୍ତ୍ର ବୋଲି ସେହି ଉପଦେଶର ବାଧ୍ୟ ଧରି ଉତ୍କଟ ତପସ୍ୟା କରନ୍ତି, ସେହି ଅଜ୍ଞାନୀମାନେ ଆସୁର ଭାବକୁ ଠିକ୍ ବୋଲି ଧରିଥାନ୍ତି ଜାଣ୍ । ୫-୬ ।

ବ୍ୟାଖ୍ୟା ସୂଚନା—ଆପ୍ତ ଋଷିଙ୍କ ଅନୁଭବର ଉପଦେଶ ହିଁ ଶାସ୍ତ୍ର; ଏପରି ଭାବ ରଖି ଘୋର ତପସ୍ୟା ବା ପ୍ରଯତ୍ନ କରିବା ଶାସ୍ତ୍ର ନୁହେ । ଯଦି ଏପରି ଉପଦେଶ କାହିଁରେ ଥାଏ, ସେ 'ଅଶାସ୍ତ୍ର' । କିମ୍ବା ଏଠାରେ ଏହି ଅଭିପ୍ରାୟ ଅଛି ଯେ ଶାସ୍ତ୍ରବିଧି ଛାଡ଼ି ଏହିପରି ସବୁ କାମ କଲେ, ଏ ଶ୍ରଦ୍ଧା ସାତ୍ତ୍ୱିକ ନୁହେ—ତେଣୁ ତ୍ୟାଜ୍ୟ । କୃଚ୍ଛ୍ର ସାଧନାଦି ଅଦ୍ଭୁତ କ୍ରିୟା ଦେଖାଇ ନିଜକୁ ମହାପୁରୁଷ ବୋଲି ଦେଖାଇ ଶିଷ୍ୟ ମତାଉଥିବା ଲୋକେ ସାତ୍ତ୍ୱିକ ଶ୍ରଦ୍ଧାବନ୍ତ ନୁହନ୍ତି ବୋଲି ଏଠି ଲକ୍ଷ୍ୟ ଅଛି । ୫-୬ ।

**ଆହାରସ୍ତ୍ୱପି ସର୍ବସ୍ୟ ତ୍ରିବିଧୋ ଭବତି ପ୍ରିୟଃ ।**
**ଯଜ୍ଞସ୍ତପସ୍ତଥା ଦାନଂ ତେଷାଂ ଭେଦମିମଂ ଶୃଣୁ । ୭ ।**

**ଅନ୍ୱୟ**—ସ୍ପଷ୍ଟ । ୭ ।

**ଟୀକା**—[ନ କେବଲଂ ଶ୍ରଦ୍ଧାନୁରୂପଂ ଉକ୍ତଂ ଯଜନଂ ତ୍ରିବିଧଂ, ଅପି] । ତୁ [ଶରୀରବ୍ୟବହାରାଦୟଃ ଅପି ସର୍ବତ୍ର ସର୍ବଂ ଏବଂ ତ୍ରିବିଧଂ,—ଯଥା]—ଆହାରଃ (ଭୋଜନଂ) ଅପି ତ୍ରିବିଧଃ ସର୍ବସ୍ୟ [ଜନସ୍ୟ ଗୁଣଭେଦେନ] ପ୍ରିୟଃ ଭବତି; ତଥା ଯଜ୍ଞଃ, ତପଃ, ଦାନଂ [ଚ], ତେଷାଂ ଇମଂ ଭେଦଂ ଶୃଣୁ । ୭ ।

**ଅର୍ଥ**—[ ଖାଲି ଯେ ଶ୍ରଦ୍ଧାରେ ଭଜିବା ତିନିପ୍ରକାର ତାହା ନୁହେ ], ପରନ୍ତୁ [ଶରୀର ବ୍ୟବହାର ପ୍ରଭୃତି ସବୁ ତିନି ପ୍ରକାର]; ଖାଦ୍ୟ ବି ଏହିପରି ତିନି ପ୍ରକାରରେ ଲୋକଙ୍କର ପ୍ରିୟ ହୁଏ; ସେହିପରି ଯଜ୍ଞ, ଦାନ ଓ ତପ; ତାଙ୍କର ସବୁ ଏହି ତିନି ତିନି ପ୍ରକାର ଭେଦ ଶୁଣ । ୭ ।

ବ୍ୟାଖ୍ୟା ସୂଚନା—ଲୋକ ସାତ୍ତ୍ୱିକ, କି ରାଜସ, କି ତାମସ—ଏହା ଚିହ୍ନିବାର ଲକ୍ଷଣ ଲୋକର ଆହାର ବ୍ୟବହାରରେ ସବଦା ପ୍ରକାଶ ପାଏ, ସେଥିପାଇଁ ଶାସ୍ତ୍ର ଗ୍ରନ୍ଥ କର୍ମ କଲେ ମଧ୍ୟ ସେ କର୍ମ ଭଲ କି ମନ୍ଦ, ଜାଣିବାର କୌଣସି ଅସୁବିଧା ହୁଏ ନାହିଁ। ସେଥିପାଇଁ ବ୍ୟବହାରାଦିରେ ସେହି ଭେଦସବୁ ଯେତେ ସମ୍ଭବ, ଜାଣି ରଖିବା ଉଚିତ। ଏଣୁ ସେଇ ଭେଦସବୁ ଏହି ଅଧ୍ୟାୟ ଓ ପର ଅଧ୍ୟାୟରେ ବହୁତ ବିଷୟ ଧରି ବୁଝାଇ କହିଚନ୍ତି। ଯଜ୍ଞ, ଦାନ, ତପ ବୋଇଲେ, ଏଠି ଲୋକ ବ୍ୟବହାରରେ ଏସବୁ ବୁଝିବାକୁ ହେବ—ବସ୍ତୁପ୍ରକାଶ ଧର୍ମରେ ତାତ୍ତ୍ୱିକ ଯଜ୍ଞ, ଦାନ, ତପ ନୁହେଁ। ତାତ୍ତ୍ୱିକ ବ୍ୟାଖ୍ୟା ପାଇଁ ୧୮.୫ ଟୀକା ଦେଖ। ୭।

**ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ।**
**ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ।୮।**

**ଅନ୍ୱୟ**—ସ୍ପଷ୍ଟ।୮।

**ଟୀକା**—[ସାତ୍ତ୍ୱିକାହାରମାହ]—ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ (ଆୟୁଃ, ଜୀବନକାଳଃ; ସତ୍ତ୍ୱଂ, ଦେହଧାତୁଃ; ବଳଂ, କର୍ମସାମର୍ଥ୍ୟଂ; ଆରୋଗ୍ୟଂ, ସ୍ୱସ୍ଥତା; ସୁଖଂ, ଚିତ୍ତପ୍ରସାଦଃ; ପ୍ରୀତିଃ ରୁଚିଃ—ତେଷାଂ ବିବର୍ଦ୍ଧନାଃ; ବୃଦ୍ଧିକରାଃ) ରସ୍ୟାଃ (ରସବନ୍ତଃ) ସ୍ନିଗ୍ଧାଃ (ସ୍ନେହଃ ଘୃତାଦିଃ, ତେନ ଯୁକ୍ତାଃ—ନ ରୁକ୍ଷାଃ) ସ୍ଥିରାଃ (ସାରବନ୍ତଃ) ହୃଦ୍ୟାଃ (ରୁଚିକରାଃ) ଆହାରାଃ (ଭୋଜନଦ୍ରବ୍ୟାଣି) ସାତ୍ତ୍ୱିକପ୍ରିୟାଃ [ଭବନ୍ତି]।୮।

**ଅର୍ଥ**—[ସାତ୍ତ୍ୱିକ ଆହାର କହୁଚନ୍ତି]—ଯାହା ଆୟୁ, ଧାତୁ, ବଳ, ସ୍ୱାସ୍ଥ୍ୟ, ସୁଖ ଓ ରୁଚି ବଢ଼ାଏ, ଯାହା ରସବନ୍ତ ବା ରସୁଆଳ, ଯାହା ସ୍ନିଗ୍ଧ ବା ଲୁଖୁରା ନୁହେ, ଯହିଁରେ ସାର ଥାଏ (ଅର୍ଥାତ୍, ଯାହା ଚୂଡ଼ା ନଡ଼ିଆରେ ଫାମ୍ପୁ ବା ଫଳ-ମୂଳର ଚୋପା ପ୍ରଭୃତି ପରି ସାରହୀନ ନୁହେ); ଯାହା ରୁଚିକର (ଅର୍ଥାତ୍, ଯାହା ଦେଖିଲେ ଖାଇବାକୁ ମନ ହୁଏ—ଘୃଣା ହୁଏ ନାହିଁ); ସେ ଖାଦ୍ୟସବୁ ସାତ୍ତ୍ୱିକ ଲୋକର ପ୍ରିୟ।୮।

**କଟ୍ୱମ୍ଲଲବଣାତ୍ୟୁଷ୍ଣତୀକ୍ଷ୍ଣରୁକ୍ଷବିଦାହିନଃ।**
**ଆହାରା ରାଜସସ୍ୟେଷ୍ଟା ଦୁଃଖଶୋକାମୟପ୍ରଦାଃ।୯।**

**ଅନ୍ୱୟ**—ସ୍ପଷ୍ଟ।୯।

**ଟୀକା**—[ରାଜସାହାରମାହ] କଟ୍ୱମ୍ଲ-ଲବଣାତ୍ୟୁଷ୍ଣ-ତୀକ୍ଷ୍ଣ-ରୁକ୍ଷ-ବିଦାହିନଃ ('ଅତି'-ଶବ୍ଦଃ କଟ୍ୱାଦିଷୁ ସପ୍ତସୁ ସମ୍ବନ୍ଧ ସବଧ୍ୟତେ—ପରିମିତାଃ ଏତେ ନ ରାଜସା ଇତି

ଭାବଃ—କଟୁଃ, ତିକ୍ତଃ, ତୀବ୍ରସ୍ୱାଦଗନ୍ଧଯୁକ୍ତୋ ବା; ଅମ୍ଳଃ ଲବଣଃ, ଲବଣଯୁକ୍ତଃ, ଉଷ୍ଣଃ, ଉତ୍ତପ୍ତଃ, ତୀକ୍ଷ୍ଣଃ, ମରିଚାଦିବତ୍; ରୂକ୍ଷଃ, କୋଦ୍ରବାଦିବତ୍, ବିଦାହୀ, ସର୍ଷପାଦିବତ୍) ଦୁଃଖଶୋକାମୟପ୍ରଦାଃ (ଆଦୌ ଦୁଃଖଂ, ପଶ୍ଚାତ୍ ଶୋକଂ, ପରିତାପଂ—ଆମୟଂ, ରୋଗଂ, ଚ ପ୍ରଦଦତି—ଇତି) ଆହାରାଃ ରାଜସସ୍ୟ [ଜନସ୍ୟ] ଇଷ୍ଟାଃ (ପ୍ରିୟାଃ) [ଭବନ୍ତି] । ୯ ।

**ଅର୍ଥ**—[ରାଜସ ଆହାର ଯଥା]—ଅତି ପିତା ବା କଡ଼ୁଆ; ଅତି ଆମ୍ବିଳା; ଅତି ଲୁଣି, ଅତି ଉହୁଉହୁ ତାତିଲା; ଅତି ରାଗ, ମାଣ୍ଡିଆ ପ୍ରଭୃତି ପରି ଲୁଖୁରା ଜିନିଷଗୁଡ଼ାଏ; ସୋରିଷ ପ୍ରଭୃତି ପରି ଦାହକର ବା ଜଳାପୋଡ଼ା କରିବା ଜିନିଷରୁ ଗୁଡ଼ାଏ, ଏହିପରି ପୁଣି ଯେଉଁ ପଦାର୍ଥଗୁଡ଼ିକ ଖାଇବାରେ କଷ୍ଟ, କାହିଁକି ଖାଇଲି ବୋଲି ମନ ଦୁଃଖ, ପୁଣି ଶେଷରେ ରୋଗ ଦିଅନ୍ତି; ସେହି ଖାଦ୍ୟଗୁଡ଼ିକ ରାଜସ ଲୋକର ପ୍ରିୟ । ୯ ।

ବ୍ୟାଖ୍ୟା ସୂଚନା—ସଂସ୍କୃତରେ 'କଟୁ' ବୋଇଲେ ମଧ୍ୟ ରାଗ । କିନ୍ତୁ ଏଠାରେ ରାଗ ଅର୍ଥରେ ତୀକ୍ଷ୍ଣ ଥିବାରୁ, କଟୁ ବୋଇଲେ ପିତା କିମ୍ବା କଡ଼ୁଆ ବୁଝିବାକୁ ହେବ । । ୯ ।

**ଯାତଯାମଂ ଗତରସଂ ପୂତି ପର୍ଯ୍ୟୁଷିତଂ ଚ ଯତ୍ ।**
**ଉଚ୍ଛିଷ୍ଟମପି ଚାମେଧ୍ୟଂ ଭୋଜନଂ ତାମସପ୍ରିୟମ୍ । ୧୦।**

**ଅନ୍ୱୟ**—ସ୍ପଷ୍ଟ । ୧୦ ।

**ଟୀକା**—[ତାମସାହାରମାହ]—ଯାତଯାମଂ (ଯାମଃ, ପ୍ରହରକାଳଃ ବହୁକାଳ ଇତି ଯାବତ୍—ଯସ୍ୟ ପଚନାତ୍ ବହୁକାଳଃ ଗତଃ, ତତ୍—ଶୁଷ୍କାନ୍ନାଦିବତ୍ ନୀରସମିତି ଭାବଃ—ମନ୍ଦପକ୍ୱମିତି ଶଙ୍କରଃ) [ଅତଏବ] ଗତରସଂ (ନୀରସଂ, ଶୁଷ୍କଂ) ପୂତି (ଦୁର୍ଗନ୍ଧଂ) ପର୍ଯ୍ୟୁଷିତଂ (ଦିନାନ୍ତରପକ୍ୱଂ) ଚ ଉଚ୍ଛିଷ୍ଟଂ (ଅନ୍ୟ ଭୁକ୍ତାବଶେଷଂ) ଅମେଧ୍ୟଂ (ଅପବିତ୍ରଂ, ଅଯଜ୍ଞାହାରଂ) ଚ ଅପି ଯତ୍, [ତତ୍] ଭୋଜନଂ ତାମସପ୍ରିୟମ୍ ।

**ଅର୍ଥ**—[ତାମସ ଆହାର ଯଥା]—ଯାହା ରନ୍ଧା ହୋଇ ପହରେ ଖଣ୍ଡେ ପଡ଼ିରହି, ନୀରସ ହୋଇଥାଏ ବା ଶୁଖିଯାଇଥାଏ, ପୁଣି ବ ଯାହା ପୋଚଆ, ବାସି, ଅଇଁଠା ଓ ଅଭକ୍ଷ୍ୟ ସେହି ଖାଦ୍ୟଦ୍ରବ୍ୟ ସବୁ ତାମସମାନଙ୍କର ପ୍ରିୟ । ୧୦ ।

ବ୍ୟାଖ୍ୟା ସୂଚନା—ପର୍ଯ୍ୟୁଷିତ = ବାସୀ; ଏଠାରେ ବାସୀଭାତ, ତିଅଣ ପ୍ରଭୃତି ରନ୍ଧା ହୋଇ ଦିନେ ରହିଯାଇଥିବା ଜିନିଷକୁ ବୁଝିବାକୁ ହେବ । ଦହି ବାସୀ ନୁହେଁ । ଏହା ଏକ ସ୍ୱତନ୍ତ୍ର ଖାଦ୍ୟ । ଏହା ସ୍ନିଗ୍ଧ ଓ ହୃଦ୍ୟ । ବାସୀ ଦୁଧ ବୋଲି ଦହିକୁ କେହି କହନ୍ତି ନାହିଁ । ସେହିପରି କାଂଜି । ୧୦ ।

**ଅଫଲାକାଙ୍କ୍ଷିଭିର୍ଯଜ୍ଞୋ ବିଧିଦୃଷ୍ଟୋ ଯ ଇଜ୍ୟତେ ।**
**ଯଷ୍ଟବ୍ୟମେବେତି ମନଃ ସମାଧାୟ ସ ସାତ୍ତ୍ୱିକଃ । ୧୧ ।**

**ଅନ୍ୱୟ**—ଅଫଳାକାଙ୍କ୍ଷିଭିଃ ଯଷ୍ଟବ୍ୟଂ ଏବ ଇତି ମନଃ ସମାଧାୟ ବିଧିଦୃଷ୍ଟଃ ଯଃ ଯଜ୍ଞଃ ଇଜ୍ୟତେ ସଃ ସାତ୍ତ୍ୱିକଃ । ୧୧ ।

**ଟୀକା**—[ଯଜ୍ଞାନାଂ ସାତ୍ତ୍ୱିକତ୍ୱମାହ]—ଅଫଳାକାଂକ୍ଷିଭିଃ (ନିଷ୍କାମୈଃ) [ଜନୈଃ] ଯଷ୍ଟବ୍ୟଂ (ଫଳମସ୍ତୁ ନ ବା ଯଜ୍ଞଃ କର୍ତ୍ତବ୍ୟଃ) ଏବ ଇତି ମନଃ ସମାଧାୟ (ନିଶ୍ଚିତଂ କୃତ୍ୱା, ଉପାସ୍ୟେ ନିଧାୟ ବା) ବିଧିଦୃଷ୍ଟଃ (ଯଥାବିଧି) ଯଃ ଯଜ୍ଞଃ ଇଜ୍ୟତେ (ଅନୁଷ୍ଠୀୟତେ) ସଃ [ଯଜ୍ଞଃ] ସାତ୍ତ୍ୱିକଃ । ୧୧ ।

**ଅର୍ଥ**—[ଯଜ୍ଞରେ ସାତ୍ତ୍ୱିକ କଏ, ତା କହୁଛନ୍ତି]—ଫଳକାମନା ଶୂନ୍ୟ ଲୋକେ ଯଜ୍ଞକର୍ମ କରିବାକୁ ହିଁ ହେବ (ଅବଶ୍ୟ କର୍ତ୍ତବ୍ୟ) ବୋଲି ମନ ଠିକ୍ କରି (କିଂବା ମନକୁ ଈଶ୍ୱରରେ ଠିକ୍ ରଖି) ବିଧି ଅନୁସାରେ ଯେଉଁ ଯଜ୍ଞ କରନ୍ତି, ସେହି ଯଜ୍ଞ ସାତ୍ତ୍ୱିକ । ୧୧ ।

ବ୍ୟାଖ୍ୟା ସୂଚନା—୪ର୍ଥ ଅଧ୍ୟାୟରେ ଯାହା ବୁଝାଇଛନ୍ତି, ସେଥିରୁ ସ୍ପଷ୍ଟ ଯେ ଯଜ୍ଞ କହିଲେ, ଉପାସିତଠାରେ, ବା ଈଶ୍ୱରରେ କର୍ମର ସମର୍ପଣ ବା ବଳିଦାନ । ମାତ୍ର ବେଳେ ବେଳେ ପୁଣି ବେଦର ଯଜ୍ଞକର୍ମ ପ୍ରତି ଲକ୍ଷ୍ୟକରି କହିଛନ୍ତି—ପର ତାମସ ଯଜ୍ଞ ଦେଖ—୧୭.୧୩ । ଠିକ୍ ଅର୍ଥକୁ ଲକ୍ଷ୍ୟ ରଖି ବୁଝିଲେ, ଅସୁବିଧା ହେବ ନାହିଁ । ପୁଣି ତମ ଯଜ୍ଞ ପରି ଯଜ୍ଞରେ, ସନ୍ଧ୍ୟା ଉପାସନାଦିରେ କେତେକଙ୍କର ଖାଲି ନାକ କାନ ଚୁଇଁବା ପରି ଶୁଷ୍କବିଧି ଜଗାଇବା ଛଡ଼ା ଆଉ କଣ ବା ଅଛି ? ।୧୧।

**ଅଭିସନ୍ଧାୟ ତୁ ଫଳଂ ଦମ୍ଭାର୍ଥମପି ଚୈବ ଯତ୍ ।**
**ଇଜ୍ୟତେ ଭରତଶ୍ରେଷ୍ଠ ତଂ ଯଜ୍ଞଂ ବିଦ୍ଧି ରାଜସମ୍ ।୧୨।**

**ଅନ୍ୱୟ**—ସ୍ପଷ୍ଟ । ୧୨ ।

**ଟୀକା**—[ରାଜସଂ ଯଜ୍ଞମାହ]—ହେ ଭରତଶ୍ରେଷ୍ଠ, ଫଳଂ ତୁ ଅଭିସନ୍ଧାୟ (ଉଦ୍ଦିଶ୍ୟ) ଦମ୍ଭାର୍ଥଂ (ସ୍ୱମହତ୍ତ୍ୱଖ୍ୟାପନାୟ) ଚ ଏବ ଯତ୍ (ଯତ୍) ଇଜ୍ୟତେ (ଯଜ୍ଞଃ କ୍ରିୟତେ) ତଂ ଯଜ୍ଞଂ ରାଜସଂ ବିଦ୍ଧି । ୧୨ ।

**ଅର୍ଥ**—[ରାଜସ ଯଜ୍ଞ ଯଥା :—] କିନ୍ତୁ ହେ ଭାରତଶ୍ରେଷ୍ଠ, ଫଳ ପାଇବାକୁ ମନ କରି ପୁଣି ବାହାଦୁରୀ ପାଇଁ ବି ଯେଉଁ ଯଜ୍ଞ କରାଯାଏ, ସେ ଯଜ୍ଞ ଜାଣ୍ ରାଜସ । ୧୨ ।

ବିଧିହୀନମସୃଷ୍ଟାନ୍ନଂ ମନ୍ତ୍ରହୀନମଦକ୍ଷିଣମ୍ ।
ଶ୍ରଦ୍ଧାବିରହିତଂ ଯଜ୍ଞଂ ତାମସଂ ପରିଚକ୍ଷତେ । ୧୩ ।

ଅନ୍ୱୟଃ—ସ୍ପଷ୍ଟ । ୧୩ ।

ଟୀକା—[ତାମସଯଜ୍ଞମାହ]—ବିଧିହୀନଂ, ଅସୃଷ୍ଟାନ୍ନଂ (ଅନ୍ନଦାନାଦ୍ୟ ଅନ୍ନଂ ନ ପଚ୍ୟତେ ଯସ୍ମିନ୍, ତଂ) ମନ୍ତ୍ରହୀନଂ, ଅଦକ୍ଷିଣଂ (ଦକ୍ଷିଣାଦି ନ ଦୀୟତେ ଯସ୍ମିନ୍, ତଂ) ଶ୍ରଦ୍ଧାବିରହିତଂ (ବାଧବାଧକତୟା କୃତଂ) ଯଜ୍ଞଂ [ବୁଧାଃ] ତାମସଂ ପରିଚକ୍ଷତେ (କଥୟନ୍ତି) । ୧୩ ।

ଅର୍ଥ—[ତାମସ ଯଜ୍ଞ ଯଥା :—] ଯହିଁରେ ବିଧି ବୁଝିବାର ନାହିଁ, ଲୋକଙ୍କୁ ଦେବାକୁ ଅନ୍ନ ତିଆରି କରିବାର ନାହିଁ, ମନ୍ତ୍ର ନାହିଁ, ଦାନରେ ଦକ୍ଷିଣା ନାହିଁ, ଏହିପରି ଶ୍ରଦ୍ଧା ନ ଥାଇ ଖାଲି ବାଧବାଧକତାରେ—ଅର୍ଥାତ୍, ନ କଲେ ଲୋକେ କଣ ବୋଲିବେ ବୋଲି ଯେଉଁ ଯଜ୍ଞ କରାଯାଏ, ସେହି ଯଜ୍ଞକୁ ତାମସ ବୋଲି କହନ୍ତି । ୧୩ ।

ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ ଶୌଚମାର୍ଜବମ୍ ।
ବ୍ରହ୍ମଚର୍ଯ୍ୟମହିଂସା ଚ ଶାରୀରଂ ତପ ଉଚ୍ୟତେ । ୧୪ ।

ଅନ୍ୱୟଃ—ସ୍ପଷ୍ଟ । ୧୪ ।

ଟୀକା—ତତଃ [ସାତ୍ତ୍ୱିକାଦିତ୍ରିବିଧସ୍ୟ ତପସଃ କଥନାତ୍ ପ୍ରାକ୍—ନ କୃଚ୍ଛ୍ରଚାନ୍ଦ୍ରାୟଣାଦୟଃ ତଥା ବନାନ୍ତବାସେ ଶରୀରକ୍ଲେଶେନ ଆସନପ୍ରାଣାୟାମାଦୟଃ ତପଃ, ଅପି ତୁ ଶ୍ରଦ୍ଧୟା ପ୍ରଯତ୍ନଃ ଏବ ତପଃ ଇତି—ତସ୍ୟ ତପସଃ ଶାରୀର-ବାଚକ-ମାନସିକ-ଭେଦଂ ନିର୍ଦ୍ଦିଶ୍ୟତି]—ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ, ଶୌଚଂ (ବାହ୍ୟାଭ୍ୟନ୍ତରଶୁଦ୍ଧିଃ) ଆର୍ଜବଂ (ସରଳ ବ୍ୟବହାରଃ) ବ୍ରହ୍ମଚର୍ଯ୍ୟଂ (ବୀର୍ଯ୍ୟଧାରଣଂ) ଅହିଂସା ଚ ଶାରୀରଂ ତପଃ ଉଚ୍ୟତେ । ୧୪ ।

ଅର୍ଥ—[ ଏବେ ସାତ୍ତ୍ୱିକାଦି ତିନିପ୍ରକାର ତପ କଥା କହିବା ଆଗରୁ ତପ କଥାଟିର ଠିକ୍ ଅର୍ଥ କଣ—ଅର୍ଥାତ୍, ବଣରେ ଯାଇ ଏକାନ୍ତରେ ଖାଲି କାୟାକୁ କଷ୍ଟ ଦେଇ ଆସନ ପ୍ରାଣାୟାମାଦି କରି, ବା ବ୍ରତ ଉପବାସାଦି କରି, କଷ୍ଟ ପାଇ, ଲୋକେ ଯାହା କରନ୍ତି ଓ ଲୋକରେ ଯାହାକୁ ତପସ୍ୟା ବୋଲି କୁହାଯାଏ, ତାହା ତପ ନୁହେଁ; କେବଳ ସାଧାରଣ ଲୋକଦୃଷ୍ଟିରେ ରହି, ଶ୍ରଦ୍ଧାରେ ସ୍ୱଧର୍ମ ପାଳିବାର ଯେ ପ୍ରଯତ୍ନ ବା ଚେଷ୍ଟା ତାହାହିଁ ତପ—ଏହା ସ୍ପଷ୍ଟ କରିଦେବା ପାଇଁ, ଦେହ, ବାକ୍ୟ ଓ ମନର ତପ କଣ ତାହା ଦେଖାଇ ଦେଉଚନ୍ତି । ସେଥିରେ ଦେହରେ ତପ, ଯଥା—] ଦେବତା, ବ୍ରାହ୍ମଣ, ଗୁରୁଜନ ଓ ଜ୍ଞାନୀଙ୍କର ପୂଜା ବା ଯଥାର୍ଥ ଆଦର, ଶୌଚ; ଅର୍ଥାତ

ନିୟମିତ ଝାଡ଼ାଯିବା, ଦାନ୍ତ ଘଷିବା, ଗାଧୋଇବା ପ୍ରଭୃତିରେ ଭିତର ଓ ବାହାରର ଶୁଦ୍ଧି, ସରଳ ଚାଲିଚଳନ; ବ୍ରହ୍ମଚର୍ଯ୍ୟ ଓ ଅହିଂସାକୁ ହିଁ ଶରୀର ବା ଦେହର ତପ କୁହାଯାଏ । ୧୪ ।

**ଅନୁଦ୍‌ବେଗକରଂ ବାକ୍ୟଂ ସତ୍ୟଂ ପ୍ରିୟହିତଂ ଚ ଯତ୍**
**ସ୍ୱାଧ୍ୟାୟାଭ୍ୟସନଂ ଚୈବ ବାଙ୍ମୟଂ ତପ ଉଚ୍ୟତେ । ୧୫ ।**

**ଅନ୍ୱୟ**—ସ୍ପଷ୍ଟ । ୧୫ ।

**ଟୀକା**—[ବାଚକଂ ତପ ଆହ]—ଅନୁଦ୍‌ବେଗକରଂ (ନ କସ୍ୟଚିତ୍ ଦୁଃଖକରଂ) ସତ୍ୟଂ (ଯଥାଘଟିତଂ) ପ୍ରିୟହିତଂ (ପ୍ରିୟଂ, ମନୋହାରି ଚ, ହିତଂ, ଶ୍ରେୟସ୍କରଂ ଚ) ଚ ଯତ୍ ବାକ୍ୟ, ସ୍ୱାଧ୍ୟାୟାଭ୍ୟସନଂ (ବେଦଶାସ୍ତ୍ରାଦିପାଠାବୃତ୍ତିଃ) ଏବ ଚ ବାଙ୍ମୟଂ (ବାଚକଂ) ତପଃ ଉଚ୍ୟତେ । ୧୫ ।

**ଅର୍ଥ**—[ବାଚକ ତପ ଯଥ ]—କାହାର ଉଦ୍‌ବେଗ ନ ହେବା ଭଳି, ସତ, ସୁନ୍ଦର ଓ ହିତ ଯେଉଁ କଥା, ତାକୁ; ପୁଣି ବେଦଶାସ୍ତ୍ରାଦିପାଠର ଅଭ୍ୟାସକୁ ହିଁ ବାଚକ ତପ କୁହାଯାଏ । ୧୫ ।

**ମନଃପ୍ରସାଦଃସୌମ୍ୟତ୍ୱଂ ମୌନମାତ୍ମବିନିଗ୍ରହଃ ।**
**ଭାବସଂଶୁଦ୍ଧିରିତ୍ୟେତତ୍ ତପୋ ମାନସମୁଚ୍ୟତେ ।୧୬।**

**ଅନ୍ୱୟ**—ସ୍ପଷ୍ଟ । ୧୬ ।

**ଟୀକା**—[ମାନସଂ ତପଃ ଆହ]—ମନଃପ୍ରସାଦଃ (ମନସଃ ନିରୁଦ୍‌ବେଗତା) ସୌମ୍ୟତ୍ୱ (ସୌମନସ୍ୟଂ—ଯତ୍ ମୁଖପ୍ରସନ୍ନତାଦିଲିଙ୍ଗ ବ୍ୟଜ୍ୟତେ) ମୌନଂ (ମୁନେର୍ଭାବଃ ବୁଦ୍ଧିସ୍ଥିରତୟା ବାକ୍‌ସଂଯମଃ) ଆତ୍ମବିନିଗ୍ରହଃ (ଚିତ୍ତନିରୋଧଃ, ଅଚାପଲ୍ୟତ୍ୱଂ) ଭାବସଂଶୁଦ୍ଧିଃ (ଈର୍ଷ୍ୟାଦେ ଅଭାବଃ) ଇତି ଏତତ୍ ମାନସଂ ତପଃ ଉଚ୍ୟତେ । ୧୬ ।

**ଅର୍ଥ**—[ମାନସ ତପ ଯଥା :—]—ମନକୁ ଉଦ୍‌ବିଗ୍ନ ବା ଉଦ୍‌ବ୍ୟସ୍ତ ନ କରିବା; ଭଲ ମନ ଜଣାପଡ଼ିବା ଭଳି ମୁଖାଦିର ସୁନ୍ଦରତା; ଧ୍ୟାନରତ ମୁନି ପରି ବୁଦ୍ଧି ସ୍ଥିର ରଖି ବେଶିଗୁଡ଼ାଏ କଥା ବୃଥାରେ କହିବାର ଲୋକ ନିବୃତ୍ତ କରିବା; ଆତ୍ମାକୁ ଭୋଗରୁ ଫେରାଇ ଠିକ୍ ରଖିବା ଅର୍ଥାତ୍, (ଇନ୍ଦ୍ରିୟସେବା କିମ୍ବା ଖେଳ ପ୍ରଭୃତି ବ୍ୟସନରେ ନ ମାତିବା;) କାହାରି ଖରାପ ନ ବାଞ୍ଛିବା (ଅର୍ଥାତ୍ ମନ୍ଦ ନ ପାଞ୍ଚିବା); ଏସବୁକୁ ମାନସ ତପ କୁହାଯାଏ । ୧୬ ।

**ଶ୍ରଦ୍ଧୟା ପରୟା ତପ୍ତଂ ତପସ୍ତତ୍ ତ୍ରିବିଧଂ ନରୈଃ ।**
**ଅଫଳାକାଙ୍‌କ୍ଷିଭିର୍ଯୁକ୍ତୈଃ ସାତ୍ତ୍ୱିକଂ ପରିଚକ୍ଷତେ ।୧୭।**

**ଅନ୍ୱୟ**—ଅଫଳାକାଙ୍‌କ୍ଷିଭିଃ ଯୁକ୍ତୈଃ ନରୈଃ ପରୟା ଶ୍ରଦ୍ଧୟା ତପ୍ତଂ ତତ୍ ତ୍ରିବିଧଂ ତପଃ ସାତ୍ତ୍ୱିକଂ ପରିଚକ୍ଷତେ । ୧୭ ।

**ଟୀକା**—[ଏତତ୍ ତ୍ରିବିଧଂ ତପଃ ପୁନଃ ସାତ୍ତ୍ୱିକାଦିଭେଦେନ ବର୍ଣ୍ଣୟନ୍ତି— ତତ୍ର ସାତ୍ତ୍ୱିକଂ ତପଃ ଆହ]—ଅଫଳାକାଙ୍‌କ୍ଷିଭିଃ (ଫଳେଚ୍ଛାରହିତୈଃ) ଯୁକ୍ତୈଃ (ଆତ୍ମନିଷ୍ଠାଭିଃ କର୍ମପରୈଃ) ନରୈଃ ପରୟା ଶ୍ରଦ୍ଧୟା ତପ୍ତଂ (ଅନୁଷ୍ଠିତଂ) ତତ୍ (ଉକ୍ତଂ) [ କାୟିକାଦି ] ତ୍ରିବିଧଂ ତପଃ [ ବୁଧାଃ ] ସାତ୍ତ୍ୱିକଂ ପରିଚକ୍ଷତେ (କଥୟନ୍ତି) । ୧୭ ।

**ଅର୍ଥ**—[ଏହି ତିନି ପ୍ରକାର ତପକୁ ପୁଣି ସାତ୍ତ୍ୱିକାଦି ତିନି ଭାଗରେ ଦେଖାଉଛନ୍ତି—ସେଥିରେ ସାତ୍ତ୍ୱିକ ତପ ଯଥା :—]—କର୍ମରେ ଆତ୍ମନିଷ୍ଠା ଧରି, ଫଳ ହେବା ନ ହେବାରେ ନ ଭଳି, ଅତ୍ୟନ୍ତ ଶ୍ରଦ୍ଧାରେ କରାଯାଇଥିବା ସେହି ତିନି ପ୍ରକାର ତପକୁ ସାତ୍ତ୍ୱିକ କହନ୍ତି । ୧୭ ।

**ସତ୍କାରମାନପୂଜାର୍ଥଂ ତପୋ ଦମ୍ଭେନ ଚୈବ ଯତ୍ ।**
**କ୍ରିୟତେ ତଦିହ ପ୍ରୋକ୍ତଂ ରାଜସଂ ଚଳମଧ୍ରୁବମ୍ ।୧୮।**

**ଅନ୍ୱୟ**—ସତ୍କାରମାନପୂଜାର୍ଥଂ ଦମ୍ଭେନ ଚ ଏବ ଯତ୍ ତପଃ କ୍ରିୟତେ, ଇହ ଚଳଂ ଅଧ୍ରୁବଂ ତତ୍ ତପଃ ରାଜସଂ ପ୍ରୋକ୍ତଂ । ୧୮ ।

**ଟୀକା**—[ରାଜସଂ ତପଃ ଆହ]—ସତ୍କାରମାନପୂଜାର୍ଥଂ (ସାଧୁରୟଂ ଜନଃ ଇତି ସାଧୁବାଦଃ, ସତ୍କାରଃ; ପ୍ରଣାମାଦିଭିଃ କୃତଃ ମାନଃ ପାଦପ୍ରକ୍ଷାଳନାଦିଭିଃ ପୂଜା; ଏତନ୍ନିମିତ୍ତଂ) ଦମ୍ଭେନ (ଅହଂକାରେଣ) ଚ ଏବ ଯତ୍ ତପଃ କ୍ରିୟତେ, ଇହ [ଲୋକେ] ଚଳଂ (ଅସ୍ଥାୟିଫଳଂ) ଅଧ୍ରୁବଂ (ଅନିଶ୍ଚିତଫଳଂ) ତତ୍ ତପଃ ରାଜସଂ ପ୍ରୋକ୍ତମ୍ । ୧୮ ।

**ଅର୍ଥ**—[ରାଜସ ତପ ଯଥା:—] ଏ ସାଧୁ ବୋଲି ଜୟ ଜୟ କାର, ନମସ୍କାର ପ୍ରଭୃତି ଅନ୍ୟଠାରୁ ସମ୍ମାନ ଓ ଗୋଡ଼ଧୁଆ ପ୍ରଭୃତି ପୂଜା ପାଇବା ପାଇଁ, ପୁଣି, 'ଆମେ କରୁଚୁ' ବୋଲି ଅହଂକାରରେ ଯେଉଁ ତପ କରା ହୁଏ; ଏହି ମର୍ତ୍ତ୍ୟ-ଲୋକରେ ଅସ୍ଥାୟୀ ଓ ଅନିଶ୍ଚିତ ସେହି ତପକୁ ରାଜସ କୁହାଯାଏ । ୧୮ ।

ବ୍ୟାଖ୍ୟା ସୂଚନା—ଚଳ=ଅସ୍ଥାୟୀ । ଅଧ୍ରୁବ=ଅନିଶ୍ଚିତ । କେବେ ହୁଏତ ଫଳ ହୁଏ ବା ନ ହୁଏ, ସେଥିପାଇଁ ଅନିଶ୍ଚିତ; ଫଳ ହେଲେ ବା ସେ କେତେଦିନ ପାଇଁ ? ସେଥିପାଇଁ ଅସ୍ଥାୟୀ । ୧୮ ।

**ମୂଢଗ୍ରାହେଣାତ୍ମନୋ ଯତ୍ପୀଡ଼ୟା କ୍ରିୟତେ ତପଃ ।**
**ପରସ୍ୟୋତ୍ସାଦନାର୍ଥଂ ବା ତତ୍ ତାମସମୁଦାହୃତମ୍ ।୧୯।**

**ଅନ୍ୱୟ**—ମୂଢ଼ଗ୍ରାହେଣ ଆତ୍ମନଃ ପୀଡ଼ୟା ପରସ୍ୟ ଉତ୍ସାଦନାର୍ଥଂ ବା ଯତ୍ ତପଃ କ୍ରିୟତେ, ତତ୍ ତାମସଂ ଉଦାହୃତଂ ।୧୯।

**ଟୀକା**—[ତାମସଂ ତପଃ ଆହ]—ମୂଢ଼ଗ୍ରାହେଣ (ଅବିବେକାତ୍ ଦୁରାଗ୍ରହେଣ) ଆତ୍ମନଃ (ନିଜସ୍ୟ) ପୀଡ଼ୟା (କ୍ଳେଶେନ) [ସହ] ପରସ୍ୟ (ଅନ୍ୟସ୍ୟ) ଉତ୍ସାଦନାର୍ଥଂ (ବିନାଶାର୍ଥଂ) ବା ଯତ୍ ତପଃ କ୍ରିୟତେ, ତତ୍ ତାମସଂ ଉଦାହୃତଂ (ପ୍ରୋକ୍ତମ୍) । ୧୯ ।

**ଅର୍ଥ**—[ ତାମସ ତପ ଯଥା ]—[ଭଲ ହେଉ, ମନ୍ଦ ହେଉ, ନ ବୁଝି ନ ବିଚାରି ନିଶ୍ଚେ କରିବ ବୋଲି] ମୂଢ଼ ପରି ଆଗ୍ରହ ଧରି, [କରିବାକୁ ବଳ ବା ମନ ନ ଥିବାରୁ] ଆପେ କଷ୍ଟ ପାଇ କିମ୍ବା ( ଜାରଣ ମାରଣ ଆଦି ପ୍ରୟୋଗରେ ) ପରର ସର୍ବନାଶ କରିବା ପାଇଁ ଯେଉଁ ତପ କରାହୁଏ, ତାକୁ ତାମସ କୁହାଯାଏ । ୧୯ ।

ବ୍ୟାଖ୍ୟା ସୂଚନା—ସର୍ବନାଶ, ତପଃ=ପ୍ରଯତ୍ନ । ୧୯ ।

**ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।**
**ଦେଶେ କାଳେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତମ୍ ।୨୦।**

**ଅନ୍ୱୟ**—ଦାତବ୍ୟଂ ଇତି ଯତ୍ ଦାନଂ ଅନୁପକାରିଣେ, ଦେଶେ କାଳେ ଚ ପାତ୍ରେ ଚ ଦୀୟତେ ତତ୍ ଦାନଂ ସାତ୍ତ୍ୱିକଂ ସ୍ମୃତମ୍ । ୨୦ ।

**ଟୀକା**—[ତତଃ ଦାନସ୍ୟ ପ୍ରକାରଭେଦାଃ—ତତ୍ର ସାତ୍ତ୍ୱିକଦାନମାହ] —ଦାତବ୍ୟଂ [ ଏବ ] ଇତି ଯତ୍ ଦାନଂ ଅନୁପକାରିଣେ (ଅକୃତୋପକାରାୟ, ନୋପକରିଷ୍ୟତେ ବା ଜନାୟ ) [ ପୁରୁଷୋତ୍ତମାଦିପୁଣ୍ୟ- ] ଦେଶେ (କ୍ଷେତ୍ରେ) [ ଗ୍ରହଣସଂକ୍ରାନ୍ତ୍ୟେକାଦଶ୍ୟାଦି ଦାନଯୋଗ୍ୟେ ] କାଳେ ଚ [ ଶ୍ରଦ୍ଧାଶୀଳବ୍ରାହ୍ମଣାଦି ସତ୍‌ପାତ୍ରେ ଚ;] [ଯଦ୍ ବା ଦୁର୍ଭିକ୍ଷାଦିଗ୍ରସ୍ତଦେଶେ, ମଠବିହାରାଦିସଦନୁଷ୍ଠାନାଦିଷ୍ୱୁ ବା ଯଥାସମୟେ ସତ୍‌ପାତ୍ରେ ଚ] ଦୀୟତେ, ତତ୍ ଦାନଂ ସାତ୍ତ୍ୱିକଂ ସ୍ମୃତଂ (ଆପ୍ତୈଃ କଥିତମ୍) । ୨୦ ।

**ଅର୍ଥ**—[ତହୁଁ ଦାନର ପ୍ରକାରମାନ କହୁଚନ୍ତି । ସେଥିରେ ସାତ୍ତ୍ୱିକ ଦାନ, ଯଥା]—ଦେବା ଉଚିତ ବୋଲି ଯେଉଁ ଦାନ ଅନୁପକାରୀ ଲୋକଙ୍କୁ ଠିକ୍ ଜାଗାରେ, ଠିକ୍ ସମୟରେ, ସତ୍‌ପାତ୍ରରେ ଦିଆ ହୁଏ, ସେହି ଦାନକୁ ସାତ୍ତ୍ୱିକ ବୋଲି ମନେ ରଖିବାକୁ ହେବ । ୨୦ ।

ବ୍ୟାଖ୍ୟା ସୂଚନା—ଅନୁପକାରୀ ଲୋକ=ଯେ ଉପକାର କରି ନାହିଁ ବା ଯାହାଠୁ ପ୍ରତ୍ୟୁପକାରର ଆଶା ବା ଅପେକ୍ଷା ନାହିଁ; ଯେ ଅପକାର ବା ଅକାର୍ଯ୍ୟ କରେ ସେ ଅପକାରୀ, ମାତ୍ର ଯେ ଉପକାର କରି ନାହିଁ ବା କରିବାର ସମ୍ଭାବନା ନାହିଁ ସେ ଅନୁପକାରୀ । ଅନୁପକାରୀକୁ ଦେବାର ଅର୍ଥ ସୁଝିବା ପାଇଁ ବା ଆଶା କରି ଦେବା ଠିକ୍ ନୁହେଁ । ଦେଶେ, କାଳେ, ପାତ୍ରେ=ପୁରୁଷୋତ୍ତମାଦି ପୁଣ୍ୟକ୍ଷେତ୍ରରେ ଗ୍ରହଣ ଏକାଦଶୀ ପ୍ରଭୃତି ପରି କାଳରେ, ଶୁଦ୍ଧାଗ୍ନିର ବ୍ରାହ୍ମଣାଦି ପରି ପାତ୍ରରେ, କିମ୍ବା ଦୁର୍ଭିକ୍ଷଗ୍ରସ୍ତ ସ୍ଥାନ ପରି ସ୍ଥାନରେ, ବା ଛାତ୍ରାବାସ ବିଦ୍ୟାଳୟାଦି ଅନୁଷ୍ଠାନରେ ମହର୍ଘକାଳରେ ବା ଯଥାସମୟରେ, ସତ୍‌ପାତ୍ରରେ ବା ଠିକ୍ ଲୋକଙ୍କୁ, ଅଥବା ଯୋଗ୍ୟ ହସ୍ତରେ—ଏହିପରି ପରଂପରାରେ ପ୍ରଚଳିତ ଓ ସାର୍ବଜନୀନ ଦୁଇ ପ୍ରକାରରେ ଅର୍ଥ କରାଯାଇପାରେ । ଯାହାର ଯେପରି ଶ୍ରଦ୍ଧା ବା ବିଶ୍ୱାସ, ସେପରି ଅର୍ଥ କରି କାର୍ଯ୍ୟରେ ଲଗାଇ ପାରନ୍ତି । ୨୦ ।

**ଯତ୍ତୁ ପ୍ରତ୍ୟୁପକାରାର୍ଥଂ ଫଳମୁଦ୍ଦିଶ୍ୟ ବା ପୁନଃ ।**
**ଦୀୟତେ ଚ ପରିକ୍ଲିଷ୍ଟଂ ତଦ୍ଦାନଂ ରାଜସଂ ସ୍ମୃତମ୍ ।୨୧।**

**ଅନ୍ୱୟ**—ଯତ୍ ତୁ ପ୍ରତ୍ୟୁପକାରାର୍ଥଂ ପୁନଃ ଫଳଂ ଉଦ୍ଦିଶ୍ୟ ବା ପରିକ୍ଲିଷ୍ଟଂ (ଅନିଚ୍ଛୟା) ଚ ଦୀୟତେ, ତତ୍ ଦାନଂ ରାଜସଂ ସ୍ମୃତମ୍ ।୨୧।

**ଟୀକା**—[ରାଜସଂ ଦାନମାହ] ଯତ୍ ତୁ [ଦାନଂ] ପ୍ରତ୍ୟୁପକାରାର୍ଥଂ ଅୟଂ କଦା ମେ ପ୍ରତ୍ୟୁପକାରଂ କରିଷ୍ୟତି—ଇତି) ପୁନଃ ଫଳଂ ଉଦ୍ଦିଶ୍ୟ ବା ପରିକ୍ଲିଷ୍ଟଂ (ଅନିଚ୍ଛୟା) ଚ ଦୀୟତେ, ତତ୍ ଦାନଂ ରାଜସଂ ସ୍ମୃତମ୍ । ୨୧ ।

**ଅର୍ଥ**—[ରାଜସ ଦାନ ଯଥା —] କିନ୍ତୁ ଯାହା ପ୍ରତି-ଉପକାର ପାଇବା ପାଇଁ, ପୁଣି ଫଳ ଅପେକ୍ଷାରେ ବା ବାଧ୍ୟ ହୋଇ ଦିଆହୁଏ, ସେହି ଦାନକୁ ରାଜସ ବୋଲି ମନେ ରଖିବାକୁ ହେବ । ୨୧ ।

ବ୍ୟାଖ୍ୟା ସୂଚନା—ପ୍ରତି-ଉପକାର ପାଇଁ=ଏହାକୁ ଦେଇଥିଲେ ଏ ମୋର କାର୍ଯ୍ୟ କରିବ ବୋଲି ଫଳ ନିମନ୍ତେ ଅନିଚ୍ଛାରେ ବାଧ୍ୟ ହୋଇ—ଯେପରି କି, ବହୁ ମାନ ବା ଉପାଧି ପ୍ରଭୃତି ପାଇବା ଆଶାରେ ସରକାରୀ ଲୋକଙ୍କ ଚାନ୍ଦା ଫର୍ଦ୍ଦରେ ଲୋକେ ବେଳେ ବେଳେ ବାଧ୍ୟ ହୋଇ ଦସ୍ତଖତ୍ କରିଥାନ୍ତି । (ଏପରି ଦାନ ଇଂରେଜ ଅମଳରେ ବହୁତ ହେଉଥିଲା) । ୨୧ ।

**ଅଦେଶକାଲେ ଯଦ୍ଦାନମପାତ୍ରେଭ୍ୟଶ୍ଚ ଦୀୟତେ ।**
**ଅସତ୍କୃତମବଜ୍ଞାତଂ ତତ୍ ତାମସମୁଦାହୃତମ୍ । ୨୨ ।**

**ଅନ୍ୱୟ**—ଯତ୍ ଦାନଂ ଅଦେଶକାଲେ ଅପାତ୍ରେଭ୍ୟଃ ଚ ଅସତ୍କୃତଂ ଅବଜ୍ଞାତଂ ଦୀୟତେ ତତ୍ ତାମସଂ ଉଦାହୃତମ୍ । ୨୨ ।

**ଟୀକା**—[ତାମସଦାନମାହ]—ଯତ୍ ଦାନଂ ଅଦେଶକାଲେ, ଅପାତ୍ରେଭ୍ୟଃ ଚ ଅସତ୍କୃତଂ (ଦାନୀୟଂ ପ୍ରତି ବିଦ୍ୱେଷେଣ ସହ ଇତି ଭାବଃ) ଅବଜ୍ଞାତଂ (ଅନାଦରେଣ) ଦୀୟତେ [ଯଥା, ଆଦେଶାତ୍ ଭୀତଃ ସନ୍ ଯତ୍ ଦୀୟତେ—ଆଦେଶକାଲେ ଯଦ୍ଦାନମିତି କେଚିତ୍ ପଠନ୍ତି] ତତ୍ ତାମସଂ ଉଦାହୃତମ୍ । ୨୨ ।

**ଅର୍ଥ**—[ତାମସ ଦାନ ଯଥା:—] ଯେଉଁ ଦାନ ଦାନର ଅନୁପଯୁକ୍ତ ଜାଗାରେ ଓ ସମୟରେ ଅନୁପଯୁକ୍ତ ଲୋକକୁ ବିରକ୍ତ ହୋଇ ଅନାଦରରେ ଦିଆ ହୁଏ (ଯେପରି କ—କେହି ଦେ ବୋଲି ଧମକାଇଲେ ଡ଼ରକରି ଯାହା ଦିଆହୁଏ—ଏଠି ଆଦେଶକାଲେ ଯେଉଁ ଦାନ ବୋଲି ମୂଳରୁ କେହି ପଢ଼ନ୍ତି ଓ ସେଇପରି ଅର୍ଥ କରନ୍ତି) ତାକୁ ତାମସ ଦାନ କୁହାଯାଏ । ୨୨ ।

**ଓଁ ତତ୍ସଦିତି ନିର୍ଦ୍ଦେଶୋ ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ ।**
**ବ୍ରାହ୍ମଣାସ୍ତେନ ବେଦାଶ୍ଚ ଯଜ୍ଞାଶ୍ଚ ବିହିତାଃ ପୁରା । ୨୩ ।**

**ଅନ୍ୱୟ**—ବ୍ରହ୍ମଣଃ 'ଓଁ ତତ୍ସତ୍' ଇତି ତ୍ରିବିଧଃ ନିର୍ଦ୍ଦେଶଃ ସ୍ମୃତଃ । ତେନ ବ୍ରାହ୍ମଣାଃ ବେଦାଃ ଚ ଯଜ୍ଞାଃ ଚ ପୁରା ବିହିତାଃ । ୨୩ ।

**ଟୀକା**—[ତର୍ହି ଏତାବତ୍ ଗହନଂ ଯଜ୍ଞଦାନତପଆଦିକର୍ମ ମୁମୁକ୍ଷୁଭିଃ ସର୍ବଥା କଥଂ ନ ତ୍ୟାଜ୍ୟଂ ? ଇତ୍ୟାଶଙ୍କ୍ୟ, ଯଜ୍ଞାଦିକଂ ବ୍ରହ୍ମମୟଂ, ବ୍ରହ୍ମଣା ବିହିତଂ ଅତଏବ, ବିଧିନା କର୍ତ୍ତବ୍ୟଂ ଇତ୍ୟୁପଦିଶ୍ୟ ଉପସଂହରତି] ବ୍ରହ୍ମଣଃ 'ଓଁ ତତ୍ସତ୍' ଇତି ତ୍ରିବିଧଃ ନିର୍ଦ୍ଦେଶଃ (ନାମ୍ନା କଥନଂ) ସ୍ମୃତଃ । ତେନ [ବ୍ରହ୍ମଣା] ବ୍ରାହ୍ମଣାଃ (ବ୍ରାହ୍ମଣାଦୟଃ ପ୍ରଜାଃ) ବେଦାଃ ଚ ଯଜ୍ଞାଃ ଚ ପୁରା ବିହିତାଃ । ୨୩ ।

**ଅର୍ଥ**—[ତେବେ ଏପରି ଗହନ କଥା ଏ ଯଜ୍ଞ ଦାନ ତପ କର୍ମ । ଏସବୁ ଛାଡ଼ିଦେଇ ସାଂଖ୍ୟମାର୍ଗରେ ସନ୍ନ୍ୟାସ କଲେ ତ ମୋକ୍ଷ ବାଟ ସୁଗମ ହୋଇପାରେ । ଏହି ଶଙ୍କା ଘୁଞ୍ଚାଇବାକୁ ଯଜ୍ଞାଦି (କର୍ମ) ବ୍ରହ୍ମନିର୍ମିତ, ବ୍ରହ୍ମମୟ, ଏଣୁ କରଣୀୟ ବୋଲି ଉପଦେଶ ଦେଇ ପ୍ରସଙ୍ଗ ଶେଷ କରୁଛନ୍ତି । ] ଓଁ ତତ୍ସତ୍ (ଓଁ ସେ ସତ୍ୟ) ଏହି ତିନିପ୍ରକାର ନାମରେ ବ୍ରହ୍ମଙ୍କୁ ସ୍ମରଣ କରାଯାଇଚି (ବ୍ରହ୍ମଙ୍କ ନିର୍ଦ୍ଦେଶ କରାଯାଏ) । ସେହି ବ୍ରହ୍ମଦ୍ୱାରା ବ୍ରାହ୍ମଣ ପ୍ରଭୃତି ପ୍ରଜାମାନେ, ବେଦସବୁ ଓ ଯଜ୍ଞବିଧାନମାନ ପୂର୍ବେ କରା ହୋଇଚନ୍ତି । ୨୩ ।

**ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞଦାନତପଃକ୍ରିୟାଃ ।**
**ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମବାଦିନାମ୍ । ୨୪ ।**

**ଅନ୍ୱୟ**—ସ୍ପଷ୍ଟ । ୨୪ ।

**ଟୀକା**—ତସ୍ମାତ୍ ଓଁ ଇତି ଉଦାହୃତ୍ୟ (ଉଚ୍ଚାର୍ଯ୍ୟ) ବିଧାନୋକ୍ତାଃ (ଶାସ୍ତ୍ରାଭିହିତାଃ) ବ୍ରହ୍ମବାଦିନାଂ (ବେଦପରାଣାଂ) ଯଜ୍ଞଦାନତପଃକ୍ରିୟାଃ ସତତଂ ପ୍ରବର୍ତ୍ତନ୍ତେ (ଆରଭ୍ୟ କ୍ରିୟନ୍ତେ) । ୨୪ ।

**ଅର୍ଥ**—ସେଥିପାଇଁ ଓଁ ବୋଲି ଉଚ୍ଚାରଣ କରି ବେଦଶାସ୍ତ୍ରର ବିଧାନରେ କୁହା ହୋଇଥିବା ବେଦବାଦୀମାନଙ୍କର (ବୈଦିକଧର୍ମୀଙ୍କର) ଯଜ୍ଞ ଦାନ ତପ କ୍ରିୟା ସବୁ ସର୍ବଦା ଆରମ୍ଭ ହୁଏ । (ସେମାନେ ଓଁ ବୋଲି ଉଚ୍ଚାରଣ କରି ସବୁ ବୈଦିକ କ୍ରିୟା ଆରମ୍ଭ କରନ୍ତି) । ୨୪ ।

**ତଦିତ୍ୟନଭିସନ୍ଧାୟ ଫଳଂ ଯଜ୍ଞତପଃକ୍ରିୟାଃ ।**
**ଦାନକ୍ରିୟାଶ୍ଚ ବିବିଧାଃ କ୍ରିୟନ୍ତେ ମୋକ୍ଷକାଙ୍କ୍ଷିଭିଃ ।୨୫।**

**ଅନ୍ୱୟ**—ତତ୍ ଇତି ମୋକ୍ଷକାଙ୍କ୍ଷିଭିଃ ଫଳଂ ଅନଭିସନ୍ଧାୟ ବିବିଧାଃ ଯଜ୍ଞତପଃକ୍ରିୟାଃ ଦାନକ୍ରିୟାଶ୍ଚ କ୍ରିୟନ୍ତେ ।୨୫ ।

**ଟୀକା**—[ତସ୍ମାତ୍ ଚ] ତତ୍ ଇତି (ତତ୍ ବ୍ରହ୍ମୈବ ସର୍ବଂ ଇତି) ମୋକ୍ଷକାଙ୍କ୍ଷିଭିଃ (ମୁମୁକ୍ଷୁଭିଃ) ଫଳଂ ଅନଭିସନ୍ଧାୟ (ଅନୁଦ୍ଦିଶ୍ୟ) ବିବିଧାଃ ଯଜ୍ଞତପଃକ୍ରିୟାଃ ଦାନକ୍ରିୟାଶ୍ଚ କ୍ରିୟନ୍ତେ ।୨୫ ।

**ଅର୍ଥ**–[ ସେଇଥିପାଇଁ ବି ] 'ତତ୍ ଇତି' ( ସେହିସବୁ ବୋଲି ) ମୋକ୍ଷାର୍ଥୀମାନେ ଫଳ ପାଇବା ଇଚ୍ଛା ଛାଡ଼ି ନାନାପ୍ରକାର ଯଜ୍ଞ ତପ କ୍ରିୟା ଓ ଦାନକ୍ରିୟାମାନ କରନ୍ତି । ୨୫ ।

**ସଦ୍‌ଭାବେ ସାଧୁଭାବେ ଚ ସଦିତ୍ୟେତତ୍ ପ୍ରଯୁଜ୍ୟତେ ।**
**ପ୍ରଶସ୍ତେ କର୍ମଣି ତଥା ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ । ୨୬ ।**

**ଅନ୍ୱୟ**—ସ୍ପଷ୍ଟ । ୨୬ ।

**ଟୀକା**—[ତସ୍ମାତ୍ ପୁନଃ] ସଦ୍‌ଭାବେ ( ଏତତ୍ ଅସ୍ତୀତି ସତ୍ ସତ୍ୟଂ ଇତି ନିର୍ଦ୍ଦେଶେ) ସାଧୁଭାବେ (ଏତତ୍ ସାଧୁ ଇତି ନିର୍ଦ୍ଦେଶେ) ସତ୍ ଇତି ଏତତ୍ [ ଏଷଃ ଶବ୍ଦଃ] ପ୍ରଯୁଜ୍ୟତେ । ତଥା ହେ ପାର୍ଥ, ପ୍ରଶସ୍ତେ (ପ୍ରଶଂସିତେ) କର୍ମଣି ସତ୍ ଶବ୍ଦଃ ଯୁଜ୍ୟତେ । ୨୬ ।

**ଅର୍ଥ**—[ସେଇଥିପାଇଁ ପୁଣି, ଏ ଅଛୁ, ଘଟିଛୁ—ଅତଏବ ସତ୍ ବା ସତ୍ୟ—ଏହିପରି] ଅଛୁ ବୋଲି ଜଣାଇବା ପାଇଁ ଓ ସାଧୁ ବୋଲି ଜଣାଇବା ପାଇଁ 'ସତ୍' ଏହି ଶବ୍ଦ ପ୍ରୟୋଗ କରାହୁଏ । ପୁଣି ହେ ପାର୍ଥ, ଭଲ କର୍ମରେ ସତ୍କର୍ମ ବୋଲି ସତ୍ ଶବ୍ଦ ଲଗାହୁଏ । ୨୬ ।

ବ୍ୟାଖ୍ୟା ସୂଚନା—ସତ କଥା, ସତ ଘଟନା, ପ୍ରଭୃତିରେ ସତ ବୋଇଲେ ଯାହା ହୋଇଚ ବା ଠିକ୍ ଘଟିଛୁ; ସତ୍ ଲୋକ=ସାଧୁଲୋକ; ସତ୍ କର୍ମ=ଭଲ କର୍ମ । ଏହିପରି ସତ୍ୟ, ଠିକ୍ ବା ଉତ୍ତମ ବୋଲି ଜଣାଇବାକୁ 'ସତ୍' ଶବ୍ଦ ଲାଗେ । ୨୬ ।

**ଯଜ୍ଞେ ତପସି ଦାନେ ଚ ସ୍ଥିତିଃ ସଦିତି ଚୋଚ୍ୟତେ ।**
**କର୍ମ ଚୈବ ତଦର୍ଥୀୟଂ ସଦିତ୍ୟେବାଭିଧୀୟତେ । ୨୭ ।**

**ଅନ୍ୱୟ**—ଯଜ୍ଞେ, ତପସି, ଦାନେ ଚ ଯା ସ୍ଥିତିଃ, ସତ୍ ଇତି ଚ ଉଚ୍ୟତେ । ତଦର୍ଥୀୟଂ କର୍ମ ଏବ ଚ ସତ୍ ଇତି ଏବ ଅଭିଧୀୟତେ । । ୨୭ ।

**ଟୀକା**—ଯଜ୍ଞେ, ତପସି, ଦାନେ ଚ ଯା ସ୍ଥିତି ( ନିଷ୍ଠାଃ, ଐକାନ୍ତିକତା ) [ସା] ସତ୍ ଇତି ଚ [ଅପି] ଉଚ୍ୟତେ । (ତଦର୍ଥୀୟଂ ତତ୍ ସ୍ଥିତିଯୁକ୍ତଯଜ୍ଞାଦିକନିମିତ୍ତଂ) କର୍ମ ଏବ ଚ ସତ୍ ଇତି ଏବ ଅଭିଧୀୟତେ (କଥ୍ୟତେ) । ୨୭ ।

**ଅର୍ଥ**—ଯଜ୍ଞ, ତପ ଓ ଦାନରେ ଯେ ଶ୍ରଦ୍ଧାଯୁକ୍ତ ନିଷ୍ଠା, ତାକୁ ସତ୍ ବୋଲି ବ କୁହାଯାଏ । ସେହିପରି ଟିକା ଓ ନିଷ୍ଠାରେ କରାଯାଉଥିବା ଯଜ୍ଞାଦି ନିମନ୍ତେ ଯେ କର୍ମ, ତାକୁ ବ ସତ୍କର୍ମ ବୋଲି କୁହାଯାଏ । ୨୭ ।

**ଅଶ୍ରଦ୍ଧୟା ହୁତଂ ଦତ୍ତଂ ତପସ୍ତପ୍ତଂ କୃତଂ ଚ ଯତ୍ ।**
**ଅସଦିତ୍ୟୁଚ୍ୟତେ ପାର୍ଥ ନ ଚ ତତ୍ ପ୍ରେତ୍ୟ ନୋ ଇହ ।୨୮।**

**ଅନ୍ୱୟ**—ଅଶ୍ରଦ୍ଧୟା ହୁତଂ, ଦତ୍ତଂ, ତପ୍ତଂ ତପଃ, ଯତ୍ ଚ କୃତଂ, ପାର୍ଥ ! ଅସତ୍ ଇତି, ଉଚ୍ୟତେ ତତ୍ ନ ପ୍ରେତ୍ୟ ନ ଚ ଇହ । ୨୮ ।

**ଟୀକା**—ଅଶ୍ରଦ୍ଧୟା (ଉକ୍ତାଂ ସ୍ଥିତିଂ ବିନା) ହୁତଂ [ଯଜ୍ଞାଦି], ଦତ୍ତଂ [ଦାନଂ] ତପ୍ତଂ ତପଃ, [ଅନ୍ୟତ୍] ଯତ୍ ଚ କୃତଂ, ହେ ପାର୍ଥ, [ତତ୍] ଅସତ୍ ଇତି ଉଚ୍ୟତେ, ତତ୍ ନ ପ୍ରେତ୍ୟ [ଲୋକାନ୍ତରେ ମୋକ୍ଷାୟ ସ୍ୱର୍ଗାୟ ବା], ନ ଇହ [ଜୀବନେ ସୁଖାୟ ଭବତି ] । ୨୮ ।

**ଅର୍ଥ**—ଭକ୍ତି ଶ୍ରଦ୍ଧା ବିନା ଯାହା ଯଜ୍ଞରେ ହୋମ କରାହୁଏ, ଯାହା ବା ଦାନ କରାହୁଏ, ଅଥବା ତପସ୍ୟାରେ ଯାହା ପ୍ରଯନ୍ନ କରାହୁଏ—କିମ୍ବା ଆଉ ଯାହା କିଛି କରାହୁଏ; ହେ ପାର୍ଥ, ସେସବୁ ଅସତ୍ ବୋଲି କୁହାହୁଏ । ସେଇପରି ଅସତ୍‌କ୍ରିୟା କଲେ କାମରେ ଲଗେ ନାହିଁ, କି ଜୀଇଥିଲେ କାମରେ ଲାଗେ ନାହିଁ । (ସେଥିରେ, ମଲା ପରେ ମୋକ୍ଷ ବା ସ୍ୱର୍ଗ ନାହିଁ, କି ଜୀଇଥାଇ ସୁଖ ବା ଭୋଗ ନାହିଁ । ୨୮ ।



# ଅଷ୍ଟାଦଶ ଅଧ୍ୟାୟ

## ମୋକ୍ଷଯୋଗ

### ଅଧ୍ୟାୟ ପ୍ରବେଶ—

ଶ୍ରଦ୍ଧାର ନିଷ୍ଠା ବା ବିଶ୍ୱାସରେ କର୍ମରେ ଲଗିବାକୁ ଗୁଣ ଅନୁସାରେ ତିନି ପ୍ରକାରରେ କୁହାଯାଇଛି । 'ସତ୍' କର୍ମ ଯେ ନିଷ୍ପନ୍ନ କରିବାକୁ ହେବ ତାହା ମଧ୍ୟ ସୂଚନାରେ କୁହାଗଲା—୧୭. ୨୩—୨୮ । ତେବେ ସନ୍ନ୍ୟାସ ଓ ତ୍ୟାଗ ବୋଲି କର୍ମ ଛାଡ଼ିବାର ଯେ ମାର୍ଗ ପ୍ରଚଳିତ ଅଛି, ତାର କି କିଛି ମାତ୍ର ମୂଲ୍ୟ ବା ଅର୍ଥ ନାହିଁ ? ଏହି କଥା ଅଲଗା କରି ଆଉ ଥରେ ଭଲ କରି ଶୁଣିବାକୁ ଅର୍ଜୁନ ଲୋଡ଼ିଲେ । ଭଗବାନ୍ ଏବେ ସ୍ପଷ୍ଟ କହିଦେଲେ—ତ୍ୟାଗ ବି ଗୁଣ ଅନୁସାରେ ତିନି ପ୍ରକାର । ଆସକ୍ତି ଛାଡ଼ି କର୍ମ କରିବା ହିଁ ପ୍ରକୃତ ସନ୍ନ୍ୟାସ ବା ତ୍ୟାଗ, ନିତ୍ୟନିଯୁକ୍ତ କର୍ମ ଛାଡ଼ିବାର ନୁହେଁ; ମୋହରେ ତାକୁ ଛାଡ଼ିଦେବା, ତାମସ ତ୍ୟାଗ । କର୍ମର ହେତୁ ସବୁ ଦେଖାଇ କହିଛନ୍ତି, ସେସବୁ ପ୍ରକୃତି ଓ କର୍ମର ଅନ୍ତର୍ଭୁକ୍ତ ଆତ୍ମା କର୍ତ୍ତା ନୁହେ, ଆତ୍ମା ନିର୍ଲିପ୍ତ । କର୍ମର ଜ୍ଞାନ, କର୍ମ ଓ କର୍ତ୍ତା, ସବୁ ମାନସିକ ସ୍ଥିତି ଓ ସ୍ୱଭାବାଦି ଗୁଣର ଅଧୀନ ଓ ଗୁଣ ଅନୁସାରେ ତିନି ତିନି ପ୍ରକାର । କର୍ମର ଜନୁଷ୍ଠାନ, ବୁଦ୍ଧି; କର୍ମ ଧରି ରଖିବାର ବୃତ୍ତି, ଧୃତି; ଓ କର୍ମର ଉଦ୍ଦେଶ୍ୟ, ସୁଖକୁ ସେହିପରି ତିନି ତିନି ପ୍ରକାରରେ ବୁଝାଇସାରି, ଶେଷରେ ମୋଟରେ କହି ଦେଇଛନ୍ତି—ସ୍ୱର୍ଗ ମର୍ତ୍ତ୍ୟରେ ଯାହା କିଛି ସୃଷ୍ଟବସ୍ତୁ ଅଛି, ସବୁ ଏହିପରି ଗୁଣର ଅଧୀନ; କୌଣସିଟି ଭଲ ବୋଲି ଧରିବାର ନୁହେ, କି କୌଣସିଟି ମନ୍ଦ ବୋଲି ଛାଡ଼ିବାର ନୁହେ । ସତ୍ତ୍ୱଗୁଣରେ ରହି ଗୁଣଭେଦ ଛାଡ଼ିବାକୁ ଯତ୍ନ କରିବା ହିଁ ଉଚିତ । ଏଣୁ ସ୍ୱଭାବନିଯୁକ୍ତ କର୍ମରେ ଈଶ୍ୱରାରାଧନା ହିଁ ପନ୍ଥା । ବ୍ରାହ୍ମଣାଦି ଚାତୁର୍ବର୍ଣ୍ଣ୍ୟର କର୍ମସ୍ୱଭାବ ନିଯୁକ୍ତ । ସେହି ସ୍ୱକର୍ମ ବା ସ୍ୱଧର୍ମରେ ଲଗିରହି ଈଶ୍ୱରଙ୍କୁ ଅର୍ଚ୍ଚନା କରିବା ହିଁ ଠିକ୍ । କେହି କାହାର ସ୍ୱଧର୍ମ ଛାଡ଼ି ଭଲ ବୋଲି ଅନ୍ୟ ଧର୍ମ ଧରିବା ଅତି ଅନ୍ୟାୟ । ଏପରି ଭଲମନ୍ଦ ବୁଝି ନିଜ ପାଇଁ କର୍ମ ବାଛୁବସିଲେ, କେଉଁ କର୍ମରେ ବା ଦୋଷ ନାହିଁ ? ଅନାସକ୍ତ ହୋଇ କର୍ମ କରିଯିବା ହିଁ ନୈଷ୍କର୍ମ୍ୟ । ଏହି ନୈଷ୍କର୍ମ୍ୟରେ ସିଦ୍ଧିହେଲେ ବ୍ରହ୍ମଲାଭ ହୁଏ । ଲକ୍ଷଣ ଦେଖାଇ, ସେହି ବ୍ରହ୍ମଲାଭକୁ ବର୍ଣ୍ଣନ କରି, ତାକୁହିଁ ମୁକ୍ତି ବା ମୋକ୍ଷ ବୋଲି କହିଛନ୍ତି । ପୁଣି ଭଲକରି କହିଛନ୍ତି—

"ଅତଏବ, ସବୁ କର୍ମ ମୋରି ଉପରେ ପକାଇ ଦେଇ, ମୋରିଠି ମନ ଦୃଢ଼ କରି ବୁଦ୍ଧି ଠିକ୍ ରଖି, କରିଯା । ଅହଂକାରରେ ନିଜର କର୍ମ ବୋଲି ବିଗୁର

ବସିଲେ, ମଣବୁ । ଯୁଦ୍ଧ କରିବୁ ନାହିଁ ବୋଲି ବସୁଥିଲେ କ୍ଷଣି, ଯେ ନ କରି ରହିପାରିବୁ ତା ବି ନୁହେ । ତୋ ସ୍ୱଭାବ ତୋତେ ଝିଙ୍କି ଲଗାଇବ । ସ୍ୱଭାବରୂପ ଈଶ୍ୱର ସମସ୍ତଙ୍କ ହୃଦୟରେ ରହି, ସବୁ କରାଉଛନ୍ତି । ସେହି ଈଶ୍ୱରଙ୍କର ସବୁ ବୋଲି, ସେହି ଈଶ୍ୱରଙ୍କଠି ଶରଣ ପଶ୍; ଶାନ୍ତି ପାଇବୁ । ଏ ଗୂଢ଼ ତତ୍ତ୍ୱ କହିଲି, ଏବେ ଯାହା ଇଚ୍ଛା ତା କର୍ । କିନ୍ତୁ ଶେଷକଥା ମୁଁ କହୁଛି ଶୁଣ୍—"ମୋତେ ଭକ୍ତିରେ ଧର୍, ମୋକ୍ଷ ପାଇବୁ—ସବୁ ଧର୍ମ ଛାଡ଼ି ମୋର ଶରଣ ନେ ।"

"ଏ ତତ୍ତ୍ୱ ସମସ୍ତଙ୍କୁ କହିବା କଥା ନୁହେଁ—କାରଣ, ଭକ୍ତି ଓ ମୋକ୍ଷ ପ୍ରୟତ୍ନାଦି ନ ଥିବା ଲୋକ, ଏହା ନ ମାନି ଉଡ଼ାଇ ଦେଇପାରେ । ଭକ୍ତଙ୍କୁ ଯେ ଏହା କହେ ସେହି ଭକ୍ତ ହିଁ ମୋର ପ୍ରିୟ । ଆମ ଦୁହିଙ୍କର ଏ କଥାବାର୍ତ୍ତା ଖାଲି ଶୁଣିଲେ ବି ସ୍ୱର୍ଗ ମିଳିବ ଜାଣ୍ । ଏବେ ବୁଝିଲୁ ତ ? ତୋ ମୋହ ତୁଟିଲା ତ ?"

ଅର୍ଜୁନ କହିଲେ, "ଆଉ ମୋର କିଛି ସନ୍ଦେହ ନାହିଁ, ମୁଁ ତମ କଥା କରିବି ।"

ସଞ୍ଜୟ ଏବେ ଶେଷରେ ଧୃତରାଷ୍ଟ୍ରଙ୍କୁ କହିଲେ, କୃଷ୍ଣାର୍ଜୁନଙ୍କର ଏହିସବୁ କଥାବାର୍ତ୍ତା ମୁଁ ଶୁଣିଲି; ବ୍ୟାସଙ୍କ ଅନୁଗ୍ରହରୁ ମୁଁ ଏସବୁ ସାକ୍ଷାତ୍ ମୋ ଆଗରେ ଘଟିଲା ପରି ଦେଖିଲି । ସେସବୁ ଏବେ ମନେ ପଡ଼ୁଛି, ମୋ ଲୋମ ଟାଙ୍କୁରି ଉଠୁଛି । ସେ ଯାହା ହେଉ, ଯେଉଁଠି କୃଷ୍ଣ କର୍ମର ଯୁକ୍ତି ଦେଉଛନ୍ତି, ଅର୍ଜୁନ ପୁଣି ଧନୁ ଧରିଛନ୍ତି—ସେଇଠି ଜୟ, ସେଇଠି ବିଭବ, ସେଇଠି ଏକା ନୀତିମାର୍ଗ ଠିକ୍ ।

ଅର୍ଜୁନ ଉବାଚ

**ସନ୍ନ୍ୟାସସ୍ୟ ମହାବାହୋ ତତ୍ତ୍ୱମିଚ୍ଛାମି ବେଦିତୁମ୍ ।**
**ତ୍ୟାଗସ୍ୟ ଚ ହୃଷୀକେଶ ପୃଥକ୍ କେଶିନିଷୂଦନ ॥ ୧ ॥**

**ଅନ୍ୱୟ**—ମହାବାହୋ ! ହୃଷୀକେଶ ! କେଶିନିଷୂଦନ ! ସନ୍ନ୍ୟାସସ୍ୟ ତ୍ୟାଗସ୍ୟ ଚ ତତ୍ତ୍ୱଂ ପୃଥକ୍ ବେଦିତୁଂ ଇଚ୍ଛାମି ॥ ୧ ॥

**ଟୀକା**—[କର୍ମତ୍ୟାଗଃ ଏବ ସାଂଖ୍ୟାନାଂ ତଥା ସନ୍ନ୍ୟାସାଶ୍ରମିଣାଂ ମାର୍ଗଃ—ତତ୍ତ୍ୱମପି 'ସନ୍ତି' ଇତି କର୍ମାଚରଣଂ ଏବ ବଦସି । ତତ୍ କିଂ ସନ୍ନ୍ୟାସଃ ଅକରଣୀୟଃ ? ଇତି ନିଜଶଙ୍କାୟାଃ ନିଃଶେଷତଃ ସମାଧାନାୟ]—ଅର୍ଜୁନଃ ଉବାଚ—ହେ ମହାବାହୋ, ହେ ହୃଷୀକେଶ, ହେ କେଶିନିଷୂଦନ, ସନ୍ନ୍ୟାସସ୍ୟ ତ୍ୟାଗସ୍ୟ ଚ ତତ୍ତ୍ୱଂ ପୃଥକ୍ (ଅନ୍ୟ ବିଷୟସମ୍ପର୍କଂ ବିନା ସ୍ୱତନ୍ତ୍ରଭାବେନ) ବେଦିତୁଂ ଇଚ୍ଛାମି ॥ ୧ ॥

**ଅର୍ଥ**—[କର୍ମ ଛାଡ଼ିବା ତ ସାଂଖ୍ୟମତରେ ଓ ଶେଷ ସନ୍ୟାସ ଆଶ୍ରମରେ ଆଶ୍ରମଧର୍ମୀଙ୍କର ପନ୍ଥା—ତୁମେ ତ 'ସତ୍' ବୋଲି କର୍ମହିଁ ସର୍ବଥା କରିବା ଉଚିତ, ଏହା କହିଗଲ—୧୭. ୨୩, ୨୮ । ତେବେ ସନ୍ୟାସ କଣ ଜମା କରିବା ଠିକ୍ ନୁହେଁ ? ନିଜର ଏହି ଶଙ୍କା ଦୂର କରିବା ପାଇଁ] ଅର୍ଜ୍ଜୁନ କହିଲେ—ହେ ମହାବାହୁ, ହେ ହୃଷୀକେଶ, ହେ କେଶିଦୈତ୍ୟମର୍ଦ୍ଦନ, ସନ୍ୟାସ ଓ ତ୍ୟାଗର ଯଥାର୍ଥ ମର୍ମ କଣ, ସେ କଥା ଅଲଗା କରି ପୁଣି ବୁଝିବା ମୋର ଇଚ୍ଛା । ୧ ।

ବ୍ୟାଖ୍ୟା ସୂଚନା—ଅଲଗା କରି, ଅର୍ଥାତ୍, ଅନ୍ୟ ବିଷୟ ସମ୍ପର୍କରେ ସେ କଥା ଶୁଣିଛୁ, ଏବେ ଖାଲି ସନ୍ୟାସ ଓ ତ୍ୟାଗକଥା ବୁଝାଇ କହ । ସନ୍ୟାସ ଓ ତ୍ୟାଗର ଶବ୍ଦାର୍ଥରେ କୌଣସି ପ୍ରଭେଦ ନାହିଁ । ଦୁଇଟିର ଅର୍ଥ ଛାଡ଼ିବା । ୧ ।

ଶ୍ରୀ ଭଗବାନୁବାଚ

**କାମ୍ୟାନାଂ କର୍ମଣାଂ ନ୍ୟାସଂ ସନ୍ନ୍ୟାସଂ କବୟୋ ବିଦୁଃ ।**
**ସର୍ବକର୍ମଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ । ୨ ।**
**ତ୍ୟାଜ୍ୟଂ ଦୋଷବଦିତ୍ୟେକେ କର୍ମ ପ୍ରାହୁର୍ମନୀଷିଣଃ ।**
**ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟମିତି ଚାପରେ । ୩ ।**

**ଅନ୍ୱୟ**—କବୟଃ କାମ୍ୟାନାଂ କର୍ମଣାଂ ନ୍ୟାସଂ ସନ୍ନ୍ୟାସଂ ବିଦୁଃ । ବିଚକ୍ଷଣାଃ ସର୍ବକର୍ମଫଳତ୍ୟାଗଂ ତ୍ୟାଗଂ ପ୍ରାହୁଃ । ଏକେ ମନୀଷିଣଃ ଦୋଷବତ୍ ଇତି କର୍ମ ତ୍ୟାଜ୍ୟଂ ପ୍ରାହୁଃ । ଅପରେ ଚ ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟଂ ଇତି ପ୍ରାହୁଃ । ୨-୩ ।

**ଟୀକା**—[ତଦ୍‌ବିଷୟକଂ ବିଭିନ୍ନସିଦ୍ଧାନ୍ତଂ ସୂଚୟନ୍ ]—ଶ୍ରୀ ଭଗବାନ୍ ଉବାଚ—[କେଚିତ୍] କବୟଃ କାମ୍ୟାନାଂ (ଫଳକୃତେ କୃତାନାଂ) କର୍ମଣାଂ ନ୍ୟାସଂ (ତ୍ୟାଗଂ) ସନ୍ନ୍ୟାସଂ ବିଦୁଃ (ଜାନନ୍ତି) । [ଅନ୍ୟେ] ବିଚକ୍ଷଣାଃ ସର୍ବକର୍ମଫଳତ୍ୟାଗଂ (ନ ତୁ କସ୍ୟଚିଦପି କର୍ମଣଃ ତ୍ୟାଗଃ—ଇତ୍ୟଭିପ୍ରାୟଃ) ତ୍ୟାଗଂ (ସନ୍ନ୍ୟାସଂ) ପ୍ରାହୁଃ (କଥୟନ୍ତି) । [ପୁନଃ] ଏକେ ମନୀଷିଣଃ (ପଣ୍ଡିତାଃ) ଦୋଷବତ୍ (ବନ୍ଧନକାରଣଂ) ଇତି କର୍ମ ତ୍ୟାଜ୍ୟଂ ପ୍ରାହୁଃ ଅପରେ ଚ ଯଜ୍ଞ-ଦାନ-ତପଃ କର୍ମ [ନିତ୍ୟଂ କର୍ମ, ଅତଏବ] ନ ତ୍ୟାଜ୍ୟଂ ଇତି [ପ୍ରାହୁଃ] । ୨-୩ ।

**ଅର୍ଥ**—[ସେ ସମ୍ବନ୍ଧରେ ଥିବା ଭିନ୍ନ ଭିନ୍ନ ମତ ମୋଟାମୋଟି ଜଣାଇଦେବା ପାଇଁ] ଶ୍ରୀ ଭଗବାନ୍ କହିଲେ—କେତେ ଜ୍ଞାନୀ ଫଳକାମନାରେ କରାହେଉଥିବା କାମ୍ୟକର୍ମ ଛାଡ଼ିଦେବାକୁ ସନ୍ନ୍ୟାସ ବୋଲି ମନେ କରନ୍ତି । କିନ୍ତୁ ବିଚକ୍ଷଣ ଲୋକେ

କର୍ମ ନ ଛାଡ଼ି ସବୁ କର୍ମର ଫଳ-ଅପେକ୍ଷାହିଁ ଛାଡ଼ିବାକୁ ସନ୍ନ୍ୟାସ ବୋଲି କହିଥାନ୍ତି । ପୁଣି କେତେ ପଣ୍ଡିତ, ବନ୍ଧନହେତୁ ବୋଲି କର୍ମମାନେ ସବୁ ବରାବର ଛାଡ଼ି ଦେବା ଦରକାର ବୋଲି କହନ୍ତି । ଫେର୍ ଆଉ କେତେ, ଯଜ୍ଞ, ଦାନ, ତପ ଆଦି ନିତ୍ୟ କର୍ମ ଛାଡ଼ିବାର ନୁହେ ବୋଲି କହନ୍ତି । ୨-୩ ।

ବ୍ୟାଖ୍ୟା ସୂଚନା—ପ୍ରଥମ ଦୁଇଟି ଗୀତାର ମତ, ତୃତୀୟଟି ସାଂଖ୍ୟ-ସନ୍ନ୍ୟାସ ଓ ଚତୁର୍ଥଟି ମୀମାଂସକ ବା କର୍ମକାଣ୍ଡୀ-ବୈଦିକଙ୍କ ମତ । ପ୍ରଥମ ଦୁଇଟିର ଟିକିଏ ପ୍ରଭେଦ ଅଛି; କାମ୍ୟ କର୍ମ ବୋଇଲେ କୌଣସି ଫଳ କଥା ଆଗରୁ ପାଞ୍ଚି ସେଥିପାଇଁ ଯେଉଁ କର୍ମ କରାଯାଏ, ଯଥା—ପୁତ୍ର ହେବାପାଇଁ ପୁତ୍ରେଷ୍ଟି ଯାଗ, ଉପାଧି ପାଇବାକୁ ଦାନ—ଇତ୍ୟାଦି । ମୀମାଂସକଙ୍କ ପରିଭାଷାରେ କାମ୍ୟର ଏହି ଅର୍ଥ । ମୀମାଂସକଙ୍କ କର୍ମ ଚତୁର୍ଭାଗ—ନିତ୍ୟ, ନୈମିତ୍ତିକ, କାମ୍ୟ ଓ ନିଷିଦ୍ଧ । ମାତ୍ର କାମ୍ୟ କର୍ମ ଛାଡ଼ିଲେ ମଧ୍ୟ, ଅନ୍ୟ ନିତ୍ୟନୈମିତ୍ତିକ କର୍ମ, 'ନିଷ୍କାମ' ନ ହୋଇପାରେ । ସେଥିରେ ଫଳପାଇଁ କରା ନ ଗଲେ ମଧ୍ୟ କଲା ହିସାବରୁ ଫଳକୁ ଅପେକ୍ଷା ରହିପାରେ । ସେଥିପାଇଁ ଦ୍ୱିତୀୟଟିରେ ସର୍ବକର୍ମଫଳତ୍ୟାଗ କଥା କହି ଗୀତାମତ ସ୍ପଷ୍ଟ କରାଯାଇଛି । ମାତ୍ର କାମ୍ୟ କର୍ମ ଛାଡ଼ିବ = ନିଷ୍କାମ କର୍ମ କରିବ, ଏପରି ଅର୍ଥ କଲେ ପ୍ରଥମ ଓ ଦ୍ୱିତୀୟରେ ଭେଦ ନାହିଁ । ୨-୩ ।

**ନିଶ୍ଚୟଂ ଶୃଣୁ ମେ ତତ୍ର ତ୍ୟାଗେ ଭରତସତ୍ତମ ।**
**ତ୍ୟାଗୋ ହି ପୁରୁଷବ୍ୟାଘ୍ର ତ୍ରିବିଧଃ ସଂପ୍ରକୀର୍ତ୍ତିତଃ । ୪ ।**

**ଅନ୍ୱୟ**—ଭରତସତ୍ତମ ! ତତ୍ର ତ୍ୟାଗେ ମେ ନିଶ୍ଚୟଂ ଶୃଣୁ । ପୁରୁଷବ୍ୟାଘ୍ର ! ତ୍ୟାଗଃ ହି ତ୍ରିବିଧଃ ସଂପ୍ରକୀର୍ତ୍ତିତଃ । ୪ ।

**ଟୀକା**—ହେ ଭରତସତ୍ତମ ! [ଏବଂ ପ୍ରଚଳିତେ ମତଭେଦେ ସତି] ତତ୍ର ତ୍ୟାଗେ (ତ୍ୟାଗବିଷୟେ) ମେ (ମମ) ନିଶ୍ଚୟଂ (ସିଦ୍ଧାନ୍ତଂ) ଶୃଣୁ । ହେ ପୁରୁଷବ୍ୟାଘ୍ର, ତ୍ୟାଗଃ ହି (ଏବ) [ସାତ୍ତ୍ୱିକାଦିଭେଦେନ] ତ୍ରିବିଧଃ ସଂପ୍ରକୀର୍ତ୍ତିତଃ (କଥିତଃ) । ୪ ।

**ଅର୍ଥ**—ହେ ଭରତସତ୍ତମ (ଭରତଶ୍ରେଷ୍ଠ), [ଏହିପରି ମତଭେଦ ଥିଲେହେଁ] ସେହି ତ୍ୟାଗ ବିଷୟରେ ମୋର ସିଦ୍ଧାନ୍ତ ଶୁଣ । ହେ ପୁରୁଷବ୍ୟାଘ୍ର, ତ୍ୟାଗ ହିଁ ତ ସାତ୍ତ୍ୱିକ, ରାଜସ, ତାମସ—ଏହିପରି ତିନିପ୍ରକାର ବୋଲି କୁହାଯାଏ । ୪ ।

ବ୍ୟାଖ୍ୟା ସୂଚନା—କର୍ତ୍ତବ୍ୟ ଛାଡ଼ିଦେବା ସେଇଥିରୁ ଗୋଟିଏ ପ୍ରକାର ବା ତାମସପ୍ରକାର ବୋଲି ପରେ କହିବେ—୧୮.୭ । ଜଗତରେ କୌଣସି ବସ୍ତୁ ବା କର୍ମ ତ୍ୟାଜ୍ୟ ନୁହେଁ; ତାହା ସଙ୍ଗେ ବ୍ୟବହାର କରିବା ବା ସେହି କର୍ମକୁ କରିବାର ପ୍ରକାର

ତ୍ୟାଜ୍ୟ ବା ଗ୍ରାହ୍ୟ ବୋଲି ଗୁଣଭେଦରେ ବୁଝି ନେବାକୁ ହେବ—ଏହାହିଁ ଗୀତାର ସ୍ପଷ୍ଟ ମତ । ୪ ।

**ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍ ।**
**ଯଜ୍ଞୋ ଦାନଂ ତପଶ୍ଚୈବ ପାବନାନି ମନୀଷିଣାମ୍ । ୫ ।**

**ଅନ୍ୱୟ**—ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟଂ, ତତ୍ କାର୍ଯ୍ୟଂ ଏବ । ଯଜ୍ଞଃ ଦାନଂ ତପଃ ଚ ଏବ ମନୀଷିଣାଂ ପାବନାନି । ୫ ।

**ଟୀକା**—[ତନ୍ନିଶ୍ଚୟଂ କଥୟତି ଦ୍ୱାଭ୍ୟା]—ଯଜ୍ଞଦାନତପଃକର୍ମ ତ୍ୟାଜ୍ୟଂ, ତତ୍ କାର୍ଯ୍ୟଂ (ନିତ୍ୟକର୍ତ୍ତବ୍ୟଂ) ଏବ । ଯଜ୍ଞଃ ଦାନଂ ତପଃ ଚ ଏବ [ଏତାନି] ମନୀଷିଣାଂ (ବିବେକବତାଂ) ପାବନାନି (ଚିତ୍ତଶୁଦ୍ଧିକରାଣି—କର୍ମହୀନତ୍ୱଂ ଚିତ୍ତସ୍ୟାଶୁଦ୍ଧେଃ କାରଣଂ ଇତି ଗମ୍ୟମ୍ ) । ୫ ।

**ଅର୍ଥ**—[ସେହି ସିଦ୍ଧାନ୍ତ ଦୁଇ ଶ୍ଳୋକରେ କହୁଚନ୍ତି]—ଯଜ୍ଞ ଦାନ ତପ କର୍ମ ଛାଡ଼ିବାର ନୁହେ । ସେ ସବୁ ଯେ ନିତ୍ୟ କର୍ତ୍ତବ୍ୟ । ଯଜ୍ଞ, ଦାନ, ତପ କର୍ମହିଁ ମନକୁ ବଶ କରିଥିବା ଲୋକଙ୍କ ଚିତ୍ତକୁ ଶୁଦ୍ଧ ରଖେ । (କର୍ମହୀନ ଲୋକର ଆଳସ୍ୟ ହେତୁରୁ ଚିତ୍ତ ଅପବିତ୍ର ହୁଏ ।—ଏହା ବୁଝିବାକୁ ହେବ) । ୫ ।

ବ୍ୟାଖ୍ୟା ସୂଚନା—ଯଜ୍ଞ, ଦାନ, ତପ—ଏ ତିନୋଟି ପ୍ରକାର ପ୍ରଚଳିତ କର୍ମ ଥିଲେହେଁ, ୪ର୍ଥ ଅଧ୍ୟାୟରେ ଭଗବାନ୍ ଯଜ୍ଞର ଯେ ବ୍ୟାଖ୍ୟା କରିଚନ୍ତି—(୩.୯ ଟୀକା ଦେଖ)—ସେହି ଅନୁସାରେ ଏଠାରେ ଯଜ୍ଞ, ଅର୍ଥାତ୍, ଈଶ୍ୱରରେ କର୍ମ ନିବେଦନ ବୁଝିବାକୁ ହେବ । ସେହିପରି ଦାନ, ଅର୍ଥାତ୍, ପରପାଇଁ ତ୍ୟାଗ, ବା ସର୍ବଭୂତରେ ଏକ ଈଶ୍ୱର ଦେଖି, ତଦର୍ଥ କର୍ମ, ଅଥବା ପରସେବା; ତପ, ଅର୍ଥାତ୍, ସେହିସବୁ କର୍ମରେ କୁଶଳ ପ୍ରଯତ୍ନ—ଅର୍ଥାତ୍, ଖାଲି ଈଶ୍ୱରଙ୍କଠି ଛାଡ଼ିଦେଇ ନିଶ୍ଚିନ୍ତ ହୋଇଯିବା ନୁହେଁ —ବୁଝିବାକୁ ହେବ । ଏହି ଯଜ୍ଞ ଦାନ ତପ, ନିତ୍ୟ କର୍ତ୍ତବ୍ୟ, ଅର୍ଥାତ୍, ସବୁ କର୍ମର ସାର—ସବୁ କର୍ମର ପ୍ରଣାଳୀକୁ ଏହିମାନେ ପ୍ରଭାବିତ କରନ୍ତି । ମାତ୍ର ଏମାନେ ସ୍ୱୟଂ ନିଜେ ପୂର୍ଣ୍ଣ କର୍ମ ନୁହନ୍ତି । ଏମାନେ ଅପର ନିର୍ଦ୍ଦିଷ୍ଟ କର୍ମ ବା ସ୍ୱଧର୍ମର ଅପେକ୍ଷା ରଖନ୍ତି । ସେହି ସ୍ୱଧର୍ମ ବା ସ୍ୱଭାବ ନିୟତ କର୍ମକୁ ଯଜ୍ଞ ଦାନ ତପ ସହିତ କରିବାକୁ ହେବ । ଏହାହିଁ ଅଭିପ୍ରାୟ । ପରେ ୧୮.୪୫, ୪୭ ଦେଖ । ୫ ।

**ଏତାନ୍ୟପି ତୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଫଳାନି ଚ ।**
**କର୍ତ୍ତବ୍ୟାନୀତି ମେ ପାର୍ଥ ନିଶ୍ଚିତଂ ମତମୁତ୍ତମମ୍ । ୬ ।**

**ଅନ୍ୱୟ**—ପାର୍ଥ ! ସଙ୍ଗଂ ଫଳାନି ଚ ତ୍ୟକ୍ତ୍ୱା ଏତାନି ଅପି କର୍ମାଣି ତୁ କର୍ତ୍ତବ୍ୟାନି ଇତି ଉତ୍ତମଂ ମତଂ ମେ ନିଶ୍ଚିତଂ । ୬ ।

**ଟୀକା**—ହେ ପାର୍ଥ, ସଙ୍ଗଂ (ଆସକ୍ତିଂ) ଫଳାନି (ଫଳେଚ୍ଛାଃ) ଚ ତ୍ୟକ୍ତ୍ୱା ଏତାନି ଅପି କର୍ମାଣି ତୁ (ନିଶ୍ଚିତଂ) କର୍ତ୍ତବ୍ୟାନି (କରଣୀୟାନି ଇତି ଉତ୍ତମଂ ମତଂ ମେ (ମମ) ନିଶ୍ଚିତମ୍ । ୬ ।

**ଅର୍ଥ**—ହେ ପାର୍ଥ, ଆସକ୍ତି ଓ ଫଳତୃଷ୍ଣା ଛାଡ଼ି ଏସବୁ କର୍ମ ନିଶ୍ଚେ କରିବା ଉଚିତ ବୋଲି ଯେ ଶ୍ରେଷ୍ଠ ମତଟି ଅଛି ତାହାହିଁ ମୋର ସିଦ୍ଧାନ୍ତ [ଏହା ହିଁ ସାତ୍ତ୍ୱିକ ତ୍ୟାଗ ବୋଲି ପରେ କୁହାଯାଉଛି—୧୮.୯ ଦେଖ] । ୬ ।

**ନିୟତସ୍ୟ ତୁ ସନ୍ନ୍ୟାସଃ କର୍ମଣୋ ନୋପପଦ୍ୟତେ ।**
**ମୋହାତ୍ ତସ୍ୟ ପରିତ୍ୟାଗସ୍ତାମସଃ ପରିକୀର୍ତ୍ତିତଃ । ୭ ।**

**ଅନ୍ୱୟ**—ନିୟତସ୍ୟ ତୁ କର୍ମଣଃ ସନ୍ନ୍ୟାସଃ ନ ଉପପଦ୍ୟତେ । ମୋହାତ୍ ତସ୍ୟ ପରିତ୍ୟାଗଃ ତାମସଃ ପରିକୀର୍ତ୍ତିତଃ । ୭ ।

**ଟୀକା**—[ତାମସଶ୍ଚାପି କର୍ମତ୍ୟାଗଃ ସମ୍ଭବେତ୍]—[ ସ୍ୱଧର୍ମେଣ ] ନିୟତସ୍ୟ ( ନିର୍ଦ୍ଦିଷ୍ଟସ୍ୟ ) ତୁ ( ନିଶ୍ଚିତଂ ) କର୍ମଣଃ ସନ୍ନ୍ୟାସଃ ( ତ୍ୟାଗଃ ) ନ ଉପପଦ୍ୟତେ ( ଯୁଜ୍ୟତେ ) । ମୋହାତ୍ ତସ୍ୟ ପରିତ୍ୟାଗଃ ତାମସଃ ପରିକୀର୍ତ୍ତିତଃ । ୭ ।

**ଅର୍ଥ**— କର୍ମତ୍ୟାଗ ପୁଣି ତାମସ ହୋଇପାରେ ବୋଲି ସାବଧାନ କରି ଦେଉଛନ୍ତି ]—ସ୍ୱଧର୍ମ ଅନୁସାରେ ନିର୍ଦ୍ଦିଷ୍ଟ ଯେ କର୍ମ ସେ କର୍ମ ଛାଡ଼ିବା ତ କେବେ ଠିକ୍ ନୁହେ । ମୂଢ଼ଭାବରେ ତାକୁ ଛାଡ଼ିବାଟା ତାମସ ତ୍ୟାଗ ବୋଲି କୁହ ଯାଏ । ୭ ।

ବ୍ୟାଖ୍ୟା ସୂଚନା—କର୍ମ ଛାଡ଼ିବାହିଁ ତାମସ ବୋଲି ଏଠାରେ ସୂଚନା ଦେଲେ । ପୁଣି ନିୟତ କର୍ମ ଛାଡ଼ିବା ଠିକ୍ ନୁହେ । ଏହି ନିୟତ କର୍ମରେ ଯଜ୍ଞ ଦାନ ତପ ନିତ୍ୟାଭାବରେ ରହିଅଛି । ଏହା ବୁଝି ପୂର୍ବ ସଙ୍ଗେ ପ୍ରସଙ୍ଗ ଲଗାଇ ନେବାକୁ ହେବ—୧୮.୫ ଟୀକା ଦେଖ । ଆଶ୍ରମବିଧିରେ ଶେଷ ସନ୍ନ୍ୟାସ-ଆଶ୍ରମରେ କର୍ମ ଛାଡ଼ିବାର ଦୃଢ଼ବିଧି ଓ ବିଶ୍ୱାସକୁ କାଟି ହଠାତ୍ କହି ଦେଇଥିଲେ ଅର୍ଜ୍ଜୁନଙ୍କୁ ନୂଆ ପରି ଲାଗିଥାନ୍ତା । ସେଥିପାଇଁ ପୂର୍ବେ ସନ୍ନ୍ୟାସରେ ସିଦ୍ଧି, କଷ୍ଟ—( ୫.୬ ) ଓ ଅବ୍ୟକ୍ତକୁ ଖୋଜିବା କଷ୍ଟ—( ୧୨.୫ ) ପ୍ରଭୃତି କ୍ରମେ ସୂଚନାରେ କହି, ଶେଷରେ ଏବେ ସ୍ପଷ୍ଟ କଲେ କି, କର୍ମତ୍ୟାଗ ତାମସ ହୋଇପାରେ । କିଛି ନ ବୁଝି ଲୋକେ ମଧ୍ୟ କର୍ମ ଛାଡ଼ନ୍ତି । କାୟକ୍ଲେଶ ଭୟରେ ବି ଛାଡ଼ନ୍ତି—ପର ଶ୍ଳୋକ ଦେଖ । ୭ ।

**ଦୁଃଖମିତ୍ୟେବ ଯତ୍ କର୍ମ କାୟକ୍ଲେଶଭୟାତ୍ତ୍ୟଜେତ୍ ।**
**ସ କୃତ୍ୱା ରାଜସଂ ତ୍ୟାଗଂ ନୈବ ତ୍ୟାଗଫଳଂ ଲଭେତ୍ । ୮ ।**

**ଅନ୍ୱୟ**—ଦୁଃଖଂ ଇତି ଏବ ଯତ୍ କାୟକ୍ଲେଶଭୟାତ୍ କର୍ମ-ତ୍ୟଜେତ୍, ସଃ ରାଜସଂ ତ୍ୟାଗଂ କୃତ୍ୱା ତ୍ୟାଗଫଳଂ ନ ଏବ ଲଭେତ୍ । ୮ ।

**ଟୀକା**—[ରାଜସତ୍ୟାଗମାହ—ଇତ୍ୟାହ]—[ଜନଃ] ଦୁଃଖଂ (କ୍ଲେଶକରଂ) ଇତି ଏବ ଯତ୍ କାୟକ୍ଲେଶଭୟାତ୍ କର୍ମ ତ୍ୟଜେତ୍ ସଃ [ ତଂ ] ରାଜସଂ ତ୍ୟାଗଂ କୃତ୍ୱା ତ୍ୟାଗଫଳଂ (ସନ୍ନ୍ୟାସେ ଯତ୍ ଲଭ୍ୟତେ ତତ୍ ଇତି ଭାବଃ ) ନ ଏବ ଲଭେତ୍ (ଲଭେତ, ପ୍ରାପ୍ନୁୟାତ୍ ) । ୮ ।

**ଅର୍ଥ**—[ପୁଣି ରାଜସ ବ ହୋଇପାରେ ଯଥା:—] ଏଥିରେ କଷ୍ଟ ହେବ ବୋଲି ଲୋକ ଶରୀରକୁ କ୍ଲେଶ ଲଗିବା ଭୟରେ ଯାହା କର୍ମ ଛାଡ଼େନ୍ତି, ସେ ରାଜସ ତ୍ୟାଗକରି, ତ୍ୟାଗର ଫଳ ପାଏ ନାହିଁ । ୮ ।

ବ୍ୟାଖ୍ୟା ସୂଚନା—ତେବେ କର୍ମ ଛାଡ଼ି ସନ୍ନ୍ୟାସ କରିବା ହୁଏତ ତାମସ, ନ ହୁଏତ ରାଜସ ତ୍ୟାଗ । ଆସକ୍ତି ଓ ଫଳ ଛାଡ଼ି କର୍ମ କରିବାହିଁ ସାତ୍ତ୍ୱିକ ତ୍ୟାଗ ବା ପ୍ରକୃତ ସନ୍ନ୍ୟାସ ବୋଲି ସ୍ପଷ୍ଟ ପର ଶ୍ଳୋକରେ କହୁଚନ୍ତି । ଶ୍ଳୋକରେ 'ଲଭେତ' ପାଇଁ 'ଲଭେତ୍' ଆର୍ଷ ପ୍ରୟୋଗ । ୮ ।

**କାର୍ଯ୍ୟମିତ୍ୟେବ ଯତ୍ କର୍ମ ନିୟତଂ କ୍ରିୟତେଽର୍ଜୁନ ।**
**ସଂଗଂ ତ୍ୟକ୍ତ୍ୱା ଫଳଂ ଚୈବ ସ ତ୍ୟାଗଃ ସାତ୍ତ୍ୱିକୋମତଃ ।୯।**

**ଅନ୍ୱୟ**—ସ୍ପଷ୍ଟ । ୯ ।

**ଟୀକା**—[ ସାତ୍ତ୍ୱିକତ୍ୟାଗଃ ଇତି ଷଷ୍ଠଶ୍ଳୋକୋକ୍ତଂ ପୁନର୍ବଦତି ]—ହେ ଅର୍ଜୁନ, ସଂଗଂ ଫଳଂ ଚ ଏବ ତ୍ୟକ୍ତ୍ୱା କାର୍ଯ୍ୟଂ ଇତି ଏବ ନିୟତଂ କର୍ମ ଯତ୍ କ୍ରିୟତେ ସଃ ତ୍ୟାଗଃ ସାତ୍ତ୍ୱିକଃ ମତଃ । ୯ ।

**ଅର୍ଥ**—[ଷଷ୍ଠ ଶ୍ଳୋକରେ କହିଥିବା ତ୍ୟାଗକୁ ସାତ୍ତ୍ୱିକ ତ୍ୟାଗ ବା ଯଥାର୍ଥ ସନ୍ନ୍ୟାସ ମାର୍ଗ ବୋଲି ପୁଣି କହୁଛନ୍ତି ]—ହେ ଅର୍ଜୁନ, ଆସକ୍ତି ଓ ଫଳ ଅପେକ୍ଷାକୁ ଛାଡ଼ି, ଅବଶ୍ୟ କର୍ତ୍ତବ୍ୟ ବୋଲି ନିୟତ କର୍ମ ଯାହା କରାଯାଏଟି, ସେହି ଛାଡ଼ିବା ବା ତ୍ୟାଗକୁ ସାତ୍ତ୍ୱିକତ୍ୟାଗ ବୋଲି ମାନିବାକୁ ହୁଏ । ୯ ।

**ନ ଦ୍ୱେଷ୍ଟ୍ୟକୁଶଳଂ କର୍ମ କୁଶଳେ ନାନୁଷଜ୍ଜତେ ।**
**ତ୍ୟାଗୀ ସତ୍ତ୍ୱସମାବିଷ୍ଟୋ ମେଧାବୀ ଛିନ୍ନସଂଶୟଃ ।୧୦।**

**ଅନ୍ୱୟ**—ସତ୍ତ୍ୱସମାବିଷ୍ଟଃ, ଛିନ୍ନସଂଶୟଃ, ମେଧାବୀ, ତ୍ୟାଗୀ, ଅକୁଶଳଂ କର୍ମ [ପ୍ରାପ୍ୟ] ନ ଦ୍ୱେଷ୍ଟି, କୁଶଳେ ନ ଅନୁଷଜ୍ଜତେ । ୧୦ ।

**ଟୀକା**—[ ଏବଂଭୂତଃ ] ସତ୍ତ୍ୱସମାବିଷ୍ଟଃ (ସାତ୍ତ୍ୱିକଭାବାପନ୍ନଃ) ଛିନ୍ନସଂଶୟଃ ( ନିଃସନ୍ଦେହଃ ) ମେଧାବୀ (ବୁଦ୍ଧିମାନ) ତ୍ୟାଗୀ, [ ସ୍ୱଧର୍ମେ ନିଯୁକ୍ତଂ ] ଅକୁଶଲଂ (ଦୁଃଖାବହଂ, ବିଗୁଣଂ) କର୍ମ [ ପ୍ରାପ୍ୟ ] ନ ଦ୍ୱେଷ୍ଟି (ବିରକ୍ତୋ ଭବତି, ତ୍ୟକ୍ତୁମିଚ୍ଛତି), କୁଶଳେ [କର୍ମଣି] ଚ ନ ଅନୁଷଜ୍ଜତେ (ଅନୁରଜ୍ୟତେ) । ୧୦ ।

**ଅର୍ଥ**—[ଏହିପରି] ସାତ୍ତ୍ୱିକଭାବରେ ଥିବା, ସବୁ କଥାରେ 'କିମ୍ବା' ଛାଡ଼ିଥିବା ବୁଦ୍ଧିମାନ୍ ତ୍ୟାଗୀ, ସ୍ୱଧର୍ମରେ ଥାଇ ସୁଖ ନ ଲାଗିବା କର୍ମ ପାଇଲେ ବିଗିଡ଼େ ନାହିଁ କି ସୁଖ ଲାଗିବା କର୍ମ ପାଇଲେ ମାତିଯାଏ ନାହିଁ । [୩.୩;୫ ୧୮.୪୭ ଦେଖ ]। ୧୦ ।

**ନ ହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।**
**ଯସ୍ତୁ କର୍ମଫଲତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ । ୧୧ ।**

**ଅନ୍ୱୟ**—ସ୍ପଷ୍ଟ । ୧୧ ।

**ଟୀକା**—[ ଅପି ଚ ] କର୍ମାଣି ଅଶେଷତଃ ( ନିଃଶେଷତୟା ) ତ୍ୟକ୍ତୁଂ ଦେହଭୃତା (ଦେହଧାରିଣା) ନ ହି ଶକ୍ୟଂ, [ତତଃ] ତୁ ଯଃ କର୍ମଫଲତ୍ୟାଗୀ ସଃ ତ୍ୟାଗୀ ଇତି ଅଭିଧୀୟତେ ( କଥ୍ୟତେ ) ୧୧ ।

**ଅର୍ଥ**—[ପୁଣି] କର୍ମ ସବୁ ବରାବର ଛାଡ଼ିଦେବାକୁ ତ ଦେହ ଧରିଥିବା ଜନ୍ତୁର ବଳ ନାହିଁ । ଅତଏବ ଯେ କର୍ମଫଳ ଛାଡ଼ିଥାଏ, ସେହି ତ୍ୟାଗୀ ବୋଲି କୁହାଯାଏ । [ ୩.୫ ଦେଖ ] ୧୧ ।

**ଅନିଷ୍ଟମିଷ୍ଟଂ ମିଶ୍ରଂ ଚ ତ୍ରିବିଧଂ କର୍ମଣଃ ଫଲମ୍ ।**
**ଭବତ୍ୟତ୍ୟାଗିନାଂ ପ୍ରେତ୍ୟ ନ ତୁ ସନ୍ନ୍ୟାସିନାଂ କ୍ୱଚିତ୍ ।୧୨।**

**ଅନ୍ୱୟ**—ଅତ୍ୟାଗିନାଂ ପ୍ରେତ୍ୟ ଅନିଷ୍ଟଂ ଇଷ୍ଟଂ ମିଶ୍ରଂ ଚ ତ୍ରିବିଧଂ କର୍ମଣଃ ଫଳଂ ଭବତି । ତୁ ସଂନ୍ୟାସିନାଂ କ୍ୱଚିତ୍ ନ । ୧୨ ।

**ଟୀକା**—ଅତ୍ୟାଗିନାଂ ( ଫଳକାମାନାଂ ) [ ଇହାପି ନ ଅସ୍ତୁ, କିନ୍ତୁ ] ପ୍ରେତ୍ୟ (ମୃତ୍ୟୋଃ ଅନନ୍ତରଂ) [ନିଶ୍ଚିତଂ ଏବ] ଅନିଷ୍ଟଂ (ଅହିତଂ) ଇଷ୍ଟଂ (ହିତଂ) ମିଶ୍ରଂ (ହିତାହିତଂ ଚ) [ଇତି] ତ୍ରିବିଧଂ କର୍ମଣଃ ଫଳଂ ଭବତି । [ କିଂ ] ତୁ ସଂନ୍ୟାସିନାଂ (ଫଳତ୍ୟାଗିନାଂ) କ୍ୱଚିତ୍ (ଇହାମୁତ୍ର ବା) [ଏବଂ କିଞ୍ଚିଦପି କର୍ମଫଳଭୋଗଃ ] ନ [ଭବତି] । ୧୨ ।

**ଅର୍ଥ**—ଅତ୍ୟାଗୀ ( ଅର୍ଥାତ୍, ଫଳକାମନା ନ ଛାଡ଼ିଥିବା ଲୋକଙ୍କର [ ଇହଲୋକରେ ତା ଫଳ ଭୋଗ ହେଉ, ତାହା ନ ହେଲେହେଁ ] ମଲା ପରେ ପର

ଲୋକଙ୍କରେ ନଷ୍ଟ] ହୃତ ଅହୃତ ବା କେତେ ହୃତ କେତେ ଅହୃତ—ଏହିପରି ମିଶାମିଶି ଫଳଭୋଗ ହୁଏ, କିନ୍ତୁ ସନ୍ନ୍ୟାସୀ (ବା ଫଳ ଛାଡ଼ି କର୍ମ କରୁଥିବା ଲୋକ)ର କୌଣସିଠାରେ ହେଲେ, ଏପରି କିଛି କର୍ମଫଳଭୋଗ ନାହିଁ । ୧୨ ।

ବ୍ୟାଖ୍ୟା ସୂଚନା—କର୍ମଫଳ ନ ଛାଡ଼ି ସନ୍ନ୍ୟାସ କଲେ ହୁଏତ ତୃଷ୍ଣା ଥାଏ । ମାତ୍ର ତାହା ଏ ଦେହରେ ପ୍ରକାଶ ପଡ଼େ ନାହିଁ ବୋଲି, ଏ ଦେହରେ ଫଳଭୋଗ ନ ହୋଇପାରେ । ମାତ୍ର ମଲେ ଫଳ ଅନୁସାରେ ଭୋଗ ହୁଏ । ମାତ୍ର ଯେ ଫଳ ଛାଡ଼ି ନିରଳସ ଭାବରେ କର୍ମ କରୁଛି, ସେ ସନ୍ନ୍ୟାସୀର ଆଉ ଫଳଭୋଗ କାହୁଁ ଅଇଲା ? ତା ଭିତରେ ତୃଷ୍ଣା ବା ପଶିବ କିପରି ?

**ପଞ୍ଚୈତାନି ମହାବାହୋ କାରଣାନି ନିବୋଧ ମେ ।**
**ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି ସିଦ୍ଧୟେ ସର୍ବକର୍ମଣାମ୍ ।୧୩।**

**ଅନ୍ୱୟ**—ମହାବାହୋ ! କୃତାଂତେ ସାଂଖ୍ୟେ ପ୍ରୋକ୍ତାନି ସର୍ବ-କର୍ମଣାଂ ସିଦ୍ଧୟେ ଏତାନି ପଞ୍ଚ କାରଣାନି ମେ ନିବୋଧ । ୧୩ ।

**ଟୀକା**—[ ନ ତୁ ଅପି କେବଲଂ ପୁରୁଷସ୍ୟ କର୍ତୃତ୍ୱାଧୀନଂ ଫଲଂ—ଇତି ନିଭିଃ ଆହ ]—ହେ ମହାବାହୋ, କୃତାନ୍ତେ (ସ୍ରତିପାଦିତେ) ସାଂଖ୍ୟେ (ଜ୍ଞାନେ, ଜ୍ଞାନଶାସ୍ତ୍ରେ) [ଯଦ୍‌ବା କୃତଂ, କର୍ମ—ତଦ୍‌ବିଷୟିଦଂ ଅନ୍ତଂ, ନିରୂପଣଂ ଯସ୍ମିନ୍ ତସ୍ମିନ ସାଂଖ୍ୟେ, ଜ୍ଞାନେ] ପ୍ରୋକ୍ତାନି (କଥିତାନି) ସର୍ବ କର୍ମଣାଂ ସିଦ୍ଧୟେ (ନିଷ୍ପତ୍ତୟେ) ଏତାନି ( ବକ୍ଷ୍ୟମାଣାନି ) ପଞ୍ଚକାରଣାନି ( କର୍ମସାଧନାନି ) ମେ ( ମତ୍ତଃ ) ନିବୋଧ । ୧୩ ।

**ଅର୍ଥ**—[ ଖାଲି ଫଳ ପାଇବି ବୋଲି ଲାଗିଲେ ବି ଫଳ ମିଳିଯାଏ ନାହିଁ—ବୋଲି ତିନି ଶ୍ଳୋକରେ କହୁଚନ୍ତି ]—ହେ ମହାବାହୁ, ପ୍ରମାଣାଦି ସହ ସିଦ୍ଧ ହୋଇଥିବା କର୍ମବିଷୟକ ଜ୍ଞାନଶାସ୍ତ୍ରରେ ଯାହା କୁହାଯାଇଚି, ସେହି ଅନୁସାରେ କର୍ମ ସବୁ ସଂପନ୍ନ ହେବାରେ ଏହି ପାଞ୍ଚଟି କାରଣ ମୋଠୁଁ ବୁଝ । ୧୩ ।

**ଅଧିଷ୍ଠାନଂ ତଥା କର୍ତା କରଣଂ ଚ ପୃଥଗ୍‌ବିଧମ୍ ।**
**ବିବିଧାଶ୍ଚ ପୃଥକ୍ ଚେଷ୍ଟା ଦୈବଂଚୈବାତ୍ର ପଞ୍ଚମମ୍ । ୧୪ ।**

**ଅନ୍ୱୟ**—ଅଧିଷ୍ଠାନଂ, ତଥା କର୍ତା, ପୃଥଗ୍‌ବିଧଂ କରଣଂ ଚ, ପୃଥକ୍ ବିବିଧାଃ ଚେଷ୍ଟା, ଦୈବଂ ଚ ଏବଂ ପଞ୍ଚମଂ ଅତ୍ର । ୧୪ ।

**ଟୀକା**—[ କାନି ତାନି—ଇତ୍ୟାହ ]—ଅଧିଷ୍ଠାନଂ ( କର୍ମସ୍ଥାନଂ, ଶରୀରଂ ବା—କୃଷିକର୍ମଦୃଷ୍ଟାନ୍ତେ କ୍ଷେତ୍ରଂ ଯଥା ) ତଥା କର୍ତା ( ଦେହବନ୍ଧଃ

ଶାବଃ—କୃଷିଦୃଷ୍ଟାନ୍ତେ କୃଷକୋ ବା ) ପୃଥକ୍‌ବିଧଂ ( ନାନାବିଧଂ ) କରଣଂ ( ଇନ୍ଦ୍ରିୟାଦି—କୃଷିଦୃଷ୍ଟାନ୍ତେ ଫାଲବଲୀବର୍ଦ୍ଦବୀଜାଦି ବା ) ଚ ପୃଥକ୍ (ବିଭିନ୍ନାଃ) ବିବିଧ ଃ ଚେଷ୍ଟାଃ ( ଇନ୍ଦ୍ରିୟପ୍ରାଣାଦୀନାଂ ତତ୍ତତ୍ପରାଃ କ୍ରିୟାଃ, କୃଷିଦୃଷ୍ଟାନ୍ତେ କର୍ଷଣାଦ୍ୟାଃ ବା ) ଦୈବଂ ( ପ୍ରାରବ୍‌ଧ କର୍ମଫଳଂ, ଯଦ୍ ବା ପୁରୁଷସ୍ୟ ଅନାୟତ୍ତଂ ଅଦୃଷ୍ଟଂ କିଂଚିତ୍) ଚ ଏବ ପଞ୍ଚମଂ [ କାରଣଂ ] ଅତ୍ର [ ବର୍ତ୍ତତେ ] । (ତତ୍ତ୍ୱ ଦୈବଂ ନାବମନ୍ୟମିତି ଭାବଃ)। ୧୪ ।

**ଅର୍ଥ**—[ ସେହି କାରଣମାନ କହୁଅଛି ]—କର୍ମକ୍ଷେତ୍ର, ପୁଣି କର୍ତ୍ତାବା ଜୀବ, ନାନାପ୍ରକାର ସାଧନ ବା ହତିଆର ପ୍ରଭୃତି ଓ ଭିନ୍ନ ଭିନ୍ନ ଅନେକ ପ୍ରକାର ଚେଷ୍ଟା ବା ଉଦ୍ୟମ, ଫେର୍ ଏସବୁ ଛଡ଼ା ଦୈବ ବି ପଞ୍ଚମ କାରଣ ଏଥିରେ ଅଛି । ( ଏହା ମନେ ରଖିବାକୁ ହେବ । କାହିଁକି ନା, ଏସବୁ ହୋଇ ବି ଦୈବରୁ ଫଳ ବିଗିଡ଼ି ଯାଇପାରେ ) । ୧୪ ।

ବ୍ୟାଖ୍ୟା ସୂଚନା—କ୍ଷେତ୍ର = ଦେହ; କର୍ତ୍ତା = ଦେହବଦ୍ଧ ପୁରୁଷ । କରଣ ବା ସାଧନ = ଇନ୍ଦ୍ରିୟାଦି; ଚେଷ୍ଟା = ଇନ୍ଦ୍ରିୟପ୍ରାଣର ସେହି କର୍ମ ପାଇଁ କ୍ରିୟା । ଯଥା କୃଷି କର୍ମକୁ ଉଦାହରଣ କଲେ = କ୍ଷେତ୍ର = ବିଲ; କର୍ତ୍ତା = ଚଷା; କାରଣ = ଲଙ୍ଗଳ, ବଳଦ, ବିହନ, ଖତ ପ୍ରଭୃତି; ଚେଷ୍ଟା = ହଳ, ବେଉଷଣ, ବିଛା ପ୍ରଭୃତି । ଦୈବ = ପୂର୍ବସଞ୍ଚିତ କର୍ମମଧ୍ୟରୁ ଯେଉଁ କର୍ମର ଫଳ ଭୋଗ ଏହି ଜନ୍ମରେ ଆରମ୍ଭ ହୋଇଛି, ସେହି 'ପ୍ରାରବ୍‌ଧ' କର୍ମଫଳ, ବା ଲୋକର ହାତରେ ନ ଥିବା 'ଅଦୃଷ୍ଟ' କିଛି । ୧୪ ।

**ଶରୀରବାଙ୍‌ମନୋଭିର୍ଯତ୍ କର୍ମ ପ୍ରାରଭତେ ନରଃ ।**
**ନ୍ୟାଯ୍ୟଂ ବା ବିପରୀତଂ ବା ପଞ୍ଚୈତେ ତସ୍ୟ ହେତବଃ ।୧୫।**

**ଅନ୍ୱୟ**—ସ୍ପଷ୍ଟ । ୧୫ ।

**ଟୀକା**—ନରଃ ଶରୀରବାଙ୍‌ମନୋଭିଃ ନ୍ୟାଯ୍ୟଂ (ଧର୍ମ୍ୟଂ) ବା ବିପରୀତଂ ( ଅନ୍ୟାଯ୍ୟଂ ) ବା ଯତ୍ କର୍ମ ପ୍ରାରଭତେ ( କୁରୁତେ ), ଏତେ ପଞ୍ଚ ତସ୍ୟ ହେତବଃ । ୧୫ ।

**ଅର୍ଥ**—ଲୋକ କାୟ, ବାକ୍ୟ ବା ମନରେ, ଠିକ୍ ହେଉ, ବା ଭୁଲ ହେଉ, ଯାହା କିଛି କର୍ମ କରେ, ଏ ପାଞ୍ଚଟି ତାର ହେତୁ । ୧୫ ।

**ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ ।**
**ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ । ୧୬ ।**

**ଅନ୍ୱୟ**—ଏବଂ ସତି ତୁ ତତ୍ର କେବଳଂ ଆତ୍ମାନଂ ଯଃ କର୍ତ୍ତାରଂ ପଶ୍ୟତି, ସଃ ଦୁର୍ମତିଃ ଅକୃତବୁଦ୍ଧିତ୍ୱାତ୍ ନ ପଶ୍ୟତି । ୧୬ ।

**ଟୀକା**—[ତର୍ହି କଥଂ କର୍ତ୍ତାହଂ ଫଳଂ ଲପ୍ସ୍ୟେ ଇତି ବା ମୋହଃ ?—ଇତ୍ୟାହ] ଏବଂ ସତି ତୁ ତତ୍ର (କର୍ମଣି) କେବଳଂ ଆତ୍ମାନଂ ଯଃ କର୍ତ୍ତାରଂ ପଶ୍ୟତି, ସଃ ଦୁର୍ମତିଃ (ମୂଢ଼ଃ) ଅକୃତବୁଦ୍ଧିତ୍ୱାତ୍ (ଅବିବେକିତ୍ୱାତ୍—ଯଥା ଶାସ୍ତ୍ରଜ-ବିବେକୋଦ୍ଭବାତ୍) ନ [ଯଥାର୍ଥଂ] ପଶ୍ୟତି । ୧୬ ।

**ଅର୍ଥ**—[ତେବେ ଆଉ ମୁଁ କର୍ତ୍ତା, ଫଳ ପାଇବି ବୋଲି ମୋହ କାହିଁ ?—ଏହା କହୁଛନ୍ତି]—ଏହିପରି ତ କଥା । ତେବେ କିନ୍ତୁ କର୍ମରେ ଖାଲି ଆପଣାକୁ କର୍ତ୍ତା ବୋଲି ଯେ ବିଚାରେ, ସେ ମୂର୍ଖ ବୁଦ୍ଧିକି ଠିକ୍ ନ କରିଥିବାରୁ କିଛି ବୁଝେ ନାହିଁ । ୧୬ ।

ବ୍ୟାଖ୍ୟା ସୂଚନା—ଅକୃତବୁଦ୍ଧି = ୧୫.୧୧ ଟୀକା ଦେଖ । ଆପେ ତ ଏକାରେ କର୍ତ୍ତା ନୁହେ । ପୁଣି 'କୃତବୁଦ୍ଧି' ଲୋକ ଆପଣା ଶରୀରାଦିରେ ଅହଙ୍କାର ଛାଡ଼ି ଥିବାରୁ ଦେହାଦିଙ୍କ କର୍ତ୍ତା ବା ଜୀବଠାରୁ ଯଥାର୍ଥରେ ଆତ୍ମା ବା ଦେହୀକୁ ଅଲଗା ଦେଖେ । ୧୬ ।

**ଯସ୍ୟ ନାହଂକୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ ।**
**ହତ୍ୱାପି ସ ଇମାନ୍ ଲୋକାନ୍ ନ ହନ୍ତି ନ ନିବଧ୍ୟତେ । ୧୭ ।**

**ଅନ୍ୱୟ**—ସ୍ପଷ୍ଟ । ୧୭ ।

**ଟୀକା**—[ଅପି ତୁ କର୍ମଣି] ଯସ୍ୟ ଅହଂକୃତଃ ଭାବଃ ନ [ଅସ୍ତି], ଯସ୍ୟ ବୁଦ୍ଧିଃ ନ ଲିପ୍ୟତେ, ସଃ ଇମାନ୍ ଲୋକାନ୍ [ସର୍ବାନ୍] ହତ୍ୱା ଅପି ନ [କିଂ ଅପି ଯଥାର୍ଥତଃ] ହନ୍ତି, ନ [କର୍ମଫଳେନ] ନିବଧ୍ୟତେ । ୧୭ ।

**ଅର୍ଥ**—[ମାତ୍ର କର୍ମରେ] ଯାହାର ମୁଁ କରୁଛି ବୋଲି ଅହଂକାରଭାବ ନାହିଁ, ଯାହାର ବୁଦ୍ଧି [ହେଲା ତ ମଉଜ କରିବି, ହେଲା ନାହିଁ ତ କଣ କରିବି ?—ପ୍ରବୃତ୍ତିରେ] ଲିପ୍ତ ହୁଏ ନାହିଁ, [ତୁ ଏ ଯୁଦ୍ଧରେ ଶତ୍ରୁ ମାରିଲା ପରି, ସ୍ୱଧର୍ମ କରିବାରେ] ସେ ଜଗତଯାକ ମାରିଲେ ବି ପ୍ରକୃତରେ କାହାକୁ ମାରେ ନାହିଁ, (ଅର୍ଥାତ୍, ହିଂସା କରେ ନାହିଁ), କି କର୍ମ ତାର ବନ୍ଧନ ହୁଏ ନାହିଁ । ୧୭ ।

**ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା ତ୍ରିବିଧା କର୍ମଚୋଦନା ।**
**କରଣଂ କର୍ମ କର୍ତ୍ତେତି ତ୍ରିବିଧଃ କର୍ମସଂଗ୍ରହଃ ।୧୮।**

**ଅନ୍ୱୟ**—ସ୍ପଷ୍ଟ । ୧୮ ।

**ଟୀକା**—[ଶ୍ରୁତରଃ ଏବ କର୍ମଣଃ ଅନୁଷ୍ଠାନେ ପ୍ରବୃତ୍ତିହେତୁଃ; ତତଃ ସାବୟୁବଂ ଅନୁଷ୍ଠାନଂ ଚ । ଉତ୍ତର-ଶ୍ଲୋକ-ବିଷୟ-ବୋଧାୟ ତଦ୍‌-ଶ୍ରୁତୀନୁଷ୍ଠ ନବଶ୍ଲେଷଣଂ କରୋତି]—[କର୍ମ ଏତତ୍ ଇତି] ଜ୍ଞାନଂ (ଏବଂ ଭୂତଂ ଇତି) ଜ୍ଞେୟଂ, [କର୍ମଣଃ] ପରିଜ୍ଞାତା—[ଇତି] ତ୍ରିବିଧା କର୍ମଚୋଦନା (ଆଚରଣେ ପ୍ରବୃତ୍ତିହେତୁଃ); [ଆଚରଣେ ଚ] କରଣଂ (କର୍ମସାଧନ-ସାମଗ୍ରୀ—ଇନ୍ଦ୍ରିୟାଦି ବା) କର୍ମ, କର୍ତ୍ତା—ଇତି ତ୍ରିବିଧଃ କର୍ମସଂଗ୍ରହଃ (ଆଚରଣାବୟବାଃ) । ୧୮ ।

**ଅର୍ଥ**—[କର୍ମ ଶାସ୍ତ୍ରରୁ କର୍ମପାଇଁ ଲୋକ ପ୍ରେରିତ ହୁଏ । ତା ପରେ କର୍ମର ଆଚରଣ ପରଶ୍ଲୋକର ବିଷୟ ସ୍ପଷ୍ଟ କରିବାକୁ ସେହି ପ୍ରେରଣା ଓ ଆଚରଣ ବିଶ୍ଳେଷଣ କରି କହୁଚନ୍ତି ।]—କର୍ମ ଏହା ବୋଲି ଜ୍ଞାନ, ଏହପରି ବୋଲି ଜ୍ଞେୟ ଓ ସେହି କର୍ମର ପରିଜ୍ଞାତା ବା ଜାଣିବାବାଲା ଏହି ତିନିପ୍ରକାର (ତିନୋଟି) କର୍ମ ଶାସ୍ତ୍ରର ଅଙ୍ଗରୂପେ କର୍ମପାଇଁ ପ୍ରେରଣା ଦିଅନ୍ତି । (ବା କର୍ମ କରିବାକୁ ଚଳାନ୍ତି) । [ଆଚରଣରେ ପୁଣି ସେହି ଅନୁକ୍ରମେ] କରଣ ବା କର୍ମ କରିବାପାଇଁ ଲୋଡ଼ା ଦ୍ରବ୍ୟସବୁ କର୍ମ ଓ କର୍ତ୍ତା ଏହି ତିନୋଟି କର୍ମସଂଗ୍ରହ (ବା କର୍ମ ଆଚରଣର ଅଙ୍ଗ) । ୧୮ ।

ବ୍ୟାଖ୍ୟା ସୂଚନା—ଗୋଟିଏ ହାଣ୍ଡି କରିବାକୁ ଦେଖିଲେ ଜ୍ଞାନ=ହାଣ୍ଡି କରିବା; ଜ୍ଞେୟ=ହାଣ୍ଡି; ପରିଜ୍ଞାତା=କରିବାକୁ ଯେ ମନ କରେ; କରଣ=ମାଟି, ପିଟଣ, ଚକ ପ୍ରଭୃତି; କର୍ମ=ହାଣ୍ଡି; କର୍ତ୍ତା=କରିବା ଲୋକ । [ଜ୍ଞେୟ=କର୍ତ୍ତବ୍ୟ କର୍ମ ଓ ତାର ବିଧିସବୁ (ଜ୍ଞାନ)କୁ ଜାଣିଲେ ଲୋକ ପରିଜ୍ଞାତା ହୁଏ । ଏହି କର୍ମ ପ୍ରେରଣାର ପ୍ରକାର ସବୁ ବାଦ୍, ସେ ଇନ୍ଦ୍ରିୟ (କରଣ) ଦ୍ୱାରା କର୍ମର କର୍ତ୍ତା ହୁଏ—ମହାତ୍ମା ଗାନ୍ଧୀ] । ୧୮ ।

**ଜ୍ଞାନଂ କର୍ମ ଚ କର୍ତ୍ତା ଚ ତ୍ରିଧୈବ ଗୁଣଭେଦତଃ ।**
**ପ୍ରୋଚ୍ୟତେ ଗୁଣସଂଖ୍ୟାନେ ଯଥାବଚ୍ଛୃଣୁ ତାନ୍ୟପି ।୧୯।**

**ଅନ୍ୱୟ**—ଜ୍ଞାନଂ କର୍ମ ଚ କର୍ତ୍ତା ଚ ଗୁଣଭେଦତଃ ତ୍ରିଧା ଏବ ଗୁଣସଂଖ୍ୟାନେ ପ୍ରୋଚ୍ୟତେ, ତାନି ଅପି ଯଥାବତ୍ ଶୃଣୁ । ୧୯ ।

**ଟୀକା**—[ତେଷୁ ଷଡ଼୍‌ବିଧେଷୁ]—ଜ୍ଞାନଂ କର୍ମ ଚ କର୍ତ୍ତା ଚ [ସତ୍ତ୍ୱାଦି] ଗୁଣଭେଦତଃ [ ପ୍ରତ୍ୟେକଂ ] ତ୍ରିଧା ଏବ—[ଇତି] ଗୁଣସଂଖ୍ୟାନେ (ଗୁଣଜ୍ଞାନ-ପ୍ରତିପାଦକେ ଶାସ୍ତ୍ରେ) ପ୍ରୋଚ୍ୟତେ; ତାନି [ ତ୍ରିବିଧାନି ଜ୍ଞାନାଦୀନି ] ଅପି ଯଥାବତ୍ (ଯଥା ପ୍ରୋକ୍ତଂ ତଥା) ଶୃଣୁ । ୧୯ ।

**ଅର୍ଥ**—[ ସେହି ଛଅଟି ଭିତରେ ] ଜ୍ଞାନ, କର୍ମ ଓ କର୍ତ୍ତା, ସତ୍ତ୍ୱ, ରଜ ତମ—ଏହି ତିନି ଗୁଣଭେଦରେ ପ୍ରତ୍ୟେକେ ତିନିପ୍ରକାର ବୋଲି ଗୁଣବିଷୟକ ଜ୍ଞାନ

ଥିବା ଶାସ୍ତ୍ରରେ କୁହାଅଛୁ । ସେହିସବୁ କଥା ବି ଠିକ୍ ଯେପରି କୁହା ଅଛୁ, ତା ଶୁଣ୍ । ୧୯ ।

ବ୍ୟାଖ୍ୟା ସୂଚନା—ଜ୍ଞାନର ଅଧୀନ କରଣ, ଓ ଜ୍ଞେୟ କର୍ମରୂପେ, ପୁଣି ଜ୍ଞାତା କର୍ତ୍ତା ରୂପେ ଆଚରଣରେ ପ୍ରକାଶ ପାଏ । ତେଣୁ ଏଠାରେ ଏହି ତିନୋଟି ଧରି ବୁଝାଇଲେ । ୧୯ ।

**ସର୍ବଭୂତେଷୁ ଯେନୈକଂ ଭାବମବ୍ୟୟମୀକ୍ଷତେ ।**
**ଅବିଭକ୍ତଂ ବିଭକ୍ତେଷୁ ତଜ୍ଜ୍ଞାନଂ ବିଦ୍ଧି ସାତ୍ତ୍ୱିକମ୍ ।୨୦।**

**ଅନ୍ୱୟ**—ଯେନ ବିଭକ୍ତେଷୁ ସର୍ବଭୂତେଷୁ ଅବିଭକ୍ତଂ ଏକଂ ଅବ୍ୟୟଂ ଭାବଂ ଈକ୍ଷତେ ତତ୍ ଜ୍ଞାନଂ ସାତ୍ତ୍ୱିକଂ ବିଦ୍ଧି । ୨୦ ।

**ଟୀକା**—[ ସାତ୍ତ୍ୱିକଂ ଜ୍ଞାନମାହ ]—ଯେନ ଜ୍ଞାନେନ ଜନଃ ବିଭକ୍ତେଷୁ (ବିଭିନ୍ନେଷୁ) ସର୍ବଭୂତେଷୁ (ସୃଷ୍ଟବସ୍ତୁମାତ୍ରେଷୁ) ଅବିଭକ୍ତଂ (ଅଭିନ୍ନଂ) ଏକଂ ଅବ୍ୟୟଂ (ଅବିକାରଣଂ, ଅବିନାଶିନଂ) ଭାବଂ (ସତ୍ତ୍ୱଂ) ଈକ୍ଷତେ (ପଶ୍ୟତି, ଅନୁଭବତି), ତତ୍ ଜ୍ଞାନଂ ସାତ୍ତ୍ୱିକଂ ବିଦ୍ଧି । ୨୦ ।

**ଅର୍ଥ**—[ ସାତ୍ତ୍ୱିକ ଜ୍ଞାନ ଯଥା:—]—ଯେଉଁ ଜ୍ଞାନରେ ଲୋକ ଭିନ୍ନ ଭିନ୍ନ ହୋଇଥିବା ସୃଷ୍ଟବସ୍ତୁମାନଙ୍କରେ ଏକ, ଅଭିନ୍ନ, ଅଟଳ ସୃଷ୍ଟବସ୍ତୁ ପରି ବଦଳୁ ନ ଥିବା ଭାବ ( ବା ସତ୍ତ୍ୱା ) ଦେଖେ ( ଅର୍ଥାତ୍, ଏକ ଅଧ୍ୟାତ୍ମତତ୍ତ୍ୱ ସାରା ସୃଷ୍ଟିରେ ଦେଖେ ) ସେହି ଜ୍ଞାନ ଜାଣ୍ ସାତ୍ତ୍ୱିକ । ୧୩.୧୬ ଦେଖ । ୨୦ ।

**ପୃଥକ୍ତ୍ୱେନ ତୁ ଯଜ୍ଜ୍ଞାନଂ ନାନାଭାବାନ ପୃଥଗ୍ବିଧାନ୍ ।**
**ବେତ୍ତି ସର୍ବେଷୁ ଭୂତେଷୁ ତଜ୍ଜ୍ଞାନଂ ବିଦ୍ଧି ରାଜସମ୍ ।୨୧।**

**ଅନ୍ୱୟ**—ଯତ୍ ଜ୍ଞାନଂ ତୁ ସର୍ବେଷୁ ଭୂତେଷୁ ପୃଥକ୍ତ୍ୱେନ ପୃଥକ୍ ବିଧାନ ନାନାଭାବାନ୍ ବେତ୍ତି, ତତ୍ ଜ୍ଞାନଂ ରାଜସଂ ବିଦ୍ଧି । ୨୧ ।

**ଟୀକା**—[ ରାଜସଂ ଜ୍ଞାନମାହ ]—ଯତ୍ ଜ୍ଞାନଂ ତୁ [ ବିଭକ୍ତେଷୁ ] ସର୍ବଭୂତେଷୁ ପୃଥକ୍ତ୍ୱେନ [ ପ୍ରତିଭିଗମ୍ୟାନ୍ ] ପୃଥଗ୍ବିଧାନ୍ ନାନାଭାବାନ୍ ( ବିଭିନ୍ନସତ୍ତ୍ୱାଃ ) ବେତ୍ତି, ତତ୍ ଜ୍ଞାନଂ ରାଜସଂ ବିଦ୍ଧି । ୨୧ ।

**ଅର୍ଥ**—[ ରାଜସ ଜ୍ଞାନ ଯଥା:—] କିନ୍ତୁ ଯେଉଁ ଜ୍ଞାନରେ ଲୋକ ଭୂତ-ମାନଙ୍କରେ ବିଭିନ୍ନପ୍ରକାର ନାନା ଭାବ ବା ସତ୍ତ୍ୱା ଭିନ୍ନ ଭିନ୍ନ ଭାବରେ ଅଛି ବୋଲି ବୁଝେ, ସେହି ଜ୍ଞାନ ଜାଣ୍ ରାଜସ । (ଯଥା—ଦେଶ, କାଳ, ଗାଁ ପରମ୍ପରା ପ୍ରଭୃତିରେ

ତୋର ଅନ୍ୟର ମୋର ବୋଲି ଅଲଗା ଅଲଗା ଦେଖେ । ସାଧାରଣ ବ୍ୟକ୍ତିତ୍ୱବାନ୍ ଲୋକର ଏହି ରାଜସ ଜ୍ଞାନହିଁ ଦେଖାଯାଏ) । ୨୧ ।

**ଯତ୍ତୁ କୃତ୍ସ୍ନବଦେକସ୍ମିନ୍ କାର୍ଯ୍ୟେ ସକ୍ତମହୈତୁକମ୍ ।**
**ଅତତ୍ତ୍ୱାର୍ଥବଦଳ୍ପଂ ଚ ତତ୍ ତାମସମୁଦାହୃତମ୍ ।୨୨।**

**ଅନ୍ୱୟ**—ଯତ୍ ତୁ ଅହୈତୁକଂ ଏକସ୍ମିନ୍ କାର୍ଯ୍ୟେ କୃତ୍ସ୍ନବତ୍ ସକ୍ତଂ ଅତତ୍ତ୍ୱାର୍ଥବତ୍ ଅଳ୍ପଂ ଚ ତତ୍ ତାମସଂ ଉଦାହୃତଂ । ୨୨ ।

**ଟୀକା**—ଯତ୍ ତୁ ଅହୈତୁକଂ (ମୋହାତ, ଅବଶ୍ୟରେଣ) ଏକସ୍ମିନ୍ କାର୍ଯ୍ୟେ କୃତ୍ସ୍ନବତ୍ (ଏତତ୍ ଏବ ସର୍ବଂ ଇତି) ସକ୍ତଂ (ଲିପ୍ତଂ) ଅତତ୍ତ୍ୱାର୍ଥବତ୍ (ତତ୍ତ୍ୱପ୍ରୟୋଜନଶୂନ୍ୟଂ) ଅଳ୍ପଂ (ସ୍ୱଳ୍ପଂ) ଚ ତତ୍ [ଜ୍ଞାନଂ] ତାମସଂ ଉଦାହୃତଂ (କଥିତମ୍) । ୨୨ ।

**ଅର୍ଥ**—କିନ୍ତୁ ଯେଉଁ ଜ୍ଞାନ କିଛି ନ ଦେଖି, ଗୋଟିଏ ମାତ୍ର କାର୍ଯ୍ୟରେ (ଯେପରି କି, ନିଜ ପେଟ ପୂରାଇବାରେ ବା କୁଟୁମ୍ବ ମୁହଁକୁ ଚାହିଁ ବସିବାରେ) [ସବୁ ଥିଲାଭଳି] ଏହି ସବୁ ବୋଲି, ଘାଣ୍ଟି ହେଉଥାଏ ଓ ଯାହା କୌଣସି ତତ୍ତ୍ୱରେ ଲାଗେ ନାହିଁ; ପୁଣି ତୁଚ୍ଛ, ସେହି ଜ୍ଞାନକୁ ତାମସ କୁହାଯାଏ । ୨୨ ।

**ନିୟତଂ ସଙ୍ଗରହିତମରାଗଦ୍ୱେଷତଃ କୃତମ୍ ।**
**ଅଫଳପ୍ରେପ୍ସୁନା କର୍ମ ଯତ୍ ତତ୍ ସାତ୍ତ୍ୱିକମୁଚ୍ୟତେ ।୨୩।**

**ଅନ୍ୱୟ**—ନିୟତଂ ସଙ୍ଗରହିତଂ, ଅରାଗଦ୍ୱେଷତଃ ଅଫଳପ୍ରେପ୍ସୁନା କୃତଂ ଯତ୍ କର୍ମ ତତ୍ ସାତ୍ତ୍ୱିକଂ ଉଚ୍ୟତେ । ୨୩ ।

**ଟୀକା**—[ସାତ୍ତ୍ୱିକଂ କର୍ମାହ]—[ସ୍ୱଧର୍ମେ] ନିୟତଂ (ନିର୍ଦ୍ଦିଷ୍ଟଂ ସଙ୍ଗରହିତଂ ଆସକ୍ତିଶୂନ୍ୟଂ) [ଅତଏବ] ଅରାଗଦ୍ୱେଷତଃ (ପ୍ରୀତିବିରକ୍ତିଶୂନ୍ୟତୟା କର୍ତ୍ତବ୍ୟଂ ଏବ ଇତି) ଅଫଳପ୍ରେପ୍ସୁନା (ଫଳତୃଷ୍ଣାଶୂନ୍ୟଜନେନ) କୃତଂ ଯତ୍ କର୍ମ ତତ୍ ସାତ୍ତ୍ୱିକଂ ଉଚ୍ୟତେ । ୨୩ ।

**ଅର୍ଥ**—[ସାତ୍ତ୍ୱିକ କର୍ମ ଯଥା:—] ସ୍ୱଧର୍ମରେ ନିର୍ଦ୍ଦିଷ୍ଟ ହୋଇଥିବା ଯେ କର୍ମ ଫଳତୃଷ୍ଣା ନ ଥିବା ଲୋକଦ୍ୱାରା ଆସକ୍ତିରହିତ ଭାବରେ ରାଗଦ୍ୱେଷ (ବା ପ୍ରୀତି ବିରକ୍ତି) ଛାଡ଼ି କରାହୁଏ, ସେହି କର୍ମକୁ ସାତ୍ତ୍ୱିକ କୁହାଯାଏ । ୨୩ ।

**ଯତ୍ତୁ କାମେପ୍ସୁନା କର୍ମ ସାହଙ୍କାରେଣ ବା ପୁନଃ ।**
**କ୍ରିୟତେ ବହୁଳାୟାସଂ ତଦ୍ରାଜସମୁଦାହୃତମ୍ ।୨୪।**

**ଅନ୍ୱୟ**—ଯତ୍ ତୁ କର୍ମ କାମେପ୍ସୁନା ବା ପୁନଃ ସାହଂକାରେଣ ବହୁଳାୟାସଂ କ୍ରିୟତେ, ତତ୍ ରାଜସଂ ଉଦାହୃତମ୍ । ୨୪ ।

**ଟୀକା**—[ ରାଜସଂ କର୍ମାହ ]—ଯତ୍ତୁ କର୍ମ କାମେପ୍ସୁନା ( ଫଳଲିପ୍ସୁନା ) ବା ପୁନଃ ସାହଂକାରେଣ (ସ୍ୱଯଶସେ ବୟଂ ଏତତ୍ କୁର୍ମଃ ଇତି ଦର୍ପବତା ) ବହୁଳାୟାସଂ (ବହ୍ୱାରମ୍ଭକ୍ଲେଶେନ) କ୍ରିୟତେ ତତ୍ ରାଜସଂ ଉଦାହୃତମ୍ । ୨୪ ।

**ଅର୍ଥ**—[ରାଜସ କର୍ମ ଯଥା—] କିନ୍ତୁ ଯେଉଁ କର୍ମ ଭୋଗ ଲୋଡ଼ିବା ଲୋକଦ୍ୱାରା ବା ଦେଖାଇ ହେବାପାଇଁ 'ଆମେ' ବୋଲି ମାଣିବା ଲୋକଦ୍ୱାରା ବହୁ ଶ୍ରମ ଆୟାସ ବା ଡମ୍ବରରେ କରାହୁଏ, ତାକୁ ରାଜସ କର୍ମ କହନ୍ତି । ୨୪ ।

**ଅନୁବନ୍ଧଂ କ୍ଷୟଂ ହିଂସାମନପେକ୍ଷ୍ୟ ଚ ପୌରୁଷମ୍ ।**
**ମୋହାଦାରଭ୍ୟତେ କର୍ମ ଯତ୍ ତତ୍ ତାମସମୁଚ୍ୟତେ ।୨୫।**

**ଅନ୍ୱୟ**—ଅନୁବଂଧଂ, କ୍ଷୟଂ, ହିଂସାଂ, ପୌରୁଷଂ ଚ ଅନପେକ୍ଷ୍ୟ ମୋହାତ୍ ଯତ୍ କର୍ମ ଆରଭ୍ୟତେ, ତତ୍ ତାମସଂ ଉଚ୍ୟତେ । ୨୫ ।

**ଟୀକା**—[ ତାମସଂ କର୍ମାହ ]—ଅନୁବନ୍ଧଂ (ଭାବିଫଳାଫଳଂ, ପରିଣାମଂ) କ୍ଷୟଂ ( ଅର୍ଥାଦେଃ ହାନିଂ ) ହିଂସାଂ ( ପରପୀଡ଼ାଂ ) ପୌରୁଷଂ ( ସାମର୍ଥ୍ୟଂ ) ଚ ଅନପେକ୍ଷ୍ୟ ( ନ ପର୍ଯ୍ୟାଲୋଚ୍ୟ ) ମୋହାତ୍ ଯତ୍ କର୍ମ ଆରଭ୍ୟତେ ( କ୍ରିୟତେ ) ତତ୍ ତାମସଂ ଉଚ୍ୟତେ । ୨୫ ।

**ଅର୍ଥ**—[ ତାମସ କର୍ମ ଯଥା:—]—କର୍ମର ଫଳାଫଳ, ସେଥିରେ ହାନିଲାଭ, ପରର ଅକାର୍ଯ୍ୟ କାର୍ଯ୍ୟ ଓ ନିଜର କ୍ଷମତାକୁ ନ ତକାଇ ଦୁର୍ବୁଦ୍ଧିରେ ଯେଉଁ କର୍ମ କରାଯାଏ, ତାକୁ ତାମସ କର୍ମ କହନ୍ତି । ୨୫ ।

**ମୁକ୍ତସଙ୍ଗୋଽନହଂବାଦୀ ଧୃତ୍ୟୁତ୍ସାହବଲାନ୍ୱିତଃ ।**
**ସିଦ୍ଧ୍ୟସିଦ୍ଧ୍ୟୋର୍ନିର୍ବିକାରଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ।୨୬।**

**ଅନ୍ୱୟ**—ମୁକ୍ତସଂଗଃ, ଅନହଂବାଦୀ ଧୃତ୍ୟୁତ୍ସାହବଲାନ୍ୱିତଃ, ସିଦ୍ଧ୍ୟସିଦ୍ଧ୍ୟୋଃ ନିର୍ବିକାରଃ, କର୍ତ୍ତା ସାତ୍ତ୍ୱିକଃ ଉଚ୍ୟତେ । ୨୬ ।

**ଟୀକା**—[ ସାତ୍ତ୍ୱିକଂ କର୍ତ୍ତାରଂ ଆହ ]—ମୁକ୍ତସଙ୍ଗଃ ( ଅନାସକ୍ତଃ ) ଅନହଂବାଦୀ ( ନିରଭିମାନଃ ଧୃତ୍ୟୁତ୍ସାହବଲାନ୍ୱିତଃ ( ମନଇନ୍ଦ୍ରିୟାଣାଂ କର୍ମଶକ୍ତି-ଧାରଣାତ୍ ସଦୋଦ୍ୟମପରଃ—ଅନଳସଃ ) ସିଦ୍ଧ୍ୟସିଦ୍ଧ୍ୟୋଃ ( ଫଳାଫଳୟୋଃ ) ନିର୍ବିକାରଃ (ଅବିକ୍ଲିଶ୍ୟମାନଃ କର୍ତ୍ତା ସାତ୍ତ୍ୱିକଃ ଉଚ୍ୟତେ) । ୨୬ ।

**ଅର୍ଥ**—[ ସାତ୍ତ୍ୱିକ କର୍ତ୍ତା ଯଥା:—]—ଉଦାସୀନ, ଅମାର୍ଜ୍ଜିକ, ଧୀର ଓ ଉଦ୍ୟମୀ ( ବା ଅନଳସ ଓ କୁଶଳ ), ପୁଣି ହେଲ ନ ହେଲରେ ବ୍ୟସ୍ତ ନ ହେବା କର୍ମୀଙ୍କୁ ସାତ୍ତ୍ୱିକ କର୍ତ୍ତା କହନ୍ତି । ୨୬ ।

**ରାଗୀ କର୍ମଫଳପ୍ରେପ୍ସୁର୍ଲୁବ୍ଧୋ ହିଂସାତ୍ମକୋଽଶୁଚିଃ ।**
**ହର୍ଷଶୋକାନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ । ୨୭ ।**

**ଅନ୍ୱୟ**—ସ୍ପଷ୍ଟଃ । ୨୭ ।

**ଟୀକା**—[ ରାଜସକର୍ତ୍ତାରମାହ ]—ରାଗୀ ( ବିଷୟାସକ୍ତଃ ) କର୍ମଫଳପ୍ରେପ୍ସୁଃ ( ଫଳେଚ୍ଛୁଃ ) ଲୁବ୍ଧଃ ( ଲୋଭୀ ) ହିଂସାତ୍ମକଃ ( ପ୍ରାଣିପୀଡ଼ାପରଃ ) ଅଶୁଚିଃ ( ମଳିନଃ—କୁଟନୀତିସମ୍ପନ୍ନଃ ) ହର୍ଷଶୋକାନ୍ୱିତଃ ( ଫଳବତି କର୍ମଣି ହର୍ଷଃ, ନଷ୍ଟେ ଚ ଶୋକଃ—ତାଭ୍ୟାଂ ଯୁକ୍ତଃ ) କର୍ତ୍ତା ରାଜସଃ ପରିକୀର୍ତ୍ତିତଃ । ୨୭ ।

**ଅର୍ଥ**—[ ରାଜସ କର୍ତ୍ତା ଯଥା:—]—[ କର୍ମରେ ] ଆସକ୍ତ, ଫଳଲୋଭୀ, ଲମ୍ପଟ ( ବା ଅନ୍ୟର ଲାଭ ବା ଦ୍ରବ୍ୟ ହଜେ ମାରିନେବାରେ ବ୍ୟସ୍ତ ), ହିଂସୁକ, ଅସଦାଚାରୀ, ସୁଖବେଳେ ଭାରି ଖୁସି ଓ ଦୁଃଖବେଳେ ଅତି ବ୍ୟାକୁଳ କର୍ମୀଙ୍କୁ ରାଜସ କର୍ତ୍ତା କହନ୍ତି । ୨୭ ।

**ଅଯୁକ୍ତଃ ପ୍ରାକୃତଃ ସ୍ତବ୍ଧଃ ଶଠୋ ନୈଷ୍କୃତିକୋଽଳସଃ ।**
**ବିଷାଦୀ ଦୀର୍ଘସୂତ୍ରୀ ଚ କର୍ତ୍ତା ତାମସ ଉଚ୍ୟତେ । ୨୮ ।**

**ଅନ୍ୱୟ**—ସ୍ପଷ୍ଟଃ । ୨୮ ।

**ଟୀକା**—[ ତାମସକର୍ତ୍ତାରମାହ ]—ଅଯୁକ୍ତଃ (ଅବ୍ୟବସ୍ଥିତଃ, ଚପଳଃ ) ପ୍ରାକୃତଃ ( ଅସଂସ୍କୃତଃ ), ସ୍ତବ୍ଧଃ (ଅନମନୀୟଃ) ଶଠଃ ( ବଂଚକଃ ) ନୈଷ୍କୃତିକଃ ( ପରବୃତ୍ତିଚ୍ଛେଦନକାରୀ, ସ୍ୱାର୍ଥପରତୟା ନୀଚଭାବାପନ୍ନଃ) ଅଳସଃ ( ଆଳସ୍ୟପରଃ ) ବିଷାଦୀ ( କିଂ କରିଷ୍ୟେ—ଇତି ସଦା ଅପ୍ରସନ୍ନଚିତ୍ତଃ ) ଦୀର୍ଘସୂତ୍ରୀ (ମୁହୂର୍ତ୍ତେନ କୃତ୍ୟଂ ମାସେନ କରୋତି ବା ନ ବେତି ଯଃ କର୍ମଣଃ ଅନୁଷ୍ଠାନକାଳଂ ଦୀର୍ଘଂ କରୋତି, ତଦ୍ୱିଧଃ ) ଚ କର୍ତ୍ତା ତାମସଃ ଉଚ୍ୟତେ । ୨୮ ।

**ଅର୍ଥ**—[ ତାମସ କର୍ତ୍ତା ଯଥା:—]—ଅବ୍ୟବସ୍ଥିତ, ଅସଭ୍ୟ, ଅକଡବାଜୀ, ଠକ, ଦୁରାତ୍ମା ( ଗ୍ରେଟଲୋକ ), ଅଳସୁଆ, ଶୁଖିଲମୁହାଁ ଓ ମଠୁଆ କର୍ମୀଙ୍କୁ ତାମସ କର୍ତ୍ତା କହନ୍ତି । ୨୮ ।

**ବୁଦ୍ଧେର୍ଭେଦଂ ଧୃତେଶ୍ଚୈବ ଗୁଣତସ୍ତ୍ରିବିଧଂ ଶୃଣୁ ।**
**ପ୍ରୋଚ୍ୟମାନମଶେଷେଣ ପୃଥକ୍ତ୍ୱେନ ଧନଞ୍ଜୟ । ୨୯ ।**

**ଅନ୍ୱୟ**—ସ୍ପଷ୍ଟ । ୨୯ ।

**ଟୀକା**—[ବୁଦ୍ଧେଃ ଧୃତେଃ ଚ ଗୁଣତଃ ଭେଦାନାହ ]—ହେ ଧନଞ୍ଜୟ, ବୁଦ୍ଧେଃ ଧୃତେଃ ଚ ଏବ ଗୁଣତଃ ତ୍ରିବିଧଂ ଭେଦଂ ପୃଥକ୍‌ତ୍ୱେନ ଅଶେଷେଣ (ସମ୍ୟକ୍) ପ୍ରୋଚ୍ୟମାନଂ ( କଥ୍ୟମାନଂ ଶୃଣୁ ) । ୨୯ ।

**ଅର୍ଥ**—[ବୁଦ୍ଧି ଓ ଧୃତିର ଗୁଣାନୁସାରେ ଭେଦ ବୁଝାଇବାକୁ କହୁଚନ୍ତି ] —ହେ ଧନଞ୍ଜୟ, ବୁଦ୍ଧି ଓ ଧୃତିର ଗୁଣ ଅନୁସାରେ ପ୍ରକାର ମାନ ଅଲଗା ଅଲଗା କରି ସବୁ କୁହାଯାଉଚି, ଶୁଣ୍ । ୨୯ ।

**ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।**
**ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ । ୩୦ ।**

**ଅନ୍ୱୟ**—ସ୍ପଷ୍ଟ । ୩୦ ।

**ଟୀକା**—[ସାତ୍ତ୍ୱିକୀଂ ବୁଦ୍ଧିମାହ] ହେ ପାର୍ଥ, ପ୍ରବୃତ୍ତିଂ (କୁତ୍ର ପ୍ରବର୍ତ୍ତିତବ୍ୟଂ ଇତି) ଚ ନିବୃତ୍ତିଂ (କୁତ୍ର ନ ପ୍ରବର୍ତ୍ତିତବ୍ୟଂ ଇତି) ଚ, କାର୍ଯ୍ୟାକାର୍ଯ୍ୟେ (କରଣୀୟଂ ଚ ଅକରଣୀୟଂ ଚ ) ଭୟାଭୟେ ( କୁତ୍ର ଭେତବ୍ୟଂ କୁତ୍ର ଚ ନେତି ) ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି ସା ବୁଦ୍ଧିଃ (ବିବେକବୃତ୍ତିଃ) ସାତ୍ତ୍ୱିକୀ । ୩୦ ।

**ଅର୍ଥ**—[ସାତ୍ତ୍ୱିକ ବୁଦ୍ଧି ଯଥା:—] ହେ ପାର୍ଥ, କାହିଁରେ କେଉଁଠି କିପରି ପ୍ରବର୍ତ୍ତିବ, କାହିଁରେ କେଉଁଠି କିପରି ବା ନିବର୍ତ୍ତିବ; କଣ କରିବା ଠିକ୍ , କଣ ବା ଠିକ୍ ନୁହେଁ; କେତେବେଳେ ଶଙ୍କିବ, କେତେବେଳେ ବା ନିର୍ଭୟରେ କରିଯିବ (ମର୍ଯ୍ୟାଦା ଅମର୍ଯ୍ୟାଦା); କେଉଁଥିରେ ପାପ ଲାଗିବ, ପୁଣି କେଉଁଥିରେ ମୁକ୍ତି ମିଳିବ— ଏସବୁ ଯେଉଁ ବୁଦ୍ଧି ବା ବିବେକରେ ଜାଣି ହୁଏ, ସେହି ବୁଦ୍ଧି ସାତ୍ତ୍ୱିକ । ୩୦ ।

**ଯୟା ଧର୍ମମଧର୍ମଂ ଚ କାର୍ଯ୍ୟଂ ଚାକାର୍ଯ୍ୟମେବ ଚ ।**
**ଅଯଥାବତ୍ ପ୍ରଜାନାତି ବୁଦ୍ଧିଃ ସା ପାର୍ଥ ରାଜସୀ । ୩୧ ।**

**ଅନ୍ୱୟ**—ସ୍ପଷ୍ଟ । ୩୧ ।

**ଟୀକା**—[ରାଜସୀ ବୁଦ୍ଧିମାହ] ହେ ପାର୍ଥ, ଯୟା [ଜନଃ] ଧର୍ମଂ ଚ ଅଧର୍ମଂ ଚ, କାର୍ଯ୍ୟଂ ଅକାର୍ଯ୍ୟଂ ଚ ଏବ ଅଯଥାବତ୍ (ନ ନିଶ୍ଚିତତୟା) ପ୍ରଜାନାତି, ସା ବୁଦ୍ଧିଃ ରାଜସୀ । ୩୧ ।

**ଅର୍ଥ**—[ରାଜସୀ ବୁଦ୍ଧି ଯଥା:—] ହେ ପାର୍ଥ, ଯହିଁରେ ଲୋକ ସୁକୃତ, ଦୁଷ୍କୃତ, କର୍ତ୍ତବ୍ୟ ସବୁ ଅଠିକଣା କରି ଜାଣେ, ସେହି ବୁଦ୍ଧି ରାଜସ । ୩୧ ।

ବ୍ୟାଖ୍ୟା ସୂଚନା—ଅଠିକଣା କରି=କେତେବେଳେ ଧର୍ମକୁ ଅଧର୍ମ ବୋଲି ବୁଝେ, ଅଧର୍ମକୁ ଧର୍ମ ବୋଲି ବୁଝେ—ଇତ୍ୟାଦି । ୩୧ ।

**ଅଧର୍ମଂ ଧର୍ମମିତି ଯା ମନ୍ୟତେ ତମସାବୃତା ।**
**ସର୍ବାର୍ଥାନ୍ ବିପରୀତାଂଶ୍ଚ ବୁଦ୍ଧିଃ ସା ପାର୍ଥ ତାମସୀ । ୩୨ ।**

**ଅନ୍ୱୟ**—ସ୍ପଷ୍ଟ । ୩୨ ।

**ଟୀକା**—[ ତାମସୀଂ ବୁଦ୍ଧିଂ ଆହ ]—ହେ ପାର୍ଥ ତମସାବୃତା ଯା [ବୁଦ୍ଧିଃ] ଅଧର୍ମଂ ଧର୍ମଂ ଇତି [ ତଦ୍‌ବତ୍ ] ଚ ସର୍ବାନ୍ ଅର୍ଥାନ୍ ( ପୁରୁଷସ୍ୟ ପ୍ରୟୋଜନାନି ) ବିପରୀତାନ୍ ମନ୍ୟତେ , ସା ବୁଦ୍ଧିଃ ତାମସୀ । ୩୨ ।

**ଅର୍ଥ**—[ତାମସ ବୁଦ୍ଧି ଯଥା:—] ହେ ପାର୍ଥ, ଅଜ୍ଞାନ-ଅନ୍ଧାର ଘୋଟିଥିବାରୁ ଯେଉଁ ବୁଦ୍ଧି ବରାବର ଅଧର୍ମକୁ ଧର୍ମ ବୋଲି ଓ ସେହିପରି ସବୁ କଥାକୁ ଓଲଟା ବୁଝିରେ, ସେହି ବୁଦ୍ଧି ତାମସ । ୩୨ ।

**ଧୃତ୍ୟା ଯୟା ଧାରୟତେ ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ।**
**ଯୋଗେନାବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକୀ ।୩୩।**

**ଅନ୍ୱୟ**—ପାର୍ଥ ! ଅବ୍ୟଭିଚାରିଣ୍ୟା ଯୟା ଧୃତ୍ୟା ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ଯୋଗେନ ଧାରୟତେ ସା ଧୃତିଃ ସାତ୍ତ୍ୱିକୀ । ୩୩ ।

**ଟୀକା**—[ ତତଃ ଧୃତେଃ ତ୍ରିବିଧତ୍ୱଂ—ତତ୍ର ସାତ୍ତ୍ୱିକୀଂ ଧୃତିଂ ଆହ]—ହେ ପାର୍ଥ, ଅବ୍ୟଭିଚାରିଣ୍ୟା (ଏକାନ୍ତନିଷ୍ଠୟା) ଯୟା ଧୃତ୍ୟା [ଜନଃ] ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ( ମନଃପ୍ରାଣେନ୍ଦ୍ରିୟାଣାଂ ବ୍ୟାପାରାନ୍—ବିବିଧାଃ ଚେଷ୍ଟାଃ ଇତି ଶ୍ରୀଧରଃ—୧୮.୧୪ ) ଯୋଗେନ ( ସମାଧିନା ତତ୍ପରତୟା ବା ) ( ଧାରୟତେ ଧାରୟତି ) ସା ଧୃତିଃ ସାତ୍ତ୍ୱିକୀ । ୩୩ ।

**ଅର୍ଥ**—[ଧୃତି ତିନି ପ୍ରକାର—ସେଥିରେ ସାତ୍ତ୍ୱିକୀ ଧୃତି, ଯଥା:—] ହେ ପାର୍ଥ, ଯେଉଁ ଏକମୁଖୀ ଧୃତିରେ ଲୋକ ମନ ପ୍ରାଣ ଓ ଇନ୍ଦ୍ରିୟଗଣଙ୍କର ଚେଷ୍ଟାମାନ ତତ୍ପରତା ବା ସେହି ଏକର ନିଷ୍ଠାରେ ଧାରଣ କରେ, ସେହି ଧୃତି ସାତ୍ତ୍ୱିକୀ । ୩୩ ।

ବ୍ୟାଖ୍ୟା ସୂଚନା—ଯୋଗେ=ତତ୍ପରତାରେ, ବା ସେଇ କର୍ମରେ ଆପଣାକୁ ଏକ କରି ମିଶାଇଦେଇ, ଅଥବା ଈଶ୍ୱରାର୍ପଣ ଭାବରେ ନିଜକୁ ମିଶାଇ ଏକ କରି ଦେଇ । ୩୩ ।

**ଯଯା ତୁ ଧର୍ମକାମାର୍ଥାନ୍ ଧୃତ୍ୟା ଧାରୟତେଽର୍ଜୁନ ।**
**ପ୍ରସଙ୍ଗେନ ଫଳାକାଙ୍କ୍ଷୀ ଧୃତିଃ ସା ପାର୍ଥ ରାଜସୀ ।୩୪।**

**ଅନ୍ୱୟ**—ଅର୍ଜୁନ ! ଫଳାକାଙ୍କ୍ଷୀ ତୁ ପ୍ରସଙ୍ଗେନ ଯଯା ଧୃତ୍ୟା ଧର୍ମକାମାର୍ଥାନ୍ ଧାରୟତେ ସା ଧୃତିଃ ରାଜସୀ । ୩୪ ।

**ଟୀକା**—[ ରାଜସୀଂ ଧୃତିମାହ ]—ହେ ଅର୍ଜୁନ, ଫଳାକାଙ୍କ୍ଷୀ ତୁ ପ୍ରସଙ୍ଗେନ ( ଅତ୍ୟାସକ୍ତ୍ୟା ) ଯଯା ଧୃତ୍ୟା ଧର୍ମକାମାର୍ଥାନ୍ ( ଧର୍ମାର୍ଥକାମମୋକ୍ଷାଃ—ଇତି ଚତୁର୍ବର୍ଗପୁରୁଷାର୍ଥେଭ୍ୟଃ ଧର୍ମାର୍ଥକାମାନ୍, ପୁଣ୍ୟସଂଚୟଃ, ଧନଂ, କାମନାଲାଭଃ ଚ—ତାନ୍ ) ଧାରୟତେ (ପୁରୁଷାର୍ଥଂ ଇତି ଅବଧାରୟନ୍ ପ୍ରାଣାଦୀନାଂ ଚେଷ୍ଟାଭି ସଂଧାରୟତି ) ସା ଧୃତିଃ ରାଜସୀ । ୩୪ ।

**ଅର୍ଥ**—[ ରାଜସ ଧୃତି ଯଥା:—]—କିନ୍ତୁ ହେ ଅର୍ଜୁନ, ଫଳଲୋଭୀ ଲୋକ ଅତି ଆସକ୍ତ (ଲାଳସୀ) ହୋଇ ଯେଉଁ ଧୃତିରେ ଧର୍ମ, ଅର୍ଥ, କାମ ଏହି ତିନୋଟି ମାତ୍ର ପୁରୁଷାର୍ଥକୁ ପ୍ରାଣ ମନ-ଇନ୍ଦ୍ରିୟ-ଚେଷ୍ଟାର ଚାଳକ ସ୍ୱରୂପ ଧରିଥାଏ, ସେହି ଧୃତି ରାଜସୀ । ୩୪ ।

ବ୍ୟାଖ୍ୟା ସୂଚନା—ଧର୍ମ, ଅର୍ଥ, କାମ, ମୋକ୍ଷ—ଏହି ଚାରୋଟିକୁ ଚତୁର୍ବର୍ଗ ପୁରୁଷାର୍ଥ କହନ୍ତି । ରାଜସ ଧୃତିରେ ମୋକ୍ଷର ସ୍ଥାନ ନାହିଁ । ବାକି ତିନୋଟିର କଥା କୁହାଯାଇଛି । ଧର୍ମ = ସୁକୃତ, ପୁଣ୍ୟକାର୍ଯ୍ୟ; ଅର୍ଥ = ଧନ; କାମ = କାମନା ଲାଭ ।୩୪।

**ଯଯା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ମଦମେବ ଚ ।**
**ନ ବିମୁଞ୍ଚତି ଦୁର୍ମେଧା ଧୃତିଃ ସା ପାର୍ଥ ତାମସୀ । ୩୫ ।**

**ଅନ୍ୱୟ**—ପାର୍ଥ ! ଦୁର୍ମେଧାଃ ଯଯା ସ୍ୱପ୍ନଂ, ଭୟଂ, ଶୋକଂ, ବିଷାଦଂ, ମଦଂ ଏବ ଚ ନ ବିମୁଂଚତି, ସା ଧୃତିଃ ତାମସୀ । ୩୫ ।

**ଟୀକା**—[ତାମସୀଂ ଧୃତିଂ ଆହ]—ହେ ପାର୍ଥ, ଦୁର୍ମେଧାଃ (ମନ୍ଦମତିଜନଃ) ଯଯା ସ୍ୱପ୍ନଂ (ନିଦ୍ରାଂ ଆଳସ୍ୟମିତି ଯାବତ୍) ଭୟଂ, ଶୋକଂ, ବିଷାଦଂ ( ଅବସାଦଂ ) ମଦଂ ଏବ ଚ ନ ବିମୁଞ୍ଚତି ( ତ୍ୟଜତି ), ସା ଧୃତିଃ ତାମସୀ । ୩୫ ।

**ଅର୍ଥ**—[ ତାମସୀ ଧୃତି ଯଥା:—] ହେ ପାର୍ଥ, ଦୁର୍ବୁଦ୍ଧି ଲୋକ ଯହିଁରେ ନିଦ୍ରା ବା ଆଳସ୍ୟ, ଶଙ୍କା, ଶୋଚନା, ନିରାଶା ଓ ବଡ଼ିମା ନ ଛାଡ଼େ, ସେହି ଧୃତି ତାମସୀ । ୩୫ ।

**ସୁଖଂ ତ୍ୱିଦାନୀଂ ତ୍ରିବିଧଂ ଶୃଣୁ ମେ ଭରତର୍ଷଭ ।**
**ଅଭ୍ୟାସାଦ୍ରମତେ ଯତ୍ର ଦୁଃଖାନ୍ତଂ ଚ ନିଗଚ୍ଛତି ।୩୬।**
**ଯତ୍ତଦଗ୍ରେ ବିଷମିବ ପରିଣାମେଽମୃତୋପମମ୍ ।**
**ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମାତ୍ମବୁଦ୍ଧିପ୍ରସାଦଜମ୍ ।୩୭।**

**ଅନ୍ୱୟ**—ଭରତର୍ଷଭ ! ଇଦାନୀଂ ତ୍ରିବିଧଂ ତୁ ସୁଖଂ ମେ ଶୃଣୁ । ଯତ୍ର ଅଭ୍ୟାସାତ୍ [ଜନଃ] ରମତେ, ଦୁଃଖାନ୍ତଂ ଚ ନିଗଚ୍ଛତି, ଯତ୍ ତତ୍ ଅଗ୍ରେ ବିଷଂ ଇବ, ପରିଣାମେ ଅମୃତୋପମଂ, ତତ୍ ଆତ୍ମବୁଦ୍ଧିପ୍ରସାଦଜଂ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମ୍ । ୩୬-୩୭ ।

**ଟୀକା**—[ ସୁଖଂ ତ୍ରିବିଧଂ—ତତ୍ର ସାତ୍ତ୍ୱିକମାହ ]—ହେ ଭରତର୍ଷଭ ( ଭରତଶ୍ରେଷ୍ଠ ), ଇଦାନୀଂ ତ୍ରିବିଧଂ ତୁ ସୁଖଂ ମେ ( ମତ୍ସକାଶାତ୍ ) ଶୃଣୁ । ଯତ୍ର [ସୁଖେ] ଅଭ୍ୟାସାତ୍ (ନିରନ୍ତର-ସେବନାତ୍—ଅତିପରିଚୟାତ୍—ଇତି ଭାବଃ ) [ଜନଃ] ରମତେ ( ଅତ୍ୟନ୍ତାନୁରକ୍ତୋ ଭବତି ) ଦୁଃଖାନ୍ତଂ (ବିଷୟସେବନାତ୍ ଯତ୍ ଦୁଃଖଂ, ତଦ୍ଦୁଃଖସ୍ୟ ତୁଳନୟା ଯତ୍ ସୁଖଂ—ତତ୍ ଦ୍ୱନ୍ଦ୍ୱ-ଦୁଃଖସ୍ୟ ନିବୃତ୍ତିଂ) ଚ ନିଗଚ୍ଛତି (ସମ୍ୟକ୍ ପ୍ରାପ୍ନୋତି)—ଯତ୍ (ଯତଃ) ତତ୍ [ସୁଖଂ] ଅଗ୍ରେ (ଆଦୌ) ବିଷଂ ଇବ [ ସତ୍ ଅପି ] ପରିଣାମେ ( ପରିପାକେ, ଅନ୍ତେ ) ଅମୃତୋପମଂ ( ଅମୃତତୁଲ୍ୟନିତ୍ୟାନନ୍ଦକରଂ ) ତତ୍ ଆତ୍ମବୁଦ୍ଧିପ୍ରସାଦଜଂ ( ଆତ୍ମବିବେକ ଯଃ ପ୍ରସାଦଃ, ଚିତ୍ତନିର୍ମଳତା, ତଦୁତ୍ପନ୍ନଂ ) ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମ୍ । ୩୬-୩୭ ।

**ଅର୍ଥ**—[ ସୁଖ ତିନିପ୍ରକାର ବୋଲି କହି, ସେଥିରେ ସାତ୍ତ୍ୱିକ କିଣ, ତା କହୁଛନ୍ତି ]—ହେ ଭରତଶ୍ରେଷ୍ଠ, ଫେର୍ ଏବେ ତିନିପ୍ରକାର ସୁଖ କଥା ମୋଠୁଁ ଶୁଣ୍ । ଯହିଁରେ ଅଭ୍ୟାସ ହୋଇଗଲେ ଲୋକ ମାତି ରହେ ଓ ପରମାନନ୍ଦକୁ ଉଠେ ( ଅର୍ଥାତ୍, ଆଉ ଦୁଃଖ କିଣ ଜାଣେ ନାହିଁ )—କାହିଁକି ନା, ସେ ସୁଖଟି ଆଗେ ବିଷପରି [ ତେଣୁ ଅଭ୍ୟାସ କରି ନେବା ଦରକାର; ମାତ୍ର ଅଭ୍ୟାସ ହୋଇଗଲେ ] ପରେ ଅମୃତତୁଲ୍ୟ ନିତ୍ୟାନନ୍ଦ ଦିଏ । ଆତ୍ମା ପ୍ରକୃତ କି ବସ୍ତୁ ?—ଏହି ବୁଦ୍ଧି ଆସିଲେ ମନ ନିର୍ମଳ ବା ଶାନ୍ତ ହୁଏ; ଏହି ଶାନ୍ତିରୁ ସେ ସୁଖ ମିଳେ । ସେହି ସୁଖକୁ ସାତ୍ତ୍ୱିକ କହନ୍ତି । ୩୬-୩୭ ।

ବ୍ୟାଖ୍ୟା ସୂଚନା—ଦୁଃଖାନ୍ତ=ନିତ୍ୟ ଆନନ୍ଦ, ଯହିଁରେ ଦୁଃଖର ସତ୍ତା ଫଗୁର କିଛି ନାହିଁ । ସାଧାରଣତଃ ସୁଖ ହେଉଛି, ଦୁଃଖ ତୁଳନାରେ ସୁଖ । ବିଷୟ ସୁଖ ଆନନ୍ଦ ନୁହେଁ । ମଝିରେ ମଝିରେ ଦୁଃଖ ଥିବାରୁ, ସେହି ଦୁଃଖର ତୁଳନାରେ ଆମେ ବିଷୟ ସୁଖକୁ ସୁଖ ବୋଲି ବୁଝୁ । ମାତ୍ର ଏହି ଦୁଃଖଟିକ ଯେତେବେଳେ ଯେଉଁ ସୁଖ,

ସେହି ହେଉଚି ଦୁଃଖାନ୍ତ ବା ଦୁଃଖର ଶେଷ । ସେଇଥିରୁ ମନୁଷ୍ୟ ପରମାନନ୍ଦକୁ ଉଠେ । ୨.୬୫ ଦେଖ । ୩୬-୩୭ ।

**ବିଷୟେନ୍ଦ୍ରିୟସଂଯୋଗାଦ୍ ଯତ୍ତଦଗ୍ରେଽମୃତୋପମମ୍ ।**
**ପରିଣାମେ ବିଷମିବ ତତ୍ସୁଖଂ ରାଜସଂ ସ୍ମୃତମ୍ । ୩୮ ।**

**ଅନ୍ୱୟ**—ସ୍ପଷ୍ଟ ।

**ଟୀକା**—[ରାଜସଂ ସୁଖମାହ]—ବିଷୟେନ୍ଦ୍ରିୟସଂଯୋଗାତ୍ (ମାତ୍ରାସ୍ପର୍ଶାତ୍) ଯତ୍ [ସୁଖଂ] ତତ୍ ଅଗ୍ରେ ଅମୃତୋପମଂ, ପରିଣାମେ (ଭୋଗକାଳମାତ୍ରାତ୍ୟୟେ—ଫଳେ ବା) ବିଷଂ ଇବ, ତତ୍ ସୁଖଂ ରାଜସଂ ସ୍ମୃତଂ (ଉକ୍ତମ୍) । ୩୮ ।

**ଅର୍ଥ**—[ରାଜସ ସୁଖ ଯଥା :—]—ଇନ୍ଦ୍ରିୟ, ବିଷୟରେ ଲଗିଲେ ଯେଉଁ ସୁଖ, ସେ ହୁଏତ ଆଗେ ଅମୃତ ପରି ଲାଗେ, ମାତ୍ର ଫଳରେ ବିଷତୁଲ୍ୟ ଅହିତକର । ସେହି ସୁଖକୁ ରାଜସ କୁହାଯାଏ । ୩୮ ।

ବ୍ୟାଖ୍ୟା ସୂଚନା—ଇନ୍ଦ୍ରିୟ ବିଷୟରେ ଲଗିବା = ମାତ୍ରାସ୍ପର୍ଶ—୨.୧୪ ଦେଖ । ସବୁ ଇନ୍ଦ୍ରିୟ ଭୋଗ, ଭୋଗବେଳେ ହୁଏତ ଅମୃତ ପରି ଲାଗେ; ମାତ୍ର ପରେ ରୋଗାଦି ଓ ପରଲୋକରେ ହାନି ଘଟି ପାଏ; ସୁଆଦ ଖାଇବାକୁ ସୁଖ, କିନ୍ତୁ ତା ଫଳ ଅଜୀର୍ଣ୍ଣ ପ୍ରଭୃତି ରୋଗ କରାଏ । ପୂର୍ବ ଶ୍ଳୋକରେ ଯେଉଁ ସୁଖ-ଅଭ୍ୟାସ କଥା କହିଚନ୍ତି, ସେ ଏଥିରୁ ବିପରୀତ; ଇନ୍ଦ୍ରିୟକୁ ରୋକିବା ଆଗ ଖରାପ ଲାଗେ, କିନ୍ତୁ ପରେ ସେଥିରେ ଆନନ୍ଦ ମିଳେ । ୩୮ ।

**ଯଦଗ୍ରେ ଚାନୁବନ୍ଧେ ଚ ସୁଖଂ ମୋହନମାତ୍ମନଃ ।**
**ନିଦ୍ରାଲସ୍ୟପ୍ରମାଦୋତ୍ଥଂ ତତ୍ତାମସମୁଦାହୃତମ୍ ।୩୯।**

**ଅନ୍ୱୟ**—ଯତ୍ ସୁଖଂ ଅଗ୍ରେ ଚ ଅନୁବନ୍ଧେ ଚ ଆତ୍ମନଃ ମୋହନଂ, ନିଦ୍ରାଲସ୍ୟପ୍ରମାଦୋତ୍ଥଂ, ତତ୍ ତାମସଂ ଉଦାହୃତମ୍ । ୩୯ ।

**ଟୀକା**—[ତାମସଂ ସୁଖମାହ]—ଯତ୍ ସୁଖଂ ଅଗ୍ରେ ଚ ଅନୁବନ୍ଧେ (ପରିଣାମେ) ଚ ଆତ୍ମନଃ ମୋହନଂ (ମୋହକରଂ) [ତଥା] ନିଦ୍ରାଲସ୍ୟପ୍ରମାଦୋତ୍ଥଂ (ନିଦ୍ରାଲସ୍ୟ-ଭ୍ରମେଭ୍ୟଃ ଜାତଂ ) ତତ୍ ତାମସଂ ଉଦାହୃତମ୍ । ୩୯ ।

**ଅର୍ଥ**—[ତାମସ ସୁଖ ଯଥା:—]—ଯେଉଁ ସୁଖ ମୂଳରୁ ଓ ଫଳରେ ସବୁମତେ ଆତ୍ମାକୁ ଅଜ୍ଞାନ କରେ (ଅର୍ଥାତ୍, ଆତ୍ମାର କ୍ଷଣିକ ଭଲ ବା ଭୋଗ ସୁଦ୍ଧା ବିସ୍ମୃତ ଲୋକ ଯେଉଁ ସୁଖରେ ମାତେ; ଯଥା—ଜୁଆଖେଳ ପ୍ରଭୃତି ପରି ବ୍ୟସନ);

ପୁଣି ଯାହା ନିଦ୍ରା ବା ଆଳସ୍ୟ ହେତୁରୁ କିଂବା ଭୋଳ ହୋଇ ରହିବାରୁ ସୁଖ ବୋଲି ମନେ ହୁଏ, ସେହି ସୁଖକୁ ତାମସ କହନ୍ତି । ୩୯ ।

**ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ ।**
**ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ତ୍ରିଭିର୍ଗୁଣୈଃ ।୪୦।**

**ଅନ୍ୱୟ**—ତତ୍ ସତ୍ତ୍ୱଂ ପୃଥିବ୍ୟାଂ ଦିବି ଦେବେଷୁ ବା ପୁନଃ ନ ଅସ୍ତି, ଯତ୍ ପ୍ରକୃତିଜୈଃ ଏଭିଃ ଗୁଣୈଃ ମୁକ୍ତଂ ସ୍ୟାତ୍ । ୪୦ ।

**ଟୀକା**—[ଏତାନ୍ ଦୃଷ୍ଟାନ୍ତେନ ଉକ୍ତାନ୍, ଅପି ତୁ ଗୁଣୈଃ ନିବଦ୍ଧଂ ସର୍ବମିତି ସଂଗ୍ରହେଣ ଆହ—ତତ୍ ସତ୍ତ୍ୱଂ (ବସ୍ତୁ) ପୃଥିବ୍ୟାଂ ଦିବି (ଅନ୍ତରୀକ୍ଷେ) ଦେବେଷୁ (ଦେବ ଲୋକେଷୁ, ସ୍ୱର୍ଗେ) ପୁନଃ ନ ଅସ୍ତି, ଯତ୍ ପ୍ରକୃତିଜୈଃ ଏଭିଃ ତ୍ରିଭିଃ ଗୁଣୈଃ ମୁକ୍ତଂ ସ୍ୟାତ୍ । ୪୦ ।

**ଅର୍ଥ**—[ଏସବୁ ଦୃଷ୍ଟାନ୍ତରେ ଠିକେ ଠିକେ ସୂଚାଇ ଦିଆଗଲା ସତ୍ୟ, ମାତ୍ର ଜଗତରେ ସବୁ ଏହିପରି ଗୁଣରେ ତିନି ତିନି ପ୍ରକାର ବୋଲି ମୋଟରେ କହିଦେଇ ପ୍ରସଙ୍ଗ ଶେଷ କରୁଛନ୍ତି]—ପୃଥିବୀରେ, ଆକାଶରେ, ବା ଦେବଲୋକ ସ୍ୱର୍ଗରେ— କୌଣସିଠାରେ ସେ ବସ୍ତୁଟି ନାହିଁ, ଯାହା କି ପ୍ରକୃତିଜାତ ସତ୍ତ୍ୱ, ରଜ, ତମ ଏହି ତିନି ଗୁଣରୁ ମୁକ୍ତ । (ଅର୍ଥାତ୍, ଗୁଣରୁ ମୁକ୍ତ ହୋଇ କୌଣସିଟି କରୁ ନାହିଁ) । ୪୦ ।

ବ୍ୟାଖ୍ୟା ସୂଚନା—ସତ୍ତ୍ୱ = ବସ୍ତୁ, ଜିନିଷ, ଯାହା ଅଛି—ଅର୍ଥାତ୍, ବସ୍ତୁ, କ୍ରିୟା ବା ଭାବ; ଯାହା ଜଣାଯାଏ ବା କଳ୍ପନା ବି କରାଯାଇ ପାରେ । ୪୦ ।

**ବ୍ରାହ୍ମଣକ୍ଷତ୍ରିୟବିଶାଂ ଶୂଦ୍ରାଣାଂ ଚ ପରନ୍ତପ ।**
**କର୍ମାଣି ପ୍ରବିଭକ୍ତାନି ସ୍ୱଭାବପ୍ରଭବୈର୍ଗୁଣୈଃ । ୪୧ ।**

**ଅନ୍ୱୟ**—ପରଂତପ ! ବ୍ରାହ୍ମଣକ୍ଷତ୍ରିୟବିଶାଂ ଶୂଦ୍ରାଣାଂ ଚ କର୍ମାଣି ସ୍ୱଭାବପ୍ରଭବୈଃ ଗୁଣୈଃ ପ୍ରବିଭକ୍ତାନି । ୪୧ ।

**ଟୀକା**—[ଏବଂ ନ ତୁ କର୍ମଣାଂ କିଂଚିତ୍ ସାଧୁ, କିଂଚିତ୍ ଅସାଧୁ, ଅପି ତୁ ଯତ୍ କିମପି କର୍ତ୍ତୃକର୍ମାଦି ଗୁଣଭେଦେନ ସାଧୁ ଅସାଧୁ ବା ଇତି ସିଦ୍ଧେ ସତି, ସ୍ୱଭାବ-ନିୟତଃ ସ୍ୱଧର୍ମଃ ସର୍ବଥା ପାଳନୀୟଃ—ସଃ ତୁ ସ୍ୱଧର୍ମଃ କିଂବିଧଃ ଇତି ଉପଦିଶତି] —ହେ ପରଂତପ, ବ୍ରାହ୍ମଣକ୍ଷତ୍ରିୟବିଶାଂ ( ବ୍ରାହ୍ମଣକ୍ଷତ୍ରିୟବୈଶ୍ୟାନାଂ ) ଶୂଦ୍ରାଣାଂ ଚ କର୍ମାଣି ସ୍ୱଭାବପ୍ରଭବୈଃ ( ସ୍ୱଭାବଜୈଃ ) [ସତ୍ତ୍ୱରଜତମୋଭିଃ] ଗୁଣୈଃ ପ୍ରବିଭକ୍ତାନି । ୪୧ ।

**ଅର୍ଥ**—[ ଏହିପରି, କର୍ମରେ ଏଇଟି ସାଧୁ, ସେଇଟି ଅସାଧୁ ବୋଲି ବାଛିବାର କିଛି ନାହିଁ; ପ୍ରତ୍ୟେକ କର୍ମ କର୍ତ୍ତା ପ୍ରକୃତି ଗୁଣଭେଦରେ ସାଧୁ ଅସାଧୁ ହୋଇ ପାରନ୍ତି—ଏହା ବୁଝି ଯାହାର ଯାହା ସ୍ୱଭାବନିୟତ ସ୍ୱଧର୍ମ ସେ ତାହା ପାଳିବାହିଁ ବିଧି । ସେହି ସ୍ୱଧର୍ମ କିପରି ତାହା କହୁଛନ୍ତି ]—ହେ ପରଂତପ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରର କର୍ମ ସବୁ ସ୍ୱଭାବଜ ସତ୍ତ୍ୱାଦି ଗୁଣ ଅନୁସାରେ ଭିନ୍ନ ଭିନ୍ନ । ୪୧ ।

**ବ୍ୟାଖ୍ୟା ସୂଚନା**—୪.୧୩ ଓ ଟୀକା ଦେଖ । ସମସ୍ତ ସୃଷ୍ଟି ପ୍ରକାଶ ବା କର୍ମହିଁ ଗୁଣର ବିକାଶ—୭.୪ ଟୀକା ଦେଖ । ଯେ କୌଣସି କର୍ମ ବା ବସ୍ତୁ ତିନି ଗୁଣର ମିଶ୍ରଣରେ ହୁଏ ଓ ସେଥିରେ ଗୋଟିଏ ଗୁଣ ପ୍ରଧାନ ଥାଏ—୧୪.୧୦ ଦେଖ । ସେଥିରେ ମନୁଷ୍ୟର ହାତ ନାହିଁ । ଏଣେ ପୁଣି କର୍ତ୍ତା ପୁରୁଷର କର୍ମସାଧନା ଓ ଜ୍ଞାନରେ ପ୍ରତ୍ୟେକ କର୍ମ ସାତ୍ତ୍ୱିକ, ରାଜସିକ ବା ତାମସିକ ଭାବ ଓ ବିଧିରେ କରାଯାଇ ପାରେ । ପୂର୍ବେ ୧୮.୧୯ ଦେଖ । ଏହି ଦୁଇଟି କଥାକୁ ଏଠାରେ ଲକ୍ଷ୍ୟ ରଖିବାକୁ ହେବ । ଲୋକର ଗୁଣ କର୍ମ ଅନୁସାରେ ତାର 'ସ୍ୱଭାବନିୟତ କର୍ମ' ବା ସ୍ୱଧର୍ମ ଫୁଟିଉଠେ । ସେଥିରେ ଯେ କୌଣସି ଗୁଣ ପ୍ରଧାନଭାବରେ ବିକାଶ ପାଉନା କାହିଁକି, ସାତ୍ତ୍ୱିକ-ଭାବରେ ତାକୁ କଲେ ମୁକ୍ତି ଆଡ଼କୁ ଉଠେ । ଏଠାରେ ବ୍ରାହ୍ମଣ ସ୍ୱଭାବରେ ଯେ କର୍ମ ପ୍ରକାଶ ପାଏ, ତାହା ବିଶେଷତଃ ସତ୍ତ୍ୱ ଓ କେତେକ ପରିମାଣରେ ରଜଃ ପ୍ରଧାନ ବା ଏଇପରି କର୍ମ ଯାହାର ପ୍ରକାଶ ପାଏ, ସେ ବ୍ରାହ୍ମଣ; କ୍ଷତ୍ରିୟ କର୍ମ, ବିଶେଷ ରଜ ଓ କେତେକ ସତ୍ତ୍ୱପ୍ରଧାନ । ବୈଶ୍ୟ ବିଶେଷ ରଜ ଓ କେତେକ ତମ ପ୍ରଧାନ । ଶୂଦ୍ର ବିଶେଷ ତମ ଓ କେତେକ ରଜଃ ପ୍ରଧାନ । ମାତ୍ର ଏହା ପ୍ରକୃତିର ବିଶୃଙ୍ଖଳା । ପୁରୁଷର ଏଥିରେ ହାତ ନାହିଁ । ଏ କର୍ମମାନଙ୍କୁ ସାତ୍ତ୍ୱିକଭାବରେ କରି ମୁକ୍ତି ପାଇବା ଏକା ପୁରୁଷ ହାତେ ଅଛି । ୪୧ ।

**ଶମୋଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବମେବ ଚ ।**
**ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜମ୍ । ୪୨ ।**

**ଅନ୍ୱୟ**—ସ୍ପଷ୍ଟ । ୪୨ ।

**ଟୀକା**—[ବ୍ରାହ୍ମଣ କର୍ମହି]—ଶମଃ (ଚିତ୍ତସ୍ଥିରତା) ଦମଃ (ଇନ୍ଦ୍ରିୟଭୋଗେ ଅନାସକ୍ତିଃ) ତପଃ (ପ୍ରଯତ୍ନଃ, ଅନାଳସ୍ୟଂ) ଶୌଚଂ (ଦେହଶୁଦ୍ଧିଃ) କ୍ଷାନ୍ତିଃ (ସହିଷ୍ଣୁତା) ଆର୍ଜବଂ (ସରଳବ୍ୟବହାରଃ, ଅମାୟିକତା) ଏବ ଚ ଜ୍ଞାନଂ (ଅବ୍ୟକ୍ତାତ୍ମବୋଧଃ) ବିଜ୍ଞାନଂ (ବ୍ୟକ୍ତେଷୁ ଅଧ୍ୟାତ୍ମବୋଧଃ) ଆସ୍ତିକ୍ୟଂ (ଆତ୍ମାଽସ୍ତୀତି ନିଶ୍ଚୟଃ) [ସର୍ବମେତତ୍] ସ୍ୱଭାବଜଂ (ପ୍ରକୃତିବିକାରେଣ ଘଟିତଂ) ବ୍ରହ୍ମକର୍ମ (ବ୍ରାହ୍ମଣକର୍ମ) । ୪୨ ।

**ଅର୍ଥ**—ମନ ଠିକ୍ ରଖିବା, ଇନ୍ଦ୍ରିୟ ଅଣ୍ଡା ରଖିବା, ଉଦ୍ୟମ, ସ୍ନାନାଦି ସଦାଚାର, କ୍ଷମା ବା ସହିଯିବା, ଅମାୟିକ ସରଳ ବ୍ୟବହାର, ପୁଣି ବିଶ୍ବରୁ ଅତୀତ ବ୍ରହ୍ମ ଦେଖିବା, ବ୍ୟକ୍ତ ବିଶ୍ବ ମଧ୍ୟରେ ଅଧ୍ୟାତ୍ମବ୍ରହ୍ମ ଦେଖିବା ବ୍ୟକ୍ତାବ୍ୟକ୍ତସର୍ବନ ଆତ୍ମା ସତ୍ୟ ବୋଲି ବିଶ୍ବାସ ରଖିବା, ଏହି ସବୁ ପ୍ରକୃତି ନିଷ୍ଠା ବା ଗୁଣ ବିକାରରେ ବ୍ରାହ୍ମଣ କର୍ମରୂପ ପ୍ରକାଶ ପାଏ । ୪୨ ।

ବ୍ୟାଖ୍ୟା ସୂଚନା—ଏଥିରେ ପୁରୁଷର ହାତ ନାହିଁ । ଏହା ପ୍ରାକ୍ତନ ବେଷ୍ଟନୀ ଶିକ୍ଷାଦିର ଫଳରେ ସ୍ବତଃ ଫୁଟି ଉଠେ । କିନ୍ତୁ ଏହି ସ୍ବଭାବଜାତ କର୍ମକୁ ପୁରୁଷ ପାଳନ କରିବାରେ ତାର ଅଧିକାର ଅଛି । ସେଥିରେ ସେ ଏହି କର୍ମମାନଙ୍କୁ ସାତ୍ତ୍ବିକ, ରାଜସ ବା ତାମସଭାବରେ କରିପାରେ । ଏହିପରି ପରେ କୁହାଯାଉଥିବା ସବୁ ବର୍ଣ୍ଣ-ଧର୍ମ ସମ୍ବନ୍ଧରେ ବୁଝିବାକୁ ହେବ । ଯାହାର ଯାହା ବର୍ଣ୍ଣ-ଧର୍ମ ସେ ତାକୁ ସାତ୍ତ୍ବିକ ଭାବରେ କଲେ ମୁକ୍ତିକୁ ଉଠିବ । ଯେପରି କି ଦେଖାଯାଏ, କେହି ହଠାତ୍ ଗଣିତ ଶାସ୍ତ୍ରରେ ପାରଗ ହୋଇ ଉଠନ୍ତି । ସେ ପରେ ଗଣିତ ଧରି ଯଥାର୍ଥ ଉଦ୍ୟମ କଲେ, ନ ହେଲେ ନଷ୍ଟ ହେବେ । ଏହି ଦୃଷ୍ଟାନ୍ତରେ ବର୍ଣ୍ଣ-ଧର୍ମ ବୁଝିଲେ ଏବେ ସହଜ ହେବ । ୪୨ ।

**ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟପଲାୟନମ୍ ।**
**ଦାନମୀଶ୍ବରଭାବଶ୍ଚ କ୍ଷାତ୍ରଂ କର୍ମ ସ୍ବଭାବଜମ୍ । ୪୩ ।**

**ଅନ୍ୱୟ**—ସ୍ପଷ୍ଟ । ୪୩ ।

**ଟୀକା**—[ କ୍ଷତ୍ରିୟକର୍ମାହ ]—ଶୌର୍ଯ୍ୟଂ (ପରାକ୍ରମଃ) ତେଜଃ (ବ୍ୟକ୍ତିତ୍ୱ-ପ୍ରତିଷ୍ଠାନେ ଶକ୍ତିଃ), ଧୃତିଃ (ଧୈର୍ଯ୍ୟଂ—କର୍ମଧାରଣଶକ୍ତିଃ, କର୍ମଣି ଅନାବସାଦଃ) ଦାକ୍ଷ୍ୟଂ (ଦକ୍ଷତା, କୁଶଳତା, ପଟୁତା) ଯୁଦ୍ଧେ [ପ୍ରାପ୍ତେ ସତି] ଚ ଅପି ଅପଲାୟନଂ (ଅଭଙ୍ଗଃ, ମୃତ୍ୟୁଭୟାଭାବଃ) ଦାନଂ (ପରାର୍ଥେ ତ୍ୟାଗଃ) ଈଶ୍ବରଭାବଃ (ପ୍ରଭୁତା, ନିୟନ୍ତୃତ୍ୱଂ, ଚାଳକଶକ୍ତିଃ) ଚ [ଏତତ୍ ସର୍ବଂ] ସ୍ବଭାବଜଂ କ୍ଷାତ୍ରଂ କର୍ମ । ୪୩ ।

**ଅର୍ଥ**—ବୀରଶୂରପଣ, ନ ଦବିବା, ଧୈର୍ଯ୍ୟ (କାମରେ ଥକି ନ ପଡ଼ିବା) କର୍ମରେ କୁଶଳତା ଓ ଯୁଦ୍ଧ ପଡ଼ିଲେ ବି ପଛଘୁଞ୍ଚା ନ ଦେବା, ପରପାଇଁ ତ୍ୟାଗ (ଦାନ) ଓ ଲୋକଙ୍କୁ ଠିକ୍‌ମତେ ଶାସନରେ ରଖି ଚଳାଇପାରିବା—ଏହିସବୁ ସ୍ବାଭାବିକ କ୍ଷତ୍ରିୟ କର୍ମ । ୪୩ ।

**କୃଷିଗୋରକ୍ଷ୍ୟବାଣିଜ୍ୟଂ ବୈଶ୍ୟକର୍ମ ସ୍ବଭାବଜମ୍ ।**
**ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ବଭାବଜମ୍ । ୪୪ ।**

ଅନ୍ୱୟ—ସ୍ପଷ୍ଟ । ୪୪ ।

**ଟୀକା**—[ବୈଶ୍ୟଶୂଦ୍ରୟୋ କର୍ମାହ]—କୃଷିଗୌରକ୍ଷ୍ୟବାଣିଜ୍ୟଂ (ଗୋରକ୍ଷା ସମ୍ବନ୍ଧି ଗୌରକ୍ଷ୍ୟଂ) ସ୍ୱଭାବଜଂ ବୈଶ୍ୟକର୍ମ । ପରିଚର୍ଯ୍ୟାତ୍ମକଂ ( ସେବାଦି ) କର୍ମ. ଶୂଦ୍ରସ୍ୟ ଅପି ସ୍ୱଭାବଜମ୍ । ୪୪ ।

**ଅର୍ଥ**—[ବୈଶ୍ୟଶୂଦ୍ରଙ୍କ କର୍ମ ଯଥା:]—କୃଷି, ଗୋରୁ ପାଳିବା, ବେପାର ବଣିଜ କରିବା ସ୍ୱାଭାବିକ ବୈଶ୍ୟକର୍ମ । ସେବାକର୍ମ ଶୂଦ୍ରର ସ୍ୱାଭାବିକ । ୪୪ ।

ବ୍ୟାଖ୍ୟା ସୂଚନା—ଲୋକର ଏଇ ଏଇ କର୍ମାନୁରୂପ ପ୍ରକୃତି ଫୁଟେ । ସେହି ଅନୁସାରେ ବର୍ଣ୍ଣତ୍ୱ ପ୍ରକାଶ ପାଏ । ଏହାହିଁ ବୁଝିବାକୁ ହେବ—ଏଠାରେ ମଧ୍ୟ ସେବା କରିବା ପାଇଁ ଯାହାର ପ୍ରକୃତି ଫୁଟେ, ସେ ହେଲା ଶୂଦ୍ର । ମାତ୍ର ସେବାଟା ଗ୍ରେଟ କାମ ବୋଲି ଗ୍ରହିବା ତ ଠିକ୍ ନୁହେ । ସାତ୍ତ୍ୱିକ ଭାବରେ ଠକେଇ ନ କରି ସେଇ ସେବା କରିବାହିଁ ଈଶ୍ୱର ଦେଇଛନ୍ତି ବୋଲି ବୁଝି, ସେଇ ସେବାକୁ ଠିକ୍ ମତେ କଲେ ହିଁ, ସେଥିରେ ଯଥାର୍ଥ ଯଜ୍ଞ ବା ଈଶ୍ୱରାର୍ପଣ, ଦାନ ବା ପରପାଇଁ ତ୍ୟାଗ ଓ ତପ ବା ସାଧୁସମୁଚିତ ପ୍ରଯତ୍ନ ପ୍ରକାଶ ପାଇବ ଓ ଏହି ସେବାରେ ହିଁ ଯଜ୍ଞାଦି କର୍ତ୍ତବ୍ୟକର୍ମର ଆଚରଣ କରି ଲୋକ ମୁକ୍ତି ପାଇବ । ୧୮.୫ ଓ ଟୀକା ଦେଖ । ସେହି କଥା ପର ଶ୍ଳୋକରେ କହୁଚନ୍ତି । ୪୪ । ଗୌରକ୍ଷ୍ୟ=ଗୋରକ୍ଷା ସମ୍ବନ୍ଧୀୟ କର୍ମ ।

**ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।**
**ସ୍ୱକର୍ମନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ । ୪୫ ।**

ଅନ୍ୱୟ—ସ୍ପଷ୍ଟ । ୪୫ ।

**ଟୀକା**—[ଅତ ବିଭିନ୍ନ ସ୍ୱଭାବାନୁରୂପକର୍ମଣି ଶ୍ରେଷ୍ଠତା ହୀନତା ବା କୁତ୍ରାପି ନାସ୍ତି—ଇତି ଆହ]—ସ୍ୱେ ସ୍ୱେ କର୍ମଣି ଅଭିରତଃ (ଯଥାନିଷ୍ଠିତଃ) ନରଃ ସଂସିଦ୍ଧିଂ ଲଭତେ । [ଏବଂ] ସ୍ୱକର୍ମନିରତଃ [ଜନଃ] ଯଥା ସିଦ୍ଧିଂ ବିନ୍ଦତି ତତ୍ ଶୃଣୁ । ୪୫ ।

**ଅର୍ଥ**—[ଏସବୁ କର୍ମବିଭାଗ ସ୍ୱଭାବ ଅନୁଯାୟୀ ହୁଏ । ଏଥିରେ କେହି ବଡ଼ ବା ସାନ ନୁହେ ବୋଲି କହୁଚନ୍ତି]—ନିଜ ନିଜ କର୍ମରେ ଠିକ୍ ମତେ ଲାଗି ରହି ଲୋକ ସିଦ୍ଧି ପାଏ । ଏହିପରି ନିଜ କର୍ମରେ ଲାଗିରହିଥିବା ଲୋକ ଯେପରି ସିଦ୍ଧି ପାଏ ତା ଶୁଣ । ୪୫ ।

**ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।**
**ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ । ୪୬ ।**

**ଅନ୍ୱୟ**—ଭୂତାନାଂ ଯତଃ ପ୍ରବୃତ୍ତି, ଯେନ ଇଦଂ ସର୍ବଂ ତତଂ ସ୍ୱକର୍ମଣା ତଂ ଅଭ୍ୟର୍ଚ୍ୟ ମାନବଃ ସିଦ୍ଧିଂ ବିନ୍ଦତି । ୪୬ ।

**ଟୀକା**—[ଈଶ୍ୱରାର୍ପଣଂ ତଥା ସ୍ୱକର୍ମଣା ଈଶ୍ୱରସେବୈବ ତତ୍ତ୍ୱସିଦ୍ଧେଃ ସାଧନମିତ୍ୟାହ] ଭୂତାନାଂ ଯତଃ (ଯସ୍ମାତ୍) ପ୍ରବୃତ୍ତିଃ (ଉତ୍ପତ୍ତିଃ—କର୍ମଚେଷ୍ଟା ବା) ଯେନ ଇଦଂ ସର୍ବଂ [ଜଗତ୍] ତତଂ (ବ୍ୟାପ୍ତଂ ବିସ୍ତୃତଂ ବା) ସ୍ୱକର୍ମଣା ତଂ [ଈଶ୍ୱରଂ] ଅଭ୍ୟର୍ଚ୍ୟ (ସମ୍ପୂଜ୍ୟ) ମାନବଃ ସିଦ୍ଧିଂ ବିନ୍ଦତି । ୪୬ ।

**ଅର୍ଥ**—[ଈଶ୍ୱରଙ୍କ ପାଇଁ ସବୁ କର୍ମ କରିବାହିଁ ସେହି ସିଦ୍ଧିର ସାଧନା ବୋଲି କହୁଛନ୍ତି] ଯାହାଙ୍କଠୁ ଭୂତମାନଙ୍କର ଉତ୍ପତ୍ତି ବା କର୍ମଚେଷ୍ଟା, ଯାହାଙ୍କ ହେତୁରୁ ଏ ସାରା ଜଗତ୍ ଫିଟିପଡ଼ି ପ୍ରକାଶ ପାଇଛି, ନିଜ କର୍ମରେ ତାଙ୍କୁଇ ପୂଜା କଲେ ଲୋକ ସିଦ୍ଧି ପାଏ । ୪୬ ।

ବ୍ୟାଖ୍ୟା ସୂଚନା—ଏହି ପ୍ରକାରେ ସ୍ୱଧର୍ମ ପାଳନରେ ଯଜ୍ଞ, ଦାନ ଓ ତପ ସବୁ ରହିଲା । ଈଶ୍ୱରରେ କର୍ମ ସମର୍ପଣ, ଯଜ୍ଞ; ସର୍ବଭୂତରେ ଈଶ୍ୱର ଦେଖିବା, ଦାନ ଓ କର୍ମରେ ନିଷ୍ଠା ବା ଯୋଗହିଁ ତପ । ୪୬ ।

**ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।**
**ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍ । ୪୭ ।**

**ଅନ୍ୱୟ**—ସ୍ୱନୁଷ୍ଠିତାତ୍ ପରଧର୍ମାତ୍ ବିଗୁଣଃ ସ୍ୱଧର୍ମଃ ଶ୍ରେୟାନ୍ ସ୍ୱଭାବନିୟତଂ କର୍ମ କୁର୍ବନ୍ [ଜନଃ] କିଲ୍ବିଷଂ ନ ଆପ୍ନୋତି । ୪୭ ।

**ଟୀକା**—[ଅତଏବ ପୂର୍ବଂ ଯଥୋକ୍ତଂ ଯଥା]—ସ୍ୱନୁଷ୍ଠିତାତ୍ (ସୁଷ୍ଠୁତୟା-ନୁଷ୍ଠିତାତ୍) ପରଧର୍ମାତ୍ ବିଗୁଣଃ (ନିନ୍ଦିତଃ) ସ୍ୱଧର୍ମଃ ଶ୍ରେୟାନ୍; [ଯତଃ] ସ୍ୱଭାବନିୟତଂ (ସ୍ୱଭାବେନ ନିର୍ଦ୍ଦିଷ୍ଟଂ—ସହଜାତପ୍ରକୃତେଃ ଅନୁକୂଳଂ) କର୍ମ (ସ୍ୱଧର୍ମଂ ଇତି ଭାବଃ) କୁର୍ବନ୍ [ ଜନଃ ] କିଲ୍ବିଷଂ (ମଳିନତାଂ, ପରଧର୍ମାନ୍ୱେଷଣପ୍ରବର୍ତ୍ତକଂ, କାମନାତ୍ମକଂ ଚିତ୍ତଶୁଦ୍ଧିରୋଧକଂ ସିଦ୍ଧିପ୍ରତିବନ୍ଧକଂ, ତଥା ସମାଜସ୍ୟ ଶୃଙ୍ଖଳାବିନାଶକଂ, ପାପଂ) ନ ଆପ୍ନୋତି । ୪୭ ।

**ଅର୍ଥ**—[ ଅତଏବ ପୂର୍ବ ଯେପରି କୁହାଯାଇଛି ସେହିପରି ] ସୁଖରେ କରିହେଲା ପରି ଲାଗୁଥିବା ପରଧର୍ମଠାରୁ ନିନ୍ଦିତ ହେଲେ ବି ସ୍ୱଧର୍ମ ଭଲ । କାହିଁକିନା, ସ୍ୱଭାବ ଅନୁସାରେ ଠିକ୍ ରହିଥିବା କର୍ମ କଲେ ଲୋକଙ୍କୁ ପାପ ଛୁଏଁ ନାହିଁ । ୪୭ ।

ବ୍ୟାଖ୍ୟା ସୂଚନା—ଏ କର୍ମ ଭଲ, ସେ କର୍ମ ଭଲ, ବୋଲି ଖୋଜିବାରେ ଫଳତୃଷ୍ଣା ଅଛି ଓ ଫଳତୃଷ୍ଣା ଥିଲେ ପାପ ଅଛି; ପୁଣି ନିଜ ସ୍ୱଭାବ ଅନୁକୂଳ କର୍ମ ଛାଡ଼ିଲେ, ଅନ୍ୟର କର୍ମ ସୁଖଲାଗିଲେ ବି ସହଜରେ କରି ନ ହୋଇପାରେ ଓ

କଣହେଲେ ବି ସମାଜର ନିୟୁତ ଶୃଙ୍ଖଳା ବିଗିଡ଼ି ଯାଇପାରେ । ୩.୩୫ ର ଟୀକା ଦେଖ । ୪୭ ।

**ସହଜଂ କର୍ମ କୌନ୍ତେୟ ସଦୋଷମପି ନ ତ୍ୟଜେତ ।**
**ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ । ୪୮ ।**

**ଅନ୍ୱୟ**—କୌଂତେୟ ! ସହଜଂ କର୍ମ ସଦୋଷଂ ଅପି ନ ତ୍ୟଜେତ୍ । ହି ସର୍ବାରମ୍ଭାଃ ଧୂମେନ ଅଗ୍ନିଃ ଇବ ଦୋଷେଣ ଆବୃତାଃ ।୪୮।

**ଟୀକା**—କୌନ୍ତେୟ, ସହଜଂ (ସ୍ୱଭାବଜନ୍ୟଂତ) କର୍ମ ସଦୋଷଂ (ଦୋଷଯୁକ୍ତଂ—ଯଥା—ଯୁଦ୍ଧାଦିକର୍ମଣି ହିଂସାଦିଦୋଷଃ) ଅପି ନ ତ୍ୟଜେତ୍ । ହି (ଯତଃ) [ନ କେବଳଂ ନିଜସ୍ୟ କର୍ମ, ଅପି ତୁ ଜଗତି] ସର୍ବାରମ୍ଭାଃ (ସକଳପ୍ରକାର କର୍ମୋଦ୍ୟୋଗାଃ) ଧୂମେନ ଅଗ୍ନିଃ ଇବ ଦୋଷେଣ ଆବୃତାଃ । ୪୮ ।

**ଅର୍ଥ**—[ଯୁଦ୍ଧାଦିକର୍ମରେ ହିଂସାଦିଦୋଷ ପରି] ସ୍ୱାଭାବିକ କର୍ମରେ ଦୋଷ ଦୁର୍ଗୁଣ ଥିଲା ପରି ଲାଗିଲେ ବି ତାକୁ ଛାଡ଼ିବାର ନୁହେ । କାହିଁକି ନା, ନିଆଁକୁ ଧୂଆଁ ନ ଛାଡ଼ିଲା ପରି ଜଗତର କୌଣସି କର୍ମ ବା ଉଦ୍ୟୋଗକୁ ଦୋଷ ଛାଡ଼ି ନାହିଁ । ୪୮ ।

ବ୍ୟାଖ୍ୟା ସୂଚନା—ଏପରି ବାଛି ବସିଲେ ସବୁ କର୍ମରେ କିଛି ନା କିଛି ଦୋଷ ଅଛି । ବ୍ରାହ୍ମଣ କର୍ମରେ ଯେଉଁ 'ଶମ' 'କ୍ଷମା' ପ୍ରଭୃତି ଅଛି, ସେଥିରେ ମଧ୍ୟ ମାଡ ଖାଇ ତୁନି ହୋଇ ବସି ରହିବାରେ ଭୀରୁତା ଅଛି ବୋଲି ଲୋକେ ସମାଲୋଚନା କରିପାରନ୍ତି । ଏହିପରି ସମାଲୋଚନାକୁ ଡରିବା କଥା ଏଠାରେ ବିଶେଷ ଲକ୍ଷ୍ୟ କରିଯାଇଛି । ପୁଣି ନିଜ ପକ୍ଷରେ ମଧ୍ୟ ସାତ୍ତ୍ୱିକଭାବରେ ଯଜ୍ଞ ଦାନ ତପ ବୁଦ୍ଧିରେ ନ କଲେ, କ୍ଷତ୍ରିୟର ଯୁଦ୍ଧ ଯେପରି ବର୍ବରତା, ହିଂସା ଓ ବିଦ୍ୱେଷାଦିରେ ପରିଣତ ହୋଇପାରେ, ବ୍ରାହ୍ମଣର ଶମ ଓ କ୍ଷମା ମଧ୍ୟ ଭଣ୍ଡାମି, ଆଳସ୍ୟ, ଭୀରୁତା ହୋଇପାରେ । ୧୮.୩ ଦେଖ । ୪୮ ।

**ଅସକ୍ତବୁଦ୍ଧିଃ ସର୍ବତ୍ର ଜିତାତ୍ମା ବିଗତସ୍ପୃହଃ ।**
**ନୈଷ୍କର୍ମ୍ୟସିଦ୍ଧିଂ ପରମାଂ ସନ୍ନ୍ୟାସେନାଧିଗଚ୍ଛତି ।୪୯।**

**ଅନ୍ୱୟ**—ସର୍ବତ୍ର ଅସକ୍ତବୁଦ୍ଧିଃ ଜିତାତ୍ମା, ବିଗତସ୍ପୃହଃ ସନ୍ନ୍ୟାସେନ ପରମାଂ ନୈଷ୍କର୍ମ୍ୟସିଦ୍ଧିଂ ଅଧିଗଚ୍ଛତି । ୪୯ ।

**ଟୀକା**—[କର୍ମଣି ଆସକ୍ତିତ୍ୟାଗ ଏବ ତଦ୍‌ଦୋଷାତ୍ ମୁକ୍ତିଃ, ନ ତୁ ସ୍ୱଧର୍ମ-ତ୍ୟାଗଃ]—ଅସକ୍ତବୁଦ୍ଧିଃ (ଅନାସକ୍ତଃ) ଜିତାତ୍ମା । (ଜିତେନ୍ଦ୍ରିୟଃ) ବିଗତସ୍ପୃହଃ (ତୃଷ୍ଣାରହିତଃ) ସନ୍ନ୍ୟାସେନ (କର୍ମଫଳତ୍ୟାଗେନ) ପରମାଂ ନୈଷ୍କର୍ମ୍ୟସିଦ୍ଧିଂ (କର୍ମ-

ଜ୍ଞାନତାୟାଃ ସିଦ୍ଧିଂ) ଅଧିଗଚ୍ଛତି । (କର୍ମଫଳତ୍ୟାଗ ଏବ କର୍ମଙ୍ଗାନତା ନୈଷ୍କର୍ମ୍ୟଂ ବା, ନ ତୁ ସାଂଖ୍ୟାନାଂ କର୍ମତ୍ୟାଗଃ—ଇତି ସ୍ପଷ୍ଟମ୍) । ୪୯ ।

ଅର୍ଥ—[କର୍ମରେ ଫଳାକାଂକ୍ଷା ଛାଡ଼ିବାହିଁ ସେ ଦୋଷରୁ ମୁକ୍ତ, ସ୍ୱଧର୍ମ-ଛାଡ଼ିବା ନୁହେ ବୋଲି କହୁଛନ୍ତି ]—ସବୁଠି ଅନାସକ୍ତ ହେବାରେ ବିବେକ ଠିକ୍ ରଖି, ଜିତେନ୍ଦ୍ରିୟ, ତୃଷ୍ଣାହୀନ ହୋଇଥିବା ଲୋକ କେବଳ ସନ୍ନ୍ୟାସ (ବା କର୍ମଫଳ ତ୍ୟାଗ) ହେତୁରୁ, ନୈଷ୍କର୍ମରେ ମିଳୁଥିବା ପରମସିଦ୍ଧିରେ ପହୁଞ୍ଚେ । ୩.୪ ଓ ଟୀକା ଦେଖ । ଏଠାରେ ସ୍ପଷ୍ଟ କହୁଛନ୍ତି କର୍ମଫଳତ୍ୟାଗହିଁ ନୈଷ୍କର୍ମ୍ୟ—କର୍ମତ୍ୟାଗ ନୁହେ] ।୪୯।

**ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ ତଥାପ୍ନୋତି ନିବୋଧ ମେ ।**
**ସମାସେନୈବ କୌନ୍ତେୟ ନିଷ୍ଠା ଜ୍ଞାନସ୍ୟ ଯା ପରା ।୫୦।**

ଅନ୍ୱୟ—ସିଦ୍ଧିଂ ପ୍ରାପ୍ତଃ ଯଥା ବ୍ରହ୍ମ ଆପ୍ନୋତି, ତଥା ସମାସେନ ଏବ ମେ ଶୃଣୁ । କୌନ୍ତେୟ ! ଜ୍ଞାନସ୍ୟ ଯା ପରା ନିଷ୍ଠା । ୫୦ ।

ଟୀକା—[ ତତଃ ନୈଷ୍କର୍ମ୍ୟସିଦ୍ଧସ୍ୟ ବ୍ରହ୍ମପ୍ରାପ୍ତିଂ ବର୍ଣ୍ଣୟତି ]—[ନୈଷ୍କର୍ମ୍ୟ-] ସିଦ୍ଧିଂ ପ୍ରାପ୍ତଃ ଯଥା ବ୍ରହ୍ମ ଆପ୍ନୋତି, ତଥା ( ତତ୍ ) ସମାସେନ ( ସଂକ୍ଷେପତଃ ) ଏବ ମେ ( ମତ୍ତଃ ) ଶୃଣୁ । ହେ କୌନ୍ତେୟ, ଜ୍ଞାନସ୍ୟ ଯା ପରାନିଷ୍ଠା (ପର୍ଯ୍ୟବସାନଂ, ପରିସମାପ୍ତିଃ) [ ସା ଏବ ଏଷା ବ୍ରହ୍ମପ୍ରାପ୍ତିଃ ] । ୫୦ ।

ଅର୍ଥ—[ ଏବେ ନୈଷ୍କର୍ମ୍ୟସିଦ୍ଧିର ବ୍ରହ୍ମପ୍ରାପ୍ତି କଥା କହୁଛନ୍ତି]—ନୈଷ୍କର୍ମ୍ୟ-ସିଦ୍ଧି ପାଇଲେ ଲୋକ ଯେପରି ବ୍ରହ୍ମ ପାଏ, ସେ କଥା ମୋଠୁ ମୋଟାମୋଟି ଶୁଣ । ହେ କୌନ୍ତେୟ, ସେହି ବ୍ରହ୍ମପ୍ରାପ୍ତିହିଁ ଜ୍ଞାନର ପରାକାଷ୍ଠା ( ସର୍ବଶେଷ ଗତି ବା ସମାପ୍ତି ) । ୫୦ ।

ବ୍ୟାଖ୍ୟା ସୂଚନା—ସାଂଖ୍ୟମାର୍ଗରେ କେବଳ ଜ୍ଞାନ ଧରି କର୍ମ ଛାଡ଼ି ନୈଷ୍କର୍ମ୍ୟ ସିଦ୍ଧିକୁ ଲୋକ ଯିବାକୁ ଲୋଡ଼େ । ଏଠାରେ ଗୀତାର ଯୋଗମାର୍ଗରେ ଫଳ-ତ୍ୟାଗରେ ହିଁ ଜ୍ଞାନ ସାଧନା କରି ସେହି ନୈଷ୍କର୍ମ୍ୟସିଦ୍ଧି ପାଆନ୍ତି ବୋଲି ପରୋକ୍ଷେ କରେ ବୁଝାଉଛନ୍ତି । ୫୦ ।

**ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ ଧୃତ୍ୟାତ୍ମାନଂ ନିୟମ୍ୟ ଚ ।**
**ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ରାଗଦ୍ୱେଷୌ ବ୍ୟୁଦସ୍ୟ ଚ ।୫୧।**
**ବିବିକ୍ତସେବୀ ଲଘ୍ୱାଶୀ ଯତବାକ୍ କାୟମାନସଃ ।**
**ଧ୍ୟାନଯୋଗପରୋ ନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ । ୫୨ ।**
**ଅହଂକାରଂ ବଲଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହମ ।**
**ବିମୁଚ୍ୟ ନିର୍ମମଃ ଶାନ୍ତୋ ବ୍ରହ୍ମଭୂୟାୟ କଳ୍ପତେ । ୫୩ ।**

ଅନ୍ୱୟ—ସ୍ପଷ୍ଟ । ୫୧-୫୩ ।

**ଟୀକା**—[ ଯଥା ବ୍ରହ୍ମ ଆପ୍ନୋତି, ତତ୍ ଆହ ]—ବିଶୁଦ୍ଧୟା ବୁଦ୍ଧ୍ୟା ଯୁକ୍ତଃ, ଧୃତ୍ୟା [ଅବସାଦନାତ୍] ଆତ୍ମାନଂ ନିୟମ୍ୟ (ଉଦ୍ଧୃତ୍ୟ) ଶବ୍ଦାଦୀନ୍ ଚ [ ଇନ୍ଦ୍ରିୟ- ] ବିଷୟମାନ୍ (ଭୋଗସ୍ପୃହାଃ ତ୍ୟକ୍ତ୍ୱା, ରାଗଦ୍ୱେଷୌ) (ଅନୁରାଗବିରାଗୌ) ବ୍ୟୁଦସ୍ୟ (ଅପାସ୍ୟ) ଚ ବିବିକ୍ତସେବୀ (ନିବାତନିର୍ଜନସ୍ଥାନାଶ୍ରୟୀ ଲଘ୍ୱାଶୀ) (ମିତାହାରଃ) [ ସ- ] ଯତବାକ୍‌କାୟମାନସଃ, ନିତ୍ୟଂ (ସଦା) ଧ୍ୟାନଯୋଗ-ପରଃ (ପରମାତ୍ମନ ଧ୍ୟାନନିଷ୍ଠଃ) ବୈରାଗ୍ୟଂ (ଫଳେ ଅନାସକ୍ତିଂ) ସମୁପାଶ୍ରିତଃ, ଅହଂକାରଂ, ବଳଂ, ଦର୍ପଂ, କାମଂ, କ୍ରୋଧଂ, ପରିଗ୍ରହଂ ( ସର୍ବବନ୍ଧନଂ, ଆୟୋଜନଂ ବା )—( ଏତାନ୍ ରଜୋଗୁଣୋଦ୍ଦୀପକାନ୍ ) ବିମୁଚ୍ୟ ( ତ୍ୟକ୍ତ୍ୱା ) ନିର୍ମମଃ ଶାନ୍ତଃ ( ସ୍ଥିରଧୀଃ ) ବ୍ରହ୍ମଭୂୟାୟ ( ବ୍ରହ୍ମଭୂତୋ ଭବିତୁଂ ) କଳ୍ପତେ ( ଯୋଗ୍ୟଃ ସମର୍ଥୋ ବା ଭବତି ) । ୫୧-୫୩ ।

**ଅର୍ଥ**—[ଯେପରି ବ୍ରହ୍ମ ପାଏ, ତା କହୁଛନ୍ତି ]—ସାତ୍ତ୍ୱିକ ଶୁଦ୍ଧ ବୁଦ୍ଧି ଧରି ଧୃତିରେ ଆପଣାକୁ ଠିକ୍ ରଖି ଓ ଶବ୍ଦାଦି ଇନ୍ଦ୍ରିୟଭୋଗ ଛାଡ଼ି, ରାଗଦ୍ୱେଷାଦି ଦ୍ୱନ୍ଦ୍ୱରୁ ଉପରେ ରହି, ଯେଉଁ ଲୋକ ବାଛି କରି ନିର୍ଜନ ସ୍ଥାନରେ ଭଜିବାର ଅଭ୍ୟାସ କରି, ମିତାହାରୀ ହୋଇ କାୟମନୋବାକ୍ୟ ସଂଯତ କରି, ସର୍ବଦା ଧ୍ୟାନଯୋଗରେ ଲାଗିରହି, କର୍ମରେ ବୈରାଗ୍ୟ ( ଅନାସକ୍ତି ) ଧରି, ଅହଂକାର, ବଳାତ୍କାର, ଦର୍ପ, କାମ, କ୍ରୋଧ, ପରିଗ୍ରହ (ଆୟୋଜନ) ପ୍ରଭୃତି ରଜୋଗୁଣ ଛାଡ଼ି ନିର୍ମମ ହୋଇ ମନକୁ ଠିକ୍ ରଖେ, ସେହି ଲୋକ ବ୍ରହ୍ମଭାବକୁ ଯୋଗ୍ୟ ହୁଏ । ୫୧-୫୩ ।

ବ୍ୟାଖ୍ୟା ସୂଚନା—ପରିଗ୍ରହ = ପଦା ବା ବନ୍ଧନ, ନିଜ ଭୋଗ ବା ଶରୀର ରକ୍ଷା ପାଇଁ ଆୟୋଜନ, କିମ୍ବା ନିଜେ କର୍ତ୍ତା ବୋଲି କର୍ମମାନ ପାଇଁ ଆୟୋଜନ । ଏଠାରେ ଲକ୍ଷ୍ୟ ରଖିବାକୁ ହେବ, ଏହିସବୁ ଶବ୍ଦ ସାଂଖ୍ୟମାର୍ଗର ସନ୍ନ୍ୟାସରେ ପ୍ରୟୋଗ କରାଯାଏ । ଗୀତାର ଯୋଗମାର୍ଗରେ ନୈଷ୍କର୍ମ୍ୟ ଓ ବ୍ରହ୍ମପ୍ରାପ୍ତିରେ ଠିକ୍ ସେହି ଶବ୍ଦ ସବୁ ଦେଇ ବୁଝାଉଛନ୍ତି । ଗୀତାର ଯୋଗମାର୍ଗପାଇଁ ଧ୍ୟାନଯୋଗର ଉପଯୋଗିତା ଷଷ୍ଠ ଅଧ୍ୟାୟରେ କୁହାଯାଇଛି ୧୨.୯ ବି ଦେଖ । ବିବିକ୍ତସେବା ଗୀତାର ଯୋଗ-ମାର୍ଗରେ ଘର ଛାଡ଼ି ବଣକୁ ଯିବା ନୁହେଁ; ଧ୍ୟାନ ପାଇଁ ନିର୍ଜନ ସ୍ଥାନ ବାଛି ସେହିଠାରେ ଧ୍ୟାନରେ ବସି ଅଭ୍ୟାସ କରିବା । ବୈରାଗ୍ୟ, କର୍ମ ଛାଡ଼ିବା ନୁହେଁ, ରାଗ ବା ଆସକ୍ତି ଛାଡ଼ିବା—ଇତ୍ୟାଦି ବୁଝିନେବାକୁ ହେବ । ମନେ ରଖିବାକୁ ହେବ, ଗୀତାର ଯୋଗମାର୍ଗରେ କର୍ମତ୍ୟାଗର ସନ୍ନ୍ୟାସ ମନା କରା ହୋଇଛି । ୧୮.୨,୯ ଦେଖ । ୫୧-୫୩ ।

**ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍କ୍ଷତି ।**
**ସମଃ ସର୍ବେଷୁ ଭୂତେଷୁ ମଦ୍‌ଭକ୍ତିଂ ଲଭତେ ପରାମ୍ ।୫୪।**

**ଅନ୍ୱୟ**—ସ୍ପଷ୍ଟ । ୫୪ ।

**ଟୀକା**—[ ଏବଂ ଜ୍ଞାନେନ ଯୋଗୋପାସକଃ ] ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି, ନ କାଂକ୍ଷତି । [ ଅତଏବ ସର୍ବଂ ବ୍ରହ୍ମମୟମିତି ] ସର୍ବେଷୁ ଭୂତେଷୁ ସମଃ (ସମବୁଦ୍ଧିଃ) [ସନ୍ ସଃ] ପରାଂ (ଶ୍ରେଷ୍ଠାଂ) ମଦ୍‌ଭକ୍ତିଂ ମୟି ସର୍ବାର୍ପଣରୂପତପସଃ ହେତୋଃ —ଇତି ଭାବଃ ) ଲଭତେ । ୫୪ ।

**ଅର୍ଥ**—[ଏହିପରି ଜ୍ଞାନ ଉପାସନାରେ ଯୋଗୀ] ବ୍ରହ୍ମଭୂତ ଅର୍ଥାତ୍, ନିଜେ (ସ୍ୱରୂପତଃ ବ୍ରହ୍ମ) ହୋଇଗଲେ ତାର ଚିତ୍ତ ନିର୍ମଳ ହୋଇଯାଏ । ସେ ଆଉ ନପାଇଲେ ବା ହରାଇଲେ ଶୋଚନା କରେ ନାହିଁ, କି ପାଇବାକୁ ମନ କରେ ନାହିଁ । [ଅତଏବ ସବୁ ବ୍ରହ୍ମମୟ ବୋଲି ବୁଝି ] ସବୁ ପ୍ରାଣୀଙ୍କଠାରେ ସମାନ ବୁଦ୍ଧି କରେ ଓ [ ସବୁ ମୋର ବୋଲି କର୍ମରେ ଅଭ୍ୟାସ କରିବାରୁ ], ଯାହା ଶ୍ରେଷ୍ଠଭକ୍ତି ବା ମୋଠାରେ ଭକ୍ତି ତାକୁ ପାଏ । ୫୪ ।

ବ୍ୟାଖ୍ୟା ସୂଚନା—ଏହିପରି ଜ୍ଞାନରେ ଯୋଗ କଲେ ଭକ୍ତି ଆସି ପଡ଼େ । ଏଠାରେ ଯଜ୍ଞ, ଦାନ, ତପ—ଏହି ନିତ୍ୟ କର୍ତ୍ତବ୍ୟର ପ୍ରୟୋଗ ସ୍ପଷ୍ଟ । କର୍ମ ସବୁ ଈଶ୍ୱରଙ୍କର ବୋଲି କରିବା ଯଜ୍ଞ; ସର୍ବଭୂତରେ ସମବୁଦ୍ଧି, ଦାନ ଓ ଏହିପରି କର୍ମାଭ୍ୟାସ, ତପ । ସବୁ ପ୍ରାଣୀଙ୍କଠି ସମବୁଦ୍ଧି=ନିଜକୁ ଯାହା ଯେପରି ସୁଖ ଦୁଃଖ ହୁଏ, ଅନ୍ୟକୁ ତାହା ସେହିପରି ହୁଏ ବୋଲି ବୁଝିବା—୬.୩୨; ୧୨.୧୩ ଦେଖ । ବ୍ରହ୍ମଭୂତ, ସୁଖ ଦୁଃଖରୁ ଅତୀତ, ତେଣୁ ସମସ୍ତେ ସୁଖ ଦୁଃଖରୁ ଅତୀତ—ଏପରି ବୁଝିବା ଠିକ୍ ନୁହେ । ଭକ୍ତ ଜଗତ୍‌କୁ ଈଶ୍ୱରଙ୍କର ପ୍ରକାଶ ଓ ସତ୍ୟ ମଣେ; ତେଣୁ ନିଜେ ବ୍ରହ୍ମଭୂତ ହେଲେହେଁ ଈଶ୍ୱର ଯେପରି ସର୍ବାତୀତ ହୋଇ, ଜଗତ୍‌କୁ ଦୃଷ୍ଟାନ୍ତରେ ପ୍ରକାଶ କରନ୍ତି, ସେହିପରି ସେ ବ୍ରହ୍ମଭୂତ ମଧ୍ୟ କାର୍ଯ୍ୟରେ ଜଗତ୍‌କୁ ବାସ୍ତବ ମଣି ସର୍ବପ୍ରାଣୀ ପ୍ରତି ବ୍ୟବହାର କରିବ । ୫୪ ।

**ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ ।**
**ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା ବିଶତେ ତଦନନ୍ତରମ୍ ।୫୫।**

**ଅନ୍ୱୟ**—ଭକ୍ତ୍ୟା ଯାବାନ୍ ଯଃ ଚ ଅସ୍ମି, ମାଂ ତତ୍ତ୍ୱତଃ ଅଭିଜାନାତି । ତତଃ ମାଂ ତତ୍ତ୍ୱତଃ ଜ୍ଞାତ୍ୱା ତଦନନ୍ତରଂ ବିଶତେ । ୫୫ ।

**ଟୀକା**—[ ଏତସ୍ମାତ୍ ଜ୍ଞାନତଃ ଯୋଗପ୍ରଯତ୍ନାତ୍ ପ୍ରାପ୍ତୟା ] ଭକ୍ତ୍ୟା ଯାବାନ୍ ଯଃ ଚ ଅସ୍ମି [ଇତି] ମାଂ ତତ୍ତ୍ୱତଃ (ସ୍ୱରୂପତଃ) ଅଭିଜାନାତି । ତତଃ ମାଂ [ଏବଂ] ତତ୍ତ୍ୱତଃ ଜ୍ଞାତ୍ୱା ତଦନନ୍ତରଂ [ସଃ ମାଂ] ବିଶତେ (ପ୍ରବିଶତି) । ୫୫ ।

**ଅର୍ଥ**—[ ଏହିପରି ଜ୍ଞାନସହିତ ଯୋଗରେ ଲାଗିଲେ ଯେଉଁ ଭକ୍ତିଭାବକୁ ଲୋକ ମନକୁ ଆସେ ] ସେହି ଭକ୍ତିରେ, ମୁଁ କିଏ, କେତେ ଓ କିଏ—ଏ ସବୁର ତଥ୍ୟ ସେ ବୁଝିପାରେ ( ଅର୍ଥାତ୍, ମୁଁ ଅବ୍ୟକ୍ତ, ଅନିର୍ଦ୍ଦେଶ୍ୟ, ପୁଣି ସର୍ବବ୍ୟାପ୍ତମସ୍ତ ସର୍ବାନ୍ତର୍ଯ୍ୟାମୀ—ଅତଏବ ପୁରୁଷୋତ୍ତମ ପରମେଶ୍ୱର ବୋଲି ଠିକ୍ ବୁଝିଯାଏ ) । ମୋତେ ଏହିପରି ସ୍ୱରୂପରେ ଜାଣି, ତହିଁ ଉତ୍ତାରୁ ମୋ ଭିତରେ ସ୍ଥାନ ପାଏ ( ବା ମୋଠି ଲୀନ ହୁଏ ) । ୫୫ ।

ବ୍ୟାଖ୍ୟା ସୂଚନା—[ ସାଂଖ୍ୟର ଜ୍ଞାନ ଧରି ଯୋଗ କଲେ ଭକ୍ତି ହୁଏ, ଓ ଭକ୍ତିରୁ ଈଶ୍ୱରରେ ତନ୍ମୟତା ଆସେ ] । ଯୋଗ ବିନା ଖାଲି ଜ୍ଞାନ ଶୁଷ୍କ, ଏହାହିଁ କହିବାର ଅଭିପ୍ରାୟ । ମାତ୍ର ଭକ୍ତିରୁ ଆରମ୍ଭ କରି ଜ୍ଞାନ ଓ ତନ୍ମୟତାକୁ ଆସିବା କଥା କୁହା ହୋଇଛି—୯.୨୬-୩୧ ଦେଖ । ଏ ମତଟି ତାର ବିରୋଧୀ ନୁହେ । ଜ୍ଞାନ ଉପାସକ ପାଇଁ ଏହା କୁହାଯାଇଛି । ସାଧାରଣ ଉପାସକ ପାଇଁ ଆଗ ଭକ୍ତିରେ ଯୋଗ କରିବା ଶ୍ରେଷ୍ଠ ପନ୍ଥା । ମୋଟ କଥା, ଯୋଗ, ଭକ୍ତି ଓ ଜ୍ଞାନ ସହିତ ମୁକ୍ତି ଲୋଡ଼ିବାକୁ ହେବ । ଏ ତିନୋଟି ଅଲଗା ଅଲଗା ହୋଇ ପାରିବେ ନାହିଁ । ୫୫ ।

**ସର୍ବକର୍ମାଣ୍ୟପି ସଦା କୁର୍ବାଣୋ ମଦ୍‌ବ୍ୟପାଶ୍ରୟଃ ।**
**ମତ୍‌ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟମ୍ । ୫୬ ।**

**ଅନ୍ୱୟ**—ମଦ୍‌ବ୍ୟପାଶ୍ରୟଃ ସଦା ସର୍ବକର୍ମାଣି ଅପି କୁର୍ବାଣଃ ମତ୍ପ୍ରସାଦାତ୍ ଶାଶ୍ୱତଂ ଅବ୍ୟୟଂ ପଦଂ ଅବାପ୍ନୋତି । ୫୬ ।

**ଟୀକା**—[ଏବଂ] ମଦ୍‌ବ୍ୟପାଶ୍ରୟଃ (ଭକ୍ତ୍ୟା ମଦାଶ୍ରିତଃ) [ ସନ୍ ] ସଦା ସର୍ବ-କର୍ମାଣି ଅପି କୁର୍ବାଣଃ [ ଯୋଗୀ ] ମତ୍‌ପ୍ରସାଦାତ୍ ( ମଦନୁଗ୍ରହାତ୍ ) ଶାଶ୍ୱତଂ ଅବ୍ୟୟଂ ପଦଂ **ଅବାପ୍ନୋତି** । ୫୬ ।

**ଅର୍ଥ**—[ ଏହିପରି ] ଜ୍ଞାନକୃତଭକ୍ତିରେ ମୋତେ ଆଶ୍ରା କରି ସର୍ବଦା ସବୁ କର୍ମ କରୁଥିଲେ ମଧ୍ୟ ଯୋଗୀ ମୋ ଅନୁଗ୍ରହରୁ ନିତ୍ୟ ଅବ୍ୟୟ ସ୍ଥାନ ପାଏ ( ମୋକ୍ଷପାଏ ) । ୫୬ ।

**ଚେତସା ସର୍ବକର୍ମାଣି ମୟି ସଂନ୍ୟସ୍ୟ ମତ୍‌ପରଃ ।**
**ବୁଦ୍ଧିଯୋଗମୁପାଶ୍ରିତ୍ୟ ମଚ୍ଚିତ୍ତଃ ସତତଂ ଭବ । ୫୭ ।**

**ଅନ୍ୱୟ**—ମଚ୍ଚିତ୍ତଃ ବୁଦ୍ଧିଯୋଗଂ ଉପାଶ୍ରିତ୍ୟ, ଚେତସା ସର୍ବ-କର୍ମାଣି ମୟି ସନ୍ନ୍ୟସ୍ୟ ସତତଂ ମତ୍ପରଃ ଭବ । ୫୭ ।

**ଟୀକା**—[ଅତଏବ] ମଚ୍ଚିତ୍ତଃ (ମୟି ନ୍ୟସ୍ତମନାଃ) [ସନ୍]—ବୁଦ୍ଧିଯୋଗଂ (ମୟି ସମାଧିବୁଦ୍ଧିଂ) ଉପାଶ୍ରିତ୍ୟ, ଚେତସା (ନ ତୁ କାୟଚେଷ୍ଟୟା=ଇତି ଭାବଃ) ସର୍ବକର୍ମାଣି ମୟି ସଂନ୍ୟସ୍ୟ (ଈଶ୍ୱରନିର୍ଦ୍ଦିଷ୍ଟାନି ଏବ କର୍ମାଣି କରୋମୀତି ନିଶ୍ଚିତ୍ୟ—ଇତି ଭାବଃ) ସତତଂ (ସଦା) ମତ୍‌ପରଃ ଭବ (ମାମେବ ସର୍ବସ୍ୱଂ ଗୃହାଣ—ଇତି ଭାବଃ) । ୫୭ ।

**ଅର୍ଥ**—[ଅତଏବ] ମୋଠାରେ ମନଦେଇ ବୁଦ୍ଧିଯୋଗ ଆଶ୍ରା କର (ଅର୍ଥାତ୍, ମୋଠାରେ ସମାଧି ବୁଦ୍ଧିରେ କର୍ମ କରିବା ସ୍ଥିର କର), ସବୁ କର୍ମ ମୋର ବା ଈଶ୍ୱରଙ୍କର ବୋଲି ମନେ କରି ଫଳାଫଳ ଭାବ ଛାଡ଼, (ଫଳ ମୋର ଉପରେ ପକାଇ ଦେଇ) ସବୁବେଳେ ମତେଇ ସର୍ବସ୍ୱ କର । ୫୭ ।

ବ୍ୟାଖ୍ୟା ସୂଚନା—ବୁଦ୍ଧିଯୋଗ—୨.୪୯,୫୦ ଦେଖ । ମନରେ ସବୁ କର୍ମ ଈଶ୍ୱରରେ ଛାଡ଼ିବାକୁ ହେବ, ଅର୍ଥାତ୍, ଦେହାଦିର ଚେଷ୍ଟା କରି କର୍ମ ଛାଡ଼ିବାକୁ ହେବ ନାହିଁ । ୫୭ ।

**ମଚ୍ଚିତ୍ତଃ ସର୍ବଦୁର୍ଗାଣି ମତ୍‌ ପ୍ରସାଦାତ୍‌ ତରିଷ୍ୟସି ।**
**ଅଥ ଚେତ୍‌ ତ୍ୱମହଂକାରାନ୍ନଶ୍ରୋଷ୍ୟସି ବିନଂକ୍ଷ୍ୟସି । ୫୮ ।**

**ଅନ୍ୱୟ**—ମଚ୍ଚିତ୍ତଃ ମତ୍‌ପ୍ରସାଦାତ୍‌ ସର୍ବ ଦୁର୍ଗାଣି ତରିଷ୍ୟସି । ଅଥ ତ୍ୱଂ ଅହଂକାରାତ୍‌ ନ ଶ୍ରୋଷ୍ୟସି ଚେତ୍‌ ବିନଂକ୍ଷ୍ୟସି । ୫୮ ।

**ଟୀକା**—[ଏବଂ] ମଚ୍ଚିତ୍ତଃ [ସନ୍] ମତ୍‌ପ୍ରସାଦାତ୍‌ ସର୍ବଦୁର୍ଗାଣି ତରିଷ୍ୟସି । ଅଥ ତ୍ୱଂ ଅହଂକାରାତ୍‌ (ଅହଂ ସର୍ବଂ କରୋମି—ଇତି ମତ୍ୱା) (ଇଦଂ ମଦୁକ୍ତଂ) ନ ଶ୍ରୋଷ୍ୟସି ଚେତ୍‌ (ତର୍ହି) ବିନଂକ୍ଷ୍ୟସି (ମରିଷ୍ୟସି—ନାଶଂ ଯାସ୍ୟସି) । ୫୮ ।

**ଅର୍ଥ**—[ଏହିପରି] ମୋଠାରେ ମନ ଦେଇ (ସବୁ ଈଶ୍ୱରଙ୍କର ବୋଲି କରି) କଲେ, ମୋ ଅନୁଗ୍ରହରୁ ସବୁ ଦୁର୍ଗତିରୁ ପାର ପାଇବୁ । ମାତ୍ର [ଏହା ନ କରି] 'ସବୁ ମୁଁ କରୁଛି,' 'ମୋ କାମ' ବୋଲି ଅହଂକାର ଧରି ଯେବେ କଥା ନ ଶୁଣିବୁ, ତେବେ ନାଶ ହୋଇଯିବୁ । ୫୮ ।

**ଯଦହଙ୍କାରମାଶ୍ରିତ୍ୟ ନ ଯୋତ୍ସ୍ୟ ଇତି ମନ୍ୟସେ ।**
**ମିଥ୍ୟୈବ ବ୍ୟବସାୟସ୍ତେ ପ୍ରକୃତିସ୍ତ୍ୱାଂ ନିଯୋକ୍ଷ୍ୟତି । ୫୯ ।**

**ଅନ୍ୱୟ**—ଅହଂକାରଂ ଆଶ୍ରିତ୍ୟ 'ନ ଯୋତ୍ସ୍ୟେ' ଇତି ଯତ୍‌ ମନ୍ୟସେ, ତେ ବ୍ୟବସାୟଃ ମିଥ୍ୟା ଏବ, ପ୍ରକୃତିଃ ତ୍ୱାଂ ନିଯୋକ୍ଷ୍ୟତି । ୫୯ ।

**ଟୀକା**—[ ଅହଂ କରୋମୀତି ] ଅହଂକାରଂ ଆଶ୍ରିତ୍ୟ 'ନ ଯୋତ୍ସ୍ୟେ' ଇତି ଯତ୍ ମନ୍ୟସେ [ତତ୍] ତେ (ତବ) ବ୍ୟବସାୟଃ (ନିଶ୍ଚୟଃ ମିଥ୍ୟା) (ବୃଥା) ଏବ; [ ନ ତ୍ୱଂ କିଞ୍ଚିତ୍ କରୋଷି ନ କରୋଷି ବା, ଅପି ତୁ ] ପ୍ରକୃତିଃ ତ୍ୱାଂ [ କର୍ମଣି, ଅତ୍ର ଯୁଦ୍ଧେ ବା ] ନିୟୋକ୍ଷ୍ୟତି । ୫୯ ।

**ଅର୍ଥ**—[ମୁଁ ସବୁ କରୁଛି ବୋଲି ] ଅଭିମାନ ଧରି ନ ଯୁଝିବି ବୋଲି ଯାହା ବିଚାରୁଛୁ, ତୋର ଏ ବିଚାର ଜମା ଠିକ୍ ନୁହେ । [ ତୁ କଅଣ କରିବୁ ବା ନ କରିବୁ ? ] ପ୍ରକୃତି ତ ତୋତେ ଧରି କାମରେ ଲଗାଇବ । ୫୯ ।

**ସ୍ୱଭାବଜେନ କୌନ୍ତେୟ ନିବଦ୍ଧଃ ସ୍ୱେନ କର୍ମଣା ।**
**କର୍ତ୍ତୁଂ ନେଚ୍ଛସି ଯନ୍ମୋହାତ୍ କରିଷ୍ୟସ୍ୟବଶୋଽପି ତତ୍ ।୬୦।**

**ଅନ୍ୱୟ**—ସ୍ପଷ୍ଟ । ୬୦ ।

**ଟୀକା**—ହେ କୌନ୍ତେୟ, [ଜନ୍ତୁଃ] ସ୍ୱଭାବଜେନ ସ୍ୱେନ (ନିଜେନ) କର୍ମଣା ନିବଦ୍ଧଃ (ଜଡ଼ିତଃ), ଯତ୍ ମୋହାତ୍ ନ ଇଚ୍ଛସି, ତତ୍ ଅବଶଃ ଅପି କରିଷ୍ୟସି । ୬୦ ।

**ଅର୍ଥ**—ହେ କୌନ୍ତେୟ, [ଜନ୍ତୁ] ସ୍ୱଭାବରୁ ହୋଇଥିବା ନିଜ କର୍ମରେ ବନ୍ଧା ହୋଇ ରହିଛି । ମୋହରେ ପଡ଼ି ଯାହା ତୁ ନ କରିବୁ ବୋଲି ମନ କରୁଚୁ, ବାଧ୍ୟ ହୋଇ ସିନା ତା' କରିବୁ । ୬୦ ।

ବ୍ୟାଖ୍ୟା ସୂଚନା—ଆଜି ଏ ଯୁଦ୍ଧ ଛାଡ଼ିଦେଲେ ବି, ଯୁଦ୍ଧ ଯେ ତୋର ସ୍ୱଭାବ କର୍ମ, ତା ତୁ ଛାଡ଼ିବୁ କେତେକେ ? ଜ୍ଞାନରେ ଆଜି କରିବୁ ନାହିଁ, ଅଥଚ ଇତର ସାଧାରଣ ଲୋକ ପରି ବାଧ୍ୟ ହୋଇ କାଲି ସେଇଯା କରିବୁ—ଏହି ଅଭିପ୍ରାୟ । ୬୦ ।

**ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।**
**ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।୬୧।**

**ଅନ୍ୱୟ**—ଅର୍ଜୁନ ! ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେ ତିଷ୍ଠତି ସର୍ବଭୂତାନି ମାୟୟା ଯନ୍ତ୍ରାରୂଢ଼ାନି ଭ୍ରାମୟନ୍ ଇବ । ୬୧ ।

**ଟୀକା**—[ ଯତଃ ] ଅର୍ଜୁନ, ଈଶ୍ୱରଃ [ ସ୍ୱଭାବରୂପେଣ ] ସର୍ବଭୂତାନାଂ ହୃଦ୍ଦେଶେ (ଅନ୍ତଃକରଣେ) ତିଷ୍ଠତି । [କଥମିତ୍ୟାହ] ସର୍ବଭୂତାନି ମାୟୟା ଯନ୍ତ୍ରାରୂଢ଼ାନି ଭ୍ରାମୟନ୍ ଇବ । ୬୧ ।

**ଅର୍ଥ**—[ କାହିଁକି ନା, ] ହେ ଅର୍ଜୁନ, ସର୍ବକର୍ତ୍ତା ସର୍ବନିୟନ୍ତା ଈଶ୍ୱର ଅଧ୍ୟାତ୍ମ-ସ୍ୱଭାବରୂପେ ସବୁ ପ୍ରାଣୀଙ୍କ ହୃଦୟରେ ଅଛନ୍ତି ଓ ଯନ୍ତ୍ରରେ ଚଢ଼ାଇ ବୁଲାଇଲା ପରି ସବୁ ପ୍ରାଣୀଙ୍କୁ ମାୟାରେ ବୁଲାଉଛନ୍ତି [ ୭.୪;୮.୩ ] । ୬୧ ।

**ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ ।**
**ତତ୍ ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍ ।୬୨।**

**ଅନ୍ୱୟ**—ସ୍ପଷ୍ଟ । ୬୨ ।

**ଟୀକା**—[ଅତଏବ] ହେ ଭାରତ, [ଜ୍ଞାନତଃ] ସର୍ବଭାବେନ ତଂ (ଈଶ୍ୱରଂ) ଏବ ଶରଣଂ ଗଚ୍ଛ । ତତ୍ପ୍ରସାଦାତ୍ ପରାଂ ଶାନ୍ତିଂ ଶାଶ୍ୱତଂ ସ୍ଥାନଂ [ଚ] ପ୍ରାପ୍ସ୍ୟସି । ୬୨ ।

**ଅର୍ଥ**—[ଅତଏବ] ହେ ଭାରତ, ଜାଣି ବୁଝି ସବୁମନ୍ତେ ସେହି ଈଶ୍ୱରଙ୍କ ଅଶ୍ରା ନେ । ତାଙ୍କର ଅନୁଗ୍ରହରେ ପରମ ଶାନ୍ତି ଓ ନିତ୍ୟ ସ୍ଥାନ ପ ଇବୁ । ୬୨ ।

**ଇତି ତେ ଜ୍ଞାନମାଖ୍ୟାତଂ ଗୁହ୍ୟାଦ୍‌ଗୁହ୍ୟତରଂ ମୟା ।**
**ବିମୃଶ୍ୟୈତଦଶେଷେଣ ଯଥେଚ୍ଛସି ତଥା କୁରୁ । ୬୩ ।**

**ଅନ୍ୱୟ**—ସ୍ପଷ୍ଟ । ୬୩ ।

**ଟୀକା**—ଇତି ଗୁହ୍ୟାତ୍ ଗୁହ୍ୟତରଂ (ଅତି ଦୁର୍ଜ୍ଞେୟଂ) ଜ୍ଞାନଂ ତେ (ତୁଭ୍ୟଂ) ମୟା ଆଖ୍ୟାତମ୍ । ଏତତ୍ ଅଶେଷେଣ (ସର୍ବତୋଭାବେନ) ବିମୃଶ୍ୟ (ପର୍ଯାଲୋଚ୍ୟ) ଯଥା ଇଚ୍ଛସି ତଥା କୁରୁ । ୬୩ ।

**ଅର୍ଥ**— ଏହି ଗୂଢ଼ରୁ ଗୂଢ଼ ଜ୍ଞାନ ତତେ ମୁଁ କହିଲି । ଏହାକୁ ଭଲ କରି ସବୁମନ୍ତେ ବିଗ୍ଭର କର; [ତା ପରେ] ଯେପରି ଇଚ୍ଛା ସେପରି କର । ୬୩ ।

**ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ ।**
**ଇଷ୍ଟୋଽସି ମେ ଦୃଢ଼ମିତି ତତୋ ବକ୍ଷ୍ୟାମି ତେ ହିତମ୍ । ୬୪ ।**

**ଅନ୍ୱୟ**—ଭୂୟଃ ସର୍ବଗୁହ୍ୟତମଂ ମେ ପରମଂ ବଚଃ ଶୃଣୁ । ମେ ଦୃଢ଼ଂ ଇଷ୍ଟଃ ଅସି, ଇତି ତତଃ ତେ ହିତଂ ବକ୍ଷ୍ୟାମି । ୬୪ ।

**ଟୀକା**—[ତଦ୍‌ବିମର୍ଶନାସିଦ୍ଧାନ୍ତଂ ଦ୍ରଢ଼ୟିତୁଂ ପୁନରାହ]—ଭୂୟଃ (ପୁନଃ) ସର୍ବଗୁହ୍ୟତମଂ ମେ (ମମ) ପରମଂ (ଶ୍ରେଷ୍ଠଂ) ବଚଃ ଶୃଣୁ । [ତ୍ୱଂ] ମେ (ମମ) ଦୃଢ଼ଂ (ଅତ୍ୟନ୍ତଂ) ଇଷ୍ଟଃ (ପ୍ରିୟଃ) ଅସି ଇତି ତତଃ ତେ (ତୁଭ୍ୟଂ) [ଏତତ୍] ହିତଂ ବକ୍ଷ୍ୟାମି । ୬୪ ।

**ଅର୍ଥ**—[ସେହି ବିଗ୍ଭରର ସିଦ୍ଧାନ୍ତ ଅର୍ଜୁନ ମନରେ ଦୃଢ଼ କରି ଦେବାପାଇଁ ପୁଣି କହୁଛନ୍ତି ]—ପୁଣି ତେବେ ସବୁଠୁ ଗୂଢ଼ ମୋର ଶେଷ କଥା ଶୁଣ । ତୁ ହେଉଚୁ ମୋର ଅତି ଆପଣାର । ସେଥିପାଇଁ ତୋତେ ଏ ହିତ କଥା କହିବି । ୬୪ ।

ବ୍ୟାଖ୍ୟା ସୂଚନା—ଗୁହ୍ୟ=ଗୂଢ଼, ଯାହାକୁ ସାଧାରଣ ଲୋକଙ୍କୁ ସହଜରେ ବୁଝାଯାଏ ନାହିଁ । ଭକ୍ତଙ୍କୁ ଓ ଆପଣା ଲୋକଙ୍କୁ ବୁଝାଯାଏ; କାହିଁକି ନା, ସେଭଳି ଲୋକ ଯୁକ୍ତି ତର୍କରେ କଥାକୁ ଉଡ଼ାଇ ନ ଦେଇ ଶୁଣିବ ଓ ମାନିବ । ୯.୧ ଦେଖ ।୬୪।

**ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।**
**ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ ।୬୫।**

**ଅନ୍ୱୟ**—ସ୍ପଷ୍ଟ । ୬୫ ।

**ଟୀକା**—ମନ୍ମନାଃ (ମଜ୍‌ଜ୍ଞାନାତ୍ ମଚ୍ଚିତ୍ତଃ) ମଦ୍‌ଭକ୍ତଃ ମଦ୍‌ଯାଜୀ (ମଦର୍ଥଂ କର୍ମପରଃ) [ଚ] ଭବ; ମାଂ ନମସ୍କୁରୁ । ମାଂ ଏବ ଏଷ୍ୟସି । [ତ୍ୱଂ] ମେ (ମମ) ପ୍ରିୟଃ ଅସି । ତେ (ତୁଭ୍ୟଂ) [ଅହଂ ଏତତ୍] ସତ୍ୟଂ ପ୍ରତିଜାନେ । ୬୫ ।

**ଅର୍ଥ**—ମତେ ଜାଣି ମୋଠି ମନ ଦେ, ମୋର ଭକ୍ତ ହୋ, ମୋର କର୍ମବୋଲି କର୍ମ କର୍, ମୋତେ ନମସ୍କାର କର୍ (ଅର୍ଥାତ୍, ମୋତେ ମନେ ରଖି ଅହଂକାର ଛାଡ଼୍) । ମୋଠାକୁ ଆସିବୁ (ମୋତେ ପାଇବୁ) । ତୁ ହେଉଚୁ ମୋର ପ୍ରିୟ । ତୋ ପାଖେ ମୁଁ ଏହି ସତ୍ୟ ପ୍ରତିଜ୍ଞା କରୁଚି । [ଜ୍ଞାନ, ଭକ୍ତି ଓ କର୍ମ ସବୁଥିରେ ମତେ ଧର୍ ] । ୬୫ ।

**ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।**
**ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।୬୬।**

**ଅନ୍ୱୟ**—ସ୍ପଷ୍ଟ । ୬୬ ।

**ଟୀକା**—ସର୍ବଧର୍ମାନ୍ (ଅନ୍ୟତ୍ ସର୍ବଂ ଦେବାରାଧନାଦିକଂ; ଅପର ସର୍ବ-ମତାନୁଯାୟୀ କର୍ମ) ପରିତ୍ୟଜ୍ୟ ଏକଂ ମାଂ ଶରଣଂ ବ୍ରଜ (ଗଚ୍ଛ) । ଅହଂ ତ୍ୱାଂ ସର୍ବପାପେଭ୍ୟଃ ମୋକ୍ଷୟିଷ୍ୟାମି (ମୁକ୍ତଂ ଦାସ୍ୟାମି) । ମା (ନ) ଶୁଚଃ ଶୋକଂ କୁରୁ । । ୬୬ ।

**ଅର୍ଥ**—ସବୁ ଧର୍ମ ଛାଡ଼ି ଏକା ମୋଠି ଶରଣ ନେ । ମୁଁ ତତେ ସବୁ ପାପରୁ ପରିତ୍ରାଣ କରିବି । ଶୋଚନା କର୍ ନା । ୬୬ ।

ବ୍ୟାଖ୍ୟା ସୂଚନା—ସବୁ ଧର୍ମ=ଆଉ ଯେତେ ମତାମତ ଅନୁସାରେ କର୍ମ କରିବାର ଉପଦେଶ ଅଛି, ସେ ସବୁ । ୬୬ ।

**ଇଦଂ ତେ ନାତପସ୍କାୟ ନାଭକ୍ତାୟ କଦାଚନ ।**
**ନ ଚାଶୁଶ୍ରୂଷବେ ବାଚ୍ୟଂ ନ ଚ ମାଂ ଯୋଽଭ୍ୟସୂୟତି । ୬୭ ।**

**ଅନ୍ୱୟ**—ସ୍ପଷ୍ଟ । ୬୭ ।

**ଟୀକା**—ନ ଅତପସ୍କାୟ ତପସ୍ୟାହୀନାୟ—(ତତ୍ତ୍ୱାନ୍ୱେଷଣେ ପ୍ରଯତ୍ନରହିତାୟ) ନ ଅଭକ୍ତାୟ, ନ ଚ ଅଶୁଶ୍ରୂଷବେ (ଜ୍ଞାନଂ ଲବ୍‌ଧଂ ଇଚ୍ଛାହୀନାୟ); ନ ଚ ଯଃ ମାଂ ଅଭ୍ୟସୂୟତି (ନିନ୍ଦତି, ଶ୍ରଦ୍ଧାହୀନାୟ ଇତି ଯାବତ୍ ) [ତସ୍ମୈ]—ଇତ (ତ୍ୱୟା) ଇଦଂ କଦାଚନ (କଦାପି) ନ ବାଚ୍ୟଂ (କଥନୀୟମ୍ ) । ୬୭ ।

**ଅର୍ଥ**—ଯାହାର ତପ ନାହିଁ (ଅର୍ଥାତ୍, ତତ୍ତ୍ୱ ଅନୁସଂଧାନ କରି ଜାଣି କରିବାରେ ଯାହାର ପ୍ରଚେଷ୍ଟା ନାହିଁ), ଯେ ଭକ୍ତ ନୁହେ, ଯେ ପୁଣି ଶୁଣିକରି ଜ୍ଞାନ ପାଇବାକୁ ରାଜି ନୁହେ, ପୁଣି ଯେ ମତେ ସହି ନ ପାରେ (ଅର୍ଥାତ୍, ଶ୍ରଦ୍ଧାହୀନ ହୋଇ ଯେ ମୋ କଥାରେ ଯୁକ୍ତି ତର୍କ ସମାଲୋଚନା କରି ସବୁ ଉଡ଼ାଇ ଦେବାକୁ ବସେ— ସେପରି ଲୋକଙ୍କୁ ତୋର ଏ କଥା କେବେ କହିବା ଠିକ୍ ନୁହେଁ । [ ଯେ କର୍ମ, ଭକ୍ତି ଓ ବିଶ୍ୱାସର ଜ୍ଞାନରେ ମୋତେ ଲୋଡ଼େ ନାହିଁ, ତାକୁ ମୋ କଥା କହିବା ଠିକ୍ ନୁହେ ] । ୬୭ ।

**ଯ ଇମଂ ପରମଂ ଗୁହ୍ୟଂ ମଦ୍‌ଭକ୍ତେଷ୍ୱଭିଧାସ୍ୟତି ।**
**ଭକ୍ତିଂ ମୟି ପରାଂ କୃତ୍ୱା ମାମେବୈଷ୍ୟତ୍ୟସଂଶୟଃ । ୬୮ ।**

**ଅନ୍ୱୟ**—ସ୍ପଷ୍ଟ । ୬୮ ।

**ଟୀକା**—ଇମଂ ପରମଂ ଗୁହ୍ୟଂ [ତତ୍ତ୍ୱଂ] ଯଃ ମଦ୍‌ଭକ୍ତେଷୁ ଅଭିଧାସ୍ୟତି (ବୋଧୟିଷ୍ୟତି) [ସଃ ଏତେନୈବ ଅଭିଧାନେନ] ମୟି ପରାଂ ଭକ୍ତିଂ କୃତ୍ୱା ମାଂ ଏବ ଏଷ୍ୟତି ଇତି ଅସଂଶୟଃ । ୬୮ ।

**ଅର୍ଥ**—ଏହି ଅତି ଗୂଢ଼ ତତ୍ତ୍ୱ କଥା ଯେ ମୋ ଭକ୍ତଙ୍କ ପାଖେ ବୁଝାଇ କହିବ, ସେ ସେହି କହିବାରେହିଁ ମୋଠି ପରମଭକ୍ତି କରି ମୋ ଠାକୁହିଁ ଆସିବ, ଏଥିରେ ସନ୍ଦେହ ନାହିଁ । ୬୮ ।

**ନ ଚ ତସ୍ମାନ୍ମନୁଷ୍ୟେଷୁ କଶ୍ଚିନ୍ମେ ପ୍ରିୟକୃତ୍ତମଃ ।**
**ଭବିତା ନ ଚ ମେ ତସ୍ମାଦନ୍ୟଃ ପ୍ରିୟତରୋ ଭୁବି । ୬୯ ।**

**ଅନ୍ୱୟ**—ସ୍ପଷ୍ଟ । ୬୯ ।

**ଟୀକା**—[ ଅପି ] ଚ ତସ୍ମାତ୍ ( ମଦ୍‌ଭକ୍ତେଷୁ ଏତଦ୍‌ବ୍ୟାଖ୍ୟାତୁଃ ) ମେ (ମମ) ପ୍ରିୟକୃତ୍ତମଃ (ଅଧିକତର-ପ୍ରିୟଙ୍କରଃ) କଶ୍ଚିତ୍ [ଅପରଃ] ମନୁଷ୍ୟେଷୁ ନ ଚ (ଅସ୍ତି ); ଭୁବି (ପୃଥିବ୍ୟାଂ) ଚ ତସ୍ମାତ୍ ଅନ୍ୟଃ ମେ (ମମ) ପ୍ରିୟତରଃ ନ ଭବିତା (ଭବିଷ୍ୟତି) । ୬୯ ।

**ଅର୍ଥ**—ପୁଣି ସେହି ଭକ୍ତଙ୍କ ମୋ କଥାକହିବା ଲୋକଠାରୁ ମୋର ବେଶୀ ପ୍ରିୟକାର୍ଯ୍ୟ କରିବା ଲୋକ ମନୁଷ୍ୟ ଭିତରେ ଆଉ କେହି ନାହିଁ, କି ତାଠାରୁ ବେଶୀ ମୋର ପ୍ରିୟ କେହି ପୃଥିବୀରେ ହେବ ନାହିଁ । ୬୯ ।

**ଅଧ୍ୟେଷ୍ୟତେ ଚ ଯ ଇମଂ ଧର୍ମ୍ୟଂ ସଂବାଦମାବୟୋଃ ।**
**ଜ୍ଞାନଯଜ୍ଞେନ ତେନାହମିଷ୍ଟଃ ସ୍ୟାମିତି ମେ ମତିଃ । ୭୦ ।**

**ଅନ୍ୱୟ**—ଚ ଯଃ ଆବୟୋଃ ଇମଂ ଧର୍ମ୍ୟଂ ସଂବାଦଂ ଅଧ୍ୟେଷ୍ୟତେ (ଅଧ୍ୟୟନଂ କରିଷ୍ୟତି) ତେନ ଅହଂ ଜ୍ଞାନଯଜ୍ଞେନ ଇଷ୍ଟଃ ସ୍ୟାଂ ( ଭବେୟଂ ଇତି ) ମେ ମମ ମତିଃ । ୭୦ ।

**ଟୀକା**—[ପୁନଃ] ଚ ଯଃ ଆବୟୋଃ ଇମଂ ଧର୍ମ୍ୟଂ ସଂବାଦ ଅଧ୍ୟେଷ୍ୟତେ (ଅଧ୍ୟୟନଂ କରିଷ୍ୟତି) ତେନ ଅହଂ ଜ୍ଞାନଯଜ୍ଞେନ (ଜ୍ଞାନାୟ ମଦ୍ଗୀ ତତ୍ତ୍ୱପଠନ କର୍ମୋତ୍ସର୍ଗେଣ ଇତି ଭାବଃ) । ଇଷ୍ଟଃ (ଆରାଧିତଃ) ସ୍ୟାଂ (ଭବେୟଂ ଇତି) ମେ (ମମ) ମତିଃ । ୭୦ ।

**ଅର୍ଥ**—ଆହୁରି ପୁଣି ଯେ ଆମ ଦୁହିଙ୍କର ଏ ଧର୍ମସଂବାଦକୁ ମନ ଦେଇ ପଢ଼ିବ ( ବା ମନେ ମନେ ଗୁଣିବ ), ତାଦ୍ୱାରା ମୁଁ ଜ୍ଞାନଯଜ୍ଞରେ ଭଜନା କରାହୁଏ ବୋଲି ମୋର ଧାରଣା । ୭୦ ।

ବ୍ୟାଖ୍ୟା ସୂଚନା—ଧର୍ମ୍ୟ = ଧର୍ମବିଷୟକ; ସଂବାଦ—କଥୋପକଥନ, କଥାବାର୍ତ୍ତା । ଗୀତା ଧର୍ମବିଷୟକସଂବାଦ; ଯୁକ୍ତିତର୍କପୂର୍ଣ୍ଣ ସିଦ୍ଧାନ୍ତଗ୍ରନ୍ଥ ନୁହେ; ବହୁସୂକ୍ଷ୍ମ ସିଦ୍ଧାନ୍ତଗ୍ରନ୍ଥ, ସଂବାଦ ନୁହେ—୧୩.୪ ଦେଖ । ଜ୍ଞାନଯଜ୍ଞ = ଜ୍ଞାନଲାଭ କରିବାପାଇଁ ଈଶ୍ୱରବିହିତ ନିତ୍ୟକର୍ମ ବୋଲି କର୍ମ କରିବା । ସ୍ୱାଧ୍ୟାୟ ହିଁ ଜ୍ଞାନଯଜ୍ଞ—୪. ୨୮ ଦେଖ । ୭୦ ।

**ଶ୍ରଦ୍ଧାବାନନସୂୟଶ୍ଚ ଶୃଣୁୟାଦପି ଯୋ ନରଃ ।**
**ସୋଽପି ମୁକ୍ତଃ ଶୁଭାନ୍ ଲୋକାନ୍**
**ପ୍ରାପ୍ନୁୟାତ୍ ପୁଣ୍ୟକର୍ମଣାମ୍ । ୭୧ ।**

**ଅନ୍ୱୟ**—ଯଃ ଅପି ନରଃ ଶ୍ରଦ୍ଧାବାନ୍ ଅନସୂୟଃ ଚ ଶୃଣୁୟାତ୍ ସଃ ଅପି ମୁକ୍ତଃ ଶୁଭାନ୍ ପୁଣ୍ୟକର୍ମଣାଂ ଲୋକାନ୍ ପ୍ରାପ୍ନୁୟାତ୍ । ୭୧ ।

**ଟୀକା**—ଯଃ ଅପି ନରଃ ଶ୍ରଦ୍ଧାବାନ୍ ଅନସୂୟଃ (ଦ୍ୱେଷଦୃଷ୍ଟିହୀନଃ) ଚ [ସନ୍ ଏତତ୍]. ଶୃଣୁୟାତ୍, ସଃ ଅପି [ପାପେଭ୍ୟଃ] ମୁକ୍ତଃ [ସନ୍] ଶୁଭାନ୍ ପୁଣ୍ୟକର୍ମଣାଂ ( ସୁକୃତବତାଂ ) ଲୋକାନ୍ ପ୍ରାପ୍ନୁୟାତ୍ । ୭୧ ।

**ଅର୍ଥ**—ଯେ ଲୋକ ବିଶ୍ୱାସ ରଖି ଓ ଯୁକ୍ତିତର୍କରେ ଦୋଷ ବାଛିବା ଛାଡ଼ି ଏହାକୁ ଶୁଣିବ, ସେ ବି ପାପରୁ ମୁକ୍ତ ପାଇ ସୁକୃତବନ୍ତମାନଙ୍କୁ ମିଳୁଥିବା ସ୍ୱର୍ଗାଦି ଶୁଭଲୋକମାନ ପାଇବ । ଏଠାରେ କହିବାର ମତଲବ୍ ହେଉଛି, ଯେ ଏହି ଜ୍ଞାନ ଅନୁଭବରେ ବୁଝିଛି, ସେହି ଏହା ଦୋସ୍ତଙ୍କୁ ଦେଇପାରେ । ଶୁଦ୍ଧ ଉଚ୍ଚାରଣ କରି ଅର୍ଥ ଶୁଣାଇବା ଲୋକପାଇଁ ଏ ଦୁଇ ଶ୍ଲୋକ ନୁହେଁ—ମହାତ୍ମା ଗାନ୍ଧୀ । ୭୧ ।

**କଚ୍ଚିଦେତଚ୍ଛ୍ରୁତଂ ପାର୍ଥ ତ୍ୱୟୈକାଗ୍ରେଣ ଚେତସା ।**
**କଚ୍ଚିଦଜ୍ଞାନସମ୍ମୋହଃ ପ୍ରଣଷ୍ଟସ୍ତେ ଧନଞ୍ଜୟ । ୭୨ ।**

**ଅନ୍ୱୟ**—ପାର୍ଥ ! ଏତତ୍ ତ୍ୱୟା ଏକାଗ୍ରେଣ ଚେତସା ଶ୍ରୁତଂ କଚ୍ଚିତ୍ ? ଧନଂଜୟ ! ତେ ଅଜ୍ଞାନସମୋହଃ ପ୍ରଣଷ୍ଟଃ କଚ୍ଚିତ୍ ? । ୭୨ ।

**ଟୀକା**—ହେ ପାର୍ଥ, [ ମୟୋକ୍ତଂ ] ଏତତ୍ [ ତତ୍ତ୍ୱଂ ] ତ୍ୱୟା ଏକାଗ୍ରେଣ ଚେତସା ଶ୍ରୁତଂ କଚ୍ଚିତ୍ (କମୁ) ? ହେ ଧନଞ୍ଜୟ [ଇଦାନୀଂ] ତେ (ତବ) ଅଜ୍ଞାନ-ସମ୍ମୋହଃ ପ୍ରଣଷ୍ଟଃ (ସମ୍ୟକ୍ ଅପଗତଃ) କଚ୍ଚିତ୍ ? । ୭୨ ।

**ଅର୍ଥ**—ହେ ପାର୍ଥ, ଏ କଥା ସବୁ ତୁ ଏକାଗ୍ରମନରେ ଶୁଣିଲୁ ତ ? ହେ ଧନଞ୍ଜୟ, ଏବେ ତୋ ଅଜ୍ଞାନମୋହ ପୂରା ତୁଟିଲା ତ ? ୭୨ ।

ଅର୍ଜୁନ ଉବାଚ

**ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ପ୍ରସାଦାନ୍ମୟାଽଚ୍ୟୁତ ।**
**ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ ।୭୩।**

**ଅନ୍ୱୟ**—ସ୍ପଷ୍ଟ । ୭୩ ।

**ଟୀକା**—ଅର୍ଜୁନ ଉବାଚ—ହେ ଅଚ୍ୟୁତ, ତ୍ୱତ୍ପ୍ରସାଦାତ୍ (ତବାନୁଗ୍ରହାତ୍) [ମମ] ମୋହଃ ନଷ୍ଟଃ, ମୟା [ଯଥାର୍ଥକର୍ତ୍ତବ୍ୟସ୍ୟ] ସ୍ମୃତିଃ ଲବ୍ଧା । [ଅଧୁନା] ଗତ-ସନ୍ଦେହଃ (ଛିନ୍ନସଂଶୟଃ) [ସନ୍] ସ୍ଥିତଃ ଅସ୍ମି । ତବ ବଚନଂ କରିଷ୍ୟେ । ୭୩ ।

**ଅର୍ଥ**—ଅର୍ଜୁନ କହିଲେ—ହେ ଅଚ୍ୟୁତ, ତମ ଦୟାରୁ ମୋର ମୋହ ଛୁଟିଛି, ହୋସ୍ ଆସିଛି, ସଂଶୟ ତୁଟି ଯାଇଛି, ମୁଁ ତମ କଥା କରିବି । ୭୩ ।

ସଞ୍ଜୟ ଉବାଚ

**ଇତ୍ୟହଂ ବାସୁଦେବସ୍ୟ ପାର୍ଥସ୍ୟ ଚ ମହାତ୍ମନଃ ।**
**ସଂବାଦମିମମଶ୍ରୌଷମଦ୍ଭୁତଂ ଲୋମହର୍ଷଣମ୍ । ୭୪ ।**

**ଅନ୍ୱୟ**—ବାସୁଦେବସ୍ୟ ମହାତ୍ମନଃ ପାର୍ଥସ୍ୟ ଚ ଇତି ଅଦ୍ଭୁତଂ ଲୋମହର୍ଷଣଂ ଇମଂ ସଂବାଦଂ ଅହଂ ଅଶ୍ରୌଷମ୍ । ୭୪ ।

**ଟୀକା**—[ଏବଂ ଧୃତରାଷ୍ଟ୍ରାୟ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦ କଥୟିତ୍ୱା ପଶ୍ଚାତେ ] ସଞ୍ଜୟଃ ଉବାଚ—ବାସୁଦେବସ୍ୟ ମହାତ୍ମନଃ ପାର୍ଥସ୍ୟ ଚ ଇତ୍ଥ (ଏବଂ) ଅଦ୍ଭୁତ ରୋମହର୍ଷଣଂ ଇମଂ ସଂବାଦଂ ଅହଂ ଅଶ୍ରୌଷଂ (ଶ୍ରୁତବାନ୍) । ୭୪ ।

**ଅର୍ଥ**—[ଏ ସବୁ କୃଷ୍ଣ ଓ ଅର୍ଜ୍ଜୁନଙ୍କ କଥାବାର୍ତ୍ତା ଯେପରି ଘଟିଲା ଠିକ୍ ସେହିପରି ଧୃତରାଷ୍ଟ୍ରଙ୍କୁ କହିସାରି ଶେଷରେ]—ସଞ୍ଜୟ କହିଲେ—ବାସୁଦେବ ଓ ମହାତ୍ମା ପାର୍ଥଙ୍କର ଏହିପରି ଏ ଅଦ୍ଭୁତ ଓ ରୋମାଞ୍ଚକର ସଂବାଦ (କଥାବାର୍ତ୍ତା) ମୁଁ ଶୁଣିଲି । ୭୪ ।

ବ୍ୟାଖ୍ୟା ସୂଚନା—ରୋମହର୍ଷଣ = ଯହିଁରେ ଲୋମ ଟାଙ୍କୁରି ଉଠେ; ରୋମାଞ୍ଚକର । ଖୁବ୍ ଆଶ୍ଚର୍ଯ୍ୟ ଓ ଆନନ୍ଦରେ ରୋମ ଟାଙ୍କୁରି ଉଠେ । ୭୪ ।

**ବ୍ୟାସପ୍ରସାଦାଚ୍ଛ୍ରୁତବାନ୍ ଏତଦ୍‌ଗୁହ୍ୟମହଂ ପରମ୍ ।**
**ଯୋଗଂ ଯୋଗେଶ୍ୱରାତ୍ କୃଷ୍ଣାତ୍ ସାକ୍ଷାତ୍**
**କଥୟତଃ ସ୍ୱୟମ୍ । ୭୫ ।**

**ଅନ୍ୱୟ**—ସ୍ପଷ୍ଟ । ୭୫ ।

**ଟୀକା**—ସାକ୍ଷାତ୍ ସ୍ୱୟଂ କଥୟତଃ ଯୋଗେଶ୍ୱରାତ୍ କୃଷ୍ଣାତ୍ ଇମଂ ପରଂ ଗୁହ୍ୟଂ ଯୋଗଂ ବ୍ୟାସପ୍ରସାଦାତ୍ ଅହଂ ଶ୍ରୁତବାନ୍ । ୭୫ ।

**ଅର୍ଥ**—ବ୍ୟାସଙ୍କ ଅନୁଗ୍ରହରୁ ଯୋଗେଶ୍ୱର କୃଷ୍ଣ ଏହି ପରମ ଗୁହ୍ୟ ଯୋଗ ନିଜେ ସାକ୍ଷାତ୍ କହୁଥିବାର ମୁଁ ଶୁଣିଲି । ୭୫ ।

ବ୍ୟାଖ୍ୟା ସୂଚନା—ଯୋଗେଶ୍ୱର = ବିଶ୍ୱପ୍ରକାଶରୂପ ଯୋଗର ସ୍ରଷ୍ଟା, ପାଳକ ଓ ନିୟାମକ । ଗୁହ୍ୟ = ଗୋପନୀୟ, ଯାହା ସହଜରେ ଜାଣି ହୁଏ ନାହିଁ । ୯.୧; ୧୮.୬୪ ଦେଖ । ଯୋଗ = କର୍ମର ଯୁକ୍ତି, ଆଚରଣର ପ୍ରକାର ଓ ପ୍ରଣାଳୀ । କୃଷ୍ଣ କୁରୁକ୍ଷେତ୍ର ଯୁଦ୍ଧଭୂମିରେ କହୁଥିଲେ । ସଞ୍ଜୟ ଘରେ ଥିଲେ । ବ୍ୟାସ ସଞ୍ଜୟଙ୍କୁ ଜ୍ଞାନଚକ୍ଷୁ ଦେବାରୁ ସଞ୍ଜୟ ଠିକ୍ ସବୁ ଦେଖିଲା ପରି ଜାଣୁଥିଲେ । ଏହା ମହାଭାରତରେ ଅଛି । ପ୍ରଥମ ଅଧ୍ୟାୟ ପ୍ରବେଶ ଦେଖ । ୭୫ ।

**ରାଜନ୍ ସଂସ୍ମୃତ୍ୟ ସଂସ୍ମୃତ୍ୟ ସଂବାଦମିମମଦ୍ଭୁତମ୍ ।**
**କେଶବାର୍ଜ୍ଜୁନୟୋଃ ପୁଣ୍ୟଂ ହୃଷ୍ୟାମି ଚ ମୁହୁର୍ମୁହୁଃ । ୭୬ ।**

**ଅନ୍ୱୟ**—ସ୍ପଷ୍ଟ । ୭୬ ।

**ଟୀକା**—ହେ ରାଜନ୍ (ଧୃତରାଷ୍ଟ୍ର), କେଶବାର୍ଜ୍ଜୁନୟୋଃ ଇମଂ ପୁଣ୍ୟଂ ଅଦ୍ଭୁତଂ ସଂବାଦଂ ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ ମୁହୁର୍ମୁହୁଃ ହୃଷ୍ୟାମି (ଆନନ୍ଦବଶ୍ୟତ୍ୱେନ ମମ ରୋମୋଦ୍‌ଗମୋ ଜାୟତେ) । ୭୬ ।

**ଅର୍ଥ**—ହେ ରାଜା (ଧୃତରାଷ୍ଟ୍ର), କେଶବ ଅର୍ଜୁନଙ୍କର ଏହି ଅଦ୍ଭୁତ ପୁଣ୍ୟ ସମ୍ବାଦକୁ ଥରକୁ ଥର ମନେ ପକାଇ ଏବେ ବି ମୋର ଥରକୁ ଥର ରୋମ ଟାଙ୍କୁରି ଉଠୁଛି । ୭୬ ।

**ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ ରୂପମତ୍ୟଦ୍‌ଭୁତଂ ହରେଃ ।**
**ବିସ୍ମୟୋ ମେ ମହାନ୍ ରାଜନ୍ ହୃଷ୍ୟାମି ଚ ପୁନଃ ପୁନଃ ।୭୭।**

**ଅନ୍ୱୟ**—ସ୍ପଷ୍ଟ । ୭୭ ।

[ ପୁନଃ ] ଚ ହରେଃ (କୃଷ୍ଣସ୍ୟ) ତତ୍ ଅତ୍ୟଦ୍ଭୁତଂ [ ବିଶ୍ୱ- ] ରୂପ ସଂସ୍ମୃତ୍ୟ ସଂସ୍ମୃତ୍ୟ ହେ ରାଜନ୍, ମେ ( ମମ ) ମହାନ୍ ବିସ୍ମୟଃ [ଭବତି]; ପୁନଃ ପୁନଃ ଚ ଅହଂ ହୃଷ୍ୟାମି । ୭୭ ।

**ଅର୍ଥ**—ଆହୁରି ପୁଣି ହେ ରାଜନ୍ କୃଷ୍ଣଙ୍କର ସେହି ଅତି ଅଦ୍ଭୁତ ବିଶ୍ୱରୂପ ଏବେ ବି ଥରକୁ ଥର ମନେ ପଡ଼ୁଗଲେ ମୋର ମହାବିସ୍ମୟ ଜନ୍ମୁଚି, ପୁଣି ଥରକୁ ଥର ମୋ ରୁମ ଟାଙ୍କୁରି ଉଠୁଚି । ୭୭ ।

**ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ ।**
**ତତ୍ର ଶ୍ରୀର୍ବିଜୟୋ ଭୂତିର୍ଧ୍ରୁବା ନୀତିର୍ମତିର୍ମମ । ୭୮ ।**

**ଅନ୍ୱୟ**—ସ୍ପଷ୍ଟ । ୭୮ ।

**ଟୀକା**—[ଅତଏବ] ଯତ୍ର କୃଷ୍ଣଃ ଯୋଗେଶ୍ୱରଃ, (ଯୁଦ୍ଧଚାଳକଃ) ଯତ୍ର ପାର୍ଥଃ ଧନୁର୍ଧରଃ (ଶସ୍ତ୍ରଧରଃ), ତତ୍ର ଶ୍ରୀଃ, ବିଜୟଃ, ଭୂତିଃ, (ବିଭବଃ, ଐଶ୍ୱର୍ଯ୍ୟଂ ବା) ଧ୍ରୁବା (ଅବିଚଳିତା) ନୀତିଃ (ରାଜଧର୍ମଃ—ରାଜକାର୍ଯ୍ୟକୁଶଳତା) (ଇତି) ମେ (ମମ) ମତିଃ ( ଧାରଣା ) । ୭୮ ।

**ଅର୍ଥ**—( ଅତଏବ ) ଯେଉଁଠି କୃଷ୍ଣ ଯୁଦ୍ଧରେ ଚଳାଇଚନ୍ତି, ଯେଉଁଠି ପାର୍ଥପରି ବୀର ଧନୁ ଧରିଚନ୍ତି, ସେଇଠି ରାଜଲକ୍ଷ୍ମୀ, ସେଇଠି ବିଜୟ, ସେଇଠି ଐଶ୍ୱର୍ଯ୍ୟ ( ବା ପ୍ରଭୁତ୍ୱ ), ସେଇଠି ନିଶ୍ଚିତ ରାଜଧର୍ମ (ବା ଯଥାର୍ଥ ରାଜକାର୍ଯ୍ୟକୌଶଳ) ବୋଲି ମୋର ଧାରଣା । ୭୮ ।

**ଇତି ସମାପ୍ତୋଽୟଂ ଗ୍ରନ୍ଥଃ**

ଶ୍ରୀ କୃଷ୍ଣାର୍ପଣମସ୍ତୁ

---